ଏ ଗ୍ରନ୍ଥର ନାୟକ ଆଜକୁ ସତୁରି ବର୍ଷ ତଳେ ଜଙ୍ଗଲ ଅଧ୍ୟୁଷିତ ଗଙ୍ଗରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ବଡ଼ଖେମଣ୍ଡି ଗଡ଼ର ରାଜବୈଦ୍ୟ ପରିବାରରେ ଉଝଟ କବି ଶ୍ୟାମସୁନ୍ଦର ଓ କାରୁକଳା ନିପୁଣା କମଳା ଦେବୀଙ୍କ କନିଷ୍ଠ ପୁତ୍ର ଭାବେ ଜନ୍ମ ନେଇଛନ୍ତି। ପରିବାରର କାବ୍ୟ, ନାଟକ, ସଙ୍ଗୀତ ଓ ଚିତ୍ରକଳା ପରମ୍ପରା ତାଙ୍କ ଜୀବନର ବିକାଶରେ ଇନ୍ଧନ ଯୋଗାଇଛି। ଦାରିଦ୍ର୍ୟର ଅଭାବନୀୟ ପରିବେଶକୁ ନିଜ ଅସାଧାରଣ ପ୍ରତିବଦ୍ଧତା ଓ କଠୋର କର୍ମପ୍ରବଣତାରେ ଅତିକ୍ରମ କରି ଜଣେ ସାଧାରଣ ଡ୍ରଇଁ ମାଷ୍ଟ୍ରର ଅସହାୟ ସରହଦ ଭିତରୁ ଉତୁରି ପଡ଼ି ଆମ ଦେଶର ସର୍ବୋଚ୍ଚ ଅନୁଷ୍ଠାନ କେନ୍ଦ୍ର ଲଳିତ କଳା ଏକାଡ଼େମୀର ପ୍ରଥମ ଓଡ଼ିଆ ସଚିବ ଭାବେ ନିଜକୁ ତଥା ଓଡ଼ିଆ ଶିଳ୍ପୀକୁଳକୁ ଗୌରବ ମଣ୍ଡିତ କରିଛନ୍ତି।

ଦିନନାଥଙ୍କ ଶିଳ୍ପ ପ୍ରତିଭା ଏଭଳି ବହୁମୁଖୀ ଯେ ତାଙ୍କୁ କୌଣସି ନିର୍ଦ୍ଦିଷ୍ଟ ବିଧା ଭିତରେ ସୀମିତି ରଖିବା ସମ୍ଭବ ନୁହେଁ। ଏହି ଗ୍ରନ୍ଥରେ ଚିତ୍ରକଳା, ଚିତ୍ରପ୍ରଦର୍ଶନୀ, କଳାଶିକ୍ଷା, କଳାଗବେଷଣା, ସାହିତ୍ୟ, ପ୍ରଶାସନ ଓ ସଂଗଠନ ମଧ୍ୟରେ ତାଙ୍କର ଅବଦାନକୁ ଆକଳନ କରିବା ପାଇଁ ଚେଷ୍ଟା କରାଯାଇଛି। ଜଣେ ଚିତ୍ରଶିଳ୍ପୀଙ୍କ କ୍ଷେତ୍ରରେ ଓଡ଼ିଆ ଭାଷାରେ ଏପରି ସଂକଳନ ସମ୍ପୂର୍ଣ୍ଣ ଅଭିନବ। ଏଣୁ ଆଶା କରିବା ସ୍ୱାଭାବିକ ଯେ ଲେଖାଗୁଡ଼ିକର ସ୍ୱଚ୍ଛତା, ଆନ୍ତରିକତା ଓ ତଥ୍ୟଭିତ୍ତିକତା ପାଠକଙ୍କୁ ଏହି ପ୍ରତିଭାର ନୂଆ ଆଭିମୁଖ୍ୟ ଯୋଗାଇ ଦେଇ ପାରିବ।

Digitized by srujanika@gmail.com

**ଉପଦେଷ୍ଟା ମଣ୍ଡଳୀ**

ଅସୀମ ବସୁ, ଡାକ୍ତର ଜେ.ପି. ଦାସ, ସୌରୀନ୍ଦ୍ର ବାରିକ, ପ୍ରଶାନ୍ତ ଚନ୍ଦ୍ର ପଟ୍ଟନାୟକ, ସୁ.କୁ.ବି.ନା (ଜାପାନୀ), ପ୍ରଫୁଲ୍ଲ ଚନ୍ଦ୍ର ଧୀର, ବାସୁଦେବ ସାହୁ, ବିଜୟ କୁମାର ମହାନ୍ତି, ଗୌରହରି ପ୍ରଧାନ, ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ, ଶିବ ପାଣିଗ୍ରାହୀ, ଡି. ନାରାୟଣ ରାଓ, ଅଲେଖ ଚରଣ ସାହୁ, ବିଜୟ କୁମାର ମହାନ୍ତି (କବି), ରମେଶ ଦାସ, ସଂଗ୍ରାମ ଜେନା, ଯତୀନ୍ଦ୍ର କୁମାର ନାୟକ, ରାମହରି ଜେନା, ନିତ୍ୟାନନ୍ଦ ମିଶ୍ର, ଦେବରାଜ ସାହୁ, ଜୟନ୍ତ କୁମାର ଦାସ, ସତ୍ୟ ମହାପାତ୍ର, ସୁରେଶ ବଳବନ୍ତରାୟ ଓ ଶଙ୍କର ଲାଲ ପୁରୋହିତ ।

**ବାଙ୍ମୟ ଚିତ୍ରପଟ**

**ଅର୍ଦ୍ଧଶତାବ୍ଦୀ ଓଡ଼ିଶାର ଚିତ୍ରକଳା**


ସଙ୍କଳନ ଓ ସମ୍ପାଦନା ଦିଲ୍ଲୀପ କୁମାର ତ୍ରିପାଠୀ ଓ ସୌଭାଗ୍ୟ ପାଠୀ

ପ୍ରଥମ ପ୍ରକାଶନ ୨୦୧୨

ସତ୍ତ୍ୱାଧିକାରୀ ସୌଭାଗ୍ୟ ପାଠୀ

ପ୍ରଚ୍ଛଦ ରାମହରି ଜେନା ଓ ଦିଲ୍ଲୀପ କୁମାର ତ୍ରିପାଠୀ

ପ୍ରଚ୍ଛଦ ଓ ରଙ୍ଗିନ୍ ଚିତ୍ର ମୁଦ୍ରଣ : ଥାର୍ଡ଼ ଆଇ କମ୍ୟୁନିକେସନ୍‌ସ

ରେଖାଚିତ୍ର : ଦିନନାଥ ପାଠୀ

ଫଟୋଗ୍ରାଫ୍ : ରାମହରି ଜେନା, ଡି. ନାରାୟଣ ରାଓ, ପ୍ରଫୁଲ୍ଲ ଚନ୍ଦ୍ର ଧୀର, ଦିଲ୍ଲୀପ କୁମାର ତ୍ରିପାଠୀ ଓ ସୌଭାଗ୍ୟ ପାଠୀ

ଡିଜାଇନ୍ ଓ ଲେ ଆଉଟ ବିଭୁ ପ୍ରସୂନ ଦାସ

ପ୍ରକାଶକ ପକ୍ଷୀଘର ପ୍ରକାଶନୀ, ଭୁବନେଶ୍ୱର

ମୁଦ୍ରକ ଦିବ୍ୟ ମୁଦ୍ରଣୀ, ଭୁବନେଶ୍ୱର

ମୂଲ୍ୟ ₹ ୮୫୦ (ଆଠଶହ ପଚାଶ ଟଙ୍କା)


**Eloquent Canvas**

**Half a Century's Odishan Art**


Compiled and Edited by Dillip Kumar Tripathy and Soubhagya Pathy

First Published 2012

© Soubhagya Pathy

Jacket Ramhari Jena and Dillip Kumar Tripathy

Jacket & colour pages printing Third Eye Communications

Line Drawings Dinanath Pathy

Photographs Ramahari Jena, D. N. Rao, Prafulla Chandra Dhir, Dillip Kumar Tripathy and Soubhagya Pathy

Design and layout Bibhu Prasuna Das

Published by Pakhighara Prakashani

Printed at Divya Mudrani, Samantarapur, Bhubaneswar

Price ₹ 850/- (Rupees Eight hundred Fifty only)


Digitized by srujanika@gmail.com

# ସଂସର୍ଗର ମହକ

Gili khushboo-e dar hammam rozi
Raseed az dast-e mahboodi badastam
Ba-u gufta ki mushki yaa hariri ?
Ki man az boo-e dil-aawez mastam

Bagufta man gili nacheez boodam
Wa-lekin muddat-i bag gul nishastam
Kamaal-i-hamnasheen bar man asar kard
Wagarna man hamoon khaakam wa hastam

Sheikh Sa'adi

The other day, in the public bath
My beloved friend handed me a fragrant tablet of clay
I spoke to the tablet, then : "What are you ? Amber ? Musk ?
That your fragrance fills my whole being ?"

The Tablet said in turn : "I am but an insignificant lump of clay.
But I come from the soil where some roses grew.
It is the magic of company that has made me what I am;
Else, what am I ? But a lump of clay. Mere dust".

ଅନୁବାଦ : ବ୍ରଜେନ୍ଦ୍ର ନାଥ ଗୋସ୍ୱାମୀ

ସେଦିନ ଗାଧୁଆ ତୁଠେ
ପ୍ରିୟତମ ମୋ ହାତରେ
ଦେଇଥିଲା ମାଟିର ସାବୁନ୍‌ଟିଏ ।
ମୁଁ ପଚାରିଲି ସାବୁନକୁ
ତମେ କ'ଣ କସ୍ତୁରୀ ନା ହରିଦ୍ରା ଯେ
ଗନ୍ଧ ତମ ମୋ ସତ୍ତାକୁ
ଆଲୋଡ଼ିତ କରେ ?

ସାବୁନ୍ ଉତ୍ତର ଦେଲା :
ମୁଁ ମାତ୍ର ମାଟିର ଟେଳାଟିଏ
ଯେଉଁଠି ମାଟି ଗୋଲାପକୁ ଜନ୍ମ ଦିଏ ।

ଏହି ସଙ୍ଗଗୁଣର ମହିମା
ମୋତେ କରିଛି
ମହମହ ସୁଗନ୍ଧର ପୁଳକଟିଏ ।

ସେତକ ନଥିଲେ
ମୁଁ କ'ଣ ବୋଲି କହନ୍ତି ନିଜକୁ
ମୁଁ ତ ଖାଲି ଧୂଳିର ମୁଠାଟିଏ

ଅନୁବାଦ : ସୌଭାଗ୍ୟ ପାଠୀ

Digitized by srujanika@gmail.com




ପାରାଦ୍ୱୀପ ବନ୍ଦରରେ କଳିଙ୍ଗ ବାଲିଯାତ୍ରାରେ ବାହାରିଥିବା
ଦିନନାଥଙ୍କ ଦ୍ୱାରା ସଜ୍ଜିତ ବୋଇତ ।

Digitized by srujanika@gmail.com

# ପ୍ରକାଶକୀୟ

ଆମ ସମୟର ପ୍ରଥିତଯଶା ଚିତ୍ରକର, ଲେଖକ ତଥା କଳା ଐତିହାସିକ ଡକ୍ଟର ଦିନନାଥ ପାଠୀଙ୍କ ସପ୍ତତିତମ ଜନ୍ମ ସମ୍ବତ୍ସର ପୂର୍ତ୍ତି ଉପଲକ୍ଷେ ପ୍ରସ୍ତୁତ ହୋଇଥିବା ଗ୍ରନ୍ଥ 'ବାଙ୍ମୟ ଚିତ୍ରପଟ'ର ପ୍ରକାଶନ ସହିତ ସଂପୃକ୍ତ ହୋଇଥିବାରୁ ଆମେ ଆନନ୍ଦିତ ଓ ଗର୍ବିତ ମଧ୍ୟ । ମନେହୁଏ ଆମେ ଗୋଟିଏ ଜାତୀୟ କର୍ମ ସମ୍ପାଦନ କରୁଛୁ । ଓଡ଼ିଶାରେ ଚିତ୍ରଶିଳ୍ପୀଙ୍କ ସମ୍ପର୍କରେ ଏଭଳି ପ୍ରାମାଣିକ ଗ୍ରନ୍ଥଟିଏ ଆଗରୁ କେବେ ପ୍ରକାଶିତ ହୋଇପାରି ନାହିଁ ଯଦିଓ ଓଡ଼ିଶାରେ ବିଶିଷ୍ଟ କଳାକାରମାନଙ୍କର କେବେ ଅଭାବ ନଥିଲା, ଏବେ ମଧ୍ୟ ନାହିଁ । ଏ ଗ୍ରନ୍ଥର ବିଶେଷତ୍ୱ ହେଉଛି ଯେ, ଏହା କେବଳ ଜଣେ ଚିତ୍ରଶିଳ୍ପୀଙ୍କ ଜୀବନ ଓ କୃତିଭିତ୍ତିକ ଲେଖାରେ ସମୃଦ୍ଧ ନୁହେଁ ବରଂ ଏହା ଅର୍ଦ୍ଧଶତାବ୍ଦୀ ଓଡ଼ିଶାର କଳା ଇତିହାସର ଏକ ଦସ୍ତାବିଜ ।

ଚିତ୍ରଟିଏକୁ ଆମେ ସଦାକାଳେ ନୀରବ କବିତା କହି ଆସିଛୁ । କିନ୍ତୁ, ଦିନନାଥ ଏ ପର୍ଯ୍ୟନ୍ତ ବଞ୍ଚିଆସିଥିବା ଜୀବନ ଯଦି ଏକ ଚିତ୍ରରଚନା ହୁଏ ତାହା ନୀରବ କବିତା ହୋଇପାରେ କିନ୍ତୁ ଚିତ୍ର ଭାଷାରେ ଅନୁରଣିତ ଏକ ବାଙ୍ମୟ ଚିତ୍ରପଟ ।

ଦିନନାଥ ପାଠୀଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ ହେଲା : ଓଡ଼ିଶାର କଳା ପରମ୍ପରା, ସଂସ୍କୃତି ଓ ଓଡ଼ିଆ ଭାଷା ପ୍ରତି ପ୍ରତିବଦ୍ଧତା । ତାଙ୍କର ଅଧିକାଂଶ ସମସାମୟିକ ଶିଳ୍ପୀ ଓଡ଼ିଶା ମାଟିରେ ରହି କିଛି ନ ହୋଇପାରିବାର, କିଛି ନ କରିପାରିବାର ଆଶଙ୍କାରେ ଓଡ଼ିଶା ଛାଡ଼ି ଚାଲିଯାଇଥିବାବେଳେ ସେ ଏହି ଜନ୍ମମାଟିକୁ ଭରସା କରି ଏହି କଳାମୟ ରାଜ୍ୟରେ ହିଁ ରହି ନିଜ ସାଧନାରେ ବ୍ରତୀ ହୋଇଛନ୍ତି । ସମସ୍ତ ଅଭାବ, ଅନଟନ ଓ ପ୍ରତିବନ୍ଧକକୁ ଧୈର୍ଯ୍ୟର ସହିତ ସାମନା କରି ଶେଷରେ କେବଳ ନିଜେ ଉତୁରି ଆସି ନାହାନ୍ତି, ସମଗ୍ର ଓଡ଼ିଶାର କଳାଜଗତକୁ ଜାତୀୟ ତଥା ଅନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠା କରିବାରେ ସକ୍ଷମ ହୋଇଛନ୍ତି ।

ଡକ୍ଟର ପାଠୀଙ୍କ ବ୍ୟକ୍ତିତ୍ୱ ଓ ପ୍ରୟାସ ବହୁଧା ବିକଶିତ ହୋଇ ସମଗ୍ର ସର୍ଜନ ପରିଧିକୁ ଆବୋରି ବସିଛି । କଳା, ସାହିତ୍ୟ ଓ ସଂସ୍କୃତିର ବିଭିନ୍ନ ବିଭବକୁ ଆପଣାର ସର୍ଜନ କର୍ମ ଭିତରେ ସଂପୃକ୍ତ କରିପାରିଥିବାରୁ ସେ ସାଧାରଣ ବ୍ୟକ୍ତି ସ୍ତରରୁ ଉନ୍ନୀତ ହୋଇ ଏକ ବହୁମୁଖୀ ଅନୁଷ୍ଠାନର କର୍ମମୟ ଶୀର୍ଷରେ ପହଞ୍ଚି ଯାଇଛନ୍ତି । ଏ ଗ୍ରନ୍ଥରେ ତାଙ୍କ ସମ୍ପର୍କରେ ଯାହା ସବୁ କୁହାଯାଇଛି ତାହା ପର୍ଯ୍ୟାପ୍ତ ମନେ ହେଉଥିଲେ ହେଁ, ଏଭଳି ଏକ ବର୍ଣ୍ଣିଳ ଚରିତ୍ରର ସାମଗ୍ରିକ ଅବବୋଧ ପାଇଁ ଯଥେଷ୍ଟ ନୁହେଁ । ଦିନନାଥ ପାଠୀଙ୍କର ବହୁ ପ୍ରାକ୍ତନ ଛାତ୍ରଛାତ୍ରୀ, ସମସାମୟିକ ବନ୍ଧୁ ଓ ଓଡ଼ିଶାର ବରିଷ୍ଠ ଲେଖକ, ଲେଖିକା ଓ ଶିଳ୍ପୀମାନେ ଏ ବହିର କଳେବରକୁ ନିଜ ନିଜ ଲେଖାରେ ଋଦ୍ଧିମନ୍ତ କରି ଉଚ୍ଚମାନର ପରମ୍ପରାଟିଏ ସୃଷ୍ଟି କରିଛନ୍ତି ।

ଆମେ ଅନୁଭବ କରୁଛୁ ଯେ, ଓଡ଼ିଶାର ଅନ୍ୟାନ୍ୟ ଯଶୋଧର ଶିଳ୍ପୀମାନଙ୍କ ସମ୍ପର୍କରେ ଏଭଳି ଗ୍ରନ୍ଥମାନ ପ୍ରସ୍ତୁତ ହେବାର ସମୟ ଆସିଛି ।

ବନୋଜ ତ୍ରିପାଠୀ

ପକ୍ଷୀଘର ପ୍ରକାଶନ

Digitized by srujanika@gmail.com

In the vast seashore of humanity and in an eternal framework of time and space, the artist leaves behind him a marooned shadow, a defiant silence and a legacy which is difficult to ignore. We are born into it and our existence forms part of the legacy. When I talk of creative arts, I talk of universalism, of humanity, of rhythm and grace, of truth and beauty.

Dinanath Pathy 1992

(Indian Commissioner's Statement, 4th Inernational Cairo Binnale)

ଏହି ସୀମାହୀନ ମାନବ ସାଗର ତୀରେ, କାଳ ଓ ବିସ୍ତାରର ଅନନ୍ତ ପରିଧି ମଧ୍ୟରେ ଜଣେ ଶିଳ୍ପୀ ତା'ର ବିମର୍ଷ ଛାୟା ଛାଡ଼ିଯାଏ। ଏହି ଛାୟା ଅନିର୍ବଚନୀୟ ନୀରବତାର, ଏବଂ ଐତିହ୍ୟର, ଯାହାକୁ ଅସ୍ୱୀକାର କରିବା କଷ୍ଟସାଧ୍ୟ ପ୍ରକାରାନ୍ତରେ ଆମେ ଗୋଟିଏ ଐତିହ୍ୟର ଦାୟାଦ ହେଇ ଜନ୍ମଗ୍ରହଣ କରୁ ଏବଂ ଶେଷରେ ତାର ଅଂଶ ହେଇଯାଉ। ମୁଁ ସର୍ଜନଶୀଳ କଳାର କଥା କହିଲାବେଳେ ବିଶ୍ୱମୟତା, ମାନବିକତା, ଛନ୍ଦ, ଲାବଣ୍ୟ, ସତ୍ୟ ଓ ସୌନ୍ଦର୍ଯ୍ୟର କଥା ହିଁ କହୁଛି।

ଦିନନାଥ ପାଠୀ ୧୯୯୨

(ଭାରତୀୟ କମିଶନର ଙ୍କ ବକ୍ତବ୍ୟ, ଚତୁର୍ଥ ଆନ୍ତର୍ଜାତିକ କାଏରୋ ଦ୍ୱିବାର୍ଷିକୀ)

Digitized by srujanika@gmail.com

## ସୃଜନର ଜୟ ଯାତ୍ରା

୧୧/୯ର ବିଭୀଷିକା ସହିତ ଏହି ଗ୍ରନ୍ଥ ପ୍ରସ୍ତୁତିର କୌଣସି ସଂପର୍କ ନାହିଁ । ଏ ମଧ୍ୟରେ ଦଶବର୍ଷ ବିତିଗଲାଣି । ସମୟର ସଂକ୍ରମଣ ଏବଂ ଅସହାୟତାର ପ୍ରେକ୍ଷାପଟରେ ଆମର ବି ଦଶଟି ବର୍ଷ, ୨୦୦୧ରୁ ୨୦୧୧ । ବେଶ୍ କିଛି ଛାତ୍ର ଛାତ୍ରୀ ଅଣ୍ଡାଭିଡ଼ି ବାହାରିଥିଲେ ସେମାନଙ୍କ ଶିକ୍ଷକଙ୍କ ପାଇଁ ଅଭିନନ୍ଦନ ଗ୍ରନ୍ଥଟିଏ ପ୍ରକାଶ କରିବେ । ସେମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ ପ୍ରଦୋଷ ମିଶ୍ର, ସୌଭାଗ୍ୟ ପାଠୀ ଓ ଦିଲ୍ଲୀପ କୁମାର ତ୍ରିପାଠୀ । ପ୍ରସ୍ତାବ ଥିଲା ଅଭିନନ୍ଦନ ଗ୍ରନ୍ଥ ଦ୍ୱିଭାଷୀ ହେବ- ଇଂଲିଶ ଓ ଓଡ଼ିଆ । ପ୍ରଦୋଷ ଭାରତବର୍ଷର ଦୁଇଜଣ ପ୍ରଖ୍ୟାତ ବିଦ୍ୱାନ୍‌ଙ୍କ ଠାରୁ ଉତ୍ସାହ ପୂର୍ଣ୍ଣ ଚିଠି ବି ପାଇଥିଲେ । ସେ ଦୁଇଜଣ ହେଲେ ମୁଲକ୍‌ରାଜ୍ ଆନନ୍ଦ ଓ ସରୟୂ ଦୋଶୀ । ମୁଲକ୍‌ରାଜ୍ ଆନନ୍ଦ ତ ଆଉ ଆମ ଗହଣରେ ନାହାନ୍ତି । ତାଙ୍କର ଓ ସରୟୂ ଦୋଶୀଙ୍କ ଚିଠି ୧୪ପୃଷ୍ଠାରେ ଆମେ ପ୍ରକାଶ କରିଛୁ । ଦୁଇଟି ଚିଠିରେ ଉଲ୍ଲିଖିତ ଦୁଇଟି ବକ୍ତବ୍ୟ ଆମ ଶିକ୍ଷକଙ୍କୁ ଆମ ପାଖରେ ଆହୁରି ଜ୍ୱାଜ୍ୱଲ୍ୟମାନ କରିଦେଇଥିଲା । ମୁଲକ୍‌ରାଜ୍ ଆନନ୍ଦ ଲେଖିଥିଲେ : I hope the new young will appreciate Dr. Pathy's pioneer works. ସରୟୂଙ୍କ ବାକ୍ୟଟି ଅଧିକ ପ୍ରତ୍ୟକ୍ଷ ଥିଲା :The art world of India must celebrate the contribution of a figure of his stature in the Indian art scene. ମୁଲକ୍‌ରାଜ୍ ଆନନ୍ଦଙ୍କୁ କିଏ ବା ନଜାଣେ । ସରୟୂ ଦୋଶୀ ମାର୍ଗ ପତ୍ରିକାର ସମ୍ପାଦିକା, କେନ୍ଦ୍ର ଲଳିତ କଳା ଏକାଡ଼େମୀର ଅଧ୍ୟକ୍ଷା ଏବଂ ମୁମ୍ବାଇ ଜାତୀୟ ଆଧୁନିକ ସଂଗ୍ରହାଳୟର ଅବୈତନିକ ନିର୍ଦ୍ଦେଶିକା ଥିଲେ । ଏହି ଦୁଇଟି ବାକ୍ୟ ମୋଟାମୋଟି ଆମ ପ୍ରକଳ୍ପର ଆଭିମୁଖ୍ୟ ବୋଲି ଆମେ ସ୍ଥିର କଲୁ ।

ତାପରେ ଆମର ଉତ୍ସାହ ଓ ଉଦ୍ଦୀପନାରେ କାହିଁକି କେଜାଣି ଭଟ୍ଟା ପଡ଼ିଗଲା । ଆମର ସନ୍ଦେହ ହେଲା ସବୁ ପ୍ରଚେଷ୍ଟା ହୁଏତ Ground Zero ରେ ଲୀନ ହୋଇଯିବ । ଆମ ଭିତରୁ ପ୍ରଦୋଷ ଓ ସୌଭାଗ୍ୟ ନିଜ ଗବେଷଣାରେ ନିମଜ୍ଜି ରହିଲେ । ସୌଭାଗ୍ୟ ଯଦିଚ ୨୦୦୨ ମସିହାରେ ତାଙ୍କ ଗବେଷଣା ସାରି ସାରିଥିଲେ, ଅଧ୍ୟାପନାରେ ବ୍ୟସ୍ତ ରହିଥିବାରୁ ପ୍ରଦୋଷଙ୍କୁ ନିଜ ଥିସିସ୍ ଶେଷ କରିବା ପାଇଁ ଆହୁରି କିଛିବର୍ଷ ଲାଗିଗଲା ।

ଆମେ ଦୁହେଁ ସ୍ଥିର କଲୁ, ଗୋଟିଏ ନୁହେଁ, ଦୁଇଟି ଅଭିନନ୍ଦନ ଗ୍ରନ୍ଥ ପ୍ରକାଶିତ ହେବ ଓଡ଼ିଆ ଓ ଇଂଲିଶ ଭାଷାରେ । ଓଡ଼ିଆ ବହିର କାମ ଆରମ୍ଭ କରିଦେଲୁ । ଆମେ ଅତ୍ୟନ୍ତ ଆନନ୍ଦିତ ଯେ ୧୧/୯ର ଦଶନ୍ଧି ପୂର୍ତ୍ତି ପାଳନ ହେଲା ବେଳକୁ ଆମର ସଂକଳନ ଓ ସଂପାଦନା କାମ ଶେଷ ହେଇ ଆସୁଛି ।

ବିଶ୍ୱ ବାଣିଜ୍ୟ କେନ୍ଦ୍ର ଧ୍ୱଂସାବଶେଷ ଭିତରେ ବହୁ ଇତିହାସ ଲୁଚିଗଲା ପରି ୨୦୦୧-୧୧ ଭିତରେ ଏହି ଗ୍ରନ୍ଥ ସଂକଳନକୁ ନେଇ ଅନେକ ଘଟଣା ଅଘଟଣା ଓ ଦୁର୍ଘଟଣାର ଆମେ ଶରବ୍ୟ ହୋଇଛୁ । ଡକ୍ଟର ପାଠୀଙ୍କ ସମୟର ଅଭାବ, କିଛି ସହପାଠୀଙ୍କ ଅସହଯୋଗ ମନୋଭାବ, ଜଣେ ଯୁବ ପ୍ରକାଶକଙ୍କ ଆମ ପ୍ରତି ଶଠତା ଏବଂ ଏମିତି ଆହୁରି କିଛି । ତେବେ ସେ ସବୁର ରୋମନ୍ଥନ ଏଠାରେ ଅନାବଶ୍ୟକ ମନେହୁଏ ।

ଓଡ଼ିଶାରେ ଏ ଯାଏ ବହିର ମଲାଟ ଚିତ୍ର ଓ ବରାଦୀ ଅଳଂକରଣ ଚିତ୍ରହିଁ ଓଡ଼ିଆ ବୁଦ୍ଧିଜୀବୀଙ୍କ ମାନସିକତାକୁ ଗ୍ରାସିଛି । ଯଦିଚ ଉଚ୍ଚକୋଟୀର ମଲାଟ ଚିତ୍ର ଓ ଅଳଂକରଣ ଚିତ୍ର କଳା ପଦବାଚ୍ୟ, ତଥାପି ଧ୍ରୁପଦୀ କଳାର ସୃଜନ ନିଷ୍ଠା ଓ ସମ୍ଭାର ଆଗରେ ଏହା ନଗଣ୍ୟ । ସାହିତ୍ୟ କ୍ଷେତ୍ରରେ ଏହି କଳାତ୍ମକ ପ୍ରଭେଦ ଯେତେ ଶୀଘ୍ର ବୁଝିହେଉଛି ଚିତ୍ରକଳା ଓ ସଂଗୀତରେ ଧ୍ରୁପଦୀ କଳାର ଗୁଣବତ୍ତା ଏଯାଏ ପ୍ରତିଷ୍ଠିତ ହେଇ ପାରୁନଥିବା ଦୁଃଖର କଥା । ଓଡ଼ିଶୀ ସଂଗୀତକୁ ଧ୍ରୁପଦୀ ସଂଗୀତ ଭାବେ ମାନ୍ୟତା ଦେବା ପାଇଁ ଦାବି ଓ ପ୍ରଚେଷ୍ଟାର ମାନସିକତା ସଂପୂର୍ଣ୍ଣ ଅଲଗା । ଏହା ରସିକତାର ପର୍ଯ୍ୟାୟ ଭିତରେ ସଂକ୍ରମିତ ନୁହେଁ ।

ଜୁରିକ୍‌ର ମ୍ୟୁଜିୟମ୍ ରିଟ୍‌ବେର୍ଗ୍ ଗ୍ୟାଲେରୀରେ ଏକକ ଚିତ୍ର ପ୍ରଦର୍ଶନୀ 'ଗୀତା ଓ ତା'ର ଗାଁ'ର ଏକ ବିଦଗ୍ଧ ମୁହୂର୍ତ୍ତରେ ବନ୍ଧୁପତ୍ନୀ ବାର୍‌ବରା ଫିସର୍ ଓ କନ୍ୟା ଲତିକା ସହ, ୧୯୮୩

ଦିନନାଥ ପାଠୀ ଆମ ସମୟର ଜଣେ ସାଧନାନିଷ୍ଠ ଉତ୍ତୁଙ୍ଗ ସର୍ଜନଧର୍ମୀ ଶିଳ୍ପୀ ।

ଚିତ୍ରରୁ ସେ ଜୀବନ ଆରମ୍ଭ କରି ସଂଗଠନ, ଗବେଷଣା, କଳା ଇତିହାସ, କଳା ଓ ନୃତ୍ୟ ସମାଲୋଚନା, କବିତା, ଉପନ୍ୟାସ, ଭ୍ରମଣ କାହାଣୀ, ଗଳ୍ପ, ଜୀବନୀ, ଆତ୍ମଜୀବନୀ, ଅଧ୍ୟାପନା,

Digitized by srujanika@gmail.com

ଡିଜାଇନ୍, କ୍ୟୁରେଟିଙ୍ଗ୍, ଭିଜୁଏଲାଇଜେସନ୍, ହସ୍ତଶିଳ୍ପ, ଅନୁଷ୍ଠାନ ନିର୍ମାଣ ଓ ପ୍ରଶାସନ କ୍ଷେତ୍ରରେ ନିଜର ସ୍ୱାତନ୍ତ୍ର୍ୟ ଓ ଉତ୍କର୍ଷ ଦେଖାଇ ସାରିଛନ୍ତି । ତାଙ୍କର ସାଧନା ଏବେ ବି ଅବ୍ୟାହତ । ତାଙ୍କର ସମସ୍ତ ପ୍ରୟାସ ଓ ପ୍ରକାଶ ମଧ୍ୟରେ କଳା, ନାନ୍ଦନିକତା ଓ ଓଡ଼ିଆପଣ ଅତିମାତ୍ରାରେ ପରିସ୍ଫୁଟ । ଦେଶ ବିଦେଶରେ ସେ ଶତାଧିକ ଚିତ୍ର ପ୍ରଦର୍ଶନୀ, ଚିତ୍ରିତ ବକ୍ତୃତା, ଚିତ୍ର କର୍ମଶାଳା ଓ ବହି ପ୍ରକାଶନ ମାଧ୍ୟମରେ ଉତ୍କଳୀୟ ତଥା ଭାରତୀୟ କଳା-ସଂସ୍କୃତିର ବିକାଶ ଓ ବିସ୍ତାରରେ ସହାୟକ ହୋଇପାରିଛନ୍ତି । ତାଙ୍କର କଳାକୃତି ଜାତୀୟ ଓ ଅନ୍ତର୍ଜାତୀୟ ସଂଗ୍ରହାଳୟ ଓ ଚିତ୍ରବୀଥି ମାନଙ୍କରେ ପ୍ରଦର୍ଶୀତ ଓ ସଂରକ୍ଷିତ । ସେ ବହୁ କଳା-ପ୍ରକଳ୍ପରେ ବିଶ୍ୱସ୍ତରରେ ଭାରତର ପ୍ରତିନିଧିତ୍ୱ କରିଛନ୍ତି ଏବଂ ଜାତୀୟ ତଥା ଅନ୍ତର୍ଜାତୀୟ ସମ୍ମାନ ଓ ପୁରସ୍କାର ପାଇଛନ୍ତି । ଓଡ଼ିଆ, ହିନ୍ଦୀ, ଇଂରାଜୀ ଓ ଜର୍ମାନ୍ ଭାଷାରେ ତାଙ୍କର ଶତାଧିକ ଗ୍ରନ୍ଥ ପ୍ରକାଶିତ ହୋଇଛି ।

ବାଙ୍‌ମୟ ଚିତ୍ରପଟ ଅର୍ଦ୍ଧଶତାବ୍ଦୀ ଓଡ଼ିଶାର ଆଧୁନିକ ଓ ସାମ୍ପ୍ରତିକ ଚିତ୍ରକଳାର ଇତିହାସ । ବିଗତ ଶତାବ୍ଦୀର ପଚାଶ ଦଶକର ଶେଷାର୍ଦ୍ଧରେ ଖଲ୍ଲିକୋଟ ଚିତ୍ରକଳା ମହାବିଦ୍ୟାଳୟରେ ସଂଗଠିତ ହୋଇଥିବା ଆଧୁନିକ କଳା ଆନ୍ଦୋଳନର ତ୍ରିରତ୍ନ : ଶରତ ଚନ୍ଦ୍ର ଦେବ, ଅଜିତ କେଶରୀ ରାୟ ଓ ଅନନ୍ତ ପଣ୍ଡାଙ୍କ ସହିତ ଦିନନାଥ ଥିଲେ ଜଣେ ସମର୍ଥ ପଦାତିକ । ତାଙ୍କରି ପ୍ରୟାସ, ଆସ୍ପୃହା ଓ ପ୍ରତିବଦ୍ଧତା ଜୀବନ ଓ ସାଧନା କ୍ଷେତ୍ରରେ ତାଙ୍କୁ ସମସ୍ତ ସମ୍ଭାବନାର ଶୀର୍ଷରେ ପହଞ୍ଚାଇ ଦେଇପାରିଛି ବୋଲି ଆମର ହୃଦ୍‌ବୋଧ ହୋଇଛି । ଖଲ୍ଲିକୋଟରେ ଆଧୁନିକ କଳାର ଉନ୍ମେଷ, ଓଡ଼ିଶା ତଥା ଓଡ଼ିଶା ବାହାରେ ଆଧୁନିକ କଳାର ପ୍ରଶିକ୍ଷଣ, ପ୍ରଚାର, ପ୍ରସାର ପାଇଁ ଶିଳ୍ପୀସଂସଦ, ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଏସୋସିଏସନ୍, ଓଡ଼ିଶା କଲ୍‌ଚରାଲ୍ ଫୋରମ୍, ଓଡ଼ିଶା କ୍ରାଫଟ୍‌ସ୍ କାଉନ୍‌ସିଲ୍ ଓ 'ଚିତ୍ରମ୍' ଚିତ୍ରକଳା ବିଦ୍ୟାଳୟର ପ୍ରତିଷ୍ଠା ଏବଂ ଶେଷରେ ଭୁବନେଶ୍ୱରରେ ଆରମ୍ଭ କରାଯାଇଥିବା ନବ କଳାବିପ୍ଳବର ସାକ୍ଷରସରୂପ କଳା ମହାବିଦ୍ୟାଳୟର ପ୍ରତିଷ୍ଠା ଓ ସେଥିରେ ସଂଗଠିତ କରାଯାଇଥିବା ବିଭିନ୍ନ ପରୀକ୍ଷା ନିରୀକ୍ଷା ସାମ୍ପ୍ରତିକ ଚିତ୍ରକଳାର ବଳୟକୁ ନଭଶ୍ଚୁମ୍ବୀ କରିଦେଇପାରିଛି । କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚିବ ଭାବେ ଓଡ଼ିଶାର ସାମ୍ପ୍ରତିକ ଚିତ୍ରକଳାକୁ ଜାତୀୟ ସ୍ତରରେ ପ୍ରଜ୍ୱଳିତ କରି ଏବଂ ପ୍ରତିଷ୍ଠାର ସ୍ୱାଦ ଚାଖୁଥିବା ଆଜିର ବହୁ ଯୁବଚିତ୍ରକରଙ୍କ ସେ ଭଗୀରଥ ସାଜିଛନ୍ତି । ଦିଲ୍ଲୀ ବାହାଦୁରଲ୍‌ପୁର୍ ହାଉସ୍‌ର ତାଙ୍କ ସରକାରୀ ବାସଭବନ ବହୁ ଯୁବ ଓଡ଼ିଆ ଶିଳ୍ପୀଙ୍କ ଏକଦା ଆଶ୍ରୟସ୍ଥଳୀ ପାଲଟିଥିଲା । ଆମେ କହୁଥିଲୁ ପତିତ ପାବନ ମେସ୍ । ବେକାର, ଅସହାୟ ଓ ବୁଭୁକ୍ଷୁ ଓଡ଼ିଆ ଯୁବଶିଳ୍ପୀଙ୍କର ସେ ବାସ୍ତବରେ ଥିଲେ ତ୍ରାଣକର୍ତ୍ତା, ଏହା କହିବା ଅତିରଞ୍ଜନ ନୁହେଁ ।

୧୯୯୫ ମସିହାରେ ଦିଲ୍ଲୀ ରବୀନ୍ଦ୍ର ଭବନରେ ଡକ୍ଟର ପାଠୀଙ୍କ ନେତୃତ୍ୱରେ ଅନୁଷ୍ଠିତ Beyond the Shoresଚିତ୍ର ପ୍ରଦର୍ଶନୀ ବହୁ ଓଡ଼ିଆ ଯୁବ କଳାକାରଙ୍କୁ ଅସ୍ମିତା ଦେଇଛି ଓ ଆକାଶରେ ଉଡ଼ିବାର ଆତ୍ମପ୍ରତ୍ୟୟ ଆଣିଦେଇଛି । ଏହି ପ୍ରଦର୍ଶନୀର ଐତିହାସିକତା ଅଛି ଏବଂ ଏହାହିଁ ଦିଲ୍ଲୀରେ ଓଡ଼ିଆଶିଳ୍ପୀଙ୍କ ପ୍ରଥମ ବୃହତ୍ ମିଳିତ ଚିତ୍ର ପ୍ରଦର୍ଶନୀ ।

ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରଙ୍କ ଏହି ସୃଜନଯାତ୍ରା ଉଦାହରଣୀୟ ଏବଂ ଆମଭଳି ତାଙ୍କର ଅନେକ ଛାତ୍ରଛାତ୍ରୀ ଓ ସତୀର୍ଥଙ୍କ ପାଇଁ ଏକ ବିସ୍ମୟକର ବ୍ୟାପାର ମଧ୍ୟ । ଏହି ସୃଜନଯାତ୍ରାର ବିଶେଷତ୍ୱ ହେଲା ଯେ ଡକ୍ଟର ପାଠୀ ପ୍ରତି ଅବସ୍ଥାରେ, ଯାତ୍ରାର ପ୍ରତିଟି ବାଙ୍କରେ ଏହି ଯାତ୍ରାର ସାହସୀ ସଂଚାଳକ ଓ ପୃଷ୍ଠପୋଷକ ମଧ୍ୟ । ସେ କେନ୍ଦ୍ରୀୟ ବିଦ୍ୟାଳୟର ଚିତ୍ରଶିକ୍ଷକ ହୋଇଥାନ୍ତୁ କିମ୍ବା ପର୍ଯ୍ୟଟନ ବିଭାଗର ମଣ୍ଡଳାଧିକାରୀ ହୋଇଥାନ୍ତୁ, କଳା ତାଙ୍କର ସଦା ଧ୍ୟେୟ ହୋଇ ରହିଛି । ଯେମିତି କୁହାଯାଇଥାଏ, ''ଢିଙ୍କି ସର୍ଗକୁ ଗଲେ ମଧ୍ୟ ଧାନ କୁଟେ'' ସେମିତି ସେ ସରକାରୀ ଚାକିରିର ଗତାନୁଗତିକ ବ୍ୟବସ୍ଥାକୁ ପଛରେ ପକାଇ ସବୁବେଳେ ନୂତନତାର ସନ୍ଧାନରେ ବ୍ରତୀ ହୋଇଛନ୍ତି । ଭୁବନେଶ୍ୱରରେ କେନ୍ଦ୍ରୀୟ ବିଦ୍ୟାଳୟରେ ମହାତ୍ମା ଗାନ୍ଧିଙ୍କ ଜନ୍ମଶତବାର୍ଷିକୀ ପାଇଁ ସର୍ବଭାରତୀୟ ଗାନ୍ଧି ଚିତ୍ରପ୍ରଦର୍ଶନୀ ହେଉ ବା ଓଡ଼ିଶା ପରିଭ୍ରମଣରେ ଆସୁଥିବା ପର୍ଯ୍ୟଟକଙ୍କ ପାଇଁ **ଚିତ୍ରବୀଥି** ଓ **ଚିତ୍ରବାରମାସୀ**ର ପରିକଳ୍ପନା ହେଉ ବା ବିଭୂତି କାନୁନ୍‌ଗୋ ଚିତ୍ରକଳା ମହାବିଦ୍ୟାଳୟରେ କଳା ଓ ନାନ୍ଦନିକତାର ପତ୍ରିକା **ଚିତ୍ର** ବା ସୃଜନ ମିଳନର ବେଳା **ଚିତ୍ରମେଳା** ହେଉ, ସବୁଥିଲେ ଡକ୍ଟର ପାଠୀଙ୍କର ସତନ୍ତ୍ର କଳାତ୍ମକ ରୁଚିର

Digitized by srujanika@gmail.com

ସାକ୍ଷର ବାରି ହୋଇପଡ଼େ। ଏଥିପାଇଁ ସେ ଅନେକ ସମାଲୋଚନାର ଶରବ୍ୟ ମଧ ହୋଇଛନ୍ତି। ଚିତ୍ରବାରମାସୀ କଳା ପ୍ରଦର୍ଶନୀର ନବୀନ ଓ ସଫଳ ପରିକଳ୍ପନାରେ ଅସୂୟାପରବଶ ହୋଇ ତତ୍‌କାଳୀନ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଚିବ ତାଙ୍କୁ ତାଚ୍ଛଲ୍ୟ କରି କହିଥିଲେ,''ପର୍ଯ୍ୟଟନ ନିଗମ ଚିତ୍ର ପ୍ରଦର୍ଶନୀ କରିବା କ'ଣ ଯଥାର୍ଥ, ଏହା ଲଳିତ କଳା ଏକାଡ଼େମୀର ଏକଚାଟିଆ ଅଧିକାର" (ଆଗରୁ ସାହିତ୍ୟ ଏକାଡ଼େମୀର ସଚିବଙ୍କ ଦାୟିତ୍ୱରେ ଲଳିତ କଳା ଏକାଡ଼େମୀର ପରିଚାଳନା ମଧ ଅନ୍ତର୍ଭୁକ୍ତ ଥିଲା)। ଡକ୍ଟର ପାଠୀ କଥା ପ୍ରସଙ୍ଗରେ ଏହି ହାସ୍ୟାସ୍ପଦ ମନ୍ତବ୍ୟକୁ ଆମ ଆଗରେ ଅନେକ ଥର ଦୋହରାଇଛନ୍ତି। ମନେହୁଏ ପ୍ରତିକୂଳ ପରିସ୍ଥିତିରେ କାମ କରିବା ତାଙ୍କର ନିୟତି। ଏହି ଅବସରରେ ଆଉ ଗୋଟିଏ ଦୁଇଟି ବିଷୟର ଉପସ୍ଥାପନା ପ୍ରାସଙ୍ଗିକ ମନେହୁଏ। କଳା ମହାବିଦ୍ୟାଳୟରେ ଅଧକ୍ଷ ହୋଇ ଯୋଗଦେବା ବେଳକୁ କଲେଜର କନ୍‌ଟିନ୍‌ଜେନ୍‌ସି ଖର୍ଚ୍ଚ ଥିଲା ମାତ୍ର ଆଠ ହଜାର ଟଙ୍କା। ଏଣୁ ସରକାରଙ୍କ ଠାରୁ ବିଭିନ୍ନ କାମ ଆଣି କଲେଜକୁ ଚଳଚଂଚଳ କରି ରଖିବାକୁ ହେଉଥିଲା। ପାଠକବନ୍ଧୁମାନେ ହୁଏତ ବିଶ୍ୱାସ କରିବେନି ଯେ ଅର୍ଥାଭାବରୁ କେନ୍ଦ୍ର ଲଳିତ କଳା ଏକାଡ଼େମୀ ନିଜର ଆନୁଆଲ୍ ରିପୋର୍ଟ୍ ଜେରକ୍ସ କରି ପ୍ରକାଶ କରୁଥିଲା। ତାଙ୍କ ପ୍ରଚେଷ୍ଟାରେ ଲଳିତ କଳା ଏକାଡ଼େମୀର 'କନ୍‌ଟେମ୍ପୋରାରି' ପତ୍ରିକା ଇମ୍‌ପୋର୍‌ଟେଡ୍ ଆର୍ଟ୍ ପେପର୍‌ରେ ରଙ୍ଗିନ ଛପା ହୋଇପାରିଲା ଜାପାନ ଫାଉଣ୍ଡେସନ୍ ଓ ମ୍ୟାକ୍‌ସ୍ ମ୍ୟୁଲର୍ ଭବନର ଆର୍ଥିକ ସହାୟତାରେ । ସେଭଳି ଓଡ଼ିଶା ଲଳିତ କଳା ଏକାଡ଼େମୀର ମାତ୍ର ତିନି ହଜାର ଟଙ୍କାର ଖର୍ଚ୍ଚ ପାଇଁ ଅଭାବନୀୟ ପରିସ୍ଥିତିରେ ଫିକ୍‌ସ୍‌ଡ୍ ଡିପୋଜିଟ୍ ଭାଙ୍ଗିବାକୁ ପଡ଼ିଥିଲା ତାଙ୍କ ସଭାପତିତ୍ୱ କାଳରେ। ପୁଣି ତାଙ୍କରି ସଭାପତିତ୍ୱ କାଳରେ ଡକ୍ଟର ପାଠୀ ଏକାଡ଼େମୀ ସଂପର୍କରେ ରଙ୍ଗିନ ସୂଚନା ପତ୍ରିକା ନିଜ ଅର୍ଥ ବିନିଯୋଗରେ ଦିଲ୍ଲୀର ଥମ୍‌ସନ୍ ପ୍ରେସ୍‌ରେ ଛପାଇ ଆଣିଥିଲେ। ଏହି ତଥ୍ୟଗୁଡ଼ିକ ହୁଏତ କାହାଣୀ ଭଳି ମନେହେଇପାରେ। କିନ୍ତୁ ବହୁ ଘଟଣା ମଧ୍ୟରୁ ଏଠାରେ ମାତ୍ର କେତୋଟିର ଅବତାରଣା।

ଏହି ପୁସ୍ତକରେ ସନ୍ନିବେଶିତ କେତେକ ଲେଖା ତିରିଶ ଚାଳିଶି ବର୍ଷର ପୁରୁଣା। ଏଗୁଡ଼ିକ ଓଡ଼ିଶାରେ କଳା ସମୀକ୍ଷାର ପ୍ରଥମ ଉନ୍ମେଷ ବୋଲି ଏଠାରେ ସ୍ଥାନିତ କରାଯାଇଛି। ବିଗତ ଶତାବ୍ଦୀର ଷାଠିଏ ଦଶକରେ ଓଡ଼ିଶାରେ କଳା ସମାଲୋଚନା ସ୍ୱପ୍ନ ଥିଲା । ନିଜ ଛବି ସଂପର୍କରେ କଳା ସମାଲୋଚନା ଲେଖାଇବା ପାଇଁ ସେ ସାଇକେଲ ରିକ୍ସାରେ ଛବି ଲଦି ଭାଗରଥୀ ନେପାକ, ବିଶ୍ୱଜିତ ଦାସ ଓ ବିଜୟ ମିଶ୍ରଙ୍କ ଦ୍ୱାରସ୍ଥ ହୋଇଛନ୍ତି। ଅବଶ୍ୟ ପରବର୍ତ୍ତୀ କାଳରେ ଭାଗିରଥୀ ନେପାକ ଓ ବିଜୟ ମିଶ୍ର ଡକ୍ଟର ପାଠୀଙ୍କ ଚିତ୍ରର ଦୁଇଟି ସମୀକ୍ଷା ଲେଖିଛନ୍ତି ଯାହା ଆମେ ଏହି ସଂକଳନରେ ଅନ୍ତର୍ଭୁକ୍ତ କରିଛୁ। ମନେହୁଏ ଓଡ଼ିଶାରେ କଳା ଇତିହାସର ଏହା ଅୟମାରମ୍ଭ। ଅନ୍ୟ ଲେଖାଗୁଡ଼ିକ ଦଶ ବର୍ଷ ଆଗରୁ ବିଭିନ୍ନ ସମୟରେ ସଂଗୃହୀତ। ଏଥିରୁ ଦୁଇଟି ଲେଖା ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ସମ୍ପାଦିତ ଓ ଇସ୍ତାହାର ପ୍ରକାଶନୀ ଦ୍ୱାରା ପ୍ରକାଶିତ ଦିନନାଥଙ୍କ ଉପନ୍ୟାସ ସମଗ୍ରର ଆଲୋଚନା ଗ୍ରନ୍ଥ 'କାରୁଣ୍ୟର କାରୁଶିଳ୍ପ' (୨୦୦୭)ରେ ସ୍ଥାନ ପାଇଛି । ଏଠାରେ ସେ ସମସ୍ତ ଲେଖାର ପ୍ରାପ୍ତି ସ୍ୱୀକାର କରୁଛୁ ଓ ଲେଖକଙ୍କ ପାଖରେ କୃତଜ୍ଞତା ପ୍ରକାଶ କରୁଛୁ। ଆମର ଲେଖକ ବନ୍ଧୁ ଓ ବରିଷ୍ଠମାନଙ୍କ ମଧ୍ୟରୁ ପ୍ରଫେସର ଭବେଶ ଚନ୍ଦ୍ର ସାନ୍ୟାଲ, ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ, ଚନ୍ଦ୍ରଶେଖର ରାଓ, ଭାଗୀରଥି ନେପାକ, ଡକ୍ଟର ଅଜିତ ଦାସ, ନରସିଂହ ନନ୍ଦ ଓ ଅଧ୍ୟାପକ ଶିବରାମ ପାତ୍ର ଦିବଂଗତ । ସେମାନଙ୍କ ଲେଖାରେ ଏ ଗ୍ରନ୍ଥ ସମୃଦ୍ଧ। ସେମାନଙ୍କ ସ୍ମୃତି ପ୍ରତି ଆମେ ଶ୍ରଦ୍ଧା ନିବେଦନ କରୁଛୁ ।

ଓଡ଼ିଶାରେ ସମାଲୋଚନା ସାହିତ୍ୟର ଭୂମିକା ସେତେ ବଳିଷ୍ଠ ନୁହେଁ। ତଥାପି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯାହା ସମ୍ଭବ ହୋଇପାରିଛି ତାହା ତୁଳନାରେ ଚିତ୍ରକଳା ଦିଗଟି ସମ୍ପୂର୍ଣ୍ଣ ଅବହେଳିତ ମନେହୁଏ। କବି ଓ ସାହିତ୍ୟିକମାନେ ତାଙ୍କ ସମୟର ଜଣେ ଚିତ୍ରଶିଳ୍ପୀଙ୍କ ଚିତ୍ର ସମ୍ପର୍କରେ ନିଜ ଲେଖା ମାଧ୍ୟମରେ ଆଲୋଚନା କରିବା ପ୍ରାୟ ଦେଖାଯାଏ ନାହିଁ। ଅବଶ୍ୟ କବି ଓ ସାହିତ୍ୟିକ ମାନେ ମଧ ଏକାଭଳି ଅଭିଯୋଗ ବାଢ଼ିବେ ଯେ ଅଧିକାଂଶ ଚିତ୍ରଶିଳ୍ପୀ ସମସାମୟିକ ସାହିତ୍ୟର ଧାର ଧାରନ୍ତି ନାହିଁ। ଅସଲ କଥା ହେଲା ଓଡ଼ିଶାରେ ସୃଜନର ବିଭିନ୍ନ ବିଭାଗ ମଧ୍ୟରେ ଆଦାନ ପ୍ରଦାନ ନାହିଁ। ପ୍ରାୟ

Digitized by srujanika@gmail.com

ଅଧିକାଂଶ ନିଜ ନିଜ ସିଂହାସନରେ ଜାଜ୍ୱଲ୍ୟମାନ ବା ନିଜନିଜ ଦୁର୍ଗ ମଧ୍ୟରେ ଆବଦ୍ଧ । ଏଣୁ ଅନ୍ୟ କାହା ସଂପର୍କରେ ଜାଣିବା ଆବଶ୍ୟକ ମନେ କରନ୍ତିନାହିଁ।

ଚିତ୍ର, ସାହିତ୍ୟ ଓ ସଙ୍ଗୀତର ସମନ୍ୱିତ ପରମ୍ପରା ଓଡ଼ିଶାରେ ଏ ଅବଧି ଆରମ୍ଭ ହୋଇପାରି ନଥିବା ଅତ୍ୟନ୍ତ ଦୁଃଖ ଓ କ୍ଷୋଭର ବିଷୟ । ମନେହୁଏ ସମନ୍ୱୟର ବନ୍ଧ ବାନ୍ଧିବା ପାଇଁ ଡକ୍ଟର ପାଠୀ ଚିତ୍ର, ସଂଗୀତ (ନୃତ୍ୟ) ଓ ସାହିତ୍ୟରେ ଅତ୍ୟନ୍ତ ସକ୍ରିୟ । ତାଙ୍କ ପାଇଁ କଳା ଓ ସାହିତ୍ୟ ଗୋଟିଏ ସୃଜନ-ଉତ୍ସର ବିମଳ ପ୍ରକାଶ । ଚିତ୍ରକଳା ଏକ ସାର୍ବଜନୀନ ଭାଷା ହୋଇଥିଲେ ମଧ ଏବଂ ଏହାର ସମ୍ବେଦନା ସାହିତ୍ୟ ଅପେକ୍ଷା କୌଣସି ଗୁଣରେ ନ୍ୟୂନ ନ ହେଉଥିଲେ ମଧ, କଳା ସମାଲୋଚନା ମୂଳତଃ ଭାଷାଶ୍ରୟୀ ଓ ସାହିତ୍ୟାଶ୍ରୟୀ ହୋଇପଡୁଥିବାରୁ କଳା ଅପେକ୍ଷା ସାହିତ୍ୟର ବୌଦ୍ଧିକ ଉପାଦେୟତା ସାମ୍ପ୍ରତିକ ଓଡ଼ିଶାରେ ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

ଆମେ ଆଶା କରିବା ସ୍ୱାଭାବିକ ଯେ ଜଣେ ଚିତ୍ରକରଙ୍କ କୃତି ଓ ବ୍ୟକ୍ତିତ୍ୱର ଆକଳନକୁ ଓଡ଼ିଆ ପାଠକଙ୍କ ନିକଟରେ ପହଞ୍ଚାଇବାରେ ଆମର ଯତ୍ ସାମାନ୍ୟ ପ୍ରଚେଷ୍ଟା ଫଳବତୀ ହେବ ।

ଦିଲ୍ଲୀପ କୁମାର ତ୍ରିପାଠୀ

ସୌଭାଗ୍ୟ ପାଠୀ

୧୩ ମଇ ୨୦୧୨, ଭୁବନେଶ୍ୱର

ମୁଲକ୍ ରାଜ୍ ଆନନ୍ଦ ଓ ସରୟୁ ଦୋଶୀ ଦେଇଥିବା ଚିଠିର ଅବିକଳ ନକଲ ।



3.2.2001

Dear Shri Pradosh Kumar Mishra

In response to your note of 1.1.2001 I put down abrief note about the achievements of Dr. Dinanath Pathy in rediscovery of the creative arts, of the area in which the great temple of Konarak was achieved and from which went the impulses to Combodia, Indonesi and Bali during the medieval period.

I hope the new young will appreciate Dr. Pathy's pioneer works.

Kind regards,

Sincerely

Mulk Raj Anand

Shri Pradosh Kumar Mishra
10; Shivpuri Colony
Benares Hindu University
VARANASI 22■005

MULK RAJ ANAND
25 CUFFE PARADE, BOMBAY-400 005
TEL 2181371



भारत सरकार — Government of India

राष्ट्रीय आधुनिक कला संग्रहालय, मुंबई
सर कॉवासजी जहाँगीर पब्लिक हाल
NATIONAL GALLERY OF MODERN ART, MUMBAI
SIR COWASJI JEHANGIR PUBLIC HALL

DIR/NGMA/MAR 2001/ 364 — 12th March, 2001

Shri Pradosh Kumar Mishra
Lecturer in History of Art
# 10, Shivpuri Colony
Banaras Hindu University
Varanasi 221 005

Shri Pradosh-ji,

Thank you for your letter of March 1, 2001 inviting me to contribute to the felicitation volume to mark the 60th birth anniversary of Dr Dinanath Pathy in February 2002.

First and foremost, let me congratulate you for bringing out a volume of felicitation for Dr. Dinanath Pathy – an acclaimed scholar and painter. The art world of India must celebrate the contributions of a figure of his stature in the Indian art scene.

It would have been a pleasure for me to be included in this volume, but unfortunately, I am preparing a lecture I have to give at the Victoria & Albert Museum in London in the first week of April. From London I will be proceeding to Paris. Hence, I expect to return to India before the end of April. It is, thus, not possible for me to send a write-up to you before end of April 2001. I hope you will understand my predicament.

With best wishes.

Yours sincerely

Dr. Saryu V. Doshi
Hon. Director

महात्मा गांधी रोड, फोर्ट, मुंबई-4000[illegible] Mahatma Gandhi Road, Fort, Mumbai-4000[illegible]
दूरभाष [illegible] Telephone : [illegible]

Digitized by srujanika@gmail.com




## ORGANISATION

P.V. Narasimha Rao Kabinettsminister för mänsklig utveckling

Krishna Sahi. Kultur och undervisningsminister

M. Varadarajan. statssekreterare för Kulturfrågor

D. Aurora. generaldirektör för Festival of India

Lalit Mansingh generaldirektör för Indian Council for Cultural Relations

M. Pinto. Styrelseordförande och VD för Handicraft and Handloom Export Corpn.

Urmil Gupta. VD för Directorate of Film festivals

Panna Bharat Ram. projectledare för "MELA"
Purnendu Pal Babu. designer för "MELA"

Dinanath Pathy. designer för utställning av folklig konst

Manu parekh. ansvarig för utställning av unga indiska malare

Martand Singh. ansvarig för textil utställning

Gautam Vaghela. designer för textil utställning

Ashok Vajpeyi. ansvarig för litteraturprogrammen

Jyotindra Jain. överdirektör for Crafts Museum. New Delhi

Benoy Sarkar designer för utställningar stamfolkens hantverk

Sadashiv Gorakshkar. direktör för Prince of Wales Museum. Bombay

R.S. Jolly VD för ITDC (Indian Tourism Dev. Corpn.)

B.M. Oza. Indiens ambassadör i Sverige

R. Banerji. Förste ambassadsekreterare indisk ambassaden i Sverige

**Hederskommitté**

Bengt Göransson. Kulturminister

Anders Clason Direktör Svenska institutet
Göran Löfdahl. Direktör. Statens kulturråd
Carl Tham. Generaldirektör. SIDA

**Arbetsutskott**

Arild Berglöf projektledare. Svenska institutet
Lena Göransson. projektassistent. Svenska institutet
Ashish Khokar samordnare (placerad i Indien)
Rolf Theorin. samordnare

Bo Kärre. S I D A
Jan Nordlander. Svenska institutet
Gudrun Wikström. Statens Kulturråd

**Projektansvariga**

Kungsträdgarden MELA
Michael Meschke
Soji Kawakita

Musikmuseet Indien gatans musik
Krister Malm

Dansmuseet Klassisk indisk dans
Bengt & Lilavati Häger

# FOLKLIG KONST

KULTURHUSET • STOCKHOLM
29 AUGUSTI – 15 NOVEMBER 1987

ପ୍ରାକ୍ତନ ସୋଭିଏତ୍ ସଂଘ ଓ ସୁଇଡ଼େନ୍‌ରେ ଅନୁଷ୍ଠିତ ଭାରତ ଉତ୍ସବରେ ଭାରତୀୟ ଲୋକପ୍ରିୟ କଳା Folklig Konst ପ୍ରଦର୍ଶନୀର ଡିଜାଇନର, କ୍ୟୁରେଟର୍ ଓ କମିଶନର୍ ଭାବେ ଦିନନାଥ ପାଠୀ ଭାରତ ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲେ । କେନ୍ଦ୍ରମନ୍ତ୍ରୀ ନରସିଂହ ରାଓ, କୃଷ୍ଣା ସାହି, ସଂସ୍କୃତି ସଚିବ ଏମ୍. ବରଦରାଜନ୍, ଆଇ.ସି.ସି.ଆର୍ ଡାଇରେକ୍ଟର୍ ଜେନେରାଲ୍ ଲଳିତ ମାନସିଂହ, ମାର୍ତ୍ତଣ୍ଡ ସିଂହ, ଅଶୋକ ବାଜପେୟୀ, ଜ୍ୟୋତିନ୍ଦ୍ର ଜୈନଙ୍କ ସମେତ ଭାରତର ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କ ଗହଣରେ ଡକ୍ଟର ପାଠୀ ଭାରତ ଉତ୍ସବ ପରିଚାଳନା କମିଟିର ଅନ୍ୟତମ ସଭ୍ୟ ଥିଲେ ।




Digitized by srujanika@gmail.com



ଗୋସ୍ୱାମୀ-ଫିସର ଗବେଷଣା ପରମ୍ପରାରେ ଉଦ୍‌ବୁଦ୍ଧ ଭାରତର ଦିଗ୍‌ଗଜ କଳା ଐତିହାସିକଗଣ
(ବାମରୁ) ପ୍ରଫେସର ବ୍ରଜେନ୍ଦ୍ର ନାଥ ଗୋସ୍ୱାମୀ, ଅମିତ ଦତ୍ତ, ହାକୁ ଶାହା, ଡକ୍ଟର ଏବର୍‌ହାର୍ଡ୍ ଫିସର୍, ବାଲାନ୍ ନାମ୍ବିଆର,
ଡକ୍ଟର ଦିନନାଥ ପାଠୀ ଓ ପ୍ରଫେସର ଜ୍ୟୋତିନ୍ଦ୍ର ଜୈନ, ୨୦୧୨

Digitized by srujanika@gmail.com



ବରଫ ଆଚ୍ଛାଦିତ ଜୁରିକ୍‌ର ରିଟ୍‌ବର୍ଗ୍ ପାର୍କ୍‌ରେ ଏବର୍‌ହାର୍ଡ୍ ଫିସର୍‌ଙ୍କ ସହ, ୨୦୦୮

Digitized by srujanika@gmail.com

In the field of contemporary art in a post-modernist scenario, teacher-student relationship changes into a partnership with a faith in a shared milieu and with commitment to international cultural understanding. As partners of a global culture we value our mutuality in the context of a regional art tradition and draw our sustenance from the same old cultural resources.

Dinanath Pathy, 1998
(In' 98 China Exposition, Beijing)

ଉତ୍ତର-ଆଧୁନିକ ପ୍ରେକ୍ଷାପଟରେ ସାଂପ୍ରତିକ କଳାର ପରିପ୍ରେକ୍ଷୀରେ ଗୁରୁ-ଶିଷ୍ୟ ପରମ୍ପରା ଆନ୍ତର୍ଜାତିକ ସାଂସ୍କୃତିକ ଅବବୋଧର ପ୍ରତିବଦ୍ଧତା ପାଇଁ ସହଯୋଗ ଓ ସହାନୁବନ୍ଧନର ବିଶ୍ୱସନୀୟତାରେ ପରିଣତ ହୋଇଯାଏ। ବିଶ୍ୱସଂସ୍କୃତିର ଅଂଶୀଦାର ଭାବେ ଆମେ ଏକ ଆଞ୍ଚଳିକ କଳା ପରମ୍ପରାର ସନ୍ଦର୍ଭକୁ ଗୁରୁତ୍ୱ ଦେଇ ଓ ସେହି ପୁରାତନ ସାଂସ୍କୃତିକ ସଂପଦରୁ ଆମର ଆଧାର ସଂଗ୍ରହ କରିଥାଉ।

ଦିନନାଥ ପାଠୀ, ୧୯୯୮
('୯୮ ଚୀନ୍ ବିଶ୍ୱକଳା ପ୍ରଦର୍ଶନୀ, ବେଇଜିଙ୍ଗ୍)



Digitized by srujanika@gmail.com

# ସୂଚୀପତ୍ର

**ଶୁଭାଶୟ**



**ଚିତ୍ରରେ ଚିତ୍ରରେ ୩୭-୫୦**



**ଚିତ୍ରବୀଥି : ପ୍ରଥମ ଚିତ୍ର କୋଠରୀ ୫୩-୬୦**



Digitized by srujanika@gmail.com

**କବିତା**



Digitized by srujanika@gmail.com

**ସମ୍ପର୍କର ବଳୟ**



**ଚିତ୍ରକଳା**



Digitized by srujanika@gmail.com

**ଚିତ୍ର ପ୍ରଦର୍ଶନୀ**



**ଚିତ୍ରବୀଥି : ଦ୍ୱିତୀୟ ଚିତ୍ର କୋଠରୀ ୨୦୧-୨୦୮**



**କଳା ଶିକ୍ଷା**



Digitized by srujanika@gmail.com

**ଗବେଷଣା**



**ଭାଷା ଚିତ୍ରଭାଷା**



**ଚିତ୍ରବୀଥି : ତୃତୀୟ ଚିତ୍ର କୋଠରୀ ୩୭୩-୩୮୦**



Digitized by srujanika@gmail.com

**ସାହିତ୍ୟ**



Digitized by srujanika@gmail.com

**ସଂଗଠନ**

୧. ଭଗବାନ ପଣ୍ଡା : ସଫଳ ସଂଗଠକ ବନ୍ଧୁ ଦିନନାଥ **୫୦୩**

୨. ପ୍ରବୀର କୁମାର ଦଳାଇ : ବାଃ ବାଃ ରେ ଓ୍ୱା **୫୦୭**

୩. ବାଳମୁକୁନ୍ଦ ନାୟକ : ସେଣ୍ଟ୍ରାଲ୍ ସ୍କୁଲର ଡ୍ରଇଁମାଷ୍ଟ୍ରେ **୫୧୪**

୪. ଅଶୋକ ମହାନ୍ତି : ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରରୁ ତ୍ରିବେଣୀ ସଂଗମରେ ସାଧନାରତ ଭବଘୂରା ଭବନାଥ ପର୍ଯ୍ୟନ୍ତ **୫୧୭**

୫. ଦିନନାଥ ପାଠୀ : ସୁଇଜରଲାଣ୍ଡରେ ଭାରତୀୟ କଳା **୫୧୮**

**ଚିତ୍ରବୀଥି : ଚତୁର୍ଥ ଚିତ୍ର କୋଠରୀ ୫୨୧-୫୨୮**

୧. ଗୀତଗୋବିନ୍ଦ, ତୈଳଚିତ୍ର, ୨୪୦x୧୮୦ ସେ.ମି., ୧୯୯୫

୨. ରି ଥିଙ୍କିଙ୍ଗ୍ ଓଡ଼ିଶୀ, ଆକ୍ରିଲିକ୍, ୨୩୨x୧୭୨ ସେ.ମି., ୨୦୦୮

୩. ହୋମେଜ୍ ଟୁ ଚନ୍ଦ୍ରଲେଖା, ଆକ୍ରିଲିକ୍, ୧୬୫x୧୫୩ ସେ.ମି., ୨୦୦୭

୪. ଯୌନଉତ୍ତରଣ, ଆକ୍ରିଲିକ୍, ୧୬୫x୧୩୫ ସେ.ମି., ୨୦୦୭

୫. ପର୍ବତପରୀ ଓ କାବ୍ୟଧେନୁ, ତୈଳଚିତ୍ର, ୧୬୮x୧୫୩ ସେ.ମି., ୧୯୬୫

୬. ମାହାରୀକନ୍ୟା, ଆକ୍ରିଲିକ୍, ୯୨x୯୨ ସେ.ମି., ୨୦୦୭

୭. ଭିଣ୍ଟେଜ୍ ଓଡ଼ିଶୀ, ଆକ୍ରିଲିକ୍, ୧୬୫x୧୫୩ ସେ.ମି., ୧୯୯୮

୭. ପଦ୍ମପୋଖରୀର ଦୁଇଧାରେ, ତୈଳଚିତ୍ର, ୯୦x୯୫ ସେ.ମି., ୧୯୯୭

୮. ସ୍ନାନରତା, ତୈଳଚିତ୍ର, ୧୨୦x୯୦ ସେ.ମି., ୧୯୯୬

**ଅନ୍ତରଙ୍ଗ ଆଳାପ**

୧. ବିଜୟାନନ୍ଦ ସିଂହ ସାହିତ୍ୟ ଓ ଚିତ୍ରକୁ ମୁଁ ସମଭାବରେ ସମ୍ମାନ ଦିଏ ଓ ବ୍ୟବହାର କରେ **୫୨୯**

୨. ସଞ୍ଜୟ ଭଟ୍ଟ ବର୍ଣ୍ଣବିଭୋର ଡ୍ରଇଁ ମାଷ୍ଟ୍ରେ **୫୪୩**

**ଚିତ୍ରବୀଥି : ପଞ୍ଚମ ଚିତ୍ର କୋଠରୀ ୫୬୧-୫୬୮**

୧. ଶୀର୍ଷ ଓ ପ୍ରବାହ, ମିଶ୍ରମାଧ୍ୟମ, ୯୦x୯୦ ସେ.ମି., ୨୦୦୧

୨. ମୁକ୍ତିର ପଥ, ମିଶ୍ରମାଧ୍ୟମ, ୯୦x୯୦ ସେ.ମି., ୨୦୦୧

୩. ଘଟାକାଶ, ତୈଳଚିତ୍ର, ୬୦x୬୦ ସେ.ମି., ୨୦୦୦

୪. ଚିରନ୍ତନ ପ୍ରେମ, ତୈଳଚିତ୍ର, ୧୭୫x୧୨୦ ସେ.ମି., ୧୯୯୬

୫. ପାର୍କ୍‌ରେ କାର୍ ସହ ପ୍ରେମିକ ପ୍ରେମିକା, ତୈଳଚିତ୍ର, ୧୦୭x୯୦ ସେ.ମି.

Digitized by srujanika@gmail.com

୬. ପାର୍କ୍‌ରେ କାର୍ ପାଖରେ ପ୍ରେମିକ ପ୍ରେମିକା, ତୈଳଚିତ୍ର, ୧୦୭x୯୨ ସେ.ମି.,

୭. ପ୍ରତୀକ୍ଷା, ତୈଳଚିତ୍ର, ୯୦x୯୦ ସେ.ମି., ୧୯୯୫

୮. ସ୍ନାନରତ ପ୍ରେମିକ ପ୍ରେମିକା, ତୈଳଚିତ୍ର, ୧୬୦x୯୦ ସେ.ମି., ୧୯୯୭

**ଜୀବନ ଓ କୃତି**



Digitized by srujanika@gmail.com

tefla's

THINK ODISHA

Think Odisha Leadership Awards 2011

27th August,2011
Swosti Premium,Bhubaneswar

tefla's

## Awardees - the Pride of Odisha

Prof JP Das

THINK ODISHA LIFE TIME ACHIEVEMENT AWARD 2011

Raghunath Panigrahi

THINK ODISHA LEGEND 2011 | ART & CULTURE | BUSINESS LEADER

EDUCATIONAL INSTITUTE OF EXCELLENCE | EDUCATIONIST | ENTERTAINMENT

ENVIRONMENTALIST | GOVERNMENT SOCIETY INTERFACE | LITERATURE | SOCIAL ACTIVIST

SPORTS | SOCIAL ORGANIZATION

NALCO | TATA STEEL | vedanta | MONNET

କଳା ଓ ସଂସ୍କୃତି କ୍ଷେତ୍ରରେ ଉତ୍କର୍ଷ ପାଇଁ Times of India ଓ Tefla's ପକ୍ଷରୁ ଦିନନାଥ ପାଠୀ ୨୦୧୧ ମସିହାର Think Odhisha Leadership Award ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଠାରୁ ଗ୍ରହଣ କରୁଛନ୍ତି । ପୁରସ୍କୃତ ହୋଇଥିବା ଅନ୍ୟ ବିଶିଷ୍ଟ ବ୍ୟକ୍ତିମାନେ ହେଲେ ହୃଦ୍‌ରୋଗ ବିଶେଷଜ୍ଞ ଡାକ୍ତର ଜେ.ପି. ଦାସ, କଣ୍ଠଶିଳ୍ପୀ ରଘୁନାଥ ପାଣିଗ୍ରାହୀ, ନୃତତ୍ତ୍ୱବିତ୍ ଲକ୍ଷ୍ମଣ କୁମାର ମହାପାତ୍ର, ସାହିତ୍ୟିକ ଶାନ୍ତନୁ କୁମାର ଆଚାର୍ଯ୍ୟ, ସଙ୍ଗୀତଜ୍ଞ ଶାନ୍ତନୁ କୁମାର ମହାପାତ୍ର, ଅଭିନେତ୍ରୀ ତନ୍ଦ୍ରା ରାୟ ଇତ୍ୟାଦି ।




Digitized by srujanika@gmail.com

P3
. . . not just Page 3
PEACE PROGRESS PROSPERITY
OCT 2011
Anniversary Edition
₹ 30
saluting the
Gems of Odisha
POLITICS
over names!!!
the sweet
ODISHA
INDIA's
WORLD CUP
win woes
SOUTH
INDIAN
CINEMA
the source of inspiration
per day
Rs. 32
the beautiful
KASHMIR
FASHION | INTERVIEW | ECONOMICS | AUTOMOBILES | WOMEN | CAREE

P3 ବା Page 3 ଇଂଲିଶ ପତ୍ରିକା ତା'ର ପ୍ରଥମ ସ୍ୱନକ୍ଷତ୍ର ଉତ୍ସବରେ ଓଡ଼ିଶାର ସାତଜଣ ପ୍ରତିଭାସଂପନ୍ନ ବ୍ୟକ୍ତିଙ୍କୁ ସମ୍ବର୍ଦ୍ଧିତ କରିଥିଲା । ସେମାନଙ୍କ ମଧ୍ୟରେ ଥିଲେ ଚିତ୍ରଶିଳ୍ପୀ ଦିନନାଥ ପାଠୀ, କଣ୍ଠଶିଳ୍ପୀ ପ୍ରଫୁଲ୍ଲ କର, କବି ଜୟନ୍ତ ମହାପାତ୍ର, ରାଜନେତା ବିବୁଧେନ୍ଦ୍ର ମିଶ୍ର, ନୃତ୍ୟାଙ୍ଗନା କୁଙ୍କୁମ ମହାନ୍ତି, ଅଭିନେତ୍ରୀ ପାର୍ବତୀ ଘୋଷ ଓ ହକି ତାରକା ଦିଲ୍ଲୀପ ତିର୍କୀ ।

Digitized by srujanika@gmail.com




ନିଜ ଅନ୍ତରଙ୍ଗ ବନ୍ଧୁ ଡକ୍ଟର ଫିସର୍‌ଙ୍କ ସପ୍ତତିତମ ଜନ୍ମ ଦିନର ଉପହାର ପାଇଁ ଡକ୍ଟର ପାଠୀଙ୍କ ଦ୍ୱାରା ଲିଖିତ ଓଭିଗା ବହିଟି ପଢ଼ି ମୋ ମନରେ ଭାବାନ୍ତର ସୃଷ୍ଟି ହେଲା । କବିତା କଳାର ଗୁଞ୍ଜନ ଓ କଳା କବିତାର ସ୍ୱରୂପ ବନିଗଲା । ଏ ବହିରେ ପ୍ରକାଶିତ କେତେକ ଚିତ୍ର ମୋତେ ଅଦ୍ଭୁତ ଭାବେ ସମ୍ମୋହିତ କଲା । ମୋ ପାଖରେ ଅଲୋଡ଼ା ହୋଇ ପଡ଼ିରହିଥିବା ଚିତ୍ରିତ କାଠ କଣ୍ଢେଇଟି ହଠାତ୍ ଅର୍ଥପୂର୍ଣ୍ଣ ମନେହେଲା, ଉପରୋକ୍ତ ଚିତ୍ରଟି ଏ ସବୁ ଭାବର ପ୍ରକାଶ ।

ପ୍ରଫୁଲ୍ଲ ଦାଶ

Digitized by srujanika@gmail.com



ଭାରତର ରାଷ୍ଟ୍ରପତିଙ୍କ ଠାରୁ ପଦ୍ମଶ୍ରୀ ଉପାଧି ଗ୍ରହଣ ପରେ ଡ଼କ୍ଟର ଏବରହାର୍ଡ଼୍ ଫିସରଙ୍କୁ ସମ୍ବର୍ଦ୍ଧନା

ଚନ୍ଦ୍ରିକା ଗ୍ରୋଭର, ରସନା ଇମ୍‌ହାସ୍‌ଲି, କରୁଣା ଗୋସ୍ୱାମୀ, ଐଶ୍ୱର୍ଯ୍ୟା ଦତ୍ତ, ବେଲୁ ବେନ୍, ହାକୁ ସାହା, ପାର୍ଥିବ ସାହା, ବିଦ୍ୟା ସାହା, ୟୁଟା ଜୈନ୍, ଆଶା କରିଆପ୍ପା, ଗୀତା ଭାଟିଆ, ଅଞ୍ଜଳି ଫିସର୍, ନାଙ୍ଗିଆଲ୍, ଲତିକା ଫିସର୍, ହେମେନ୍ଦ୍ର ନାଥ ଦତ୍ତ, ଅମିତ୍ ଦତ୍ତ, ବ୍ରଜେନ୍ଦ୍ର ନାଥ ଗୋସ୍ୱାମୀ, ଅଶୋକ ଭାଟିଆ, ଜ୍ୟୋତିନ୍ଦ୍ର ଜୈନ, ଏବର୍‌ହାର୍ଡ୍ ଫିସର୍, ବାର୍‌ବରା ଫିସର୍, ବର୍‌ନାର୍ଡ଼୍ ଇମ୍‌ହାସ୍‌ଲି, ବାଲାନ ନାମ୍ବିଆର୍ ପ୍ରଭୃତି ବନ୍ଧୁଙ୍କ ଗହଣରେ ଦିନନାଥ, ଇଣ୍ଡିଆ ଇଣ୍ଟର୍‌ନ୍ୟାସନାଲ୍ ସେଣ୍ଟର୍, ନୂଆଦିଲ୍ଲୀ, ୨୦୧୨ ।

Digitized by srujanika@gmail.com

ବନମାଳୀ ବିଶ୍ୱାଳ

# ଜୟତି ଦିନନାଥଃ ପ୍ରତିଭୟା

ମତିଂ ଧତ୍ତେ ପଦ୍ୟେ ସତତମନବଦ୍ୟେ ସୁଲଳିତେ
ରସୈଃ ସିକ୍ତେ ହୃଦ୍ୟେ ସକଳ-ବିଧ-ସାହିତ୍ୟ-ରଚନେ ।
ମନୋ ଗଦ୍ୟେ ରମ୍ୟେ ଲଗତି ଚ କଥା-କୌତୁକ-ବଶାତ୍
କ୍ୱଚିତ୍ ଚିତ୍ତଂ ଚିତ୍ରେ ବିଳସତି କଳା-କୌଶଳପରମ୍ ।।୧।।

କ୍ୱଚିଚ୍ଚିତ୍ରଂ ଦୃଷ୍ଟ୍ୱା ଲିଖତି କବିତାଂ କାମପି ବରାଂ
କ୍ୱଚିତ୍‌କାବ୍ୟାଧାରେ ରଚୟତି ନବଂ ଚିତ୍ରମଥବା ।
କ୍ୱଚିଦ୍‌ବ୍ୟଙ୍ଗ୍ୟୈନୈର୍ବଂ ରମୟତି ଚ ବନ୍ଧୂନ୍ ସୁଖମନାଃ
ଦିନାନାଂ ନାଥୋଽୟଂ ଭବତି ଭବନାଥଃ ପ୍ରତିଭୟା ।।୨।।

ମନୋଜ୍ଞେ ପ୍ରାଚୀନେ ପ୍ରତିବସତି ଚୈକାମ୍ରନଗରେ
ବିଦେଶଂ ଗତ୍ୱା ଚ ପ୍ରଥୟତି କଳାଂ କୀର୍ତ୍ତିମମଳାମ୍ ।
ପ୍ରଭାଦୀପ୍ତୋ ଧୀମାନ୍ ଲିଖତି ରଚନାମୁତ୍କଳପରାଂ
ଦିନାନାଂ ନାଥୋଽସୌ ବିବିଧ-ନବ-ଚିତ୍ରାଙ୍କନ-ପଟୁଃ ।।୩।।

ବ୍ୟଥାର୍ତ୍ତାନାଂ କଷ୍ଟଂ ପରିଲିଖତି କାବ୍ୟେ ସରଚିତେ
ବିଳାସୀନାଂ ଭୋଗ-ପ୍ରକରଣ-କଳା-ବର୍ଣ୍ଣନ-ପଟୁଃ ।
ସଦା ଜ୍ଞାନୋଦ୍ଦୀପ୍ତୋ ବିବିଧ-ବିଷୟେ ଭାଷ୍ୟ-ଚତୁରୋ
ଦିନାନାଂ ନାଥସ୍ୟ ପ୍ରକୃତି-କବି-ଶକ୍ତିଃ ବିଜୟତାମ୍ ।।୪।।

କଦାଚିତ୍ ଶୃଙ୍ଗାରାପ୍ଲୁତ-ରୁଚିର-ଚିତ୍ର-ପ୍ରକରଣଂ
ଲିଖନ୍ ମୂର୍ତ୍ତଂ ରୂପଂ ସୁରସ-ରତି-ଲୀଳା-ବିଳସିତମ୍ ।
ଅହୋ ବାରମ୍ବାରଂ ସୁନିପୁଣତୟା ମଜ୍ଜନରତଃ
ସଦାଽମୂର୍ତ୍ତେ କାବ୍ୟେ ଜୟତି ଦିନନାଥଃ ପ୍ରତିଭୟା ।।୫।।

Digitized by srujanika@gmail.com

## ନିତ୍ୟାନନ୍ଦ ମିଶ୍ର

# ଦିନନାଥତା

ଅବଗମ-ପ୍ରଭୟା ଲଘୁ-ଧୀମତାମ୍
ଅପହୃତା ଭବତା ଜଡ଼ତା କଦା ।
ଇହ ଗତା ଭୁବନେ ଚରିତାର୍ଥତାଂ
ବିବିଧ-ଶିଳ୍ପକଳା-ଗୁରୁତା କଦା ।।

କେବେ ତୁମର ଜ୍ଞାନାନୁଭବ ଦ୍ୱାରା ଅଳ୍ପଜ୍ଞମାନଙ୍କର ଜଡ଼ତ୍ୱ ଅପହୃତ ହୋଇଛି ତ କେବେ ଏହି ସଂସାରରେ ବିବିଧ ଶିଳ୍ପକଳାର ଯେ ତୁମେ ଗୁରୁ-ଏହା ସାର୍ଥକ ହୋଇଛି ।

ଅଳସତା ନ କଦାପି ସମାଦୃତା
ଜଟିଳତା ସତତଂ ସରଳୀକୃତା ।
ଲଳିତ-ସୁନ୍ଦର-ଶବ୍ଦ-ସମନ୍ୱିତା
ବିରଚିତା କବିତା ଭବତାର୍ଥିତା ।।

ତୁମେ କେବେହେଲେ ଆଳସ୍ୟକୁ ଆଦରି ନାହଁ । ଜଟିଳ ଭାବକୁ ସର୍ବଦା ସରଳ କରିଛ । ଯେଉଁ କବିତା ଇଚ୍ଛା କରିଛ ତାହା ଲଳିତ ଓ ସୁନ୍ଦର ଶବ୍ଦ ସଂଯୋଗ କରି ରଚନା କରିଛ ।

ସୁଜନତା ଭବତା ପ୍ରିୟତାଂ ଗତା
ଚପଳତା ଶୁଚିତା ହୃଦୟଂ ଗତା ।
ସରଳତା ତନୁତାବୟବଂ ଗତା
ବସୁମତୀ-ପ୍ରଥିତା ଦିନନାଥତା ।।

ସୌଜନ୍ୟକୁ ତୁମେ ପ୍ରିୟ କରିନେଇଛ । ଚାପଲ୍ୟ ଓ ପବିତ୍ରତା ତୁମ ହୃଦୟରେ ରହିଛି । ତୁମର ସଳଖ ଶରୀର କୃଶତାକୁ ଆଦରି ନେଇଛି । ତୁମର ଦିନନାଥତ୍ୱ (ଓ ସୂର୍ଯ୍ୟ ସହିତ ସମତ୍ୱ) ବିଶ୍ୱରେ ବିଖ୍ୟାତ ହୋଇଛି ।

Digitized by srujanika@gmail.com

**ବିଶ୍ୱବିହାରୀ ଖାଡ଼ଙ୍ଗା**

## ଦିନନାଥ-ସ୍ତବଃ

ଉଚଣ୍ଡ ଚାପପୁଞ୍ଜଂ ପ୍ରବିଚରସି କଳାରୂପମାଲୋକରୂପ
ସପ୍ତୈଃ ରଙ୍ଗୈଃ ବିଚିତ୍ରୈଃ ଲିଖସି ନିରଳସଂ ସର୍ବଦା ବିଶ୍ୱଚିତ୍ରମ୍ ।
ଯୁଷ୍ମଜ୍ଜନ୍ମପ୍ରସଙ୍ଗେ ଘନତିମିର ଇବ ଧ୍ୱଂସତେଽଜ୍ଞାନରାଶିଃ
ଲୋକାନାଂ ମଙ୍ଗଳାର୍ଥଂ ବିସୃଜସି କିରଣଂ ତ୍ୱଂ ହି ନାଥୋ ଦିନସ୍ୟ ।।

ତୁମେ କଳାରୂପକ ପ୍ରଚଣ୍ଡ ତାପପୁଞ୍ଜ ବିତରଣ କର । ବିଚିତ୍ର ସପ୍ତରଙ୍ଗରେ ସର୍ବଦା ନିରଳସ ଭାବରେ ବିଶ୍ୱର ଚିତ୍ର ଆଙ୍କୁଥାଅ । ସୂର୍ଯ୍ୟ ଉଦୟ ହୁଅନ୍ତେ ତାଙ୍କର ଆଲୋକଦ୍ୱାରା ଘନ ଅନ୍ଧକାର ଦୂର ହେଲା ପରି ତୁମେ ଉଦୟ ହୁଅନ୍ତେ (ତୁମେ ଗୁରୁ ହୋଇଥିବାରୁ) ଅଜ୍ଞାନ ରାଶି ଧ୍ୱଂସ ହୁଏ । ସୂର୍ଯ୍ୟ ଯେପରି ଲୋକମାନଙ୍କର ମଂଗଳ ପାଇଁ ନିଜର କିରଣ ସୃଷ୍ଟି କରିଥାଆନ୍ତି, ତୁମେ ମଧ୍ୟ ସେହିପରି ଲୋକମାନଙ୍କର ମଙ୍ଗଳ ପାଇଁ ନିଜର କିରଣ (ପ୍ରତିଭା) ସୃଷ୍ଟି କରିଥାଅ, କାରଣ ତୁମେ ଦିନନାଥ ।

Digitized by srujanika@gmail.com



ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟରେ ମୁଁ ଛାତ୍ର ଥିବାବେଳେ ଅଧକ୍ଷ ଦିନନାଥଙ୍କ ଗୋଟିଏ ବକ୍ତୃତାର ସାରବତ୍ତା ଥିଲା ଓଡ଼ିଶାର ମନ୍ଦିର ସ୍ଥାପତ୍ୟ ଏବଂ ଭାସ୍କର୍ଯ୍ୟର ଗାମ୍ଭୀର୍ଯ୍ୟ ଓ ବିଶାଳତା (monumentality) । ମୋ ଅବଚେତନ ମାନସରେ ସେଇ କଥାପଦକ ଦାନା ବାନ୍ଧିଥିଲା । ସମୟ ଅତିକ୍ରାନ୍ତ ହେବା ସହିତ ପଥର ମୋ ଶୈଳ୍ପିକ ବ୍ୟକ୍ତିତ୍ୱର ଅଂଶ ହୋଇଗଲା । ଦିଲ୍ଲୀ ଲଳିତା କଳା ମହାବିଦ୍ୟାଳୟରେ ହେଉ ବା ଲଣ୍ଡନର ରୟାଲ୍ କଲେଜ୍ ଅଫ୍ ଆର୍ଟ୍‌ରେ ହେଉ ପଥର ମୋ କାନରେ କେବଳ ଓଡ଼ିଶା ନୁହେଁ ସମଗ୍ର ବିଶ୍ୱକଳାର ସଙ୍ଗୀତ ଶୁଣାଇଲା ଓ ମୋତେ ଧନ୍ୟ କରିଦେଲା । ମୁଁ ଏବେ ପଥରକୁ ନେଇ ଏକରକମ ପାଗଳ । କିଟ୍‌ସ୍ ବିଶ୍ୱବିଦ୍ୟାଳୟର ଭାସ୍କର୍ଯ୍ୟ ଉଦ୍ୟାନ ଏହି ପାଗଳାମୀର ସାକ୍ଷର । ପାଠୀ ସାର୍‌ଙ୍କ ଅଭିନନ୍ଦନ ଗ୍ରନ୍ଥ ପାଇଁ ଆଉ ଅଧିକା କ'ଣ ବା ଦେଇପାରିବି । ସେ ତ ମୋ ପ୍ରେରଣାର ଉତ୍ସ ।

ଅଦ୍ୱୈତ ପ୍ରସାଦ ଗଡ଼ନାୟକ

Digitized by srujanika@gmail.com




ଦଳେ ଯୁବଶିଳ୍ପୀଙ୍କର ନେତୃତ୍ୱ ନେଇ ପ୍ରତ୍ୟେକଙ୍କର ଅଭୀପ୍ସାକୁ ସମ୍ମାନ ଦେଇ ଓଡ଼ିଶାରେ ହେଉ ବା ଓଡ଼ିଶା ବାହାରେ ହେଉ ଗୋଟିଏ ନବକଳା ଆନ୍ଦୋଳନକୁ ବନ୍ଧୁର ପଥରେ ଆଗେଇ ନେବା ଏକ ଦୁରୂହ ବ୍ୟାପାର ।

ଶିଳ୍ପୀ . ସୁଧାଂଶୁ ଭୂଷଣ ସୂତାର

Digitized by srujanika@gmail.com







ଶିଳ୍ପୀମାନଙ୍କର ଏକାନ୍ତ କଳାସାଧନା ପାଇଁ ନୂଆଦିଲ୍ଲୀର ଗଢ଼ିଠାରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ଅମଳରେ ଷ୍ଟୁଡ଼ିଓମାନ ନିର୍ମାଣ ହୋଇଥିଲା । ପ୍ରଧାନମନ୍ତ୍ରୀ ବ୍ୟକ୍ତିଗତ ଭାବେ ଏହି ପ୍ରକଳ୍ପରେ ଆଗ୍ରହ ପ୍ରକାଶ କରି କିଛି ପ୍ରତିଷ୍ଠିତ ଶିଳ୍ପୀଙ୍କୁ ନିଜେ ଡାକିଆଣି ଗଢ଼ିରେ ଷ୍ଟୁଡ଼ିଓ ଦେଇଥିଲେ । ସମୟ ଗଡ଼ି ଚାଲିଲା, ବରିଷ୍ଠ ଶିଳ୍ପୀମାନେ କନିଷ୍ଠଙ୍କୁ ଜାଗା ଛାଡ଼ିବା ପାଇଁ ଅମଙ୍ଗ ହେଲେ । କନିଷ୍ଠମାନେ ବିଦ୍ରୋହ କଲେ । ଦିନନାଥ ପାଠୀ ଲଳିତ କଳା ଏକାଡ଼େମୀର ସଚିବ ଥିଲାବେଳେ ଏହି ସମସ୍ୟାର ସମାଧାନ କରିବା ପାଇଁ କିଛିଟା ଉଦ୍ୟମ କରିଥିଲେ ।

କେନ୍ଦ୍ର ଲଳିତ କଳା ଏକାଡ଼େମୀର ଜାତୀୟ ପୁରସ୍କାର ଓଡ଼ିଶାର ବହୁ ପ୍ରତିଷ୍ଠିତ ଶିଳ୍ପୀଙ୍କୁ ମଧ୍ୟ ହତଚକିତ କରିଦେଇଛି । ଥୋକେ ତାହା ପାଇବାରେ ସମର୍ଥ ହେଇଛନ୍ତି ତ ଆଉ କାହାକୁ ଅଶ୍ରୁ ମୁଣ୍ଡନ ହିଁ କରିବାକୁ ପଡ଼ିଛି ।

ଶିଳ୍ପୀ : ସୁଧାଂଶୁ ଭୂଷଣ ସୂତାର

Digitized by srujanika@gmail.com







ଶିଳ୍ପୀ : ସୁଧାଂଶୁ ଭୂଷଣ ସୁତାର

କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚିବଙ୍କ ବ୍ୟକ୍ତିଗତ ସହାୟକଙ୍କ ପାଖରେ ପ୍ରତି ସନ୍ଧ୍ୟାରେ କର୍ମଚାରୀ ୟୁନିୟନ୍‌ର କର୍ମକର୍ତ୍ତାମାନେ ପହଞ୍ଚୁଥିଲେ । ପ୍ରାଇଭେଟ୍ ସେକ୍ରେଟାରୀ ପ୍ରଶାସନର ନିରପେକ୍ଷତା ରକ୍ଷା ନକରି ବହୁ ଗୁରୁତ୍ୱପୂର୍ଣ୍ଣ କାଗଜର ନକଲ ସେମାନଙ୍କ ହାତକୁ ବଢ଼େଇ ଦେଉଥିଲେ ।

ବାହଓ୍ୱଲ୍‌ପୁର୍‌ଠାରେ ଥିବା ଲଳିତ କଳା ଏକାଡ଼େମୀର ଗେଷ୍ଟ ହାଉସ୍‌କୁ କିଛି ଶିଳ୍ପୀ ରଙ୍ଗଶାଳାରେ ପରିଣତ କରିଦେବା ପାଇଁ ପଛାଉ ନଥିଲେ । ଗେଷ୍ଟହାଉସ୍‌ରେ ମଦ୍ୟପାନ ବନ୍ଦ କରିବା ପାଇଁ ସଚିବ ଦିନନାଥ ପଦକ୍ଷେପ ନେଇଥିଲେ ବି କୃତକାର୍ଯ୍ୟ ହୋଇପାରି ନଥିଲେ ।

Digitized by srujanika@gmail.com




ଚୀନ ଦେଶର ରାଜଧାନୀ ବେଇଜିଙ୍ଗ୍‌ଠାରେ ପ୍ରାକ୍ତନ ଛାତ୍ର ଏମ୍. ଶୋଭନ କୁମାରଙ୍କ ସହ ଚିତ୍ର ପ୍ରଦର୍ଶନୀ ସାରି ଫେରିବା ବେଳେ ବନ୍ଧୁମାନଙ୍କ ପାଇଁ ଉପହାର ଆଣିବାକୁ ଦିନନାଥ ଭୁଲି ନଥିଲେ ।

ଶିଳ୍ପୀ : ସୁଧାଂଶୁ ଭୂଷଣ ସୁତାର

Digitized by srujanika@gmail.com




ଶିଳ୍ପୀ : ସୁଧାଂଶୁ ଭୂଷଣ ସୂତାର

Digitized by srujanika@gmail.com




ଶିଳ୍ପୀ : ସୁଧାଂଶୁ ଭୂଷଣ ସୂତାର

Digitized by srujanika@gmail.com




ଶିଳ୍ପୀ : ସୁଧାଂଶୁ ଭୂଷଣ ସୂତାର

Digitized by srujanika@gmail.com




ଶିଳ୍ପୀ : ସୁଧାଂଶୁ ଭୂଷଣ ସୁତାର

Digitized by srujanika@gmail.com




ବେଇଜିଙ୍ଗରେ ଆନ୍ତର୍ଜାତିକ ପୁରସ୍କାର ଗ୍ରହଣ ଅବସରରେ ।

Digitized by srujanika@gmail.com



ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ସହ ।

Digitized by srujanika@gmail.com



ଫସଲ ଅମଳର ଗୀତ (Harvesting Songs) ତୈଳଚିତ୍ର ୮୦ x ୫୫ ସେମି ୧୯୬୨
୧୯୬୩ ମସିହାରେ ଏକାଡେମୀ ଅଫ୍ ଫାଇନ୍ ଆର୍ଟ କୋଲକତା ଠାରେ ପୁରସ୍କୃତ ହୋଇଥିଲା ।
(Escort Heart Care Centre, New Delhi ସଂଗ୍ରହରେ ଅଛି)

Digitized by srujanika@gmail.com



ଦୁଃଖସୁଖ (Gossip) ତୈଳଚିତ୍ର, ୩୧ x ୫୭ ସେମି ୧୯୬୨, (ଶିଳ୍ପୀଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ଗପସପ (Gossip) ତୈଳଚିତ୍ର ୩୧ x ୫୭ ସେମି.୧୯୬୨, (ଅଜଣା ସଂଗ୍ରହ)

Digitized by srujanika@gmail.com



ଯମଜ (Twins) ତୈଳଚିତ୍ର, ୧୨୨ x ୮୨ ସେମି.୧୯୬୬
ଏକାଡେମୀ ଅଫ୍ ଫାଇନ୍ ଆର୍ଟ କୋଲକତା ଦ୍ୱାରା ୧୯୬୬ ରେ ପୁରସ୍କୃତ ।

Digitized by srujanika@gmail.com



ପ୍ରେମୀ ଯୁଗଳ (Couple) ତୈଳଚିତ୍ର ୬୧ x ୮୯ ସେମି ୧୯୬୨
(ଶକୁନ୍ତଳା ଓ ହରିହର ପଣ୍ଡାଙ୍କ ସୁଚରିତା ସଂଗ୍ରହରେ ଅଛି)

Digitized by srujanika@gmail.com



ବୌଦ୍ଧ ଭିକ୍ଷୁ (Monks) ତୈଳଚିତ୍ର ୧୨୨ x ୮୨ ସେମି.୧୯୬୬ (ଅଜଣା ସଂଗ୍ରହ)

Digitized by srujanika@gmail.com



ଖଲ୍ଲିକୋଟ ବଜାର (Khallikote Bazar) ତୈଳଚିତ୍ର, ୩୬ x ୫୭ ସେମି ୧୯୬୩ କଟକର ନନ୍ଦ ଦାସଙ୍କ ସଂଗ୍ରହରେ ଅଛି

Digitized by srujanika@gmail.com



ରାଣୀ (Queen) ତୈଳଚିତ୍ର, ୬୧ x ୮୯ ସେମି. ୧୯୭୩ (ଅଜଣା ସଂଗ୍ରହ)

Digitized by srujanika@gmail.com

ଜଗନ୍ନାଥ ପ୍ରସାଦ ଦାସ

## ଚିତ୍ରଲେଖା

ସବୁବେଳେ ଆଖି ଆଗେ ଆଗେ ରହିଥାଏ
ଚେତନା ଅବଚେତନାର ପ୍ରତିଟି ମୁହୂର୍ତ୍ତରେ
ନିଜକୁ ଶବ୍ଦରେ ବର୍ଣ୍ଣରେ ସଜାଇ
ଦେହ ମନକୁ ଆଚ୍ଛନ୍ନ କରି ରଖିଥାଏ
ମଣିଷର ଅନ୍ତରଙ୍ଗ ଭବିତବ୍ୟ ଭଳି ।

ଖୋଜୁଥିବାର ବିଭିନ୍ନ ପର୍ବମାନଙ୍କୁ ନେଇ
ଭାବବିହ୍ୱଳ ଦିନଟି ସରିଆସେ
ହାତରୁ ଖସି ତଳେ ପଡ଼ିଯାଏ
ସ୍ୱପ୍ନର ପ୍ରାଚୀନ ପାଣ୍ଡୁଲିପି
ଆଖିର ଆତୁରତା ହଜାଇଦିଏ
ଆତ୍ମାର ଶେଷ ଆଲିଙ୍ଗନକୁ
ଆକାଶରେ ଖଞ୍ଜି ହୋଇଯାନ୍ତି
ଭାସ୍କର୍ଯ୍ୟର ଭଙ୍ଗୁର ପଙ୍‌କ୍ତିମାନ
ଅକ୍ଷର ଭିତରୁ ଉଙ୍କି ମାରେ
କବିତାର ବିବର୍ଣ୍ଣ ସାୟାହ୍ନ ।

କଳ୍ପନା ବିଳାସର ମୋଡ଼ ଉପରେ
ଅଟକି ରହିଥିବାର ଅସ୍ଥିର କ୍ଷଣରେ
ଆନମନା ପାଦ ନିଜେ ନିଜେ ଖୋଜିନିଏ
ଆପଣାର ଅତୀତ ଉପରେ ରେଖାଙ୍କିତ
ଆଗକୁ ଯିବାର ଅଜଣା ରାସ୍ତାକୁ ।

ଏଠାରେ ପ୍ରତ୍ୟୟ ଓ ପ୍ରତିଶ୍ରୁତିର
ଅସମ୍ଭବ ସମାବେଶ ଭିତରେ
କେହି କାହାରି ବଶବର୍ତ୍ତୀ ନୁହନ୍ତି
ନା କଳ୍ପନା ନା ଶବ୍ଦ ନା ରଙ୍ଗ
ଏଠାରେ କେବଳ ପାଇବାର ଚେଷ୍ଟା
ସେହି ଅମୂର୍ତ୍ତ ଶରୀରକୁ
ଯାହା କେବେ ବି କେଉଁଠାରେ ବି
ସହଜରେ ଧରାଛୁଆଁ ଦିଏ ନାହିଁ
ନା କବିତାରେ ନା ରୂପକଳ୍ପ ଚିତ୍ର ପ୍ରତିମାରେ ।



Digitized by srujanika@gmail.com

**ହରିହର ମିଶ୍ର**

## ଶିଳ୍ପୀ ତୁମେ ଅଧେ ନାରୀ ଅଧେକ ପୁରୁଷ

ଏ ସବୁ ଅନୁଭବ ଲୁଚିଥାଏ
ସାତ ଲହରୀ ଡେଇଁଲେ ଏ ମନର
ରଙ୍ଗ ଓ ସ୍ୱରର
ସାତୋଟି ଫରୁଆ ଖୋଲିଲେ ଥାଏ
ଶବ୍ଦଟିଏ
ମାଟିର ସପ୍ତାବରଣ ଚିରି
ପତା ମେଲିଥିବା ସପ୍ନ
ଜନ୍ମ ଜନ୍ମାନ୍ତରୁ ଡେଇଁ
ଅନ୍ଧାରରୁ ଆଲୁଅକୁ ଆସିଥିବା ହସ
ତୁମ ଉପନ୍ୟାସ ।
କାୟା ସହ ଛାୟା ସମ
ଜୀବନ ଓ ଉପନ୍ୟାସ ତୁମ
କାୟାର କାମବନ୍ଧନ
ଛିନ୍ନକରି ସବୁ ମୋହ
ମନର ମୃଣାଳ ଖୋଜେ
ଯେବେ ମହାକାଶ ।
ରହିଯାଏ ପାର୍ଥିବ ଦେହର ପାପ
ନିମ୍ନନାଭ ମୃତ୍ତିକାରେ
ଉର୍ଦ୍ଧ୍ୱେ ରହେ ସଂଭୋଗ ଓ ଅଭିସାର
ଅପାର୍ଥିବ ଦେହ
ଏବଂ ତାହା ପରେ ସହସ୍ରାର
ଉଷ୍ଣୀଷ କମଳ ।
ଝରଇ ଅମୃତ ଦିନନାଥ
ସ୍ନାନ କର ଛୁଅଁନାହିଁ ନୀର
ଚିତ୍ରଶାଳା ହୋଇଯାଏ ମଧୁଶାଳା
ତଥାପି ପଥରରେ
ପଥଧାରେ ପଡ଼ିରହେ ଅନ୍ତଃସତ୍ତ୍ୱା
ମାତ୍ର ଶିଳ୍ପୀ ତୁମ ଠାରେ
ପାପ ପୁଣ୍ୟ ହୁଏ ନାହିଁ ବାରି ।
ତମେ କୈବର୍ତ୍ତ କନ୍ୟା ସାବିତ୍ରୀର ଜାଲରେ
ମୀନଟିଏ
କି ବିଦେଶିନୀ ମେରୀର
ଶୈବାଳ କେଶପାଶରେ ସୁନାମାଛଟିଏ ।
ମୋ ପାଖେ ନାହିଁ ତା ହିସାବ
ଚିତ୍ରଶାଳାର ଗବାକ୍ଷରୁ
ମଳିନ ଆଲୋକରେ ଝଲମଲ ଦୃଷ୍ଟିଟିଏ
ଲଜ୍ୟାବନର ଗୋଲାପର
ମନେ ଅଛି ଶ୍ଳୋକଛନ୍ଦ ମନେ ଅଛି
ପକ୍ଷୀର କାରୁଣ୍ୟ ।



Digitized by srujanika@gmail.com

ଦିନନାଥ
ସ୍ରଷ୍ଟା ହିଁ ତ ଭୋଗୁଥାଏ ତା' ସୃଷ୍ଟିକୁ
ଓ ସୃଷ୍ଟି ହିଁ ଆସାଦୁଥାଏ ତା' ସ୍ରଷ୍ଟାକୁ
ଭୋଳାନାଥର ଛାତିରେ ଠିଆ
ମୁକ୍ତନାରୀ
ଆପଣା ଜିହ୍ୱାକୁ ଦଂଶୁଥିବା
ରତି, ଗାୟତ୍ରୀ, ଲୋପାମୁଦ୍ରା
ସ୍ୱୟଂ ମହାକାଳୀ ।

ସବୁ ଶିଳ୍ପୀ ପାଲଟି ଯାଆନ୍ତି
ମହାକାଳ
ଓ୍ୱଇଁ ମାଷ୍ଟ୍ରେ
ନରହିତୋ
ନିତ୍ୟାନନ୍ଦ
ସମସ୍ତେ ସ୍ରଷ୍ଟାହୋଇ ରମଣ କରନ୍ତି
ନିଜର ସୃଷ୍ଟି ।

ଅନ୍ତଃସତ୍ତ୍ୱା ସୃଷ୍ଟିରେ ନଥାଏ ପାପ
ଥାଏ ଶସ୍ୟର ଲାସ୍ୟ
ଥାଏ ପାର୍ଥିବର ରଙ୍ଗ ସର ମହକ
ତାହା ହିଁ ତ ପୁଲକ ଅପାର୍ଥିବର
ଛଲକାଏ ବସୁଧାରା ଘୃତ ଓ ମଧୁର
ରାହୁ କେତୁର ଜିହ୍ୱାରେ
ଟୋପାଏ ଅମୃତ ।



ସ୍ରଷ୍ଟା ତୁମେ ନାରୀ
ଅପୂର୍ବା ମୋହିନୀ
ଯଦିଓ ବିପଦ ଥିଲା
ନାରୀବେଶ ହେବାର ଶାମ୍ଭର
ବିପର୍ଯ୍ୟୟ ଥିଲା ।
ତଥାପି ନାରୀକୁ ନର୍କ ମନେ କରି
ଗୋଟିପୁଅ ନାଚୁଥାଏ ମଠ ଅଗଣାରେ
ଚିତ୍ରକାବ୍ୟ ଛାନ୍ଦ ଚୌପଦୀରେ
ରକ୍ତମାଂସ ମଣିଷର
ହସକାନ୍ଦ ପୃଥିବୀର
ରତି ଶୃଙ୍ଖଳାରେ ।

ଦିନନାଥ
ହୁସେନଙ୍କ ପରି ତମେ ବାରମ୍ବାର କର ଭୟମୁକ୍ତ
ଦେଖାଅ ଦିଗପହଣ୍ଡିରେ
ନିତମ୍ବିନୀ ଗଜଗାମିନୀଙ୍କୁ
ରଜାଘର ପୋଖରୀରେ ଭାସୁଥିବା
ଗର୍ଭବତୀ ବନହଂସୀଙ୍କୁ ।

ଏବେ ଯିବାକୁ ହେବ
କଣ୍ଟା ଓ ଉଇହୁଙ୍କା ସଖାକରି ଉପବନକୁ
ଚନ୍ଦ୍ରପ୍ରଭା ଆଶ୍ରମକୁ
କେଉଁଠି ସେ ଶିଳ୍ପଗ୍ରାମ
କେଉଁ ଦ୍ୱୀପ ମଝି ଚିଲିକାରେ ?

Digitized by srujanika@gmail.com

ଗଣେଶ୍ୱର ମିଶ୍ର

## ଦିନନାଥ ପାଠୀ

ଗାଁ ଆଉ ଘର ଛାଡ଼ି
ରଙ୍ଗ ଆଉ ଶବ୍ଦର ମାୟାରେ
ଘୂରିବୁଲେ ଅକାରଣେ
ଘୂରିବୁଲେ ଅରଣ୍ୟ ବାଟରେ-
ଅଧା ଚିହ୍ନା ଲୋକଟିଏ ।

ମନେହୁଏ ଦେଖିଥିଲି ଥରେ
ମନ୍ଦିର ବେଢ଼ାରେ କାହିଁ
ଅବା ସଞ୍ଜବେଳେ
ବାରାଣସୀ ଗଙ୍ଗାନଦୀ କୂଳେ !

ଜୁରିକ୍ ବା ଟୋକିଓ ନଗରେ
ଦେଖିଥିଲି ? ରଙ୍ଗଠାରୁ ରୂପର ଦୂରତା
ଶବ୍ଦଠାରୁ ଅର୍ଥର ଦୂରତା
ଏକାକୀ ସେ ଖୋଜୁଥିଲା ବେଳେ ?

ଗାଁ ଆଉ ଘରଛାଡ଼ି
ଖୋଜୁଚି ସେ ନିଜର ଠିକଣା,
ଅସହାୟ ଲୋକଟିଏ-
ଚିହ୍ନା ଚିହ୍ନା ଲାଗୁଅଛି-
ପୁଣି ଲାଗେ ଅଚିହ୍ନା, ଅଜଣା !



Digitized by srujanika@gmail.com

ଗୌରହରି ରାଉତ

# ଚଢ଼େଇରେ



ଆକାଶ ବତାସ ଝଡ଼ ଝଞ୍ଜାକୁ
ବକ୍ଷରେ ଧରି ପକ୍ଷ ଦେଇଛୁ ମେଲି,
(ତୋ') ଆଖି ଅଗଣାରେ କି ଫୁଲ ଫୁଟିଲା
ଗନ୍ଧ ବିଭୋରେ ଗହନ ତିମିରେ
ଉଡ଼ିଯାଉଛୁ ତୁ ଲୁହର ଲହରୀ ଚିରି ।।

ବଇଶାଖୀ ତାତି ଝାଞ୍ଜି ଖରାରେ
ଶୁଣି ଯେ ପାରୁ ତୁ ଫଗୁଣର କୁହୁ ଗୀତି,
ପାଗଳପରାଏ ପବନକୁ କାଟି
ପାରିହେଇଯାଉ ଥାକଥାକ ମେଘ
କେତେ ଗିରିବନ ଘାଟି ।।

ଝଲସି ଯାଉଛି ଡେଣାରେ ସୁନେଲି ଖରା -
ଚଢ଼େଇରେ ଆଜି ମାଟିପରେ ବସି
ମୁଗ୍ଧ ମାନସେ
(ମୁଁ) ଦେଖେ ତୋ' ସପ୍ନଧାରା ।।

ନୀଳ ଦରିଆକୁ ଆଖିରେ ପୂରାଇ
ଯାଉଥାଉ ଯେବେ ଶୂନ୍ୟ ସେପାରି
ମହାକାଶ ଚିରି ଚିରି,
ମତ୍ତ ବିଭୋରେ ତତେ ଦେଖୁ ଦେଖୁ
ଖୁସିରେ ଖୁସିରେ ଲୁହ ପଡୁଥାଏ ଝରି ।।

ଆକାଶ ବତାସ ପାରିହେଲା ବେଳେ
ଚଢେଇରେ ତୋ'ତେ କହିବି ଗୋଟିଏ କଥା -
"ଯେ ପକ୍ଷୀ ଉଡ଼ଇ ଯେତେ ଯେତେ ଦୂର
ଡେଣାରୁ ତା' ଲହୁ ଝରେ ସେତେଥର
ଘୂରି ଯାଉଥାଏ ମଥା ।।"

ଚିଲିକା ପାଣିରେ ପଡ଼ିବ ଦିନେ ତୋ' ଛାଇ -
ଚଢ଼େଇରେ ଆଜି ମାଟିପରେ ବସି
ସୁନାଝରା ତୋ'ର ଡେଣାରେ ଡେଣାରେ
ମୁଗ୍ଧେ ମୁଁ ଅଛି ଚାହିଁ ।।

Digitized by srujanika@gmail.com

## ପ୍ରିୟଙ୍କରୀ

# ମହତ୍ୱ : ଶିଳ୍ପୀ ଚେତନାର

ସମ୍ମୁଖେ ମୋ ଉକୁଟଇ
ରଙ୍ଗ ଆଉ ରଙ୍ଗ
ନାଲି ନୀଳ ବାଇଗଣି
ସବୁଜ ହଳଦି
ବିଚ୍ଛୁରିତ ବିଜୁଳିର ଆଭା
ଚିକ୍‌ମିକ୍ ପାଟଶାଢ଼ି ଭଳି
ଉଜ୍ଜ୍ୱଳ ସୁନ୍ଦର
ପ୍ରଭାମୟ ଶୋଭାର ଭଣ୍ଡାର
ମନଛୁଆଁ ଜାତି ଜାତି ସେ ରଙ୍ଗର ପରଦା ।

ସେଇ ଫେଣ୍ଟାଫେଣ୍ଟି
ରଙ୍ଗ ଗହଣରେ
ଆକୃତି ସମ୍ଭାର
କାନ୍‌ଭାସ୍ ଦେହରେ
ଅନାବୃତ ଉଲଗ୍ନ
ଭାବୋଦ୍ଦୀପକ ଚିତ୍ର ମଣିଷର
କେବଳ ସ୍ତ୍ରୀ ପୁରୁଷର ।

ଉଦ୍‌ବିଗ୍ନ ଚିତ୍ତ ମୋର -
ସତେ କ'ଣ ଏଥିପାଇଁ ଶିଳ୍ପୀ
ବିଶ୍ୱପ୍ରତିଷ୍ଠିତ ? ?
ଯାହାର ଉଦ୍ଦାମ ତୂଳୀର ସ୍ପର୍ଶରେ
ଫୁଟି ଉଠେ ଭାବପୂର୍ଣ୍ଣ କାମୋଦ୍ଦୀପ୍ତ
ବିବସ୍ତ୍ର ଶରୀର ? ?

ଉତ୍‌କଣ୍ଠିତ ମନେ
କୌତୂହଳ ଓଠେ ମୋର
(ଚହଲିଲା) ଚଟୁଳ ଏ ପ୍ରଶ୍ନ
ଛବି କ'ଣ ପିନ୍ଧେନା କି ଶାଢ଼ି...
ନା ଶିଳ୍ପୀ ପାରେନା ପିନ୍ଧାଇ ? ?
ନିରୋଳ ହସରେ
ଭାବପୂର୍ଣ୍ଣ ଗମ୍ଭୀର ଉତ୍ତର

ଶାଢ଼ି ଯେ ନମୁନା କେବଳ
ଆମ ଏ ଦେଶର ପୋଷାକ ସୂଚାଇ ଦିଏ
ଆମ ସଂକୀର୍ଣ୍ଣ ମନର
କିଏ କେଉଁ ଦେଶ କେଉଁ ଅଞ୍ଚଳର ।

ଏ ଚିତ୍ର କିନ୍ତୁ ସଭିଙ୍କର
ମଣିଷ ସମାଜର
କେବଳ ଫୁଟିଛି ଭିନ୍ନତା ଯାହା
ନାରୀ-ପୁରୁଷର !!
ସ୍ତବ୍ଧ ନେତ୍ର ମୋର ଉଠିଲା ଉଜ୍ଜ୍ୱଳି
ନିବିଷ୍ଟ ଚିତ୍ତରେ ଭାବ ବିଭୋର ଏ
ତନ୍ମୟ ଶିଳ୍ପୀ
କି ଉଦ୍ଦେଶ୍ୟେ କେଉଁ ପ୍ରାଣେ ଧରିଛି ସେ
ତୂଳୀ
ପାରିଲିନି କଳି !

ସଂଶୟ ସନ୍ଦିଗ୍ଧ ପ୍ରାଣେ ଖୋଜିଲି ମୁଁ ଠାବ
ହେଜିବି ମୁଁ କେଉଁ ପରିଚୟେ ?
କହିବି କି ଦିଗପହଣ୍ଡିର !
ଭୀମଟାଙ୍ଗିର !
କି'ବା ଓଡ଼ିଶା ମାଟିର !
ନତୁବା ଭାରତ ଭୂମିର ?

ନା, ନା, ନା,
ସଂକୀର୍ଣ୍ଣତାର ବହୁ ଉର୍ଦ୍ଧ୍ୱରେ
ବିଭାଜନର ବହୁଦୂରେ,
ନିର୍ବିବାଦର ଦିବ୍ୟ ସ୍ପର୍ଶରେ
ସେ'ତ ହଜିଛି, ମଜିଛି
ଆଗ୍ରହ ବଳୟ ଭିତରେ,
ଚିନ୍ତା ଚେତନାରେ
ମଣିଷ ସମାଜର
ଲେସିହେଇ ପ୍ରତିଟି ହୃଦୟରେ
ବିଶ୍ୱବାସୀଙ୍କର ।



Digitized by srujanika@gmail.com

ଭୁବନେଶ୍ୱର:
୨୧. ୨. ୮୭

ଶ୍ରଦ୍ଧେୟ ଦିନନାଥ ବାବୁ,

ଖବରକାଗଜରୁ ଆପଣଙ୍କ ଦୁଇଟି ପୁସ୍ତକର ଉଦ୍ଘାଟନୀ ଉତ୍ସବର ବିବରଣୀ ଧ୍ୟାନରେ ରଖିଥିଲି। ସେଦିନ ମୋ ହାତରେ ଆପଣଙ୍କ ଲିଖିତ ବହିଦୁଇଟି ଧରେଇ ଦେବା ପରେ ମୋତେ କେବଳ ପଢ଼ିବାପାଇଁ ଅନୁରୋଧ କରିଥିଲେ। ମୋ ମତାମତ ପାଇଁ ବୋଧହୁଏ ଆପଣ ଆଶା କରିନଥିବେ। କିନ୍ତୁ, ମୁଁ ମତାମତ ଦେବାକୁ ଚିଠି ଲେଖୁଛି। ମୋର ଗୋଟିଏ ବଡ଼ ବଦଅଭ୍ୟାସ ଥିଲା — ମୋତେ କିଛି ସଂପୂର୍ଣ୍ଣ ଅଭିଭୂତ କରିଦେଲେ ମୋ ମୁହଁରୁ "ଆହା — ବା ବାଃ" ବାହାରି ପଡ଼େ। ସେଥିରେ ଲୋକେ ବାଧାଦେଇ ପାରନ୍ତି ନାହିଁ। ଏବେ ସନ୍ଧ୍ୟାରେ ମୋ ପାଖରେ କେହି ନାହାନ୍ତି — ତେଣୁ ଚିଠିଟି ଲେଖୁଛି। କାଲି ରାତିରେ ଅଧାପଢ଼ି ଶେଷ ପଢ଼ିଥିଲି। ଆଜି ସକାଳରୁ ପୁଣି ଦୁଇଘଣ୍ଟା ଭିତରେ "ଦିଗଦିଗନ୍ତର ଚିତ୍ରମାଲ୍ୟ" ପଢ଼ିସାରିବାରେ ମୋର ମନଲେଖା — ଆପଣ ନିଜ ଜୀବନ କେବଳ ଲେଖିନାହାନ୍ତି — ଆମ ସଂସ୍କୃତିର ଗୋଟିଏ ଅଧ୍ୟାୟ, ପରିଚ୍ଛନ୍ନ ଇତିହାସକୁ ଅତି ନିଛକ, ନିର୍ଭୀକ ଶୈଳୀରେ ଉପସ୍ଥାପନ କରିଛନ୍ତି। ଏ ଆଗରୁ କୌଣସି କଳାକାର ଓଡ଼ିଆ ଭାଷାରେ ଏମିତି ବାସ୍ତବ ଭାବରେ ବର୍ତ୍ତମାନ ଓଡ଼ିଶାର କଳାତ୍ମକ ଭାବନାକୁ ଆଲୋଚନା ବା ସମାଲୋଚନା କରିନାହାନ୍ତି। ଗୋଟିଏ ଦିଗରେ ବାହାଦୁରୀ ମାରୁଥିବା କେତେକ କଳାପ୍ରେମୀଙ୍କ ଓଡ଼ିଶାର କଳା ଉପରେ ଭାଷଣ ଓ ଲେଖା ପଢ଼ିବା ପରେ ଆପଣଙ୍କ ଚିତ୍ରମାଲ୍ୟ ମୋତେ ସଂପୂର୍ଣ୍ଣ ନୂତନ ଲାଗିଲା। ଅନ୍ୟ ଦିଗରେ ଆପଣ କେବଳ ଚିତ୍ରକଳା ନୁହେଁ, ନାଟ୍ୟକଳା, ଚଳଚ୍ଚିତ୍ର, ଐତିହାସିକତା ତଥା ଭାଷା ଓ ସାହିତ୍ୟ ଉପରେ ବହୁଭାବରେ ଆଲୋକପାତ କରିଛନ୍ତି। ଅନେକ ନୂତନ ଦିଗନ୍ତର ସୂଚନା ଦେଇଛନ୍ତି। ସ୍ୱାଧୀନତା ପାଇବାପରେ — ମୋଟେ ପଚାଶବର୍ଷ ଭିତରେ ଆମ ସଂସ୍କୃତିର କିପରି ଅବକ୍ଷୟ ଘଟିଛି, ତାର ବାସ୍ତବ ଚିତ୍ର ମୋତେ ଜୋରରେ ଧକ୍କା ଦେଇଛି। ତାର ଏକ ସ୍ପଷ୍ଟ ସ୍ୱର ଆପଣଙ୍କ ଚିତ୍ରମାଲ୍ୟ ମୋତେ ଶୁଣେଇ ଦେଲା।

ମୁଁ ମୋର ବାଲ୍ୟକାଳରୁ ଓଡ଼ିଶାର ବହୁ ଅଞ୍ଚଳରେ ଅତି ଘନିଷ୍ଠଭାବରେ ବୁଲାବୁଲି କରିଛି। ବିଶେଷକରି ଦେଖୁନଥିଲେ ମଧ୍ୟ ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ସମୃଦ୍ଧ ସାଂସ୍କୃତିକ ବୈଭବ ବିଷୟରେ ମୁଁ ସଚେତନ। ସେ ଦୁଇଟି ଜିଲ୍ଲାର ଜନସ୍ରୋତର ଜନଜୀବନ ସହିତ ମୋର ବ୍ୟକ୍ତିଗତ ସଂପର୍କ ଅଛି। ଜୀବନରେ ଏ ପ୍ରକୃତ ମୋତେ ବହୁଭାବରେ

Digitized by srujanika@gmail.com







ଯାମିନୀ ରାୟଙ୍କଠାରୁ କଲିକତା ଫାଇନ୍ ଆର୍ଟ୍ ଏକାଡ଼େମୀ ପୁରସ୍କାର ଗ୍ରହଣ ଅବସରରେ । ପାଖରେ ଅସିତ ହାଲଦାର ଓ ରାନୁ ମୁଖାର୍ଜୀ ୧୯୬୩

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ରମେଶଚନ୍ଦ୍ର ମହାପାତ୍ର, ହରିଶ୍ଚନ୍ଦ୍ର ଦାସ ଓ ଗ୍ରେସ୍ ମୋର୍‌ଲେଙ୍କ ସହ ପଟଚିତ୍ର ପ୍ରଦର୍ଶନୀରେ, ୧୯୭୨

ଚେନାଇ ଠାରେ ଓ୍ୱା ପକ୍ଷରୁ ଆୟୋଜିତ ଚିତ୍ର ପ୍ରଦର୍ଶନୀରେ ଅଂଶଗ୍ରହଣ କରିଥିବା ଓଡ଼ିଆ ଶିଳ୍ପୀ (ବାମରୁ) ଦିନନାଥ ପାଠୀ, ଶିବ ପାଣିଗ୍ରାହୀ, ଦେବରାଜ ସାହୁ, ବିପିନ ବିହାରୀ ସାହୁ, ବନଜା ଚୌଧୁରୀ, ଚନ୍ଦ୍ରଶେଖର ରାଓ, ବଳଦେବ ମହାରଥୀ, ରାମହରି ଜେନା, ଡି. ନାରାୟଣ ରାଓ, ସୁଧାଂଶୁ ଶେଖର ଶତପଥୀ ଓ କମଳ କୁମାର ସିଂ, ୧୯୯୦

Digitized by srujanika@gmail.com







ବିକ୍ରମ କଳା ବିଦ୍ୟାଳୟରେ ଲେଡ଼ି ରାନୁ ମୁଖାର୍ଜୀଙ୍କୁ ଉପଢୌକନ ବଢ଼େଇ ଦେବା ଅବସରରେ ଅଧ୍ୟାପକ ଦିନନାଥ । ପାଖରେ ସ୍ଥପତି ୱାଇ.ସି. ମହାନ୍ତି ଓ ଅଧକ୍ଷ ଅସିତ ମୁଖାର୍ଜୀ, ୧୯୬୯

କୋଲକାତାର ଏକାଡ଼େମୀ ଅଫ୍ ଫାଇନ୍ ଆର୍ଟ୍ସରେ ପ୍ରଦର୍ଶିତ "ଜଗନ୍ନାଥ ଏବଂ ଓଡ଼ିଆ ଚିତ୍ରଶିଳ୍ପୀ" ଚିତ୍ର ପ୍ରଦର୍ଶନୀର ଉଦ୍‌ଘାଟନ ଉତ୍ସବରେ ଦିନନାଥ ଓ ଲେଡ଼ି ରାନୁ ମୁଖାର୍ଜୀ, ୧୯୮୪

ରାଜ୍ୟ ସଂଗ୍ରହାଳୟରେ ପଟଚିତ୍ର ପ୍ରଦର୍ଶନୀରେ ରାଜ୍ୟପାଳଙ୍କ ପରାମର୍ଶଦାତା କେ.ଟି.ସତାରାୱାଲା ଓ ସଂସ୍କୃତି ସଚିବ ହେରମ୍ବ ନାରାୟଣ ଦାସ ମହାପାତ୍ରଙ୍କ ସହ, ୧୯୭୨

Digitized by srujanika@gmail.com





ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତକଳା କେନ୍ଦ୍ରଠାରେ ଅନୁଷ୍ଠିତ ଦିନନାଥ ପାଠୀଙ୍କ ଏକକ ଚିତ୍ର ପ୍ରଦର୍ଶନୀକୁ ସଂଯୁକ୍ତା ପାଣିଗ୍ରାହୀ ଏବଂ ରଘୁନାଥ ପାଣିଗ୍ରାହୀ ଉଦ୍‌ଘାଟନ କରୁଛନ୍ତି , ୧୯୯୨

ଭାରତ ସରକାରଙ୍କ ସଂସ୍କୃତି ସଚିବ ସୀତାକାନ୍ତ ମହାପାତ୍ରଙ୍କ ସହ, ୧୯୮୮

Digitized by srujanika@gmail.com

ସୀତାକାନ୍ତ ମହାପାତ୍ର

# ଦିନନାଥ ଏକ ରଙ୍ଗର ଚରିତ୍ର

ଦିନନାଥ ପ୍ରକୃଷ୍ଟରେ ରଙ୍ଗର ଚରିତ୍ର । ରଙ୍ଗ ତାଙ୍କ ପାଇଁ ଆଉ କେବଳ କାନ୍‌ଭାସ୍‌ର ଓ ତୂଳୀର କଥା ହୋଇନି । ରଙ୍ଗ ସଂଚରି ଯାଇଛି ଶବ୍ଦକୁ - ଶବ୍ଦମାନେ ଧ୍ୱନିତ ହେବା ସଙ୍ଗେ ସଙ୍ଗେ ରଙ୍ଗ ମାଖିଛନ୍ତି । ଏ ସକଳ ଶବ୍ଦ ଓ ସେମାନଙ୍କର ରଙ୍ଗବୋଳା ମୁହଁ ତଥା ଅଭିବ୍ୟକ୍ତି ପ୍ରସରିଛି ଉପନ୍ୟାସରୁ କବିତା ଯାଏ । ପୁନର୍ନବାରୁ ଚିତ୍ରଶାଳା ଯାଏ । ମୁଁ ତ ଭାବୁଛି ଯେଉଁ ପ୍ରଖର ଗତିରେ ସେ ବର୍ତ୍ତମାନ ସୃଜନଶୀଳ, ଓଡ଼ିଆ ସାହିତ୍ୟକୁ ଏଇ ଦିଗପହଣ୍ଡିର ଡ୍ରଇଁ ମାଷ୍ଟର ଅନେକ କିଛି ଉପହାର ଦେବାକୁ ବାକି ଅଛି ଓ ଏସବୁ ଉପହାର ସମୟକ୍ରମେ ଆସିବ ସେ ବିଷୟରେ ମୁଁ ଗଭୀର ଭାବେ ଆଶାୟୀ । ମୁଁ ମଧ୍ୟ ଆଶାୟୀ ତାଙ୍କର ଅବବୋଧ ଓ ଶବ୍ଦ-ସଂପର୍କ ଆହୁରି ଗଭୀର ହେବ । ଚିତ୍ର ହିଁ ଇମେଜ୍ -ଶବ୍ଦ ମଧ୍ୟ ଇମେଜ୍ । ସାହିତ୍ୟ ଓ ଚିତ୍ରକଳା ସେ ଦିଗରୁ କେତେ ନିକଟତର ।

ଏଇ ଅଳ୍ପଦିନ ତଳେ ପଢୁଥିଲି British Museum ଛାପିଥିବା ଫରାସୀ ଆଧୁନିକ କବିତା ଓ ସମାନ୍ତର ଚିତ୍ରମାନଙ୍କର ଏକ ଅଦ୍‌ଭୁତ ସମାହାର ଓ ଆଲୋଚନା । ଏଠି ଆମର ମଧ୍ୟ ସତୀଶ ଗୁଜରାଲ୍, ଭବେଶ ସାନ୍ୟାଲ୍ ଆମକୁ ରଚନା ଓ ଶବ୍ଦମାଳା ଦେଇ ଗଲିଛନ୍ତି । କାଳକ୍ରମେ ଯତୀନ୍ ମଧ୍ୟ ସେଇଆଡ଼େ ମୋହିଁଛନ୍ତି । ମୁଁ ନିଶ୍ଚିତ, ଦିନନାଥ ଏଇମାନଙ୍କର ଶବ୍ଦ-ରଙ୍ଗର ସଂପର୍କ ସମ୍ବନ୍ଧରେ ସଂପୂର୍ଣ୍ଣ ଅବହିତ ।

ଏଇମାତ୍ର ବମ୍ବେର ଜାହାଙ୍ଗୀର ଆର୍ଟ୍ ଗ୍ୟାଲେରୀରେ ତାଙ୍କର Ganga to Ganges ପ୍ରଦର୍ଶନୀ ହୋଇଯାଇଛି । Catalogue ଓ ଆଲୋଚନା ମୁଁ ଦେଖିଛି । ପ୍ରଦର୍ଶନୀର ପ୍ରଶଂସା ବି ଶୁଣିଛି ।

ନିଜ ଚିତ୍ରକଳା ବ୍ୟତୀତ ଓଡ଼ିଶାର ଚିତ୍ରକଳାର ପରମ୍ପରା ଓ ସେ ସଂପର୍କରେ ନାନାବିଧ ଗବେଷଣା ଓ ପ୍ରକାଶନ କାର୍ଯ୍ୟରେ ସେ ବହୁଦିନୁ ନିଜକୁ ନିୟୋଜିତ କରିଛନ୍ତି । ମୁଁ ତାଙ୍କର ଅଧିକାଂଶ ପ୍ରକାଶନ ଦେଖିଛି । ଏବର୍‌ହାର୍ଡ୍ ଫିସର୍‌ଙ୍କ ସହ ତାଙ୍କର ସଂଯୋଗ ମଣିକାଞ୍ଚନ ପରି ହୋଇଛି । ବାସ୍ତବରେ ଉପରୋକ୍ତ ପ୍ରଦର୍ଶନୀଟି ଏବର୍‌ହାର୍ଡ୍ ଫିସର୍‌ଙ୍କ ଷଷ୍ଠିପୂର୍ତ୍ତି ଉପଲକ୍ଷେ । ଦିନନାଥଙ୍କ ସଂପାଦିତ/ରଚିତ ପୁସ୍ତକମାନଙ୍କ ଉପରେ ସବିଶେଷ ଆଲୋଚନାର ଅବକାଶ ନାହିଁ ।

ମୁଁ ତାଙ୍କର ଉତ୍ତରୋତ୍ତର ବ୍ୟକ୍ତିଗତ ଉନ୍ନତି ଓ ରଙ୍ଗକର୍ମର (ଶବ୍ଦ ଓ ତୂଳୀ ଉଭୟରେ) ଅଧିକରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ସୃଷ୍ଟିଶୀଳତା କାମନା କରୁଛି ।

Digitized by srujanika@gmail.com

ମହାପାତ୍ର ନୀଳମଣି ସାହୁ

# ଦିନନାଥ ଏକ ବହୁମୁଖୀ ପ୍ରାଣବନ୍ତ ପ୍ରତିଭା

୧୯୬୫-୬୬ ମସିହା ବେଳର କଥା । ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ **ଅଧକ୍ଷ ଥାନ୍ତି** ମୋର ପ୍ରିୟ ବନ୍ଧୁ ଉତ୍କଳର ଖ୍ୟାତନାମା କଳାବିତ୍ ଶ୍ରୀ ଅଜିତ କେଶରୀ ରାୟ । ସେ ହିଁ ମୋତେ ଦିନନାଥଙ୍କ ପ୍ରତିଭା ବିଷୟରେ ପ୍ରଥମେ କହିଥିଲେ ଏବଂ ସେତିକି ବେଳରେ ସତକୁ ସତ ଦିନେ ସେ ମୋ ପାଖରେ କେତୋଟି ଛବି ଓ ଖଣ୍ଡିଏ ପୁସ୍ତକ ନେଇ ପହଁଚିଲେ । ଛବିଗୁଡ଼ିକ ତାଙ୍କରି ହାତର ଅଙ୍କା । ମୋତେ ଖୁବ୍ ଭଲ ଲାଗିଲା - ନୂତନତ୍ୱ ବାରି ହୋଇଯାଉଥାଏ । ବହିଟି ଥିଲା ନାନ୍ଦନିକ ତତ୍ତ୍ୱ ଓ କଳା-ତତ୍ତ୍ୱ ସଂପର୍କୀୟ । **ଚିତ୍ରରେ ଭାଷା** ନିଜେ ଲେଖିଛନ୍ତି । ସେ ସବୁ ତତ୍ତ୍ୱ ଉପରେ ତାଙ୍କ ସହ ଆଲୋଚନା କରି ମୁଁ ତାଙ୍କ ଜ୍ଞାନ ଓ ପ୍ରତିଭା ଉଭୟ ପ୍ରତି ବେଶ୍ ମୁଗ୍ଧ ହୋଇଉଠିଲି । ସେତେବେଳେ ସେ ଯୁବକ । ଚେହେରାରେ, ଚାହାଣିରେ, କଣ୍ଠସ୍ୱରରେ ଉଚ୍ଛଳ ପ୍ରାଣଶକ୍ତି ଫୁଟି ଉଠୁଥାଏ । କଳା-ତତ୍ତ୍ୱ ସମ୍ବନ୍ଧେ ତାଙ୍କ ପୂର୍ବରୁ ବିଖ୍ୟାତ ଶିଳ୍ପୀ ଗୋପାଳ କାନୁନ୍‌ଗୋ ଓ ଅନ୍ୟତମ ବିଶିଷ୍ଟ କଳା-ପ୍ରତିଭା ବିନୋଦ ରାଉତରାୟ ଲେଖିଥାନ୍ତି । ଏହି ତରୁଣ ଶିଳ୍ପୀ ପ୍ରତି ମୁଁ ସେହିଦିନୁ ଆକୃଷ୍ଟ ହୋଇପଡ଼ିଲି ।

ଇତିମଧ୍ୟରେ ବହୁବର୍ଷ ଗତ ହୋଇଯାଇଛି । ଶିଳ୍ପୀ ଦିନନାଥ ତାଙ୍କର ସାଂସାରିକ ଜୀବନରେ ଓ କଳା ସାଧନା କ୍ଷେତ୍ରରେ ବହୁ ବାଧାବିଘ୍ନ ଓ ଉତ୍ଥାନ-ପତନ ଦେଇ ଗତି କରିଛନ୍ତି । କେଉଁଠି ହାରି ଯାଇନାହାନ୍ତି । ଦୁର୍ଭାଗ୍ୟ ପାଖେ ନିଜକୁ ସମର୍ପି ଦେଇ ନାହାନ୍ତି । ତାଙ୍କର ଶିଳ୍ପ-ସାଧନା ଓ ଜ୍ଞାନ-ସାଧନା ସହିତ କର୍ମ-ସାଧନା ମଧ୍ୟ ଅବ୍ୟାହତ । ଦେଶବିଦେଶରେ କଳା-ପ୍ରଦର୍ଶନୀ କରି ବହୁ ସୁନାମ ସେ ନିଜ ପାଇଁ ଓ ଦେଶ ପାଇଁ ଅର୍ଜନ କରିଛନ୍ତି ।

କେବଳ କଳା-ସାଧନା ନୁହେଁ, ଆମ ଭାଷା ସାହିତ୍ୟ କ୍ଷେତ୍ରକୁ ମଧ୍ୟ ତାଙ୍କର ଅବଦାନ କମ୍ ନୁହେଁ । ବହୁ ଗଳ୍ପ, ଭ୍ରମଣ କାହାଣୀ ସେ ଲେଖିଛନ୍ତି । **ଦିଗପହଣ୍ଡିର ହ୍ରଇଁ ମାଷ୍ଟ୍ରେ, ଭବଘୁରା ଭବନାଥ, ସୁନାମାଛ** ସେଗୁଡ଼ିକ ମୁଁ ପଢ଼ିଛି ଓ ମୁଗ୍ଧ ହୋଇଛି ତାଙ୍କର ବର୍ଣ୍ଣନା ଶୈଳୀରେ, ଭାବ ଓ ଚିନ୍ତାବିନ୍ୟାସରେ । ଏଇ ଦୁଇତିନି ବର୍ଷ ଭିତରେ ସେ ତିନିଖଣ୍ଡ ଅଭିନବ ଉପନ୍ୟାସ ଲେଖିଛନ୍ତି । ସେଗୁଡ଼ିକୁ ମଧ୍ୟ ମୁଁ ମୁଗ୍ଧ ହୋଇ ପାଠ କରିଛି । ବିଷୟବସ୍ତୁ ଯେତିକି ବାସ୍ତବ, ସେତିକି ମଧ୍ୟ ଉଦ୍‌ଭଟ କଳ୍ପନା ପ୍ରସୂତ ଅଭୂତପୂର୍ବ ଭାବ ଓ ଚିନ୍ତାର ସାରସତ ବିଳାସ । ତାଙ୍କର ଉପନ୍ୟାସଗୁଡ଼ିକ ଭିତରେ ଫୁଟି ଉଠିଛି ତାଙ୍କର ଦାର୍ଶନିକର ଦୃଷ୍ଟି । ଏବଂ ବିଷୟ-ବର୍ଣ୍ଣନା କରିବା ବେଳେ ସେ ଜଣେ ଚିତ୍ରକର ଭଳି ସତେକି ତୂଳୀ ଓ ରଙ୍ଗଦ୍ୱାରା ଦୃଶ୍ୟ ପରେ ଦୃଶ୍ୟ ଆଙ୍କି ଚାଲିଛନ୍ତି । ଚିତ୍ରଶିଳ୍ପ ଏକ ନିର୍ବାକ କଳା । କିନ୍ତୁ ସାହିତ୍ୟ ଓ ସଙ୍ଗୀତ ଉଭୟେ ହେଲେ ସବାକ୍ କଳା । ଶ୍ରୀ ପାଠୀ ତାଙ୍କ ଲେଖା ଭିତରେ କାବ୍ୟ ଓ ସ୍ୱର ସହିତ ଏହି ନୀରବ ଅଙ୍କନକୁ ମିଶାଇ ଦେଇପାରିଛନ୍ତି ତାଙ୍କର ଅପୂର୍ବ ବିଜ୍ଞାଣୀ ପଣରେ ।

ସବୁଠାରୁ ବଡ଼ କଥା ହେଉଛି ତାଙ୍କର ଭାଷାଜ୍ଞାନ ଓ ପ୍ରୟୋଗ । ମୁଖ୍ୟତଃ - ସେ ଗଞ୍ଜାମ ଜିଲ୍ଲାର ମୌଖିକ ଭାଷା ବେଶୀ ବ୍ୟବହାର କରିଛନ୍ତି ଏବଂ ଏହି ଭାଷାଶୈଳୀ ତାଙ୍କର ବକ୍ତବ୍ୟକୁ ଦେଇଛି ଏକ ନୂତନ ଶକ୍ତି ଓ ଅଭିବ୍ୟକ୍ତି । ଦେଇଛି ମଧ୍ୟ ଏକ ଚମତ୍କାର ବ୍ୟଂଜନା । ପାଠୀଙ୍କ ପୂର୍ବରୁ ଗଞ୍ଜାମ ଜିଲ୍ଲାର ଏହି ଭାଷା-ବିଭବ ଆମ ସାହିତ୍ୟ ଭିତରକୁ ଏତେ ସଫଳତାର ସହିତ କେହି ଆଣିନାହାନ୍ତି । ଗଞ୍ଜାମ ଅଞ୍ଚଳର ଲୋକ-ପ୍ରଚଳିତ ଭାଷାର ଏକ ସ୍ୱତନ୍ତ୍ର ମାଧୁର୍ଯ୍ୟ ରହିଛି ଏବଂ ଏକ ସ୍ୱତନ୍ତ୍ର ଅର୍ଥବାହକତା ମଧ୍ୟ ରହିଛି । ଶ୍ରୀ ପାଠୀ ଭାଷାର ଏହି ସାମର୍ଥ୍ୟକୁ ଧରି ପାରିଛନ୍ତି । ତେଣୁ ତାଙ୍କ ଗଳ୍ପ ଉପନ୍ୟାସର ଭାଷାଶୈଳୀ ହୋଇଉଠିଛି ଏତେ ମନୋରମ ଓ ଏତେ ଶକ୍ତିଶାଳୀ । ଆହୁରି ଅନେକ ଦୃଶ୍ୟ ତାଙ୍କ ତୂଳୀରେ ପ୍ରକାଶିତ ହେବା ପାଇଁ ଅପେକ୍ଷା କରିଛନ୍ତି । ଅନେକ ଭାବ, ଚିନ୍ତା ଓ ଆବେଗ ଅନୁଭୂତି ମଧ୍ୟ ତାଙ୍କ ଲେଖନୀରେ ପ୍ରକାଶ ପାଇବାକୁ ଅପେକ୍ଷା କରିଛନ୍ତି । ମା ଉତ୍କଳ ଭାରତୀ ସାରଳା ତାଙ୍କ ପ୍ରତି ସଦୟା ଅଛନ୍ତି । ସନ୍ତୁଷ୍ଟ ମଧ୍ୟ ଅଛନ୍ତି । ପ୍ରଭୁ ଜଗନ୍ନାଥ ତାଙ୍କୁ ଯଥେଷ୍ଟ ସ୍ୱାସ୍ଥ୍ୟ ଓ ପରମାୟୁ ଦିଅନ୍ତୁ ଓ ସେ ଆମ ସାହିତ୍ୟ ସଂସ୍କୃତି କ୍ଷେତ୍ରକୁ ତାଙ୍କର ବିଚିତ୍ର ପ୍ରତିଭା ଦ୍ୱାରା ଆହୁରି ସମୃଦ୍ଧ କରନ୍ତୁ - ମୁଁ ଏତିକି କାମନା ଓ କଲ୍ୟାଣ କରେ ।

Digitized by srujanika@gmail.com

ଶ୍ରୀ ପାଠୀ ସବୁବେଳେ ଉତ୍ସାହପୂର୍ଣ୍ଣ ଥାନ୍ତି । ସର୍ବଦା ଉଦ୍ୟମଶୀଳ ଏହି ପ୍ରତିଭାବାନ ଚିତ୍ରଶିଳ୍ପୀ ଓ କଥାଶିଳ୍ପୀଙ୍କ ସଂପର୍କରେ ଆସିଲେ ବିଶ୍ୱାସ ଆସେ ଯେ - ଜୀବନରେ ପ୍ରତିଷ୍ଠା ବଡ଼ କଥା ନୁହଁ । ସାଧନା ହିଁ ବଡ଼କଥା । ପ୍ରତିଷ୍ଠା ସାଧନା ପଛରେ ଗୋଡ଼ାଇଥାଏ । ମାତ୍ର ସାଧନା ପ୍ରତିଷ୍ଠା ପାଖେ ଅଟକି ରହେନାହିଁ । ଶ୍ରୀ ପାଠୀ ଜଣେ ଅଗ୍ରଗତିଶୀଳ ଧାବମାନ ସାଧକ । ତାଙ୍କ ସାଧନା ଓ ଜୀବନାଲେଖ୍ୟ ଆଗର ଯୁବ ପ୍ରତିଭାମାନଙ୍କର ଆଦର୍ଶ ହେଉ ।



Digitized by srujanika@gmail.com

**ଶାନ୍ତନୁ କୁମାର ଆଚାର୍ଯ୍ୟ**

# ଓଡ଼ିଶାର ଗର୍ବ ଓ ଗୌରବ ଦିନନାଥ

ପ୍ରସିଦ୍ଧ ଚିତ୍ରଶିଳ୍ପୀ ଦିନନାଥ ପାଠୀଙ୍କୁ ମୁଁ ଦିନେ ପଚାରିଲି, ଦିନନାଥ ! ତୁମେ ପାରଳାଖେମୁଣ୍ଡି ଗଜପତି କଲେଜର ଛାତ୍ର ଥିଲ ? କାରଣ ମୁଁ ତମକୁ ଦେଖିବା ଦିନୁ ବରାବର ଭାବି ଆସିଛି - ତମ ସାଙ୍ଗେ ସେଠି ମୋର ପ୍ରଥମ ପରିଚୟ ? ମୁଁ ସେ କଲେଜରେ ୧୯୫୮ ରୁ ୧୯୬୧ ଅଧ୍ୟାପନା କରୁଥିଲି ତ !

ଦିନନାଥଙ୍କ ଉତ୍ତର ଆଶ୍ଚର୍ଯ୍ୟ କଲା ମତେ । ସେ ପାରଳାଖେମୁଣ୍ଡି କଲେଜର ଛାତ୍ର ନଥିଲେ ବୋଲି କହିବା ପରେ ମୁଁ ପୁଣି ପଚାରିଲି, ବିଜେବି କଲେଜ, ଭୁବନେଶ୍ୱରରେ ?

ନା - ମୁଁ ଦିବାଧାୟୀ ଛାତ୍ର ନଥିଲି । ବି.ଜେ.ବି ସାନ୍ଧ୍ୟ କଲେଜରେ ୧୯୬୬ ରୁ ୬୭ ମୁଁ ବି.ଏ ପଢୁଥିଲି । ତାଙ୍କର ଏ ଉତ୍ତର ମତେ ଆହୁରି ବିସ୍ମିତ କଲା । କାରଣ ପାରଳା ପରେ ବି.ଜେ.ବି କଲେଜରେ ମୋର ଅଧ୍ୟାପନା ସମୟରେ (୧୯୬୧ ରୁ ୧୯୬୯) ମଧ୍ୟ ସେ ବି ମୋର ଛାତ୍ର ନଥାଇ ସୁଦ୍ଧା ତାଙ୍କୁ ଏଯାବତ୍ ମୁଁ ସେଇ ଦୃଷ୍ଟିରେ ଦେଖି ଆସୁଥିଲି ।

ତେବେ ଏଇ ଅଦ୍ଭୁତ ପ୍ରତିଭାବନ୍ତ, ଓଡ଼ିଶାର ବରପୁତ୍ର ଶିଳ୍ପୀଙ୍କୁ ମୁଁ ଏପର୍ଯ୍ୟନ୍ତ କାହିଁକି ମନେ କରିଆସୁଥିଲି ଦକ୍ଷିଣ ଓଡ଼ିଶାର ସେଇ ରହସ୍ୟମୟୀ ପ୍ରକୃତି ଓ ସଂସ୍କୃତିର ଗନ୍ତାଘର ପାରଳାଖେମୁଣ୍ଡିର ପରିପ୍ରେକ୍ଷୀରେ ? ଏହା କ'ଣ ଏକ ମାନସିକ ବିଭ୍ରାନ୍ତି କେବଳ ?

ଦିନେ ଦିନନାଥ ତାଙ୍କ ରଚିତ ଏକ ସଦ୍ୟ ପ୍ରକାଶିତ ଉପନ୍ୟାସ **ପୁନର୍ନବା** ଉପହାର ଦେବାକୁ ଆସିଲେ ମୋ ଘରକୁ । ପୂର୍ବରୁ ମୁଁ ତାଙ୍କର ଅନ୍ୟ କେତୋଟି ସାହିତ୍ୟକୃତି ସହିତ ପରିଚିତ ଥିଲି । ସେଥିରେ ଥିଲା **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** ଯାହା ତାଙ୍କର ଆତ୍ମଜୀବନୀ ଏବଂ ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଦ୍ୱାରା ପୁରସ୍କୃତ ଆଉ **ସାୟୋନାରା** ଯାହା ତାଙ୍କର ପ୍ରଥମ ବୃହତ୍ ଉପନ୍ୟାସ ତାଙ୍କ ଶିଳ୍ପୀ ଜୀବନର ଅଭିଜ୍ଞତାଲବ୍ଧ ଜାପାନୀ ବିଷୟବସ୍ତୁ ଆଧାରିତ । ଏହା ଛଡ଼ା **ସୁନାମାଛ** (ଗଳ୍ପ) ଆଉ **ନୀଳହ୍ରଦର ଚିତ୍ରକର** (ସୁଇଜରଲ୍ୟାଣ୍ଡର ପୃଷ୍ଠଭୂମି ଆଧାରିତ ଭ୍ରମଣ କାହାଣୀ) ଇତ୍ୟାଦି ତାଙ୍କର ମୌଳିକ ରଚନାରୁ ମୁଁ ତାଙ୍କର ସୃଜନଶୀଳ କାବ୍ୟଶିଳ୍ପୀର ଚେତନାର ପରିଚୟ ପାଇଥିଲି । କିନ୍ତୁ, ସେପର୍ଯ୍ୟନ୍ତ ଦିନନାଥଙ୍କ ଚିତ୍ରଶିଳ୍ପୀର ବ୍ୟକ୍ତିତ୍ୱ ହିଁ ବରାବର ଆଚ୍ଛନ୍ନ କରିରଖିଥିଲା ମୋର ପାଠକୀୟ ବିଚାରଧାରାକୁ ଯାହା ଫଳରେ ସାହିତ୍ୟିକ ଦିନନାଥ ତଥାପି ଅବଗୁଣ୍ଠିତ ରହୁଥାନ୍ତି ମୋ ଦୃଷ୍ଟିରେ ।

କିନ୍ତୁ ଦିନେ ତାଙ୍କର ଏ ଅବଗୁଣ୍ଠନ ମୋ ଆଖିରୁ ସଂପୂର୍ଣ୍ଣ ଅପସାରିତ ହୋଇଗଲା ଏବଂ ହଠାତ୍ ଦିନନାଥଙ୍କ ଉଭୟ କଳାଶିଳ୍ପୀ ଆଉ କାବ୍ୟଶିଳ୍ପୀର ସମ୍ମିଳିତ ରୂପ ବା ସ୍ୱରୂପ ଦିଶିଗଲା ଯେଉଁଦିନ ମୁଁ ତାଙ୍କର ଦ୍ୱିତୀୟ ଉପନ୍ୟାସ **ପୁନର୍ନବା** ଆମୂଳଚୂଳ ପାଠ କରି ତାଙ୍କ ଶିଳ୍ପୀମାନସର ଚାବିକାଠି ବା 'ଆର୍କିଟାଇପ୍'ଟିକୁ ସ୍ପଷ୍ଟତଃ ଠାବ କରିବାକୁ ସକ୍ଷମ ହେଲି ।

ଏ ଉପନ୍ୟାସର କାନ୍‌ଭାସ୍‌ର ବ୍ୟାପକତା ସମଗ୍ର ଦକ୍ଷିଣ ଓଡ଼ିଶାର ଅନ୍ତତଃ ହଜାରେ ବର୍ଷର ସାଂସ୍କୃତିକ ଇତିହାସର ଉର୍ବର କ୍ଷେତ୍ରକୁ ଆବୃତ କରି ପତ୍ରେ ପତ୍ରେ ଛତ୍ରେ ଛତ୍ରେ ପ୍ରକଟିତ କରୁଛି ଏକ ଯାଦୁକାରୀ ମହିମା ଯାହା ମତେ ସମ୍ମୋହିତ କରିଥିଲା ଦିନେ ପାରଳାଖେମୁଣ୍ଡିର ଉପକଣ୍ଠରେ ପ୍ରବାହିତ ଚିତ୍ରକାବ୍ୟ ତୁଲ୍ୟ ନଦୀ ମହେନ୍ଦ୍ରତନୟା ତଟରେ । ସେଇଠି ମୁଁ ଭେଟିଥିଲି ମୋର ଭାଗ୍ୟଦେବୀ ବାଗ୍‌ଦେବୀଙ୍କୁ ଯେ ଇଙ୍ଗିତରେ କହିଥିଲେ, ତୁ ବିଜ୍ଞାନ ପଢିକୁ ବୈଜ୍ଞାନିକ ହେବାକୁ ନୁହେଁ - ଅକ୍ଷର ବ୍ରହ୍ମର ଉପାସନା ଦ୍ୱାରା ବ୍ରହ୍ମୋପଲବ୍ଧି ଲାଭ କରିବାକୁ ।

Digitized by srujanika@gmail.com

ପରେ ପରେ ମୁଁ ପଡ଼ିଲି ପାରଳାର ପ୍ରେମରେ ଅର୍ଥାତ୍ ଏଇ ଅଞ୍ଚଳର ମହାପ୍ରକୃତି କୋଳରେ ପ୍ରାଗୈତିହାସିକ ଯୁଗରୁ ଉଦ୍‌ବର୍ତ୍ତିତ ମାନବୀୟ ଚିତ୍ତବୃତ୍ତିର ଶ୍ରେଷ୍ଠ ପରାକାଷ୍ଠା - ସେ ଅଞ୍ଚଳ ବ୍ୟାପୀ ମଠ ବାଡ଼ି, ମନ୍ଦିରର ଅନୁଷ୍ଠାନଗୁଡ଼ିକୁ ଆଶ୍ରୟ କରି ସମୃଦ୍ଧିବନ୍ତ କ୍ଲାସିକାଲ୍, ମ୍ୟାନରିଷ୍ଟ ଏବଂ ବାରୋକୀୟ ଯୁଗମାନଙ୍କର ଚିତ୍ରଶିଳ୍ପ, ମୂର୍ତ୍ତିତତ୍ତ୍ୱ, ସଙ୍ଗୀତ, ନୃତ୍ୟ ଏବଂ ବୈଷ୍ଣବୀୟ ପରମ୍ପରାର କାଳଜୟୀ ଅଭିବ୍ୟକ୍ତି ସମୂହର ଅନ୍ୱେଷଣରେ ।

ଶିଳ୍ପୀ ଦିନନାଥଙ୍କ **ପୁନର୍ନବା** ଉପନ୍ୟାସରୁ ହିଁ ମତେ ସେଇ ମନସ୍ତାତ୍ତ୍ୱିକ ବିଭ୍ରାନ୍ତିର ସମାଧାନ ମିଳିଲା । ମୁଁ କାହିଁକି ତାଙ୍କୁ ପାରଳା ସହିତ ଯୋଡ଼ି ମୂଳରୁ ଦେଖି ଆସୁଥିଲି ତା'ର ଉତ୍ତର ମିଳିଲା ମତେ ଏଇ ଉପନ୍ୟାସଟି ପଢିବା ପରେ ।

ଦିନନାଥ ଜଣେ ଚିତ୍ରଶିଳ୍ପୀ ଭାବେ ଓଡ଼ିଶାର ମନ୍ଦିରଗାତ୍ରରେ ଉତ୍କୀର୍ଣ୍ଣ ପ୍ରସ୍ତରକଳାର ଅନୁଶୀଳନରେ ବହୁ ଗବେଷଣାତ୍ମକ ନିବନ୍ଧ ରଚନା କରି ବିଶ୍ୱବିଖ୍ୟାତ । କିନ୍ତୁ, ଅନ୍ତର ଭିତରେ ସେ ଜଣେ ମାଧୁର୍ଯ୍ୟବାଦୀ ବୈଷ୍ଣବ ଚେତନାର ବ୍ୟକ୍ତି ଏବଂ ଏଇ ଚେତନା ହିଁ ତାଙ୍କ ଶିଳ୍ପୀମାନସର ସଂଘଟକ । ତାହା ହିଁ ତାଙ୍କୁ ତାଙ୍କ ଚିତ୍ରଶିଳ୍ପ ପାଇଁ 'ମୋଟିଫ୍' ଯୋଗାଏ । ଏହା ସ୍ପଷ୍ଟରୂପେ ଧରିହୁଏ ତାଙ୍କ ରଚିତ **ପୁନର୍ନବା** ଉପନ୍ୟାସର ସାଙ୍କେତିକ ମୁଖବନ୍ଧର ଅଭିବ୍ୟକ୍ତିରୁ । ସେ ଉଲ୍ଲେଖ କରିଛନ୍ତି ସେଥିରେ - ପୁନର୍ନବାରୁ ଜଣେ ଓଡ଼ିଆ ଶିଳ୍ପୀର ଅବବୋଧର କଥା । ଚିତ୍ରଭାଷାର କଥା କବିଭାଷାରେ । ଅନୁଭୂତିର ଭାଷାନ୍ତର । ଆମ ସାହିତ୍ୟ ପରମ୍ପରାରେ ଚିତ୍ରଭାଷା ବ୍ୟତିରେକେ କାବ୍ୟଭାଷାର ଉନ୍ମେଷ ନଥିଲା ବୋଲି ଜାଣିଲା ପରେ ଏଠି ଏ ଉଭୟଙ୍କୁ ଏକା ସାଙ୍ଗରେ ଅବବୋଧ କରିବାର ପ୍ରଚେଷ୍ଟା ।

ବାସ୍ତବିକ ଚିତ୍ରଭାଷା ବ୍ୟତିରେକେ କାବ୍ୟଭାଷା ନାହିଁ । କବି ହିଁ ଜଣେ ଚିତ୍ରକର । କେବଳ ଉପାଦାନ ଉଭୟଙ୍କ ପାଇଁ ଭିନ୍ନ ଭିନ୍ନ ।

ଦିନନାଥ ଏ ଉଭୟ ବିଦ୍ୟାରେ ଧୁରନ୍ଧର । ଷାଠିଏ ବର୍ଷ ଭିତରେ ସେ ଆମକୁ ଦେଇଛନ୍ତି ଅଶେଷ ଉପହାର - ଚିତ୍ର ଏବଂ ଚିନ୍ତା ଉଦ୍ରେକକାରୀ ବହୁ ବିଦଗ୍ଧ କାବ୍ୟିକ କୃତି ମଧ୍ୟରେ । କିନ୍ତୁ ମୂଳତଃ ସେ ଜଣେ ମାଧୁର୍ଯ୍ୟବାଦୀ ବୈଷ୍ଣବୀୟ ଚେତନାର ମଣିଷ । ଯଥାର୍ଥରେ ସେ ତାଙ୍କର ଜନ୍ମମାଟି - ଦକ୍ଷିଣ ଓଡ଼ିଶାର ମୌଳିକ ସାଂସ୍କୃତିକ ଚେତନାର ପ୍ରତିନିଧିତ୍ୱକାରୀ ଚିତ୍ରକର ଓ କବି ।



Digitized by srujanika@gmail.com

ସୌରୀନ୍ଦ୍ର ବାରିକ

## ବନ୍ଧୁ ଦିନନାଥ

ବହୁ ବିଳମ୍ବରେ ଦିନନାଥଙ୍କ ସହ ମୋର ପରିଚୟ । ବିଳମ୍ବରେ ହେଲେ ବି ସେ ବର୍ତ୍ତମାନ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ଏବେ ସେ ଭୁବନେଶ୍ୱରରେ ଥିଲେ ଏମିତି ଗୋଟିଏ ଦିନ ନାହିଁ ଯେଉଁଦିନ ତାଙ୍କ ସହ ମୋର ଦେଖା ହେଉନାହିଁ । ଦୁହେଁ ବସି ଚା ପିଉ, ଗପ କରୁ, ପୁଣି ଗୁଲିଖଟି ମାରୁ । ସେ ଜଣେ ପ୍ରତିଷ୍ଠିତ ଚିତ୍ରଶିଳ୍ପୀ, ମାତ୍ର ସାହିତ୍ୟକୁ କେନ୍ଦ୍ରକରି ତାଙ୍କ ସହ ମୋର ଅନ୍ତରଙ୍ଗତା । ବୋଧହୁଏ ୧୯୯୭/୯୮ ସାଲ ହେବ । ତାଙ୍କ **ସାୟୋନାରା** ବହିକୁ ନେଇ ଆମର ଆଲୋଚନା । ଆଲୋଚନାରୁ ଯୁକ୍ତି ତର୍କ ଏବଂ ସେଇଥିରୁ ବନ୍ଧୁତା । ତାଙ୍କ ସବୁ ବହିର ପାଣ୍ଡୁଲିପିର ପାଠକ ମୁଁ । ପାଣ୍ଡୁଲିପି ପଢ଼ି ମୁଁ ମୋର ଛୋଟିଆ ମନ୍ତବ୍ୟ ଦିଏ । ତାକୁ ସେ ବଡ଼ ଉଦାରତାର ସହ ଗ୍ରହଣ କରନ୍ତି । ତାଙ୍କର ଏ ଉଦାରତା ମୋର ଆତ୍ମବିଶ୍ୱାସ ବଢ଼ାଇଦିଏ । ଅନ୍ୟ ଜଣକ ଭିତରେ ଥିବା ଗୁଣକୁ କାଢ଼ି ପାରିବାର ଦକ୍ଷତା ପାଠୀଙ୍କର ଅଛି । ଏହା ତାଙ୍କ ଶିଳ୍ପୀଗୁଣର ଗୋଟିଏ ବିଶେଷ ଦିଗ । ଏହି ଗୁଣ ନେଇ ସେ ତାଙ୍କର ଚରିତ୍ରଗୁଡ଼ିକ ଭିତରକୁ ପଶନ୍ତି ଏବଂ ଚରିତ୍ରର ନିଜସ ଅବଚେତନ ମନରେ ଗୁମ୍ଫିତ ଥିବା ଗୁଣଗୁଡ଼ିକୁ ପଦାକୁ ଆଣି ପାରନ୍ତି । ଏହି ଗୁଣ ଯୋଗୁଁ ତାଙ୍କ ଚରିତ୍ର ଗୁଡ଼ିକ କେବଳ ବାସ୍ତବ ହୁଅନ୍ତି ନାହିଁ, ଜୀବନ୍ତ ହୋଇ ଉଠନ୍ତି । ଏଥିପାଇଁ ମୋର ତାଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ।

ମୋ ମତରେ ତାଙ୍କ ଲେଖାର ପ୍ରଧାନ ଗୁଣଟି ହେଲା କଳାର ଜୀବନକୁ ଧରି ଜୀବନର କଳାକୁ ବୁଝିବା । ଏହାହିଁ ବୋଧହୁଏ ତାଙ୍କ **ପୁନର୍ନବା** ଉପନ୍ୟାସ ମଂଜକଥା । ସେ ପୁସ୍ତକରେ ଥିବା ଚରିତ୍ରମାନଙ୍କ ଭିତରୁ ଗୁରୁତ୍ୱପୂର୍ଣ୍ଣ ଚରିତ୍ର ଗୁଡ଼ିକ ହେଉଛନ୍ତି ସେଇ ପିତୁଳି ଗୁଡ଼ିକ । ଯେଉଁଠି ଉଭୟ କଳା ଓ ଜୀବନ ସମନ୍ୱିତ । ମୋ ମତରେ ଏହା ତାଙ୍କର ଶ୍ରେଷ୍ଠ ଉପନ୍ୟାସ । ଏଥିରେ କଳାକୁ ସେ ଯେମିତି ପ୍ରାଣବନ୍ତ କରିଛନ୍ତି ସେହିପରି ଜୀବନର ରହସ୍ୟ ପୁଣି ସଂପର୍କର ଗୂଢ଼ତାକୁ ଧରିବାକୁ ଚେଷ୍ଟା କରିଛନ୍ତି । କଳା ଆଉ ଜୀବନ ଭିତରେ ତ ଗୋଟିଏ ସଂପର୍କ । ତାହା ରହସ୍ୟର । ଯେଉଁ ରହସ୍ୟକି ବାସ୍ତବତାର ସତ୍ୟଶୀଳତା ଭିତରେ ଧରା ଦେଇଥାଏ । ଏହି ରହସ୍ୟକୁ ଧରିବାକୁ ଯାଇ ସେ ଶବ୍ଦମାନଙ୍କର ସବୁ ସଂଭାବନାକୁ ବିନିଯୋଗ କରିବାର ଚେଷ୍ଟା କରିଛନ୍ତି । ଏହାହିଁ ତାଙ୍କ ଲେଖାର ବିଶେଷତ୍ୱ । ସେ ଆମ ଓଡ଼ିଆ ସାହିତ୍ୟର ଶବ୍ଦ ସମ୍ଭାରକୁ ସମୃଦ୍ଧ କରିଛନ୍ତି । ସେ କେବଳ ରଙ୍ଗର ଶିଳ୍ପୀ ନୁହଁନ୍ତି ଶବ୍ଦର ବିଭିନ୍ନ ରଙ୍ଗରେ ମନର ଭାବକୁ ଆଙ୍କିବାକୁ ଚେଷ୍ଟା କରିଛନ୍ତି । ଏଥିପାଇଁ ମୁଁ ତାଙ୍କୁ ଧନ୍ୟବାଦ ଜଣାଇବି ।

ତାଙ୍କ ଗଦ୍ୟର ଆଉ ଗୋଟିଏ ବିଶେଷ ଦିଗ ଉନ୍‌ମୋଚିତ ହୁଏ ତାଙ୍କ ଆତ୍ମ ଜୀବନୀମାନଙ୍କରେ । ବାସ୍ତବତା ପୁଣି ଏତେ କାଳ୍ପନିକ ହୋଇପାରେ ଅର୍ଥାତ୍ ଡହଡହ ସତ ଯେମିତି କଳ୍ପନାର ମାୟା ସୃଷ୍ଟି କରିପାରେ ଏବଂ ଏକ ଅପୂର୍ବ ସୌନ୍ଦର୍ଯ୍ୟ ସୃଷ୍ଟି କରିପାରେ ଏଗୁଡ଼ିକ ତାର ନମୁନା । ତାଙ୍କ ଆତ୍ମଜୀବନୀରେ କେବଳ ସତ ଏବଂ ସତ । ସବୁ ଘଟଣା ସତ, ସବୁ ଚରିତ୍ର ସତ ଅଥଚ ବର୍ଣ୍ଣନାର ଯାଦୁ ସେଗୁଡ଼ିକରେ କଳ୍ପନାର ପୁଟ ଏମିତି ମାରେ ଯେ ତାହା କାବ୍ୟିକ ହୋଇଯାଏ । ଯେଉଁ କାବ୍ୟିକତା ଗଦ୍ୟପଣକୁ ସବୁଠୁ ସୁନ୍ଦର ଭାବରେ ପ୍ରକାଶ କରିଥାଏ । ଆତ୍ମଜୀବନୀର କେତେ କେତେ ଚରିତ୍ର ତାଙ୍କୁ ଘେରି ରହିଚି, ମାତ୍ର ମୋତେ ସବୁଠୁ ବେଶୀ ଆକର୍ଷିତ କରିଛି ତାଙ୍କ ବାପା ସେଇ ପୁଞ୍ଜିକର୍ଯ୍ୟାର ଫକୀର ଚରିତ୍ରଟି । ଚରିତ୍ରଟି କେତେ ବାସ୍ତବ ଆଉ ତାର ବାସ୍ତବତା ଯୋଗୁ ଲାଗେ କେବେ କେବେ କାଳ୍ପନିକ । କଳ୍ପନା ଆଉ ବାସ୍ତବତାର ଅନ୍ତରଙ୍ଗ କୋଳାକୋଳି ସେଇ

Digitized by srujanika@gmail.com

ଚରିତ୍ରଟି । ଏହାରି ଭିତରେ କାବ୍ୟିକତା, ପୁଣି ହାସ୍ୟରସର ଉଦ୍ଦାମତା । ପାଠୀଙ୍କ ଲେଖାରେ ହାସ୍ୟରସର ଛଳ ଛଳ ବାହ୍ୟତା ନୁହେଁ, ଏହା ଅନ୍ତରୀଣ, ଗୁମ୍ଫିତ । ତେଣୁ ଏହା ବର୍ଣ୍ଣନାକୁ ଏତେ ଆକର୍ଷଣୀୟ କରିପାରେ । **ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ** ପାଖରୁ **ରୂପଜୀବୀର ଡାଏରୀ** ପର୍ଯ୍ୟନ୍ତ ସବୁ ଲେଖାରେ ଏହି ସତ୍ୟ । ସତ୍ୟ ଏବଂ କଳ୍ପନାର ସନ୍ତୁଳନ ଭାରି ଚମତ୍କାର । ଏହା ଆତ୍ମଜୀବନୀର ଏକ ବିଶେଷଗୁଣ । ଫକୀରମୋହନୀୟ ଧାରାକୁ ଏହି ଲେଖାସବୁ ଆଉ ଗୋଟିଏ ପାଦ ଆଗକୁ ବଢ଼େଇ ପାରିଛନ୍ତି । ଏହି ଲେଖାଗୁଡ଼ିକ ପାଠୀଙ୍କର ବାହ୍ୟତା ସହ ସଂପର୍କ ଓ ସଂଘର୍ଷ କଥା କେବଳ କହନ୍ତି ନାହିଁ, ଏମାନେ ତାଙ୍କ ଚରିତ୍ରର ଛବିଳତାକୁ ପ୍ରକାଶ କରନ୍ତି । ମୋତେ ଲାଗେ ଯେମିତି ତାଙ୍କ ବର୍ଣ୍ଣନାଚାତୁରୀ ବି ତାଙ୍କ ଚରିତ୍ରର ଗୋଟିଏ ଦିଗ ।

ଦିନନାଥଙ୍କ ଲେଖାର ବଡ଼ଗୁଣ ହେଲା ତାଙ୍କ କାବ୍ୟିକତା । ସେ କବିତା ଲେଖିଛନ୍ତି । ତାଙ୍କର ତିନୋଟି କବିତା ବହି ପ୍ରକାଶିତ । ଏ ବହି ତିନୋଟିରେ କେତେଗୁଡ଼ିଏ ସୁନ୍ଦର କବିତା ଅଛି । ତାଙ୍କ କବିତାର ବିଶେଷତ୍ୱ ହେଲା ତାର ସ୍ୱଚ୍ଛନ୍ଦ ସାବଲୀଳତା । ଏହା ସହ ମିଶିଛି ସୂଚନା ଧର୍ମିତା । ଆବେଗର ଶ୍ରାବଣୀ ଧାରା କବିତାଗୁଡ଼ିକ ବେଶ୍ ସଂଯମିତ । ଏହି ସଂଯମ ପାଠୀଙ୍କ ଲେଖାର ପ୍ରାଣକେନ୍ଦ୍ର । ଗଦ୍ୟ ପଢ଼ିଲେ ଲାଗିବ ଯେମିତି ଗୁଡ଼ାଏ କହୁଛନ୍ତି, ମାତ୍ର ପଢ଼ି ସାରିଲେ ଅନୁଭବ ହେବ, ଯେମିତି କହିବାର କହିଛନ୍ତି, ଅନେକ ବାଗରେ  ସୂଚାଇଛନ୍ତି । ମୋତେ ତ ଡର ଲାଗେ କବିତାରେ ସେ ମୋର ପ୍ରତିଦ୍ୱନ୍ଦ୍ୱୀ ହେଇଯିବେ । ତାଙ୍କର ସୃଷ୍ଟିର ବିରାଟ ମଲ୍ । ଗଦ୍ୟ, ପଦ୍ୟ, ରୁଚି ସେଠି ଅଛି । ମୁଁ ତ ରାସ୍ତାର ଜଣେ ବିକାଳି ପରି ଖାଲି କବିତାକୁ ଧରି ବସିଛି । ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ହେଲେ ମୁଁ ଚାରିପାଞ୍ଚିରୁ ଗଲି । କିନ୍ତୁ ସିଏ ମୋର ପ୍ରତିଦ୍ୱନ୍ଦ୍ୱୀ ହେଲେ ସବୁଠାରୁ ବେଶୀ ଖୁସି ମୁଁ ହେବି । ତାଙ୍କ କବିତା ଗୁଡ଼ିକ ତାଙ୍କର ସ୍କେଚ୍ ପରି । ଖାଲି ଟିକିଏ ସୂଚନା । ମାତ୍ର ଏହି ସୂଚନା ଅର୍ଥାତ୍ ଗୋଟିଏ ଗପ କେତେ ଯେ ଶକ୍ତିଶାଳୀ ଏବଂ ତାର ପ୍ରଭାବ ଯେ କେତେ ବିସ୍ତାରିତ ତାହା ତାଙ୍କ କବିତାରୁ ବୁଝାଯାଏ । ତାଙ୍କ ଛବି ଏବଂ ତାଙ୍କ କବିତାର ସଂବନ୍ଧ ନିବିଡ଼ । ଗଙ୍ଗାବତରଣରେ ଗଂଗାର ବର୍ଣ୍ଣନାଟି ବର୍ଣ୍ଣନା, ନା ଚିତ୍ର ? ଶବ୍ଦର ଚିତ୍ର ବୋଧହୁଏ । ଏହା ପ୍ରତୀକାତ୍ମକ ସୂଚନା ଯାହା ଭିତରେ କାଳ, କିମ୍ବଦନ୍ତୀ, ପରମ୍ପରା ଓ ବର୍ତ୍ତମାନ ସବୁ ଏକାକାର । ଏହା ଗଙ୍ଗାର ଗଙ୍ଗାପଣକୁ ହିଁ ସୂଚାଇ ଥାଏ । ଏହି ଗଙ୍ଗାପଣ ଭିତରେ 'ତିଳଖୁଡ଼ି' ପୁଣି ସେ ନୂଆ ଝିଅଟିର ନୋଥପର୍ବ ସବୁ ଏକୀଭୂତ । ଗଙ୍ଗାର ଅଂଶ ହେଇଯାଏ । ଏସବୁ ସତ୍ତ୍ୱେ ଗଙ୍ଗା ହେଇ ରହେ କୁଳୁକୁଳୁ ଜୀବନ । ରହସ୍ୟ । ଗଙ୍ଗାମୟ ।

ସର୍ଜନଶୀଳ ଶିଳ୍ପୀ ବ୍ୟତୀତ ତାଙ୍କର ଗୋଟିଏ ଦିଗ ମୋତେ ଅଭିଭୂତ କରେ । ତାହା ହେଉଛି ତାଙ୍କର ସ୍କଲାର୍‌ସିପ୍ । ସେ ଜଣେ ଉଚ୍ଚକୋଟୀର ସ୍କଲାର । ତାଙ୍କରି ଲେଖା ଯୋଗୁଁ ଆମ ଓଡ଼ିଶାର ଉଜ୍ଜ୍ୱଳ ଐତିହ୍ୟ, କଳା, ନୃତ୍ୟ ସବୁ ବାହାରେ ପ୍ରଚାରିତ ହେଇ ପାରିଛି । ଏକଥା ଭାବିଲେ ଗର୍ବରେ ମୋ ଛାତି କୁଣ୍ଢେମୋଟ ହୋଇଯାଏ । ଶ୍ରଦ୍ଧା ଓ ସମ୍ମାନରେ ମୁଣ୍ଡ ଆପଣାଛାଏଁ ନଇଁଯାଏ । ବିଦେଶୀ ଭାଷାରେ ଓଡ଼ିଶା ବିଷୟରେ ତାଙ୍କ ଲେଖାଗୁଡ଼ିକ ଓଡ଼ିଆ ଓ ଓଡ଼ିଶାକୁ ପରିଚିତ  କରାଇବାରେ ସହାୟକ ହୋଇଛି ।

ମୁଁ ତାଙ୍କ ଲେଖା ଅବା ଚିତ୍ରର ସମାଲୋଚନା କରୁନାହିଁ । ତାଙ୍କ ବ୍ୟାପକତା ଓ ଜଟିଳତାକୁ ବୁଝାଇବାର କ୍ଷମତା ମୋର ନାହିଁ । ସେଥିପାଇଁ ମୁଁ ଭାଜନ ମଧ୍ୟ ନୁହେଁ । ମାତ୍ର ତାଙ୍କ ଲେଖାରେ (ଉଭୟ ଗଦ୍ୟ ଓ ପଦ୍ୟ) ଚିତ୍ରକଳାର ବର୍ଣ୍ଣ ଫୁଟେ । ତାଙ୍କ ଲେଖାରେ ରଙ୍ଗର ଧ୍ୱନି । ଚିତ୍ରରେ ଶବ୍ଦର ମହକ । ତାଙ୍କ ଚିତ୍ରରେ ଫୁଟି ଉଠିଥିବା ଦେହ, ରଙ୍ଗ, ମୋ ପାଖରେ କେବଳ କଳ୍ପନାର ଏକ ରଙ୍ଗିନ ବାତାବରଣ ସୃଷ୍ଟିକରେ । ଯାହା ଏତେ ବୋଧ ଯେ ଅବୋଧ ହେଇ ଉଠେ । ଏହାହିଁ ବୋଧହୁଏ ସୌନ୍ଦର୍ଯ୍ୟର ଗୁଣ । ବୋଧ୍ୟ ଅବବୋଧତା ପୁଣି ଅବୋଧ ବୋଧତା ।

Digitized by srujanika@gmail.com

ପାଠୀ ଆମ ସମୟର ଜଣେ ପ୍ରତିଭାଶାଳୀ ସ୍ରଷ୍ଟା । ସେ କେତେ ଆଡ଼େ ବୁଲିଛନ୍ତି । କେତେ ଦେଶ ଦେଖିଛନ୍ତି । ତାଙ୍କ ଭ୍ରମଣବୃତ୍ତାନ୍ତ ବାହ୍ୟତାର ବର୍ଣ୍ଣନା ନୁହେଁ, ନୂତନ ଅନୁଭବର ଗଭୀରତା, ଯାହା ଭ୍ରମିଥିବା ଦେଶର ପ୍ରାଣକେନ୍ଦ୍ରକୁ ଆମ ଆଗରେ ଉପସ୍ଥାପନ କରିବାକୁ ସଫଳ ହୋଇଥାଏ । ଏସବୁ ବର୍ଣ୍ଣନାରେ ଅପସରପା ଠାରୁ ସୁନାମାଛ ପର୍ଯ୍ୟନ୍ତ ସବୁ ସ୍ଥାନ ପାଇଁ ଆମ କଳ୍ପନାକୁ ଆଲୋକିତ କରିଥାଏ । ଯାହା ସବୁ ସଫଳ ସୃଷ୍ଟିର ପ୍ରଧାନ ଗୁଣ । ତାଙ୍କୁ ଥଟ୍ଟାରେ କହେ ମୋ ବିଷୟରେ ଗୋଟେ ଗପ ଲେଖିଦିଅ । ଲେଖିବି ଲେଖିବି କହି ହସିଦିଅନ୍ତି । କିନ୍ତୁ ମୋ ସାଇକେଲ୍ କବିତାକୁ ନେଇ ସେ ଯେଉଁ ପ୍ରବନ୍ଧଟି ଲେଖିଛନ୍ତି ଓଡ଼ିଆ ସମାଲୋଚନାରେ ତାହା ଗୋଟିଏ ମାଇଲ୍‌ଖୁଣ୍ଟ । ସେଥିପାଇଁ ତାଙ୍କୁ ଆଉ ଥରେ ଧନ୍ୟବାଦ ଦେଉଛି । ଧନ୍ୟବାଦ ଦେଲାବେଳେ ମନେ ମନେ ଭାବୁଚି ଏମିତି ପ୍ରବନ୍ଧଟିଏ ଲେଖି ପାରନ୍ତି କି ? ସେ ଏକ ଅଦ୍ଭୁତ ବ୍ୟକ୍ତିତ୍ୱ । ମୁଁ ତ ବୁଝି ପାରେନି ସେ ଏତେ ଲେଖନ୍ତି କେମିତି ? ମୋତେ ଲାଗେ ସେ ଯେମିତି କାମ କରିବାର ଗୋଟିଏ ମୂର୍ତ୍ତିମନ୍ତ ପୁରୁଷ । କ୍ଳାନ୍ତି ତାଙ୍କ ସରିନି ଯଦିଓ ତିନି ତିନି ଥର ମେଜର ଅପରେସନ୍ ତାଙ୍କ ଦେହରେ ହେଇଯାଇଛି । ତାଙ୍କ ଉଦ୍ଦାମତା, କାମ କରିବାର ଆଗ୍ରହ ଓ ସମ୍ଭାର ଦେଖି ରୋଗ ବୈରାଗ ମଧ ତାଙ୍କୁ ଡରନ୍ତି । ଡରିବା ଉଚିତ ମଧ । ମୋତେ ଲାଗେ ତାଙ୍କର ଗୋଟିଏ ମୁଣ୍ଡ ନୁହେଁ ଗଣି ଗଣି ଦଶଟି ମୁଣ୍ଡ । ଦଶଟି ସର୍ଜନଶୀଳମୁଣ୍ଡ । ଚିନ୍ତାର ଅସରନ୍ତି ଉନ୍ମେଷ । ତାଙ୍କର ଉନ୍ନତି ମୁଁ କାମନା କରୁଛି । ପ୍ରାର୍ଥନା କରୁଛି । ସବୁଦିନ ଆସି ଆମେ ରେଲ୍‌ଓ୍ୱେ ପ୍ଲାଟଫର୍ମରେ ବସି ଗପ କରୁଥାଉଁ । ସେ ଆମକୁ କଳା, ସଂସ୍କୃତି କଥା ଶୁଣାଉଥାନ୍ତୁ । ତାଙ୍କ ପାଖରୁ ଶୁଣି ଶୁଣି ଆମେ କେତେବେଳେ ପଛରେ ରହିଯିବୁ । ମାତ୍ର ସେ ସେମିତି କଳା ଓ ସଂସ୍କୃତିର ଜୟଗାନ କରୁଥାନ୍ତୁ ।

ମୁଁ ଦିନନାଥଙ୍କ ବନ୍ଧୁ । ତାଙ୍କୁ ଭଲପାଏ, ଭଲପାଇବାଠୁ ବେଶୀ ଈର୍ଷା କରେ । କାରଣ ଈର୍ଷା କରିବା ପରି ବ୍ୟକ୍ତିତ୍ୱଟିଏ ଡକ୍ଟର ଦିନନାଥ ପାଠୀ ।



Digitized by srujanika@gmail.com

ସ୍ମିତା ତ୍ରିପାଠୀ

# ଅପ୍ରତ୍ୟାଶିତ ବ୍ୟତିକ୍ରମ

ମୁଁ ପାଠୀ ବାବୁଙ୍କ ନାନୀ କହୁଛି । ଡକ୍ଟର ଦିନନାଥ ପାଠୀ - ଜୀବନ ରସରେ ସଦା ପରିପୂର୍ଣ୍ଣ, ଜିଦ୍‌ଖୋର ଏବଂ ପ୍ରଖର ଅଥଚ ଲଗାମଟଣା ସଂଯତ । ନିର୍ବିକାର, ନିସ୍ପୃହ - କିନ୍ତୁ ଭଲ ଚିତ୍ରଟିଏ ଦେଖି ସରଳ ଶିଶୁ ପାଲଟି ଯାନ୍ତି, ହାତ ତାଳି ଦିଅନ୍ତି । ଭଲ ଉପନ୍ୟାସଟିଏ ପଢିଲେ ହଠାତ୍ ଭାବୁକ ବନିଯାନ୍ତି, ସେହି ପାଠୀ ବାବୁ ବିଗତ ପ୍ରାୟ ୩୩ ବର୍ଷ ଧରି ସେ ଆମ ଆଖି ଆଗରେ ଏକ ନୟନାଭିରାମ ଚିତ୍ର । ଚିତ୍ରକଳାରେ ଧୁରନ୍ଧର, ପ୍ରଦର୍ଶନୀ ପରେ ପ୍ରଦର୍ଶନୀ କରି ଚାଲିଛନ୍ତି, ଏକକ ଚିତ୍ରକଳା ପ୍ରଦର୍ଶନୀ ସାଙ୍ଗକୁ ଆହୁରି କେତେ ବିଚିତ୍ର ପ୍ରଦର୍ଶନୀ, କବିତା ଲେଖୁଛନ୍ତି, ଉପନ୍ୟାସ ଲେଖୁଛନ୍ତି, ଚିତ୍ରକଳା ନେଇ ଗବେଷଣାରେ ଦିନରାତି ଆସୁଛି ଯାଉଛି । ଆଶ୍ଚର୍ଯ୍ୟ ଚିତ୍ର, ଆଶ୍ଚର୍ଯ୍ୟ ଉପନ୍ୟାସ, ଅକ୍ଳାନ୍ତ, ନିରନ୍ତର ଲେଖି ଚାଲିଛନ୍ତି ପାଠୀ ବାବୁ, ମୁଁ ତାଙ୍କର କୂଳ-କିନାରା ପାଏନା !

ଅନେକ ବୋଝ ମୁଣ୍ଡେଇ ପାରନ୍ତି ପାଠୀ ବାବୁ । ଗଳ୍ପ, ଉପନ୍ୟାସ, ସ୍ମୃତି-କଥା, ଚିତ୍ରକଥା, ସେମିନାର, ବକ୍ତୃତା, ଚାକିରି, ଅଭିଯାନ, ସାଙ୍ଗସାଥୀ, ବନ୍ଧୁ-ବାନ୍ଧବଙ୍କ ତରଫଦାରି ଯେ ଯାହା ବରାଦ କଲା, ପାଠୀ ବାବୁଙ୍କ 'ହଁ' ଛଡ଼ା 'ନାହିଁ' କେବେ ଶୁଣି ନାହିଁ ତାଙ୍କଠୁ । ଏହିସବୁ ବୈଚିତ୍ର୍ୟକୁ ନେଇ ପାଠୀ ବାବୁ ।

ସେ ଜଣେ ଅପ୍ରତ୍ୟାଶିତ ବ୍ୟତିକ୍ରମ । ତାଙ୍କର ଲେଖିବାର ବିଷୟ ବିବିଧ । ବିବିଧ ଗବେଷଣାଧର୍ମୀ ଲେଖା ସାଙ୍ଗକୁ ଉପନ୍ୟାସ, କବିତା ଇତ୍ୟାଦି ରଚନା ଦେଖିଲେ, ବିଭିନ୍ନ ବିଷୟରେ ତାଙ୍କ ଆଗ୍ରହର ବୈଚିତ୍ର୍ୟ ଏବଂ ବ୍ୟାପକତା ସମ୍ପର୍କରେ ବିସ୍ମିତ ହେବାକୁ ପଡ଼େ । ସଳ୍ପ ସମୟରେ ସେ ଯେ କେବଳ ଅଜସ୍ର, ଅସଂଖ୍ୟ ପୁସ୍ତକ ରଚନା କରିଛନ୍ତି ତା ନୁହେଁ, ଅନୁଧ୍ୟାନ କରିଛନ୍ତି, ଅଧ୍ୟୟନ କରିଛନ୍ତି, ସେହି ସବୁ ବିଷୟ ହୃଦୟଙ୍ଗମ କରିଛନ୍ତି, ଆଉ ଅନାୟାସରେ ଜ୍ଞାନ ରାଜ୍ୟର ଗୋଟିଏ 'ର'ରୁ ଅନ୍ୟ 'ର'ରେ ବିଚରଣ କ୍ଷମତା ହାସଲ କରିଛନ୍ତି ଏହି ସପ୍ରତିଭ କ୍ଷିପ୍ରତା ଓ ସ୍ମୃତିଚାରିତା ବିସ୍ମୟକର ମନେ ହୁଏ । ପାଣ୍ଡିତ୍ୟର ନିଜସ୍ୱ ଏକ ସୀମା ରହିଛି, ଯାହାକୁ ଭେଦ କରି ସତଃସ୍ଫୂର୍ତ୍ତ ନାନ୍ଦନିକତାରେ ବାହାରି ଆସିବା ଅନେକ ପଣ୍ଡିତ, ଲେଖକଙ୍କ ପକ୍ଷରେ ସାଧାରଣତଃ ସମ୍ଭବ ହୁଏ ନାହିଁ । କିନ୍ତୁ ପାଠୀ ବାବୁ ଏହାର ଅପ୍ରତ୍ୟାଶିତ ବ୍ୟତିକ୍ରମ ।

ବିଗତ ୩୩ ବର୍ଷର ପରିଚିତି ମଧ୍ୟରେ, ସଭାବରେ, ଚାଲି-ଚଳଣିରେ, ଚେହେରା ବା ପୋଷାକ-ପରିଚ୍ଛଦରେ ମୁଁ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରି ନାହିଁ ତାଙ୍କର । ତାଙ୍କ ପୋଷାକ-ପରିଚ୍ଛଦରେ ବା ଚେହେରାରେ କୌଣସି ବୈଶିଷ୍ଟ୍ୟ ଅଥବା ନିଜକୁ କୌଣସି ଭାବରେ ଜାହିର୍ କରିବା ମୁଁ ଦେଖି ନାହିଁ । ସାଧାରଣ ଭିତରେ ଅସାଧାରଣ ବ୍ୟକ୍ତିତ୍ୱ । ମୁଁ ସେହି ବ୍ୟକ୍ତିଙ୍କୁ ଶ୍ରଦ୍ଧା କରେ, ଯେ କୌଣସି ପ୍ରକାରେ ଗୋଟିଏ ଜୀବନ-ଯାପନର ପରିବେଶ ପାଇଗଲେ ତାହା ମାନି ନେଇପାରନ୍ତି ନାହିଁ, ଯେଉଁମାନେ ସ୍ୱୟଂ ନୈରାଶ୍ୟ ଭୋଗି, ଅପରକୁ ଦଂଶନ କରି ସମୟ ଅତିବାହିତ କରିବାକୁ ପସନ୍ଦ କରନ୍ତି ନାହିଁ, ଯେଉଁମାନେ ନିଜର ବ୍ୟର୍ଥତା ପାଇଁ ଅନ୍ୟକୁ ଦୋଷାରୋପ ନକରି ନିଜକୁ ଉନ୍ନତତର କରି ନେବାକୁ ପସନ୍ଦ କରନ୍ତି ଯେଉଁମାନେ ଅଜଣା, ଅମଡ଼ା ବାଟରେ ପାଦ ରଖିବାକୁ ଦ୍ୱିଧା କରନ୍ତି ନାହିଁ; ଏହି ବ୍ୟକ୍ତିବିଶେଷମାନଙ୍କର ବ୍ୟର୍ଥତା ମଧ୍ୟ ଅନେକ ସମୟରେ ଗୌରବମୟ ହୁଏ । **ପାଠୀ ବାବୁ ନିଜର କ୍ଷୁଦ୍ର ସୀମା ପାରି ହୋଇ ବୃହତ୍ତର ଜଗତରେ ନିଜର କର୍ମ ଖୋଜି ପାଇଛନ୍ତି । କୌଣସି ବାଧାକୁ ସେ ଅଲଂଘନୀୟ ମନେ କରନ୍ତି ନାହିଁ । ସେ ଅନେକ ସପ୍ନ ଦେଖନ୍ତି ଆଉ ସେହି ସପ୍ନଗୁଡ଼ିକୁ ଅନୁସରଣ କରନ୍ତି ।** ସଭାବରେ ସେ ବର୍ତ୍ତମାନ ଆନ୍ତର୍ଜାତିକ, କିନ୍ତୁ ତାଙ୍କ ମୂଳଟି ଏଇ ଦେଶର ମାଟିରେ । ପାଠୀ ବାବୁଙ୍କ ଠାରେ ବୁଦ୍ଧିର ପ୍ରାଖର୍ଯ୍ୟ ଆଉ ଅସ୍ଥିରତା ଦୁଇଟି ଯାକ ରହିଛି, କିନ୍ତୁ ଦୁଇଟିଯାକ ଗୁଣକୁ ସେ କାମରେ ଲଗାନ୍ତି ।

Digitized by srujanika@gmail.com

ସୁବକ୍ତା, ସୁରସିକ, ପ୍ରାଣବନ୍ତ ପାଠୀ ବାବୁ ତାଙ୍କର ସଭାବସିଦ୍ଧ ମଜ୍‌ଲିସୀ ମିଜାଜ ଆଉ ଅନବଦ୍ୟ କୌତୁକୀ ଭଙ୍ଗିମାରେ ପରିବେଷଣ କରିପାରନ୍ତି ସାମ୍ପ୍ରତିକ ସମୟ-ସମାଜ-ସଂସାରର ନକ୍‌ସା । ନିର୍ମଳ ହସଖୁସିର ସ୍ୱଚ୍ଛ ଧାରାରେ ଯେତେ ଗମ୍ଭୀର ପରିବେଶ ଥିଲେ ମଧ୍ୟ ମୁହୂର୍ତ୍ତକରେ ହାଲୁକା କରିପାରନ୍ତି । କୌଣସି କୌଣସି ବ୍ୟକ୍ତିଙ୍କ ଏକପ୍ରକାର ବିଚ୍ଛୁରଣ ପରିବେଶକୁ ଉପଭୋଗ୍ୟ କରିଥାଏ । ଏବେ ମଧ୍ୟ ପାଠୀ ବାବୁ ମିଉଜିୟମ୍‌କୁ ଆସିଲେ ଟେବୁଲ ଘେରି ଜୀବନର ସମସ୍ୟା ନେଇ, ମିଉଜିୟମର ଯାବତୀୟ ସମସ୍ୟାକୁ ନେଇ ଆମେ କେତେଜଣ ଅଜସ୍ର କଥାବାର୍ତ୍ତା କରୁ ମଜଲିସି ଢଙ୍ଗରେ । ପାଠୀ ବାବୁ ଥିଲେ ରାଜ୍ୟ ସଂଗ୍ରହାଳୟରେ ଆମର ସହକର୍ମୀ ୧୯୭୨ ମସିହାଠାରୁ ୧୯୭୯ ପର୍ଯ୍ୟନ୍ତ । ଇତି ମଧ୍ୟରେ ପାଠୀ ବାବୁ ଗୋଟିକ ପରେ ଗୋଟିଏ ପାହାଚ ଡେଇଁ ଡେଇଁ ଅନେକ ଉପରକୁ ଉଠି ଆସିଲେଣି । ମୋର ଆଖି ଆଉ ପାଉ ନାହିଁ !

ରାଜ୍ୟ ସଂଗ୍ରହାଳୟରେ ପରିଚିତ ହେଲା ଦିନୁଁ ସେ ମୋତେ ନାନୀ ଡାକନ୍ତି । ଦିନେ ତାଙ୍କୁ ପଚାରିଥିଲି, ଆଚ୍ଛା, ପାଠୀ ବାବୁ, ଆପଣ ମୋତେ ନାନୀ କାହିଁକି ଡାକନ୍ତି ? ଆପଣ ତ ନିଜେ କହୁଥିଲେ ମୋ ଆଗରୁ ରିଟାୟାର୍ କରିବେ, ମୋଠୁ ଆପଣ ବୟସରେ ବଡ଼, ତେବେ କାହିଁକି ନାନୀ କହନ୍ତି ?

ସାଙ୍ଗେ ସାଙ୍ଗେ ହାତ ଯୋଡ଼ି ପାଠୀ ବାବୁଙ୍କ କୌତୁକିଆ ଉତ୍ତର, ଆପଣ ତ ମୋ ଆଗରୁ ମିଉଜିୟମ୍‌ରେ ଯୋଗ ଦେଇଛନ୍ତି, ମୋଠୁଁ ସିନିୟର୍, ତେଣୁ ଆପଣ ନାନୀ ।

କି ସାନ, କି ବଡ଼, ସମସ୍ତଙ୍କ ସାଙ୍ଗରେ ଅମାୟିକ ଭାବରେ ମିଶି ଯାଇପାରନ୍ତି ପାଠୀ ବାବୁ । ଆଉ, ତାଙ୍କର ଅସାଧାରଣ କଷ୍ଟ ସହିଷ୍ଣୁତା, ଯେ କୌଣସି ପରିସ୍ଥିତିରେ ନିଜକୁ ଉପଯୋଗୀ କରିବାର ବିରଳ ଗୁଣ, ମୁଁ ଖୁବ୍ କମ୍ ଲୋକଙ୍କଠାରେ ଦେଖିଛି । ତାଙ୍କ ସହିତ କଥାବାର୍ତ୍ତା କଲେ, କିଛି କରିବାର, କିଛି ଲେଖିବାର ପ୍ରେରଣା ମିଳେ । ତେବେ ଅକ୍ଳାନ୍ତ ପରିଶ୍ରମୀ ଆଉ ଅସାଧାରଣ ଧୀଶକ୍ତିସମ୍ପନ୍ନ ପାଠୀ ବାବୁଙ୍କ ସାଥିରେ ପ୍ରତିଯୋଗିତା କରି ବସିଲେ ନିତାନ୍ତ ନିର୍ବୁଦ୍ଧିତ୍ୱର ପରିଚୟ ମିଳିବ ସିନା !

ସଦା କର୍ମ-ବ୍ୟସ୍ତତା, ନିରନ୍ତର କିଛି ନୂଆ କାମ କରିବା, ନୂଆ କଥା ଲେଖିବା, ପ୍ରକାଶ କରିବାରେ ପାଠୀ ବାବୁ ଅପ୍ରତିଦ୍ୱନ୍ଦ୍ୱୀ । ତେଣୁ ଅନେକଙ୍କ ଈର୍ଷାର ଶିକାର ସେ, ଅନେକଙ୍କ ସମାଲୋଚନାର ପାତ୍ର ମଧ୍ୟ । ତେବେ, ତାଙ୍କର ଏସବୁ ପ୍ରତି ଖାତିର ନ ଥାଏ । ଏକା ଏକା ନିଜ ସାଙ୍ଗରେ ସମୟ ବିତେ ତାଙ୍କର । ନିଜ ଲକ୍ଷ୍ୟ ସ୍ଥଳରେ ପହଞ୍ଚ, ସାଫଲ୍ୟ ହାସଲ ପାଇଁ ଯତ୍ନ ଓ ନିଷ୍ଠାର ସହିତ ହାତକୁ ନେଇଥିବା ଦାୟିତ୍ୱ ତୁଲାଇବା ମୁଁ ଲକ୍ଷ୍ୟ କରିଛି ।

ଉଦ୍ୟୋଗୀ ପୁରୁଷର ଜୟ ସର୍ବତ୍ର । କୌଣସି ଗୋଟିଏ ଜାଗାରେ ଆବଦ୍ଧ ହୋଇ ରହିବା ପାଠୀ ବାବୁଙ୍କ ସଭାବବିରୁଦ୍ଧ । ତେଣୁ ରାଜ୍ୟ ସଂଗ୍ରହାଳୟ ତାଙ୍କୁ ବେଶୀଦିନ ବାନ୍ଧି ରଖି ପାରିନାହିଁ । ନାନା ସ୍ଥାନରେ ବୃହତ୍ତର କର୍ମକ୍ଷେତ୍ରସବୁ ତାଙ୍କ ପାଇଁ ଅପେକ୍ଷା କରି ରହିଥିଲା । ମିଉଜିୟମରେ ସଜ୍ଜିତ ପ୍ରତ୍ନ-ବସ୍ତୁ ପରି କାହିଁକି ଅବା ରହିଥାନ୍ତେ ? ଆଜି ଯେଉଁ ଶୀର୍ଷରେ ସେ ପହଞ୍ଚି ପାରିଛନ୍ତି, ମିଉଜିୟମରେ ରହି ଯାଇଥିଲେ ହୁଏତ ଏହା ସମ୍ଭବ ହୋଇ ନଥାନ୍ତା । ତେବେ ପାଠୀ ବାବୁ କଥା ପ୍ରସଙ୍ଗରେ ମିଉଜିୟମ୍ ପ୍ରତି କୃତଜ୍ଞତା ପ୍ରକାଶ କରନ୍ତି । କହନ୍ତି, **ମିଉଜିୟମ୍‌କୁ ଆସିଥିଲି ବୋଲି ହିଁ ଗବେଷଣା କ'ଣ, ଲେଖାଲେଖି କ'ଣ ଜାଣିଲି, ଶିଖିଲି । ତେବେ ମିଉଜିୟମ୍‌ରୁ ବାହାରି ଗଲି ବୋଲି ମୋର ଲେଖାଲେଖିରେ ଉତ୍ତରୋତ୍ତର ଉନ୍ନତି ସମ୍ଭବ ହେଲା । ମୋର ଉନ୍ନତି ପାଇଁ ମିଉଜିୟମର ଅଶେଷ ଅବଦାନ ମୁଁ କେବେହେଲେ ଅସୀକାର କରିପାରିବି ନାହିଁ ।**

ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ କରାଗଲା ୧୯୮୪ ମସିହାରେ । ତତ୍‌କାଳୀନ ପ୍ରଧାନମନ୍ତ୍ରୀ ସର୍ଗତା ଇନ୍ଦିରା ଗାନ୍ଧି ଆସିଥିଲେ ସେ ଉତ୍ସବ ଉଦ୍‌ଘାଟନ କରିବାକୁ । ସେ ସମୟରେ ପାଠୀ ବାବୁଙ୍କର ହିଁ ମୁଖ୍ୟ ଭୂମିକା ଥିଲା ଉତ୍ସବ ସମ୍ବନ୍ଧୀୟ ଯାବତୀୟ ଦାୟିତ୍ୱ ତୁଲାଇବାରେ । **ମୁଁ ଦେଖିଛି, ସେ ଉତ୍ସବକୁ ସର୍ବାଙ୍ଗସୁନ୍ଦର କରିବାରେ, ମିଉଜିୟମ୍‌କୁ ଅଭିନବ ସାଜସଜ୍ଜାରେ ମଣ୍ଡିତ କରିବାରେ, ନାନା ସ୍ଥାନ ବୁଲି**

Digitized by srujanika@gmail.com

**ବୁଲି ପ୍ରାନ୍‌ବିଶେଷ ତଥା ଘରୁ ଓ କାରୁ କଳାର ଆଲୋକଚିତ୍ର ପ୍ରସ୍ତୁତ ଓ ସଂଗ୍ରହ କରିବାରେ, ମିଉଜିୟମ୍‌ରୁ ପ୍ରକାଶିତ ଗବେଷଣା-ପତ୍ରିକାଟିକୁ ନୂତନ ରୂପ ସଂଯୋଗ କରି ଏକ ସତନ୍ତ୍ର ଖଣ୍ଡ ପ୍ରକାଶ କରିବାରେ, ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ ଏକ ସ୍ମାରକୀ ପ୍ରକାଶ କରିବାରେ, ତଥା ସେହି ଉପଲକ୍ଷେ ଉଦ୍‌ଘାଟନ ପାଇଁ ଉଦ୍ଦିଷ୍ଟ ବିଭିନ୍ନ ଲେଖକଙ୍କ କେତେକ ଗ୍ରନ୍ଥ ସୀମିତ ସମୟ ମଧ୍ୟରେ ପ୍ରକାଶ କରିବାର ଗୁରୁ ଦାୟିତ୍ୱ ମୁଖ୍ୟତଃ ପାଠୀ ବାବୁ ହିଁ ତୁଲାଇ ଥିଲେ ।** ପ୍ରକୃତରେ କହିବାକୁ ଗଲେ, ସେ ସମୟରେ ପାଠୀ ବାବୁ ସଂଗ୍ରହାଳୟରେ ନ ଥିଲେ ଏ ସମସ୍ତ ଗୁରୁ ଦାୟିତ୍ୱ ତୁଲାଇବା ସଂଗ୍ରହାଳୟର ଅନ୍ୟାନ୍ୟ କର୍ମୀଙ୍କ ପକ୍ଷରେ ଅସମ୍ଭବ ହୋଇ ପଡ଼ିଥାନ୍ତା । ଏତେ ଅଳ୍ପ ସମୟରେ ଅକ୍ଲାନ୍ତ ପରିଶ୍ରମ କରି ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ ଅଭିନବତ୍ୱ ସୃଷ୍ଟି କରିବା କେବଳ ପାଠୀ ବାବୁଙ୍କ ପକ୍ଷରେ ହିଁ ସମ୍ଭବ । ତଥାପି ସେ କେବେହେଲେ କୌଣସି ପ୍ରକାର କ୍ଲାନ୍ତିର ଅଭିଯୋଗ କରି ନ ଥିଲେ । ସଦା ପ୍ରଫୁଲ୍ଲ, ଅନ୍ୟମାନଙ୍କୁ ନିଜର କୌତୁକିଆ ମଜ୍‌ଲିସୀ ସଭାବରେ ପ୍ରଭାବିତ କରି କାମ ଆଦାୟ କରି ନେବାର ଦୁର୍ଲ୍ଲଭ ଗୁଣ ତାଙ୍କର ରହିଛି ।

**ସଂଗ୍ରହାଳୟର ପୂର୍ବ ସୂରୀଗଣ, ପ୍ରଫେସର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପରମାନନ୍ଦ ଆଚାର୍ଯ୍ୟ, ସତ୍ୟନାରାୟଣ ରାଜଗୁରୁ, ସୁଶୀଳଚନ୍ଦ୍ର ଦେ, କେଦାରନାଥ ମହାପାତ୍ର ଏବଂ ଆହୁରି ଅନେକେ ବିଗତ କେତେକ ବର୍ଷ ଭିତରେ ଆଗ ପଛ ହୋଇ ବିଦାୟ ନେଲେଣି । ଏହି ପଥ ପ୍ରଦର୍ଶକ ଗବେଷକବୃନ୍ଦଙ୍କ କଲମ ବର୍ତ୍ତମାନ ଥମି ଯାଇଛି ।** ତେବେ ଏମାନଙ୍କ ଉତ୍ତରାଧିକାରୀ ମୁଷ୍ଟିମେୟ ଯେଉଁ କେତେ ଜଣ ବର୍ତ୍ତମାନ ସୁଦ୍ଧା ଅଛନ୍ତି, ସେମାନେ ମଧ୍ୟ ପ୍ରତିଷ୍ଠିତ ଗବେଷକ, ଐତିହାସିକ, ପ୍ରବନ୍ଧକାର । ସେମାନେ ମଧ୍ୟ ଚିନ୍ତାରେ, ଦୀପ୍ତିରେ, ପରିବେଷଣର ସଚ୍ଛନ୍ଦ ଭଙ୍ଗୀରେ ଏବଂ ବିଷୟ-ବୈଚିତ୍ର୍ୟରେ ଯେକୌଣସି ସାଂସ୍କୃତିକ ପତ୍ରପତ୍ରିକାର ମାନ ବୃଦ୍ଧି କରିପାରନ୍ତି । ଏମାନଙ୍କ ମଧ୍ୟରେ ପାଠୀ ବାବୁ ଅନ୍ୟତମ ଉଲ୍ଲେଖଯୋଗ୍ୟ ବ୍ୟକ୍ତି । ସୃଷ୍ଟି ପ୍ରତିଭାର ଅନୁସନ୍ଧାନ ଏବଂ ତଥାକଥିତ ଗବେଷଣାକୁ ଅସାଧାରଣ ଘନିଷ୍ଠ ଭଙ୍ଗୀରେ ଯେ ହୃଦ୍ୟ କରାଯାଇପାରେ, ତା'ର ପ୍ରମାଣ ପାଠୀ ବାବୁଙ୍କ ପ୍ରବନ୍ଧସମୂହ ।

ଅଥଚ, **ଆମର ଦୁର୍ଭାଗ୍ୟ, ଓଡ଼ିଶାରେ ଏମିତି ଗୋଟିଏ ହେଲେ ପତ୍ରିକା ନାହିଁ, ଯେଉଁଥିରେ ଉଚ୍ଚକୋଟୀର ଗବେଷଣାମୂଳକ ପ୍ରବନ୍ଧମାନ ପ୍ରକାଶ କରାଯାଇ ଦେଶବିଦେଶରେ ଓଡ଼ିଶାର ସାଂସ୍କୃତିକ ଗାରିମାର ପ୍ରଚାର ଓ ପ୍ରସାର ବୃଦ୍ଧି କରାଯାଇପାରିବ ।** ପାଠୀ ବାବୁ, ପ୍ରନ୍‌ତତ୍ତ୍ୱବିତ୍ ବିଜୟ କୁମାର ରଥ ଆଉ ମୁଁ, ଆମେ ତିନିଜଣ ସ୍ଥିର କଲୁ, କାହାରି ସାହାଯ୍ୟ ଅନୁଗ୍ରହ ବିନା ଉଚ୍ଚମାନର ଉତ୍‌କୃଷ୍ଟ ଗବେଷଣା ପତ୍ରିକାଟିଏ ପ୍ରକାଶ କରିବୁ ଯାହା ଦେଶ-ବିଦେଶର ସନାମଧନ୍ୟ ଲେଖକ-ଗବେଷକଙ୍କ ରଚନାବଳୀ-ସମୃଦ୍ଧ ହେବ । ପାଠୀ ବାବୁଙ୍କ ନିରଳସ ପ୍ରୟାସ ଏବଂ ଐକାନ୍ତିକ ପ୍ରଚେଷ୍ଟାରେ, ଆମ ତିନିଜଣଙ୍କ ସମ୍ପାଦନାରେ **ଜର୍ଣ୍ଣାଲ୍ ଅଫ୍ ଓରିଶା ରିସର୍ଚ୍ଚ ସୋସାଇଟି** ଆଜି ଦେଶ ବିଦେଶର ବହୁ ଐତିହାସିକ, ଭାରତ ତତ୍ତ୍ୱବିତ୍‌ଙ୍କଠାରେ ସୁପରିଚିତ ଆଉ ସେମାନଙ୍କ ଲେଖାରେ ସୁସମୃଦ୍ଧ । ଅର୍ଥାଭାବ କାରଣରୁ କେବେ କେବେ ପତ୍ରିକାଟି ପ୍ରକାଶ କରିବାରେ ସାମାନ୍ୟ ବିଳମ୍ବ ଘଟୁଥିଲେ ହେଁ, ଏହାର ପ୍ରକାଶନ ଅବ୍ୟାହତ ରହିଛି ଏବଂ ଏହାର ମାନ ତିଳେ ହେଲେ ଊଣା ହୋଇନାହିଁ । କହିବା ବାହୁଲ୍ୟ, ଓଡ଼ିଶାରୁ ପ୍ରକାଶିତ ଏହାହିଁ ଏକମାତ୍ର ଉଚ୍ଚମାନଯୁକ୍ତ ଗବେଷଣା ପତ୍ରିକା । ଅନ୍ୟତମ ସମ୍ପାଦକ ହିସାବରେ, ଏବେ ମଧ୍ୟ ପତ୍ରିକାଟିର ପ୍ରକାଶନର ଗୁରୁ ଦାୟିତ୍ୱ ତୁଲାଉଛନ୍ତି ପାଠୀ ବାବୁ ।

ପ୍ରକୃତରେ ଦିନ-କାଳର ପରିବର୍ତ୍ତନ ଘଟୁଛି ପୃଥିବୀ ସାରା । ମଣିଷର ଧ୍ରୁପଦୀ ଅଧ୍ୟାୟ ପାଠୀ **ବାବୁଙ୍କ ଭଳି ପ୍ରବୀଣ ବହୁମୁଖୀ ପ୍ରତିଭା ବର୍ତ୍ତମାନ କେତେଜଣ ଅଛନ୍ତି ? ଅକ୍ଲାନ୍ତ, ସଦା ଚଞ୍ଚଳ, ଅଜସ୍ର କାମର ବୋଝ ମୁଣ୍ଡେଇ ନିରନ୍ତର ବାଟ ଚାଲିବାରେ ଆନନ୍ଦ ପାଠୀ ବାବୁଙ୍କର । ଈଶ୍ୱରଙ୍କୁ ମୋର ପ୍ରାର୍ଥନା, ପାଠୀ ବାବୁ ସେହି ଆନନ୍ଦ ବଜାୟ ରଖନ୍ତୁ ଆଜୀବନ ।**

Digitized by srujanika@gmail.com

ନିତ୍ୟାନନ୍ଦ ମିଶ୍ର

## କହୁଥିଲେ ସରିବନି

ଦିନନାଥ । 'ଦ'ରେ ହ୍ରସ ଇକାର । ଦିଗପହଣ୍ଡି ଗାଆଁରେ ଶ୍ୟାମସୁନ୍ଦର ଯେଉଁଦିନ ପୁଅ ନାଆଁ ଦିନନାଥ ରଖିଲେ ସେଦିନ ସେ 'ଦ'ରେ ଦୀର୍ଘ ଈକାର ଦେଇ ନ ଥିଲେ । ହୁଏ ତ ସେ ଭାବିଥିଲେ ପିଲାଟି ବଡ଼ହେଲେ ଆଦୌ ଦୀନମାନଙ୍କର ନାଥ ହୋଇ ପାରିବ ନାହିଁ । ଦୀନନାଥ ହେବାକୁ ହେଲେ ବହୁ ଧନର ଆବଶ୍ୟକତା ରହିଛି, ଯାହାଦ୍ୱାରା ସେ ଦୀନଦୁଃଖୀଦରିଦ୍ରମାନଙ୍କର ସହାୟତା କରିପାରିବ । କିନ୍ତୁ ପୁରୁଷ ପୁରୁଷ ଧରି ଯେଉଁ ପରିବାରରେ ଜଡ଼ିବୁଟି କାରବାର ହୋଇ ଆସିଛି, ସେଇ ବୈଦ୍ୟ ପରିବାରରେ ଜନ୍ମିଥିବା ଶ୍ୟାମ ପାଢ଼ୀ ଏଡ଼େବଡ଼ ଆଶା କିପରି ବା କରିପାରିବେ ? ସରସତୀ ଉପାସନା କରୁଥିବା ଓ ସରସତୀଙ୍କ ଉପରେ ନିର୍ଭର କରୁଥିବା ପରିବାରକୁ ଲକ୍ଷ୍ମୀ ସହଜରେ ଆସନ୍ତି ନାହିଁ । ପୁଣି ଯେଉଁମାନେ ସରସତୀଙ୍କର ଉପାସନା କରନ୍ତି ସେମାନେ ବି ସରସତୀଙ୍କୁ ଛାଡ଼ି ଲକ୍ଷ୍ମୀଙ୍କ ପଛରେ ଧାଇଁ ପାରନ୍ତି ନାହିଁ । ଏଣୁ 'ଦୀନନାଥ' ନାଆଁ ଶ୍ୟାମସୁନ୍ଦରଙ୍କ ଧାରଣାର ବାହାରେ ଥିଲା । ସେ ଧରି ନେଇଥିଲେ ପୁଅ ତା'ର ଗୋସେଇଁବାପା ଆଉ ବଡ଼ବାପାଙ୍କ ପରି ଖଲରେ ଚେରମୂଳୀ ଘୋଟିବ କିମ୍ବା ତାଙ୍କ ପରି ମାଟିହାଣ୍ଡି ଉପରେ କବିତା ଲେଖିବ । ଦିନେ ତା'ନିଜ ଆଲୋକରେ ଚତୁର୍ଦ୍ଦିଗକୁ ଆଲୋକିତ କରିବ । ସୂର୍ଯ୍ୟପରି ଦିନର ନାଥ ହେବ । ଅର୍ଥାତ୍ କେବଳ 'ଦିନ'ମାନଙ୍କୁ ନୁହେଁ ବରଂ ଦୀନ, ଦରିଦ୍ର, ଧନୀ, ଦୁଃଖୀ, ସୁଖୀ ସମସ୍ତଙ୍କୁ ପ୍ରଭାବିତ କରିବ । ସମସ୍ତଙ୍କୁ ସମାନଭାବରେ ଆନନ୍ଦ ଦେବ ।

କିଛିଲୋକ ଏବେ ବି ତାଙ୍କ ନାଆଁରେ ଦୀର୍ଘ ଈକାର ଯୋଡ଼ି ଦିଅନ୍ତି । କିଛି ଲୋକ ତାଙ୍କୁ 'ଦିନାନାଥ' ବୋଲି ମଧ୍ୟ କହନ୍ତି । ଏ ସବୁ ଲୋକମାନେ ତାଙ୍କୁ ଭିନ୍ନ ଭିନ୍ନ ଭାବରେ ଜାଣନ୍ତି । ସୂର୍ଯ୍ୟ ଗୋଟିଏ ଦିଗରେ ନିଜକୁ ସୀମିତ ରଖନ୍ତି ନାହିଁ । ନିଜ କିରଣରେ ସେ ଦିଗବିଦିଗ ଉଦ୍‌ଭାସିତ କରନ୍ତି । ଏହିପରି ଦିଗନ୍ତବିସ୍ତାରି ବ୍ୟକ୍ତିତ୍ୱ ଦିନନାଥଙ୍କର । ସେ ପୋର୍ଟ୍ରେଟ୍ ପରି ସତ ଚିତ୍ର ଆଙ୍କନ୍ତି । ପୁଣି ପାଣିକୂଳରେ ଭିଡ଼ିମୋଡ଼ି ହୋଇ ଶୋଇଥିବା ବାଘପରି ମିଛ ଚିତ୍ର ବି ଆଙ୍କନ୍ତି । ନିଜର ଆତ୍ମଜୀବନୀ ଓ ଭ୍ରମଣକାହାଣୀ ପରି ସତକଥା ଲେଖନ୍ତି । ପୁଣି ଗଳ୍ପ ଉପନ୍ୟାସ ପରି ମିଛକଥା ବି ଲେଖନ୍ତି । ଏଇଭଳି ସତ ଓ ମିଛର ପୁରୁଷଟିଏ ଦିନନାଥ । ନ ହେବେ ବା କେମିତି ? ଦିନ ଓ ରାତି ଉଭୟର ସ୍ରଷ୍ଟା ତ ସୂର୍ଯ୍ୟ !

ଦିନନାଥଙ୍କୁ ମିଛୁଆ କହିବା ମୋର ଉଦ୍ଦେଶ୍ୟ ନୁହେଁ । କାରଣ ଯଦି ସେ ମିଛୁଆ ହୁଅନ୍ତି ତେବେ ଗଳ୍ପ ଓ ଉପନ୍ୟାସ ଲେଖୁଥିବା ସବୁ ସାହିତ୍ୟିକଙ୍କୁ ମିଛୁଆ କହିବାକୁ ପଡ଼ିବ । ଏ ସଂସାରରେ ସତ୍ୟର ଯେପରି ଉପଯୋଗିତା ରହିଛି ମିଥ୍ୟାର ମଧ୍ୟ ସେପରି ଆବଶ୍ୟକତା ରହିଛି । ସତ୍ୟକୁ ସିଦ୍ଧ କରିବାପାଇଁ ଆମେ ମିଥ୍ୟା ଉଦାହରଣମାନ ଦେଉ । ଶିକ୍ଷାଲାଭ କରିବାପାଇଁ ପଞ୍ଚତନ୍ତ୍ର ପରି ମିଛ ଗପର ଆଶ୍ରୟ ନେଉ । ଦିନ ଓ ରାତି ଉଭୟର ଆବଶ୍ୟକତା ଥିବା ପରି ସତ ଓ ମିଛ ଉଭୟର ଆବଶ୍ୟକତା ଯୁଗେ ଯୁଗେ ରହିଆସିଛି ସମାଜକୁ ଗଢ଼ିବା ପାଇଁ । ଏଣୁ ମିଥ୍ୟା ମଧ୍ୟ ସତ୍ୟପରି ଆଦରଣୀୟ, ଯେ ପର୍ଯ୍ୟନ୍ତ ତାହା ସତ୍ୟକୁ ପରିପୁଷ୍ଟ କରି ସମାଜର ଉପକାରରେ ଆସେ । କିନ୍ତୁ ସମାଜର କ୍ଷତିସାଧନ କରୁଥିବା ମିଥ୍ୟା ସର୍ବଥା ବର୍ଜନୀୟ ।

ବାପାଙ୍କର ଥିଲା କବିତା ରଚନା କରିବାରେ ଆଗ୍ରହ ଓ ମା'ଙ୍କର କନ୍ଥା ସିଲେଇରେ ନିପୁଣତା । ଜଣେ ସୃଜନଶୀଳତାର ଜ୍ୱଳନ୍ତ ଆଦର୍ଶ ଓ ଜଣେ ଅଧ୍ୟବସାୟର କମନୀୟ ପ୍ରତିମା । ଏପରି ଜନକ ଓ ଜନନୀଙ୍କଠାରୁ ଜଣେ ସୃଜନଶୀଳ ଓ ଅଧ୍ୟବସାୟୀ କଳାକାର ଜନ୍ମ ନେବା ସ୍ୱାଭାବିକ ।

ଦିନନାଥ ଚିତ୍ର ଆଙ୍କନ୍ତି । କିନ୍ତୁ ପିଲାଦିନେ ମା'ଙ୍କ କନ୍ଥାରେ ଡିଜାଇନ୍‌ର ଲେଆଉଟ୍ ପକାଇବା ବେଳେ ସେ କ'ଣ ଚିତ୍ରକର ହେବେ ବୋଲି ଭାବିଥିଲେ ? ଚିତ୍ରକରଟିଏ କାହିଁକି ଓ କିପରି ଆଙ୍କେ ତାହା ତାଙ୍କ ପୁନର୍ନବା ଉପନ୍ୟାସରେ ସେ ବୁଝାଇବାକୁ ଚେଷ୍ଟା କରିଛନ୍ତି । **ତେବେ ମୋ ଜାଣିବାରେ ସାଧାରଣ ଲୋକଙ୍କୁ ଭୋକ ଲାଗିବା ପରି ଅଥବା ଜଣେ ଗର୍ଭିଣୀ ସ୍ତ୍ରୀର ପ୍ରସବବେଦନା ହେବା ପରି ଚିତ୍ରକର ଠାରେ ଚିତ୍ର ଆଙ୍କିବାର ବେଦନା ହୁଏ । ସେହି ବେଦନାରେ ସେ**

Digitized by srujanika@gmail.com

**ପ୍ରବଳ ଛଟପଟ ହୋଇ ଚିତ୍ର ଆଙ୍କିବାକୁ ଏକପ୍ରକାର ବାଧ୍ୟହୁଏ ।** ଯେଉଁ ଚିତ୍ରକରର ଏ ପ୍ରକାର ବେଦନା ହୁଏନାହିଁ ସେ ଜଣେ ସଫଳ ଚିତ୍ରକର ନୁହେଁ । ଅର୍ଥାତ୍ ଯାହାର ଅନୁଭୂତି ନାହିଁ ଓ ଯେ ନିଜର ଅନୁଭୂତିକୁ ଦର୍ଶକ ହୃଦୟକୁ ସଂକ୍ରମିତ କରାଇ ପାରେ ନାହିଁ ଆମେ ତାକୁ ଜଣେ ସମ୍ବେଦନଶୀଳ ଚିତ୍ରକର କହିପାରିବା ନାହିଁ ।

ଚିତ୍ର ଆଙ୍କିବା ଯେତିକି ଆବଶ୍ୟକ, ଚିତ୍ରକୁ ବୁଝିବା ତା'ଠାରୁ ଅଧିକ ଆବଶ୍ୟକ । ଏଇ ବୁଝିବା ଜିନିଷଟିକୁ ଆମେ ଦର୍ଶନ ବୋଲି କହୁ । ଆଖିରେ ଆମେ ଦେଖୁ, କିନ୍ତୁ ଆଖି ବୁଜି ଦର୍ଶନ କରିବାକୁ ପଡ଼େ । ଚିତ୍ରକୁ ଆମେ ଆଖିରେ ଦେଖୁ, କିନ୍ତୁ ଆଖି ବୁଜି ଚିତ୍ରକୁ ବୁଝିବାକୁ ପଡ଼େ । ଚିତ୍ରକୁ ବୁଝିଲେ ହିଁ ତାହା ହୃଦୟକୁ ଛୁଏଁ । ହୃଦୟର ସ୍ପର୍ଶରେ ରସର ଉଦ୍‌ଗମ ହୁଏ । ଆମେ କହୁ ଚିତ୍ର ଦେଖିବାପାଇଁ ବିଶେଷ ଚକ୍ଷୁର ଆବଶ୍ୟକତା ରହିଛି । ଏଇ ବିଶେଷ ଚକ୍ଷୁଟି ହେଲା ହୃଦୟ । କେବଳ ସହୃଦୟ ବ୍ୟକ୍ତିମାନେ ହିଁ ଚିତ୍ର ବୁଝିପାରନ୍ତି, ରସ ଅନୁଭବ କରନ୍ତି, ଠିକ୍ ଯେପରି ସହୃଦୟ ବ୍ୟକ୍ତିମାନେ କାବ୍ୟରୁ ରସାନୁଭବ କରନ୍ତି ।

ଚିତ୍ର ଏହି ଦୃଷ୍ଟିରୁ କାବ୍ୟଠାରୁ ଭିନ୍ନ ନୁହେଁ । ଗୋଟିକ ପାଇଁ କାଗଜ ଲୋଡ଼ା ତ ଅନ୍ୟଟି ପାଇଁ କାନ୍‌ଭାସ୍ ଲୋଡ଼ା । ଗୋଟିକ ପାଇଁ କାଳି ଲୋଡ଼ା ତ ଅନ୍ୟଟି ପାଇଁ ରଙ୍ଗ ଲୋଡ଼ା । ଗୋଟିକ ପାଇଁ କଲମ ଲୋଡ଼ା ତ ଅନ୍ୟଟି ପାଇଁ ତୂଳୀ ଲୋଡ଼ା । କିନ୍ତୁ କାଗଜରେ କଲମ ଚାଲିବା ପୂର୍ବରୁ ଓ କାନ୍‌ଭାସ୍‌ରେ ତୂଳୀ ଚାଲିବା ପୂର୍ବରୁ କାବ୍ୟ ଓ ଚିତ୍ର ଉଭୟ ସୃଷ୍ଟ ହୋଇ ସାରିଥାନ୍ତି ସ୍ରଷ୍ଟାର ମାନସପଟରେ । ଉଭୟଙ୍କୁ ସୃଷ୍ଟି କରେ ଅନ୍ତର୍ଦୃଷ୍ଟି । ଉଭୟଙ୍କ ଠାରେ ସ୍ରଷ୍ଟାର ଅବିଶ୍ରାନ୍ତ ସାଧନା ନିହିତ । ଉଭୟଙ୍କୁ ବୁଝିବା ପାଇଁ ଆବଶ୍ୟକ ସମ୍ବେଦନଶୀଳ ହୃଦୟ ।

ଦିନନାଥ ଜଣେ ସମ୍ବେଦନଶୀଳ ବ୍ୟକ୍ତି । ଏଣୁ ସେ ଏକାଧାରରେ ଚିତ୍ରକର ଓ ସାହିତ୍ୟିକ ହେବା ସାଭାବିକ । ଦିନନାଥ କବିତା ଲେଖିଲାପରି ଚିତ୍ର ଆଙ୍କନ୍ତି ଓ ଚିତ୍ର ଆଙ୍କିଲା ପରି କବିତା ଲେଖନ୍ତି । ତାଙ୍କପାଇଁ ଉଭୟର ଅନୁଭବ ସମାନ ।

**ତେବେ ଦିଗପହଣ୍ଡିର କୁର୍ଣ୍ଣମାଷ୍ଟ୍ରେ ଭାବରେ ତାଙ୍କର ପରିଚିତି ତାଙ୍କୁ ଅଧିକ ଆନନ୍ଦ ଦିଏ । କାରଣ ଏଇ ନାଆଁଟିରେ ତାଙ୍କ ଗାଆଁ ମାଟିର ବାସ୍ନା ମିଶି ରହିଛି, ଯେଉଁ ବାସ୍ନା ତାଙ୍କୁ ଆଜି ଓଡ଼ିଶାରେ, ଭାରତରେ ଓ ବିଦେଶରେ ବିଖ୍ୟାତ କରିଛି ।**

ଦିନନାଥଙ୍କର ଆଉ ଗୋଟିଏ ନାଆଁ ରହିଛି । ଭବଘୁରା ଭବନାଥ । ଏ ନାଆଁଟି ସେ ନିଜେ ଦେଇଛନ୍ତି । ଅର୍ଥାତ୍ ସେ ନିଜକୁ ନିଜେ ଏଇ ନାଆଁରେ ଡାକନ୍ତି । ପୃଥିବୀ ବୁଲିବା କେବଳ ତାଙ୍କର ସଉକ ନୁହେଁ, ବରଂ ସେ ବିଭିନ୍ନ କାର୍ଯ୍ୟହେତୁ ବୁଲିବା ପାଇଁ ଏକପ୍ରକାର ବାଧ୍ୟ। ଏଇ ସୁଯୋଗରେ ସେ ପୃଥିବୀରେ ବସବାସ କରୁଥିବା ବିଭିନ୍ନ କିସମର ଲୋକଙ୍କୁ ବୁଝିବାକୁ ଚେଷ୍ଟା କରନ୍ତି । ଆମ ଭାରତୀୟମାନେ ଯାହା ବୁଝିଛନ୍ତି ତାହା ମଧ୍ୟ ସେମାନଙ୍କୁ ବୁଝାଇବାକୁ ଚେଷ୍ଟା କରନ୍ତି । ଏ ପ୍ରକାର କାର୍ଯ୍ୟ କରୁ କରୁ ସୃଷ୍ଟି ହୁଏ ନୂଆ ଚିତ୍ର । ଚାଇନାରେ ବାଘ ବର୍ଷରେ ବାଘଚିତ୍ର ତ ସୁଇଜର୍‌ଲାଣ୍ଡ୍‌ରେ ମଟରଗାଡ଼ି ଚିତ୍ର । ଭବ ଘୂରୁ ଘୂରୁ ଭବନାଥ ଯେଉଁ ଚିତ୍ର ସୃଷ୍ଟି କଲେ ବି ସବୁଥିରେ ଥାଏ ଜୀବନର ବେଦନା ଓ ସୁଗନ୍ଧ । ଷ୍ଟକ୍‌ହୋମ୍‌ର 'କୁଲ୍‌ଟୁର୍ ହ୍ୟୁସେଟ୍'ରେ ଯେଉଁ ଦୁର୍ଗା ମେଢ଼ର ସର୍ଜନା କଲେ ତାକୁ ସୁଇଡେନ୍‌ବାସୀ 'ଦୋର୍‌ଗା' ବୋଲି କହି ବିଭିନ୍ନ ଭାବରେ ଅର୍ଥ କଲେ ମଧ୍ୟ ଏହା ମଣିଷ ଜୀବନର ଏକ ନିଛକ ପ୍ରତିଛବି ବୋଲି ବୁଝିପାରିଲେ । ଚିତ୍ର ଓ ସାହିତ୍ୟରେ ଯଦି ମଣିଷଜୀବନର ବିଭିନ୍ନ ଦିଗ ପ୍ରକଟିତ ନ ହେଲା ତେବେ ତାର ମୂଲ୍ୟ କ'ଣ ?

ଚିତ୍ରକୁ ଅନୁଭବ କରିବାରେ ଗୋଟିଏ ସୁବିଧା ହେଲା ଏଥିରେ ଭାଷାରେ ଆବଶ୍ୟକତା ନାହିଁ । ଦେଶବିଦେଶର ସାହିତ୍ୟ ବୁଝିବାକୁ ହେଲେ ଭାଷା ଆମର ପ୍ରଧାନ ପ୍ରତିବନ୍ଧକ ହୋଇଥାଏ । ଏଥିପାଇଁ ଆମେ ଅନୁବାଦକ ଉପରେ ନିର୍ଭର କରୁ । କିନ୍ତୁ ଚିତ୍ରକୁ ଅନୁଭବ କରିବାରେ ସେ ସମସ୍ୟା ନାହିଁ । ପୃଥିବୀର ସବୁଦେଶରେ ଚିତ୍ରର ଭାଷା ଏକ । ଏଣୁ ଏଡ଼େବଡ଼ ପୃଥିବୀକୁ ସାନ କରିଦେବାରେ ସାହିତ୍ୟ ଅପେକ୍ଷା ଯେ ଚିତ୍ରର ଭୂମିକା ଅଧିକ ରହିଛି ଏଥିରେ ସନ୍ଦେହ ନାହିଁ ।

ଏହାର ଅର୍ଥ ନୁହେଁ ଯେ ସମସ୍ତଙ୍କର ସବୁ ଚିତ୍ରକୁ ସହଜରେ ବୁଝିହେବ । କିଛି ଚିତ୍ର ଖୁବ୍ ସହଜରେ ବୁଝି ହୋଇଯାଏ ତ କିଛି ଚିତ୍ର ବୁଝୁ ବୁଝୁ ମସ୍ତିଷ୍କର ତନ୍ତ୍ରି ଛିଡ଼ିଯିବାପରି ଲାଗେ । କିଛି

Digitized by srujanika@gmail.com

ଚିତ୍ରକୁ କେତେକ ଆଧୁନିକ କବିତା ପରି କେବଳ ତାର ସ୍ରଷ୍ଟା ହିଁ ବୁଝନ୍ତି । ଏହି ଧରଣର ଚିତ୍ର ଆଙ୍କି ଚିତ୍ରକର ପ୍ରଭୂତ ଆନନ୍ଦ ପାଆନ୍ତି । କାରଣ ତାଙ୍କ ଚିତ୍ର ଏତେ ଉଚ୍ଚକୋଟୀର ଯେ, ତାର ଗଭୀରତା ଆକଳନ କରିବାର ସାମର୍ଥ୍ୟ ଅଧମ ଦର୍ଶକର ନଥାଏ । ଆଜିକାଲି ଏହି ଶ୍ରେଣୀର ଚିତ୍ରକରଙ୍କ ସଂଖ୍ୟା ବେଶ୍ କିଛି । ଫ୍ରେମ୍ କରା ହୋଇଥିବା ରେଡ଼ିମେଡ଼୍ କାନ୍‌ଭାସ୍ ବଜାରରୁ କିଣି ଅବସରବିନୋଦନ ପାଇଁ ସେଥିରେ ଦୁହାକୁ ଦୁହା ରଙ୍ଗ ମାରି ଏକକ ପ୍ରଦର୍ଶନୀ କରିବାରେ ସବୁଠାରୁ ଅଧିକ ଆନନ୍ଦ ମିଳେ । କାରଣ ଯାହାର ଚିତ୍ରକୁ ବୁଝିବାପାଇଁ ବିଚରା ଦର୍ଶକମାନଙ୍କର କ୍ଷମତା ନାହିଁ ସେ ହିଁ ତ ଉଚ୍ଚକୋଟୀର ଚିତ୍ରକର ! ସେମାନେ ଉଦାହରଣ ଦିଅନ୍ତି - ଉପେନ୍ଦ୍ର ଭଞ୍ଜଙ୍କୁ କେତେଜଣ ବୁଝନ୍ତି ? ଏପରି ଉଦାହରଣ ଦେବାବେଳେ ସେମାନେ ଭୁଲିଯାଆନ୍ତି ଯେ ଭାଷା ଓ ସାହିତ୍ୟରେ ଜ୍ଞାନଲାଭ କରି କବିସମ୍ରାଟଙ୍କ କବିତାରୁ ପ୍ରଚୁର ରସାସ୍ୱାଦନ କରାଯାଇପାରେ, କିନ୍ତୁ ସେପରି ବ୍ୟକ୍ତିମାନଙ୍କର ଚିତ୍ରରୁ ରସ ମିଳିବା ଅସମ୍ଭବ ହୋଇପଡ଼େ ।

ଦିନନାଥ ଏପରି ଅବୋଧ୍ୟ ଚିତ୍ର ଆଙ୍କବାର ମୁଁ କେବେ ଦେଖି ନାହିଁ । ସମୟ ସମୟରେ ତାଙ୍କ ଚିତ୍ର ବୁଝିବାକୁ ସାମାନ୍ୟ କଷ୍ଟ ହେଲେ ମଧ ଅବୁଝା ରହେ ନାହିଁ । **ଦିନନାଥଙ୍କର ଆଉ ଗୋଟିଏ ଦିଗଦ୍ୱାରା ମୁଁ ପ୍ରଭାବିତ ହୋଇଛି । ସେ ଦିଗଟି ହେଲା ଚିତ୍ରକର ହେବା ସହିତ ସେ ଜଣେ ଡିଜାଇନର୍ । ଚିତ୍ରକର ହେବା ଓ ଡିଜାଇନର୍‌ର ହେବା ଏକାକଥା ନୁହେଁ ।** ଚିତ୍ର ଆଙ୍କିବା ବିଷୟରେ ଜଣଙ୍କର ହାତ ଭଲ ନହୋଇଥିଲେ ମଧ ସେ ଜଣେ ଡିଜାଇନର୍ ହୋଇପାରନ୍ତି । ଡିଜାଇନ୍ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ତିଆରି କରାଯାଏ । କିଛି ଚିତ୍ରକରଙ୍କୁ ବ୍ୟବହାର କରି ସୁନ୍ଦର ଡିଜାଇନ୍ କରାଯାଇପାରେ । ଏଥିରେ ଡିଜାଇନରଙ୍କ ଅନ୍ତର୍ଦୃଷ୍ଟି ହିଁ ଭୂମିକା ଗ୍ରହଣ କରେ । ଡିଜାଇନ୍‌ଟି ଯେଉଁ ଉଦ୍ଦେଶ୍ୟରେ ତିଆରି ହେଉଛି ତାହାକୁ ସଫଳ କରିବା ହିଁ ଡିଜାଇନରଙ୍କ ଲକ୍ଷ୍ୟ ।

ଦିନନାଥଙ୍କର ଯେଉଁ ଦିଗଟି ମୋତେ ସବୁଠାରୁ ଅଧିକ ପ୍ରଭାବିତ କରେ ତା' ହେଲା ସେ ଜଣେ ଦକ୍ଷ ଭିଜୁଆଲାଇଜର୍ । ଭିଜୁଆଲ୍ ଶବ୍ଦର ଅର୍ଥ ହେଲା ଯାହା ଦର୍ଶକ ଆଖିକୁ ସୁନ୍ଦର ଲାଗେ । ଭିଜୁଆଲାଇଜର୍ ତାର ଅନ୍ତର୍ଦୃଷ୍ଟି ବଳରେ ଦର୍ଶକଙ୍କୁ କ'ଣ ସୁନ୍ଦର ଲାଗିବ ତା' ସ୍ଥିର କରେ ଓ ତାହାକୁ ସୁଚାରୁରୂପେ ପରିବେଷଣ କରେ । ଦିନନାଥ ଭାରତବର୍ଷ ତରଫରୁ ଭିଜୁଆଲାଇଜର୍ ଭାବରେ ବହୁଦେଶରେ 'ଭାରତ ପ୍ରଦର୍ଶନୀ' କରିଛନ୍ତି । ଆମ ଦେଶର ଅସାଧାରଣ କଳାକୃତିକୁ ପ୍ରଦର୍ଶନ କରିବା ସହିତ ସାଧାରଣ କଳାକୃତିକୁ ମଧ ଅସାଧାରଣ ଭାବରେ ପରିବେଷଣ କରିବା ତାଙ୍କର ବିଶେଷତ୍ୱ ।

ଏ ସମ୍ପର୍କରେ ଗୋଟିଏ କଥା ମନେପଡ଼େ । ବହୁବର୍ଷ ତଳେ ଥରେ ଟୁରିଷ୍ଟ ବସ୍‌ରେ ବସି ଇଉରୋପ୍‌ବୁଲିବା ସମୟରେ ଆମର ଗାଇଡ୍ ଆମକୁ ଏକ ବିଅର୍ ପାର୍କ୍‌କୁ ନେବାପାଇଁ ଚାହିଁଲେ । ଆମକୁ ଆକୃଷ୍ଟ କରିବାପାଇଁ ଦଶମିନିଟ୍ ଧରି ସେ ବିଅର୍ ପାର୍କ୍ ବିଷୟରେ ଲମ୍ବା ଭାଷଣ ଦେଲେ । ତାଙ୍କ ଭାଷଣ ଶୁଣି ଆମେ ଆଗ୍ରହ ପ୍ରକାଶ କରି ସମ୍ମତି ଦେଲୁ । ବସ୍ ବିଅର୍ ପାର୍କ୍ ଦିଗକୁ ମୁହାଁଇଲା । ପ୍ରାୟ ଅଧଘଣ୍ଟା ପରେ ବସ୍ ରହିଲା ଏକ ବିରାଟ ପାର୍କ୍ ପାଖରେ । ସୁନ୍ଦର ବଗିଚାରେ ନାନା ବର୍ଣ୍ଣର ଫୁଲ । ଅତି ପରିଷ୍କାର । କେଉଁଠି ଶୁଖିଲା ପତ୍ରଟିଏ ବି ପଡ଼ି ନାହିଁ ; ସବୁଜରଙ୍ଗର ବିସ୍ତୃତ ଲନ୍ । ଏତେ ରମଣୀୟ ଉଦ୍ୟାନଟିଏ ନ ଦେଖିଥିଲେ ମନରେ ଅବସୋସ ରହିଯାଇ ଥାଆନ୍ତା ବୋଲି ମନେ ହେଲା । ଗାଇଡ୍ ଆମକୁ ନେଇଗଲେ ତା ଭିତରେ ଥିବା ଗୋଟିଏ ଚଉଡ଼ା ଓ ଅଗଭୀର କୂଅ ପାଖକୁ । କୂଅ ଚାରିପଟେ ଠିଆହୋଇ ଆମେ ସମସ୍ତେ ଯାହା ଦେଖିଲୁ ହୋ ହୋ ହୋଇ ନ ହସି ରହିପାରିଲୁ ନାହିଁ । ଦୁଇଟି ମଧମ ଆକାରର ମାଟିଆ ଭାଲୁ ନିର୍ବିକାର ଭାବରେ ବସି ରହିଥିଲେ । ଆମ ଭିତରୁ କିଛି ଲୋକ ମନେ ମନେ ଓ କିଛି ଲୋକ ଜନାନ୍ତିକରେ ଗାଇଡ୍‌ଙ୍କୁ ବେଶ୍ ଗାଳିଦେଲେ । ଆମର ପ୍ରାୟ ଦେଢ଼ଘଣ୍ଟା ସମୟ ଅଯଥା ନଷ୍ଟ ହେଲା । ଏହା ସତ୍ତ୍ୱେ ବସ୍‌ରେ ଫେରିବାବେଳେ ଏପରି ଏକ ବିଅର୍ ପାର୍କ୍‌ର ଭିଜୁଆଲାଇଜରଙ୍କୁ ମନେ ମନେ ଧନ୍ୟବାଦ ନ ଦେଇ ରହି ପାରିଲି ନାହିଁ । ଅତି ସାଧାରଣ ବସ୍ତୁକୁ ଅସାଧାରଣ ଭାବରେ ପ୍ରସ୍ତୁତ କରିବା ତ ଭିଜୁଆଲାଇଜରଙ୍କ ଲକ୍ଷ୍ୟ । ବିଅର୍ ପାର୍କ୍‌ରେ ତାଙ୍କର ସେଇ ଲକ୍ଷ୍ୟ ନିଶ୍ଚିତ ଭାବରେ ସାଧିତ ହୋଇଛି । କେବଳ ସେଇ ବିଅର୍ ପାର୍କ୍‌ଟି ନୁହେଁ, ଇଉରୋପର ବହୁସ୍ଥାନରେ ସାଧାରଣ ଜିନିଷକୁ ଅତି ଚମତ୍କାରଭାବରେ ପ୍ରଦର୍ଶିତ କରାଯାଇଥାଏ ।

Digitized by srujanika@gmail.com

ଦିନନାଥଙ୍କର ଚରିତ୍ର ବଡ଼ ବିଚିତ୍ର । ସେ କେବେ କାହାକୁ 'ନୋ ସାର୍' କହିବା ମୁଁ ଶୁଣି ନାହିଁ । 'ପାଠୀ ବାବୁ, ମୋ' ରୁମ୍‌ରେ ଗୋଟିଏ ପେଣ୍ଟିଂ ଟଙ୍ଗା ହୋଇ ପାରନ୍ତା ନାହିଁ ?' ପ୍ରଶ୍ନ ସରୁ ନ ସରୁଣୁ ଦିନନାଥ ଉତ୍ତର ଦିଅନ୍ତି, 'ୟେସ୍ ସାର୍, ନିଶ୍ଚୟ ହେବ ।' 'ପାଠୀବାବୁ, ମୋ ଘର କାନ୍ଥର ରଙ୍ଗ କମ୍ବିନେସନ୍ ଟିକେ ଦେଖିଦେବେ ।' ତତ୍‌କ୍ଷଣାତ୍ ଉତ୍ତର ଆସେ, 'ୟେସ୍ ସାର୍, ଦେଖିଦେବି ।' ଏଇପରି ପ୍ରଶ୍ନବାଣରେ ଜର୍ଜରିତ ଦିନନାଥ ଅତି ସହଜରେ ସହାସ୍ୟବଦନରେ 'ୟେସ୍ ସାର୍' କହି କହି କାନ୍ଥରେ କଣ୍ଟା ପିଟିବାଠାରୁ ଆରମ୍ଭ କରି ଘରର ରଙ୍ଗ ଚନଖିବା ପର୍ଯ୍ୟନ୍ତ ସବୁ କାର୍ଯ୍ୟ ନିଃସଙ୍କୋଚରେ କରିଯାଆନ୍ତି । ସେତେବେଳେ ସେ ଭୁଲି ଯାଇଥାନ୍ତି ଯେ ସକାଳେ ଘରୁ ବାହାରିବା ସମୟରେ ପତ୍ନୀ ବ୍ୟାଗ୍ ଦେଇଥିଲେ ପରିବା ଆଣିବା ପାଇଁ । ଅଧରାତିରେ ଦିନନାଥ ଘରକୁ ଫେରିବା ପରେ ପରେ ଯେଉଁ ପରିସ୍ଥିତି ସୃଷ୍ଟି ହୁଏ ତାହା ବର୍ଣ୍ଣନା ନ କରିବା ଭଲ ।

ଦିନକର କଥା କହୁଛି । କୌଣସି କାର୍ଯ୍ୟରେ ଦିନନାଥ ପହଞ୍ଚିଲେ ଆମ ଘରେ । ଭାତ ଖାଇବା ବେଳ ତାଙ୍କର । ଏଣୁ ପଚାରିଲି, 'ଭାତ ଗଣ୍ଡେ ଆମ ଘରେ ଖାଇବାକୁ ଆପତ୍ତି ଅଛି ?' ଉତ୍ତର ମିଳିଲା, 'କୌଣସି ଆପତ୍ତି ନାହିଁ, ଖାଇଦେବା ।' ଭିତରକୁ ଯାଇ ମା'ଙ୍କୁ କହିଲି 'ପାଠୀ ବାବୁ ଖାଇବେ ।' ମା' କହିଲେ, 'ଭାତ, ଡାଲି, ତରକାରି ହୋଇ ସାରିଚି । ଭଜା ଦୁଇଖଣ୍ଡ ମୁଁ ସାଙ୍ଗେ ସାଙ୍ଗେ ଭାଜି ଦେଉଚି । ତୁ ବଢ଼ାବଢ଼ି ବ୍ୟବସ୍ଥା କର ।' ସେତେବେଳେ ଆମ ଘର ତିଆରି ସରି ନ ଥାଏ । ବାପା ଆମ ନୂଆ ଜାଗାରେ ଆଜ୍‌ବେଷ୍ଟସ୍ ପକାଇ ଦି ବଖରା ଘର କରିଥାନ୍ତି । ଡାଇନିଂ ଟେବୁଲ୍ ନ ଥାଏ । ଛୋଟିଆ ଡ୍ରଇଁ ରୁମ୍‌ଟିରେ ପଡ଼ିଥିବା ସୋଫାରେ ବସି ପାଠୀ ବାବୁ ଖାଇବେ ବୋଲି ସ୍ଥିର ହେଲା । **ଗ୍ଲାସ୍‌ରେ ପାଣି ନେଇ ଦିନନାଥ ହାତ ଧୋଇ ଖାଇବାକୁ ବସିଲେ । ମୋ ଭଉଣୀ ଭାତ ଓ ଡାଲି ବାଢ଼ି ଦେଇ ତରକାରି ଆଣିବାକୁ ଗଲା । ତରକାରି ଆଣି ଦେଖେ ତ ଥାଳି ଖାଲି । ଭାତ ଡାଲି ସବୁ ଶେଷ । ବଡ଼ ଅପ୍ରସ୍ତୁତ ହୋଇପଡ଼ି ସେ ତରକାରି ଥୋଇ ଦେଇ ଗଲା ପୁଣି ଥରେ ଭାତ ଡାଲି ଆଣିବା ପାଇଁ । ଏଥର ଆସି ଦେଖେ ତ ତରକାରି ଶେଷ । ପୁଣି ଗଲା ତରକାରି ଆଣିବା ପାଇଁ । ଆଣୁ ଆଣୁ ଭାତ ଡାଲି ଶେଷ । ମା'ଙ୍କ ଭଜା କରେଇରେ ଚେଁ କଲାବେଳକୁ ଡ୍ରଇଁ ମାଷ୍ଟ୍ରେ ହାତ ଧୋଉଛନ୍ତି । ମୁଁ ହସି ହସି ବେଦମ୍** । ଭଉଣୀ ସେତେବେଳକୁ କାନ୍ଦ କାନ୍ଦ ହୋଇଗଲାଣି । ମାଷ୍ଟ୍ରେ ତାକୁ ବୁଝାଇ ଦେଲେ, 'ମନ ଦୁଃଖ କରନି, ସେମାନେ ସମସ୍ତେ ପେଟରେ ମିଶି ଯିବେ ।' ସେ କହିଲା, 'ସାର୍ ମୁଁ ଭୁଲି ଯାଇଛି, ଦହି ଦେଇନି ।' ମାଷ୍ଟ୍ରେ କହିଲେ, 'ହଁ ହଁ ଆଣ, ଆମେ ଦକ୍ଷିଣୀ ଲୋକ, ଦହିକୁ କ'ଣ ମନା କରିପାରିବୁ ?' ଗିନାଟିକୁ ଓଠ ପାଖକୁ ଟେକି ଦେଇ ଡ୍ରଇଁ ମାଷ୍ଟ୍ରେ ଏକା ନିଃଶ୍ୱାସରେ ଦହିତକ ଶୋଷାଡ଼ି ନେଲେ ।

ଦିନନାଥ ସାଦା ଖାଇଲେ ବି ବେଳେ ବେଳେ ବେଶ୍ କଡ଼ା କଥା କହିପାରନ୍ତି । ପିନ୍ଧନ୍ତି ଅଣ୍ଟାତଳକୁ ଜିନ୍ ପ୍ୟାଣ୍ଟ୍ ଓ ଅଣ୍ଟା ଉପରକୁ ଖଦୀ ପଞ୍ଜାବୀ । ଆମ ଦେଶରେ ଏଇ ବେଶଟାକୁ କେବଳ ଚିତ୍ରକର ନୁହେଁ, ପ୍ରାୟ ସବୁ କଳାକାର ଧାରଣ କରିଥାନ୍ତି । କ'ଣ ବୁଝି ସେମାନେ ଏ ବେଶ ପିନ୍ଧନ୍ତି ମୁଁ ଜାଣେନା । ମତେ କିନ୍ତୁ ଲାଗେ, ଲମ୍ବା ଦେଶୀ ପଞ୍ଜାବୀଟା ବିଦେଶୀ ପ୍ୟାଣ୍ଟ୍‌ଟିକୁ ସତେ ଯେମିତି ମାଡ଼ି ବସି ଘୋଡ଼େଇ ଦେଉଚି । ବିଦେଶୀ ପ୍ୟାଣ୍ଟ୍‌ଟି ବିଚରା ଅଣନିଃଶ୍ୱାସୀ ଅବସ୍ଥାରେ ମାଡ଼ିଯାକି ହୋଇ ଡହଳ ବିକଳ ହେଉଚି । ଏହାକୁ ବିଦେଶୀ କଳା ଉପରେ ଦେଶୀ କଳାର ବିସ୍ତୃତ ପ୍ରଭାବ ବୋଲି ଧରି ନିଆଯାଇ ପାରେ ।

ଦିନନାଥଙ୍କ କଥା କହୁଥିଲେ ସରିବନି । ଶେଷରେ ଗୋଟିଏ କଥା କହୁଚି । ମୋ ମନରେ ଗୋଟିଏ ଅବସୋସ ରହିଗଲା । ଯେତେ ଅନୁରୋଧ କଲେ ମଧ୍ୟ ଦିନନାଥ ମତେ ଚିତ୍ର ଆଙ୍କିବା ଶିଖାଇଲେ ନାହିଁ । ତାଙ୍କୁ ଗୁରୁ କରିବାର ଅଭିଳାଷ ମୋର ଅପୂର୍ଣ୍ଣ ରହିଗଲା । ଯୁବକ ଅବସ୍ଥାରେ ଯେ ଶିଖାଇଲେ ନାହିଁ ସେ କ'ଣ ଆଉ ବୁଢ଼ା ଦିନେ ଶିଖାଇବେ ? ତଥାପି ମୋ ଆଶା ମଉଳି ନାହିଁ । ମୁଁ ଧୈର୍ଯ୍ୟ ଧରି ଅପେକ୍ଷା କରିଚି, କାରଣ ଯେତେ ବୁଢ଼ା ହେଲେ ବି ଜଗନ୍ନାଥଙ୍କ ଅପାର କରୁଣାରୁ ଦିନନାଥଙ୍କୁ ବାର୍ଦ୍ଧକ୍ୟ ଗ୍ରାସ କରିବାର କୌଣସି ଲକ୍ଷଣ ଦେଖା ଯାଉନାହିଁ । ମାଷ୍ଟ୍ରେ ବୋଧହୁଏ ମୋତେ ଜଣେଇଦେବାକୁ ଚାହୁଁଛନ୍ତି, 'ମୂର୍ଖ ! ଚିତ୍ର ଆଙ୍କିବା ସିନା ନିଜ ଭିତରୁ ବାହରେ । ଏକଥା କ'ଣ କିଏ କାହାକୁ ଶିଖାଏ ?'

Digitized by srujanika@gmail.com

ପ୍ରଶାନ୍ତ ଚନ୍ଦ୍ର ପଟ୍ଟନାୟକ (ପ୍ରୀତମ୍)

## ଜଣେ ଡ୍ରଇଁମାଷ୍ଟ୍ରଙ୍କ ବର୍ଣ୍ଣିଳ ବ୍ୟକ୍ତିତ୍ୱ

ପାଠୀ ବାବୁଙ୍କ ସହିତ ମୋର ଚାକିରିକାଳରୁ ପରିଚୟ। ସେତେବେଳେ ସେ ବି ଚାକିରି କରୁଥିଲେ। ପଟଚିତ୍ର ଶିଳ୍ପ ପାଇଁ ପ୍ରଖ୍ୟାତ ଗ୍ରାମ ରଘୁରାଜପୁରରେ ଗୋଟିଏ ଗ୍ରାମ୍ୟ ଚିତ୍ର ଓ କାରୁକାର୍ଯ୍ୟ ପ୍ରଦର୍ଶନୀ ଯୋଗାଡ଼ କରିବା ପାଇଁ ମୁଁ ରଘୁରାଜପୁର ଯାଇଥିଲି କର୍ତ୍ତବ୍ୟ ଅନୁରୋଧରେ। ସେ ଭୁବନେଶ୍ୱରରୁ ଆସି ପହଞ୍ଚିଲେ। ପ୍ରଦର୍ଶନୀକୁ ସୁନ୍ଦର ଭାବରେ ସଜାଡ଼ିବାରେ ତାଙ୍କ ଦକ୍ଷତା ଦେଖିଲି। ଅନୁଭବ କଲି ସେ ଜଣେ କେବଳ ସରକାରୀ ପଦାଧିକାରୀ ନୁହନ୍ତି, ଜଣେ ନିଷ୍ଠାବାନ୍ କଳାପ୍ରାଣ ବ୍ୟକ୍ତି। ତାଙ୍କ ପ୍ରତିଭା ଓ କର୍ମନିଷ୍ଠା ତୁଳନାରେ ପଦବୀ ଥିଲା ନିତାନ୍ତ ନଗଣ୍ୟ।

ଆକସ୍ମିକ ଭାବରେ ପୁଣି ଦିନେ ଦେଖା ହେଲା ଦିଲ୍ଲୀ ଓଡ଼ିଶା ନିବାସରେ। ଗୋଟିଏ ପ୍ରକୋଷ୍ଠରେ ଆମ ଦୁଇଜଣଙ୍କୁ ଜାଗା ମିଳିଥିଲା। ସେତେବେଳେ ତାଙ୍କଠୁ ଶୁଣିଲି ତାଙ୍କ ଜୀବନ କାହାଣୀ। ଚିତ୍ରଶିକ୍ଷକ ପଦବୀରୁ କଳା ମହାବିଦ୍ୟାଳୟର ଅଧକ୍ଷ ଯାଏ। କେତେ ସଂଘର୍ଷ, ପ୍ରତିରୋଧ, ଅସୂୟା ଓ ଅବମାନନାର ଦୁଃଖପୂର୍ଣ୍ଣ ଜୀବନ। ତା'ପରେ ସେ ଯୋଗଦେଲେ ନିଖିଳ ଭାରତୀୟ ଲଳିତ କଳା ଏକାଡ଼େମୀର ସଚିବ ଭାବରେ। ଜଣେ ଓଡ଼ିଆ ଚିତ୍ରଶିଳ୍ପୀ ନିଜ ସାଧନା ବଳରେ ଯୋଗ୍ୟତା ଅର୍ଜନ କରି ସେହି ପଦବୀକୁ ମଣ୍ଡନ କଲେ।

ଦିଗପହଣ୍ଡିର ଡ୍ରଇଁ ଶିକ୍ଷକ ପଦରୁ ଉଠିଉଠି ଦିଲ୍ଲୀର ଲଳିତ କଳା ଏକାଡ଼େମୀ ପର୍ଯ୍ୟନ୍ତ ଯିବା ପାଇଁ ତାଙ୍କ ପଛରେ କୌଣସି ଉଚ୍ଚ ପଦାଧିକାରୀ ପୃଷ୍ଠପୋଷକ ନଥିଲେ।

**ବିଜୁ ପଟ୍ଟନାୟକ ଦ୍ୱିତୀୟ ଥର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲାବେଳେ ଯେଉଁ ସାଂସ୍କୃତିକ ପ୍ରତିନିଧି ଦଳ ନେଇ ବାଲିଦ୍ୱୀପ ଯାଇଥିଲେ, ସେଥିରେ ମୋର ପରିଚିତ କେତେଜଣ ପ୍ରଶାସକ ବନ୍ଧୁଥିଲେ। ସେମାନଙ୍କଠୁ ଶୁଣିଲି ଯେ ବାଲିରେ ଓଡ଼ିଶାର ସଂସ୍କୃତି ସମ୍ପର୍କରେ ସେଠାର ପଣ୍ଡିତ, ସାହିତ୍ୟିକ, ଐତିହାସିକ ଓ ପଦାଧିକାରୀମାନଙ୍କ ଯେଉଁ ସଭା ହୋଇଥିଲା, ସେଥିରେ ପାଠୀ ବାବୁ ଯେଉଁଳି ଦକ୍ଷତାର ସହିତ ଓଡ଼ିଶାର କଳା ଓ ସଂସ୍କୃତିକୁ ପରିବେଷଣ କରିଥିଲେ, ତାହା ସମସ୍ତଙ୍କ ମନରେ ଗଭୀର ରେଖାପାତ କରିଥିଲା।** ମୋର ବନ୍ଧୁମାନେ କହିଲେ ଯଦି ପାଠୀ ବାବୁ ନଥାନ୍ତେ, ତେବେ ପ୍ରତିନିଧି ଦଳ ପରାଙ୍ମୁଖ ହୋଇ ଫେରିଥାନ୍ତେ। ପାଠୀ ବାବୁ ଓଡ଼ିଶାର ପ୍ରତିନିଧି ଦଳର ମାନରକ୍ଷା କରିଦେଇଥିଲେ। କିନ୍ତୁ ସେଥିପାଇଁ ସରକାରଙ୍କ ପକ୍ଷରୁ ବା ପ୍ରତିନିଧି ଦଳର ମୁଖ୍ୟକର୍ତ୍ତାମାନଙ୍କଠାରୁ ସେ ପଦେ ଉତ୍ସାହବାଣୀ ମଧ ପାଇ ନଥିଲେ। ତେବେ, ଜଣେ ସ୍ୱାଭିମାନୀ ଓଡ଼ିଆ ଭାବରେ ସେ ବିଦେଶରେ ଏ ଜାତିର ଟେକ ରଖିଆସିଲେ।

ପାଠୀ ବାବୁଙ୍କ ଅସଲ ପରିଚୟ ହେଉଛି ସେ ଜଣେ ଉଚ୍ଚକୋଟୀର ଚିତ୍ରଶିଳ୍ପୀ। ନିଜ ଚିତ୍ରକଳା ପ୍ରତିଭାକୁ ସେ ବ୍ୟବସାୟ କରି ଅର୍ଥ ଉପାର୍ଜନ କରିବା ସ୍ତରକୁ ନେଇନାହାନ୍ତି। ଏଥିପାଇଁ ତାଙ୍କୁ ବହୁତ ତ୍ୟାଗ ଓ ଅର୍ଥାଭାବ ଭୋଗିବାକୁ ପଡ଼ିଛି। କିନ୍ତୁ ତୂଳୀ ଚଳାଇଛନ୍ତି କେବଳ ଉଚ୍ଚକୋଟୀର କଳାସୃଷ୍ଟି ପାଇଁ। ତାଙ୍କ ଚିତ୍ରଗୁଡ଼ିକ କେବଳ ସର୍ବଭାରତୀୟ ସ୍ତରରେ ନୁହଁ, ଆନ୍ତର୍ଜାତିକ ସ୍ତରରେ ମଧ ପ୍ରସିଦ୍ଧି ଲାଭ କରିଛି।

ପାଠୀ ବାବୁଙ୍କ ପ୍ରତିଭାର ଅନ୍ୟ ଏକ ବିଶିଷ୍ଟ ଦିଗଟି ହେଲା ତାଙ୍କ ସାହିତ୍ୟ ସୃଷ୍ଟି। **ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ, ପୁଞ୍ଜିକୟାଁର ଫକୀର, ସାୟୋନାରା, ପୁନର୍ନବା, ଶ୍ଳୋକଛନ୍ଦ** ଓ **ଗଙ୍ଗାବତରଣ**- ଛଅଟି ଅନବଦ୍ୟ ଉପନ୍ୟାସ ଓ ଜୀବନୀ ଗ୍ରନ୍ଥର ସ୍ରଷ୍ଟା ସେ। **ପୁନର୍ନବା** ଉପନ୍ୟାସରେ ଦକ୍ଷିଣ

Digitized by srujanika@gmail.com

ଓଡ଼ିଶାର ଗୋଟିଏ ନିର୍ଦ୍ଦିଷ୍ଟ ଯୁଗର ସାମାଜିକ ଜୀବନର ନିଖୁଣ ଚିତ୍ର ଆଙ୍କିଛନ୍ତି ଭାଷାରେ। ଦକ୍ଷିଣ ଓଡ଼ିଶାରେ ବ୍ୟବହୃତ ଅନେକ ସୁନ୍ଦର ଶବ୍ଦକୁ ସେ ସାହିତ୍ୟରେ ଅଙ୍ଗୀଭୂତ କରିଛନ୍ତି ଜଣେ କୁଶଳୀ ଭାଷାଶିଳ୍ପୀ ଭାବରେ। **ଶ୍ଳୋକଛନ୍ଦ** ଭାରତୀୟ ଓ ବିଦେଶର ଚିତ୍ରକଳାକୁ ଉପଜୀବ୍ୟ କରି ଏକ ଅନନ୍ୟ ଉପନ୍ୟାସ। **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** ଓ **ପୁଞ୍ଜିକୟାଁର ଫକୀର** ତାଙ୍କ ଆତ୍ମଜୀବନୀମୂଳକ ପଲ୍ଲୀର ଚରିତ୍ର ଉପନ୍ୟାସ କ୍ଲାସିକ୍ ସ୍ତରକୁ ଉତ୍ତରିତ ଦୁଇଟି ଅତ୍ୟନ୍ତ ମନୋରମ ଜନପ୍ରିୟ ଉପନ୍ୟାସ। ସେହିଭଳି **ସାୟୋନାରା** ତାଙ୍କ ଜାପାନଗସ୍ତର ସ୍ମୃତିକୁ ଭିତ୍ତି କରି ଏକ ଅଦ୍ଭୁତ ଉଚ୍ଚକୋଟୀର ଉପନ୍ୟାସ ଏବଂ **ଗଙ୍ଗାବତରଣ** ଆମ ସଂସ୍କୃତି ଓ ଜୀବନ ଦର୍ଶନର ବାର୍ତ୍ତା ବହନ କରୁଥିବା ଏକ ଅନୁପମ ସାହିତ୍ୟ କୃତି।

**ପାଠୀ ବାବୁଙ୍କ ଉପନ୍ୟାସ ପଢ଼ିଲେ ମନେହୁଏ ଶବ୍ଦକୁ, ଭାବକୁ ଓ ରସାନୁଭୂତିକୁ ନେଇ ଯେମିତି ସେ ଚିତ୍ର ପରେ ଚିତ୍ର ଆଙ୍କି ଚାଲିଛନ୍ତି । ଏହି ଉପନ୍ୟାସଗୁଡ଼ିକ ଓଡ଼ିଆ ସାହିତ୍ୟର ଏକ ନିର୍ଦ୍ଦିଷ୍ଟ ଅଭାବକୁ ପୂରଣ କରୁଛି। ସାହିତ୍ୟରେ ଉତ୍ତରଣ ବୋଲି ଯାହା କୁହାଯାଏ, ତାହା ପାଠୀ ବାବୁଙ୍କ ଉପନ୍ୟାସର ଛତ୍ରେ ଛତ୍ରେ ଉପଲବ୍ଧ ହୁଏ।**

ପାଠୀ ବାବୁଙ୍କ ଜୀବନର ଏକ ସାମାଜିକ ଦିଗ ରହିଛି। ଜଣେ ଭାରତ ବିଖ୍ୟାତ ଚିତ୍ରଶିଳ୍ପୀ ଭାବରେ ସେ ସବୁବେଳେ କର୍ମବ୍ୟସ୍ତ। କିନ୍ତୁ ତା'ରି ଭିତରେ ସ୍ଥାନୀୟ ଲେଖକଙ୍କ ସମସ୍ୟା ସହିତ ନିଜକୁ ଜଡ଼ିତ କରିବା ପାଇଁ ସେ କୁଣ୍ଠିତ ନୁହନ୍ତି। ଥରେ ଆମେ ଭୁବନେଶ୍ୱରର ଭୀମଟାଙ୍ଗୀ ଅଞ୍ଚଳରେ (ଯେଉଁଠି ସେ ମଧ ରହନ୍ତି) ଗୋଟିଏ ନୃତ୍ୟୋତ୍ସବ କରିବା ପ୍ରସ୍ତାବ ନେଇ ତାଙ୍କ ପାଖରେ ପହଞ୍ଚିଲୁ। ସେ ପ୍ରସ୍ତାବଟିକୁ ପସନ୍ଦ କଲେ ଓ ସଙ୍ଗେ ସଙ୍ଗେ ତାହାକୁ ଏକ ସର୍ବାଙ୍ଗ ସୁନ୍ଦର ଉତ୍ସବ କରିବା ପାଇଁ ଅନେକ ପରିକଳ୍ପନା ଦେଲେ ଏବଂ ତାହା କାର୍ଯ୍ୟକାରୀ କରିବା ପାଇଁ ଅଣ୍ଟାଭିଡ଼ି ବାହାରିଲେ। ଘର ଘର ବୁଲି ଚାନ୍ଦାଆଦାୟ କରିବାଠୁ ଆରମ୍ଭ କରି ଉତ୍ସବର ନିମନ୍ତ୍ରଣ ପତ୍ର, ପୋଷ୍ଟର ଓ ମଞ୍ଚ ପ୍ରସ୍ତୁତି-ଏ ସମସ୍ତ କାର୍ଯ୍ୟ ଅକୁଣ୍ଠିତ ଚିତ୍ତରେ ଆଦରି ନେଲେ। ଦିନେ କହିଲେ ସେ ଘରୁ ସକାଳୁ ବାହାରିଲାବେଳେ ତାଙ୍କ ପୁଅ କହିଲେ, "କ'ଣ, ଚାନ୍ଦା ଆଦାୟରେ ବାହାରିଲ!" ଅର୍ଥାଗମର ପନ୍ଥା ସୀମିତ ଥିଲେ ବି ସେ କାର୍ଯ୍ୟକ୍ରମର ପୂର୍ଣ୍ଣାଙ୍ଗ ରୂପରେ କିଛି କମ୍ କରିବାକୁ ଚାହିଁଲେ ନାହିଁ। ଶିଳ୍ପୀ-ମାନସରେ ସର୍ବଶ୍ରେଷ୍ଠ ପରିପ୍ରକାଶରେ ଟିକିଏ ହେଲେ ସାଲିସ୍ କରାଯିବାର ପ୍ରଶ୍ନ ଉଠୁନାହିଁ। **ସୁନ୍ଦର ଏକ ନୃତ୍ୟୋତ୍ସବ ଅନୁଷ୍ଠିତ କରି ଏ ଅଞ୍ଚଳ ପାଇଁ ଏକ ଉଚ୍ଚ ପରମ୍ପରା ସୃଷ୍ଟି କରିଦେଇଗଲେ। ଉତ୍ସବ ଶେଷ ହେଲା ନୃତ୍ୟଶିଳ୍ପୀ, ଟେଣ୍ଟ୍‌ବାଲା, ଆଲୋକ ଓ ଧ୍ୱନି କାରିଗର, ଇତ୍ୟାଦି ଅନେକଙ୍କ ପ୍ରାପ୍ୟ ଦିଆଯାଇ ପାରିଲା ନାହିଁ। ଶେଷକୁ ସେ ନିଜ ହାତରୁ ହଜାର ହଜାର ଟଙ୍କା ଦେଇ ଅଭାବକୁ ଭରଣା କଲେ। ଅଦ୍ଭୁତ ତାଙ୍କ ଉତ୍ସାହ, ନିଷ୍ଠା ଓ ତ୍ୟାଗ।**

ପାଠୀ ବାବୁ ସକାଳୁ ଉଠି ଦୀର୍ଘପଥ ପ୍ରାତଃଭ୍ରମଣରେ ଯାଆନ୍ତି। ଫେରିଲାବେଳେ ବନ୍ଧୁମାନଙ୍କ ଘରକୁ ଯାଇ ଭେଟନ୍ତି। ଚାଲିଚାଲି ବହୁବାଟ ବୁଲିବାରେ ତାଙ୍କୁ କ୍ଳାନ୍ତି ନାହିଁ। ତାଙ୍କର ବହୁବିଧ ବ୍ୟସ୍ତତା ଭିତରେ ବ୍ୟକ୍ତିଗତ ସମ୍ପର୍କ ରଖିବା ପାଇଁ ସେ ଭୁଲନ୍ତି ନାହିଁ। ତାଙ୍କର କଳାକାର ଗୋଷ୍ଠୀ ପକ୍ଷରୁ ସଭା ସମିତି ଅନୁଷ୍ଠିତ ହେଲେ ସେ ନିଜେ ଘରକୁ ଆସି ନିମନ୍ତ୍ରଣ ପତ୍ର ଦେଇଯାଆନ୍ତି। ସଭା ସମିତିର ପରିକଳ୍ପନା ଓ ପରିପାଟୀରେ ଥାଏ କିଛି ନୂତନ ସ୍ୱାଦ। ବହି ଉନ୍ମୋଚନ ସଭାକୁ ସେ 'ଲୋକାର୍ପଣ' ଉତ୍ସବ ବୋଲି ନାମିତ କଲେ। ବହିର ସମୀକ୍ଷା ପାଇଁ 'ପାଠକୀୟ' ନାମକରଣ ତାଙ୍କର ନିଜସ୍ୱ କଳ୍ପନା। ଯେଉଁ ସଭାସମିତିରେ ପ୍ରବନ୍ଧ ପଢ଼ନ୍ତି, ସେ ପ୍ରବନ୍ଧ ଲେଖିବା ପାଇଁ ସେ ବହୁ ଗବେଷଣା ଓ ପରିଶ୍ରମ କରନ୍ତି। ଏସବୁ ତାଙ୍କ ବ୍ୟକ୍ତିତ୍ୱର ବିଶିଷ୍ଟ ଆଦର୍ଶ, ଶିକ୍ଷଣୀୟ ଦିଗ।

ପାଠୀ ବାବୁ ତାଙ୍କ ନିଜ ଉଦ୍ୟମ, ଅଧ୍ୟବସାୟ ଓ ପ୍ରତିଭା ବଳରେ ବଡ଼ ହୋଇଛନ୍ତି, କିନ୍ତୁ ଏତେ ବଡ଼ ପ୍ରତିଭା ଓ ବହୁବିଧ କୃତିତ୍ୱର ଅଧିକାରୀ ହୋଇ ମଧ ତାଙ୍କ ମନରେ ଗର୍ବ ନାହିଁ।

Digitized by srujanika@gmail.com

ଦେଖିଲେ ମନେ ହେବ ଏଇ ସେଇ ଦିଗପହଣ୍ଡିର ସରଳ ହୃଦୟବାନ ମଣିଷଟି । କଥାରେ କୌଣସି ଛଳନା ନାହିଁ । ଯାହା ଭାବନ୍ତି, ରୋକ୍‌ଠୋକ୍ କହିବେ, କିନ୍ତୁ ଶାଳୀନତା ଓ ସମ୍ଭ୍ରମତାରେ ଟିକିଏ ହେଲେ ବିଚ୍ୟୁତି ନାହିଁ ।

ଷାଠିଏ ବର୍ଷପରେ ପରିଣତ ଚିନ୍ତା ଓ ଚେତନାର ସାଧନା ଆରମ୍ଭ ହୁଏ । ଏବେ ସେ ସତୁରିର ଏରୁଣ୍ଡି ଡେଇଁବେ । ଏବେ ନିଜ ହୃଦୟ ପ୍ରତି ଅନୁରକ୍ତି ସହିତ ଚିତ୍ର ଆଙ୍କିବେ ଓ ବହି ଲେଖିବେ । ତାଙ୍କ ପାଇଁ ଆହୁରି ଅନେକ କିଛି କୃତି ଓ କଳ୍ପନା, ସାଧନା ଓ ସିଦ୍ଧି ଅପେକ୍ଷା କରି ରହିଛନ୍ତି ।

ଅପେକ୍ଷା କରିଛନ୍ତି ତାଙ୍କ ସର୍ଗତ ଗୁରୁଦେବ ଶରତଚନ୍ଦ୍ର ଦେବ । ପାଠୀ ବାବୁ ଶରତ ଚନ୍ଦ୍ରଦେବଙ୍କ କଳାକୃତିର ଜଣେ ପ୍ରଗାଢ଼ ଉପାସକ । ତାଙ୍କର **ଶ୍ଲୋକଛନ୍ଦ** ଉପନ୍ୟାସ ଏଇ ଶରତଚନ୍ଦ୍ର ଦେବଙ୍କ କଳାର ଉତ୍କର୍ଷକୁ ନେଇ ସୃଷ୍ଟ । ତାଙ୍କ ପୂଜ୍ୟ ଗୁରୁଦେବ ଯାହା କହିଛନ୍ତି, ଯେଉଁଳି ଭାବରେ ଏ ଦେଶର ପ୍ରାଣକୁ ଚିତ୍ରରେ ପ୍ରକାଶ କରିଛନ୍ତି, ପାଠୀ ବାବୁ ତାଙ୍କ ସୁଯୋଗ୍ୟ ଛାତ୍ର ଭାବରେ ଆହୁରି ଆଗେଇ ଯିବେ ଏବଂ ଏଭଳି କିଛି କଳାସୃଷ୍ଟି କରିବେ, ଯାହା ତାଙ୍କ ଗୁରୁଙ୍କ ଆଦର୍ଶ ଓ ସପ୍ନକୁ ଅଧିକ ଋଦ୍ଧିମନ୍ତ କରିବ ।

ବିଶେଷତଃ ଓଡ଼ିଶାର କଳା ଓ ସଂସ୍କୃତିର ପ୍ରାଣକୁ ଆନ୍ତର୍ଜାତିକ ସ୍ତରରେ ପରିଚିତ କରିବା ପାଇଁ ତାଙ୍କ ଉପରେ ରହିଛି ଗୁରୁ ଦାୟିତ୍ୱ । ସେଥିପାଇଁ ସେ କାହାଠୁ ପୁରସ୍କାର ପାଇବେ ନାହିଁ । କିନ୍ତୁ ସେ ହେବେ ଏ ଦିଗରେ ଓଡ଼ିଆ ଜାତିର ଅଗ୍ରଦୂତ । ଓଡ଼ିଆର ସାଭିମାନକୁ କୋଣାର୍କର ଭାସ୍କର୍ଯ୍ୟ ଶିଳ୍ପୀଙ୍କଠାରୁ ଆରମ୍ଭ କରି ଉତ୍କଳ ଗୌରବ ମଧୁସୂଦନଙ୍କ ପର୍ଯ୍ୟନ୍ତ ଓଡ଼ିଶାର ବହୁ କୃତୀ ସନ୍ତାନ ଯେଉଁଳି ଭାବରେ ଓଡ଼ିଆ ଜାତିର ଗୌରବ ଓ ସାଭିମାନକୁ ବଞ୍ଚାଇ ରଖିଛନ୍ତି, ସେ କାର୍ଯ୍ୟକୁ ଆଗେଇନେବେ ପାଠୀ ବାବୁ ତାଙ୍କ କଳାକୃତି ଓ ଲେଖା ସାହାଯ୍ୟରେ ।

ଓଡ଼ିଶାର କଳାର ବୈଶିଷ୍ଟ୍ୟ ସମ୍ପର୍କରେ କଳା ଅନଭିଜ୍ଞ ସାଧାରଣ ଲୋକ ଜାଣିବା ପାଇଁ ଗୋଟିଏ ବହିର ଆବଶ୍ୟକତା ରହିଛି ।

ଆବଶ୍ୟକତା ରହିଛି ପୁରୀର ଜଗନ୍ନାଥଙ୍କ ରୂପ କେଉଁଠୁ ଆସିଲା, ଅଥଚ ସେମିତି ହାତପାଦ ନଥିବା ପ୍ରତୀକାତ୍ମକ କଳା ପରିବର୍ତ୍ତେ ସବୁଠି ପୂର୍ଣ୍ଣାଙ୍ଗ ବିଗ୍ରହ ମୂର୍ତ୍ତି ଓ ଚିତ୍ର ଦେଖାଗଲା । ସେ ବିଷୟରେ ଆଲୋକପାତ କରାଯିବା ଉଚିତ୍ । ଘରେ ଘରେ ପୁଣି ଝୋଟି ଆଙ୍କିବା ଗଣକଳାର ପୁନରୁଦ୍ଧାର କିପରି ହେବ ? ପ୍ରାଥମିକଠାରୁ ଆରମ୍ଭ କରି ପ୍ରବେଶିକା ଯାଏଁ ସବୁ ସ୍କୁଲରେ ଡ୍ରଇଁ ମାଷ୍ଟ୍ର କ'ଣ ପଢ଼ାଇଲେ ଓଡ଼ିଶାବାସୀଙ୍କ ହାତରେ ପୁଣି ପଦ୍ମ ଫୁଟିବ ? କୋଣାର୍କର ଭାସ୍କର୍ଯ୍ୟ ପରମ୍ପରା କେବଳ ପୁରୀର ପଥୁରିଆ ସାହିରେ ରହିବ ନା ସାରା ଓଡ଼ିଶାରେ ଘରେ ଘରେ ତାହା ଆଦୃତ ହେବ ? ଘରେ ଘରେ କାନ୍ଥରେ ଶସ୍ତା କ୍ୟାଲେଣ୍ଡରର ଛବି ରହିବ ନା ଓଡ଼ିଶାର ବିଶିଷ୍ଟ କଳାରୁ କିଛି ରହିବ, ଏସବୁ ଗଭୀର ଭାବେ ଚିନ୍ତା କରିବେ ପାଠୀ ବାବୁ ତାଙ୍କ ଜୀବନ କାଳ ଭିତରେ ।

ଦିଗପହଣ୍ଡିରେ ଜନ୍ମ ହେଲେ ସିନା, ଓଡ଼ିଆ ଜାତିର କଳା ଓ ସଂସ୍କୃତିର ସମୃଦ୍ଧି କରିବା ଗୁରୁଦାୟିତ୍ୱ ଲଦି ହୋଇଗଲା ତାଙ୍କ ମୁଣ୍ଡରେ । ଡ୍ରଇଁ ମାଷ୍ଟ୍ରଙ୍କ ଚିତ୍ରକଳ୍ପ ଆମ ଗ୍ରାମ୍ୟ ସାମାଜିକ ଜୀବନର ଏକ ଅବିଚ୍ଛେଦ୍ୟ ଓ ଅପାସୋରା ଐତିହାସିକ ପ୍ରତିମୂର୍ତ୍ତି । ପାଠୀ ବାବୁଙ୍କ ସେଇ ଭୂମିକା ଏ ଜାତି ପାଇଁ ନିତାନ୍ତ ଉପାଦେୟ । ଗାଁ ଗାଁରେ ସବୁ ବିଦ୍ୟାଳୟରେ ପାଠୀ ବାବୁଙ୍କ ଭଳି ଡ୍ରଇଁ ମାଷ୍ଟ୍ର ଯେଉଁଦିନ ପରିବ୍ୟାପ୍ତ ହେବେ, ସେଦିନ ପାଠୀ ବାବୁଙ୍କ ଜୀବନର ସର୍ବଶ୍ରେଷ୍ଠ ଛବି ଏ ଜାତି ପ୍ରାଣରେ ଅଙ୍କିତ ହେବ ।

ଆମେ ପାଠୀ ବାବୁଙ୍କୁ ଜଣେ ବଡ଼ ଚିତ୍ରଶିଳ୍ପୀ ଭାବରେ ପ୍ରଣାମ କରୁଛୁ, ଜଣେ ଉଚ୍ଚକୋଟୀର ଲେଖକ ଭାବରେ ତାଙ୍କୁ ସମ୍ମାନ ଦେଉଛୁ, ଜଣେ ନିଷ୍ଠାବାନ୍ ଗବେଷକ ଭାବରେ ତାଙ୍କୁ ପ୍ରଶଂସା କରୁଛୁ; କିନ୍ତୁ ତାଙ୍କ ଭିତରେ ଥିବା ସେଇ ସରଳ ହୃଦୟର ଉଦାର ଅନ୍ତରଙ୍ଗ ମଣିଷଟିକୁ ଆମେ ଆଦରର ସହିତ ସ୍ମରଣ କରୁଛୁ । ସେ ସୁଦୀର୍ଘ ଆୟୁଷ ନେଇ ନିରାମୟ ଶାନ୍ତିମୟ ଜୀବନ ବିତାନ୍ତୁ ସେଇ ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରର ଆତ୍ମାକୁ ଅଧିକ ଜୀବନ୍ତ ଓ ରସସିକ୍ତ କରି ।

Digitized by srujanika@gmail.com

ଦୁର୍ଗା ମାଧବ ଦାଶ

## ମୋ ବନ୍ଧୁ ଦିନନାଥ

ଦିନନାଥ ମୋର ଘନିଷ୍ଠ ବନ୍ଧୁ, ଅନ୍ତରଙ୍ଗ ସହପାଠୀ । ଆମେ ଦୁହେଁ ଥିଲୁ ଦିଗପହଣ୍ଡିର ବାସିନ୍ଦା । ପାଖାପାଖି ସାହିରେ ଥିଲା ଆମ ଦୁହିଁଙ୍କ ଘର । ଗୋଟିଏ ଚାଟଶାଳୀ ଓ ଗୋଟିଏ ସ୍କୁଲରେ ଆମେ ପାଠ ପଢ଼ିଥିଲୁ । ଏଣୁ ପିଲାଟି ଦିନରୁ ମୁଁ ତାଙ୍କୁ ଭଲଭାବେ ଜାଣିଛି । ଛାତ୍ର ଜୀବନରେ ସେ ଆମ ସମସ୍ତଙ୍କ ପାଇଁ ଥିଲେ ଏକ ମହତ୍ ଏକନିଷ୍ଠତାର ସ୍ମରଣୀୟ ଆଦର୍ଶ । ଆଜିକାଲି ସେ ତାଙ୍କ ନିଜସ୍ୱ ସର୍ଜନ କାର୍ଯ୍ୟରେ ସବୁବେଳେ ବ୍ୟସ୍ତ ରହୁଛନ୍ତି ।

ପିଲାଦିନେ ସେ କେବଳ ଜଣେ ଭଲ ଛାତ୍ର ନଥିଲେ; ସେ ବି ଥିଲେ ଜଣେ ଉଚ୍ଚକୋଟୀର ଚିତ୍ରକାର । ସେ ତାଙ୍କ କଳାନୈପୁଣ୍ୟ ଓ କଳାକୌଶଳ ପାଇଁ ଆମ ଗାଁର ସବୁ ସ୍ତରରେ ସମସ୍ତଙ୍କ ପ୍ରିୟଭାଜନ ହୋଇପାରିଥିଲେ । ଅସମ୍ଭବ ସ୍ମୃତିଶକ୍ତି ତାଙ୍କର । ଯେକୌଣସି ପାଠ୍ୟବହିର ବିଷୟ, ପୃଷ୍ଠା ପୃଷ୍ଠା ଧରି ସେ ଭଲଭାବେ ମନେ ରଖିପାରୁଥିଲେ । ପ୍ରାୟତଃ ଅନେକ ବିଷୟରେ ସେ କ୍ଲାସରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ଧୀଶକ୍ତି ଦୃଷ୍ଟିରୁ ସେ ଜଣେ ମେଧାବୀ ଛାତ୍ରରୂପେ ବେଶ୍ ପରିଗଣିତ ହୋଇଥିଲେ । ମୁଁ ଆଜି ନିଶ୍ଚିତ ଭାବେ କହିବି ଚିତ୍ରକଳାରେ ସେ ଆମ ଡ୍ରଇଁ ଶିକ୍ଷକଙ୍କ ଠାରୁ ମଧ୍ୟ ବହୁତ ଉପରେ ଥିଲେ । ଏଥିପାଇଁ ସେ ଥିଲେ ଆମ ସ୍କୁଲ ଓ ଆମ ଅଞ୍ଚଳର ଏକ ଅସାଧାରଣ ସ୍ୱାଭିମାନ ।

କୌଣସି କାର୍ଯ୍ୟରେ ସେ ପଛଘୁଞ୍ଚା ଦିଅନ୍ତିନି । ଭାଇ ଲୋକନାଥ ପାଠୀ ତାଙ୍କ ପାଇଁ ତାଙ୍କ ଜୀବନର ସର୍ବସ୍ୱ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପିଲାଟି ଦିନରୁ ବି ସେ ତାଙ୍କ ଭାଇଙ୍କ ସହ ମିଶି ଚିତ୍ର କରି ନିଜ ଘରର ଦୈନିକ ଗୁଜୁରାଣ ମେଣ୍ଟାଇଥାନ୍ତି । ମୁଁ ଭଲଭାବେ ଜାଣିଛି, ପିଲାଦିନେ ସେ ଅନେକ ଭଲ ଗଳ୍ପ, କବିତା ସୁନ୍ଦର ଭାବେ ଲେଖି ପାରୁଥିଲେ । ଚିତ୍ରକଳାରେ ତ ସେ ଥିଲେ ଆମ ଜିଲ୍ଲାର ଏକ ଅଦ୍ୱିତୀୟ ଚିତ୍ରଶିଳ୍ପୀ । ଏଇ ପରିପ୍ରେକ୍ଷୀରେ ମୁଁ ଗୋଟିଏ ହୃଦୟଗ୍ରାହୀ ଘଟଣାଟିଏ ଏଠାରେ ପରିବେଷଣ କରିବି । ଘଟଣାଟି ୧୯୫୪ ମସିହାର । ସେତେବେଳେ ଆମେ ଦୁହେଁ ସପ୍ତମ ଶ୍ରେଣୀରେ ପଢୁଥାଉ । ଦିନେ ଆମ ଡ୍ରଇଁ ସାର୍ ଆମ ଡ୍ରଇଁବହିରେ ଗଞ୍ଜା-କୁକୁଡ଼ାର ଚିତ୍ରଟିଏ ଆଙ୍କିବାପାଇଁ ହୋମୱାର୍କ ଦେଇଥିଲେ । ତା' ପରବର୍ତ୍ତୀ କ୍ଲାସ୍‌ରେ ଚିତ୍ରଟିକୁ ପେସ୍ କରିବା ପାଇଁ ଆମକୁ ନିର୍ଦ୍ଦେଶ ଦିଆଯାଇଥିଲା । ଆମେ ସଭିଏଁ ଚିତ୍ରଟିକୁ ଡ୍ରଇଁ-ଖାତାରେ ଆଙ୍କିଥିଲୁ, ସତ; ହେଲେ ଦୁଇ ତିନୋଟି ଚିତ୍ର ସମୂହକୁ ବାଦ୍ ଦେଲେ, ଆମ ଚିତ୍ରଗୁଡ଼ିକର ମାନ ମଧ୍ୟମ ଧରଣର ଥିଲା । ଦିନନାଥ କିନ୍ତୁ ସୁନ୍ଦର ଚିତ୍ରଟିଏ ଆଙ୍କିଥିଲେ; ସତେ ଯେମିତି ଗଞ୍ଜା କୁକୁଡ଼ାଟିଏ ତାଙ୍କ ଡ୍ରଇଁଖାତାରେ ଚିତ୍ରିତ ପୁଚ୍ଛ ଟେକି ଠିଆ ହୋଇଥିଲା । ଚିତ୍ରଟିକୁ ଦେଖି ଆମ ସମସ୍ତଙ୍କ ଆଖି ଝଲସି ଯାଇଥିଲା । ଚିତ୍ରଟିକୁ ବିଭିନ୍ନ ଦିଗରୁ ଅନୁଧ୍ୟାନ କରି ଆମ ଡ୍ରଇଁ ସାର୍ ମୋ ବନ୍ଧୁ ଦିନନାଥଙ୍କୁ ଭୂରି ଭୂରି ପ୍ରଶଂସା କରୁଥାନ୍ତି । ଶେଷରେ ସେ ଚିତ୍ରଟିକୁ ୧୦ ରୁ ୧୦ ନମ୍ବର ଦେବାପାଇଁ ବାଧ ହୋଇଥିଲେ । ଅଙ୍କରେ ପୂର୍ଣ୍ଣ ନମ୍ବର ପାଇବାତ ମୁଁ ଆଗରୁ ଜାଣିଥିଲି । ଚିତ୍ରକଳାରେ କିନ୍ତୁ ପୂର୍ଣ୍ଣ ନମ୍ବର ପାଇବାଟା ମୁଁ କେବଳ ଦିନନାଥଙ୍କ ଚିତ୍ରବହିରେ ଦେଖିଥିଲି । ସେତେବେଳେ ଏହା ତାଙ୍କ ପାଇଁ କମ୍ ଗୌରବର କଥା ନଥିଲା ।

କେବଳ ସେତିକି ନୁହେଁ, ବଡ଼ବଡ଼ ଛୁଟିଦିନମାନଙ୍କରେ ଆମ ଅଞ୍ଚଳର ବିଭିନ୍ନ ଗାଁରେ ବିଭିନ୍ନ କିସମର ନାଟ ମଞ୍ଚସ୍ଥ ହୋଇଥାଏ । ସେଇ ନାଟକ ସମୂହ ପାଇଁ ଆବଶ୍ୟକ ପଡୁଥିବା ବିଭିନ୍ନ ଚିତ୍ରପର୍ଦ୍ଦା ମୋ ବନ୍ଧୁ ଦିନନାଥ ସୁନ୍ଦର ଭାବେ ଆଙ୍କି ପାରୁଥିଲେ । ଅନେକ ସମୟରେ ସେ ତାଙ୍କ ଭାଇଙ୍କ ସାହାଯ୍ୟ ନନେଇ ମଧ୍ୟ ଚିତ୍ରପର୍ଦ୍ଦାଗୁଡ଼ିକୁ ଏକା ଏକା ଆଙ୍କିପାରୁଥିଲେ । ଚିତ୍ରକଳା ତାଙ୍କ ସହଜାତ ନୈସର୍ଗିକ ଗୁଣ ଥିଲା । ସେ ତାଙ୍କ ନିକଟ ସଂପର୍କୀୟ ବଂଶଜଙ୍କଠାରୁ ଏଇ ଗୁଣଟିକୁ ପାଇଥିଲେ, ଏଥିରେ କୌଣସି ସନ୍ଦେହ ନାହିଁ ।

Digitized by srujanika@gmail.com

୧୯୫୬ ମସିହାରେ ଆମେ ନବମ ଶ୍ରେଣୀରେ ପଢୁଥାଉ । ଆମ ସ୍କୁଲର କନିଷ୍ଠ ପଣ୍ଡିତ ବଂଶୀଧର ମିଶ୍ର ଆମ ସ୍କୁଲ ତରଫରୁ ବିବିଧ ପ୍ରବନ୍ଧ, ପଦ୍ୟ ଓ ଗଳ୍ପ ସମ୍ବଳିତ ଏକ ସାମୟିକ ପତ୍ରିକାଟିଏ ପ୍ରକାଶ କରିବା ପାଇଁ ନିର୍ଦ୍ଦିଷ୍ଟ ପ୍ରସ୍ତାବଟିଏ ଆଗତ କରିଥିଲେ । ସ୍କୁଲର ଛାତ୍ରସମୂହ ଏଥିରେ ଏକମତ ଥିଲେ । ସେତେବେଳର ସମୟ ଆଜିର ସମୟ ପରି ଏତେଟା ଉନ୍ନତଧରଣର ନଥିଲା । ପତ୍ରିକାଟି ଛପେଇବା ପାଇଁ ଆମ ପାଖରେ ଆବଶ୍ୟକୀୟ ଅର୍ଥ ନଥିଲା । ଏଣୁ କାର୍ଯ୍ୟଟିକୁ ଶୁଭାରମ୍ଭ କରିବା ଦୃଷ୍ଟିରୁ ପତ୍ରିକାଟିକୁ ହାତରେ ଲେଖି ଅନ୍ୟୁନ ତିନୋଟି କପି ପ୍ରକାଶ କରିବା ପାଇଁ ଆମେ ଦୃଢ଼ ନିଷ୍ପତ୍ତି ନେଇଥିଲୁ । ମୋ ବନ୍ଧୁ ଦିନନାଥ ନଥିଲେ ବୋଧହୁଏ, ଆମେ ଏତେବଡ଼ କାର୍ଯ୍ୟଟିକୁ ହାତକୁ ନେବା ପାଇଁ ସକ୍ଷମ ହୋଇପାରି ନଥାନ୍ତୁ । ଦିନନାଥ ଓ ଆମ ଅନ୍ୟ ଦୁଇଜଣ ବନ୍ଧୁ ଲେଖାଗୁଡ଼ିକୁ ହାତରେ ଲେଖିବା ପାଇଁ ଦାୟିତ୍ୱ ନେଇଥିଲେ । ମୋ ବନ୍ଧୁ ଦିନନାଥଙ୍କ ଚେଷ୍ଟା ଫଳରେ ପତ୍ରିକାଟି ଶେଷରେ ପ୍ରକାଶ ପାଇଥିଲା । ମୋର କହିବା କଥା ଏଇୟା ଯେ, ଏଥିରେ ପ୍ରକାଶ ପାଇଥିବା ଦିନନାଥଙ୍କ ଲେଖାଟି ସବୁଠାରୁ ବେଶ୍ ଉଚ୍ଚକୋଟିର ହୋଇଥିଲା । ସେତେବେଳେ ବି ଆଜିର ପରି ସେ ତାଙ୍କ ଲେଖାଗୁଡ଼ିକୁ ଏକ ଉଚ୍ଚମାନର ନିର୍ଦ୍ଦିଷ୍ଟ ଶୈଳୀରେ ଲେଖୁଥିଲେ । ସେଇ ସମୟର ସେଇ ଶୈଳୀ ହିଁ ଆଜି ତାଙ୍କ ସବୁ ଲେଖାଗୁଡ଼ିକରେ ପ୍ରତିଫଳିତ ।

୧୯୫୮ ମସିହାରେ ଆମେ ଦୁହେଁ ମ୍ୟାଟ୍ରିକ୍ ପାସ୍ କରିଥିଲୁ । ମ୍ୟାଟ୍ରିକ୍ ପରେ ଆମ ବ୍ୟାଚର ଅନେକ ପିଲା ଖଲିକୋଟ କଲେଜ ବ୍ରହ୍ମପୁରରେ ନାଁ ଲେଖେଇଥିଲେ । ଅନେକ ବି ବ୍ରହ୍ମପୁର ଇଂଜିନିୟରିଂରେ ନାଁ ଲେଖେଇଥିଲେ । ଦିନନାଥ କିନ୍ତୁ ଖଲ୍ଲିକୋଟ ଆର୍ଟ୍ ସ୍କୁଲରେ ନାଁ ଲେଖେଇ ଚିତ୍ରକଳା ପଢ଼ିବା ପାଇଁ ମନସ୍ଥ କରିଥିଲେ । ଖଲ୍ଲିକୋଟ କଲେଜରେ ନାଁ ଲେଖେଇ କିଛିଦିନ ପରେ ମୁଁ ଦିଗପହଣ୍ଡି ଆସିଥାଏ । ହଠାତ୍ ଦିନେ ଦିନନାଥଙ୍କ ଭାଇ ଲୋକନାଥ ପାଠୀଙ୍କ ସହ ମୋର ରାସ୍ତାରେ ଏମିତି ଦେଖା ହୋଇଥିଲା । ମୁଁ ତାଙ୍କୁ ପ୍ରଣାମ କରିଥିଲି । ସେ ମୋତେ ଦୈବାତ୍ ପଚାରିଲେ, କ'ଣ ଦୁର୍ଗାମାଧବ, କଲେଜରେ ନାଁ ଲେଖେଇ ଘରକୁ ଫେରିଛୁ ନା କ'ଣ ? ମୁଁ ହଁ ଭରି କହିଲି, ବ୍ରହ୍ମପୁରରେ ଜଏନ୍ କରି ଘରକୁ ଆସିଛି । ଦୁଇତିନିଦିନ ପରେ ଫେରିଯିବି । ସେ ତାଙ୍କ ଭାଇ ଦିନନାଥଙ୍କ ଦୃଷ୍ଟାନ୍ତ ଦେଇ କହିଲେ, **ପଇସା ଅଭାବରୁ ଦିନନାଥକୁ କଲେଜକୁ ପଠେଇ ପାରିଲିନି । ଶେଷରେ ସେ ଖଲ୍ଲିକୋଟ ଆର୍ଟ୍ସ୍କୁଲରେ ଆଡ୍‌ମିସନ୍ ନେଲା । ଭବିଷ୍ୟତରେ ତୁମେ ସବୁ ଅଫିସର ହେବ । ସେ କିନ୍ତୁ ଜଣେ ଡ୍ରଇଁମାଷ୍ଟର୍ ହୋଇ କୌଣସି ସ୍କୁଲରେ ଚାକିରି କରିବ,** ମୁଁ ତାଙ୍କୁ ସେଦିନ କିଛି କହି ନଥିଲି । କାରଣ ଆମ ସମୟରେ ବଡ଼ମାନେ ଯାହା କହନ୍ତି, ତାହା ଆମେ କେବଳ ଶୁଣିଥାଉ । ସେମାନଙ୍କୁ କୌଣସି ଉତ୍ତର ଦେବା ଆମ ପାଖରେ ଆଦୌ ସମ୍ଭବପର ନଥିଲା । କ'ଣ ବା କହିଥାନ୍ତି । ଦିନନାଥଙ୍କୁ କଲେଜରେ ପଢ଼େଇ ପାରି ନଥିବାରୁ ସେ ତ ଦୁଃଖରେ ଭାଙ୍ଗି ପଡ଼ିଛନ୍ତି ।

ଦିନନାଥ କିଛିଦିନ ପରେ ଗାଁକୁ ଫେରିଲେ । ଗାଁରେ ଆମେ ପରସ୍ପରକୁ ଭେଟିଲୁ । ମନେହେଉଥିଲା ଏ ଭିତରେ ସେ ଜଣେ ପକ୍କା ଚିତ୍ରକାର ହୋଇଯାଇଥିଲେ । ତାଙ୍କ ଠାଣି, ବାଣୀ, ବେଶ ଭୂଷା ଇତ୍ୟାଦିରେ ଅନେକ ପରିବର୍ତ୍ତନ ଦେଖାଦେଇଥିଲା । କେବଳ ଏତିକି ନୁହଁ ତାଙ୍କ ପିନ୍ଧିବା ଢାଞ୍ଚା ବି ସଂପୂର୍ଣ୍ଣ ରୂପେ ବଦଳି ଯାଇଥିଲା । ତାଙ୍କୁ ଦେଖି ଆମେ ସଭିଏଁ ଭାବୁଥାଉ, ଆର୍ଟ୍ ପାଠ ପଢ଼ିଲେ ବୋଧହୁଏ ଚେହେରା ଓ ବେଶଭୂଷାରେ ଆପେ ଆପେ କିଛିଟା ପରିବର୍ତ୍ତନ ଘଟିବା ସ୍ୱାଭାବିକ । ସମାଜରେ ଚିତ୍ରକାରମାନଙ୍କ ନିଶ୍ଚିତ ଭାବେ କିଛି ସ୍ୱତନ୍ତ୍ର ପରିଚୟ ରହିଥିବା ଦୃଷ୍ଟିରୁ, ଦିନନାଥଙ୍କ ଭିତରେ ବୋଧହୁଏ ଏମିତି କିଛି ପରିବର୍ତ୍ତନ ଘଟିବା ସ୍ୱାଭାବିକ ହୋଇଯାଇଛି । ସେତେବେଳେ ବି ଦିନନାଥଙ୍କ ଧୀଶକ୍ତି ଓ ପ୍ରତିଭାର ପଟାନ୍ତର ନଥିଲା । ସେ ତୀକ୍ଷ୍ଣ ଓ ଅସାଧାରଣ ବୁଦ୍ଧି ସଂପନ୍ନ ଥିଲେ । ସେଇ ଦୃଷ୍ଟିରୁ ଗାଁରେ ତାଙ୍କୁ କେହି କିଛି କହନ୍ତିନି । ସବୁ ଛୁଟିରେ ମୋର ତାଙ୍କ ସହ ଗାଁରେ ଦେଖାସାକ୍ଷାତ ହୁଏ । ଅନେକ ସମୟରେ ମୁଁ ଦେଖିଛି ଏକୁଟିଆ ବସି ସେ ସୁନ୍ଦର ଚିତ୍ରଗୁଡ଼ିଏ ଆଙ୍କୁଥାନ୍ତି । ଦିନେ ମୋତେ ଗୋଟିଏ ପଥର ଉପରେ ବସିବାକୁ କହି, ସେ ମୋର ଅବିକଳ ଚିତ୍ରଟିଏ ଆଙ୍କିଥିଲେ । ସବୁ ଦୁଃଖ ଓ ସମସ୍ୟା ସତ୍ତ୍ୱେ କାହାରିକୁ ଭ୍ରୂକ୍ଷେପ ନକରି ସେ ତାଙ୍କ ବାଟରେ ଏକାକୀ ଚାଲିଥାନ୍ତି, ସତେ ଯେମିତି ସେ ଗୋଟିଏ ପ୍ରଗଳ୍ଭ ଜଳଧାରା ।

Digitized by srujanika@gmail.com

ବିଶ୍ୱାସ କରନ୍ତୁ ବା ନକରନ୍ତୁ, ତାପରଠୁ ଦିନନାଥଙ୍କ ଭିତରେ ମୁଁ ଅନେକ କଳାକାରଙ୍କୁ ଦେଖିଛି, ଯେଉଁମାନଙ୍କ ଜୀବନଶୈଳୀ ଅନ୍ୟମାନଙ୍କ ରୀତି ରିୱାଜ୍‌ଠାରୁ ସଂପୂର୍ଣ୍ଣ ରୂପେ ଭିନ୍ନ । ଏଥିପାଇଁ କ'ଣ ସେମାନଙ୍କୁ ସମାଜର ବ୍ୟତିକ୍ରମ କହିବା ଠିକ୍ ହେବ ? ସେମାନେ ତ ଆମମାନଙ୍କ ପରି ସାଧାରଣ ମଣିଷଙ୍କଠାରୁ ବହୁଭାବରେ ପ୍ରତିଭାସଂପନ୍ନ । ଜୀବନ ପ୍ରବାହରେ ସେମାନଙ୍କ ବିଶେଷ ଗୁଣ ଥିବା ଦୃଷ୍ଟିରୁ, ସେମାନଙ୍କ ଜୀବନଶୈଳୀ ନିଶ୍ଚିତ ଭାବେ ବୈଶିଷ୍ଟ୍ୟସୂଚକ । କିନ୍ତୁ ସେମାନେ ସମୟ ସହିତ ତାଳ ଦେଇପାରୁ ନଥିବାରୁ ସର୍ବଦା ବିଭେଦ ଓ ବିବାଦରେ ପରିପୂର୍ଣ୍ଣ । ତା' ନ ହୋଇଥିଲେ ଜଣେ ଉଚ୍ଚକୋଟୀର ଭାରତୀୟ ଚିତ୍ରକାର ହିନ୍ଦୁ ଦେବଦେବୀଙ୍କ ନଗ୍ନଚିତ୍ର ପରିବେଷଣ କରି କେବେହେଁ ଦ୍ୱନ୍ଦ୍ୱ ଭିତରକୁ ଆସିଥାନ୍ତେ ?

ବଡ଼ ବିଚିତ୍ର ଶିଳ୍ପୀମାନଙ୍କ ଚିନ୍ତାଧାରା । ଦିନକର ଘଟଣା । ଆମ ଦିବ୍ୟଜୀବନ ସଂସ୍ଥା ତରଫରୁ ଖଣ୍ଡଗିରି, ଭୁବନେଶ୍ୱରଠାରେ ଗୋଟିଏ ଆବାସିକ ବାଳକ ଉଚ୍ଚବିଦ୍ୟାଳୟ ପ୍ରତିଷ୍ଠା ହୋଇଛି । ସ୍ୱାମୀ ଶ୍ରୀ ଶିବଚିଦାନନ୍ଦ ସରସ୍ୱତୀ ସ୍କୁଲର ସମ୍ପାଦକ ଅଛନ୍ତି । ସେହି ସ୍କୁଲରେ ମା' ସରସ୍ୱତୀଙ୍କ ପାଇଁ ଗୋଟିଏ ସୁନ୍ଦର ମନ୍ଦିର ନିର୍ମାଣ କରାଯାଇଛି । ମନ୍ଦିର ପ୍ରତିଷ୍ଠା ପାଇଁ ଦେବୀଙ୍କ ଗୋଟିଏ ମୂର୍ତ୍ତି ଆବଶ୍ୟକ ପଡ଼ିଲା । ସ୍ୱାମିଜୀ ମହାରାଜ ଏ ବିଷୟରେ ମୋ ବନ୍ଧୁ ଦିନନାଥଙ୍କ ସହ ପରାମର୍ଶ କରିଥିଲେ । ସ୍ୱାମିଜୀ ଚାହୁଁଥିଲେ ସରସ୍ୱତୀଙ୍କ ଗୋଟିଏ ମାର୍ବଲ ପଥରର ମୂର୍ତ୍ତି । ଦିନନାଥ କିନ୍ତୁ ସ୍ୱାମିଜୀଙ୍କ ପ୍ରସ୍ତାବକୁ ଅସ୍ୱୀକାର କରି କହିଥିଲେ, ସ୍ୱାମିଜୀ ମହାରାଜ, ମାର୍ବଲ ଆମ ଅଞ୍ଚଳର ପଥର ନୁହଁ । ଆମ ସରସ୍ୱତୀ ମନ୍ଦିର ପାଇଁ ଆବଶ୍ୟକ ପଡୁଥିବା ମୂର୍ତ୍ତିଟିକୁ କଳାମୁଗୁନି ପଥରରେ ତିଆରି କରିବା ସଙ୍ଗତ ହେବ । ସ୍ୱାମିଜୀ ମହାରାଜ ପ୍ରକାଶ କରିଥିଲେ, ସରସ୍ୱତୀ ମୂର୍ତ୍ତିଟି ଧଳା ରଙ୍ଗର ହେବା ଆବଶ୍ୟକ । କାରଣ ସରସ୍ୱତୀ ମା' ଧଳାରଙ୍ଗର ବୋଲି ସବୁ ମନ୍ତ୍ରରେ ପ୍ରକାଶିତ । ଏଣୁ ମୂର୍ତ୍ତିଟି କଳାରଙ୍ଗର ପଥରରେ କେମିତି ହେବ, କହିଲେ ? ବର୍ତ୍ତମାନ ଦିନନାଥଙ୍କ ଯୁକ୍ତି ଶୁଣନ୍ତୁ । ଦିନନାଥଙ୍କ ଯୁକ୍ତି ହେଲା, ସ୍ୱାମିଜୀ, ରାଧା ତ କଳା ନ ଥିଲେ; ତାଙ୍କ ମୂର୍ତ୍ତି କ'ଣ କଳା ମୁଗୁନି ପଥରରେ ତିଆରି ହେଉନି ? ଆମ ପାଇଁ ଆବଶ୍ୟକ ପଡୁଥିବା ମୂର୍ତ୍ତିଟିକୁ ଶିଳ୍ପଶାସ୍ତ୍ର ମୁତାବକ ଆମ ନିଜର ଉପାଦାନରେ ତିଆରି କରିପାରିଲେ ଉଭୟ ଆମ ମନ୍ଦିର ଓ ମୂର୍ତ୍ତି ପାଇଁ ତାହା ଯୁକ୍ତିଯୁକ୍ତ ହେବ । ତା' ଛଡ଼ା ଶାସ୍ତ୍ରଜ୍ଞଙ୍କ ମତରେ ଭାବ ଭିତରେ ହିଁ ଭଗବାନ ବିଦ୍ୟମାନ । ଏଇ ଦୃଷ୍ଟିରୁ ଧ୍ୟାନ ସମୟରେ କଳାମୁଗୁନି ପଥର ଭିତରେ ଶ୍ୱେତାମ୍ବରା ସରସ୍ୱତୀଙ୍କୁ ଅନୁଭବ କରିବା ହିଁ ଧ୍ୟାନର ପ୍ରକୃତ ଉଦ୍ଦେଶ୍ୟ । ସାଧକ ପକ୍ଷେ ଏହାହିଁ ହେବ ଉଚ୍ଚକୋଟୀର ସାଧନା । ଏଣୁ ମୂର୍ତ୍ତିଟିକୁ ଓଡ଼ିଶାରେ ମିଳୁଥିବା କଳାମୁଗୁନି ପଥରରେ ହିଁ ତିଆରି କରିବା । ପରବର୍ତ୍ତୀ ସମୟରେ ସ୍ୱାମିଜୀ କହିଥିଲେ, ହେଉ ଠିକ୍ ଅଛି । ମୁଁ ଅନ୍ୟମାନଙ୍କ ମତାମତ ନେଇ ପରେ ଆପଣଙ୍କୁ ଜଣାଇବି । ତା'ପରେ ଦିନନାଥ ଚାଲିଯାଇଥିଲେ । ପରେ ସ୍ୱାମିଜୀ ମହାରାଜ ମାର୍ବଲ ପଥରରେ ହିଁ ମୂର୍ତ୍ତିଟିକୁ ତିଆରି କରାଇ ସ୍କୁଲର ସରସ୍ୱତୀ ମନ୍ଦିରରେ ପ୍ରତିଷ୍ଠା କରିଥିଲେ ।

କହିବାର ତାତ୍ପର୍ଯ୍ୟ ଏହି ଯେ, ଦିନନାଥ ତାଙ୍କ ଭାବନା ଓ ଭାଷାରେ ଠିକ୍ ଥିଲେ । ସ୍ୱାମିଜୀ କିମ୍ବା ଆମେ ତାଙ୍କ ମତାମତକୁ ଗ୍ରହଣ କରିପାରି ନଥିଲୁ, ସେ ଯାହାହେଉ, କାହାର ଅଜ୍ଞତା ବା ବିଜ୍ଞତାର ଦିଗ୍‌ବଳୟ ଭିତରେ ଉପରୋକ୍ତ ବିଷୟଟିର ଔଚିତ୍ୟକୁ ନେଇ ବର୍ତ୍ତମାନ କୌଣସି ଆଲୋଚନା କରିବା ବାସ୍ତବିକ ଆମ ପକ୍ଷରେ ଅନୌପଚାରିକ ହେବ ବୋଲି ମୁଁ ଅନୁଭବ କରୁଛି । ତେବେ ଦିନନାଥ ଜଣେ ଚିତ୍ରକାର । ସେ ସମାଜର ଜଣେ ଦାୟିତ୍ୱସଂପନ୍ନ ବ୍ୟକ୍ତି ହୋଇଥିବା ଦୃଷ୍ଟିରୁ ବାସ୍ତବବାଦୀ ହୋଇପାରିଥିଲେ ବୋଧହୁଏ ତାଙ୍କ ପକ୍ଷରେ କିଛି ଭୁଲ ହୁଅନ୍ତାନି, ମୁଁ ବର୍ତ୍ତମାନ ଭାବୁଛି ।

ତେବେ ଚିତ୍ରକରମାନେ ଉଦ୍‌ଭଟ ଭାବଧାରା ଭିତରେ ବଞ୍ଚିରହିବା ପାଇଁ ବୋଧହୁଏ ବହୁତ ଭଲପାଇଥାନ୍ତି । ଏଥିପାଇଁ ଜୀବନର ବହୁ କ୍ଷେତ୍ରରେ ସେମାନଙ୍କ ଜୀବନଶୈଳୀ ସଂକଟପୂର୍ଣ୍ଣ ଓ ଉଦ୍‌ବେଗଜନକ ହୋଇଥାଏ ।

ସ୍ୱାମୀ ଚିଦାନନ୍ଦ ସରସ୍ୱତୀ କହିଛନ୍ତି, ତୁମେ ସାମାଜିକ ପ୍ରାଣୀ । ଏଣୁ ସାମାଜିକ ବ୍ୟବସ୍ଥା ଭିତରେ ରହି ଏକ ଆଦର୍ଶ ଜୀବନ ଯାପନ କରିବା ପାଇଁ ସଦାବେଳେ ପ୍ରୟାସ କର । କେତେବେଳେ ବି ସମାଜର ରୀତିନୀତିକୁ ବର୍ଜନ କରନାହିଁ । ବର୍ଜନ କଲେ ଜୀବନ ଦୁଃଖମୟ ଓ ଦୁର୍ବିସହ ହୋଇଯିବ ।''

Digitized by srujanika@gmail.com

ଚିତ୍ରକାରମାନଙ୍କ ଭିତରେ ବୋଧହୁଏ ସାମାନ୍ୟ ଗୋଟିଏ ଅହଙ୍କାର ଲୁଚି ରହିଥାଏ, ଯାହା ତାଙ୍କ ପାଇଁ ଠିକ୍, ଓ ଆମ ପାଇଁ ଭୁଲ୍ । ଅନେକ ସମୟରେ ମୁଁ ଦିନନାଥଙ୍କୁ ଏମିତି ଅନେକ ଉଦ୍‌ଭଟତା ଭିତରେ ବଞ୍ଚିବା ଦେଖିଛି, ତାଗିଦ୍ ବି କରିଛି ବାସ୍ତବ ହେବା ପାଇଁ । ସେ କିନ୍ତୁ ମୋ କଥାକୁ ଆଦୌ ବୁଝିପାରନ୍ତିନି । ମୁଁ ବ୍ୟସ୍ତ ହୋଇଥାଏ । ଦିନନାଥ ସବୁବେଳେ ସ୍ୱପ୍ନବାଦୀ । ତାଙ୍କ ଲେଖାର ଶୈଳୀ ବି ନିଖୁଣ । ଉଭୟ ଇଂରେଜି ଓ ଓଡ଼ିଆ ଭାଷାରେ ସେ ସୁନ୍ଦର ଭାବେ ଲେଖିପାରନ୍ତି । କିନ୍ତୁ ବାସ୍ତବ ଜୀବନରେ ସେ ସମସ୍ୟା ଭିତରେ ହିଁ ବଞ୍ଚିଛନ୍ତି । ଜୀବନର ପ୍ରତିଟି ପର୍ଯ୍ୟାୟରେ ସେ ଜୀବନ ସହ ସଂଗ୍ରାମ କରି ହିଁ ବଞ୍ଚିବାକୁ ଚେଷ୍ଟା କରିଛନ୍ତି ।

ତାଙ୍କ ଅନ୍ତରଙ୍ଗ ବନ୍ଧୁ ସୁଇଜରଲାଣ୍ଡର୍ ଡକ୍ଟର ଫିସର୍ ନଥିଲେ ହୁଏତ ତାଙ୍କ ପାଇଁ ତାଙ୍କ ଜୀବନ ଆହୁରି ଦୁର୍ବିସହ ହୋଇଯାଆନ୍ତା । ତାଙ୍କ ପାଇଁ ଦିନନାଥ ଆଜି ଜୀବନଧରି ଭଲ ଭାବରେ ବଞ୍ଚିରହିଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଡକ୍ଟର ଫିସର୍ ତାଙ୍କୁ ପ୍ରତି ସମୟରେ, ପ୍ରତି କ୍ଷେତ୍ରରେ ଅଗ୍ରସରର ମାର୍ଗ ଧରିବା ପାଇଁ ହିଁ ପ୍ରୋତ୍ସାହନ ଦେଇଆସିଛନ୍ତି ।

ଶେଷରେ ମୁଁ ଏତିକି କହିବି ଯେ ମୁଁ ଦିନନାଥଙ୍କ ପାଇଁ ବହୁତ ଗର୍ବ ଅନୁଭବ କରେ, ଯେତେବେଳେ ସୁଯୋଗ ପାଏ ମୁଁ ତାଙ୍କୁ ମୋ ଅନ୍ତରଙ୍ଗ ବାଲ୍ୟବନ୍ଧୁ ବୋଲି ଅନ୍ୟମାନଙ୍କ ଆଗରେ ପରିଚୟ ଦେଇଥାଏ । ଦିନନାଥ ବି ବାଲ୍ୟବନ୍ଧୁବତ୍ସଳ । ଆମମାନଙ୍କ ସହ କଥାବାର୍ତ୍ତା କଲାବେଳେ ସେ ନିଜକୁ କିଛି ସମୟ ପାଇଁ ଭୁଲିଯାଇଥାନ୍ତି । ଏକାଠି ବସି ଗପ କଲାବେଳେ ଆମେ ପୂର୍ବଦିନର ସ୍ମୃତି ସମୂହକୁ ମନେପକାଇ ବେଶ୍ ଖୁସିଗପ କରିଥାଉ, ତାଙ୍କ ଭାଇନା ସିନା ଦିନେ ଭାବିଥିଲେ, ଖଲ୍ଲିକୋଟ ଆର୍ଟ ସ୍କୁଲରୁ ବାହାରିବା ପରେ ସେ ଜଣେ ଡ୍ରଇଁମାଷ୍ଟର ହୋଇ ବାହାରିବେ କିନ୍ତୁ ହେଲା କ'ଣ ? ଶେଷରେ ସେ ଏକାଧାରରେ ଜଣେ ଚିତ୍ରକର, ସାହିତ୍ୟିକ ଓ ସମାଲୋଚକ ଭାବେ ବେଶ୍ ଖ୍ୟାତି ଅର୍ଜନ କରିପାରିଲେ ଏବଂ ଆମ ଦେଶର ସର୍ବୋଚ୍ଚ କଳାନୁଷ୍ଠାନର ଉଚ୍ଚାସନ ମଧ ଅଳଂକୃତ କରିପାରିଲେ । କେବଳ ଆମ ଦେଶରେ ନୁହେଁ । ଦେଶ ବାହାରେ ମଧ୍ୟ ସେ ବହୁ ସମ୍ମାନର ଅଧିକାରୀ । ସବୁବେଳେ ତାଙ୍କ ପାଇଁ ତାଙ୍କ ଇଷ୍ଟଗୁରୁଙ୍କ ଅପାର କୃପା ଓ କରୁଣା ରହିଛି ଓ ରହିଥିବ ମଧ୍ୟ । ତାଙ୍କ ଅମୂଲ୍ୟ ଚିତ୍ରକଳା, ସାହିତ୍ୟ ଓ ଶିଳ୍ପକଳା ଗବେଷଣା ପାଇଁ ସେ ଦିନେ ନା ଦିନେ ସରକାରଙ୍କ ଦ୍ୱାରା ଆଦୃତ ହେବେ ଏଥିରେ କୌଣସି ସନ୍ଦେହ ନାହିଁ । ଦିନନାଥଙ୍କ ଭାଷା ଓ ଶୈଳୀରେ ନିଜସ୍ୱ ଭାବ ରହିଛି । ଚିତ୍ର ବି କଥା କହିପାରେ, ଏଇଟା ହେଲା ତାଙ୍କ ନିଜସ୍ୱ ସୃଷ୍ଟି । ମୁଁ ଭଗବାନଙ୍କଠାରେ ପ୍ରାର୍ଥନା କରୁଛି, ତାଙ୍କ ଭବିଷ୍ୟତ ଆହୁରି ଉଜ୍ଜ୍ୱଳମୟ ହେଉ ।

Digitized by srujanika@gmail.com

ବିଜୟ କୁମାର ମହାନ୍ତି

# ଏକ ଭିନ୍ନ ଦିନନାଥ

ଆମ ସମୟର ବହୁ ଚର୍ଚ୍ଚିତ ଚିତ୍ରଶିଳ୍ପୀ ଏବଂ ସାହିତ୍ୟକାର ଡକ୍ଟର ଦିନନାଥ ପାଠୀଙ୍କ ନାଁ ସାଙ୍ଗରେ ବହୁ ଆଗରୁ ମୋର ପରିଚିତି ଥିଲା । ସାଧାରଣ ସୌଜନ୍ୟମୂଳକ ସାକ୍ଷାତ ବି ହେଉଥିଲା ବେଳେବେଳେ ବିଭିନ୍ନ ସଭାସମିତିରେ । କିନ୍ତୁ ଖୁବ୍ ଅନ୍ତରଙ୍ଗ ଭାବେ ମିଶିବାର ସୁଯୋଗ ମିଳିଲା ଏଇ ଗଲା ଛଅବର୍ଷ ତଳୁ, ମୁଁ ଦୁଇନମ୍ବର ସରକାରୀ କ୍ୱାର୍ଟରସ୍ ଛାଡ଼ି ନିଜ ଘର ଏରୋଡ୍ରମ୍ ଏରିଆକୁ ଆସିଲା ପରେ । ଆମ ଭିତରେ ସଂପର୍କ ସ୍ଥାପନର ମାଧ୍ୟମ ଥିଲେ ବିଶିଷ୍ଟ କବି ସୌରୀନ୍ଦ୍ର ବାରିକ । ସେ ଆମ ଘର ପାଖରେ ପୂନାମାଗେଟ୍ କଡ଼େ ରହନ୍ତି । ସଂଗ ହୋଇ ଆମେ ଦୁହେଁ ବି.ଜେ.ବି. କଲେଜରେ ଅଧ୍ୟାପନା କରିଥିଲୁ । ତେଣୁ ବହୁଦିନ ପରେ ପୁଣି ଏକାଠି ମିଶିବାର ସୁଯୋଗ ମିଳିବାରୁ ମମତାପଣଟା ଆକାଶ ପରି ନିବିଡ଼ ହୋଇଗଲା ।

ସବୁଦିନେ ପ୍ରାତଃ ଭ୍ରମଣ କାଳରେ ପାଠୀ ବାବୁଙ୍କୁ ଖୁବ୍ ନିକଟରୁ ଦେଖିହେଲା । ଘର ପାଖରୁ ସୌରୀନ୍ଦ୍ର ବାବୁ, ମୁଁ ଏବଂ ବାଟରୁ ସାହିତ୍ୟିକ ପ୍ରଫେସର୍ ବାସୁଦେବ ସାହୁ ଓ ପାଠୀ ବାବୁ ଚାଲି ଚାଲି ଯାଉ ଟେମ୍ପଲ୍ ରୋଡ୍ ରେଳଷ୍ଟେସନ ଯାଏ । ଏକ ନିର୍ଦ୍ଦିଷ୍ଟ ବେଞ୍ଚରେ ବସୁ ପ୍ଲାଟ୍‌ଫର୍ମର ପୂର୍ବ ପଟରେ । ସେଠି ଆମ ସାଙ୍ଗରେ ମିଶନ୍ତି ବିଶିଷ୍ଟ ଫଟୋଗ୍ରାଫର୍ ପ୍ରଫୁଲ୍ଲ ଚନ୍ଦ୍ର ଧୀର । କେଉଁଦିନ ପହଞ୍ଚିବା ଆଗପଛ ହୋଇଗଲେ ବି ବେଞ୍ଚ ପୂର୍ଣ୍ଣାଙ୍ଗ ହେବାଯାଏ ଅପେକ୍ଷା ଥାଏ । ଅପେକ୍ଷା ଜଣଙ୍କ ପାଇଁ ହେଉପଛେ । ପ୍ରାତଃଭ୍ରମଣ ଅବସରରେ ଚାହା, ବିସ୍କୁଟ, ଓମ୍‌ଫେଡ୍ ଚହ୍ଲାଦହି ଖାଇବାର ମଜା ମିଳେ । ଦିନକର ଅନୁପସ୍ଥିତି କିମ୍ବା ଜଣଙ୍କର ଅନୁପସ୍ଥିତି ଅନ୍ୟ ସମସ୍ତଙ୍କ ମନକୁ ଛୁଏଁ । ଛଟପଟ ଲାଗେ ଭିତରଟା । ସଂଧ୍ୟାରେ ସମସ୍ତେ ପ୍ରାୟ ଏକଜୁଟ୍ ହେଇ ଅବସରପ୍ରାପ୍ତ ପ୍ରଶାସକ ତଥା ସାହିତ୍ୟିକ ପ୍ରଶାନ୍ତ ପଟ୍ଟନାୟକଙ୍କ ଘରେ ଆଡ୍ଡା ଜମାନ୍ତି । ତାଙ୍କର ଅନାବିଳ ଆନ୍ତରିକତା, ପରିଚର୍ଯ୍ୟାରେ ମୁଗ୍ଧ ହେଉ ସମସ୍ତେ । ହସଖୁସିର ଆସର ଜମେ ।

ଦୂରରୁ ଦେଖିଥିବା ପାଠୀ ବାବୁଙ୍କୁ ଖୁବ୍ ନିକଟରୁ ଦେଖିଲା ପରେ ତାଙ୍କର ପାଣ୍ଡିତ୍ୟ,ବହୁ ଶାସ୍ତ୍ରଦର୍ଶିତା ଏବଂ ଉଚ୍ଚାଙ୍ଗ ସର୍ଜନଶୀଳତା-ଗୁଣ ମତେ ମୁଗ୍ଧ କଲା । ପ୍ରତିଦିନ ଆମ ଆଲୋଚନା ଢିଙ୍କିରୁ ଢେଙ୍କାନାଳ ପରି ଭାଷା ସାହିତ୍ୟରୁ ସଂପ୍ରତିକ ସମାଜର ରୀତିନୀତି, ଚାଲିଚଳଣି, କଳାସ୍ଥାପତ୍ୟ, ରାଜନୀତି, ସଂସ୍କୃତି, ଅର୍ଥନୀତି - ସବୁ ପରିସରକୁ ଛୁଇଁଯାଏ । ଅବର୍ତ୍ତମାନ ଏବଂ ବର୍ତ୍ତମାନର ଅନେକ ଚରିତ୍ର ଭାସି ଆସନ୍ତି ଆମ ଆଲୋଚନା ପରିସର ଭିତରକୁ । ବାସୁ ବାବୁଙ୍କ ସାମାଜିକ ପ୍ରତିବଦ୍ଧତା, ସୌରୀନ୍ଦ୍ର ବାବୁଙ୍କର ପ୍ରୀତିପ୍ରଣୟର ରସସ୍ନିଗ୍ଧ ଜୀବନବୋଧ ଏବଂ ଡକ୍ଟର ଦିନନାଥ ପାଠୀଙ୍କ ଶିଳ୍ପୀଜୀବନର ଓ ଦେଶବିଦେଶର ଅନେକ ବର୍ଣ୍ଣିଳ ଅନୁଭୂତିର ରଙ୍ଗୀନ ଛିଟାଗୁଡ଼ିକ କଚାଡ଼ି ହୋଇପଡ଼ନ୍ତି ପ୍ଲାଟ୍‌ଫର୍ମ୍ ଉପରେ । ପୁଣି ଶବ୍ଦାୟିତ ହୋଇ ଦୂରକୁ ଚାଲିଯା'ନ୍ତି ଗତିଶୀଳ ଟ୍ରେନଗୁଡ଼ିକ ସାଙ୍ଗରେ । ପ୍ରଜ୍ଞାଦୀପ୍ତ ଆଲୋଚନା କେତେବେଳେ ସରଳ ତ କେତେବେଳେ ଗମ୍ଭୀର ହୁଏ । ଡକ୍ଟର ପାଠୀଙ୍କର ବିଶେଷତ୍ୱ କୌଣସି କଥାକୁ ସେ ସହଜ ଭାବରେ କିମ୍ବା ଅନ୍ଧ ଭାବରେ ଗ୍ରହଣ କରିପାରନ୍ତିନି । ଭାଷା ଏବଂ ଶବ୍ଦମାନଙ୍କ ଉପରେ ଗଭୀର ଦଖଲ ତାଙ୍କର । ଓଜସ୍ୱିନୀ ବକ୍ତୃତା ବାଢ଼ି ସେ କେବଳ ଆମକୁ ଯେ ପଛରେ ପକେଇ ଦିଅନ୍ତି ତା' ନୁହେଁ-ତାଙ୍କର ଉଚ୍ଚସର ଅନ୍ୟମାନଙ୍କର ବି ଦୃଷ୍ଟି ଆକର୍ଷଣ କରେ । ତାଙ୍କୁ ଆମେ କହୁ ବଡ଼ପାଟିଆ । ପଶ୍ଚିମପଟ ପ୍ଲାଟ୍‌ଫର୍ମରେ ସେଓ ମିକ୍ସଚର୍ ଦଳର ବନ୍ଧୁମାନେ ବି ଆମର ପରିଚିତ । ତାଙ୍କ ଭିତରେ ପାଠୀ ବାବୁଙ୍କ ଗାଁ ପାଖର ବନ୍ଧୁ ପଣ୍ଡାବାବୁ । ଉଭୟଙ୍କ ମଧ୍ୟରେ ଥଟ୍ଟା ପରିହାସ ରଙ୍ଗ ରହସ୍ୟ ବେଶ୍ ଉପଭୋଗ୍ୟ ହୁଏ ସମସ୍ତଙ୍କ ପାଇଁ । ଅଚିହ୍ନାକୁ ପାଖକୁ ଟାଣି ଆଣିବା, ପରକୁ ନିଜର କରିବା ତଥା ବନ୍ଧୁପଣରେ ସଭିଙ୍କୁ ବାନ୍ଧି ପାରିବାର ସୂକ୍ଷ୍ମ କାରୁକାର୍ଯ୍ୟବିମଣ୍ଡିତ କଳାଗୁଣଟା ପାଠୀ ବାବୁଙ୍କ ପାଖରେ ଯେମିତି ଦେଖାଯାଏ - ଖୁବ୍ କମ୍ ବ୍ୟକ୍ତିଙ୍କ ପାଖରେ ସେମିତି ଥାଏ ।

Digitized by srujanika@gmail.com

**ଆମର ପ୍ରାତଃଭ୍ରମଣକାଳୀନ ଆଲୋଚନା ଯେ କେବଳ ବୌଦ୍ଧିକ ବା ତାତ୍ତ୍ୱିକ ତା' ନୁହେଁ - ବରଂ ମଧୁର ଏବଂ ରସାଳ । କୈଶୋର, ତାରୁଣ୍ୟ ଏବଂ ଯୁବସୁଲଭ ଉଦ୍ଦାମତାର ଲଘୁ ଚପଳ ବାକ୍ୟାଳାପ, ହାସ ପରିହାସ ଆଲୋଚନାକୁ ରସସିକ୍ତ କରେ ।** ସମସ୍ତେ ଏଥିରେ ଭାଗ ନେଉଥିଲେ ବି ଡକ୍ଟର ଦିନନାଥ ପାଠୀ କିନ୍ତୁ ପୂରା ଗୁରୁଦେବ । ଜାପାନୀ ବାବୁଙ୍କ ଭାଷାରେ ମଲ୍‌ଟିଗୁରୁ । ସେ ନଥିଲେ ଆସର ଜମେନି । ତାଙ୍କର ଚମତ୍କାର ଉପସ୍ଥାପନ କୌଶଳ, ଆକାଶଥରା ହସ ଏବଂ ଅନନ୍ୟ ଅନୁଭୂତିର ଆବେଗାୟିତ ଛନ୍ଦରେ ସମସ୍ତଙ୍କୁ ଅବର୍ଣ୍ଣନୀୟ ଆନନ୍ଦ ଦିଅନ୍ତି । ସୌରୀନ୍ଦ୍ର ବାବୁଙ୍କୁ ସେ 'ମହାକବି' ସମ୍ବୋଧନ କରନ୍ତି । ଖୁବ୍ ଲାଗନ୍ତି ତାଙ୍କ ସାଙ୍ଗରେ । ଥଟ୍ଟା ପରିହାସରେ ତାଙ୍କୁ ଲାଜରା କରିଦିଅନ୍ତି । କିନ୍ତୁ ମନେମନେ ଭରପୂର ଉତ୍‌ଫୁଲ୍ଲିତ ହୁଅନ୍ତି । କୁରୁକି ଉଠନ୍ତି । କୁତୁକୁତୁ ହୁଅନ୍ତି ପରିହାସ ଶୁଣି । ମହାକବି ମଧ୍ୟ କମ୍ ନୁହନ୍ତି । ନ କହି ନ କହି ବହୁତ ଶାଣଦିଆ କଥା କହନ୍ତି । କାଉମାନଙ୍କୁ ହଳଦୀ ବସନ୍ତ କରିଦିଅନ୍ତି । **କଲେଜ ବେଳର ଅନେକ କବିତା ଅକବିତା ଶୁଣେଇ ଆସରଟାକୁ ଜମାଣିଆ କରିଦିଅନ୍ତି । ମଝିରେ ମଝିରେ ରସାଳିଆ ଆମ୍ବର ସାଦ ଚଖେଇ ଦିଅନ୍ତି ସମସ୍ତଙ୍କୁ ମନଜିଣା ପ୍ରେମିକର ସରୁ ହସ ଭିତରେ । ପ୍ରଥମେ ପ୍ରଥମେ ମୁଁ ଟିକିଏ ବ୍ୟବଧାନ ରଖୁଥିଲି, ସଂକୁଚି ଯାଉଥିଲି ଏ ସବୁ ପାଖରୁ । ମୋ' ଦୂରିଆ ଭାବକୁ ଲକ୍ଷ୍ୟ କରି ଦିନନାଥ ଥରେ ମତେ କହିଲେ, କିହୋ, ସମସ୍ତଙ୍କଠାରୁ ବୟସରେ ସାନ ବୋଲି ଦୂରେଇ ରହୁଛ କି ? ଅବସର ନେଲାପରେ ବୟସ ହଜିଯାଏ, ସମସ୍ତେ ସମାନ ହୋଇଯାଆନ୍ତି । ଆଉ ସାନବଡ଼ ଧରାଯାଏନି ।** ତା'ପରେ ମୁଁ କ୍ଷୀରନୀର ଭଳି ମିଶିଗଲି ସେମାନଙ୍କ ଭିତରେ । ପ୍ରକୃତରେ ପାଠୀ ବାବୁଙ୍କ ସାଙ୍ଗରେ ସମ୍ପର୍କିତ ହୋଇଗଲେ ବୟସଟା ଆପଣାଛାଏଁ ଦୂରେଇ ଯାଏ । ଯେମିତି ଆମମାନଙ୍କ ପାଖରୁ, ଆମ ଆସର ପାଖରୁ ସମସ୍ତଙ୍କ ବୟସଟା ଲୁଚି ଯାଇଛି ଲାଜରେ - ଆମକୁ କରାୟତ୍ତ କରିନପାରି । ପ୍ରକୃତରେ ବନ୍ଧୁତାର ମମତା ଭିତରେ ଥରେ ହଜିଗଲେ ତା'ଠାରୁ ଫେରିଆସିବାଟା ଭାରି କଷ୍ଟ ହୁଏ । ଯେମିତି ଆମର ସଂପର୍କ । ପ୍ରାତଃଭ୍ରମଣ କିମ୍ବା ସନ୍ଧ୍ୟାର ଆକର୍ଷଣ ।

ଆମ ସମସ୍ତଙ୍କ ଅପେକ୍ଷା ବୟସଟା ବେଶୀ ହାର୍ ମାନିଛି ପାଠୀଙ୍କ ପାଖରେ । ଏ ବୟସରେ ବିଦେଶ ଯିବା, ଓଡ଼ିଶା ବାହାରେ ମାସ ମାସ ବିତେଇବା, ଦିନକୁ ଅଠର ଘଣ୍ଟା ପରିଶ୍ରମ କରି ଛବି ଆଙ୍କିବା, ପଢ଼ିବା, ଲେଖିବା, ଗବେଷଣା କରିବା, ସାଂଗଠନିକ ଦାୟିତ୍ୱ ତୁଲାଇବା କିମ୍ବା ପ୍ରୁଫ୍ ସଂଶୋଧନ କରିବା, ପ୍ରେସ୍‌କୁ ଦୌଡ଼ିବା ପ୍ରଭୃତି କାମ ସେ ଯେମିତି କରିପାରନ୍ତି ଦେଖିଲେ କେବଳ ମୁଁ ନୁହେଁ ଯେ କେହି ଆଶ୍ଚର୍ଯ୍ୟ ହେବ ନିଶ୍ଚୟ । ଏତେ ଧୈର୍ଯ୍ୟ, ଏତେ ଏକାଗ୍ରତା ଈଶ୍ୱରଙ୍କର ଆଶୀର୍ବାଦ ନିଶ୍ଚୟ । କିଛି କରିଯିବାର ଏବଂ ଦେଇଯିବାର ଦୁର୍ବାର କାମନା ହିଁ ତାଙ୍କୁ ଚଳଚଞ୍ଚଳ କରିରଖିଛି । ଶାରୀରିକ ଯନ୍ତ୍ରଣା କିମ୍ବା ରୋଗ ପାଇଁ ଶୋଚନା ନାହିଁ, ବେଶ ପରିପାଟୀ ଉପରେ ନିଘା ନାହିଁ, ନିନ୍ଦା ସମାଲୋଚନାକୁ ଖାତିର ନାହିଁ । କେବଳ ଆଗକୁ ମାଡ଼ିବାର ଗୋଟାପଣ ଭାବ । ସଂକଳ୍ପିତ ଚେତନା । ଜୀବନ ପାଇଁ ସମର୍ପିତ କାମନା । ଯାହା ତାଙ୍କ ଚାଲିରେ, ଠାଣିରେ, ହସରେ ଆଉ ଲାସ୍ୟରେ ହିଁ ଫୁଟିଉଠେ । ଏକ ନିଆରା ମଣିଷର ବ୍ୟକ୍ତିତ୍ୱ ଝଲସାଏ ।

ମୁଁ ତାଙ୍କର ଉଦୟକାଳୀନ ଶୋଭା ଦେଖିନି । ଆଜି ମହଳଣ ସମୟରେ ବି କ୍ଲାନ୍ତ ଶ୍ଳାନ୍ତ ନୁହନ୍ତି 'ଦିନନାଥ' । ମଧ୍ୟାହ୍ନର ତେଜୋଦୀପ୍ତତାରେ ସେ ଉଦ୍‌ଭାସିତ, ଜାଜ୍ଜ୍ୱଲ୍ୟମାନ । ଜଗନ୍ନାଥ ତାଙ୍କ ଭିତରେ ଏଇ ତେଜ ଭରି ରଖିଥାନ୍ତୁ । ସବୁଦିନ ସେ ରହିଥାନ୍ତୁ ମଧ୍ୟାହ୍ନର ଦିନନାଥ ହୋଇ । ସମସ୍ତଙ୍କର ପ୍ରେରଣା ହୋଇ । ଆଲୋକବର୍ତ୍ତିକା ହୋଇ ।

Digitized by srujanika@gmail.com

**ରମେଶ ଦାସ**

# ପାଠୀ ପାଠ୍ୟ ସମାଚରେତ୍

ଚିତ୍ରକଳା ପ୍ରତି ମୋର ଏକ ଅହେତୁକ ଆକର୍ଷଣ ପିଲାଟି ଦିନରୁ ରହି ଆସିଥିଲା । ସେଥିପାଇଁ ବିମ୍ବାଧର ବର୍ମା, ଗୋପାଳ କାନୁନ୍‌ଗୋ, ଉଦୟ ନାରାୟଣ ଜେନା, ଗୌରାଙ୍ଗ ଚରଣ ସୋମ, ଅଭିରାମ ସାହୁ, ଦୁର୍ଗା ପ୍ରସାଦ ଦାସ, ଅସୀତ ମୁଖାର୍ଜୀ ଇତ୍ୟାଦି ଯେକୌଣସି ଚିତ୍ରକରଙ୍କର ଚିତ୍ରଟିଏ ପତ୍ରିକା ପୃଷ୍ଠାରେ ଦେଖିଲେ ଆଖି ଲାଖି ଯାଉଥିଲା । ବାରମ୍ବାର ଦେଖିବାକୁ ଇଚ୍ଛା ହେଉଥିଲା ସେହି କୃତିଗୁଡ଼ିକୁ । ଏବେ ବି ସେଇ ଗୁଣଟିକକ ହୃଦୟର ଚଉହଦ୍ଦିରେ କେଉଁଠି ନା କେଉଁଠି ଲୁଚିରହିଛି ।

ଏମିତିରେ ତ ସାହିତ୍ୟ, ସଂସ୍କୃତି, କଳା, ଐତିହ୍ୟ, ଭାସ୍କର୍ଯ୍ୟ ମୋ' ମନକୁ ଅଧିକାର କରି ନେଉଥିବା ବେଳେ ଦିନନାଥ ପାଠୀଙ୍କ ସହିତ ମୋର ପରିଚୟ ଆରମ୍ଭ ହୁଏ, ତାଙ୍କର ଚିତ୍ର ସମ୍ବନ୍ଧୀୟ ଲେଖା ପଢୁ ପଢୁ ଏବଂ ତାଙ୍କ ଦୂରଦୃଷ୍ଟିର ସାମ୍ରାଜ୍ୟକୁ କଳନା କରୁ କରୁ । ପୁସ୍ତକର ପ୍ରଚ୍ଛଦପଟରେ ଚିତ୍ର ଆଙ୍କି ଅସୀତ ମୁଖାର୍ଜୀ, ଉଦୟ ନାରାୟଣ ଜେନା ଓ ଶିବ ପାଣିଗ୍ରାହୀ ବେଶ୍ ପରିଚିତ ହୋଇଯାଇଥାନ୍ତି କିନ୍ତୁ ପାଠୀବାବୁଙ୍କ ପ୍ରଚ୍ଛଦ ଚିତ୍ର କେବେ ବି ମୋର ଦୃଷ୍ଟିଗୋଚର ହୋଇନଥାଏ । କେବଳ କେତେ ଜଣ ପରିଚିତ ବିଜ୍ଞଲୋକମାନଙ୍କ ମୁହଁରୁ ପାଠୀବାବୁଙ୍କ ନାମ ଶୁଣିଥିଲି ଏବଂ ମନ ଭିତରେ ତାଙ୍କର ସାନ୍ନିଧ ଚାହୁଁଥିଲି । ତାଙ୍କ ସହିତ ମୁହାଁମୁହିଁ ସାକ୍ଷାତ ହେବା ପୂର୍ବରୁ ତାଙ୍କର ବହୁ ଚର୍ଚ୍ଚିତ ପେଣ୍ଟିଂଟିଏ ମଧ୍ୟ ଆମ ଘରେ ଶୋଭା ପାଇ ସାରିଥିଲା । ମୁଁ ରହୁଥିଲି ଓଡ଼ିଶାର ଦକ୍ଷିଣ ପ୍ରାନ୍ତ କୋରାପୁଟରେ । ବାଟରେ ତାଙ୍କ ଗାଁ ଦିଗପହଣ୍ଡି ବଜାରରେ ବସ୍ ରହୁଥିଲା । ଯାତ୍ରୀମାନେ ଓହ୍ଲାଇ ଖାଦ୍ୟ ଖାଇବା ପାଇଁ ଯାଉଥିଲେ । ସାଦିଷ୍ଟ ଛେନାପୋଡ଼ ନାଁରେ ଅଖାଦ୍ୟ ଖାଉଥିଲେ । ସେତେବେଳେ ଦିଗପହଣ୍ଡିର ମଣି ଦିନନାଥଙ୍କ ସ୍ମୃତି ମୋ ମନରେ ଚହଟି ଉଠୁଥିଲା କିନ୍ତୁ ସେ ସେତେବେଳେ ରାଜଧାନୀକୁ ନିଜର ବାସସ୍ଥାନରେ ପରିଣତ କରି ସାରିଥିଲେ ।

ମୁଁ ବି.ଜେ.ବି କଲେଜକୁ ଆସିଲା ପରେ ତାଙ୍କ ସହିତ ଅନ୍ତରଙ୍ଗ ଆଳାପ କରିବାର ଅପୂର୍ବ ସୁଯୋଗ ମିଳିଲା । ନିକଟରୁ ଅନୁଭବ କରିହେଲା ତାଙ୍କର ବିଭୂତିକୁ, ଚିହ୍ନି ହେଲା ତାଙ୍କର ଆତ୍ମାକୁ । ସେଇଦିନ ଠାରୁ ମୋର ଅବଚେତନରେ ତାଙ୍କର ଏକ ନିର୍ଦ୍ଦିଷ୍ଟ ପ୍ରତିକୃତି ଅଙ୍କିତ ହୋଇ ରହିଛି ମୋ ଭିତରେ ।

ଚିତ୍ରକଳାର ଜଣେ ପ୍ରଧାନ ଆଚାର୍ଯ୍ୟ ଭାବରେ ସେ ଅନେକ ଦିନ ଧରି ବି.କେ. କଳା ମହାବିଦ୍ୟାଳୟର ଅଧକ୍ଷ ଦାୟିତ୍ୱ ବହନ କରି ଅନେକ ଶିଳ୍ପୀଙ୍କୁ ନିଜ ହାତରେ ଗଢ଼ିବା ସଂଗେ ସଂଗେ ଭାରତ ସରକାର ଓ ଓଡ଼ିଶା ସରକାରଙ୍କ କଳା, ସଂସ୍କୃତି ଅନୁଷ୍ଠାନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଭାଇଛନ୍ତି । ପୃଥିବୀର ବିଭିନ୍ନ ସ୍ଥାନରେ ବୁଲି କଳାକୁ ପ୍ରତ୍ୟକ୍ଷ କରିବା ସଂଗେ ସଂଗେ ତା'ର ଇତିହାସ ଓ ଆଭିମୁଖ୍ୟକୁ ଅନୁଧ୍ୟାନ କରି ଅନେକ ଉଚ୍ଚମାନର ସନ୍ଦର୍ଭ ରଚନା କରିଛନ୍ତି ତଥା ଅନେକ ସମ୍ମାନର ଅଧିକାରୀ ହୋଇଛନ୍ତି । ସମ୍ମାନ, ପୁରସ୍କାର, ଅଭିନନ୍ଦନର ଆବେଗଧର୍ମୀ ଉଚ୍ଛ୍ୱାସ ଭିତରେ ପାଠୀବାବୁଙ୍କର ବ୍ୟକ୍ତିସତ୍ତା କେବେ ବି ସ୍ଫୀତ ହୋଇଥିବାର ମୋର ଦୃଷ୍ଟିଗୋଚର ହୋଇନାହିଁ କି ତାଙ୍କର ଅନୁସନ୍ଧାନୀ ବିଚାରଧାରାରେ କେବେ ବି ପୂର୍ଣ୍ଣଚ୍ଛେଦ ପଡ଼ିନାହିଁ । ତାଙ୍କର ସୃଷ୍ଟି ସମ୍ଭାର ପ୍ରତି ମୁହୂର୍ତ୍ତରେ କିଛି ନା କିଛି ନୂତନତାର ସନ୍ଧାନ ଦେଇଛି । ତାଙ୍କର ପ୍ରକାଶମାନ ସତ୍ତାର ଦୁଇଟି ଆୟୁଧ ତୂଳୀ ଓ କଲମ କେବେ ବି ନିଥର ହୋଇନି ବରଂ ପରସ୍ପରର ପରିପୂରକ ହୋଇ ରହିଛି । ଦାର୍ଶନିକ ସୂକ୍ଷ୍ମ ଅନୁଶୀଳନ କରିବାରେ ସେ କେବେ ବି ବିତସ୍ପୃହ ହୋଇନାହାଁନ୍ତି ।

ସେ ଜଣେ ସାଧାସିଧା ନିରାଡମ୍ବର ବ୍ୟକ୍ତି କିନ୍ତୁ ପ୍ରଚଣ୍ଡ ସ୍ୱାଭିମାନରେ ତାଙ୍କର ଅନ୍ତରାତ୍ମା ବିଭୂଷିତ । କଳା ପ୍ରତି ସେ ସମର୍ପିତ କିନ୍ତୁ କଳା ପ୍ରତି କାହାର ହେୟ ଦୃଷ୍ଟି ତାଙ୍କ ପାଇଁ ଅସହନୀୟ । କଳା କ୍ଷେତ୍ରରେ ସାମାନ୍ୟ ବ୍ୟତିକ୍ରମ ଦେଖିଲେ ତାଙ୍କ ଭିତରେ ଥିବା ଅଦୃଶ୍ୟ ବିକ୍ଷୋଭକୁ ଅନୁଭବ କରିହୁଏ । ସେ ସମୟ ଅନୁସାରେ ବରଦାସ୍ତ କରିବା କୌଶଳକୁ ହାସଲ କରିପାରିଥିଲେ ସୁଦ୍ଧା କଳା ଓ କଳାକାର ପ୍ରତି ଅବମାନନା ଦେଖିଲେ ତାଙ୍କର ଅନ୍ତଃକରଣ ତତ୍‌କ୍ଷଣାତ୍ ହିଂସ୍ର ହୋଇଉଠେ । ଏହା ତାଙ୍କର ସ୍ୱାଭାବିକ ପ୍ରକୃତି ।

ଜଣେ ସମର୍ପିତ କଳାକାର ଭାବେ ତାଙ୍କର ବ୍ୟକ୍ତିତ୍ୱ ଯେତିକି ତୀକ୍ଷ୍ଣ, ଆବେଗର ଉଚ୍ଛ୍ୱାସରେ ସେତିକି ମନ୍ଦ୍ର ଓ ସମ୍ବେଦନଶୀଳ । ମସ୍ତିଷ୍କ ତଥା ହୃଦୟର ଉର୍ଜାକୁ ଧରାବତରଣ କରାଇବାରେ ସେ ସତତ ପ୍ରଯତ୍ନଶୀଳ । ଅନେକ ସମୟରେ ମନେହୁଏ ସେ ରଙ୍ଗ ପାଇଁ ଯେମିତି ମସ୍ତିଷ୍କକୁ ଉତ୍ସର୍ଗୀକୃତ କରିପାରନ୍ତି, ସେମିତି ସାହିତ୍ୟ ପାଇଁ ହୃଦୟକୁ ଉନ୍ମୁକ୍ତ କରିଥାଆନ୍ତି । ସେଥିପାଇଁ ତାଙ୍କର ରଙ୍ଗତୂଳୀ ଗବେଷଣାର ଗମ୍ଭୀରା ଭିତରେ ପଶି କଳାର

Digitized by srujanika@gmail.com

ଔଜ୍ଜଲ୍ୟ ଖୋଜିବାରେ ଯେମିତି ମହାରଥୀ ପାଲଟିଛି, ସେମିତି ଲେଖନୀରେ ଜୀବନର ଅଗଣିତ ଛନ୍ଦକୁ ରୂପାନ୍ୱିତ କରିବାକୁ ଯାଇ ସେ ଜଣେ ରୂପାନ୍ୱେଷୀର ଯଥାର୍ଥ ସାକ୍ଷର ଦେଇପାରିଛନ୍ତି ।

ମୋଟାମୋଟି ଭାବରେ କହିଲେ ଟିକିଟିକି ଛୋଟ ଛୋଟ ଅନୁଭୂତିଗୁଡ଼ିକୁ ପିଲାଟି ଦିନରୁ ସଞ୍ଚୟ କରି କରି ଉଚ୍ଚାକାଂକ୍ଷୀ ହେବାର ସଂକଳ୍ପ କରି ଚାଲିଛନ୍ତି ଜୀବନ ସାରା କିନ୍ତୁ ନିଜର ସାତ୍ତିମାନଙ୍କୁ ବଳି ପକାଇ ନାହାନ୍ତି କୌଣସି ପରିସ୍ଥିତିରେ ।

ଜଣେ କଳାକାର ହିଁ ଅସ୍ପଷ୍ଟକୁ ସ୍ପଷ୍ଟ କରାଇପାରେ, ଅଦୃଶ୍ୟକୁ ଦୃଶ୍ୟ କରାଇପାରେ, ଅଜ୍ଞାତକୁ ଜ୍ଞାତ କରାଇପାରେ । ପାଠୀବାବୁଙ୍କର ସମଗ୍ର ଜୀବନ ଯେମିତି ସେଇ ଲକ୍ଷ୍ୟପଥରୁ ତିଳାର୍ଦ୍ଧେ ବିଚ୍ୟୁତ ହୋଇନାହିଁ । ତାଙ୍କର ଗଭୀର ମନନ ଶକ୍ତି, କର୍ତ୍ତବ୍ୟ ନିଷ୍ଠା, ବିଶ୍ଳେଷଣ କରିବାର କ୍ଷମତା, ସୁଦୂରପ୍ରସାରୀ ଦୃଷ୍ଟିଭଙ୍ଗୀ, ପ୍ରକାଶ କରିବାର ଅକୃତ୍ରିମ ଶୈଳୀ ଆଜି ତାଙ୍କର ପରିଚୟକୁ କୌଣସି ସୀମା ସରହଦ ଭିତରେ ଆବଦ୍ଧ କରିନାହିଁ, ବରଂ ବିଶ୍ୱ ଦରବାରରେ ସସମ୍ମାନେ ପରିସ୍ଫୁଟ କରିପାରିଛି ।

ତାଙ୍କର ଜୀବନ ତାଙ୍କ ପାଇଁ ଯଥାର୍ଥରେ ପାଠଶାଳାରେ ପରିଣତ ହୋଇପାରିଛି । ତାହା ପାରିପାର୍ଶ୍ୱିକ ପରିବେଶରୁ ସଂଗ୍ରହ କରିଛି ଜୀବନୀଶକ୍ତି, ବଞ୍ଚିବାର କୌଶଳ, ନିଜକୁ ଗଢିବାର ଅପୂର୍ବ ପ୍ରେରଣା । ତାଙ୍କର ପିତାମାତା, ବଡ଼ଭାଇ  ତାଙ୍କ ପାଇଁ ପାଲଟି ଯାଇଛନ୍ତି ବନ୍ଧୁ, ଦାର୍ଶନିକ ଏବଂ ମାର୍ଗଦର୍ଶକ । ସେମାନଙ୍କର ଧୂଳିମାଟିର ସର୍ଗ ଭିତରେ ସେ ବିଭୋର ହୋଇ ବିତାଇଛନ୍ତି  ଆଦ୍ୟ ଜୀବନର କେତୋଟି ମହାର୍ଘ ମୁହୂର୍ତ୍ତକୁ, ଯାହା ତାଙ୍କୁ ପରବର୍ତ୍ତୀ କାଳରେ ସ୍ୱପ୍ନ ବିଭୋର କରିବା ପାଇଁ ପ୍ରେରଣା ଦେବା ସଂଗେ ସଂଗେ ଶିଖାଇଛି ନିଷ୍ପେଷଣ ଭିତରେ ମୁକ୍ତ ସଂଗୀତ ଗାନ କରିବାର ଅଦମ୍ୟ ପ୍ରତିଶ୍ରୁତି । ପାଠୀବାବୁଙ୍କର ଜୀବନଶାଳାର ପ୍ରତ୍ୟେକ ପୃଷ୍ଠାରେ ଅଙ୍କିତ ହୋଇରହିଛି ଯନ୍ତ୍ରଣାପିଷ୍ଟ ବାସ୍ତବତା ଭିତରେ ଅଲୌକିକ କ୍ରାନ୍ତିକାରୀ ସ୍ଫୁଲିଙ୍ଗ । ଅନେକ ସମୟରେ ତାଙ୍କର ସେହି ଭାବୋଲ୍ଲାସ ପାଠକର ପ୍ରାଣକୁ ଆହ୍ଲାଦିତ କରିବା ସଂଗେ ସଂଗେ ବିସ୍ମୟାଭିଭୂତ କରି ପକାଏ ପାଠକୀୟ ଭାବସତ୍ତାକୁ ।

ସୌଭାଗ୍ୟକୁ ପାଠୀବାବୁଙ୍କ ସହିତ ମୋର ସାକ୍ଷାତ ଖୁବ୍ କମ୍ ସମୟ ବ୍ୟବଧାନରେ ହୋଇଥାଏ । ସେହି ଆଳାପ ଆଲୋଚନା ପରିସରରେ ତାଙ୍କ ଭିତରର ଅନେକ ଗୋପନୀୟ ତଥା ଲୋଭନୀୟ କଥା ବାହାରକୁ ଫୁଟି ପଡ଼ିଥାଏ । ସେଗୁଡ଼ିକ ପାରିବାରିକ ସ୍ତରରୁ ଉପରକୁ ଉଠି କେତେବେଳେ ଆନ୍ତର୍ଜାତିକ ସୀମାକୁ ମଧ୍ୟ ଛୁଇଁଯାଏ । ସେଥିରୁ ବହୁକଥା ଶିଖିହୁଏ, ଜାଣିହୁଏ ତଥା ବିଚାରର ଉତ୍କର୍ଷତାକୁ ସ୍ପର୍ଶ କରିହୁଏ । ସେ ବହୁଥର ପୃଥିବୀ ପରିକ୍ରମା କରିଛନ୍ତି, ବହୁ ଦେଶ ବିଦେଶର ବନ୍ଧୁମାନଙ୍କ ସହିତ ସମ୍ପର୍କ ରକ୍ଷା କରିପାରିଛନ୍ତି, କିନ୍ତୁ ସବୁଠି ତାଙ୍କର ଅନୁସନ୍ଧାନୀ ଦୃଷ୍ଟି ତାଙ୍କୁ ସୀମିତ ପରିଧି ଭିତରେ ଆବଦ୍ଧ କରିପାରି ନାହିଁ । ଖୋଜିଛନ୍ତି ଅନେକ କିଛି, ପାଇଛନ୍ତି ବି ଏବଂ ତାକୁ  ସଯତ୍ନରେ ସାଇତି ରଖି ସେ ଭେଟି ଦେଇପାରିଛନ୍ତି ତାଙ୍କର ବିସ୍ତୀର୍ଣ୍ଣ ପାଠକବର୍ଗଙ୍କୁ । ସେଥିପାଇଁ ପାଠୀବାବୁଙ୍କ କଳା-କଳ୍ପନା-ସାହିତ୍ୟର ଆବେଦନ ଯଥେଷ୍ଟ ପ୍ରଭାବଶାଳୀ ଏବଂ ପ୍ରାମାଣିକ ।

ତାଙ୍କର ଚଳଣୀ ବେଶ୍ ସାଧାରଣ । ଶାକାହାରୀ ମଣିଷ ସେ । କିଛି ଦିନ ଧରି ପ୍ରିୟଗୁରୁ/ଅଧ୍ୟକ୍ଷ ଚିତ୍ରଶିଳ୍ପୀ ଶରତ ଚନ୍ଦ୍ର ଦେବଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ରହି ସ୍ୱାମୀ ଶିବାନନ୍ଦଙ୍କ ବିଚାରଧାରାରେ ପ୍ରଭାବିତ ହୋଇଥିଲେ । କିଛି ଆଧ୍ୟାତ୍ମିକ ପୁସ୍ତକ ମଧ୍ୟ  ରଚନା କରିଥିଲେ । ପ୍ରାର୍ଥନା ସଭାରେ ଯୋଗ ଦେଉଥିଲେ । ସେହି ସମୟର ସୂକ୍ଷ୍ମ ପ୍ରଭାବ ଏବେ ବି ତାଙ୍କ ଜୀବନଚର୍ଯ୍ୟାରେ ପ୍ରତିଫଳିତ । ଟେଲିଭିଜନର ପର୍ଦ୍ଦାକୁ ଚାହିଁ ବସିବା ତାଙ୍କର ଅଭ୍ୟାସ ବହିର୍ଭୂତ । ସେ ଶୀଘ୍ର ବିଛଣାକୁ ଯାଇ ଏବଂ ଶୀଘ୍ର ଉଠି ପଡ଼ି ନିଜକୁ ସୃଜନଶୀଳ କର୍ମରେ ନିୟୋଜିତ କରନ୍ତି, ପ୍ରାତଃଭ୍ରମଣ ସାରି ସାଙ୍ଗସାଥୀମାନଙ୍କ ସହିତ କିଛି ବିଚାର ବିମର୍ଷ କରି ଘରକୁ ଫେରି ଆସି ପୁନଶ୍ଚ ନିଜର ପୂର୍ବ ନିର୍ଦ୍ଧାରିତ କର୍ମରେ ଲିପ୍ତ ରହନ୍ତି । ଜୀବନରେ ଘଟିଥିବା ଘଟଣାକୁ ସେ ଯେପରି ସଂଯୋଜିତ କରି ରଖିପାରନ୍ତି, ତାହା ଅନ୍ୟମାନଙ୍କ ପାଇଁ ଉଦାହରଣ ପାଲଟିଯାଏ । କୌଣସି ସଭାସମିତି ପାଇଁ ତାଙ୍କୁ ସାଦର ନିମନ୍ତ୍ରଣ ଜଣାଇଲେ ସେ ବିନା ଦ୍ୱିଧାରେ ପହଞ୍ଚିଯାନ୍ତି ଏବଂ ଶେଷ ପର୍ଯ୍ୟନ୍ତ ସେଥିରେ ସାମିଲ ହୁଅନ୍ତି । ତାଙ୍କ ପାଇଁ ବଡ଼ ସାନର ଭେଦ-ଭାବ ନଥାଏ । ମୁଁ ଏହା ଅଙ୍ଗେ ନିଭେଇଛି । ସବୁଠି କିଛି ନୂଆ ଭାବନା ଯୋଡ଼ି ଦେଉଥିବାରୁ ତାଙ୍କ ପ୍ରତ୍ୟୁତ୍ପନ୍ନମତିତାକୁ ପ୍ରଶଂସା ନକରି ରହିହୁଏନି । ହାର୍ଟ ଅପରେସନ୍ ହୋଇଥିଲେ ବି ତାଙ୍କର କର୍ମ କରିବାରେ କାର୍ପଣ୍ୟ କେବେ ବି ମୋର ଦୃଷ୍ଟିଗୋଚର ହୋଇନି । ପ୍ରତ୍ୟେକ କର୍ମକୁ ଶୋଭନ ରୀତିରେ ପରିବେଷଣ କରିବା ତାଙ୍କର ଏକ ବିଶେଷ ଯୋଗ୍ୟତା । ନୂଆ ପୁସ୍ତକର ଲୋକାର୍ପଣ ବେଳେ ତାଙ୍କର ମୌଳିକତା, ନିଆରାପଣ ସ୍ପଷ୍ଟ ବାରି ହୋଇପଡ଼େ । ତାଙ୍କର ଜୀବନରେ ଆସିଥିବା ଦୁର୍ଦ୍ଦିନଗୁଡ଼ିକ ଯାହା ଗୋଟିଏ ମଣିଷକୁ ବିଦୀର୍ଣ୍ଣ କରିଦେବା ପାଇଁ ଯଥେଷ୍ଟ, (ଯେମିତି ଏକମାତ୍ର ପ୍ରିୟ କନ୍ୟାର ବିୟୋଗ ଏବଂ ପ୍ରିୟତମା ପତ୍ନୀର ବିୟୋଗ) ସେଇ ଦୁଃଖର

Digitized by srujanika@gmail.com

ଜ୍ୱାଳାକୁ ନୀଳକଣ୍ଠ ଭଳି ପିଇ ନିଜ ଜୀବନକୁ ପୁନଶ୍ଚ ସକାରାତ୍ମକ ଢଙ୍ଗରେ ଢାଳିଦେବା କ୍ୱଚିତ ମଣିଷ ଜୀବନରେ ଦୃଷ୍ଟିଗୋଚର ହୁଏ । ଯାହା ସେ କରନ୍ତି, ସେଥିରେ ତାଙ୍କର ସରାଗପଣିଆ, ଆତ୍ମୀୟତା ବାରି ହୋଇପଡେ । ତାଙ୍କର ସ୍ପଷ୍ଟ ଅଭିବ୍ୟକ୍ତି ପାଇଁ ସେ ଯେ ସମସ୍ତଙ୍କର ପ୍ରିୟଭାଜନ ହୋଇପାରନ୍ତି ନାହିଁ, ତାହା ତାଙ୍କ ଅବର୍ତ୍ତମାନରେ ସ୍ପଷ୍ଟ ହୋଇଥାଏ, ଅନ୍ୟମାନଙ୍କ ଆଲୋଚନାରୁ ମାତ୍ର ତାଙ୍କ ମନରେ କାହା ପ୍ରତି ବିଦ୍ୱେଷ ଭାବ ରହିଥିବାର ସାମାନ୍ୟ ସୂଚନା ମୁଁ ପାଇନାହିଁ । ବରଂ ତାଙ୍କର ବନ୍ଧୁପ୍ରୀତି ଦେଖିଲେ ଯେ କେହି ତାଙ୍କର ବ୍ୟକ୍ତିତ୍ୱ ପ୍ରତି ଈର୍ଷାନ୍ୱିତ ହୋଇ ଉଠିବ । ବନ୍ଧୁ ବତ୍ସଳତା ତାଙ୍କର ଆତ୍ମୀୟ ଅଭିବ୍ୟକ୍ତିର ଏକ ବିଶେଷ ପରିଚିତି । ସିଏ ସାଥୀ ଅଧ୍ୟାପକ ଶିବରାମ ପାତ୍ର ହୁଅନ୍ତୁ ବା ଯେକୌଣସି ଚିତ୍ରଶିଳ୍ପୀ ବନ୍ଧୁ ହୁଅନ୍ତୁ ବା ବିଦେଶୀ ବନ୍ଧୁ ଫିସର୍ ହୁଅନ୍ତୁ ସମସ୍ତଙ୍କ ପ୍ରତି ତାଙ୍କର ଥାଏ ଦୁର୍ବାର ଆକର୍ଷଣ । ପ୍ରତ୍ୟକ୍ଷରେ ସେ ବନ୍ଧୁମାନଙ୍କ ପ୍ରତି ଶାଣିତ ବ୍ୟଙ୍ଗୋକ୍ତି କରୁଥିଲେ ବି ଅନ୍ତର ଭିତରେ ସେ ତାଙ୍କୁ ବିଶେଷ ଆସନରେ ବସାଇଥାନ୍ତି । ସେମାନଙ୍କର ଦେହାବସାନ କଥା ଶୁଣିଲେ ମ୍ରିୟମାଣ ହୋଇପଡ଼ିଥାନ୍ତି ।

ସନ୍ତାନ ସନ୍ତତି ତଥା ପରିବାର ପାଇଁ ତାଙ୍କ ଭିତରେ ରହିଛି ପ୍ରଚୁର ମୋହାଚ୍ଛନ୍ନ ଭାବ କିନ୍ତୁ ବାହାରକୁ ସେ ଜଣେ ନିସ୍ପୃହ ବ୍ୟକ୍ତି ଭଳି ଦୃଶ୍ୟମାନ ହୁଅନ୍ତି । ସ୍ନେହ ଗୋଟାଇବା ପାଇଁ କେହି ନିଜ ହାତରେ ନିଜକୁ ଜଣେ ଦାନବୀର ଭଳି ଲୁଟେଇ ଦେଉଥିବାର ନଜିର ମୋ'ପାଇଁ ସମ୍ପୂର୍ଣ୍ଣ ବିରଳ । କିନ୍ତୁ କେତେ ଆଦରରେ ରଚିଥିବା ତାଙ୍କର ସୃଜନସମ୍ଭାରକୁ ସେ ପ୍ରିୟ ପାଠକ ପାଖରେ ଅଜାଡ଼ିଦେବାରେ କେବେ ହେଲେ କାର୍ପଣ୍ୟ କରିନାହାନ୍ତି । ଏକଥା ନଦେଖିଥିଲେ ବିଶ୍ୱାସ କରିହେବନି । ଯାହା ଫଳରେ ତାଙ୍କର ବହୁ ମୁଗ୍ଧ ପାଠକ ତାଙ୍କୁ ସହଜରେ ଆପଣେଇ ପାରନ୍ତି ।

ବିଶେଷ କରି ଓଡ଼ିଶାର କଳା, ନୃତ୍ୟ, ସଂଗୀତ, ଭାସ୍କର୍ଯ୍ୟ, ଇତ୍ୟାଦି ସବୁ କ୍ଷେତ୍ରରେ ତାଙ୍କର ଅବାଧ ପ୍ରବେଶ । ଏସବୁ ଭିତରେ ସେ କଳାର ଅନନ୍ତ ବିସ୍ତାରକୁ ଉପଲବ୍ଧ କରିଥାଆନ୍ତି । ଏମିତିକି ସାଧାରଣ ଜୀବନଚର୍ଯ୍ୟାରେ ସେ କଳାର ପ୍ରାସଙ୍ଗିକତାକୁ ପ୍ରମାଣ କରି ଦେଖାଇ ଦିଅନ୍ତି । ତାଙ୍କ ଦୃଷ୍ଟିରେ ଜୀବନ ହିଁ କଳା, କଳା ହିଁ ଜୀବନ । ଯଥାର୍ଥରେ ସେ ଏହି ଧାରଣାକୁ ତାଙ୍କର ଜୀବନ ଚରିତ 'ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ', 'ପୁଞ୍ଜିକୟାଁର ଫକୀର', 'ଚିଲିକା ପାଣିର ଛାଇ' ଓ 'ରୂପଜୀବୀର ଡାଇରୀରେ'ରେ ଚିତ୍ରାୟିତ ପରିପାଟୀରେ ଜୀବନର ଅପୂର୍ବ ବିଶ୍ଳେଷଣ କରିପାରିଛନ୍ତି । ପାଠକ ପଢୁ ପଢୁ ତାହାର ବ୍ରହ୍ମାନନ୍ଦ ସହୋଦର ରସକୁ ପାନ କରି ତନ୍ମୟ ହୋଇଯାଏ । ସେ 'ଭବଘୁରା ଭବନାଥ' ହେଉ, 'ନୀଳହ୍ରଦର ଚିତ୍ରକର' ହେଉ ସବୁଠି ଭାଷାରେ ଚିତ୍ର ଆଙ୍କିବାର ଦକ୍ଷତା ପାଠୀବାବୁଙ୍କ ଲେଖନୀରେ ସ୍ପଷ୍ଟ ହୋଇଉଠେ । ସେମିତି 'ସାୟୋନାରା', 'ପୁନର୍ନବା', 'ଶ୍ଳୋକଛନ୍ଦ', 'ଗଙ୍ଗାବତରଣ' ଏସବୁଥିରେ ପରିବେଶ, ଚରିତ୍ର, ଜୀବନ ଅଙ୍ଗାଙ୍ଗୀ ଭାବରେ ଆତ୍ମୀୟତା ରକ୍ଷା କରିଥାନ୍ତି ।

ପାଠୀବାବୁଙ୍କ ଜାତୀୟତାବୋଧର ଏକ ଅବିସ୍ମରଣୀୟ ଉପାଦାନ ହେଉଛି ତାଙ୍କର ଆନ୍ତରିକତା । ସେ ଓଡ଼ିଶାର ଜୀବନୀଶକ୍ତିକୁ ଉଦ୍‌ଘାଟନ କରିଥାନ୍ତି ଝୋଟି, ଚିତା, ମୁରୁଜ, ଟୋକେଇ, ପାଛିଆ, ଅଳଂକାର, ବାଦ୍ୟ, ଲୋକନାଟ, ଲୋକକଳା, ଲୋକସଂଗୀତ, ଲୋକ ଭାଷା, ଭାବ ଭଙ୍ଗୀ, ଆଗ୍ରହ ବିଗ୍ରହରେ, ପରମ୍ପରାରେ । ମନ୍ଦିର ମାଳିନୀ ଓଡ଼ିଶାର ପୁରପଲ୍ଲୀକୁ ଧର୍ମ-ଦର୍ଶନର ମାଧୁର୍ଯ୍ୟମୟ ଆଲେଖ୍ୟରେ ରୂପାୟିତ କରିଥିବା ଭାବ-ସମ୍ପଦକୁ ସେ ଖୋଜି ବସନ୍ତି ପ୍ରାଚୀନ ଶାସ୍ତ୍ରରେ, ତାଳପତ୍ରର ପୋଥି ଭିତରେ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସାମର୍ଥ୍ୟକୁ ସେ ପୁନଃ ଆବିଷ୍କାର କରନ୍ତି ଚିତ୍ରାଲେଖ୍ୟ ରସିକହାରାବଳୀରେ ଏବଂ ବିଶ୍ୱକବି ଜୟଦେବଙ୍କ ଗୀତଗୋବିନ୍ଦର ରସାଣିତ ରସ ବୈଭବକୁ ତାଳପତ୍ର ପୋଥିରେ ଅଙ୍କିତ କଳା ନୈପୁଣ୍ୟରୁ ।

ପ୍ରାମାଣିକତା ବିହୀନ ଫମ୍ପା ଆରୋପିତ ଆଦର୍ଶ ପ୍ରତି ତାଙ୍କର ନଥାଏ ସାମାନ୍ୟତମ ଆକର୍ଷଣ । ଅନ୍ଧ ବିଶ୍ୱାସର କୁଟିଳ ବନ୍ଧନୀ ଭିତରୁ ସେ ଓଡ଼ିଆ କଳାର ଅସ୍ମିତାକୁ ଖୋଜି ବାହାର କରିବାକୁ ସତତ ପ୍ରୟାସୀ । ଅପସୃୟମାନ କଳା ଆଭିଜାତ୍ୟର ଗୌରବ କ୍ଷୁର୍ଣ୍ଣ ହେବାର ଦେଖିଲେ ସେ କ୍ଷୁବ୍ଧ ହେବା ସଂଗେ ସଂଗେ ଦୁଃଖିତ ହୋଇଥାନ୍ତି । ତାଙ୍କର ଆଖି ଲାଖି ରହେ ପାରମ୍ପରିକ କାରିଗରର ଜଉ କଣ୍ଢେଇ, ପଟଚିତ୍ର, ଅଭଙ୍ଗୀ କଣ୍ଢେଇ, ମୁଖା, ବିଞ୍ଚଣା, ସଉପ ଭଳି ସାଧାରଣ ମନେ ହେଉଥିବା ବସ୍ତୁରେ ଥିବା କଳା ନୈପୁଣ୍ୟର ଚାତୁରୀ ଉପରେ । ସେଗୁଡ଼ିକୁ ସାଇତି ନରଖିଲେ ଦିନେ ଓଡ଼ିଶାର ପାରମ୍ପରିକ ବିଭବ ବିଲୁପ୍ତ ହୋଇଯିବ ଏହା ତାଙ୍କୁ ଚିନ୍ତାଗ୍ରସ୍ତ କରିପକାଏ । ସେ ତର୍ଜମା କରି ବସନ୍ତି, ବିଶ୍ଳେଷଣ କରି ବସନ୍ତି ଓଡ଼ିଆ କଳାକାରର ଆତ୍ମୀକ ବିଭବକୁ । ସେ ପ୍ରାଚୀନ କଳା ପରମ୍ପରାକୁ ଖୋଜି ବାହାର କରିବା ପାଇଁ ଓଡ଼ିଶାର ବିଭିନ୍ନ ପ୍ରାନ୍ତକୁ ଯାଇ ଉଦ୍ଧାର କରନ୍ତି ପ୍ରାଚୀନ ଆଦିବାସୀ ସୌରା ଚିତ୍ରକଳାକୁ ଏବଂ ଲେଖା ମାଧ୍ୟମରେ ତାକୁ ଲୋକଲୋଚନକୁ ନେଇ ଆସନ୍ତି ।

Digitized by srujanika@gmail.com

ହୋଇଯିବ ଏହା ତାଙ୍କୁ ଚିନ୍ତାଗ୍ରସ୍ତ କରିପକାଏ । ସେ ତର୍ଜମା କରି ବସନ୍ତି, ବିଶ୍ଳେଷଣ କରି ବସନ୍ତି ଓଡ଼ିଆ କଳାକାରର ଆତ୍ମୀକ ବିଭବକୁ । ସେ ପ୍ରାଚୀନ କଳା ପରମ୍ପରାକୁ ଖୋଜି ବାହାର କରିବା ପାଇଁ । ଓଡ଼ିଶାର ବିଭିନ୍ନ ପ୍ରାନ୍ତକୁ ଯାଇ ଉଦ୍ଧାର କରନ୍ତି ପ୍ରାଚୀନ ଆଦିବାସୀ ସୌରା ଚିତ୍ରକଳାକୁ ଏବଂ ଲେଖା ମାଧ୍ୟମରେ ତାକୁ ଲୋକଲୋଚନକୁ ନେଇ ଆସନ୍ତି । ଲୁପ୍ତ ପ୍ରାୟ ବିଭବକୁ ଆଗାମୀ ପୀଢ଼ି ପାଇଁ, କିପରି ସଂରକ୍ଷଣ କରାଯାଇ ପାରିବ ସେଇକଥା ଭାବି ସେ ଭାବ ବିଭୋର ହୋଇଉଠନ୍ତି । ସେହିପରି କଥିତ ଲୋକଭାଷାର କ୍ରମଶଃ ବିସ୍ମୟକର ବିଲୁପ୍ତିକୁ ପୁନର୍ଜାଗରିତ କରିବା ପାଇଁ ସେ ତାଙ୍କ ସାହିତ୍ୟ ପୃଷ୍ଠାରେ ତାହାର ସ୍ୱାକ୍ଷର ରଖିବାପାଇଁ ଅହରହ ଲେଖନୀ ଚାଳନା କରି ଚାଲିଛନ୍ତି । ତାଙ୍କର ଭାଷା, ଠାଣୀ, ଚାଲିଚଳନ ଦେଖିଲେ ତାଙ୍କୁ ସହଜରେ ଜଣେ ଦକ୍ଷିଣାଞ୍ଚଳ (ଗଞ୍ଜାମ)ର ପ୍ରତିନିଧିଭାବରେ ଗ୍ରହଣ କରିନେବ । ମାତ୍ର ତାଙ୍କର ଆଭିମୁଖ୍ୟ ଦେଖିଲେ ଜଣେ ନିଜ ଭ୍ରମକୁ ଦୂର କରିପାରିବ । ସେ ବିବାହ କରନ୍ତି ଓଡ଼ିଶାର ଉତ୍ତରାଞ୍ଚଳ ବାଲେଶ୍ୱରରେ, କର୍ମଭୂମି କରନ୍ତି ଓଡ଼ିଶାର ରାଜଧାନୀ ଭୁବନେଶ୍ୱରକୁ କିନ୍ତୁ ଚିନ୍ତା କରନ୍ତି ଓଡ଼ିଶାର ସଂସ୍କୃତି ଓ ସମୃଦ୍ଧିକୁ ନେଇ।

କଥା ପ୍ରସଙ୍ଗରେ ସେ ଥରେ କହୁଥିଲେ ବିଦେଶରେ ବାଲିଯାତ୍ରା ପ୍ରଦର୍ଶନୀ କରିବାର ଅବକାଶରେ ସେ କଟକର ଦୁର୍ଗାମେଢ଼, ଚା' ପିଇବା ପାଇଁ ମାଟିପାତ୍ର (ଖୁରୀକୁ) କୁ ମଧ୍ୟ ସଂଗ୍ରହ କରି ଜାହାଜରେ ନେଇଥିଲେ। ତାଙ୍କର ଲକ୍ଷ୍ୟଥିଲା ଓଡ଼ିଶାକୁ ବାହାରେ ଯଥାର୍ଥ ଭାବରେ ପରିଚିତ କରାଇବା । ସେ ଆମ ବିଭବକୁ ଗୁରୁତ୍ୱ ଦେଇଥିଲେ । ଆଧୁନିକତାକୁ ନୁହେଁ । କାରଣ ସେଥିରେ ଲୁଚି ରହିଛି ଆମର ଐତିହ୍ୟ ପରିଚିତି, ସେଥିପାଇଁ ସମ୍ବଲପୁରୀ ବାନ୍ଧ ଶାଢ଼ୀ, ଗଞ୍ଜାମର ପାଟ, ବାନ୍ଧ ବିଛଣା ଚାଦର ଇତ୍ୟାଦିକୁ ଉପହାର ମାଧ୍ୟମରେ ଦେବାକୁ ଭୁଲୁ ନଥିଲେ ଏବଂ ଏହା ବିଦେଶୀମାନଙ୍କ ଦ୍ୱାରା ବିଶେଷ ଭାବରେ ଆଦୃତ ହେଉଥିଲା ।

ଓଡ଼ିଶାର ଶିଳ୍ପୀମାନଙ୍କର ବିକାଶ ପାଇଁ ବିଭିନ୍ନ ଅନୁଷ୍ଠାନ ଗଢ଼ିବା, କଳା ପ୍ରଦର୍ଶନୀର ଆୟୋଜନ କରିବା, ସାମୟିକ ଭାବରେ ଶିଳ୍ପୀ କୁଳକୁ ଏକତ୍ରିତ କରିବା, ଯାହା ଥିଲା ତାଙ୍କର ଅଦମ୍ୟ ଭାବୋଚ୍ଛ୍ୱାସ, ତାହା ଏଯାବତ୍ ଅକ୍ଷୁର୍ଣ୍ଣ ରହିଛି । ତାଙ୍କ ଭଳି ଅନ୍ୟ କେହି ଜଣେ ଓଡ଼ିଆ ଶିଳ୍ପୀ ଓଡ଼ିଶା ପାଇଁ ଚିନ୍ତିତ ହେଉଥିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ ନାହିଁ । ତାଙ୍କର ବହୁ ଚର୍ଚ୍ଚିତ ପୁସ୍ତକ Let a thousand Flowers bloom ପୁସ୍ତକଟିକୁ ଅନୁଧ୍ୟାନ କଲେ ତାଙ୍କର ମାନସିକତାକୁ ସ୍ପଷ୍ଟ ଭାବରେ ଆକଳନ କରିହେବ ଏବଂ ଓଡ଼ିଶାର କଳା ଗୌରବକୁ ଆନ୍ତର୍ଜାତିକ ସ୍ତରରେ ପରିଚିତ କରାଇବାର ବିରଳ ଦୃଷ୍ଟାନ୍ତ ସେଥିରୁ ଅନୁଭବ କରିହେବ। ସେ ଯେ ଜଣେ ଅଦ୍ଭୁତ କରିତ୍‌କର୍ମା ସଂଗଠକ ଏହା ସ୍ୱୀକାର କରିବାରେ କୌଣସି ଦ୍ୱିଧା ରହିବା ଉଚିତ୍ ନୁହେଁ। ଷାଠିଏରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରି ସେ ନିଜ ମନୀଷାର ପରିଚୟ ଦେଇଛନ୍ତି ତଥା ଦୁଇଟି ବିଷୟରେ ଡକ୍ଟରେଟ୍ କରି ନିଜ ଗବେଷଣାର ଭୂମିକାକୁ ପ୍ରମାଣିତ କରିଛନ୍ତି, ଯାହା ଅନ୍ୟ କୌଣସି ଓଡ଼ିଆ ଶିଳ୍ପୀ ପାଇଁ କଳ୍ପନା କରିବା ଅସମ୍ଭବ।

ଚେକୋସ୍ଲୋଭାକିଆରେ ସେ ଥରେ ଗୋଟିଏ ସ୍କୁଲରେ ପିଲାମାନଙ୍କୁ ପଢ଼ାଉଥିବା କଥା କହିଥିଲେ। ମୁଁ ପଚାରିଥିଲି – ''ଆପଣଙ୍କୁ ତାଙ୍କର ଭାଷା ଜଣା ନାହିଁ । ଆପଣ ପଢ଼ାଇଲେ କେମିତି ?'' ସେ କହିଥିଲେ – 'ଚିତ୍ରର ଭାଷାଠାରୁ ଆଉ ବଳିଷ୍ଠ ଭାଷା କ'ଣ ଅଛି, ଯାହା ମାଧ୍ୟମରେ ସମଗ୍ର ବିଶ୍ୱ ସହିତ ସମ୍ବନ୍ଧ ସ୍ଥାପନ କରିହେବ ?' ସେଥିପାଇଁ ଭଗବାନ ବିଶ୍ୱବ୍ରହ୍ମାଣ୍ଡକୁ ଚିତ୍ରମୟ କରିଛନ୍ତି। ମୁଁ ସେଦିନ ପ୍ରକୃତରେ ଗୋଟିଏ ଅଜଣା ନୂଆ ତଥ୍ୟ ତାଙ୍କଠାରୁ ଶିକ୍ଷା କରିଥିଲି । ବାସ୍ତବରେ ଚିତ୍ରର ଚିତ୍ରଭାଷା ହିଁ ସବୁଠାରୁ ପୁରାତନଏବଂ ସହଜ ଭାବଗ୍ରାହୀ ।

ସେମିତି ସେ ଥରେ କହୁଥିଲେ – 'ମୋର ଜଣେ ଅନ୍ତରଙ୍ଗ ସ୍କୁଲ ସହପାଠୀ ଇଂଲଣ୍ଡରେ ଡାକ୍ତର ଅଛି। ବିରାଟ ପ୍ରାସାଦ ନିର୍ମାଣ କରି ଆଭିଜାତ୍ୟ ପୂର୍ଣ୍ଣ ଜୀବନ ଯାପନ କରୁଛି। ମୁଁ ତା'ର ଅତିଥି ହୋଇଥିଲି। ସେ ନିଜର ବଡ଼ିମା ଦେଖାଇବାକୁ ଯାଇ କହିଥିଲା – 'ତୁ କ'ଣ କରୁଛୁ?' ମୁଁ ସ୍ୱାଭାବିକ ଭାବରେ କହିଥିଲି– 'ମୁଁ ଜଣେ ଡ୍ରଇଁମାଷ୍ଟ୍ର ଅଛି ।' 'ସେ କହିଥିଲା ତୁ ଏଇଥିରେ କ'ଣ ଉନ୍ନତି କରିପାରିବୁ?' ମୁଁ ଉତ୍ତର ଦେଇଥିଲି – 'ହଁ ସେଇ ଡ୍ରଇଁ ମାଷ୍ଟ୍ର ଆଜି କଳା ପାଇଁ ବାରମ୍ବାର ପୃଥିବୀକୁ ପରିକ୍ରମା କରିପାରୁଛି।' ଡାକ୍ତର ବନ୍ଧୁ ନିଶ୍ଚୟ କଥାଟା ବୁଝିଯାଇଥିବେ।

ବାସ୍ତବରେ ଡକ୍ଟର ଦିନନାଥ ପାଠୀଙ୍କୁ ବୁଝିବାକୁ ହେଲେ, ତାଙ୍କର ଗଭୀରତାକୁ ମାପିବାକୁ ହେଲେ ଶାଠ ନୁହେଁ ବହୁପାଠୀ, ବିଦ୍ୱାନ, ଗବେଷକ, ସମ୍ବେଦନଶୀଳ ତଥା ସ୍ନେହୀ ହେବାକୁ ପଡ଼ିବ। ସେ ନିଜେ ଯେମିତି ଅଧ୍ୟବସାୟୀ, ନିଷ୍ଠାପର, ବହୁ ଶାସ୍ତ୍ରଦର୍ଶୀ ପଣ୍ଡିତ, କଳା ସମୀକ୍ଷକ, ସେମିତି ଜଣେ ଧୂଳି ଧୂସରିତ ପୃଥିବୀର ମହୁଆଳା ସୁଗନ୍ଧକୁ ମନଭରି ଆଘ୍ରାଣ କରୁଥିବା ଜଣେ ଦୂରଦର୍ଶୀ, ଦୁର୍ବାର ପଥିକ, ଯାହା ପାଖରେ କ୍ଳାନ୍ତିରହିତ, ସମୟ ପରାଜିତ, ଜୀବନ ଉଦ୍‌ଗ୍ରୀବ । ଓଡ଼ିଶା ତାଙ୍କ ଭଳି ଜଣେ ବରପୁତ୍ର ପାଇ ଧନ୍ୟ ହେବ ନାହିଁକି?

Digitized by srujanika@gmail.com

**ଯତୀନ୍ଦ୍ର କୁମାର ନାୟକ**

## ପ୍ରେରଣାର ଉତ୍ସ

ଦୁଇଟି କାରଣ ପାଇଁ, ମୋ ପାଇଁ ଡକ୍ଟର ଦିନନାଥ ପାଠୀଙ୍କର ସ୍ଥାନ ସାଂପ୍ରତିକ ଓଡ଼ିଶା ସଂସ୍କୃତିରେ ବହୁ ଉଚ୍ଚତର ଓ ଗୁରୁତ୍ୱପୂର୍ଣ୍ଣ ।

ପ୍ରଥମଟି ହେଲା ସେ ଓଡ଼ିଶାରେ ରହି, ଅନ୍ୟ କେଉଁଆଡ଼େ ଚାଲିଯିବା ପାଇଁ ବ୍ୟସ୍ତ ନହୋଇ ଏତେ କୃତିତ୍ୱ ହାସଲ କରିପାରିଛନ୍ତି । ଓଡ଼ିଶାରେ ରହି କିଛି କରି ହେବ ନାହିଁ ବୋଲି ଗୋଟିଏ ଧାରଣା ବହୁତ ଦିନ ତଳୁ ଦାନା ବାନ୍ଧି ଆସୁଥିଲା । ଏବେ ତାହା ବଦ୍ଧମୂଳ ହୋଇଗଲାଣି ବୋଲି ଲାଗୁଛି । ଏପରି ଏକ ଅବସ୍ଥାରେ ଆମେ ପହଞ୍ଚିଛେ ଯେ ଓଡ଼ିଶା ଛାଡ଼ି ଚାଲିଯିବା ଜୀବନର ସବୁଠୁ ବଡ଼ କୃତିତ୍ୱ ବୋଲି ଅନେକ ଲୋକ ଭାବିଲେଣି । ଏହିଭଳି ଏକ ପରିସ୍ଥିତିରେ ଯେଉଁ କେତେ ଜଣ ଓଡ଼ିଶାରେ ରହି ପ୍ରତିକୂଳ ପରିସ୍ଥିତିର ସାମନା କରି ଆଖିଦୃଶିଆ କିଛି କରି ଦେଖାଇ ପାରିଛନ୍ତି ସେମାନଙ୍କ ମଧ୍ୟରେ ଡକ୍ଟର ପାଠୀ ଜଣେ । ଜୀବନ ତାଙ୍କର ସଂଘର୍ଷମୟ । ନାଟକ ପାଇଁ ପରଦାରେ ଚିତ୍ର ଆଙ୍କି, ସଂସ୍କୃତ ଟୋଲ୍‌ରେ ଶିକ୍ଷକ ଭାବରେ କାମ କରି, ସାଇକେଲ୍‌ରେ ଚାଉଳବସ୍ତା ଦରମା ଆକାରରେ ବୋହି ଜୀବନ ଆରମ୍ଭ କରିଥିବା ଦିନନାଥ ଆଜି ଜଣେ ଜାତୀୟ, ଅନ୍ତର୍ଜାତୀୟ କ୍ଷେତ୍ରରେ ନାଁ କରିଥିବା କଳାକାର, କଳାର ଐତିହାସିକ ଓ ଲେଖକ । ଜାତୀୟ ଲଳିତ କଳା ଏକାଡେମୀର ସମ୍ପାଦକ ହେବାର ଫେଲୋସିପ୍ ଗୌରବ ତାଙ୍କୁ ମିଳିଛି ଓ ଜଓ୍ୱାହରଲାଲ୍ ନେହେରୁ ଫେଲୋସିପ୍ ପାଇଥିବା ଅଳ୍ପ କେତେ ଜଣ ବିଦ୍ୱାନ୍‌ଙ୍କ ଭିତରୁ ସେ ଜଣେ । ଆଲିସ୍ ବୋନର୍ ଇନ୍‌ଷ୍ଟିଚ୍ୟୁଟ୍‌ର ସେ ଡିରେକ୍ଟର ଓ ଅନ୍ତର୍ଜାତିକ ଖ୍ୟାତିସଂପନ୍ନ କଳା ଐତିହାସିକ ଏବର୍‌ହାର୍ଡ୍ ଫିସର୍‌ଙ୍କର ସହଯୋଗୀ ଭାବେ ଅନେକ ପୁସ୍ତକ ତାଙ୍କର ବିଦେଶର ବିଖ୍ୟାତ ପ୍ରକାଶନ ସଂସ୍ଥାଗୁଡ଼ିକ ଦ୍ୱାରା ପ୍ରକାଶିତ । ଏହାଛଡ଼ା ଭାରତ ଓ ଭାରତ ବାହାରେ ଅନେକ ସ୍ଥାନରେ ତାଙ୍କର କଳାକୃତିଗୁଡ଼ିକ ପ୍ରଦର୍ଶିତ ଓ ପ୍ରଶଂସିତ । କିନ୍ତୁ ଏତେ ସଫଳତା ଓ ଖ୍ୟାତି ହାସଲ କରିବା ପାଇଁ ତାଙ୍କୁ ଓଡ଼ିଶା ଛାଡ଼ି ଚାଲିଯିବାକୁ ପଡ଼ିନାହିଁ । ଏଇଠି କଠିନ ପରିଶ୍ରମ କରି ସେ ନିଜ ପାଇଁ ଓ ନିଜର ସଂସ୍କୃତି ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରି ପାରିଛନ୍ତି ଯେପରି ଏକ ସମୟରେ କରିଥିଲେ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ, ଡକ୍ଟର ମାୟାଧର ମାନସିଂ, ପରମାନନ୍ଦ ଆଚାର୍ଯ୍ୟ, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡକ୍ଟର ନଟବର ସାମନ୍ତରାୟ, ମନମୋହନ ଚୌଧୁରୀ, ଚକ୍ରଧର ମହାପାତ୍ରଙ୍କ ଭଳି ଅନେକ ନୀରବ, ଉପେକ୍ଷିତ ସାଧକ । ଏବେ କରିଚାଲିଛନ୍ତି ପ୍ରଫେସର ଗଗନେନ୍ଦ୍ର ନାଥ ଦାଶଙ୍କ ଭଳି ବିଦ୍ୱାନ୍ । ସେମାନଙ୍କୁ ଆମେ ଉପଯୁକ୍ତ ସମ୍ମାନ ବା ଗବେଷକର ସୀକୃତି ଦେଇ ନଥାଇପାରୁ କିନ୍ତୁ ଆମର ଅସ୍ମିତା ତାଙ୍କରି ସ୍ନେହ, ଅଶ୍ରୁ ଓ ଶୋଣିତରେ ତିଆରି । ଓଡ଼ିଶାର କଳା ଓ ସଂସ୍କୃତିର ଗଭୀର ଅଧ୍ୟୟନ କରି ତା'ର ବିଭିନ୍ନ ଦିଗ ଉନ୍ମୋଚନ କରି ଦେଶ ଓ ବିଦେଶର ପାଠକମାନଙ୍କୁ ତା' ସହ ପରିଚିତ କରାଇବାରେ ଡକ୍ଟର ପାଠୀ ଏକ ଅନନ୍ୟ ଭୂମିକା ଗ୍ରହଣ କରିଛନ୍ତି ।

ଡକ୍ଟର ପାଠୀଙ୍କ ପ୍ରତି ମୋର ଗଭୀର ସମ୍ମାନବୋଧର ଅନ୍ୟତମ କାରଣ ହେଲା ତାଙ୍କର ଆତ୍ମଜୀବନୀ ଲେଖିବାର ସ୍ୱତନ୍ତ୍ର ଶୈଳୀ । ସାଧାରଣତଃ ନିଜର ସଂଘର୍ଷମୟ ଅତୀତ ବର୍ଣ୍ଣନା କରିବାବେଳେ ଅଧିକାଂଶ ଲେଖକ ନିଜ ପ୍ରତି ଦୟା ଦେଖାନ୍ତି ଓ ଅନ୍ୟମାନଙ୍କ ପ୍ରତି ଅସହିଷ୍ଣୁତା ଓ କ୍ରୋଧ ପ୍ରକାଶ କରିଥାନ୍ତି । ସେମାନେ ନିଜେ ବହୁତ ନିରୀହ ଓ ପ୍ରତିଭାବାନ୍ ଓ ପରିସ୍ଥିତି ଓ ଦୁଷ୍ଟ ଲୋକେ ତାଙ୍କୁ ପଛରେ ପକାଇ ଦେଲେ ବୋଲି କହିଥାନ୍ତି । ଏକ ଦୁଃଖ ଅପମାନ ଜର୍ଜରିତ ଅତୀତକୁ ପଛରେ ପକାଇ ଖ୍ୟାତି ଓ ସଫଳତାର ଆଲୋକିତ ପୃଥିବୀରେ ପହଞ୍ଚିଯାଇଥିବାର ପରମ ସନ୍ତୋଷ ଏମାନଙ୍କ ଆତ୍ମଜୀବନୀରେ ପ୍ରତିଫଳିତ ହୋଇଥାଏ । ଡକ୍ଟର ପାଠୀଙ୍କର ଚାରୋଟି ଆତ୍ମଜୀବନୀମୂଳକ ପୁସ୍ତକରେ କିନ୍ତୁ ଏହି ମନୋଭାବର ଲେଶମାତ୍ର ଚିହ୍ନ ଦେଖିବାକୁ ମିଳେ ନାହିଁ ।

Digitized by srujanika@gmail.com

ଅତୀତ ତାଙ୍କ ପାଇଁ ଏକ ଦୟନୀୟ ଜୀବନର କାହାଣୀ ନୁହେଁ, ତାଙ୍କ ବର୍ତ୍ତମାନ ଓ ଭବିଷ୍ୟତର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏ ଅତୀତ ପ୍ରତି ଦୃଷ୍ଟିକୋଣ ବି ଡକ୍ଟର ପାଠୀଙ୍କ କ୍ଷେତ୍ରରେ ସତନ୍ତ୍ର । ନିଜର ଦୋଷ ଲୁଚାଇବାର କୌଣସି ପ୍ରଚେଷ୍ଟା ନକରି ବରଂ ସେ ନିଜକୁ ନିଜ ବ୍ୟଙ୍ଗର ଶରବ୍ୟ କରିପାରନ୍ତି । ଅନ୍ୟମାନଙ୍କୁ ଆକ୍ଷେପ କଲାବେଳେ ନିଜକୁ ଛାଡ଼ନ୍ତି ନାହିଁ । ତେଣୁ ତାଙ୍କ ଆତ୍ମଜୀବନୀଗୁଡ଼ିକ ପଠନୀୟ ଓ ସ୍ମରଣୀୟ । କେବଳ ବ୍ୟକ୍ତିଜୀବନ ନୁହେଁ, ଗୋଟିଏ ଗୋଟିଏ କାଳଖଣ୍ଡ ସେଗୁଡ଼ିକରେ ଆଲୋକିତ ।

ଏଇ ଓଡ଼ିଶାରେ ରହି, ଉଦାସୀନତା ଓ ଉପେକ୍ଷା ଦ୍ୱାରା ବୀତସ୍ପୃହ ନହୋଇ ଯେଉଁ କେତେଜଣ ନୂଆ କିଛି କରିବା ପାଇଁ ଚାହାଁନ୍ତି ଡକ୍ଟର ପାଠୀ ସେମାନଙ୍କ ପାଇଁ ନିଶ୍ଚୟ ପ୍ରେରଣାର ଉତ୍ସ ହୋଇ ରହିବେ ।



Digitized by srujanika@gmail.com







ନୂଆଦିଲ୍ଲୀର ବ୍ରିଟିଶ୍ କାଉନ୍‌ସିଲ ଗ୍ୟାଲେରୀରେ ବ୍ରିଟିଶ୍ ହାଇକମିଶନର୍ ରିଚାର୍ଡ଼ ଷ୍ଟାକର୍ ଓ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ଗହଣରେ ଗୋଟିଏ ଅନ୍ତରଙ୍ଗ ମୁହୂର୍ତ୍ତରେ, ୧୯୯୬

ନୂଆଦିଲ୍ଲୀ ଇଣ୍ଡିଆ ଇଣ୍ଟର୍ ନ୍ୟାସନାଲ୍ ସେଣ୍ଟରର କମିଟି ରୁମ୍‌ରେ ଇନ୍ଦିରା ଗାନ୍ଧି ମୁକ୍ତ ବିଶ୍ୱବିଦ୍ୟାଳୟର ପ୍ରଫେସର୍ ପାଣ୍ଡବ ନାୟକ ଏବଂ ଲଳିତ କଳା ଏକାଡ଼େମୀର ସଭ୍ୟ ପ୍ରଫେସର୍ ଚିନ୍ମୟ ମେହେଟା, ବିରେଶ୍ୱର ଭଟ୍ଟାଚାର୍ଯ୍ୟ, ଅମିତ କୁମାର ମୁଖୋପାଧ୍ୟାୟ ପ୍ରଭୃତିଙ୍କ ଗହଣରେ ଡିସ୍‌ଟେନ୍ସ୍ ଏଜୁକେଶନ୍ ପ୍ରୋଗ୍ରାମରେ କଳାଶିକ୍ଷାକୁ ଅନ୍ତର୍ଭୁକ୍ତ କରିବା ନେଇ ଆଲୋଚନାରେ ଅଂଶଗ୍ରହଣ, ୧୯୯୬

କାରଲ୍ ଖଣ୍ଡାଲାୱାଲାଙ୍କ ଅଭିନନ୍ଦନ ଗ୍ରନ୍ଥ **ଇଣ୍ଡିଆନ୍ ପେଣ୍ଟିଙ୍ଗ୍** ଲୋକାର୍ପଣ ଉତ୍ସବରେ ବ୍ରଜେନ୍ଦ୍ରନାଥ ଗୋସ୍ୱାମୀ, ରାମନିବାସ ମିର୍ଦ୍ଧା, କରଣ ସିଂହ, ଖଣ୍ଡାଲାୱାଲା ଓ ଆନନ୍ଦ ଦେବଙ୍କ ସହ, ୧୯୯୫

Digitized by srujanika@gmail.com







ବାଙ୍ଗାଲୋର ସହରରେ ରାଷ୍ଟ୍ରୀୟ କଳାମେଳା ଉପଲକ୍ଷେ ବାହାରିଥିବା କଳାଯାତ୍ରା ପଟୁଆରର ପୁରୋଭାଗରେ ରାମହରି ଜେନା ତଥା ଭାରତର ବିଭିନ୍ନ ପ୍ରାନ୍ତରୁ ଆସିଥିବା ଶିଳ୍ପୀଙ୍କ ଗହଣରେ । ଶିଳ୍ପୀଙ୍କ ଏଭଳି ପଟୁଆର ଲଳିତ କଳା ଏକାଡ଼େମୀ ଇତିହାସରେ ପ୍ରଥମ, ୧୯୯୫

ଓଁ ପ୍ରକାଶ ଜୈନଙ୍କ ଶିଳ୍ପଗ୍ରାମ ପ୍ରାଙ୍ଗଣରେ କପିଳା ବାତ୍ସାୟନଙ୍କୁ ଲଳିତକଳା ଏକାଡ଼େମୀ ପକ୍ଷରୁ ରତ୍ନ ସଦସ୍ୟ ପ୍ରଦାନ ଉତ୍ସବରେ ଡକ୍ଟର ବାତ୍ସାୟନ, ଭବେଶ ଚନ୍ଦ୍ର ସାନ୍ୟାଲ ଓ ରାମନିବାସ ମିର୍ଦ୍ଧାଙ୍କ ଗହଣରେ, ୧୯୯୬

ଅଲ୍ ଇଣ୍ଡିଆ ଫାଇନ୍ ଆର୍ଟ୍ ଓ କ୍ରାଫ୍ଟସ୍ ସୋସାଇଟିର ପ୍ରଦର୍ଶନୀ ପରିକ୍ରମା ସାରି ଦିଲ୍ଲୀର ଲେଫଟ୍‌ନାଣ୍ଟ ଗଭର୍ଣ୍ଣର ଏଚ.ଏଲ୍ କପୁର ଦିନନାଥ ପାଠୀଙ୍କ ରାଷ୍ଟ୍ରପତି ରଜତ ଫଳକ ପୁରସ୍କାର ପାଇଥିବା ଶ୍ରୀରାଧା ଛବିକୁ ଅବଲୋକନ କରୁଛନ୍ତି । ପାଖରେ ରଜତ ଫଳକ ସହ ଶିଳ୍ପୀ, ୧୯୮୮

Digitized by srujanika@gmail.com







ବମ୍ବେର ଜାହାଙ୍ଗୀର ଆର୍ଟ ଗ୍ୟାଲେରୀରେ 'ଓ୍ୱା'ର ଚିତ୍ର ପ୍ରଦର୍ଶନୀ ଓଣ୍ଡୀୟାନ୍‌କୁ ଉପଭୋଗ କରୁଛନ୍ତି ସରୟୂ ଦୋଷୀ । ଗହଣରେ ଅଛନ୍ତି ଡି.ଏଚ୍. ରାଓ, ରାମହରି ଜେନା, କାଶୀନାଥ ଜେନା ଓ ଦିନନାଥ ପାଠୀ, ୧୯୯୬

ରିଟ୍‌ବର୍ଗ ମ୍ୟୁଜିୟମ୍‌ର ନିର୍ଦ୍ଦେଶକଙ୍କ କୋଠରୀରେ ଏବରହାର୍ଡ୍ ଫିସର୍‌ଙ୍କ ସହ, ୧୯୭୭

'ଓ୍ୱା'ର ଉଦ୍‌ଘାଟନୀ ଚିତ୍ର ପ୍ରଦର୍ଶନୀ ଅବସରରେ ନନ୍ଦିନୀ ଶତପଥୀ, ଅନନ୍ତ ମହାପାତ୍ର ଓ କାଶୀନାଥ ଜେନାଙ୍କ ଗହଣରେ, ୧୯୭୩

Digitized by srujanika@gmail.com









ରାଜ୍ୟ ଅତିଥି ଭବନରେ 'ଓ୍ଵା'ର ଶିଳ୍ପୀଙ୍କ ଗହଣରେ ବିଦେଶାଗତ ଶିଳ୍ପୀ (ବାମରୁ) ଡି. ନାରାୟଣ ରାଓ, ଅସୀମ ବସୁ, ପ୍ରଭାତ ମିଶ୍ର, ଏସ୍. ଜୟନ୍ତୀ, ବି. ଦଣ୍ଡପାଣି, ଅନନ୍ତ ପଣ୍ଡା, ଦିନନାଥ ପାଠୀ ଓ ବିମଳ ଭଟ୍ଟାଚାର୍ଯ୍ୟ, ୧୯୭୫

ସର୍ବଭାରତୀୟ ପ୍ରିଣ୍ଟମେକର୍ସ ଶିବିରରେ ବିଜୟ ଲକ୍ଷ୍ମୀ ଦେବୀ ଓ ବିପିନ ବିହାରୀ ସାହୁଙ୍କ ଗହଣରେ, ୧୯୯୬

ବହିଚର୍ଚ୍ଚା ଲୋକାର୍ପଣ ଉତ୍ସବରେ ଯତୀନ୍ଦ୍ର କୁମାର ନାୟକ, ଗଗନେନ୍ଦ୍ର ନାଥ ଦାଶ, ଜାପାନୀ, ଦେବ ପଟ୍ଟନାୟକ, ଗଣେଶ୍ଵର ମିଶ୍ର, ବିଭୂପ୍ରସନ୍ନ ଦାସଙ୍କ ଗହଣରେ, ୨୦୧୦

Digitized by srujanika@gmail.com

## ସୌଭାଗ୍ୟ ପାଠୀ

### ଚିତ୍ରଶାଳାରେ ଦିନନାଥ

> Pathy is a renaissance man - a poet, painter, art historian, novelist, curator, scholar and educator. His cultural roots in his native Orissa are very deep. His knowledge of painting there in all venues - classical, popular and tribal - is comprehensive. His creative vision is profoundly influenced by his lifetime immersion in the traditional arts and culture of Orissa. x x x His is a storytelling art, the work of a man whose imagination was shaped by a living mythology.
>
> Elinor W. Gadon 2001
>
> California Institute of Integral Studies

ଦିନନାଥଙ୍କ ଶିଳ୍ପାୟନର ବ୍ୟାପ୍ତି ଖୁବ୍ ବ୍ୟାପକ । ସେହି ବ୍ୟାପ୍ତି କେବଳ କାଳର ନୁହେଁ, ଧାରାର, ଘଟଣାୟନର ଓ ସଚେତନତାର । ଆଜି ଦିନକୁ ହିସାବ କଲେ ତାହା ପଞ୍ଚାବନରୁ ଷାଠିଏ ବର୍ଷର ଓଡ଼ିଶାର ଆଧୁନିକ ଓ ସାଂପ୍ରତିକ କଳାର ଇତିହାସ ହେବ । ସେ ଗଂଜାମ ଜିଲ୍ଲା ଚିତ୍ର ଶିକ୍ଷକ ସଂଘର ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀରେ ପ୍ରଥମେ ପୁରସ୍କାର ପାଉଛନ୍ତି ୧୯୫୬ ମସିହାରେ ଓପେକ୍ ଜଳରଙ୍ଗର ଚିତ୍ର **ହରପାର୍ବତୀ**ରେ । ତା ପର ପର ଲଗାତାର ଭାବେ ତାଙ୍କର ୧୯୫୭ରେ **ପଣ୍ଡିତ ଜବାହର ଲାଲ ନେହେରୁଙ୍କ** ଓପେକ୍ ରଙ୍ଗର ଆଲେଖ୍ୟ ଓ ୧୯୫୮ରେ **ଅଧ୍ୟୟନରତ ବାଳକର** ପେନ୍‌ସିଲ୍ ଚିତ୍ର ପୁରସ୍କୃତ ହେଉଛି । ୧୯୫୮ରେ ଷୋହଳ ବର୍ଷ ବୟସରେ ଚାରୁକଳା ମନ୍ଦିର ଆନୁକୂଲ୍ୟରେ ତାଙ୍କର ପ୍ରଥମ ଏକକ ଚିତ୍ର ପ୍ରଦର୍ଶନୀ ଦିଗପହଣ୍ଡିଠାରେ କୃଷିମେଳା ପରିସରରେ ଅନୁଷ୍ଠିତ ହୋଇଥିଲା । ଏଭଳି ଏକ ତଥ୍ୟଭିତ୍ତିକ ଆକଳନରୁ ଦେଖିଲେ ଆମେ ପଞ୍ଚାବନ ବର୍ଷର ପଞ୍ଜୀକୃତ କଳା ଇତିହାସ ସୁରୁଖୁରୁରେ ପାଇ ଯାଉଛେ । ଏକଥା ଭୁଲିଗଲେ ହେବନି ଯେ ଖୁବ୍ କମ୍ ବୟସରୁ ସେ ନିଜ ଭାଇନା ଲୋକନାଥ ପାଠୀଙ୍କ ଷ୍ଟୁଡ଼ିଓ ଚାରୁକଳା ମନ୍ଦିରରେ ଜୁନିଅର୍ ଆର୍ଟିଷ୍ଟ ଭାବେ ନିଜର ଶିଳ୍ପୀ ଜୀବନ ଆରମ୍ଭ କରିଛନ୍ତି । ଥିଏଟର୍ ଗ୍ରୁପ୍ ପାଇଁ ପରଦା ଚିତ୍ରଣ (theatre curtain painting), ବାରବ୍ରତ ଓ ଉତ୍ସବମଉତ୍ସବ ପାଇଁ କାନ୍ଥଚିତ୍ର (mural painting), ପ୍ରହ୍ଲାଦ ଓ ରାମ ନାଟକର ମୁଖା ନିର୍ମାଣ (mask making) ସହିତ ଥିଏଟର୍ ପାଇଁ କାଚରେ ହାତଲେଖା ସ୍ଲାଇଡ୍‌ସ୍ (casting) ପ୍ରଭୃତି ଶିଳ୍ପ କାର୍ଯ୍ୟରେ ନିଜକୁ ନିୟୋଜିତ କରିଛନ୍ତି । **ଏସବୁ ଦୃଷ୍ଟିରୁ ବିଚାର କଲେ ନିଶ୍ଚିତ ଭାବେ ତାଙ୍କର ଶିଳ୍ପାୟନର ଅବଧି ଷାଠିଏ ବର୍ଷ ଯାଏ ବ୍ୟାପିଯିବ । ଏହି ଷାଠିଏ ବର୍ଷର ବ୍ୟାପ୍ତି ବା ପଞ୍ଜୀକୃତ ପଚାଶ ପଞ୍ଚାବନ ବର୍ଷ କେବଳ ବ୍ୟକ୍ତିଗତ ଘଟଣା ବହୁଳ କଥନିକା ନୁହେଁ । ଏହା ମଧ୍ୟ ଓଡ଼ିଶାର କଳା ଇତିହାସରେ ଆଧୁନିକ କଳାର ଅଭ୍ୟୁଦୟରେ ଉଲ୍ଲେଖନୀୟ ପଚାଶଟି ବର୍ଷ ।** କଳା ସଂଗଠନକୁ ବାଦଦେଇ କେବଳ ଚିତ୍ରଶୈଳୀର ଅନୁଶୀଳନ କଲେ ଏହି ପଚାଶ ବର୍ଷ ମଧ୍ୟରେ ଉପନିବେଶୀୟ କଳାରୁ ଆରମ୍ଭକରି ପ୍ରାଚ୍ୟ ଓ ପାଶ୍ଚାତ୍ୟର ମଧୁର ମିଶ୍ରଣରେ ସିନ୍ଥେଟିକ୍ ଶୈଳୀ (synthetic style), ଭାରତୀୟ ଆଧୁନିକତାର ଆରମ୍ଭ, ପାଶ୍ଚାତ୍ୟ କଳାର ବିଭିନ୍ନ ଧାରା (isms)ର ପ୍ରୟୋଗ, ଭାରତୀୟ ତଥା ଓଡ଼ିଆ କଳାର ଉତ୍ସ ସନ୍ଧାନ ଓ ଶେଷରେ ଉତ୍ତର-ଆଧୁନିକ ଓ ସାଂପ୍ରତିକ (contemporary)କଳାର ପରିଚର୍ଚ୍ଚାରେ ପହଞ୍ଚି ପାରିଛନ୍ତି । ଓଡ଼ିଶାର କଳା-ଇତିହାସର ଅଧ୍ୟୟନରେ ମଧ ଏସବୁ ଶୈଳୀଗତ ପର୍ଯ୍ୟାୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ମୁଣ୍ଡମରେଇ ପେଣ୍ଠର ତାଳପତ୍ର ପୋଥି ଚିତ୍ରକର ରଘୁନାଥ ପୃଷ୍ଟି ବା ଧରାକୋଟ ଜଗନ୍ନାଥ ମନ୍ଦିରର ଭିତ୍ତିଚିତ୍ର ଶିଳ୍ପୀ କେଶବ ମହାରଣାଙ୍କ ଚିତ୍ରଠାରୁ ଆଜିର ସାଂପ୍ରତିକ କାଳଯାଏଁ ଘଟିଥିବା ବିଭିନ୍ନ ଧାରାର ପ୍ରତିଫଳନ ଦିନନାଥଙ୍କ ଚିତ୍ର ମଧ୍ୟରେ ପାଇହୁଏ ।

ଦିନନାଥ ନିଜକଳା ସମୀକ୍ଷା (Let a Thousand Flowers Bloom ପୁସ୍ତକ ଦ୍ରଷ୍ଟବ୍ୟ) ରେ ନିଜକୁ ତୃତୀୟ ପିଢ଼ିର ଶିଳ୍ପୀ ବୋଲି ଅଭିହିତ କରିଛନ୍ତି । ପ୍ରଥମ ପିଢ଼ିରେ ଶରତଚନ୍ଦ୍ର ଦେବ, ଗୋପାଳ ଚରଣ କାନୁନ୍‌ଗୋ, ବିପିନ ବିହାରୀ ଚୌଧୁରୀ, ଉପେନ୍ଦ୍ର ମହାରଥୀ ଓ ମୁରଲୀଧର ଟାଲି ପ୍ରଭୃତି ଶିଳ୍ପୀ, ଦ୍ୱିତୀୟ ପିଢ଼ିରେ ଅଜିତ କେଶରୀ ରାୟ, ଅନନ୍ତ ପଣ୍ଡା, ରଘୁ ସିଂହ ଇତ୍ୟାଦି ଓ ତୃତୀୟ ପିଢ଼ିରେ ପ୍ରଫୁଲ୍ଲ ମହାନ୍ତି, ଯତୀନ ଦାସ, ଶିବ

Digitized by srujanika@gmail.com

ପାଣିଗ୍ରାହୀ, ଚନ୍ଦ୍ରଶେଖର ରାଓ, କାଶୀନାଥ ଜେନା, ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ, ଡି.ଏନ୍. ରାଓଙ୍କ ସାଙ୍ଗରେ ଦିନନାଥ। ତା ପରବର୍ତ୍ତୀ ଦଳର ଶିଳ୍ପୀମାନେ ହେଲେ ଦିନନାଥଙ୍କ ଅନେକ ଛାତ୍ର ଛାତ୍ରୀ ଓ ସେମାନଙ୍କ ସମସାମୟିକ ଯୁବ ଶିଳ୍ପୀ । ଏହି ଦଳର ପୁରୋଭାଗରେ ଅଛନ୍ତି ରାମହରି ଜେନା । ରାମହରି ଜେନା ଯଦିଓ ତୃତୀୟ ପିଢ଼ିର କଳାକାରଙ୍କ ଦଳରେ ସାମିଲ ହୋଇ ଓ୍ୱା (Working Artists Association of Orissa) ମାଧ୍ୟମରେ ଦେଶ ବିଦେଶରେ ଚିତ୍ର ପ୍ରଦର୍ଶନୀ ଓ ଚିତ୍ର ପ୍ରକାଶନ ମାନ କରିଛନ୍ତି ତଥାପି ତାଙ୍କୁ ଚତୁର୍ଥ ପିଢ଼ିର ଶୀର୍ଷରେ ଅବସ୍ଥାପିତ କରିବା ଯଥାର୍ଥ ହେବ। ତାଙ୍କର ସମସାମୟିକ ହେଲେ ଅଦ୍ୱୈତ ପ୍ରସାଦ ଗଡ଼ନାୟକ, ଜଗନ୍ନାଥ ପଣ୍ଡା, ସୁଧାଂଶୁ ଭୂଷଣ ସୂତାର, ପ୍ରଫୁଲ୍ଲ ଦାଶ, ତପନ ଦାଶ, ବଳଦେବ ମହାରଥୀ, ଜୟନ୍ତ ଦାସ, ଗଜେନ୍ଦ୍ର ପାଢ଼ୀ, ଅମର ଜେନା, ସୁବ୍ରତ କୁମାର ମଲ୍ଲିକ, ଅରୁଣ କୁମାର ଜେନା, ବିଷ୍ଣୁ ପ୍ରସାଦ ପଟ୍ଟନାୟକ, ବୀରେନ୍ଦ୍ର ପାଣି, ଶୋଭନ କୁମାର, ଅଞ୍ଜନ କୁମାର ସାହୁ ଓ ଦିଲ୍ଲୀପ କୁମାର ତ୍ରିପାଠୀ ପ୍ରଭୃତି ।

ଚତୁର୍ଥ ପିଢ଼ିରେ ରାମହରିଙ୍କ ଅବସ୍ଥା ଯାହା, ତୃତୀୟ ପିଢ଼ିରେ ଦିନନାଥଙ୍କ ଅବସ୍ଥା ବି ତଦ୍ରୂପ। ସେ ଅଜିତ କେଶରୀ ଓ ଅନନ୍ତ ପଣ୍ଡାଙ୍କ ଛାତ୍ର ହେଲେ ମଧ, ଚିତ୍ର ସର୍ଜନା କ୍ଷେତ୍ରରେ ତାଙ୍କ ସହଯୋଗୀ। ତେଣୁ ଦିନନାଥଙ୍କ ତୈଳଚିତ୍ର **ଫସଲ ଅମଳର ଗୀତ** ଯେତେବେଳେ କଲିକତା ଫାଇନ୍ ଆର୍ଟ୍ ଏକାଡ଼େମୀର ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀରେ ୧୯୬୩ ମସିହାରେ ଓଡ଼ିଶାରୁ ପ୍ରଥମଥର କରି ପୁରସ୍କୃତ ହେଲା ସେତେବେଳେ ତାହା ପ୍ରଥମ ପିଢ଼ି ଓ ଦ୍ୱିତୀୟ ପିଢ଼ିକୁ ସମଭାବରେ ବିସ୍ମୟରେ ଭରିଦେଇଥିଲା ଏଇଥିପାଇଁ ଯେ ଓଡ଼ିଶାର ଆଧୁନିକ କଳାରେ ସଂଗଠିତ ପ୍ରଥମ ପ୍ରୟାସ ସର୍ବଭାରତୀୟ ମାନ୍ୟତା ଲାଭ କଲା। ତୈଳରଙ୍ଗର ଚିତ୍ରଟି ଘନବାଦର ଛନ୍ଦୋମୟତାରେ ଓ ତା'ର ପ୍ରଲୁବ୍ଧ ସାଙ୍ଗୀତିକ ବଳୟ ମଧରେ ରୈଖିକତା ରକ୍ଷାକରି ପ୍ରକାଶ ପାଇଛି। ଚିତ୍ରଟିକୁ ଦେଖିଲେ ମନେହେବ ତାହା ସତେ ଯେଭଳି ଭୂମିରୁ ଆକାଶକୁ ଉର୍ଦ୍ଧ୍ୱଗାମୀ। ଏହାହିଁ ବୋଧହୁଏ ସାଙ୍ଗୀତିକତାର ସାଫଲ୍ୟ। ମାଟିଆ (Burnt Sienna), ମଳିନ ହଳଦୀ (Yellow Ocher) ଏବଂ ଧୂସର ବର୍ଣ୍ଣର ସମ୍ମୋହନ ଭିତରେ କୃଷକ ଦମ୍ପତ୍ତି ସୁନା ଫସଲ ଅମଳର ଆନନ୍ଦରେ ବିଭୋର। ଆନନ୍ଦର ଉଚ୍ଛ୍ୱାସକୁ ଧ୍ୱନିଯୁକ୍ତ କରିବା ପାଇଁ କୃଷକ ବଂଶୀରେ ସୁର ସାଧୁଛି। ଏଥିରେ ଶିଳ୍ପୀଙ୍କ କରଣି (spatula) ଚଳେଇବାର ଦକ୍ଷତା ଓ ଦୃଢ଼ତା ଆପେ ଆପେ ପ୍ରକାଶିତ ହୋଇଯାଏ। ୧୯୬୩ ମସିହାରେ ଅଙ୍କିତ ଏଭଳି ଗୋଟିଏ ଉଦାମ ଭଙ୍ଗୀର ଓ ପ୍ରାଣୋଚ୍ଛ୍ୱାସରେ ଭରପୂର ଚିତ୍ର ଓଡ଼ିଶାର ଆଧୁନିକ ଚିତ୍ରକଳା ପ୍ରେକ୍ଷାପଟରେ ସମ୍ଭବ ହୋଇପାରିଥିଲା ତାହା ହିଁ ଆଶ୍ୱାସନାର ବିଷୟ। ଦିନନାଥଙ୍କ ଏହି **ଫସଲ ଅମଳର ଗୀତ** ଚିତ୍ରଟିର ଦୁଇବର୍ଷ ଆଗରୁ ଅଙ୍କିତ **ଯୁଗଳ** (Couple) ଚିତ୍ରର କଠିନ ଘନବାଦୀୟ ରୈଖିକତାକୁ ଭାଙ୍ଗିଦେଇ ଏକ ଦୋଳାୟିତ ଛନ୍ଦର ବାଙ୍ମୟତାରେ ପ୍ରକାଶ କରିଦେଇଛି। ଘନବାଦ (cubism), ପ୍ରକାଶବାଦ (expressionism) ଓ ଆଭାସବାଦ (impressionism)ର ପାରମ୍ପରିକତାକୁ ଭାଙ୍ଗିଦେଇ ଚିତ୍ରକଳା କ୍ଷେତ୍ରରେ ଏକ ନବଉନ୍ମେଷ ଆଣିଦେଇଛି ।

ଦିନନାଥ ଘନବାଦକୁ ପାଥେୟକରି ଷାଠିଏ ଦଶକରେ ବହୁଚିତ୍ର ଅଙ୍କନ କରିଛନ୍ତି । ଘନବାଦର କେବଳ ଅନ୍ଧାନୁକରଣ ନୁହେଁ । ବରଂ ଘନବାଦର ସମସ୍ତ ସମ୍ଭାବ୍ୟ ପ୍ରକ୍ରିୟାକୁ ପ୍ରୟୋଗରେ ସାମିଲ କରିଦେଇ ସେ ନୂତନ ଧରଣର ବହୁଚିତ୍ର ନିର୍ମାଣ କରିଛନ୍ତି । ତନ୍ମଧ୍ୟରୁ ଉଲ୍ଲେଖନୀୟ ଚିତ୍ରଗୁଡ଼ିକ ହେଲା **ଅନ୍ତରଙ୍ଗ ଆଳାପ** (Gossip) **ବୌଦ୍ଧଭିକ୍ଷୁ** (Buddhist Monks) **ମାଛ ଧରାଳି** (Catch) **ଆଲିଙ୍ଗନ** (Embrace) **ଶାୟିତ ରୂପ** (Reclining Figures), **ନିଷିଦ୍ଧ ଫଳ** (Forbidden Fruit) ଏବଂ **ଯମଜ** (Twins) । **ଫସଲ ଅମଳର ଗୀତ**ର ଅର୍ଦ୍ଧ ବର୍ତ୍ତୁଳାକାର ବା ରୋମାନ୍ ଆର୍ଚ୍ଚର ଆଭାସ ରଖିଥିବା ଫର୍ମଗୁଡ଼ିକ ପୁଣିଥରେ ଏହି ଚିତ୍ରସମୂହରେ ପ୍ରତିଫଳିତ। ଏହି ଚିତ୍ରଗୁଡ଼ିକରେ ମଧ ଭୂମିରୁ ଆକାଶକୁ ଉର୍ଦ୍ଧ୍ୱଗାମୀ ହେବାର ଆସ୍ପୃହା ସହଜରେ ବାରିହେଇଯାଏ । ବୌଦ୍ଧଭିକ୍ଷୁ ଚିତ୍ରର ରୂପ ମୌଳିକତା (form-elementality) ଏବଂ ବର୍ଣ୍ଣିଳ ତଥା ରୈଖିକ ସଂଯମ ବୌଦ୍ଧଧର୍ମର ମଧମପନ୍ଥାର ଦ୍ୟୋତନା ଦିଏ । ସେହି ଏକାଭଳି ରୂପ ସଂଯମର ପରାକାଷ୍ଠା ହେଲା ଯମଜ ଚିତ୍ର । ଏହା କ୍ୟୁବିକ ଶୈଳୀର ବ୍ୟଞ୍ଜନାତ୍ମକ ପରିପ୍ରକାଶ ହୋଇଥିଲେ ମଧ ଏଥିରେ ବ୍ୟବହୃତ ତ୍ୱରିତ କରଣି ଚାଳନା ଭିତରେ ଶିଳ୍ପୀ ମାନସର ପ୍ରତିକ୍ରିୟା ସହଜରେ ବାରିହେଇ ପଡ଼େ। ତାଙ୍କର ଚିତ୍ରଗୁଡ଼ିକୁ ନିରୀକ୍ଷଣ କଲେ ସ୍ପଷ୍ଟ ହେଇଯାଏ ଯେ ଦିନନାଥ ଚିତ୍ର ପ୍ରକରଣରେ ଖୁବ୍ ଦ୍ରୁତ ଓ ଦୃଢ଼। ଯୁବ ମାନସର ଅସ୍ଥିରତା ଓ ଆଗକୁ ପ୍ରସରିଯିବାର ଆକାଂକ୍ଷା ତାଙ୍କ ତୂଳୀ ସଂଘାତରୁ ବାରି ହୋଇଯାଏ । ଯମଜ ଚିତ୍ରର ସାଙ୍କେତିକତା ଚିତ୍ର ରଚନାର ମହତ୍ତ୍ୱ ପ୍ରତିପାଦନ କରେ। ଗୋଟିଏ ସିଧା ସଳଖ ଭାବେ ବଢ଼ିଯାଇଥିବା ଗଛର ଗଣ୍ଡି ଉପରେ ନିର୍ଭରଶୀଳ ଅନ୍ୟଗୋଟିଏ ଗଛ

Digitized by srujanika@gmail.com

ଗଣ୍ଡିର ବସ୍ତୁମୟତା (texture)କୁ ସାର୍ଥକ ଭାବରେ ପ୍ରତିଫଳିତ କରାଯାଇଛି । ଗଣ୍ଡିଦୁଇଟିର ଊର୍ଦ୍ଧ୍ୱଭାଗରେ ମୁଖମଣ୍ଡଳର ଆଭାସ ଦୁଇଟି ଶାଖାର ମଧ୍ୟ ସଙ୍କେତ ଦେବାପରି ମନେ ହେଉଛି। ଗଛଗଣ୍ଡିକୁ ମଣିଷର ଦେହ ବୋଲି ଧାରଣା କଲେ ଏହି ଶାଖା ଦୁଇଟି ତା'ର ଉତ୍ତୋଳିତ ବାହୁ ବୋଲି ମଧ୍ୟ ଜଣାପଡୁଛି। ଏସବୁ ରୂପସମ୍ଭାର କିନ୍ତୁ ପ୍ରଚ୍ଛନ୍ନ ଓ ଅପ୍ରତ୍ୟକ୍ଷ। ଯୁକ୍ତି ଛଳରେ କୁହାଯାଇପାରେ ଏହି ଚିତ୍ରଟି ରୂପାନ୍ୱିତ (figurative), ନିରୂପ (abstract) ନୁହେଁ । ଯମଜ ଚିତ୍ରଟି ଦିନନାଥଙ୍କର **ଶିଳ୍ପକଳ୍ପନା** (ceneeptualization) ର ସଫଳ କୃତି। ଯଥାର୍ଥ ଭାବେ ଏହି ଚିତ୍ରଟି ୧୯୬୬ ମସିହାରେ କଲିକତା ଏକାଡେମୀ ଅଫ୍ ଫାଇନ୍ ଆର୍ଟ୍‌ର ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀରେ ପୁରସ୍କୃତ ହୋଇଛି । ମାଛ ଧରାଳି ଚିତ୍ରଟିରେ କୌଣିକ ରେଖା, ଲହରାୟିତ ରେଖା ଓ ବର୍ତ୍ତୁଳ ରୂପର ସମାହାର ଚିତ୍ରଟିର ସ୍ୱଚ୍ଛନ୍ଦ ବିକାଶରେ ସାହାଯ୍ୟ କରିଛି । ଅଲ୍‌ଟ୍ରାମରିନ୍ ନୀଳ ଓ ଉଜ୍ଜ୍ୱଳ ହଳଦୀ ଚିତ୍ରଟିରେ ସୂର୍ଯ୍ୟସ୍ନାତ ଭାବକୁ ଆରୋପ କରିଛି । ଘନବାଦର ନିର୍ଦ୍ଦିଷ୍ଟ ବଳୟ ଭିତରେ ଚିତ୍ରଟି ଯଦିଓ ପ୍ରତିଫଳିତ ନୁହେଁ, ତଥାପି ଘନବାଦର ସ୍ପର୍ଶ ଏହାକୁ ରସାଣିତ କରିପାରିଛି ।

**ଦିନନାଥଙ୍କ ଚିତ୍ର ରଚନାର ପରବର୍ତ୍ତୀ ବିଷୟକ୍ରମ ମାନବୀୟ ସ୍ନେହାନୁବନ୍ଧନର ବିପୁଳ ଆୟତନ ମଧ୍ୟରେ ପ୍ରତିଫଳିତ। ସଂପର୍କର ବଳୟ ହର୍ଷ ଓ ବିଷାଦ ମଧ୍ୟରେ ସଦା ବିସୟାଦିତ।** ୧୯୬୨ ମସିହାରେ କଠୋର ଜ୍ୟାମିତିକ ରୈଖିକତାର ପ୍ରୟୋଗରେ ଅଙ୍କିତ **ଯୁଗଳ** (Couple), ବିଭିନ୍ନ ଭାବ ବିନ୍ୟାସରେ, ବିଭିନ୍ନ ବର୍ଣ୍ଣଯୋଜନାରେ ଓ ବିଭିନ୍ନ ଶୈଳୀରେ ପରବର୍ତ୍ତୀ କାଳଖଣ୍ଡରେ ପ୍ରକାଶିତ ହୋଇଛି। ସେହି ଯୁଗଳ ବେଳେ ବେଳେ ପ୍ରେମିକ ପ୍ରେମିକା ଭାବରେ ନିବିଡ଼ ଆଲିଙ୍ଗନ ଭିତରେ, ଆଉବେଳେ ସଂସାରର ବୋଝ ସମ୍ଭାଳୁଥିବା ଦାୟିତ୍ୱ ସଂପନ୍ନ ସ୍ୱାମୀ-ସ୍ତ୍ରୀ ଭାବରେ, ପୁଣି କେତେ ବେଳେ ସଂସାର ଯୁଦ୍ଧରେ ପରାହତ ଦୁଇଟି ବିଷଣ୍ଣ ସତ୍ତାଭାବରେ ଚିତ୍ରିତ। **ଦିନନାଥ ନାରୀ ପୁରୁଷ ଯୁଗଳର ପ୍ରାୟ ପଚିଶି ତିରିଶି ଗୋଟି ଚିତ୍ର ଅଙ୍କନ କରିଥିବେ । ଏହି ସବୁଚିତ୍ର ଗୋଟିଏ ସମୟରେ ଅଙ୍କିତ ନୁହେଁ । ପରିବାର ଓ ପାରିବାରିକ ସଂପର୍କ ଓ ସଂଘର୍ଷ ତାଙ୍କ ସୃଜନ କଳାକୁ ବାରମ୍ବାର ପ୍ରଚୋଦିତ କରିଛି।** ଏକମାତ୍ର କନ୍ୟାର ଅକାଳ ବିୟୋଗରେ ଶିଳ୍ପୀ ଅସମ୍ଭବ ଭାବେ ବିଷାଦଗ୍ରସ୍ତ ଓ ବିଚଳିତ, ସତେ ଯିମିତି ପାରିବାରିକ ସମ୍ପର୍କର ସେତୁ ଭୁଜୁଡ଼ିଯାଉଛି ଏବଂ ସେ ହୋଇଯାଇଛନ୍ତି ଅସହାୟ ଓ ତାଙ୍କ ଆଶା ଓ ଭରସାର ତରୀ ଦିଗଭ୍ରଷ୍ଟ। ଏହି ସମୟରେ ଅଙ୍କିତ ଅନେକ ଛବି ମଧ୍ୟରୁ ଦୁଇଟି, ଯଥା **ମୃତବ୍ୟକ୍ତି ପାଇଁ ପୁଷ୍ପଗୁଚ୍ଛ** (Bouquet for the Dead) ଓ **ସଂସାରର ବୋଝ** (Burden), Couple ପର୍ଯ୍ୟାୟର ଚିତ୍ର ହେଲେ ମଧ୍ୟ ତାହା କେତେ ପରିମାଣରେ ନିରାଶା ଜର୍ଜରିତ ତାହା ମୃତବ୍ୟକ୍ତିର ଅଭାବନୀୟ ପରିବେଶକୁ ଦେଖିଲେ ସ୍ପଷ୍ଟ ହେଇଯାଏ। ସଂସାର ବନ୍ଧନରେ ନିଜ ସ୍ଥିତିର ଯଥାର୍ଥତାକୁ ଅସ୍ୱୀକାର କରି ମୃତବ୍ୟକ୍ତିଟି ଅଙ୍କିତ। ଘନନୀଳ (Prussian Blue) ଓ ଘନ ଧୂସର ନୀଳ (Indigo)ର ସମ୍ମିଶ୍ରଣରେ ତୈଳବିହୀନ ଶୁଷ୍କ ତୂଳୀର ସଂଯତ ଚାଳନାରେ ଅଙ୍କିତ ଏହି ମୃତ ବ୍ୟକ୍ତିଟି ଯିଶୁଖ୍ରୀଷ୍ଟଙ୍କୁ କ୍ରୁସରୁ ଓହ୍ଲେଇ ଆଣି ମେରୀ ଓ ଅନ୍ୟାନ୍ୟ ପାରିଷଦବର୍ଗ ବିଳାପ କରୁଥିବା ବେଳର ଭାବାବେଶ ସହିତ ସାମଞ୍ଜସ୍ୟ ରକ୍ଷାକରେ । ଏଭଳି ଏକ ତୁଳନାତ୍ମକ ଚିତ୍ର ପ୍ରଦାନ କରି ଚିତ୍ରକରଙ୍କୁ ଯିଶୁଖ୍ରୀଷ୍ଟଙ୍କ ସହିତ ସମାନ କରିଦେବାର ଆସ୍ପର୍ଦ୍ଧା ରଖୁନାହିଁ। ମୁଁ କେବଳ ଏତିକି କହିଦେବା ପାଇଁ ଚାହେଁ ଯେ ସାମାଜିକ ଅବହେଳା ଓ ଭୁଲ୍ ବୁଝାମଣା କେବଳ ଯିଶୁଖ୍ରୀଷ୍ଟଙ୍କ ଜୀବନରେ ଶ୍ରେୟ ନୁହେଁ, ତାହା ଏକାଭଳି ସବୁ ନିଷ୍ପେଷିତ ମଣିଷର ଭାଗ୍ୟଲେଖା । ଏହି ଚିତ୍ରରେ ଅଙ୍କିତ ପଳାୟନ କରୁଥିବା ଗୋଟିଏ ବାଘ ଚିତ୍ରର ପ୍ରତୀକାତ୍ମକତା ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ପଳାୟନପନ୍ଥୀ ବାଘ ମାନବଜୀବନର ସଂଚାଳକ ହେଇଯାଏ। ଯେଉଁଠି ସମାଜର ନୀତିନିଷ୍ଠତା ତାର ଯୁକ୍ତିନିଷ୍ଠ ଭାବନା (reasoning)କୁ ପରାହତ କରେ, ସେଠାରେ ହୁଏତ ମୃତ୍ୟୁର ଶୀତଳ ପରଶ ହିଁ କାମ୍ୟ ହେଇଯାଏ । ମଣିଷ, ସିଏ ଶିଳ୍ପୀ ହେଉ ବା କବି କିମ୍ବା ଲେଖକ ହେଉ, ନିଜ ରଚନା ଭିତରେ ବାରମ୍ବାର ଆତ୍ମହତ୍ୟା କରେ । ସମାଜରେ ସ୍ୱୀକୃତ ପୌରୁଷର ଦମ୍ଭ ଉଚ୍ଛୁଡ଼ି ପଡ଼େ। ଏହି ତୈଳଚିତ୍ରରେ ଏଭଳି ହିଁ ଘଟିଛି । ଅନ୍ୟ ଚିତ୍ର **ସଂସାରର ବୋଝ** ଅବଶ୍ୟ **ମୃତବ୍ୟକ୍ତି ପାଇଁ ପୁଷ୍ପଗୁଚ୍ଛ** ଚିତ୍ର ଆଗରୁ ଅଙ୍କିତ ଯେଉଁଥିରେ ଶିଳ୍ପୀ ସଂସାରର ବୋଝ ଯେତେ ଜଞ୍ଜାଳମୟ ହେଲେ ମଧ୍ୟ ତାକୁ ସମ୍ଭାଳି ନେବାରେ ପ୍ରତିଶ୍ରୁତିବଦ୍ଧ ଯାହାକି ପରବର୍ତ୍ତୀ ଚିତ୍ରରେ ଭୁଶୁଡ଼ି ପଡ଼ିଛି । ଏହି ଚିତ୍ରଗୁଡ଼ିକର contrast ଭାବେ ନୂଆଦିଲ୍ଲୀର ଜାତୀୟ ଆଧୁନିକ କଳା ସଂଗ୍ରହାଳୟ (National Gallery of Modern Art)ରେ ସଂରକ୍ଷିତ **ସୁଖୀ ପରିବାର** ଚିତ୍ର ବିଚାରକୁ ଆସେ । ଏହି ଚିତ୍ରଟି ସିଲ୍କ୍ କନା ଉପରେ ଜଳରଙ୍ଗ(ink) ରେ ଅଙ୍କିତ। ଏଥିରେ ବାଇଗଣୀ, ଗାଢ଼ ଆତୁରଙ୍ଗ, ସୁବର୍ଣ୍ଣ ହଳଦି (Chrome Yellow) ଏବଂ କଳାରଙ୍ଗର କାଳି (Indian ink)କୁ ବେପରୁଆ ଭାବେ ବ୍ୟବହାର କରାଯାଇ ସେମାନଙ୍କ ସ୍ୱାଭାବିକ ସଂଚରଣ କ୍ଷମତା ଉପରେ ଛବିଟିର ଭବିଷ୍ୟକୁ ଛାଡ଼ି ଦିଆଯାଇଛି । ଚିତ୍ରଟିରେ ମା', ମା'

Digitized by srujanika@gmail.com

କୋଳରେ ଦୁଗ୍ଧପାନ କରୁଥିବା ଶିଶୁ ଓ ପାଖରେ ଆନନ୍ଦରେ ଅଭିଭୂତ ହୋଇ ପୌରୁଷର ଜୟଗାନ କରୁଥିବା ପିତା । ସୁଖୀ ପରିବାର ଚିତ୍ରରେ ମାତୃତ୍ୱର ସାଫଲ୍ୟରେ ବିହ୍ୱଳିତ ମାତାର ମୁହଁରେ ହସ ଓ ପରିତୃପ୍ତିର ସଂକେତ ନିଜେ ଅନୁଭବ କରି ନ ଥିଲେ ଚିତ୍ରରେ ପ୍ରକାଶ କରିହେବନି । ଶିଶୁର ଅନୁଚ୍ଚାରିତ ଓ ଅର୍ଦ୍ଧୋଚ୍ଚାରିତ ଭାଷାଭଙ୍ଗି ଏହି ଚିତ୍ରରେ ରେଖାଗୁଡ଼ିକ ସାଙ୍କେତିକ (calligraphic) । **କିନ୍ତୁ ରେଖାର ପରିବ୍ୟାପ୍ତିରେ ସେହି ଅର୍ଦ୍ଧୋଚ୍ଚାରିତ ସନ୍ଦର୍ଭ ମଧ୍ୟରୁ ଦେହର ବର୍ତ୍ତୁଳତା ଓ ତାରି ଭିତରେ କୁଣ୍ଠାୟିତ କାମନାର ବକ୍ରଭାବ ସ୍ପଷ୍ଟ ହୋଇଯାଏ । ଏହି ଜଳରଙ୍ଗର ଚିତ୍ରଟି (ଏବେ ଚିତ୍ର ଓ ସ୍କେଚ୍‌ର ତଥାକଥିତ ଭିନ୍ନତା ହଟିଗଲାଣି) ସାଂସାରିକ ଗଦ୍ୟମୟତାରୁ କାବ୍ୟିକ ପର୍ଯ୍ୟାୟକୁ ଉନ୍ନିତ ହୋଇଯାଇ ଧ୍ୱନି ଯୁକ୍ତ ହୋଇଯାଇଛି । ଉଶ୍ୱାସପଣ ଏହି ଚିତ୍ରର ବିଶେଷତ୍ୱ ।** ଏହି ଚିତ୍ର ସାଙ୍ଗରେ ଆଉ ଗୋଟିଏ ଯୁଗଳ ପର୍ଯ୍ୟାୟର ଚିତ୍ରକୁ ମଧ୍ୟ ବିଚାରକୁ ନିଆଯାଇ ପାରେ ଯେଉଁଥିରେ ନାରୀ ଯୁକ୍ତିନିଷ୍ଠତା ଖୋଜୁଥିବା ବେଳେ ପୁରୁଷଟି ଉଡ଼ିଯିବାର ଉପକ୍ରମ କରୁଛି ।

ଜଳ ରଙ୍ଗରେ ଅଙ୍କିତ ଏହି **ସୁଖୀ ପରିବାର** ସହିତ କେନ୍ଦ୍ର ଲଳିତକଳା ଏକାଡ଼େମୀର ସଂଗ୍ରହରେ ଗଚ୍ଛିତ ଅନ୍ୟ ଏକ ଯୁଗଳ ଚିତ୍ରକୁ ବିଚାର ପର୍ଯ୍ୟାୟକୁ ଅଣାଯାଇ ପାରେ । ଏହି ଚିତ୍ରଟି ମଠା କନା ଉପରେ ଅଙ୍କିତ। ଏଥିରେ ରେଖାବିନ୍ୟାସ ଅଦ୍ଭୁତ ଭାବରେ କ୍ଳୃପ୍ତ ଓ ତାହା ସହିତ ସମାନ୍ତରାଳ ଭାବେ ବର୍ଣ୍ଣର ରୂଢ଼ି ପ୍ରୟୋଗ । ରେଖା ଗୁଡ଼ିକ ଅତ୍ୟନ୍ତ ସାଙ୍କେତିକ, ସଂଯତ ଓ ରୂପଯୋଜନା ବ୍ୟଞ୍ଜନାତ୍ମକ । ଠିଆ ହେବାର ଭଙ୍ଗିରୁ ଓ ସ୍ତନ ଯୁଗଳର ଅସ୍ପଷ୍ଟ ଅବତାରଣାରୁ ନାରୀପଣ ଯାହା ଯେତିକି ବାରିହୁଏ । ଏହି ଚିତ୍ରରେ ଶିଳ୍ପୀଙ୍କର ବିବରଣ ବିମୁଖତା ଓ ନିରୂପତା ଆଡ଼କୁ ପ୍ରସରିବାର ମାନସିକତା ସ୍ପଷ୍ଟ ହେଇଯାଏ। ଏହାକୁ ମୌଳିକ ପ୍ରକାଶ ବୋଲି ଧରିନେଇ ଏହାରି ପରିପ୍ରେକ୍ଷୀରେ ଅଙ୍କିତ ଅନ୍ୟ କିଛିଚିତ୍ରକୁ ଅନୁଶୀଳନ କଲେ ଶିଳ୍ପ ଯାତ୍ରାରେ ଶୈଳ୍ପିକ ବ୍ୟକ୍ତିତ୍ୱର ଅଭ୍ୟୁଦୟ ଓ ଶୈଳୀର ବିବିଧ ପ୍ରୟୋଗ ମଧ୍ୟରେ ଶିଳ୍ପମାନସର ବର୍ଣ୍ଣିଳ ବିଭବ ଆପେ ଆପେ ଧରା ପଡ଼ିଯାଏ । ଚିତ୍ରର ନାମକରଣ ଯୁଗଳରୁ ଉତୁରି ପଡ଼ି ପରିବାର, ସୁଖୀ ପରିବାର ଏଭଳି କି ଯମଜ ଚିତ୍ରରେ  ମଧ୍ୟ ସମାହିତ ହୋଇ ପଡ଼େ ।

ଦିଲ୍ଲୀର Escort Heart Care Centreରେ ବିଶିଷ୍ଟ ଚଳଚ୍ଚିତ୍ର ଅଭିନେତା ରାଜକପୁରଙ୍କ କନ୍ୟା ଋତୁ ନନ୍ଦାଙ୍କ ସଂଗ୍ରହରେ ଥିବା ଦିନନାଥଙ୍କ ପରିବାର ତୈଳଚିତ୍ରଟି ବର୍ଣ୍ଣପ୍ରୟୋଗ ଦୃଷ୍ଟିରୁ ଅତ୍ୟନ୍ତ ସୀମିତ। ଘନଧୂସର ନୀଳ (Indigo), ଘନନୀଳ ଏବଂ ଆକାଶୀନୀଳ (Cobalt) ଓ କଳାର ତୈଳ ବିହୀନ ଶୁଷ୍କତୂଳୀର ପ୍ରୟୋଗରେ (dry application) ଚିତ୍ରଟିର ଆବହାୱା ଖୁବ୍ ସଂଯତ ଓ ବଳିଷ୍ଠ ମନେ ହୁଏ। ଶିଳ୍ପୀ ବୋଧହୁଏ କହିବା ପାଇଁ ଚାହାନ୍ତି ଯେ ପାରିବାରିକ ସୌହାର୍ଦ୍ଦ୍ୟ ଓ ସ୍ନେହାନୁବନ୍ଧନ ପାଇଁ ବର୍ଣ୍ଣ ପ୍ରାବଲ୍ୟର ବା ବର୍ଣ୍ଣ ଆଡ଼ମ୍ବରର ଆବଶ୍ୟକତା ଲୋଡ଼ା ହୁଏ ନାହିଁ । କିନ୍ତୁ ଏହି ଛବିର ପରବର୍ତ୍ତୀ ପର୍ଯ୍ୟାୟରେ ଶିଳ୍ପୀଙ୍କ ପରିବାର ଚିତ୍ରଗୁଡ଼ିକ ଖୁବ୍ ବର୍ଣ୍ଣାଢ଼୍ୟ ହୋଇପଡ଼ିଛି । ଅବଶ୍ୟ ବର୍ଣ୍ଣବିଭୋରତା ପାରିବାରିକ ସମ୍ପର୍କର ଅନ୍ୟଏକ ବିଦଗ୍ଧ ମୁହୂର୍ତ୍ତ ହୋଇପାରେ । ଏହି ଚିତ୍ରରେ ପ୍ରୟୋଗ କରାଯାଇଥିବା ନାଲି ରଙ୍ଗର ପ୍ୟାଚ୍ (patch) ଖୁବ୍ ସମ୍ଭବତଃ ସମ୍ପର୍କର ଅନିଶ୍ଚିତତାକୁ ନେଇ ଅଙ୍କିତ ବା ଏହା ଆତଙ୍କର ଚିହ୍ନ ପାଇଁ ମଧ୍ୟ ଉଦ୍ଦିଷ୍ଟ ।

**ଯୁଗଳ ବା ପରିବାର ପର୍ଯ୍ୟାୟର ଚିତ୍ରଗୁଡ଼ିକୁ ମୁଖ୍ୟତଃ ଚାରୋଟି ଶୈଳୀରେ ବିଭକ୍ତ କରାଯାଇ ପାରେ। ଏହି ଛବି ସମୂହର ଅବଧି ହେଉଛି ପ୍ରାୟ ତିରିଶିବର୍ଷ, ୧୯୬୨ ମସିହା ଖଲ୍ଲିକୋଟ ଛାତ୍ରାବସ୍ଥାରୁ ବି. କେ. ଚାରୁକଳା ମହାବିଦ୍ୟାଳୟରେ ଅଧ୍ୟକ୍ଷ ଥିବା ବେଳଯାଏଁ (୧୯୯୦ ମସିହା ଯାଏଁ ବୋଲି ଅନୁମାନ କରାଯାଇପାରେ)। ଏହି ଚାରୋଟି ଶୈଳୀ ହେଲା : ୧) ରୈଖିକ ଘନବାଦର ଚିତ୍ର (linear cubism) (୨) ପ୍ରକାଶବାଦ (expressionism) ଶୈଳୀର ଚିତ୍ର (୩) ବିଶ୍ଳେଷଣାତ୍ମକ ଘନବାଦ (analytical cubism)ର ଚିତ୍ର ଏବଂ (୪) ରୈଖିକ ପ୍ରତୀକାତ୍ମକତା (linear symbolism)ର ଜଳରଙ୍ଗର ଚିତ୍ର।** ଶୈଳୀର ଏହି ଚାରୋଟି ପର୍ଯ୍ୟାୟକୁ ସମୟକ୍ରମାନ୍ୱୟରେ ବିଭକ୍ତୀକରଣ କରାଯାଇ ନପାରେ ଯଦିଓ ରୈଖିକ ଘନବାଦର ପର୍ଯ୍ୟାୟ ଏହାର ଆରମ୍ଭ ଓ ରୈଖିକ ପ୍ରତୀକାତ୍ମକତା ଏହାର ଆପାତତଃ ଶେଷ ନିର୍ଯ୍ୟାସ। ଅବଶ୍ୟ ଏହି ବିଷୟାଶ୍ରୟୀ ଚିତ୍ରର ଭବିଷ୍ୟତରେ ପୁନଃ ପ୍ରକାଶ ଯେ ନ ଘଟିବ ଏହା ଆକଳନ କରିହେବନି । ପ୍ରଥମ ପର୍ଯ୍ୟାୟର ଚିତ୍ରଗୁଡ଼ିକରେ ରୂପ ଓ ବର୍ଣ୍ଣ ବିନ୍ୟାସର ଧରାବନ୍ଧା ସ୍ଥିର ରଚନା ଭିତରେ ଅପରିପକ୍ୱତାର ଆଭାସ ପାଇହୁଏ । (ମୂଳତଃ୧୯୬୨ ମସିହାର ଯୁଗଳ ଚିତ୍ର ଦ୍ରଷ୍ଟବ୍ୟ) ଅବଶ୍ୟ ସବୁକାଳରେ ଓ ସବୁଠାରେ ଘନବାଦର ଆରମ୍ଭ ହିଁ ଏଭଳି । ଶିଳ୍ପୀ ବୋଧହୁଏ ଏଭଳି ରୂପବିନ୍ୟାସର ସୀମିତତାରେ ସଚେତନ ହୋଇ ଫେରିଆସିଛନ୍ତି

Digitized by srujanika@gmail.com

ପ୍ରକାଶବାଦ ପର୍ଯ୍ୟାୟକୁ ଯେଉଁ ଶୈଳୀରେ ତୂଳୀ ଓ କରଣୀ ଚାଳନାର ସ୍ୱାଧୀନତା ତାଙ୍କୁ ଦମ୍ଭ ପ୍ରଦାନ କରିଛି । ଏହି ଶୈଳୀର ଚିତ୍ରଭିତରେ ନାରୀ ଓ ପୁରୁଷର ବଳିଷ୍ଠ ଅଙ୍ଗସୌଷ୍ଠବ ଯେଭଳି ସତ୍ୟନିଷ୍ଠ ଭାବରେ ପ୍ରଦର୍ଶିତ ସେଥିରୁ ଅନୁମେୟ ଯେ ଶିଳ୍ପୀ ମଣିଷ ଶରୀର ଗଠନ (human anatomy) ସଂପର୍କରେ କେବଳ ସଚେତନ ନୁହନ୍ତି, ତାର ପ୍ରୟୋଗରେ ମଧ୍ୟ ସିଦ୍ଧହସ୍ତ। ଏହି ଚିତ୍ରରେ ପ୍ରୟୋଗ ବର୍ଣ୍ଣ କେବଳ ମାଟିଆ (Burnt Sienna), ନୀଳ (Ultramarine), କଳା ଓ ଧଳା ମଧ୍ୟରେ ସୀମିତ ହେଉଥିଲେ ମଧ୍ୟ ଚିତ୍ରସର୍ଜନା ବେଳେ ତୂଳୀରୁ ସ୍ୱତଃ ନିର୍ଗତ ଯୁଗ୍ମ ଓ ମିଶ୍ର ବର୍ଣ୍ଣର ପ୍ରୟୋଗରେ ଚିତ୍ରଗୁଡ଼ିକ ଖୁବ୍ ରୋଚକ ଲାଗେ । ଶିଳ୍ପୀଙ୍କ ପକ୍ଷେ ଏହି ଶୈଳୀଟି ଖୁବ୍ ସ୍ୱାଭାବିକ ମନେ ହୁଏ । ସେ ଯେତେବେଳେ ସ୍ୱଚ୍ଛନ୍ଦ ଭାବରେ କୌଣସି ଚିତ୍ର କରିବାକୁ ଚାହିଁଛନ୍ତି ଏହି ପ୍ରକାଶବାଦ ଶୈଳୀଟିକୁ ହିଁ ଆପଣାର ଭାବେ ପ୍ରୟୋଗ କରିଛନ୍ତି। ଗୋଟିଏ ସମୟରେ ବେଗ ହିଁ ଉନ୍ନତିର ଲକ୍ଷଣ ବୋଲି ଗ୍ରହଣୀୟ ହୋଇଥିଲା । ବର୍ତ୍ତମାନ ଯାଏଁ ଏହି ଧାରଣାର ଅନ୍ତ ହୋଇନାହିଁ । ଦିନନାଥଙ୍କ ଚିତ୍ର କେବଳ ନୁହେଁ, ନିଜ ଜୀବନ ବଞ୍ଚିବା ପ୍ରଣାଳୀରେ ମଧ୍ୟ ଏଭଳି ଭାବନାଟିଏ ବଳବତ୍ତର ହୋଇ ରହିଆସିଛି । ଅବଶ୍ୟ ପରବର୍ତ୍ତୀ କାଳରେ Moving Arrow ପ୍ରଦର୍ଶନୀରେ ସ୍ଥାନିତ ଚିତ୍ରର ଦର୍ଶନରେ ଏହି ଆଭିମୁଖ୍ୟର ପରିବର୍ତ୍ତନ ଘଟିଛି ଓ ସେ ଶେଷରେ ଘୋଷଣା କରିଛନ୍ତି ସେ Moving Arrow does not move. (ବେଗବାନ ତୀର ଗତିହୀନ)

ତାଙ୍କର ତୃତୀୟ ଶୈଳୀ ବିଶ୍ଳେଷଣାତ୍ମକ ଘନବାଦ ସ୍ୱଚ୍ଛନ୍ଦଭାବେ ଆଙ୍କି ହେଉଯାଉଥିବା ଚିତ୍ରଗୁଡ଼ିକୁ ବିଭିନ୍ନ ରେଖାବିନ୍ୟାସ ଭିତରେ ଛନ୍ଦାୟିତ କରିଦିଏ । ସ୍ୱଭାବତଃ ଏହି ଚିତ୍ରଗୁଡ଼ିକର ବର୍ଣ୍ଣବିଭା ଲକ୍ଷଣୀୟ। ମନେହୁଏ ମୌଳିକ ଘନନାଦର ସମୀମିତତାରୁ ଉତୁରି ଯିବାପାଇଁ ସେ ଏହି ବିଶ୍ଳେଷଣାତ୍ମକ ଘବନାଦର ଆଶ୍ରା ନେଇଛନ୍ତି । ଏହି ପର୍ଯ୍ୟାୟର ଚିତ୍ରଗୁଡ଼ିକ ହେଲା **ପରିବା ବିକାଳି** (Vegetable Sellers) **ମାଛ ଧରାଳି** (Catch) **ରାଣୀ** (Queen) ଓ **ଶୃଙ୍ଗାର** (Sringara.) ।

ଶିଳ୍ପୀଙ୍କ ଚତୁର୍ଥଶୈଳୀର ରୈଖିକ ପ୍ରତୀକାତ୍ମକତା ପ୍ରାଚ୍ୟ ପରଂପରାର ଏକ ବଳିଷ୍ଠ ପ୍ରକାଶ, ଯେଉଁଥିରେ ରେଖାବିନ୍ୟାସ ଓ ତା'ର ଅର୍ଥପୂର୍ଣ୍ଣ ଭାବବିମ୍ବ ଚିତ୍ରକୁ ତାଙ୍କ ଅନ୍ୟସମସ୍ତ ରଚନାଠାରୁ ସ୍ୱତନ୍ତ୍ର କରିଦିଏ । ଭାରତ, ଚୀନ ଓ ଜାପାନର ଚିତ୍ରକଳାରେ ବ୍ୟବହୃତ ରେଖାର ଶୁଦ୍ଧତା ଓ ସଂଯମକୁ ପାଥେୟ କରି ଶିଳ୍ପୀ ନିଜର ଗୋଟିଏ ସ୍ୱତନ୍ତ୍ର ଧାରା ସୃଷ୍ଟି କରିବାରେ ସକ୍ଷମ ହୋଇପାରିଛନ୍ତି । ସିଲ୍‌କ୍ କନାକୁ ବୋର୍ଡ୍ ଉପରେ ଟାଣି ଧରିଲେ ତାହା ଷ୍ଟ୍ରେଚର୍‌ରେ କାନ୍‌ଭାସ୍ ଭିଡ଼ିଲା ଭଳି ଭିଡ଼ି ହେଇଯାଏ ଓ ଗୋଟିଏ ଚଉଡ଼ା ଭୂମି (surface) ଯୋଗାଇ ଦିଏ । ଏହି ଚିତ୍ରର ସବୁଠାରୁ କଷ୍ଟକର ପର୍ଯ୍ୟାୟ ହେଲା ଏହାର ରେଖାଙ୍କନ। କାରଣ ତୂଳୀର ମାତ୍ର ଗୋଟିଏ ସଂଘାତରେ ରେଖାକୁ ନ୍ୟାସ କରିବାକୁ ହୁଏ। ଥରେ ବାଟ ହୁଡ଼ିଲେ ସମଗ୍ର ଚିତ୍ରଟି ନଷ୍ଟ ହୋଇଯିବାର ଆଶଙ୍କା ଥାଏ । ଏହାକୁ ଓଡ଼ିଶୀ ଲେଖନକାର କଳାର ନିର୍ଯ୍ୟାସ କୁହାଯାଇପାରେ । ଏଣୁ ଏଭଳି ବ୍ୟବସ୍ଥାରେ ଅସମ୍ଭବ ଭାବେ ସତର୍କ ନ ରହିଲେ ଚିତ୍ରରଚନାରେ ଅଗ୍ରସର ହେବାର ଆଶା କମ୍ ହେଇଯାଏ । ରେଖାବିନ୍ୟାସ ଶେଷ ହେଲାପରେ କାନଭାସ୍‌ର ଆବଶ୍ୟକୀୟ ଅଞ୍ଚଳଗୁଡ଼ିକୁ ପରିଷ୍କାର ପାଣିରେ ଓଦା କରି ଦିଆଯାଏ । ଏଭଳି କରିବାର ଉଦ୍ଦେଶ୍ୟ ହେଲା ଯେ ଜଳରଙ୍ଗ ସିଲ୍‌କ୍ କନାର ଶିଳ୍ପୀ ଚାହୁଁଥିବା ଅଞ୍ଚଳକୁ ହିଁ ଭେଦିବ ଓ ଅବଲୀଳାକ୍ରମେ ଆର୍ଦ୍ରତାର ଆନୁପାତିକ ପରିମାଣ ଅନୁସାରେ କନାକୁ ତିନ୍ତାଇ ଆଗକୁ ପ୍ରସାରିତ ହେବ। ଏଭଳି ପ୍ରଣାଳୀରେ ଶିଳ୍ପୀ ଗୋଟିଏ ବର୍ଣ୍ଣର ବିଭିନ୍ନ ସାନ୍ଦ୍ରତା ଆପେ ଆପେ ପାଇଯାଏ । ଏହି ବର୍ଣ୍ଣସାନ୍ଦ୍ରତା (tonal variation) ରେଖାଙ୍କନ ମଧ୍ୟରେ ତ୍ରୈମାତ୍ରିକତା(modulation) ଭରିଦିଏ। ଓଡ଼ିଶାର ଆଧୁନିକ କଳାଭ୍ୟାସ ପରିପ୍ରେକ୍ଷୀରେ ଏଭଳି ଶୈଳୀ ନୂଆ ମନେ ହେଉଥିଲେ ମଧ୍ୟ ସର୍ବଭାରତୀୟ ଚିତ୍ରକଳା କ୍ଷେତ୍ରରେ କିଛି ଶିଳ୍ପୀ ଏହି ଧରଣର ଚିତ୍ର କରିଛନ୍ତି । ଏ ସଂକ୍ରାନ୍ତରେ ସବୁଠାରୁ ଉଲ୍ଲେଖନୀୟ ହେଲା ଭାରତବର୍ଷର ବିଶିଷ୍ଟ ଭାସ୍କର ରାମକିଙ୍କର ବେଜ୍‌ଙ୍କ ଜଳରଙ୍ଗର ଚିତ୍ର ବା ସ୍କେଚ୍ । ଅଂଗରାଗ ଜର୍ଣ୍ଣାଲ୍‌ର ନବମ ବସନ୍ତ ସଂଖ୍ୟା ୨୦୧୦ରେ ରାମକିଙ୍କରଙ୍କ ଦ୍ୱାରା ଅଙ୍କିତ ଏଭଳି ଅନେକ ଗୁଡ଼ିଏ ଚିତ୍ର ପ୍ରକାଶ ପାଇଛି । ଏଧରଣର ଚିତ୍ରଣ ପରମ୍ପରାରେ ବ୍ୟବହୃତ ରେଖା ଓ ରଙ୍ଗର ପାଶ୍ଚାତ୍ୟକରଣ ଓ ପ୍ରାଚ୍ୟକରଣ ଭିତରେ ଫରକ ଅତ୍ୟନ୍ତ ସ୍ପର୍ଶକାତର (sensitive) । କାରଣ ପାଶ୍ଚାତ୍ୟ କଳାରେ ମଧ୍ୟ ରେଖାର ବ୍ୟବହାର ଅଛି, ଯାହା ପ୍ରାଚ୍ୟ ପରମ୍ପରାଠାରୁ ପ୍ରୟୋଗରେ ଭିନ୍ନ । ଦିନନାଥ ଅତି ବୁଦ୍ଧିମତ୍ତାର ସହିତ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପରମ୍ପରାର ସାରବତ୍ତାକୁ ଏକୀଭୂତ କରି ଏକ ସମନ୍ୱିତ ପନ୍ଥା ଆପଣେଇ ପାରିଛନ୍ତି । ଏହି ପଦ୍ଧତି ଶିଳ୍ପୀଙ୍କୁ ଏଭଳି ଭାବରେ ଆକର୍ଷିତ କରିଦେଇଛି ଯେ ସେ ପରବର୍ତ୍ତୀ ସମୟରେ ଏହି ଶୈଳୀର ଅବଲମ୍ବନରେ ଅନେକ ଗୁଡ଼ିଏ ଚିତ୍ର ଅଙ୍କନ କରିଛନ୍ତି। ତାକୁ ସ୍ୱତନ୍ତ୍ରଭାବେ ଆଲୋଚନା କରିବାର ଅଭିଳାଷ ରଖି ଆମେ ପୁଣି ଯୁଗଳ ବା ପରିବାର ପର୍ଯ୍ୟାୟର ଚିତ୍ରର ବିକାଶ ପାଖକୁ ଫେରିଯାଉଛୁ ।

Digitized by srujanika@gmail.com

୧୯୯୦ ମସିହା ପରେ ପରେ ଯୁଗଳ ବା ପରିବାର ଚିତ୍ରର କଥାବସ୍ତୁରେ ପୌରାଣିକତା ଭରିଯାଇଛି ଏବଂ ସାଧାରଣ ଭାବେ ଆଗରୁ ଚିତ୍ରଣ କରାଯାଉଥିବା ନାରୀ ଓ ପୁରୁଷ ଏବେ ରାଧାକୃଷ୍ଣରେ ପରିଣତ ହୋଇଯାଇଛନ୍ତି । କେବଳ ବିଷୟବସ୍ତୁର ତର୍ଜମାରେ ଯେ ପରିବର୍ତ୍ତନ ଘଟିଛି ତାହା ନୁହେଁ, ଶୈଳୀରେ ମସୃଣତା ଓ ବର୍ତ୍ତୁଳତା ଏବେ ଅବଶ୍ୟମ୍ଭାବୀ ହୋଇପଡ଼ିଛି । ମନେହୁଏ ଦିନନାଥ ସର୍ବଭାରତୀୟ ସ୍ତରରେ ପରୀକ୍ଷିତ ହେଉଥିବା ଏହି କଅଁଳ ତୂଳୀ (soft brush) ର ଚିତ୍ରାଙ୍କନ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ଏଭଳି ଚିତ୍ର ଅଙ୍କନ କରିବେ ବୋଲି ସେ ଜୁରିକ୍ ନଗରୀରୁ sable hairର ସଫଟ୍ ବ୍ରସ୍ ସେଟ୍ କିଣି ଆଣିଛନ୍ତି । ଏହି ପର୍ଯ୍ୟାୟର ସବୁଠାରୁ ଆକର୍ଷଣୀୟ ଚିତ୍ର ହେଲା **'ସ୍ୱର୍ଣ୍ଣାଭ ରାଧା'**। ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଚିତ୍ରକଳା ବିଭାଗ ତଥା ବିଭିନ୍ନ ମଠ ମନ୍ଦିରମାନଙ୍କରେ ପୂଜା ପାଉଥିବା ଢଳା ପିତଳ ମୂର୍ତ୍ତିର ଅନୁକରଣରେ ଅଙ୍କିତ ସଂପୂର୍ଣ୍ଣ ଉଲଗ୍ନ ସ୍ଥିତିର ରାଧା ସମସ୍ତ ଓଡ଼ିଶୀ ଅଙ୍ଗ ସୌଷ୍ଠବକୁ ଆପଣାର କରି ଖୁବ୍ ଲୋଭନୀୟ ଦେଖା ଯାଉଛନ୍ତି। ପୁରୁଷ୍ଟ ଶରୀର, ପୂରିଲା ବାହୁଯୁଗଳ, ଉନ୍ନତ ବର୍ତ୍ତୁଳ ସ୍ତନ, କମନୀୟ ମୁଖ ମଣ୍ଡଳ ଓ କମ୍ବୁଗ୍ରୀବା ନେଇ ରାଧା ଚିତ୍ରରେ ଉଭା ହେଇଛନ୍ତି। (ଦିନନାଥଙ୍କ ପୁନର୍ନବା ଚିତ୍ରୋପନ୍ୟାସରେ ରାଧାଙ୍କ ବର୍ଣ୍ଣନା ପୃ ୨୩୪-୨୪୫ ଦ୍ରଷ୍ଟବ୍ୟ।) ଶିଳ୍ପୀ ଚାହିଁଛନ୍ତି ସେ ପଟଚିତ୍ରର ରାଧାକୁ, ବିଶେଷକରି ତାଙ୍କ ଗାଁ ଦିଗପହଣ୍ଡିରେ ଚିତ୍ରିତ ଶ୍ରୀରାଧାଙ୍କୁ ପୁଣି ଥରେ ସାଂପ୍ରତିକ ପରିପ୍ରେକ୍ଷୀରେ ଆବିଷ୍କାର କରି ଜାତୀୟ ପ୍ରେକ୍ଷାପଟରେ ଅବସ୍ଥାପିତ କରିବେ (ଦିନନାଥଙ୍କ **Traditional Paintings of Orissa** ର ପ୍ରଚ୍ଛଦ ଚିତ୍ର ଦ୍ରଷ୍ଟବ୍ୟ। ମନେହୁଏ ସେ ଏହି ପ୍ରଚେଷ୍ଟାରେ ଯଶସ୍ୱୀ ହୋଇ ପାରିଛନ୍ତି। ଏହି ପର୍ଯ୍ୟାୟର ପ୍ରାରମ୍ଭରୁ ଦିନନାଥଙ୍କ କଳାଯାତ୍ରାରେ ଶୈଳୀଗତ ଜଟିଳତା ଓ ଅଧିକ୍ରମଣକୁ ଅସ୍ୱୀକାର କରି ନ ହେଉଥିବାରୁ ବିଭିନ୍ନ ଶୈଳୀକୁ ପରିଷ୍କାର କାଳଖଣ୍ଡ ମାନଙ୍କରେ ଆବଦ୍ଧ କରିହେବନି। ଏଣୁ ଗୋଟିଏ ଶୈଳୀ ସମ୍ପର୍କରେ ଚର୍ଚ୍ଚା କରୁଥିଲା ବେଳେ ତା'ର ପରିପ୍ରେକ୍ଷୀ ଅନ୍ୟ ଗୋଟିଏ ଶୈଳୀର ସେହି ଅନୁରୂପ ବିଷୟକ୍ରମକୁ ଆଲୋଚନା ପରିସରକୁ ଆକର୍ଷିତ କରୁଛି। ଏଣୁ ଶୈଳୀଗୁଡ଼ିକ ଓ ବିଷୟକ୍ରମଗୁଡ଼ିକ ପରସ୍ପର ଛନ୍ଦାଛନ୍ଦି ହୋଇ ଅଗ୍ରସର ହେଉଥାନ୍ତି। ଏହି ଚିତ୍ରଯାତ୍ରା ମଧ୍ୟରେ ଗୋଟିଏ ଶୈଳୀ ଅନ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଶୈଳୀକୁ, ଗୋଟିଏ ବିଷୟବସ୍ତୁ ଅନ୍ୟ ଗୋଟିଏ ବିଷୟ ବସ୍ତୁକୁ ପ୍ରଚୋଦିତ କରୁଛି ଓ ପରସ୍ପରର ପରିପୂରକ ହେଇ ଶିଳ୍ପସର୍ଜନାର ମହତ୍ୱ ଓ ଗାମ୍ଭୀର୍ଯ୍ୟକୁ ବଢ଼େଇ ଦେଉଛି।

ଦିନନାଥଙ୍କ ଦେବୀ ସିରିଜ୍‌ର ପ୍ରାୟ ତିରିଶ ଗୋଟି ଚିତ୍ର ଇଣ୍ଡୋନେସିଆର ଡେନ୍‌ପାସର୍ ବାଲିରେ ତାଙ୍କ ଏକକ ଚିତ୍ର ପ୍ରଦର୍ଶନୀରେ ସ୍ଥାନ ପାଇଥିଲା। ଏହି ଚିତ୍ରଗୁଡ଼ିକ କିନ୍ତୁ ପୂର୍ବଭଳି ସିଲ୍କ କନା ଉପରେ ନୁହେଁ, କାଗଜ ଉପରେ ଉଜ୍ଜ୍ୱଳ ଜଳରଙ୍ଗ(ଇଙ୍କ୍)ରେ ଚିତ୍ରିତ ଓ ଏହା ରେଖାପ୍ରଧାନ। ଦେବଦେବୀମାନଙ୍କ ଆରାଧ ଭଙ୍ଗି ଓ ଆୟୁଧ ଧାରଣର ଭଙ୍ଗିମା ଓ ହସ୍ତମୁଦ୍ରା ରୂପ ଗୁଡ଼ିକରେ ଦୈବତ୍ୱ ଭରିଦିଏ। କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ମୂର୍ତ୍ତି ତତ୍ତ୍ୱ ଉପରେ ଆଧାରିତ ନ ହୋଇ ମଧ୍ୟ ଆଧିଭୌତିକ ଓ ଦୈବୀ ପରମ୍ପରାର ସମସ୍ତ ଲକ୍ଷଣରେ ଚିତ୍ରଗୁଡ଼ିକ ଜାଜ୍ଜ୍ୱଲ୍ୟମାନ। ଏହି ସିରିଜ୍‌ର ଚିତ୍ରମାନଙ୍କରେ ସଂପୂର୍ଣ୍ଣ ରୂପେ ଲମ୍ଫ ଦେବା ପୂର୍ବରୁ ସେ ଓଷାକୋଠୀ ମଙ୍ଗଳା ଚିତ୍ରର ସରଳୀକରଣ ରୂପବିନ୍ୟାସକୁ ଆପଣେଇଛନ୍ତି (ଫିସର୍ ଓ ପାଠୀଙ୍କ **Murals for Goddesses and Gods** ଦ୍ରଷ୍ଟବ୍ୟ)। ଗଭୀର ଭାବେ ଅନୁଶୀଳନ କଲେ ଜଣାପଡ଼େ ଶିଳ୍ପୀ ହୀରାପୁର ଚଉଷଠି ଯୋଗିନୀ ଦେବୀପ୍ରତିମାଗୁଡ଼ିକର ସୌଷ୍ଠବ ଓ ଆଭୂଷଣ ଦ୍ୱାରା ପରୋକ୍ଷ ଭାବେ ଅନୁପ୍ରାଣିତ । ଦିନନାଥଙ୍କ କଳା ଗବେଷଣା ଓ ଗ୍ରାମ୍ୟଚିତ୍ର ପରମ୍ପରା ସହିତ ନିଜ ଚିତ୍ରଗୁଡ଼ିକ କିଭଳି ଭାବେ ସମ୍ପୃକ୍ତ ତାହା ଏହି ମଙ୍ଗଳା ଚିତ୍ରରୁ ପୁଣିଥରେ ସ୍ପଷ୍ଟ ହେଇଯାଏ। ଏଣୁ ତାଙ୍କ ଶିଳ୍ପ ଗବେଷଣା ଓ ସାହିତ୍ୟର ତଥ୍ୟଭିତ୍ତିକ ଅଥଚ ବର୍ଣ୍ଣିଳ ପରିଧିରୁ ତାଙ୍କ ଚିତ୍ରକଳାକୁ ଅଲଗାଭାବେ ବିଚାର କରିବା ସମ୍ଭବ ନୁହେଁ।

**ଚିତ୍ରକାର ଦିନନାଥ ସଫ୍‌ଟ୍ ବ୍ରସ୍ (soft brush) ରେ ତୈଳଚିତ୍ର ଅଙ୍କନ କରିବା ଆଗରୁ ଦିଗପହଣ୍ଡି ପାଇଛା ମଠରେ ସଂରକ୍ଷିତ ଶ୍ରୀମତୀ ରାଧା ପଟଚିତ୍ରର ଅନୁପ୍ରେରଣାରେ ସିଲ୍କକନା ଉପରେ ଅନୁରୂପ ରାଧାଙ୍କ ଚିତ୍ରଟିଏ ଅଙ୍କନ କରିଛନ୍ତି। ଏହି ଚିତ୍ରରେ ରାଧା ଅବଶ୍ୟ ସାଦା ଶାଢ଼ି ପରିଧାନ କରିଛନ୍ତି ଓ ତାଙ୍କ ଅଙ୍ଗସୌଷ୍ଠବ ସରଳ ଓ ବଳିଷ୍ଠ ରେଖା ବିନ୍ୟାସରେ ଚମତ୍କାର ଭାବେ ଉତୁରି ପଡ଼ିଛି। ଚନ୍ଦ୍ରକୁ** ନିନ୍ଦିଲାଭଳି ମୁଖମଣ୍ଡଳ, ନିତମ୍ବକୁ ଲମ୍ବିଥିବା ବେଣୀ, ବେଣୀ ମୂଳରେ କିଆଫୁଲର ସମ୍ଭାର, ମୁଣ୍ଡରେ ସମ୍ଭ୍ରାନ୍ତ ଓଢ଼ଣା ଓ ଉନ୍ନତ ବକ୍ଷୋଜରେ ରାଧା ପ୍ରେମମୟୀ ଭାବରେ କୃଷ୍ଣଙ୍କ ପ୍ରତୀକ୍ଷାରେ ଉଭା ହୋଇଛନ୍ତି। ଏହିସବୁ ବର୍ଣ୍ଣନା ଦିନନାଥଙ୍କ ଉପନ୍ୟାସମାନଙ୍କରେ ଦେଖିବାକୁ ମିଳେ। ମନେହେବ ସେ ଚିତ୍ରରେ ଯାହା ଅଙ୍କନ କରୁଛନ୍ତି

Digitized by srujanika@gmail.com

ତାକୁ ତାଙ୍କ ଲେଖାରେ ମଧ ବର୍ଣ୍ଣିଛନ୍ତି । ଏହି ଚିତ୍ରରେ ରେଖାର ସାବଲୀଳ ସଂଯମ ସାଙ୍ଗକୁ ବର୍ଣ୍ଣର ସଂପ୍ରୀତି ଅତ୍ୟନ୍ତ ଯଥାର୍ଥ ଓ ଆକର୍ଷଣୀୟ । ଦିନନାଥ ନିଜ ଚିତ୍ରରେ ରାଧାଙ୍କର ଅନନ୍ୟ ବିଭବକୁ ସାଦରେ ଗ୍ରହଣ କରିଥିବା ବେଳେ, ପ୍ରତୀକ୍ଷାର ରୋମାଣ୍ଟିକ୍ ପରିପ୍ରେକ୍ଷୀକୁ ସମ୍ମାନ ଦେଇ କଦମ୍ବ ଓ ପୁଷ୍କରିଣୀ ରୂପୀ ଯମୁନାର ଚିତ୍ର ସନ୍ନିବେଶିତ କରିଛନ୍ତି । ଏହି ଚିତ୍ରଟି ବିଶିଷ୍ଟ କଳାସମାଲୋଚକ କୃଷ୍ଣଚୈତନ୍ୟଙ୍କୁ ଏତେ ମାତ୍ରାରେ ପ୍ରଭାବିତ କରିଥିଲା ଯେ ସେ All India Fine Arts and Crafts ସୋସାଇଟିର ହୀରକ ଜୟନ୍ତୀ ଉତ୍ସବରେ ଅନୁଷ୍ଠିତ ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀରେ ଶ୍ରେଷ୍ଠକୃତି  ଭାବେ ପୁରସ୍କୃତ କରିବାପାଇଁ ସୁପାରିଶ କଲେ ଏବଂ ଏହା ଭାରତର ରାଷ୍ଟ୍ରପତିଙ୍କ ରଜତ ଫଳକରେ ଭୂଷିତ ହେଲା । ନିର୍ବିବାଦରେ କୁହାଯାଇ ପାରିବ ଏହା ଦିନନାଥ ପାଠୀଙ୍କ ନବୀକୃତ ଓଡ଼ିଶୀ ପରମ୍ପରାର ଏକ ଉଲ୍ଲେଖନୀୟ ଐତିହାସିକ ଚିତ୍ର । ଏହି ଚିତ୍ରର ବିଶେଷତ୍ୱ ହେଲା ତା'ର ପାରମ୍ପରିକତା ଓ ପାରମ୍ପରିକତାର ସାଂପ୍ରତିକତା । ଦିନନାଥ ଦୁଇହଜାର ବର୍ଷର ଓଡ଼ିଶୀ ଚିତ୍ରକଳାକୁ ସାଂପ୍ରତିକ ପଟ୍ଟଭୂମିରେ ଚେତନଭାବେ ଘେନିବା ଓ ତା'ର ଓଡ଼ିଆ ଅସ୍ମିତାକୁ ପରିବର୍ତ୍ତନ ମଧ୍ୟରେ ହଜେଇ ନ ଦେଇ ତାକୁ ସ୍ୱତନ୍ତ୍ର ମର୍ଯ୍ୟାଦା ଦେବାରେ ସଫଳ ହୋଇଛନ୍ତି । ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଉଦ୍ୟମ ହେଉ ପଛେ ଜଗତୀକରଣର ଘନଘଟା ମଧ୍ୟରେ ଓଡ଼ିଆ କଳା ତା'ର ସ୍ୱତନ୍ତ୍ରତା ବଜାୟ ରଖିପାରିଛି । କିନ୍ତୁ ଏଇଥିପାଇଁ ଦିଲ୍ଲୀର କିଛି କଳା ସମାଲୋଚକ ତାକୁ ଆଞ୍ଚଳିକ (regional) କହିଥାନ୍ତି । ଏହି ସମ୍ପର୍କରେ ରମେଶ ପ୍ରସାଦ ପାଣିଗ୍ରାହୀ ଦେଇଥିବା ମତାମତ ଉଲ୍ଲେଖ କରାଯାଇ ପାରେ: Dinanath Pathy, totally disgusted with such cul--de-sac formula was searching for some indigenous Orissan motifs to build up a regional identity. Infact, nothing that ignores regional art motifs can culminate in Indian Art. Here comes Dinanath, his ritual images and the Orissan School of painting. It is unfortunate for the metropolitan artists and their power-axis that despite their cultural politics to subvert Orissa painting in national (what is that?) art-discourse, the tenure of their avant-gardeism has lapsed and Pathy's 'ritual-imagery' has become the latest global craze under the rubric of post - modernism **(Ritual Imagery**, 1997)

ଆଧୁନିକ ଓ ସାମ୍ପ୍ରତିକ କଳାରେ ପରମ୍ପରାକୁ ସମ୍ମାନ ଦେବାର ଚିତ୍ରକାରଙ୍କ ମଧ୍ୟରୁ ଦିନନାଥଙ୍କ ଭୂମିକା ଉଲ୍ଲେଖନୀୟ । ଏହି **ଶ୍ରୀରାଧା** ଚିତ୍ରଟି ଅଧୁନା ଭୁବନେଶ୍ୱରଠାରେ ଓଡ଼ିଶା ରାଜ୍ୟପାଳଙ୍କ ରାଜଭବନରେ ସଂରକ୍ଷିତ । ଅତ୍ୟନ୍ତ ଆନନ୍ଦର ବିଷୟ, ଦିନନାଥଙ୍କ ଅନେକ ପ୍ରାକ୍ତନ ଛାତ୍ର ଯଥା ବିଭୁପ୍ରସାଦ ପଟ୍ଟନାୟକ, ପ୍ରତୁଲ ଦାଶ, ଜଗନ୍ନାଥ ପଣ୍ଡା, ଦିଲ୍ଲୀପ କୁମାର ତ୍ରିପାଠୀ,  ଅରୁଣ କୁମାର ଜେନା ଓ ରମାକାନ୍ତ ସାମନ୍ତରାୟ ପ୍ରଭୃତି ଏହି ଆଦର୍ଶରେ ଅନୁପ୍ରାଣିତ । ରାମହରି ଜେନାଙ୍କ ନାୟିକା ସିରିଜ୍‌ର କିଛି ଛବି ମଧ ଓଡ଼ିଶୀ ପରମ୍ପରା ଦ୍ୱାରା ପ୍ରଭାବିତ । ଡି. ନାରାୟଣ ରାଓ ସତୁରୀ ଦଶକରେ କିଛି ପଟଚିତ୍ରର ବିଷୟକୁ ତୈଳ ରଙ୍ଗରେ ଅଙ୍କନ କରିଛନ୍ତି । ଅବଶ୍ୟ ପରମ୍ପରାର ନବୀକରଣ ଗଭୀର ମନନଶୀଳତାର ଆବେଗ ଆବଶ୍ୟକ କରେ ।

ଆମେ ଏହା ଆଗରୁ soft brush ରେ ଅଙ୍କିତ ରାଧାକୃଷ୍ଣଙ୍କ ତୈଳ ଚିତ୍ର ସଂପର୍କରେ ଆଲୋଚନା କରୁଥିବା ବେଳେ ଜଳରଙ୍ଗର ଚିତ୍ର **ଶ୍ରୀରାଧା** ପ୍ରସଙ୍ଗ ସ୍ୱତଃ ପଶିଆସିଲା ।

**ଶିଳ୍ପୀଙ୍କ କଳାଯାତ୍ରା କ୍ରମରେ ଆମେ ଦେଖିବା କିଭଳି ରାଧା ପୌରାଣିକତାକୁ ପଛରେ ପକେଇ ଦେଇ ଦିନନାଥଙ୍କ ଚିତ୍ରରେ ଜଣେ ସାଧାରଣ ନାରୀରେ ପରିଣତ ହେଇଯାଇଛନ୍ତି । ଏହି ନାରୀର ଲୌକିକ କାମ ବାସନା ଅଛି, ହର୍ଷ ଓ ବିଷାଦ ଅଛି ଓ ଅପ୍ରାପ୍ତିରେ ସଢ଼ିବାର ଆନନ୍ଦ ଅଛି ।** ଏଠାରେ ମୁଁ ତିନୋଟି ଛବି କଥା ଉଲ୍ଲେଖ କରିବି । ଏହି ଛବି ତିନୋଟି ୧୯୯୫ ମସିହା ଠାରୁ ୨୦୦୫ ମସିହା ଭିତରେ ଅଙ୍କିତ । ସେଗୁଡ଼ିକ ହେଲା **ନାରୀ ଓ ବ୍ୟାଘ୍ର–୧** ଓ **୨** ଏବଂ **ନାରୀ ଓ ମାୟାମୃଗ ।** ଏହି ତିନୋଟିଯାକ ଚିତ୍ରରେ ନାରୀର ଅଦମ୍ୟ କାମଲାଳସାକୁ ଚିତ୍ରଶିଳ୍ପୀ ବ୍ୟଞ୍ଜନାତ୍ମକ ଭାବରେ ପ୍ରକାଶ କରିଛନ୍ତି । ନାରୀ ଓ ବ୍ୟାଘ୍ର – ୧ ଚିତ୍ରରେ ନାରୀଟିଏ ତା ଉଭାଳ ଯୌବନର କାମନାମୟ ପସରା ନେଇ ଗୋଟିଏ ବ୍ୟାଘ୍ରର ଅନୁଧାବନ କରୁଛି । ତା'ର ଅଙ୍ଗଭଙ୍ଗିରୁ ଜଣାପଡ଼ୁଛି  ଯେ ବ୍ୟାଘ୍ରଟି ଭୀରୁ ଓ ଭୀତତ୍ରସ୍ତ । ନାରୀଟିର ଉଗ୍ର କାମନାର ଜ୍ୱଳନ ଆଗରେ ତା'ର (ପୁରୁଷର) ସମସ୍ତ ଆସ୍ପୃହା ଯେଭଳି ପରାହତ । ନାରୀଟିର ସଂଭୋଗଲାଳସାର ଆହ୍ୱାନ ମୁଦ୍ରା ବାଘଭଳି ମାଂସଲୋଭୀ ପ୍ରାଣୀଟିକୁ ମଧ ଦ୍ୱନ୍ଦ୍ୱରେ ପକାଇ ଦେଇଛି । ନାରୀର ଅଙ୍ଗ ସୌଷ୍ଠଭରେ ପ୍ରଦର୍ଶିତ ରୂପସମ୍ଭାର କାମବାସନାକୁ ପ୍ରତିପାଦିତ କରିବାକୁ ଯଥେଷ୍ଟ ନୁହେଁ ବୋଲି ଧାରଣା ସୃଷ୍ଟି କରିବା ପାଇଁ ଶିଳ୍ପୀ ଚିତ୍ରରେ ଭୂଦୃଶ୍ୟ ମାଧ୍ୟମରେ ସେହି ମାନବୀୟ ଅଭୀପ୍ସାର ଯୌନ ପସରାକୁ ପୁଣି ଥରେ ଦୋହରାଇବାକୁ ଚେଷ୍ଟା କରିଛନ୍ତି । ଦୁଇଟି ଜାମୁକୋଳି ରଙ୍ଗର ପାହାଡ଼ ଉଦ୍ୟତ ସ୍ତନର ପ୍ରତୀକ ଭାବେ ଉଭାହୋଇଥିଲା ବେଳେ, ପାହାଡ଼ ସନ୍ନିକଟସ୍ଥ ଗୋଲାକାର ହ୍ରଦ

Digitized by srujanika@gmail.com

ଯୋନିର ତରଳ ପ୍ରକାଶ ଭାବେ ଚିତ୍ରିତ। ଅସ୍ତଗାମୀ ସୂର୍ଯ୍ୟର ଗୈରିକ ଆକାଶରେ ଏ ଉଭୟ ପାହାଡ଼ ଓ ହ୍ରଦର ସମସ୍ତ ସମ୍ଭାର ଏକ ମହାଜାଗତିକ (cosmic) ସଂପର୍କକୁ ଉଦ୍ଘାଟିତ କରୁଛି ଏବଂ ଲୌକିକ ପ୍ରଚୋଦନାକୁ ଅଲୌକିକତାରେ ପରିଣତ କରିଦେଉଛି। ଏଠାରେ ମଧ୍ୟ ରମେଶ ପ୍ରସାଦ ପାଣିଗ୍ରାହୀଙ୍କ ଆଭିମୁଖ୍ୟକୁ ଉଦ୍ଧାର କରିବା ସମୀଚୀନ ହେବ। Pathy's repetitive use of ritual imagery signals the provocativeness of his own insights and point to the insistent power of repression (cultural and aesthetic) as it is exercised both within his analytic process and within the abstract working out of analytic theory of painting. His concepts are as much post modern as Lacanian. The unconscious, according to modernist (Freudian) definitions, is the realm of free instinctual energy and it knows no stability or containment or closure **(Ritual Imagery, 1997)**

ତାଙ୍କର ଦ୍ୱିତୀୟ ଚିତ୍ର **ନାରୀ ଓ ବ୍ୟାଘ୍ର–୨** ରେ ଶିଳ୍ପୀ ପାହାଡ଼ ଓ ହ୍ରଦର ପ୍ରତୀକାତ୍ମକତାକୁ ଦୋହରାଇଛନ୍ତି। *ଏଠି ପାହାଡ଼ ଘନନୀଳ ବର୍ଣ୍ଣ ଓ ହ୍ରଦ ଗୋଟିଏ ପଦ୍ମପୁଷ୍କରିଣୀ। ଦୁଇ ପାହାଡ଼ର ଶିଖରକୁ ଆବୋରି ବାଘଟି* ଶୋଇଛି ଏବଂ ପାହାଡ଼ ତଳେ ଭୂଇଁ ଉପରେ ନାରୀଟିଏ ତାର ଅଙ୍ଗସୌଷ୍ଠବକୁ ପ୍ରଦର୍ଶନ କରି ନିଶ୍ଚିନ୍ତରେ ଶୋଇବାର ଅଭିନୟ କରୁଥିଲେ ମଧ୍ୟ ତାରି ମନରେ ଓ ପ୍ରାଣରେ ଉଙ୍କୁଚୁଥିବା କାମନାର ସ୍ପନ୍ଦନ ପାଇ ହେଉଛି। ଶିଳ୍ପୀ ବାଘକୁ କାମର ପ୍ରତୀକ ଭାବେ ସଫଳତାର ସହିତ ବାରମ୍ବାର ପ୍ରୟୋଗ କରିପାରିଛନ୍ତି। ପ୍ରଥମ ଚିତ୍ରଭଳି ବାଘ ଏହି ଚିତ୍ରରେ ପଳାୟନଧର୍ମୀ ନୁହେଁ। ଏଠାରେ ସେ ସ୍ତନଚୂଡ଼ା ଉପରେ ମର୍ଦ୍ଦନର ସୁଖ ପାଇସାରିଲାଣି; ସଂଭୋଗ ଆଉ ବା କେତେ ବାଟ। କାମ ବିଳାସର ଏହି ଦୁଇଟି ପ୍ରତୀକଧର୍ମୀ ଚିତ୍ର ପରବର୍ତ୍ତୀ ସମୟରେ ଭିନ୍ନ ଭିନ୍ନ ସିମ୍ବଲିଜ୍‌ମ୍‌କୁ ନେଇ ଗୀତଗୋବିନ୍ଦ ପରିପ୍ରେକ୍ଷୀରେ ଚିତ୍ରିତ। (ଧରଣୀଧର ଟୀକା ସଂଯୁକ୍ତ ଗୀତଗୋବିନ୍ଦ ଚିତ୍ରିତ ତାଳପତ୍ର ପୋଥିରେ ଅଙ୍କିତ ପୁଷ୍କରିଣୀ ଓ ବାଘର ସଂପର୍କ ପ୍ରଣିଧାନ ଯୋଗ୍ୟ, ଦିନନାଥଙ୍କ **Petals of Belonging : New Perspectives of the Gitagovinda** ଦ୍ରଷ୍ଟବ୍ୟ)

ଏହି କ୍ରମର ତୃତୀୟ ଚିତ୍ରଟିରେ ଶାୟିତା ନାରୀ ସୀତାଙ୍କର ମାନସିକ ଦୋଳନକୁ ପ୍ରକାଶ କରୁଛି। ମାୟାମୃଗକୁ ବଧକରି ତା'ର ସ୍ୱର୍ଣ୍ଣ ଛାଲକୁ ଆଣିବା ପାଇଁ ନିଜ ସ୍ୱାମୀଙ୍କୁ କହିବା ଭିତରେ ସୀତାଙ୍କର କାମ ବାସନାର ସ୍ଫୁରଣ ହୋଇଯାଉଛି। ପୁଣି ଏହି ପ୍ରସଙ୍ଗ ସହିତ ସୀତା ହରଣ ଓ ରାବଣ ସହିତ କଳ୍ପନାରେ ହେଉ ପଛେ ବିବାହ ବନ୍ଧନରେ ଆବଦ୍ଧ ହେବାର ଅସ୍ୱାଭାବିକ ପ୍ରସ୍ତାବ ଭିତରେ କାମବାସନାର ଜଟିଳତା ଅଙ୍ଗାଙ୍ଗୀଭାବେ ଜଡ଼ିତ। ଏଠାରେ ନାରୀ ଓ ବ୍ୟାଘ୍ର–୨ ଚିତ୍ରର ଶାୟିତା ନାରୀର ପୁନରାଙ୍କନ ତାତ୍ପର୍ଯ୍ୟପୂର୍ଣ୍ଣ। ପୌରାଣିକ କଥନିକାର ଆଭିମୁଖ୍ୟକୁ ବାଦ ଦେଲେ ମଧ୍ୟ ମାୟାମୃଗର କାମଲାଳସା ସହିତ ଜଡ଼ିତ ପ୍ରତୀକାତ୍ମକତା ସଂପର୍କରେ ଶିଳ୍ପୀ ସଚେତନ। ଏଣୁ ସାଧାରଣ ପ୍ରସଙ୍ଗ ଭିତରେ ଏଭଳି ଚିତ୍ରସର୍ଜନାଟିଏ ମାନବୀୟ ଗୁଣ ବା ଅବଗୁଣର ଚିତ୍ର ସ୍ୱରୂପକୁ ପ୍ରତିଭାତ କରାଇ ଥାଏ।

**ଏଭଳି କେତେକ ମାନବୀୟ ଚିତ୍ରପ୍ରସଙ୍ଗ ଅଛି ଯାହା ଶିଳ୍ପୀଙ୍କ ସର୍ଜନା ରାଜ୍ୟକୁ ବାରମ୍ବାର ଆନ୍ଦୋଳିତ କରିଛି। ସେଥିମଧ୍ୟରୁ ରାଧା, ଓ ରାଧାଙ୍କ ଲୌକିକତା ସହିତ ଅଲୌକିକତା ହେଲା ମୁଖ୍ୟ। ଏହି ରାଧାଙ୍କ ରୂପରଚନା, ତାଙ୍କ ସହିତ କୃଷ୍ଣଙ୍କର ପ୍ରେମ ସଂପର୍କ ରଙ୍ଗର ବୈଷମ୍ୟ contrast ଏବଂ ଦେହର ଭିନ୍ନତା ଓ ଭଙ୍ଗିମା ଦେଇ ନିବୁଟା ମାନବୀୟ ପ୍ରେମର ବ୍ୟାଖ୍ୟାନ ଭାବରେ ବା ପୁରାଣ ଓ କାବ୍ୟର ବୟାନ ଭିତରେ ବିଭିନ୍ନ ରଚନାରେ ପ୍ରକାଶିତ। ୧୯୯୫ ମସିହାରେ ଦିଲ୍ଲୀ ବ୍ରିଟିଶ୍ କାଉନ୍‌ସିଲ୍** ଗ୍ୟାଲେରୀରେ ପ୍ରଦର୍ଶିତ **Return Vocabulary : Paintings Inspired from the Gitagovinda** ଶୀର୍ଷକ ପ୍ରଦର୍ଶନୀରେ ରାଧାକୃଷ୍ଣଙ୍କ ଅନାବିଳ ପ୍ରେମଗାଥା ବିଭିନ୍ନ ଚିତ୍ରରେ ପ୍ରତିଫଳିତ। ଏହି ପ୍ରଦର୍ଶନୀରେ ତୈଳଚିତ୍ର ସାଙ୍ଗକୁ ସିଲ୍‌କ୍ କନା ଉପରେ ଜଳରଙ୍ଗ ଅଥଚ opaque ଶୈଳୀର ଚିତ୍ର ମଧ୍ୟ ସ୍ଥାନିତ କରାଯାଇଥିଲା। ଚିତ୍ରିତ ଗୀତଗୋବିନ୍ଦ ପୋଥିରେ ଯମୁନା ନଦୀ ପରିବର୍ତ୍ତେ ଦିନନାଥ ଓଡ଼ିଆ ଲେଖନକାର-ଶିଳ୍ପୀଙ୍କ ପଦ୍ମପୁଷ୍କରିଣୀର ଅବତାରଣା କରିଛନ୍ତି। (ଶିଳ୍ପୀଙ୍କ **Petals of Belonging** ବହି ଦ୍ରଷ୍ଟବ୍ୟ।) ଏହି ନୂତନ ଆବିଷ୍କୃତ ସଂପର୍କ ଉପରେ ନିର୍ଭର କରି ଦିନନାଥ ପୁଷ୍କରିଣୀ ଚିତ୍ରକୁ ଗୀତଗୋବିନ୍ଦର ଓଡ଼ିଆତ୍ୱର ଅନ୍ୟତମ ଆଧାର କହିବା ସହିତ ରାଧାଙ୍କୁ ପୁଷ୍କରିଣୀ ଜ୍ଞାନ କରି କାମର ଅନ୍ୟତମ ସଜଳ ପ୍ରତୀକ ଭାବରେ ପ୍ରକାଶ କରିବାରେ ସମର୍ଥ ହୋଇଛନ୍ତି। ପୁଷ୍କରିଣୀର ରୂପକଳ୍ପ (imagery) ଶିଳ୍ପୀଙ୍କୁ ଏଭଳି ଭାବରେ ଆକୃଷ୍ଟ କରିଛି ଯେ ସେ ଲଗାତାର ଭାବେ ପନ୍ଦର କୋଡ଼ିଏ ଗୋଟି ପୁଷ୍କରିଣୀ ଚିତ୍ର ଅଙ୍କନ କରିଛନ୍ତି। *ପ୍ୟାରିସ୍ ସହରରେ ରହୁଥିବା ଅନ୍ନା ଭୋଜ୍‌ଗାଡ଼ିଙ୍କ ସଂଗ୍ରହରେ ଥିବା ପୁଷ୍କରିଣୀ* ଚିତ୍ରଟି ଶୀର୍ଷ ପର୍ଯ୍ୟାୟର। ଜୁରିକ୍ ନଗରୀର ଅଦିତି ଦେଙ୍କ ବାସଗୃହରେ ପ୍ରଦର୍ଶିତ ଏବଂ କୁଆଲାଲୁମ୍‌ପୁରଠାରେ

Digitized by srujanika@gmail.com

ରମଲି ଇବ୍ରାହୀମ୍‌ଙ୍କ ପାଖରେ ଥିବା ପଦ୍ମପୋଖରୀଗୁଡ଼ିକ ଜୟଦେବ ବିରଚିତ ଗୀତଗୋବିନ୍ଦର କାମ ଅଭିସାରକୁ ହିଁ ପ୍ରତିପାଦିତ କରୁଛି । ଦିନନାଥଙ୍କ ଚିତ୍ରକଳା ଆଲୋଚନା କଲାବେଳେ ମନେହେବ ଶିଳ୍ପୀ ଗୋଟିଏ ରୂପକଳ୍ପରୁ ଅନ୍ୟଗୋଟିଏ ରୂପକଳ୍ପକୁ ବିଚରଣ କରିଛନ୍ତି ଅଥଚ ତାଙ୍କ ସର୍ଜନାର ପଟ୍ଟଭୂମିରେ ସବୁ ରୂପକଳ୍ପ ସଦାକାଳେ ଅବଚେତନ ସ୍ତରରେ ସଂରକ୍ଷିତ ହୋଇରହିଛି। ଏଥିରୁ ଜଣାପଡ଼ୁଛି ତାଙ୍କ ସର୍ଜିତ ରୂପକଳ୍ପଗୁଡ଼ିକ କେବଳ ବାହ୍ୟ ରୂପବିଭବ ନୁହେଁ, ତାହା ତାଙ୍କ ଚିନ୍ତନପ୍ରକ୍ରିୟାର ଅଂଶବିଶେଷ ଯାହା ରୂପରୁ ଗୁଣସ୍ତରକୁ ଭ୍ରମି ଚିତ୍ରର ବ୍ୟାକରଣ କେବଳ ନୁହେଁ ତାର ନାନ୍ଦନିକତାର ଧ୍ୱନି ଭାବରେ ବିବର୍ତ୍ତିତ ହୋଇ ବାରମ୍ୱାର ଉଚ୍ଚାରିତ ହୋଇଛି। ଏଠାରେ ପ୍ରଫେସର କେ.ଜି. ସୁବ୍ରମଣିୟନ୍ କହିଥିବା କଥା ପ୍ରାସଙ୍ଗିକ : From the consciously mannered paintings of the sixties he has come a long way to the robust figure compositions of recent years which, whatever their emotional slant, have a kind of libidinous energy (**35 years of Art**, 1956-1991, New Delhi, 1991)

**ଏହି ରାଧା–ପଦ୍ମପୁଷ୍କରିଣୀରେ ପ୍ରସ୍ଫୁଟିତ ପଦ୍ମଗୁଡ଼ିକ ପାରମ୍ପରିକ ଓଡ଼ିଶୀ କଳାର ପଦ୍ମମଣ୍ଡଳ ସଦୃଶ। ଏହା ସହିତ ନାଲି ଓ ହଳଦିଆ ରଙ୍ଗର ପଦ୍ମନାଗ ନିକ୍ଷେପିତ ବୀର୍ଯ୍ୟର ଉତ୍ପାଦକ ଶକ୍ତିସମ୍ପନ୍ନ ଉପାଦାନ ଭଳି ପୁଷ୍କରିଣୀ ଗର୍ଭଭିତରେ ସଂଚରିତ ହେଉଛି। ଏହା ଯୋଗପ୍ରକ୍ରିୟାର ଏକ ଗୂହ୍ୟ ଅନ୍ତରଙ୍ଗ ଅବସ୍ଥା (ଦିନନାଥଙ୍କ ସାୟୋନାରା ଚିତ୍ରୋପନ୍ୟାସ ଦ୍ରଷ୍ଟବ୍ୟ)।** ପଦ୍ମନାଗକୁ କୁଣ୍ଡଳିନୀ ସହିତ ମଧ ତୁଳନା କରାଯାଏ । ରାଧା ଏ ଚିତ୍ରଗୁଡ଼ିକରେ ସାମାନ୍ୟ ନାରୀ ନୁହନ୍ତି, ଯୋଗମାୟା। ପୁଣି ପଦ୍ମପୋଖରୀ ସହିତ ବ୍ୟାଘ୍ରର ସଂଯୋଜନା ରାଧାକୃଷ୍ଣ ମିଳନର ବ୍ୟଞ୍ଜନାତ୍ମକ ସନ୍ଦର୍ଭକୁ ବୁଝାଏ। ବାଘ ଯେଭଳି ଛପି ଛପି ତାର ଶିକାରକୁ ଆକ୍ରମଣ କରେ କୃଷ୍ଣ ମଧ ବେଳେ ବେଳେ ସନ୍ତାପିତ ଓ ଲଜ୍ଜାହୀନ ପ୍ରେମିକ ଭଳି ରତିଲାଳସାରେ ଆକ୍ରାନ୍ତହୋଇ ବିଭିନ୍ନ କୁଞ୍ଜରେ ରାଧାଙ୍କୁ ଅତର୍କିତ ଭାବେ ଭେଟିଛନ୍ତି। ରତିବିଳାସ ଓ ଶିକାରବିଳାସରେ ଭିନ୍ନତାର ପ୍ରସଙ୍ଗ ଅତ୍ୟନ୍ତ ଭାବେ ଗୌଣ ହେତୁ ଆମେ କୃଷ୍ଣଙ୍କୁ ବ୍ୟାଘ୍ର ସହିତ ତୁଳନା କଲାବେଳକୁ ରାଧା–ପଦ୍ମ ପୋଖରୀର ପ୍ରାସଙ୍ଗିକତା ଗୁରୁତ୍ୱପୂର୍ଣ୍ଣ ହେଇଯାଉଛି। (ଦିନନାଥଙ୍କ **ଶ୍ଳୋକଛନ୍ଦ** ଚିତ୍ରୋପନ୍ୟାସର ପୃଷ୍ଠା ୧୧୧ର ବର୍ଣ୍ଣନା ଦ୍ରଷ୍ଟବ୍ୟ)।

**ରାଧାଚିତ୍ର ଭଳି ପଦ୍ମପୁଷ୍କରିଣୀ ଚିତ୍ର ମଧ୍ୟ ଦିନନାଥଙ୍କ ସଫଳ ସୃଷ୍ଟି ଯାହାର ବିଭିନ୍ନ ନମୁନା ବିଶ୍ୱର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସଂଗ୍ରହରେ ଗଚ୍ଛିତ ।** ଏହା ଆଗରୁ ମଧ ଉଲ୍ଲେଖ କରାଯାଇଛି ।

ଗୀତଗୋବିନ୍ଦ ଅନୁପ୍ରାଣିତ ଚିତ୍ର ପ୍ରସଙ୍ଗରେ ମୃଗ, ଶୁକପକ୍ଷୀ, ଧେନୁ, ମୀନ, ପାହାଡ଼, ଉପବନ ପ୍ରଭୃତିର ବିମ୍ବାତ୍ମକତା ଶିଳ୍ପୀମାନଙ୍କୁ ଯଥେଷ୍ଟ ପ୍ରଚୋଦିତ କରିଛି। ପାହାଡ଼ ଚିତ୍ରର ବର୍ଣ୍ଣିଳ ରୂପାୟନ ଶିଳ୍ପୀଙ୍କର ଅନ୍ୟଏକ ଆଦରର ରୂପକଳ୍ପ। ଦିନନାଥଙ୍କ କହିବା କଥା ଯଦିଓ ନଦୀ ଓ ସମୁଦ୍ର ପାରମ୍ପରିକ ଓଡ଼ିଶୀକଳାରେ ଗୁରୁତ୍ୱପୂର୍ଣ୍ଣ ପ୍ରକାଶ ନୁହେଁ, ପାହାଡ଼ ରୂପରଚନାର ପାରମ୍ପରିକତା ଅନ୍ୟୂନ ଦୁଇହଜାର ବର୍ଷ ଉର୍ଦ୍ଧ୍ୱର କାହାଣୀ(Pathy, **Essence of Orissan Painting** ଦ୍ରଷ୍ଟବ୍ୟ) ପାହାଡ଼ ରୂପକଳ୍ପର ଆଦ୍ୟପ୍ରକାଶ ଉଦୟଗିରି ରାଣୀଗୁମ୍ଫାରୁ ଆରମ୍ଭ ହୋଇ ବୁଗୁଡ଼ା ବିରଞ୍ଚିନାରାୟଣ ମନ୍ଦିରର ଭିତ୍ତିଚିତ୍ର ଓ ପଟଚିତ୍ର ଏବଂ ଲାବଣ୍ୟବତୀ ତାଳପତ୍ର ପୋଥିଚିତ୍ର ପରମ୍ପରାକୁ ମଧ ଉଦ୍‌ବୁଦ୍ଧ କରିରଖିଛି। ଦିନନାଥ ଆଧୁନିକ ଚିତ୍ରକଳାରେ ପାରମ୍ପରିକ ଓଡ଼ିଶୀ ପାହାଡ଼ର ବହୁଳ ଉପଯୋଗ କରିଛନ୍ତି। ଏହି ପାହାଡ଼ କିଛିଟା ଅର୍ଦ୍ଧବର୍ତ୍ତୁଳାକାର ରୂପର କ୍ରମବର୍ଦ୍ଧିଷ୍ଣୁ ସଂଯୋଜନାରେ ନିର୍ମାଣ କରାଯାଇଥାଏ ଏବଂ ଏହାଦ୍ୱାରା ସୃଷ୍ଟି ହୋଇଥିବା କନ୍ଦରମାନଙ୍କରେ ବିଭିନ୍ନ ବନ୍ୟଜନ୍ତୁଙ୍କୁ ଅବସ୍ଥାପିତ କରି ଏକ ରୂପସମନ୍ୱୟ ସୃଷ୍ଟି କରାଯାଏ। ଏହି ବଣ୍ୟଜନ୍ତୁମାନଙ୍କ ମଧରେ ଓଡ଼ିଶୀ ଧରଣର ସିଂହ, ବ୍ୟାଘ୍ର, ବରାହ, ଭଲ୍ଲୁକ, ହରିଣ, ମୃଗ, ହସ୍ତୀ, ମର୍କଟ ଓ ସର୍ପ ପ୍ରଭୃତି ସ୍ଥାନ ପାଆନ୍ତି । ବୁଗୁଡ଼ା ବିରଞ୍ଚିନାରାୟଣ ମନ୍ଦିର ଓ ଧରାକୋଟ ବୃନ୍ଦାବନଚନ୍ଦ୍ର ମନ୍ଦିରର ଭିତ୍ତିଚିତ୍ର ଏବଂ ଏଥିରୁ ଅନୁପ୍ରାଣିତ ରଘୁନାଥ ପୃଷ୍ଟିଙ୍କ ଲାବଣ୍ୟବତୀ ତାଳପତ୍ର ପୋଥିର ପାହାଡ଼ ଚିତ୍ର ଦିନନାଥଙ୍କ ରୂପକଳ୍ପକୁ ପଲ୍ଲବିତ କରିଛି (Pathy, **Mural Paintings in Orissa** ଚିତ୍ର ୮, ୯, ୧୦, ୧୧ ଦ୍ରଷ୍ଟବ୍ୟ) । **ଦିନନାଥ ଖୁବ୍ ସମ୍ଭବତଃ ପ୍ରମାଣ କରିବା ପାଇଁ ଚାହାନ୍ତି ଯେ ସେ ଆଧୁନିକ ଓ ସାମ୍ପ୍ରତିକ ହେଲେ ମଧ୍ୟ ଏକ ମହନୀୟ ଓଡ଼ିଆ ପରମ୍ପରାର ଦାୟାଦ ।** ଏ ସମ୍ପର୍କରେ ଅମିତ ମୁଖୋପାଧାୟଙ୍କ ଅଭିମତ ପ୍ରଣିଧାନ ଯୋଗ୍ୟ : Generally any kind of return is interpreted as self-indulgent, wish fulfilling and escapist. Any return aesthetics is intimately bound up with deire, a desire for vicarious participation in a life of tragedy, nobility, heroism and significant passion. This desire is met at various levels, from variety of sources : the classical, folk and the popular. Pathy's return aesthetics takes two forms : interest in the significant passion through a

Digitized by srujanika@gmail.com

return to simple and timeless varieties of the narrative mode, all too obviously, a preference of the naive over the sophisticated code. The native code can be assigned to the area of the fantasy which can always be explained away in term of psychic delusion. Secondly, because of narrative mode, originating from the Gitagovinda's textual sources, Pathy's paintings are often episodic overcoded with ornamental details. (Return Vocabulary, 1996)। ଏହି ଦୀର୍ଘ ଉଦ୍ଧୃତିରୁ କେତୋଟି ଶବ୍ଦ ହିଁ ଦିନନାଥଙ୍କ କ୍ଷେତ୍ରରେ ଅଧିକ ଗ୍ରହଣୀୟ ଏବଂ ପରମ୍ପରାର ନବୀକରଣ ପାଇଁ ତାହା ତାତ୍ପର୍ଯ୍ୟପୂର୍ଣ୍ଣ। ସେଗୁଡ଼ିକ ହେଲା heroism (ସାହସିକତା) significant passion (ଉଲ୍ଲେଖଯୋଗ୍ୟ ପ୍ରବଣତା), classical (ଶାସ୍ତ୍ରୀୟ), folk (ଗ୍ରାମ୍ୟ), popular (ଲୋକପ୍ରିୟ), narrative mode (କଥନିକା), fantasy (ରହସ୍ୟ), episodic (କାହାଣୀ ଧର୍ମୀ) ପ୍ରଭୃତି । ଦିନନାଥ ଓଡ଼ିଶୀ ପାହାଡ଼ର ପ୍ରେମରେ ପଡ଼ି ପ୍ରାୟ ତିରିଶି ଚାଳିଶି ପାହାଡ଼ ଚିତ୍ର ଅଙ୍କନ କରିଥିବେ । ତାଙ୍କର ଚିତ୍ର ରଚନା ମଧ୍ୟରେ ପାହାଡ଼ ବର୍ଣ୍ଣବିଭାରେ ଉଜ୍ଜ୍ୱଳି ଉଠେ ଓ ତା'ର ରୈଖିକ ସ୍ୱଚ୍ଛନ୍ଦତାରେ ଗମଣୀୟ ହୁଏ । ବେଳେ ବେଳେ ପାହାଡ଼ର ଶିଖରକୁ ହାଲୁକା, ଉଜ୍ଜ୍ୱଳ ରଙ୍ଗରେ ଚିତ୍ର କରି ମୂଳଭାଗକୁ ଗାଢ଼ରଙ୍ଗରେ ରଙ୍ଗେଇବା ଫଳରେ ପାହାଡ଼ ଏକ ନବ ଉନ୍ମାଦନାରେ ଉଦ୍‌ଭାସିତ ହୋଇଯାଏ। (ଫିସର୍ ଓ ପାଠୀଙ୍କ **ରସିକହାରାବଳୀ** ଦ୍ରଷ୍ଟବ୍ୟ)

ମନେହୁଏ ଶିଳ୍ପୀ ତାଙ୍କ Return Vocabulary, 1996 ପ୍ରଦର୍ଶନୀ ପାଇଁ ପ୍ରଥମେ ପାହାଡ଼ ଅଙ୍କନ କରିବା ଆରମ୍ଭ କଲେ । ଏହାର ପରିପ୍ରେକ୍ଷୀ ଥିଲା ଗୀତଗୋବିନ୍ଦ । କିନ୍ତୁ ପାହାଡ଼ ଧୀରେ ଧୀରେ ତା'ର ରୂପସ୍ୱାଧୀନତାରେ ମଜଗୁଲ ହୋଇ ଏକ ଅଭିନବ ରୂପକଳ୍ପକୁ ଆବୋରି ବସିଲା । **ବ୍ୟାଘ୍ର ଓ ନାରୀ-୧ ଓ ୨** ଚିତ୍ରରେ ପାହାଡ଼ର ପ୍ରତୀକାତ୍ମକତା ସ୍ତନର ରୂପାୟନରେ ସୀମିତ ଥିଲା । ବର୍ତ୍ତମାନ ତାହା ନାରୀରୂପଜନିତ ଫେମିନିଷ୍ଟିକ୍ (feministic) ଭାବରୁ ଉତୁରି ପଡ଼ି ଗୋଟିଏ ଉଦ୍ୟତ ଲିଙ୍ଗର (male chauvinism) ରୂପକଳ୍ପରେ ସମାହିତ ହୋଇଗଲା। ଧୀରେ ଧୀରେ ତା'ର ଆକାର ସଳଖ ହେବାକୁ ଲାଗିଲା ଓ ଦୁଇ ପାର୍ଶ୍ୱ ଗଡ଼ାଣିଆ ହେବା ପରିବର୍ତ୍ତେ ତିଖ ହେଲା ଏବଂ ମନେ ହେଲା ତାହା ଜଳ (ଏହାକୁ ରାଧା-ପଦ୍ମ-ପୁଷ୍କରିଣୀ ବୋଲି ମଧ୍ୟ ବିବେଚନା କରାଯାଉ) ମଧ୍ୟରୁ ଉପରକୁ ଉଠି ଉତ୍ତରଣର ଭାବ ଆଣିଦେଲା। ୧୯୯୭ ମସିହାରେ India International Centre ନୂଆଦିଲ୍ଲୀରେ Ritual Imagery ଶୀର୍ଷକ ତାଙ୍କ ଚିତ୍ର ପ୍ରଦର୍ଶନୀ ଅନୁଷ୍ଠିତ ହେଲା ବେଳକୁ ପାହାଡ଼ ତାର ଏକାକିତ୍ୱ ବଜାୟ ରଖିଲା। ଏଭଳି ସ୍ୱତନ୍ତ୍ର ରୂପ ସମ୍ଭାର ଦାବି କରୁଥିବା ପାହାଡ଼ର ଚିତ୍ରଟିଏ ୧୯୯୮ ମସିହାରେ ବେଇଜିଙ୍ଗ୍ ଆନ୍ତର୍ଜାତିକ ଚିତ୍ରପ୍ରଦର୍ଶନୀ(୨୪ China Exposition)ରେ ମଧ୍ୟ ସ୍ଥାନ ପାଇଲା । ପାହାଡ଼ର କାମପ୍ରସଙ୍ଗ (sexual connotation) ଶିଳ୍ପୀଙ୍କ ମନରୁ ହଟି ନଥାଏ। ସିଏ ସେହି ରୂପକଳ୍ପକୁ ଆହୁରି ବିସ୍ତାର କରି ତା'ର ସାମ୍ପ୍ରତିକ ପରିପ୍ରେକ୍ଷୀ ସନ୍ଧାନ କରିବାରେ ବ୍ୟସ୍ତ ରହିଥାନ୍ତି। ଯେତେବେଳେ ତାଙ୍କର **Ganga to Ganges** (୨୦୦୩) ଚିତ୍ର ପ୍ରଦର୍ଶନୀ ଜୁରିକ୍ ନଗରୀରେ ଅନୁଷ୍ଠିତ ହେଲା ସେତେବେଳେ ସିଏ ଏହି ପାହାଡ଼ ରୂପକଳ୍ପକୁ ହିମାଳୟର ଅନ୍ୟତମ ଉତ୍ତୁଙ୍ଗ ଶିଖର ଭାବେ (ବା ମନ୍ଦର ପର୍ବତ ଭାବେ) କଳ୍ପନା କଲେ ଓ ତାହା ଅନ୍ୟ ଦୁଇ ପାହାଡ଼ (ନିତମ୍ବ ବିବେଚନା କରାଯାଇପାରେ) ସନ୍ଧିରୁ ଆକାଶକୁ ଭେଦିବାର ଦର୍ଶେଇଲେ। ପାହାଡ଼ ଉଭବିଥିବା ମୂଳରୁ ଗଙ୍ଗାର ଉତ୍ପତ୍ତି ମଧ୍ୟ ସମ୍ଭବ ହେଲା । ଏହି ରୂପକଳ୍ପରେ ନିହିତ କାମପ୍ରସଙ୍ଗ ଅତ୍ୟନ୍ତ ସାରଗର୍ଭକ, ପ୍ରଚ୍ଛନ୍ନ ଅଥଚ ଗୁରୁତ୍ୱପୂର୍ଣ୍ଣ। ପାରମ୍ପରିକ ଓଡ଼ିଆ ଶିଳ୍ପୀର ପାହାଡ଼ ରଚନା କେବଳ ପାହାଡ଼ର ବ୍ୟୁତ୍ପତ୍ତି ଭିତରେ ସୀମିତ ରହିଥିଲା ବେଳକୁ ଦିନନାଥଙ୍କ ପାହାଡ଼ ଚିତ୍ର ବେଶି ବେଶି ତାର ସମସ୍ତ ସମ୍ଭାବ୍ୟ ସାଂପ୍ରତିକ ରୂପକଳ୍ପକୁ ଆବୋରି ବସିଲା। ପାହାଡ଼ର ମହାକାଗତିକ ପ୍ରତୀକାତ୍ମକତା ସଂପର୍କରେ ସଂପୂର୍ଣ୍ଣ ଅବଧାରଣା ପାଇଁ ଦିନନାଥଙ୍କ **ଗଙ୍ଗାବତରଣ** ଚିତ୍ରୋପନ୍ୟାସ ପଠନୀୟ। ଏଥିରେ ବର୍ଣ୍ଣିତ ଅବତରଣ ଓ ଉତ୍ତରଣର ଦାର୍ଶନିକତା ତାଙ୍କ ଚିତ୍ରକୁ ବୁଝିବାରେ ସହାୟକ ହେବ।

ଗୀତଗୋବିନ୍ଦ ସଂପର୍କିତ ଚିତ୍ରମାନଙ୍କ ମଧ୍ୟରେ ପ୍ରତୀକ୍ଷା ବା ପ୍ରତୀକ୍ଷମାଣତା ଅନ୍ୟଏକ ଭାବମୟ କଥାବସ୍ତୁ। ରାଧାଙ୍କ ଚିତ୍ର ଅଙ୍କନ ମଧ୍ୟରେ ଏହି 'ଭାବ' ରୂପ-ଆଲେଖ୍ୟ ଭାବେ ଦେଖାଯାଇଛି। ଉଭୟ ରାଧା ଓ କୃଷ୍ଣଙ୍କ ପ୍ରେମାବେଶ ସମୟର ଅନେକ ମୁହୂର୍ତ୍ତ କେବଳ ପ୍ରତୀକ୍ଷାରେ କଟିଛି। ସେହି ଚିତ୍ରମାନଙ୍କ ମଧ୍ୟରେ ରାଧା ଯମୁନାକୂଳର କୁଞ୍ଜରେ ଉତ୍‌କଣ୍ଠାର ସମୟ ବିତେଇଲା ବେଳକୁ ଅନ୍ୟକୁଞ୍ଜରେ କୃଷ୍ଣ ପ୍ରେମାତୁର ହୋଇ ରାଧାଙ୍କୁ ଅପେକ୍ଷା କରିଛନ୍ତି । ଏସବୁ ଦୃଶ୍ୟରେ ରାଧା ଉତ୍‌କଣ୍ଠିତ ହୋଇ ପ୍ରାୟତଃ ଦଣ୍ଡାୟମାନ, ଦୃଷ୍ଟି ଦୂର ଦିଗବଳୟରେ ନତୁବା ପାଦପାଖ ଭୂମି ଉପରେ ନିବଦ୍ଧ। ଏଣେ କୃଷ୍ଣ ଯମୁନାକୂଳରେ ବିଗଳିତ ଅଙ୍ଗ ସମ୍ଭାର ଓ ବିକଳ ମନ ନେଇ ରାଧାଙ୍କ ଅପେକ୍ଷାରେ ବସିଛନ୍ତି । **Ritual Imagery** ଶୀର୍ଷକ ଚିତ୍ରଗୁଚ୍ଛ ମଧ୍ୟରେ ଶାୟିତା ରାଧିକାଙ୍କର ଚିତ୍ରଟି ସବୁଜ ପ୍ରାନ୍ତର ଉପରେ ଚମତ୍କାର ବର୍ଣ୍ଣବିଭା ସୃଷ୍ଟି କରିଛି । ଦେହର ସୁବର୍ଣ୍ଣ ଓ

Digitized by srujanika@gmail.com

ନୀଳର ସମନ୍ୱିତ ବର୍ଣ୍ଣଯୋଜନାରୁ ସ୍ପଷ୍ଟ ହୋଇଯାଉଛି ଯେ ସେ କୃଷ୍ଣପ୍ରାଣା । ପ୍ରାଣରେ କୃଷ୍ଣଭାବ ସଂଚରି ଯାଇଥିବାରୁ ରାଧାଙ୍କ ଦେହ ଠାଏ ଠାଏ ଘନ ନୀଳ ବର୍ଣ୍ଣରେ ଆକ୍ରାନ୍ତ। ଏଭଳି ପରିକଳ୍ପନା ବିଚିତ୍ର ଓ ଓଡ଼ିଆ କାବ୍ୟ ପରମ୍ପରାର ଆଦର୍ଶରେ ପ୍ରଭାବିତ। ଚିତ୍ରର ଉପରିଭାଗରେ ବାନ୍ଧଶାଢ଼ିର ଧଡ଼ି ଭଳି ମନେ ହେଉଥିବା ସନ୍ତରଣଶୀଳ ମାଛଧାଡ଼ି ଥାଇ ଯମୁନା ନଦୀ ପ୍ରବାହିତ। ଯମୁନା ନଦୀର ହୁଡା ଉପରେ ତାଳବଣ, ଅଲେଖ ବାବାଜୀଙ୍କ ତାଳପତ୍ର ଛତାଭଳି ଦେଖାଯାଉଥିବା ଧାଡ଼ି ଧାଡ଼ି ତାଳଗଛ ପରିବେଶକୁ ରମଣୀୟ ଓ ରହସ୍ୟମୟ କରିଦିଏ। ଏହି ସବୁ ଚିତ୍ରରେ dry brush ସଞ୍ଚାଳନର କୌଶଳ ରଙ୍ଗର ପରସ୍ତ ଉପରେ ଚମକ ଆଣିଦେବା ସଙ୍ଗେ ସଙ୍ଗେ ସ୍ଥିର ବର୍ଣ୍ଣକୁ ଗତିଶୀଳ କରିଦିଏ। ତୂଳୀରେ କମ୍ ଶୁଖିଲା ରଙ୍ଗ ନେଇ କାନଭାସ୍ ଉପରେ ଛନ୍ଦୋବଦ୍ଧ ଭାବରେ ଘଷିଲେ ସ୍ଥିର ଭଳି ମନେହେଉଥିବା ରଙ୍ଗର ପରସ୍ତ ଉପରେ ଏକ ଉଜ୍ଜ୍ୱଳ ଚମକ ଦେଖାଦିଏ। ଏହି କୌଶଳ ଦିନନାଥ ଆବିଷ୍କାର କରିନାହାନ୍ତି କେବଳ, ଓଡ଼ିଶା ପରିପ୍ରେକ୍ଷୀରେ ପ୍ରଥମମକରି ବ୍ୟବହାର କରିଛନ୍ତି । ବର୍ତ୍ତମାନ ଓଡ଼ିଶାର ସାଂପ୍ରତିକ ଶୈଳୀରେ କାମ କରୁଥିବା ଚିତ୍ରଶିଳ୍ପୀମାନେ soft brush ରେ କାମ କରୁଥିବାରୁ hog hair brushର dry technique ବିରଳ ମନେହୁଏ । ବ୍ରିଟିଶ୍ କାଉନ୍‌ସିଲ୍‌ର ସଂଗ୍ରହରେ ଥିବା **କୃଷ୍ଣଙ୍କ ଅଭିସାର** ଚିତ୍ରରେ ଗୋଟିଏ ଛୋଟିଆ ମୁଣ୍ଡିଆ ଉହାଡ଼ରେ କୃଷ୍ଣ ରାଧାଙ୍କ ପ୍ରତୀକ୍ଷାରେ । ଏଣେ ବାଘଟିଏ ମୁଣ୍ଡିଆ ଉପରୁ ତାଙ୍କ ଉପରକୁ ଝାମ୍ପଦେବାକୁ ଉଦ୍ୟତ। ଏଠାରେ ବାଘର ରୂପକଳ୍ପ କୃଷ୍ଣଙ୍କ ଆନ୍ଦୋଳିତ ଚିନ୍ତାର ରୂପ ନେଇ ଅଲଗା ଭାବରେ ଚିତ୍ରପ୍ରିତିରେ ଦେଖାଦେଇଛି । ବାଘର ଚିତ୍ରକୁ ରାଧାଙ୍କ ସଂପର୍କ ଭିନ୍ନ ଏକ ସ୍ୱତନ୍ତ୍ର ସାଧାରଣ ରୂପବିମ୍ବ ବୋଲି ସ୍ୱୀକାର କରିଗଲେ ମନସ୍ତାତ୍ତ୍ୱିକ ପ୍ରକ୍ଷେପର କାର୍ଯ୍ୟକାରିତା ବ୍ୟାହତ ହେବାର ସମ୍ଭାବନା ଅଛି। ଏଠାରେ ପୁଣି ରମେଶ ପ୍ରସାଦ ପାଣିଗ୍ରାହୀଙ୍କ ପର୍ଯ୍ୟାଲୋଚନାରୁ କିଛି ଉଦ୍ଧାର କରିବା ଅସଙ୍ଗତ ହେବନି:Pathy's ritual images exude a vision of endlessly proliferating and self-enmeshing pshchical structure that drive him to seek consolation in the cushioned world of mythical and metaphysical speculation. His imagination of fishes, jungles, deers and tigers, fat thighs with a deliberate lack of pubic jungles (post modern aesthetics) seem very powerful in creating another nature out of the material (**Ritual Imagery** 1997)

ସେଭଳି ପ୍ରତୀକ୍ଷାର ଅନ୍ୟ ଗୋଟିଏ ଚିତ୍ର ହେଲା ପାହାଡ଼ପରୀ ଓ କାମଧେନୁ (**Mountain Spirits and Mythical Cow**) ଗୋଟିଏ ଛୋଟିଆ ମୁଣ୍ଡିଆ ପାଖରେ ଉତ୍‌କଣ୍ଠାର ସହ ଅପେକ୍ଷା କରିଥିବା କୃଷ୍ଣ। ପ୍ରତୀକ୍ଷାର ଅନ୍ତ ଘଟାଇ ଅଦୂରରେ ପକ୍ଷଯୁକ୍ତ କାମଧେନୁଟିଏ ତାଙ୍କରି ଆଡ଼କୁ ଅଗ୍ରସର ହୋଇଛି। ଏଣେ ସେ ହୃଦୟରେ ସ୍ଥାନ ଦେଇ ଥିବା ରତିଦଗ୍ଧ ଗୋପାଙ୍ଗନାମାନେ ସ୍ୱର୍ଗର ପରୀ ବା ଗାନ୍ଧର୍ବୀଙ୍କ ଭଳି ଛୋଟପାହାଡ଼ଟିକୁ ଆବୋରି ଯାଇଛନ୍ତି। ପରୋକ୍ଷରେ ସେମାନେ ହିଁ ପାହାଡ଼ (ପ୍ରତିବନ୍ଧକ) ସାଜି ରାଧା ଓ କୃଷ୍ଣଙ୍କ ଚିରନ୍ତନ ପ୍ରେମ ସମ୍ପର୍କ ମଧ୍ୟରେ ବାଧକ ସାଜିଛନ୍ତି। ମନେହୁଏ ନାଲିରଙ୍ଗରେ ଚିତ୍ରିତ କାମଧେନୁ ରାଧାସ୍ୱରୂପା। ସିଏ ହିଁ ପ୍ରତୀକ୍ଷାରତ କୃଷ୍ଣଙ୍କର ଅଭୀପ୍‌ସିତ ଚରିତ୍ର। କୃଷ୍ଣ ଓ ରାଧାଙ୍କର ପ୍ରେମସଂପର୍କକୁ ନିବିଡ଼ତର ଭାବେ ଦେଖେଇବା ପାଇଁ ଗୋପାଙ୍ଗନା ଗୋଷ୍ଠୀର ରୂପରଚନା ଗୁଡ଼ିକୁ dry brush technique ରେ ଶୁଭ୍ରଛାୟା ମୂର୍ତ୍ତିଭଳି ଦର୍ଶାଇ ଦିଆଯାଇଛି। ଚିତ୍ରରେ କୃଷ୍ଣ ଗାଢ଼ନୀଳବର୍ଣ୍ଣରେ ଚିତ୍ରିତ ହେଲାବେଳକୁ କାମଧେନୁରୂପୀ ରାଧା ନାଲି ରଙ୍ଗରେ ଚିତ୍ରିତ। ଛବିଟିକୁ ଦେଖିଲେ ପ୍ରଥମେ ଏହି ଦୁଇଟି ମୋଟିଫ୍ ସହସା ଆଖିରେ ପଡ଼ନ୍ତି। କୃଷ୍ଣ ବୋଲି ଚିହ୍ନଟ ପାଇଁ ନୀଳବର୍ଣ୍ଣର ପ୍ରତୀକ ବ୍ୟତୀତ ଅନ୍ୟ କୌଣସି ଉପାଦାନ ନାହିଁ। ନା ଅଛି ବଂଶୀ, ନା ମୟୂର ପୁଚ୍ଛ ନା ପୀତାମ୍ବରୀ ପାଟ। ସେ ସଂପୂର୍ଣ୍ଣ ଉଲଗ୍ନ, ବେଶ୍ ହୃଷ୍ଟ ପୁଷ୍ଟ ଗାଈଆଳ ଭେଣ୍ଡାଟିଏ ଯାହା ପାଖରେ ପୌରୁଷ ଲହଡ଼ା ଭାଙ୍ଗୁଛି। କାମଧେନୁ ତ ପ୍ରାଚୁର୍ଯ୍ୟର ଓ ନାରୀତ୍ୱର ଗନ୍ତାଘର। ଏହି ଦୁଇଜଣଙ୍କ ଭିତରେ ପାହାଡ଼ ଆପାତତଃ ପ୍ରତିବନ୍ଧକ ଭଳି ମନେ ହେଉଥିଲେ ମଧ ପ୍ରତିବନ୍ଧକ ନୁହେଁ, ବରଂ ପ୍ରାପ୍ତିର ଆଶାକୁ ଦମ୍ଭ ଯୋଗାଉଥିବା ଗୋଟିଏ ସମ୍ମୋହନ। କାରଣ ଏହାକୁ ଡୁଚ୍ଛ କଲେହିଁ କାମଧେନୁ-ରାଧାଙ୍କ ସାନ୍ନିଧ୍ୟର ଉପଲବ୍ଧି। ଗୋପାଙ୍ଗନାଙ୍କ ଗହଣକୁ ଜଣେ ପରୀ ଉଡ଼ି ଆସିବା ବେଳେ କୃଷ୍ଣଙ୍କର ନଗ୍ନତାକୁ ଢାଙ୍କି ଦେଉଛି। କୃଷ୍ଣଙ୍କ ଡାହାଣ ହାତର ମୁଦ୍ରା ଆବାହନୀ ଭଙ୍ଗିରେ ଚିତ୍ରମଧ୍ୟରେ ଅତ୍ୟନ୍ତ ପରିସ୍ଫୁଟ। ପାହାଡ଼ ସହିତ ତାଳମେଳରେ ପଦ୍ମପୋଖରୀ ଓ ନୀଳପଦ୍ମର ବର୍ଣ୍ଣିଳ ସଂଯୋଗ ଅତି ରୁଚିପୂର୍ଣ୍ଣ। ଏହି ଚିତ୍ରଟି କୁଆଲାଲୁମ୍ପୁରର ବିଶିଷ୍ଟ ଓଡ଼ିଶୀ ନୃତ୍ୟଗୁରୁ ରମଲି ଇବ୍ରାହୀମ୍‌ଙ୍କ ସୂତ୍ର ପାଉଣ୍ଡେସନ୍ ଦ୍ୱାରା ସଂଗୃହୀତ।

ପାହାଡ଼କୁ କେନ୍ଦ୍ରକରି ପ୍ରତୀକ୍ଷାର ଅନ୍ତ ଘଟାଉଥିବା ତାଙ୍କର ଅନ୍ୟଗୋଟିଏ ଉଲ୍ଲେଖନୀୟ ଚିତ୍ରହେଲା **ଅସରନ୍ତି ଚୁମ୍ବନ** (Eternal Kiss) । ଚିତ୍ରର ମଧ୍ୟଭାଗରେ ସ୍ୱର୍ଣ୍ଣାଭ ପାହାଡ଼ ସତେ ଅବା ବିଚ୍ଛୁରିତ ପ୍ରାଣର ସମ୍ଭାର ନେଇ ଉଭା ହୋଇଛି। ତାର ଶିଖରରେ ଚୁମ୍ବନ ଆବଦ୍ଧ ଦୁଇଟି ମୁହଁ, ରାଧା ଓ କୃଷ୍ଣଙ୍କର। ମନେହେଉଛି ପ୍ରେମ

Digitized by srujanika@gmail.com

ପାଇଁ ଦେହ ଯେଉଳି ଅମୂଳକ, ଚୁମ୍ବନ ପାଇଁ ମଧ ସେଉଳି ଦେହର ସ୍ଥିତି ଗୌଣ । ମନେହୁଏ ଯୋନି ନୁହେଁ, ମୁଖ ହିଁ କାମ ଓ ବନ୍ଧନର ଏବଂ ସଂପର୍କର ମୂଳ ସେତୁ । ପାହାଡ଼ ପାଦଦେଶରେ ଗୋଲାକାର ନୀଳଜଳର ପୁଷ୍କରିଣୀ ଓ ସେଥିରେ ନଅଗୋଟି ଦରପ୍ରସ୍ଫୁଟିତ ପଦ୍ମଫୁଲ । ସମଗ୍ର ଚିତ୍ରଟିର ପୃଷ୍ଠଭୂମିରେ ପଲ୍ଲବିତ କଅଁଳ ସବୁଜିମା ମନେହେଉଛି ସତେ ଅବା ପଦ୍ମପାଖୁଡ଼ାର ଅଭିଷେକ । ଏହି ଚିତ୍ରରେ ସାଂପ୍ରତିକ ପ୍ରତୀକାତ୍ମକତାକୁ ଲକ୍ଷ୍ୟ କରିବାର କଥା । ପାହାଡ଼ ଲିଙ୍ଗ, ପୁଷ୍କରିଣୀ ଯୋନି, ପଦ୍ମଫୁଲ ନବରସ, ଯୁଗଳ ମାଛ ଜୀବାତ୍ମା ଏବଂ ପରମାତ୍ମା ଓ ଚୁମ୍ବନରେ ଆବଦ୍ଧ ମୁଖ ମଣ୍ଡଳ ଦୁଇଟି ଚିରନ୍ତନ ପ୍ରେମ ଓ ଆକର୍ଷଣର । ଏହି ଚିତ୍ରଟିକୁ ଅନୁଶୀଳନ କଲେ ଉପଲବ୍ଧି କରିହୁଏ ପାହାଡ଼କୁ ନେଇ ଚିତ୍ରକାରଙ୍କ ସର୍ଜନାତ୍ମକ ବିବର୍ତ୍ତନ । ଏହି ଚିତ୍ରଟି କୁଆଲାଲୁମ୍‌ପୁରର କଳା ସଂଗ୍ରାହକ ରୋଜ୍ ଗନେନ୍ଦ୍ରଙ୍କ ଗ୍ୟାଲେରୀରେ ପ୍ରଦର୍ଶିତ ।

ପଦ୍ମ ପୁଷ୍କରିଣୀ ଚିତ୍ରଗୁଡ଼ିକର ସମୀକ୍ଷା କଲାବେଳେ **ପଦ୍ମପୋଖରୀ ଓ ମୃଗଯୂଥ** (The Pond and the Deer) ତୈଳଚିତ୍ରରେ ଅଙ୍କିତ ପଦ୍ମପୁଷ୍କରିଣୀର ସ୍ୱତନ୍ତ୍ର ରଚନା କଥା ଉଲ୍ଲେଖ କରିବାକୁ ଭୁଲି ଯାଇଥିଲି । ଚାରୋଟି ମୃଗ ଓ ମୃଗିଣୀଙ୍କୁ ମୁଖ୍ୟ କଥାବସ୍ତୁର ପ୍ରାଧାନ୍ୟ ଦେଇ ଏହି ଚିତ୍ରଟି ଅଙ୍କିତ । ଚାରୋଟି ଭିତରୁ ଗୋଟିଏ ମୃଗ କୃଷ୍ଣବର୍ଣ୍ଣର ଓ ତିନୋଟି ସୁବର୍ଣ୍ଣ ବର୍ଣ୍ଣର । ବାଁ ପଟରେ ଦୁଇଟି ମୃଗର ଛନ୍ଦାୟିତ ସ୍ଥିତିରୁ ଅନୁମାନ କରିହେଉଛି ଏହା ରତିକ୍ରୀଡ଼ାର ପୂର୍ବାଭାସ । କୃଷ୍ଣବର୍ଣ୍ଣର ମୃଗଟି ଅପେକ୍ଷାକୃତ କମ୍ ବୟସର ହୋଇଥିବା ହେତୁ ତାକୁ କୃଷ୍ଣଙ୍କ ଭୂମିକାରେ ସ୍ୱତଃ ଅବସ୍ଥାପିତ କରିଦେଉଛି । ପୁଷ୍କରିଣୀ ଯମୁନାନଦୀର ପ୍ରତୀକ ହୋଇପାରେ, କାରଣ ଓଡ଼ିଆ ତାଳପତ୍ର ଚିତ୍ର ପରମ୍ପରାରେ ଯମୁନା ସଦାକାଳେ ପୁଷ୍କରିଣୀ ରୂପରେ ଚିତ୍ରିତ । ଏହି ପୁଷ୍କରିଣୀର ସନ୍ତରଣରତ ମାଛଗୁଡ଼ିକ ଲକ୍ଷଣୀୟ । ସେମାନେ ସଂପୂର୍ଣ୍ଣ ଭାବେ ପାରମ୍ପରିକ ଓଡ଼ିଆ ଚିତ୍ରକାର ବାହାଘର ପାଇଁ ଆଙ୍କିଥିବା କାନ୍ଥଚିତ୍ର-ପୂର୍ଣ୍ଣକୁମ୍ଭ ଓ ରୋହିମାଛ ମୋଟିଫ୍‌ର ଅବିକଳ ସାଦୃଶ୍ୟ ବହନ କରନ୍ତି । ଚିତ୍ରକାରୀ ପରମ୍ପରାରେ ପଦ୍ମଫୁଲ ଓ ପଦ୍ମପତ୍ରର ରୂପଯୋଜନାରେ ବିଶେଷ ଫରକ ନାହିଁ । ଏହା କେବଳ ବର୍ଣ୍ଣପ୍ରକରଣର ଭିନ୍ନତାରୁ ବାରି ହେଇପଡ଼େ । ଛବିର ନିମ୍ନଭାଗର ପଦ୍ମପୋଖରୀ ସାଙ୍ଗରେ ତାଳ ରଖି ଉପର ମୁଣ୍ଡର ଉପବନ, ସେଥିର ତାଳ ତମାଳ ଗଛଧାଡ଼ି ଓ ତା ସହିତ ଉତ୍‌ଫୁଲ୍ଲିତ ଶୁକ ଶାରୀ ପକ୍ଷୀ ।

ପଦ୍ମ ପୁଷ୍କରିଣୀ ପ୍ରସଙ୍ଗରେ **ଚିରନ୍ତନ ପ୍ରେମିକ-ପ୍ରେମିକା** (Eternal Lovers) ଶୀର୍ଷକ ତୈଳଚିତ୍ରଟି ଆଲୋଚନା ପରିସରକୁ ଆସେ । ଚିତ୍ରଟିର ମଧ୍ୟଭାଗରେ ବର୍ତ୍ତୁଳାକାର ପୁଷ୍କରିଣୀ ଓ ତା'ର ଚତୁର୍ଦିଗ ବନଭୂମି । ବନଭୂମିରେ କ୍ରୀଡ଼ାରତ କୃଷ୍ଣ ଓ ରାଧା । ମନେହୁଏ ରାଧା ଅଭିମାନରେ, ସାମୟିକ ବିରହରେ ପୁଷ୍କରିଣୀର ଦକ୍ଷିଣ ଭାଗରେ । ସେ ନିଜର ରୂପଯୌବନକୁ ପ୍ରଦର୍ଶିତ କରି ନିଜ ଐଶ୍ୱର୍ଯ୍ୟର ସମ୍ମୋହନରେ ନିଜେ ବିହ୍ୱଳିତ ହୋଇ କୃଷ୍ଣସଙ୍ଗ ଅପେକ୍ଷାରେ । ଯଦିଓ ସେ କୃଷ୍ଣ-ପ୍ରେମ ପ୍ରସଙ୍ଗରେ ହାର ମାନିବାକୁ ପ୍ରସ୍ତୁତ ନୁହଁନ୍ତି ତଥାପି କାମନାଦଗ୍ଧ । ପୁଷ୍କରିଣୀର ଉତ୍ତର ପଟେ କୃଷ୍ଣ ମିଳନ ଆକାଂକ୍ଷାରେ ବ୍ୟାକୁଳ । ଚିତ୍ରଶିଳ୍ପୀ ପୁଷ୍କରିଣୀକୁ ପ୍ରେମ ପ୍ରସଙ୍ଗର ଲୁଚକାଳି ଖେଳରେ କୌତୁକିଆ ଭାବେ ବ୍ୟବହାର କରିଛନ୍ତି ।

ଦିଲ୍ଲୀ India International Centre ଠାରେ ଅନୁଷ୍ଠିତ ହୋଇଥିବା ପ୍ରଦର୍ଶନୀରେ ସ୍ଥାନିତ **The Pond and the Deer** ଚିତ୍ର ସଂପର୍କରେ ମୁଁ ଆଲୋକପାତ କରି ପୁଷ୍କରିଣୀର ନବ ରୂପ ରଚନା ବିଷୟରେ ସୂଚନା ଦେଇଛି । ଏହି ପ୍ରଦର୍ଶନୀରେ ପୁଷ୍କରିଣୀ ଆଧାରିତ ଆଉ ତିନି ଚାରୋଟି ଚିତ୍ର ସ୍ଥାନ ପାଇଥିଲା । ଏହି ସବୁ ଚିତ୍ରରେ ପୁଷ୍କରିଣୀ ମଧ୍ୟରେ ସ୍ନାନରତ ପୁରୁଷ ଓ ନାରୀଙ୍କ ଦେହ (ସେମାନଙ୍କୁ ନାୟକ ନାୟିକା କୁହାଯାଇପାରେ) ସାଧାରଣ ଜୈବିକ ଅନୁପାତିକତା ଦୃଷ୍ଟିରୁ କୌତୂହଳ ସୃଷ୍ଟିକରେ । ପୁଷ୍କରିଣୀର ଆୟତନ ସ୍ନାନରେ ମଜିଥିବା ବ୍ୟକ୍ତିମାନଙ୍କ ତୁଳନାରେ ଯଥେଷ୍ଟ ଛୋଟ । ଲାଗିବ ଏଭଳି ଗୋଟିଏ ପୁଷ୍କରିଣୀରେ ସ୍ନାନ କରିବା ବସ୍ତୁତଃ ଅସମ୍ଭବ । **କିନ୍ତୁ ଚିତ୍ରଶିଳ୍ପୀ ଓଡ଼ିଆ ପାରମ୍ପରିକ ଚିତ୍ରର ଅଣ-ଫଟୋଗ୍ରାଫୀୟ, ଯୁକ୍ତିସିଦ୍ଧ ଅନୁପାତ mythical perspective କୁ ସମ୍ମାନ ଦେଇ ତଥାକଥିତ ଏଭଳି ଏକ ବିସଙ୍ଗତି ସୃଷ୍ଟି କରିଛନ୍ତି । କିନ୍ତୁ ଚିତ୍ର ସର୍ଜନାର କାଳ୍ପନିକ ପ୍ରେକ୍ଷାପଟରେ ମିଥ୍‌ର ଏଭଳି ଆନୁପାତିକ ପ୍ରୟୋଗ ଯଥାର୍ଥ ମନେହୁଏ । Bathers** ଚିତ୍ରରେ ପ୍ରେମିକା (ରାଧା ବି କୁହାଯାଇପାରେ) ସ୍ନାନ ସାରି ଶ୍ୱେତପଦ୍ମଟିଏ ପୁଷ୍କରିଣୀରୁ ତୋଳି ତାହାକୁ ପ୍ରେମିକ ହାତରେ ସମର୍ପିଦେବାକୁ ଉପକ୍ରମ କରୁଛି । ପୁଷ୍କରିଣୀର ପରିସୀମା ଉଦ୍‌ବୃତ୍ତ ପ୍ରେମିକାର ଶରୀର ସ୍ୱର୍ଣ୍ଣାଭ ଦେଖାଯାଉଥିବା ବେଳେ ଜଳ ମଧ୍ୟରେ ଦୃଶ୍ୟ ହେଉଥିବା ଦେହ ନିଜସ୍ୱ ବର୍ଣ୍ଣ ହରେଇ ଦେଇଛି । ପ୍ରେମିକର ଦେହରେ ପଦ୍ମଫୁଲ ଓ ପଦ୍ମପତ୍ରର ଆଚ୍ଛାଦନ ଏବଂ ସନ୍ତରଣରତ ମାଛମାନଙ୍କର ସ୍ଥିତି ଅନ୍ୟପ୍ରକାରେ; ଜଳ ଭିତର ଓ ବାହାର ମଧ୍ୟରେ ଫରକ

Digitized by srujanika@gmail.com

ଆଣିଦେଇଛି । ଏଭଳି ଚିତ୍ର ସର୍ଜନାର କଳ୍ପନାକୌଶଳର ପ୍ରୟୋଗ ପୁଷ୍କରିଣୀକୁ ଏକ ବିଦଗ୍ଧ ଦୃଶ୍ୟରାଜିରେ ପରିଣତ କରିଦେଇ ପାରିଛି । ପୁଷ୍କରିଣୀକୁ ବ୍ୟବହାର ଉପଯୋଗୀ କରିବା ପାଇଁ ଓ ଭୟମୁକ୍ତ କରିବା ପାଇଁ ଶିଳ୍ପୀ ସାପମାନଙ୍କୁ ଜଳମଧ୍ୟରେ ସ୍ଥାନ ଦେଇନାହାନ୍ତି । ଆଗରୁ ଆଲୋଚିତ ହୋଇଥିବା ରାଧା-ପଦ୍ମପୁଷ୍କରିଣୀର ରୂପକଳ୍ପଠାରୁ ଏହାର କଳ୍ପନା ସ୍ୱପ୍ନଧର୍ମୀ ନୁହେଁ ବରଂ utilitarian ବା ସଂଭୋଗଧର୍ମୀ । ଏଣୁ ଏଠାରେ ପଦ୍ମଫୁଲଗୁଡ଼ିକ ମଣ୍ଡଳାକାର ନୁହେଁ । ଏଭଳି ରୂପ ସଂଯୋଜନାର ଅନ୍ୟଗୋଟିଏ ତୈଳଚିତ୍ର ହେଲା **Bather** ଯେଉଁଥିରେ ନାୟିକାଟିଏ ଏକାକିନୀ ସ୍ନାନ କରୁଥିବା ବେଳେ ତା ନାୟକର କଥା ଭାବୁଛି । ଏଭଳି ବି କୁହାଯାଇ ପାରେ ରାଧା କୃଷ୍ଣଙ୍କ ଦୀର୍ଘ ପ୍ରତୀକ୍ଷାରେ ରହି ନିଜ ଦେହରେ ବିରହଜ୍ୱାଳା ତୀବ୍ରଭାବରେ ଅନୁଭବ କରି କରି ଶେଷରେ ନିଜକୁ ଜ୍ୱଳନରୁ ମୁକ୍ତିଦେବା ପାଇଁ ଜଳ ମଧ୍ୟରେ ପଶିଯାଇଛନ୍ତି । ପୁଷ୍କରିଣୀର ସୀମିତତାରୁ ମନେହେବ ଜଳ ମଧ୍ୟ ଜ୍ୱଳନକୁ ପ୍ରଶମିତ କରିବା ପାଇଁ ସମର୍ଥ ନୁହେଁ । ପୁଣି କୃଷ୍ଣଙ୍କ ଗଭୀର ପ୍ରେମ ଓ ତଲ୍ଲୀନତାର ସନ୍ଦେଶ ନେଇ ଶୁକ ପକ୍ଷୀଟିଏ ତାଙ୍କ ପାଖକୁ ଉଡ଼ି ଆସି କହୁଚି, ତମ ବିରହର ଓ ଜ୍ୱଳନର ବେଳା ଅନ୍ତ ହେବାକୁ ଯାଉଛି, ଏଣୁ ହେ କାହ୍ନୁପ୍ରିୟା ଧୈର୍ଯ୍ୟ ରଖ ।

ମୁମ୍ବାଇର ତାଜ ହୋଟେଲରେ ପ୍ରଦର୍ଶିତ **The Moving Arrow** ଏକକ ଚିତ୍ର ପ୍ରଦର୍ଶନୀରେ ଚିତ୍ରଶିଳ୍ପୀ ନାରୀ ଓ କାର୍ (car)ର ମାନସିକ ଏବଂ ଦୈହିକ ସମ୍ପର୍କର ଅବଲମ୍ବନରେ ଚମତ୍କାର ରୂପସର୍ଜନା କରିବାରେ ସଫଳ ହୋଇଛନ୍ତି । ଆମେ ସାଧାରଣତଃ କହିଥାଉ ଗାଡ଼ି ଓ ବାଡ଼ି । ଭାର୍ଯ୍ୟାଟିଏ ଘରକୁ ଆଣିଲା ପରେ ପରିପୂର୍ଣ୍ଣ ସଂସାରର ତିନୋଟି ଗୁରୁତ୍ୱପୂର୍ଣ୍ଣ ପ୍ରାପ୍ତିକୁ ନେଇ ଏକଥା କୁହାଯାଇଥାଏ । ନାରୀ, ଗାଡ଼ି ଓ ବାଡ଼ି । ଏମିତି ବି ହେଇଥାଏ, ସମୟକ୍ରମେ ନାରୀର ସ୍ଥାନ ଗାଡ଼ି ଅକ୍ଳେଶରେ ନେଇଯାଏ । ଏହା ଏକ ମଧ୍ୟବିତ୍ତ ମାନସିକତା ନିଶ୍ଚୟ । ଏହି ପ୍ରଦର୍ଶନୀର ଯେଉଁ ଚିତ୍ରଟି ସହସା ଦୃଷ୍ଟି ଆକର୍ଷଣ କରୁଥିଲା, ତାହାହେଲା **Lovers in Park with Car** । ଦୁଇଜଣ ପ୍ରେମିକ ଓ ପ୍ରେମିକା ଗୋଟିଏ ପାର୍କରେ ଆଲିଙ୍ଗନ ମୁଦ୍ରାରେ ପରସ୍ପର ଦେହର ଉଷ୍ଣତା ଘେନିବାରେ ବ୍ୟସ୍ତ । ନିକଟରେ ଗଛମୂଳେ କାର୍‌ଟି ପାର୍କିଙ୍ଗ ହେଇଛି । ଏମିତିରେ ଦେଖିଲେ ଲାଗୁଛି ନର ଓ ନାରୀ ଦୁଇଜଣ ପ୍ରେମିକ ପ୍ରେମିକା ନିଶ୍ଚୟ । ଏହି ସାମୟିକ ଉଷ୍ଣତର ବନ୍ଧନରୁ ତାହାହିଁ ପ୍ରତିପାଦିତ ହେଉଛି । ଏଭଳି ହେଇଥିବାରେ ଆଚମ୍ବିତ ନୁହେଁ କାରଣ ସେମାନେ ସ୍ୱାମୀ ସ୍ତ୍ରୀ ନୁହନ୍ତି, ପ୍ରେମିକ ପ୍ରେମିକା ଏବଂ ଏହି ପ୍ରେମ ହୁଏତ ସାମାଜିକ ଦୃଷ୍ଟିରେ ଅବୈଧ । ପ୍ରେମର ପରିବେଶକୁ ଉଜ୍ଜୀବିତ କରିବା ପାଇଁ ମୟୂର/ମୟୂରୀ, ଗୋଟିଏ ଗାଡ଼ିର ବନେଟ ଉପରେ ଓ ଅନ୍ୟଟି ଅଦୂରରେ ଭୂଇଁରୁ କିଛି ଖୁଣ୍ଟି ଖାଇବାରେ ବ୍ୟସ୍ତ । ମୟୂରୀର ଏହି ପ୍ରତୀକଟି ଲୋକବିଶ୍ୱାସର ରୂପାୟନ ଭଳି ମନେହୁଏ । କୁହାଯାଇଥାଏ ମୟୂର ଓ ମୟୂରୀ ବର୍ଷଣମୁଖର ମେଘକୁ ଦେଖି ନୃତ୍ୟ କରନ୍ତି । ନୃତ୍ୟକାଳରେ କାମୋନ୍ମାଦନାର ଆତିଶଯ୍ୟରେ ମୟୂରର ବୀର୍ଯ୍ୟସ୍ଖଳନ ଘଟେ ଓ ମୟୂରୀ ତାକୁ ଭୂମିରୁ ଖୁଣ୍ଟିଖାଇ ଗର୍ଭବତୀ ହୁଏ । ଚିତ୍ରଟିରେ ବ୍ୟବହୃତ ଗାଢ଼ ନାଲି-ଆତୁରଙ୍ଗ, ଆଲ୍‌ଟ୍ରାମେରିନ ନୀଳ (ultramarine) ଏବଂ ଘନ ହଳଦିଆ (chrome yellow) ଚିତ୍ରର ଭାବାବେଶକୁ ନିବିଡ଼ତର କରିବାରେ ସକ୍ଷମ ହୋଇଛି ।

ଗାଡ଼ିର ଅନ୍ତରଙ୍ଗତାକୁ ଅର୍ଥପୂର୍ଣ୍ଣ କରିବା ପାଇଁ ଚିତ୍ରଶିଳ୍ପୀ ପାର୍କକୁ ପୃଷ୍ଠଭୂମି ଭାବେ ବ୍ୟବହାର କରିଛନ୍ତି । The Moving Arrow ପ୍ରଦର୍ଶନୀର ଦ୍ୱିତୀୟ ଚିତ୍ର **Meeting of Lovers** ରେ ନାୟକ ଓ ନାୟିକା ପରସ୍ପର ଦେହର ସମ୍ଭାବନାକୁ ଆବିଷ୍କାର କରିବାରେ ବ୍ୟସ୍ତ । ପଟ୍ଟଭୂମି କୌଣସି ଗୋଟିଏ ସମୁଦ୍ରର ବେଳାଭୂମି ଯେଉଁଠି ସଯତ୍ନେର୍ଦ୍ଧିତ କଦଳୀ ବଣଟିଏ ଇନ୍ଦ୍ରଧନୁର ସାତରଙ୍ଗକୁ ତୋଳି ଧରିଛି । ସେଇଠି ଗଛ ଉହାଡ଼ରେ ନାଲି କାର୍‌ଟିଏ ପାର୍କିଙ୍ଗ୍ କରା ହେଇଛି ଏବଂ ସେମାନଙ୍କ ଐକାନ୍ତିକ ମିଳନକୁ ରସଘନ କରିବାପାଇଁ ବାଳିମୃଗଟିଏ ସେମାନଙ୍କୁ ସତୃଷ୍ଣ ଚାହାଣିରେ ଅନେଇ ରହିଛି । ପ୍ରଥମ ଚିତ୍ର ଭଳି ଏହି ଚିତ୍ରରେ ମଧ୍ୟ ଉଲଗ୍ନ ଦେହର ରାଜତ୍ୱ । ସତେ ଯେଭଳି କାର୍, ପ୍ରେମିକ, ପ୍ରେମିକା କଦଳୀବଣ, ସମୁଦ୍ରବେଳା ଓ ଚିତ୍ରମୃଗ ସମସ୍ତେ ସେମାନଙ୍କ ଆଦିମତାରେ (elementality ରେ) ଆବିଷ୍ଟ । କାର୍ କଥା କହିବାକୁ ଯାଇ ମଧ୍ୟ କାର୍ କଥା ସାମାନ୍ୟ ବ୍ୟଞ୍ଜନା ମଧ୍ୟରେ ସୀମିତ କରିଦେଇ ପ୍ରେମ ପ୍ରସଙ୍ଗକୁ ହିଁ ଚିତ୍ରଶିଳ୍ପୀ ଗୁରୁତ୍ୱ ଦେଇଛନ୍ତି ।

ଏହି କ୍ରମର ତୃତୀୟ ଚିତ୍ର **Lovers Relaxing in Park with Car** ମଧ୍ୟ ଉପବନର ପରିସୀମା ମଧ୍ୟରେ ଘଟୁଛି । ଉପବନ ସେଭଳି କିଛି ସଯତ୍ନବର୍ଦ୍ଧିତ ଉଦ୍ୟାନ ନୁହେଁ । ପ୍ରେମ ଉଲ୍ଲାସର ସୀମିତତାକୁ ସ୍ୱୀକାର ନ କରିବା ଅଭିପ୍ରାୟରେ ଉପବନର ବୃକ୍ଷରାଜି ସେମାନଙ୍କ ସ୍ୱାଭାବିକ ଢଙ୍ଗରେ ସମସ୍ତ ସ୍ୱାଧୀନତା ଉପଭୋଗ କରିବାରେ ସତେ ଯେଭଳି ସାଫଲ୍ୟର କାରନାମା ଘୋଷଣା କରୁଛନ୍ତି । ପ୍ରେମିକ ଓ ପ୍ରେମିକା ପ୍ରେମାଳାପରେ ମଗ୍ନ । ପ୍ରେମିକାଟିର ଅଙ୍ଗସୌଷ୍ଠବର ପ୍ରଦର୍ଶନ ମଧ୍ୟରେ ସ୍ତନର ଦୋଳନ ଓ ନିତମ୍ବର ମାଂସଳ ବିସ୍ତାର ଚିତ୍ରଟିକୁ

Digitized by srujanika@gmail.com

ରସଦଗ୍ଧ କରିଦେଇ ପାରିଛି। ନାଲି ରଙ୍ଗର କାର୍ ଓ ନାଲି ଦେହର ପ୍ରେମିକା ଚିତ୍ରର ଅର୍ଦ୍ଧେକରୁ ଅଧିକ ଭୂମି ଆବୋରି ରହିଛନ୍ତି। ପ୍ରେମିକ ମନେହୁଏ ପ୍ରେମ କାଙ୍ଗାଳ ଓ ଅସହାୟ ଭାବେ ଛବିର ତଳ ପ୍ରେମ ଉପରେ ନିଜକୁ ବିସ୍ତାରି ଦେଇଛି।

ଚିତ୍ରଶିଳ୍ପୀ ତାଙ୍କର ଅନ୍ୟାନ୍ୟ 'କାର୍ ଓ ନାରୀ' ଚିତ୍ରରେ ପ୍ରେମିକର ଉପସ୍ଥିତିକୁ ସଂପୂର୍ଣ୍ଣ ଭାବେ ଗୌଣ କରିଦେଇ କେବଳ ନାରୀ ଓ କାର୍‌ର ସଂପର୍କ ଉପରେ ଦୃଷ୍ଟି ନିବଦ୍ଧ କରିଛନ୍ତି। ତାଙ୍କ ଦୃଷ୍ଟିରେ ମନେହୁଏ କାର୍ ଯେଉଁଳି ଅନ୍ୟ ଏକ ନାରୀ ଓ ସହଚରୀ। ଏଭଳି କି ସେ ମଧ୍ୟ (**My Car and My Wife, My Wife Holding Her Car, My Car and the Yellow Parrot** ଏବଂ **My Wife Sleeping By Her Car** ଇତ୍ୟାଦି) **କାର୍ ପାଖରେ ପ୍ରଗଲ୍ଭା। ଏହି ଚିତ୍ରମାନଙ୍କରେ ନାରୀ ଓ କାର୍‌ର ସାନିଧ୍ୟ ଓ ସାନିଧ୍ୟର ସାନ୍ଦ୍ରତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ। ବେଳେ ବେଳେ ନାରୀ ନିଜକୁ କାର୍ ପାଖରେ ସମର୍ପି ଦିଏ ସତେ ଯେଉଁଳି ସେ ପ୍ରେମିକ ପାଖରେ ନିଜକୁ ସମର୍ପେ । ନାରୀର ମାନସିକତା ବସ୍ତୁବାଦୀ ସଂସାରରେ ବସ୍ତୁକୈନ୍ଦ୍ରିକ ହେବାପାଇଁ ଏକରକମ ବାଧ୍ୟ ଯାହା ଏସବୁ ଚିତ୍ର ରଚନାରୁ ସ୍ପଷ୍ଟ ହୋଇଯାଉଛି ଏବଂ ଶେଷରେ ନାରୀଟି ନିଜେ ଗୋଟିଏ କାର୍‌ରେ ପରିଣତ ହୋଇଯାଉଛି** (**Car as Devi** ଚିତ୍ରର ଚାରୋଟି ଭିନ୍ନ ସଂସ୍କରଣ ଦ୍ରଷ୍ଟବ୍ୟ)। ଏଭଳି ବିବର୍ତ୍ତନକୁ କ'ଣ ବସ୍ତୁର ଉତ୍ତରଣ କହିହେବ ନା ମଣିଷର ପ୍ରାଣହୀନ ବସ୍ତୁକରଣ ବା ବାସ୍ତବୀକରଣ କହିହେବ ! ତୀବ୍ର ସଂଲଗ୍ନତା ଓ ବସ୍ତୁନିଷ୍ଠତା ଲୋଭ, ମାୟା ଓ ହିଂସାର କାରଣ ପାଲଟି ଯାଇ ନାରୀଟିଏକୁ ଦେହଟିଏ କରିଦିଏ ଏବଂ ସେ ଦେହ ଶେଷରେ କାର୍‌ଟିଏରେ ପରିଣତ ହେଇଯାଏ। ଏଭଳି ବିବର୍ତ୍ତନ ପ୍ରେମ ସଂପର୍କକୁ, ଦେହ ସଂପର୍କ ଓ ଶେଷରେ ବସ୍ତୁପ୍ରେମରେ ପରିଣତ କରିଦିଏ । ଯାହା ପ୍ରଥମେ ପ୍ରଥମେ **Lovers in Park with Car** ଚିତ୍ରରେ ନାରୀ ସ୍ୱାଧୀନତା ଭଳି ମନେହୁଏ ତାହା ଶେଷରେ ନାରୀର ମୌଳିକ ମାନବୀୟ ଆବେଦନକୁ ଗୋଟିଏ ଯନ୍ତ୍ରର ସମ୍ଭୋଗଠାରୁ ମଧ୍ୟ ହୀନ କରିଦିଏ। ଏହି ଚିତ୍ରଗୁଡ଼ିକ ଦୈହିକ ପ୍ରେମର ବ୍ୟର୍ଥତା ଓ ଆଧୁନିକ ସମାଜର ବିପନ୍ନ ମାନସିକତାକୁ ହିଁ ସୂଚାଇ ଥାଏ। ଯାହା ଗତିଶୀଳ ବୋଲି ଆପାତତଃ ମନେହୁଏ ତାହା ବସ୍ତୁତଃ ସ୍ଥିର। ଯେଉଁ ଶର ଧନୁରୁ ନିକ୍ଷେପିତ ହୋଇଗଲା ବୋଲି ଲାଗେ ତାହା ପ୍ରେରକ ପାଖକୁ ଫେରିଆସେ ବା ତା'ର ଉତ୍ପତ୍ତି ସ୍ଥାନରେ ହିଁ ଅଟକି ରହେ। ଗତି କେବଳ ଦୃଷ୍ଟି-ଉତ୍ସୁକତା ମାତ୍ର। କାର୍-ନାରୀ ସଂପର୍କର ଉତ୍ତରଣରେ ତାକୁ ନେଇ ଦେବୀ କରିଦେବାରେ ଶିଳ୍ପୀଙ୍କ ଅବବୋଧ ନା ଆସ୍ପର୍ଦ୍ଧା? ବ୍ୟଞ୍ଜନା ଖୁବ୍ ତୀର୍ଯ୍ୟକ୍ ମନେହୁଏ। ସୌରୀନ୍ଦ୍ର ବାରିକ ନାରୀ ଓ କାର୍ ସମ୍ପର୍କରେ ଯାହା କହନ୍ତି ତା ହେଲା– In this series car is a powerful motif of modernity, of middle class psyche, an objectified luxury and the quintessence of relationship-love and the summum-bonum of living-leisure. The red colour of the car is suggestive of passion, possibility and the pang of the totality of life. Pathy's painted cars bereft of mechanical melancholia speak of feministic malleabiity. Car has a sexual pretension of being owned like the 'perceived' body- "My Car" and "My Wife" in that order. (**The moving Arrow**, 1998)

ଦିନନାଥଙ୍କ ଅନ୍ୟ ଗୋଟିଏ ଉଲ୍ଲେଖନୀୟ ଚିତ୍ରଗୁଚ୍ଛ ହେଲା**Ganga to Ganges** । **ଏହି ଚିତ୍ରାବଳୀରେ ଧର୍ମୀୟ ଭାବନା, ଆଧାତ୍ମିକତା ଓ ପୌରାଣିକତା ସାଙ୍ଗକୁ ମାନବୀୟ ଲୋଲୁପତା ଓ ସାମାଜିକ ଅବକ୍ଷୟ ଗଙ୍ଗାଭଳି ଏକ ପବିତ୍ର ନଦୀକୁ କଳୁଷିତ କରିବା ସହିତ, ଭାରତୀୟ ସଂସ୍କୃତିର ଅସ୍ମିତାକୁ ମଧ୍ୟ ଚଳିତ୍ଚଳାନ୍ତ କରିଦେଇଛନ୍ତି।** ଏହି ଅବକ୍ଷୟର ଆରମ୍ଭ ହେଉଛି ଗଙ୍ଗାର ବିକୃତ ନାମକରଣ ଗେଞ୍ଜେସ୍ (Ganges)ରୁ। ଏହା ଉପନିବେଶୀୟ ସ୍ଥିତିର ଏକ ସ୍ୱାଭାବିକ ପ୍ରକାଶ ହେଇପାରେ କିନ୍ତୁ ଗଙ୍ଗାର ଅବକ୍ଷୟ ସହିତ ଏହି ପାରିଭାଷିକ ଶବ୍ଦର ସରଳ କିନ୍ତୁ ଅପ୍ରାକୃତିକ ପ୍ରକାଶ ସତେ ଯେଉଁଳି ଯୋଡ଼ି ହେଇଯାଇଛି। ଯାହା ଅଗଣିତ ଭାରତୀୟଙ୍କ ଧର୍ମୀୟ କଳ୍ପନା ଓ ଚେତନାର ନିର୍ଯ୍ୟାସ ଥିଲା ତାହା ଶେଷରେ ଶସ୍ତା ପର୍ଯ୍ୟଟନର ଏକ ଅବଲମ୍ବନ ଭାବେ ଦେଖାଦେଇଛି। ଏହା ଗଙ୍ଗାନଦୀର ଅଧୋଗତି ନା ଭାରତୀୟ ଜନମାନସର ଅଧୋଗତି ତାହା ବିଚାର୍ଯ୍ୟ। ଏ ସଂପର୍କର ଅବିମୃଶ୍ୟକାରିତାରେ  ସନ୍ଦେହର ଅବକାଶ ନାହିଁ। ଗୋଟିଏ ଅନ୍ୟକୁ ପ୍ରଭାବିତ କରିଛି।

**The Pinnacle and the Flow** ୧ ଓ ୨ ଚିତ୍ରରେ ଚତ୍ରଶିଳ୍ପୀଙ୍କ କଳ୍ପନାରେ ଗଙ୍ଗାର ଉତ୍ସ ଯାହା ଜୀବନର ଉତ୍ସ ମଧ୍ୟ ତାହା। ଉତ୍ସ ହିଁ ଯୋଗ ଓ ସଂଗମର କ୍ଷେତ୍ର। ହିମାଳୟ ଶିବଲିଙ୍ଗର ଉର୍ଦ୍ଧ୍ୱଗାମୀ ରୂପଶୌର୍ଯ୍ୟର ଆଧାର ଓ ଉତ୍ସ ଯୋନିର ମହାଗର୍ଭ ମଧ୍ୟରେ ବିଲୀନ। ଏହି ପ୍ରଥମ ଦୁଇଟି ଚିତ୍ରର ଗୋଟିଏ ପାର୍ଶ୍ୱରେ ଗଙ୍ଗା ଲହରୀର ଧ୍ୱନିମୟତା  ଶ୍ଳୋକ ଆକାରରେ ସିଲ୍କ୍ ସ୍କ୍ରୀନ୍ ରେ ମୁଦ୍ରିତ। ଏହାରି ମଧ୍ୟରେ ଉଦ୍ଭବର ଆଡ଼ମ୍ବର।

Digitized by srujanika@gmail.com

ଲିଙ୍ଗର ଉଦ୍ଭବ ଯେଉଁଠାରୁ ଗଙ୍ଗାର ଉତ୍ପତ୍ତି ମଧ ସେହି ଅଦୃଶ୍ୟ, ଅବର୍ଣ୍ଣନୀୟ ମହାଅନ୍ଧାର ଭିତରୁ । ଏହା ଗଙ୍ଗାର କେବଳ ଉତ୍ପତ୍ତି ନୁହେଁ, ଜନ୍ମ ଓ ମୃତ୍ୟୁର ରହସ୍ୟ ମଧ । ଉଭୟ ଚିତ୍ରରେ ଆକାଶ ଉଦିତ ସୂର୍ଯ୍ୟର ଓ ଚନ୍ଦ୍ରର ମହିମାରେ ବର୍ଣ୍ଣିଳ । ଗୋଟିକରେ ଦିନର ଓ ଅନ୍ୟଟିରେ ରାତିର ଆଭାସ । ହିମାଳୟର ଶିଖର କହ ବା ଲିଙ୍ଗର ଶୀର୍ଷ ସ୍ୱରୂପ କହ ସେଠି ସମସ୍ତ ବନସ୍ପତିର ସମାହାର ଘଟିଛି । ମୁଁ ଏହି ଦୁଇଟି ଚିତ୍ରକୁ ଜୀବନର ରହସ୍ୟଭାବେ ଗ୍ରହଣ କରୁଛି ।

**Source, The Eternal** ଚିତ୍ରରେ ରାଜଯୋଗ ପ୍ରକ୍ରିୟାର ଗହନ ସଂପାନକୁ ଅତି ସହଜ କିନ୍ତୁ ପ୍ରତୀକ ମାଧ୍ୟମରେ ବର୍ଣ୍ଣନ କରାଯାଇଛି । କୁଣ୍ଡଳିନୀର ଉସ୍ ମୂଳାଧାର ଯାହା ଗୁହ୍ୟରନ୍ଧ୍ର ନିକଟରେ ଅବସ୍ଥାପିତ ତାହା ଏହି ଚିତ୍ରରେ ଯୋନିପୀଠ ହୋଇଯାଇଛି । ଏହି ଯୋନିପୀଠ କିନ୍ତୁ ଗଙ୍ଗାର ଉତ୍ପତ୍ତିସ୍ଥଳ ଯେଉଁଠାରୁ ଜଳ ନୁହେଁ ବୀର୍ଯ୍ୟ ଓ ରେତର ମିଳନଧାରା ପ୍ରାଣସ୍ରୋତ ଭାବେ ପ୍ରବାହିତ ହେଉଛି । କାଶୀରେ ଭୌଗଳିକ କାରଣରୁ ହେଉ ପଛେ, ଗଙ୍ଗା ଯେଭଳି ଓଲଟ ମାର୍ଗରେ ପ୍ରବାହିତ ହୋଇ ଉସ୍ ସହିତ ମିଳନର ଆକାଂକ୍ଷା ରଖୁଛି ବା ଯେଭଳି ପ୍ରାଣଶକ୍ତି ସୁଷୁମ୍ନ ରନ୍ଧ୍ରରେ ଓଲଟ ତେଜରେ ପ୍ରବାହିତ ହେଇ କୁଣ୍ଡଳନୀକୁ ଜାଗ୍ରତ କରାଇ ମଣିଷକୁ ତାର ଚରମ ଆନନ୍ଦ ପ୍ରାପ୍ତିର ପର୍ଯ୍ୟାୟରେ ପହଞ୍ଚାଇଦେଇ ପାରୁଛି ସେଭଳି ଏହି ପ୍ରକ୍ରିୟାକୁ ଦର୍ଶେଇବାକୁ ଯାଇ ଦିନନାଥ ଗଙ୍ଗାରେ ସନ୍ତରଣ କରୁଥିବା ମାଛମାନଙ୍କୁ ବିପରୀତ କ୍ରମରେ ଅଙ୍କନ କରି ରାଜଯୋଗର ଗୂଢ଼ରହସ୍ୟକୁ ଦୃଶ୍ୟମାନ କରାଇ ପାରିଛନ୍ତି । ଏହି ଚିତ୍ରରେ ଯୋନିରୂପକ ମାନସସରୋବରର ମଧଭାଗରେ ଉଦ୍‌ଭୂତ ଲିଙ୍ଗ ଭୂମି ସହିତ ଆକାଶ, ଶରୀର ସହିତ ଅଶରୀରୀ ବ୍ୟାପ୍ତିକୁ ସଂଯୋଗର ସୂତ୍ରରେ ବାନ୍ଧିବା ପାଇଁ ଉପକ୍ରମ କରୁଛି । ଲିଙ୍ଗର ଶିଖରରେ ସୁବର୍ଣ୍ଣ ହଂସ (ସୋଽହଂ) – ଅପ୍ରାଣ ପ୍ରାଣ ଅନୁଭବ ଓ ଉପଲବ୍ଧିର ଚରମ ଅଭିବ୍ୟକ୍ତି । ଯେତେ କୃଚ୍ଛସାଧନା, ଜପ, ତପ, ଧ୍ୟାନ, ଧାରଣା ଏହି ସୁବର୍ଣ୍ଣ ହଂସର ପ୍ରାପ୍ତିପାଇଁ । ଏହି ଚିତ୍ରଟି ଭାରତୀୟ ସଂସ୍କୃତି ଓ ଦର୍ଶନର ସତ୍ୟନିଷ୍ଠ ପ୍ରତିବିମ୍ବ ।

ଅନ୍ୟଚିତ୍ର **Path to Liberation** ଗଙ୍ଗା ଘାଟରେ, ବିଶେଷକରି ହରିଶ୍ଚନ୍ଦ୍ର ଓ ମଣିକର୍ଣ୍ଣିକା ଘାଟରେ ଘଟୁଥିବା ଦୃଶ୍ୟ ମଧ୍ୟରୁ ପରିକଳ୍ପିତ ଏକ ସ୍ୱତନ୍ତ୍ର ଉପସ୍ଥାପନା । ପ୍ରତିଦିନ ଶହ ଶହ ଶବ ବନାରସ ସହରରୁ ଓ ଆଖପାଖ ଗାଁ ଗଣ୍ଡାରୁ ଗଙ୍ଗାକୂଳରେ ପହଞ୍ଚେ । ଉଦ୍ଦେଶ୍ୟ ଗଙ୍ଗା ଘାଟରେ ଶବଦାହକଲେ ଆତ୍ମାର ମୋକ୍ଷ ପ୍ରାପ୍ତି । ଏହି ଚିତ୍ରରେ ଗଙ୍ଗାଘାଟର ରୈଖିକ ରଚନା ତାକୁ ଘନବାଦର ମୌଳିକ ପଞ୍ଜର ଭିତରେ ଥାପିଦିଏ । ଗଙ୍ଗାକୂଳରୁ ପାହାଚମାନ ଥାକ ଥାକ ହୋଇ ଉପରକୁ ଉଠିଛି । ମନେ ହେଉଛି ମର୍ତ୍ତ୍ୟରୁ ସ୍ୱର୍ଗକୁ ଯାତ୍ରା । ଘାଟର ଡାହାଣ ମୁଣ୍ଡରେ କାଳର ପ୍ରତୀକ ଶିବାରୂଢ଼ା କାଳୀ ଉଭା ହେଇଛନ୍ତି । ସିଏ ଜନ୍ମ ଓ ମୃତ୍ୟୁର ନିୟନ୍ତ୍ରକ । ଶୀର୍ଷରେ ଶ୍ମଶାନଚାରୀ ଶିବ ଶବଦାହର ଧୂମାୟିତ ବଳୟମଧ୍ୟରୁ ଉଭା ହେଇ ମୃତ୍ୟୁ ଭୟରେ ତ୍ରସ୍ତ ମଣିଷକୁ ଚେତେଇ ଦେବା ପାଇଁ ଚାହାନ୍ତି ଯେ ପ୍ରତ୍ୟେକ ମଣିଷଜୀବନର ଶେଷ ଲକ୍ଷ୍ୟ ମୃତ୍ୟୁ ନୁହେଁ, ଶିବପ୍ରାପ୍ତି । ବାମପଟ ଘାଟର କାନ୍ଥରେ ସୁନ୍ଦର ସ୍ୱାସ୍ଥ୍ୟକୁ ପ୍ରତିନିଧିତ୍ୱ କରୁଥିବା ଜନୈକ ପୁରୁଷ ଔଦ୍ଧତ୍ୟରେ ନିଜର ମାଂସପେଶୀବହୁଳ ବାହୁକୁ ଉତ୍ତୋଳନ କରି କ୍ଷଣଭଙ୍ଗୁର ଦେହର ଜୟଗାନ କରୁଛି । ପଞ୍ଜିକାମାନଙ୍କରେ ଯୌନ ରୋଗକୁ ଅତିକ୍ରାନ୍ତ କରିବା ପାଇଁ ଏଭଳି ଚିତ୍ର କାଠ ବ୍ଲକ୍‌ରେ ଛପା ଯାଇଥାଏ । ଘାଟର ସବାତଳ ପାହାଚ ଉପରେ ଗଙ୍ଗାରେ ସଦ୍ୟ ଗାଧୁଆ ହୋଇଥିବା ଓ ଜରିଲୁଗାରେ ଆବୃତ ହୋଇଥିବା ପାଞ୍ଚୋଟି ଶବ ଦାହ ପାଇଁ ଉଦ୍ଦିଷ୍ଟ । ଚିତ୍ରଶିଳ୍ପୀ ପାଞ୍ଚୋଟି ଶବ ଭିତରେ ପଞ୍ଚ ମହାଭୂତ; କ୍ଷିତି, ଅପ, ତେଜ, ମରୁତ ଓ ବ୍ୟୋମର ପ୍ରତୀକାତ୍ମକତା ଆରୋପ କରିଛନ୍ତି । ଘାଟର ଶୀର୍ଷରେ ଗୋଟିଏ ଶୂନ୍ୟ ଘଟ ପ୍ରାଣ ନଥିବା ପିଣ୍ଡର ବା ଘଟାକାଶର ମହାକାଶ ସହିତ ମିଳନକୁ ପ୍ରତିପାଦନ କରୁଛି । ଜୀବନଚକ୍ରର ଏକ ଭବ୍ୟ ଉଚ୍ଚାରଣ ଏହି ଚିତ୍ର ମଧରେ ସନ୍ନିବେଶିତ । ଏମିତିରେ ଦେଖିଲେ ମନେହେବ ଏହା ମଣିକର୍ଣ୍ଣିକା ଘାଟରେ ଘଟୁଥିବା ଏକ ସାଧାରଣ ଘଟଣାର ଚିତ୍ର । କିନ୍ତୁ ପ୍ରତୀକାତ୍ମକତାରେ ଓ ରୂପକଳ୍ପରେ ଉଜ୍ଜ୍ୱଳିତ ଏହି ଚିତ୍ର ଗଙ୍ଗାନଦୀକୁ ଆଧାର କରି କରାଯାଇଥିବା ସାଂପ୍ରତିକ ଚିତ୍ରମାନଙ୍କ ମଧରେ ଉଲ୍ଲେଖନୀୟ । ଏଥିରେ ଉଭୟ ପ୍ରାଚ୍ୟର ରୈଖିକ ଶୈଳୀ ଓ ପାଶ୍ଚାତ୍ୟର ପ୍ରକାଶବାଦୀ ଧାରାର ସମନ୍ୱୟ ଘଟିଛି । କାଳୀ ଓ ଶିବଙ୍କ ରୂପ ଚର୍ଚ୍ଚାରେ ପ୍ରାଚ୍ୟ ରେଖାର ବ୍ୟବହାର ଏବଂ ଶବାଧାରରେ ପାଶ୍ଚାତ୍ୟ ଢଙ୍ଗରେ ତୂଳୀ ଚାଳନାର ପ୍ରଖରତା ଚିତ୍ରଟିରେ ଉପଭୋଗ୍ୟ ।

**ଗଙ୍ଗାଠାରୁ ଗେଞ୍ଜେସ୍ କ୍ରମର ଚିତ୍ରାବଳୀ ମଧ୍ୟରୁ New Aesthetics ବା ନବ ନାନ୍ଦନିକତା ପ୍ରଚଳିତ ଏକ ଅବ୍ୟବସ୍ଥାର ବିଦ୍ରୁପାତ୍ମକ ରୂପପ୍ରକାଶ । ଏ ଚିତ୍ରରେ ବନାରସ ପ୍ରଭୁଘାଟର ପଥର ଚଟାଣ ଉପରେ ଲୋକମାନଙ୍କ ଲଜ୍ଜାହୀନ ଭାବେ ମଳତ୍ୟାଗ ଗଙ୍ଗାର ପବିତ୍ରତା ଓ ଧାର୍ମିକ ଆଚରଣର ପରିପନ୍ଥୀ କେବଳ ନୁହେଁ, ଜଳ ଓ ପରିବେଶକୁ ଦୂଷିତ କରୁଥିବା ବିଭିନ୍ନ କୁକର୍ମ ମଧ୍ୟରୁ ଅନ୍ୟତମ ।** ଘାଟରେ

Digitized by srujanika@gmail.com

ମଳତ୍ୟାଗ ଭଳି ଅସାମାଜିକ ବ୍ୟବସ୍ଥା ସହିତ ଗଙ୍ଗାନଦୀରେ ରଜକମାନେ ମଇଳା ଲୁଗା ସଫାକରିବା ଆଉ ଏକ ଆପତ୍ତିଜନକ କାର୍ଯ୍ୟ। ଗୋଟିଏ ପଟେ ଗଙ୍ଗାକୁ ସ୍ୱଚ୍ଛ ରଖିବାପାଇଁ ସ୍ୱର ଉତ୍ତୋଳିତ ହେଉଥିବା ବେଳେ ଓ ବିଭିନ୍ନ ଲୋକ ଦେଖାଣିଆ କାର୍ଯ୍ୟକ୍ରମ ଗ୍ରହଣ କରାଯାଉଥିବା ବେଳେ ବାସ୍ତବକ୍ଷେତ୍ରରେ କାଶୀବାସୀଙ୍କ ଦ୍ୱାରା କରାଯାଉଥିବା ଏଭଳି ବିସଙ୍ଗତି ଅସହ୍ୟ। ଗଙ୍ଗାରେ ଲୁଗା ସଫାହୋଇ ସାରିଲା ପରେ ପରିତ୍ୟକ୍ତ ମଳମୂତ୍ର ଦ୍ୱାରା ଦୂଷିତ ହେଉଥିବା ପାବଚ୍ଛଗୁଡ଼ିକ ଉପରେ ଶୁଖାଇ ଦିଆ ଯାଉଥିବା ଶାଢ଼ି କେତେଯାଏ ପରିଚ୍ଛନ୍ନତା ଓ ଶୁଦ୍ଧତା ରକ୍ଷାକରେ ସେଇ ଚିନ୍ତା ଚିତ୍ରଶିଳ୍ପୀଙ୍କୁ ବିଚଳିତ କରିଛି। ଆଲିସ୍ ବୋନର୍ ପ୍ରତିଷ୍ଠାନର ନିର୍ଦ୍ଦେଶକ ଭାବେ ଶିଳ୍ପୀଙ୍କ ବନାରସ ରହଣି ଓ ଘାଟରେ ପ୍ରଭାତ ପରିକ୍ରମା ଅବସରରେ ଏହି ଦୃଶ୍ୟକୁ ବାରମ୍ବାର ଦେଖୁଥିବା ଜଣେ ସଚେତନ ମଣିଷର ଶୈଳ୍ପିକ ପ୍ରତିକ୍ରିୟା ଏହି ଚିତ୍ର । ଏହି ପ୍ରଦର୍ଶନୀର ଅନ୍ୟାନ୍ୟ ଚିତ୍ର ମଧ୍ୟରେ ଗଙ୍ଗାନଦୀର ପବିତ୍ରତା ଜଳର ସ୍ୱଚ୍ଛତା ଓ ପରିବେଶର ଆଧ୍ୟାତ୍ମିକତା ପ୍ରତି ଗୁରୁତ୍ୱ ଦେଇ ରୂପକଳ୍ପମାନ ରଚନା କରାଯାଇଛି।

ଗଙ୍ଗା ଟୁ ଗେଞ୍ଜେସ ପର୍ଯ୍ୟାୟର ଚିତ୍ରଗୁଡ଼ିକୁ ସମୀକ୍ଷା କରି ଏଲିନର୍ ଗଡ଼ନ୍ ଯାହା ମତ ପ୍ରକାଶ କରିଛନ୍ତି ତାହା ଏଠି ଉଦ୍ଧୃତ କରାଗଲା: Pathy rejects the modernist stance that has nothing to do with mythology and iconography, and dealing with his own sense of the past attempts to move beyond a narrow vision of contemporary culture. He makes a plea for art born of the Oriya soil, the Oriya imagination claiming that "the metropolitan methodologies of logic and rationalism appear banal and quotidian to the Oriyas." He paints selective mythic imagery in a deceptively appearing naive style that recalls symbolic human and animal presence. Suspended beyond time and space, it is a world that carries all the marks of auspiciousness - the *linga* and the *yoni*, the fish and full-blown flower, the thickly foliaged tree and as harmonious collaborator in this vision of ripe plentifulness. And he critiques a society that commodifies the sacred as a political tool (**Ganga to Ganges**, 2001)

କିଛିମାସ ତଳେ ଅନୁଷ୍ଠିତ ଦିନନାଥଙ୍କ ଦୁଇଟି ଚିତ୍ର ପ୍ରଦର୍ଶନୀ ହେଲା **Stirring Odissi** ଏବଂ **Cherished Fragments** । ଉଭୟ ପ୍ରଦର୍ଶନୀରେ ପ୍ରଦର୍ଶିତ ଚିତ୍ରଗୁଡ଼ିକ ଓଡ଼ିଶୀ ନୃତ୍ୟ ଉପରେ ପର୍ଯ୍ୟବସିତ। ବାଲ୍ୟାବସ୍ଥାରୁ ଚିତ୍ରଶିଳ୍ପୀ ଡ୍ରାମା ଓ ଥିଏଟର୍ ସହିତ ସଂପୃକ୍ତ। ସେ ଥିଏଟର୍ ପରଦା ଚିତ୍ରକର ଭାବେ ଓ ମେକପ୍ ବଏ ଭାବେ ବିଗତ ଶତାବ୍ଦୀର ପଞ୍ଚଦଶ ଦଶକର ଶେଷାର୍ଦ୍ଧରୁ ଅଭିନୟ କଳା (performing arts) ସହିତ ଓତଃପ୍ରୋତ ଭାବେ ଜଡ଼ିତ। ଏହି ସଂପର୍କ ତାଙ୍କ ଶିଳ୍ପୀ ଜୀବନର ମୂଳଦୁଆ ପକେଇଛି କହିବା ଅତ୍ୟୁକ୍ତି ନୁହେଁ। ଏଣୁ ଅବଚେତନ ଭିତରେ ସାଇତା ଏହି ସଂପର୍କ ପୁଣି ଥରେ ସୁଯୋଗ ଉଣ୍ଡି ରୂପ ନେଇଛି ଚିତ୍ରଭାବରେ। ୨୦୦୮ ମଧ୍ୟଭାଗରେ କୁଆଲାଲୁମ୍ପୁରର ପେଟ୍ରୋନାସ୍ ଟାୱାର୍ ଠାରେ ସୂତ୍ରଡାବସ୍ ଥିଏଟର୍ ଆନୁକୂଲ୍ୟରେ ଅନୁଷ୍ଠିତ ଓଡ଼ିଶୀ ନୃତ୍ୟ ଉପରେ ଆଧାରିତ ଆକ୍ରିଲିକ୍ ରଙ୍ଗର ଆଠଗୋଟି ଚିତ୍ର ସେ ପ୍ରଦର୍ଶିତ କରିଛନ୍ତି। ଏହି ଚିତ୍ରଗୁଡ଼ିକ ନୃତ୍ୟର ପଞ୍ଜୀକରଣ ନୁହେଁ ବରଂ ନୃତ୍ୟର ଅନୁଶୀଳନାତ୍ମକ ଓ ସମାଲୋଚନାତ୍ମକ ରୂପଯୋଜନା। ଏହି ଚିତ୍ରଗୁଡ଼ିକର ତର୍ଜମା କରି ପ୍ରଦର୍ଶନୀ ପୁସ୍ତିକାରେ ମୁଁ ଯାହା ଆଲୋଚନା କରିଥିଲି ତାହା ଏଠାରେ ଉଦ୍ଧାର କରିବା ଯଥାର୍ଥ ହେବ : Dinanath's recent paintings featured in **Stirring Odissi**, Kuala Lumpur, 2008, are visual manifestations of his intellectual exercises, preoccupations that animate the book. They provide new tools to assess Odissi as a cultural resource. These take into account issues like gender, body, cross-cultural moorings and the dichotomy between tradition and modern etc, and have the potential to promote the neo-Odissi and reflect its international aspirations.

His paintings are surreal, spicy, linear to the hilt and luminously shaded with colours used in pata painting. As the poet Sourindra Barik who lives in the neighbourhood and frequents the artist's studio, states, "his paintings are philosophical thrillers in which two froces collide; the power of keen observation and the flight of fancy" (**Stirring Odissi**-2008)

କାମନାର ଉତ୍ତରଣ (**Transcending Sexuality**) ଚିତ୍ରରେ ପାରମ୍ପରିକ ଶୈଳୀରେ ଉପସ୍ଥାପିତ ଗୋଟିଏ ଓଡ଼ିଶୀ ନାୟିକା ସହିତ ଗୋଟିପୁଅ ନୃତ୍ୟର (ସଖୀ ପିଲା ବୋଲି ମଧ୍ୟ ଗ୍ରହଣ କରାଯାଇ ପାରେ) ଜଣେ ଶିଶୁକଳାକାରର ନାୟିକା ହେବାର ଆସ୍ପୃହାକୁ ଚିତ୍ରିତ କରାଯାଇଛି। ଓଡ଼ିଶୀ ନାୟିକା ଚିତ୍ରର ଯାବତୀୟ ରୂପବିଭବକୁ ପ୍ରଭାବିତ କରି ଏକ ଉତ୍ତୁଙ୍ଗ ବ୍ୟକ୍ତିତ୍ୱଭାବରେ କାନ୍‌ଭାସ୍‌ର ଡାହାଣ ପଟେ ଉଭାହେଇଛି। କ୍ଷୀଣ କଟୀ, ବର୍ତ୍ତୁଳ ସ୍ତନଯୁଗଳ, ଘନ ଜଘନ ଏବଂ ମୁଖମଣ୍ଡଳରେ ଉନ୍ନତ ନାସିକା ଓ ବିସ୍ଫାରିତ ନେତ୍ର ଘେନି ସେ କହିବା ପାଇଁ ଚାହୁଁଛି

Digitized by srujanika@gmail.com

ଯେ ନୃତ୍ୟରେ ନାରୀର ପଟାନ୍ତର ନାହିଁ। କିନ୍ତୁ ତାର ଏହି ଆସ୍ପର୍ଦ୍ଧା ନାରୀ ଭୂମିକାରେ ନିଜକୁ ଉପସ୍ଥାପିତ କରିବା ପାଇଁ ପ୍ରୟାସ କରୁଥିବା କିଶୋରଟିର ଭୂମିକାକୁ ନ୍ୟୁନ କରୁନାହିଁ। **ଚିତ୍ରଟିର ଭାବରାଜ୍ୟରେ ଦୁଇଟି ଅଭିବ୍ୟକ୍ତି, ଗୋଟିଏ ଲୋକ ପରମ୍ପରାର ଓ ଅନ୍ୟଟି ଧ୍ରୁପଦୀ (classical) ଶୈଳୀର। ଦେଶୀ ପରମ୍ପରାର ଭାବରାଜ୍ୟରେ ଅଛନ୍ତି ଗୋଟିପୁଅ ବା ସଖୀପିଲା ଓ ଗ୍ରାମୀଣ ଦେଖଣାହାରୀ, ଯେଉଁମାନେ ଓଡ଼ିଶୀ ନାୟିକାର ଉପସ୍ଥିତି ପ୍ରତି ସେତେଟା ସଚେତନ ନୁହନ୍ତି।** ସେ ସମସ୍ତଙ୍କର ଦୃଷ୍ଟି କିଶୋରଟି ଉପରେ ନିବଦ୍ଧ ଓ ତାର ପୁଅରୁ ଝିଅ ହେବାର ବିବର୍ତ୍ତନ ହିଁ ସେମାନଙ୍କ ଚିନ୍ତାକୁ ଆବିଷ୍ଟ କରି ରଖିଛି। ଏହି ଚିତ୍ରଟି ଏବେ ପ୍ୟାରିସ୍ ସହରରେ ସତ୍ୟକାମଙ୍କ ସଂଗ୍ରହରେ।

ଅନ୍ୟ ଗୋଟିଏ ଚିତ୍ର **ଚନ୍ଦ୍ରଲେଖାଙ୍କୁ ପ୍ରଣତି (Homage to Chandralekha)** ଦିନନାଥଙ୍କ ଆଉ ଏକ ଭାବାତ୍ମକ ରୂପସର୍ଜନା। ଚନ୍ଦ୍ରଲେଖା ଭାରତବର୍ଷର ଜଣେ ପ୍ରସିଦ୍ଧ ନର୍ତ୍ତକୀ ଥିଲେ ଯିଏ ପାରମ୍ପରିକ ନୃତ୍ୟର ବିଭିନ୍ନ ଶ୍ରେୟାଂଶକୁ ବ୍ୟବହାର କରି ଆଧୁନିକ ନୃତ୍ୟ ସଂରଚନା କରିଛନ୍ତି ଯାହା ଦେହର ସୌନ୍ଦର୍ଯ୍ୟ କେବଳ ନୁହେଁ, ଦେହର ସମସ୍ତ ସମ୍ଭାବନାକୁ ଦର୍ଶକଙ୍କ ନିକଟରେ ଉପସ୍ଥାପିତ କରିପାରିଛି। ତାଙ୍କର ଅଭିନୟରେ ଲାସ୍ୟ ଅପେକ୍ଷା ତାଣ୍ଡବର ପ୍ରୟୋଗ ଖୁବ୍ ଚିତ୍ତାକର୍ଷକ। ଏଭଳି ଜଣେ ମହନୀୟ ପ୍ରତିଭାର ବିୟୋଗରେ ଚିତ୍ରଶିଳ୍ପୀଙ୍କ ଏହି ରଚନା। ଚିତ୍ରର ମଧ୍ୟଭାଗରେ ଚନ୍ଦ୍ରଲେଖା ଚଉକ ଭଙ୍ଗିରେ। ତାଙ୍କ ପଛକୁ ପଛ ଅନ୍ୟ ନୃତ୍ୟଶିଳ୍ପୀମାନେ ଦୁର୍ଗାଙ୍କ ଆୟୁଧମାନ ହସ୍ତମୁଦ୍ରାରେ ପ୍ରଦର୍ଶନ କରି ଦଶଭୂଜା ଦୁର୍ଗାଙ୍କର ଆଭାସକୁ ଦର୍ଶାଇଛନ୍ତି । ଚନ୍ଦ୍ରଲେଖାଙ୍କ ଦେହର ବ୍ୟାକରଣ ତଥା ଭାବ ସହିତ ସମାନ୍ତରାଳ ଭାବେ ମୁଖର ରୌଦ୍ର ଦ୍ୟୁତି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ। ନୃତ୍ୟରେ ଦୁର୍ଗାଙ୍କର ଉପସ୍ଥିତିକୁ ପାରମ୍ପରିକତା ସହିତ ଯୋଡ଼ିଦେବା ପାଇଁ ସମୁଦ୍ର ବାଲି ଉପରେ ଭୁବନେଶ୍ୱର ବୋଇତାଳ ମନ୍ଦିରର କକ୍ଷଚ୍ୟୁତ ମହିଷମର୍ଦ୍ଦିନୀ ଭାସ୍କର୍ଯ୍ୟ। ଚିତ୍ରର ଭୂମି ଉପରେ ଡାହାଣ ଭାଗକୁ ନାରୀର ଆବକ୍ଷରୂପ (torso) ଟିଏ ବାଲିରେ ଗଢ଼ାହେଇଛି, ଯେଉଁଥିରେ ସ୍ତନ, ଉଦର ଓ ଯୋନିଦେଶ ମୁଖ୍ୟ ଭୂମିକା ଗ୍ରହଣ କରିଛି। ଯୋନିଦେଶ ଏଠି ଜଳର ଉତ୍ସଭାବେ ଚିତ୍ରିତ, ଯେଉଁଥିରେ ଆକାଶର ସୁନୀଳ ବିସ୍ତାର ପ୍ରତିଫଳିତ। ଆବକ୍ଷରୂପରେ ଗୋଟିଏ ନାଲି କଙ୍କଡ଼ାର ଉପସ୍ଥିତି ଦେହର କ୍ଷଣଭଙ୍ଗୁରତାକୁ ସୂଚାଇ ଦେଉଛି। ଗୋଟିଏ ପଟେ ନାରୀଦେହର ଜୟଗାନ ଓ ଅନ୍ୟପଟରେ ତା'ର କ୍ଷଣିକତାର ସଙ୍କେତ ଚିତ୍ରଟିକୁ ଦାର୍ଶନିକତାର ପୁଟ ଦେଇ ସ୍ଥୂଳତାର ଉର୍ଦ୍ଧ୍ୱକୁ ନେଇଯାଇ ପାରିଛି। ଚନ୍ଦ୍ରଲେଖା ଆହାର୍ଯ୍ୟର ଚମକ ଭିତରେ ନିଜ ନୃତ୍ୟର ପାଟବତାକୁ ପ୍ରତିବେଦନ କରିବାକୁ ଚାହାନ୍ତି ନାହିଁ ବରଂ ତାଙ୍କ ନୃତ୍ୟ ପ୍ରଦର୍ଶନରେ ଦେହର ମୌଳିକ ଆବେଦନ ହିଁ ଯଥେଷ୍ଟ। ଏହି ଚିତ୍ରଟି ଏବେ ୱାସିଙ୍ଗଟନ୍‌ଠାରେ ବ୍ୟକ୍ତିଗତ ସଂଗ୍ରହରେ।

**Stirring Odissi** ଗୁଚ୍ଛଚିତ୍ର କ୍ରମରେ **Vintage Odissi** ଚିତ୍ରଟିର ବ୍ୟଞ୍ଜନା ଗୁରୁତ୍ୱପୂର୍ଣ୍ଣ। ଗୋଟିଏ ପୁରୁଣା ଭିଣ୍ଟେଜ୍ କାର୍‌ର ବନେଟ୍ ଉପରେ ଓଡ଼ିଶୀ ନୃତ୍ୟାଙ୍ଗନା କିରଣ ସାଇଗଲ ଭଳି ପ୍ରତେ ହେଉଥିବା ଜଣେ ନର୍ତ୍ତକୀ ଅଭିନୟ ପ୍ରଦର୍ଶନ କରୁଛନ୍ତି। ତାଙ୍କ ନୃତ୍ୟ ପ୍ରଦର୍ଶନ ଉଭୟ ସ୍ଥାନ (space) ଓ କାଳକୁ (time) ଐତିହ୍ୟର ପ୍ରାମାଣିକତାରେ ଛନ୍ଦି ଦେଉଛି। ଏକା ସାଙ୍ଗରେ ଏହି ସମନ୍ୱୟ ନୃତ୍ୟକୁ ଯାନ୍ତ୍ରିକ-ଆଧୁନିକତାରେ ମନ୍ତ୍ରିତ କରିଦେଉଥିବା ବେଳେ ଯାନ୍ତ୍ରିକତାର ପାଶ୍ଚାତ୍ୟପଣକୁ ପ୍ରାଚ୍ୟର ଛନ୍ଦୋମୟତାରେ ଉଦ୍‌ବୁଦ୍ଧ କରି ଚିତ୍ରଟିକୁ ସରସ କରିଦେଇ ପାରିଛି। ଏହି ଚିତ୍ରରେ କିଏ କାହାକୁ ଶାସ୍ତ୍ରୀୟତାରେ ଛନ୍ଦୁଛି କେଜାଣି- ଗୋଟିଏ ପୁରୁଣା ମଡେଲ୍‌ର କାର୍ ଓଡ଼ିଶୀ ନୃତ୍ୟକୁ ନା ଓଡ଼ିଶୀ ନୃତ୍ୟ ଭିଣ୍ଟେଜ୍ କାର୍‌କୁ ନତୁବା ଉଭୟେ ଉଭୟଙ୍କୁ ପ୍ରଭାବିତ ଓ ପ୍ରଚୋଦିତ କରିପାରିଛନ୍ତି ତା'ର ନିଦାନ ହିଁ ନବନୃତ୍ୟ ନିର୍ମାଣର ପ୍ରାସଙ୍ଗିକତାକୁ ଆଉଥରେ ଆଲୋଡ଼ିତ କରିପାରିବ। ଏହି ସିରିଜ୍‌ର ଅନ୍ୟ ଚିତ୍ର ଭଳି ଏହି ଚିତ୍ରଟି ମଧ୍ୟ neo-realistic ଶୈଳୀରେ ଅଙ୍କିତ। କାର୍‌ର ଯାନ୍ତ୍ରିକ ଦେହର ମସୃଣତା ଓ ପାଟବତା ତାକୁ ଯୌନାଡ଼ମ୍ବର ଭିତରେ ଝଟକେଇ ଦେଉଥିବାବେଳେ ନୃତ୍ୟାଙ୍ଗନାଙ୍କ ଶାଢ଼ି ଓ ଆଭୂଷଣର ଚମକ ନୃତ୍ୟମାନସିକତାରେ ଏ ଯାଏ ତିଷ୍ଠିରହିଥିବା ଫେମିନିଜ୍‌ମ୍ (feminism) କୁ ପୁନଃ ପ୍ରତିଷ୍ଠା କରିଦେଇ ପାରିଛି। ଭିଣ୍ଟେଜ୍ କାର୍‌ଟିକୁ ବିମାନବନ୍ଦରର ରନ୍‌ୱେ ଉପରେ ଥୋଇଦେଇ ଚିତ୍ରଶିଳ୍ପୀ ନୃତ୍ୟର ପାଶ୍ଚାତ୍ୟକରଣକୁ ବା ତାହାକୁ ସାଂସ୍କୃତିକ ପର୍ଯ୍ୟଟନର ଏକ ବସ୍ତୁବିଶେଷ ଭାବେ ବା ପ୍ୟାକେଜ୍ ଭାବେ ବିଦେଶକୁ ରପ୍ତାନି ହେବା ଓ ଅର୍ଥୋପାର୍ଜନର ସୁଗମ ପନ୍ଥା ବନିଯିବାର ସମ୍ଭାବନାକୁ ଦର୍ଶାଇଛନ୍ତି। ଏହା ଚିତ୍ରକଳା ଜଗତର ଆଉ ଏକ ଧାରାଗତ ସମ୍ଭାବନାକୁ ମଧ୍ୟ ପ୍ରଚୋଦନା ଦେଉଛି। ପ୍ରଶ୍ନ ଉଠୁଛି, ଏହି ନୃତ୍ୟର ନିର୍ମାଣ କ'ଣ installation art ର ଅନ୍ୟତମ ବିଭବ ନୁହେଁ, ଯେଉଁଠି ଐତିହାସିକତା ସ୍ଥାନ ଓ କାଳର ବିବର୍ତ୍ତନ ମଧ୍ୟରେ ତାର ପ୍ରାସଙ୍ଗିକତାକୁ ଯଥାର୍ଥକରିଦେଇଛି ?

**ଓଡ଼ିଶୀ ବେଳାମହୋତ୍ସବ (Beach Festival)** ଚିତ୍ରରେ ପୁରାତନତା ଓ ଆଧୁନିକତାର ସଂଘର୍ଷ ଓ ସଂଘର୍ଷର ଏକ ପ୍ରତିଚ୍ଛବି ପ୍ରଦର୍ଶିତ। ସାଂସ୍କୃତିକ ବିବର୍ତ୍ତନ ମଧ୍ୟରେ ଏହି ସଂଘର୍ଷର ସମୀକରଣ ଏକ ମୂଳ ସମସ୍ୟା।

Digitized by srujanika@gmail.com

କୋଣାର୍କ ମନ୍ଦିର ଗାତ୍ରରେ ଖୋଦିତ ଅସଂଖ୍ୟ ନାଗନାଗୁଣୀ ସ୍ତମ୍ଭର ଛନ୍ଦୋମୟତା ନୃତ୍ୟର ଅଙ୍ଗଭଙ୍ଗୀ ମଧ୍ୟରେ ଅନୁରଣିତ। କେବଳ ସେତିକି ନୁହେଁ ସେହି ଛନ୍ଦୋବଦ୍ଧତା ବା ଛନ୍ଦୋମୟତାକୁ ଆହୁରି ରସୋତ୍ତୀର୍ଣ୍ଣ କରିବା ପାଇଁ ଦୁଇଟି ନାଗନାଗୁଣୀ ସତେ ଯେଭଳି କୋଣାର୍କ ମନ୍ଦିରର ଦ୍ୱାରବନ୍ଧ ର ନାଗବନ୍ଧ ଖୋଦେଇରୁ ଉତୁରିପଡ଼ି ପ୍ରାଚୀନ କୋଣାର୍କ ଓ ନବ୍ୟ ଓଡ଼ିଶୀ ମଧ୍ୟରେ ସେତୁ ପାଲଟିଯାଇଛନ୍ତି। ଚିତ୍ରରେ ସମାନ୍ତରାଳ ଉପସ୍ଥାପନା ଭାବେ କୋଣାର୍କର ନାଗସ୍ତମ୍ଭ-ଭାସ୍କର୍ଯ୍ୟ, ନାଗ-ନାଗୁଣୀର ଛନ୍ଦୋବଦ୍ଧ ନୃତ୍ୟ ଏବଂ ଦଉଡ଼ିରେ ଝୁଲି ରହିଥିବା ଦୁଇଜଣ ନୃତ୍ୟଶିଳ୍ପୀଙ୍କ ଦେହବନ୍ଧନର ପ୍ରତୀକାତ୍ମକତା ଦର୍ଶକଙ୍କୁ ତାର ରୈଖିକ ଭାବମୟତାରେ ଆକର୍ଷିତ କରେ। ତଳେ କୁଆରିଆ ସମୁଦ୍ର, ଏଣେ ନାଗ ନାଗୁଣୀର ଉଦ୍ୟତ ଫଣା, ପୁଣି ଦଉଡ଼ିରେ ଝୁଲିବାର ଦ୍ରସ୍ତତା ନୃତ୍ୟାଙ୍ଗନାର ଆଖିରୁ ସ୍ପଷ୍ଟ ହୋଇ ଯାଉଛି। ବେଳାଭୂମି ମହୋତ୍ସବର ଏହି ଅନ୍ତଃସଂବେଦନା ହିଁ ନୃତ୍ୟ ପ୍ରଦର୍ଶନକୁ ଗୁରୁତ୍ୱ ପ୍ରଦାନ କରେ। ଏଠାରେ ସଂସ୍କୃତିର ରୋମନ୍ଥନ ଘଟେ ଓ ତାହା ଜୀବନ୍ତ ହୋଇ ଉଠେ। ସଂସ୍କୃତିର ପୁନଃ ମୂଲ୍ୟାୟନ ସହିତ ପର୍ଯ୍ୟଟନର ତତ୍‌କାଳୀନ ଉନ୍ମାଦନାକୁ ସୂଚେଇ ଦେବାକୁ ଯାଇ ଚିତ୍ରଶିଳ୍ପୀ ବେଳାଭୂମିରେ ବିକିନି ପିନ୍ଧା ଦୁଇଜଣ ନୃତ୍ୟାଙ୍ଗନା ସୂର୍ଯ୍ୟସ୍ନାନ କରୁଥିବା ଦର୍ଶେଇଛନ୍ତି। ଏହି ରୂପକଳ୍ପର ଚିତ୍ରଣ ମଧ୍ୟରେ ସେ ପ୍ରତିପାଦନ କରିବା ପାଇଁ ଚାହାନ୍ତି ଯେ ଏହି ବେଳାଭୂମି ମହୋତ୍ସବ ଗୁଡ଼ିକରେ ଅନ୍ତଃ ସଳିଳା ଭଳି ଲୁକ୍କାୟିତ ରହିଥିବା ପର୍ଯ୍ୟଟନୀୟ ବିସଙ୍ଗତି। ଏହି ନୃତ୍ୟୋତ୍ସବଗୁଡ଼ିକ ଏକପକ୍ଷରେ ପ୍ରାଚୀନ ସଂସ୍କୃତି ଓ କଳାକୁ ପୁନଃ ଉଜ୍ଜୀବିତ କରୁଥିବା ବେଳେ ଅପର ପକ୍ଷରେ ଏହାକୁ ପର୍ଯ୍ୟଟନ ଶିଳ୍ପର ଏକ ମନୋରଞ୍ଜନଧର୍ମୀ ବିଭବଭାବେ ପରିଗଣିତ କରିଦେଉଥିବାରୁ କଳାରେ ନିହିତ ଥିବା ବର୍ଷ ବର୍ଷର ଅନ୍ତରଙ୍ଗ ସାଧନା, ପ୍ରଯତ୍ନ ଓ ପ୍ରତିବଦ୍ଧତା ଏକ ଉପଯୋଗୀ ସମ୍ଭାବ୍ୟ ମଧ୍ୟରେ ଅତି ସାଧାରଣ ହୋଇଯାଉଛି। ଅବଶ୍ୟ କଳାର ବିବର୍ତ୍ତନ ମଧ୍ୟରେ ତା'ର ଏକାଗ୍ର ତଲ୍ଲୀନତା ଓ ଐଶ୍ୱର୍ଯ୍ୟ ବର୍ତ୍ତମାନ ହେୟ ଓ ସାଧାରଣ ହେଇଯାଇଛି। କଳାସହିତ ସଂପୃକ୍ତ ପ୍ରତ୍ନତାତ୍ତ୍ୱିକ ଆଭାସ ଏବେ ପର୍ଯ୍ୟଟନର ଦୌରାତ୍ମ୍ୟ ମଧ୍ୟରେ ବିଡ଼ମ୍ବିତ। କଳା ଦ୍ୱାରା ଆହୃତ ଏସବୁ ବିଭବକୁ ପର୍ଯ୍ୟଟନୀୟ ଉତ୍ସବଗୁଡ଼ିକ ସତେ ଯେଭଳି ଖୋରାକ ଯୋଗାଇ ଦେଉଛି।

ଏହି ସିରିଜ୍‌ରେ ଦିନନାଥଙ୍କ ସବୁଠାରୁ ଭାବଦ୍ୟୋତକ ଚିତ୍ରହେଲା **Rethinking Odissi in the USA Destiny Lab** । ଏହି ଅଳ୍ପଦିନର କଥା। ଭାରତୀୟ ବଂଶୋଦ୍ଭବ ଆମେରିକୀୟ ସୁନିତା ୱିଲିୟମ୍‌ସ୍ ମହାକାଶ ଯାନରେ ଚନ୍ଦ୍ରଗ୍ରହ ପରିକ୍ରମା କରିଫେରିଥାନ୍ତି। ୱିଲିୟମ୍‌ସ୍‌ଙ୍କ କୃତିତ୍ୱର କାହାଣୀ ଖବର କାଗଜର ପୃଷ୍ଠା ମଣ୍ଡନ କରିଥାଏ। USA ଡେଷ୍ଟିନୀ ଲେବୋରେଟରୀର ଚିତ୍ରରେ ୱିଲୟମ୍‌ସ୍ କିଛି ଯନ୍ତ୍ରାଂଶକୁ ପରିଚାଳନା କରୁଥିବାର ଦୃଶ୍ୟକୁ ଚିତ୍ରଶିଳ୍ପୀ ପରିବର୍ତ୍ତନ କରି ଡେଷ୍ଟିନୀ ଲେବୋରେଟରୀକୁ ଓଡ଼ିଶୀ ନୃତ୍ୟର ରଙ୍ଗଭୂମିରେ ପରିଣତ କରିଦେଇଛନ୍ତି। ୱିଲିୟମ୍‌ସ୍ ହସ୍ତମୁଦ୍ରା ପ୍ରଦର୍ଶନ କରୁଥିବା ବେଳେ ତାଙ୍କର ଦୁଇଜଣ ସହକର୍ମୀ ମର୍ଦ୍ଦଳ ତଥା ବଂଶୀ ବାଦନ କରୁଛନ୍ତି। ସେହି ଦୁଇ ସହକର୍ମୀଙ୍କ କର୍ମଦକ୍ଷତା ପ୍ରତିପାଦନ କରିବାପାଇଁ ଶିଳ୍ପୀ ସେମାନଙ୍କୁ ଚତୁର୍ଭୁଜ ଗନ୍ଧର୍ବରେ ପରିଣତ କରିଦେଇଛନ୍ତି। ଏଣୁ ଜଣେ ବଂଶୀବାଦନ ସହିତ ହାରମୋନିଅମ୍ ମଧ୍ୟ ବଜାଉଥିବା ଚିତ୍ରିତ ହୋଇଥିବା ସ୍ଥଳେ ଅନ୍ୟଜଣକ ମର୍ଦ୍ଦଳ ବଜେଇବା ସହିତ ଯନ୍ତ୍ରାଂଶକୁ ମରାମତି କରୁଛନ୍ତି। ଶିଳ୍ପୀଙ୍କ ଦ୍ୱାରା ଲିଖିତ **Rethinking Odissi** ବହିଟି ବୋର୍ଡ୍ ଉପରେ ପ୍ରାଞ୍ଜଳ ଦେଖାଯାଉଛି। ଏହି ଲାବୋରେଟରୀରେ ଯେଉଁ ଦୁଇଜଣ ତରୁଣୀ ନୃତ୍ୟ ପ୍ରଦର୍ଶନ କରୁଛନ୍ତି, ସେମାନେ ଆମେରିକୀୟ, ଜଣେ ଶ୍ୱେତକାୟ ତ ଆଉ ଜଣେ କୃଷ୍ଣକାୟ। ଏହି ଦୁଇଜଣ ନର୍ତ୍ତକୀ ପାରମ୍ପରିକ ଓଡ଼ିଶୀ ପୋଷାକ ବର୍ଜନ କରି ଜିନ୍‌ସ୍ ଓ ଗେଞ୍ଜି ପିନ୍ଧି ଛନ୍ତି। ଓଡ଼ିଶୀ କେଶବିନ୍ୟାସ ମଧ୍ୟ ନାହିଁ । କେବଳ ଜଣେ ଜିନସ୍ ଉପରେ ବେଙ୍ଗପାଟିଆକୁ ବେପରୁଆ ବାନ୍ଧି ଦେଇଛନ୍ତି। ଯେଉଁ ନର୍ତ୍ତକୀ ଓ ଓଡ଼ିଶୀ ଗୁରୁମାନେ କିଛିବର୍ଷ ତଳେ ଓଡ଼ଶୀ 'ଫର୍ମୁଲା ପୋଷାକ' ପିନ୍ଧି ନଥିବା ସୂତ୍ର ଡାନ୍‌ସ୍ ଥିଏଟର୍‌ର ନର୍ତ୍ତକୀମାନଙ୍କୁ ଆକ୍ଷେପ କରି ଓଡ଼ିଆ ସଂସ୍କୃତିର ଅବକ୍ଷୟ ଘଟିଲା ବୋଲି ପ୍ରତିବାଦର ସ୍ୱର ଉଠାଇଥିଲେ ସେମାନଙ୍କ ପାଇଁ ଏହି ଚିତ୍ରଟି ଏକ ବିଦ୍ରୂପ। ଓଡ଼ିଶୀ ନୃତ୍ୟର ଉତ୍‌କର୍ଷ ପୋଷାକର ଚମକ ଭିତରେ ସୀମିତ ନୁହେଁ । ସମୟର ପରିବର୍ତ୍ତନ ସହିତ ନୃତ୍ୟଶୈଳୀ ଓ ତା ସହିତ ପୋଷାକର ପରିବର୍ତ୍ତନ ମଧ୍ୟ ଅବଶ୍ୟମ୍ଭାବୀ। ପରିବର୍ତ୍ତନକୁ ସହଜରେ ଗ୍ରହଣ କରିପାରୁ ନଥିବା ରକ୍ଷଣଶୀଳତାର ପରିଚାୟକ। ଆମେରିକା ବହୁ ସାଂସ୍କୃତିକ ବିବର୍ତ୍ତନର ଜନକ ଭାବେ ଏକବିଂଶ ଶତାବ୍ଦୀରେ ସଂଗଠିତ ହେବାକୁ ଥିବା ଓଡ଼ିଶୀ ନୃତ୍ୟର ମଧ୍ୟ ପ୍ରବର୍ତ୍ତକ ହେବାରେ ବାଧକ ରହିବନି। କାରଣ ବହୁ ଓଡ଼ିଶୀ ନୃତ୍ୟାଙ୍ଗନା ଓ ଗୁରୁ ଆମେରିକାକୁ ତାଙ୍କର ଚାରଣଭୂମି କରିସାରିଲେଣି। ଇଂଲଣ୍ଡରୁ କ୍ରିକେଟ ଉଦ୍ଭବ ହେଇ ସମଗ୍ର ବିଶ୍ୱକୁ ଆକ୍ରାନ୍ତ କଲାଭଳି ଏବଂ ପ୍ରତ୍ୟେକ ଦେଶ କ୍ରିକେଟ ଖେଳରେ ନିଜର ସ୍ୱତନ୍ତ୍ରତା ପ୍ରତିପାଦନ କଲାଭଳି ବର୍ତ୍ତମାନ ଓଡ଼ିଶୀ ବିଭିନ୍ନ ସ୍ଥାନରେ ବିଭିନ୍ନ ରୂପରେ ଦେଖାଦେଲାଣି। ଓଡ଼ିଶାର ଓଡ଼ିଶୀନୃତ୍ୟ ସହିତ ମାଲେସିଆ ଓଡ଼ିଶୀ, ଜାପାନ ଓ କୋରିଆ ଓଡ଼ିଶୀ ତା'ର ସ୍ୱତନ୍ତ୍ର ସ୍ୱରୂପରେ ଉଭା ହେଲାଣି। ଏଣୁ ଅଚିରେ ଆମେରିକୀୟ

Digitized by srujanika@gmail.com

ଓଡ଼ିଶୀ ନିଜର ଭିନ୍ନ ବିଭବ ନେଇ ଆମ ପାଖରେ ଠିଆ ହେବ। ଏହି ଚିତ୍ରଟିକୁ ଦେଖିଲେ ମନେହେବ ଏହାର **ଛନ୍ଦ ସାବଲୀଳ ନୁହେଁ, ଯାନ୍ତ୍ରିକ। ଶିଳ୍ପୀ ପରୋକ୍ଷରେ କହିବା ପାଇଁ ଚାହାଁନ୍ତି ଯେ, ଯେକୌଣସି ନୃତ୍ୟ ବା ନୃତ୍ୟରଚନା ଅଙ୍ଗଭଙ୍ଗୀର ବ୍ୟାକରଣ ନୁହେଁ। କାରଣ ବ୍ୟାକରଣର କଠୋରତା ଭିତରେ ପ୍ରକାଶ ଭଙ୍ଗୀ ଥରେ ଥରେ ବ୍ୟାହତ ହୁଏ। ଏଣୁ କଠୋର ଯାନ୍ତ୍ରିକ ଆଭିମୁଖ୍ୟରୁ ଉତ୍ତୀର୍ଣ୍ଣ ହୋଇ ନପାରିଲେ ତାହା କଳା ପଦବାଚ୍ୟ ହେବ ନାହିଁ।**

ଏଣୁ ଏହି ଚିତ୍ର କେବଳ ନାନ୍ଦନିକତାର ପ୍ରକାଶ ନୁହେଁ, ବରଂ ଓଡ଼ିଶୀ ନୃତ୍ୟ ଜନିତ ସୃଜନ ସମସ୍ୟାକୁ ଆଧାର କରି ଏକ ରକ୍ଷଣଶୀଳ ମନୋବୃତ୍ତିକୁ ତାତ୍ପର୍ଯ୍ୟ କରୁଛି।

**ଓଡ଼ିଶୀ ନୃତ୍ୟକୁ କେନ୍ଦ୍ରକରି ଦିନନାଥ ରଚନା କରିଥିବା ଚିତ୍ରମାନଙ୍କ ମଧ୍ୟରୁ ନିରୋଳା ରେଖା ଓ ଦ୍ରୁତପ୍ରସର ରଙ୍ଗ ବିନ୍ୟାସର କିଛି ଜଳରଙ୍ଗର ଚିତ୍ର ମଧ୍ୟ ନୃତ୍ୟ ସନ୍ଦର୍ଭର ଭାବାତ୍ମକତା ପ୍ରକାଶ କରେ।** ଏଗୁଡ଼ିକ **Cherished Fragments** ଶୀର୍ଷକ ଏକକ ଚିତ୍ର ପ୍ରଦର୍ଶନୀରେ କୁଆଲାଲୁମ୍ପୁର୍‌ର ସୂତ୍ର ଗ୍ୟାଲେରୀରେ ୨୦୦୯ରେ ପ୍ରଦର୍ଶିତ ହୋଇଥିଲା। ସେଗୁଡ଼ିକ ମଧ୍ୟରୁ କେତେକ ପ୍ରସିଦ୍ଧ ପାଶ୍ଚାତ୍ୟ ଚିତ୍ରର ଭାବଭୂମି ଉପରେ ଆରୋପିତ। ଯଥା ଆଦମ୍ ଓ ଇଭ୍‌ର ପ୍ରାସଙ୍ଗିକତାକୁ ବଦଳେଇ ଦେଇ ସେ ଆଦମ୍‌କୁ ଜଣେ ନର୍ତ୍ତକରେ ଓ ଇଭ୍‌କୁ ଜଣେ ନୃତ୍ୟାଙ୍ଗନାରେ ପରିଣତ କରିଦେଇଛନ୍ତି। ସେମାନଙ୍କ ନୃତ୍ୟର କଥାବସ୍ତୁ ନିଷିଦ୍ଧ ଫଳର ମାନସିକ ପ୍ରକ୍ଷେପ ଉପରେ ଆଧାରିତ। ସେଭଳି ଏଡ୍‌ୱାର୍ଡ୍ ମାନଙ୍କ ପ୍ରସିଦ୍ଧ ଚିତ୍ରର ଛାୟାରେ ନ୍ୟୁଡ୍ ଜଣକ କାର୍‌ର ବନେଟ୍ ଉପରେ ଅଳସ ଛନ୍ଦରେ ବସିଥିବା ବେଳେ ପରିଚାରିକାଟି ନୃତ୍ୟ ପୋଷାକ ନେଇ ପାଖରେ ଠିଆ ହୋଇଛି।

ଏହି ରେଖାଙ୍କନ ଗୁଡ଼ିକରେ ରେଖାର ସ୍ୱଚ୍ଛନ୍ଦ ଓ ସାବଲୀଳ ବିନ୍ୟାସ ମାଧ୍ୟମରେ ଚିତ୍ରଶିଳ୍ପୀ ନୃତ୍ୟର ମୌଳିକ ପ୍ରତିବେଦନକୁ ପ୍ରାଧାନ୍ୟ ଦେଇଛନ୍ତି। ଏମିତିରେ ଦେଖିବାକୁ ଗଲେ ଚିତ୍ରଶିଳ୍ପୀ ରେଖାଙ୍କନରେ ସିଦ୍ଧହସ୍ତ। ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ ଛାତ୍ର ଥିବା ଅବସ୍ଥାରେ ଅଙ୍କିତ ରେଖାର ଯେଉଁ ଦମ୍ଭ ଓ ସ୍ୱଚ୍ଛନ୍ଦତା ଥିଲା ତାହା ଏ ଯାଏ ବଳବତ୍ତର ରହିଛି। ସେ ନିରୋଳା ସ୍କେଚ୍ ଆଙ୍କନ୍ତୁ ବା ବର୍ଣ୍ଣବିଭା ସମନ୍ୱିତ ଚିତ୍ର ଆଙ୍କନ୍ତୁ, ରେଖା ଶିଳ୍ପୀଙ୍କର ନିର୍ଭରଯୋଗ୍ୟ ଶୈଳ୍ପିକ ସାମଗ୍ରୀ।

**ଦିନନାଥ ପାଠୀଙ୍କର ଅର୍ଦ୍ଧଶତାବ୍ଦୀର ଚିତ୍ରକଳାର କାହାଣୀ ମଧ୍ୟରେ ଓଡ଼ିଶାର ଆଧୁନିକ ଓ ସାଂପ୍ରତିକ କଳାର ଉନ୍ମେଷ, ବିକାଶ ଓ ପରିବର୍ତ୍ତନର ଧାରା ଲକ୍ଷଣୀୟ। ଜଣେ ବ୍ୟକ୍ତିର ଶୈଳ୍ପିକ ଅନୁଚେତନା ଭିତରେ ସଂଯୋଗକ୍ରମେ ଗୋଟିଏ ଅଞ୍ଚଳର ଅଭ୍ୟୁତ୍ଥାନର ଇତିହାସ ସଂଶ୍ଳିଷ୍ଟ ହୋଇପଡ଼ିଛି। ଯଦିଚ ଓଡ଼ିଶୀ ପାରମ୍ପରିକ କଳାରେ ଆଧୁନିକତାର ଝଲକ ବିଂଶ ଶତାବ୍ଦୀ ପ୍ରାରମ୍ଭରେ ମଥୁରାର ଚିତ୍ରକାର କେଶବ ମହାରଣାଙ୍କ ଭିତ୍ତିଚିତ୍ରରେ ଏବଂ ରସିକହାରାବଳୀର ଚିତ୍ରକର ତଥା ରଘୁନାଥ ପୃଷ୍ଟିଙ୍କ ତାଳପତ୍ର ପୋଥିଚିତ୍ରରେ ଦେଖା ଦେଇଥିଲା, ତା'ର ବିକାଶ ହୋଇଥିଲା ପଞ୍ଚଦଶ ଦଶକରେ ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ ଅଧ୍ୟାପନା କରୁଥିବା ତିନିଜଣ ବିଶିଷ୍ଟ ଶିଳ୍ପୀ ଶରତଚନ୍ଦ୍ର, ଅଜିତ କେଶରୀ ଓ ଅନନ୍ତ ପଣ୍ଡାଙ୍କ ଶିଳ୍ପ ସର୍ଜନାରେ।**ପିକାସୋଙ୍କ ଡେଣାରେ ଉଡ଼ି ଉଡ଼ି ଘନବାଦର ଧାରା ଭାରତରେ ପ୍ରବେଶ କଲା ଓ ସ୍ୱାଧୀନତା ପରବର୍ତ୍ତୀ ଭାରତରେ ତାହାହିଁ ହୋଇଗଲା ଆଧୁନିକତାର ଆଦ୍ୟ ସଙ୍ଗୀତ। ବିଗତ ଶତାବ୍ଦୀର ପଞ୍ଚଦଶ ଦଶକରେ ଭାରତର ଅଧିକାଂଶ ଶିଳ୍ପୀ ଘନବାଦର ରୈଖିକ ମୋହରେ ପ୍ରଲୁବ୍ଧ ହୋଇଗଲେ। ସେମାନଙ୍କ ମଧ୍ୟରେ ସବୁଠାରୁ ଉଲ୍ଲେଖନୀୟ ଚିତ୍ରକାର ହେଲେ ଅବନୀନ୍ଦ୍ର ନାଥ, ମକବୁଲ୍ ଫିଦା ହୁସେନ୍, ରାମ କୁମାର, କ୍ରୀଷେନ୍ ଖାନ୍ନା ପ୍ରଭୃତି। ମନେହେଲା ଆଧୁନିକ ହେବାକୁହେଲେ ଘନବାଦର ସ୍ପର୍ଶ ଅବଶ୍ୟମ୍ଭାବୀ। ଓଡ଼ିଶାରେ ଅଜିତ କେଶରୀ ରାୟ ଓ ଅନନ୍ତ ପଣ୍ଡାଙ୍କ ସହିତ ଦିନନାଥ ପାଠୀ ମଧ୍ୟ ଘନବାଦର କୁହୁକ ସଂପର୍କରେ ଆସିଲେ। ଚିଲିକା କୂଳର ବଣ ପାହାଡ଼ ଘେରା ଖଲ୍ଲିକୋଟ ରାଜ ପ୍ରାସାଦ ଷାଠିଏ ଦଶକର ପ୍ରାରମ୍ଭରେ ଆଧୁନିକ କଳାର ସ୍ମରଣୀୟ ସାକ୍ଷୀ ହୋଇଗଲା। ଏହାହିଁ ଆଧୁନିକ କଳାର ଉନ୍ମେଷର ଅବିସମ୍ବାଦିତ ସତ୍ୟ। ଦିନନାଥଙ୍କ ତୈଳଚିତ୍ର ଯୁଗଳ, ପରିବା ବିକାଳି, ହାଟବାହୁଡ଼ା ପ୍ରଭୃତି ଚିତ୍ରରେ ଘନବାଦର ପ୍ରଭାବ ଅନୁଭୂତ ହେଲା। ଏଭଳି କି ଦିନନାଥଙ୍କ ଗୋଟିଏ ଜଳରଙ୍ଗର ଆଲେଖ୍ୟ ଚିତ୍ର(Portrait Study ଓ Nude Study) ରେ ମଧ୍ୟ ଘନବାଦର ଛାଉ ତୂଳୀର ସଂଘାତ ଭିତରେ ସ୍ପଷ୍ଟ ହୋଇଯାଇଛି। ନିଜ ଚିତ୍ର ଶୈଳୀର ବହୁ ବିବର୍ତ୍ତନ ମଧ୍ୟରେ ବିଦିନନାଥ ଘନବାଦକୁ ଛାଡ଼ି ପାରିନାହାନ୍ତି।

**ଏହି ପଚାଶ ବର୍ଷର ଚିତ୍ର ରଚନା ଭିତରେ ବିଭିନ୍ନ ଶୈଳୀ ଓ ବିଭିନ୍ନ ପ୍ରକରଣର ସଂଘାତ ଘଟିଛି ଓ ତାଙ୍କ ଶୈଳୀ ଉପନିବେଶୀୟ ଧାରାରୁ ଆରମ୍ଭ ହୋଇ ଆଧୁନିକ କଳାର ବିଭିନ୍ନ ଇଜ୍‌ମ୍ ଦେଇ ଉତ୍ତର-ଆଧୁନିକତାର ସୁପର-ରିଏଲିଜ୍‌ମ୍‌ରେ ପହଞ୍ଚିଛି। ଓଡ଼ିଶାର ତଥାକଥିତ କେତେକ ବିଶିଷ୍ଟ ଶିଳ୍ପୀ ବିଗତ ପଚାଶ**

Digitized by srujanika@gmail.com

ବର୍ଷ ଧରି ସେହି ଏକା ଶୈଳୀ ଓ ଥିମ୍‌କୁ ଚର୍ବିତଚର୍ବଣ କରୁଥିବା ବେଳେ ଦିନନାଥ ଧୀରେ ଧୀରେ ଶୈଳୀ–ସଂପର୍କର ବଳୟକୁ ବିସ୍ତାରିତ କରି ସେହି ବିସ୍ତାର ଭିତରେ ବହୁ ସମ୍ଭାବନାର ଦ୍ୱାର ଉନ୍ମୋଚନ କରିବାରେ ସଫଳ ହୋଇଛନ୍ତି। ଏହି ଶୈଳୀଗୁଡ଼ିକ ହିଁ ସାଧାରଣ ଭାବେ ଓଡ଼ିଶାର ଆଧୁନିକ କଳାର ଅଭ୍ୟୁଦୟ ଓ ବିକାଶ ଭିତରେ ପ୍ରତିଫଳିତ। ତାଙ୍କର ସମସାମୟିକ କିଛି ଶିଳ୍ପୀ ଗୋଟିଏ ନିର୍ଦ୍ଦିଷ୍ଟ ଶୈଳୀ ଭିତରେ ନିଜକୁ ସୀମିତ କରି ଦେଇଥିବା ସ୍ଥଳେ ଦିନନାଥ କୌଣସି ଗୋଟିଏ ବା ଦୁଇଟି ଶୈଳୀର ଗଣ୍ଡିଭିତରେ ଆବଦ୍ଧ ନରହି, ନୂତନତାର, ନୂତନ ସମ୍ଭାବନାର ସରହଦ ଭିତରେ ନିଜକୁ ନିଜର ନୂତନ ଶୈଳୀକୁ ଅବସ୍ଥାପିତ କରିବାପାଇଁ ଚେଷ୍ଟିତ। ଯେଉଁ ଶିଳ୍ପୀମାନେ ସହଜରେ ନିଜକୁ ପରିବର୍ତ୍ତନ ନ କରିବା ଭିତରେ ଅସ୍ମିତାର ସଂଭ୍ରମରେ ଘାରି ହୋଇଛନ୍ତି, ସେମାନେ ମନେ କରନ୍ତି ଯେ ଗୋଟିଏ ନିର୍ଦ୍ଦିଷ୍ଟ ଶୈଳୀକୁ ବାରମ୍ବାର ଦୋହରାଇଲେ ତାହା ସେମାନଙ୍କର ନିଜଶୈଳୀ ବୋଲି ପ୍ରକାରାନ୍ତରେ ଚିହ୍ନଟ ହେଇଯାଏ ଓ ଶେଷରେ ନିଜ ଦସ୍ତଖତ ବା signature ଭଳି ତାହା ପ୍ରସିଦ୍ଧିଲାଭ କରେ। କିନ୍ତୁ କେତେକ କ୍ଷେତ୍ରରେ ଦେଖାଯାଇଛି ବରଂ ଗୋଟିଏ signature ନୁହେଁ, ବହୁ signature ଶିଳ୍ପୀର ପରିପକ୍ୱ ଅବସ୍ଥାରେ ଗୋଟିଏ ସୂତ୍ରରେ ଓ ଭାବରେ ବନ୍ଧାହୋଇ ତାହାର ସାମଗ୍ରିକ ଶିଳ୍ପନିର୍ଯ୍ୟାସ ଓ ଶୈଳୀକୁ ପ୍ରକାଶ କରିଥାଏ।

ସାମଗ୍ରିକ ଭାବେ ବିଚାର କଲେ ଜଣା ପଡ଼ିବ ଦିନନାଥଙ୍କ ଚିତ୍ରରେ ପାଞ୍ଚଟି ଥିମ୍ ବାରମ୍ବାର ବିଭିନ୍ନ ରୂପରେ ପ୍ରକାଶ ପାଇଛି। ସେଗୁଡ଼ିକ ମଧ୍ୟରୁ ପ୍ରମୁଖ ହେଲା ଯୁଗଳ, ତାହା ସାଧାରଣ ପାରିବାରିକ ବା ଲୌକିକହେଉ ବା ପୁରାଣର ରାଧାକୃଷ୍ଣ ହେଉ, ସେଥିରେ ନାରୀ ଓ ପୁରୁଷର ସହାବସ୍ଥାନ ହିଁ ମୂଳକଥା। ଦ୍ୱିତୀୟଟିଦେବୀ, ତୃତୀୟଟି ନାରୀ ଓ ତା'ର ମାନସିକ ଅଭିବ୍ୟକ୍ତି। ଚତୁର୍ଥ ଥିମ୍ ହେଲା ମିଥର ପ୍ରୟୋଗ କରି ଚିତ୍ର ସଂରଚନା। ଏହି ଚାରୋଟି ଥିମ୍ ସହିତ ଅନ୍ୟ ଯେଉଁସବୁ ରୂପନିର୍ମାଣ ଅତ୍ୟନ୍ତ ସ୍ପଷ୍ଟ, ସେଗୁଡ଼ିକ ହେଲା ଗୀତଗୋବିନ୍ଦ, ଓଡ଼ିଶାର ମନ୍ଦିର, କାଣ୍ଡ ଗଙ୍ଗା ଓ ଓଡ଼ିଶୀନୃତ୍ୟ।

ଦିନନାଥଙ୍କ ବର୍ଣ୍ଣଯୋଜନା ଅତ୍ୟନ୍ତ ଉଜ୍ଜ୍ୱଳ। ସେ ଉଜ୍ଜ୍ୱଳ ହଳଦିଆ(Chrome Yellow), ମଳିନ ହଳଦିଆ (Yellow Ocher), ଘନନୀଳ (Prussian), ନୀଳ (Ultramarine) ଓ ମୟୂରକେଣ୍ଠିଆ ନୀଳ(Naples Blue), କଳା (Black), ମାଟିଆ (Burnt Sienna) ପ୍ରୟୋଗ କରିବାକୁ ଭଲ ପାଆନ୍ତି। ଅବଶ୍ୟ ଦୁଇହଜାର ମସିହା ପର ଚିତ୍ରଗୁଡ଼ିକରେ ସେ ଅଳତା ରଙ୍ଗ (Crimson) ଏବଂ ବାଇଗଣୀ (Violet) ରଙ୍ଗ ମଧ୍ୟ ବ୍ୟବହାର କରିବାକୁ ପସନ୍ଦ କରିଛନ୍ତି। ସେ ଯଦିଓ ଛୋଟ ଛୋଟ କାନ୍‌ଭାସ୍‌ରେ ଚିତ୍ରକରିଛନ୍ତି, ତଥାପି ତାଙ୍କ ଚିତ୍ରମାନସିକତାରେ ବିଶାଳତାର(monumentality) ଆଦର ବେଶି। ସେ ବିଶ୍ୱାସ କରନ୍ତି କାନ୍‌ଭାସ୍‌ର ବିସ୍ତାରିତ ଭୂମି ତାଙ୍କର ଭାବପ୍ରକାଶରେ ଅଧିକ ସହାୟକ ହେଉଛି। ଏ ସମ୍ପର୍କରେ ତାଙ୍କର ଶିକ୍ଷକ ଅଜିତ କେଶରୀ ରାୟଙ୍କ ଆକଳନକୁ ବିଚାର କରାଯାଇ ପାରେ:His big and voluminous forms in his paintings remind one of Henry Moor's sculptures specially the reclining figures. Perhaps quite inadvertently he might have been influenced by Henry Moor's sculptures and Paul Gaugain's paintings. Pathy's paintings create a feeling of monumentality. (**35 years of Art**, 1956-1991) ତାଙ୍କର ତୂଳୀଚାଳନା ଅତ୍ୟନ୍ତ ଦୃଢ଼ ଓ ଦ୍ରୁତ। ସିଏ ତାଙ୍କ ଖଲ୍ଲିକୋଟ ବେଳଠାରୁ (ଷାଠିଏ ଦଶକରୁ) ହିଁ ବହଳ ରଙ୍ଗର ପ୍ରୟୋଗରେ ବିଶ୍ୱାସ କରନ୍ତି ଯାହାକୁimpasto technique କୁହାଯାଇଥାଏ। ଏହାଛଡ଼ା ସେ ମୂଳତଃ ଜଣେ ରୂପର ପୂଜାରୀ ବା ଚିତ୍ରଭାଷାରେ figurative artist । କେବଳ ସେ ନୁହନ୍ତି ଓଡ଼ିଶାର ତାଙ୍କ ସମୟର ପ୍ରାୟ ସମସ୍ତେ figurative ଶିଳ୍ପୀ। Figurative ଏବଂ non-figurative ସଂପର୍କରେ ସାଧାରଣତଃ ଦୁଇଟି ବଳିଷ୍ଠ ଯୁକ୍ତି ବଢ଼ାଯାଇଥାଏ। Figurative ସଂପର୍କର ଯୁକ୍ତିହେଲା ରୂପପ୍ରବଣତା ବା ବିଭିନ୍ନ ରୂପକୁ ପ୍ରକାଶ କରିବାରେ ଦକ୍ଷତା।Non-figurative ସପକ୍ଷର କଥାଟି ହେଲା ରୂପର ଉତ୍ତରଣ। ପ୍ୟାରିସ୍ ସହରରେ ବସବାସ କରୁଥିବା ଭାରତୀୟ ଚିତ୍ରକର ସୟଦ୍ ହାଇଦର୍ ରାଜାଙ୍କ ନିରୂପ ଚିତ୍ର ତାଙ୍କ ଦୀର୍ଘ ଚିତ୍ରାଭ୍ୟାସ ଓ ଉପଲବ୍ଧିର ଫଳ। କିନ୍ତୁ ନିଜର ଶିଳ୍ପୀ ଜୀବନଆରମ୍ଭରୁ ଯେଉଁମାନେ ନିରୂପବାଦ ସପକ୍ଷରେ ଯୁକ୍ତି ବାଢ଼ିଥାନ୍ତି ସେମାନଙ୍କ ବ୍ୟକ୍ତିଗତ ରୂପ ଉପଲବ୍ଧି ନଥାଏ। ଥାଏ କେବଳ ଅନୁକରଣବ୍ୟଗ୍ରତା। ଦିନନାଥଙ୍କ ସହିତ ମୋ ସଂପର୍କକୁ ଆଜ କରି ମୁଁ ଏ କଥା କହୁନାହିଁ, ବରଂ ଜଣେ କଳାଐତିହାସିକ ଓ କଳା ସମାଲୋଚକର ବସ୍ତୁନିଷ୍ଠ (objective) ଆଭିମୁଖ୍ୟର ଦୃହି ଦେଇ କହିବାକୁ ବାଧ୍ୟ ହେଉଛି ଯେ ଦିନନାଥ ଜଣେ ପ୍ରବହମାନ ଚିତ୍ରଶିଳ୍ପୀ। ସେ ଆଗକୁ ପ୍ରସରି ଯିବାରେ, ପରିବର୍ତ୍ତନକୁ ସ୍ୱୀକାର କରିବାରେ, ନୂଆ ନୂଆଶୈଳୀକୁ ଆପଣେଇବାରେ ବିଶ୍ୱାସ କରନ୍ତି। ତାଙ୍କରି ଚିତ୍ର ସମନ୍ୱିତ ସ୍ୱରର କଥା କହେ। ଦିନନାଥଙ୍କ ଅନେକ ଚିତ୍ରକୁ ଦେଖିଲେ ଜଣାହେବ ସିଏ ପାଶ୍ଚାତ୍ୟ ମୋହରୁ ଉତୁରି ପଡ଼ି ଏକ ଅଭିମନ୍ତ୍ରିତ ନୂତନ ଦେଶୀ ଶୈଳୀର ପ୍ରବର୍ତ୍ତନ ପାଇଁ ଚେଷ୍ଟିତ। ଏକଥା ତାଙ୍କ ଶିକ୍ଷକ ଅଜିତ କେଶରୀ ରାୟ ମଧ୍ୟ କହନ୍ତି।At the begining perhaps he was influenced by western impressionism

Digitized by srujanika@gmail.com

and cubism and traces of those influences are clear in his early paintings but he has since then broken away from those influences and evolved an original aesthetic vocabulary of his own to express himself (**35 years of Art**, 1956-1991)

**ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଲା ଏହି ମାଟି ପ୍ରତି ତାଙ୍କ ମମତା ଓ ପ୍ରତିବଦ୍ଧତା। ଓଡ଼ିଆ ସାହିତ୍ୟରେ ଚିତ୍ରାନୁଭବକୁ ସଫଳ ଭାବେ ରୂପାୟିତ କରି ଚିତ୍ରର ବୌଦ୍ଧିକ ଓ ଆବେଗିକ ଭାବଭୂମିକୁ ପ୍ରକାଶ କରିବାରେ ସେ ବ୍ରତୀ ଅଛନ୍ତି। ଏଣୁ କାହା କାହାର ପ୍ରଶ୍ନ, ଆପଣ ସାହିତ୍ୟରେ ମାଟି ଛବି ଆଙ୍କିବା କ'ଣ ବନ୍ଦ କରିଦେଲେ ? ଏପରି ପ୍ରଶ୍ନ ସଂପୂର୍ଣ୍ଣ ଅମୂଳକ। ଚିତ୍ରାତ୍ମକତା ବା ଚିତ୍ରାଙ୍କି ମଧ୍ୟରୁ ଉଭୟ ଚିତ୍ର ଓ ସାହିତ୍ୟର ଉଭବ। ସେ ଓଡ଼ିଶାର ତିନି ହଜାର ବର୍ଷର ଚିତ୍ରଶୈଳୀକୁ ସମ୍ମାନ ଦେଖାନ୍ତି ଓ ତା'ର** reinvention **ବା ପୁନରାବିଷ୍କାର, ନବୀକରଣ ଓ ଆଧୁନିକ ପ୍ରକ୍ଷେପରେ ବିଶ୍ୱାସ କରନ୍ତି।**

ଦିନନାଥଙ୍କ ଚିତ୍ର ମାନସିକତାକୁ ଯଥାର୍ଥ ଭାବେ ଆକଳନ କରି Illustrated Weekly of India ର ପ୍ରାକ୍ତନ ସଂପାଦକ ଏ. ଏସ୍. ରମଣ ଯେଉଁ ମତ ପ୍ରକାଶ କରିଛନ୍ତି ତାହା ଏଠାରେ ଉଦ୍ଧାର କରିବାର ଯଥାର୍ଥତା ଅଛି : Dr. Pathy's art has a sensuous warmth. It is rich in its tonal nuances and textural rhythms. His palette has vibrancy and there is a nice blend of terseness and tenderness in his line. He does not care whether abstraction is more important than figurative art or vice versa. He is concerned only with what appeals to him most in a particular mood. So rigid dichotomies and categorisations don't interest him at all. He spares no effort to make his images come alive through whatever method, medium and material suit them best at a given moment. (**35 years of Art**, 1956-1991)

ଓଡ଼ିଆ ଚିତ୍ର ପରମ୍ପରାର ନବୀକରଣରେ ସେ କେବଳ ସର୍ଜନ ଅବବୋଧକୁ ବ୍ୟାପକ କରିନାହାନ୍ତି; ସେଥିମଧ୍ୟରେ ବୌଦ୍ଧିକ ଓ ଆବେଗିକ ଅନୁରଣନର ସ୍ୱରକୁ ମଧ୍ୟ ଉଚ୍ଚକିତ କରିଛନ୍ତି । ଭାରତବର୍ଷର ଅଧିକାଂଶ କଳାସମାଲୋଚକ ଓଡ଼ିଶାର କଳା ପରମ୍ପରା ସମ୍ପର୍କରେ ପ୍ରାୟତଃ ସଚେତନ ନଥିବାରୁ ଶିଳ୍ପୀଙ୍କର ଏଭଳି ପ୍ରୟାସକୁ ଉଦାରତାର ସହିତ ଗ୍ରହଣ କରିନାହାନ୍ତି। ସେମାନଙ୍କ ନିକଟରେ ଦିନନାଥଙ୍କ କଳା ଏକ ବିସ୍ମୟର ଓ ଦୁଃସାହସିକତାର ଅଭିବ୍ୟକ୍ତି ହୋଇ ରହିଯାଇଛି। ବୋଧହୁଏ ସେମାନଙ୍କ ଧାରଣା ଆଧୁନିକତା ଓ ସାଂପ୍ରତିକତା ଭାରତୀୟ ପରମ୍ପରାର ବିରୋଧି ଏବଂ ଯେଉଁ କଳାଭ୍ୟାସ (art practice) ପାଶ୍ଚାତ୍ୟ ପରମ୍ପରା ସମ୍ମତ ନୁହେଁ ତାହା ମୂଳସ୍ରୋତରେ ଗ୍ରହଣୀୟ ନୁହେଁ। ସେମାନେ କେନ୍ଦ୍ର ଓ ପରିଧି ବା ଜାତୀୟ ଓ ଆଞ୍ଚଳିକତା ମଧ୍ୟରେ ପ୍ରାଚୀର ଠିଆ କରିଦେବାରେ ବିଶ୍ୱାସୀ। ଏହା ସବୁ ରାଜନୈତିକ ଅଭିସନ୍ଧି ବୋଲି ମନେହୁଏ। କାରଣ ନିଜ ଚିତ୍ର ସଂପର୍କରେ ଶିଳ୍ପୀଙ୍କ ମତ ହେଲା : Now we are in an age of 'no predetermined styles', rather into making our 'own styles', with whatever name you call them-modern, pop, post-modern or narrative symbolism. *(***Ganga to Ganges**, 2001) **ଦିଲ୍ଲୀ, ମୁମ୍ବାଇ ପ୍ରଭୃତି ନଗରରେ ବସବାସ କରି ଚଳନ୍ତି ବଜାରର ଚାହିଦାକୁ ମେଣ୍ଟେଇଲା ଭଳି ବା ଗ୍ୟାଲେରୀର ପ୍ରଚୋଦନାରେ ଛବି କରିଥିଲେ ସିଏ ହୁଏତ ଅନ୍ୟାନ୍ୟ ସହରୀ ଶିଳ୍ପୀଙ୍କ ଭଳି ବିତ୍ତଶାଳୀ ଓ ବୈଭବଶାଳୀ ହୋଇ ପାରିଥାନ୍ତେ । କିନ୍ତୁ ଓଡ଼ିଶାର ମାଟି ତାଙ୍କୁ ଜଡ଼େଇ ରଖିଥିବାରୁ ସେ ଓଡ଼ିଶାର ଅର୍ଦ୍ଧଶତାବ୍ଦୀର କଳାର ବିକାଶ ସହିତ କେବଳ ଜଡ଼ିତ ଅଛନ୍ତି ତାହା ନୁହେଁ, ସେ ନିଜେ ଜଣେ ଅର୍ଦ୍ଧଶତାବ୍ଦୀର କଳାକାର ହୋଇଯାଇଛନ୍ତି ।**

Digitized by srujanika@gmail.com

## ଅସୀମ ବସୁ
# ଛବି ଦେଖିଲି

ଦିନନାଥ ଜଳୁଛି । ବିପ୍ଳବର ମଶାଲ ଭଳି ଜଳୁଛି । ତା'ର ସେଇ ଜ୍ୱଳନ ଅଙ୍ଗାରର ରକ୍ତାଭା ଦେଇ ନୁହେଁ, ହୋମାଗ୍ନିର ହୁତାଶନ ନେଇ ଲେଲିହାନ ଶିଖାଭଳି ସେ ଜଳି ତାର ଉତ୍ତାପକୁ ଢାଳି ଦେଇଛି, ତାର ପ୍ରତ୍ୟେକଟି କାନ୍‌ଭାସ୍‌ରେ । ତାର ସ୍ୱତନ୍ତ୍ରତା ହିଁ ତା'ର ପରିଚୟ । ୧୯୬୫ରେ ଦିନନାଥକୁ ଦେଖିଥିଲି । କଳାମଣ୍ଡପର ଗୋଟିଏ କୋଣରେ ଛବି କେଇ ଖଣ୍ଡ ଟାଙ୍ଗି ସେ ଛିଡ଼ା ହୋଇଥିଲା । ତା ମଧ୍ୟ ଗୋଟାଏ କି ଦୁଇଟା ଦିନ ପାଇଁ ମାତ୍ର, ଷାଠିଏ, ସତୁରିରୁ ଅଧିକା ଲୋକ ଯେ ସେ ପ୍ରଦର୍ଶନୀକୁ ଦେଖିବାକୁ ଯାଇ ନଥିଲେ, ସେ ବିଷୟରେ ମୁଁ ନିଶ୍ଚିତ । ତା'ପରେ ପୁଣି ତାକୁ ଦେଖିଲି ଗୋଦାବରୀଶ ସାହିତ୍ୟ ସଂସଦର ବାର୍ଷିକ ଉତ୍ସବରେ । ଅନ୍ୟ ଶିଳ୍ପୀ ବନ୍ଧୁମାନଙ୍କ ଛବି ସାଙ୍ଗରେ ସେ ବି ଛବି କେଇଖଣ୍ଡ ଧରି ଛିଡ଼ା ହୋଇଥିଲା । ମାତ୍ର ସେଦିନ ତା'ର ଏକକ ପ୍ରଦର୍ଶନୀରେ ଅପେକ୍ଷାକୃତ ଦର୍ଶକ ବେଶୀ ଥିଲେ । ଆଜି ତାକୁ ପୁଣି ଦେଖୁଚି କସ୍ତୁରବା ନାରୀ ମହଲରର ହଲ୍ ଭିତରେ ।

୧୯୬୫ରେ ଯେଉଁ ଆଗ୍ନେୟ ଉତ୍ତାପ ତା କଳ୍ପନାର ଶହ ଶହ ହିମ-ଶୀତଳ ଦର୍ଶକମାନଙ୍କୁ ଉଷୁମ ଦେବାକୁ ଅପେକ୍ଷା କରି ଉପେକ୍ଷିତ ହୋଇଥିଲା, ତା'ର ତେଜ ଆଜି ୧୯୭୧ରେ ପୂରାପୂରି ଭାବେ ନିଭିଯିବା ମନେ ହୋଇଥିଲା । ମାତ୍ର ଆଜି ଦେଖୁଚି, ମୋର ସମସ୍ତ ଧାରଣାକୁ ବଦଳେଇ ଆଜି ସେ ନିଆଁ ଆହୁରି ଅଧିକ ତାପ ବିକୀରଣ କରୁଛି ।

ଦିନନାଥର **ଫର୍‌ବିଡ଼ନ ଫ୍ରୁଟ୍**‌ରେ ଯେଉଁ ରକ୍ତାକ୍ତ ବୀଭତ୍ସତାର ଦ୍ୟୋତନା ସାପ ସାହାଯ୍ୟରେ ଅପରିମିତ ଯୌନତାର ପରିମିତ ପରିପ୍ରକାଶ ରୂପାୟିତ କରିଛି ତାହା ସକିଙ୍ଗ୍ ହେଲେ ମଧ୍ୟ ଅସତ୍ୟର ଏକ ଦୃଢ଼ ପ୍ରତିବାଦ । ଆହୁରି ସହଜ ଭାବରେ କହିବାକୁ ଗଲେ ଦିନନାଥ ଏଠି ଘଟଣାକ୍ରୀର ସେହି ଛୋଟ ପାଠପଢ଼ାଳି ପିଲା, ଯେ ଘୋଷୁଛି ସତ କହିବାକୁ କିଆଁ ଡରିବି, ସତ କହି ପଛେ ମଲେ ମରିବି । ମଂକ୍‌ରେ ବ୍ରସର ଗାଢ଼ତାକୁ ଜବରଦସ୍ତ ଭାଙ୍ଗି ବୌଦ୍ଧଭିକ୍ଷୁକୁ ସାବଲୀଳ ଭଙ୍ଗୀରେ ହାଲୁକା ରଙ୍ଗ ସାହାଯ୍ୟରେ ଛିଡ଼ା କରାଇ ଏକ ଅଭୌତିକ ପରିବେଶ ସୃଷ୍ଟି କରିବାରେ ସଫଳତାର ପରିଚୟ ମିଳେ । ଜଣେ ପକ୍‌କା ଖେଳାଳୀ ଭଳି କୋଉଟା ପାଇଁ କ'ଣ ଦରକାର, ସେ ବିଷୟରେ ଦିନନାଥ ସଦା ସଚେତନ । **ଲଷ୍ଟ୍ ହୋରାଇଜନ୍**‌ର ଗାଢ଼ତା ତାଙ୍କ ମଂକ୍‌ରେ ଆସିଥିଲେ, ସେଥିରୁ ହୁଏତ ଖାଲି ତାଙ୍କ ଉପସ୍ଥିତି ହିଁ ମିଳନ୍ତା ହେଲେ ଛବିଟିର ତାତ୍ପର୍ଯ୍ୟ ନିଶ୍ଚିତଭାବେ କ୍ଷୁର୍ଣ୍ଣ ହୁଅନ୍ତା । ଗାଢ଼ତାରେ ସବୁଗୁଡ଼ିକୁ ଟପି ଯାଇଛି **ଲଷ୍ଟ୍ ହୋରାଇଜନ୍** ।

ସବୁଠୁ ଦୁର୍ବଳ ଲାଗିଲା ତମର ଯେଉଁ ଛବି । ତା ସମ୍ପର୍କରେ ଲେଖିବାକୁ ଟିକିଏ ସଂକୋଚବୋଧ କରୁଛି । କାରଣ ଛବିଟି ପ୍ରତି ବିରୂପ ମନ୍ତବ୍ୟ ପ୍ରକାଶ କରିବା ଦ୍ୱାରା ମୁଁ ଯେ ଆଧୁନିକ ଚିତ୍ରକଳାର ଜଣେ ସମଝଦାର୍ ଲୋକ ନୁହେଁ, ତାହା ପ୍ରଥମ ବିଗ୍ଭରରେ ଅନେକ ହୁଏତ ଧରିନେବେ । ହାର୍ଭେଷ୍ଟିଂ ସଙ୍ଗସ୍' ଛବିଟି ଅବଶ୍ୟ ଫାଇନ୍ ଆର୍ଟ୍ ଏକାଡ଼େମୀ ଦ୍ୱାରା ୧୯୬୨ ମସିହାରେ ପୁରସ୍କୃତ ହୋଇଛି । ତଥାପି ତାର ପ୍ରତ୍ୟେକଟି ରେଖାରେ-ଗାରରେ ଦୁର୍ବଳତା ସୁସ୍ପଷ୍ଟ ଇଙ୍ଗିତ ମୋ ଆଖିକି ଦିଶୁଚି । ସ୍ତିମିତ, ଗତିହୀନ ଏହାର ଛନ୍ଦ । ତେଣୁ ସେହି ଚିତ୍ରଟିକୁ ବାଦ ଦେଇ ପ୍ରଦର୍ଶନୀ ମୋତେ ଭଲ ଲାଗିଲା ।

Digitized by srujanika@gmail.com

୧. ୧୯୬୫ ମସିହାରେ କଳାମଣ୍ଡପରେ ଅନୁଷ୍ଠିତ ହୋଇଥିବା ଦିନନାଥ ପାଠୀଙ୍କ ଏକଶତ ଚିତ୍ରର ଏକକ ପ୍ରଦର୍ଶନୀ ଓଡ଼ିଶାର ସମଗ୍ର କଳା ଇତିହାସରେ ଏକ ଚର୍ଚ୍ଚିତ ଓ ଗୁରୁତ୍ୱପୂର୍ଣ୍ଣ ଘଟଣା । ସେ ସମୟରେ ଶିଳ୍ପୀ ବି.ଜେ.ବି. ସାନ୍ଧ୍ୟ ମହାବିଦ୍ୟାଳୟରେ ଅଧ୍ୟୟନ କରୁଥିବାରୁ ପ୍ରଦର୍ଶନୀକୁ ପ୍ରତି ସନ୍ଧ୍ୟାରେ ଶତାଧିକ ଛାତ୍ର ଏହାକୁ ଉପଭୋଗ କରୁଥିଲେ ।

୨. **ହାର୍ଭେଷ୍ଟିଂ ସଙ୍ଗସ୍** ବା **ଫସଲ ଅମଳର ଗୀତ** ସର୍ବଭାରତୀୟ ଚିତ୍ରପ୍ରଦର୍ଶନୀରେ ପୁରସ୍କୃତ ହୋଇଥିବା ଏକ ଉଲ୍ଲେଖନୀୟ ଘଟଣା । ତାହା କେବଳ ଶିଳ୍ପୀଙ୍କ ଜୀବନରେ ନୁହେଁ ଓଡ଼ିଶାର ସମଗ୍ର ଆଧୁନିକ କଳା ଆନ୍ଦୋଳନ ଭିତରେ ମନେରଖିଲା ଭଳି ଘଟଣାଟିଏ । ଯେଉଁ ବିଚାରକମାନେ ଏହି ଚିତ୍ରକୁ ପୁରସ୍କୃତ କରିବା ପାଇଁ ବିବେଚନା କଲେ ସେମାନେ ନିଶ୍ଚିତ ଭାବେ ଚିତ୍ରର ରେଖା, ଛନ୍ଦ ଓ ରଙ୍ଗପ୍ରତି ଦୃଷ୍ଟି ଦେଇଥିବେ । ନିରପେକ୍ଷ ଭାବେ ବିଚାର କଲେ ଏହା କହିହେବ ଯେ, ଏଇ ଚିତ୍ରଟି ତା'ର ରେଖା ବିନ୍ୟାସର ଛନ୍ଦ ପାଇଁ ପୁରସ୍କୃତ ହୋଇଛି ।

ସମ୍ପାଦକ



Digitized by srujanika@gmail.com

ଚନ୍ଦ୍ରଶେଖର ରାଓ

# ଆଧୁନିକତାର ଅୟମାରମ୍ଭ : ଖଲ୍ଲିକୋଟ ବେଳର ଯୁବ ଚିତ୍ରକର

ସମୟ ଦୁର୍ବାର ଗତିରେ ଗଡ଼ିଚାଲେ । ତା' ସହିତ କଳା ସଂସ୍କୃତି ମଧ ତାଳ ଦେଇ ରୂପ ପରିବର୍ତ୍ତନ କରି ନିତ୍ୟ ନୂତନ ଓ ଆଧୁନିକ ହୋଇଥାଏ । ଆଜିର ଆଧୁନିକତା ଆସନ୍ତାକାଲି ପୁରୁଣା ହେଇଯାଏ, ପାରମ୍ପରିକ ପାଲଟିଯାଏ । ସବୁକାଳରେ ଶିଳ୍ପୀ ତା ସୃଷ୍ଟିରେ ନୂତନତାର ସନ୍ଧାନ ଦେଇଛି । ମନ୍ଦିର, ମଠ, ରାଜପ୍ରାସାଦ ଗାତ୍ରରେ ଥିବା ଭାସ୍କର୍ଯ୍ୟ ଓ ଚିତ୍ରକଳା ତା'ର ପ୍ରମାଣ । ପର୍ଶୁରାମେଶ୍ବର, ବ୍ରହ୍ମେଶ୍ୱର, ଲିଙ୍ଗରାଜ, କୋଣାର୍କ କିମ୍ବା ଚଉଷଠୀ ଯୋଗିନୀ ଇତ୍ୟାଦିକୁ ଅନୁଧ୍ୟାନ କଲେ ଶିଳ୍ପୀର ସନ୍ଧାନୀ ପ୍ରକ୍ରିୟା ସହଜରେ ଅନୁମାନ କରିହୁଏ । ସେହିପରି ପୁରୀ, ରଘୁରାଜପୁର, ଧରାକୋଟ, ବିରଞ୍ଚିନାରାୟଣ ମନ୍ଦିର, ସୋନପୁର, ରାବଣଛାୟା, ପାରଳାଖେମୁଣ୍ଡି, ଶ୍ରୀକୁର୍ମ ପ୍ରଭୃତିର ପାରମ୍ପରିକ ଚିତ୍ର ପୁନରାବୃତ୍ତି ନ ହୋଇ ଶିଳ୍ପୀ ସମସାମୟିକତାର ପ୍ରଲେପ ଦେଇ ଓଡ଼ିଶାର କଳାକୁ ବର୍ଣ୍ଣାନୁରଞ୍ଜିତ କରିଛି । ଏଣୁ ସବୁକାଳର ବର୍ତ୍ତମାନତା ହିଁ ଶିଳ୍ପୀପାଇଁ ଆଧୁନିକତା । ଏହି ଆଧୁନିକତାର ଚିନ୍ତାଧାରାରେ ଉଦ୍‌ବୁଦ୍ଧ ହୋଇ କେଉଁ ମହାନ ଶିଳ୍ପୀମାନେ ଅତୀତରେ ଗଢ଼ିଯାଇଛନ୍ତି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ଏବଂ ଶିବଲିଙ୍ଗ ପରି ଭାସ୍କର୍ଯ୍ୟ । ଗଛମୂଳେ ସିନ୍ଦୂର ବୋଳା ପଥର ଖଣ୍ଡିଏ ଉପରେ ଢିମାଢ଼ିମା ଦୁଇଟା ଆଖି ଥୋଇ ଆଦ୍ୟଶକ୍ତିର ଉପସ୍ଥାପନା କରିଛି କାହିଁ କେଉଁ ଯୁଗର ଶିଳ୍ପୀ । ଯୁଗ ଭେଦରେ ସୃଷ୍ଟି ହୋଇଛି ଗୁମ୍ଫାଚିତ୍ର, ପୋଡ଼ାମାଟିର ହାତୀ, ଘୋଡ଼ା, ମାଙ୍କଡ଼, ମଣିଷ ଇତ୍ୟାଦି । ନବଗୁଞ୍ଜର, ନାରୀକୁଞ୍ଜର, କାମଧେନୁ, କନ୍ଦର୍ପରଥ, ରତିବନ୍ଧ, ଗଜସିଂହ, ଗଜବିଡ଼ାଳ, ରାସଲୀଳା ଇତ୍ୟାଦି ତତ୍‌କାଳୀନ ସମୟର ଶିଳ୍ପୀର ନୂତନ ଚିନ୍ତାଧାରାର ଅନବଦ୍ୟ ଅବଦାନ ।

ଆଜିକାଲି କଳାକ୍ଷେତ୍ରରେ Concept art, Installation ର ହାଓ୍ବା ଖୁବ୍ ଜୋରରେ ବହୁଛି । କୁହାଯାଉଛି ଚିତ୍ର କିମ୍ବା ଭାସ୍କର୍ଯ୍ୟ ଆଉ ଏଣିକି ଗୃହାଙ୍ଗନ କିମ୍ବା ସଂଗ୍ରହାଳୟରେ ସଂରକ୍ଷଣର ବସ୍ତୁ ହୋଇ ରହିବ ନାହିଁ, କାନ୍ଥ କିମ୍ବା ଚଟାଣର ଶୋଭା ବର୍ଦ୍ଧକ ହୋଇ ରହିବନାହିଁ । ଏମାନଙ୍କର ସ୍ଥାୟୀତ୍ୱର ଆବଶ୍ୟକତା ନାହିଁ । ଏହି ଯୁଗରେ ସ୍ଥାୟୀଭାବେ କଳାକୁ ସଂଗୃହୀତ କରି ରଖିବା ଅର୍ଥ କୋଠାବାଡ଼ି, ଗୃହାଙ୍ଗନର ପରିବେଶକୁ ପ୍ରଦୂଷିତ କରିବା । ''Concept ଜରିଆରେ ତୁମ ସୃଷ୍ଟିର ପରିକଳ୍ପନା କର । ତୁମ କାମକୁ ଛାପି ବାଣ୍ଟିଦିଅ, ଅନର୍ଗଳ ତା ଉପରେ ତର୍କ କର । ତର୍କ ଦ୍ୱାରା ଲୋକଙ୍କ ଭିତରେ ତୁମ ଚିନ୍ତାଧାରାକୁ ପ୍ରବେଶ କରାଅ । ତାହା ହିଁ ହେବ ତୁମ ସୃଷ୍ଟିର ସଫଳତା । ଏଣିକି ତୁମ ସୃଷ୍ଟି ଆଉ କଥା ନ କହୁ ।'' ଏହି ହାଓ୍ବା ଉତ୍କଳ ଆଡ଼କୁ ମୁହାଁଇଲାଣି । କିନ୍ତୁ ଆମେ ଉତ୍କଳୀୟ ବହୁ ଆଗରୁ ଅଜସ୍ର Installation କରିଆସିଛୁ ଏବଂ ଦୈନନ୍ଦିନ ଜୀବନରେ କରି ଚାଲିଛୁ । ଅବଶ୍ୟ ସେଗୁଡ଼ିକୁ Installation ବୋଲି ପଞ୍ଜୀକରଣ କରିନାହୁଁ କି କଳା ସମାଲୋଚନାର ପରିସର ମଧକୁ ନେଇ ନାହୁଁ ।

ଓଡ଼ିଶା କଥା ସବୁବେଳେ ନିଆରା । ଶିଳ୍ପୀ ଓ କାରିଗରମାନେ ବିସ୍ମୃତି ଗର୍ଭରେ ଲୀନ ହୋଇଯାଇଥିଲେ ମଧ ତାଙ୍କ ଗୁଣଗରିମାକୁ ଉତ୍କଳ ତା'ର କାନ୍ଥବାଡ଼ରେ ଧରି ରଖିଛି । ଯେତେ ଦେଖୁଥିଲେ, ଯେତେ ଘୋଷୁଥିଲେ ସେତେ ନୂଆ ଲାଗୁଛି । ଓଡ଼ିଶାରେ ଆଧୁନିକତାର ଅୟମାରମ୍ଭ କଥା ଉଠିଲେ ମନେହୁଏ ଏହା ନଈ ବନ୍ଧ ଭାଙ୍ଗି ହଠାତ୍ ମୁଅମାଡ଼ି ଆସିଲା ପରି ରାତାରାତି ଠିଆ ହୋଇଯାଇ ନାହିଁ । ଓଡ଼ିଶାରେ କଳା ବିଦ୍ୟାଳୟ ସ୍ଥାପନ ପୂର୍ବରୁ ଆମର ପୂର୍ବସୂରୀମାନେ ଦେଶ, ବିଦେଶରୁ କଳାର ଅନୁଭୂତି, ପ୍ରେରଣା ଓ ଅନୁକରଣକୁ ହୃଦୟଙ୍ଗମ କରି ନିଜ ସୃଷ୍ଟି ମଧରେ ସମସାମୟିକତାକୁ ଦର୍ଶାଇବାକୁ ଚେଷ୍ଟା କରିଥିଲେ ।

ଖଲ୍ଲିକୋଟରେ ଓଡ଼ିଶାର ପ୍ରଥମ କଳା ବିଦ୍ୟାଳୟ ସ୍ଥାପନା ହୁଏ ୧୯୫୭ ମସିହାରେ । ଏହି କଳା ବିଦ୍ୟାଳୟରେ ମୋର ଅଧ୍ୟନ କାଳର ଘଟଣାବହୁଳ ଅଧ୍ୟାୟରେ ଆଧୁନିକତାର ଉନ୍ମେଷକୁ

Digitized by srujanika@gmail.com

ଷାଠିଏ ଦଶକରେ ଲିପିବଦ୍ଧ କରାଯାଇପାରେ । ଗୁରୁ ଅଜିତ ରାୟ ଭାରତୀୟ ଚିତ୍ରକଳା ବିଭାଗର ଶିକ୍ଷକ ଥିଲେ । ସେ ଶାନ୍ତିନିକେତନୀୟ ଶୈଳୀକୁ ବାଦ ଦେଇ ପିକାସୋ ଓ ବ୍ରାକ୍‌ଙ୍କ ଛାୟାରେ ଚିତ୍ର ଆଙ୍କୁଥିଲେ । ଅବଶ୍ୟ ଏଥିପାଇଁ ସେ ସର୍ଗତ ଗୁରୁ ଶରତ ଚନ୍ଦ୍ର ଦେବ, ତତ୍‌କାଳୀନ ଅଧକ୍ଷଙ୍କ ନାମ ସ୍ମରଣ କରନ୍ତି । ଶରତ ଚନ୍ଦ୍ର ଦେବଙ୍କ ପ୍ରୋତ୍ସାହନ ଓ ପ୍ରେରଣାରେ ସେ ତୈଳରଙ୍ଗରେ ଚିତ୍ର ଆରମ୍ଭ କରିଥିଲେ ବୋଲି କେନ୍ଦ୍ର ଲଳିତ କଳା ଏକାଡ଼େମୀକୁ ଦେଇଥିବା ତାଙ୍କ ସାକ୍ଷାତ୍‌କାରରେ କହିଛନ୍ତି । ତା ପୂର୍ବରୁ ସେ ଇଜିପ୍‌ସିଆନ୍ ଶୈଳୀରେ ଟେମ୍ପେରା ଓ ମେକ୍‌ସିକାନ୍ ଶୈଳୀରେ ପଥରରେ ମୂର୍ତ୍ତି ଖୋଦନ କରୁଥିଲେ ।

ଶରତ ଚନ୍ଦ୍ର ଦେବ ଖଲ୍ଲିକୋଟ ଠାରେ କଳା ଅନୁଷ୍ଠାନ ସ୍ଥାପନର ବହୁ ଆଗରୁ ନିଜସ୍ୱ ଶୈଳୀରେ ଚିତ୍ର ଅଙ୍କନ କରି ଆସୁଥିଲେ । ବର୍ଣ୍ଣନାତ୍ମକ ରଚନା ଓ ଶରୀର ଗଠନ ଶୈଳୀ ଥିଲା ତାଙ୍କର ଆଧୁନିକ । ଶାନ୍ତିନିକେତନୀୟ ଶୈଳୀର ସାବଲୀଳ ଛନ୍ଦ ନଷ୍ଟ ହେବାର ଆଶଙ୍କା ବା ସଂକୋଚ ତାଙ୍କ ଛବିରେ ନଥିଲା । କୋମଳ ଶିଶୁ, ସୁନ୍ଦରୀ ନାରୀ କିମ୍ବା ସୁପୁରୁଷଟିଏ ହେଉ ପଛକେ ସେ ନିଜ ଅଙ୍କନରେ କଙ୍କାଳ ଓ ମାଂସପେଶୀକୁ ଅଗ୍ରାଧିକାର ଦେଇ ଛବି କରୁଥିଲେ । ମୋର ଦ୍ୱିତୀୟ ବର୍ଷରେ ଅନୁଷ୍ଠାନରେ ମଞ୍ଚସ୍ଥ ହୋଇଥିବା ଜୟମାଲ୍ୟ ନାଟକରେ ତାଙ୍କ ରୂପସଜ୍ଜାରେ ଥିଲା ଆଧୁନିକ ଚିନ୍ତାଧାରା । ପ୍ରତ୍ୟେକ ଚରିତ୍ରକୁ ଚିତ୍ରକଳା ପରି ବ୍ରସ୍ ଷ୍ଟ୍ରୋକ୍ ମାରି ମୁହଁକୁ ମାଂସଳ କିମ୍ବା କଠିନ କରିଦେଇଥିଲେ । ତିନି ଫୁଟ ଦୂରରୁ ମୁହଁଟା ପ୍ୟାଚ୍‌ପେଣ୍ଟିଂ ପରି ପ୍ରତୀତ ହେଉଥିଲେ ହେଁ ଦଶଫୁଟ ଦୂରରୁ ଦର୍ଶକ ଗ୍ୟାଲେରୀ ପାଇଁ ଏହା ଥିଲା ଏକ କୁହୁକଭରା ଚମକ । ସାଧୀନତା ପୂର୍ବରୁ ଶରତ ଚନ୍ଦ୍ର ଦେବ ତାଙ୍କ ସୃଷ୍ଟି ମାଧ୍ୟମରେ ଆଧୁନିକ ଚିନ୍ତାଧାରାକୁ ସଂଗଠନ କରିଛନ୍ତି । ତାହା ପରବର୍ତ୍ତୀ କାଳରେ ଖଲ୍ଲିକୋଟ କଳା ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ମଧ୍ୟରେ ରେଖାପାତ କରିଛି । ମୋର ଶେଷ ଗୋଟାଏ ବର୍ଷ ଗୁରୁ ଅନନ୍ତ ପଣ୍ଡାଙ୍କ ସଂସ୍ପର୍ଶରେ ଆସିଛି । ସେ ଆସିବା ପରେ ତୈଳଚିତ୍ର ବିଭାଗର ଧାରା ବଦଳିଛି, ରଙ୍ଗ ବଦଳିଛି । ଜଳଚିତ୍ର ଓ ତୈଳଚିତ୍ରରେ ବ୍ୟବହୃତ ହେଉଥିବା ରଙ୍ଗ ଓ ଶୈଳୀରେ ବ୍ୟାପକ ପରିବର୍ତ୍ତନ ଘଟିବା ସହ ଛାତ୍ରମାନଙ୍କ ଆଶାର ଦିଗ୍‌ବଳୟରେ ଆଧୁନିକତାର ଆଲୋକ ଦ୍ୱିଗୁଣରେ ତେଜି ଉଠିଥିଲା । ଅବଶ୍ୟ ଅନନ୍ତ ପଣ୍ଡାଙ୍କ ଶୈଳ୍ପୀକ କୃତିରେ ରାମକିଙ୍କର ବେଜଙ୍କ ଚିତ୍ର ସାଧନାର ପ୍ରତିଫଳନ ମାତ୍ରାଧିକ ଥିଲା । ଅନନ୍ତ ପଣ୍ଡାଙ୍କ ଚିତ୍ର ଓ ଭାସ୍କର୍ଯ୍ୟ ବ୍ୟତୀତ ରବୀନ୍ଦ୍ର ସଂଗୀତ ଓ ସୀତାର ବାଦନରେ ପାରଦର୍ଶିତା ଥିଲା । ସେ ପିଲାଙ୍କୁ ନିଜର କରିବା କୌଶଳ ଜାଣିଥିଲେ । ତାଙ୍କର ଅନେକ ଛାତ୍ର ମଧ୍ୟରୁ ଦିନନାଥ ପାଠୀ ଥିଲେ ପ୍ରଥମ ଧାଡ଼ିର । ପ୍ରଥମ ସାକ୍ଷାତରୁ ହିଁ ସେ ତାଙ୍କ ଗୁଣ ଚିହ୍ନି ଅତିପ୍ରିୟ ଛାତ୍ର ରୂପେ ନିଜର କରି ନେଇଥିଲେ ।

ମୁଁ ଖଲ୍ଲିକୋଟରେ ଦ୍ୱିତୀୟ ବର୍ଷରେ ପଢୁଥାଏ । **୧୯୬୦ରେ ଗଞ୍ଜାମ ଜିଲ୍ଲାର ପୋଲସରାରେ ଜିଲ୍ଲାକୃଷି ପ୍ରଦର୍ଶନୀ ହେଉଥାଏ । ସେହି ପ୍ରଦର୍ଶନୀରେ ହିଁ ପ୍ରଥମ କରି ଦିନନାଥ ପାଠୀଙ୍କ ସହ ମୋର ପରିଚୟ ହୋଇଥିଲା । ଘ' ପେଟି, ଚାବଲ, ମଲାଟ, ବାଉଁଶ ଘଷ, କାଗଜ, ଗୁଣ୍ଡରଙ୍ଗ, ସିରିସ ଅଠାକୁ ନେଇ ସେ ମୁଖ୍ୟ ତୋରଣ, ଚାର୍ଟ ଓ ପୋଷ୍ଟର୍ କରୁଥିଲେ ।** ମୁଁ ନଡ଼ା ଓ ମାଟିରେ କୁ-ସଂସ୍କାର, ଅନ୍ଧବିଶ୍ୱାସ, ଗ୍ରାମ୍ୟବିକାଶ, ପରିବାର ନିୟନ୍ତ୍ରଣ ଓ ସୁସ୍ଥ ପରିବେଶ ଉପରେ ଅର୍ଦ୍ଧଶତ ସରିକି ଅଢ଼େଇ ଫୁଟ ଉଚ୍ଚର ମୂର୍ତ୍ତି କରୁଥିଲି । ସେଇ ପ୍ରଦର୍ଶନୀରେ ହିଁ ଉଭୟେ ଉଭୟଙ୍କ କାମରେ ଆକର୍ଷିତ ହୋଇଥିଲୁ ଓ ଏହି କାମ ମାଧ୍ୟମରେ ଆମର ପରିଚୟ ହୋଇଥିଲା । କିନ୍ତୁ ଅନ୍ତରଙ୍ଗତା ହୋଇ ନଥିଲା । ଖଲ୍ଲିକୋଟରେ ମୁଁ ଦ୍ୱିତୀୟ ବ୍ୟାଚ୍‌ର ଛାତ୍ର । ଦିନନାଥ ପାଠୀ ତୃତୀୟ ବ୍ୟାଚ୍‌ର ଛାତ୍ର ।

ପ୍ରଥମ ବ୍ୟାଚ୍‌ରେ ଲକ୍ଷ୍ମୀଧର ସାହୁ, ଅକ୍ଷୟ ଦାସ, ବ୍ରଜ ମିଶ୍ର, ନୃସିଂହ ଦାସ, ପୂର୍ଣ୍ଣ ପ୍ରଧାନ, ରମେଶ ମହାନ୍ତି, ନବ ମହାନ୍ତି, ତାରିଣୀ ତ୍ରିପାଠୀ, ବିନୋଦ, ଉଦୟ, ଦିପେନ୍ ବୋଷ, ଭାସ୍କର ସାମୀ, ମଦନ ପଣ୍ଡା ଖୁବ୍ ଭଲ କାମ କରୁଥିଲେ । ଶରତ ଚନ୍ଦ୍ର ଦେବ ଛାତ୍ରମାନଙ୍କୁ ଖୁବ୍ ଭଲ ପାଉଥିଲେ ।

Digitized by srujanika@gmail.com

ଗରିବ ଛାତ୍ରଙ୍କୁ ଆର୍ଥିକ ସାହାଯ୍ୟ ବି କରୁଥିଲେ । ତୈଳଚିତ୍ରରେ ମାତ୍ରାଧିକ ଖର୍ଚ୍ଚକୁ ଏଡ଼ାଇବା ପାଇଁ ହାତ ତିଆରି କାନ୍‌ଭାସ୍ ଓ ପାଉଡ଼ର କଲର୍‌ରେ ଲିନ୍‌ସିଡ୍ ଅଏଲ୍‌କୁ ପେଣ୍ଟିଙ୍ଗ୍ ଛବି କରିବା ପାଇଁ ପରାମର୍ଶ ଦେଉଥିଲେ । ସେ ନିଜେ ଲାଇଫ୍ ଷ୍ଟଡ଼ି, ନ୍ୟୁଡ୍ ଷ୍ଟଡ଼ି ଓ ପେଣ୍ଟିଙ୍ଗ୍ କ୍ଲାସ୍ ପରିଚାଳନା କରୁଥିଲେ । ପ୍ରଥମେ ପ୍ରଥମେ ଲାଜରେ ନ୍ୟୁଡ୍ କ୍ଲାସକୁ ଝିଅପିଲାମାନେ ଆସୁ ନଥିଲେ । ନ୍ୟୁଡ୍ କ୍ଲାସ୍ ଦୂରେ ଥାଉ ଅନୁଷ୍ଠାନକୁ ଯିବା ଆସିବା ମଧ୍ୟ ଓଢ଼ଣା ଦେଇ କରୁଥିଲେ । ଆମବେଳେ ଖଲ୍ଲିକୋଟରେ ଶାନ୍ତିନିକେତନୀୟ ଧାରା ଅନ୍ୟ ସବୁ ଧାରାଠୁ ଖୁବ୍ ପ୍ରଭାବଶାଳୀ ଥିଲା । ଅନେକ ଶିକ୍ଷକ କଳା ଭିତରେ ଆଧୁନିକତାର ପ୍ରବେଶକୁ ଘୋର ବିରୋଧ କରୁଥିଲେ । ଏଣୁ ଛାତ୍ରଙ୍କ ଭିତରେ ଏହା ପ୍ରବେଶ କରିବାକୁ ବିଳମ୍ବ ଲାଗିଥିଲା । ଶରତ ଚନ୍ଦ୍ର ଦେବଙ୍କ ଚିତ୍ର ବ୍ୟତୀତ ଅଜିତ କେଶରୀ ରାୟଙ୍କ ଚିତ୍ରରେ କ୍ୟୁବିକ୍ ଭାବ ଅଧିକ ଥିଲା । ତାଙ୍କର ଫ୍ଲାଇଟ ଚିତ୍ରର ସଫଳ ରୂପାୟନ ପରେ ସେ ଆଉ ଜଳରଙ୍ଗରେ ଟେମ୍ପେରା ନକରି ତୈଳଚିତ୍ର, ଲିନୋ ଓ କାଠ ଖୋଦେଇରେ ଆଧୁନିକ ଧାରାର ଚିତ୍ର କରିବାକୁ ଲାଗିଲେ । କିଛି ଛାତ୍ର ତାଙ୍କର ଆଧୁନିକ ଧର୍ମୀର ଚିତ୍ରକୁ ସମାଲୋଚନା କରୁଥିଲେ । ସେମାନଙ୍କ ମଧ୍ୟରୁ ଭାସ୍କର ସାମୀ ଥିଲେ ଅନ୍ୟତମ । ସେ ଥରେ ଆକ୍ଷେପମୂଳକ ଭାବେ କାଗଜ ଉପରେ ଅଠା, ବାଲି, ବିଭିନ୍ନ ରଙ୍ଗ, ପାନପିକ ମାଧ୍ୟମରେ ନାନା ପ୍ରକାର ଚିତ୍ର କରିଥିଲେ । ତିରିଶିରୁ ଚାଳିଶ ଗୋଟି କାମ କାନ୍ଥରେ ଲଗାଇ ଅଜିତ କେଶରୀ ରାୟଙ୍କୁ ଡାକିଥିଲେ ଉଦ୍‌ଘାଟନ କରିବାକୁ । ପ୍ରକୃତରେ ଅଜିତ କେଶରୀ ରାୟ ତାଙ୍କ ସରଳ ଓ ନିଷ୍କପଟ ପଣ ଯୋଗୁଁ ସେହି ଛାତ୍ରର ଇଙ୍ଗିତକୁ ବୁଝିପାରି ନଥିଲେ । ସେ ସେହି ପ୍ରଦର୍ଶନୀକୁ ଉଦ୍‌ଘାଟନ କରି ଛବିଗୁଡ଼ିକୁ ଦେଖି ଅତିମାତ୍ରାରେ ବିହ୍ୱଳିତ ହୋଇଯାଇଥିଲେ । ସେ ବହୁତ ତାରିଫ୍ କରି କେଉଁ ଛବିରେ କି କି 'ଚ୍ଚଜମ୍' ରହିଛି ବୁଝାଇବାରେ ଲାଗିଥାନ୍ତି । ସେହି ଛୋଟ ଛୋଟ କାମକୁ ବଡ଼ କାନଭାସ୍‌ରେ ଚିତ୍ର କରିବାକୁ ତାଙ୍କୁ ପରାମର୍ଶ ଦେଇଥିଲେ । ସତରେ ଭାସ୍କର ବାବୁ ନିଜ ଅଜାଣତରେ ଯାହା ଆଙ୍କିଥିଲେ ତାକୁ ହିଁ ସମ୍ବଳ କରି ସେ ଆଗେଇ ଥିଲେ ନାମୀ ଶିଳ୍ପୀଟିଏ ହୋଇ ପାରିଥାନ୍ତେ । ସେ କିନ୍ତୁ ଫଟୋଗ୍ରାଫ୍‌ର ପ୍ରେମ ଭିତରେ ବାନ୍ଧି ହୋଇ ରହିଗଲେ ।

**ଦିନନାଥ ବାବୁ ତାଙ୍କର ତୃତୀୟ ବର୍ଷରେ ତୈଳଚିତ୍ରକୁ ସତନ୍ତ୍ର ବିଷୟ ରୂପେ ବାଛିଥିଲେ । ପ୍ରଥମ ବର୍ଷରୁ ହିଁ ତାଙ୍କ ଦକ୍ଷ ହାତର ସୂଚନା ମିଳୁଥିଲା । ତାଙ୍କ ଚିତ୍ର ମୂଳଦୁଆ ଖୁବ୍ ଟାଣ ଥିଲା । ସେ ତାଙ୍କ ଭାଇନା ଲୋକନାଥ ପାଠୀଙ୍କ ପ୍ରେରଣା ଓ ସହଯୋଗ ମୂଳରୁ ପାଇଥିଲେ । ମୂଳରୁ ସେ ସୁନ୍ଦର Realistic ଚିତ୍ର ଆଙ୍କୁଥିଲେ ।**

ପାଟ ଅଗଣାକୁ ଘେରି ରହିଥିବା ବଖରାଗୁଡ଼ିକ ଏବଂ ପ୍ରାସାଦର ସାମନା ପଟ ରାଜାଙ୍କ ମଟର ଗ୍ୟାରେଜ୍‌ଟି ଛାତ୍ରାବାସ ରୂପେ ବ୍ୟବହୃତ ହେଉଥିଲା । ସମୟକ୍ରମେ ଏହି ଦୁଇଟି ଗଞ୍ଜାମୀ ହଷ୍ଟେଲ ଓ କଟକୀ ହଷ୍ଟେଲ୍‌ର ରୂପ ନେଲା । କିଛି କୁଚକ୍ରୀଙ୍କ ପ୍ରରୋଚନାରେ କଳା ବିଦ୍ୟାଳୟକୁ ଭୁବନେଶ୍ୱର କିମ୍ବା କଟକ ସ୍ଥାନାନ୍ତର ପାଇଁ ଉଦ୍ୟମ ହୋଇଥିଲା । ସେହି ପ୍ରାନ୍ତର ଛାତ୍ରମାନଙ୍କୁ ଧର୍ମଘଟ ପାଇଁ ପ୍ରକାରାନ୍ତେ ପ୍ରୋତ୍ସାହନ ଦିଆଯାଇଥିଲା । ଏଥିପାଇଁ କଟକୀ ଓ ଗଞ୍ଜାମୀ ଛାତ୍ରଙ୍କ ଭିତରେ ମନାନ୍ତର ସୃଷ୍ଟି କରାଯାଇଥିଲା । ଫଳରେ ଛାତ୍ର ଅଶାନ୍ତି ଲାଗି ରହିଲା, ବିଦ୍ୟାଳୟରେ ପାଠ ପଢ଼ା ବ୍ୟାହତ ହେଲା । ପିଲାମାନଙ୍କୁ କଟକୀ, ଗଞ୍ଜାମୀ କହି ରାଜ୍ୟର କଳା ଆନ୍ଦୋଳନରେ ବିଭେଦ ସୃଷ୍ଟି କରିବା ପାଇଁ ଚେଷ୍ଟା କରାଗଲା । ତେବେ କାଳକ୍ରମେ ସମସ୍ତ ଉଦ୍ୟମ ଫସର ଫାଟି ଯାଇଥିଲା । ଆଜି ଓଡ଼ିଶାରେ ସଂଖ୍ୟାଧିକ କଳା ମହାବିଦ୍ୟାଳୟ ଖୋଲି ଯାଇଛି । ତତ୍‌କାଳୀନ ଚକ୍ରାନ୍ତର ମହାନାୟକମାନେ ଉପଲବ୍ଧି କରିପାରୁଥିବେ, ସେତେବେଳର ଖଲ୍ଲିକୋଟ କଳା ବିଦ୍ୟାଳୟ ଓ ଆଜିର ସଂଖ୍ୟାଧିକ ମହାବିଦ୍ୟାଳୟ ମଧ୍ୟରେ ଥିବା ଦୂରତାକୁ ।

**ପାଠୀ ବାବୁ ତାଙ୍କର ଦ୍ୱିତୀୟ ବର୍ଷରେ ଆସି ପୂର୍ବ ହଷ୍ଟେଲ୍ (ଗଞ୍ଜାମ)ରେ ଯୋଗ ଦେଲେ । ଆମେ ଗଞ୍ଜାମ ହଷ୍ଟେଲ୍‌ର ଅନ୍ତେବାସୀ ଗୋଟିଏ କୁଟୁମ୍ବ ପରି ଚଳୁଥିଲୁ । ବଡ଼ ସାନ ଭିତରେ ଯେଉଁ ଭେଦଭାବ, ତାହା ଅନ୍ତତଃ ଏଠି ନଥିଲା । ପାଠୀ ବାବୁ ତାଙ୍କ କ୍ଷିପ୍ର ବ୍ରସ୍**

Digitized by srujanika@gmail.com

**ରଚନା ଓ ତୁଳି ପାଇଁ ସମସ୍ତଙ୍କର ପ୍ରିୟ ହୋଇଯାଇଥିଲେ । ସେ ତାଙ୍କ ତଳ ଓ ଉପର ବ୍ୟାଚ୍‌ର ଅନେକ ପିଲାଙ୍କର କାମକୁ ସଂଶୋଧନ କରୁଥିଲେ । ତାଙ୍କର ଅସଚ୍ଛଳ ଆର୍ଥିକ ଅବସ୍ଥା ଦୃଷ୍ଟିରୁ ଏହା ତାଙ୍କ ପାଇଁ ଅଭ୍ୟାସର ବି ସୁଯୋଗ ଯୋଗାଇ ଦେଉଥିଲା ।**

ଆମବେଳେ ପାଟଅଗଣାଟି ରଙ୍ଗମଞ୍ଚ ପାଲଟି ଯାଇଥିଲା । ସବୁବେଳେ ହସ, ଖୁସି, ମଉଜ, ମଜଲିସ୍‌ରେ ଆମ ହଷ୍ଟେଲ୍ ମୁଖରିତ ହେଉଥିଲା । ବିଶେଷ କରି ସନ୍ଧ୍ୟା ନଇଁଗଲେ ବିଭିନ୍ନ ବାଦ୍ୟଯନ୍ତ୍ର ସହ ନାଚ, ଗୀତ, ହୁଳହୁଳି ଶବ୍ଦରେ ପାଟଅଗଣା ଝଂକୃତ ହୋଇ ତିନିମହଲା ଉଆସ ଟପି ପାହାଡ଼ରେ ପ୍ରତିଧ୍ୱନିତ ହେଉଥିଲା । ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ୍ ଲାଲା ସାର୍, ଡିଜାଇନ୍ ବିଭାଗର ରବିସାର୍ ହଷ୍ଟେଲର ଶାନ୍ତି, ଶୃଙ୍ଖଳା ଭଙ୍ଗ ହେବା ଆଶଙ୍କାରେ ଆମ ଉପରେ ବିରକ୍ତି ପ୍ରକାଶ କରୁଥିଲେ ହେଁ ତିନିମହଲାରେ ରହୁଥିବା ଅଧ୍ୟକ୍ଷ ମହାଶୟ କିନ୍ତୁ ଅତ୍ୟନ୍ତଖୁସିରେ ହସି ଉଠୁଥିଲେ ହା ହା ହୋଇ । ଏହି ହସ ଥିଲା ଆମ ପାଇଁ ସମର୍ଥନ ଓ ପ୍ରେରଣା ।

ଆମର ଏ ପ୍ରତିଦିନର ସୁଆଙ୍ଗ ଦେଖି ଅନୁଷ୍ଠାନରେ ନାଟକ ମଞ୍ଚସ୍ଥ ପାଇଁ ଅଧ୍ୟକ୍ଷ ପ୍ରସ୍ତାବ ଦେଲେ । ଅତି ସଫଳତାର ସହ ତାଙ୍କ ଓ ଅଫିସ୍‌ର ବଡ଼ବାବୁ ଟିକିବାବୁଙ୍କ ନିର୍ଦ୍ଦେଶନାରେ, ରବିସାର୍‌ଙ୍କ ମଞ୍ଚସଜ୍ଜା ଓ ପରିକଳ୍ପନାରେ ଭଞ୍ଜକିଶୋର ପଟ୍ଟନାୟକଙ୍କ ଜୟମାଲ୍ୟ ଖଲ୍ଲିକୋଟ ଅଞ୍ଚଳରେ ସାଫଲ୍ୟ ମଣ୍ଡିତ ହୋଇଥିଲା । ଆମେ ପୁଣି ଦ୍ୱିତୀୟ ଅର୍ଘ୍ୟରୂପେ କାହ୍ନୁଚରଣ ମହାନ୍ତିଙ୍କ ଝଂଜା ଉପନ୍ୟାସର ଗୋପାଳ ଛୋଟରାୟଙ୍କ ନାଟ୍ୟରୂପାନ୍ତରକୁ ପ୍ରଦର୍ଶିତ କରିଥିଲୁ । ସେତେବେଳେ ସେହି ପ୍ରାନ୍ତରରେ ଝିଅମାନେ ମଞ୍ଚରେ ଅଭିନୟ କରିବା ସପ୍ନଥିଲା । ତଥାପି ମୋ ବିଭାଗର ସହପାଠୀ ସ୍ନେହପ୍ରଭା ମହାନ୍ତି ଭାସ୍କର୍ଯ୍ୟ ବିଭାଗର ରମେଶ ମହାନ୍ତିଙ୍କ ସହ ମିଶି ମଞ୍ଚ ଉପରେ ଠିଆ ହୋଇ ''ତେରେ ପ୍ୟାର୍‌କା ଆସ୍‌ରା ଚାହାତା ହୁଁ'' ଗୀତ ଗାଇ ଖଲ୍ଲିକୋଟରେ ଆଲୋଡ଼ନର ଶିକାର ହୋଇଥିଲେ । ଝିଅ ପିଲାମାନେ ତେଣୁ ନାଟକରେ ଅଭିନୟ କରିବା ପାଇଁ କୁଣ୍ଠାପ୍ରକାଶ କଲେ । ଏଣୁ ଆମେ କେତେ ଜଣ ପୁଅ ପିଲା ନାରୀ ଭୂମିକା ପାଇଁ ମୋହର ମରା ହୋଇ ସାରିଥିଲୁ । ପ୍ରତ୍ୟେକ ବହିରେ ମୁଁ ନାୟିକା, ବିପିନ ସାହୁ ଆଧୁନିକା, ଦେବରାଜ ସାହୁ ହାସ୍ୟ ଓ ଖଳନାୟିକା, ବ୍ରଜ ମିଶ୍ର ହାସ୍ୟନାୟିକା, ଲକ୍ଷ୍ମୀଧର ସାହୁ ''ମା'' ଭୂମିକାରେ ଅଭିନୟ କରିଥିଲୁ । ପୁଣି ଅଜିତ କେଶରୀ ରାୟ ଚରିତ୍ର ଅଭିନୟ କରୁଥିଲେ । ''ଝଂଜା''ରେ ମୁଁ କ୍ଷଣପ୍ରଭା ହେଇଥିଲି । ପାଠୀ ବାବୁ ଏଥିରେ ମାରଓ୍ୱାଡ଼ି ବ୍ୟବସାୟୀ ଭୂମିକାରେ ଅଭିନୟ କରିଥିଲେ । ସେ ଏବେ ବି ''ଝଂଜା''ର ସଂଳାପକୁ ଥଟ୍ଟା ମଜାରେ ଦୋହରାନ୍ତି - ''କ୍ଷଣପ୍ରଭା ! ତୁମେ ଆଗେଇଯାଅ, ନାରୀର ଆବେଦନ କେବେ ବିଫଳ ହୁଏନା ଇତ୍ୟାଦି ।''

ଶାନ୍ତିନିକେତନୀୟ ପୁନଃଅଭ୍ୟୁଦୟ ଶୈଳୀ କଟକୀ ଓ ଗଞ୍ଜାମୀ ହଷ୍ଟେଲରେ ଦୁଇ ପ୍ରକାର ଧାରାରେ ଦେଖାଦେଇଥିଲା । କଟକୀ ହଷ୍ଟେଲ ବା ପଶ୍ଚିମ ହଷ୍ଟେଲ ଛାତ୍ରମାନେ ଟେମ୍ପେରା ଓ ଧୌତଚିତ୍ରରେ ଅବନୀନ୍ଦ୍ରନାଥ ଠାକୁର, ଈଶ୍ୱର ଦାସ ଓ ରବିନାରାୟଣ ନାୟକଙ୍କ ଶୈଳୀକୁ ଅନୁସରଣ କଲାବେଳେ ଗଞ୍ଜାମ ହଷ୍ଟେଲ ଛାତ୍ରମାନେ ଯଥା ଲକ୍ଷ୍ମୀଧର ସାହୁ, ଦିପେନ୍ ବୋଷ, ଅନ୍ତର୍ଯ୍ୟାମୀ ତ୍ରିପାଠୀ ପ୍ରଭୃତି ଶରତ ଚନ୍ଦ୍ର ଦେବଙ୍କ ଶୈଳୀ ଅନୁସରଣ କରୁଥିଲେ । ଲକ୍ଷ୍ମୀଧର ବାବୁ ଶରତ ଚନ୍ଦ୍ର ଦେବଙ୍କ ପରି ତାଙ୍କ ଛବିଗୁଡ଼ିକରେ ଶତାଧିକ ନରନାରୀ ଉପସ୍ଥାପନ କରୁଥିଲେ । କିନ୍ତୁ ଧୌତଚିତ୍ର ହେଉ ବା ଟେମ୍ପେରା ଚିତ୍ର ହେଉ କଟକ ହଷ୍ଟେଲ ଛାତ୍ରଙ୍କ ପରି ଶୈଳୀରେ ଏବଂ ରଙ୍ଗରେ ଲାଳିତ୍ୟର ଅଭାବ ରହୁଥିଲା । ଏଣୁ ସେ ତାଙ୍କପରି ଶତାଧିକ ଚରିତ୍ର ରଖି ଛବି କରିବାକୁ କଟକୀ ପିଲାଙ୍କୁ ଯୁଦ୍ଧଂଦେହି ଆହ୍ୱାନ କରୁଥିଲେ । ଲକ୍ଷ୍ମୀଧର ବାବୁ ଅନ୍ୟର ଛବି ଉପରେ ଆଲୋଚନା କଲାବେଳେ ଖୁବ୍ ରାଗି ଯାଉଥିଲେ । ମୋର ତୃତୀୟ ବର୍ଷରେ **ଚନ୍ଦ୍ରକୁମୁଦ, ଗଙ୍ଗାବତରଣ, ଲକ୍ଷ୍ମୀଛଡ଼ା ଜଗନ୍ନାଥ, ମାୟା** ଇତ୍ୟାଦି ଧୌତଚିତ୍ରରେ ଦୁଇଟି ଚରିତ୍ରରୁ ଅଧିକ ନଥିବାରୁ ମତେ ମଧ ସେ ସମାଲୋଚନା କରିଥିଲେ । ଦିନନାଥ ପାଠୀ ମଧ ଶରତ ଦେବଙ୍କ ଛବିର ଖୁବ୍ ଜଣେ ସ୍ତାବକ ଥିଲେ । ଶରତ ଚନ୍ଦ୍ରଙ୍କ ପ୍ରଭାବରେ ସେ **ସୀତା ସଂୟମ୍ବର,**

Digitized by srujanika@gmail.com

**ଶ୍ରୀରାମ ଗୁହକର ମିଳନ**ରେ ଅନେକଗୁଡ଼ିଏ ଚରିତ୍ରର ଅବତାରଣା କରି ଟେମ୍ପେରା କରିଥିଲେ ଓ ଗଞ୍ଜାମ ହଷ୍ଟେଲ ଶୈଳୀର ବଜାୟ ରଖିଥିଲେ ।

ଛାତ୍ରମାନେ ଶରତ ଦେବଙ୍କୁ ଅତ୍ୟନ୍ତ ଭଲପାଉଥିଲେ ମଧ ତାଙ୍କ ସହକର୍ମୀଙ୍କ ସହଯୋଗ ନ ପାଇ ସେ ଆଧାତ୍ମିକ ଜୀବନ ପ୍ରତି ଅଧିକ ମନ ବଳାଇଥିଲେ । ''ଦିବ୍ୟଜୀବନ ସଂଘ''ର ଏକ ଶାଖା ଗଠନ କରି ସେ ସଭାପତି ଦାୟିତ୍ୱ ବହନ କରିଥିଲେ ଓ ଦିନନାଥ ପାଠୀଙ୍କୁ ସଂପାଦକ ରୂପେ ଚୟନ କରିଥିଲେ । ସଂପାଦକ ଦାୟିତ୍ୱ ସୁନ୍ଦରୁ ରୂପେ ତୁଲାଇ ସେ ଅଧକ୍ଷଙ୍କ ଅତି ପ୍ରିୟ ହୋଇପାରିଥିଲେ । ଗୁରୁ ଅନନ୍ତ ପଣ୍ଡାଙ୍କ ଆଗମନରେ ଶ୍ରୀପାଠୀ ଆଧାତ୍ମିକ ଯୋଗ ସାଧନା ଅପେକ୍ଷା କଳା ସାଧନାକୁ ଅଧିକ ଗୁରୁତ୍ୱ ଦେଇ ପଣ୍ଡା ସାର୍‌ଙ୍କ ଅଧିକ ନିକଟତର ହେବାକୁ ଲାଗିଲେ । ତାଙ୍କ ଗୁରୁଙ୍କ ପଦାଙ୍କ ଅନୁସରଣରେ ସେ ପ୍ରଥମେ ପ୍ରଥମେ ହଳଦିଆ, ନୀଳ, କଳା ଓ ନାଲିରେ ବୋଲ୍‌ଡ୍ ପ୍ୟାଚ୍ ମାରି କାନ୍‌ଭାସ୍ ବର୍ଣ୍ଣିଳ କରୁଥିଲେ । ୧୯୬୨ ମସିହାରେ ରାଜ୍ୟ ଲଳିତକଳା ଏକାଡେ଼ମୀର ପ୍ରଥମ କଳା ପ୍ରଦର୍ଶନୀରେ ସେ ତାଙ୍କ ଭୂଦୃଶ୍ୟ ପାଇଁ, ମୁଁ ବିଷପୀୟୂଷ ପାଇଁ, ଶିବ ପାଣିଗ୍ରାହୀ, ଜଗଦୀଶ କାନୁନ୍‌ଗୋ ଓ ବାଳମାଧବ ଦାସ ନିଜ ନିଜ କୃତୀରେ ଛାତ୍ର ବିଭାଗରେ ପ୍ରଥମେ ପୁରସ୍କୃତ ହୋଇଥିଲୁ । ଗୁରୁ ଅଜିତ ରାୟଙ୍କ ପ୍ଲାଇଟ୍ ଚିତ୍ର ଆଧୁନିକ କଳା ପାଇଁ ସେତେବେଳେ ପୁରସ୍କୃତ ହୋଇଥିଲା । ଏହାକୁ ସେହି ପ୍ରଦର୍ଶନୀରେ ପ୍ରଦର୍ଶିତ ନ କରିବା ପାଇଁ ଭୁବନେଶ୍ୱରରେ ସେବେଳର ବରିଷ୍ଠ ଶିଳ୍ପୀମାନେ ଜୋର୍‌ସୋର୍‌ରେ ସ୍ୱର ଉତ୍ତୋଳନ କରିଥିଲେ ।

**ଦିନନାଥ ପାଠୀଙ୍କ ଜଳରଙ୍ଗରେ ଯେତେ ଚମତ୍କାରିତା ଥିଲା ତୈଳଚିତ୍ରରେ ତତୋଧିକ ମାଦକତା ଥିଲା । ଛାତ୍ରମାନଙ୍କ ଭିତରେ ସେ ହିଁ ପ୍ରଥମ ଥର ପାଇଁ ପରୀକ୍ଷାରେ ଗୋଟିଏ ବିଷୟକୁ ଆଧୁନିକ ଶୈଳୀରେ ଅଙ୍କନ କରିବା ଦୃଢ଼ ପ୍ରୟାସ କରିଥିଲେ । ତତ୍‌କାଳୀନ ପରୀକ୍ଷକ ସର୍ଗତ ଗୋପାଳ କାନୁନ୍‌ଗୋ ଏହାକୁ ଘୋର ବିରୋଧ କରିବା ସତ୍ତ୍ୱେ ଅନନ୍ତ ପଣ୍ଡାଙ୍କ ସମର୍ଥନ ଲାଭ କରି ଅନୁଷ୍ଠାନରେ ସର୍ବୋଚ୍ଚ ନମ୍ବର ରଖି ରେକର୍ଡ଼ ସୃଷ୍ଟି କରିଥିଲେ ।** ପୂର୍ବ ହଷ୍ଟେଲର କଳା ବାତାବରଣକୁ ଦିନନାଥ ସକ୍ରିୟ ଓ ସତେଜ କରିଦେଇଥିଲେ । ତୃତୀୟ ବର୍ଷରେ ତାଙ୍କର କ୍ୟୁବିକ୍ ଭାବଧାରାର **ଘ ବଗିଚ୍ଚର ଲଳନା, ପ୍ରେମୀଯୁଗଳ** ଚିତ୍ର ମତେ ଖୁବ୍ ଭଲ ଲାଗିଥିଲା । ମୁଁ ଧୀରେ ଧୀରେ ତାଙ୍କ ଚିତ୍ରର ମୋହରେ ପଡ଼ି ବନ୍ଧୁତାର ହାତ ବଢ଼ାଇ ଦେଇଥିଲି । କେବଳ ମୁଁ କାହିଁକି ସମଗ୍ର ଅନୁଷ୍ଠାନରେ ତାଙ୍କ ବଳିଷ୍ଠ ହାତ ପାଇଁ ସମସ୍ତଙ୍କ ପାଖରେ ସେ ପ୍ରିୟ ହୋଇପାରିଥିଲେ ।

ଆମେ ଭାରତୀୟ ଚିତ୍ରକଳା ବିଭାଗର ଛାତ୍ରମାନେ ଅଜନ୍ତା ଫ୍ରେସ୍କୋ, ଇଜିପ୍‌ସିଆନ୍ ଫ୍ରେସ୍କୋ, ତିବ୍ବତୀୟାନ ବ୍ୟାନର ମୂଳପଦ୍ଧତି ଅନୁଯାୟୀ ଚିତ୍ର କରୁଥିଲୁ । ଦିନନାଥ ଦୁଇଗୋଟି ଟେମ୍ପେରା ବ୍ୟତୀତ ଆନ୍ଧ୍ର ପ୍ରଦେଶର ଚିତ୍ରଶିଳ୍ପୀ ପାଇଡ଼ିରାଜୁଙ୍କ ଶୈଳୀରେ **ବାସୁଆବଳଦ** ଚିତ୍ର ଅଙ୍କନ କରିଥିଲେ । ମୋ ରଙ୍ଗପତ୍ର ବ୍ୟବହାର କରିଥିବାରୁ ତାଙ୍କ ଟେମ୍ପେରା ଚିତ୍ରଗୁଡ଼ିକ ମୋ ବର୍ଣ୍ଣିକା ପାଖାପାଖି ହୋଇଥିଲା କିନ୍ତୁ ଡ୍ରଙ୍ଗ ଥିଲା Realistic । ଏହାଛଡ଼ା ସେ ମୋ ସହ ମିଶି ଗୋଟାଏ ଦୁଇଟା ଧୌତ ଚିତ୍ର **ବସନ୍ତ, ଅଶୋକ ବନରେ ସୀତା** ବି କରିଥିଲେ ।

ସେତେବେଳେ ଗୁରୁ ରବିନାରାୟଣ ନାୟକ ଟେମ୍ପେରା, ଧୌତଚିତ୍ର, ରେଖା, ଲିନୋଖୋଦେଇ, ଷ୍ଟେନ୍‌ସିଲ ପ୍ରିଣ୍ଟ, ବାଟିକ୍, ଚମଡ଼ା, ଅଳଙ୍କରଣ ଡିଜାଇନ ପ୍ରଭୃତି ଶିକ୍ଷା ଦେଉଥିଲେ ଏବଂ ପ୍ରଭାବଶାଳୀ ଚମତ୍କାରିତା ଥିଲା ତାଙ୍କ ମଣ୍ଡନ ଶିଳ୍ପରେ । ମୋର ମନେ ଅଛି- ଶ୍ରୀ ପାଠୀ ତାଙ୍କ ଶ୍ରେଣୀରେ ପ୍ୟାନେଲ୍ ଡିଜାଇନ୍‌ରେ ଦି'ପାଖ ସମାନ ନଥାଇ ଆଧୁନିକ ଫର୍ମରେ ଚଢ଼େଇ ଓ ଲତା ଅଙ୍କନ କରି ଅପ୍ରିୟ ହୋଇଥିଲେ । ମୁଁ ତୃତୀୟ ବର୍ଷରେ ଭାସ୍କର୍ଯ୍ୟ ଓ ଡିଜାଇନ୍‌କୁ ସତନ୍ତ୍ର ବିଷୟ ରୂପେ ନେଇଥିଲେ ହେଁ ଭାରତୀୟ ଚିତ୍ରଣ ଧାରାରେ ଥିବା ସୂକ୍ଷ୍ମ ଏବଂ ସାବଲୀଳ ରେଖା, ବର୍ଣ୍ଣର କୋମଳତା, ଧର୍ମଦର୍ଶନର ସୂକ୍ଷ୍ମଭାବ ପ୍ରତି ଆକୃଷ୍ଟ ହୋଇ ଭାସ୍କର୍ଯ୍ୟ ବିଭାଗକୁ ତ୍ୟାଗ କରିଥିଲି । ହଠାତ୍ ମୁଁ

Digitized by srujanika@gmail.com

ଶାନ୍ତିନିକେତନୀୟ ଧାରାରୁ ବିଚ୍ଛିନ୍ନ ହୋଇପାରୁ ନଥିଲି । ତଥାପି ଜ୍ୟାମିତିକ ଫର୍ମରେ **ଗୋଲାଦମଣ୍ଡି, କାଷ୍ଠ ଅଭିଯାନ, ମା ଛୁଆ** ଅଙ୍କନ କରିଥିଲି । ଚିତ୍ରରେ ପ୍ରଶସ୍ତ କପାଳ, ତୀକ୍ଷ୍ଣ ନାସିକା, କ୍ଷୀଣକଟି, ଆକର୍ଣ୍ଣ ଲମ୍ବିତ ଆଖି ରଖି ଚିତ୍ରଣ କରୁଥିଲି । ଏଗୁଡ଼ିକୁ ଦେଖି ଉପର ବ୍ୟାଚର ବଡ଼ଭାଇ ଲକ୍ଷ୍ମୀଧର ସାହୁ ମୋ ପ୍ରତି ଶାଣିତ ବ୍ୟଙ୍ଗ ପ୍ରୟୋଗ କରିବାକୁ ପଛେଇ ନଥିଲେ ।

ତୈଳଚିତ୍ରରେ ଆଧୁନିକତାର ଅବତାରଣା ଯେତେ ସହଜ, ଶାସ୍ତ୍ରୀୟ ସଂପନ୍ନ କଳାକୁ ଆଧୁନିକୀ କରିବା ସେତେଟା ସହଜ ନଥିଲା । ଦିନନାଥଙ୍କ ଯୁବବେଳର ଯେଉଁ ଛାତ୍ରମାନେ ଆନୁଷ୍ଠାନିକ ଗଡ୍ଡାଳିକାରୁ ଅଲଗା ହେବାକୁ ଚେଷ୍ଟା କରିଥିଲେ ସେମାନେ ସଫଳ ହୋଇନଥିଲେ । କିନ୍ତୁ ଦିନନାଥ ଆଧୁନିକତାର ଅବତାରଣା କରି ସୁଫଳ ପାଇଥିଲେ । ଛାତ୍ରାବସ୍ଥାରେ **ଫସଲଅମଳର ଗୀତ** ଚିତ୍ର ଅଙ୍କନ କରି 'ଏକାଡ଼େମୀ ଅଫ୍ ଫାଇନ୍ ଆର୍ଟ୍ସ୍' କଲିକତା ଦ୍ୱାରା ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀରେ ପୁରସ୍କୃତ ହୋଇଥିଲେ । ଏହି ଘଟଣା ଥିଲା ଛାତ୍ର ଓ ଶିକ୍ଷକମାନଙ୍କ ଭିତରେ ପ୍ରଥମ । ଏହା ପରଠୁ କଳା ବିଦ୍ୟାଳୟରେ ତାଙ୍କର ଖାତିର ଖୁବ୍ ବଢ଼ିଯାଇଥିଲା । ତେଣିକି ସେ ଆନୁଷ୍ଠାନିକ ଶୈଳୀକୁ ବାଦ ଦେଇ ବିଭିନ୍ନ 'ଇଜମ୍' ଉପରେ ବ୍ରସ୍ ଚାଳନା କରିଥିଲେ ।

୧୯୫୭ ମସିହା ଥିଲା ଓଡ଼ିଶା କଳା ଇତିହାସରେ ଏକ ସ୍ମରଣୀୟ ବର୍ଷ । ସଂପ୍ରତିକ କଳାର ବୀଜ ଏହା ପରଠୁ ବୁଣା ଯାଇଥିଲା । ଶରତ ଚନ୍ଦ୍ର ଦେବ, ଅଜିତ କେଶରୀ ରାୟ ଓ ଅନନ୍ତ ପଣ୍ଡା ଏହି ତ୍ରିଦେବଙ୍କ କଳା ସଂଗମରେ ଅବଗାହନ କରିବାର ସୁଯୋଗ ମିଳିଥିଲା ଅନେକ ଯୁବଶିଳ୍ପୀଙ୍କୁ । ଏହି ତ୍ରିଦେବଙ୍କ ସଂଗମରୁ ଅନେକ କ୍ଷୁଦ୍ରଧାରା ନିର୍ଗତ ହୋଇ ନିଜ ନିଜ ଗତିକୁ ଚଳଚଞ୍ଚଳ କରି ସଂପ୍ରତିକ କଳା ସାଗରରେ ଲମ୍ଫ ଦେଇଥିଲେ ।

୧୯୬୨ ଥିଲା ମୋର ଖଲ୍ଲିକୋଟରେ କ୍ଲାଇମାକ୍ସ୍ ବର୍ଷ । ପ୍ରତ୍ୟେକ ବିଷୟରେ କ୍ଲାଇମାକ୍ସ୍‌ରେ ପହଞ୍ଚିଥିଲୁ । ପ୍ରତିଯୋଗିତାମୂଳକ ଭାବେ ଚିତ୍ର ଆଙ୍କିବା ଥିଲା ଆମ ପୂର୍ବ ହଷ୍ଟେଲ ଅନ୍ତେବାସୀଙ୍କର ନିଶା । ୧୯୬୧ରେ ପ୍ରଥମ ବ୍ୟାଚ୍‌ର ପଢ଼ାଶେଷ ହୋଇଥିଲା । ୧୯୬୨ରେ ପୂର୍ବ ହଷ୍ଟେଲରେ ପୂର୍ଣ୍ଣମାତ୍ରାରେ କାମ କରିବା ପରିବେଶ ଆସିଯାଇଥିଲା । ଦିନନାଥ ପାଠୀ ଏହି ପରିବେଶ ଅଧିକରୁ ଅଧିକ ସତେଜ କରୁଥିଲେ । ପ୍ରଥମ ବର୍ଷ ଛାତ୍ର ଠାରୁ ୪ର୍ଥ ବର୍ଷ ଛାତ୍ର ମଧରେ ପରଆପଣା ଭେଦଭାବ ନ ରହିବା ହେତୁ କିଏ କାହାର ଖାଇଗଲା ତ କିଏ କାହାର ପୋଷାକ ପିନ୍ଧି ନେଉଥିଲା । ପାଠୀ ବାବୁଙ୍କ ପାଇଁ ଏ ନୀତିଟା ଅତ୍ୟନ୍ତ କୋହଳ ଥିଲା । ପ୍ୟାଣ୍ଟ୍ ଛୋଟ ହେଉ ପଛେ କିମ୍ବା ଅଣ୍ଟାରେ ବୋତାମ ନ ଲାଗୁ ପଛେ ତାକୁ ପିନ୍ଧି ବାହାରକୁ ଚାଲିଯିବାରେ ସେ ସଂକୋଚ ବୋଧ କରୁନଥିଲେ । ବନ୍ଧୁତା ସୂତ୍ରରେ ବାନ୍ଧିହେବା, ନିବିଡ଼ ହେବା, ମଉଜ କରିବା, ଡ୍ରାମା କରିବା, ମାନଅଭିମାନ କରିବା, ହାତରେ ରାନ୍ଧି ଖାଇବା ଖୁଆଇବା ଇତ୍ୟାଦି ବିଷୟରେ ଚରମ ସୀମାରେ ଉପନୀତ ହୋଇଯାଇଥିଲୁ । ଏକ ନିଃସାର୍ଥ ଆତ୍ମୀୟତା ଆମ ଭିତରେ ଗଢ଼ି ଉଠିଥିଲା । ଆଜି ସମୟ ଓ ସାର୍ଥର ଜଟିଳତା ମଧରେ ଏହି ନିଃସାର୍ଥ ଆତ୍ମୀୟତା ସବୁକୁ ଘୁଣ ଖାଇଗଲାଣି ।

ଅନୁଷ୍ଠାନ ଛାଡ଼ିବାକୁ ଦିନ ଯେତେ ପାଖେଇ ଆସୁଥିଲା ସେତିକି ସେତିକି ଭୟ ମାଡ଼ି ପଡୁଥିଲା । ପ୍ରଥମତଃ 'ବସୁଧୈବ କୁଟୁମ୍ବକମ୍'ରୁ ବିଚ୍ଛେଦ, ଦ୍ୱିତୀୟତଃ କପାଳରେ ଅନିଶ୍ଚିତ ହେୟ **ଡ୍ରଇଁମାଷ୍ଟର ଚାକିରି**, ମନକୁ ଏକ ଅଭାବନୀୟ ଆନନ୍ଦ ଭିତରେ ସନ୍ତୁଳିତ କରୁଥିଲା । ତଥାପି ଆମ ଭିତରେ ଭବିଷ୍ୟତ ପାଇଁ ପ୍ରେରଣା ସତେ ଯେପରି କିଏ ଭରି ଦେଉଥିଲା । **କଳା ସୃଷ୍ଟି କରିବା, କଳାର ସେବା କରିବା ପାଇଁ ଆମେ ଯେଉଁ କେତେ ଜଣ ଖଲ୍ଲିକୋଟରେ ଶପଥ ନେଇଥିଲୁ ତା ଭିତରେ କର୍ଣ୍ଣଧାର ଥିଲେ ଦିନନାଥ ପାଠୀ ।**

ମୋର ଶେଷ ପରୀକ୍ଷା ସରିଲା । ସେହି ବର୍ଷ କେଉଁ ଛାତ୍ର ଅନୁଷ୍ଠାନରେ ପ୍ରଥମ ହେବ, ଗୁରୁମାନଙ୍କ ଭିତରେ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇସାରି ପ୍ରକାରାନ୍ତରେ ଘୋଷଣା ବି ସରିଥିଲା । ଆମେ

Digitized by srujanika@gmail.com

ଭାରତୀୟ କଳା ବିଭାଗର ଛ' ଜଣ ଛାତ୍ରଛାତ୍ରୀ ଗୁରୁ ଅଜିତ ରାୟଙ୍କୁ ଏହି ଘୋଷଣା ବିଷୟରେ ଅବଗତ କରାଇଲୁ । ସେ କହିଥିଲେ ଏପରି ଅନ୍ଧଭଳି ନମ୍ବର ଦେଇ ପିଲାଙ୍କ ଭବିଷ୍ୟତ ନଷ୍ଟ କରିବା କ'ଣ ଉଚିତ ? ତମେ କାମ କର, ନିଶ୍ଚୟ ଫଳ ପାଇବ । ଏକଥା ଠିକ୍ ଫଳିଲା । ଅନୁଷ୍ଠାନରେ ପ୍ରଥମ ହୋଇଥିବା ଛାତ୍ର ଜଣକ ବାଲୁଗାଁ ଅଞ୍ଚଳରେ ଚିଙ୍ଗୁଡ଼ି ବ୍ୟବସାୟ କରି କୋଠା, ଜମିବାଡ଼ି କରିଥିବେ କିନ୍ତୁ ଶିଳ୍ପୀଟିଏ ହୋଇପାରି ନାହାନ୍ତି ।

ଦୀର୍ଘ ଚ୍ଛରିବର୍ଷର ହଷ୍ଟେଲ ଜୀବନର ଅବସାନ ଘଟାଇ ଅଶ୍ରୁଳ ବିଦାୟ ନେଇଥିଲି ବନ୍ଧୁ ଦିନନାଥ ପାଠୀ, ଦେବରାଜ ସାହୁ, ଶିବ ପାଣିଗ୍ରାହୀ ଓ ଅନ୍ୟମାନଙ୍କ ଠାରୁ । ଭବିଷ୍ୟତର ଏକ ଦୃଢ଼ ଏବଂ ଉଜ୍ଜ୍ୱଳ ପ୍ରତିଶ୍ରୁତିର ଝଲକ ଫୁଟି ଉଠୁଥିଲା ସେତେବେଳେ ଏହି ଯୁବଚିତ୍ରକରଙ୍କ ମୁହଁରେ ।



Digitized by srujanika@gmail.com

**ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ**

# ଓଡ଼ିଶାର ଚିତ୍ରକଳା ଓ ଆମର ସମ୍ପର୍କ

ଜଣେ ପ୍ରଖ୍ୟାତ କଳାକାର ଭାବେ ଘରୁକଳାର ପ୍ରସାର ଓ ପ୍ରଘର କରିବାରେ ଶିଳ୍ପୀ ଡକ୍ଟର ଦିନନାଥ ପାଠୀଙ୍କ ଅବଦାନ ଅତୁଳନୀୟ । ଚିତ୍ରରଚନା କରିବାରେ ସେ ଯେତିକି ଦକ୍ଷତା ପ୍ରଦର୍ଶନ କରିଛନ୍ତି, ଓଡ଼ିଆ ଓ ଇଂରାଜୀ ଭାଷାରେ ଘରୁକଳାର ବିଭିନ୍ନ ବିଭବ ଉପରେ ଗବେଷଣାତ୍ମକ ପୁସ୍ତକ ପ୍ରକାଶନ କରି ସକୀୟ କଳା ଓ ସାହିତ୍ୟ-ପ୍ରତିଭାକୁ ଲୋକ-ଲୋଚନକୁ ଆଣିବାରେ ସେତିକି ସକ୍ଷମ ହୋଇଛନ୍ତି । ଚିତ୍ରକଳାକ୍ଷେତ୍ରରେ ତାଙ୍କର ସତନ୍ତ୍ରଧାରା ଓ ଶୈଳୀ ବହୁ ପ୍ରଶଂସିତ । ତାଙ୍କର ସକୀୟ କଳା ନିମନ୍ତେ ସେ ବିଭିନ୍ନ ଅନୁଷ୍ଠାନ ଦ୍ୱାରା ବହୁବାର ପୁରସ୍କୃତ ହେବା ସଙ୍ଗେସଙ୍ଗେ କର୍ମକ୍ଷେତ୍ରରେ ବିଶେଷ ଅବଦାନ ପାଇଁ ମଧ ସମ୍ମାନିତ । **ରାଜ୍ୟରେ ଘରୁକଳାର ପ୍ରସାର ନିମନ୍ତେ ବିଭିନ୍ନ ଅନୁଷ୍ଠାନ ଗଢ଼ି ଶିଳ୍ପୀମାନଙ୍କ ମଧ୍ୟରେ ଗୋଷ୍ଠୀଚେତନା ଆଣିବାରେ ତାଙ୍କର ଭୂମିକା ସୀକୃତ । ଜଣେ କଳା ଶିକ୍ଷକ ଭାବେ ନିଜର କର୍ମମୟ ଜୀବନ ଆରମ୍ଭ କରି ଛାତ୍ର ବତ୍ସଳ ଶିକ୍ଷକଭାବେ ସେ ଅଦ୍ୟାବଧି ପରିଚିତ । ଘରୁକଳାର ବିକାଶ ପାଇଁ ଜନ ସଂପର୍କ ଓ କର୍ମାଭିମୁଖୀ ଯୋଜନା ନିମନ୍ତେ ଶିଳ୍ପୀ, ସାହିତ୍ୟିକ ଓ ସଂସ୍କୃତି ପ୍ରେମୀ ମହଲରେ ସେ ଜଣେ ସୂତ୍ରଧର ।** ଓଡ଼ିଶା ତଥା ଭାରତର ବିଭିନ୍ନ ସରକାରୀ ଓ ବେସରକାରୀ ସଂସ୍ଥାରେ ଉଚ୍ଚପଦବୀରେ ଥାଇ କଳା ଓ ସଂସ୍କୃତିର ଅଭିବୃଦ୍ଧି ପାଇଁ ତାଙ୍କର ପ୍ରଚେଷ୍ଟା ଓ କର୍ମନିଷ୍ଠା ସମସ୍ତଙ୍କ ଦ୍ୱାରା ଆଦୃତ । ଦେଶବିଦେଶରେ ଓଡ଼ିଶାର କଳା-ପରମ୍ପରାକୁ ପରିଚିତ କରାଇବାରେ ସେ ଜଣେ ଅଗ୍ରଣୀ ଶିଳ୍ପୀ । ଜଣେ କୁଶଳୀ ଶିଳ୍ପୀ, ସାହିତ୍ୟିକ ଓ କଳା ଐତିହାସିକ ଭାବେ ନିଜକୁ ପ୍ରତିଷ୍ଠା କରି, ଆଜି ଭାରତର ଲଳିତ କଳା କ୍ଷେତ୍ରରେ ସେ ଯେଉଁ ସୁନାମ ଅର୍ଜନ କରିଛନ୍ତି, ସେଥିପାଇଁ ସେ ଓଡ଼ିଶାର ଗର୍ବ ଓ ଗୌରବ । ଜଣେ ସହପାଠୀ ଭାବେ ଡକ୍ଟର ପାଠୀଙ୍କ ସହିତ ମୋର ଯେଉଁ ସମ୍ପର୍କ, ସେ ସମ୍ବନ୍ଧରେ ସ୍ମୃତିରୁ କିୟଦଂଶ ଏଠାରେ ଅବତାରଣା କରୁଛି ।

ବିଶ୍ୱ ଦରବାରରେ ଉଚ୍ଚକୋଟୀର କଳା ଓ ସଂସ୍କୃତି ପାଇଁ ଓଡ଼ିଶା ତା'ର ପରିଚୟ ପ୍ରଦାନ କରିଥାଏ । ସେଥିନିମନ୍ତେ ଆମେ ଯେତିକି ଗର୍ବ ଅନୁଭବ କରୁ, ସେହି ପୂର୍ବ କଳା ଗୌରବର ଅବନତି ପାଇଁ ଆଜିର ଦୁନିଆରେ ମଧ ସେତିକି ବ୍ୟଥିତ ହୋଇଥାଉ । କେବଳ କୋଣାର୍କ ଓ ଭୁବନେଶ୍ୱର ପରି କେତେକ ମନ୍ଦିରର କୀର୍ତ୍ତିରାଜିକୁ ଆଉ କେତେଦିନ ଦେଖାଇ ଆମର ଗୌରବ ଗାଥା ଗାନ କରିବୁ, ଏହା ମଧ ଅନିଶ୍ଚିତ । ରାଜପୃଷ୍ଠପୋଷକତାରୁ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଘରୁକଳାର ବହୁ ପ୍ରସାର ଘଟିଥିଲେ ମଧ ପରବର୍ତ୍ତୀ କାଳରେ ସ୍ଥାଣୁତା ଆସିଗଲା । ଭାରତର ବିଭିନ୍ନ ଅଂଚଳରେ କଳା ଓ ସଂସ୍କୃତି କ୍ଷେତ୍ରରେ ବହୁବିଧ ବିକାଶ ଘଟିଲା ମାତ୍ର ଓଡ଼ିଶାର କଳାକ୍ଷେତ୍ରରେ ଘୋର ଅନ୍ଧକାର ସୃଷ୍ଟି ହେବାକୁ ଲାଗିଲା । ସମୟକ୍ରମେ ଏ କ୍ଷେତ୍ରରେ ବହୁ ପଛରେ ଆମେ ପଡ଼ିଗଲୁ । ୧୯୪୭ ମସିହାରେ ଭାରତର ସାଧୀନତା ପରେ ଓଡ଼ିଶାର କଳା ପରମ୍ପରାକୁ ରକ୍ଷାକରି ଅଗ୍ରସର ହେବାପାଇଁ ସରକାରୀ ଓ ବେସରକାରୀ ମହଲରେ ସଚେତନତା ସୃଷ୍ଟି ହେଲା ।

ଓଡ଼ିଶାର କଳା ପରମ୍ପରାର ସୁରକ୍ଷା ଓ ଘରୁକଳାର ପ୍ରସାର ପ୍ରତି ଦୃଷ୍ଟି ଦେବାକୁ ସରକାରୀ ସ୍ତରରେ ବିଘ୍ୱର ହେଲା । ପ୍ରଖ୍ୟାତ ଶିଳ୍ପୀ ଗୋପାଳ କାନୁନ୍‌ଗୋଙ୍କୁ ରାଜ୍ୟରେ ଘରୁକଳା ଶିକ୍ଷା ପାଇଁ ଏକ ସତନ୍ତ୍ର ବିଦ୍ୟାଳୟର ଯୋଜନା ପ୍ରସ୍ତୁତି କରିବା ନିମନ୍ତେ ନିୟୋଜିତ କରାଗଲା । ୧୯୫୫-୫୬ ମସିହାରେ ଏହି ଯୋଜନାଟି ରାଜ୍ୟ ବିଧାନ ସଭାର ଅନୁମୋଦନ ଲାଭ କରିବା ପରେ ରାଜ୍ୟରେ ଗୋଟିଏ ଘରୁ ଓ କାରୁକଳା ବିଦ୍ୟାଳୟ ସ୍ଥାପନ କରିବା ନିମନ୍ତେ ନିଷ୍ପତ୍ତି ହୋଇଥିଲା । ଘରୁକଳାର ବିକାଶ କ୍ଷେତ୍ରରେ ରାଜ୍ୟ ସରକାରଙ୍କର ଏହା ଥିଲା ପ୍ରଥମ ପଦକ୍ଷେପ ।

ମରାଳ-ମାଳିନୀ-ନୀଳାମ୍ବୁ ଚିଲିକା ନିକଟସ୍ଥ ଖଲ୍ଲିକୋଟ ରାଜପ୍ରାସାଦଟିକୁ ସରକାର କ୍ରୟ କରି ଏହି ଘରୁକଳା ଅନୁଷ୍ଠାନକୁ ସ୍ଥାପନ କରିଥିଲେ । ଖଲ୍ଲିକୋଟ ପରି ଗୋଟିଏ ଛୋଟ ସହରର ପ୍ରାକୃତିକ

Digitized by srujanika@gmail.com

ଶୋଭା ଅତ୍ୟନ୍ତ ମନୋରମ । ଶିଳ୍ପୀମାନଙ୍କ ପାଇଁ ଏହା ଏକ ଉପଯୁକ୍ତ ସ୍ଥାନ ହେବ ବୋଲି ତତ୍‌କାଳୀନ ସରକାର ଚିନ୍ତା କରି ୧୯୫୬-୫୭ ମସିହାରେ ଆନୁଷ୍ଠାନିକ ଭାବେ ଅନୁଷ୍ଠାନଟିକୁ ସ୍ଥାପନ କରିଥିଲେ । ତାହାର ସଫଳତା ଓ ବିଫଳତା ଉପରେ ବହୁ ବାଦାନୁବାଦ ହୋଇଥିଲେ ମଧ୍ୟ ଓଡ଼ିଶାରେ ଏହା ପ୍ରଥମ ଚାରୁକଳା ଅନୁଷ୍ଠାନ ହୋଇଥିବାରୁ ରାଜ୍ୟରେ ବିଭିନ୍ନ ଅଞ୍ଚଳରୁ ଶିକ୍ଷାର୍ଥୀମାନେ ଆସି ଯୋଗ ଦେଇଥିଲେ ।

ଦିନନାଥ ବାବୁ ଓ ମୁଁ ଥିଲୁ ଅନୁଷ୍ଠାନର ୩ୟ ଦଳର ଛାତ୍ର । ୧୯୫୯ ମସିହାରେ ଅନୁଷ୍ଠାନରେ ଯୋଗଦେଇ ଚାରି ବର୍ଷ ସେଠାରେ କଟାଇ ଥିଲୁ । ଏଇଠି ତାଙ୍କ ସହିତ ପ୍ରଥମ ସାକ୍ଷାତ ଓ ବନ୍ଧୁତା । ସେହି ବର୍ଷ ଜୁଲାଇ ମାସରେ ଅଧିକାଂଶ ଛାତ୍ର, କଟକ, ପୁରୀ, ବାଲେଶ୍ୱର ଓ ସମ୍ବଲପୁର ଅଞ୍ଚଳରୁ ଯାଇ ଅନୁଷ୍ଠାନରେ ଯୋଗ ଦେଇଥିଲେ ମଧ୍ୟ ଚାରି ପାଞ୍ଚ ଜଣ ଛାତ୍ର ଗଞ୍ଜାମ ଜିଲ୍ଲାର ଥିଲେ । ସେଥି ମଧ୍ୟରୁ ଦିନନାଥ ବାବୁ ଥିଲେ ଅନ୍ୟତମ । ଓଡ଼ିଶାର ବିଭିନ୍ନ ଅଞ୍ଚଳର ଚାଲି ଚଳନରେ ବିଭିନ୍ନତା ଥିଲେ ମଧ୍ୟ କିଛିଦିନ ସମସ୍ତେ ସେଠାରେ କଟାଇବା ପରେ ଏକ ସୁସମ୍ପର୍କ ସମସ୍ତଙ୍କ ମଧ୍ୟରେ ସ୍ଥାପନ ହୋଇଯାଇଥିଲା । ଦିନନାଥ ବାବୁ ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡିରୁ ଆସିଥିଲେ ମଧ୍ୟ ତାଙ୍କଠାରେ ଥିଲା ସରଳ ଜୀବନଯାପନର ଏକ ନମୂନା । ଉନ୍ନତ ସଂଗୀତ, ନୃତ୍ୟ, କଳା ଓ ସାହିତ୍ୟ ପାଇଁ ଗଞ୍ଜାମର ଦିଗପହଣ୍ଡି ଅଞ୍ଚଳ ଓଡ଼ିଶାର ଏକ ସାଂସ୍କୃତିକ କେନ୍ଦ୍ର । ଦିନନାଥ ବାବୁଙ୍କ ଉପରେ ଏହି ପରମ୍ପରାର ପ୍ରଭାବ ବହୁ ଭାବେ ପଡ଼ିଥିଲା । ତାଙ୍କ ବାଲ୍ୟକାଳରୁ ସେ ମଧ୍ୟ ଭଲ ଚିତ୍ର ଅଙ୍କନ କରୁଥିଲେ । ବିଦ୍ୟାଳୟର ମେଧାବୀ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ଦେବପ୍ରତିମ ଅଧକ୍ଷ ଶରତ ଚନ୍ଦ୍ର ଦେବଙ୍କ ଦ୍ୱାରା ପରିଚାଳିତ ଆଧାତ୍ମିକ ପାଠଚକ୍ରରେ ସେ ପ୍ରତ୍ୟହ ପ୍ରତ୍ୟୁଷ ଓ ପ୍ରଦୋଷରେ ଅଂଶଗ୍ରହଣ କରୁଥିଲେ । ଯୋଗ ଓ ଧ୍ୟାନର ପ୍ରଭାବ ତାଙ୍କ ଉପରେ ବହୁଭାବେ ପଡୁଥିଲା । ୧୯୬୩ ମସିହାରେ ତୈଳଚିତ୍ରରେ ସେ କୃତିତ୍ୱ ସହିତ ଅନୁଷ୍ଠାନରୁ ଡିପ୍ଲୋମା ହାସଲ କରି ଉତ୍ତୀର୍ଣ୍ଣ ହୋଇଥିଲେ । ପରବର୍ତ୍ତୀ କାଳରେ ନିଜର ବ୍ୟକ୍ତିଗତ ଉଦ୍ୟମରେ ସ୍ନାତକୋତ୍ତର ଉପାଧି, ପରେ ପରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଚିତ୍ରକଳାରେ ପ୍ରଥମ ପିଏଚ୍.ଡ଼ି ଲାଭ କରିଥିଲେ ଓ ଶାନ୍ତିନିକେତନରୁ ଚିତ୍ରକଳାରେ ଦ୍ୱିତୀୟ ପିଏଚ୍.ଡ଼ି ଉପାଧି ଲାଭ କରିଥିଲେ । **ପ୍ରଖ୍ୟାତ ଚିତ୍ରଶିଳ୍ପୀ ଗୋପାଳ କାନୁନ୍‌ଗୋ ଓଡ଼ିଶା ଲଳିତ କଳା ଏକାଡ଼େମୀ ଦ୍ୱାରା ୧୯୬୪ ମସିହାରେ ପ୍ରକାଶିତ ପ୍ରଥମ ପୁସ୍ତକ ଉତ୍କଳର ଚିତ୍ରକଳାରେ ପାଠୀ ବାବୁଙ୍କୁ ଓଡ଼ିଶାର ପରବର୍ତ୍ତୀ ସମୟର ଜଣେ ସୁଯୋଗ୍ୟ ଶିଳ୍ପୀ ବୋଲି ସୂଚନା ଦେଇଥିଲେ ।**

ଖଲ୍ଲିକୋଟ ଚାରୁକଳା ବିଦ୍ୟାଳୟରେ ଆମ୍ଭେମାନେ ଅଧ୍ୟୟନ କରୁଥିବା ସମୟରେ କଠିନ ପରିଶ୍ରମ କରିବାକୁ ହେଉଥିଲେ ମଧ୍ୟ ସମସ୍ତଙ୍କ ମଧ୍ୟରେ ଥିଲା ସହନଶୀଳତା ଓ ବନ୍ଧୁତା । ଉଚ୍ଚମାନର କଳାକୃତି ସୃଷ୍ଟି କରି ସମସ୍ତଙ୍କ ପ୍ରିୟଭାଜନ ହେବା ଥିଲା ସମସ୍ତଙ୍କ ଲକ୍ଷ୍ୟ । ସେ ସମୟରେ ଯେଉଁ ଅଧ୍ୟାପକମାନେ ଅଧ୍ୟାପନା କରୁଥିଲେ ସେମାନେ ଚାରୁକଳା କ୍ଷେତ୍ରରେ ଥିଲେ ତତ୍‌କାଳୀନ ଓଡ଼ିଶାର ଜଣେ ଜଣେ ଦକ୍ଷ ଶିଳ୍ପୀ ଓ ଆମ୍ଭମାନଙ୍କର ପ୍ରେରଣାର ଉତ୍ସ । ଅଧକ୍ଷ ଶରତ ଚନ୍ଦ୍ର ଦେବ ଯେପରି ଧର୍ମପରାୟଣ, ଅମାୟିକ ଓ ଦୟାଳୁ ବ୍ୟକ୍ତି ଥିଲେ, ସେହିପରି ଚିତ୍ରକଳାରେ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ମଧ୍ୟ ରହିଥିଲା । ଦିନନାଥ ବାବୁ ତାଙ୍କର ଜଣେ ପ୍ରିୟ ଛାତ୍ର ଥିଲେ, ଗୁରୁ ଆଶୀର୍ବାଦ ମଧ୍ୟ ତାଙ୍କ ଉପରେ ପଡ଼ିଥିଲା । ଅଧ୍ୟାପକମାନେ ଶାନ୍ତିନିକେତନ ଓ କଲିକତା ଚାରୁକଳା ମହାବିଦ୍ୟାଳୟରୁ ସେମାନଙ୍କର ଶିକ୍ଷା ସମାପ୍ତ କରି ଅନୁଷ୍ଠାନରେ ଯୋଗ ଦେଇଥିଲେ । ଏହି ଦୁଇଟି ଅନୁଷ୍ଠାନର ଶିକ୍ଷା ପଦ୍ଧତି ସେ ସମୟରେ ଏକା ପ୍ରକାର ନଥିଲା । ଭାରତୀୟ ଚିତ୍ରକଳା ପଦ୍ଧତି ଅନୁସାରେ ଶାନ୍ତିନିକେତନରେ ଶିକ୍ଷା ଦିଆଯାଉଥିବା ସ୍ଥଳେ କଲିକତା ଚାରୁକଳା ମହାବିଦ୍ୟାଳୟରେ ପାଶ୍ଚାତ୍ୟ ପଦ୍ଧତିରେ ଶିକ୍ଷା ପ୍ରଦାନ କରାଯାଉଥିଲା । ତେଣୁ ଖଲ୍ଲିକୋଟ ଚାରୁକଳା ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ଉପରେ ଏହି ଦୁଇଟି ଶିକ୍ଷା ଧାରାର ପ୍ରଭାବ ପଡ଼ିଥିଲା । **ଦିନନାଥ ବାବୁଙ୍କର ଜଳରଙ୍ଗ ଓ ତୈଳଚିତ୍ରରେ ସେ ସମୟରେ ଏକ ସତନ୍ତ୍ର ଧାରା ପରିଲକ୍ଷିତ ହେଉଥିଲା । ଛାତ୍ରାବସ୍ଥାରୁ ସେ ଓଡ଼ିଶା ଲଳିତ କଳା ଏକାଡ଼େମୀ ପୁରସ୍କାର ମଧ୍ୟ ପାଇଥିଲେ ।** ୧୯୫୯ ରୁ ୧୯୬୩ ମସିହା

Digitized by srujanika@gmail.com

ପର୍ଯ୍ୟନ୍ତ ଅନୁଷ୍ଠାନଟିରେ ରହିବା ସମୟରେ ଆମ୍ଭମାନଙ୍କ ଉପରେ କର୍ମନିଷ୍ଠା, ଶୃଙ୍ଖଳା ଓ ସାଂଗଠନିକ କାର୍ଯ୍ୟର ପ୍ରଭାବ ପଡ଼ିଥିଲା । ମୋର ଯାହା ମନେ ହୁଏ ଆମ୍ଭେମାନେ ଯେଉଁ କେତେକ ଶିଳ୍ପୀ ଚିତ୍ରକଳା ବିଦ୍ୟାଳୟରୁ ୧୯୬୩ ମସିହାରେ ଉତ୍ତୀର୍ଣ୍ଣ ହୋଇ ବିଭିନ୍ନ କ୍ଷେତ୍ରରେ ନିଯୁକ୍ତି ପାଇଥିଲୁ ବା କାର୍ଯ୍ୟରତ ଥିଲୁ, ସେମାନଙ୍କ ମଧ୍ୟରେ ଏହାର ପ୍ରଭାବ ବହୁଭାବେ ପଡ଼ିଛି । ଦିନନାଥ ବାବୁ ଓ ମୁଁ ଆମ ଚାକିରି କାଳ ଭୁବନେଶ୍ୱରରେ ଆରମ୍ଭ କରି ଏହିଠାରେ ଶେଷ କରିଛୁ । ପାଠୀ ବାବୁ ପ୍ରଥମେ ୧୯୬୪/୬୫ ମସିହାରେ ସେକ୍ରେଟେରୀଏଟ୍‌ରେ ନିଯୋଜିତ ହୋଇ ପରବର୍ତ୍ତୀ ସମୟରେ ସେଣ୍ଟ୍ରାଲ୍ ସ୍କୁଲ, ରାଜ୍ୟ ସଂଗ୍ରହାଳୟ, ରାଜ୍ୟ ପର୍ଯ୍ୟଟନ ନିଗମ, ବି.କେ ଚିତ୍ରକଳା ମହାବିଦ୍ୟାଳୟ ଓ କେନ୍ଦ୍ର ଲଳିତ କଳା ଏକାଡ଼େମୀରେ ବିଭିନ୍ନ ପଦପଦବୀରେ କାର୍ଯ୍ୟ କରିଥିଲେ । ମୁଁ ମଧ୍ୟ ସେହିପରି ମୋର କାର୍ଯ୍ୟକାଳ ରାଜ୍ୟ ସ୍ୱାସ୍ଥ୍ୟ ବିଭାଗରେ ଆରମ୍ଭ କରି ଓଡ଼ିଶା ଲଳିତ କଳା ଏକାଡ଼େମୀର ବିଭିନ୍ନ ପଦପଦବୀରେ ନିଯୋଜିତ ହୋଇ ଶେଷରେ ଏକାଡ଼େମୀର ସଚିବ ଭାବେ ଅବସର ନେଇଛି । ଆମେ ଦୁଇ ଜଣ ପ୍ରାୟ ୩୨/ ୩୩ ବର୍ଷ ରାଜ୍ୟ ସଂସ୍କୃତି ବିଭାଗରେ କାର୍ଯ୍ୟ କରିଛୁ । ମୋର କାର୍ଯ୍ୟ ପରିସର ମଧ୍ୟରେ ମୁଁ ତିନି ବର୍ଷ ମଧ୍ୟ କେନ୍ଦ୍ର ଲଳିତ କଳା ଏକାଡ଼େମୀଙ୍କ ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରର ସଚିବ ଭାବେ କାର୍ଯ୍ୟ ତୁଲାଇ ଥିଲି । **ଏହି କାର୍ଯ୍ୟକାଳ ମଧ୍ୟରେ ଆମେ ଯିଏ ଯେଉଁଠି ଥାଉ ପଛେ ଓଡ଼ିଶାରେ ଚିତ୍ରକଳାର ପ୍ରଗତି ପାଇଁ ଯଥାବିଧି ପଦକ୍ଷେପ ନେବାରେ ପଶ୍ଚାଦ୍‌ପଦ ହୋଇନାହୁଁ ।**

ଏହାଛଡ଼ା ବେସରକାରୀ ଭାବେ ବିଭିନ୍ନ ଅନୁଷ୍ଠାନ ଗଢ଼ି କଳାର ବିକାଶ କ୍ଷେତ୍ରରେ କିଛି କିଛି ପଦକ୍ଷେପ ନେଇଛୁ । ଓଡ଼ିଶାରେ ଶିଳ୍ପୀମାନଙ୍କର ସମୂହ ସ୍ୱାର୍ଥରକ୍ଷା ପାଇଁ କୌଣସି ସଂସ୍ଥା ନଥିବାରୁ ସେଥିପ୍ରତି ମଧ୍ୟ ଦୃଷ୍ଟି ଦେଇଥିଲୁ । ୧୯୬୨ ମସିହାରେ କଟକରେ ପ୍ରଥମଥର ପାଇଁ ଚିତ୍ରକଳା ପରିଷଦ ନାମକ ଏକ ଅନୁଷ୍ଠାନ ଗଠନ କରି କିଛି କାର୍ଯ୍ୟ କରିବାରେ ମୁଁ ଯଥୋଚିତ ସମୟ ଦେଇଥିଲି । ପାଠୀ ବାବୁ ଭୁବନେଶ୍ୱର ଠାରେ ଶିଳ୍ପୀସଂସଦ ଏବଂ ଶିଳ୍ପୀ ସଂସଦ ଆନୁକୂଲ୍ୟରେ 'ଚିତ୍ରମ୍' ନାମକ ଏକ ଚିତ୍ରକଳା ଶିକ୍ଷାନୁଷ୍ଠାନ ଆରମ୍ଭ କରିଥିଲେ । ଓଡ଼ିଶାର ଆଧୁନିକ ଚିତ୍ରକଳା କ୍ଷେତ୍ରରେ ବିଭିନ୍ନ ପରୀକ୍ଷା ନିରୀକ୍ଷାର ସ୍ୱୀକୃତି ପାଇଁ **Working Artist's Association** ନାମକ ଏକ ଅନୁଷ୍ଠାନ ଗଢ଼ି ଧାରାବାହିକ ଭାବେ କାର୍ଯ୍ୟ ଅଦ୍ୟାବଧି କରୁଛନ୍ତି । ନୂଆ ପିଢ଼ିର ଶିଳ୍ପୀମାନଙ୍କୁ ପ୍ରେରଣା ଓ ଉତ୍ସାହ ଦେଇ ସେମାନଙ୍କ ପାଇଁ କ୍ଷେତ୍ର ପ୍ରସ୍ତୁତ ମଧ୍ୟ କରୁଛନ୍ତି ।

ଯେଉଁ କେତେଦିନ ସେ ପର୍ଯ୍ୟଟନ ନିଗମରେ ଥିଲେ, ସେ ସମୟରେ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବା ନିମନ୍ତେ ଧାରାବାହିକ ଭାବେ ମାସିକ ଚିତ୍ରକଳା ପ୍ରଦର୍ଶନୀ **ଚିତ୍ର ବାରମାସୀ** ଆୟୋଜନ କରିବା ସହିତ ଓଡ଼ିଶାର କଳା-ପରମ୍ପରା ଉପରେ ସାଧାରଣ ପର୍ଯ୍ୟଟକଙ୍କ ପାଇଁ ଗୋଟିଏ ପୁସ୍ତକ ଓ ବିଭିନ୍ନ ପ୍ରଚାରପତ୍ର ପ୍ରକାଶନର ବ୍ୟବସ୍ଥା କରିଥିଲେ । ରାଜ୍ୟ ସଂଗ୍ରହାଳୟରେ ତାଙ୍କର ନିଯୁକ୍ତି ସମୟରେ କେତେକ ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତି ବାଧାବିଘ୍ନ ସୃଷ୍ଟି କରିଥିଲେ ମଧ୍ୟ ତାଙ୍କର କାର୍ଯ୍ୟଦକ୍ଷତା ପାଇଁ ସେ ସମସ୍ତଙ୍କର ପ୍ରିୟପାତ୍ର ହୋଇଥିଲେ । ତାଙ୍କର ଯୋଜନା ଅନୁସାରେ ଓଡ଼ିଶାର ବୟନ ଶିଳ୍ପ ଉପରେ ଗୋଟିଏ ସ୍ୱତନ୍ତ୍ର ଗ୍ୟାଲେରୀ ରାଜ୍ୟ ସଂଗ୍ରହାଳୟରେ ସ୍ଥାପନ ପାଇଁ ସବିଶେଷ ବ୍ୟବସ୍ଥା ହୋଇଥିଲେ ମଧ୍ୟ ପରଦାର ଅନ୍ତରାଳରେ ବାଦବିବାଦ ମଧ୍ୟରେ ତାହା ହୋଇ ପାରିନଥିଲା । ସୁଇଜରଲ୍ୟାଣ୍ଡର ଗବେଷକ ଡକ୍ଟର ଫିସର୍‌ଙ୍କ ସହ ସେ ଓଡ଼ିଶାର ବିଭିନ୍ନ ଅଂଚଳ ଗସ୍ତକରି ଓଡ଼ିଶା କଳା ପରମ୍ପରାର ସର୍ଭେ କରିବା ସହିତ କେତେକ ଉଚ୍ଚକୋଟୀର ପୁସ୍ତକ ମଧ୍ୟ ପ୍ରକାଶନ କରିଥିଲେ । ସଂସ୍କୃତି ବିଭାଗ ତାଙ୍କୁ ବି.କେ ଚିତ୍ରକଳା ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ ନିଯୁକ୍ତ ଦେବାପରେ ଅନୁଷ୍ଠାନଟି ଗଢ଼ିତୋଳିବାରେ ତାଙ୍କର ଅବଦାନ ବହୁଭାବେ ସ୍ୱୀକୃତ । ଚିତ୍ରକଳାର ଶିକ୍ଷା ବ୍ୟତୀତ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା, ପତ୍ରପତ୍ରିକା ପ୍ରକାଶନ ଆଦିର ବ୍ୟବସ୍ଥା କରି ଚିତ୍ରକଳା ଶିକ୍ଷାକ୍ଷେତ୍ରରେ ଏକ ନୂତନ ଦିଗନ୍ତ ସେ ସୃଷ୍ଟି କରିପାରିଥିଲେ । **ମହାବିଦ୍ୟାଳୟ ପାଇଁ ଖଣ୍ଡଗିରି ପାଦଦେଶରେ ଏକ ବିରାଟ ଭବନ ନିର୍ମାଣ କରାଇବା ପରେ କେନ୍ଦ୍ର ଲଳିତ କଳା**

Digitized by srujanika@gmail.com

**ଏକାଡ଼େମୀରେ ସଚିବ ଭାବେ ନିଯୁକ୍ତି ପାଇ ନୂଆଦିଲ୍ଲୀ ଚାଲିଯାଇଥିଲେ । ଡକ୍ଟର ପାଠୀଙ୍କ ଅନୁପସ୍ଥିତିରେ ଏହି ମହାବିଦ୍ୟାଳୟର ଅଗ୍ରଗତିରେ ବହୁ ଶିଥିଳତା ଆସିଥିଲା । କେନ୍ଦ୍ର ଲଳିତ କଳା ଏକାଡ଼େମୀର ଏକ ଉଚ୍ଚ ଆସନରେ ଅଧିକାରୀ ହୋଇ ତାଙ୍କ କାର୍ଯ୍ୟକାଳ ଭିତରେ ସେ ବହୁ ଅଭିନବ କାର୍ଯ୍ୟକ୍ରମ ସଫଳ ଭାବେ ରୂପାୟନ କରିପାରିଥିଲେ ।** ମୁଁ କେନ୍ଦ୍ର ଏକାଡ଼େମୀରେ ପ୍ରାୟ ୧୨/୧୩ ବର୍ଷ ତଳେ ସଭ୍ୟ ରହିଥିଲି । ସେଠାକାର ଯେଉଁ ବ୍ୟୁହ ସେଥିରେ ସାଧାରଣ ଶିଳ୍ପୀ ଖାପ ଖୁଆଇ କାର୍ଯ୍ୟକରିବା କଷ୍ଟକର ବ୍ୟାପାର । ଡକ୍ଟର ପାଠୀ ସେଥିରୁ ବାଦ ପଡ଼ିନଥିଲେ । ନିଜକୁ ଦିଲ୍ଲୀର କୁତ୍ସିତ ରାଜନୀତିରୁ ଦୂରେଇ ରଖି ନିଜର ଶୈଳ୍ପିକ ସ୍ଥିତିକୁ ସୁଦୃଢ଼ ରଖିବା ନିମନ୍ତେ ରାଜ୍ୟ ସଂସ୍କୃତି ବିଭାଗକୁ ଫେରିଆସିଥିଲେ କିନ୍ତୁ ଏଠାକାର ବିବାଦମାନ ପରିସ୍ଥିତିରେ ସେ ନପଶି କଳା ମହାବିଦ୍ୟାଳୟର ଅଧକ୍ଷ ପଦରୁ ସଇଚ୍ଛାରେ ଅବସର ଗ୍ରହଣ କରିଥିଲେ । କଳା କ୍ଷେତ୍ରରେ ସାଧୀନ ଭାବେ କାର୍ଯ୍ୟ କରିବାକୁ ମନ ବଳାଇଥିଲେ ।

ଓଡ଼ିଶାର କଳାକ୍ଷେତ୍ରରେ ରାଜ୍ୟର ଦୁଇଟି ଚାରୁକଳା ମହାବିଦ୍ୟାଳୟ ଓ ଓଡ଼ିଶା ଲଳିତ କଳା ଏକାଡ଼େମୀର ଏକ ସତନ୍ତ୍ର ସ୍ଥାନ ରହିଛି । ଛାତ୍ରଛାତ୍ରୀମାନଙ୍କୁ ଉପଯୁକ୍ତ ଶିକ୍ଷା ଓ ଅଧାପକମାନଙ୍କୁ ଚାରୁକଳା ବିକାଶ ପାଇଁ ସୁବିଧା ସୁଯୋଗ ମହାବିଦ୍ୟାଳୟମାନଙ୍କ ପକ୍ଷରୁ ଦିଆଯାଉଥିଲେ ମଧ୍ୟ ସେମାନଙ୍କ କୃତିର ଉପଯୁକ୍ତ ମୂଲ୍ୟାଙ୍କନ କରି ବିଭିନ୍ନ ପ୍ରଦର୍ଶନରେ ପୁରସ୍କାର, କଳାକୃତି କ୍ରୟ, ଏହାର ସଂରକ୍ଷଣ, ଉଚ୍ଚଶିକ୍ଷା ପାଇଁ କୃତୀ ଛାତ୍ରଛାତ୍ରୀମାନଙ୍କୁ ବୃତ୍ତି ପ୍ରଦାନ ଓ ବିଭିନ୍ନ ପ୍ରଦର୍ଶନ ମାଧମରେ ରାଜ୍ୟରେ ଓ ରାଜ୍ୟ ବାହାରେ ସେମାନଙ୍କୁ ପରିଚିତ କରାଇବା ଏକାଡ଼େମୀର ମୁଖ୍ୟ କାର୍ଯ୍ୟ । ମହାବିଦ୍ୟାଳୟ ଓ ଏକାଡ଼େମୀ ମଧ୍ୟରେ ଏଥିପାଇଁ ସହଯୋଗମୂଳକ ବାତାବରଣ ସୃଷ୍ଟି କରାଯାଇ କାର୍ଯ୍ୟ କରାଯାଉଥିଲା । ଏକାଡ଼େମୀ ସାଧାରଣ ପରିଷଦ ଓ କାର୍ଯ୍ୟକାରୀ ସମିତିରେ ଅଧକ୍ଷମାନଙ୍କୁ ଓ ଶିଳ୍ପୀମାନଙ୍କୁ ସଭ୍ୟଭାବେ ଗ୍ରହଣ କରାଯାଉଥିଲା । ମୋର କାର୍ଯ୍ୟକାଳ ମଧ୍ୟରେ ପାଠୀ ବାବୁଙ୍କୁ ପ୍ରାୟ ତିନିଥର ଏକାଡ଼େମୀର ସଭ୍ୟଭାବେ ମନୋନୟନ କରାଯାଇଥିଲା । ତାଙ୍କର ବହୁ ମୂଲ୍ୟବାନ ପରାମର୍ଶ ଏକାଡ଼େମୀ କାର୍ଯ୍ୟରେ ସହାୟକ ହେଉଥିଲା । ରାଜ୍ୟର କଳା କ୍ଷେତ୍ରରେ ଗଠନମୂଳକ କାର୍ଯ୍ୟପାଇଁ ମହାବିଦ୍ୟାଳୟ ଓ ଏକାଡ଼େମୀ କର୍ତ୍ତୃପକ୍ଷ ସଦାସର୍ବଦା ସଚେତନ ରହିଥିଲେ ।

କେନ୍ଦ୍ର ଲଳିତ କଳା ଏକାଡ଼େମୀ, ଓଡ଼ିଶା ଲଳିତ କଳା ଏକାଡ଼େମୀ ଓ ଓଡ଼ିଶା ସରକାରଙ୍କ ମିଳିତ ଉଦ୍ୟମରେ ଭୁବନେଶ୍ୱରଠାରେ ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ର ୧୯୮୪ ମସିହାରେ ସ୍ଥାପିତ ହୋଇଥିଲା । ଏହି ପ୍ରକଳ୍ପର (Project) ମୂଳଯୋଜନା ଉପସ୍ଥାପନା ଠାରୁ ନିର୍ମାଣ ଦାୟିତ୍ୱ ମୋ ଉପରେ ପ୍ରାୟତଃ କେନ୍ଦ୍ର ଏକାଡ଼େମୀ ଓ ରାଜ୍ୟ ସରକାର ନ୍ୟସ୍ତ କରିଥିଲେ । ଯୋଜନାଟିରେ ଯାହାଥିଲା, ତାହାର ଅଦ୍ୟାବଧି ଏକ ତୃତୀୟାଂଶ ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ।

କେନ୍ଦ୍ର ଏକାଡ଼େମୀଙ୍କ ଅନୁରୋଧ କ୍ରମେ ମୁଁ ଅନୁଷ୍ଠାନଟିରେ ସଚିବ ଭାବେ ତିନି ବର୍ଷ କାର୍ଯ୍ୟ କରିଥିଲି । ଏହି ସମୟ ମଧ୍ୟରେ ସର୍ବଭାରତୀୟ ସ୍ତରରେ ବିଭିନ୍ନ କାର୍ଯ୍ୟ ହୋଇଥିଲା । ଓଡ଼ିଶାର ଗ୍ରାଫିକ୍ ଷ୍ଟୁଡ଼ିଓ ନଥିବାରୁ ତାହା ପ୍ରତିଷ୍ଠା ହେବା ଯୋଗୁଁ ଓଡ଼ିଶାର ତରୁଣ ଶିଳ୍ପୀମାନେ ବହୁତ ଉପକୃତ ହୋଇଥିଲେ । ମୁଁ ଏହି ଅନୁଷ୍ଠାନ ଛାଡ଼ିବା ପରେ ଆଉ ଯେଉଁମାନେ ଏହାର ଦାୟିତ୍ୱରେ ରହିଲେ ବିଭିନ୍ନ କାର୍ଯ୍ୟକ୍ରମ ସୂଚାରୁ ରୂପେ ପରିଚାଳନା ନ କରି ପାରିବାରୁ କେନ୍ଦ୍ରର ଅବନତି ଘଟିଲା ।

ଡକ୍ଟର ପାଠୀ କେନ୍ଦ୍ର ଏକାଡ଼େମୀର ସଚିବ ପଦରେ ଅସୀନ ହେବାରୁ ଏହି କେନ୍ଦ୍ରର ସିରାମିକ୍ ୱାର୍କସପ୍ ପାଇଁ କିଛି ଅର୍ଥର ବ୍ୟବସ୍ଥା କରିବା ପରେ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ଶେଷ ପର୍ଯ୍ୟାୟରେ ପହଞ୍ଚିଥିଲା । ସେ କେନ୍ଦ୍ର ଏକାଡ଼େମୀ ସଚିବ ପଦରୁ ଅବ୍ୟାହତି ନେବା ପରେ ରାଷ୍ଟ୍ରୀୟ ଲଳିତ କଳାକେନ୍ଦ୍ରର ଅଗ୍ରଗତି ଅଧିକ ବାଧାପ୍ରାପ୍ତ ହେଲା ଓ ଦୀର୍ଘ ସାତବର୍ଷ ବିତି ଯାଇଥିଲେ ସୁଦ୍ଧା ସିରାମିକ୍ ୱାର୍କସପ୍ ଆରମ୍ଭ ହୋଇ ପାରିଲା ନାହିଁ । କେନ୍ଦ୍ର ଲଳିତ କଳା ଏକାଡ଼େମୀରେ ଓଡ଼ିଶାର କୌଣସି ପ୍ରତିନିଧିତ୍ୱ ରହିପାରିଲା ନାହିଁ ।

Digitized by srujanika@gmail.com

**ଡକ୍ଟର ପାଠୀ ଓ ମୁଁ ରାଜ୍ୟ ସଂସ୍କୃତି ବିଭାଗ ଅଧୀନରେ କାର୍ଯ୍ୟ କରିବା ସମୟ ମଧ୍ୟରେ ସରକାରୀ ସ୍ତରରେ ଗ୍ରାମ୍ୟକଳା ସମ୍ବନ୍ଧୀୟ ବିଭିନ୍ନ କାର୍ଯ୍ୟ ପାଇଁ ଆମର ପରାମର୍ଶ ନିଆଯାଉଥିଲା ।** କେତେକ କ୍ଷେତ୍ରରେ ଆମ ଦୁଇଜଣଙ୍କର ମତ ପାର୍ଥକ୍ୟ ହେଉଥିଲେ ମଧ୍ୟ ଶିଳ୍ପୀମାନଙ୍କ ସାମୂହିକ କାର୍ଯ୍ୟରେ ଆମେ ସହମତି ହୋଇ କାର୍ଯ୍ୟ କରୁଥିଲୁ । ସରକାରୀ ସ୍ତରରେ ଆମର ମତାମତ ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଉଥିଲା । ଓଡ଼ିଆ ଶିଳ୍ପୀ ଯେପରି ସର୍ବଭାରତୀୟ ଗ୍ରାମ୍ୟକଳା କ୍ଷେତ୍ରରେ ସ୍ଥାନ ପାଇବେ, ସେଥିପାଇଁ ଆମେ ଶତଚେଷ୍ଟିତ ଥିଲୁ । ଆମ୍ଭମାନଙ୍କର ବ୍ୟକ୍ତିଗତ ଉଦ୍ୟମ ହେଉ ବା ସାମୂହିକ ଉଦ୍ୟମରେ ହେଉ, ଗ୍ରାମ୍ୟକଳା ମହାବିଦ୍ୟାଳୟ ଓ ଏକାଡ଼େମୀର କାର୍ଯ୍ୟାବଳୀ ରାଜ୍ୟ ବାହାରେ ସର୍ବଭାରତୀୟ ଗ୍ରାମ୍ୟକଳା ଦୃଶ୍ୟପଟରେ ମୁଖ୍ୟ ସ୍ଥାନ ଅଧିକାର କରିଥିଲା । ଏଥିପାଇଁ ସରକାରୀ ସ୍ତରରେ ସମସ୍ତ ପ୍ରକାର ସାହାଯ୍ୟ ଓ ସହଯୋଗ ଆମକୁ ମିଳିବା ସହିତ ସମ୍ମାନ ମଧ୍ୟ ମିଳୁଥିଲା ।

ବ୍ୟକ୍ତିଗତ ଭାବେ ଡକ୍ଟର ପାଠୀଙ୍କ ସହିତ ମୋର ସୁସମ୍ପର୍କ ଅଦ୍ୟାବଧି ରହିଛି । ସୌଜନ୍ୟମୂଳକ ଆଳାପ, ଆଲୋଚନା ଓ ଆତ୍ମୀୟତା ମଧ୍ୟରେ ଆମେ କାର୍ଯ୍ୟ କରିଥାଉ । ପାରିବାରିକ ସମ୍ପର୍କ ମଧ୍ୟ ପୂର୍ବବତ୍ ରହିଛି ।

ଡକ୍ଟର ପାଠୀ ବେଳେବେଳେ ଆମ ଘରକୁ ଆସନ୍ତି । ଖୁବ୍ ହସଖୁସିରେ ପରିବାରର ସମସ୍ତଙ୍କ ସହିତ ଆଳାପ ଆଲୋଚନା କରନ୍ତି । ତାଙ୍କର ବିଭିନ୍ନ କାର୍ଯ୍ୟକ୍ରମରେ ମୁଁ ଯୋଗ ଦେଇଥାଏ । ସଂକୀର୍ଣ୍ଣମନା ନହୋଇ ସାମାଜିକ ଓ ବନ୍ଧୁତ୍ୱପୂର୍ଣ୍ଣ ପରିବେଶ ମଧ୍ୟରେ ସଂପର୍କ ରକ୍ଷା କରିବା ଆମର ଲକ୍ଷ୍ୟ । ପରଶ୍ରୀକାତର ହୋଇ କେତେକ ଆମ୍ଭମାନଙ୍କ ମଧ୍ୟରେ ଅସୂୟା ଭାବ ସୃଷ୍ଟି କରିବାରେ ପ୍ରୟାସୀ ହୋଇଥିଲେ ମଧ୍ୟ ସେଥିରେ ସେମାନେ ସଫଳ ହୋଇନାହାନ୍ତି ବୋଲି ମୁଁ ମନେକରେ ।

ଡକ୍ଟର ପାଠୀଙ୍କ ବ୍ୟକ୍ତିତ୍ୱ, ପ୍ରତିଷ୍ଠା ଓ ସାମାଜିକ ସ୍ଥିତି ତାଙ୍କୁ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ବହୁ ଭାବେ ଆଗେଇ ନେଇଛି । ସେ ପଦମର୍ଯ୍ୟାଦାର ଅଧିକାରୀ ହୋଇଛନ୍ତି । **ଉଚ୍ଚକୋଟୀର କଳା ସୃଷ୍ଟି କରିବା ସହିତ ଦେଶବିଦେଶରେ ଓଡ଼ିଶାର କଳା ଗାରିମାକୁ ଯେପରି ଭାବେ ଉପସ୍ଥାପନା କରିଛନ୍ତି, ସେଥିପାଇଁ ସେ ଧନ୍ୟବାଦର ପାତ୍ର ।** ଜଣେ ସହପାଠୀ ତଥା କର୍ମମୟ ଜୀବନର ସାଥୀ ହିସାବରେ ଡକ୍ଟର ଦିନନାଥ ପାଠୀ ତାଙ୍କ କର୍ମମୟ ଜୀବନରେ ଉନ୍ନତିର ଶିଖରରେ ପହଞ୍ଚନ୍ତୁ, ତାହାହିଁ କାମନା କରୁଛି ।



Digitized by srujanika@gmail.com

ରମାକାନ୍ତ ସାମନ୍ତରାୟ

## ରୂପରେ ଶବ୍ଦକଳ୍ପରେ ଶ୍ରୀରାଧା

ସମଗ୍ର ଭାରତୀୟ ସାହିତ୍ୟ, ଧର୍ମ ଓ ଦର୍ଶନରେ କେଉଁ ନାରୀ ଚରିତ୍ର ସବୁଠାରୁ ଅଧିକ ଆଲୋଚିତ ହୋଇଛନ୍ତି ବୋଲି ଯଦି ପ୍ରଶ୍ନ କରାଯାଏ ତେବେ ତାର ଉତ୍ତର ହେଉଛି 'ରାଧା'।

ରାଧା ଚରିତ୍ର କେମିତି କେତେବେଳେ କେଉଁ ଭାବରେ ଭାରତୀୟ ଧର୍ମ, ଦର୍ଶନ ସାହିତ୍ୟ ଭିତରେ ଆସନପାତିଲେ ସେ ନେଇ ଅନେକ ବାଦ ବିବାଦ ଅଛି । ଏପରିକି କେହି କେହି 'ରାଧା' ଚରିତ୍ରର ଆର୍ବିଭାବ ସମୟକୁ ପ୍ରାଗ୍‌ବୈଦିକ ଯୁଗରୁ ନିର୍ଣ୍ଣୟ କରନ୍ତି ।

ରାଧା ଚରିତ୍ର କିନ୍ତୁ ଏକ କ୍ରମବିକାଶର ପରିଣତି । ରାଧାଙ୍କୁ ପ୍ରେମମୟୀ ତତ୍ତ୍ୱମୟୀ ଶ୍ରୀରାଧା ହେବାକୁ ଅନେକ ସମୟ ଲାଗିଛି । ଏପରିକି କୃଷ୍ଣଙ୍କ ସହ ରାଧାଙ୍କର ସଂପର୍କ ପ୍ରତିଷ୍ଠା ବହୁଦିନର ନୁହେଁ । ମହାଭାରତର କ୍ଷତ୍ରୀୟ କୃଷ୍ଣ ଓ ଭାଗବତର ଗୋପାଳ କୃଷ୍ଣ ଏକ ନୁହଁନ୍ତି । ଦକ୍ଷିଣର ଆଲ୍‌ୱାର ସଂପ୍ରଦାୟର 'ମାଲୋନ୍' ହେଉଛନ୍ତି ଗୋପାଳକୃଷ୍ଣ । ପରେ କ୍ଷତ୍ରୀୟ କୃଷ୍ଣଙ୍କ ଜୀବନର ପୂର୍ବାର୍ଦ୍ଧ ଭାବରେ ତାଙ୍କ ବାଲ୍ୟକାଳକୁ ଯୋଡ଼ି ଦିଆଯାଇ ଏକ କରିଦିଆଯାଇଛି । ଏହି ଗୋପାଳକୃଷ୍ଣଙ୍କୁ ଗୋପୀନାଥରୁ 'ରାଧାନାଥ' ହେବାକୁ ମଧ୍ୟ ଅନେକ ବର୍ଷ ଅପେକ୍ଷା କରିବାକୁ ହୋଇଛି । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରୁ ଗୋପାଳକୃଷ୍ଣ ଓ ଶକ୍ତି ସ୍ୱରୂପିଣୀ ରାଧାଙ୍କର ମହତ୍ତ୍ୱ ବୃଦ୍ଧିପାଇଲା । ତେବେ ରାଧାବାଦ, ରାଧାପ୍ରେମ, ରାଧାକୃଷ୍ଣଙ୍କର ଲୀଳାତତ୍ତ୍ୱ ପ୍ରତିଷ୍ଠାରେ ରାୟ ରାମାନନ୍ଦ, ଶ୍ରୀ ଚୈତନ୍ୟ, ଷଡ଼ ଗୋସାମୀ ଓ ବଳଦେବ ବିଦ୍ୟାଭୂଷଣଙ୍କର ଅବଦାନ ସବୁଠାରୁ ଅଧିକ ଥିଲା ।

ବୈଷ୍ଣବ ଦର୍ଶନରେ ରାଧା କୃଷ୍ଣଙ୍କର ଶକ୍ତି ସ୍ୱରୂପିଣୀ । ଶକ୍ତିହୀନ ଶିବ ହେଉଛନ୍ତି ଶବ । ପୁରୁଷ ଓ ପ୍ରକୃତି ପରସ୍ପରର ପରିପୂରକ । ସାଂଖ୍ୟରେ ଯେଉଁ ପୁରୁଷ ଓ ପ୍ରକୃତି କଥା ରହିଛି ତାହା ସବୁ ଧାର୍ମିକ ମତବାଦରେ ମଧ୍ୟ ପ୍ରତିଷ୍ଠା ପାଇଛି ଭିନ୍ନ ବାଗରେ । ନାରୀ ଓ ପୁରୁଷକୁ ଦୁଇଟି ଭିନ୍ନ ଶକ୍ତି ଭାବରେ ଉପସ୍ଥାପିତ କରାଯାଇ ଆରାଧନା କରାଯାଇଛି । ରାଧା ସେଇ ନାରୀଶକ୍ତି ଯିଏକି ସାଂଖ୍ୟରେ ପ୍ରକୃତି, ଶାକ୍ତରେ ଶକ୍ତି, ବଜ୍ରଯାନରେ ନିରାତ୍ମା, ସହଜଯାନରେ ଶୂନ୍ୟତା, କାଳଚକ୍ରଯାନରେ ପ୍ରଜ୍ଞା । ସମଗ୍ର ଭାରତରେ ବୈଷ୍ଣବ ସାହିତ୍ୟର ପ୍ଲାବନରେ ରାଧା ଲୋକପ୍ରିୟତାର ଶୀର୍ଷକୁ ଯେଉଁ ସମୟରେ ଉଠିଥିଲେ ତା' ପଛରେ ଏକ ବିରାଟ ମନସ୍ତାତ୍ତ୍ୱିକ କାରଣ ଥିଲା । କାରଣ ରାଧା ଯଦି ନିମ୍ବାର୍କପନ୍ଥୀମାନଙ୍କ ମତାନୁସାରେ ଶ୍ରୀକୃଷ୍ଣଙ୍କ ପତ୍ନୀ ଭାବରେ ସ୍ୱକୀୟା ହୋଇରହିଥାନ୍ତେ ତେବେ ସହସ୍ର ସହସ୍ର ହୃଦୟର ଅଧିଷ୍ଠାତ୍ରୀ ହୋଇପାରି ନଥାନ୍ତେ ।

**ରାଧାକୃଷ୍ଣ ପ୍ରେମତତ୍ତ୍ୱର ପ୍ରସିଦ୍ଧି ପରକୀୟାରେ । ପ୍ରାପ୍ତି ନୁହେଁ ଅପ୍ରାପ୍ତିରେ । ମିଳନ ନୁହେଁ ବିରହରେ । ଶୃଙ୍ଗାର ନୁହେଁ ବିପ୍ରଲମ୍ଭରେ । ଆଧୁନିକ ସ୍ଥିତିବାଦୀ ଦାର୍ଶନିକମାନେ ମତ ଦିଅନ୍ତି ମଣିଷ ଯନ୍ତ୍ରଣାଖୋର । ମଣିଷ ଯନ୍ତ୍ରଣାକୁ ଭଲପାଏ । ତେଣୁ ମିଳନର ମାଧୁରିମା ଅପେକ୍ଷା ବିଚ୍ଛେଦର ଯନ୍ତ୍ରଣା ମଣିଷର ଅବଚେତନକୁ ସୁହାଏ ।**

ମନସ୍ତତ୍ତ୍ୱବିଦ୍‌ମାନେ ମତ ଦିଅନ୍ତି ମଣିଷର ଜୀବନଚର୍ଯ୍ୟା ପ୍ରେମ (Love) ଓ କାମ (Sex) ଦ୍ୱାରା ବେଶୀ ଭାବରେ ପ୍ରଭାବିତ । ସୂକ୍ଷ୍ମ ଭାବରେ ଦେଖିଲେ ରାଧା ଓ କୃଷ୍ଣଙ୍କ ଠାରୁ ସେମାନଙ୍କର ସମସ୍ତ ଦେବତ୍ୱ କାଢ଼ିନେଲେ ଯେଉଁ ସାଧାରଣ ମଣିଷ ଦୁଇଜଣ ଅବଶିଷ୍ଟ ରହିବେ ସେଠି ସେମାନଙ୍କ ଭିତରେ କେବଳ ପ୍ରେମ ଓ କାମ ହିଁ ଅଛି । ଏହି ପ୍ରେମ ଓ କାମର ଅନୁଭବ ପୁଣି ସ୍ରଷ୍ଟାର, ଯିଏ ନିଜ ହାତରେ ରାଧା କୃଷ୍ଣଙ୍କ ଚରିତ ସୃଷ୍ଟି କରିଛି । ଫ୍ରୟେଡ଼ୀୟ ମନୋବିଜ୍ଞାନ ଅନୁସାରେ ମଣିଷର ମନ ଯୌନବାସନାରେ ଭର୍ତ୍ତି । କିନ୍ତୁ ଏହି କାମନା ଚରିତାର୍ଥ ହେବାର ସୁଯୋଗ ସବୁବେଳେ ମଣିଷକୁ ମିଳି

Digitized by srujanika@gmail.com

ନଥାଏ । ତେଣୁ ମଣିଷ ଭିନ୍ନ ରାସ୍ତା ଖୋଜେ । ବୈଷ୍ଣବ ସାହିତ୍ୟର କବି ହୁଅନ୍ତୁ କିମ୍ବା କାଳ୍ପନିକ କାବ୍ୟର କବି ହୁଅନ୍ତୁ ଏପରିକି ପୁରାଣକାର ହୁଅନ୍ତୁ, ସୁଯୋଗ ମିଳିଲେ ସମସ୍ତେ ଯେଉଁ ନାରୀର ନଖଶିଖ ବର୍ଣ୍ଣନା କରିଛନ୍ତି ଓ ନାରୀ ପୁରୁଷର ଯୌନ ମିଳନର ଆଖୋଁଦେଖା ହାଲ୍ ଶୁଣାଇଛନ୍ତି, ତା ପଛରେ କେବଳ ଆତ୍ମରତିର ଆନନ୍ଦ ରହିଛି । ଚିତ୍ରଶିଳ୍ପୀ ଓ ମୂର୍ତ୍ତିକାରମାନେ ନାରୀଚିତ୍ର ବା ନାରୀମୂର୍ତ୍ତି ଗଠନ ସମୟରେ ମଧ ସେଇ ଏକା ଅନୁଭବ ପାଇଥାନ୍ତି । ରାଧା ଓ କୃଷ୍ଣ ହେଉଛନ୍ତି କେତେ ହଜାର ବର୍ଷର ଭାରତୀୟ ଅବଚେତନର କାମ (Sex) ଓ ପ୍ରେମ (Love)ର ପ୍ରତୀକ । ଏକଦା ବୈଷ୍ଣବ କବିମାନଙ୍କର ରାଧାକୃଷ୍ଣ ପ୍ରେମକୁ ନେଇ ରଚିତ ଶହ ଶହ କାବ୍ୟ କବିତାମାନଙ୍କର ହେତୁ ଖୋଜିବାକୁ ଯାଇ ରବୀନ୍ଦ୍ରନାଥ ଠାକୁର ବୈଷ୍ଣବମାନଙ୍କୁ ପଚ୍ଚାରିଥିଲେ ?

ବର୍ଷ ପରେ ବର୍ଷ ରାଧାଚରିତ୍ର ବିବର୍ତ୍ତିତ ହୋଇଚାଲିଛି । ରାଧା ପରକୀୟା ହୋଇଛନ୍ତି, ସ୍ୱକୀୟା ହୋଇଛନ୍ତି, ସହଜ ହୋଇଛନ୍ତି, କୃଷ୍ଣଙ୍କର ପତ୍ନୀ ହୋଇଛନ୍ତି ପ୍ରେମିକା ହୋଇଛନ୍ତି, ଶକ୍ତି ହୋଇଛନ୍ତି । ରାଧାଙ୍କୁ ନେଇ ପୁରାଣ ଲେଖାହୋଇଛି । ଛବି ଅଙ୍କା ହୋଇଛି, ମୂର୍ତ୍ତି ତିଆରି ହୋଇଛି । ଆଧୁନିକ ଯୁଗର କବି ଚିତ୍ରଶିଳ୍ପୀମାନେ ମଧ ରାଧାଙ୍କ ପ୍ରଭାବରୁ ମୁକ୍ତ ହୋଇପାରିନାହାଁନ୍ତି । ଆଧୁନିକ କବିତା, ଚିତ୍ରକଳା, ଉପନ୍ୟାସ ଓ ନାଟକ ଆଦିରେ ରାଧା ଅଛନ୍ତି । କେଉଁଠି ମିଥ୍ ଭାବରେ କେଉଁଠି ଚିରନ୍ତନୀ ପ୍ରେମର ପ୍ରତୀକ ଭାବରେ ।

ଆଧୁନିକ ଓଡ଼ିଆ କବି ରମାକାନ୍ତ ରଥଙ୍କ ରାଧାଙ୍କୁ ନେଇ ଲିଖିତ 'ଶ୍ରୀରାଧା' କାବ୍ୟଗ୍ରନ୍ଥ ସମଗ୍ର ଆଧୁନିକ ଭାରତୀୟ ସାହିତ୍ୟରେ ଏକ କ୍ଲାସିକ୍ ସୃଷ୍ଟିର ମାନ୍ୟତା ଲାଭ କରିଛି । ପ୍ରସିଦ୍ଧ ହିନ୍ଦୀ କବି ଧର୍ମବୀର ଭାରତୀଙ୍କର 'ଭାନୁପ୍ରିୟା' କାବ୍ୟଗ୍ରନ୍ଥ ମଧ ଶ୍ରୀରାଧାଙ୍କୁ ନେଇ ଲିଖିତ ।

ମୁଁ ରାଧାଙ୍କୁ ନେଇ ଏତେ ସବୁ ଉପକ୍ରମଣିକା ଦେବାର କାରଣ ହେଉଛି, ଆମ ସମୟର ଜଣେ କୃତବିଦ୍ୟ ଚିତ୍ରଶିଳ୍ପୀ ଓ ଔପନ୍ୟାସିକ ଡକ୍ଟର ଦିନନାଥ ପାଠୀଙ୍କର ଦୁଇଟି ମାଧମରେ ରାଧା ଚରିତ୍ରକୁ ନେଇ କରିଥିବା ପରୀକ୍ଷା ସମ୍ବନ୍ଧରେ ଆଲୋଚନା କରିବା । ଦୁଇଟି ମାଧମ, ଗୋଟେ ଛବି, ଅନ୍ୟଟି ଶବ୍ଦ । ଡକ୍ଟର ପାଠୀ ରାଧାଙ୍କୁ ନେଇ ପ୍ରଥମେ ଛବି ଆଙ୍କିଛନ୍ତି ପରେ ସାହିତ୍ୟକୁ ଆଣିଛନ୍ତି । ତାଙ୍କର ରାଧାଙ୍କୁ ନେଇ ଛବି ଆଙ୍କିବା ପଛରେ ଦୁଇଟି କାରଣ ଅଛି । ପ୍ରଥମଟି ତାଙ୍କର ଓଡ଼ିଶାର ପାରମ୍ପରିକ ଚିତ୍ରକଳା ଉପରେ ଗବେଷଣା ଓ ଦ୍ୱିତୀୟଟି ଆନ୍ତର୍ଜାତିକ କଳାସ୍ରୋତରେ ନିଜ ମାଟିର କଥା କହି ସତନ୍ତ୍ର ପରିଚୟ ସୃଷ୍ଟି କରିବା ।

ଓଡ଼ିଶାର ପାରମ୍ପରିକ ଚିତ୍ରକଳାରେ ରାଧାଙ୍କର ଚିତ୍ର ଏକ ପ୍ରମୁଖ ସ୍ଥାନ ଗ୍ରହଣ କରିଛି । ଏହାର କାରଣ ବୈଷ୍ଣବ ଧର୍ମ ଲୋକପ୍ରିୟ ହେବାପରେ ରାଧାକୃଷ୍ଣଙ୍କ ଅମର ପ୍ରେମକୁ ନେଇ ଯେଉଁ ସବୁ କାବ୍ୟ ରଚନା କରାଗଲା ସେହି କାବ୍ୟପୋଥିର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ କାବ୍ୟର ବିଷୟବସ୍ତୁକୁ ତାଳପତ୍ର ପୋଥିରେ ଖୋଦେଇ କରାଗଲା । ଏହାଛଡ଼ା ବିଭିନ୍ନ ମନ୍ଦିର, ମଠମାନଙ୍କ କାନ୍ଥରେ କୃଷ୍ଣଲୀଳାର କାହାଣୀ ଅଙ୍କା ଗଲାବେଳେ ରାଧାଛବିଟି ଚିତ୍ର କରାଗଲା । ପଟ ଉପରେ ମଧ କୃଷ୍ଣଙ୍କ ସହ ରାଧାଙ୍କ ଛବି ରୂପ ପାଇଲା ।

ଜୟଦେବଙ୍କ 'ଗୀତଗୋବିନ୍ଦ' କାବ୍ୟ ରାଜାନୁଗ୍ରହ ଲାଭକରି ଶ୍ରୀମନ୍ଦିରରେ ପ୍ରତ୍ୟହ ଗାନ କରାଯିବାର ବିଧି ପ୍ରଚଳନ ବେଳରୁ କାବ୍ୟଟି ଲୋକପ୍ରିୟତାର ଶୀର୍ଷରେ ନିଶ୍ଚୟ ପହଞ୍ଚିଥିବ । ସେତେବେଳକୁ ଜଗନ୍ନାଥ କୃଷ୍ଣ ହୋଇସାରିଲେଣି । ଚୈତନ୍ୟ ପନ୍ଥୀମାନଙ୍କର ପ୍ରଭାବ ସୁଦୃଢ଼ ହୋଇସାରିଲାଣି । ରାୟ ରାମାନନ୍ଦଙ୍କ ଦ୍ୱାରା ବୈଷ୍ଣବଧର୍ମର ତାତ୍ତ୍ୱିକ ଦିଗ ପ୍ରତିଷ୍ଠା ପାଇସାରିଲାଣି । ତେଣୁ ବୈଷ୍ଣବ ଧର୍ମର ପ୍ଲାବନରେ ଗୀତଗୋବିନ୍ଦ ତା'ର ଶୃଙ୍ଗାରିକତା, ଗୀତିମୟତା ପାଇଁ କେବଳ ସେ ଯୁଗର ସାହିତ୍ୟ ନୁହେଁ ଚିତ୍ରକଳା ଉପରେ ମଧ ପ୍ରଭାବ ପକେଇଛି ଏଥିରେ ଆଶ୍ଚର୍ଯ୍ୟ କଥା କିଛି ନାହିଁ । ଗୀତଗୋବିନ୍ଦ କେବଳ ଦକ୍ଷିଣକୁ ଛାଡ଼ିଦେଲେ ପ୍ରାୟ ସବୁ ପ୍ରାନ୍ତୀୟ ଚିତ୍ରକଳାର ମୁଖ୍ୟ ବିଷୟ

Digitized by srujanika@gmail.com

ଭାବରେ ଚିତ୍ରିତ ହୋଇଛି । ଏକଥା ଡକ୍ଟର ପାଠୀ ତାଙ୍କ ଦ୍ୱାରା ସଂପାଦିତ **Jayadeva and Gitagovinda in Orissan Tradition** ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

ସେ ଓଡ଼ିଶାର ପାରମ୍ପରିକ ଚିତ୍ରକଳା ଉପରେ ଗବେଷଣା କରିବା ଛାୟାରେ ପାରମ୍ପରିକ ଶୈଳୀରେ ଅଙ୍କିତ ଗୀତଗୋବିନ୍ଦର ଚିତ୍ରଭାଷା ଦ୍ୱାରା ପ୍ରଭାବିତ ହୋଇଛନ୍ତି, ତାଙ୍କର ଗୀତଗୋବିନ୍ଦ ସିରିଜ୍‌ର ଛବି ଦେଖି ଏ କଥା କୁହାଯାଇପାରେ । ଗୀତଗୋବିନ୍ଦକୁ ଛାଡ଼ିଦେଲେ ତାଙ୍କର ଗବେଷଣା ପରିଧିକୁ ଆସିଥିବା ଆହୁରି ଅନେକ ଚିତ୍ରିତ ଗ୍ରନ୍ଥ ଓ ବିଭିନ୍ନ ମଠ, ମନ୍ଦିରମାନଙ୍କରେ ଅଙ୍କିତ ଛବି ତଥା ପଟଚିତ୍ର ଆଦିରେ ଅଙ୍କିତ ରାଧାକୃଷ୍ଣଙ୍କ ଚିତ୍ରଭାଷା ମଧ୍ୟ ପ୍ରଭାବ ପକେଇଥିବ ।

ପାରମ୍ପରିକ ଚିତ୍ରଭାଷା କାବ୍ୟଭାଷାକୁ ନେଇ ସୃଷ୍ଟି । ଏଠି ସଂପର୍କ ପ୍ରାୟ ସିଧାସଳଖ । କିନ୍ତୁ ପାଠୀଙ୍କ ରାଧାଙ୍କୁ ନେଇ ଅଙ୍କିତ ଛବିମାନଙ୍କ ଚିତ୍ରଭାଷା ସିଧାସଳଖ କୌଣସି କାବ୍ୟଭାଷା ପାଖରେ ଋଣି ନୁହେଁ । ଯେମିତି ରମାକାନ୍ତ ରଥଙ୍କ 'ଶ୍ରୀରାଧା' କାବ୍ୟ ଗ୍ରନ୍ଥରେ ଶ୍ରୀରାଧା ରାଧା ପରମ୍ପରାର ବୈଷ୍ଣବୀୟ କାବ୍ୟର ରାଧାଙ୍କ ସହ ଏତେଟା ସାଦୃଶ୍ୟ ରକ୍ଷା କରନ୍ତିନି । ରାଧାଙ୍କ ମାନୁଷୀ-ଚେତନାର ଦୁଃଖ, ଦ୍ୱନ୍ଦ୍ୱ, ହତାଶା ସମ୍ବନ୍ଧରେ ଏହି କବିତାଗୁଡ଼ିକ ରଚିତ । ଏହି ରୂପଗତ ଓ ଚରିତ୍ରଗତ ସାମଞ୍ଜସ୍ୟ ରାଧାଙ୍କ ଏକ ବିବିର୍ତ୍ତିତ ଭାବକଳ୍ପକୁ ନେଇ ପ୍ରକାଶିତ । ଏଥିରେ ଅଛି ନାହିଁର ସାଙ୍କେତିକତା ବାରିହୁଏ । ରାଧାଙ୍କୁ ସଂପ୍ରତିକ କରିବାକୁ ଯାଇ ରମାକାନ୍ତ ସାଧାରଣ ନାରୀଙ୍କ ଭିତରେ କାବ୍ୟାଣା ଆରୋପ କରିଥିଲା ବେଳେ ଦିନନାଥ ହୁଏତ ସାଧାରଣ ନାରୀର ରୂପକୁ ରାଧାଭାବରେ ଅବଗାହୀ ଦେଇଛନ୍ତି ବା ରାଧାଙ୍କର କଳ୍ପିତ ଚିତ୍ରରୂପକୁ ଏହି ନାରୀଙ୍କ ଭିତରେ ଅବଲୋକନ କରିଛନ୍ତି ।

**ପ୍ରାୟ ପାଖାପାଖି କିମ୍ବା ଖୁବ୍ କମ୍ ସମୟ ବ୍ୟବଧାନରେ ରମାକାନ୍ତ ରଥଙ୍କ ଲିଖିତ ରାଧା ଓ ଡକ୍ଟର ପାଠୀଙ୍କ ଅଙ୍କିତ ରାଧା ମଧ୍ୟରେ ଅନେକ ପ୍ରଭେଦ ଅଛି । ସେଥିରୁ କିଛି ପାର୍ଥକ୍ୟ ପ୍ରୟୋଗକୁ ନେଇ ଆଉ କିଛି ପାର୍ଥକ୍ୟ ମାଧ୍ୟମକୁ ନେଇ ।**

ରମାକାନ୍ତ ଚରିତ୍ରର ପ୍ରୟୋଗ କରିଛନ୍ତି ଏକ ମହାନ୍ ପ୍ରେମ ଓ ମହାନ୍ ସାହସର ରୂପରେଖ ଦେବାକୁ । କବି ନିଜେ ସ୍ପଷ୍ଟ କରିଦେଇଛନ୍ତି ଯେ, 'ଶ୍ରୀରାଧା' କାବ୍ୟ ଗ୍ରନ୍ଥରେ ପୁରାଣରେ ପ୍ରସିଦ୍ଧ ନଥିବା ଏକ ସମୟଖଣ୍ଡକୁ କାବ୍ୟସୃଷ୍ଟିର ପୃଷ୍ଠପଟ ଭାବରେ ଗ୍ରହଣ କରାଯାଇଛି । ଅର୍ଥାତ୍ କୃଷ୍ଣ ଜନ୍ମଠୁ କୃଷ୍ଣଙ୍କ ମୃତ୍ୟୁର ବହୁଦିନ ପର୍ଯ୍ୟନ୍ତ ରାଧାଙ୍କ ମନସ୍ତତ୍ୱ ହିଁ 'ଶ୍ରୀରାଧା' କାବ୍ୟଗ୍ରନ୍ଥର ବିଷୟବସ୍ତୁ । ଶ୍ରୀକୃଷ୍ଣଙ୍କ ମୃତ୍ୟୁର ଖବର ଗୋପରେ ପହଁଚିଲାପରେ ଶ୍ରୀରାଧା ଯେଉଁ ଅସୀମ ସାହସର ପରିଚୟ ଦେଇଛନ୍ତି ଓ ଯେଉଁ ସାହସ ଆହୁରି ଉଜ୍ଜ୍ୱଳ ଦିଶୁଛି ତାଙ୍କର ମହାନ ପ୍ରେମର ଆଲୋକରେ ଆଲୋକିତ ହୋଇ, ସେଠି ରାଧା ଆଉ ସାଧାରଣ ଲାଗୁ ନାହାନ୍ତି । ଆଦୌ ଅନୁଭବ କରିହଉନି ସେ ଗୋପର ସାଧାରଣ ଗଉଡୁଣୀ ଜଣେ । ଏଇଠି ଶ୍ରୀରାଧା ଆଉ ଦେବୀତ୍ୱରୁ ମୁକ୍ତି ପାଇପାରି ନାହାନ୍ତି । କିନ୍ତୁ ଡକ୍ଟର ପାଠୀ ତାଙ୍କ କାନ୍‌ଭାସରେ ରୂପ ଦେଇଥିବା ଶ୍ରୀରାଧା କେତେବେଳେ ମଧ୍ୟ ଦେବୀ ବୋଲି ପ୍ରତୀତ ହେଉନାହାଁନ୍ତି । **ଡକ୍ଟର ପାଠୀଙ୍କ ରାଧା ଚରିତ୍ରର ପ୍ରୟୋଗ କୌଣସି ଗୂଢ଼ ଦାର୍ଶନିକ ବୈଷ୍ଣବୀୟ ତତ୍ତ୍ୱକୁ ନେଇ ନୁହେଁ କିମ୍ବା କୌଣସି ସାଧାରଣରୁ ଅସାଧାରଣ ହେଇଯାଉଥିବା ପ୍ରକ୍ରିୟାକୁ ନେଇ ନୁହେଁ । ସବୁ କାମନା ଦଗ୍ଧ ନାରୀ ହୁଏତ ରାଧା । ରାଧା, ପାଠୀଙ୍କ ଚିତ୍ରରେ ପ୍ରେମମୟୀମୂର୍ତ୍ତି ଓ ଅଭିସାରିକା ନାୟିକା ।**

ଏବେ ମାଧ୍ୟମ କଥା କହିବା । ମାଧ୍ୟମ ମଧ୍ୟ ଅନେକ କିଛି ଓଲଟ ପାଲଟ କରିଦେଇପାରେ । କାରଣ ପ୍ରତି ମାଧ୍ୟମରେ ଗୋଟେ ପରିସୀମା ରହିଛି ଓ ସେ ପରିସୀମା ଅନତିକ୍ରମଣୀୟ । ଏକଥା ଭିନ୍ନ ଭିନ୍ନ ମାଧ୍ୟରେ କାମ କରୁଥିବା ସୃଜନଶୀଳ ବ୍ୟକ୍ତିମାନେ ଜାଣନ୍ତି । ଭାବରାଜ୍ୟରେ ପ୍ରତୀୟମାନ ହେଉଥିବା ରାଧା ଯେତେବେଳେ ଦୁଇଟି ଭିନ୍ନ ମାଧ୍ୟମକୁ ଆଶ୍ରୟ କରି ଧରାବତରଣ କରିବ ସେତେବେଳେ ଦୁଇଟି ଭିନ୍ନ ରୂପ ପାଇବାକୁ ବାଧ୍ୟ । ଉଦାହରଣକୁ ଯିବା ।

Digitized by srujanika@gmail.com

"ତମେ ଆସିଅଛ ବୋଲି ଶୁଣିଲାବେଳକୁ
ଦିନ ବେଶ୍ ହୋଇ ଯାଇଥିଲା
ଗାଈଗୋରୁ କେତେବେଳୁଁ ଫିଟି ସାରିଥିଲେ
ଅଧିକାଂଶ ପୁରୁଷ କାମକୁ
ଯାଇ ସାରିଥିଲେ, ସ୍ତ୍ରୀ ଲୋକେ ପ୍ରସ୍ତୁତ
ହେଉଥିଲେ ଗାଧୋଇ ଯିବାକୁ
କାହିଁକି କେଜାଣି କିନ୍ତୁ ଖୁବ୍ ଚୁପ୍‌ଚାପ୍
ଥିଲେ ସବୁ ପୁରୁଷଲୋକ ଓ
ସ୍ତ୍ରୀ ଲୋକେ ଅଯଥା ଡେରି ଡେରି କରୁଥିଲେ
ସତେକି ସେମାନେ ତାଙ୍କ ଦେହ ଭିତରକୁ
ବାଟ ହୁଡ଼ି ପଶି ଆସିଥିଲେ
ବାଟ ହୁଡ଼ିଗଲେ ବୋଲି ବୁଝିବା ଉତ୍ତାରେ
କିପରି ଚଳିବେ ବୋଲି ଧନ୍ଦି ହେଉଥିଲେ ।"

ଏହି ୧୩ ଧାଡ଼ିର କାବ୍ୟାଂଶରେ ରମାକାନ୍ତ ରଥ ଅନେକ ଗୁଡ଼େ ଛବିର କଥା କହିଲେ । ତା' ସହ ଆହୁରି କିଛି କଥା କହିଲେ ଯାହାକୁ ଛବିରେ ଆଦୌ ଅଙ୍କାଯାଇ ପାରିବନି । ଏହି ୧୩ ଧାଡ଼ିର କଥାକୁ ଗୋଟାପଣେ ଛବିରେ ଦେଖାଇବାକୁ ଜଣେ ଚିତ୍ରଶିଳ୍ପୀଙ୍କୁ ବେଶ୍ ଶ୍ରମ ଓ ସମୟ ଦେବାକୁ ହେବ । କିନ୍ତୁ ଏଇଠି କେତୋଟି ଶବ୍ଦ ମାଧ୍ୟମରେ କେତେ କଥା କହି ହେଇଗଲା ? ସେମିତି ଡକ୍ଟର ପାଠୀଙ୍କ ଗୋଟିଏ ଛବିକୁ ଦେଖାଯାଉ । ଛବିରେ ଥିବା ଚିତ୍ରଭାଷାକୁ ଶବ୍ଦରେ ରୂପାନ୍ତର କରିବାକୁ ଯଦି ଚେଷ୍ଟା କରାଯାଏ ତେବେ ସେଥିପାଇଁ ୧୦୦ ପୃଷ୍ଠାର କାଗଜ ନିଅଣ୍ଟ ପଡ଼ିବ ।

**ଅବଶ୍ୟ ରମାକାନ୍ତଙ୍କ ଶ୍ରୀରାଧା କାବ୍ୟଗ୍ରନ୍ଥ ଓ ଡକ୍ଟର ପାଠୀଙ୍କର ରାଧାଙ୍କ ଉପରେ ଅଙ୍କିତ ଛବି, ଦୁଇ ଭିନ୍ନ ମାଧ୍ୟମରେ ଏକ ଏକ ସଫଳତା । 'ଶ୍ରୀରାଧା' କାବ୍ୟଗ୍ରନ୍ଥ ଅଧିକ ଲୋକପ୍ରିୟ କାରଣ ଆମର କବିତାର ପାଠକ ସଂଖ୍ୟା ଛବିର ଦର୍ଶକଙ୍କ ଠାରୁ କାହିଁ କେତେ ଗୁଣ ଅଧିକ । ତା'ପରେ ଆମର ଏଠି ଭିଜୁଆଲ୍ ଲିଟରେଟ୍‌ଙ୍କ ସଂଖ୍ୟା କମ୍‌ଥିବାରୁ ରାଧା ଛବିମାନଙ୍କର ଚିତ୍ରଭାଷା ଓ ସାମର୍ଥ୍ୟ ସଂପର୍କରେ ଆଲୋଚନା କରାଯାଇନି ।**

ଡକ୍ଟର ପାଠୀ ରାଧାଙ୍କ ଉପରେ ଯେତେ ଛବି ଆଙ୍କିଛନ୍ତି, ସେଥିରେ ରାଧାକୃଷ୍ଣଙ୍କ ମିଳନ ଅପେକ୍ଷା, ରାଧାଙ୍କର ଅଭିସାର, ପ୍ରତୀକ୍ଷା, ବିଚ୍ଛେଦ ଅଧିକ ଭାବରେ ଅଙ୍କିତ । କୃଷ୍ଣ କାବ୍ୟମାନଙ୍କରେ ରାଧା ଭିନ୍ନ ଭିନ୍ନ ନାୟିକା ଭାବରେ ଚିତ୍ରିତ ହୋଇଥିଲେ ମଧ୍ୟ ଚିତ୍ରକର ପାଠୀଙ୍କ ଛବିରେ ରାଧା ମୁଖ୍ୟତଃ ବିପ୍ରଲବ୍ଧା ଓ ଅଭିସାରିକା ଭାବରେ ଅଙ୍କିତ । ରାଧା ଚରିତ୍ରର କ୍ରମବିକାଶରେ ରାଧା କେତେବେଳେ କୃଷ୍ଣଙ୍କ ଠାରୁ ବୟସରେ ବଡ଼ ତ କେତେବେଳେ ସାନ । ବୈଷ୍ଣବ ତତ୍ତ୍ୱର କୃଷ୍ଣ ଓ ରାଧା ଉଭୟେ କିଶୋର ଓ କିଶୋରୀ । ଡକ୍ଟର ପାଠୀ କିନ୍ତୁ ତାଙ୍କ ଛବିରେ ଯେଉଁ ରାଧାଙ୍କର ଛବି ଆଙ୍କିଛନ୍ତି ସେ ଶାରୀରିକ ଗଠନ ଦୃଷ୍ଟିରୁ କିଶୋରୀ ଆଦୌ ନୁହନ୍ତି । ଜଣେ ଯୌବନ ଥିବା ମଧ୍ୟବୟସ୍କା ସ୍ତ୍ରୀ ଲୋକ ଯାହାର ଅଙ୍ଗରୂପ, ଓଡ଼ିଶାର ଜଣେ ଗାଉଁଲି ସାଧାରଣ ସ୍ତ୍ରୀ ଲୋକପରି । ମାଂସଳ ଦେହ, ଉନ୍ନତ ସ୍ତନ, ବୃଶାଳ ଜାନୁ, ଭାରୀ ନିତମ୍ବ ଓ ଅଳ୍ପ ଉଚ୍ଚତା । ଏଠି ରାଧାଙ୍କୁ ନାୟିକା ଭେଦରେ କାବ୍ୟ ବର୍ଣ୍ଣିତ କୃଶତନୁ ପଦ୍ମିନୀ ନାରୀ ଭାବରେ ନେଇପାରିବାକି ? ବୟସ ଦୃଷ୍ଟିରୁ ପାଠୀଙ୍କ ରାଧା 'ମଧ୍ୟା ନାୟିକା' । କର୍ମ ଦୃଷ୍ଟିରୁ ପରକୀୟା । ଛବିରେ ରାଧାଙ୍କର ଉଦ୍ଦୀପକ ବିଭାବ ଭାବରେ ଯମୁନା, ପୁଷ୍ପିତ କୁଞ୍ଜ, କଦମ୍ବ ବୃକ୍ଷ ଆଦି ଅଙ୍କିତ ହୋଇଛି । ଏହି ଉଦ୍ଦୀପନ ବିଭାବ ନାୟିକାର ଭାବକୁ ଉଦ୍ଦୀପ୍ତ କରି 'ରତି' ନାମକୁ ସ୍ଥାୟୀଭାବ ମାଧ୍ୟମରେ ଶୃଙ୍ଗାର ରସ ରାଧାଙ୍କ ମନରେ ସୃଷ୍ଟି କରୁଛି । ତାହା ପୁଣି କେତେବେଳେ ସଂଭୋଗ ତ କେତେବେଳେ ବିପ୍ରଲମ୍ଭ । ଡକ୍ଟର ପାଠୀଙ୍କ ରାଧା କେତୋଟି ଛବିରେ କୃଷ୍ଣବର୍ଣ୍ଣ ଧାରଣ କରିଛନ୍ତି । ରାଧା ନିଶ୍ଚୟ କେବେ କେବେ କୃଷ୍ଣମୟ ହେଉଥିବା ଅବସ୍ଥାରେ ପହଞ୍ଚୁଥିବେ ।

Digitized by srujanika@gmail.com

ସେଠି କୃଷ୍ଣଙ୍କର ଅନୁପସ୍ଥିତିରେ ବି କୃଷ୍ଣଙ୍କର ଉପସ୍ଥାନ । ଏହା ଶୃଙ୍ଗାର ରସର ପରିଗ୍ରହକ । କାରଣ ଶୃଙ୍ଗାର ରସର ବର୍ଣ୍ଣ ହେଉଛି ଶ୍ୟାମଳ କୃଷ୍ଣ ବର୍ଣ୍ଣ ।

**ଡକ୍ଟର ପାଠୀ ତାଙ୍କ ଚିତ୍ରଭାଷାରେ ମନକୁ ହରିଣ ଭାବରେ ଓ ବାଘକୁ କାମନା ଭାବରେ ବ୍ୟବହାର କରିଛନ୍ତି । କାମନା ଭାବରେ ବାଘର ବ୍ୟବହାର ଖୁବ୍ ସଂପ୍ରେଷଣ ଚିତ୍ରଭାଷା ।**

ଓଡ଼ିଶୀ ପାରମ୍ପାରିକ ଚିତ୍ରକଳାରେ ଅଙ୍କାହେଲାପରି ଡକ୍ଟର ପାଠୀଙ୍କ ଗୀତଗୋବିନ୍ଦ ଓ ରାଧା ସିରିଜ୍‌ର ଛବିରେ ରାଧାକୃଷ୍ଣ ଓ ସଖୀମାନଙ୍କର ମୁହଁ ଗୋଟିଏ ପାର୍ଶ୍ୱରୁ (Profile) ଅଙ୍କିତ । ଦେହର ଗଠନ ଓଡ଼ିଶାର ମନ୍ଦିର ଗାତ୍ରର ପଥର ମୂର୍ତ୍ତି ଦ୍ୱାରା ପ୍ରଭାବିତ । ଛବିମାନଙ୍କରେ ରାଧା କିମ୍ବା କୃଷ୍ଣ କେଉଁଠି କ୍ଲାସିକାଲ୍ ପୋଜ୍ ଦେଇ ଠିଆ ହୋଇନାହାଁନ୍ତି । କୃଷ୍ଣଙ୍କ ତ୍ରିଭଙ୍ଗୀଠାଣି ଏଠି ନାହିଁ କିମ୍ବା ରାଧାଙ୍କର ଠିଆ ହେବାର ଲାଳିତ୍ୟ କେଉଁଠି ନାହିଁ । ଏଠି ରାଧା କ୍ଲାସିକ୍ ରାଧା ନୁହଁନ୍ତି । ରାଧା ଜଣେ ନାରୀ ବିଶେଷ । ସବୁ ପ୍ରେମିକା ନାରୀ 'ରାଧା' । **ଆଧୁନିକ ଦୃଷ୍ଟିଭଙ୍ଗୀରେ ରାଧାଙ୍କ ଚରିତ୍ର ବର୍ଣ୍ଣିତ କାବ୍ୟ ସବୁବେଳେ ଯେପରି ରାଧାଙ୍କ ଜୀବନୀ ହେବାକୁ ବାଧ ନୁହେଁ ସେପରି ରାଧାଙ୍କୁ ନେଇ ଅଙ୍କାଯାଇଥିବା ଛବିଟି ସବୁବେଳେ ରାଧାଙ୍କ ପୋଟ୍ରେଟ୍ କିମ୍ବା ଲାଇଫ୍ ଷ୍ଟଡ଼ି ନୁହେଁ ।** ଯେଉଁ କଥାଟିକୁ ଅଧିକ ପ୍ରାଞ୍ଜଳ ଭାବରେ ପ୍ରତୀକ୍ଷା କରାଯାଇପାରିବ ଡକ୍ଟର ପାଠୀଙ୍କ ଉପନ୍ୟାସ ପୁନର୍ନବା ପାଠ କଲାବେଳେ । ତେବେ ରାଧାଙ୍କୁ ନେଇ ଅଙ୍କିତ ଛବି ମାନଙ୍କରେ ପରିବେଶ ଆମର ପାରମ୍ପରିକ ଚିତ୍ରକଳା ଦ୍ୱାରା ପ୍ରଭାବିତ, ଯଥା ଛବିରେ ଯମୁନା ନଦୀ ପାରମ୍ପରିକ ଚିତ୍ରକଳାରେ ଅଙ୍କାହେଲାପରି ଟପ୍‌ଭ୍ୟୁ ଆଙ୍ଗଲ୍‌ରୁ ଦେଖିଲାପରି ଦିଶୁଛି । ନଦୀରେ ଫୁଲ ଓ ମାଛ ଅଛନ୍ତି । କେତୋଟି ସ୍ଥାନରେ ସୂକ୍ଷ୍ମ ରେଖାମାନଙ୍କ ସାହାଯ୍ୟରେ ନଦୀର ସ୍ରୋତକୁ ବୁଝାଇ ଦିଆଯାଇଛି । ଡେକୋରେଟିଭ୍ ଗଛ, ଗଛରେ ବସିଥିବା କିମ୍ବା ଉଡ଼ିଯାଉଥିବା ଶୁଆ, ପାହାଡ଼ର ଆକାର ପ୍ରକାର ମଧ୍ୟ ପାରମ୍ପରିକ ଛବିମାନଙ୍କ ଦ୍ୱାରା ପ୍ରଭାବିତ । ଏତେ କିଛି ପାରମ୍ପରିକ ଛବିମାନଙ୍କ ପାଖରେ ଋଣି ରହିବାର କାରଣ ହେଉଛି, ନିଜସ୍ୱ ଚିତ୍ରକଳା ପରମ୍ପରାରୁ ବିଚ୍ଛିନ୍ନ ନହୋଇ ଭାରତୀୟ ସଂସ୍କୃତିର ଜଣେ ମହାନ୍ ନାୟିକାଙ୍କ ବିଷୟକୁ ଆଧୁନିକ ଚିତ୍ରଭାଷାରେ ରୂପ ଦେବା ।

ଡକ୍ଟର ପାଠୀଙ୍କ ୧୯୯୯ରେ ପ୍ରକାଶିତ ଉପନ୍ୟାସ ପୁନର୍ନବା ଓଡ଼ିଆ ଉପନ୍ୟାସର ଅନ୍ୟଏକ ସାହସିକ ଶକ୍ତିପରୀକ୍ଷା । **ଓଡ଼ିଆ ଉପନ୍ୟାସ ଇତିହାସରେ ପ୍ରଥମକରି ଜଣେ କଳାକାର ଦ୍ୱାରା କଳାସୃଷ୍ଟିର ପ୍ରକ୍ରିୟାକୁ ନେଇ ଉପନ୍ୟାସ ରଚିତ ହେଲା ।** ସଂପୂର୍ଣ୍ଣ ଉପନ୍ୟାସ ଆଲୋଚନାର ଅବକାଶ ଏଠି ନାହିଁ । ମୋର ଆଲୋଚନା ଉପନ୍ୟାସରେ ବର୍ଣ୍ଣିତ ରାଧାଙ୍କ କଥାକୁ ନେଇ । ପୁଣି ଦୁଇଟି ମାଧ୍ୟମର କଥା । ଛବିର ରାଧା ଓ ପୁନର୍ନବା ଉପନ୍ୟାସର ରାଧା । ତାଙ୍କ ଛବିରେ ଆମେ ଯେଉଁ ସବୁ ନାରୀଙ୍କ ଭିତରେ ରାଧା ହେବାର ସଂଭାବନା ଅଛିର କଥା ବୁଝାପଡ଼ିଥିଲା ତାହା ଅଧିକ ସହ୍ୟ ହୋଇପଡ଼ିଲା ପୁନର୍ନବାର ରାଧାଙ୍କୁ ବୁଝିଲା ପରେ । କାଫ୍‌କାଙ୍କ ମେଟାମରଫସିସ୍‌ରେ ମଣିଷ ପୋକରେ ରୂପାନ୍ତରିତ ହେବାର କଥା ଥିଲା । ମଣିଷରୁ ପୋକ ଏକ ପ୍ରତିଲୋମ ଗତି । ମହାନ୍ ଭାରତୀୟ ପରମ୍ପରାରେ ମଣିଷ ଭିତରେ ଦେବତାର ସଂଭାବନା ଅଛି, ପୋକରେ ନୁହେଁ । ପୁନର୍ନବାରେ ଗୌରୀ ରାଧା ହୋଇଯାଇଛି । ସାଧାରଣ ଗାଉଁଲି ସ୍ତ୍ରୀ ଲୋକଟେ । ସବୁ ପ୍ରେମିକା ସ୍ତ୍ରୀ ଲୋକ ରାଧା । ସେ ମାଣିକ ଗଉଡୁଣୀ ହୋଇପାରେ, ଗୌରୀ ହୋଇପାରେ, ସାକ୍ଷୀଗୋପାଳର ଲକ୍ଷ୍ମୀ ହୋଇପାରେ ।

ପୁନର୍ନବା ଉପନ୍ୟାସରେ ରାଧାନୁଭବ ସହଜିଆ ବୈଷ୍ଣବତତ୍ତ୍ୱ ଓ ଗୌଡ଼ୀୟ ବୈଷ୍ଣବ ତତ୍ତ୍ୱର ଏକ ମିଶ୍ରାନୁଭବ । ଗୌରୀର ରାଧାତ୍ୱ ଯେତିକି ଦେହବାଦର ଦେହଳି ଭିତରେ ଅଛି ସେତିକି ଦେହୋତ୍ତରର ଅସୀମତାକୁ ସ୍ପର୍ଶ କରିଛି ।

Digitized by srujanika@gmail.com

ଗୌରୀ ଦେବାର୍ପିତା ପୁଣି ନିତ୍ୟାନନ୍ଦର ବିବାହିତା ପତ୍ନୀ । ଗୌରୀ ପାଇଁ ଠାକୁରଙ୍କ ଦେହର ସ୍ପର୍ଶ ଓ ସଙ୍ଗ ରମଣ ଅପେକ୍ଷା ଅଧିକ ମଧୁମୟ (ପୁନର୍ନବା ପୃ. ୧୫୨) । ଏପରିକି ଗୌରୀ ନିତ୍ୟାନନ୍ଦ ସହ ମିଳିତ ହେବା ସମୟରେ ରମଣ ଶୀର୍ଷରେ ରାଧାବିନୋଦଙ୍କୁ ହିଁ ସ୍ମରଣ କରେ । ନିତ୍ୟାନନ୍ଦ ରାଧାବିନୋଦ ପ୍ରତିମାରେ ରୂପାନ୍ତରିତ ହୋଇପଡ଼ନ୍ତି । ଗୌରୀ ପାଇଁ ନିତ୍ୟାନନ୍ଦ ହିଁ କୃଷ୍ଣ ପାଲଟି ଯାଆନ୍ତି ।

ପିତୁଳିରୁ ମଣିଷ, ମଣିଷରୁ ପିତୁଳି । ଏ ପ୍ରକ୍ରିୟା ଗୋଟେ ଶିଳ୍ପୀର ମନ ଭିତରେ ଅହରହ ସଂଘଟିତ ହେଉଥାଏ । ଏହି ଛୋଟିଆ କଥାଟି ହିଁ ସମଗ୍ର ପୁନର୍ନବା ଉପନ୍ୟାସର ବିସ୍ତାର । କୃଷ୍ଣ କିମ୍ବା ରାଧା କେବଳ କ'ଣ ଖଣ୍ଡେ ଲେଖା ପଥର କିମ୍ବା କାଠରେ ଖୋଦେଇ ହେଇଥିବା ପିତୁଳିଟି ମାନ ? ଗୌରୀ କଣ କେବଳ ରକ୍ତ ମାଂସର ଦେହଟିଏ ?

ଯଦି ଏମିତି ହେଇଥାନ୍ତା ତେବେ ଗୌରୀ ମାଞ୍ଜେଲି ମଠରେ କୃଷ୍ଣ ବିଗ୍ରହକୁ ମାଜଣା କଲାବେଳେ ପ୍ରତିମା ଦେହରେ ହାତ ବୁଲେଇ ଆଣିଲାବେଳେ ନିଜ ଶରୀରରେ ଶିହରଣ ଅନୁଭବ କରୁନଥାନ୍ତା । ଭାବାବେଗରେ ତଲ୍ଲୀନ ହେଉନଥାନ୍ତା । ପ୍ରତିମାକୁ କୁଣ୍ଢେଇ ଧରୁନଥାନ୍ତା । କିମ୍ବା ନୀଳାମ୍ବର ମିଶ୍ରେ ଟେରାବାଡ଼ ଭିତରେ ରାଧା ଓ ଲଳିତାଙ୍କ ପିତୁଳି ଗଢୁଥିବା ରାଧା ଗୋବିନ୍ଦଙ୍କୁ କହିନଥାନ୍ତେ x x x ସେମାନଙ୍କୁ ବିଦାରି ଦିଅନି । ଲହୁଣି ଭଳିଆ ଦେହ ସେମାନଙ୍କର, ଦୁଧ ଘିଅ ସମ୍ଭାଳା ଦେହ ସେମାନଙ୍କର । ଥିରି ଥିରି କରି ନିହାଣ ଚଲା । ଟିପ ଟାଣ ହେଲେ ରକ୍ତ ନିଗିଡ଼ି ଯିବ । (ପୁନର୍ନବା ପୃ. ୨୩୮) ଜଡ଼ ପିତୁଳିରେ ପ୍ରାଣର ଅନୁଭବ ସହଜ କଥା ନୁହେଁ । ଜାଣିଥିବା ଲୋକ ହିଁ କହିପାରିବ ସେ ଗୂଢ଼କଥାକୁ । ପିତୁଳା ସ୍ମୃତିର ସନ୍ତକ । x x x ମୃତ୍ୟୁ ଯାହା ଅପ୍ରକଟ କରେ, ପଞ୍ଚମହାଭୂତ ଯାହା ଶେଷରେ ଫେରେଇ ନେଇଯାଏ, ପିତୁଳା ସେହି ରୂପ ଗନ୍ଧସ୍ପର୍ଶକୁ ପୁଣି ଆଉଥରେ ତା ସତ୍ତାରେ ସଞ୍ଚରେଇବା ପାଇଁ ଚେଷ୍ଟାକରେ । (ପୁନର୍ନବା ପୃ. ୨୮୧)

ସମଗ୍ର ଉପନ୍ୟାସରେ ଦେହ ଓ ଦେହୋତ୍ତର ଅନୁଭବମାନଙ୍କ ଯିବା ଆସିବା । ଦେହ ହିଁ ପିତୁଳି । ପୁଣି ପିତୁଳିରେ ପ୍ରାଣର ଅନୁଭବ ଦେହୋତ୍ତରର ଅନୁଭବ । ଟେରାବାଡ଼ ଭିତରେ ରାଧା ଆଉ ଲଳିତା ଗଢ଼ା ହେଉଛନ୍ତି । ରାଧାଙ୍କ ଅଙ୍ଗସୌଷ୍ଠବ ଦୁଇଜଣଙ୍କ ମାନସରେ ରୂପ ପାଉଛି । ନୀଳାମ୍ବର ମିଶ୍ରଙ୍କ ଆଉ ରାଧାଗୋବିନ୍ଦର । ସେଠି ଆଉ ରାଧା କାହାଁନ୍ତି ? ନୀଳାମ୍ବର ମିଶ୍ରଙ୍କ ପାଇଁ ସେ ତାଙ୍କର ସର୍ଗତା ପତ୍ନୀ ଲବଙ୍ଗଲତା । ଲବଙ୍ଗଲତା ତ ରାଧା ହେବାକୁ ସପନେଇଛନ୍ତି । ରାଧାଗୋବିନ୍ଦ ପୁଣି ମୂର୍ତ୍ତି ଗଢ଼ିବା ବେଳେ ମନେ ପକେଇଛନ୍ତି ତାଙ୍କ ପତ୍ନୀ ମଞ୍ଜୁଙ୍କୁ ।

- ରାଧାଗୋବିନ୍ଦ ଖୋଦେଇ କରିଚାଲିଛି । ତାର ମନମୂନ ଏକାଗ୍ର କରି । ତାର ନିଷ୍ଠା ଓ ବିଶ୍ୱାସର ଭରସାରେ ନୀଳାମ୍ବର ମିଶ୍ରେ ସପ୍ନ ଦେଖି ଚାଲିଛନ୍ତି ତାଙ୍କର ପ୍ରାଣମୟୀ ଲବଙ୍ଗଲତାର । ଲବଙ୍ଗଲତାର ମୃଣାଳ ଭଳି ବାହୁ, କମ୍ବୁ ଭଳି ଗ୍ରୀବା, ଡମରୁ ଭଳି କଟି, ଦଧିଭାଣ୍ଡ ଭଳି ନିତମ୍ବ, କଳସ ଭଳି ସ୍ତନ ଯୁଗଳ, ଓଲଟ ରମ୍ଭା ଗଛ ଭଳି ଜଂଘର ଭାବନା ମିଶ୍ରେଙ୍କ ସ୍ମୃତିକୁ, ତା ବିପୁଳାୟିତ ଆଚ୍ଛାଦନ ଭିତରେ ବେଢ଼େଇ ଆଣୁଛି । ମିଶ୍ରେ ଅନୁମାନ କରୁଛନ୍ତି ଏ ସବୁଥିରୁ ରସଚୟନ କରି ରାଧାଗୋବିନ୍ଦ ପିତୁଳି ଗଢୁଛି । ସେ ପୁଣି ପିତୁଳିର ଗଢ଼ଣରେ ଭରିଦେବ ତା ଭାରିଯା ମଞ୍ଜୁର ଲାଳିତ୍ୟ ଓ ଆଭା । ଯେତେ ରାଧା ବୋଲି କହ, ଲଳିତା କୁହ, ସେ ପ୍ରଥମେ ସ୍ରଷ୍ଟାର ହିଁ ମାନସ ପ୍ରତିମା । ସେ ପ୍ରତିମାର ପ୍ରତିଟି ଛଳରେ ପ୍ରତିଟି ସୌଷ୍ଠବରେ ନିଜର, ଅତି ନିଜର ଯାହାକୁ ସେ ଆଘ୍ରାଣ କରିଥାଏ, ଯାହାର ସେ ରସାସ୍ୱାଦନ କରିଥାଏ, ତାକୁ ହିଁ ଘୃଷ୍ଟୁଷ କରେ । x x x x ରାଧା ପିତୁଳି ଗଢ଼ି ସାରିଲାପରେ କିଏ ବା କାହିଁକି କହିବ ଏ ପ୍ରତିମା କାରିଗରର ଭାରିଯା ମଞ୍ଜୁଲତାର ବୋଲି । (ପୁନର୍ନବା ପୃ. ୨୩୪)

Digitized by srujanika@gmail.com

ପୁନର୍ନବା ଉପନ୍ୟାସରେ ରାଧା ଦୁଇ ଭାବରେ ଓ ଦୁଇ ପର୍ଯ୍ୟାୟରେ ଅଛନ୍ତି । ପ୍ରଥମଟିରେ ସେ ଅଛନ୍ତି ଗୌରୀର ଚେତନାରେ । ଯାହାକୁ ଅନୁଭବ କରିଛନ୍ତି ନିତ୍ୟାନନ୍ଦ, ମଠର ମହନ୍ତ ଓ ମଠର ଦାସୀମାନେ । ଦ୍ୱିତୀୟ ଭାବରେ ସେ ଅଛନ୍ତି ନୀଳାମ୍ବର ମିଶ୍ରେ ଓ ରାଧାଗୋବିନ୍ଦଙ୍କ ପାଖରେ । ଯେଉଁଠି ରାଧାଙ୍କର ପିତୁଳି ଗଢ଼ା ଚାଲିଛି । ପ୍ରଥମଟିରେ ରାଧା ଗୋଟେ ରକ୍ତମାଂସର ନାରୀକୁ ଆବୁରିଛନ୍ତି । ଦ୍ୱିତୀୟଟିରେ ରାଧା ଆଶ୍ରା କରିଛନ୍ତି ଗୋଟେ କାଠର ପିତୁଳିକୁ । ଯେଉଁ କାଠର ପିତୁଳି ପଛରେ ପୁଣି ଅଛନ୍ତି ନୀଳାମ୍ବରଙ୍କ ମୃତପତ୍ନୀ ଲବଙ୍ଗ ଓ କାରିଗର ରାଧାଗୋବିନ୍ଦର ପତ୍ନୀ ମଞ୍ଜୁଲତା । ଏ ହେଲା ପ୍ରଥମ ପର୍ଯ୍ୟାୟ । ପ୍ରଥମ ପର୍ଯ୍ୟାୟ ଗୋଟେ ପ୍ରକ୍ରିୟା । ରାଧା ହେବାର ପ୍ରକ୍ରିୟା । ଦ୍ୱିତୀୟ ପର୍ଯ୍ୟାୟ ଉତ୍ତରଣର ପର୍ଯ୍ୟାୟ । ଏଠି ପ୍ରକ୍ରିୟାର ଅନ୍ତିମକ୍ଷଣ । ଯେଉଁ କ୍ଷଣରେ ଗୌରୀ କୃଷ୍ଣପ୍ରାଣ ହୋଇ କୃଷ୍ଣପ୍ରତିମା ସାଙ୍ଗରେ ପ୍ରତିମା ହେଇଯାଉଛି ଓ ଯେଉଁ କ୍ଷଣରେ ନୀଳାମ୍ବର ମିଶ୍ରେଙ୍କ ଟେରାବାଡ଼ ଭିତରେ ବନକ କାମ ସାରି ରାଧା ଓ ଲଳିତାଙ୍କ ପ୍ରତିମା ଆଗରେ ସାଷ୍ଟାଙ୍ଗ ପ୍ରଣାମ କରି ରାଧାଗୋବିନ୍ଦ ଓ ବ୍ରହ୍ମାନନ୍ଦ କହୁଛନ୍ତି -

- ଏବେ ପର୍ଯ୍ୟନ୍ତ ଆମେ ଦୁହେଁ ତମର ଜନ୍ମଦାତା ଥିଲୁ, ଜନ୍ମଦାତ୍ରୀ ବି ଥିଲୁ । ଏବେ ତମର ସନ୍ତାନ ହେଲୁ । ଆମକୁ ଆର୍ଶୀବାଦ କର । ତମେମାନେ ଆମକୁ ଛାଡ଼ି ଠାକୁର ଘରେ ବିଜେ ହେବ । ତମ ଦେହରେ ପ୍ରାଣ ସଞ୍ଚରି ଯିବ । ତମେ ହେଇଯିବ ପ୍ରତିମା, ଠାକୁର ପ୍ରତିମା, ଗନ୍ଧ ଓ ଧୂପର, ପୂଜା ଓ ନୈବେଦ୍ୟର ପ୍ରତିମା, **ଓଡ଼ିଆ ସାହିତ୍ୟରେ ରାଧା ଥିଲେ । ରାଧା କେବଳ ରାଧା ଭାବରେ ହିଁ ଥିଲେ । ରାଧା ହୋଇଯିବାର ପୂର୍ବବର୍ତ୍ତୀ ମୁହୂର୍ତ୍ତମାନଙ୍କ କଥା କେଉଁଠି ଲେଖା ନଥିଲା ।** ସେ ମୁହୂର୍ତ୍ତ ସବୁ ପ୍ରସ୍ତୁତିର ମୁହୂର୍ତ୍ତ । ସେ ମୁହୂର୍ତ୍ତମାନ କବିର କାରିଗରର ନିଜସ୍ୱ । ରାଧାଙ୍କୁ ଗଢ଼ିଥିବା ସବୁ କାରିଗର ସବୁ କବି ସେ ମୁହୂର୍ତ୍ତ ସବୁକୁ ଭୋଗିଛନ୍ତି । ସେଇ ମୁହୂର୍ତ୍ତମାନଙ୍କ କଥା ଔପନ୍ୟାସିକ ଚିତ୍ରଶିଳ୍ପୀ ଡକ୍ଟର ପାଠୀ ଜାଣନ୍ତି, ସେ ମୁହୂର୍ତ୍ତ କଥା ନୀଳାମ୍ବର ମିଶ୍ରେ ଜାଣନ୍ତି, ଜାଣନ୍ତି ଶିଳ୍ପୀ ରାଧାଗୋବିନ୍ଦ । ଆହୁରି ଜାଣନ୍ତି ରାଧାଙ୍କୁ ଶବ୍ଦରେ ଓ ରୂପରେ ପ୍ରକାଶ କରିଥିବା ଆମ ପରମ୍ପରାର କାହିଁ କେତେ ଶିଳ୍ପୀ ଓ କବିଗଣ ।

ଡକ୍ଟର ପାଠୀ ରାଧାଙ୍କୁ ନେଇ ଛବି ଆଙ୍କିଥିବାର ମୁହୂର୍ତ୍ତର ଅନୁଭବକୁ ପୁନର୍ନବାରେ ରୂପାୟିତ କରିଛନ୍ତି । **ପୁନର୍ନବାରେ ବର୍ଣ୍ଣିତ ରାଧା ଓ ତାଙ୍କ କାନ୍‌ଭାସ୍‌ରେ ଅଙ୍କିତ ରାଧାଙ୍କ ଭିତରେ ଗୋଟିଏ ସଂପର୍କ ଅଛି । ସେଇଟି ହେଉଛି ଜଣେ ସାଧାରଣ ସ୍ତ୍ରୀ ଲୋକ ଭିତରେ ରାଧା ହେବାର ସଂଭାବନା ସବୁବେଳେ ରହିଛି ।** ତଫାତ୍‌ରେ ଅଛି ତାଙ୍କ ଅଙ୍କିତ ରାଧା ଛବିରେ କଦମ୍ବଗଛ, ଯମୁନା କୁଞ୍ଜ ଓ ସଖୀମାନେ ତଥାପି ଅଛନ୍ତି । ଯଦ୍ୱାରା ତାଙ୍କ ଚିତ୍ରଭାଷାର ରାଧା ସମସ୍ତ ଓଡ଼ିଶୀ ଅଙ୍ଗ ବୈଭବ ସତ୍ତ୍ୱେ ସାମାନ୍ୟ ପର ପର ଲାଗୁଛନ୍ତି । ଲାଗୁଛି ନା ଏହା ତ ପାହାନ୍ତିର କଥା ନୁହେଁ । **କିନ୍ତୁ ପୁନର୍ନବାରେ ରାଧାଙ୍କୁ ଅତି ପାଖରୁ ଅନୁଭବ କରାଯାଇପାରୁଛି । ବେଶୀ ଅନୁଭବ କରାଯାଇପାରୁଛି ଲବଙ୍ଗଲତା ରାଧା ହୋଇଯିବାର ସମୟମାନଙ୍କରେ ।**

ଦୁଇଟି ନାରୀ । ଲବଙ୍ଗଲତା ଓ ଗୌରୀ । ମୃତ ଲବଙ୍ଗଲତା ସ୍ୱାମୀ ନୀଳାମ୍ବରଙ୍କୁ ସପ୍ନେଇ ପାରୁଛନ୍ତି ରାଧା ହୋଇ । ଗୌରୀ ରାଧା ହୋଇ ଫେରିଯାଉଛି ନିତ୍ୟାନନ୍ଦଙ୍କ ପାଖରୁ । ଲବଙ୍ଗଲତା ବାସ୍ତବ । ଗୌରୀ ବାସ୍ତବତା ସହ କିଛି ମାୟା । ସେ ମାୟାକୁ ପ୍ରତ୍ୟକ୍ଷ କରିଛନ୍ତି ମାଝେଲି ମଠରେ ଅନ୍ତେଃବାସୀ ଦାସୀମାନେ, ଗୌରୀ ଓ ନିତ୍ୟାନନ୍ଦଙ୍କ ନିଭୃତ ସେବାକୁ ଦେଖି । ହଠାତ୍ ସେମାନେ ଯେମିତି ଫେରିପାଇଛନ୍ତି ଯୌବନ । ମଠର ଉପବନ ପାଲଟିଯାଇଛି ବୃନ୍ଦାବନ । ରାଧାକୃଷ୍ଣଙ୍କ ପ୍ରେମଲୀଳା ପାଇଁ ଯେମିତି କୁଞ୍ଜବନ । ନିତ୍ୟାନନ୍ଦ ପାଲଟି ଯାଇଛନ୍ତି ନଟନାଗର । ଗୌରୀ ବୃନ୍ଦାବନେଶ୍ୱରୀ ରାଧା । ଦାସୀମାନେ ଚରମ ରତି ସୁଖ ଲାଭ କରୁଛନ୍ତି । ପୁଣି ଟିକକରେ ମାୟା କଟିଯାଉଛି । ସବୁକିଛି ସପ୍ନ ସପ୍ନ ପରି ଲାଗୁଛି । *ଏସବୁ ହେଲା ପରକୀୟା ସହଜିଆ ବୈଷ୍ଣବ ତତ୍ତ୍ୱର ଗୂଢ଼କଥା ।* ଦେହରୁ ଦେହୋତ୍ତର । ନଅ ଜଣ ଦାସୀ । ଦାସୀ ନୁହେଁ ଗୋପୀ ବ୍ୟୂହ । ନଅ ଜଣ ଗୋପୀ ପୁଣି ଦିନେ

Digitized by srujanika@gmail.com

ରଚନା କରିଛନ୍ତି କାମକୁଞ୍ଜର । କୁଞ୍ଜର ଉପରେ ମଠର ମହନ୍ତ ମହାରାଜ । ସେ ପୁଣି ଉପବନରେ ଖୋଜିବେ ରାଧା ଓ କୃଷ୍ଣଙ୍କୁ । ପ୍ରତ୍ୟକ୍ଷ କରିବେ କେଳିକୁ । କାମକୁଞ୍ଜର ଆମର ଓଡ଼ିଶୀ ପାରମ୍ପରିକ ଚିତ୍ରକଳାରେ ବହୁଳ ବ୍ୟବହୃତ । ଚିତ୍ରଭାଷାରୁ କାବ୍ୟଭାଷା ।

ସତରେ ମାଞ୍ଚେଲି ମଠରେ ଏମିତି କିଛି ଘଟୁଥିବାର ପ୍ରଶ୍ନ ଆମେ ପଚାରିପାରିବାକି ? ଔପନ୍ୟାସିକ ସ୍ପଷ୍ଟ କରି ଦେଇଛନ୍ତି । ସେ ରାତିରେ ଦୈବାତ୍ ଦାସୀମାନେ ନିଜେ ନିଭୃତ ସେବା ପ୍ରତ୍ୟକ୍ଷ କରି ଅପୂର୍ବ ଆନନ୍ଦ ଲଭିଲେ ବୋଲି ଘଟଣାଟି ଅନ୍ୟମୋଡ଼ ନେଲା । ନହେଲେ ରାଧାକୃଷ୍ଣଙ୍କ ରାସକ୍ରୀଡ଼ା ତ ଚିରନ୍ତନ ଘଟଣା । କିଏ ହୁଏତ ପ୍ରତ୍ୟକ୍ଷ କରିବାର ସୌଭାଗ୍ୟ ଲଭୁଛି, ହୁଏତ ଆଉ କିଏ ଆଦୌ ପାଉନି । ଦାସୀମାନେ ଚକ୍ଷୁଥାଇ ମଧ ଆଜି ପର୍ଯ୍ୟନ୍ତ ଅନ୍ଧ ଥିଲେ । (ପୁନର୍ନବା ପୃ. ୧୭୪)

ଏସବୁ କଥା ତତ୍ତ୍ୱାନୁଭବର । ଯା ଭିତରେ ବାସ୍ତବତା କେଉଁଠି ଅଛି ଖୋଜି ପାଇବା ମୁସ୍କିଲ୍। ସପ୍ନ ସପ୍ନ ପରିକା ଅନୁଭବ । ଛାଇ ଛାଇକା ଆଲୁଅ । ନିଭୃତିସେବାର ମାୟାରେ ବାନ୍ଧି ହେଇଗଲେ ସମସ୍ତେ । ଦାସୀ ଓ ମହନ୍ତ । କିନ୍ତୁ ନୀଳାମ୍ବର ମିଶ୍ରଙ୍କ ଘରେ ରାଧାମାୟା ଟିକେ ଭିନ୍ନ ବାଗର । ସେଠି ବୈଷ୍ଣବ ତତ୍ତ୍ୱର କଥା ନାହିଁ । ଅଛି ସଂସାରିକ ପାରିବାରିକ ତତ୍ତ୍ୱର କଥା । ସେଇଥିପାଇଁ ଲବଙ୍ଗଲତା ଓରଫ ରାଧା ବେଶୀ ସହଜ ସାବଲୀଳ ମନେ ହେଉଛନ୍ତି ଗୌରୀ ଓରଫ ରାଧାଙ୍କ ଠାରୁ ।

ଡକ୍ଟର ପାଠୀଙ୍କ ରାଧାଙ୍କୁ ଏଠି ସଂପୂର୍ଣ୍ଣ ସହଜ ପରକୀୟା କିମ୍ବା ସଂପୂର୍ଣ୍ଣ ସକୀୟା କୁହାଯାଇ ପାରିବକି ? କାରଣ ହୁଏତ ସେ ଇଚ୍ଛାକୃତ ଭାବରେ କୌଣସି ତତ୍ତ୍ୱ କିମ୍ବା ସଂପ୍ରଦାୟକୁ ଆଶ୍ରାକରି ଚରିତ୍ରାୟତ କରିନାହାଁନ୍ତି । ସାଭାବିକ ଭାବରେ ରାଧାଙ୍କର ବିକାଶ ଘଟିଛି ।

ମାଞ୍ଚେଲି ମଠରେ ବୃନ୍ଦାବନରୁ ଆସିଥିବା ବୈଷ୍ଣବ ବାବାଜି ବାଙ୍କବିହାରୀ ରାଧାକୃଷ୍ଣଙ୍କ ପ୍ରେମତତ୍ତ୍ୱ ଉପରେ ପ୍ରବଚନ ଦେଲାବେଳେ ନିତ୍ୟାନନ୍ଦ ନିଜକୁ ଧନ୍ୟ ମନେ କରୁଛନ୍ତି ଯେ ସେ ଗୌରୀ ଭିତରେ ରାଧାଙ୍କୁ ହିଁ ସଂଦର୍ଶନ କରିଆସିଛନ୍ତି । ସେ ଗୌରୀର ଦେହରେ ଯମୁନା, ମନ୍ଦିର, ବୃନ୍ଦାବନ ସବୁ ରଚି ଦେଇଛନ୍ତି । ଗୌରୀ ଦେହରେ ଗୋବର୍ଦ୍ଧନ ଅଛି । କାମଧେନୁ ଅଛି । ସକଳ ସୁଖ ଶାନ୍ତିର ଭଣ୍ଡାର ଗୌରୀ ରାଧା ସରୂପିଣୀ । ଆନନ୍ଦମୟୀ । (ପୁନର୍ନବା ପୃ. ୨୭୫) । ପ୍ରବଚନ ଶୁଣି ଗୌରୀର ବି ଭାବାନ୍ତର ହେଉଛି ମୁହୂର୍ତ୍ତକେ ପାଇଁ ସେ ନିରିଖେଇ ଦେଖୁଛି ତା ନିଜର ଅଭ୍ୟନ୍ତରକୁ । ଗୌରୀର ଅନ୍ତର ଆଲୋକିତ ହେଇଯାଉଛି, ଆଉ କଲୁଷ ନାହିଁ । ପ୍ରାଣରେ ପ୍ରେମର ଜୁଆର କୂଳ ଲଂଘୁଛି । ପ୍ଲାବିତ କରିଦେଉଛି ସମଗ୍ର ସତ୍ତାକୁ । ଗୌରୀ ନିଜକୁ ପ୍ରଶ୍ନ କରୁଛି ମୁଁ କିଏ ? ଗୌରୀ ନା ରାଧା । (ପୁନର୍ନବା ପୃ. ୨୭୮)

ଗୌରୀ କେତେବେଳେ ରାଧା ତ କେତେବେଳେ ଗୌରୀ । ଦୁଇଟି ଅବସ୍ଥା । ଚେତନ ଆଉ ଅବଚେତନରେ । ଗୌରୀ ଭିତରେ ରାଧାଙ୍କୁ ଦର୍ଶନ କରିବା ଦ୍ୱାରା ରାଧା ସାଧାରଣ ମନେ ହେଉଛନ୍ତି କିନ୍ତୁ ଗୌରୀ ଅସାଧାରଣ ହୋଇଯାଉଛି । ଏତେ ଅସାଧାରଣ ଯେ ମାଞ୍ଚେଲି ମଠରେ ଦାସୀମାନେ ଗୌରୀକୁ ସାକ୍ଷାତ ରାଧା ଭାବରେ ଅର୍ଚ୍ଚନା କରିଛନ୍ତି । ମହନ୍ତ ନିଜକୁ କୃଷ୍ଣଭାବି ଗୌରୀ ପାଇଁ ଆକର୍ଷଣ ଅନୁଭବ କରୁଛନ୍ତି । ପୁଣି ବାଙ୍କବିହାରୀ ମହାରାଜାଙ୍କ ପ୍ରବଚନ ବେଳେ ଉପସ୍ଥିତ ଭକ୍ତମଣ୍ଡଳ ଅନୁଭବ କରୁଛନ୍ତି ବାଙ୍କବିହାରୀ କୃଷ୍ଣଚନ୍ଦ୍ର ଯିଏ ସୟଂ ବୃନ୍ଦାବନରୁ ଆସି ଗୌରୀ ରୂପୀ ରାଧାଙ୍କ ପ୍ରେମରେ ଆକର୍ଷିତ ହୋଇ ଏଠି ବିରାଜିଛନ୍ତି । ଏତେ ସବୁ ଅସାଧାରଣତ୍ୱ ସତ୍ତ୍ୱେ ନିତ୍ୟାନନ୍ଦ ମଞ୍ଚେଲି ମଠର ମହନ୍ତ ହେବାଦିନ ରାତିରେ ଉପବନରେ ମହନ୍ତ ମହାରାଜାଙ୍କ ସମାଧି ମନ୍ଦିର ଭିତରେ କୃଷ୍ଣଙ୍କ ସାମ୍ନାରେ ଗୌରୀ ହଠାତ୍ ସାଧାରଣ ଗାଉଁଲି ସ୍ତ୍ରୀଲୋକ ହୋଇଯାଉଛି ଗୋଟେ ମୁହୂର୍ତ୍ତପାଇଁ ଓ ଭାବୁଛି ।

Digitized by srujanika@gmail.com

- ଗୃହୀମଠ କଥା ନିଆରା, ନିହଙ୍ଗୀ ମଠରେ ମହନ୍ତଙ୍କ ଧର୍ମପନ୍ନୀ ହେଇ ଏକା ସାଙ୍ଗରେ ମଠରେ ଅଥଚ ଅଲଗା ଅଲଗା ପୃଥିବୀ ଭିତରେ ରହିବାର ଯନ୍ତ୍ରଣା ଯେ କେତେ ତୀବ୍ର ହୋଇପାରେ ଗୌରୀ ପ୍ରଥମରୁ କଳନା କରିନଥିଲା । ସିମିତି ସେ କଳନା କରିନଥିଲା ଘର ଠାରୁ ମଠ କେତେ ଦୂର । x x x ଏଠିର ମହନ୍ତର ଗାଦି ଅଲୋଡ଼ା ପାହାଡ଼ ଭଳି । ପରିତ୍ୟକ୍ତ ମନ୍ଦିରର ପାଚେରି । ଲଙ୍ଘିବା ଅସମ୍ଭବ । ଗୌରୀ ନିଜେ ରଚିଥିବା ବୁଢ଼ିଆଣୀର ଜାଲରେ ନିଜେ ଛନ୍ଦି ହୋଇ ପଡ଼ିଲା । x x x x କିଏ କହିଥିଲା ଶୂନ୍ୟଗର୍ଭକୁ ଫେଡ଼ିଦେଇ ସେ ଅନ୍ଧାର ଭିତରେ ନିତ୍ୟାନନ୍ଦକୁ ପିତୁଳାଟିଏ କରି ବସେଇଦବା ପାଇଁ (ପୁନର୍ନବା ପୃ. ୨୯୭)

କୃଷ୍ଣଚନ୍ଦ୍ର ଷୋଳସହସ୍ର ଗୋପନାରୀ ଓ ରାଧାରାଣୀଙ୍କୁ ଛାଡ଼ି ଗୋପ ସବୁଦିନ ପାଇଁ ଛାଡ଼ି ଚାଲିଗଲାପରେ ରାଧାଙ୍କର କଣ ଭାବାନ୍ତର ହୋଇନଥିବ ? ସେ କ'ଣ ତାଙ୍କ ଚିନ୍ତାରାଜ୍ୟକୁ ପ୍ରଶ୍ରୟ ଦେଇନଥିବେ ମୁହୂର୍ତ୍ତକ ପାଇଁ ହେଉପଛେ ଯେ ଘଟଣା ଅନ୍ୟବାଟରେ ଘଟିଥିଲେ କେତେ ଭଲ ହେଇଥାନ୍ତା ? ସେ କଣ ତାଙ୍କ ମନର ଅନ୍ତରତମ ପ୍ରଦେଶରୁ ପ୍ରେରଣା ଟିକିଏ ପାଇନଥିବେ ଯେ କୃଷ୍ଣଙ୍କୁ ନେଇ ଘର ସଂସାର କରିବାକୁ ? ରାଧାଙ୍କୁ ଦେବୀ କରିଦେଲେ ଏସବୁ ଭାବନା ଅନ୍ତଃସାରଶୂନ୍ୟ ବାଚାଳତା । କିନ୍ତୁ ରାଧାଙ୍କୁ ଯଦି ଜଣେ ସାଧାରଣ ପ୍ରେମିକାନାରୀ କରିଦିଆଯାଏ ? ମାଞ୍ଚେଲି ମଠର ନୂଆ ମହନ୍ତ ହେଇ ନିତ୍ୟାନନ୍ଦ ଗାଦିରେ ବସିଲାପରେ ଗୌରୀ ଓ ତାଙ୍କ ଭିତରେ ଯେଉଁ ଦୂରତା ଟିକକ ତିଆରି ହେଇଗଲା ତାକୁ ଦେବୀ ଭାବରେ ଗୌରୀ ସମ୍ଭାଳିବେ । କିନ୍ତୁ ସାଧାରଣ ନାରୀ ଭାବରେ ?

ଏବେ କୃଷ୍ଣଚନ୍ଦ୍ର ଦ୍ୱାରକାର ରାଜା । ଅଷ୍ଟପାଟବଂଶୀ, ମନ୍ତ୍ରୀ କଟୁଆଳ ସୈନ୍ୟ ସାମନ୍ତ କାହିଁ କେତେ ଦୂର । ସେମିତି ନିତ୍ୟାନନ୍ଦ ଦୂରେଇଗଲେ ଗୌରୀ ଠାରୁ । ପିତୁଳି ହେଇଗଲେ । ରକ୍ତ ମାଂସର ପିତୁଳି । ସେଥିରେ ଗୌରୀର ଏବେ କି ଯାଏ । ସେ'ତ ଆଉ ତା' ହାତ ପାହାନ୍ତାରେ ନାହାଁନ୍ତି । ନିତ୍ୟାନନ୍ଦ ଥିଲେ ମାଧମ । କୃଷ୍ଣଚନ୍ଦ୍ରଙ୍କୁ ଦୈହିକ ଭାବରେ ଅନୁଭବ କରିବାର ମାଧମ । ସେ ମାଧମ ହାତଛଡ଼ା ହେଲେ କୃଷ୍ଣ ତ ହାତଛଡ଼ା ହୋଇନାହାଁନ୍ତି । ହୋଇପାରିବେକି ?

ଏବେ ରାଧା ହେବାର ପ୍ରକ୍ରିୟା ଶେଷ ହୋଇଯାଇଛି । ଟେରାବାଡ଼ ଭିତରେ ରାଧାଗୋବିନ୍ଦ ଗଢ଼ିସାରିଛନ୍ତି ଲବଙ୍ଗଲତାଙ୍କୁ । ସେଠି ଆଉ ଲବଙ୍ଗଲତା ନାହାନ୍ତି କି ମଞ୍ଜୁଳତା ନାହାଁନ୍ତି । ଗୌରୀ ବି ନାହିଁ । ଦାସିଏ ସମାଧି ମଣ୍ଡପ ଖୋଲିଲେ । ବଡ଼ ସଂଭ୍ରମରେ କବାଟ ମେଲିଲେ । ଏ କ'ଣ ଆଚମ୍ବିତ ରୂପ ସେମାନେ ଦେଖୁଛନ୍ତି । କୃଷ୍ଣଙ୍କ ବିଗ୍ରହ ପାଖରେ ପିତୁଳି ହେଇ ଉଭା ହୋଇଛନ୍ତି ଗୌରୀ ମା । ଗୌରୀ ମା ସତେ ଏତେ କୃଷ୍ଣପ୍ରାଣା, ରାଧାରାଣୀ ଭଳି ପ୍ରକଟିଛନ୍ତି । ଚକ୍ଷୁଧ୍ୟାନସ୍ଥ । ଆଉଜି ରହିଛନ୍ତି ପ୍ରତିମାର ଭୁଜ ଉପରେ, ନିଶ୍ଚଳ, ନିର୍ବିକଳ୍ପ ସମାଧିରେ ଯିମିତି ଜୀବାତ୍ମା ଶେଷରେ ସ୍ଥିର ହେଇଯାଏ । (ପୁନର୍ନବା ପୃ-୨୯୯)

ରାଧାଙ୍କୁ ନେଇ ଡକ୍ଟର ପାଠୀଙ୍କର ପରୀକ୍ଷା ବଡ଼ ବିଚିତ୍ର ଧରଣର । ସେ ଅନାୟାସରେ କାବ୍ୟ ଭାଷାରୁ ଚିତ୍ରଭାଷାକୁ ଗମି ପାରୁଥିବା ସତ୍ତ୍ୱେ ପ୍ରତ୍ୟେକ ଭାଷାର ପରିସୀମା ଭିତରେ ସଚେତ ରହି ପ୍ରତ୍ୟେକ ଭାଷାର ଉତ୍କର୍ଷ ଭିତରେ ସାର୍ଥକତା ଆଣିପାରିଛନ୍ତି । ପାରମ୍ପରିକ ସାହିତ୍ୟର ଓ ଚିତ୍ରକଳାର ରାଧା ତାଙ୍କର ଅବଲମ୍ବନ ମାତ୍ର, ବିକଶିତ ରାଧା ନିଜର ସୃଷ୍ଟି । **ରମାକାନ୍ତ ରଥ ପାରମ୍ପରିକ ରାଧାରୁ ରାଧାତ୍ୱ କାଢ଼ିଦେଇ ରାଧାଭାବ କବିତାରେ ପ୍ରକାଶ କରିବାରେ ସଫଳ ହେଲାପରି ଡକ୍ଟର ପାଠୀ ଏକ ଓଲଟ ପ୍ରକ୍ରିୟାରେ ସାଧାରଣ ନାରୀଦେହରେ, ମନରେ ରାଧାତ୍ୱ ଆରୋପ କରି ସମସ୍ତ ନାରୀଙ୍କୁ ରାଧାରେ, ରାଧାଭାବରେ ଆପ୍ଲୁତ କରିବା ପାଇଁ ଚେଷ୍ଟାକରି ଯଶସ୍ୱୀ ହେଇଛନ୍ତି ।**

Digitized by srujanika@gmail.com

**ବିଜୁ ପ୍ରସାଦ ପଟ୍ଟନାୟକ**

## ରାଧାଙ୍କଠୁ ମୁମ୍ବାଇ

୧. ରାଧା

ଝାପ୍‌ସା ମନେ ପଡୁଛି, ଶାଗୁଆ ଓ କଳା ରଙ୍ଗର ସମାହାରରେ ଚିତ୍ରିତ ଛବିଟି ଆଡ଼କୁ ପାଠୀ ସାର୍ ହାତ ଦେଖାଇ ମୋ ବାପାଙ୍କୁ କହିଲେ, ଏଇଟି ମୋର ସଦ୍ୟ ପ୍ରସ୍ତୁତ ଛବି 'ରାଧା'। ମୁଁ ଛବିଟି ଆଡ଼କୁ ଚାହିଁ ଆଶ୍ଚର୍ଯ୍ୟ ହେଲି। ଏ ଥିଲେ କଳା ଚିଚିକିଚିଆ ମୋଟାଳିଆ ରାଧା। ସେତେବେଳେ ମୁଁ ସଦ୍ୟ ମାଟ୍ରିକ୍ ପାଶ୍ କରିଥାଏ। ଆଧୁନିକ କଳା ଜଗତର କ, ଖ, ଗ ମୋତେ କିଛି ଜଣା ନଥାଏ। ତଥାପି ଘଟଣାର ପ୍ରାୟ ଚଉଦ ବର୍ଷ ପରେ ଆଜି ମୋତେ ଆଶ୍ଚର୍ଯ୍ୟ ଲାଗୁଛି ସେଦିନର ବଳିଷ୍ଠ ପ୍ରତିଭାସଂପନ୍ନ ଡକ୍ଟର ପାଠୀ ଓ ତାଙ୍କ କଳା ଚିଚିକିଚିଆ 'ରାଧା' ମୋତେ ଅସମ୍ଭବ ଭାବେ ପ୍ରଭାବିତ କରିଥିଲେ।

**ସେ ଦିନ ପ୍ରଥମଥର ପାଇଁ ଜଣେ ପ୍ରତିଷ୍ଠିତ ଆଧୁନିକ ଚିତ୍ରଶିଳ୍ପୀଙ୍କୁ ଭେଟିଥିଲି ଓ ମୁଦ୍ରିତ ବହିର ପୃଷ୍ଠାରୁ ଆଧୁନିକ ଚିତ୍ରକୁ କାନ୍ଥରେ ସଜୀବ ଅବସ୍ଥାରେ ପାଇଥିଲି।**

୨. ପୃଥିବୀର ସର୍ବଶ୍ରେଷ୍ଠ କୃତି :

ବି.କେ. ଆର୍ଟ୍ କଲେଜରେ ପଢ଼ିବା ବେଳର କଥା। ସେତେବେଳେ ବି.କେ. କଲେଜ କଚ୍ଛନା ଏରିଆରେ ଚାଲୁଥିଲା। କଲେଜର ସିଡ଼ି ଚଢ଼ି ଉପର ମହଲାକୁ ଗଲାବେଳେ କାନ୍ଥରେ ଝୁଲୁଥିବା ବଡ଼ ଏକ କାନ୍‌ଭାସ୍‌ରେ ଅଙ୍କା ତୈଳଚିତ୍ର ଆଡ଼କୁ ପ୍ରାୟ ପ୍ରତ୍ୟେକ ଦିନ ଯେମିତି ହେଲେ ଥରେ ଅଧେ ନଜର ପଡୁଥିଲା। ଦୁଇ ତିନୋଟି ମୁଣ୍ଡ ନ ଥିବା ମଣିଷ ଗୋଟେ ସତରଞ୍ଜି ପଶା ପାଲି ଉପରେ ଠିଆ ହେଇଥିବାର ଦୃଶ୍ୟ ଓ backgroundରେ କଳା ରଙ୍ଗର ପ୍ରଲେପ ଉପରେ ଭାସମାନ ଘନନୀଳ ରଙ୍ଗର ମେଘ ଚିତ୍ରଟିକୁ ଅଧିକ କଚ୍ଛନାପ୍ରବଣ କରି ପକାଇଥିଲା। ମୁଣ୍ଡ ନଥିବା ଲଙ୍ଗଳା ମଣିଷମାନଙ୍କ ଦେହରେ ବଳିଷ୍ଠ ତୂଳୀ ଚାଳନା ଦ୍ୱାରା ଗହମିଆ, ବାଇଗଣିଆ ରଙ୍ଗର ପ୍ରୟୋଗ ଚିତ୍ରଟିକୁ ଜୀବନ୍ତ କରିପକାଇ ଥିଲା। ସବୁକିଛି ସୁନ୍ଦର ରୂପେ ସଂଯୋଜିତ ହେଇଥିଲା।

କେବଳ ମୁଁ କାହିଁକି ମୋର ଅନ୍ୟ ଶିଳ୍ପୀ ବନ୍ଧୁ ତପନ, ପ୍ରତୁଲ, ସତ୍ୟ ଆଦି ଆମେ ସମସ୍ତେ ମିଶି ଚିତ୍ରଟିକୁ ଅନେକ ସମୟରେ ଦେଖୁଥିଲୁ। ବଳିଷ୍ଠ ବର୍ଣ୍ଣ ପ୍ରୟୋଗ ଓ ରୂପ ସଂଯୋଜନାର ଚାତୁରୀକୁ ନେଇ ଘଣ୍ଟା ଘଣ୍ଟା ଧରି ଆଲୋଚନା କରୁଥିଲୁ। ସେଦିନମାନଙ୍କରେ ସେ ଚିତ୍ର ଥିଲା ଆମ ପାଇଁ ପୃଥିବୀର ସର୍ବଶ୍ରେଷ୍ଠ କୃତି।

**ତଥାପି ମଧ୍ୟ ମୁଣ୍ଡ ନଥିବା ଲଙ୍ଗଳା ମଣିଷର ଚିତ୍ର ଓ ଚିତ୍ରର ସ୍ରଷ୍ଟା ପାଠୀ ସାର୍‌ଙ୍କ ଭିତରେ ଥିବା ମାତ୍ର ଚାରି ପାହୁଣ୍ଡ ବ୍ୟବଧାନକୁ ଅତିକ୍ରମ କରି ଚିତ୍ର ସଂପର୍କୀୟ ଅନ୍ତରଙ୍ଗ ଆଲୋଚନା କରିବାକୁ ସାହସ କରିପାରି ନଥିଲୁ।**

୩. ନୂତନ ଯୁଗ :

ଦିନକର ଘଟଣା। କୌଣସି ଏକ କାମ ନେଇ ଖରାବେଳଟାରେ ସାଇକେଲ୍ ଧରି ଘରୁ ବାହାରିଲି। ଝାଳନାଳ ହେଇ ପାଠୀ ସାର୍‌ଙ୍କ ଭୀମଟାଙ୍ଗି ଘର ଭିତରକୁ ପଶିଗଲା ବେଳକୁ ପ୍ରଥମେ ଚାରିଆଡ଼ ଅନ୍ଧାର ଜଣାଗଲା। ନାଲି, ନୀଳ ବିନ୍ଦୁମାନ ମୋ ଆଖି ଆଗରେ ନାଚି ଉଠିଲେ। କିଛି କ୍ଷଣପରେ ଦେଖିଲି ପାଠୀ ସାର୍ ଶାନ୍ତଚିତ୍ତରେ ବସା ଇଜେଲ୍ ଉପରେ ଲାଗିଥିବା କାନ୍‌ଭାସ୍ ସାମ୍ନାରେ ବସି ତୈଳଚିତ୍ର ଆଙ୍କୁଛନ୍ତି। ଇଜେଲ୍ ପାଖକୁ ଆଉଜିଛି ଛବି କାନ୍ଥକୁ ଆଉଜା ହେଇ ରହିଛି। ତାଙ୍କର ଅନ୍ୟ ଛବିମାନଙ୍କ ତୁଳନାରେ ଏ ଛବିଗୁଡ଼ିକ ଥିଲା ସଂପୂର୍ଣ୍ଣ ଅଲଗା। ଦକ୍ଷିଣ ଓଡ଼ିଶା ପଟଚିତ୍ର ଶୈଳୀର ସିଧାସିଧା ପ୍ରୟୋଗରେ ପ୍ରକୃତିର ଚିତ୍ରଣ ଛବିମାନଙ୍କୁ ସତନ୍ତ୍ର କରି ପକାଉଥିଲା। ବାର-ତେର ବର୍ଷ ପୂର୍ବେ ଶ୍ରୀ ବେଣୁଧର ମହାପାତ୍ରଙ୍କଠାରୁ ଶିଖିଥିବା ପଟଚିତ୍ରଠାରୁ ଏହା ଅନେକ ଦୃଷ୍ଟିରୁ ଅଲଗା ଥିଲା। ଏଥିରେ ପଟଚିତ୍ରରେ ଅଙ୍କା ବିଭିନ୍ନ ରୂପ ବା ପ୍ରତିମାର ଆକାର ଥିଲା, କିନ୍ତୁ ପଟଚିତ୍ରର ସୂକ୍ଷ୍ମ ରୈଖିକ

Digitized by srujanika@gmail.com

(linear) ଗୁଣର ଆଭାସ ସୁଦ୍ଧା ନଥିଲା । ଏଥିରେ ଅଙ୍କାଥିବା ଶୁଆ, ବାଘ, ଶାର୍ଦ୍ଦୁଳ, ଅରଣ୍ୟ, ବୃକ୍ଷଲତା, ଭାଲୁ, ହରିଣ ଆଦି ସମସ୍ତ ରୂପ ଓ ଆକାରର ବୈଶିଷ୍ଟ୍ୟ ଥିଲା, ଖୁବ୍ ନିଦା ମନେ ହେଉଥିଲା ।

ପୁରାତନ ପଟଚିତ୍ର ତଥା ବିଶେଷକରି ଦକ୍ଷିଣ ଓଡ଼ିଶାର ପଟଚିତ୍ରରେ ବ୍ୟବହୃତ ସୀମିତ ରଙ୍ଗ ଓ ଲାଳିତ୍ୟପୂର୍ଣ୍ଣ ରେଖାମାନଙ୍କରେ ଲୁଚି ରହିଥିବା ଗତିଶୀଳତା କିନ୍ତୁ ପାଠୀ ସାର୍ଙ୍କ ଏଇ ତୈଳଚିତ୍ରମାନଙ୍କରେ ନଥିଲା । ଏଥିରେ ସବୁକିଛି ଖୁବ୍ ସ୍ଥିର ମନେ ହେଉଥିଲା । ଏପରି ମନେ ହେଉଥିଲା ତୈଳଚିତ୍ରର ରାଜକୀୟ ପ୍ରଭାବରେ ସତେ ଯେପରି ପଟଚିତ୍ରର ସରଳିଆ ମୂଳ ରହସ୍ୟ ଅନ୍ତର୍ଦ୍ଧାନ ହେଇପଡୁଛି ।

ସାର୍, ନମସ୍କାର, କହିଲି ।

ପାଠୀ ସାର୍ ବୁଲି ପଡ଼ି ପଗ୍ଭରିଲେ, ଆରେ । ତୁମେ କେତେବେଳୁ ଆସିଲଣି ? ସଙ୍ଗେ ସଙ୍ଗେ ବେତଚୌକିଟି ଆଡ଼କୁ ହାତ ଦେଖାଇ କହିଲେ, ବସ ।

ମୁଁ ଥକା ହେଇ ବସିଗଲି । ଘରଟା ଖୁବ୍ ଥଣ୍ଡା ଲାଗୁଥିଲା ।

ସାର୍ କହିଲେ ଏ ବର୍ଷ ପ୍ରବଳ ଖରା ହେଲାଣି, ଘରୁ ବାହାରକୁ ବାହାରି ହେଉନି ।

ମୁଁ ହଁଟିଏ ମାରିଲି ।

ସାର୍ ପୁଣି ଚିତ୍ରକରିବା ପାଇଁ ବ୍ରସ୍ ଉଠାଇଲେ ।

ଉଚ୍ଚା ଉଚ୍ଚା ବହିଥାକମାନଙ୍କରେ ଖୁବ୍ ଯତ୍ନର ସହ ସଜଡ଼ାହେଇ ରହିଥିବା ଅସଂଖ୍ୟ ବହିମାନଙ୍କ ଆଡ଼କୁ ଗ୍ଭହିଁଲି । ଛାତରୁ ଝୁଲୁଥିବା ଗୋଲାକାର ଜାପାନୀ ପେପର୍ ଲ୍ୟାମ୍ପଶେଡ୍‌କୁ ଦେଖିଲି । ଅଲିଭ୍ ଫଳର ରଙ୍ଗ ପରିକା ସଫା ଚଟାଣର ମସୃଣତାକୁ ପାଦ ପାପୁଲିରେ ଅନୁଭବ କଲି । ଦୁଆର ଆରପଟୁ ଦିଶୁଥିବା ଜ୍ୱଳନ୍ତ ଆକାଶ ଆଡ଼କୁ ଗ୍ଭହିଁଲି ।

ସାର୍ ପଗ୍ଭରିଲେ । "ଆଉ କ'ଣ ଖବର କୁହ ।'

ଆପଣଙ୍କ ଏଇ ଛବିଗୁଡ଼ିକ ଖୁବ୍ ଅଲଗା ଜଣାପଡୁଛି ।

ସାର୍ କହିଲେ, ହଁ ଓଡ଼ିଶା ପାରମ୍ପରିକ କଳାର ମୋଟିଫ୍‌ମାନଙ୍କୁ ବ୍ୟବହାର କରି ଏଗୁଡ଼ିକ ଆଙ୍କୁଛି । ସାର୍‌ଙ୍କ ଏପରି ଚିତ୍ର ଓ ଚିନ୍ତନରେ ଏକମତ ହେଇ ନ ପାରି ସେଇ ଖରାରେ ହିଁ ବିଦାୟ ମାଗି ମୁଁ ରହୁଥିବା ପୁରୁଣା ଭୁବନେଶ୍ୱର ଘରକୁ ଫେରିଥିଲି ।

ଅନେକ ବର୍ଷ ପରେ ଏକ ବର୍ଷାମୁଖର ଶୀତଶୀତିଆ ସନ୍ଧ୍ୟାରେ କାର୍‌ରୁ ଓହ୍ଲାଇ ତରବର ହେଇ ମଡର୍ଣ୍ଣ ଆର୍ଟ୍ ଗ୍ୟାଲେରୀ ଭିତରକୁ ଯିବା ଭିତରେ ଆମେ ଅଳ୍ପ ଓଦା ହେଇଗଲୁ । ଫ୍ରିଦା କହିଲା ଆମେ ଟିକେ ଡେରି ହେଇଗଲେ । ମୁଁ ଭାରତୀୟ ସମୟାନୁବର୍ତ୍ତିତା କଥା ମନେ ପକାଇଦେଲି । ମୋ କଥାରେ ସେ ଅଳ୍ପ ହସି ମୋ ପିଠିକୁ ଆସ୍ତେ କରି ଥାପୁଡ଼ାଇ ଦେଲା । ପାଶ୍ଚାତ୍ୟ ଦ୍ରବ୍ୟ, ପଦାର୍ଥକୁ କିଣିଲାବେଳେ ଯେପରି ବିନାଦ୍ୱନ୍ଦ୍ୱରେ ଭରସାକରି ପକାଏ ଠିକ୍ ସେପରି ପାଶ୍ଚାତ୍ୟ ବ୍ୟକ୍ତି ବିଶେଷଙ୍କୁ ମଧ୍ୟ ମୁଁ ସହଜରେ ଆଦରି ଯାଏ । ସେମାନଙ୍କୁ ମୁଁ ତିଳେ ହେଲେ ସନ୍ଦେହ କରେନି ବରଂ ସେମାନଙ୍କ ଉପସ୍ଥିତିରେ ଅଧିକରୁ ଅଧିକ ନିରୀହ ହେଇପଡ଼େ ।

ଫ୍ରିଦା ମୋ ବ୍ଲେଜର୍‌କୁ ଦେଖି ହସିଲା ।

ମୁଁ ପଗ୍ଭରିଲି, "କ'ଣ ହେଲା ?'

ସେ ମୋ ବ୍ଲେଜର୍‌ର ବୋତାମ ଖୋଲିଲା ।

ମୁଁ ଆଶ୍ଚର୍ଯ୍ୟ ହେଇ ତାକୁ ଗ୍ଭହିଁଲି ।

ସେ କହିଲା କିଛି ନୁହେଁ କେବଳ ବୋତାମ ତଳ ଉପର ହେଇଯାଇଛି ।

ଓଃ ! ରକ୍ଷା ପାଇଗଲି ଗ୍ୟାଲେରୀ ଭିତରକୁ ଯିବା ଆଗରୁ ଅନ୍ତତଃ ଫ୍ରିଦା ମୋ ବ୍ଲେଜର ବୋତାମକୁ ଲକ୍ଷ୍ୟ କରିପାରିଲା । ଧନ୍ୟବାଦ ଜଣାଇଲି ।

ଘରୁ ବାହାରିବା ବେଳେ ଫ୍ରିଦା କାର୍ ହର୍ଣ୍ଣମାରି ମୋତେ ବ୍ୟସ୍ତ କରି ପକାଇଲା । ଆଉ ମୁଁ ତରବର ହେଇ ବୋତାମ ଦବାରେ ଏପଟ ସେପଟ କରିଦେଇଥିଲି ।

Digitized by srujanika@gmail.com

ଭାରତୀୟ ଆଧୁନିକ ଚିତ୍ରକଳା ପ୍ରଦର୍ଶନୀ ଦେଖିବା ପାଇଁ ଆଗ୍ରହରେ ଅଧୀର ହେଇ ପଡୁଥିଲି। ହଠାତ୍ ଫ୍ରିଦାକୁ ପଚାରିଲି ତୁମେ ବିବେକାନନ୍ଦଙ୍କ ବିଷୟରେ କିଛି ଜାଣିଛ ? ସେ କହିଲା ନା' । ମୁଁ ଆଶ୍ଚର୍ଯ୍ୟ ହେଇ କହିଲି ସେ ଏଇଠି ଏଇ ଚିକାଗୋ ଠାରେ ଏକଦା ଐତିହାସିକ ଭାଷଣ ଦେଇ ସାରା ବିଶ୍ୱବାସୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ, ଆଉ ତୁମେ ତାଙ୍କ ନା' ସୁଦ୍ଧା ଶୁଣିନ ? ସେ ମୋ କଥାରେ ବିଶେଷ ପ୍ରଭାବିତ ହେଲାପରି ଜଣାଗଲାନି । ମୋ କଥାକୁ ନ ଶୁଣିବାପରି ଆଡ଼େଇ ଯାଇ କହିଲା ଦେଖ, ସେ ଛବିଟି ଦେଖ, ମଞ୍ଜିତ୍ ବାୱାଙ୍କ ଛବିଟି ଆଡ଼କୁ ଆଙ୍ଗୁଠି ଦେଖାଇ ସେ କହିଲା କି ସୁନ୍ଦର ହେଇଛି ! ମୋତେ ଖୁବ୍ ଭଲ ଲାଗିଲା ।

ମୁଁ ବି ଭଲଭାବେ ଛବିଟିକୁ ଦେଖିଲି । ତା' ପରେ କେ.ଜି. ସୁବ୍ରମଣ୍ୟନ୍‌ଙ୍କ ଛବି ଥିଲା, ସି. ଡୋଗ୍‌ଲାସ୍‌ଙ୍କ ସ୍ଥାନ ଥିଲା, ଭୂପେନ୍ ଖାଖର୍‌ଙ୍କ ଛବି ଥିଲା । ଏସବୁ ଛବିମାନଙ୍କୁ ମୁଁ ଅନେକ ଦିନରୁ ଦେଖି ନ ଥିଲି । ତେଣୁ ଖୁବ୍ ମନ ଲଗାଇ ସେଗୁଡ଼ିକୁ ଦେଖୁଥିଲି । ଇତି ମଧ୍ୟରେ ଫ୍ରିଦା ମୋ ପାଖରୁ ଅଲଗା ହେଇ ଗୋରା ଦର୍ଶକଙ୍କ ଭିତରେ କୋଉଠି ହଜି ଯାଇଥିଲା କେଜାଣି । ମୁଁ ଆଉ ତାକୁ ଖୋଜିବାକୁ ନ ଯାଇ ଚିତ୍ର ଦେଖିବାରେ ବ୍ୟସ୍ତ ରହିଲି । କେ. ରାମାନୁଜମ୍‌ଙ୍କ ଚିତ୍ରକୁ ପାଇ ମୁଁ କିଛିକ୍ଷଣ ପାଇଁ ନିଜକୁ ଭୁଲିଗଲି । ଅନେକ ବର୍ଷତଳେ ଫେ଼ଲମଣ୍ଡଳଠାରେ କେ. ରାମାନୁଜମ୍‌ଙ୍କ ଚିତ୍ରକୁ ପ୍ରଥମଥର ଦେଖି ମୁଁ ଠିକ୍ ଏହିପରି ଅବସ୍ଥାରେ ପହଁଚିଥିଲି । ମୋର ସମସ୍ତ ଶକ୍ତି ରାମାନୁଜମ୍‌ଙ୍କ ଚିତ୍ର ଦେଖିବାରେ ବ୍ୟୟ କରି ଦେଇଥିଲି । ଅନ୍ୟ ଛବିଗୁଡ଼ିକୁ ଦେଖିବା ପାଇଁ ଅଳ୍ପ ବିଶ୍ରାମ ଚାହୁଁଥିଲି।

ପାଶ୍ଚାତ୍ୟ ଶରୀରତତ୍ତ୍ୱ (western anatomy)ର ଚିତ୍ର ପରି ଦିଶୁଥିବା ଫ୍ରିଦାର ଅନ୍ୱେଷଣରେ ଲାଗିପଡ଼ିଲି । ଗହଳି ଭିତରୁ କେହି ଜଣେ ଭଦ୍ର ମହିଳା ଅଳ୍ପ ଉଚ୍ଚ ସ୍ୱରରେ କହିଲେ ଦେଖ, ସେ ଭାରତୀୟ ସିଂହଟିକୁ (Look at that Indian lion, How nice it is ?) କି ସୁନ୍ଦର ! ମୁଁ ସେଠୁ ବୁଲି ପଡ଼ି ଦେଖିଲି ସିଂହକୁ ଓ ତା' ସହିତ ସେଦିନ ଖରାବେଳର ଅଧାଅଙ୍କା ହରିଣ, ମାଙ୍କଡ଼, ବୃକ୍ଷଲତା, ପାହାଡ଼ ଆଦିର ପୂର୍ଣ୍ଣାଙ୍ଗ ତୈଳଚିତ୍ର । **ବିଭିନ୍ନ ବାଦ ମତବାଦର ପାଶ୍ଚାତ୍ୟ ଭୂମି ଉପରେ ଠିଆ ହେଇ ଗୋରାଲୋକଙ୍କ ଆଖିନେଇ ଏବେ ବୁଝିପାରୁଥିଲି ସେଦିନର ଉଦୁଉଦୁଆ ଖରାବେଳଟାରେ ଜନ୍ମ ନେଉଥିବା ସେଇ ନୂତନ ଯୁଗକୁ ଓ ମନେ ମନେ ଧନ୍ୟବାଦ ଜଣାଉଥିଲି ସେ ଯୋଗଜନ୍ମା ସ୍ରଷ୍ଟା ଡକ୍ଟର ଦିନନାଥ ପାଠୀଙ୍କୁ ।**

୪. ମୁମ୍ବାଇ :

ହାଇଦ୍ରାବାଦ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରୁ ଏମ୍.ଏଫ୍.ଏ ସାରି ଭୁବନେଶ୍ୱର ଫେରି ହତାଶ ହେଇପଡ଼ିଲି । ମୋ ପାଖରେ ରଙ୍ଗ, ତୂଳୀ, କାଗଜ, କାନ୍‌ଭାସ୍ ସବୁକିଛି ଥିବା ସତ୍ତ୍ୱେ ଗୋଟେ ଗାର ସୁଦ୍ଧା ଆଙ୍କି ପାରିଲିନି । ହାଇଦ୍ରାବାଦର ଶିଳ୍ପୀବନ୍ଧୁ ତଥା ସେଠିକା କଳାତ୍ମକ ପରିବେଶକୁ କ୍ଷଣ କ୍ଷଣ ହରାଇ ବସିଲି । ଘରେ ବାପାଙ୍କ ଦ୍ୱାରା ଅନୁପ୍ରାଣିତ ହେଇ ଭାରତୀୟ ସାଧୁସନ୍ଥମାନଙ୍କ ଆତ୍ମଜୀବନୀମାନ ପଢୁଥାଏ । ସନ୍ଧ୍ୟା ହେଲାମାତ୍ରେ ପାଠୀ ସାର୍‌ଙ୍କ ବାସଭବନକୁ ଯାଇ ତାଙ୍କ ଆଗରେ ବସି ରୁହେ, ସେ ଯାହା କୁହନ୍ତି ମନଦେଇ ଶୁଣେ, ତାଙ୍କ ମୂଲ୍ୟବାନ କଥା ଦ୍ୱାରା ଅନୁପ୍ରାଣିତ ହୁଏ । ଦିନମାନଙ୍କରେ ସେ ଲେଖୁଥିବା ଉପନ୍ୟାସ 'ସାୟୋନାରା' ମଝିରୁ ମଝିରୁ ପଢ଼ି ଶୁଣାଉଥିଲେ । ତାଙ୍କ ପଢ଼ିବାର ଢଙ୍ଗ ଓ ପ୍ରାଞ୍ଜଳ ଶବ୍ଦ ଉଚ୍ଚାରଣ ମୋତେ ମୁଗ୍‌ଧ କରୁଥିଲା ।

ଘଣ୍ଟା ଘଣ୍ଟା ଧରି ମେଜ ଉପରେ ଲେଖି ଲେଖି ଅଣ୍ଟା ବିନ୍ଧିଲେ ସେ ଉପନ୍ୟାସର ଅନେକ ଅଂଶକୁ ଅନର୍ଗଳ କହି ଚାଲୁଥିଲେ ଓ ମୁଁ ସେଗୁଡ଼ିକୁ ତରବର ହେଇ ଲେଖି ଚାଲୁଥିଲି।

ଅନ୍ୟ ସମୟମାନଙ୍କରେ ସେ ମୋର ବିଷାଦ ଭାବକୁ ଲକ୍ଷ୍ୟକରି ଥଟ୍ଟାରେ କହୁଥିଲେ, ଆଜିକାଲି ତୁମେ ଚିନ୍ତାଶୀଳ ଦାର୍ଶନିକ ପରି ମନେହେଲଣି । ଦାଢ଼ି ରଖ ଭଲ ଲାଗିବ । ମୁଁ ତାଙ୍କର ଏପରି ମନ୍ତବ୍ୟରେ କୌଣସି ଠୋସ୍ ଅର୍ଥ ପାଇପାରୁ ନଥିଲି ।

ହତାଶା ଭିତରେ ମଧ୍ୟ ପାଠୀ ସାର୍‌ଙ୍କ ପ୍ରେରଣାରେ ପୁରୁଣା ଭୁବନେଶ୍ୱରର ବଉଳମାଳିଆ ଶିଉଳିଆ ସନ୍ଧ୍ୟାମାନ ସୁରୁଖୁରୁରେ ଅତିବାହିତ ହେଇଯାଉଥିଲା ।

Digitized by srujanika@gmail.com

ହଠାତ୍ ଦିନେ ପାଠୀ ସାର୍ ପଚ୍ଚାରିଲେ, "ତମେ ବମ୍ବେ ଦେଖିଛ ? ।''

ମୁଁ କହିଲି, ନା' ?

ତୁମେ ମୋ ସଙ୍ଗେ ବମ୍ବେ ଯିବାକୁ ଚାହଁ କି ?

ମୁଁ ଆଗ୍ରହରେ କହିଲି, ହଁ ନିଶ୍ଚୟ ।

ସେ କହିଲେ ଆସନ୍ତା ମାସ ବମ୍ବେର ତାଜ୍ ଆର୍ଟ ଗ୍ୟାଲେରୀରେ ମୁଁ ଗୋଟେ ଚିତ୍ର ପ୍ରଦର୍ଶନୀର ଆୟୋଜନ କରୁଛି, ତୁମେ ଓ ଶୋଭନ ଦୁହେଁ ମୋ ଛବି ନବା ଆଣିବା ଆଦି କାମରେ ସାହାଯ୍ୟ କରିବ

ଦୀର୍ଘ ଦିନର ହତାଶା ଭିତରେ ଏହା ମୋ ପାଇଁ ଗୋଟେ ଖୁସି ଖବର ଥିଲା ।

କାନ୍‌ଭାସ୍ ଷ୍ଟ୍ରେଚିଙ୍ଗ୍ କାମ ଆରମ୍ଭ ହେଲା । ସାର୍‌ଙ୍କ ତତ୍ତ୍ୱାବଧାନରେ ମୁଁ ପାଇନ୍ କାଠର ଷ୍ଟ୍ରେଚରମାନଙ୍କୁ ଯୋଡ଼ିଲି, ସେଥିରେ ଷ୍ଟାପ୍‌ଲର୍ ଗନ୍‌ରେ କାନ୍‌ଭାସ ଭିଡ଼ିଲି । କାମ ଚାଲୁଥାଏ, ମଝିରେ ମଝିରେ ସନ୍ଧ୍ୟାବେଳିଆ, ସୁବାସ ଚୁଡ଼ାକଦଳୀ ଚକଟା, ବେଳେ ବେଳେ ମେଗି ନୁଡ୍‌ଲ୍‌ସ୍, ପାଚିଲା ଅମୃତଭଣ୍ଡା ଆଦି ଦେଇ ଯାଏ । ଆମେ କାମଛାଡ଼ି ଖାଇବସୁ ।

କିଛିଦିନ ପୂର୍ବରୁ ସାର୍ ଚୀନ୍‌ରୁ ଫେରିବାବେଳେ ସାଥିରେ ଅନେକ ପ୍ରକାରର ସୁବାସିତ ଚା'ପତି ନେଇ ଆସିଥିଲେ । ସେ ମାସ ଯାକ ଆମେ ବିନା ଚିନିର ଚାଇନା ଚା' ପିଇଲୁ । ଅନେକଙ୍କୁ ଭଲ ଲାଗିଲାନି । ମୁଁ କିନ୍ତୁ ଖୁବ୍ ଶ୍ରଦ୍ଧାର ସହ ପିଇଲି । ଶୋଭନ ଭାଇଙ୍କଠୁ ଶୁଣିଥିବା ଚାଇନା ଯୁବତୀଙ୍କ ରୂପଲାବଣ୍ୟ ସାଙ୍ଗକୁ ଚା'ର ସୁଗନ୍ଧ ମୋତେ ଅଧିକରୁ ଅଧିକ ରୋମାଞ୍ଚିତ କରିପକାଉଥିଲା । **ମୋଟାମୋଟି ସେଦିନମାନଙ୍କରେ ଚାଇନା ଚା'ର ମହକ ପାଠୀ ସାର୍‌ଙ୍କ ସାଇପଡ଼ିଶାଠୁ ଆରମ୍ଭ କରି ସେ ଆଖପାଖ ଅଞ୍ଚଳ ବ୍ୟାପି ଯାଇଥିଲା । ଯିଏ ସାର୍‌ଙ୍କ ଘରକୁ ଆସିଲା ଥରେ ଅଧେ ଚାଇନା ଚା' ଚାଖି ଯାଉଥିଲା ।**

ପାଇନ୍ ଷ୍ଟ୍ରେଚର୍‌ରେ କାନ୍‌ଭାସ୍ ଯୋଖା ସରିଲା । ତା'ପରେ ଭିକାରୀ କାନ୍‌ଭାସ୍‌ଗୁଡ଼ିକରେ ଟେକ୍ସଚର୍ ହ୍ୱାଇଟ୍‌ର ପ୍ରଲେପ ଦେବା ଆରମ୍ଭ କଲେ । ଏସବୁ ଗହଳି ଭିତରେ କିନ୍ତୁ 'ସାୟୋନାରା' ଲେଖା ଚାଲିଥାଏ । ସାର୍, 'ସାୟୋନାରା'ରୁ ପାରାଗ୍ରାଫ୍ ପାରାଗ୍ରାଫ୍ ପଢ଼ି ଆମମାନଙ୍କୁ ଶୁଣାଉଥାନ୍ତି ।

କାନ୍‌ଭାସ୍ ପ୍ରସ୍ତୁତି ସରିଲା । ସାର୍‌ଙ୍କ ଚିତ୍ର ଆରମ୍ଭ ହେଲା । ମୁଁ ଅନ୍ୟକିଛି କାମରେ ବ୍ୟସ୍ତ ରହି ସାର୍‌ଙ୍କ ଘରଆଡ଼େ ପ୍ରାୟ ସପ୍ତାହେ ପରେ ପହଁଚି ଦେଖେ ତ ସାର୍‌ଙ୍କ ଷ୍ଟୁଡ଼ିଓରେ ବହିଥାକକୁ ଓ କାନ୍ଥକୁ ଆଉଜା ହେଇ ପ୍ରାୟ ଦଶ-ବାରଟି ଛବି ରହିଛି । ଏକାବେଳକେ ଏତେଗୁଡ଼ାଏ ଛବି ଦେଖି ମୁଁ ପ୍ରଥମେ ଖୁସି ହେଇପଡ଼ିଲି । ସାର୍‌ଙ୍କୁ ପଚାରିଲି, ଏତେ ଅଳ୍ପଦିନ ଭିତରେ ଏତେଗୁଡ଼ାଏ କାମ କିପରି ସାରିଲେ । ସାର୍ ବଡ଼ ସରଳରେ କହିଲେ, ସବୁ ପୂର୍ବ ଯୋଜନା ସରିଥିଲା, କେବଳ ରଙ୍ଗ ଭରିଦେଇଗଲି । ସାର୍ ପଚାରିଲେ ଛବିଗୁଡ଼ିକ କେମିତି ଲାଗୁଛି । ମୁଁ କହିଲି, ଖୁବ୍ ଭଲ ହେଇଛି ।

ସାମ୍ନାରେ ଦିଶୁଥିବା ଏତେଗୁଡ଼ାଏ ଛବି ସାମଗ୍ରିକ ଭାବେ ମୋତେ ଅସମ୍ଭବ ଭାବେ ପ୍ରଭାବିତ କରୁଥିଲା, ସଂପୂର୍ଣ୍ଣଭାବେ ପାଠ୍ୟ ମନେ ହେଉଥିଲା । କିନ୍ତୁ ପାଖରୁ ଗୋଟି ଗୋଟି କରି ଦେଖିଲାବେଳେ ଅଳ୍ପକିଛି ଛବିକୁ ଛାଡ଼ିଦେଲେ ଅନେକେ ମୋ ମନକୁ ପାଇ ନଥିଲା । ସେଥିରୁ ଗୋଟେ ମଞ୍ଜିତ୍ ବାୱାଙ୍କ ଛବି ପରି ମନେ ହେଲା ଓ ଅନ୍ୟଟି ଜି.ଆର୍. ସନ୍ତୋଷଙ୍କ ତନ୍ତ୍ର ଛବି ପରି ଲାଗିଲା, ଅନ୍ୟଟି ଫର୍ଣ୍ଣାଣ୍ଡ ଲେଜେ (Fernand Ledger)ଙ୍କ ଛବି ପରି ପ୍ରତ୍ୟୟ ହେଲା । ଗୋଟେ ମଜାଳିଆ କଥା ହେଲା ପ୍ରାୟ ସମସ୍ତ ଛବିରେ ନାରୀ ଓ କାର୍‌କୁ ସମାବେଶ କରି ସମସ୍ତ କାନ୍‌ଭାସ ଚିତ୍ରିତ ହେଇଥିଲା। ମୁଁ ପଚାରିଲି ନାରୀ ଓ କାର୍, ଯା ପଛରେ କିଛି ବିଶେଷ ସମ୍ପର୍କ ସେ କହିଲେ, କାର୍‌ଟିଏ ଓ ନାରୀଟିଏ । ବାସ୍ ।

ସାର୍‌ଙ୍କ ଏଇ ଚିତ୍ରଗୁଡ଼ିକ କ୍ଷଣସ୍ଥାୟୀ ଓ ଖୁବ୍ ବୃତ୍ତିଗତ (professional) ମନେ ହେଉଥିଲା । ମୋର ମନେ ହେଉଥିଲା ସତେ ଯେପରି ସେ ଲେଖୁଥିବା ଉପନ୍ୟାସ 'ସାୟୋନାରା' ଭିତରେ ଅଧିକ ମଜି ଯାଇଥିଲେ ।

Digitized by srujanika@gmail.com

**ବିଜୟ ମିଶ୍ର**

# ଦିନନାଥ ପାଠୀଙ୍କ ଚିତ୍ର ସଂପର୍କରେ

ଗୋଟିଏ ଯୁଦ୍ଧ ମୁଁ ଦେଖିଲି । କିଛି ରଙ୍ଗ, ଗୋଟିଏ ତୂଳୀ (ନା ତରବାରୀ ?) ଆଉ ଫ୍ରେମ୍ ଦେହରେ ଫିଟ୍ କରାହୋଇଥିବା ଖଣ୍ଡେ କନା, ଏଇ ହେଉଛି ସମୁଦାୟ ଯୁଦ୍ଧର ଆୟୋଜନ । ପରମ୍ପରାରୁ ଡେଇଁଯାଇ ଆଉ ଏକ ନୂତନ ପରମ୍ପରା ସୃଷ୍ଟି କରିବା ପାଇଁ ଜଣେ ଶିଳ୍ପୀ ଆଉ ତାଙ୍କର ୧୯୭୦ର ଚିତ୍ର **ଲଷ୍ଟ ହରାଇଜନ୍** । ଶିଳ୍ପୀ ଦିନନାଥ ପାଠୀ ଆଜିପର୍ଯ୍ୟନ୍ତ ନୂଆ ନୂଆ ଫର୍ମ, (**ରିକ୍ଲାଇନିଙ୍ଗ୍ ଫିଗର୍ସ୍, ଟୁଇନ୍, ଦ ଫାୟାର୍**), ନୂଆ ଟେକ୍ନିକ୍ (**ଫରବିଡ଼ନ୍ ଫ୍ରୁଟ୍, ଫିସିଂ, ଗସିପ୍-୧**) ନୂଆ ଢାଞ୍ଚାରେ ରଙ୍ଗର ବ୍ୟବହାର (**ମଙ୍କ୍, କାଳିକାଣ, ଗସିପ୍-୧**) ନେଇ ମାତିଥିଲେ ବିଭିନ୍ନ ଚିତ୍ର, ବିଭିନ୍ନ ଧାରା ଏବଂ ଇଜମ୍‌ରୁ ଅନୁସୃତ ହୋଇ ନିଜସ୍ୱ ଧାରାରେ ପରିପୁଷ୍ଟ ହେଇ ରଙ୍ଗ, ରେଖାରେ ଆତ୍ମପ୍ରକାଶ କରୁଥିଲା, ଯେମିତି ଧରାଯାଉ ତାଙ୍କର **ଫର୍‌ବିଡନ୍ ଫ୍ରୁଟ୍** । କିଛିଟା ଡଡ଼ାଇ ଷ୍ଟକ୍, କିଛିଟା ଫ୍ରଏଡ୍‌ଙ୍କ ଯୌନ ମନସ୍ତତ୍ତ୍ୱଉପରେ ଆଧାର କରି ଗଢ଼ି ଉଠିଥିଲେ ବି, ଶିଳ୍ପୀଙ୍କ ନିଜସ୍ୱ ଚିନ୍ତାଧାରା ପରିସ୍ଫୁଟିତ ହୋଇପାରିଛି ଛବିଟିରେ । ଫ୍ରଏଡ୍‌ଙ୍କ ସାପ (ସେକ୍‌ସ ସିମ୍ବଲ୍) ଅଛି । ଓଲଡ୍ ଟେଷ୍ଟାମେଣ୍ଟର ଇଭ୍ ଅଛି (ଯୌନତା ଏକ ସହଜତା କ୍ଷୁଧା, ନିଷିଦ୍ଧ ଫଳ ନିଷିଦ୍ଧ ହେଲେ ହେଁ ମଣିଷ ତାକୁ ଖାଇବାକୁ ବାଧ, କାରଣ ତାର କ୍ଷୁଧା ଅଛି) ଅଛି ସେଇ ନାରୀଟି ଯିଏ ତାର ସମସ୍ତ ଯୌନ ଚେତନାକୁ ଉନ୍ମୁଖ କରି ଟେକି ଧରିଛି ତା'ର ହାତ, ତା'ର ଶୋଇବାର ଭଙ୍ଗୀ ଇତ୍ୟାଦି ଭିତରେ ବଳପୂର୍ବକ ଧର୍ଷିତା ହେବାର ଇଚ୍ଛା ପ୍ରକାଶ (ସାଡ଼ିଜିମ୍ ?) ରଙ୍ଗ ଏବଂ ଫିଗର୍ ସାହାଯ୍ୟରେ ମୂର୍ତ୍ତ ହୋଇଉଠିଛି ଏବଂ ଠିକ୍ ଏଇଠି ସମସ୍ତ ଇଜମ୍ ଥାଇବି ଶିଳ୍ପୀର ଶିଳ୍ପ ଚେତନାର ଉତ୍ତରଣ ହୋଇଚି । ପୁଣି ଆଉ ଏକ ନାରୀଚିତ୍ରର ମଧ ଚିତ୍ରଟିରେ ପୁନରାବୃତ୍ତି ହୋଇଚି । ହୁଏତ ନାରୀଟି ଏକାବେଳେକେ ନିର୍ଲିପ୍ତ (ସୁଷୁପ୍ତି ନା ସ୍ୱପ୍ନ ?) ଛବିଟିରେ ରଙ୍ଗର ବ୍ୟବହାର ଅତି ସଂଯତ ହୋଇଚି । ଲାଲ ଏବଂ କଳା ରଙ୍ଗର ବ୍ୟବହାର ଛବିଟିର ମୁଡ୍‌ଟିକୁ ଅତି ନିଷ୍ଠୁର ଭାବେ ପ୍ରକାଶ କରି ପାରୁଛି । ତୂଳୀ ସ୍ଥାନେ ସ୍ଥାନେ କାନ୍‌ଭାସ୍‌କୁ ରକ୍ତାକ୍ତ କରିଚି । କିମ୍ବା **ଗସିପ୍-୧**ର ଦୁଇଟି କଥାବାର୍ତ୍ତା କରୁଥିବା ନାରୀକଥା ଧରାଯାଉ (ହାତ ଦୁଇଟିର ଡିଟେଲସ୍ ଛବିର ଆଇଡ଼ିଆ ଏବଂ ଥଟ୍‌କୁ ପ୍ରସାରିତ କରୁଚି) ଏଥିରେ ବ୍ରାଇଟ୍ ୟେଲୋ, କଳା, ପ୍ରୁସିୟାନ୍ ବ୍ଲୁ ଏବଂ ହ୍ୱାଇଟ୍‌ର ବ୍ୟବହାର କରାଯାଇଛି । ସେମାନେ ଯେ ଖୁବ୍ ସିଧା ଚରିତ୍ରର ନୁହନ୍ତି ଏବଂ ସେମାନେ ଯେ ନିଶ୍ଚୟ କିଛି କୁମନ୍ତ୍ରଣାରେ ଲିପ୍ତ ତାହା ଛବିଟିରେ ରଙ୍ଗର ବ୍ୟବହାର, ଫିଗର୍ ଏବଂ ହାତ ଦୁଇଟିରୁ ପରିଷ୍କାର ବୁଝା ପଡୁଛି ।

**ରିକ୍ଲାଇନିଙ୍ଗ୍ ଫିଗରସ୍, ଟୁଇନ୍** ଏବଂ **ଦ ଫାୟାର** ଛବିଗୁଡ଼ିକରେ ନୂଆ ଫର୍ମ ବ୍ୟବହାର କରି ଦିନନାଥ ବାବୁ ଅତ୍ୟନ୍ତ ସଫଳ ହୋଇଛନ୍ତି । ଛବିଗୁଡ଼ିକ ବିମୂର୍ତ୍ତ ଧାରାରେ ଅଙ୍କିତ । ଛବିଗୁଡ଼ିକରେ ଶିଳ୍ପୀ-ଚେତନାର ଉତ୍ତରଣ ଘଟିଚି ରିକ୍ଲାଇନିଙ୍ଗ ଫିଗରସ୍‌ରେ ଭାସ୍କର୍ଯ୍ୟର ପ୍ରଭାବ ରହିଚି । ଗୁଡ଼ିଏ ନାରୀମୂର୍ତ୍ତି ସେମାନଙ୍କ ହାତ ଗୋଡ଼ ନାହିଁ କିନ୍ତୁ ଏପରି କେତେଗୁଡ଼ିଏ ଜିନିଷ ରହିଚି ଯାହା ନାରୀ ଚିତ୍ରର ଧାରଣା ହଠାତ୍ ଆଣି ଦିଏ । ହେନେରି ମୁର୍‌ଙ୍କ ପ୍ରଭାବ ଛବିଟିରେ ଅଛି । ଛବିଟିର ଛନ୍ଦ କାବ୍ୟଧର୍ମୀ, ତୂଳୀର ବ୍ୟବହାର ଯେମିତି ମାପିଚୁପି କରାଯାଇଛି । ତେଣୁ ଛବିଟି କ୍ରିଏଟିଭ୍ ନହୋଇ ଅନେକଟା କ୍ରଫ୍‌ଟି ହୋଇଛି ।

ତାଙ୍କର ଟୁଇନ୍ ଛବିଟି ପୁରସ୍କୃତ ଛବି । ବିମୂର୍ତ୍ତ ଧାରାରେ ଅଙ୍କିତ । ଗାଢ଼ ସବୁଜ, କଳାରଙ୍ଗ, ଧଳା ଓ ଧୂସର ରଙ୍ଗର ପ୍ରଚ୍ଛଦପଟରେ ବ୍ୟବହାର କରାଯାଇଛି । ଛବିଟିର ଟ୍ରିଟ୍‌ମେଣ୍ଟ ଯଦିଓ ଇଙ୍ଗୀତଧର୍ମୀ କିନ୍ତୁ ଗୋଟାଏ କଞ୍ଚା ଥିମ୍‌କୁ ନେଇ କାମ କଲାପରି ମନେ ହୁଏ । ଦୁଇଟି ଅବୟବର ଚିତ୍ର ଯାହାକୁ ଗଛର ଦୁଇଟି ଗଣ୍ଡି ସାଙ୍ଗରେ ତୁଳନା କରାଯାଇପାରେ । ଗୋଟାକ ଉପରେ ଗୋଟିଏ ଆଉଜି ରହିଛି

Digitized by srujanika@gmail.com

ଯଦିଓ ଟ୍ରିଟ୍‌ମେଣ୍ଟ୍ ଖୁବ୍ ବୋଲଡ୍ ଏବଂ ତୁଳୀ ଖୁବ୍ ଫ୍ରି, କିନ୍ତୁ ଥିମ୍ ପାରଂପାରିକ ହୋଇଥିବାରୁ, ଛବିଟି ଶିଳ୍ପୀର ଚେତନା ପରିପ୍ରକାଶ ଦିଗରେ ବିଫଳ ହୋଇଛି ।

ସେମିତି ତାଙ୍କର **ଫିସିଂ** ଛବି । ଏଥିରେ ଏକ ନୂତନ ଶୈଳୀ ଅନୁସରଣ କରାଯାଇଛି । ଜ୍ୟାମିତିକ ପ୍ୟାଟର୍ଣ୍ଣ ଏବଂ କ୍ୟୁବିକ୍ ଫର୍ମ୍ ଛବିଟିକୁ ଖୁବ୍ ଉଜ୍ଜ୍ୱଳ କରିଛି । ଏଇଠୁ ମନେ ହୁଏ ଦିନନାଥ ବାବୁ ଫର୍ମ୍, ଟେକନିକ୍ ଇତ୍ୟାଦି ଉପରେ ଜୋର ନଦେଇ ଥିମ୍ ସୃଷ୍ଟି କରିବାକୁ ମନ ବଳେଇଛନ୍ତି । ଏଠି ଯଦିଓ ମାଛ ଧରିବା ହେଉଛି ସବ୍‌ଜେକ୍ଟ । ତଥାପି ମାଛଧରାଳିକୁ ଗୌଣକରି ମାଛକୁ ଖୁବ୍ ପ୍ରାଧାନ୍ୟ ଦିଆଯାଇଛି । ତେଣୁ ମଣିଷର ଅଙ୍ଗପ୍ରତ୍ୟଙ୍ଗ ମଧ୍ୟ ମାଛ ହୋଇଯାଇଛନ୍ତି । ମନେ ହେଉଛି ଯେମିତି ମାଛଧରାଳିଙ୍କ ଚିନ୍ତା ଏବଂ ଚେତନାକୁ ମଧ୍ୟ ମାଛମାନଙ୍କ ଆକ୍‌ସନ୍ ମଧ୍ୟରେ ଫୁଟାଇବାକୁ ଚେଷ୍ଟା କରାଯାଇଛି ।

ମୋର ମନେହୁଏ ରଙ୍ଗ ବ୍ୟବହାରରେ ଦିନନାଥ ବାବୁ **ମଙ୍କ୍** ଛବିଟିରେ ସବୁଠୁ ବେଶୀ ସଫଳ ହୋଇଛନ୍ତି । ଛବିଟିର ବ୍ୟାକ୍‌ଗ୍ରାଉଣ୍ଡ, ଡ୍ରଇଁର ପଦ୍ଧତି ଏପରି ସିଷ୍ଟମେଟିକ୍ ଏବଂ ସରଳ ହୋଇଚି ଯେ, ଛବିଟିକୁ ଏକ ମଧୁର ମର୍ଯ୍ୟାଦା ଦେଇଚି । ଦିନନାଥ ବାବୁ ଯଦି ଏଇ ପଦ୍ଧତିରେ କୌଣସି ଥିମ୍ ବ୍ୟବହାର କରିଥାନ୍ତେ ତା'ହେଲେ ସେ ଆହୁରି ସଫଳ ହୋଇ ପାରିଥାନ୍ତେ । ଛବିଟିରେ ଦୁଇଟି ବୌଦ୍ଧଭିକ୍ଷୁ । ଗୋଟିଏ ଅଶ୍ୱତ୍ଥ ଗଛ ଏବଂ ବ୍ୟାକ୍ ଗ୍ରାଉଣ୍ଡରେ ମାଇଲଡ୍ ଭରମିଲିଅନ୍‌ର ବ୍ୟବହାର, ଛବିଟିକୁ ଏକ ନୂତନ ଆଙ୍ଗିକ ଦେଇପାରିଚି ।

କିନ୍ତୁ ମୁଁ ଯୋଉ ଛବିକଥା ଲେଖୁଚି, ସେ ଛବି ଦିନନାଥ ବାବୁଙ୍କର ଏକ ଅପୂର୍ବ ସୃଷ୍ଟି (ମୋ' ମତରେ) ଛବିଟିର ନାଁ **ଦ ଲଷ୍ଟ ହରାଇଜନ୍** ଥିମ୍ ଖୋଜୁ ଖୋଜୁ (ଦିନନାଥ ବାବୁ ଥିମ୍ ଖୋଜୁଥିଲେ- ?) ଶିଳ୍ପୀ ଯେମିତି ହଠାତ୍ ଏକ ଥିମ୍ ପାଇଯାଇଛନ୍ତି । ରଙ୍ଗରେ, ରେଖାରେ, ଚିନ୍ତା ଓ ଚେତନାରେ ଏ ଛବିଟି ସମସ୍ତଙ୍କୁ ବଳିଯାଇଚି । ଏଣୁତେଣୁ ଗାରଉ ଗାରଉ ଦିନନାଥ ବାବୁ ଯେମିତି ଏକ ନିଶ୍ଚିତ ଆଭିମୁଖ୍ୟ ପାଇଯାଇଛନ୍ତି ।

ଛବିଟିରେ ମାତ୍ର ଅଳ୍ପ କେତୋଟି ରଙ୍ଗର ବ୍ୟବହାର କରାଯାଇଚି । ଯେମିତି ଭରମିଲିଅନ୍, ୟେଲୋଅକର୍, ପ୍ରୁସିୟାନ ବ୍ଲୁ, କଳା ଓ ଧଳା ମାତ୍ର ଏଇ କେତୋଟି ରଙ୍ଗ ନେଇ ସୃଜନଶୀଳତାର ଏକ ମହାକାବ୍ୟ ରଚନା କରିଛନ୍ତି ଶିଳ୍ପୀ ।

ଏ' ଛବି ଦେଖି ଯେମିତି ମନେ ହେଲା, ହଠାତ୍ ଯୁଦ୍ଧକ୍ଷେତ୍ରକୁ ଓହ୍ଲେଇ ଆସିଛନ୍ତି ଶିଳ୍ପୀ । ମଣିଷର ସାମଗ୍ରିକ ଚେତନା, ଯେମିତି ପୃଥିବୀର ଏକ କ୍ରମ ଅବନତ ତଳରୁ, ପାହାଡ଼ର ଚୂଡ଼ା ଛୁଇଁ ଉଠିଯାଇଛି ସୂର୍ଯ୍ୟ ସ୍ପର୍ଶ କରିବାକୁ । ଏଠି ମଣିଷ ନାହିଁ, ରହିଚି ତାର ଅନୁଭୂତି ଖାଲି ପାହାଡ଼ ଏବଂ ସୂର୍ଯ୍ୟର ଇଙ୍ଗିତ ଦେଇ ଏକ ନୂତନ ଆଙ୍ଗିକ ସୃଷ୍ଟି କରିବାକୁ ସେ ଚେଷ୍ଟା କରିଛନ୍ତି ଏବଂ ସଫଳ ହୋଇଛନ୍ତି ।

**ଦିନନାଥ ବାବୁଙ୍କର ସମସ୍ତ ଛବି ଦେଖି ମନେ ହେଲା ସେ ଆଜି ବି ଅଶାନ୍ତ, ତୂଳୀ କାନଭାସ୍ ସାଙ୍ଗରେ ଯୁଦ୍ଧ ନକରି ତାଙ୍କ ନିଜ ବିରୁଦ୍ଧରେ ଯେମିତି ମୁନେଇ ରହିଚି । କାନଭାସ୍‌ରେ ଯେଉଁ ଛବି ଫୁଟି ଉଠିଛି ସେ ଛବି ଅନେକ ଆଗରୁ ତାଙ୍କ ଦେହରେ ଅନେକ କ୍ଷତ ଆଙ୍କି ଦେଇଛି । ସେଇ କ୍ଷତର ଲାଲ ରଙ୍ଗ ଅନେକ ରଙ୍ଗ ହୋଇ କାନଭାସ୍ ଦେହରେ ଫୁଟି ଉଠିଛି ।** ସେ ବିରକ୍ତ ତେଣୁ ସୃଷ୍ଟି ତାଙ୍କର କାବ୍ୟିକ ନ ହୋଇ ନିଷ୍ଠୁର, ନିର୍ମମ । ତୂଳୀ ତାଙ୍କର ସବୁବେଳେ ସଂଗ୍ରାମମୁଖୀ । ସେ ଯେ ଆଉ ଏକ ନୂତନ ପରମ୍ପରା, ନୂଆ ପ୍ୟାଟର୍ଣ୍ଣ, ନୂଆ ଷ୍ଟାଇଲ୍‌ସୃଷ୍ଟି କରିବାକୁ ଆଗେଇ ଚାଲିଛନ୍ତି, ସେ ବିଷୟରେ ମୁଁ ନିଃସନ୍ଦେହ । ତାଙ୍କର ଯୁଦ୍ଧ ସଫଳ ହେଉ । ସେ ଯୁଦ୍ଧ ଦେଖିଲି, କିନ୍ତୁ ଯୁଦ୍ଧର ଫଳାଫଳ ଜାଣିବାକୁ ମୁଁ ଆଗ୍ରହୀ ନୁହେଁ ।

Digitized by srujanika@gmail.com

**ଭାଗୀରଥି ନେପାକ**

## ଶିଳ୍ପୀ ଶ୍ରୀ ଦିନନାଥ ପାଠୀ ଓ ତାଙ୍କ ଚିତ୍ର ପ୍ରଦର୍ଶନୀ

ଗତ ମାସର ଏକ ସନ୍ଧ୍ୟା । କସ୍ତୁରବା ନାରୀ ମହଲରେ ବିପୁଳ ଜନସମାଗମ । ମୁଁ ଓ ବନ୍ଧୁ ପ୍ରଫୁଲ୍ଲ ସେନାପତି ସେହି ରାସ୍ତାରେ ଆଗେଇ ଯାଉ ଯାଉ ଅଟକି ଗଲୁ । ଭାବିଲୁ, ନାଚତାମସାର ଆୟୋଜନ ହେଉଛି । କିନ୍ତୁ ନା, ତା ନୁହଁ, ଶିଳ୍ପୀ ଦିନନାଥ ବାବୁଙ୍କର ଏକକ ଚିତ୍ର ପ୍ରଦର୍ଶନୀ ଚାଲିଛି । ଚିତ୍ର ପ୍ରଦର୍ଶନୀରେ ପୁଣି ଏତେ ଗହଳି ।

**ଦିନନାଥ ବାବୁ ଆମ ଅବସର ଆସରର ଅନ୍ୟତମ ଆକର୍ଷଣ । ଅସୀମ ଦାଙ୍କ 'କଳିଙ୍ଗ ଫର୍ଣ୍ଣିଚର୍'ରେ ସବୁବେଳେ ସାକ୍ଷାତ ହୁଏ । ଅନେକ ଶିଳ୍ପୀ, ଲେଖକ, କବି ଆସି ସେଇଠି ଏକାଠି ହୁଅନ୍ତି । କିନ୍ତୁ ଦିନନାଥଙ୍କ କଥା କହିବା ଭଙ୍ଗୀ ଅଲଗା । ଆଲୋଚନା ଅଲଗା ଓ ଦୃଷ୍ଟିକୋଣ ଅଲଗା ।**

ଜନଗହଳି କମିଯିବା ପର୍ଯ୍ୟନ୍ତ ଆମେ ଅପେକ୍ଷା କଲୁ । ଅଳ୍ପ ସୁଯୋଗ ପାଇବା ମାତ୍ରେ ପ୍ରଦର୍ଶନୀ ବୁଲି ଦେଖିଲୁ । ସର୍ବମୋଟ ୨୦ଟି ଚିତ୍ର । କାନ୍‌ଭାସ୍ ଉପରେ ଅଙ୍କା ସବୁଟା ବନ୍ଧେଇ । ସବୁଟା ବଡ଼ । ପ୍ରତ୍ୟେକଟି ଚିତ୍ର କେତୋଟି ସୀମିତ ରଙ୍ଗରେ ଚିତ୍ରିତ । ରଙ୍ଗ ମିଶାର ନିଶା ନାହିଁ । ହଳଦିଆ, ନୀଳ ଓ ଲାଲ ରଙ୍ଗର ଏକ ଅଦ୍ଭୁତ ପରିବେଶ । ଚିତ୍ରମାନେ ଶିଳ୍ପୀ ମନର ସାର୍ଥକ ପ୍ରତିଲିପି ବହନ କରିଛନ୍ତି । ପାଠୀ ବାବୁଙ୍କ ମନର ଅକୁହା କଥା କହୁଛନ୍ତି । ପ୍ରତ୍ୟେକ ଚିତ୍ର ଅନ୍ୟ ଚିତ୍ରଠାରୁ ଅଲଗା । ଓଡ଼ିଶାର ଅନ୍ୟ ଶିଳ୍ପୀମାନଙ୍କଠାରୁ ଅଲଗା । ଠିକ୍ ପାଠୀ ବାବୁଙ୍କ ପରି, ତାଙ୍କ ଆଳାପ ଆଲୋଚନା ପରି ।

**ନିଷିଦ୍ଧ ଫଳ** (Forbidden Fruit), **ଆଳାପ** (Gossip 1,2,3), **ମଣିଷ** (The Man), **ବିକାଳି** (Sellers), **ଦମ୍ପତି** (Couple), **କାଳିଜାଈ** (Kalijai) ଇତ୍ୟାଦି କୋଡ଼ିଏଟି ଚିତ୍ର । ଇତିପୂର୍ବରୁ ତାଙ୍କର ଚିତ୍ର ପ୍ରଦର୍ଶନୀ ନୂଆ ରାଜଧାନୀରେ ଦୁଇଥର ଦେଖିବାର ସୁଯୋଗ ମିଳିଥିଲା । ଥରେ କଳା ମଣ୍ଡପରେ ଓ ଦ୍ୱିତୀୟଥର ରବୀନ୍ଦ୍ର ମଣ୍ଡପରେ । ନୂଆ ରାଜଧାନୀର ଅନ୍ୟତମ ବିଶିଷ୍ଟ ସାହିତ୍ୟ ଅନୁଷ୍ଠାନ, ଗୋଦାବରୀଶ ସାହିତ୍ୟ ସଂସଦ ଆନୁକୂଲ୍ୟରେ ଏହା କରାଯାଇଥିଲା । ସେ ଆଜିକୁ ଛଅବର୍ଷ ତଳର କଥା । ଛଅବର୍ଷ ଭିତରେ ସେ ଆହୁରି ଅନେକ ଆଗେଇ ଯାଇଛନ୍ତି । **ଅବଶ ଶରୀର** (Reclining Figure-2), **ନଷ୍ଟ ଦିଗନ୍ତ** (Lost Horizon), **ନିଷିଦ୍ଧ ଫଳ** (Forbidden Fruit), **ଆଲିଙ୍ଗନ** (Embrace) ଇତ୍ୟାଦି ଏଇ କେତେ ବର୍ଷର ସଫଳ ପ୍ରାପ୍ତି ।

ଏମାନଙ୍କ ମଧ୍ୟରୁ ମୋତେ ସବୁଠାରୁ ଭଲ ଲାଗିଲା **ଆଲିଙ୍ଗନ** (Embrace) ଚିତ୍ରଟି । ଏ ଚିତ୍ରରେ ନାଲି ରଙ୍ଗର ପର୍ଯ୍ୟାପ୍ତ ବ୍ୟବହାର ହୋଇଛି । ନାଲି ରଙ୍ଗ ଜୀବନ ଉଦ୍ଦୀପନାର ପ୍ରତୀକରୂପେ ପ୍ରତିଫଳିତ ହୋଇଛି । ସେହିପରି ଆଉ ଗୋଟିଏ ଛବି **ନାରୀ ଓ ପୁରୁଷ** (Man and Woman), ଯାହାର ବର୍ଣ୍ଣ ପ୍ରୟୋଗ ଓ ରେଖାର ସାବଳୀଳତା ଏ ଦେଶର ମାଟି, ପାଣି ଓ ପବନ ସଙ୍ଗରେ ଏକାତ୍ମ ହୋଇ ବଡ଼ ଆପଣାର ହୋଇପାରିଛି । ଛବିଟିରେ ଭାରତୀୟ ପଟ୍ଟଚିତ୍ରର ପ୍ରଭାବ ସାଙ୍ଗରେ ମିଶିଛି ଓଡ଼ିଶାର ପତିତପାବନଙ୍କର ରୈଖିକ ଅଙ୍କନର ଧାରା ।

ସରାଜ୍ୟ ୧୭.୯.୭୧, ଶୁକ୍ରବାରରେ ପ୍ରକାଶିତ ଚିତ୍ର ପ୍ରଦର୍ଶନୀର ସମୀକ୍ଷା ।

Digitized by srujanika@gmail.com

ଅଜିତ୍ ଦାସ

## ଦିନନାଥ ପାଠୀଙ୍କ ଏକକ ଚିତ୍ର ପ୍ରଦର୍ଶନୀ

ଆଜି ପରିବେଶର ଚଟାଣ ଉପରେ ବସି ଜୀବନର ଗତିକୁ ଲକ୍ଷ୍ୟ କଲେ ବଞ୍ଚି ରହିବାର ହାଟସଉଦା ପାଇଁ ପ୍ରସ୍ତୁତ ଚିଠା ଆମର ଏତେ ଦୀର୍ଘ ହୁଏ ଯେ ସେ ଫର୍ଦ୍ଦକୁ ଆଉ ଥରେ ପଢ଼ିବା ପାଇଁ ବେଳ ମିଳେନା । ମନେହୁଏ ଲମ୍ଫ ଦେଇ ଏଇ ଆମର ହାତଅଙ୍କା ଛବିରୁ ନିଷ୍କୃତି ପାଇବା । ଟିକିଏ ଅନ୍ତତଃ ଆଲୁଅ ପାଇବା । ଗଣାଅଧିକେ ଖଣ୍ଡିଏ ଚିତ୍ର, ଭାସ୍କର୍ଯ୍ୟ ବା ସେମାନଙ୍କୁ ନେଇ ଗୋଟିଏ ପ୍ରଦର୍ଶନୀ ଗୋଟିଏ ଲମ୍ଫ ହେଇପାରେ ବା ସେଥିପାଇଁ ଏକ ପ୍ରସ୍ତୁତି ହେଇପାରେ ।

ଗତ ୨୨ ଓ ୨୩ ତାରିଖରେ ଓଡ଼ିଶାର ତରୁଣ କଳାସାଧକ ଦିନନାଥ ପାଠୀଙ୍କର ଏକ କଳା ପ୍ରଦର୍ଶନୀ ଭୁବନେଶ୍ୱରସ୍ଥ କସ୍ତୁରବା ନାରୀ ମହଲରେ ଆୟୋଜିତ ହୋଇ ସହସ୍ରାଧିକ କଳାପ୍ରେମୀ ଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରିପାରିଛି । ଏହାଦ୍ୱାରା ଶ୍ରୀ ପାଠୀଙ୍କର ଏକ ପ୍ରବହମାନ ପ୍ରତିଭାର ସ୍ପଷ୍ଟ ସୂଚନା ମିଳେ । ପ୍ରଦର୍ଶିତ ସମୁଦାୟ ଚିତ୍ର ସଂଖ୍ୟା ୨୦ ଏବଂ ଏ ମଧ୍ୟରୁ ୩ଟି ବାଦ ଦେଲେ ଅବଶିଷ୍ଟ ଚିତ୍ରଗୁଡ଼ିକ ଆଧୁନିକ ଚିତ୍ରଧାରାର ପ୍ରଜ୍ଞାପକ ।

ଯୁଦ୍ଧୋତ୍ତର କାଳରେ ମାନବ ଚେତନାର ଯେଉଁ ପରିବର୍ତ୍ତନ ଘଟିଛି ତାର ପ୍ରତିକ୍ରିୟାକୁ ପୃଷ୍ଠଭୂମି କରି ଆଧୁନିକ କାଳର କଳା ସୃଷ୍ଟ । ଆଧୁନିକ ପ୍ରୟୋଗବାଦୀ ଶିଳ୍ପୀମାନେ କଲର୍, ଟେକ୍‌ନିକ ଓ ଫର୍ମ୍‌ର ଯେଉଁ ପରୀକ୍ଷା ସବୁ ଚଳାଇଛନ୍ତି, ତାର ସଫଳତା କ୍ରମେ ନିକଟତର ହେଉଛି । ଆଧୁନିକ ଚିତ୍ରକଳାର ଆବେଗ, ଆବେଦନ ଓ ଆଭିମୁଖ୍ୟ ବ୍ୟକ୍ତିକୈନ୍ଦ୍ରିକ ହୋଇଥିଲେ ବି ଏହା ଯେ ସାମୂହିକ ସୃଷ୍ଟି ଗୌରବର ଅଧିକାରୀ ନୁହେଁ, କହିବା ଠିକ୍ ହେବ ନାହିଁ । ଏ ଯୁଗର କଳା ସାଧକ ନିଜ ଗାଁର ପାଣି ପାଗରେ ତୃପ୍ତ ହୋଇ ଅନ୍ୟ ଗାଁରେ ଝଡ଼ ହେଉଥିବା ବେଳେ ଶୋଇ ରହିବା ସମ୍ଭବ ନୁହେଁ । ସେ କାଳର ହୀରୋସୀମା ନାଗାସାକିର ଭୟାବହତା ଓ ଏବକାର ସାଧୀନ ପାଇଁ ମୁକ୍ତି ସଂଗ୍ରାମ ବିଶ୍ୱଜନ ଚେତନାକୁ ସ୍ପର୍ଶ କରିଛି । ତେଣୁ ଓଡ଼ିଶା ମାଟିରେ ଆଧୁନିକ ଚିତ୍ରକଳାର ପ୍ରଦର୍ଶନୀ ବିସ୍ମୟ ବୋଲି ଯୁକ୍ତି କରିବାର କୌଣସି ଯଥାର୍ଥତା ନାହିଁ । କଳା କ୍ଷେତ୍ରରେ ପରିବର୍ତ୍ତନ ସହିତ ଅବହିତ ରହି ଓଡ଼ିଶାର ଶିଳ୍ପୀମାନେ ସାଧନା ଆରମ୍ଭ କରିଛନ୍ତି । ଏ କ୍ଷେତ୍ରରେ ଶ୍ରୀ ପାଠୀ ଅନ୍ୟତମ । ତାଙ୍କର ପ୍ରଦର୍ଶିତ ଚିତ୍ରସମୂହରେ ବିଭିନ୍ନ (ism) ବାଦ ଓ ଟେକ୍‌ନିକ୍‌ର ଯେଉଁ ପରୀକ୍ଷା ଚଳାଇଚନ୍ତି ତାର ସଫଳତା ଯେ ନିକଟବର୍ତ୍ତୀ ହୋଇ ଆସୁଛି ଏଥିରେ ସନ୍ଦେହ ନାହିଁ ।

**ଶ୍ରୀ ପାଠୀଙ୍କର ସୃଷ୍ଟି-ମାନସର ଯେଉଁ ପରିଚୟ ତାଙ୍କ ପ୍ରଦର୍ଶିତ ଚିତ୍ର ମାଧ୍ୟମରୁ ମିଳିଲା ସେଥିରୁ ସ୍ପଷ୍ଟ ହୁଏ ଯେ, ସେ ପରମ୍ପରା ବିରୁଦ୍ଧରେ ଏକ ସଂଗ୍ରାମ ଆରମ୍ଭ ନକରି ସହଯୋଗିତାରେ ସଙ୍ଗଠନ ଆରମ୍ଭ କରିଛନ୍ତି । ଅନ୍ୟ କଥାରେ କହିବାକୁ ଗଲେ, ନିଜର କୃତିକୁ ଏକ ପରମ୍ପରାରେ ପରିଣତ କରିବା ପାଇଁ ଆପ୍ରାଣ ଚେଷ୍ଟା ଚଳାଇଛନ୍ତି ।** କଳା ସୃଷ୍ଟିର ରସଘନ ଆବେଗ ଚଞ୍ଚଳ ସୁମୁହୂର୍ତ୍ତକୁ ସେ ଯେଉଁ ବିଭିନ୍ନ ଧାରା ବା ismକୁ ଗ୍ରହଣ କରି ପ୍ରକାଶ କରିବାକୁ ଚେଷ୍ଟା କରିଛନ୍ତି ସେ ସବୁରେ ତାଙ୍କ ନିଜତ୍ୱ ବିକଶିତ ହୋଇଉଠିଛି ।

ପ୍ରଦର୍ଶିତ ୨୦ ଚିତ୍ର ମଧ୍ୟରୁ ୧୭ଟି ଆଧୁନିକ ଚିତ୍ରରେ ପାଠୀଙ୍କର ଚିତ୍ରଣ ଚାତୁରୀ, ଶୈଳୀ, ବର୍ଣ୍ଣବ୍ୟଞ୍ଜନା ଓ ଆଭିମୁଖ୍ୟର ସମ୍ୟକ୍ ପରିଚୟ ମିଳିବା ପରେ ପ୍ରତି ଦର୍ଶକ ତାଙ୍କର କୃତିରୁ କୃତିତ୍ୱ ଆଡ଼କୁ ଦୃଷ୍ଟି ପକାଏ ଏବଂ ଏତିକି ବେଳେ (Monk) **ସନ୍ନ୍ୟାସୀ**, (Under the Green wood Tree) **ସବୁଜ ବୃକ୍ଷର ଛାୟାରେ** ଓ (Forbidden Fruit) **ନିଷିଦ୍ଧ ଫଳ** ତିନୋଟି ଯାକ ଛବି ଗୋଟିଏ କ୍ରମରେ ଆବେଦନର ସ୍ୱାତନ୍ତ୍ର୍ୟ ପାଇଁ ଦର୍ଶକକୁ ମୁଗ୍ଧ କରେ । ଅନ୍ୟ ଏକ ଧାରାରେ (Reclining Figure) **ଶାୟିତ ମୂର୍ତ୍ତି ୧, ୨** ଓ (Lost Horizon) **ହଜିଲା ଦିଗନ୍ତ** ପାଠୀଙ୍କର impression ସବୁକୁ

Digitized by srujanika@gmail.com

ପାଠକ ସମ୍ମୁଖରେ ତୋଳି ଧରେ । **ହାର୍‌ଭେଷ୍ଟିଙ୍ଗସ ସଙ୍ଗସ୍,** (Man and Wife, Gossip-1, 2, 3 Embrace, Woman Folk) ପ୍ରଭୃତି ଛବିକୁ ଗୋଟିଏ ଶ୍ରେଣୀଭୁକ୍ତ କରାଯାଇପାରେ । Lights ଓ Fishing ଦୁଇଟି ଛବିରେ ଶିଳ୍ପୀ ସତ୍ୟକୁ ଶ୍ରେଷ୍ଠ ସ୍ଥାନ ଦେଇ ଆବରଣକୁ ନିମିତ୍ତ ମାତ୍ର କରିଥିବାରୁ ଏଇ ଛବି ଦୁଇଟି ଭିନ୍ନ ପ୍ରକାର ହୋଇଛି ।

Monk ଛବିଟି ବର୍ଣ୍ଣ ବ୍ୟଞ୍ଜନା ଓ ଫର୍ମ୍‌ପାଇଁ ପ୍ରତ୍ୟେକଙ୍କୁ ମୁଗ୍‌ଧ କରିପାରିବ । ବୌଦ୍ଧ ଭିକ୍ଷୁଙ୍କ ମୌନ, ନିର୍ବାକ ସ୍ଥିରତା, ୨୦୦୦ ବର୍ଷ ତଳର ସେହି ମହାମାନବ ବୁଦ୍ଧଙ୍କର ବାଣୀ, ଏ ସଂସାର ଦୁଃଖପୂର୍ଣ୍ଣ ବୋଲି ଦର୍ଶକଙ୍କୁ କହି ଦେଇଥାଏ ।

Forbidden Fruit (ନିଷିଦ୍ଧ ଫଳ) ତାଙ୍କର ଅନ୍ୟତମ ସଫଳ ସୃଷ୍ଟି । ଫ୍ରଏଡ଼ୀୟ ଯୌନ ଚେତନାର ସିମ୍ବଲ୍ ସାପ, ନିଜକୁ ଲୁଣ୍ଠିତ କରିବାର ଅକୁଣ୍ଠିତ କାମନା-ଜର୍ଜରିତ ଶାୟିତା ରମଣୀର ରମଣ ଆହ୍ୱାନ, ଓଲଡ୍ ଟେଷ୍ଟାମେଣ୍ଟର, ଇଭ, ନିଷିଦ୍ଧ ଫଳ ଓ ସହଜାତ କ୍ଷୁଧାକୁ ରୂପ ଦେବାରେ ଶ୍ରୀ ପାଠୀ ସଫଳତାର ଅନ୍ୟ ଏକ ପର୍ଯ୍ୟାୟରେ ପହଞ୍ଚିଛନ୍ତି ।

**ଅଣ୍ଡର୍ ଦ ଗ୍ରୀନ୍ ଉଡ୍ ଟ୍ରି,** ଛବିଟି ଆଧୁନିକ ମଣିଷର କ୍ଳାନ୍ତି, ବେଦନା ଓ ଅବସାଦର ଉପଶମ ପାଇଁ ଏକ ନିଶ୍ଚିତ ପାନ୍ଥଶାଳାର ସୂଚନା ଘେନି ଅଙ୍କିତ । ଏଠାରେ ଏକ ଚିରନ୍ତନ ସତ୍ୟର ପୁନରାବୃତ୍ତି ଘଟିଛି ତଥାପି ଛବିଟି ଅଭିନବ । **ରିକ୍ଳାଇନିଙ୍ଗ୍ ଫିଗର୍ସ ୧, ୨** ଏବଂ Lost Horizon **ହଜିଲା ଦିଗନ୍ତ** ଛବି ତିନୋଟିକୁ ଏକ ଇଂପ୍ରେସନ୍‌ର କ୍ରମିକ ପ୍ରକାଶ ବୋଲି କୁହାଯାଇପାରେ । ଏଇ ଛବି ତିନୋଟି ସର୍ବସାଧାରଣଙ୍କ ପାଇଁ ଆପାତତଃ ବୋଧ ନୁହେଁ । ତଥାପି ଏ ଛବି ତିନୋଟିର ଭାଷା ଏକ ଏବଂ ଏହା ଦର୍ଶକର ବୌଦ୍ଧିକ ଚିନ୍ତାର ଦ୍ୱାର ଉଦ୍‌ଘାଟନ କରିବାରେ ସମର୍ଥ । ପ୍ରଥମଟିରେ ମଣିଷର ଅସଂଲଗ୍ନ ସ୍ଥିତି, ଦ୍ୱିତୀୟ ଚିତ୍ରରେ ସ୍ଥିତିସ୍ଥାପକତାର ବ୍ୟବଚ୍ଛେଦ ଓ ତୃତୀୟ ଛବିରେ (ହଜିଲା ଦିଗନ୍ତ) ପ୍ରଭାବଶାଳୀ ପ୍ୟାଚ୍ ଓ ବର୍ଣ୍ଣବ୍ୟଞ୍ଜନାର ଉଜ୍ଜ୍ୱଳ ଗଭୀରତାରେ ସଞ୍ଚରିତ ଚେତନାର ତିନୋଟି ମୁହୂର୍ତ୍ତକୁ ରୂପାୟିତ କରିଛି । ଦିଗନ୍ତ ଦୁଇଟି ଇଲାକାର ସୀମାରେଖା । ଏ ରେଖାର ଗତି ସରଳ - ସରଳତାରୁ ବକ୍ର ଗତି ଏବଂ ପରିବର୍ତ୍ତନ ସିମ୍ବଲ୍‌ର ଲକ୍ଷ୍ୟ କିନ୍ତୁ ଅନେକ ଊର୍ଦ୍ଧ୍ୱ ସେ ଲକ୍ଷ୍ୟ ପରିତୃପ୍ତିର ବିଳୟରେ । ଏହି ତିନୋଟି ମାନସର ବିଭବକୁ ଶିଳ୍ପୀ ଧରି ରଖିବାର ଚେଷ୍ଟା କରିଛନ୍ତି ହଜିଲା ଦିଗନ୍ତରେ । କାରଣ ବର୍ତ୍ତମାନର ସରହଦରେ ଛିଡ଼ା ହେଲେ ଅତୀତ ଗୋଧୂଳି ଭଳି ଧୂସର, ଭବିଷ୍ୟତ ଶୀତ ସକାଳର କୁହୁଡ଼ି ଭଳି ଝାପ୍‌ସା ।

ସବୁଠୁ ଆଶ୍ଚର୍ଯ୍ୟର କଥା ପାଠୀଙ୍କର ଯେଉଁ ଛବି ସବୁ ପୂର୍ବେ ପ୍ରଦର୍ଶିତ ଓ ପୁରସ୍କୃତ, ତା' ଯେପରି ଅନାକାଂକ୍ଷିତ ଭାବରେ ପ୍ରଦର୍ଶନୀରେ ସ୍ଥାନ ପାଇଛନ୍ତି ବୋଲି ମନେ ହୁଏ । **ପରିପୂର୍ଣ୍ଣତା ଉଜ୍ଜ୍ୱଳତା ଓ ସିଦ୍ଧହସ୍ତତାରେ ସାକ୍ଷର ବହନ କରିଥିବା ନୂତନ ଛବିଗୁଡ଼ିକ ନିକଟରେ ପୂର୍ବର ସେ ଛବିଗୁଡ଼ିକ ସୁକୁମାର ଶିଶୁ ଭଳି ବଡ଼ ନିରୀହ ବୋଧ ହୁଅନ୍ତି । ପାଠୀଙ୍କ ସୃଷ୍ଟି କ୍ରମର ବିକାଶ କେତେ ଦ୍ରୁତ ତାହା ଏହି ଦୃଷ୍ଟାନ୍ତରୁ ଅନୁମିତ ।**

ଛବିଗୁଡ଼ିକରେ ଯେ ଦୁର୍ବଳତା ନାହିଁ, ତା ନୁହେଁ, **ମଙ୍କ୍** ଛବିରେ ଆଉ କିଛି ଆନନ୍ଦ ଆଲୋକର ଦୀପ୍ତି, ନିଷିଦ୍ଧ ଫଳରେ ରତ୍ୟାକାଙ୍‌କ୍ଷିଣୀ ରମଣୀଠାରେ ଲାବଣ୍ୟ ଆଳସ୍ୟର ବକ୍ରତା, ସବୁଜ ଛାୟା (Under the Green Wood Tree)ରେ କିଛି ସବୁଜିମା ଓ ଛାୟା ଶୀତଳ ପରିବେଶର ସୃଷ୍ଟି କରାଯାଇ ପାରିଥିଲେ ଛବିଗୁଡ଼ିକ ଅଧିକ ସୁନ୍ଦର ନିଶ୍ଚିତ ରୂପେ ହୋଇପାରିଥାନ୍ତା ।

ଶ୍ରୀ ପାଠୀଙ୍କ ଚିତ୍ରଗୁଡ଼ିକରେ ବହୁତ ନୂଆ ଟେକ୍‌ନିକ, ଫର୍ମ୍, ପାଟର୍ଣ୍ଣର ପ୍ରୟୋଗ ଓ ପରୀକ୍ଷା କରାଯାଇଛି । ଶିଳ୍ପୀ କେତେବେଳେ ସ୍ୟାଡ଼ିଷ୍ଟ, କେତେବେଳେ ମିଷ୍ଟିକ୍ କେତେବେଳେ ରୋମାଣ୍ଟିକ୍, କେତେବେଳେ ସର୍‌ରିୟଲିଷ୍ଟିକ୍ ହୋଇଥିଲେ ବି ଆବେଗର ଏକ୍‌ସ୍‌ପ୍ରେସନ୍ ସବୁ ବୋଧ ହୋଇ ପାରିଛି । ଦିନେ ଯେ ଶ୍ରୀ ପାଠୀଙ୍କର ସାଧନା ଜୟଶ୍ରୀ ମଣ୍ଡିତ ହେବ ଏଥିରେ ସନ୍ଦେହ ନାହିଁ ।

୧୯୭୧ କଳିଙ୍ଗରେ ପ୍ରକାଶିତ ଚିତ୍ର ପ୍ରଦର୍ଶନୀର ସମୀକ୍ଷା ।

Digitized by srujanika@gmail.com

**ଅନନ୍ତ ପଣ୍ଡା**

# ସମସାମୟିକ ଓଡ଼ିଆ ଶିଳ୍ପୀ ଦିନନାଥ ପାଠୀ

ଗତ ଫେବୃୟାରୀ ୨୫ ତାରିଖରୁ ତିନିଦିନ ଧରି ଭୁବନେଶ୍ୱର କଳାମଣ୍ଡପଠାରେ ତରୁଣ ଶିଳ୍ପୀ ଦିନନାଥ ପାଠୀଙ୍କର ଶହେଟି ଚିତ୍ରର ଏକକ ପ୍ରଦର୍ଶନୀ ସ୍ଥାନୀୟ ଗୋଦାବରୀଶ ସାହିତ୍ୟ ସଂସଦ ଆନୁକୂଲ୍ୟରେ ପରିବେଷଣ କରାଯାଇଥିଲା । **ଓଡ଼ିଶାରେ ଶହେଟି ଚିତ୍ରର ଏକକ ପ୍ରଦର୍ଶନୀ ବୋଧହୁଏ ଏହା ପ୍ରଥମ ।**

ଶ୍ରୀ ପାଠୀ ଗଞ୍ଜାମ ଜିଲ୍ଲା ଦିଗପହଣ୍ଡିରେ ୧୯୪୨ରେ ଜନ୍ମଗ୍ରହଣ କରି ମାଟ୍ରିକ୍ ପାଶ୍ ପରେ ୧୯୬୩ରେ ଓଡ଼ିଶା କଳାବିଦ୍ୟାଳୟ ଖଲ୍ଲିକୋଟରୁ ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ଶ୍ରେଣୀରେ ଚିତ୍ରକଳା ଡିପ୍ଲୋମା ଲାଭ କରନ୍ତି । ଖଲ୍ଲିକୋଟ ଆର୍ଟ୍ ସ୍କୁଲରେ ସେ ସର୍ବଦା ପ୍ରଥମ ହୋଇ ଆସୁଥିଲେ । **ଓଡ଼ିଶା ବାହାରେ ସର୍ବଭାରତୀୟ ସ୍ତରରେ ଫାଇନ୍ ଆର୍ଟ୍‌ସ୍ ଏକାଡ଼େମୀ କଲିକତା ତରଫରୁ ୧୯୬୨ରେ ସ୍ୱର୍ଣ୍ଣପଦକ ପାଇ ତାଙ୍କ ସମସାମୟିକ ଶିକ୍ଷକ ଓ ସହପାଠୀଙ୍କ ଭିତରେ ଏକ ନୂତନ ରେକର୍ଡ଼ ସୃଷ୍ଟି କରିଛନ୍ତି ।** ଶ୍ରୀ ପାଠୀ ଶିଳ୍ପୀ-ଜୀବନର ସହଜାତ ଦୈନ୍ୟର ଅନ୍ଧକାର ପରିବେଶ ମଧ୍ୟରୁ ଦିନନାଥ ପରି ଉଦୟ ହୋଇଥିଲେ । ବାଳକ ଅବସ୍ଥାରୁ ହିଁ ଚିତ୍ରଶିଳ୍ପୀ ବଡ଼ ଭାଇନାଙ୍କୁ ରଙ୍ଗ ବୋଳିବାଠାରୁ ଆରମ୍ଭ କରି ଚିତ୍ର ଆଙ୍କିବା ପର୍ଯ୍ୟନ୍ତ ସବୁଥିରେ ସାହାଯ୍ୟ କରିବାକୁ ଯାଇ ଚିତ୍ରଶିଳ୍ପୀର ତୁଳସୀପତ୍ର ପ୍ରମାଣ ଦେଖାଇଥିଲେ ।

ତାଙ୍କର ପ୍ରଦର୍ଶିତ ଶହେଟି ଚିତ୍ର ଭିତରୁ ତୈଳଚିତ୍ର ୩୮ଟି, **ଜଳରଙ୍ଗ ଛବି ୨୫ଟି,** ଡ୍ରଇଁ ଓ ସ୍କେଚ୍ ୩୧ଟି ଏବଂ ଭାରତୀୟ ରୀତିରେ ଅଙ୍କିତ ଚିତ୍ର ୬ଟି ଥିଲା । ସୂଚନା ପତ୍ରର ପ୍ରଥମ ଚିତ୍ରଟି ଶ୍ରୀ ପାଠୀଙ୍କ ସର୍ବପ୍ରଥମ ବିଜୟ ଗୌରବର ସାକ୍ଷର ବହନ କରି ସ୍ୱର୍ଣ୍ଣପଦକ ଲାଭ କରିଥିଲା ସର୍ବଭାରତୀୟ ସ୍ତରରେ । ଏ ହେଉଛି **ଫସଲ କଟାର ଗୀତ** ବା **ହାର୍‌ଭେଷ୍ଟିଙ୍ଗ୍ ସଙ୍ଗ୍‌ସ୍** ତୈଳଚିତ୍ରଟି ଦକ୍ଷିଣ ଓଡ଼ିଶାର କେଉଁ ଏକ ନିରୋଳା ପଲ୍ଲୀର ପାଚିଲା ଧାନ କ୍ଷେତ୍ରରେ ସୁନାର ଫସଲ କାଟିବା ବେଳେ ଯେଉଁ କୃଷକ ଦମ୍ପତି ଆନନ୍ଦରେ ଉନ୍ମତ୍ତ ହୋଇ ଗାଇ ଉଠିଥିଲେ ମନଫୁଲାଣିଆ ସଂଗୀତ, ସେଇ ରୌଦ୍ରସ୍ନାତଭୂମିର ମୁକ୍ତାଙ୍ଗନରେ କିଷାନ ଦମ୍ପତିର ଜୀବନ ରାଗଣୀର ଯେଉଁ ବିମୋହନ ମୂର୍ଚ୍ଛନା ଶିଳ୍ପୀପ୍ରାଣରେ ପ୍ରତିଧ୍ୱନି ତୋଳିଛି, ସମ୍ବେଦନଶୀଳ ଶିଳ୍ପୀର ଏ କୃତିଟି କେବଳ ତାରି ଶୈଳ୍ପିକ ପ୍ରତିକ୍ରିୟା । ଏଠାରେ ସପ୍ତସ୍ୱରରେ ସାଙ୍ଗୀତିକ ମାଧୁର୍ଯ୍ୟ ଖୋଜିଲେ ହୁଏତ ମିଳିବନି । କିନ୍ତୁ ଏଠାରେ ଜଣେ ପାଇବ କେବଳ ଅନୁଭୂତିର ପ୍ରତିକ୍ରିୟାର ଏକ ଦ୍ୱୈତ ପ୍ରତିଫଳନ । ଏ ଛବିର ସାର୍ଥକତା ହେଉଛି ରଙ୍ଗ ପ୍ରଲେପଗୁଡ଼ିକର ସୁସାମଞ୍ଜସ୍ୟତା, ବିଷୟବସ୍ତୁକୁ ଗୌଣକରି ଶିଳ୍ପୀର ନିର୍ଭୟ ବର୍ଣ୍ଣ ଲେପ ହିଁ ଏଠାରେ ମୁଖ୍ୟ ହୋଇଛି ଏବଂ ଏହା ଏକ ଦୁଃସାହସିକ ପ୍ରଚେଷ୍ଟା । ତଥାପି ଏହା ଏକ ସରଳ ଓ ସାବଲୀଳ ଅଙ୍କନ ହେଲେ ହେଁ ଅନୁସନ୍ଧିତ୍ସୁ ଦର୍ଶକକୁ ଅନେକ କିଛି କହିବାକୁ ଘରେଁ କାରଣ ଏ ଛବିଟିରେ ଖୋଜିବାର ରାସ୍ତା ଅନେକ କିଛି ଅଛି ।

ବିଭିନ୍ନ ପରୀକ୍ଷା ନିରୀକ୍ଷା ଭିତରେ ସମସାମୟିକ ଭାରତୀୟ ଚିତ୍ରରୀତିର ସର୍ବାଗ୍ର ସ୍ତରରେ ତାଳ ଦେଲାଭଳି ତାଙ୍କର ଆଉ କେତୋଟି ତୈଳଚିତ୍ର ହେଲା **ବିଶ୍ରାମେ, ଗ୍ରାମ୍ୟ ସ୍ତ୍ରୀ, କଂପୋଜିସନ୍ ୨ ଓ ୩, ବିଗତ ସ୍ମୃତି, ସନ୍ନ୍ୟାସୀ** ଏବଂ **ପଥରେ** ଇତ୍ୟାଦି ଛନ୍ଦପାତରେ ଅପୂର୍ବ ବର୍ଣ୍ଣ ନିର୍ବାଚନ ଓ ବର୍ଣ୍ଣ ପ୍ରଲେପନର ବିଚକ୍ଷଣତା ଏବଂ ସର୍ବୋପରି ରଚନା କୌଶଳରେ ନିର୍ଭୟ ଦୁଃସାହସିକତା ଦୃଷ୍ଟିରୁ ଉପରୋକ୍ତ ଛବିଗୁଡ଼ିକୁ କେବଳ ବାରମ୍ବାର ନିରୀକ୍ଷଣ କରିବା କଥା ।

ଆଜିକାଲି ଅନେକ ଚିତ୍ରଶିଳ୍ପୀ ଶିଳ୍ପ ରଚନା ନାଁରେ ତାଙ୍କ ଘରିପାଖେ କେବଳ ବିଦେଶୀ ଛାପା ଚିତ୍ରଗୁଡ଼ିକୁ ଘାଣ୍ଟିଚକଟି ତାକୁ ନିଜସ କରି ନେବାକୁ ଉଦ୍ୟମ କରୁଛନ୍ତି । କିନ୍ତୁ ସେମାନେ ଦିନନାଥଙ୍କର ଏ ଛବିଗୁଡ଼ିକୁ ଦେଖିଲେ ଅନ୍ତତଃ ଏତିକି ନିଶ୍ଚୟ ମାନିବେ ଯେ ସ୍ରଷ୍ଟାର ପ୍ରକୃତରେ ଯଦି ସ୍ୱାତନ୍ତ୍ର୍ୟ

Digitized by srujanika@gmail.com

ଥାଏ, ସୃଷ୍ଟି-ପ୍ରବଣତାର ପ୍ରକୃତ ଅଗ୍ନି ଯଦି ଅନ୍ତରରେ ଜାଜ୍ୱଲ୍ୟମାନ ଥାଏ, ତେବେ ଶିଳ୍ପ-ପରମ୍ପରା ରହିବ ହିଁ ରହିବ । ପରମ୍ପରାର ଅର୍ଥ ପୁନରାବୃତ୍ତି ନୁହେଁ । ପରମ୍ପରା ନାଁରେ ଭାରତୀୟତାରୁ ତେର ଛିଣ୍ଡାଇ ବିଦେଶାଗତ ଛବିକୁ ଆପଣାର କରି ବାହାଦୁରି ନେବାର ନ୍ୟୂନପଣର ଆବଶ୍ୟକତା ହିଁ ରହିବ ନାହିଁ, ଦିନନାଥ ପରି ସ୍ୱାତନ୍ତ୍ୟ ଥିବା ଚିତ୍ରଶିଳ୍ପୀଙ୍କର ।

ମାନସପଟରେ ଇନ୍ଦ୍ରିୟଗ୍ରାହ୍ୟ ବିଷୟବସ୍ତୁ ଓ ଅବୋଧ ରହସ୍ୟାନୁଭୂତି ଯେତେବେଳେ ଏକାକାର ହୋଇଛି ସେଇ ମୁହୂର୍ତ୍ତରେ ଶିଳ୍ପୀ ଦିନନାଥ ସୃଷ୍ଟି କରିଛନ୍ତି ତାଙ୍କର **ବିଗତ ସ୍ମୃତି** । **କମ୍ପୋଜିସନ ୧** ଓ **କଂପୋଜସନ ୩** ଆଦି ତୈଳଛବିଗୁଡ଼ିକ । ଏ ଛବିଗୁଡ଼ିକ ଏତେ ବଳିଷ୍ଠ ଅଥଚ ଏତେ ବିନମ୍ର ଯେ ସେଥିରୁ ପ୍ରକାରାନ୍ତରେ ଶିଳ୍ପୀଙ୍କ ବ୍ୟକ୍ତିତ୍ୱର ସୂଚନା ମିଳେ । ସଂପୂର୍ଣ୍ଣ ନିଜସ୍ୱ ଶୈଳୀରେ ଶ୍ରୀ ପାଠୀଙ୍କର ସ୍ୱଚ୍ଛନ୍ଦ ବର୍ଣ୍ଣଲେପନ ଭଙ୍ଗୀ ଓ ନିର୍ଭୀକ ପ୍ରଲେପ ପ୍ରୟୋଗ ନିମନ୍ତେ ଯେଉଁ ବୈପ୍ଳବିକ ପ୍ରୟାସ, ତାହା ନିଶ୍ଚିତ ରୂପେ ଅଭିନନ୍ଦନୀୟ ।

ଆନୁଷ୍ଠାନିକ ପ୍ରକରଣ ମଧ୍ୟରେ ପାଠୀଙ୍କର **କାଳିକାଇ** ଚିତ୍ରଟି ବେଶ୍ ଶକ୍ତିଶାଳୀ ଉଦ୍ୟମ ହେଲେ ବି ପରିପ୍ରେକ୍ଷତା ନିୟମ ଅନୁଯାୟୀ ସମ୍ମୁଖଭାଗସ୍ଥ ଡଙ୍ଗାଗୁଡ଼ିକର ଅନୁପାତ ବିଚାରରେ ଶିଳ୍ପୀଙ୍କ ଅସାବଧାନତା ଲୁଚିପାରି ନାହିଁ । ଏ ଅସାବଧାନତାରୁ ସେ ତାଙ୍କର **ଛାଗଳ ଯୂଥ** ଛବିରେ ମଧ୍ୟ ସଂପୂର୍ଣ୍ଣ ମୁକ୍ତ ନୁହନ୍ତି । ମାତ୍ର ତାଙ୍କର ଜଳରଙ୍ଗର ଆନୁଷ୍ଠାନିକ ଛବିର ସଂଖ୍ୟା ଅଳ୍ପ ହେଲେ ବି ଅପୂର୍ବ ।

ଯା'ପରେ ଆଖିରେ ପଡ଼େ ତାଙ୍କର ରୂପଚିତ୍ର ଓ ଭୂଦୃଶ୍ୟାବଳୀ । ଏଥିମଧ୍ୟରୁ କେତେକ ତାଙ୍କ ଛାତ୍ରାବସ୍ଥାର ନବୀନ ଅଙ୍କନ ପରି ସୂଚନା ମିଳୁଥିଲେ ବି ସମସାମୟିକ ଭୂଦୃଶ୍ୟକାର ଓ ରୂପଚିତ୍ରୀମାନଙ୍କର ଏକାନ୍ତ ନିରୀକ୍ଷଣୀୟ । ଏଇଥିରୁ ହିଁ ଶ୍ରୀ ପାଠୀଙ୍କ ସତନ୍ତ୍ର ଶିଳ୍ପକୃତିର ପରିଚୟ ସହଜରେ ମିଳେ । ନିତାନ୍ତ ସାଧାରଣ କଥାବସ୍ତୁକୁ ନେଇ ସେ ଅପୂର୍ବ ରୂପ ସୌଷ୍ଠବ ସୃଷ୍ଟି କରିପାରିଛନ୍ତି, ତାଙ୍କର ନିଜସ୍ୱ ବର୍ଣ୍ଣ ନିର୍ବାଚନ, ବସ୍ତୁ ନିର୍ବାଚନ ଓ ତୂଳୀ ସଞ୍ଚାଳନ ମାଧ୍ୟମରେ । ଆମଦେଶର କେତେକ ତଥାକଥିତ ମଡ଼ର୍ଣ୍ଣ ଆର୍ଟ୍ ମୁଖା ପିନ୍ଧିଥିବା 'ହଠାତ୍ ଶିଳ୍ପୀମାନଙ୍କ' ପକ୍ଷରେ ତାହା ଏକ ବିଡ଼ମ୍ବନା । **ନିଜ ସତ୍ତାକୁ ରକ୍ଷାକରି ଏକାଡ଼େମୀ ପଦ୍ଧତିର ବ୍ୟାକରଣ ନିୟମ ଭିତରେ ବି ନିଜର ଏକ ସମ୍ମାନଜନକ କୃତି ପ୍ରତିଷ୍ଠା କରାଯାଇପାରେ** ଏ ପରିପ୍ରେକ୍ଷୀରେ ତାଙ୍କର **ଷ୍ଟିଲ୍‌ଲାଇଫ୍, ପୋଟ୍ରେଟ୍** ଓ **ଲାଇଫ୍‌ଷ୍ଟଡ଼ି** ବ୍ୟାତିରେକେ **ଛାୟା, ମନ୍ଦିର ଦ୍ୱାର** ଓ **ଗଳି** ଇତ୍ୟାଦି କେତେକ ରଚନା କୃତି ତାର ଉଲ୍ଲେଖନୀୟ ପ୍ରମାଣ ବହନ କରେ ।

**କେବଳ ପ୍ରକାଣ୍ଡ କାନଭାସ ଉପରେ ଗୋଡ଼ି ବାଲି ବା କିରୋସିନିର ନିର୍ବୋଧ ଅତ୍ୟାଚାର କରି ଯଦି ରାତାରାତି କେହି ଶ୍ରେଷ୍ଠ ଶିଳ୍ପୀ ହେବାର ଦିବାସ୍ୱପ୍ନ ଦେଖୁଥାନ୍ତି ତେବେ ସେମାନେ ମନେ ରଖିବା ଉଚିତ ଯେ ଆମ ଦେଶର ଶିଳ୍ପୀ ଓ ଶିଳ୍ପାନୁମୋଦୀ ସମାଲୋଚକ ଏବେ ଜାଗ୍ରତ । ସେମାନଙ୍କ ଶାଣିତ ଦୃଷ୍ଟି ସମ୍ମୁଖରେ ଦୁର୍ବଳ ଚିତ୍ରାଙ୍କନ କରି ବାହାଦୁରି ନେବା ହୁଏତ ଚୂଡ଼ାନ୍ତ ବିଡ଼ମ୍ବନା ।**

ଏକ ଉଦାହରଣ ତାଙ୍କର ସ୍କେଚ୍, ସ୍କେଚ୍‌ଗୁଡ଼ିକ ତାଙ୍କ ପ୍ରଚଣ୍ଡ ଦକ୍ଷତାର ଆଶ୍ଚର୍ଯ୍ୟ ନିଦର୍ଶନ । ଶ୍ରୀ ପାଠୀଙ୍କର ବହୁମୁଖୀ ପ୍ରତିଭାର ଅନ୍ୟ ଦୃଷ୍ଟାନ୍ତ - ଭାରତୀୟ ପାରମ୍ପରିକ ରୀତିରେ ଅଙ୍କିତ **ବସନ୍ତ - ଘମେ** ଏକ **ସପ୍ନର ସଂସାର, ସତୀ, ସୀତା ସୟମ୍ବର** ଓ ଲୋକନୃତ୍ୟ ଆଦି ଇଣ୍ଡିଆନ୍ ପେଣ୍ଟିଂଗୁଡ଼ିକ ।

ସମଗ୍ର ପ୍ରଦର୍ଶନୀ ପରିକ୍ରମଣ ପରେ ଅକୁଣ୍ଠଭାବେ ଏହା ନିଶ୍ଚୟ ସ୍ୱୀକାର କରାଯାଇପାରେ ଯେ ଓଡ଼ିଶାର ସମସାମୟିକ ଚିତ୍ରଶିଳ୍ପୀମାନଙ୍କ ମଧ୍ୟରେ ପ୍ରଚୁର ମୌଳିକ ସମ୍ଭାବନା ଓ ଉଦ୍ୟମ ଶକ୍ତିର ଶପଥ ନେଇ ଏହି ଚତୁର୍ବିଂଶବର୍ଷୀୟ ତରୁଣ ଶିଳ୍ପୀ ଦିନନାଥ ପାଠୀ ଏକ ସର୍ବାଗ୍ର ପ୍ରତିଭା, ଯାହାଙ୍କ ଭିତରେ ପାରମ୍ପରିକତା, ଆନୁଷ୍ଠାନିକତା ଓ ଆଧୁନିକତାର ଏକ ଅପୂର୍ବ ସମନ୍ୱୟ ସଂଘଟିତ ହୋଇପାରିଛି ।

୧୯୬୬ ମସିହାରେ ପ୍ରକାଶିତ ଚିତ୍ର ପ୍ରଦର୍ଶନୀର ସମୀକ୍ଷା ।

Digitized by srujanika@gmail.com

## ଦେବରାଜ ସାହୁ

# ଆମ କଳାକାର ଜୀବନ ରଙ୍ଗମଞ୍ଚର

ଜୀବନଟା ଏକ ବାସ୍ତବ ରଙ୍ଗମଞ୍ଚ । ରଙ୍ଗମଞ୍ଚରେ ଅଭିନେତା-ଅଭିନେତ୍ରୀ ନିଜର ଅଭିନୟ ପ୍ରଦର୍ଶନ କରିଥାନ୍ତି । ସେଇ ଅଭିନୟ କୃତ୍ରିମ, ଅବାସ୍ତବ । ଦର୍ଶକମାନଙ୍କ ପାଇଁ ଅଭିନୟ କରାଯାଇଥାଏ । କିନ୍ତୁ ଏଇ ଜୀବନ ରଙ୍ଗମଞ୍ଚରେ ପ୍ରତ୍ୟେକ ମଣିଷ ବାସ୍ତବ ଅଭିନୟ କରି ଚାଲିଥାଏ । ଜଣେ ଅଭିନେତା ଯେପରି କେତେବେଳେ ପିଲା ତ କେତେବେଳେ ହୀରୋ, କେତେବେଳେ ହୀରୋଇନ୍ ତ କେତେବେଳେ ଭିଲିଆନ୍ ଭୂମିକାରେ ଅଭିନୟ କରେ । ସେପରି ଜୀବନ ରଙ୍ଗମଞ୍ଚର କଳାକାର ଆରମ୍ଭ କରେ ତାର ପ୍ରଥମ ଦୃଶ୍ୟ, ବାଲିମାଟି ଖେଳରୁ । ସତରେ ସେଇ ପିଲାଦିନର ବାଲିମାଟି କାଦୁଅ ପଙ୍କ ଖେଳ ମନେ ପଡ଼ିଲେ ପୁଣି ପିଲା ହେଇଯିବାକୁ ଇଚ୍ଛାହୁଏ । ଏବେ ବି ଗାଁ ଦାଣ୍ଡରେ ଲଙ୍ଗଳା ପୁଅ ଝିଅଙ୍କ ଖେଳ ପାଣି କାଦୁଅରେ ଚଲବଲ ହୋଇ ସାଙ୍ଗସାଥି ହୋଇ ଖୁସିରେ ଖେଳିବା ଦେଖିଲେ ଭାରି ଈର୍ଷା ଲାଗେ । ସତରେ ପିଲାଦିନଟି କେତେ ଆନନ୍ଦଦାୟକ ନଥିଲା । ନାହିଁ ଚିନ୍ତା, ନାହିଁ ବିଷାଦ, ନାହିଁ ଯନ୍ତ୍ରଣା, ନାହିଁ ହତାଶ । ଖାଲି ଭରପୂର ଆନନ୍ଦ ।

ତା'ପର ଦୃଶ୍ୟରେ ଗାଁ ଚାଟଶାଳୀ ପାଠ । ମନେଅଛି ବଡ଼ି ସକାଳୁ କାଠପଟା ଖଣ୍ଡେ ଏବଂ ଗୋଟା ଖଡ଼ି ମୁଣ୍ଡାଧରି ଚାଟଶାଳୀକୁ ଦୌଡ଼ିବା । ଡେରିରେ ଗଲେ ଅବଧାନଙ୍କର ବେତମାଡ଼ । ସେଇ ବେତମାଡ଼ ଖାଇବା ପାଇଁ ଇଚ୍ଛା ବିରୁଦ୍ଧରେ ହାତ ପତେଇବାକୁ ପଡ଼େ । ପଣିକିଆ, ବର୍ଣ୍ଣବୋଧ ସବୁ ଯେମିତି ମୁଖସ୍ଥ କରିବାକୁ ହେବ । ବର୍ଣ୍ଣବୋଧ ବହିରେ 'ଅରଣା ମଇଁଷି ରହିଛି ଅନାଇ, ମଇଁଷିର ପାଖ ନଯାଅ ଦନାଇ' । 'ମାଙ୍କଡ଼ ଖାଏ କାଙ୍କଡ଼ କଷି-ବାଙ୍କ ବାବୁଙ୍କ ବାଡ଼ିରେ ପଶି .......' ବର୍ଣ୍ଣବୋଧ ବହିରେ ଥିବା ଚିତ୍ର ଦେଖିଲେ ଭାରି ଭଲ ଲାଗେ । ଇଚ୍ଛା ହୁଏ ସେଇଭଳି ଚିତ୍ର କରିବା ପାଇଁ । ଖାତାରେ ପାଠ ଲେଖା ସାଥିରେ ବେଳେବେଳେ ଚିତ୍ର ଗାରେଇ ହୋଇଯାଏ । ଅବଧାନ ବାଡ଼ାନ୍ତି । ବୋଧହୁଏ ଚିତ୍ରଗୁଡ଼ିକ ତାଙ୍କ ମନକୁ ପାଏନି । ଚାଟଶାଳୀ ପାଠ ପରେ ପରେ ବୟସ ହୋଇଯାଇଥାଏ-ଛଅ ବର୍ଷ । ପ୍ରାଥମିକ ସ୍କୁଲରେ ନାମଲେଖାଯିବ । ନୂଆ ପ୍ୟାଣ୍ଟ ସାର୍ଟ ପିନ୍ଧି ମୁଣ୍ଡକୁ ଚିକ୍କଣ କରି କୁଣ୍ଡେଇ ସ୍କୁଲକୁ ଯିବାକୁ ପଡ଼େ । ସ୍କୁଲରେ ପିଲାଙ୍କ ଭିତରେ ମିଳାମିଶା, ସାଙ୍ଗସାଥି ଖେଳକୁଦ ସାଥିରେ ପାଠପଢ଼ାବି ଚାଲେ । ଶ୍ରେଣୀରେ ଡ୍ରଇଁ ଶିଖାଯାଏ । ହସ୍ତକର୍ମ ବି ଥାଏ । ମାଟିରେ ଆମ୍ବ, ପିଚୁଳି, ଭେଣ୍ଡି, ଜହ୍ନି ତିଆରି କରି ସ୍କୁଲକୁ ନେବାକୁ ପଡ଼େ । ଏଇସବୁ ମାଟି କାମ ଅନ୍ୟ ପିଲାମାନଙ୍କ ପାଇଁ କରିଦେଲେ କାହାଠାରୁ ଆଚାର, କାହାଠାରୁ ପିଠା, କାହାଠାରୁ ଗୁଡ଼ିଆ ଦୋକାନର ବରା ଗୁଲୁଗୁଲା ଖାଇବାକୁ ମିଳେ । କେବେ କିମିତି କୋଉ ପିଲା ସାଥିରେ ମାଡ଼ ପିଟା ରାଗରୁଷା ହୋଇଯାଇଥାଏ ତ ଆଉବେଳେ କାମ ପଡ଼ିଲେ ସେମାନେ ଆସି ମିଶିଯାନ୍ତି । କହନ୍ତି, 'ଦେବ ନନା ଆମେ ଆଉ କଳି ଲାଗିବାନି' । 'ଆଜିଠାରୁ ସାଙ୍ଗ, ପକ୍କା ସାଙ୍ଗ ।' ସେଇ ପିଲା ପାଇଁ ବିନା ଲାଞ୍ଚରେ କାମ କରି ତା' ମନରେ ଆନନ୍ଦ ଦେଇ ନିଜେ ଖୁସି ହେବାକୁ ଭଲ ଲାଗେ । ବାର୍ଷିକ ପରୀକ୍ଷାରେ ପାଠପଢାରେ ଭଲ ନମ୍ବର ଆସେ । ଡ୍ରଇଁରେ ସମସ୍ତଙ୍କ ଠାରୁ ଅଧିକ ନମ୍ବର ଆସେ । ମନଟା ଫୁଲି ଉଠେ । ଘର କାନ୍ଥ ବାଡ଼ରେ ଖଡ଼ିଆ ଗାରି କରି ଭରି କରିଦିଏ । ବାପା ଟିକେ ବିରକ୍ତ ହୁଅନ୍ତି । କିନ୍ତୁ ମା ସାଇପଡ଼ିଶାଙ୍କୁ ଡାକି ଦେଖାଏ । ମା ମାଟିରେ ବର କନିଆ ତିଆରି କରେ । ତାକୁ ଧାନ, ମୁଗ, କୋଳଥ ଲଗେଇ ଗହଣା କରେ, ଚିରାକନା ପିନ୍ଧେଇ ବର କନିଆକୁ ସଜାଏ । ସେ ସବୁ ଦେଖି ମାଟିରେ ସେଇଭଳି କରିବା ସହ ନିଜେ ବର କନିଆ ବେଶ ହୋଇ ସାଙ୍ଗ ସାଥିରେ ବୋହୂବୋହୂକା ଖେଳ ଏବେବି ମନେଅଛି । ଗାଁରେ ଦଣ୍ଡନାଟ, ରାମଲୀଳା, ରାସଲୀଳା ଇତ୍ୟାଦି ହୁଏ । ନାଟ ପରେ ପରେ ଆରମ୍ଭ ହୋଇଯାଏ ଆମର ଦଣ୍ଡନାଟ, ରାମଲୀଳା ଏବଂ ରାସଲୀଳା । କାଗଜ ମୁଖା କରି ମୁଣ୍ଡରେ ବାନ୍ଧି ଦୁଆରେ ଦୁଆରେ ନାଚିଲେ ଲୋକେ ଖୁସିରେ ପଇସା ଦିଅନ୍ତି । ପଇସା ଜମିଗଲେ ଭୋଜି ହୁଏ । ସବୁ ନିଜ ହାତରେ କରିବାକୁ ପଡ଼େ । ଏ ବେଳକୁ ପ୍ରାଥମିକ ପାଠପଢ଼ା ସରିଯାଇଥାଏ ।

Digitized by srujanika@gmail.com

ତା'ପର ଦୃଶ୍ୟ-ହାଇସ୍କୁଲ ପାଠପଢ଼ା, ଇଂରାଜୀ, ସଂସ୍କୃତ ଶିଖିବାକୁ ଯେତିକି ଆଗ୍ରହ ଲାଗେ ସେତିକି ଭୟ ବି ଲାଗେ । ଏଲ୍‌ଜେବ୍ରା ମୋଟେ ମୁଣ୍ଡରେ ପଶେନି । ହାଇସ୍କୁଲରେ ପଢ଼ିଲା ବେଳକୁ ଭାରି ଜାଣିବା ଶୁଣିବା ଭଳି ଲାଗେ । ଇଚ୍ଛାହୁଏ ସବୁ ଆଡ଼କୁ ଗୋଡ଼ ବଢ଼େଇ ଦେବାପାଇଁ । ସ୍କୁଲରେ ଗଣେଶ ପୂଜା, ସରସତୀ ପୂଜା ଦାୟିତ୍ୱ ମୋରି ଉପରେ ପଡ଼େ । ମୂର୍ତ୍ତିଗଢ଼ିବା ଠାରୁ ସାଜ ସଜ୍ଜା ସବୁ କରି ସାର୍ ଏବଂ ପିଲାଙ୍କର ଭାରି ଆଦରର ହୋଇଯାଏ । ଏଇ କାମ ଯୋଗୁଁ ମୋତେ ସମସ୍ତେ ଭଲ ପାଆନ୍ତି । ସ୍କୁଲରେ ବାର୍ଷିକ ଉତ୍ସବ ହୁଏ । ଡ୍ରାମା ଭେରାଇଟି ସୋ ହୁଏ । ଡ୍ରାମାରେ ନାରୀ ଭୂମିକାରେ ପାର୍ଟ୍‌କରି ପ୍ରଥମ ପୁରସ୍କାର ମିଳେ । ଡ୍ରଇଁରେ ପ୍ରଥମ ପୁରସ୍କାର ମିଳେ । ଉତ୍ତମ ବ୍ୟବହାରରେ ମଧ୍ୟ ପ୍ରଥମ ପୁରସ୍କାର ମିଳେ । ସାର୍‌ମାନେ ମୋତେ କହନ୍ତି ମୁଁ ବଡ଼ହେଲେ ଏକ ବଡ଼ ଶିଳ୍ପୀ ହେବି । ଛାତି କୁଣ୍ଢେମୋଟ ହୋଇଯାଏ । ହେଲେ କି ଶିଳ୍ପୀ ହେବି ? ଚିତ୍ରଶିଳ୍ପୀ, ନୃତ୍ୟଶିଳ୍ପୀ, ଅଭିନେତା ନା କଣ୍ଠଶିଳ୍ପୀ । ପିଲାଦିନେ ନାଚିବା ଏବଂ ଗାଇବାରେ ମଧ୍ୟ ସମସ୍ତଙ୍କ ଠାରୁ ଉଚ୍ଚରେ ଥିଲି । ହାଇସ୍କୁଲ ପାଠପଢା ସରିଲା । ୧୯୫୮ରେ ମାଟ୍ରିକ୍ ପାସ୍ କଲି ଦ୍ୱିତୀୟ ଶ୍ରେଣୀରେ । ବର୍ତ୍ତମାନ କ'ଣ କରିବି, କଲେଜରେ ପଢ଼ିବି ! ବାପାଙ୍କର ଇଚ୍ଛାଥିଲା ମୋତେ ବହୁତ ପଢ଼େଇବେ ମାନେ ବି.ଏ ପର୍ଯ୍ୟନ୍ତ ପଢ଼େଇବେ, କାରଣ ସେତେବେଳେ ବି.ଏ ପାସ୍ କରିବା ମାନେ ଭାରି ପାଠ ପଢୁଆ ବୋଲି ଭାବୁଥିଲେ । ଆମର ଘରର ଚଳଣି ମଧ୍ୟ ସଚ୍ଛଳ ଥିଲା । ଯାହାହେଉ କହିବେ, ଲକ୍ଷ୍ମଣ ସାହୁ ତା' ପୁଅକୁ ଗୋଟେ ଗ୍ରାଜୁଏଟ୍ କରିଦେଲା । କିନ୍ତୁ ଇଚ୍ଛା ହେଲାନି ସାଧାରଣ କଲେଜରେ ପଢ଼ିବା ପାଇଁ । ଇଚ୍ଛାହେଲା ଶାନ୍ତିନିକେତନରେ ଯାଇ କଳାଶିକ୍ଷା କରିବି । ସେତେବେଳେ ମୁଁ ଜାଣିନଥିଲି ଯେ ଖଲ୍ଲିକୋଟରେ ଏକ ଆର୍ଟ୍ କଲେଜ ଅଛି ବୋଲି । ହାଇସ୍କୁଲର ସଂସ୍କୃତ ପଣ୍ଡିତ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମିଶ୍ର ତାଙ୍କ ଶ୍ୱଶୁର ଘର ଖଲ୍ଲିକୋଟରେ । ସେ ପରାମର୍ଶ ଦେଲେ ଖଲ୍ଲିକୋଟରେ ପଢ଼ିବା ପାଇଁ । ଖଲ୍ଲିକୋଟରୁ ଫର୍ମ୍ ଏବଂ ପ୍ରସ୍ପେକ୍ଟସ୍ ନିଜେ ଆଣି ପୂରଣ କରି ମୋତେ କହିଲେ ଦସ୍ତଖତ କରିବା ପାଇଁ । ତା'ପରେ ସେ ଫର୍ମ୍ ମଧ୍ୟ ନିଜେ ଖଲ୍ଲିକୋଟ କଲେଜରେ ଦେଲେ । ଅପେକ୍ଷା କଲି ଇଣ୍ଟରଭ୍ୟୁକୁ । ଭାରି ଭୟ ଲାଗୁଥାଏ । କେବେ ବାହାରକୁ ଯାଇନି । ଟ୍ରେନ୍‌ରେ କି ବସ୍‌ରେ ବସିନି । ଇଣ୍ଟିମେସନ୍ ଆସିଲା - ଖୁସି ଲାଗିଲା ଯେତିକି, ଭୟ ବି ଲାଗିଲା ତାଠାରୁ ଅଧିକ ।

ଏଇ ଦୃଶ୍ୟରୁ ଆରମ୍ଭ ହେଲା ମୋର ଶିଳ୍ପୀ ଜୀବନର ପ୍ରଥମ ପାହାଚ ଚଢ଼ା । ଖଣ୍ଡେ ହାଫ୍‌ପ୍ୟାଣ୍ଟ, ସାର୍ଟ୍ ଏବଂ ସାଥିରେ କିଛି କରିଥିବା ଡ୍ରଇଁଚିତ୍ର ନେଇ ମା ମଣିନାଗଙ୍କୁ ଗୋଟେ ମୁଣ୍ଡିଆ ମାରି ବସ୍‌ରେ ବାହାରି ପଡ଼ିଲି ଖଲ୍ଲିକୋଟ ଅଭିମୁଖେ । ଚନ୍ଦପୁର ଠାରୁ ବସ୍‌ରେ ଚଢ଼ି ଟାଙ୍ଗି, ବାଲୁଗାଁ ତା'ପରେ କେଶପୁର ଚିଲିକା, ପାହାଡ଼ ଦେଖି ଭାରି ଖୁସି ଲାଗେ । ପହଞ୍ଚିଲି ଖଲ୍ଲିକୋଟ ବଜାର ଭିତରେ । କାଁ ଭାଁ ଦୁଇ, ତିନୋଟି ଚା' ଦୋକାନ । ଭୋକ ହେଉ ଥାଏ । ଗୋଟେ ହୋଟେଲକୁ ଗଲି । ଭଙ୍ଗା ଚୌକି ଆଉ ଧଡଡ଼ା ବେଞ୍ଚ ପଡ଼ିଛି । ହୋଟେଲ ଭିତରେ ମଧ୍ୟ କାଦୁଅ ସଳ ବଳ । ବସି ପଡ଼ିଲି ଖାଇବା ପାଇଁ ଅରୁଆ ଭାତ, ପାଣିଆ ଡାଲି, କୁନ୍ଦୁରି ଭଜା, କାକୁଡ଼ି ତରକାରି ତା ସାଥିକି ଘରୁ । ଖାନାଟା ନୂଆ, ତଥାପି ଭଲ ଲାଗିଲା । ରାଗରେ କାନମୁଣ୍ଡା ଭାଁଭାଁ ହୋଇଯାଉଥାଏ । ତା'ପରେ ପଚାରି ଖଲ୍ଲିକୋଟ କଲେଜକୁ ଯିବା କଥା । ପ୍ରଥମେ ଜଣେ ପିଲାକୁ ଦେଖିଲି । ହାତରେ କ'ଣ ଡ୍ରଇଁ କାଗଜ ଭଳି ଗୁଡ଼େଇ ଧରିଛି । କିନ୍ତୁ ଫୁଲ୍‌ପ୍ୟାଣ୍ଟ ପିନ୍ଧିଛି । ଡରି ଡରି ପଚାରିଲି ଆଚ୍ଛା ଆର୍ଟ୍ କଲେଜଟା କୁଆଡ଼େ । ସେ କହିଲା ତୁମେ କଣ ଇଣ୍ଟରଭ୍ୟୁ ଦେବାକୁ ଆସିଛ ? ମୁଁ ହଁ ଭରିଲି । ସେ କହିଲା ମୁଁ ବି ଆସିଛି ଇଣ୍ଟରଭ୍ୟୁ ଦେବାକୁ । ମୋତେ ସେ ପଚାରିଲା ତୁମର ନାମ କ'ଣ । ମୁଁ ପଚାରିଲି ତୁମର ନାମ କ'ଣ । ସେ କହିଲା ମୋ ନା ଚନ୍ଦ୍ରଶେଖର ରାଓ ଆଉ ମୁଁ କହିଲି ମୋ ନା ଦେବରାଜ ସାହୁ ।

ଦୁହେଁ ଆର୍ଟ୍ କଲେଜ ଆଡ଼େ ମୁହାଁଇଲୁ । ଦେଖିଲୁ ବୟସ୍କ ପିଲା କିଛି ଇଣ୍ଟରଭ୍ୟୁ ଦେବାପାଇଁ ଆସିଛନ୍ତି । ଲୁଗା ପଟା ପିନ୍ଧି ପୁଅ ଝିଅର ବୋପା ଭଳି ଦିଶୁଛନ୍ତି । ଏମାନେ ପଢ଼ିବେ ନା ଯାଙ୍କ ପିଲା କିଏ ପଢ଼ିବେ ! ବୋଧ ହୁଏ ପିଲାଙ୍କୁ ଧରି ଆସିଥିବେ । ଦେଖିଲୁ ସେଇମାନେ ଆମ ସାଥିରେ ଇଣ୍ଟରଭ୍ୟୁରେ ବସିଲେ । ପ୍ରଥମେ ଗୋଟେ ସିମେଣ୍ଟ ମୂର୍ତ୍ତି ଆମ ପାଖରେ ଥୁଆହେଲା ଦେଖି କରିବା ପାଇଁ । ସ୍ତ୍ରୀ ଲୋକଟେ ଅଳତା ଲଗଉଛି । ସେ ମୂର୍ତ୍ତି ଏବେ ବି ଆଖି ଆଗରେ ନାଚି ଉଠୁଛି । ତା ମୁହଁ, ତା ଭଙ୍ଗି ସବୁ ଯେମିତି ଜୀବନ୍ତ ଭଳି ମନେ ହେଉଥିଲା । ପ୍ରିନ୍‌ସିପାଲ୍‌ଙ୍କୁ ଦେଖିଲେ ଭୟ ଲାଗୁଥିଲା

Digitized by srujanika@gmail.com

। କାରଣ ସେ ଯେତେବେଳେ କଲେଜ ଭିତରକୁ ପ୍ରବେଶ କରନ୍ତି ସବୁ ପିଅନ ଜମାଦାର ରାଜାଙ୍କୁ ସାଲୁଟ୍ ମାରିଲା ଭଳି ସମ୍ମାନ ଦିଅନ୍ତି । କଥାର ଗୋଟେ ଗାମ୍ଭୀର୍ଯ୍ୟ ଅଛି । ଚାଲି ଚଳଣି, ସବୁ ଯେମିତି ଜଣେ ରଜାପରି । ରାଜ ଦରବାରର ଏଇ ବୋଧହୁଏ ରଜା । ପରେ ଜାଣିଲୁ ସେ ପ୍ରିନ୍ସପାଲ୍ । ଇଣ୍ଟରଭ୍ୟୁ ସରିଲା .... ଗାଁକୁ ଫେରିବା କଥା । ଯିଏ ଯୁଆଡ଼େ ଗଲେ । ଚନ୍ଦ୍ର ବାବୁ ଆଉ ମୁଁ ଶେଷକୁ ରହିଲୁ । ଗୋଟେ ଜାଗାରେ ବସି ଟିକେ ଦୁଃଖ ସୁଖ ହେଲୁ । ନିଜର ପରିବାର, ଘର ପରିସ୍ଥିତି ପାଠପଢ଼ା ସବୁ ବିଷୟରେ ପରିଚିତି ହୋଇଗଲା । ଚନ୍ଦ୍ର ବାବୁ ମୋତେ ବସ୍‌ରେ ବସେଇଦେଇ ତାଙ୍କ ବସ୍ ଧରିବା ପାଇଁ ଗଲେ । ଗୋଟେ କାଗଜରେ ଠିକଣା ଲେଖି ବଢ଼େଇ ଦେଲେ । ଚିଠି ନିଶ୍ଚୟ ଦେବ କହିଲେ । କେଜାଣି କାହିଁକି ବସ୍ ଛାଡ଼ିଲା ବେଳେ ତାଙ୍କ ମୁହଁକୁ ଦେଖି ମୋ ଆଖିରୁ ଲୁହ ଗଡ଼ିପଡ଼ିଲା । ତାଙ୍କ ଆଖି ମଧ୍ୟ ଲୁହରେ ଛଳ ଛଳ ହୋଇଗଲା ।

ଗାଁକୁ ଫେରିଲି । କିନ୍ତୁ ସବୁବେଳେ ସେଇ ଆର୍ଟ୍ କଲେଜ, ସେଇ ଅଳତା ନାଉଥିବା ମୂର୍ତ୍ତି, ପ୍ରିନ୍ସପାଲ୍ ଏବଂ ଚନ୍ଦ୍ରଶେଖର ରାଓ ସବୁ ମନେ ପଡୁଥାନ୍ତି । ଅପେକ୍ଷା କରିଥାଏ କେବେ ଆଡ୍‌ମିଶନ୍ ପାଇଁ ଚିଠି ଆସିବ । ସାଙ୍ଗ ସାଥିଙ୍କ ଆଗରେ କହି ବୁଲିଲି ଖଲ୍ଲିକୋଟରେ ଜଣେ ପିଲା ସାଥିରେ ପ୍ରଥମେ ଦେଖାହେଲା । ତା ସାଥିରେ ମୋର ଦୋସ୍ତିଟା ଠିକ୍ ଜମିବ । ମନେ ହେଲା ସେ ଠିକ୍ ମୋରି ଭଳି । ତା କଥା ବାର୍ତ୍ତାରୁ ଜଣା ପଡୁଥାଏ ତାକୁ ବି ନାଚ, ଅଭିନୟ ସବୁ ଆସୁଥିବ । ରାଓ ତେଲୁଗୁ ପିଲାଟା । କିନ୍ତୁ ମନେ ହେଉଥାଏ ସେ ଓଡ଼ିଆ ପିଲା । ତା'ର କଥାବାର୍ତ୍ତା ସବୁ ଯେମିତି ଓଡ଼ିଆ ପିଲାଭଳି । ଭାରି ଇଚ୍ଛା ଏବଂ ଉତ୍‌କଣ୍ଠା ହେଉଥାଏ କିପରି ଚନ୍ଦ୍ରଭାଇ ସାଥିରେ ମିଶିବି । କିଛିଦିନ ପରେ ଚିଠି ପାଇଲି ମୁଁ କଲେଜରେ ନାମ ଲେଖେଇବା ପାଇଁ ସିଲେକ୍ଟ ହୋଇଛି । ଯିବା ପାଇଁ ପ୍ରସ୍ତୁତ ହେଲି । ଘରେ ମୋ ମା ମୁଢ଼ି, ଚାଉଳ ଭଜା, ଆରିସା ପିଠା ଇତ୍ୟାଦି ତିଆରିଲା । ଝିଅ ଗୋଟେ ବାପଘରୁ ଶାଶୁ ଘରକୁ ଗଲାଭଳି, ମୁଁ ସତେ ଯିମିତି ଗାଁ ଘର, ସାଙ୍ଗସାଥୀ, ବାପା ମା' ଭାଇ ଭଉଣୀ ଛାଡ଼ି ବହୁ ଦୂରକୁ ଚାଲିଯାଉଛି । ଭାରି କାନ୍ଦ ଲାଗୁଥାଏ । ମୋ ବାପା ମା ସବୁ ବୁଝାଉଥାନ୍ତି । କହୁଥାନ୍ତି ଭଲ ନଲାଗିଲେ ଚାଲିଆସିବୁ । ଏଠାରେ କଲେଜରେ ପଢ଼ିବୁ । ସାଙ୍ଗସାଥୀମାନେ ବସ୍‌ରେ ବସିଲାବେଳେ ହାତକୁ ଭିଡ଼ି ଧରନ୍ତି । ସମସ୍ତେ ମନେ ପକାଇଦିଅନ୍ତି ଚିଠି ଦେବ । ଆସନ୍ତା ଡ୍ରାମାକୁ ମୁଁ ଭରସା ଦିଏ ନିଶ୍ଚୟ ଆସିବି । ମୋ ପାଇଁ ଗୋଟେ ଭଲ ପାର୍ଟ୍ ରଖିଥିବ ମୁଁ କହେ । ସେମାନେ କହନ୍ତି ତୁ ନଥିଲେ ଡ୍ରାମା କ'ଣ ହେବ, ନା ଜମିବ । ମୁଁ ନିଶ୍ଚୟ ଆସିବି । ବସ୍ ଗାଁ ଛାଡ଼ି ଚାନ୍ଦପୁର ଠାରେ ପହଞ୍ଚେ । ସେଠାରୁ ଆଉ ଏକ ବସ୍‌ରେ ବସି ଖଲ୍ଲିକୋଟ ଆସି ପହଞ୍ଚିଲି । ଚନ୍ଦ୍ର ରାଓଙ୍କୁ ପ୍ରଥମେ ଖୋଜିଲି । କ'ଣ ଚିଠି ତ ଦେଇଥିଲା ଆଜି ଆସି ପହଞ୍ଚିବ ବୋଲି କ'ଣ ହେଲା । ହଷ୍ଟେଲରେ ଯାଇ ଦରାଣ୍ଡିଗଲି । ସିନିୟର୍ ପିଲାମାନେ ଥାନ୍ତି । ରମେଶ ମହାନ୍ତି, ବ୍ରଜ ମିଶ୍ର, ଅକ୍ଷୟ ଦାସ, ଲଡୁ ସାମନ୍ତ, ନରସିଂହ ଦାସ, ପୂର୍ଣ୍ଣ ପ୍ରଧାନ ଇତ୍ୟାଦି କେତେ ପିଲା । ସେମାନଙ୍କ କାମ ସବୁ ସେତେବେଳେ ଦେଖି ମନରେ ନିଜ ପ୍ରତି ଗୋଟେ ହତୋତ୍ସାହ ଭାବ ଆସୁଥାଏ । ସତେ ଯେମିତି ଏପରି କାମ ମୋ ଦେଇ ହେବନି । ଇମିତି ସେମାନେ ବି ନିଜର ସାନଭାଇ ଭଳି ସ୍ନେହ ଆଦର କରିବାରେ ଲାଗିଲେ । ଖାଇବା ଶୋଇବାରେ କିଛି ଅସୁବିଧା ହେଲାନି । ତା ପରଦିନ ସକାଳୁ ଚନ୍ଦ୍ରଭାଇ ଆସି ପହଞ୍ଚିଲା । ସେ ବି ଖୋଜିଖୋଜି କରି ମୋ ପାଖରେ ହାଜର । ସାଥି ହୋଇ ଜିନିଷପତ୍ର ଗୋଟେ ଜାଗାରେ ରଖିଲୁ । ସେଇ ଦିନୁ ଆରମ୍ଭ ହେଲା ସାଥି ହୋଇ ବସିବା, ଯିବା, ଆସିବା, ଖାଇବା ପିଇବା ଏବଂ ଶୋଇବା ମଧ୍ୟ । ଗୋଟେ ଖଟରେ ଶୋଉଥାଉ କାରଣ ଆମର ରହିବାର ସ୍ଥାୟୀ ବ୍ୟବସ୍ଥା ହୋଇ ନଥାଏ । ଟିକିବାବୁ କଲେଜର ହେଡ୍‌କ୍ଲର୍କ । ତାଙ୍କରି ହାତରେ କଲେଜର ସବୁ ଦାୟିତ୍ୱ । ଯେତେବେଳେ ଆସିଲେ ପେଟଟାକୁ ମୋର ଚିପି ଦେଇ ଗେଲ କଲା ଭଳି ପଚାରନ୍ତି କ'ଣ କିଛି ଅସୁବିଧା ହେଉନାହିଁ ତ ? ଆଉ ତୁମର ଜିଗିରିଦୋସ୍ତ କୁଆଡ଼େ ଗଲା । କଲେଜର ପିଅନ୍ ଠାରୁ ଆରମ୍ଭ କରି ଲେକ୍‌ଚରର ମାନେ ଆମ ଦି' ଜଣଙ୍କୁ କାହିଁକି ଯେ ଏତେ ଭଲ ପାଆନ୍ତି ସମସ୍ତେ ଦେଖି ଈର୍ଷା କରନ୍ତି । କ୍ଲାସ୍‌ରେ କାମ ଦାମ ସବୁ ଠିକ୍ ମୁତାବକ ଚାଲିଲା । ଆମ କାମରେ ସମସ୍ତେ ଖୁସି । ରବି ସାର୍ ଆମ ଦି ଜଣଙ୍କୁ ଡାକି ପାଖରେ ବସେଇ ଗପସପ ସହ ଡିଜାଇନ୍, ଟେମ୍ପେରା, ୱାସ୍ ପେଣ୍ଟିଂ, ଡ୍ରଇଁ ସବୁ ଶିଖେଇବାକୁ ଲାଗିଲେ । ତା'ପରେ ଗଣେଶ ପୂଜା ହେଲା । ମୂର୍ତ୍ତି କଲେଜରେ ତିଆରି ହୁଏ । ରବି ସାର୍ ଆମ ଦି

Digitized by srujanika@gmail.com

ଜଣଙ୍କୁ ସାଥିରେ ଧରି ସବୁ ଡେକୋରେସନ୍ କାମ କରନ୍ତି । ମନେ ହେଉଥାଏ ପରିବେଶଟି ଭାରି ଭଲ । ଏଠାକାର ସାର୍, ପିଲା, ପିଅନ୍ ସମସ୍ତେ ଯେପରି ଭଲ । ଗାଁ, ଘର କଥା ବି ମନେ ପଡ଼େନି । ଗଣେଶ ପୂଜାକୁ ଭେରାଇଟ୍ ସୋ' ହେବ । ନାଚ ଗୀତ ସବୁ ହେବ । ଆମ ଦି' ଜଣଙ୍କ ଉପରେ ସମସ୍ତେ ପ୍ରେସର୍ ଦେଲେ ତୁମେ ନାଚ, ଗୀତରେ କିମ୍ୱା ଅଭିନୟରେ ଭାଗ ନିଅ । ମୁଁ କହିଲି ମୁଁ କିଛି ଜାଣିନି । ଚନ୍ଦ୍ର ବାବୁ କହିଲେ ସେ ବି କିଛି ଜାଣନ୍ତିନି । କିନ୍ତୁ ସମସ୍ତଙ୍କର ବାଧ୍ୟତା ଯୋଗୁଁ, ଶେଷରେ ପ୍ରିନ୍ସିପାଲ୍‌ଙ୍କ ଅନୁରୋଧ କ୍ରମେ ମୁଁ ନାଚିବାକୁ ରାଜି ହେଲି । ରବି ସାର୍ ମୋତେ ଏକ ଝିଅ ଭଳି ସଜେଇ ଦେଲେ । ସେତେବେଳେ ଚେହେରାଟା ଗୋଲ ଗାଲ୍ ଥାଏ । ମୁଣ୍ଡରେ ଗୋଛେ ବାଳ, ଷ୍ଟେଜ୍ ଉପରେ ଲାଇଟ୍, ମାଇକ୍ ସବୁ ଲାଗିଥାଏ । ବାଜାବାଲା ବି ଥାନ୍ତି । ମୁଁ ଏକ ସ୍ତ୍ରୀର ଗାଧୁଆ ଡ୍ୟାନ୍ସ ଦେଖେଇଲି । ତାଳି ଉପରେ ତାଳି ମାଡ଼ ଦର୍ଶକଙ୍କ ତରଫରୁ ହେଉଥାଏ । ମନେ ହେଉଥାଏ ସତେ ଯେମିତି ମୁଁ ଗୋଟେ ପୋଖତ ନାଚୁଣୀ । ଡ୍ରାମା ସରିଗଲା, ସାର୍‌ମାନେ ଆଉ ପିଲାମାନେ ମୋତେ କୁଣ୍ଢେଇ ପକେଇଲେ । ତା' ପରଦିନ ଚାରି ପାଞ୍ଚଜଣ ପିଲାଙ୍କ ସାଥିରେ ବଜାର ଆଡ଼େ ବୁଲି ଯାଇଥିଲୁ । କେତେଜଣ କହିଲେ ଯାହାହେଉ ସେ ଯେଉଁ ଟୋକୀଟା ଗାଧୁଆ ଡାନ୍ସ କରୁଥିଲା ଭଲ କଲା । ସେ ବୋଧହୁଏ କଟକୀ ଝିଅ ହୋଇଥିବ । ମୋତେ ଚିହ୍ନିପାରିଲେ ନାହିଁ । ଆମର ସିନିୟର୍ ପିଲା କହିଲେ, ସେ ଝିଅଟି ଏଥର ଫାଷ୍ଟ୍ଇୟରରେ ନାମ ଲେଖେଇଛି । ଇମିତି ନାଚି କୁଦି ପ୍ରଥମ ବର୍ଷଟା କଟିଗଲା । କ୍ଲାସ୍‌ରେ ମଧ୍ୟ ଆମ କାମରେ ସବୁ ସାର୍‌ମାନେ ଖୁସି । ଆମକୁ ଭଲ ଭାବରେ କାମ ଶିଖାନ୍ତି ଏବଂ ଆମର ସୁବିଧା ଅସୁବିଧା ସବୁ ବୁଝନ୍ତି ।

ଦ୍ୱିତୀୟ ବର୍ଷ ହେଲା । ଖରାଛୁଟିଟା ଗାଁରେ କଟେଇ ମନ ବ୍ୟଗ୍ର ହେଉଥାଏ ଖଲ୍ଲିକୋଟ ଚଞ୍ଚଳ ଫେରିଯିବା ପାଇଁ । ଘରୁ ବାହାରିଲା ବେଳକୁ ଗୋଟେ ଝିଅ ବାପଘରୁ ଶାଶୁଘରକୁ ଗଲାଭଳି ମୋ ମା ପୁଣି ପିଠାପଣା, ଜାଇ, ବଡ଼ି, ମୁଢ଼ି, ଉଖୁଡ଼ା, ମୁଆଁ, ଆଚାର, ପନିପରିବା ଦେଇ ମୋତେ ବିଦା କରନ୍ତି । ଖଲ୍ଲିକୋଟ କଲେଜରେ ପହଞ୍ଚେ । ଆଗରୁ ତ ଚିଠିପତ୍ର ଦିଆନିଆ ହେଉଥାଏ । ଏଣୁ ଚନ୍ଦ୍ରଭାଇ ମଧ୍ୟ ସେଇଦିନ ପହଞ୍ଚି ଯାଇଥାଏ । ଏଥର କେତେ ନୂଆପିଲାଙ୍କୁ ଦେଖିବାକୁ ମିଳିଲା । ସେମାନେ ପ୍ରଥମ ବର୍ଷରେ ନାମ ଲେଖେଇଥିଲେ । ନୂଆ ପୁରୁଣା ସାଙ୍ଗ ସାଥିରେ ଚଳିବାକୁ ପଡ଼ିଲା । ବେଶୀ ପିଲା ହେବାରୁ ରାଜ ଉଆସର ରାଣୀହଂସପୁରକୁ ଆଉ ଏକ ଛାତ୍ରାବାସ କରାଗଲା । ଭିତରଟା ଖାଁ ଖାଁ ଲାଗୁଥାଏ । ଚେମିଣିଗୁଡ଼ାକ ସେଠି ଯେମିତି ତାଙ୍କର ସ୍ଥାୟୀ ବସା କରି ଦେଇଥାନ୍ତି । ଦିନବେଳେ ବି ଉଡ଼ା ଉଡ଼ି କରୁଥାନ୍ତି । ବେଳେ ବେଳେ ମୁଣ୍ଡରେ ବାଡ଼େଇ ହୋଇ ଯାଉଥାନ୍ତି । ଘରଗୁଡ଼ାକ ବନ୍ଦ ଥିବାରୁ ଭିତର ସନ୍ତସନ୍ତିଆ ହୋଇ ରହିଥାଏ । କ'ଣ କରିବା ? ରହିବାକୁ ଇଚ୍ଛା ହେଉ ନଥାଏ । ସେତେବେଳେ ଛାତ୍ରମାନଙ୍କ ଭିତରେ ଗୋଟେ କଟକୀ, ଗଞ୍ଜାମୀ ଫିଲିଂ ସୃଷ୍ଟି ହେଲା । ଏଇ ସବୁ ରହିବା-ଚଳିବା ଅବ୍ୟବସ୍ଥା ଦେଖି କଟକୀ ଛାତ୍ରମାନେ ଚାହିଁଲେ ଆର୍ଟ୍ କଲେଜକୁ କଟକ କିମ୍ୱା ଭୁବନେଶ୍ୱର ଉଠେଇ ନେବାପାଇଁ । ନାନା ପ୍ରକାର ଗଣ୍ଡଗୋଳିଆ ପରିସ୍ଥିତି, ଷ୍ଟ୍ରାଇକ୍ କରିବା ଇତ୍ୟାଦି ଆରମ୍ଭ ହେଲା । ଫଳରେ କଟକ ପିଲାମାନେ କଲେଜର ଦୁଆର ପାଖ ହଷ୍ଟେଲରେ ରହିଲେ ଏବଂ ଗଂଜାମ ପିଲାମାନେ ରାଣୀ ହଂସପୁର ହଷ୍ଟେଲରେ ରହିଲେ । ମୁଁ ତ କଟକୀ ନୁହେଁ କି ଗଞ୍ଜାମୀ ମଧ୍ୟ ନୁହେଁ । ଏକୁଳର ନୁହେଁ କି ସେ କୁଳର ନୁହେଁ ।, ହାୟରେ ବିଧାତା ଏକି କଲୁ । କଟକୀ ପିଲାମାନେ ତାଙ୍କ ପଟକୁ ଭିଡ଼ନ୍ତି ତ ଗଞ୍ଜାମୀ ପିଲାମାନେ ତାଙ୍କ ପଟକୁ । କିନ୍ତୁ ଚନ୍ଦ୍ରଭାଇ ଯେଉଁଠି ରହିବ ମୁଁ ତାରି ପାଖରେ ରହିବି । ସେତେବେଳକୁ ଲକ୍ଷ୍ମୀନାରାୟଣ ସାହୁ ପ୍ରଥମ ବ୍ୟାଚ୍ ଛାତ୍ର । ତାଙ୍କ ଘର ଓଡ଼ଗାଁ । ସେ ବି ବହୁତ ବୁଝେଇଲେ । କହିଲେ ତୁମେ କାମ ଶିଖିବ ଯଦି ଗଞ୍ଜାମ ହଷ୍ଟେଲରେ ରୁହ । ପ୍ରିନ୍ସିପାଲ୍ ଗଞ୍ଜାମର । ଏଇ ପଟେ ଉପରେ ରହୁଛନ୍ତି । ସେ ଆମର ସବୁ କାମ ଦେଖିପାରିବେ । ତାଙ୍କ ପ୍ରସ୍ତାବଟା ମନକୁ ପାଇଲା । ରହିଗଲି ରାଣୀହଂସପୁରରେ । ଗୋଟିଏ ରୁମ୍‌ରେ ଚନ୍ଦ୍ରଭାଇ ମୁଁ ରହିଲୁ । ଭୀମସେନ ମହାରଣା କହିଲେ ମୁଁ ତୁମରି ପାଖରେ ରହିବି ଯଦିଓ ସେ କଟିକୀ ପିଲା । ହଷ୍ଟେଲରେ ମେସ୍‌ର ସୁବିଧା ନଥାଏ । ହାତରେ କିଏ ଷ୍ଟୋଭ୍ ଏବଂ କିଏ କୋଇଲା ଚୁଲିରେ ରୋଷେଇ କରନ୍ତି । ତା ପରେ କିଛିଦିନ ପାଇଁ ମେସ୍ ହେଲା ଯେ ବେଶୀଦିନ ଚାଲିଲା ନାହିଁ । ସେଇ ହାତରେ ରୋଷେଇ । ତଥାପି ଅସୁବିଧା କିଛି ଲାଗେନି । କେତେ ପିଲା ହୋଟେଲରେ ଖାଆନ୍ତି ।

Digitized by srujanika@gmail.com

ମାସକୁ ଟ ୨୨.୫୦ ପଇସା । ଷ୍ଟାଇପେଣ୍ଡ ମିଳୁଥିଲା ଟ୩୦.୦୦ । ଏତେଟଙ୍କା କାହିଁକି ହୋଟେଲରେ ଦବା, ହାତରେ ରୋଷେଇ କରିବା । ଚନ୍ଦ୍ରଭାଇର ଘର ପୋଲସରା ଗାଁରେ । ତାଙ୍କ ଘରୁ ବସ୍‌ରେ ପରିବା ପତ୍ର ପଠେଇ ଦିଅନ୍ତି । ତରକାରି ପତ୍ର ଭାରି ସୁଆଦିଆ ହୁଏ । ସବୁ ପିଲା ଆମ ତରକାରି ଚାଖିବା ପାଇଁ ଇଚ୍ଛା କରନ୍ତି ।

ସେଇ ହଷ୍ଟେଲରେ ଦିନନାଥ ପାଠୀ ରହୁଥିଲେ । ଆମର ଦ୍ୱିତୀୟ ବର୍ଷକୁ ତାଙ୍କର ପ୍ରଥମ ବର୍ଷ । କେଜାଣି କାହିଁକି ସେ ଆମ ରୁମ୍‌କୁ ବେଶୀ ଆସନ୍ତି । ଆମ ସାଥିରେ ମିଶିବାକୁ ଚେଷ୍ଟା କଲେ। ଆମେ ବି ଖୁବ୍ ଶୀଘ୍ର ମିଶିଗଲୁ । ମିଶିବା ଫଳରେ ସମସ୍ତେ ସମସ୍ତଙ୍କର ଘର ଚଳଣି, ପରିବାର ସୁବିଧା ଅସୁବିଧା ବିଷୟରେ ଅବଗତ ହେଲୁ । **ପିଲାଟା ଟିକେ ଫୁଟାଣିଆ ଭଳି ମନେ ହେଉଥାଏ । ଧଳା ହାପ୍‌ପ୍ୟାଣ୍ଟ ଧଳା ହାପ୍‌ସାର୍ଟ୍ । ସବୁବେଳେ ଫିଟ୍‌ଫାଟ୍ । କ'ଣ ସିଏ କୋଉ ସ୍କୁଲରେ ମାଷ୍ଟ ଚାକିରି କରିଥିଲା । ବଡ଼ଭାଇ ଜଣେ ଚିତ୍ରକର । ହାଟ ବଜାର ଏବଂ ଯାତ୍ରା ପର୍ବରେ ମାଟି, ଗୋବର କଣ୍ଢେଇ କରି ବିକନ୍ତି ।** ତାଙ୍କ ଭାଇନା ମଧ ମଝିରେ ମଝିରେ ଆସନ୍ତି । ସେ ବି ଆମ ସାଥିରେ ସବୁ ଦୁଃଖ ସୁଖ ହୁଅନ୍ତି । ଗଲାବେଳେ କହିଯାନ୍ତି ଦିନୁଟା ଲାଗିଲା । ଶ୍ରେଣୀରେ ଭଲ କାମ କରୁଛି । ହଁ ପିଲାଦିନୁ ସବୁ କାମ ଭାଇନାଠାରୁ ଶିଖୁଛି । ଯିଏ ଭଲ କାମ କରେ ପ୍ରିନ୍‌ସିପାଲ୍ ତାକୁ ବେଶୀ ଭଲ ପାଆନ୍ତି । ଗଞ୍ଜାମ ପିଲାଗୁଡ଼ାକ ଖାଇ ଜାଣନ୍ତିନି । ସବୁବେଳେ ଚଣା ତରକାରି । ତରକାରିମାନେ ମଟର ସିଝା, ଟିକେ ଲୁଣ ହଳଦି ପଡ଼ି ପାଣି ଭଳି ତରକାରି । ଦିନନାଥ ବି ରୋଷେଇ କରନ୍ତି । ବେଳେ ବେଳେ ସକାଳୁ ଉଠି ନେଚର୍ ଷ୍ଟଡ଼ି କରିବା ପାଇଁ ଦୂରକୁ ଚାଲିଯାନ୍ତି । ଫେରିଲା ବେଳକୁ ଉଦୁଉଦିଆ ଦି'ପହର । ସେଇ ଖରାରେ ଆସି ଆଉ ରୋଷେଇ କରିବାକୁ ଇଚ୍ଛା ହୁଏନି । ରାତିର ପଖାଳଭାତ । ସେଥିରେ କିଛି ଚଳ୍‌ହା ପଡ଼େ । ପାଖରେ ଗୋଟେ କାଗଜ ଜଳାଯାଏ । ଏକ ଶୁଖିଲା ଲଙ୍କାର ଡେମ୍ଫକୁ ଧରି ସେଥିରେ ପୋଡ଼ାଯାଏ । ସେଇ ଲଙ୍କାକୁ ବାମ ହାତରେ ଧରି ଭାତ ଖିଆ ଚାଲେ । ଏଇଭଳି ବାରମ୍ବାର ଦେଖିଲା ପରେ ଆମ ମନରେ ଦୟା ଆସିଲା । ପିଲାଟା କେତେ କଷ୍ଟରେ ଖାଉଛି । ତା'ପରେ ଆମେ ତରକାରି ପତ୍ର ଦେଲୁ । ପରେ ପରେ ସେ ଆସିଲା ପର୍ଯ୍ୟନ୍ତ ଅପେକ୍ଷା କରି ବସିଲୁ ମିଶିକରି ସାଥିହୋଇ ଖାଇବା ପାଇଁ । ଆସ୍ତେ ଆସ୍ତେ ସମ୍ପର୍କଟା ଘନେଇ ଆସିଲା । ସାଥିହୋଇ ଖାଇବା, କାମ କରିବା, ଗପସପ କରିବା, ଶୁଆ ବସା ସବୁ ଏକାଠି ଚାଲିଲା । ମୋ ଅପେକ୍ଷା ଚନ୍ଦ୍ର ରାଓ ତାଙ୍କ ସାଥିରେ ବେଶୀ ମିଶିଗଲେ, କ୍ଷୀରନୀର ପରି । ଏମିତି ହେଲା ଟିକେଟିକେ କଥାରେ ରାଗ, ରୁଷା, ମାନ ଅଭିମାନ ସବୁ ଚାଲିଲା । ମୁଁ ବଡ଼ ଅଡୁଆରେ ପଡ଼ିଲି। ଦି' ଜଣ ଯାକକୁ ମେଳେଇବା ପାଇଁ ମୋତେ ଗୋଟେ ଗୋଟେ ରାତି ଲାଗିଯାଏ । ପ୍ରକୃତରେ ସ୍ନେହ ମମତା ଗୋଟେ ଏପରି ଯିଏ ଥରେ ଅନୁଭବ କରିଛି, ସେ ତାକୁ ଜୀବନ ସାରା ମନେ ରଖିଥିବ ।

ଶିଳ୍ପୀଗୁରୁ ଅନନ୍ତ ପଣ୍ଡା ସେଇ ସମୟରେ କଲେଜରେ ଜଏନ୍ କଲେ । ଦେଖିବାକୁ ଚେହେରା ଭାରି ସୁନ୍ଦର । ଗୀତ ବୋଲିବା, ସିତାର ବଜାଇବାରେ ଓସ୍ତାଦ୍ । ସବୁବେଳେ ତାଙ୍କର ସିତାର ଶୁଣିବାକୁ ଇଚ୍ଛା ହୁଏ । ସେ ବି ଆମ ସାଥିରେ ମିଶିଗଲେ । ଟିକିବାବୁ ଦିନେ କହିଲେ କଲେଜରେ ଗୋଟେ ଡ୍ରାମା କରିବା । ବହି ସ୍ଥିର ହେଲା 'ଜୟମାଲ୍ୟ' । ଶରତଚନ୍ଦ୍ର ଦେବ ଓ ଟିକି ବାବୁ ମିଶି ପାର୍ଟ ସିଲେକ୍‌ସନ୍ କଲେ । ସ୍ତ୍ରୀ ଭୂମିକାରେ କିଏ ପାର୍ଟ୍ କରିବ ଛାତ୍ରୀମାନଙ୍କୁ ପଚରାଗଲା । ସେମାନେ ମନାକଲେ । ଏଣୁ ଆମରି ଉପରେ ପଡ଼ିଲା । ଆମେ ସ୍ତ୍ରୀ ଭୂମିକାରେ ଅଭିନୟ କରିବୁ । ପ୍ରିନ୍‌ସିପାଲ୍ ଶରତ ଚନ୍ଦ୍ର ଦେବ ଆମ ଡାଇଲଗ୍‌ରୁ ଜାଣିପାରି କହିଲେ ଆମର କୁଆଡ଼େ ଅଭିନୟ କରିବା ପାଇଁ ଯୋଗ୍ୟତା ଅଛି ।

ବିପିନ ସାହୁ ମଧ ସ୍ତ୍ରୀ ଭୂମିକାରେ ପାର୍ଟ୍ କଲେ । ଭୀମସେନ ମହାରଣା, ଲକ୍ଷ୍ମୀ ନାରାୟଣ ସାହୁ ଏମାନେ ବି ସ୍ତ୍ରୀ ଭୂମିକାରେ ଅଭିନୟ କଲେ । ଚନ୍ଦ୍ର ରାଓ ହେଲେ ହୀରୋଇନ୍ । କାରଣ ଗୋରା ନହେଲେ ବି ଗାଲରେ ମାଉଁସ ଥିଲା । ଚେହେରାଟା ବି ଲୋଭନୀୟ ଥିଲା । ହେଲେ ହାତ ଗୋଡ଼ରେ ବାଳ ସାଲୁ ସାଲୁ, ଡ୍ରାମା ପୂର୍ବରୁ ବ୍ଲେଡ୍‌ରେ ଚାଞ୍ଛିବାକୁ ହୁଏ । ସ୍ତ୍ରୀ ଭୂମିକାରେ ରୋଲ୍ କରିବା ନିଶା ଏପରି ତାଙ୍କୁ ଘାରିଥାଏ । ତାଙ୍କର ପ୍ୟାଥେଟିକ୍ ଅଭିନୟ ଖୁବ୍ ଭାବପ୍ରବଣ ହୁଏ । ଷ୍ଟେଜ୍‌ରେ ଗୋଟେ ଗୋଟେ ଜାଗାରେ ଏପରି କାନ୍ଦି ପକାନ୍ତି ଯେ ଆଖିରୁ ଲୁହ ଧାରଧାର ହୋଇ ବହିପଡ଼େ । **ଯାକୁ ଝିଅ**

Digitized by srujanika@gmail.com

ନକରି କିଏ ପୁଅ କଲା କେଜାଣି ? ମୋତେ ଗୋଟେ ରାଜରାଣୀ ପାର୍ଟ୍ ଦେଲେ । ମୋ ସାଙ୍ଗକୁ ଶିବ ପାଣିଗ୍ରାହୀ ମୋର ଫଟା ରସିକ । ଆମେ ଦୁଇ ଜଣ ଷ୍ଟେଜ୍‌କୁ ବାହାରିବାମାନେ ଦର୍ଶକ ନ ହସି ରହି ପାରନ୍ତିନି । ବିପିନ ସାହୁ ଆଡ଼୍‌ଭାନ୍ସ୍ ଲେଡ଼ି ହାଇହିଲ୍ ପିନ୍ଧି, ଭେନିଟ୍ ବ୍ୟାଗ ଚଷମା ପିନ୍ଧି ସତେ ଯେପରି ଗୋଟେ ଆଙ୍ଗ୍‌ଲୋ ଇଣ୍ଡିଆନ୍ । ସମସ୍ତଙ୍କୁ ପ୍ରିନ୍ସପାଲ୍ ଶରତ ଚନ୍ଦ୍ର ଦେବ ମେକପ୍ କରି ପୁରା ଚେହେରା ବଦଳେଇ ଦିଅନ୍ତି କିଏ ଯେପରି କେହି କାହାରିକୁ ଚିହ୍ନି ପାରିବେନି । ସେଇ ଡ୍ରାମାରେ ପୂର୍ଣ୍ଣ ପ୍ରଧାନ, ରମେଶ ମହାନ୍ତି, ଭାଗିରଥୀ ପାତ୍ର, ଦିନନାଥ, ଚରଣ, ଚନ୍ଦ୍ର ସୁବୁଦ୍ଧି ପ୍ରାୟ ଅଧିକାଂଶ ପିଲା ପାର୍ଟ କରୁଥିଲେ । ଡ୍ରାମାଟି ଖୁବ୍ ସକ୍‌ସେସ ଫୁଲ୍ ହୋଇଥିଲା । ଡ୍ରାମା ପରେ ପରେ ଆମ ଦୁଇ ଜଣଙ୍କ ଉପରେ ଖଲ୍ଲିକୋଟ ବାସିନ୍ଦାଙ୍କର ନଜର ପଡ଼ିଲା । ଯେତେବେଳେ ଖଲ୍ଲିକୋଟରେ ଡ୍ରାମା କଲେ ଆମକୁ ସ୍ତ୍ରୀ ରୋଲ୍ କରିବା ପାଇଁ ଡାକନ୍ତି ।

ଗଣେଶ ପୂଜା ହେଲା, ମୂର୍ତ୍ତି ବିସର୍ଜନ ହେବ । ଏଥର ଏକ ପ୍ରୋସେସନ୍ କରି ମୂର୍ତ୍ତି ବିସର୍ଜନ କରିବା ପାଇଁ ଆୟୋଜନ ହେଲା । କଟକୀ ପିଲାମାନେ କିନ୍ତୁ ଏସବୁରେ ସେ ଥରକ ଭାଗ ନେଇ ନଥାନ୍ତି । ସନ୍ଧ୍ୟାବେଳକୁ ପ୍ରୋସେସନ୍ ହେବ । ଲାଇଟ୍ ଭଡ଼ାରେ ଆସିଲା । ହାଡ଼ି ବାଜାବାଲାଙ୍କୁ ଡକାଗଲା । କଲେଜ ସାମ୍‌ନାରୁ ଗୋଟେ ବାହାଘର ପ୍ରୋସେସନ୍ ଯିବ । ବଜାର ପର୍ଯ୍ୟନ୍ତ ସବାରି ଗୋଟେ ପାଲିଙ୍କି ଗୋଟେ ବାଉଁଶରେ ଫ୍ରେମ୍ କରି କନା ରଙ୍ଗିନି କାଗଜ ଏବଂ ଫୁଲରେ ସଜାଗଲା । ଜଣେ ବର, ଜଣେ କନିଆ, ଜଣେ ପୁରୋହିତ, ଜଣେ ବାରିକ, ଜଣେ ବାରିକିଆଣୀ । ଏପରି ସବୁ ବେଶ ହେଲେ । କନିଆର ବାପା, ମା ବି ସାମିଲ ହେଲେ , କଲେଜ ସାମ୍‌ନାରୁ ପ୍ରୋସେସନ୍ ସହ ଝିଅର କାନ୍ଦଣା ଆରମ୍ଭ ହୋଇଗଲା । ମା'ର କାନ୍ଦ ସାଥିକୁ ସାଇ ମାଇପ ସାଙ୍ଗସାଥି ସମସ୍ତଙ୍କର କାନ୍ଦଣା ସାଥିରେ ହୁଳ ହୁଳି ପଡ଼ି ହାଡ଼ି ବାଜା ସହ ବାହାଘର ପ୍ରୋସେସନ୍ ଆଗ ବାହାରିଲା, ପଛରେ ଗଣେଶ । କାନ୍ଧରେ ଦୋଳା କରି ଠାକୁର ବସିଲେ । ବାହାଘର ଆଗରେ ବାଘ ନାଚ, ପରୀ ନାଚ, ଡାଳ ମାଙ୍କୁଡ଼ି, ବାଡ଼ି ଖେଳ, ନିଆଁ ବନାଟି ଖେଳ, **ତା ସାଥିରେ ମୁଣ୍ଡରେ ରଜାରାଣୀ ପଟୁଆର ମୁଖା ମୁଣ୍ଡେଇ ଦିନନାଥ ଏବଂ ଚରଣ ନାଚିନାଚି ଯାଉଥିଲେ ।** ବର ହେଲା ଜୁର ସାହୁ ଏବଂ କନିଆ ହେଲା ପ୍ରଶାନ୍ତ ପଟ୍ଟନାୟକ । ମୁଁ ହେଲି ଭଣ୍ଡାରୁଣୀ । ନାଚି ନାଚି ବାଜା ସହ ପ୍ରୋସେସନ୍ ପହଞ୍ଚିଲା ଖଲ୍ଲିକୋଟ ବଜାର ଉପରେ । ସେଠାରେ ବାହାଘର କର୍ମ ଆରମ୍ଭ ହେଲା । ବାହାଘର ସରିଲା । ବଜାର ସାରା ରାସ୍ତାଘାଟ ସବୁ ସାହିରେ ପ୍ରୋସେସନ୍ ବୁଲିଲା । ଗୋଟେ ଯାତ୍ରା ଦେଖିବାରେ ଏତେଲୋକ ରୁଣ୍ଡ ହେଉ ନଥିବେ । ସେତେବେଳେ ସତେ ଯେମିତି ଲାଜ ସରମ ସବୁ ପୋଡ଼ି ଖାଇଦେଇଥିଲୁ ।

ହଷ୍ଟେଲ୍ ଭିତରେ ସନ୍ଧ୍ୟା ହେଲେ ସମସ୍ତେ ଆସି ଏକ ପେଣ୍ଡାଲ୍ ଭଳି ଜାଗାରେ ବସନ୍ତି । ନାଚ କୁଦ ଆରମ୍ଭ ହୋଇଯାଏ । ମନେ ଅଛି ମୁଣ୍ଡରେ ଜଳନ୍ତା ଡିବି ଥୋଇ ଏକା ମୋର ନାଚିବା । ଉପରୁ ପ୍ରିନ୍ସପାଲ୍ ଦେଖି ତାଳି ମାରନ୍ତି । ଖୁସି ହୁଅନ୍ତି । ମନା କରନ୍ତି ନାହିଁ ଏ ସବୁ ପ୍ରହସନ କରିବା ପାଇଁ । ବରଂ ତା ପରଦିନ ସକାଳୁ କ୍ଲାସରେ ପିଠିରେ ହାତ ବାଡ଼େଇ କହନ୍ତି କାଲି ନାଚଟା ଭାରି ଭଲ ହେଲା । ଦିନେ ଦିନେ ଠାକୁରାଣୀ ଉଭା ହେବେ । ଥାଳି, ଟିଣ ବାଡ଼େଇ ହୁଳହୁଳି ପକେଇ ଠାକୁରାଣୀ ଉଭା ହୁଅନ୍ତି । ଠାକୁରାଣୀକୁ ଦୀପଧୂପ ଜାଳି ପୂଜା କରାଯାଏ, ଭୋଗ କରାଯାଏ । ସବୁ ପିଲାଙ୍କୁ ବଣ୍ଟା ଯାଏ । ପ୍ରିନ୍ସପାଲ୍, ଅଜିତ୍ ସାର୍‌ଙ୍କ ଘରକୁ ପଠାଯାଏ । ଦିନେ ଦିନେ କିଏ ମଦୁଆ ରୋଲ୍ କରେ । କେଉଁଦିନ ବାଘ ନାଚ । ଦିନନାଥ ଭଲ ବାଘନାଚ କରନ୍ତି । ବେଳେ ବେଳେ ଏକ ଗୁଡ଼ାଖୁ ଡବା ଧରି ବିଶ୍ୱମୋହିନୀ କଡ଼ା ଗୁଡ଼ାଖୁର ଆଡ଼ଭାଟାଇଜ୍ ହୁଏ । ସ୍ତ୍ରୀ ବେଶ ହୋଇ, ଏ ବିଶ୍ୱ ମୋହିନୀ କଡ଼ା ଗୁଡ଼ାଖୁ ବ୍ୟବହାର କରନ୍ତୁ ବୋଲି ଭଙ୍ଗିରେ କୁହାଯାଏ । ଏମିତି ପ୍ରତିଦିନ କିଛିନା କିଛି କାର୍ଯ୍ୟକ୍ରମ ହେଉଥାଏ । ତା ସାଥିକୁ ମେଲୋଡ଼ି ଗୀତ କମ୍ପିଟେସନ୍ ଇତ୍ୟାଦି ଚାଲିଥାଏ । ଦଶହରା ସମୟରେ ବେଶ ହୋଇ ପ୍ରିନ୍ସପାଲ୍, ଅଜିତ ସାର୍‌ଙ୍କ ଦୁଆରକୁ ଭେଟି ପାଇଁ ଯାଉ ସେମାନେ ପଚାଶ, ଶହେ ବକ୍ସିସ୍ ଦିଅନ୍ତି ।

ସବୁ ମଉଜ ମଜଲିସ୍ ଭିତରେ କଡ଼ା ଶିକ୍ଷା ମଧ୍ୟ ଚାଲିଥାଏ । ପରୀକ୍ଷା ହୁଏ । ପରୀକ୍ଷାରେ ଆମ ତିନି ଜଣଙ୍କର ଭଲ ମାର୍କ ରହେ । ଯା ଭିତରେ ପ୍ରିନ୍ସପାଲ୍ ଏକ ଦିବ୍ୟ ଜୀବନ ସଂଘ ଗଠନ

Digitized by srujanika@gmail.com

କଲେ । ଆମେ ସବୁ ସେଥିରେ ଯୋଗଦେଲୁ । **ପାହାନ୍ତାରୁ ପ୍ରାତଃ ପ୍ରାର୍ଥନା, ସନ୍ଧ୍ୟାରେ ସାନ୍ଧ୍ୟ ପ୍ରାର୍ଥନା, ଭଜନ, କୀର୍ତ୍ତନ ସବୁ ରୀତିମତ ଚାଲିଲା । ଏଥିରେ ଦିନନାଥ ଥିଲେ ମୁଖ୍ୟ ଉଦ୍ୟୋକ୍ତା । ଏଣୁ ପ୍ରିନ୍ସପାଲ୍ ତାଙ୍କୁ ସମସ୍ତଙ୍କଠାରୁ ବେଶୀ ଭଲ ପାଆନ୍ତି ।** ରୁମ୍‌ରେ ମଧ ପୂଜାପାଠ, ଯୋଗ, ପ୍ରାଣାୟାମ ଚାଲିଥାଏ । ସବୁରି ଭିତରେ ନିଜକୁ ସାମିଲ କରି ଆମେ ନିଷ୍ଠାର ସହ ଆମର କଳା ସାଧନାରେ ଲାଗିଥାଉ । **ଯଦିଓ ମୁଁ ଭାସ୍କର୍ଯ୍ୟ ବିଭାଗର ଛାତ୍ର ଥିଲି କିନ୍ତୁ ଦିନନାଥ, ଚନ୍ଦ୍ରଶେଖର ରାଓ ଏବଂ ଲକ୍ଷ୍ମୀ ନାରାୟଣ ସାହୁଙ୍କର ଛବି ମୋତେ ବେଶୀ ପ୍ରଭାବିତ କରିଥିଲା ।** ମୁଁ ବି ରୁମ୍‌ରେ ଛବି କରେ ।

ଆମର ଶେଷ ବର୍ଷ । ପରୀକ୍ଷା ସରିଯାଇଛି । ଯିଏ ଯୁଆଡ଼େ ନିଜ ନିଜ ଗାଁକୁ ଚାଲିଗଲେଣି । ଆମେ ବି ଗାଁକୁ ଯିବା କଥା । କିନ୍ତୁ ସଂପର୍କଟା ଏତେ ବଢ଼ି ଯାଇଥିଲା ଯେ କେହି କାହାରିକୁ ଛାଡ଼ି ଯିବାପାଇଁ ଇଚ୍ଛା ହେଉନଥିଲା । ଇମିତି ଇମିତି ଚାରି-ପାଞ୍ଚଦିନ ଏକାଠି ରହିଗଲୁ । ଚନ୍ଦ୍ର ରାଓ, ଦିନନାଥ, ଚନ୍ଦ୍ର ସୁବୁଦ୍ଧି, ରାଧାଚରଣ ପଣ୍ଡା, କୃଷ୍ଣ ଆଚାରୀ ଓ ମୁଁ ଦିନେ ଏକାବେଳେ ସମସ୍ତେ ହଷ୍ଟେଲରୁ ବାହାରିଲୁ । କୋଳାକୋଳି ହୋଇ କାନ୍ଦିବା କଥା ଏବେବି ମନେ ପଡ଼ିଲେ ପୁଣି ସେଇ ଅତୀତକୁ ଫେରି ଯିବାକୁ ଇଚ୍ଛା ହୁଏ । ପୁଣି ନାଚିବାକୁ ଖେଳିବାକୁ ଏବଂ କାନ୍ଦିବାକୁ ଇଚ୍ଛା ହୁଏ ।

ଯାହାର ବସ୍ ଯେତେବେଳେ ଆସିଲା ସେ ସେଇ ବସ୍‌ରେ ଅନିଚ୍ଛା ସତ୍ତ୍ୱେ ସବୁକିଛି ଜୀବନର ଅଭୁଲା ସ୍ମୃତିକୁ ସେଇଠି ଛାଡ଼ିଦେଇ ଫେରିବାକୁ ବାଧ ହେଉଥିଲା । ଆଖିରୁ ଲୁହ ଆପେ ଆପେ ଗଡ଼ି ପଡୁଥିଲା । ଗାଁରେ ପହଞ୍ଚିଲା ପରେ ବି ସେଇ ଖଲ୍ଲିକୋଟ, ସେଇ କଲେଜ, ସେଇ ଡ୍ରାମା, ଥିଏଟର ଆମର ସ୍ନେହ ସଂପର୍କ ସବୁକିଛି ଯେମିତି ଚିତ୍ରପଟ ପରି ଆଖିରେ ଭାସି ଯାଉଥିଲା । ଏଇମିତି ଜୀବନର ଏକ ରଙ୍ଗିନ୍ ଅଧାୟ ବିତି ଯାଇଥିଲା ।

ଏଣିକି ପ୍ରଥମ ପାହାଚରୁ ଦ୍ୱିତୀୟ ପାହାଚକୁ ଉଠିବାକୁ ପଡ଼ିବ । ସବୁ ଆଡ଼ ଯେପରି ଶୂନ୍ୟ । ଏବେ କରିବା କଣ ? ଘରେ କେତେଦିନ ବସିବା । କିଛି ଦିନ ପରେ ଏକ ଚିଠି ମିଳିଲା ଭୁବନେଶ୍ୱରରେ ଏ.ଆଇ.ସି.ସି କନ୍‌ଫରେନ୍ସ ୧୯୬୩ ପାଇଁ । ଅନେକ ଅନେକ ଗେଟ୍ ତିଆରି ହେବ । ଭୁବନେଶ୍ୱର ଆସିଲି । ମ୍ୟୁଜିୟମ୍ ଏବଂ କଳାମଣ୍ଡପ ମଝିରେ ଏକ ଜାଗାରେ ଆମର ଡେରା ପକେଇଲୁ । ସେଇଠି ରୋଷେଇ ଚାଲିଥାଏ । କାମବି ଚାଲିଥାଏ । ଦିନନାଥ, ଚନ୍ଦ୍ରଶେଖର ରାଓ ପୁଣି ଏକାଠି ରହିଗଲୁ । ପ୍ରାୟ ୧୫ଟି ଗେଟ୍ ହେଲା । ସେଇ ସମୟରେ ସମବାୟ ବିଭାଗରେ ଏକ ଆର୍ଟିଷ୍ଟ୍ ପୋଷ୍ଟ୍ ପାଇଁ ଖବର କାଗଜରେ ବିଜ୍ଞାପନ ବାହାରିଥିଲା । ଆପ୍ଲାଏ କଲି । ୧୫ ଦିନ ପରେ ଯାଇ ସମବାୟ ବିଭାଗରେ ଆର୍ଟିଷ୍ଟ୍ ପୋଷ୍ଟରେ ସାକ୍ଷାତ୍କାରର ପ୍ରଥମ ସ୍ଥାନ ଅଧିକାର କରି ଜଏନ୍ କଲି । ତା'ପରେ ଆରମ୍ଭ ହେଲା ଚାକିରି ଅଧାୟ । ମାସକୁ ଦରମା ୧୧୦ ଟଙ୍କା, ଚଳିବାରେ କିଛି ଅସୁବିଧା ହେଉ ନଥାଏ । ମଝିରେ ମଝିରେ ପାଠୀ ବାବୁ, ରାଓ ବାବୁ ଆମ ଗାଁକୁ ଆସନ୍ତି ଏବଂ ମୁଁ ବି ତାଙ୍କ ଗାଁକୁ ଯାଏ । ଗଲେ ୧୫ ଦିନରୁ କମ୍ ହୁଏନି ରହିବା । ତା ଭିତରେ ତାଙ୍କ ଗାଁରେ ଡ୍ରାମାରେ ମୁଁ ଏବଂ ଆମ ଗାଁରେ ଡ୍ରାମାରେ ସେ ବି କେତେଥର ଅଭିନୟ କରିଛନ୍ତି ।

ପରେ ପରେ ଚନ୍ଦ୍ରଶେଖର ରାଓ ବି ଚାକିରି କଲେ । ପାଠୀ ବାବୁ ମଧ ସେକ୍ରେଟେରିଏଟ୍‌ରୁ ଆସି ସେଣ୍ଟ୍ରାଲ୍ ସ୍କୁଲରେ ଆର୍ଟ୍ ଟିଚର୍ ହେଲେ । ତାଙ୍କ ସ୍କୁଲରେ ଗଣେଶ ମୂର୍ତ୍ତି କରିବା ପାଇଁ ମୋତେ ଗୋଟେ ଥର ଡାକି ଥିଲେ । କିଛି ଦିନ ମଧ ଆମେ ଚାରି ନମ୍ବର ଏମ୍.ଏଲ୍.ଏ କଲୋନୀରେ ସାଥୀ ହୋଇ ରହିଥିଲୁ । ଏଇଭଳି ପରିସ୍ଥିତି ଆସ୍ତେ ଆସ୍ତେ ବଦଳିଗଲା । କର୍ତ୍ତବ୍ୟର ଆହ୍ୱାନରେ କିଏ କେଉଁଠି ରହିଗଲେ । ତଥାପି ଆମର ସଂପର୍କ ବଜାୟ ରହିଛି । ବେଳେବେଳେ ସାଧାରଣ କଥାକୁ ନେଇ ଆମ ଭିତରେ ବି କିଛି ସମୟ ପାଇଁ ମନୋମାଳିନ୍ୟ ହୋଇଛି । ଏହା କେବଳ ଅତି ସ୍ନେହ ସମ୍ପର୍କରୁ ଏପରି ହେବା ସାଭାବିକ୍ । 'ଶିଳ୍ପୀ ସଂସଦ' ଗଢ଼ାହେଲା ଏକ ଶୁଭ ମୁହୂର୍ତ୍ତ ଅକ୍ଷୟ ତୃତୀୟାରେ । ମଝିରେ ମଝିରେ ଚିତ୍ରକଳା ପ୍ରଦର୍ଶନୀରେ ମିଳିମିଶି ଭାଗନେବାର ସୁଯୋଗ ମିଳୁଥିଲା । ଆସ୍ତେ ଆସ୍ତେ ଅନ୍ୟମାନଙ୍କ ସାଥିରେ ମିଳାମିଶାର ପରିସ୍ଥିତି ସୃଷ୍ଟି ହେଲା । ତା ଭିତରେ ସାଂସାରିକ ଜୀବନ ଆରମ୍ଭ ହେଲା । ନିଜ ପରିବାର, ନିଜ ପୁଅଝିଅ ନିଜ ଘର ପ୍ରତି ମମତା ବଢ଼ିଗଲା । ସମାଜ, ଘର ସଂସାର, ସରକାରୀ କାର୍ଯ୍ୟାଳୟ ପରିସର ନେଇ ସବୁବେଳେ ବ୍ୟସ୍ତ ରହିବାକୁ ପଡ଼ିଲା । ଯାରି ଭିତରେ

Digitized by srujanika@gmail.com

ନିଜକୁ ପ୍ରତିଷ୍ଠିତ କରିବା ପାଇଁ ସଂଘର୍ଷ କରିବାକୁ ହେଲା । କଳାକାର ଜୀବନଟା ସବୁବେଳେ ଅଭାବ, ଅସୁବିଧା, ବାଧାବିଘ୍ନ, ବିଷାଦ, ଯନ୍ତ୍ରଣା ଭିତରେ ଗତି କରିବାକୁ ପଡ଼ିଥାଏ । ବି.କେ କଲେଜରେ ପାଠୀ ବାବୁ ପ୍ରିନ୍ସିପାଲ୍ ଥାନ୍ତି । ଚେଷ୍ଟା କଲେ ଭାସ୍କର୍ଯ୍ୟ ବିଭାଗରେ ମୋତେ ନେବା ପାଇଁ । ଇଣ୍ଟରଭ୍ୟୁ ଦେଇ ମୁଁ ଆଡ୍‌ହକ୍‌ରେ ବି.କେ କଲେଜରେ ୧୯୮୬ ମସିହାରେ ଯୋଗଦେଲି । ଦୁଇ ବର୍ଷ ରହିବାପରେ କେତେକ ଅନିବାର୍ଯ୍ୟ କାରଣରୁ ମୋତେ ବି.କେ କଲେଜରୁ ଫେରି ଆସିବାକୁ ପଡ଼ିଲା । ଯୋଉଟାକି ମୋତେ ଏକ ଧୋକା ଖାଇଲା ଭଳି ଲାଗିଲା । ସବୁ ଯୋଗ୍ୟତା ଥାଇ ମଧ୍ୟ ମୁଁ ଯେପରି ଅଯୋଗ୍ୟ ଭଳି ମନେ ହେଲା । କିନ୍ତୁ ମନରେ ଆସିଲା ସମୟ ସାଥିରେ ପରିସ୍ଥିତି ସାଥିରେ ସଂଘର୍ଷ କରିବାକୁ ଦୃଢ଼ ଇଚ୍ଛା ହେଲା । ଲାଗିଗଲି କିଛି ଗୋଟେ କରିବି । ମୋର ପରିଶ୍ରମ ବ୍ୟର୍ଥ ଯାଇନି । ପ୍ରକୃତରେ ଯିଏ ଯାହା ଜୀବନରେ ଧୋକା ଖାଇନି ସେ କେବେ ପ୍ରତିଷ୍ଠିତ ହୋଇପାରିନି । ଏତିକି ଖୁସିଲାଗେ ଆମ ସେଇ କଲେଜ ବେଳର ଯେଉଁ ସାଙ୍ଗମାନେ ପାଠୀ ବାବୁ, ଚନ୍ଦ୍ରଶେଖର ରାଓ ସବୁ ଭଲ ଭାବରେ ପ୍ରତିଷ୍ଠିତ ହୋଇପାରିଛନ୍ତି । ଅବଶ୍ୟ ମୁଁ ଏତେ ବାଟ ଯାଇପାରିନି । କାରଣ ମୁଁ ଅନେକ ଦିନ ପାଇଁ ଏକା ହୋଇଗଲି । ହସ୍ତ ଶିଳ୍ପ ବିଭାଗରେ ଅବସ୍ଥାପିତ ହେଲାପରେ ମୋର କେତେଜଣ ଶିଳ୍ପୀ ବନ୍ଧୁବି କହିଲେ ଦେବରାଜ ସାହୁ ଆର୍ଟିଷ୍ଟରୁ କ୍ରାଫ୍‌ସମ୍ୟାନ୍ ହୋଇଗଲେ । କଥାଟା କେତେଟା ସତ୍ୟ ତାହା ସମାଜ କହିବ । ବର୍ତ୍ତମାନ କେତେବେଳେ କାହା ସାଥିରେ ଦେଖାହେଲେ ସେଇ ଜୀବନ ନାଟକର ପୃଷ୍ଠା ଗୁଡ଼ାକ ମୂଳରୁ ଓଲଟାଇବା ପାଇଁ ଇଚ୍ଛା ହୁଏ । ଯେପରି ପୃଷ୍ଠାଗୁଡ଼ାକ ଆପେ ଆପେ ଆଖି ଆଗରେ ଗୋଟିକ ପରେ ଗୋଟିଏ ଓଲଟି ଯାଏ । ସେଇ ସବୁ ଦୃଶ୍ୟ ଆଖି ଆଗରେ ପଡ଼ିଲେ ସପ୍ନ ଦେଖିଲାଭଳି ମନେ ହୁଏ । କବାଟ କିଳି ଏକା ଏକା ନାଚିବାକୁ ଇଚ୍ଛା ହୁଏ । ସତରେ ଏଇଭଳି ନାଚ, ଗୀତ, ଡ୍ରାମା, ଥିଏଟର, ସାଙ୍ଗ, ସାଥୀ, ସ୍ନେହ, ମମତା, ମାନ, ଅଭିମାନ, ପରିବାର ଜଞ୍ଜାଳ, ଅଫିସ୍ ଭିତରେ ବିଶୃଙ୍ଖଳା ପରିସ୍ଥିତି, ଶାରିରୀକ ଏବଂ ମାନସିକ ଅଶାନ୍ତି ଭିତରେ କେତେବେଳେ ବୟସ ଗଡ଼ିଗଲାଣି । ପାଟିରୁ ଦାନ୍ତ ଖସି ଗଲାଣି । ମୁଣ୍ଡର ଘୁଞ୍ଚୁଘୁଞ୍ଚିଆ କଳା ମଚମଚ ବାଳ ଧଳା ଫୁରୁଫୁରୁ ହୋଇ ଆସିଲାଣି ଯେତେ କଳାଦେଇ ରଙ୍ଗ କଲେ କ'ଣ ଆଉ ସୋରତା ଥାଏ ?

ଷାଠିଏ ବର୍ଷ ଟପିଗଲା । ମୁଁ ଯେବେ ପିଲାଥିଲି - କେତେ ଖେଳୁଥିଲି - କେତେ ବୁଲୁଥିଲି - ମା କହୁଛି ମୁଁ ବଡ଼ ହୋଇଗଲିଣି - ମୋତେ ଖେଳିବା ବୁଲିବା ଏବେ ମନା - ସତରେ ବୁଢ଼ା ହୋଇଗଲିଣି । କିନ୍ତୁ କିଏ ବୁଢ଼ା କହିଲେ ଦୁଃଖ ଲାଗୁଛି । ପୁଣି ପିଲାହୋଇ ଲଙ୍ଗଳା ହୋଇ ଦାଣ୍ଡରେ ବାଲି ମାଟି କାଦୁଅରେ ଖେଳିବାକୁ ଇଚ୍ଛାହୁଏ । ମୁଣ୍ଡରେ ଅତର ମାରି ଚିକଣ କରି କୁଣ୍ଡେଇ ମୁଁହରେ ପାଉଡ଼ର ମାରି ଯାତରା ଦେଖିଯିବା ପାଇଁ ଇଚ୍ଛା ହୁଏ । ବୋହୂ ବୋହୂକା ଖେଳିବାକୁ ଇଚ୍ଛାହୁଏ । ବର୍ତ୍ତମାନ ଆଉ ନିଜ ପାଇଁ କିଛି କରିବାର ନାହିଁ । ସମାଜ ପାଇଁ ଆଗାମୀ କଳା ଜଗତ ପାଇଁ ଆମକୁ କିଛି କଳାକାର ସୃଷ୍ଟି କରିବାକୁ ପଡ଼ିବ । ଯେଉଁମାନେ କି ଆମ ପରେ ପରେ ଉତ୍କଳର କଳାକୁ ବଞ୍ଚେଇ ରଖିବେ । ଏଥିପାଇଁ ଆମ ବରିଷ୍ଠ ଶିଳ୍ପୀ ଯେଉଁମାନେ କି ନାଟକର ତୃତୀୟ ଅଙ୍କରେ ଅଭିନୟ କରୁଛନ୍ତି ସେମାନେ ଯୁବଶିଳ୍ପୀଙ୍କ ସହ ସଂପୂର୍ଣ୍ଣ ସହଯୋଗ ରଖି ଦିଗ୍‌ଦର୍ଶନ ଦେବା ଉଚିତ। କେତେବେଳେ କାହାର ଅଭିନୟ ସରିଯିବ । ସେ ସବୁ କିଛି ପଛରେ ପକେଇଦେଇ ସବୁଦିନ ପାଇଁ ଦୂରେଇ ଯିବ, ଅଦୃଶ୍ୟ ହୋଇ ଯିବ । ଖାଲି ରହିଯିବ ତାର କାର୍ଯ୍ୟ କଳାପର କିଛି ଫଟୋ । ସେତେବେଳେ ସମାଜ ବିଚାର କରିବ ଯେ ନାଟକରେ ଠିକ୍ ଭାବରେ ଅଭିନୟ କରିପାରିଛି କି ନାହିଁ । ଇଚ୍ଛା ହେଲେ ଫଟୋ ଉପରେ ଫୁଲମାଳଟିଏ ପକେଇ କହିବ ପ୍ରକୃତରେ କଳାକାର ଜୀବନରେ ତୁମେ ଠିକ୍ କଳାକାର ପରି ଜୀବନ ବିତେଇଛ । ଏତିକି କାଳିଆ ଠାକୁରଙ୍କ ପାଖରେ ପ୍ରାର୍ଥନା କରେ ମୋର ଘନିଷ୍ଠ ବନ୍ଧୁ ତଥା ଓଡ଼ିଶାର ଶିଳ୍ପୀ ପରିବାରର ମୁଖ୍ୟ ସଦସ୍ୟ ଶ୍ରୀଯୁକ୍ତ ଦିନନାଥ ପାଠୀଙ୍କୁ ଦୀର୍ଘାୟୁ କରନ୍ତୁ । ସେ କଳାକ୍ଷେତ୍ର ପାଇଁ ଆଉକିଛି ଭିତ୍ତିଭୂମି ସୃଷ୍ଟି କରନ୍ତୁ ।

Digitized by srujanika@gmail.com









ପ୍ରଫୁଲ୍ଲ ମହାନ୍ତିଙ୍କ ସଂପର୍କରେ ଲିଖିତ ବହି ଭିଲେଜ୍ ଭଏସ୍‌ର ଲୋକାର୍ପଣ ଉତ୍ସବରେ ଲଣ୍ଡନଠାରେ ପ୍ରଫୁଲ୍ଲ ମହାନ୍ତିଙ୍କ ସହ, ୨୦୦୩

କେନ୍ଦ୍ର ଲଳିତକଳା ଏକାଡ଼େମୀର ୩୮ ତମ ଜାତୀୟ ସାଂପ୍ରତିକ ଚିତ୍ରକଳା ପ୍ରଦର୍ଶନୀର ଉଦ୍‌ଘାଟନ ମଞ୍ଚରେ ଶିବରାଜ ପାଟିଲ ଓ ରାମନିବାସ ମିର୍ଦ୍ଧାଙ୍କ ସହ (ଦିନନାଥଙ୍କ ପ୍ରଚେଷ୍ଟାରେ ଲଳିତ କଳା ଏକାଡ଼େମୀ ଇତିହାସରେ ପ୍ରଥମଥର ପାଇଁ 'ସାଂପ୍ରତିକ' ଶବ୍ଦ ବ୍ୟବହାର କରାଯାଇଥିଲା ଯାହା ପରବର୍ତ୍ତୀ ପ୍ରଦର୍ଶନୀମାନଙ୍କରେ ଦେଖିବାକୁ ମିଳି ନଥିଲା) ୧୯୯୫

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ, ବାଚସ୍ପତି ଶରତ କର ଓ ଅଜିତ କେଶରୀ ରାୟଙ୍କ ଗହଣରେ, 'ଲେଟ୍ ଏ ଥାଉଜେଣ୍ଡ୍ ଫ୍ଲାୱାରସ୍ ବ୍ଲୁମ୍' ବହି ଲୋକାର୍ପଣ ଉତ୍ସବରେ ବହିର ସଂପାଦକ ଦିନନାଥ ପାଠୀ, ୨୦୦୧

Digitized by srujanika@gmail.com



ରିଟ୍‌ବର୍ଗ୍ ମ୍ୟୁଜିୟମ୍ ଗ୍ୟାଲେରୀରେ ନିଜ ଗ୍ରାଫିକ୍ ପ୍ରିଣ୍ଟର ଏକକ ଚିତ୍ର ପ୍ରଦର୍ଶନୀରେ ହେନେରୀ ଗ୍ରାଇଡ଼ର୍‌ଙ୍କ ସହ, ୧୯୯୨

ପ୍ରତାପଗିରି ପେଣ୍ଠରେ ଓଷାକୋଠି ଚିତ୍ର ପଞ୍ଜୀକରଣ କରିବା ଅବସରରେ, ୧୯୯୦

Digitized by srujanika@gmail.com

ପ୍ରଜାତନ୍ତ୍ର ସାପ୍ତାହିକୀ
PRAJATANTRA SAPTAHIKI
ଶନିବାର ୧୪ ମାର୍ଚ୍ଚ ୧୯୮୭

କଳା ସଂସ୍କୃତି

ଅସିତ ମହାନ୍ତି

# ସୁଇଜରଲାଣ୍ଡରେ ଓଡ଼ିଶା ମାଟିର ବାସ୍ନା

କଳା, ସଂସ୍କୃତି, ସ୍ଥାପତ୍ୟରେ ପ୍ରାଚୀନ ଓଡ଼ିଶା ଥିଲା ପୃଥିବୀରେ ଅଦ୍ୱିତୀୟ । ତାହାର ଅବଶେଷ ଆଜି ଯେତିକି ଅଛି, ସେତିକି ଦେଖି ମଧ୍ୟ ବିଶ୍ୱବାସୀ ଚମତ୍କୃତ ହୋଇଯାଆନ୍ତି । ବିଶ୍ୱବିଶ୍ରୁତ ଶିଳାକାବ୍ୟ 'କୋଣାର୍କ' ମନ୍ଦିର ଏହାର ଅନୁପମ ଦୃଷ୍ଟାନ୍ତ ।

ଆଜି ଅତୀତର ସେହି ଗୌରବମୟ ସ୍ଥାପତ୍ୟ-ଶିଳ୍ପର ଅଧିକାଂଶ କଳାକୋଟୀ ନାହିଁ—ମାତ୍ର ଓଡ଼ିଶାର ସାଂସ୍କୃତିକ ବାତାବରଣ ଅନେକ ବସ୍ତୁରେ ରହିଛି ଚଳମାନ । ନୃତ୍ୟ, ସଙ୍ଗୀତ, ଚିତ୍ରକଳା, ବୟନ ଶିଳ୍ପ, ଆଦିବାସୀ ସଂସ୍କୃତି ଆଦି ପ୍ରତ୍ୟେକଟି ବିଭାଗ ଆଜି ପର୍ଯ୍ୟନ୍ତ ମଧ୍ୟ ଜୀବନ୍ତ ଭାବରେ ଗତିଶୀଳ ହୋଇ ରହି ଆସିଛି । ତେଣୁ ଏ ଓଡ଼ିଶୀ ସଂସ୍କୃତିର ଆକର୍ଷଣରେ ବହୁ ପର୍ଯ୍ୟଟକ ବିଶ୍ୱର ବିଭିନ୍ନ ପ୍ରାନ୍ତରୁ ଏ ମାଟିକୁ ଟାଣିହୋଇ ଆସିଛନ୍ତି ଯୁଗେ ଯୁଗେ । ଓଡ଼ିଶାବାସୀଏ କିନ୍ତୁ ବାହାର ଦୁନିଆ ଆଗରେ ନିଜକୁ ଉପସ୍ଥାପିତ କରିବା ପାଇଁ ସବୁବେଳେ କୁଣ୍ଠା ପ୍ରକାଶ କରି ଆସିଛନ୍ତି ।



କୋଣାର୍କ ସଂଗ୍ରହାଳୟର ଏକ ସ୍ଥାପତ୍ୟ

ତେବେ, ଅଳ୍ପ କିଛି ବର୍ଷ ହେବ, ଏ ପ୍ରବୃତ୍ତିର ମନୋଭାବ ଆସ୍ତେ ଆସ୍ତେ ଅପସରି ଯାଉଥିବା ଦେଖାଯାଉଛି । ଓଡ଼ିଶାବାସୀଏ ଓଡ଼ିଶାର କିଛି କିଛି ଭଲ ଜିନିଷ ବିଶ୍ୱବାସୀଙ୍କ ସମ୍ମୁଖରେ ଉପସ୍ଥାପିତ କରୁଛନ୍ତି ଓ ତାହା ଆଦୃତ ହେବାପରି ମନେ ହେଉଛି । ତେଣୁ ପାରସ୍ପରିକ ଆଦାନ ପ୍ରଦାନ ପାଇଁ ଏକ ସାଂସ୍କୃତିକ ବାତାବରଣରେ ବାତାୟନ ଏବେ ଖୋଲିଯାଇଛି । ଏହାର ଗୋଟିଏ ଉଲ୍ଲେଖନୀୟ ଉଦାହରଣ, ଏବେ ସୁଇଜରଲାଣ୍ଡରୁ ପ୍ରକାଶ ପାଇଥିବା, "ସୁଇସାଏର୍ ଗେଜେଟ୍"ର ଓଡ଼ିଶା ବିଶେଷାଙ୍କ ।



ଆଦିବାସୀ ଚିତ୍ରକଳାର ଏକ ନମୁନା

ବିଶେଷାଙ୍କଟି ପ୍ରଚ୍ଛଦ ସମେତ ମୋଟ ୭୪ ପୃଷ୍ଠା ବିଶିଷ୍ଟ ଏବଂ ଏଥିରେ ରହିଛି ଓଡ଼ିଶାର କଳା, ସଂସ୍କୃତି ସ୍ଥାପତ୍ୟ, ଆଦି ସମ୍ପର୍କରେ ମୋଟ ସାତଟି ଉପାଦେୟ ନିବନ୍ଧ । ଓଡ଼ିଶାର ଭୌଗୋଳିକ ସ୍ଥିତି ଓ ଇତିହାସ ସମ୍ପର୍କରେ ଦୁଇଟି ଲେଖା ଲେଖିଛନ୍ତି ଜର୍ମାନ୍ ହାଇଡେଲ୍‌ବର୍ଗ ବିଶ୍ୱବିଦ୍ୟାଳୟର ପ୍ରଫେସର ତଥା ଜଗନ୍ନାଥ ସଂସ୍କୃତିର ଖ୍ୟାତିମାନ୍ ଗବେଷକ ଡକ୍ଟର ହର୍‌ମାନ୍ କୁଲ୍‌କେ । ଅନ୍ୟାନ୍ୟ ଲେଖା ମଧ୍ୟରେ ଅଛି, ପଞ୍ଜାବ ବିଶ୍ୱବିଦ୍ୟାଳୟର 'କଳା-ଇତିହାସ' ବିଭାଗର ପ୍ରଫେସର୍ ବି. ଏନ୍. ଗୋସ୍ୱାମୀଙ୍କ ଲେଖା 'ଭାରତର ସର୍ଣ୍ଣା ଓ ଯାତ୍ରୀମାନଙ୍କର ଜନ୍ମବିବର୍ତ୍ତନ', ଜୁରିକ୍ ରିଟ୍‌ବର୍ଗ ମ୍ୟୁଜିଅମ୍‌ର ଡିରେକ୍ଟର ଡକ୍ଟର ଶ୍ରୀ ଏବରହାର୍ଡ଼ ଫିସର୍ ଓ ଓଡ଼ିଶା ବିଜୁ ପଟ୍ଟନାୟକ କଳା ମହାବିଦ୍ୟା-



ଗୀତଗୋବିନ୍ଦ ପାଟ୍ଟ

ଳୟର ଅଧ୍ୟକ୍ଷ ଡକ୍ଟର ଦିନନାଥ ପାଠୀଙ୍କ ମିଳିତ ଲେଖା, 'ଓଡ଼ିଶାର ଆଦିବାସୀ ସଂସ୍କୃତି', ଏବଂ ପଞ୍ଜାବ ବିଶ୍ୱବିଦ୍ୟାଳୟର ଇତିହାସ ଅଧ୍ୟାପକ କରୁଣା ଗୋସ୍ୱାମୀଙ୍କ 'ଜଗତଠାକୁର ଜଗନ୍ନାଥ' । ଏହା ବ୍ୟତୀତ ଅଛି ଓଡ଼ିଶୀ ନୃତ୍ୟ, ବୟନଶିଳ୍ପ, ଓଡ଼ିଶାର ପଟ୍ଟଚିତ୍ର, ତାଳପୋଥି ଆଦି ସମ୍ପର୍କରେ ଲେଖା ଓ ଫଟୋଚିତ୍ର । ବିଶେଷାଙ୍କଟିରେ ଥିବା ସବୁଗୁଡ଼ିକ ଲେଖା ପ୍ରାମାଣିକ ଫଟୋଚିତ୍ର ସହିତ ପ୍ରକାଶ ପାଇଛି—ଯାହା ଓଡ଼ିଶାର ଅତୁଳନୀୟ ଐତିହ୍ୟ ସମ୍ପର୍କରେ ଆଲୋକପାତ କରୁଛି । ଏସବୁ ସହିତ ପ୍ରଚ୍ଛଦରେ ଅଛି ଓଡ଼ିଶାର ପାରମ୍ପରିକ ପଟ୍ଟଚିତ୍ର ଶୈଳୀରେ ଅଙ୍କିତ ଜଗନ୍ନାଥଙ୍କର ପଦ୍ମାସନରେ ଉପବେଶନ କରିଥିବାର ଚିତ୍ର ।

ପୂର୍ବରୁ ଜୁରିକ୍ ରିଟ୍‌ବର୍ଗ ମ୍ୟୁଜିଅମ୍ ପକ୍ଷରୁ ଓଡ଼ିଶା ସମ୍ପର୍କରେ ଯେଉଁ ସ୍ୱତନ୍ତ୍ର ମୂଲ୍ୟବାନ ପୁସ୍ତକ ପ୍ରକାଶ ପାଇଥିଲା ଏହି ବିଶେଷାଙ୍କଟି ତାହା ତୁଳନାରେ ଅର୍ବାଚୀନ ହେଲେହେଁ ଏପରି ଏକ ପ୍ରୟାସର ଉପାଦେୟତା ଅନସ୍ୱୀକାର୍ଯ୍ୟ । ଆମେ ଉଦ୍ୟୋକ୍ତାମାନଙ୍କୁ ସାଧୁବାଦ ଜଣାଉଛୁ । ❋ (ଅସିତ)



Digitized by srujanika@gmail.com

## ସ୍ୱତନ୍ତ୍ର ପ୍ରସଙ୍ଗ

# 'ଭାରତ ଉତ୍ସବ'ରେ ଭାରତର ଲୋକପ୍ରିୟ କଳା



ସୁଇଡେନ୍‌ର କୁଲ୍ଟର୍ ହୁସେଟ୍ (ଷ୍ଟକ୍‌ହୋମ୍)ଠାରେ ଅନୁଷ୍ଠିତ ହେବାକୁ ଯାଉଥିବା 'ଭାରତୀୟ ଲୋକପ୍ରିୟ କଳା' ପ୍ରଦର୍ଶନୀର ମଡେଲ୍ ।

ଭାରତୀୟ ସଂସ୍କୃତିର ପ୍ରଚାର ଓ ପ୍ରସାର ପାଇଁ ଯେଉଁ କେତୋଟି ପ୍ରୟାସ ବିଭିନ୍ନ ସମୟରେ କରାଯାଇଛି, ସେଗୁଡ଼ିକ ମଧ୍ୟରୁ 'ଭାରତ ଉତ୍ସବ' ପରିକଳ୍ପନା ଗୋଟିଏ । ଏହି ଉତ୍ସବ ଆଜିପର୍ଯ୍ୟନ୍ତ ତିନୋଟି ଦେଶ— ଇଂଲଣ୍ଡ, ଆମେରିକା ଓ ଫ୍ରାନ୍ସରେ ଅନୁଷ୍ଠିତ ହୋଇସାରିଛି, ଏବଂ ଚଳିତବର୍ଷ ଏହା ଅନ୍ୟ ଦୁଇଟି ଦେଶ—ସୁଇଡେନ୍ ଓ ସୋଭିଏତ୍ ରୁଷ୍‌ରେ ଅନୁଷ୍ଠିତ ହେବ । ଆଗାମୀ ଜୁଲାଇ ୩ ତାରିଖ ଦିନ ମସ୍କୋର କ୍ରେମ୍‌ଲିନ୍‌ଠାରେ ଓ ଅଗଷ୍ଟ ୨୨ ତାରିଖ ଦିନ ସୁଇଡେନ୍‌ର କୁଲ୍ଟର୍ ହୁସେଟ୍ (ଷ୍ଟକ୍‌ହୋମ୍)ଠାରେ ଏହା ଉଦ୍‌ଘାଟିତ ହେବ । ଏଥିପାଇଁ ଏବେ ଦ୍ରୁତ ପ୍ରସ୍ତୁତି ଚାଲିଛି ।

ସୋଭିଏତ୍ ଓ ସୁଇଡେନ୍, ଏ ଉଭୟ ଦେଶରେ ଏହି ଯେଉଁ 'ଭାରତ ଉତ୍ସବ' ଦୁଇଟିର ଆୟୋଜନ କରାଯାଉଛି, ସେଥି ମଧ୍ୟରୁ ସୁଇଡେନ୍‌ଠାରେ ଆୟୋଜନ କରାଯାଉଥିବା 'ଭାରତ ଉତ୍ସବ'ଟିର ଏକ ବିଶେଷତ୍ୱ ରହିଛି । ଏଥିରେ 'ଭାରତୀୟ ଲୋକପ୍ରିୟ କଳା' ବା **'Indian Popular Art'** ଶୀର୍ଷକ ଏକ କଳା-ପ୍ରଦର୍ଶନୀର ଆୟୋଜନ କରାଯାଇଛି । ଅଗଷ୍ଟ ୨୨ ତାରିଖଠାରୁ ନଭେମ୍ବର ୧୪ ତାରିଖ ପର୍ଯ୍ୟନ୍ତ ସୁଇଡେନ୍‌ଠାରେ ଅନୁଷ୍ଠିତ ହେବା ପରେ ଏହି ପ୍ରଦର୍ଶନୀଟି ଆସନ୍ତା ବର୍ଷ ଜାନୁଆରିଠାରୁ ଜୁଲାଇ ପର୍ଯ୍ୟନ୍ତ ସୋଭିଏତ୍ ରୁଷିଆର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହେବାର କାର୍ଯ୍ୟକ୍ରମ ରହିଛି । ତେଣୁ 'ଭାରତୀୟ ଲୋକପ୍ରିୟ କଳା' ଶୀର୍ଷକ ଏହି ପ୍ରଦର୍ଶନୀଟି ଉଭୟ ସୁଇଡେନ୍ ଓ ସୋଭିଏତ୍‌ର 'ଭାରତ-ଉତ୍ସବ' ପାଇଁ ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ଏଇଠି ପ୍ରଶ୍ନ ଉଠେ, 'ଭାରତୀୟ ଲୋକପ୍ରିୟ କଳା' କାହାକୁ କୁହାଯିବ ?

ଜୀବନର ପରିପ୍ରକାଶ ହେଉଛି କଳା । ତେଣୁ, ସବୁ ସମୟରେ, ସବୁ ଦେଶରେ, ସାଧାରଣ ଜନତାର ଆଦର ଲାଭ କରି ବଞ୍ଚିବା ହିଁ କଳାର ଭବିତବ୍ୟ । ମନୁଷ୍ୟ ସଭ୍ୟତାର ଆଦିକାଳରେ ଏହା ସାଧାରଣ ମଣିଷର ଦୈନନ୍ଦିନ ଜୀବନ-ଧାରାଠାରୁ ଅବିଚ୍ଛିନ୍ନ ଥିଲା ଓ ବର୍ତ୍ତମାନ ମଧ୍ୟ ଅବିଚ୍ଛିନ୍ନ ରହିଛି । ସଭ୍ୟତାର କ୍ରମବିକାଶ ଏ ଉଭୟ ମଧ୍ୟରେ ବିଭାଜନ ରେଖା ଟାଣି ପାରିନାହିଁ ।

, ମାତ୍ର, ଊନବିଂଶ ଶତାବ୍ଦୀରେ ଯେତେବେଳେ ଏହା ଜନସାଧାରଣଙ୍କ ଦୈନନ୍ଦିନ



ଡକ୍ଟର ଦିନନାଥ ପାଠୀ :
'ଭାରତୀୟ ଲୋକପ୍ରିୟ କଳା' ପ୍ରଦର୍ଶନୀର
ଡିରେକ୍ଟର ଓ ଡିଜାଇନର୍ ।

ଜୀବନ-ଧାରାଠାରୁ ବିଚ୍ଛିନ୍ନ ହୋଇ ପଡ଼ିଥିଲା ସେତେବେଳେ ଲକ୍ଷ୍ୟ କରାଯାଇଥିଲା ଯେ କଳାର ଆଦର ଆଉ ଆଗପରି ନାହିଁ । ଜନସାଧାରଣ କଳା ଭିତରେ ନିଜ ଜୀବନ ପ୍ରତିବିମ୍ବ ନଦେଖି, କଳାକୁ ଏକ ସମ୍ଭ୍ରମର ଦୃଷ୍ଟିରେ ଦେଖୁଥିଲେ ଓ କଳା ବିଚ୍ଛିନ୍ନ ଦ୍ୱୀପଟିଏ ପରି ହୋଇଯାଇଥିଲା । ଫଳତଃ କଳା ପୁଣି ଫେରିଥିଲା ସାଧାରଣ ଜନତାର ଭିତରକୁ । ତେଣୁ, ସମୟର ଶାଶ୍ୱତ ସ୍ରୋତରେ ବହୁ ସମ୍ରାଟ, ବହୁ ଶାସନ ବଦଳିଯାଇଥିଲେ ମଧ୍ୟ, ଏବଂ ସମାଜର ନୈତିକ ମୂଲ୍ୟବୋଧର ବହୁ ପରିବର୍ତ୍ତନ ଘଟିଥିଲେ ମଧ୍ୟ, କଳାର ଏକ ସୁନାଦ୍ୟ ଧାରା ସେହିସବୁ ପରିବର୍ତ୍ତିତ ମୂଲ୍ୟବୋଧକୁ ଅଙ୍ଗୀକାର କରି ପ୍ରବାହିତ ହୋଇଆସିଛି । ତେଣୁ 'ଲୋକପ୍ରିୟ କଳା' କହିଲେ ଆମେ ତାହାକୁ ହିଁ ବୁଝିବା, ଯାହା ସାମ୍ରାଜ୍ୟବାଦୀ ଯୁଗର କଳା ନୁହେଁ, ବରଂ ତାହା ଏପରି ଏକ ଜନମର କଳା, ଯାହା ଏକାଧାରରେ ସୃଜନଶୀଳ ଓ ଜନଜୀବନ ସହିତ ସମ୍ବନ୍ଧିତ, ଏବଂ ଲୋକମାନଙ୍କ ଦ୍ୱାରା ଲୋକମାନଙ୍କ ପାଇଁ ସୃଷ୍ଟ ।

ତେଣୁ, 'ଲୋକପ୍ରିୟ କଳା' ଏକ ଗଣତାନ୍ତ୍ରିକ ଭାବଧାରା । ଗୁଣାତ୍ମକ ମାନ ଅପେକ୍ଷା, ପରିମାଣାତ୍ମକ ମାପକାଠିରେ ଏହାର ବିଚାର କରାଗଲେ ମଧ୍ୟ, ଯାହା କେବଳ ଜନାଦୃତ ତାହା 'ଲୋକପ୍ରିୟ କଳା' ହୋଇପାରିବ ନାହିଁ । ଏଥିପାଇଁ କଳାତ୍ମକତା ଓ ଜନାଦୃତ ଉଭୟ ସମଭାବରେ ଗୁରୁତ୍ୱପୂର୍ଣ୍ଣ । ତେଣୁ ଜନସାଧାରଣଙ୍କ ରୁଚି ଉପରେ ଏହାର ଅସ୍ତିତ୍ୱ ନିର୍ଭର କରୁଥିବାରୁ 'ଲୋକପ୍ରିୟ କଳା'ର ଧର୍ମ ନିତ୍ୟ-ପରିବର୍ତ୍ତନଶୀଳ ।

Digitized by srujanika@gmail.com

**ଅସୀମ ବସୁ**

# ପ୍ରଦର୍ଶନୀ : ଜୀବନଟା ସାରା ଖାଲି ପ୍ରଦର୍ଶନୀ

ସାନାଟୋରିଅମ୍ ନାମକ କୋଠାଟାର ଉପର ମହଲାର ଗୋଟାଏ ବଖରାରେ ଆମେ କେତେଜଣ- ରୋହିତ, ଡି.ଏନ୍, ମୁଁ ଓ ଦିନନାଥ । ଆମ ସାମ୍ନାରେ ଖଟ ଉପରେ ମୋର ପସନ୍ଦ ହେଉନଥିବା ଦିଲ୍ଲୀ ବାଣିଜ୍ୟ ମେଳା ପାଇଁ ପ୍ରସ୍ତୁତ ହେଇଥିବା ଓଡ଼ିଶା ମଣ୍ଡପର ଗୋଟାଏ ମଡ଼େଲ୍। ସେ ମଡେଲ୍‌ର ଅତୀତ ଇତିହାସ ଅଛି । କଲିକତାରେ ମୋ ସହିତ ପାଠ ପଢୁଥିବା ଜଣେ ବନ୍ଧୁ ମୋ ସହିତ ମିଶି କାମ କରିବାର ପ୍ରତିଶ୍ରୁତି ଦେଇ ମୋ ନକ୍ସାରେ କଲିକତାରେ ମଡେଲ କରିବାକୁ ନେଇଥିଲା । ହେଲେ ମୁଁ ପରେ ଜାଣି ପାରିଲି ବନ୍ଧୁଜଣକ ମୋର ପ୍ରତିଦ୍ୱନ୍ଦ୍ୱୀ କଲିକତାର ଟି. ସରକାରର ଲୋକ । ଖବର ଜାଣି ମୁଁ କଲିକତା ଯାଇ ମଡେଲ ଦେଖିଲି । ମୋ ନକ୍ସାର ନୁହେଁ । ତା ନିଜ ନକ୍ସାରେ ଯାହା ସେ କରୁଥିଲା ତାକୁ ଧରି ଚାଲି ଆସିଲି । ହେଲେ ଏବେ କ'ଣ କରିବି ? ହାତରେ ସମୟ ବହୁତ୍ କମ୍ । ଯେଉଁ ନିର୍ଦ୍ଦିଷ୍ଟ ଦିନରେ ମଡେଲ୍ ଓ ଟେଣ୍ଡର୍ ଦେବାକୁ ପଡ଼ିବ ସେଦିନ ଯେ ପାଖେଇ ଆସିଲାଣି । ପରାଜୟକୁ ମାନି ନେବା ପାଇଁ ନିଜକୁ ପ୍ରସ୍ତୁତ କରିବା ଛଡ଼ା ଆଉ ଉପାୟ ବା କ'ଣ ? ହେଲେ ପରାଜୟର ଶେଷ ପାହାଚରେ ଠିଆ ହେଇ ଦିନନାଥ କହିଲା - ହବ ଦାଦା ! ହବ ! ଆପଣଙ୍କ ନକ୍ସାର ମଡେଲ୍ ଅଲ୍‌ବତ୍ ତିଆରି ହବ। ଆମେ ଏତେ ଜଣ ଥାଉ ଥାଉ ଆପଣ ଯୁଦ୍ଧ ନ କରି ପରାଜୟକୁ ମାନି ନେବେ ? ନା, କଦାପି ନୁହେଁ। **ଦିନନାଥର ସେଇ କଥା ପଦକରେ ଝାଉଁଳି ପଡ଼ିଥିବା ବାତବରଣ ପୁଣି ସତେଜ ହେଇ ଉଠିଲା। ସେଇ ମୁହୂର୍ତ୍ତରେ ନୂଆ ମଡ଼େଲର କାମ ଆରମ୍ଭ ହେଲା । ଏସବୁ କଥା ସେଇ ଅଣାଅଶି ମସିହାର । ହେଲେ ତା ପୂର୍ବରୁ ତ ଆହୁରି ଅନେକ ଘଟଣା ରହିଛି ।**

ଉଣେଇଶ ଶହ ଅଠସ୍ତରୀରେ ଭୁବନେଶ୍ୱରରେ ପ୍ରଥମ କରି ଅନୁଷ୍ଠିତ ହେଲା ପୂର୍ବାଞ୍ଚଳ ସାଂସ୍କୃତିକ ମେଳା । ଆଜିର ପ୍ରଦର୍ଶନୀ ପଡ଼ିଆରେ ପୂର୍ବାଞ୍ଚଳ ରାଜ୍ୟଗୁଡ଼ିକର ପ୍ରଦର୍ଶନୀର ବିପୁଳ ଆୟୋଜନ । ସେଇ ପଡ଼ିଆରେ ପ୍ରଥମ ପ୍ରଦର୍ଶନୀ । ଓଡ଼ିଶା ସରକାରଙ୍କର ପ୍ରାୟ ସବୁ ବିଭାଗର ପ୍ରଦର୍ଶନୀ ମଣ୍ଡପମାନ ପ୍ରସ୍ତୁତ ହେଲା ପ୍ରଦର୍ଶନୀ ପଡ଼ିଆରେ । ମୋ ହାତରେ ପ୍ରାୟ ନଅଟି ମୁଖ୍ୟ ବିଭାଗର ପ୍ରଦର୍ଶନୀ ମଣ୍ଡପ ନିର୍ମାଣର ଦାୟିତ୍ୱ ସାଙ୍ଗକୁ ମୁଖ୍ୟ ପ୍ରବେଶଦ୍ୱାରର ନିର୍ମାଣ ଦାୟିତ୍ୱ ମଧ୍ୟ ନ୍ୟସ୍ତ । କାଗଜ କଲମରେ ଏସବୁ ମଣ୍ଡପର ନିର୍ମାଣ ଦାୟିତ୍ୱ ମୋ ଉପରେ ନ୍ୟସ୍ତ ଥିଲେବି ଅଲିଖିତ ଦାୟିତ୍ୱ ମତେ କେନ୍ଦ୍ରକରି ମୋ ପାଖରେ ଏକାଠି ହେଇଥିବା ଏକ ଶିଳ୍ପୀଗୋଷ୍ଠୀ ହାତରେ । **ଦିନନାଥ ସେଇ ଗୋଷ୍ଠୀରେ ନୂଆକରି ସାମିଲ ହେଇଥିଲେ ବି ସେ ଥିଲେ ଦଳର ସହସେନାପତି ଭୂମିକାରେ । ମୋ ହାତରେ ଥିବା ନଅଟି ପ୍ରଦର୍ଶନୀ ମଣ୍ଡପ ଭିତରେ ସବୁଠାରୁ ବଡ଼ ଓ ଗୁରୁତ୍ୱପୂର୍ଣ୍ଣ ମଣ୍ଡପ ହେଲା ଲୋକସଂପର୍କ ବିଭାଗର ପ୍ରଦର୍ଶନୀ ମଣ୍ଡପ ।** ଓଡ଼ିଶାରେ ସେ ସମୟରେ ଟିକିଏ ଅଧିକା ପାଠ ପଢ଼ିଥିବା ସରକାରୀ ଚାକିରି କରିଥିବା ଚିତ୍ରଶିଳ୍ପୀଙ୍କ ସଂଖ୍ୟା ଅନେକ କମ୍ । ଦିନନାଥ ସେଇ ଅଧିକା ପାଠ ପଢିଥିବା ଶିଳ୍ପୀମାନଙ୍କ ଭିତରେ କେବଳ ଅଗ୍ରଣୀ ନୁହେଁ, ନିଜ କଥା ଓ ବ୍ୟକ୍ତିତ୍ୱରେ ଅନ୍ୟକୁ ପ୍ରଭାବିତ କରିବାର କ୍ଷମତା ମଧ୍ୟ ଅର୍ଜନ କରିଛି । ସଂସ୍କୃତି ଓ ଲୋକ ସମ୍ପର୍କ ବିଭାଗର ନିର୍ଦ୍ଦେଶକ ଓ ସଚିବ ଶ୍ରୀ ଏ.ଏନ୍. ତିୱାରୀ ଦିନନାଥକୁ ଦାୟିତ୍ୱ ଦେଇଥାଆନ୍ତି ତାଙ୍କ ମଣ୍ଡପର କାମ ତଦାରଖ କରିବାର । ପ୍ରତିଦିନ ସନ୍ଧ୍ୟାରେ ତିୱାରୀ ସାହେବ କାମ କେତେ ଦୂର ଆଗେଇଲା ଦେଖିବାକୁ ଆସନ୍ତି । ଦିନନାଥ ଓ ମୁଁ ତାଙ୍କ ସାଙ୍ଗରେ ବୁଲି ସବୁ କାମ ତାଙ୍କୁ ବୁଝାଉ । ସେଦିନ ତିୱାରୀ ସାହେବ ଆସିଲା ବେଳକୁ ମୁଁ କୌଣସି କାମରେ ବାହାରକୁ ଯାଇଥାଏ । ତେଣୁ ତାଙ୍କୁ କାମର ଅଗ୍ରଗତି କଥା ବୁଝେଇବାର ଦାୟିତ୍ୱ ଦିନନାଥ ଉପରେ । ତିୱାରୀ ସାହେବ ଯାହା କରିବାକୁ କହୁଥାନ୍ତି ଦିନନାଥ ସବୁଥିରେ ଇଏସ୍ ସାର୍ କହୁଥାଏ । ମଣ୍ଡପର ଗୋଟାଏ କୋଣରେ ବାଘର ମଡ଼େଲ ଥୁଆ ହେଇଥାଏ । ତିୱାରୀ ସାହେବ କହିଲେ - ପାଠୀ ! ଏଠି କାଚ ଲାଗିବା ଦରକାର ।

ପାଠୀର ତତ୍‌କ୍ଷଣାତ୍ ଉତ୍ତର ଇଏସ୍ ସାର୍ । ହେଲେ କାଚ ତ ସେମିତି ଅଧା ଗୋଲେଇର ମିଳେନି । ଲାଗିବ କେମିତି ? ମୁଁ ଫେରିଲା ପରେ ଦିନନାଥର କଥା ଶୁଣି ମୁଁ କହିଲି । ହେଲେ ଦିନନାଥ ମୋ କଥା ଶୁଣିବାକୁ ରାଜି ନୁହେଁ । ସେ ତାର ଡାଇରେକ୍ଟରଙ୍କୁ କହିଛି ମାନେ - କରିବାକୁ

Digitized by srujanika@gmail.com

ପଡ଼ିବ । ବାଧ ହେଇ ମୁଁ ଦିନନାଥକୁ ସାଙ୍ଗରେ ନେଇ ତିଓ୍ୱାରୀ ସାହେବଙ୍କ ପାଖକୁ ଗଲି । ସେଠି ଦିନନାଥ ମୋ କଥାକୁ ଆହୁରି ବନେଇ ଚୁନେଇ ତାଙ୍କୁ ବୁଝେଇ ଦେଲା । ସେ ବୁଝିଗଲେ । ଓଡ଼ିଶା ମଣ୍ଡପର ଭିତର କାମ ସରିଲା ସିନା ହେଲେ ମୁଖଶାଳା ? ପ୍ରଦର୍ଶନୀ ଖୋଲିବାକୁ ଆଉ ଗୋଟିଏ ଦିନ ବାକି, ହେଲେ ସାମନା କାମ କିଛି ହେଇନି କହିଲେ ଚଳେ । ମୁଖଶାଳା କାମ ପଛେଇ ଯାଇଥିବାରୁ ତିଓ୍ୱାରୀ ସାହେବ ବିଗିଡ଼ି ଯାଇଛନ୍ତି । ସମୟ ମାତ୍ର ଆଉ ଗୋଟିଏ ରାତି । ଦିନନାଥ କହିଲା ଦାଦା ! ମୁଖଶାଳା କାମ ମୋ ହାତରେ ଛାଡ଼ି ଦେଇ ଆପଣ ଅନ୍ୟ କାମ ଦେଖନ୍ତୁ । ମନରେ ସନ୍ଦେହ ଥିଲେ ବି ଅନ୍ୟ ଉପାୟ ନ ଦେଖି ମୁଁ ତା'ରି ଉପରେ ମୁଖ୍ୟ ମଣ୍ଡପର ମୁଖଶାଳା କାମ ଛାଡ଼ି ଦେଲି । ସେ କିଛି କାରିଗରଙ୍କୁ ନେଇ କାମରେ ଲାଗିଲା । ସକାଳ ହେଲା ବେଳକୁ ଦେଖିଲି ମୁଖଶାଳା ପ୍ରସ୍ତୁତ । ତିଓ୍ୱାରୀ ସାହେବ ଆସି ମତେ ବଧେଇ ଜଣେଇଲେ । ମୁଁ କହିଲି - ସେଦିନ କାଚ ଲାଗିବ ବୋଲି କହିବା ଭୁଲ ପାଇଁ ଯେମିତି ଦିନନାଥ ଦାୟୀ ଥିଲା - ଆଜିର କୃତି ପାଇଁ ବି ସେ ଦାୟୀ ।

ସେହି ବର୍ଷ ଆସାମରେ ଏ.ଆଇ.ସି.ସି ସମ୍ମିଳନୀରେ ଓଡ଼ିଶା ମଣ୍ଡପ ନିର୍ମାଣ ହେବ ।

ଦିନନାଥ ! ଆସାମ ପାଇଁ ମଣ୍ଡପକୁ କ'ଣ ରୂପ ଦେବା ? ପ୍ରଶ୍ନ କଲି ମୁଁ । ଦିନନାଥ କହିଲା - ଦାଦା ଆସାମରେ ଓଡ଼ିଶାକୁ ଥୋଉ ନାହାନ୍ତି ।

ଓଡ଼ିଶା ? ମୋର ପ୍ରଶ୍ନ ?

'ହଁ ଓଡ଼ିଶା' ଦିନନାଥର ଉତ୍ତର । ଶ୍ରୀଜଗନ୍ନାଥ ଓଡ଼ିଶାର ବଡ଼ଠାକୁର । ଆଉ ଠାକୁରଙ୍କ ସବୁଠାରୁ ବଡ଼ ପର୍ବ ହେଲା ରଥଯାତ୍ରା ।

ଆରେ ! ସତକଥା ତ ! ତିନିରଥର ଆକାରରେ ମଣ୍ଡପ କଲେ, ସେ ମଣ୍ଡପ ଯେମିତି ଓଡ଼ିଶାକୁ ଚିହ୍ନେଇବ ସେମିତି ଉଜ୍ଜ୍ୱଳ ରଙ୍ଗର କନା କାମ ପ୍ରଦର୍ଶନୀରେ ଦୃଷ୍ଟି ଆକର୍ଷଣ କରିବ । ଏକଥାତ ମୁଁ ୧୯୬୭ରେ ମୁମ୍ବାଇ ପର୍ଯ୍ୟଟନ ମେଳାରେ ଉପଲବ୍ଧି କରିଛି ।

**ଦିନନାଥର କଥା ମୁତାବକ ମଡ଼େଲ ତିଆରି ହେଲା । ଦିନନାଥ ଡାହାଣୀ ହେଇ ଲାଗି ଗୁଣିଆ ହେଇ ଝାଡ଼ିବା ଲୋକ । ମଡ଼େଲ୍ ତିଆରିରେ ହାତ ଲଗେଇଲା ସିଏ ପୁଣି ସରକାରୀ ଲୋକ ହେଇ ଅଫିସରମାନଙ୍କୁ ମଡେଲ୍ ବୁଝେଇ ମନୋନୟନ କରିବା ଲୋକ ସିଏ** । ଦଳ ଗ୍ଭଲିଲୁ ଆସାମ । ସାଙ୍ଗରେ ଆହୁରି ଶିଳ୍ପୀବନ୍ଧୁମାନେ । ଯେମିତି ପ୍ରଦର୍ଶନୀ କାମ କରିବାକୁ ନୁହେଁ ଦେଶ ବୁଲିବାକୁ । ମଉଜ କରିବାକୁ । ଏ.ଆଇ.ସି.ସି ପ୍ରଦର୍ଶନୀରେ ଓଡ଼ିଶା ମଣ୍ଡପ ଝଟକି ଉଠିଲା ଉଜ୍ଜ୍ୱଳବର୍ଣ୍ଣ ବିନ୍ୟାସରେ ଓଡ଼ିଶୀ ଚିତ୍ରର ମାଧୁର୍ଯ୍ୟରେ । ସେ ସମୟର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ ଗାଡ଼ି ରଥ ସାମ୍ନାରେ ଅଟକି ଗଲା କିଛି ସମୟ ପାଇଁ, ଆଉ ସେଇ ସୁଯୋଗରେ ଲୋକସଂପର୍କ ବିଭାଗର ଡେପୁଟି ଡାଇରେକ୍ଟର ଆର୍ତ୍ତବାବୁ କାର୍‌ର ଝରକା ବାଟେ ପ୍ରଧାନମନ୍ତ୍ରୀଙ୍କ ପାଇଁ ଆଣିଥିବା ଉପହାର ଗଞ୍ଜିଲି ଓ ପିପିଲି ଛତାଟି ତାଙ୍କ ହାତକୁ ବଢ଼େଇ ଦେଇ ଧନ୍ୟ ହେଲେ । ଆଜିର ଦିନନାଥ ପାଖରେ ଉଡ଼ାଜାହାଜରେ ଯିବାଆସିବା ରିକ୍ସାରେ ଯିବାଭଳି ଲାଗିଲେ ବି - ସେଦିନ ଆସାମ ଯିବା ଥିଲା ମୋର ଦ୍ୱିତୀୟ ଏବଂ ତା'ର ପ୍ରଥମ ଆକାଶରେ ଉଡ଼ିବାର ରୋମାଞ୍ଚ ।

**ଆସାମର ପ୍ରଦର୍ଶନୀ ଓଡ଼ିଶା ସରକାର ପାଇଁ ସୁନାମ ଆଣିବା ସଙ୍ଗେ ସଙ୍ଗେ ଦିନନାଥକୁ ମଧ୍ୟ ଗୌରବାନ୍ୱିତ କଲା** । ପରବର୍ତ୍ତୀ ପ୍ରଦର୍ଶନୀ ଦିଲ୍ଲୀ ପ୍ରଗତି ମଇଦାନ ଏଗ୍ରି-ଏକ୍ସପୋ-୭୭ରେ ଦିନନାଥ ସରକାରଙ୍କ ତରଫରୁ ଭିଜୁଆଲାଇଜର୍ । ଓଡ଼ିଶା ସରକାର ସେହିଥର ପ୍ରଥମ କରି ଭିଜୁଆଲାଇଜର୍ ଭାବରେ ଜଣେ ପ୍ରତିଷ୍ଠିତ ଶିଳ୍ପୀଙ୍କୁ ରଖିଲେ । ସେତେବେଳେ ପ୍ରଗତି ମଇଦାନରେ ଆଜିଭଳି ସ୍ଥାୟୀ ମଣ୍ଡପ ଓଡ଼ିଶା ସରକାରଙ୍କର ନଥିଲା । ଖୋଲା ପଡ଼ିଆରେ ଲୁହା ଖୁଣ୍ଟ ବସେଇ କୋଣାର୍କ ମନ୍ଦିର ତିଆରି ହେଲା ପ୍ରଦର୍ଶନୀର ମୁଖଶାଳା ଭାବରେ । ଓଡ଼ିଶା ତ ସବୁ ପ୍ରଦର୍ଶନୀରେ ଅନ୍ୟ ସମସ୍ତ ରାଜ୍ୟର କାମ ଅଧା ସରିବା ପରେ ପହଞ୍ଚେ । ଏଠି ବି ତାର ବ୍ୟତିକ୍ରମ ହେଲାନି । ରାତିଦିନ କାମ କରି କାମ ସାରିଲୁ । ପ୍ରାୟ ଦେଢ଼ହଜାର ବର୍ଗଫୁଟର କାମ ଅଧିକା କରିବାକୁ ପଡ଼ିଲା । ହେଲେ ସରକାରୀ ହିସାବରେ ତାକୁ ଧରା ହେଲାନି । ଦିନନାଥ ବି ସାହସ କରି ସେ କଥା ଉଠେଇଲାନି । ପ୍ରଥମ ଭିଜୁଆଲାଇଜର୍‌ର ମୋହ ତାକୁ ଆଚ୍ଛନ୍ନ କରି ରଖିଥାଏ ।

Digitized by srujanika@gmail.com

ମୁଁ ଏକ ଆର୍ଥିକ ସଂକଟରେ ପଡ଼ିଲି । ହେଲେ ଦିନନାଥ ମସଗୁଲ୍ - ତା ସାର୍ଟିଫିକେଟ୍ ଉପରେ ମୁଁ ଟଙ୍କା ପାଇବି । ଏଇଟା ତ ସେତେବେଳର ଦିନନାଥ ପାଖରେ କମ୍ ଗୌରବର କଥା ନୁହେଁ ? କାହାକୁ ବା ଏକଥା ଜଣେଇବି ? ତିୱାରୀ ସାହେବ କାମ ଦେଇଥିଲେ ସିନା, ହେଲେ କାମ ସରିଲା ବେଳକୁ ବଦଳି ହେଇ ଗଲେଣି । ତେଣୁ ଏଗ୍ରି-ଏକ୍ସପୋ ମୋ ଜୀବନରେ ଏକ କଳାଦାଗ ହେଇରହିଲା ।

ସେ ପ୍ରଦର୍ଶନୀ ପରେ ବି ଆହୁରି ଅନେକ ପ୍ରଦର୍ଶନୀରେ ଦିନନାଥ ଓ ମୁଁ ଏକାଠି କାମ କରିଛୁ । ଦିନନାଥ ଆହୁରି ଅନେକଥର ଡିଜାଇନର୍ ଭୂମିକାରେ ଅବତୀର୍ଣ୍ଣ ହେଇଛି । ହେଲେ ୮୯ ମସିହାର କୃଷି ମେଳା ଆମ ଦୁହିଁଙ୍କ ପାଖରେ ସ୍ମରଣୀୟ ହେଇ ରହିବ । ସେଥରର ନକ୍ସା ସଂପୂର୍ଣ୍ଣ ଦିନନାଥର ପରିକଳ୍ପନାରେ ପ୍ରଗତି ମଇଦାନର ହଲ୍ ଅଫ୍ ଇଣ୍ଡଷ୍ଟ୍ରି ଭିତରେ ଦଶହଜାର ବର୍ଗଫୁଟ ଜାଗା ଉପରେ ପ୍ରଦର୍ଶନୀ । ସେ ସମୟର କୃଷି ବିଭାଗ ସଚିବ ଶ୍ରୀ ଅଭୟ ରଥ ଆମ ଦୁଇଜଣଙ୍କୁ ଡକେଇ କହିଲେ - ପ୍ରଦର୍ଶନୀ ଦାୟିତ୍ୱ ଆପଣ ଦୁଇଜଣଙ୍କ ଉପରେ ଛାଡ଼ି ଦେଲି । ଓଡ଼ିଶାର ଇଜ୍ଜତ ରଖିବା ଦାୟ ଆପଣମାନଙ୍କର ମୋର ଆଉକିଛି କହିବାର ନାହିଁ । ବାସ୍ । ତା'ପରେ ଆମେ କାମରେ ଲାଗିଲୁ । ଦଶହଜାର ବର୍ଗଫୁଟ ଭିତରେ ଗୋଟାଏ ଗାଆଁ ତିଆରି ହେଲା ।ଗୋବରଲିପା ଚଟାଣ, ଗୋବରଲିପା କାନ୍ଥ, ଦଶାବତାର ନକ୍ସା ଖୋଦେଇ ହେଇଥିବା କବାଟ, ଚୌକାଠ, ଧାନଅମାର, ତୁଳସୀଚଉରା, ବାମେଙ୍ଗଳା ଠାକୁରାଣୀଙ୍କ ଆସନ, ସବୁ ସେଇ ଦଶହଜାର ବର୍ଗଫୁଟ ଭିତରେ । ଶଗଡ଼ ଚକ, ଲଙ୍ଗଳ ଦ୍ୱାର ସଜେଇବାର ସାମଗ୍ରୀ ହେଲା । **ସାଜସଜ୍ଜାର ଏଇ ଅଭିନବତ୍ୱ ଖାଲି ଦର୍ଶକଙ୍କର ନୁହେଁ ପ୍ରଦର୍ଶନୀର କର୍ମକର୍ତ୍ତାମାନଙ୍କର ମଧ୍ୟ ଦୃଷ୍ଟି ଆକର୍ଷଣ କଲା । ସେଦିନର ସେ ପ୍ରଦର୍ଶନୀର ଅଣ୍ଡିଭାଗ କୃତିତ୍ୱ ଦିନନାଥର ।** କୃଷି ବିଭାଗର ସେ ପ୍ରଦର୍ଶନୀ ଆଗରୁ ୧୯୮୭ ମସିହାରେ ମୋର ପ୍ରଥମ ଓ ଶେଷ ବିଦେଶ ଭ୍ରମଣ । ଯାହା ପଛରେ ମୋର କୌଣସି ପ୍ରୟାସ ନଥିଲା । **ଭାରତ ବାହାରେ ଭାରତ ଉତ୍ସବ ପାଳିତ ହେଉଥାଏ । ସେଭଳି ଉତ୍ସବ ତା ପୂର୍ବରୁ ପାଳିତ ହେଉଥିଲେ ବି ଓଡ଼ିଶା ଭଳି ଏକ ଅବହେଳିତ ରାଜ୍ୟର କୌଣସି ଚିତ୍ରଶିଳ୍ପୀ କେବେ ସେଥିରେ ସାମିଲ ହେଇ ନଥିଲେ । ଦିନନାଥ ସେଥରର ଭାରତ ଉତ୍ସବ ପ୍ରଦର୍ଶନୀରେ ଖାଲି ସାମିଲ ହେଲାନି, ସୁଇଡ଼େନ ଓ ସୋଭିଏତ ରୁଷରେ ହେବାକୁ ଯାଉଥିବା ପପୁଲାର ଆର୍ଟ୍‌ପ୍ରଦର୍ଶନୀର ଡିଜାଇନ୍‌ର, କମିଶନର୍ ଓ କ୍ୟୁରେଟର୍ ହେଲା ।** ଆଉ ତା ଆଗରୁ ଆମେ ସବୁ ବସି ନକ୍ସା ଓ ମଡ଼େଲ୍ ତିଆରି କଲୁ । ବିଦେଶରେ ହେବାକୁ ଯାଉଥିବା ପ୍ରଦର୍ଶନୀ ପାଇଁ ମଡ଼େଲ କରିବା ମୁଁ ସହଜ ମଣୁ ନଥାଏ । ହେଲେ ଦିନନାଥ କହିଲା - ଦାଦା ! ଆପଣ ମୋଟରୁ ଚିନ୍ତା କରନ୍ତୁନି । ଆମେ ଯେଉଁ ଭାବରେ ଯାହା କରି ଆସିଛେ ତାହା ଦିଲ୍ଲୀ, ବମ୍ବେ, ମାଡ୍ରାସ୍‌ର ଅନେକ ନାଆଁ କମେଇଥିବା କୌଣସି କଳାସଂସ୍ଥାର କାମଠାରୁ ନ୍ୟୁନ ନୁହେଁ, ବରଂ ଉନ୍ନତମାନର । ହେଲେ ଆମର କଥା କହିବା ଶିଳ୍ପୀଟିଏ ନଥିବାରୁ ଆମକୁ କେହି ପଗ୍ରରନ୍ତିନି । ଦିନନାଥ ମଡ଼େଲ୍ ନେଇ ଦିଲ୍ଲୀ ଗଲା । କଥା କହିଲା, କମିଶନ୍‌ର ହେଇଫେରିଲା । ଆଉ ଫେରିଆସି କହିଲା ଦାଦା ! ତିଆରି ହୁଅନ୍ତୁ ଯିବା । କୁଆଡ଼େ? ମୁଁ ପ୍ରଶ୍ନ କଲି ।

ସେ କହିଲା ସୁଇଡ଼େନ୍ !

ମୁଁ କହିଲି - ସେଠିକି ମୁଁ ଯାଇ କ'ଣ କରିବି ? ଦିନନାଥ କହିଲା - ଏଠୁ ଦିଲ୍ଲୀ ଯାଇ ଯାହା କରୁଥିଲେ ସେଇଆ । ସାଙ୍ଗରେ ରୋହିତକୁ ନବା ବଢ଼େଇ ଦି'ଜଣ ନେବା ମାଟି କାରିଗର ନେବା, ଆପଣ ଏତେଦିନ ଧରି ଦିଲ୍ଲୀରେ ଓଡ଼ିଶାକୁ ଦେଖାଉ ଥିଲେ । ଏବେ ଆମେ ସୁଇଡ଼େନ୍‌ରେ ଭାରତକୁ ଦେଖେଇବା ସେଇ ଏକା ଉପାୟରେ । **ମୁଁ ଜାଣେ ମତେ ସାଙ୍ଗରେ ନ ନେଲେବି ଦିନନାଥ ସୁଇଡ଼େନ୍‌ରେ ପ୍ରଦର୍ଶନୀ କାମ କରିପାରିବ । ଦିନନାଥ ବି ଭଲ ଭାବରେ ଜାଣେ ମୁଁ ନ ଗଲେବି ପ୍ରଦର୍ଶନୀ ସହଜରେ ହେଇପାରିବ । ତେବେ ?**

ଏଇ 'ତେବେ'ର ଉତ୍ତର ଖୋଜିବାକୁ ଲାଗିଲି ମୁଁ । ମୋର ମନେ ହେଲା ଏ ବୋଧହୁଏ କୃତଜ୍ଞତା ଜଣେଇବାର ଆଉ ଏକ ଭାଷା । ଦିନେ ଯାହାଠାରୁ ପ୍ରଦର୍ଶନୀର ଅ, ଆ, କ, ଖ ଶିଖିଥିଲା ଦିନନାଥ ଆଜି ତାର ଋଣ ଶୁଝିବାକୁ ଗ୍ରହୁଁଛି ମତେ ବିଦେଶକୁ ନେଇ । ପ୍ରଦର୍ଶନୀ ପାଇଁ ମତେ ତା'ର ପ୍ରୟୋଜନ ଅପେକ୍ଷା ତାର ଶ୍ରଦ୍ଧା ଓ ସମ୍ମାନର ପ୍ରତୀକ ଭାବରେ ବିଦେଶ ନେବାକୁ ଗ୍ରହୁଁଛି ସେ । ତାରି ଇଚ୍ଛାରେ ମୋର ପ୍ରଥମ ଓ ଶେଷ ବିଦେଶ ଭ୍ରମଣ - ସୁଇଡ଼େନ୍ ଦର୍ଶନ । ଏଠି ଦିନନାଥ, ସହକର୍ମୀ, ବନ୍ଧୁମାନଙ୍କର ଦାଦା ହେଇ ରହିଥିଲି ମୁଁ । ସେଠି ପହଞ୍ଚି ଦେଖିଲି - ସେଠିବି ମୋର ପରିଚୟ ସେଇ ଦାଦା ହେଇ ରହିଲା ଦିନନାଥ ପାଇଁ ।

Digitized by srujanika@gmail.com

**ସୁଧାଂଶୁ ଭୂଷଣ ସୂତାର**

# ଚିତ୍ର-ଗଙ୍ଗାର ଭଗୀରଥ – ଦିନନାଥ

ଦୁଇ ହଜାର ଦୁଇ ମାର୍ଚ୍ଚ ୨୦ ତାରିଖ । ବସନ୍ତର ଏକ କ୍ଲାନ୍ତ ଅପରାହ୍ନ, ଗହମ ରଙ୍ଗର ଖରା ଦିଲ୍ଲୀର ଚାଣକ୍ୟପୁରୀ ରାଜପଥ ଉପରେ ବିଛେଇ ହୋଇ ପଡ଼ିଥାଏ । ସାମ୍ନାରେ ଆମେରିକାର ଦୂତାବାସ, କପୋତମାନେ ସେଠାରେ ପର ଉଠାଇବାକୁ ବି ସାହସ କରନ୍ତିନି । ସବୁଆଡ଼େ ନୀରବତା । ତା'ର ୨୦ ଗଜ ଆଗକୁ ସୁଇଜରଲ୍ୟାଣ୍ଡର ଦୂତାବାସ । ସଭିଏଁ କୁହନ୍ତି ସୁଇଜରଲ୍ୟାଣ୍ଡ ସର୍ଗଠାରୁ ବି ଆହୁରି ସୁନ୍ଦର । ଦୂତାବାସ ଆଗକୁ ସବୁଜ ଘାସର କାରପେଟ୍ । ଆକାଶକୁ ମୁଣ୍ଡଟେକି ବସନ୍ତକୁ ସାଗତ କରୁଥିଲା ଅନେକଗୁଡ଼ିଏ ଲାଲ ହଳଦୀ ଗଛର ସମ୍ଭାର – ଖୁବ୍ ମନୋରମ ପରିବେଶ । ମୋର କିନ୍ତୁ ମନ ଭିତରେ ଭୟମିଶା ଆନନ୍ଦ ଘାଣ୍ଟିଚକଟି ହେଉଥାଏ । ଗେଟ୍ ଭିତରକୁ ପଶିବା ପୂର୍ବରୁ ମୋ ହାତର କାର୍ଡ଼ଟିକୁ ଦେଖି ଗୋଟେ ଲମ୍ବା ଚଉଡ଼ା ସଲାମ ଲଗାଇ ଗେଟ୍‌କିପର ଗେଟ୍ ଖୋଲିଦେଇ ରାସ୍ତା ଦେଖାଇ ଦେଲା । ମନରେ ସାହସ ଆସିଲା । ସୁଇଜରଲ୍ୟାଣ୍ଡ ଯିବା ଦୂରର କଥା, ସତେଯେମିତି ଲାଗିଲା ମୁଁ ସୁଇଜରଲ୍ୟାଣ୍ଡର କେଉଁ ଏକ ଚେନାଏ ମାଟି ଉପରେ ଛିଡ଼ା ହୋଇଛି । ଧୀରେ ଧୀରେ ଆଗକୁ ପାଦ ବଢ଼ାଇଲି । ଦୂତାବାସର ପ୍ରଥମ ଫ୍ଲୋର୍‌ର ସିଢ଼ିକୁ ଚଢୁଚଢୁ ମୃଦୁ କୋଳାହଳର ଶବ୍ଦ ଶୁଭିଲା । ହଠାତ୍ ଉପରକୁ ଉଠିଗଲି, ଆଖିକୁ ବିଶ୍ୱାସ କରିପାରିଲି ନାହିଁ । ସତେ ଯେମିତି କୁଳୁକୁଳୁ ନିନାଦିନୀ ଜାହ୍ନବୀ ସୁଇଜରଲ୍ୟାଣ୍ଡର ଦୂତାବାସ ଭିତରେ ଶାନ୍ତସ୍ରୋତା ହୋଇଯାଇଛନ୍ତି । ଭଗୀରଥ, ନିଜେ ଦିନନାଥ, ଶିଳ୍ପୀ-ସୁଲଭ ସୁଖହାସ୍ୟରେ ସମସ୍ତଙ୍କୁ ସାଗତ କରୁଛନ୍ତି । କାନ୍ଧରେ ଉତ୍ତରୀୟ । ହସ ହସ ମୁହଁ, ମୁଣ୍ଡ ଉପରେ କଳାଧଳା ମିଶା ନୁଖୁରାବାଳ କେରାଏ, ଶୁଆନାକ ପରି ନାକସହିତ ଗ୍ରେ କଲରର ନିଶ । ପାଖାପାଖି ଛଅ ଫୁଟ ଉଚ୍ଚାର ପୁରୁଷଟିଏ । ତା' ସାଙ୍ଗକୁ ବେକଠାରୁ ଆଣ୍ଠୁତଳକୁ ଫେବ୍ ଇଣ୍ଡିଆର ଦାମୀ କୁର୍ତ୍ତା ଖୁବ୍ ସାଜୁଥିଲା । ମତେଦେଖି ଆଦରି ନେଲେ । ଭାରତର ବହୁ ନାମୀ ଦାମୀ ଚିତ୍ରଶିଳ୍ପୀ ଏବଂ ଆଖପାଖ ଦୂତାବାସର ରାଜଦୂତ ଏବଂ ଅନେକ ସାମ୍ବାଦିକମାନେ ଯେମିତି ସେଇ ପବିତ୍ର ଗଙ୍ଗାନଦୀର ବାସ୍ତବ ଛବିକୁ ଉପଭୋଗ କରୁଥିଲେ ସେଦିନ । ସୁଇଜରଲ୍ୟାଣ୍ଡର ରାଜଦୂତ ଏବଂ ତାଙ୍କ ଧର୍ମପତ୍ନୀ ନିଜେ ସବୁ ଅତିଥିମାନଙ୍କ ପାଖକୁ ଆସି ହାତ ମିଶାଇ ସାଗତ କରୁଥାନ୍ତି । ଚିତ୍ରଶିଳ୍ପୀ ଏବଂ ଅତିଥିମାନଙ୍କ ମଧ୍ୟରେ ସୁ-ସମ୍ପର୍କ ସ୍ଥାପନ କରୁଥାନ୍ତି । ଏହା କିନ୍ତୁ ସତ ଦିନନାଥ ନିଜେ ଭାରତର ଚିତ୍ରଶିଳ୍ପୀ ଭାବରେ ଅନ୍ୟମାନଙ୍କ ପାଖରେ ଅଜଣା ନୁହନ୍ତି । ବହୁ ବିଦେଶୀ ରାଜଦୂତମାନେ ଦିନନାଥଙ୍କ ବେଶଭୂଷାରୁ ଜାଣିପାରୁଥିଲେ ସେ ହିଁ ପ୍ରକୃତରେ ଶିଳ୍ପୀପୁରୁଷ । ପାଖକୁ ଆସି ସଭିଏଁ ଗୁଣଗାନ କରୁଥିଲେ । ଗଙ୍ଗା ଜଣେ ଚିତ୍ରଶିଳ୍ପୀର ହୃଦୟରେ କିଭଳି ଭାବେ ବହିଯାଇଛି, ଯେଉଁ ଗଙ୍ଗାର ପବିତ୍ର ପାଣି ଜଣେ ଚିତ୍ରଶିଳ୍ପୀର ପୂର୍ଣ୍ଣ ଆତ୍ମାକୁ, ଶରୀରକୁ କିଭଳି ଭିଜାଇ ଦେଇଛି ତାହା ତାଙ୍କ ଛବିରୁ ପୂର୍ଣ୍ଣଭାବରେ ବୁଝିହେଇ ଯାଉଥିଲା । ଏହି ଛବିଗୁଡ଼ିକ ପୂର୍ବରୁ ମୁମ୍ବାଇରେ ପ୍ରଦର୍ଶିତ ହୋଇଯାଇଥିଲେ ମଧ୍ୟ ଶିଳ୍ପୀ ବନ୍ଧୁ ଏବଂ ଦିନନାଥଙ୍କ ଛାତ୍ରମାନଙ୍କ ଅନୁରୋଧକୁ ସମ୍ମାନ ଜଣାଇ ତାହା ଦିଲ୍ଲୀସ୍ଥିତ ସୁଇଜରଲ୍ୟାଣ୍ଡ ଦୂତାବାସରେ ପ୍ରଦର୍ଶନୀର ଆୟୋଜନ କରାଯାଇଥିଲା ।

ପ୍ରକୃତରେ କହିବାକୁ ଗଲେ ଏହି ପ୍ରଦର୍ଶନୀଟି ଦିନନାଥଙ୍କ ସୁଇସ୍ ବନ୍ଧୁ ଡକ୍ଟର ଏବରହାର୍ଡ଼୍ ଫିସର୍‌ଙ୍କ ଷଷ୍ଠୀ ପୂର୍ତ୍ତି ଉଦ୍ଦେଶ୍ୟରେ ସମର୍ପିତ ଥିଲା । ଡକ୍ଟର ଦିନନାଥ ପାଠୀ ମୋର ଗୁରୁ । ଯିଏ ମତେ ଚିତ୍ରକୁ ଦେଖିବା ପାଇଁ ଆଖି ଖୋଲି ଦେଇଛନ୍ତି ଏବଂ ଚିତ୍ରକୁ ବୁଝିବାପାଇଁ ମନ ଭିତରେ ରାସ୍ତାଟିଏ ମେଲି ଦେଇଛନ୍ତି । ଚିତ୍ର କରିବା ପାଇଁ ସରଳ ଜ୍ଞାନ ମଧ୍ୟ ଦେଇଛନ୍ତି । ତାଙ୍କଠାରୁ ଅନେକ ସମୟରେ ଡକ୍ଟର୍ ଫିସର୍‌ଙ୍କ ବିଷୟରେ ଶୁଣିଛି । ଡକ୍ଟର୍ ଫିସର୍‌ଙ୍କ ସହିତ ଦୀର୍ଘ ୩୦ ବର୍ଷର ସଂପର୍କ ଦିନନାଥଙ୍କର ।

ରଙ୍ଗ ଆଉ ତୂଳୀର ପରସ୍ତ ପରସ୍ତ ଲେପ ଭିତରେ ବୁଝି ହୋଇଯାଉଥିଲା ଦିନନାଥ କିଭଳି ଭାବରେ ତାଙ୍କ ବନ୍ଧୁଙ୍କୁ ଭଲ ପାଆନ୍ତି । ଜଣେ ଚିତ୍ରଶିଳ୍ପୀଙ୍କ ହୃଦୟ ଏତେ ମହାନ୍ ହୋଇପାରେ, ତାହା ତାଙ୍କ ପ୍ରଦର୍ଶନୀରୁ ବୁଝି ହୋଇଯାଉଥିଲା । ମୁଁ ସେହିଠାରେ ଛିଡ଼ା ହୋଇ କ୍ଷଣିକ ପାଇଁ ନିଜକୁ ଭୁଲିଯାଇଥିଲି । ଦୂତାବାସର ଜଣେ କର୍ମଚାରୀ ହାତରେ ଟ୍ରେଟିଏ ଧରି ପାଖକୁ ଆସି ସମ୍ମାନର

Digitized by srujanika@gmail.com

ସହିତ ପଗ୍ଭରିଲେ, କ'ଣ ପିଇବା ପାଇଁ ପସନ୍ଦ କରନ୍ତି । ତା'ର କଥା ନ ସରୁଣୁ ମୋର ହାତଟି ଦାମୀ Red wine ପାଖକୁ ଗ୍ଭଲିଯାଇଥିଲା ।

ଦିନନାଥଙ୍କ ଛବିକୁ ଦେଖିବା ଦିନନାଥଙ୍କୁ ଦେଖିବା ଏବଂ ଦିନନାଥଙ୍କ ଲେଖା ବହିକୁ ଦେଖିବା ଓ ପଢ଼ିବା ସବୁ ଏକାଭଳି ଲାଗେ । ସେଥିରେ କିଛି ତାରତମ୍ୟ ନଥାଏ । ଦିନନାଥଙ୍କୁ ବୁଝିବା, ତାଙ୍କ ଚିତ୍ରଭାଷାକୁ ବୁଝିବା ତଥା ତାଙ୍କ ଲିଖିତ ଭାଷାକୁ ବୁଝିବା ଅତି ସହଜ । ସେଇଥିପାଇଁ ଦିନନାଥ ସଭିଙ୍କ ପାଖରେ ଅତି ପ୍ରିୟ ।

ଦିନନାଥଙ୍କର ଏହି ପ୍ରଦର୍ଶନୀର ଛବିକୁ ଅନୁଧାନ କଲେ ଜଣାଯାଏ ଯେ ଏ ଜାତିର, ଏ ଦେଶର ସଂସ୍କୃତି, ପରମ୍ପରା, ଐତିହ୍ୟ ଏବଂ ସତ୍ୟ, ଶିବ, ସୁନ୍ଦରର ବାସ୍ତବିକ ଗୁଣ ଗରିମାକୁ ବଜାୟ ରଖିଥିବା ପବିତ୍ର ଗଙ୍ଗାନଦୀ ତା'ର ଗୌରବକୁ ବଜାୟ ରଖିଛି ନା ତା'ର ଆବହମାନ କାଳର ସଂସ୍କୃତିକୁ କଳୁଷିତ କରିଛି ତା'ର ଏକ ବାସ୍ତବ ରୂପର ତାତ୍ତ୍ୱିକ ଚେତନା ମିଳେ । ତାତ୍ତ୍ୱିକ ଭାଷାର ଉପସ୍ଥାପନ ବ୍ୟତିରେକେ ଦିନନାଥ ବ୍ୟଙ୍ଗାତ୍ମକ ଭାବଧାରାର ଉନ୍ମେଷ ମଧ୍ୟ କେତେକ ଚିତ୍ରରେ ଘଟାଇଛନ୍ତି ଯାହା ଦର୍ଶକଙ୍କୁ ଏକ ହାସ୍ୟ କୌତୁକର ପରିଧିରେ ବାନ୍ଧି ରଖିଛି । ସେ ଛବିଗୁଡ଼ିକ ଗଙ୍ଗା କୂଳର **Yoga World, Politician and Goat, Cultural Distancing** ଏବଂ ଅନ୍ୟ ଏକ ଚିତ୍ର **New Aesthetics** ରେ ଗଙ୍ଗାକୂଳର ଦୈନନ୍ଦିନ ଜୀବନରେ ଘଟୁଥିବା ଏକ ନଗ୍ନ ରୂପକୁ ସେ ନାନ୍ଦନିକ ପର୍ଯ୍ୟାୟକୁ ଉନ୍ନିତ କରିବାକୁ ଚେଷ୍ଟା କରିଛନ୍ତି । ଦର୍ଶକମାନଙ୍କ ଅନିଚ୍ଛା ସତ୍ତ୍ୱେ ଏହି ଚିତ୍ରର ବାସ୍ତବତାକୁ ନୀରବରେ ସମସ୍ତେ ସମର୍ଥନ କରୁଥିଲେ । ଚିତ୍ର **New Iconography** ରେ ହାତରେ Mineral Water Bottle ପରିଲକ୍ଷିତ ହେଉଥିବା ବେଳେ ଅନ୍ୟ ଏକ ଚିତ୍ରରେ ପୁଣି ଗଙ୍ଗା, ଯମୁନା ଓ ସରସ୍ୱତୀଙ୍କ ସହ ଘାଟ ଉପରେ ଅନେକଗୁଡ଼ିଏ ଶୁଷ୍କ ମାଟିପାତ୍ରର ପରିକଳ୍ପନା ରହିଛି । ଏଥିରୁ ଜଣାଯାଏ, ଆଜିର ଆଧୁନିକ ସମାଜରେ କିଭଳି ଭାରତୀୟ ସଂସ୍କୃତି ପାଶ୍ଚାତ୍ୟ ସଂସ୍କୃତି ଆଡ଼କୁ ମୁହାଁଇଛି କିମ୍ବା ଆଜିର ଗଙ୍ଗାନଦୀ ଅତ୍ୟନ୍ତ ଦୂଷିତ ହୋଇଯିବାରୁ ଦେବୀମାନେ ସେ ଜଳକୁ ପସନ୍ଦ ନକରି Mineral Waterକୁ ଆପଣେଇଛନ୍ତି ବୋଲି ଦିନନାଥ ଚିତ୍ରରେ ଚିନ୍ତା ପ୍ରକଟ କରିଛନ୍ତି । ପ୍ରାୟ ଅଧିକାଂଶ ଚିତ୍ରରେ ଦିନନାଥ ଅନେକଗୁଡ଼ିଏ ପଥରର ପାହାଚ ଦେଖାଇଛନ୍ତି । ଘାଟପାବଚ୍ଛମାନଙ୍କର ଚିତ୍ରିତ କଳ୍ପନା ଭିତରେ ତା ଗଙ୍ଗାସ୍ନାତ ପବିତ୍ର ପାର୍ଥିବ ଶରୀର ଲୀନ ହେବାପରେ ପାବଚ୍ଛ ଚଢ଼ି ସ୍ୱର୍ଗବାସୀ ହେବା ରହସ୍ୟକୁ ପ୍ରକାଶିତ କରିଛନ୍ତି । ଏଭଳି ବିଶ୍ୱାସ ଥିବା ଯୋଗୁଁ ହିଁ ତ ଗଙ୍ଗା ଏଯାବତ୍ ଚିରସ୍ରୋତା, ତୀର୍ଥଦେହୀ, ମନ୍ଦାକିନୀ । ଏବେ ମଣିଷର ମନସ୍ତତ୍ତ୍ୱରେ ପରିବର୍ତ୍ତନ ହେଉଛି । ଏଥିରୁ ଗଙ୍ଗାଘାଟ ବା ବାଦ ପଡ଼ିବ କିପରି ? ଘାଟମାନଙ୍କର ପରିବର୍ତ୍ତିତ ଭଙ୍ଗୀରେ, ଧାରାବାହିକ ଭାବେ ଯାହା ଘଟିଯାଉଛି, ଦିନନାଥ ତାହା ନିଜ କାନ୍‌ଭାସ୍ ଉପରକୁ ନେଇ ଆଣିବାରେ କୁଣ୍ଠା କରିନାହାନ୍ତି । ଆଜିର ଗଙ୍ଗାକୂଳର ଘାଟମାନଙ୍କରେ ଦୈନନ୍ଦିନ ଜୀବନର ଧାରାବାହିକ ପରିବର୍ତ୍ତନ । ପୁରାଣ ଯୁଗରୁ ବର୍ତ୍ତମାନ ପର୍ଯ୍ୟନ୍ତ କିଭଳି ପବିତ୍ର ନଦୀ କଳୁଷିତ ହୋଇଛି ତାହା ଦିନନାଥଙ୍କୁ ନିଶ୍ଚିତ ଭାବେ ଅତି ବ୍ୟଥିତ କରିଛି । କିନ୍ତୁ ଭାରତର ସୁନାମଧେୟ ଶିଳ୍ପୀ ରାମକୁମାର, ରେଡ୍ଡପା ନାଇଡୁ ଯଦିଓ ଗଙ୍ଗାକୁ ପାଥେୟ କରି ଚିତ୍ର ସୃଷ୍ଟି କରିଛନ୍ତି, କିନ୍ତୁ ଦିନନାଥଙ୍କର ଏହି କଳ୍ପନା ନିଶ୍ଚିତ ଭାବରେ ଯୁଗାନ୍ତକାରୀ ପରିପ୍ରକାଶ । ଗଙ୍ଗା ପ୍ରଦୁଷଣକୁ ନେଇ ସଚେତନତା ସୃଷ୍ଟି ସମୟପୋଯୋଗୀ ପଦକ୍ଷେପ ।

ମୋର ସୌଭାଗ୍ୟ, ଦିନନାଥଙ୍କ ସହିତ ଦିଲ୍ଲୀ ବାହାଓ୍ୱଲପୁର୍ ହାଉସ୍‌ର ପତିତପାବନ ମେସ୍‌ରେ ଦିନ କଟାଇଛି । ବହୁ ଘଟଣ ଅଘଟଣ ଭିତରେ ସେତେବେଳେ ଦିନ ଗୁଡ଼ିକ ଅତିବାହିତ ହେଉଥିଲା ।

ଠିକ୍ ମୋର ମନେଅଛି ୧୯୯୪ ମସିହା ସେପ୍ଟେମ୍ବର ମାସ ଏକ ସନ୍ଧ୍ୟା । ଭୁବନେଶ୍ୱର ଖାରବେଳ ନଗରସ୍ଥିତ ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ର ପରିସର ଭିତରେ ଅନେକ ସ୍ଥାନୀୟ ଚିତ୍ରଶିଳ୍ପୀମାନଙ୍କ ଭିଡ଼ । ସେତେବେଳେ ଦିନନାଥ କେନ୍ଦ୍ର ଲଳିତ କଳା ଏକାଡେମୀର ସଚିବ ଭାବେ ଯୋଗଦେଇ ଓଡ଼ିଶା ଫେରିଛନ୍ତି । ସାଥିରେ ଆଣିଛନ୍ତି ପୃଥିବୀର ବହୁନାମୀ ଦାମୀ ଚିତ୍ରଶିଳ୍ପୀମାନଙ୍କର ଚଳଚ୍ଚିତ୍ର (documentary film)। ଏହା ଓଡ଼ିଶାରେ ଚିତ୍ରଶିଳ୍ପୀମାନଙ୍କ ପାଇଁ ସୌଭାଗ୍ୟର କଥା । ଓଡ଼ିଶାର ଚିତ୍ରଶିଳ୍ପୀମାନଙ୍କ ବିଷୟରେ ଜାଣିବା ପାଇଁ ଏବଂ ପଢ଼ିବା ପାଇଁ ବହି ଖଣ୍ଡିଏ ମଧ୍ୟ ମିଳେନାହିଁ । କିନ୍ତୁ

Digitized by srujanika@gmail.com

ଶିଳ୍ପୀମାନଙ୍କର ଚଳଚ୍ଚିତ୍ର ଦେଖିବାର ସୁଯୋଗ କିଛି କମ୍ କଥାନୁହେଁ । ସତେ ଯେମିତି ଲାଗୁଥିଲା ପିକାସୋ, ହୁସେନ୍, ଡାଲି ଏମିତି ଅନେକ ନାମୀ ଦାମୀ ଚିତ୍ରଶିଳ୍ପୀ ଭୁବନେଶ୍ୱର ଆସିଛନ୍ତି । ତାଙ୍କୁ ଦେଖିବାର ସୁଯୋଗ ମିଳୁଛି ଏହି ଆଶାନେଇ ମୁଁ ମଧ୍ୟ ଯାଇଥିଲି । ଦିନନାଥଙ୍କ ସହିତ ଦେଖାହେବା କ୍ଷଣି ଟିକିଏ ହସିଦେଲେ । ପାଖକୁ ଡାକି ଟିକେ ଦକ୍ଷିଣୀ ଢଙ୍ଗରେ ପଚାରିଲେ, କ'ଣ ଚାଲିଛି । ମୁଁକହିଲି ସାର୍, ସେମିତି କିଛି ନାହିଁ ।

**ସାର୍ କହିଲେ : ଏବେ ବାହାରି ଆସ ।**

**ମୁଁ କହିଲି : ସାର୍ କୁଆଡ଼େ ।**

**ସାର୍ କହିଲେ : ଦିଲ୍ଲୀ, ସେଠି ଆମର Guest House ଅଛି ।**

ସାର୍ ଏତିକି କଥା କହି ଅନ୍ୟମାନଙ୍କ ସହିତ ବ୍ୟସ୍ତ ହୋଇ ରହିଗଲେ, କିନ୍ତୁ ମୁଁ ଆଉ ସ୍ଥିର ହୋଇ ରହିପାରିଲି ନାହିଁ । ସାର୍‌ଙ୍କ ନିମନ୍ତ୍ରଣ ମୋ ଜୀବନରେ ମୋଡ଼ ଆଣିଦେଲା, ଚେଷ୍ଟା କଲି ଦିଲ୍ଲୀ ଆସିବା ପାଇଁ । ସାଥୀ ହେଲି କାଳୀକିଙ୍କର ଦେ ସହିତ । ସେତେବେଳେ ସେ ସାର୍‌ଙ୍କର ପ୍ରିୟ ଛାତ୍ର ଥିଲେ । କିନ୍ତୁ ମୋର ଦିନନାଥଙ୍କ ସହିତ ଏତେ ଆତ୍ମୀୟତା ନଥିଲା । ସେ ଯାହାହେଉ କାଳୀ ଓ ମୁଁ ପଇସାପତ୍ର ଯୋଗାଡ଼ କରି ନଭେମ୍ବର ୧ରେ ଆସି ଦିଲ୍ଲୀରେ ପହଞ୍ଚିଲୁ । ସେ ଏକ ଶୀତୁଆ ସକାଳ । ବାହାୱଲ୍‌ପୁର୍ ହାଉସ୍‌ର ସାମ୍ନାପଟ ରବର ଗଛର ପତ୍ର ଉପରେ ସକାଳର କଅଁଳିଆ ଖରା ଚିକ୍‌ଚିକ୍ କରୁଥାଏ । ଧାଡ଼ି ଧାଡ଼ି ଗୋଲାପଫୁଲର ଗଛ । ସତେ ଯେମିତି ଶାହାଜାହାନ ମମତାଜ୍‌ଙ୍କ ପାଇଁ ରଙ୍ଗିନ ଗୋଲାପ ପ୍ରସ୍ତୁତ କରିଥିଲେ । ଆଗରେ ସବୁଜ ଘାସର ସୁନ୍ଦର ପଟାଳି ଟିଏ । ତା'ରି ଉପରେ କପୋତ ଏବଂ କପୋତି ଦମ୍ପତିଟିଏ ଦୁହିଁଙ୍କୁ ଦୁହେଁ ଆଲିଙ୍ଗନ କରୁଥାନ୍ତି । ଶରୀର କ୍ଳାନ୍ତଥିଲେ ମଧ୍ୟ ମନରେ ସାହସ ଥାଏ । ଦିନନାଥଙ୍କ ବାସଭବନର ମୁଖ୍ୟଦ୍ୱାର ସାମ୍ନାରେ ବ୍ୟାଗ୍ ପତ୍ରରଖି ତାଙ୍କ ପିଣ୍ଡାଉପରେ ବସି ବାହାୱଲ୍‌ପୁର୍ ହାଉସ୍‌ର ମନୋରମ ସକାଳର ଦୃଶ୍ୟକୁ ଉପଭୋଗ କରୁଥିଲୁ । କେଁ କରି କବାଟଟା ଖୋଲିଗଲା । ଦିଲ୍ଲୀପ୍ ତ୍ରିପାଠୀ କବାଟ ଖୋଲିଲେ । କହିଲେ ସାର୍ ସୁଧାଂଶୁ ଏବଂ କାଳୀ ଆସିଛନ୍ତି । ସାର୍ ଭିତରେ ଥାଇ କହିଲେ ଭିତରକୁ ଡାକ । ଭିତରକୁ ଯାଇ ସାର୍‌ଙ୍କୁ ମୁଣ୍ଡିଆ ମାଇଲୁ । ସାର୍ ଅନୁମତି ଦେଲେ ବସିବା ପାଇଁ । କହିଲେ କ'ଣ ବାହାରି ଆସିଲ । ମୁଁ କହିଲି ହଁ ସାର୍ । ସାର୍ କହିଲେ `Guest House' ଯାଅ ସେଠାରେ ରୁହ । ଦିଲ୍ଲୀରେ ଆଜି Diwali ଭଲ ଦିନ । ଟିକେ Fresh ହୋଇ ଆସ ବୁଲିବାକୁ ଯିବା । ଏହା ଥିଲା ପ୍ରଥମ ଦିନ ଦିନନାଥଙ୍କ ସହିତ ଦିଲ୍ଲୀରେ । ସେତେବେଳେ ଦିନନାଥ ସେକ୍ରେଟାରୀ ପଦରେ ରହି ବହୁ ସମସ୍ୟା ଦେଇ ଗତି କରୁଥାନ୍ତି । ଏକାଡ଼େମୀର କିଛି ଅସନ୍ତୁଷ୍ଟ କର୍ମଚାରୀ ନିଜର ବ୍ୟକ୍ତିଗତ କାରଣ ନେଇ ଦିନନାଥଙ୍କ କାର୍ଯ୍ୟଶୈଳୀ ସହିତ ଅସହଯୋଗ କରୁଥିଲେ । ଅନେକ ପ୍ରକାର ରାଜନୈତିକ ସମସ୍ୟା ଦେଇ ଗତି କରୁଥିଲେ ମଧ୍ୟ ଦିନନାଥ ନିଜର ଚତୁରତାର ସହିତ ସହଜ ଏବଂ ସରଳତା ଭିତରେ ରହିବାକୁ ପସନ୍ଦ କରୁଥିଲେ । ନିଜର ଭୌତିକ ଏବଂ ବୌଦ୍ଧିକ ଜ୍ଞାନକୁ ବଜାୟ ରଖି ନିଜ ଚିତ୍ର ଓ ଅଧ୍ୟବ୍ୟସାୟ ଭିତରେ ତଲ୍ଲୀନ ରହୁଥିଲେ ।

ଦିନନାଥଙ୍କ ଜୀବନ-ଶୈଳୀକୁ ଯଦି ବିଚାରକୁ ନିଆଯାଏ, ତାହାହେଲେ ମୋର ବ୍ୟକ୍ତିଗତ ମତ ଦିନନାଥଙ୍କ ଜୀବନ ଏକ ଜୀବନ ତ ନୁହେଁ, ଏକ ଇତିହାସ । ତାଙ୍କର କଳାକାର ଜୀବନ ଶୈଳୀ ଓ ଦର୍ଶନ ତତ୍ତ୍ୱ ସମଗ୍ର ଓଡ଼ିଶା ତଥା ଭାରତର କଳା ଇତିହାସ ନିମନ୍ତେ ତଥ୍ୟପୂର୍ଣ୍ଣ ପୁସ୍ତକ ଫର୍ଦ୍ଦ । ସେ ପ୍ରତ୍ୟେକ ସ୍ତରରେ ନିଜକୁ ସାମିଲ୍ କରାଇ ଓଡ଼ିଶାର କଳାକୁ କିପରି ଜାତୀୟ ଏବଂ ଅନ୍ତର୍ଜାତୀୟ ସ୍ତରରେ ଉପସ୍ଥାପନା କରାଯାଇପାରିବ ସେଇଥିପାଇଁ ଉଦ୍ୟମରତ ଥାଆନ୍ତି । **ଯେଉଁ କେତେକ ଚିତ୍ରଶିଳ୍ପୀ ବଲାଙ୍ଗୀରରୁ ବାଲେଶ୍ୱର ଭିତରେ ରହିଯାଉଥିଲେ ସେମାନଙ୍କୁ ବୈତରଣୀ ପାର କରିବା ପାଇଁ ଦିନନାଥ ଥିଲେ ନୌକାର ନାବିକ । ଦିନନାଥ ହିଁ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ପ୍ରଥମେ ଏକ କଳା ମହାବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ବହୁବର୍ଷ ଧରି ଚେଷ୍ଟାକରି ଆସୁଥିଲେ । ଚିତ୍ରମ୍ ସ୍କୁଲର ସପ୍ନଠାରୁ B.K. College ପର୍ଯ୍ୟନ୍ତ ତାଙ୍କ ପ୍ରଚେଷ୍ଟା ବାସ୍ତବ ରୂପ ନେଇଥିଲା** । ସେ ସବୁବେଳେ ଚାହୁଁଥିଲେ ଓଡ଼ିଶାରେ ପ୍ରକୃତ କଳାର ଶିକ୍ଷା ହିଁ ଓଡ଼ିଶାର ସମସାମୟିକ ଚିତ୍ର ଜଗତକୁ ମୋଡ଼ ଦେଇପାରିବ । ସେଇଥିପାଇଁ ଅନେକ ସମୟରେ ସେ ଅନେକ ଛାତ୍ରମାନଙ୍କ ସହିତ ବହୁ ଗୁରୁତ୍ୱପୂର୍ଣ୍ଣ ଆଲୋଚନାମାନ କରିଥାନ୍ତି । ଉଦାହରଣ ମାଧ୍ୟମରେ ଅନେକ ପ୍ରେରଣା ମଧ୍ୟ ଦେଇଛନ୍ତି । ଗୁରୁ ଏବଂ ଶିଷ୍ୟ ମଧ୍ୟରେ ମଧୁର ସଂପର୍କକୁ ବଜାୟ ରଖି ସମସ୍ତ ଛାତ୍ରମାନଙ୍କୁ ଘନିଷ୍ଠ ବନ୍ଧୁ ଭାବେ ତନ୍, ମନ୍, ଧନ୍ ତଥା ବିଭିନ୍ନ ଉପାୟରେ ସାହାଯ୍ୟ କରି ଆସିଛନ୍ତି । ବ୍ୟକ୍ତିଗତ ଭାବେ

Digitized by srujanika@gmail.com

ଦିନନାଥ ମତେ ସାହାଯ୍ୟ କରି ଆସିଛନ୍ତି । ମୁଁ ଅନେକ ସମୟରେ ଦିନନାଥଙ୍କ ସହିତ ସମୟ କାଟିବାକୁ ଭଲ ପାଏ । କାରଣ ଦିନନାଥ ମୋ ପାଇଁ ଜଣେ ସାଧାରଣ ଶିକ୍ଷକ ନଥିଲେ । ସେ ମୋର ପ୍ରକୃତ ଜୀବନର, ମୋ ହୃଦୟର ଏବଂ ଆତ୍ମାର ଏକ ଆଦର୍ଶ ଗୁରୁ, ଯିଏକି ମୋତେ ଅନ୍ଧାରରୁ ଆଲୋକର ରାସ୍ତା ଦେଖାଇଛନ୍ତି । ପ୍ରତ୍ୟେକଦିନ ବ୍ୟସ୍ତ କର୍ମମୟ ଜୀବନ ଭିତରେ ସେ ନିଶ୍ଚିତ ଭାବରେ ତାଙ୍କର ଛାତ୍ରମାନଙ୍କ ସହ କିଛିଟା ସମୟ କଟାଇଥାନ୍ତି । ମୋର ମନେଅଛି ଦିଲ୍ଲୀର 'ପତିତପାବନ ମେସ୍'ରେ ଅନେକ ରାତି କଟିଯାଏ ଏପରି ବହୁ ଆଲୋଚନା ମଧ୍ୟରେ । **କିନ୍ତୁ, ସବୁବେଳେ ତାଙ୍କ ମନରେ ଗୋଟିଏ କଥା ଓଡ଼ିଆ ଜାତି ଓ ଓଡ଼ିଆ କଳା ସଂସ୍କୃତିର ଉତ୍ଥାନ । ଯେତେବେଳେ ଓଡ଼ିଶାରେ ଅନ୍ୟ ଚିତ୍ରଶିଳ୍ପୀମାନେ ନିଜର ସ୍ୱାର୍ଥକୁ ଆଖିରେ ରଖି ଚିତ୍ର ଆଙ୍କୁଥିବା ବେଳେ ଦିନନାଥ ନିଃସ୍ୱାର୍ଥପର ଭାବରେ ଓଡ଼ିଶାର କଳା ଆନ୍ଦୋଳନକୁ ଆଗେଇ ନେଉଥିଲେ ।** ଦିନନାଥଙ୍କ ମନରେ ଏବଂ ଜୀବନରେ ଓଡ଼ିଶା ବାହାରେ ଓଡ଼ିଆମାନଙ୍କ ପାଇଁ ଏକ କଳାଗ୍ରାମ ଗଢ଼ିବାର ପରିକଳ୍ପନା ଥିଲା । ମୋର ମନେଅଛି ସେତେବେଳେ ମୁଁ ମେସ୍‌ରେ ଦିନନାଥଙ୍କ ସହିତ ସ୍ଥାୟୀ ସଦସ୍ୟ । ଠିକ୍ **Beyond the Shores Exhibition**ର ଆଶାତୀତ ସଫଳତା ପରେ ପରେ ଦିନନାଥ ଚାହିଁଲେ ଜୀବନର ବାକି ସମୟ ସେ ଛାତ୍ରମାନଙ୍କ ସହିତ କଟାଇବେ । ସେତେବେଳେ ଯେଉଁ କେତେକ ଛାତ୍ର ଆର୍ଥିକ ସ୍ୱଚ୍ଛଳତା ହେତୁ ଦିଲ୍ଲୀରେ ରହି ଆସୁଥିଲେ, ସେମାନେ କଳାଗ୍ରାମ ପ୍ରସ୍ତାବରେ ସହମତ ହୋଇଥିଲେ । ଅନ୍ୟ ଯେଉଁ ଛାତ୍ରମାନଙ୍କର ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନଥିଲା ସେମାନେ ବି ଏଥିରେ ରାଜି ହୋଇଥିଲେ । ଦିନନାଥ ଗାଡ଼ି ଭଡ଼ାକରି ଛାତ୍ରମାନଙ୍କୁ ସାଥିରେ ନେଇ ହରିଆନାରୁ ଉତ୍ତରପ୍ରଦେଶ ପର୍ଯ୍ୟନ୍ତ ଖୋଜି ବୁଲୁଥିଲେ କଳାଗ୍ରାମର ସ୍ଥାନ । ଅନେକ ସ୍ଥପତିମାନଙ୍କ ସହିତ ଆଲୋଚନା କରି କଳାଗ୍ରାମର ଏକ ନକ୍ସା ପ୍ରସ୍ତୁତ କରି ନିଜର ବାସ୍ତବ କଳାଗ୍ରାମକୁ ଖୋଜି ବୁଲୁଥିଲେ । ସ୍ୱପ୍ନରେ ସଭିଏଁ ବିଭୋର ହୋଇଯାଇଥିଲୁ । କଳାଗ୍ରାମର ନାଁଟି ଥିଲା 'ବିଶ୍ୱ' । ଖୁବ୍ ସୁନ୍ଦର ନାଁଟିଏ । ସେତେବେଳେ 'ବିଶ୍ୱ' ନାଁଟି କହିଦେଲା ବେଳେ ଆମ୍ଭମାନଙ୍କ ମନରେ ଅନେକ ଅନେକ ଆନନ୍ଦର ଲହରୀ ଖେଳିଯାଉଥିଲା । ଏଭଳି ଏକ ସ୍ୱପ୍ନ ଥିଲା କିଏ କେଉଁଠି ଘର କରିବ, କିଏ କେଉଁ ଗଛ ଲଗାଇବ, କାହାର ଭାସ୍କର୍ଯ୍ୟ ଏବଂ କାହାର ଚିତ୍ର କେଉଁଠି ଲାଗିବ, କାହାର ପୁଅ କାହାର ଝିଅକୁ ପ୍ରେମ କରିବ, ଏପରି ସ୍ୱପ୍ନ ଓ ବାସ୍ତବର ଘୁମନ୍ତ ପରିକଳ୍ପନା ଭିତରେ ଆମର ଆଶା ଅଙ୍କୁରିତ ହେଉଥିଲା । ଛାତ୍ରଛାତ୍ରମାନଙ୍କ ମଧ୍ୟରେ ଏକ ଉତ୍ତମ ବୁଝାମଣା ମଧ୍ୟ ଦିନନାଥ କରିଆସୁଥିଲେ । ଦିନନାଥଙ୍କ ସହିତ ମୁଁ ଏବଂ ଅନ୍ୟ ଛାତ୍ରମାନେ ପ୍ରତ୍ୟେକ ଦିନ କିଛି ନା କିଛି ନୂଆ ସ୍ଥାନ ଭ୍ରମଣରେ ଯାଉଥିଲୁ । ଆଜି କେଉଁ ମ୍ୟୁଜିୟମ୍ ତ କାଲି କେଉଁ ଐତିହାସିକ ସ୍ଥାନ, କେଉଁ ପ୍ରଦର୍ଶନୀରେ କକ୍‌ଟେଲ୍ ତ କେଉଁଠି ସେମିନାର । ସବୁବେଳେ ସେ ତାଙ୍କ କାର୍ଯ୍ୟଧାରା ସହିତ ଛାତ୍ରମାନଙ୍କୁ ଯୋଡ଼ି ଅନ୍ୟମାନଙ୍କ ଆଗରେ ସମନ୍ୱୟର ଓ ବିକାଶର ବାର୍ତ୍ତା ଦେବାକୁ ଭୁଲୁ ନଥିଲେ । ମୁଁ ମଧ୍ୟ ଦିନନାଥଙ୍କ ସହିତ ଭାରତର ବହୁ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ଖୁବ୍ ନିକଟରୁ ପରିଚିତ ହେବାର ସୁଯୋଗ ପାଇଛି ଏବଂ ନିଜକୁ ଧନ୍ୟ ମନେ କରିଛି ।

ଧୀରେ ଧୀରେ କଇଁଚ ପିଠିରେ ସମୟ ଚାଲିଥାଏ । ସମୁଦ୍ରର ବେଳାଭୂମିରେ ପାଦଚିହ୍ନ ମଧ୍ୟ ସ୍ମୃତି ହୋଇଯାଏ । ଅପରାହ୍ନର ଲମ୍ବା ଛାଇ ମଧ୍ୟ ଲିଭିଯାଏ ପଶ୍ଚିମ ଆକାଶରେ ସୂର୍ଯ୍ୟ ଢଳିଗଲା ପରେ ।

ନୂତନ ଶତାବ୍ଦୀକୁ ସୃଜନର ବୈଭବ ମାଧ୍ୟମରେ ଆବାହନ କରିବା ପାଇଁ ଦିନନାଥ ଭୁବନେଶ୍ୱରର ସୂଚନା ଭବନ ଠାରେ ଇନ୍‌ଷ୍ଟଲେସନ୍ ଆର୍ଟ୍, ସଂପାନ, ନୃତ୍ୟ ଏବଂ କବିତାର ପ୍ରକାଶକୁ ନେଇ ଏକ ଅଭିନବ କଳ୍ପନାର ରୂପ ଦେଇଥିଲେ ।

ଏହି Multimedia Presentation ର ଉଦ୍ଦେଶ୍ୟ ଗୋଟିଏ ଶତାବ୍ଦୀରୁ ଅନ୍ୟ ଏକ ଶତାବ୍ଦୀକୁ ଲମ୍ଫ । ଦିନନାଥଙ୍କ ଏଭଳି ପଦକ୍ଷେପ ଓଡ଼ିଶାର ସମସାମୟିକ ଚିତ୍ରଜଗତକୁ ଏକ ନୂତନ ଦିଗ୍‌ଦର୍ଶନ । ଏଥିରେ ଅନେକ ଶିଳ୍ପୀ ନିଜନିଜର ସୃଷ୍ଟି ଦେଖାଇବାକୁ ସୁଯୋଗ ମଧ୍ୟ ପାଇଲେ ।

ଦିନନାଥଙ୍କ ସଂପର୍କରେ କହି ବସିଲେ କଥା ସରିବନି । ସେ ଦୀର୍ଘ ନିରାମୟ ଜୀବନ ଲାଭ କରନ୍ତୁ । ତାଙ୍କର ତୂଳୀ ଓ କଲମର ଜୟଯାତ୍ରା ଅବ୍ୟାହତ ରହୁ ଏହାହିଁ ପ୍ରାର୍ଥନା । ଆମେ ଦିନନାଥଙ୍କ ସଙ୍ଗ ଲଭୁଥାଉ ।

Digitized by srujanika@gmail.com

## ଚକ୍ରଧର ବେହେରା
# ସାଲେପୁରରୁ 'ବିୟଣ୍ଡ ଦ ସୋରସ୍'

ମୋ ଗାଁ ସ୍କୁଲରେ ଥରେ ହିନ୍ଦୀ ଶିକ୍ଷୟିତ୍ରୀ ହିନ୍ଦୀ ପଢାଉଥିଲା ବେଳେ ମୁଁ କ୍ଲାସ୍‌ରେ ବସି ତାଙ୍କ ଚିତ୍ର ଆଙ୍କୁଥିଲି । ଅକସ୍ମାତ୍ ଧରାପଡ଼ିଲି । ଶିକ୍ଷୟିତ୍ରୀ ପ୍ରବଳ ରାଗୀ । ମୋ ଉପରେ ଅକଥନୀୟ ମାଡ଼ ହେଲା, ତା ସାଙ୍ଗକୁ ଆଦେଶ ହେଲା କ୍ଲାସ୍ ବାହାରେ ଖରାରେ ଆଣ୍ଠେଇବା ପାଇଁ । ମୁଁ ସେମିତି ଖରାରେ ଆଣ୍ଠେଇ ଥାଏ । ପିରିଅଡ୍ ସରିଲା । ତଥାପି ମୋତେ ନିସ୍ତାର ମିଳିଲାନି, ତା ପରକ୍ଲାସ ହେଡ୍‌ମାଷ୍ଟ୍ରଙ୍କର । ସେ ବିଜ୍ଞାନ ପଢ଼ାନ୍ତି । ଚିତ୍ରପ୍ରିୟ । ମୋତେ ଖୁବ୍ ଭଲ ପାଆନ୍ତି । କ୍ଲାସ୍‌ରୁମ୍ ଭିତରକୁ ଡାକିଲେ । ପିଠିରେ ହାତବୁଲେଇ କହିଲେ, 'ଚିତ୍ର କରି ତମେ କିଛି ଖରାପ କାମ କରିନ । ଦେଖ ଚିତ୍ରକୁ ଜୀବନରେ ସଙ୍ଗୀ କରିବ ।' ସ୍କୁଲ ପଢ଼ା ସରିଲା । ମେଟ୍ରିକ୍ ପାସ୍ କଲି ।

ମୋର ଇଚ୍ଛାଥାଏ ଆର୍ଟ୍ ପଢ଼ିବି । ବଡ଼ ଭାଇ ବାଧକରି ସାଲେପୁର କଲେଜରେ ନାଁ ଲେଖେଇ ଦେଲେ । ପାଠ ପଢ଼ିବା ଆରମ୍ଭ ହେଲା । ମନ ଲାଗୁନଥାଏ । ଖଲ୍ଲିକୋଟରେ ଓଡ଼ିଶାର ଏକମାତ୍ର ଆର୍ଟ୍‌କଲେଜ ଥିବା କଥା ଶୁଣିଥାଏ । ମନ ସମ୍ଭାଳା ଗଲାନି । ପାଠ ପଢ଼ାବେଳର ଘରେ ଯାହା ଛବିପତ୍ର ଥିଲା ତାକୁ ବେଗ୍‌ରେ ଧରି ଭାଇଙ୍କୁ ଲୁଚି ଖଲ୍ଲିକୋଟ ବାହାରିଲି । ଜୀବନରେ ଆର୍ଟିଷ୍ଟ ହେବି । ହେଡ୍‌ମାଷ୍ଟ୍ରଙ୍କ କଥା ମୋତେ ପ୍ରେରଣା ଦେଉଥାଏ । ଖଲ୍ଲିକୋଟ ବସ୍‌ଷ୍ଟାଣ୍ଡରେ ଓହ୍ଲେଇ ପଚାରି ପଚାରି ଖଲ୍ଲିକୋଟ ଆର୍ଟ୍‌କଲେଜରେ ପହଞ୍ଚିଲି । ସବୁ ନୂଆ ଲାଗୁଥାଏ । ସେଠିକାର କଥା ଭାଷା, ହାବ ଭାବ, ଚାଲି ଚଳଣି । ହୋଟେଲ୍‌ରେ ଗଞ୍ଜାମି ଖାନା ଗଣ୍ଡେ ଖାଇଦେଇ ଜଗନ୍ନାଥ ମନ୍ଦିର ପିନ୍ଧିନୀରେ ରାତିଟା କଟେଇ ଦେବି ବୋଲି ଭାବିଲି ।

ହୋଟେଲ୍‌ରେ ଖାଇ ବସିଥାଏ । କାହାକୁ ହେଲେ ଆର୍ଟ୍‌ସ୍କୁଲ ସଂପର୍କରେ ପଚାରିବି ପଚାରିବି ହେଉଥାଏ, ଆର୍ଟ୍ କଲେଜରେ ଏନ୍‌ଟ୍ରାନ୍ସ ପରୀକ୍ଷା କିମିତି ହୁଏ ? କ'ଣ ପ୍ରଶ୍ନ ପଡ଼େ ? ଖିଆ ସରିଲା । ହୋଟେଲ୍‌ବାଲା ଜଣେ ଭଦ୍ରବ୍ୟକ୍ତିଙ୍କ ଆଡ଼କୁ ଦେଖେଇ ଦେଇ କହିଲା, 'କ'ଣ ପଚାରିବ ପଚାର ଏହାଙ୍କୁ । ସେହି ଲୋକ ଜଣକ ହୋଟେଲ୍ ବାହାରେ ଠିଆ ହେଇଥାନ୍ତି । ମୋତେ ଦେଖି ମୁଁ କିଛି ପଚାରିବା ଆଗରୁ ମୋତେ ହାତଠାରି ଡାକିଲେ । ମୁଁ ମୋର ବେଗ୍‌ପତ୍ର ଉଠେଇ ସେହି ଲୋକଟି ପଛରେ ଚାଲିଗଲି ।

ଲୋକଟି ଜଣେ ଯୁବକ । ଗମ୍ଭୀର ଦେଖାଯାଉଥାନ୍ତି । ମୋତେ ପଛକୁ ମୁହଁ ବୁଲେଇ ପଚାରିଲେ ତୁମର ପରିଚୟ । ମୁଁ କହିଲି ସାଲେପୁରରୁ ଆସିଛି ଖଲ୍ଲିକୋଟ ଆର୍ଟ୍‌ସ୍କୁଲରେ ପଢ଼ିବି ବୋଲି । ପୁଣି ସେ ପ୍ରଶ୍ନକଲେ । ଏଠି କିଏ ତମର ଚିହ୍ନାଲୋକ ଅଛନ୍ତି ? କହିଲି ନାହିଁ । ଲୋକ ଜଣକ ଅତି ଆଶ୍ଚର୍ଯ୍ୟ ଭାବେ ମୋ ମୁହଁକୁ ଚାହିଁ ରହିଲେ । ତା' ପରେ କହିଲେ ତା' ହେଲେ ମୋ ସାଥିରେ ଆସ । ଆମେ ଏମିତି କଥା ହେଉ ହେଉ ତାଙ୍କ ବସାଘରେ ପହଞ୍ଚିଗଲୁ । ଘରଟି ଅତି ପୁରୁଣା, ନଡ଼ାଛପର । ଦେଖି ମନ ଭିତରେ ଆଶଙ୍କା ହେଲା । ରାତି ସେତେବେଳକୁ ଦଶ । ଖଲ୍ଲିକୋଟ ସହର ପ୍ରାୟ ଶୁନଶାନ୍ । ସେ ଘର ଖୋଲିଲେ । ମୋର କୌତୂହଳ ବଢ଼ିଗଲା । ଘର ଭିତରଟାରେ ଛବି ଗଦାଗଦା । ମୁଁ ଭାବିଲି ଏ ଲୋକ ଜଣକ ଅନ୍ୟ କେଉଁ ଶିଳ୍ପୀଙ୍କ ଘରକୁ ଆଉ ଆଣିନାହାନ୍ତି ତ ? ନା, ସେ କ'ଣ ନିଜେ ଶିଳ୍ପୀ ? ପରେ ପରିଚୟ ହେଲାରୁ ଜାଣିଲି ସେ ପଞ୍ଚାନନ ସୁର, ଆର୍ଟ୍ କଲେଜରେ ଶିକ୍ଷକତା କରନ୍ତି । ସେ ଏଠିକାର ପୁରୁଣା ଛାତ୍ର । ସେ କଥାରେ କଥାରେ ମୋତେ ତାଗିଦା କରିଦେଲେ ଯେ ଏଠି ଖଲ୍ଲିକୋଟରେ କଟକୀଆ ପିଲାଙ୍କ ଏଡ଼ମିସନ୍ ହେବା ଏତେ ସହଜ ନୁହେଁ । ଏଠି ଗଂଜାମୀ କଟକୀ ଭେଦଭାବ ଅଛି । ସେ ମୋତେ ଉପଦେଶ ଛଳରେ କହିଲେ, ଭୁବନେଶ୍ୱରରେ ଏବେ ଗୋଟିଏ ଆର୍ଟ୍ କଲେଜ ହେଇଛି ସେଠିକି ଯାଅ । ଖଲ୍ଲିକୋଟରେ ଏନ୍‌ଟ୍ରାନ୍ସ ପରୀକ୍ଷା ବି ଶେଷ ହେଇଯାଇଛି । ତାଙ୍କ ଘରେ ରାତିଟି କଟେଇ ତା ପରଦିନ ସକାଳୁ ଭୁବନେଶ୍ୱର ଫେରିଲି । କେଉଁ ମୁହଁରେ ଗାଁକୁ ଯାଇଥାନ୍ତି ?

ଖଲ୍ଲିକୋଟରୁ ଭୁବନେଶ୍ୱର । ପଚରା ଉଚୁରା କରି କଳ୍ପନା ଛକ ବି.କେ. କଲେଜରେ ପହଞ୍ଚିଲି । ଫର୍ମ୍ ପକେଇଲି । ଏନ୍‌ଟ୍ରାନ୍ସ୍ ପରୀକ୍ଷା ଦେଲି । ହେଲେ ସିଲେକ୍‌ସନ୍‌ରେ ମୋ ନାଁ

Digitized by srujanika@gmail.com

ବାହାରିଲାନି । ହତାଶ ଲାଗିଲା । ଦଶ ଦିଗ ଅନ୍ଧାର ଦିଶିଲା । ସେଇ କଲେଜ ପୋର୍ଟିକୋରେ ରାତିଟା କଟେଇଦେଲି । ସକାଳୁ ମୁହଁ ଶୁଖେଇ କଲେଜ ଗେଟ୍ ପାଖରେ ବସିଥାଏ । କଲେଜର ପ୍ରିନ୍ସପାଲ୍ ଡକ୍ଟର ପାଠୀ ତାଙ୍କ କଳ୍ପନା ଫ୍ଲାଟ୍ ଘରୁ ସଅଳ ସଅଳ କଲେଜ ଆସୁଥିଲେ । କିଛି ପଚାରିବାକୁ ସାହସ ହେଲାନି । ସେ କଲେଜରେ ପଶି ତାଙ୍କ ଅଫିସ ରୁମ୍‌ରେ ନିଜ କାମରେ ବ୍ୟସ୍ତ ରହିଲେ । ମଝିରେ କଣ ହେଲା କେଜାଣି ଝରକା ବାଟେ ମୋତେ ଅନେଇଲେ । ମୋତେ ଡାକିଲେ । ମୁଁ ଡରି ଡରି ତାଙ୍କ ରୁମ୍‌ରେ ପହଞ୍ଚିଲି । ମୋର ହତୋତ୍ସାହ ଭାବ ବୁଝିପାରି ପିଠି ଥାପୁଡ଼େଇ ସାନ୍ତ୍ୱନା ଦେଲେ । କହିଲେ ବ୍ୟସ୍ତ ହୁଅନି । କାଜୁଆଲ୍ ଭାବେ ଆସି କ୍ଲାସ୍‌ରେ ବସ, କାମ କର । ସେ ଦି'ପଦ କଥା ମୋତେ ମାନସିକ ଚିନ୍ତାରୁ ମୁକ୍ତି ଦେଲା, ତା ପରବର୍ଷ ମୋତେ କଲେଜରେ ଏଡ୍‌ମିସନ୍ ମିଳିଲା ।

କଲେଜ କଳ୍ପନା ସିନେମା ପାଖ ଗୋଟିଏ ଭଡ଼ାଘରେ ଚାଲୁଥାଏ । ଏହି ଭଡ଼ାଘରର ପୋର୍ଟିକୋ ଏକ ଛୋଟକାଟର କଲେଜ ଭଳିଆ । ଏଠି ସବୁ ଛାତ୍ରଛାତ୍ରୀଙ୍କ ଆଡ୍ଡା ଜମେ । କିଏ ଦୁଃଖରେ ଥାଉ କି ସୁଖରେ ଥାଉ, ବସି ବସି ଖାଲି ଭାବୁଥାଉ କି କାମ କରିକରି ଥକି ଯାଇଥାଉ, ପ୍ରେମ କରୁଥାଉ କି ବିରହରେ ସଢୁଥାଉ, ଏହି ପୋର୍ଟିକୋ ତାର ଟର୍ନିଙ୍ଗ୍ ପଏଣ୍ଟ । ଏଠି ଯିମିତି ସବୁ କଥାର ଆରମ୍ଭ, ସବୁ ଯାତନାର ଶେଷ । ଏଠି ହିଁ ସିନିୟର ଭାଇଙ୍କ ସାଙ୍ଗରେ ଦେଖାହୁଏ । ସଂପର୍କ ଜମେ । ସେମାନେ ଜୁନିଅରକୁ ଧରନ୍ତି । ବୁହେ ମଜା କରି ସଂପର୍କ ବଢାନ୍ତି । ଅଶ୍ୱିନୀ ମହନ୍ତ, ଜୟନ୍ତ ପଣ୍ଡା, ଅଙ୍ଗନ ସାହୁ, ଅଜୟ ପଣ୍ଡା, ପ୍ରଦୋଷ ମିଶ୍ର ତଥା ଦିଲ୍ଲୀପ ତ୍ରିପାଠୀ ପ୍ରଭୃତି ସିନିୟର୍ ଛାତ୍ରମାନେ ମୋତେ ଏଠି ପ୍ରଥମେ ଧରିଛନ୍ତି । ଅଂଜନ ଭାଇ 'ପ୍ରେମ କରିବା ଶିଖିଛ ?' ବୋଲି ପଚାରିଲା ବେଳକୁ ଦିଲ୍ଲୀପ ଭାଇ 'ଗୀତ ବୋଲି ଆସେକିରେ ?' ବୋଲି ଏଠିହିଁ ମୋତେ ପଚାରିଥିଲେ । ସଂଭ୍ରମରେ ଛାତି ଭିତରଟା ଥରି ଯାଇଥିଲା ।

କଲେଜରେ ପାଠପଢ଼ା ଆଗେଇ ଚାଲେ । ସକାଳୁ ସକାଳୁ ୱାଟର୍ କଲର୍ ଷ୍ଟଡ଼ି ଓ ସନ୍ଧ୍ୟାରେ ରେଳ ଷ୍ଟେସନ୍‌ରେ ସ୍କେଚିଙ୍ଗ୍ । ଆମେ ରମେଶ ପଟ୍ଟନାୟକ (ବୋଧହୁଏ ଏବେ ବମ୍ବେରେ), ସୁଧାଂଶୁ ଭୂଷଣ ସୁତାର (ଦିଲ୍ଲୀରେ) ଚକ୍ରବର୍ତ୍ତୀ (କଟକରେ) ତିନିହେଁ ଘଣି ହେଉଥିଲୁ । ପ୍ରିନ୍ସପାଲ୍ ପାଠୀ ସାର୍ ଅଧିକାଂଶ ଦିନ ସକାଳୁ ସକାଳୁ ଆମ ସାଙ୍ଗରେ ଜୁଟି ଯାଆନ୍ତି । ସେ ବି ଆମ ପାଖରୁ ବୋର୍ଡ୍, କାଗଜ ରଙ୍ଗନେଇ ପେଣ୍ଟିଙ୍ଗ୍ ଆରମ୍ଭ କରିଦିଅନ୍ତି । ଏବେ ବି ତାଙ୍କର କେତୋଟି ଉପଦେଶ ମନେ ଅଛି । ୱାଟର୍ କଲର୍‌ରେ ବିଭିନ୍ନ ପ୍ରକାର ରଙ୍ଗ ଶେଡ୍ ନ ନେଇ ପ୍ରଥମରୁ ହିଁ ସଂଯମ ଆଚରଣ କରିବା ଦରକାର । ପେଲେଟ୍‌ରେ ବିଭିନ୍ନ ରଙ୍ଗ ନ ମିଶେଇ କାଗଜ ଉପରେ ରଙ୍ଗକୁ ଆପେ ଆପେ ମିଶିବାକୁ ଦେଲେ ରଙ୍ଗ ତାଜା ରହେ । **ସେ ପୁଣି କହନ୍ତି, ଯିଏ ଚିତ୍ରକରେ ସେ ନିମିତ୍ତ ମାତ୍ର । ରଙ୍ଗ ଆପେ ଆପେ ତା ଲୀଳା ଖେଳା କରେ । ଶିଳ୍ପୀକୁ ଖୁବ୍ ସତର୍କତାର ସହିତ ଦ୍ରଷ୍ଟାଭଳି ଜଗି ରହିବାକୁ ହୁଏ । ଅବାଟରେ ଚାଲିଗଲେ ବାଟକୁ ଆଣିବାକୁ ପଡ଼େ, ବେଶ୍ କାମ ଏତିକି ।** ସକାଳର ୱାଟର୍ କଲର୍ ଷ୍ଟଡ଼ି ଆସର ଜମେ । ପାଠୀ ସାର୍‌ଙ୍କ ରଙ୍ଗ ଷ୍ଟ୍ରୋକ୍ ଦେଖିଲେ ଆଚମ୍ବିତ ଲାଗେ । ଏମିତିରେ ସାର୍‌ଙ୍କ ୱାଟର୍ କଲର୍ ଗୁଡ଼ିକ ଖୁବ୍ ଉଚ୍ଚମାନର । ପୁରୁଣା ଖଲ୍ଲିକୋଟ ପରମ୍ପରାର । ପୂରା ଏକାଡ଼େମିକ୍ । ତା'ପର ଦିନ ଆମର ୱାଟର୍ କଲର୍ ଗୁଡ଼ିକ କଲେଜ ହଲ୍‌ରେ ଡିସ୍‌ପ୍ଲେ ହେଉଥିଲା ଓ ତା ଉପରେ ତର୍ଜମା ହେଉଥିଲା ।

ଗୋଟିଏ ଘଟଣା ମୋ ଜୀବନରେ ଖୁବ୍ ପ୍ରଭାବ ପକେଇଥିଲା । କଲେଜର ବାର୍ଷିକ ଚିତ୍ରପ୍ରଦର୍ଶନୀ ସମୟ । ମୁଁ ସେତେବେଳକୁ ଦ୍ୱିତୀୟ ବର୍ଷର ଛାତ୍ର । ଆମେ ସମସ୍ତେ ଧୂମ୍‌ଧାମ୍ ଚିତ୍ର ମାଉଣ୍ଟ୍ କରିବା, ଫ୍ରେମ୍ କରିବାରେ ଲାଗିଥାଉ । ଅଶୋକ ତ୍ରିପାଠୀ (ଏବେ ଦାମନଯୋଡ଼ିରେ) କୁକୁଡ଼ା ପରରେ ପାଠୀ ସାର୍‌ଙ୍କ ପୋଟ୍ରେଟ୍‌ଟିଏ କରିଥାଏ । କହୁଥାଏ ସେ ତା ଭିତରେ ନିଜ ରକ୍ତ ଦେଇ ତାଙ୍କୁ ଜୀବନ୍ତ କରିବ । ପୋଟ୍ରେଟ୍‌ଟି ଭଲ ଦିଶୁଥାଏ କିନ୍ତୁ ଦୁର୍ଗନ୍ଧ ହେଉଥାଏ । ଆମ୍ବ ଗଛମୂଳେ କବିତା ଅପା (କବିତା ମହାନ୍ତି ଏବେ ମନୋମାନିନୀର ଅଧ୍ୟକ୍ଷା) ପଥର ଖୋଳିବାରେ ବ୍ୟସ୍ତ । ହଠାତ୍ ଲେମ୍ବୁ ଗଛତଳେ କାଗଜ ବିଡ଼ାଟିଏ ଉପରେ ନଜର ପଡ଼ିଲା । ଖୋଲି ଦେଖିଲି ପୁରୁଣା ଛବିର ବିଡ଼ା । ବହୁତ ଗୁଡ଼ାଏ ନଷ୍ଟଭ୍ରଷ୍ଟ ଛବି ଭିତରେ ଭଲ ଛବିଟିଏ ଥିଲା । ଭାବିଲି ଛବିଟିକୁ ନେଇ କଟକ ଦୁର୍ଗା ବାଇଣ୍ଡିଂରେ ବାଇଣ୍ଡି କରେଇବି ଆଉ ବାର୍ଷିକ ପ୍ରଦର୍ଶନୀରେ ଛବିଟିକୁ ଦେବି । ଛବି ସିଲେକ୍‌ସେନ୍ ଚାଲିଥାଏ । ପାଠୀ ସାର୍, ଶିବ ସାର୍ ସିଲେକସେନ୍ କରୁଥାନ୍ତି । ପାଖରେ ରାଓ ସାର୍ ଓ ମୋର

Digitized by srujanika@gmail.com

ପୂର୍ବପରିଚିତ ପଞ୍ଚାନନ ସାର୍ । (ସେ ସେତେବେଳେ ଖଲ୍ଲିକୋଟରୁ ବଦଳି ହେଇ ବି.କେ.ରେ) ହଠାତ୍ ମୁଁ ଦେଇଥିବା ଛବିଟିକୁ ଦେଖି ପାଠୀ ସାର୍ ପ୍ରଥମେ କୌତୂହଳୀ ହେଇପଡ଼ିଲେ ଓ ପରେ ବିଗିଡ଼ି ଯାଇ କହିଲେ- 'ଏ ଛବି ଯେଉଁ ପିଲା ଦେଇଛି ତାକୁ ଡାକ ।' ପଞ୍ଚାନନ ସାର୍ ମୋତେ ଡାକି ପାଠୀ ସାର୍‌ଙ୍କ ପାଖରେ ଠିଆ କରେଇ ଦେଲେ । ପଞ୍ଚାନନ ସାର୍ ପାଠୀ ସାର୍‌ଙ୍କୁ କିଛି ନ କହିବା ପାଇଁ ଆଗରୁ ତାଗିଦା ଦେଇଥାନ୍ତି । ରାଗରେ ତାଙ୍କ ମୁହଁ ନାଲ୍ ପଡ଼ିଯାଇଥାଏ । ଗମ୍ଭୀର ସରରେ ସେ ପ୍ରଶ୍ନକଲେ, 'ତମେ ଛବିଟି କେଉଁଠୁ ପାଇଲ ?' ମୁଁ ଅସମ୍ଭବ ଡରିଗଲି । ଭୟରେ, ଭକ୍ତିରେ ଓ ଲଜ୍ଜାରେ ମୁଣ୍ଡ ତଳକୁ କରି ନୀରବରେ ଠିଆ ହେଇ ରହିଲି । ଅବସ୍ଥାକୁ ସମ୍ଭାଳି ନେଇଥିଲେ ରାଓ ସାର୍ ଓ ପଞ୍ଚାନନ ସାର୍ । ଲେମ୍ବୁଗଛ ମୂଳରୁ ମୁଁ ଯେଉଁ ଛବି ବିଡ଼ା ଉଦ୍ଧାର କରିଥିଲି, ତାହା ପାଠୀ ସାର୍‌ଙ୍କ ରୁମ୍ ସଫାବେଳେ ଭୁବନା (କଲେଜର ଚୌକିଦାର) ତଳକୁ ଫିଙ୍ଗି ଦେଇଥିଲା । ଚିତ୍ରଟି ଥିଲା ପାଠୀ ସାର୍‌ଙ୍କ ଖଲ୍ଲିକୋଟ ବେଳର ପେନସିଲ୍ ଅଙ୍କା ଗାଈ ସ୍କେଚ୍ । ପରେ ଜାଣିଲି ଖୁବ୍ ବିଳମ୍ବିତ ରାତିରେ ଖଲ୍ଲିକୋଟ ବଜାରରେ ଲାଇଟ୍ ଖୁଣ୍ଟ ତଳେ ଶୋଇ ପାକୁଳଉ ଥିବା ଗାଈର ଛବି । ତାଙ୍କ ଛାତ୍ର ଜୀବନର କେତେ ସ୍ମୃତି ଛବି ଭିତରେ ଗୁନ୍ଥାଥିଲା । ଏ ଛବିଟି ତାଙ୍କ ପାଇଁ ଖୁବ୍ ଉପାଦେୟ ଓ ମହତ୍ତ୍ୱପୂର୍ଣ୍ଣ ଥିଲା । ଅନିଚ୍ଛାକୃତ ମୋର ଏ ଭୁଲପାଇଁ ମୁଁ ଏବେ ବି ଅନୁଶୋଚିତ । ଏ ଘଟଣା ମୋ ଜୀବନରେ ଏକ କଳାଦାଗ ଟାଣିଦେଲା । ମୁଁ ବଞ୍ଚିଥିବା ଯାଏଁ ଏ ଅନୁଶୋଚନାର ଅନ୍ତ ନ ହେଇପାରେ । ସେ ଦିନର ଏଇ ଟିକକ ଭୁଲପାଇଁ ମୁଁ ମୋ ବନ୍ଧୁମାନଙ୍କଠାରୁ ଶତଧିକ୍କାରର ଶରବ୍ୟ ହେଇଛି ।

୧୯୯୩ ମସିହାରେ ଉଚ୍ଚଶିକ୍ଷା ପାଇଁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଯୋଗଦେଲି । ଘୋର ଅର୍ଥାଭାବ ଭିତରେ ଉଚ୍ଚ ହେବା ଆଶାନେଇ ଦୁଇ ତିନି ବର୍ଷ ବିତେଇବାକୁ ପଡ଼ିଲା । ୧୯୯୪ ମସିହାରେ ପାଠୀ ସାର୍ କେନ୍ଦ୍ର ଲଳିତକଳା ଏକାଡ଼େମୀର ସଚିବ ଭାବେ ଯୋଗ ଦେଇଥାନ୍ତି । ୧୯୯୫ ମସିହା ଅଗଷ୍ଟ ମାସରେ ଚିଠିଟିଏ ପାଇଲି । ଦିଲ୍ଲୀ ରବୀନ୍ଦ୍ରଭବନ ଠାରେ **ବିୟଣ୍ଡ ଦ ସୋରସ୍** ଚିତ୍ର ପ୍ରଦର୍ଶନୀ ସଂପର୍କରେ ଲେଖାଥିଲା । ଦିଲ୍ଲୀରେ ଥିବା ସମସ୍ତ ବି.କେ. ଗୁରୁକଳା ମହାବିଦ୍ୟାଳୟର ପ୍ରବାସୀ ଛାତ୍ରଛାତ୍ରୀଙ୍କୁ ନେଇ ଏକ ବିରାଟ ପ୍ରଦର୍ଶନୀର ଆୟୋଜନ ନଭେମ୍ବର ମାସରେ ହେବ । ପାଞ୍ଚଟି ଛବିସହ ଦୁଇ ହଜାର ଟଙ୍କା ଚାନ୍ଦା ମଧ ଦେବାକୁ ହେବ । ଅର୍ଥାଭାବ ମେଣ୍ଟେଇବା ପାଇଁ ବନାରସରେ ଗାଙ୍ଗୁଲି ଦାଦାର ହ୍ୟାଣ୍ଡପ୍ରିଣ୍ଟ୍ ଶାଢ଼ି ଫେକ୍ଟ୍ରୀରେ ରାତିରେ ଯାଇ ଡିଜାଇନ୍ କରି ଦି ପଇସା ପାଏ । ଦୁଃଖେ ସୁଖେ ଚଳିଯାଏ । ଚିଠି ପାଇଲା ପରେ 'ବିୟଣ୍ଡ ଦ ସୋରସ୍' ପାଇଁ କାମ ଆରମ୍ଭ କଲି । ସାର୍ କହିଥାନ୍ତି ପେଣ୍ଟିଂ ଟିକିଏ ବଡ଼ ନହେଲେ ଜମିବନି । ସେ କଥାକୁ ମନରେ ରଖି କାମରେ ଆଗଉ ଥାଏ । ଦିଲ୍ଲୀରେ ଫ୍ରେମ୍ କଲେ ବେଶୀ ଖର୍ଚ୍ଚ ପଡ଼ିବ ବୋଲି ବନାରସରେ ହିଁ ଫ୍ରେମ୍ କରେଇନେଲି । କାଶୀ ବିଶ୍ୱନାଥ ଏକ୍ସପ୍ରେସ୍‌ରେ ବସି ଦିଲ୍ଲୀରେ ପହଞ୍ଚିଲି । ଦିଲ୍ଲୀ ମୋ ପାଇଁ ନୂଆ ଜାଗା ହୋଇଥିବାରୁ ସାର୍ ଦି'ଜଣ ପିଲାଙ୍କୁ ଷ୍ଟେସନ୍ ପଠେଇଥାନ୍ତି । ଟ୍ରେନ୍ ପ୍ଲାଟଫର୍ମ ଧରିସାରିଥିଲେ ହେଁ ମୁଁ ବର୍ଥ ଭିତରେ ଶୋଇ ଘୁଙ୍ଗୁଡ଼ି ମାରୁଛି । ଅଂଜନ ସାହୁ ଓ ପ୍ରତାପ ଜେନା ଆସି ମୋତେ ଉଠେଇ କହିଲେ, ଆବେ ହେ ଓଡ଼ିଆ, ନିଦଭାଙ୍ଗିବନି ? ଧଡ଼ପଡ଼ ହେଇ ଉଠିଲି । ସେମାନେ ମୋ ଛବିପତ୍ର ଡବାରୁ ଆଣିବାରେ ସାହାଯ୍ୟ କଲେ । ତା'ପରେ ଆମେ ପହଞ୍ଚିଲୁ ମଣ୍ଡି ହାଉସ୍‌ରେ ଥିବା ସାର୍‌ଙ୍କ **ପତିତପାବନ ମେସ୍**‌ରେ । ଏଠି ଓଡ଼ିଆ ପିଲାଙ୍କ ଆଡ୍ଡା । ସାର୍ ସଚିବ ହେଇ ଆସିବା ପରେ ଦିଲ୍ଲୀପ ତ୍ରିପାଠୀ ଏକାଡ଼େମୀର ପ୍ରଡ଼କ୍‌ସନ୍ ସେକ୍‌ସନ୍‌ରେ ଯୋଗ ଦେଲାପରେ ଏ ମେସ୍‌ର ଅୟମାରମ୍ଭ । ସାର୍ ଅଫିସରୁ ତାଙ୍କ କ୍ୱାର୍ଟର୍‌କୁ ଫେରିଲା ବେଳକୁ ସାଙ୍ଗରେ ସବୁବେଳେ ଛ' ସାତ ଓଡ଼ିଆ ପିଲା । ମେସ୍ ଲାଗୁଥିଲା ବି.କେ. କଲେଜର ପୋର୍ଟିକୋ ଭଳି । ଏଠି ସାର୍ ସଚିବ ନୁହଁନ୍ତି । ସେଇ ଆମର ପୁରୁଣା ପ୍ରିନ୍ସପାଲ୍ । ଭାତ ଡାଲମାର ଆୟୋଜନ ସବୁଦିନେ । ତା ଭିତରେ କଳାଚର୍ଚ୍ଚା, ଢୋଲକି ମାଡ଼, ଗୀତ, ତାମସା, ଛବିଅଙ୍କା, ହସ-ଖୁସି, ମୁହଁ ଫୁଲାଫୁଲି ଏବଂ ପ୍ରଦର୍ଶନୀ ପାଇଁ ଯୋଜନା ଓ ପରିକଳ୍ପନା । ଆଲୋଚନା ଆରମ୍ଭହେଲେ ପିଲାମାନେ ସାର୍‌ଙ୍କ ଘେରିପଟେ ଗୋଲ ହେଇ ବସିଯାଆନ୍ତି । ଆଶ୍ରମ-ବିଦ୍ୟାଳୟର ପରମ୍ପରା ଭିତରେ ସଜଳ ପାତ୍ର ସାର୍‌ଙ୍କ ସୋଫା ପଛପଟେ ଠିଆ ହେଇ ରହନ୍ତି । ଟଙ୍କା କିଏ ଦେଲା ନ ଦେଲା ତା ବୁଝିବା ପ୍ରଦୋଷ ମିଶ୍ରଙ୍କ ଦାୟିତ୍ୱ । ଦିଲ୍ଲୀପ ତ୍ରିପାଠୀଙ୍କ କାମ ହେଲା କ୍ୟାଟଲଗ୍ ଡିଜାଇନ୍ କରିବା ଓ ଛାପିବା । ଜ୍ୟୋତି ପାଣିଗ୍ରାହୀ ଥାଏ କୋଷାଧକ୍ଷ । ପ୍ରଦର୍ଶନୀ ସମୟ ପହଞ୍ଚିଲା । କାହାର କେତୋଟି ଛବି କେଉଁ ଜାଗାରେ ରଖାଯିବ, ସାର୍ ଭିଜୁଏଲାଇଜ୍ କଲାବେଳକୁ ପିଲାଙ୍କ ଭିତରେ ନିର୍ଦ୍ଧୂମ ଝଗଡ଼ା ଓ ପାଟିତୁଣ୍ଡ ଆରମ୍ଭ ହେଇଗଲା । ଅନେକଙ୍କ ଇଚ୍ଛା, ଗ୍ୟାଲେରୀର

Digitized by srujanika@gmail.com

ସାମ୍ନାପଟ ଜାଗାରେ ନିଜ ନିଜ ଛବି ଟଙ୍ଗାଗଲେ ଦର୍ଶକମାନଙ୍କ ଆଖି ପ୍ରଥମେ ପଡ଼ିବ । ଅଶୋକ ସାହୁ ଓ ଅନୁପ ଚାନ୍ଦ ନିଜ ନିଜ ଛବି ଖୋଲି ନେଇଯିବାକୁ ବସିଲେଣି । ବେଶୀ ଲୋକରେ ଏପରି କିଛି ଉପୁଯିବା ସାଭାବିକ ବୋଲି ସାର୍ କହିଲେ । ମୋର ତିନୋଟି ଛବିରୁ ଗୋଟିଏ କାନ୍ଥରୁ ଫୁଟେ ଛାଡ଼ି ଏକପାଖିଆ ହେଇ ବଙ୍କେଇ ଟଙ୍ଗାହେଇ ରହିଲା । ଯେତେ ଚେଷ୍ଟା କଲେବି ସିଧା ହେଲାନି । ବନାରସୀ ଫ୍ରେମ୍‌ର ଦୋଷ । ସମସ୍ତେ କହିଲେ ଫ୍ରେମ୍ ବଦଳେଇ ଦେ । ସାଧୁ ସିଂହ ପାଖକୁ ନେଇଯା ସେ ଫ୍ରେମ୍ ଠିକ୍ କରିଦେବ । ହାତରେ ସମୟ ନାହିଁ । ଯେନତେନପ୍ରକାରେଣ ଟଣାଓଟରା କରି ତାକୁ ସାମାନ୍ୟ ବାଗେଇ ଦିଆଗଲା ।

ଉଦ୍‌ଘାଟନ ଉତ୍ସବ । ଭାରତର ଭୂତପୂର୍ବ ପ୍ରଧାନମନ୍ତ୍ରୀ ଭି.ପି. ସିଂହ ପ୍ରଦର୍ଶନୀ ଉଦ୍‌ଘାଟନ କରିବାପାଇଁ ଆସିଥାନ୍ତି । ପ୍ରବଳ ସିକ୍ୟୁରିଟି । ଚେକିଙ୍ଗ୍ ଉପରେ ଚେକିଙ୍ଗ୍ । ପ୍ରତ୍ୟେକ ଭାସ୍କର୍ଯ୍ୟ, ପେଡ଼େଷ୍ଟଲ୍‌କୁ ସିକ୍ୟୁରିଟି ବାଲା ମେଟାଲ୍ ଡିଟେକ୍‌ଟର୍‌ରେ ତନଖୁଥାନ୍ତି । ପ୍ରତ୍ୟେକ ଶିଳ୍ପୀଙ୍କୁ ଗେଟ୍ ପାଖରେ ଚେକିଙ୍ଗ୍ କରି ଭିତରକୁ ଛାଡୁଥାନ୍ତି । ତା'ପରେ ଆସିଲେ ଅଢ଼େଇ ଫୁଟ ଉଚ୍ଚର ଦି'ଟା କଳାକୁକୁର । ସେମାନେ ବହେ ଶୁଙ୍ଘିଗଲେ । ଛବିରୁ ଆରମ୍ଭ କରି ସେମାନଙ୍କୁ ଚିତ୍ର କରିଥିବା ମଣିଷଙ୍କ ପର୍ଯ୍ୟନ୍ତ । ଏସବୁ ପର୍ବ ସରିଲା ପରେ କିଏ ଆଉ ବାହାରକୁ ଯା ଆସ କରିପାରିବେ ନାହିଁ ବୋଲି ସାର୍ ତାଗିଦା ଦେଲେ । ପାଠୀ ସାର୍, ଲଳିତ କଳା ଏକାଡ଼େମୀର ଉପାଧ୍ୟକ୍ଷ ଆନନ୍ଦ ଦେବ, ଡେପୁଟି ସେକ୍ରେଟାରୀ ରାଜେନ୍ଦ୍ର ପଟୱାରୀ ପ୍ରମୁଖ ଭି.ପି. ସିଂହ ମହୋଦୟଙ୍କୁ ତାଙ୍କ ଗାଡ଼ି ପାଖରୁ ପ୍ରଦର୍ଶନୀ ଘର ଭିତରକୁ ପାଛୋଟି ଆଣିଲେ । ଗ୍ୟାଲେରୀ ବାହାରେ ଦିଲ୍ଲୀର ଶିଳ୍ପୀମହଲ ଓ ଦେଖଣାହାରୀଙ୍କ ଅସମ୍ଭବ ଭିଡ଼ । ଭି.ପି. ସିଂହ ପ୍ରତିଟି ଛବି ତନ୍ନ ତନ୍ନ କରି ଦେଖିଲେ, ଆମମାନଙ୍କ ସହିତ ଛବି ସଂପର୍କରେ ଆଲୋଚନା କଲେ । ତା'ପରେ ଗ୍ୟାଲେରୀ ବାହାରେ ଚାହା ଜଳଖିଆର ପର୍ବ । **ମୁଁ ଭାବିଲି ବାସ୍ତବିକ ଶିଳ୍ପୀ ଜୀବନର ସାର୍ଥକତା ମିଳିଲା । ସେ ସନ୍ଧ୍ୟାର ଅନୁଭୂତି ଅବିସ୍ମରଣୀୟ । ସେଦିନ ସବୁ ଓଡ଼ିଆ ଶିଳ୍ପୀଙ୍କ ମନରେ ସ୍ପନ୍ଦନ, ହୃଦୟରେ ଆଲୋଡ଼ନ ଓ ଆଖିରେ ଗଦାଏ ଗଦାଏ ସପ୍ନ । ସତେ କ'ଣ ଏ ଶିଳ୍ପୀ ଜୀବନ ସାର୍ଥକ ହେବ ? ସତେ କ'ଣ ଓଡ଼ିଆ ଶିଳ୍ପୀ ଦରିଆ ପାରିରେ ଡଙ୍ଗା ମେଲି ଦେଇ ଶିଳ୍ପୀ ଭାବେ ବିଶ୍ୱକୁ ଖେଦିଯିବ ? ସତେ କ'ଣ ସୁଦିନ ଫେରି ଆସିବ ?** ପ୍ରଦର୍ଶନୀ ସରିଲା ପରେ ସେଦିନ ମେସ୍ ଲାଲେ ଲାଲ ହୋଇଗଲା ଚିକେନ୍ ତନ୍ଦୁରୀ, ପଣା ପାଣିରେ । ପତିତପାବନ ମେସ୍ ଉଚ୍ଛୁଳି ଗଲା । ଏ ପ୍ରଦର୍ଶନୀ ବହୁ ଶିଳ୍ପୀଙ୍କୁ ମାନ୍ୟତା ଦେଇଥିଲା । ଦିଲ୍ଲୀର ଶିଳ୍ପୀମାନଙ୍କ ସହିତ ସଂପର୍କ ଯୋଡ଼ି ଦେଇଥିଲା ।

ପ୍ରଦର୍ଶନୀର ଦ୍ୱିତୀୟ ଦିନ । ପ୍ରବଳ ଭିଡ଼ । ମୁଁ ଲକ୍ଷ୍ୟ କରିଛି ନାଲି ରଙ୍ଗର ଏଷ୍ଟିମ୍‌ଟିଏ ଗ୍ୟାଲେରୀ ସାମ୍ନାରେ ଲାଗିଲା । ଦୁଇଜଣ ତନ୍ୱୀ ଗାଡ଼ିରୁ ଓହ୍ଲେଇ ଗ୍ୟାଲେରୀରେ ପଶିଲେ । ଲାଗିଲେ ମା ଝିଅ ଭଳି । ଦିହିଁଙ୍କର ଷ୍ଟାଇଲ୍ ବଡ଼ ଅଦ୍ଭୁତ । ମୁଁ ଡବ ଡବ କରି ସେମାନଙ୍କୁ ଚାହିଁଥାଏ । ଆମ ଓଡ଼ିଆ ଶିଳ୍ପୀଦଳକ ଭାବିଲେ 'ବାୟର୍' ଆସିଗଲେ । ଜ୍ୟୋତି ପାଣିଗ୍ରାହୀ, ସାକଳ ପାତ୍ର ତାଙ୍କ ପିଛା ଧରିଲେଣି । ଯୁବତୀ ଜଣକ ମୋ ଛବି ପାଖରେ ପହଞ୍ଚିଲେ'। ନିଠେଇ ନିଠେଇ ମୋ ଛବିଟିକୁ ଦେଖିଲେ । ଲାଗିଲା ଛବିଟି ଯିବ । ଛବିସବୁ ଏମିତିରେ ହିଁ ଯାଏ । ପ୍ରଥମେ ଆଖିରେ ଆଖିରେ ତା ପରେ ମନରେ ମନରେ । ତା ପରକୁ ହୃଦୟରେ ଭାବସଂଚରି ଗଲେ, ପ୍ରେମ ବଳିପଡ଼େ । ଆଉ ଛବିଟି କାନ୍ଥରୁ ଖୋଲା ହେଇଯାଇ ଗାଡ଼ି ଭିତରେ ରହେ । ସେ'ଠୁ ଶୀତତାପ ନିୟନ୍ତ୍ରିତ ଆଭିଜାତ୍ୟପୂର୍ଣ୍ଣ ଘରକୁ ଯାତ୍ରା । ସାର୍ ଯେଉଁ ଫ୍ରେମ୍ ତେଢ଼ା ହେଇଛି ବଦଳେଇବା ପାଇଁ କହୁଥିଲେ, ସମସ୍ତେ ଯାହାକୁ ଥଟ୍ଟା କରୁଥିଲେ ସେହି ଛବିରେ ହିଁ ବିନ୍ଧି ଲାଗିଲା । ପ୍ରଦର୍ଶନୀ ସରିଲା ଆମେ ମେସ୍‌କୁ ଫେରିଲୁ ।

ମେସ୍‌ରେ ସଭାବସିଲା ଚିରାଚରିତ ଢଙ୍ଗରେ । ଗେଣ୍ଡୁଭାଇ (ସୁଧାଂଶୁକୁ ମୁଁ ଏମିତି ସମ୍ବୋଧନ କରେ, ସେ ମଧ୍ୟ ମୋତେ ଗେଣ୍ଡୁଭାଇ କହେ) କହିଲା, କାଲିଠାରୁ ଚକ୍ରଧର ଯାଇ ପ୍ରଥମେ ଗ୍ୟାଲେରୀ ଖୋଲିବ । ଦିଲ୍ଲୀ ଜାଗା ଅଲଗା, ଏଠି ପାଠୀ ସାର୍ ପଢ଼େଇଥିବା ଏସ୍‌ଥେଟିକ୍‌ସ୍ ଚାଲିବନି । ସବୁ ପଢ଼ିଥିବା ପାଠ ବେକାର । ଗେଣ୍ଡୁ ଦାସ ଜିନ୍ଦାବାଦ୍ । ଅବଶ୍ୟ ତା ପରଠାରୁ ଛବିଯିବା ଆରମ୍ଭ ହେଲା । ଜ୍ୟୋତିର ସବୁଠୁ ଅଧିକା ଗୋଟିଏ ଛବି ପଚାଶ ହଜାରରେ ଗଲା । ଏମିତି ହେଇ ହେଇ ଆମେ ଓଡ଼ିଆ ଶିଳ୍ପୀ ଚାରି ପାଞ୍ଚ ଲକ୍ଷ ଟଙ୍କାର ଛବି ବିକିଲୁ । କାହାର କାହାର ଖାତା ବି ଖୋଲା ହେଲାନି । ମୁଁ ଏବେ ଦିଲ୍ଲୀରେ ରହୁଛି । ଛବି କିମିତି ବିକାହୁଏ, ଉଣା ଅଧିକେ ଜାଣିସାରିଲିଣି । ଛବିଟିଏ ଗଲେ ପାଠୀ ସାର୍‌ଙ୍କ କଥା ମନେପଡ଼େ - 'ବିୟଣ୍ଡ ଦ ସୋରସ୍' ।

Digitized by srujanika@gmail.com

**ନରସିଂହ ନନ୍ଦ**

## ଶତଚିତ୍ରର ପ୍ରଦର୍ଶନୀ

ଡକ୍ଟର ଦିନନାଥ ପାଠୀ ଆଜି ଓଡ଼ିଶାର ଏକ ଅନ୍ତର୍ଜାତୀୟ ଖ୍ୟାତିସଂପନ୍ନ ଚିତ୍ରଶିଳ୍ପୀ । ମୁଁ ଯେଉଁ ଦିନର ସ୍ମୃତିଚାରଣ କରିବାକୁ ଯାଉଛି, ସେତେବେଳକୁ ପ୍ରଚଣ୍ଡ ପ୍ରତିଭାଧର ଡକ୍ଟର ପାଠୀଙ୍କ ପ୍ରତିଭାର କଳିକା ମାତ୍ର ନବଉନ୍ମେଷ ଅବସ୍ଥାରେ ଥିଲା ।

୧୯୬୫ ମସିହାରେ ରାଜଧାନୀର ଏକମାତ୍ର ପ୍ରତିଷ୍ଠିତ ସାହିତ୍ୟ ଅନୁଷ୍ଠାନ ଗୋଦାବରୀଶ ସାହିତ୍ୟ ସଂସଦରେ ଏଇ ଲେଖକ ସଂପାଦକ ଥିବାବେଳେ ସାହିତ୍ୟ ସଂସଦ ଆନୁକୂଲ୍ୟରେ ଭୁବନେଶ୍ୱର କଳାମଣ୍ଡପ (ବର୍ତ୍ତମାନର ସାହିତ୍ୟ ଏକାଡ଼େମୀ ସନ୍ନିକଟ ଭଞ୍ଜକଳା ମଣ୍ଡପ)ରେ ଡକ୍ଟର ପାଠୀଙ୍କର ଏକଶତ ଚିତ୍ରକଳାର ଏକ ମନୋଜ୍ଞ ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା ଏବଂ ସେତେବେଳେ ରାଜଧାନୀ ଭୁବନେଶ୍ୱରରେ ଏହା ଏକ ଅନନ୍ୟ ପ୍ରଦର୍ଶନୀ ଥିଲା ତଥା ଡକ୍ଟର ପାଠୀଙ୍କ ଚିତ୍ରଶିଳ୍ପୀ ଜୀବନର ଏହା ଏକ ସ୍ମରଣୀୟ ଘଟଣା ଥିଲା, ଯାହାକି ସେ ତାଙ୍କର କେତେକ ଲେଖାରେ ସ୍ୱୀକାର କରିଛନ୍ତି ।

ସେତେବେଳେ ପ୍ରଜାତନ୍ତ୍ର ପ୍ରଚାର ସମିତିର ବିଷୁବ ମିଳନ ଥିଲା ଓଡ଼ିଆ ସାହିତ୍ୟିକମାନଙ୍କର ଏକ ଆକର୍ଷଣୀୟ ମିଳନ ମଞ୍ଚ । ସ୍ୱର୍ଗତ ଡକ୍ଟର ହରେକୃଷ୍ଣ ମହତାବଙ୍କ ସାହିତ୍ୟ ପ୍ରୀତିର ନିଦର୍ଶନ ସ୍ୱରୂପ 'ଝଙ୍କାର' ମାସିକ ପତ୍ରିକା ପ୍ରକାଶନ, ବିଷୁବ ସଂକ୍ରାନ୍ତି ଅବସରରେ ବିଷୁବ ମିଳନ ସାହିତ୍ୟ ସମାରୋହ ଥିଲା ସେତେବେଳର ଉଲ୍ଲେଖନୀୟ ସାରସ୍ୱତ ଅନୁଷ୍ଠାନ । ଏହି ବିଷୁବ ମିଳନ ଅବସରରେ ସ୍ୱର୍ଗତ ଚିତ୍ରଶିଳ୍ପୀ ଉଦୟ ନାରାୟଣ ଜେନା କଟକରେ ପରିଚାଳନା କରୁଥିବା ତାଙ୍କର ସନ୍‌ଡ଼େ ଆର୍ଟ୍‌ସ୍କୁଲ୍‌ର ଛୋଟ ଛୋଟ ପିଲାଙ୍କୁ ନେଇ ସେମାନଙ୍କର ଏକ ଚିତ୍ର ପ୍ରଦର୍ଶନୀ କରୁଥିଲେ । 'ଝଙ୍କାର'ର ପ୍ରଚ୍ଛଦ ବା ଅଙ୍ଗସଜ୍ଜା ନିମନ୍ତେ ଅନ୍ୟମାନଙ୍କ ସହିତ  ଚିତ୍ରଶିଳ୍ପୀଙ୍କୁ ବେଳେ ବେଳେ ପୁରସ୍କାର ପ୍ରଦାନ କରାଯାଉଥିଲେ ହେଁ, ସେତେବେଳେ ସାହିତ୍ୟିକ ଓ ଚିତ୍ରଶିଳ୍ପୀମାନଙ୍କ ଅନ୍ତରଙ୍ଗ ସଂପର୍କ ଏତେଟା ନିବିଡ଼ ନଥିଲା ।

'ପ୍ରଜାତନ୍ତ୍ର' ବିଷୁବମିଳନରେ କେବଳ ନିର୍ଦ୍ଦିଷ୍ଟ କେତେକ ପ୍ରତିଷ୍ଠିତ ବ୍ୟକ୍ତି ଓ ସାହିତ୍ୟିକମାନେ ସେମାନଙ୍କ ଆସ୍ଥାନ ଦୃଢ଼ କରିଥିବାରୁ ତରୁଣତର ସାରସ୍ୱତ ସାଧକମାନଙ୍କ ମନରେ ଏକ ପ୍ରତିକ୍ରିୟା ସୃଷ୍ଟି ହେଲା ଏବଂ ପରିଣାମରେ ୧୯୬୪ ମସିହା ଡିସେମ୍ବର ୩୦ ଓ ୩୧ ତାରିଖରେ ଓଡ଼ିଆ ଯୁବଲେଖକ ସମ୍ମେଳନର ଏକ ଐତିହାସିକ ଅଧିବେଶନ ଓଡ଼ିଶାର ତରୁଣତର ସାହିତ୍ୟିକ, ଚିତ୍ରଶିଳ୍ପୀ, ନୃତ୍ୟ, ନାଟ୍ୟ ଓ ସଙ୍ଗୀତ କଳାକାରଙ୍କୁ ନେଇ ପୁରୀ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଅନୁଷ୍ଠିତ ହେଲା । ପରମ୍ପରା କ୍ରମେ ଚଳିଆସୁଥିବା ସାମନ୍ତବାଦୀ ଚିନ୍ତାକୁ ପରିହାର କରି ଏହି ସମ୍ମେଳନରେ ଯୁବ ସାହିତ୍ୟିକ ଓ ଶିଳ୍ପୀମାନେ ପରସ୍ପରର ଅନ୍ତରଙ୍ଗ ହେଲେ । ଅବଶ୍ୟ ଏହି ମଞ୍ଚରେ ଗୋପୀନାଥ ମହାନ୍ତି, ଅନନ୍ତ ପଟ୍ଟନାୟକ ପ୍ରମୁଖ ବର୍ଷୀୟାନ ସାହିତ୍ୟିକମାନଙ୍କ ଉପସ୍ଥିତି ଓ ପ୍ରେରଣା ତରୁଣମାନଙ୍କୁ ଉତ୍ସାହିତ କରିଥିଲା ।

ଏହାପରେ ଓଡ଼ିଆ ଯୁବ ଲେଖକ ସମ୍ମେଳନ କ୍ରମେ କ୍ରମେ ସାରା ଓଡ଼ିଶାର ବିଭିନ୍ନ ସହରରେ ସାହିତ୍ୟ ଅଧିବେଶନ, କବିତା ପାଠୋତ୍ସବ, ଚିତ୍ରକଳା ପ୍ରଦର୍ଶନୀ, ପୁସ୍ତକ ପ୍ରଦର୍ଶନୀ ଆଦି ମାଧ୍ୟମରେ ଚହଳ ସୃଷ୍ଟିକରି ଏକ ସାରସ୍ୱତ ଆନ୍ଦୋଳନ ସୃଷ୍ଟିକଲା । ୧୯୬୫ ମସିହା । ଭୁବନେଶ୍ୱରରେ ସେତେବେଳେ ତରୁଣ ଚିତ୍ରଶିଳ୍ପୀ କେତେକ ଥାଆନ୍ତି । ଖଲ୍ଲିକୋଟ କଳା ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କ ମଧ୍ୟରେ ଶ୍ରୀ ଦିନନାଥ ପାଠୀ ସେମାନଙ୍କ ଭିତରୁ ଅନ୍ୟତମ ଚିତ୍ରଶିଳ୍ପୀ ଥିଲେ ଓ

Digitized by srujanika@gmail.com

ସଚିବାଳୟରେ ଆସି ସରକାରୀ ଚାକିରିରେ ନୂଆ ନୂଆ ଯୋଗ ଦେଇଥାନ୍ତି । ମୁଁ ଏମ୍.ଏଲ୍.ଏ କଲୋନୀ ନିକଟରେ ଯେଉଁ ସରକାରୀ କ୍ୱାର୍ଟରରେ ରହୁଥିଲି ଚିତ୍ରଶିଳ୍ପୀ ଶ୍ରୀ କୃଷ୍ଣଚନ୍ଦ୍ର ଆଚାରୀ ମୋ କ୍ୱାଟର ପାଖରେ ଏମ୍.ଏଲ୍.ଏ କ୍ୱାଟରରେ ଥାଇ ଛବି, ପୋଷ୍ଟର୍ ଏବଂ ଗଣତନ୍ତ୍ର ଦିବସ ଓ ସାଧୀନତା ଦିବସ ଉପଲକ୍ଷେ ପ୍ରଜ୍ଞାପନ ମେଢ଼ର କିଛି କିଛି କାମ କରୁଥାଆନ୍ତି । ସେ ଅବସରରେ ତାଙ୍କ ଘରେ **ଶ୍ରୀଯୁକ୍ତ** ପାଠୀଙ୍କ ସହ ମୋର ପ୍ରଥମ ସାକ୍ଷାତରୁ ହିଁ ମୁଁ ତାଙ୍କ 'ଭାଇନା' ହୋଇ ଯାଇଥିଲି । ବନ୍ଧୁତା କ୍ରମେ ବଢ଼ିଲା । ପାଠୀ ବାବୁ ମୋ ନିମନ୍ତ୍ରଣ କ୍ରମେ ଗୋଦବରୀଶ ସାହିତ୍ୟ ସଂସଦକୁ ଆସି କବିତା ପଢ଼ିଲେ। ଏହା ଏଠି ଉଦ୍ଧାର କରୁଛି ।

ବୟସର ଅପରାହ୍ନେ
କାୟାସବୁ ଲମ୍ବା ହୁଏ
ଝୁଲିପଡ଼େ ନିରାଶା ଦର୍ଜାରେ ।
ମୋ ଭଙ୍ଗାକୁଡ଼ିଆର ସାମନା
ତାଳଗଛ ଖଡ଼ ଖଡ଼ କରେ
ପୁଳାଏ ଉଦାସି ହାଓ୍ୱାରେ ।

ମୁଁ ଗଣିବସେ ଅସଂଖ୍ୟ ମାଇଲ୍ ଖୁଣ୍ଟ
ଯାହା ସବୁ ପାରିହେଲି ଏ ଯାବତ୍
ଠିକ୍ ମନେ ପଡ଼େନା ତୁମେ ଥିଲ
ଅବା ନା, ଆମ ଗାଁ ପୋଖରୀ ତୁଠରେ ।

ବଞ୍ଚିବାର ଅଭିନୟ ସାରି ପୁଣି ବଞ୍ଚେ
ମୋ ମୃତ୍ୟୁପାଇଁ ଏ ଅପରାହ୍ନେ
ମୁଁ ନିଜେ ଠିଆ ହେବି ମୋ ନିଜ
ପିଠିଟାକୁ ତୁମକୁ ଦେଖେଇ ।

ତମେ ସବୁ ଖୋଜିନିଅ ମୋ ପକେଟରୁ
ମୁଁ କି କରିଚି ଚୋରୀ, ମୋ ପିଠିରୁ
ଲେଖିନିଅ ଦସ୍ତଖତ ସବୁ, ମୋର
ତମର ଆଉ ପୂର୍ବପୁରୁଷଙ୍କର ।

ଅପରାହ୍ନ ଭଲ ଲାଗେ
ରାତିବି ଲାଗିବ ଭଲ ସଂଧ୍ୟାଠାରୁ
ତମ ଗାଲ ନାଲି ହୋଇ ଉଠେ
ଏ ଡୁବନ୍ତ ସୂର୍ଯ୍ୟର ଚୁମାରେ ।

କ୍ରମେ ଅସୀମ ବସୁ, ଉଦୟ ଜେନା, ଚନ୍ଦ୍ରଶେଖର ରାଓ ପ୍ରମୁଖ ଚିତ୍ରଶିଳ୍ପୀମାନଙ୍କ ସହ ସଂପର୍କ ହେଲା ଓ ସେମାନେ ମଧ ମୋ ନିମନ୍ତ୍ରଣ କ୍ରମେ ସାରସତ ସଂପର୍କରେ ସାହିତ୍ୟ ସଂସଦ ସହ ସଂପୃକ୍ତ ହେଲେ ଏବଂ ସାହିତ୍ୟ ସଂସଦର ବାର୍ଷିକ ଅଧିବେଶନରେ ସେମାନଙ୍କ କୃତ ଚିତ୍ରକଳା ସଂଭାରରେ ସୁସଜ୍ଜିତ କଳା ପ୍ରଦର୍ଶନୀର ଆୟୋଜନ କଲେ ।

କ୍ରମେ ଭୁବନେଶ୍ୱରରେ ଥିବା ଏବର ବହୁ ପ୍ରତିଷ୍ଠିତ ଚିତ୍ରଶିଳ୍ପୀଙ୍କୁ ନେଇ **ଶିଳ୍ପୀ ସଂସଦ** ଗଠିତ ହେଲା ଏବଂ ସେଇ ଅନୁଷ୍ଠାନ ମାଧମରେ ଏକ ଚିତ୍ରକଳା ବିଦ୍ୟାଳୟ ଖୋଲାଯାଇ **ଶିକ୍ଷାଦାନ**

Digitized by srujanika@gmail.com

ବ୍ୟବସ୍ଥା ହେଲା । ଏହି ବିଦ୍ୟାଳୟର ପ୍ରାରମ୍ଭିକ ପ୍ରସ୍ତୁତି ମାର୍କେଟ ବିଲ୍‌ଡ଼ିଙ୍ଗ ପଛ ଗୋଦାବରୀଶ ସାହିତ୍ୟ ସଂସଦ ଘରେ ସଂଗଠିତ ହୋଇଥିଲା । ଅସିତ ମୁଖାର୍ଜୀ ଏହି କଳା ଅନୁଷ୍ଠାନର ସଭାପତି, ଉଦୟ ନାରାୟଣ ଜେନା ଏହାର ଉପସଭାପତି, ଅସୀମ ବସୁ ଓ ଦିନନାଥ ପାଠୀ ଯୁଗ୍ମ ସମ୍ପାଦକ ଥିଲେ । ଏକମାତ୍ର ଏଇ ଲେଖକ ଥିଲା 'ଶିଳ୍ପୀ ସଂସଦ'ର ସଂଯୋଜକ ତଥା ଅଣଚିତ୍ରଶିଳ୍ପୀ ।

ଏବେ ଚିତ୍ରଶିଳ୍ପୀ ଏବଂ ସାହିତ୍ୟିକ ତଥା ନାଟ୍ୟଶିଳ୍ପୀ ଓ ସଂଗୀତଜ୍ଞମାନଙ୍କ ଭିତରେ ପରସ୍ପରର ଯେଉଁ ଆନ୍ତରିକତାର ସଂପର୍କ ଅପେକ୍ଷାକୃତ ଦୃଢ଼ତର ହୋଇଛି ବୋଲି ଭୁବନେଶ୍ୱରରେ ଆୟୋଜିତ ସାଂସ୍କୃତିକ ସଭା ସମିତିରୁ ଉପଲବ୍ଧି କରାଯାଉଛି ତା' ୪୦/୪୫ ବର୍ଷ ତଳେ ନଥିଲା ।

୧୯୬୫ରେ ଶ୍ରୀ ଦିନନାଥ ପାଠୀଙ୍କର ସେଇ ସ୍ମରଣୀୟ ଶତଚିତ୍ରର ପ୍ରଦର୍ଶନୀ ହିଁ ଥିଲା ଏହାର ସେତୁ ସଦୃଶ । ହୁଏତ ଗୋଦାବରୀଶ ସାହିତ୍ୟ ସଂସଦରେ ଉପସ୍ଥାପନ କରାଯାଇଥିବା ତାଙ୍କ କବିତା ପରବର୍ତ୍ତୀ ଜୀବନରେ ତାଙ୍କୁ ଜଣେ ବଳିଷ୍ଠ ସାହିତ୍ୟିକ ଭାବେ ପ୍ରତିଷ୍ଠିତ କରାଇବାରେ ଯଥେଷ୍ଟ ପ୍ରେରଣା ଯୋଗାଇ ଅଛି ।

ଶ୍ରୀ ପାଠୀ ଦୁଇପତ୍ରର ତୁଳସୀରୁ ହିଁ ବାସୁଥିଲେ । ଛାତ୍ରଜୀବନରେ ଆଙ୍କିଥିବା ସେଇ ଶତଚିତ୍ର ପ୍ରଦର୍ଶନୀର ଅଧିକାଂଶ ଛବିରୁ ହିଁ ତାଙ୍କ ନିଛକ ମୌଳିକତା ବାରି ହୋଇଯାଇଥିଲା । ଆଜି ସେ ଓଡ଼ିଶା, ଦିଲ୍ଲୀ, ଭାରତବର୍ଷର ବହୁ ଜନପଦ ତଥା ସୁଇଜରଲ୍ୟାଣ୍ଡ, ଚୀନ, ଜାପାନ, ସୁଇଡ଼େନ୍ ଓ ବିଦେଶର ବହୁରାଜ୍ୟ ପ୍ରଭୃତିରେ ନିଜ ପ୍ରତିଭାର ସୁସ୍ପଷ୍ଟ ସାକ୍ଷରରେ ଜଣେ ପ୍ରଚଣ୍ଡ ପ୍ରତିଭାବାନ୍ ଶିଳ୍ପୀ ଭାବେ ସନାମଧନ୍ୟ ହୋଇପାରିଛନ୍ତି । ସେତୁବନ୍ଧରେ ଗୁଣ୍ଡୁଚିର ଭୂମିକା ନେଇ ତାଙ୍କ ବଡ଼ଭାଇନା ତାଙ୍କ ଷଷ୍ଟିପୂର୍ତ୍ତି ଶୁଭ ଅବସରରେ ଇଷ୍ଟ ଦେବତାଙ୍କ ନିକଟରେ ପ୍ରାର୍ଥନାପୂର୍ବକ ତାଙ୍କ ନିରାମୟ ଦୀର୍ଘ ଜୀବନ ଓ ଉଜ୍ଜ୍ୱଳତର ଭବିଷ୍ୟତର ଶୁଭକାମନା କରୁଛି ।



Digitized by srujanika@gmail.com



ନିଜ ଚିତ୍ର ପ୍ରଦର୍ଶନୀରେ ବାଲିର ରାଜ୍ୟପାଳ ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଗହଣରେ, ୧୯୯୨

Digitized by srujanika@gmail.com



ଜାକର୍ତ୍ତା ବିମାନ ବନ୍ଦରରେ ବାଳକୃଷ୍ଣ ଓ ସୌଭାଗ୍ୟ ସହ, ୧୯୯୨

Digitized by srujanika@gmail.com

## ଚିତ୍ରବୀଥି : ଦ୍ୱିତୀୟ କୋଠରୀ



ସୁଖୀ ପରିବାର (Happy Family) ସିଲ୍କ କନା ଉପରେ ଇଙ୍କ ୧୪୦ x ୯୦ ସେମି ୧୯୮୭
(ନୂଆଦିଲ୍ଲୀ ଜାତୀୟ ଆଧୁନିକ ସଂଗ୍ରହାଳୟରେ ଅଛି)

Digitized by srujanika@gmail.com



ମଙ୍ଗଳା, ଟସର କନା ଉପରେ ଇଙ୍କ ୯୦ x ୫୦ ସେ.ମି., ୧୯୮୩
(ନୂଆଦିଲ୍ଲୀସ୍ଥିତ ଜାତୀୟ ଆଧୁନିକ କଳା ସଂଗ୍ରହାଳୟ ଦ୍ୱାରା ସଂଗୃହୀତ)

Digitized by srujanika@gmail.com



ଯୁଗଳ (Couple) ସିଲ୍କ କନା ଉପରେ ଇଙ୍କ୍ ୯୦ x ୬୦ ସେମି ୧୯୮୦
(କେନ୍ଦ୍ର ଲଳିତକଳା ଏକାଡେମୀ ସଂଗ୍ରହରେ ଅଛି )

Digitized by srujanika@gmail.com



ଦେବୀ (Deity) କାଗଜ ଉପରେ ଇଙ୍କ ୭୦ x ୫୫ ସେମି. ୧୯୯୨
(କେନ୍‌ପାସର୍ କାଲି ଠାରେ ମାଡ୍ଭେ ବନ୍ଦମ୍‌ଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ଦେବତା (Deity) କାଗଜ ଉପରେ ଇଙ୍କ ୭୦ x ୫୫ ସେମି ୧୯୯୧
(ଇଣ୍ଡୋନେସିଆ, ଜାକର୍ତ୍ତା ଠାରେ ଭାରତୀୟ ଦୂତାବାସରେ ପ୍ରଦର୍ଶିତ)

Digitized by srujanika@gmail.com



ପକ୍ଷୀର ମୃତ୍ୟୁ (Dealh of a Bird) ସିଲ୍କ କନା ଉପରେ ଇଙ୍କ ୧୩୦ x ୯୦ ସେମି. ୧୯୯୦
(ଶିଳ୍ପୀଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ନୀଳ କନ୍ୟା (The Blue Woman) ସିଲ୍କ କନା ଉପରେ ଇଙ୍କ୍ ୧୨୪ x ୯୪ ସେମି ୧୯୮୮
(Second International Asian-European art Biennale ପକ୍ଷରୁ ସଂଗୃହୀତ)

Digitized by srujanika@gmail.com



ଶ୍ରୀରାଧା (Sri Radha) ସିଲ୍କ କନା ଉପରେ ଇଙ୍କ, ୧୭୦ x ୧୨୭ ସେମି୧୯୮୭
(ଭାରତର ରାଷ୍ଟ୍ରପତିଙ୍କ ରଜତ ଫଳକ ପ୍ରାପ୍ତ ଚିତ୍ର)
All India Fine Art and Crafts Society ର ହୀରକ ଜୟନ୍ତୀ ଉପଲକ୍ଷେ ପ୍ରଦର୍ଶିତ
(ଓଡ଼ିଶା ରାଜଭବନ ସଂଗ୍ରହରେ ଅଛି)

Digitized by srujanika@gmail.com

ଶିବ ପାଣିଗ୍ରାହୀ

## ବି.କେ. ଆର୍ଟ୍ କଲେଜ ଓ ଅଧ୍ୟକ୍ଷ ପାଠୀ

ଏ ସଂପର୍କରେ ଆଲୋଚନା କରିବାକୁ ଗଲେ ଅତୀତ ଏବଂ ବର୍ତ୍ତମାନର ଅନେକ କଥା ମନକୁ ଆସୁଛି । ଭବିଷ୍ୟତ କଥା କ'ଣ ଘଟିବ ଏବେ କହି ଲାଭ ନାହିଁ । ପ୍ରଥମରୁ କହିରଖେ ଏ ଲେଖାରେ ମୁଁ କୌଣସି ବ୍ୟକ୍ତିବିଶେଷଙ୍କ ବ୍ୟକ୍ତିଗତ କଥା ଲେଖୁନି । ଯାହା ଘଟିଛି, ଅଙ୍ଗେ ଲିଭାଇଛି ଓ ଯେତିକି ମନେ ପକାଇଛି ସେତିକି ଲେଖୁଛି । ଯଦି କୌଣସି କାରଣରୁ କିଛିକଥା ପାସୋରି ଯାଇ ନ ଲେଖିଛି କ୍ଷମା ମଧ୍ୟ ମାଗି ନେଉଛି । କଲେଜର ନାଁ ହେଲା ବିଭୂତି କାନୁନ୍‌ଗୋ ଘରୁ ଓ କାରୁକଳା ମହାବିଦ୍ୟାଳୟ । ବିଭୂତି ବାବୁ ଜଣେ ଅସାଧାରଣ ଖିଆଲୀ ମଣିଷ ଓ ବିଶିଷ୍ଟ ଗ୍ରାଫିକ୍ ଶିଳ୍ପୀ ଥିଲେ । କଟକର ଚାନ୍ଦିନୀଚୌକ ପାଖ ମହମ୍ମଦିଆ ବଜାରରେ ତାଙ୍କ ଆର୍ଟ୍ ଷ୍ଟୁଡ଼ିଓ ଥିଲା । କଲିକତା ଗଭର୍ଣ୍ଣମେଣ୍ଟ ଆର୍ଟ୍ କଲେଜରୁ କଳାଶିକ୍ଷା ଲାଭ କରି କଟକ ଫେରିଆସି ସରକାରୀ ଚାକିରି କରି ପୁଣି ସେଥିରୁ ଇସ୍ତଫା ଦେଇ ସାଧୀନ ଭାବେ ବ୍ଲକ୍ ତିଆରି କାରଖାନା କରି ପୁଣି ଅସଫଳ ହୋଇ ପ୍ରତିଷ୍ଠା କଲେ କଟକ ଆର୍ଟ୍ କଲେଜ । ନିଜ ହାତରୁ ସେଥିରେ ପଇସା ଖର୍ଚ୍ଚ କଲେ । ସାମୟିକ ଭାବେ ଯୋଗ ଦେଇଥିଲେ ମୂରଲୀଧର ଟାଲି, ଅସିତ ମୁଖାର୍ଜୀ, ଲକ୍ଷ୍ମୀଧର ଦାସ, ପୂର୍ଣ୍ଣଚନ୍ଦ୍ର ପ୍ରଧାନ, ମହେନ୍ଦ୍ର ମହାପାତ୍ର ଓ ଫକୀର ମଲ୍ଲିକ ତଥା ମୁଁ ନିଜେ । ଏବଂ ଆହୁରି ଅନେକ ଶିଳ୍ପୀ ସାମୟିକ ଭାବେ କଳାଶିକ୍ଷା ଦାନ ନିମନ୍ତେ ବରାବର ଆସୁଥିଲେ । ଛାତ୍ରଛାତ୍ରୀ ଅନେକ ଥିଲେ । ଅଧ୍ୟାପନା ମଝିରେ ମଝିରେ ଓଡ଼ିଶା ସରକାରଙ୍କ ବଡ଼ ବଡ଼ ତଥାକଥିତ ହାକିମ ବିଶେଷ କରି ସଂସ୍କୃତି ବିଭାଗରୁ ପରିଦର୍ଶନ ନିମନ୍ତେ ନିୟମିତ ଆସୁଥିଲେ । କଲେଜର ଆର୍ଥିକ ଦୁରବସ୍ଥା ଦେଖା ଦେବାରୁ ଏବଂ ସରକାରୀ ସାହାଯ୍ୟରୁ ବଞ୍ଚିତ ହେବାରୁ ସମସ୍ତେ ଚିନ୍ତିତ ହେବାପରେ ବିଭୂତି ବାବୁଙ୍କର ମାନସ ସନ୍ତାନ (ଏହି କଳା କଲେଜ) ବନ୍ଦ ହେବା ପୂର୍ବରୁ ସେ ଏକ ପ୍ରକାର ପାଗଳ ପରି ହୋଇ କଟକ ଡାକ୍ତରଖାନାରେ ପଡ଼ି ସର୍ଗାରୋହଣ କଲେ । ତାଙ୍କ ମର ଶରୀରକୁ ସତ୍କାର ପାଇଁ ଆମେ ଶ୍ମଶାନ ନେଲାବେଳେ ଓଡ଼ିଶାର ଶିଳ୍ପୀଙ୍କ ଦୟନୀୟ ଅବସ୍ଥା - ବିଦ୍ୟାଧର ବର୍ମା, ଶରତ ଚନ୍ଦ୍ର ଦେବ, ଗୋପାଳ କାନୁନ୍‌ଗୋଙ୍କ କଥା ମନେ ପଡ଼ିଯାଇଥିଲା ।

୧୯୮୪ ମସିହା ବେଳର କଥା । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ । ତା' ପୂର୍ବରୁ ସେ ପ୍ରଜାତନ୍ତ୍ର ପ୍ରଚାର ସମିତିରେ ସଂପାଦକ ଥିଲାବେଳେ ବିଭୂତି ବାବୁଙ୍କ ଠାରୁ ବିଷୁବ ମିଳନ ମଣ୍ଡପର ସାଜସଜ୍ଜା ନିମନ୍ତେ ବରାବର ପରାମର୍ଶ ନେଉଥିଲେ । ଆମେ କେତେକ ଶିଳ୍ପୀ ଯାଇ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରେ ଆର୍ଟ୍ କଲେଜଟି ସରକାର ଗଠନ କରନ୍ତୁ ବୋଲି ଅନୁରୋଧ କଲା ପରେ ସେ ସଙ୍ଗେ ସଙ୍ଗେ ତତ୍‌କାଳୀନ ଓଡ଼ିଶାର ସଂସ୍କୃତି ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ଯୁଗଳ କିଶୋର ପଟ୍ଟନାୟକ ଓ ସଚିବ ଶ୍ରୀଯୁକ୍ତ ଏ.ଏନ୍. ତିୱାରୀ, ଆଇ.ଏ.ଏସ୍‌ଙ୍କୁ ଡାକି ପରାମର୍ଶ କରି ତୁରନ୍ତ କାର୍ଯ୍ୟାନୁଷ୍ଠାନ କରିବାକୁ ସରକାରୀ ଆଦେଶ ଦେଇଥିଲେ । ଏଥିରେ ବିଶେଷ ସହଯୋଗ କରିଥିଲେ ଉପଶାସନ ସଚିବ ଶ୍ରୀ ସୁଧାଂଶୁ ମୋହନ ରାଉତରାୟ । ଖଲ୍ଲିକୋଟ ସରକାରୀ କଳା ମହାବିଦ୍ୟାଳୟରୁ ତତ୍‌କାଳୀନ ଅଧ୍ୟକ୍ଷ, ଅଧ୍ୟାପକ ଏବଂ ଓଡ଼ିଶାର କିଛି ବରିଷ୍ଠ ଶିଳ୍ପୀ ଏବଂ ସରକାରଙ୍କ ସଂସ୍କୃତି ବିଭାଗର କେତେ ଜଣ ହାକିମଙ୍କ ସହାୟତାରେ ଏକ କମିଟି ଗଠନ କରି ଭୁବନେଶ୍ୱରଠାରେ ସରକାର ବି.କେ. ଆର୍ଟ୍ କଲେଜ ନାମକରଣ କରି ଏହି ଅନୁଷ୍ଠାନ ନିମନ୍ତେ ଛାତ୍ରଛାତ୍ରୀମାନଙ୍କ ଇଣ୍ଟରଭିଉ ପାଇଁ ବିଜ୍ଞାପନ ପ୍ରକାଶ କଲାପରେ ପ୍ରଥମେ ଓଡ଼ିଶା ରାଜ୍ୟ ସଂସ୍କୃତି ବିଭାଗର ମ୍ୟୁଜିୟମ୍ ପରିସରରେ ୧୭ ଜାନୁୟାରୀ ୧୯୮୪ରେ ପ୍ରଥମ ନାଁ ଲେଖା ପାଇଁ ଇଣ୍ଟରଭିଉ କରାଯାଇଥିଲା । ୨୫ ଜାନୁୟାରୀ ୧୯୮୪ ରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଏହାକୁ ଉଦ୍‌ଘାଟନ କରି ଶୁଭାରମ୍ଭ କରିଥିଲେ । ଏହି ଉତ୍ସବରେ ସଂସ୍କୃତି ବିଭାଗର ମନ୍ତ୍ରୀ ଶ୍ରୀଯୁକ୍ତ ଯୁଗଳ କିଶୋର ପଟ୍ଟନାୟକଙ୍କ ସଭାପତିତ୍ୱରେ ଓଡ଼ିଶାର ବହୁ ପ୍ରତିଷ୍ଠିତ ଜନସାଧାରଣ,

Digitized by srujanika@gmail.com

କଳାପ୍ରେମୀ ଓ କଳାକାର ଯୋଗ ଦେଇ ପ୍ରଥମ ଥର ରାଜଧାନୀରେ ଏହା ପ୍ରତିଷ୍ଠା କରାଯାଇଥିବା ହେତୁ ଏହାକୁ ସାଗତ କରିଥିଲେ । ଏଥିରେ ସର୍ଗତ ସୁଧାଂଶୁ ମୋହନ ରାଉତରାୟଙ୍କ ଭୂମିକା ଭୁଲିହେବନି ।[୧]

ଏହାପରେ ଆରମ୍ଭ ହେଲା ଏହି ଆର୍ଟ୍ କଲେଜର ପ୍ରଥମ ଅଧକ୍ଷ କିଏ ହେବେ ନେଇ ବିଚାର ବିମର୍ଶ । ଅନେକ ଗୁଞ୍ଜରଣ ସୃଷ୍ଟି ହୋଇ ହଇ ଚଇ ହେଲା - ତେବେ ସେମାନଙ୍କ ଭିତରୁ ସରକାରୀ ସ୍ତରରେ ସମସ୍ତଙ୍କ କାଗଜପତ୍ର, ଅଭିଜ୍ଞତା, କଳାନିପୁଣତା, ଶିକ୍ଷାଗତ ଯୋଗ୍ୟତା, କାର୍ଯ୍ୟ କରାଇପାରିବାର ଦକ୍ଷତା ଓ ଚାକିରି ଭିତ୍ତିକ ବରିଷ୍ଠତାକୁ ବିଚାର କରାଯାଇ ଶେଷରେ ଡକ୍ଟର ଦିନନାଥ ପାଠୀଙ୍କୁ ସରକାର ଅଧକ୍ଷ ପଦରେ ନିଯୁକ୍ତି ଦେଲେ । ସେ ସେସମୟରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର କଳାବିଭାଗର କ୍ୟୁରେଟର୍ ପଦବୀରୁ ଡେପୁଟେସନ୍‌ରେ ଯାଇ ପର୍ଯ୍ୟଟନ ନିଗମରେ ବିଜ୍ଞାପନ ଓ ପ୍ରଚାର ବିଭାଗର ଡ଼ିଭିଜନାଲ୍ ମେନେଜର ଥିଲେ । ତଥାକଥିତ ଅନେକ ଶିଳ୍ପୀ ଯେଉଁମାନେ ସାଧୀନତା ପରେ ଖଲ୍ଲିକୋଟ କଳା ମହାବିଦ୍ୟାଳୟ ପ୍ରତିଷ୍ଠା ପୂର୍ବରୁ ଓଡ଼ିଶା ବାହାରୁ, ଶାନ୍ତିନିକେତନ, କଲିକତା, ଲକ୍ଷ୍ନୌ, ଜେ.ଜେ କଲେଜରୁ କଳାଶିକ୍ଷା କରି ଫେରିଥିଲେ ସେମାନେ ରଣହୁଙ୍କାର ଦେଲେ ଯେ ଖଲ୍ଲିକୋଟିଆ ଆର୍ଟିଷ୍ଟମାନେ ପୁଣି ରାଜଧାନୀ ଆର୍ଟ୍ କଲେଜର ଅଧକ୍ଷ, ଅଧାପକ ହେବେ ଆମେ ଥାଉଁ ଥାଉଁ, ସେମାନେ ଏମିତି କି ଛବି ଆଙ୍କୁଛନ୍ତି କି ? ଅଧକ୍ଷ ପାଠୀଙ୍କ ପରାମର୍ଶ କ୍ରମେ ଦ୍ୱିତୀୟ ପର୍ବରେ ସରକାର ବିଚାର କରି କଲେଜରେ କଳାଶିକ୍ଷା ନିମନ୍ତେ ସେ ସମୟରେ ଓଡ଼ିଶାର କଳାଜଗତରେ ନାଁ କରିଥିବା ଶିଳ୍ପୀମାନଙ୍କ ଭିତରୁ ପରିବାର କଲ୍ୟାଣ ଓ ସାସ୍ଥ୍ୟ ବିଭାଗରୁ ଶିବ ପାଣିଗ୍ରାହୀଙ୍କୁ ପେଣ୍ଟିଂ ବିଭାଗରେ, ଶିକ୍ଷା ବିଭାଗରୁ ଡି.ଏନ୍. ରାଓଙ୍କୁ ଗ୍ରାଫିକ୍ ବିଭାଗରେ, ସୂଚନା ଓ ଲୋକ ସଂପର୍କ ବିଭାଗରୁ ବଳଦେବ ମହାରଥୀଙ୍କୁ କମର୍‌ସିଆଲ ଆର୍ଟ୍ ବିଭାଗରେ, କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରୁ ଚନ୍ଦ୍ରକୁମାର ସାମନ୍ତରାୟଙ୍କୁ ସ୍କଲ୍‌ପଚର ଓ ମଡ଼େଲିଂ ବିଭାଗରେ ଅଧାପକ ରୂପେ ଡେପୁଟେସନ୍‌ରେ ଆଣି ନିଯୁକ୍ତି ଦେଲେ । କିଛିଦିନ ପରେ ପୁଣି ଚନ୍ଦ୍ର କୁମାର ସାମନ୍ତରାୟ ଫେରିଯିବା ପରେ ଏହି ବିଭାଗର ଦାୟିତ୍ୱ ନେଇଥିଲେ ହେଣ୍ଡିକ୍ରାଫ୍‌ଟସ୍ ବିଭାଗର ଶ୍ରୀ ଦେବରାଜ ସାହୁ ଓ ପରେ ଦାମୋଦର ବେହେରା । କଲେଜ ଅଫିସ୍ ପରିଚାଳନା ନିମନ୍ତେ ମ୍ୟୁଜିୟମ୍‌ରୁ ଶ୍ରୀ ଗଗନ ବିହାରୀ ମହାନ୍ତି ଓ ରାଜକୁମାର ସୁବୁଦ୍ଧି, ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ଭିତରେ ଅଶୋକ, ମଙ୍ଗରାଜ, ଭୁବନ, ରେଣୁ, ଫକୀର ଇତ୍ୟାଦି ଆସି ଯୋଗ ଦେଇଥିଲେ ।

ଭୁବନେଶ୍ୱର ଟଙ୍କପାଣି ରୋଡ଼ରେ ଥିବା ପୂର୍ବତନ ମ୍ୟୁଜିୟମ୍ ସୁପରିଟେନ୍‌ଡେଣ୍ଟ୍ ଡକ୍ଟର ହରିଶ ଚନ୍ଦ୍ର ଦାସଙ୍କ ଘରକୁ ସରକାର ଭଡ଼ାରେ ନେଇ ପ୍ରଥମେ ସେଠାରେ ବି.କେ. ଆର୍ଟ୍ କଲେଜ ଆରମ୍ଭ କଲେ । ସେତେବେଳେ ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଥିଲେ ଶ୍ରୀଯୁକ୍ତ ସୁବାସ ପାଣି, ଆଇ.ଏ.ସ୍. ଓ ସେକ୍ରେଟାରୀ ଶ୍ରୀଯୁକ୍ତ ଏ.ଏନ୍. ତିୱାରୀ, ଆଇ.ଏ.ଏସ୍ । ନୂଆ କଲେଜ୍‌ରେ ବସିବା ପାଇଁ ଟେବୁଲ୍ ଚେୟାର୍ ନାହିଁ । ଆର୍ଥିକ ଅନୁଦାନ ବିଶେଷ ନଥିଲା । ମାତ୍ର ଦିନେ ଡକ୍ଟର ପାଠୀଙ୍କ ଉଦ୍ୟମରେ ନିର୍ଦ୍ଦେଶକ ସୁବାସ ପାଣିଙ୍କର ଏକ ଚିଠିନେଇ ମୁଁ କଟକ ଖପୁରିଆ ଓଡ଼ିଶା ଇନଷ୍ଟ୍ରୁମେଣ୍ଟ୍ ଏଣ୍ଡ୍ ସପ୍ଲାଇରୁ ପାଞ୍ଚଟି ସନ୍‌ମାଇକା ଟେବୁଲ୍, ଦଶଟି ନାଇଲନ୍ ଗାଟିଙ୍ଗ୍ ଚେୟାର୍ ଗୋଟିଏ ଖୋଲା ଟ୍ରକ୍ ଉପରେ ଲଦି ନିଜେ ଟ୍ରକ ଡାଲାରେ ବସି ଟଙ୍କପାଣି କଲେଜ ଘରେ ସନ୍ଧ୍ୟାସୁଦ୍ଧା ପହଞ୍ଚାଇ ଦେଇଥିଲି । ସମସ୍ତେ ଯେ ସେଦିନ କି ଖୁସି ସେ କଥା ଆଜି ମୋ ଆଖି ଆଗରେ ନାଚି ଯାଉଛି । ସଂସ୍କୃତି ବିଭାଗରେ ଚାକିରି କରିବା ସମୟରେ ସୁବାସ ପାଣି ଓ ତିୱାରୀ ସାହେବଙ୍କ ସହିତ ଡକ୍ଟର ପାଠୀଙ୍କ ଘନିଷ୍ଠ ସମ୍ପର୍କ ଥିଲା । ସଂସ୍କୃତି ବିଭାଗରେ ତାଙ୍କର ଯଥେଷ୍ଟ ପ୍ରଭାବ ବି ଥିଲା । ଏସବୁ ସମ୍ପର୍କ କଲେଜ ଗଢ଼ିବାରେ ବିଶେଷ ସହାୟକ ହେଲା ।

ପାଠୀ ବାବୁଙ୍କ ସହିତ ମୋର ବି.କେ. ଆର୍ଟ୍ କଲେଜର ପୁରୁଣା ସ୍ମୃତିକୁ ମନେ ପକାଇଲେ ଅନେକ ପୂର୍ବାପର ସମ୍ବନ୍ଧ ଆପେ ଆପେ ଯୋଡ଼ି ହୋଇଯିବା ସାଭାବିକ । ଆମେ କିପରି ସବୁ ମିଳିମିଶି ଏହି ଆର୍ଟ୍ କଲେଜକୁ ନୂଆ କରି ଗଢ଼ି ତୋଳିବାର ସପ୍ନ ଦେଖିଥିଲୁ ସେସବୁ ମୁହୂର୍ତ୍ତ ଏବେ ବି ମୋର ମାନସ ପଟରେ ବସାବାନ୍ଧି ରହିଛନ୍ତି ।

Digitized by srujanika@gmail.com

୧୯୬୨ ମସିହାର କଥା । ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ ମୁଁ ଚତୁର୍ଥ ବର୍ଷର ଛାତ୍ର ଥିଲାବେଳେ ଦିନନାଥ ବାବୁ ଥିଲେ ତୃତୀୟ ବର୍ଷର ଛାତ୍ର । **ଦିନନାଥ ବାବୁଙ୍କ ସ୍କେଚ୍, ତୈଳଚିତ୍ର ଓ ଜଳରଙ୍ଗର ଭୂଦୃଶ୍ୟ ଏତେ ଚମତ୍କାର ଥିଲା ଯେ ଛାତ୍ରଅବସ୍ଥାର କାର୍ଯ୍ୟ ଚୟନରେ ତାଙ୍କର ବଳିଷ୍ଠ ହାତର ପରିଚୟ ଜଣେ ଦକ୍ଷଶିଳ୍ପୀ ଭଳି ମିଳିଯାଉଥିଲା । ତେଣୁ ସେ ପ୍ରାୟ ସମସ୍ତ ଛାତ୍ର ଓ ଶିକ୍ଷକଙ୍କ ଦୃଷ୍ଟିକୁ ଆସି ଯାଉଥିଲେ ।** ଅଧକ୍ଷ ଥିଲେ ଶରତ୍ ଚନ୍ଦ୍ର ଦେବ । ସ୍ୱାମୀ ଶିବାନନ୍ଦଙ୍କ ଶିଷ୍ୟ ଭାବେ ସେ ନିଜେ ଅନୁପ୍ରାଣିତ ହୋଇ ପାଠୀ ବାବୁଙ୍କୁ ମଧ୍ୟ ଶିଷ୍ୟ ରୂପେ ଗ୍ରହଣ କରି ନେଇଥିଲେ। ସେତେବେଳେ ଓଡ଼ିଶାରେ ଆଧୁନିକ ଚିତ୍ରକଳାକୁ ନୂଆ ଦିଗ୍‌ଦର୍ଶନ ଦେଇଥିଲେ ପ୍ରଫେସର ଅଜିତ୍ କେଶରୀ ରାୟ ଓ ପ୍ରଫେସର ଅନନ୍ତ ପଣ୍ଡା । ଓଡ଼ିଶା ଲଳିତ କଳା ଏକାଡ଼େମୀ ଗଠନର ପ୍ରଥମ ଚିତ୍ରକଳା ପ୍ରଦର୍ଶନୀ ୧୯୬୨ ମସିହାରେ ଆରମ୍ଭ କରାଯାଇଥିଲା । ଏଥିରେ ପାଠୀ ବାବୁଙ୍କ ତୈଳଚିତ୍ର ମୋ ଗାଁ ଆମେଚର୍ ବିଭାଗରେ ପ୍ରଥମ ପୁରସ୍କାର ଓ ମୋର ଜଳରଙ୍ଗର ଚିତ୍ର, **ଏ ଭିଉ ଅଫ୍ ଖଲ୍ଲିକୋଟ** ଦ୍ୱିତୀୟ ପୁରସ୍କାର ପାଇଥିଲା । କିନ୍ତୁ ସେହି ବର୍ଷ ପୁଣି ମୋର ଆଧୁନିକ ଚିତ୍ର **ଥ୍ରୀ ସିଷ୍ଟରସ୍** ପ୍ରଥମ ଶ୍ରେଣୀରେ ପୁରସ୍କାର ପାଇଥିଲା କିନ୍ତୁ ପାଠୀ ବାବୁ ଆଧୁନିକ ବିଭାଗରେ କୌଣସି ପୁରସ୍କାର ପାଇ ନଥିଲେ । ତେଣୁ ମୁଁ ମନେ ମନେ ସେତେବେଳେ ଭାବିଥିଲି ବୋଧେ ତାଙ୍କଠାରୁ ବଳି ଯିବି । **କିନ୍ତୁ ତାଙ୍କର କାର୍ଯ୍ୟଦକ୍ଷତାର ଯେଉଁ ପ୍ରଚଣ୍ଡ ପ୍ରତିଭା ଥିଲା, ମୁଁ କ'ଣ ଓଡ଼ିଶା ତଥା ସେ ସମୟରେ ଖଲ୍ଲିକୋଟର କୌଣସି ଛାତ୍ର ତାଙ୍କ ସହିତ ସମକକ୍ଷ ହୋଇ ପାରିନଥିଲେ । ସେ କ୍ଲାସ୍‌ରେ ପ୍ରଥମ ହେଉଥିଲେ । ଶ୍ରେଣୀ ଗୃହରେ ଲାଇଫ୍ ଷ୍ଟଡ଼ି ଓ ଷ୍ଟିଲ୍ ଲାଇଫ୍ ସେ ଆଙ୍କୁ ଥିଲାବେଳେ ତାଙ୍କ ପ୍ରତି ଅନେକ ଛାତ୍ରଛାତ୍ରୀ ଈର୍ଷାପରାୟଣ ହୋଇଥିବା ମୁଁ ନିଜେ ଅନୁଭବ କରିଛି ।** ସମୟର ନଦୀସ୍ରୋତରେ ଚାଳିଶ ବର୍ଷ ବିତିଗଲାଣି । ସେ ଏ ଭିତରେ ତାଙ୍କର କଳାର ଯାଦୁକରୀ ବିଦ୍ୟା ପ୍ରଭାବରେ ଆନ୍ତର୍ଜାତୀୟ, ଜାତୀୟ ତଥା ଓଡ଼ିଶାରେ ଚିତ୍ରକଳା, କଳା ଇତିହାସ ସହ ସୃଜନଶୀଳ ସାହିତ୍ୟ ସୃଷ୍ଟିକରି ନିଜକୁ ଜଣେ ପ୍ରଭାବଶାଳୀ ବ୍ୟକ୍ତି ଭାବେ ପ୍ରତିଷ୍ଠିତ କରାଇ ପାରିଛନ୍ତି । ଏହା ଯେ ଏକ ବିସ୍ମୟ ଏକଥା ସମସ୍ତେ ସ୍ୱୀକାର କରିଛନ୍ତି ଓ କରିବାକୁ ବାଧ୍ୟ । ଓଡ଼ିଶାର ଚିତ୍ରକଳା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ସେ ଯେ ଏକ ଅଗ୍ରଣୀ ବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ। ଏଥିପାଇଁ ତାଙ୍କୁ ବିଭିନ୍ନ ସମୟରେ ବହୁତ ପ୍ରଶଂସା ସହ ସମାଲୋଚନା ମଧ୍ୟ ଶୁଣିବାକୁ ମିଳିଛି ।

ଏବେ ପୁଣି ଫେରିବା ସେଇ ୧୯୮୪ର ଟଙ୍କପାଣି ରୋଡ଼ରେ ଥିବା ବି.କେ.ଆର୍ଟ୍ କଲେଜକୁ । ବାର୍ଷିକ ଚିତ୍ରକଳା ପ୍ରଦର୍ଶନୀ ହେବ ଓ କାଟ୍‌ଲଗ୍ ହେବ । ପ୍ରଦର୍ଶନୀ କମିଟିରେ ମୋତେ ରଖାଗଲା ଚେୟାରମାନ୍, ମାଉଣ୍ଟିଙ୍ଗ୍, ଫ୍ରେମିଙ୍ଗ୍, ଡିସ୍‌ପ୍ଲେରେ ଡି.ଏନ୍.ରାଓ, ଡିଜାଇନିଂ, ପ୍ରିଣ୍ଟିଙ୍ଗ୍ ତଥା ଡେକୋରେସନ୍ ପାଇଁ ବଳଦେବ ମହାରଥା, ଗଗନବାବୁ ଓ ସୁବୁଦ୍ଧି ବାବୁ ରହିଲେ । ଅଫିସ୍‌ରେ ଜିନିଷପତ୍ର ସଜାଡ଼ି ସଫା ସୁତୁରା ପରେ ଘରୁ ଫୁଲଦାନୀ ଆଣିଥିବା କଥା ମଧ୍ୟ ମୋର ମନେ ଅଛି । କିନ୍ତୁ ଏସବୁର ମୂଳ ଉତ୍ସ ହେଉଛନ୍ତି ପାଠୀ ବାବୁ । ତାଙ୍କୁ ଦିନରାତି ନିଦ ନଥାଏ । କେତେ ବେଳେ କେଉଁ ଅତିଥି ଆସିବେ, କେଉଁଠି ସେ ବିଦେଶରୁ ଆଣିଥିବା (ତାଙ୍କ ବ୍ୟକ୍ତିଗତ) ଟେବୁଲ୍ କ୍ଲଥ୍ ପଡ଼ିବ, କେଉଁ କାନ୍ଥରେ ଜୁରିକ୍ ପୋଷ୍ଟର୍ ଟଙ୍ଗା ହେବ । ରଘୁ ଭାଇନା (ଗୁରୁମଣି ପଣ୍ଡିତ ରଘୁନାଥ ପାଣିଗ୍ରାହୀ) ଗୀତଗୋବିନ୍ଦର କେଉଁ ଛାନ୍ଦଟି ପ୍ରଥମେ ଗାଇବେ ଓ ସଂଜୁ ନାନୀଙ୍କ କେଉଁ ନୃତ୍ୟ ପରିବେଷଣ କରାଯିବ, ଏକଥା ନେଇ ସେ ବ୍ୟସ୍ତ ରହନ୍ତି । ମଝିରେ ମଝିରେ ସର୍ଗତ ସୁଧାଂଶୁ ମୋହନ ରାଉତ୍‌ରାୟ ଫୋନ୍ କରି କହନ୍ତି, ''ପାଠୀ ବାବୁ ମୁଖ୍ୟମନ୍ତ୍ରୀ ଆସିବେ ସବୁ ଠିକ୍ ଅଛି ତ ? ଆପଣ ଅଛନ୍ତି ବୋଲି ଆମର ଆଉ ଚିନ୍ତା ନାହିଁ ।'' ମୁଁ ବରାବର କଟକ ଯିବା ଆସିବା କରୁଥାଏ । କାମ ବଳିଗଲେ ମୁଁ ଦିନେ ଦିନେ ରାତିରେ କଲେଜର କାଠ ଟେବୁଲ୍ ଉପରେ ଶୋଇଯାଏ । ଆଉ କଟକ ଫେରେନି ।

୯ ତାରିଖ ଜୁନ୍ ୧୯୮୪ ମସିହା ରବୀନ୍ଦ୍ର ମଣ୍ଡପରେ ପ୍ରଥମ ବି.କେ. ଆର୍ଟ୍ କଲେଜ ବାର୍ଷିକ ଚିତ୍ର ପ୍ରଦର୍ଶନୀ ଉଦ୍‌ଘାଟନ କରିଥିଲେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ । ମୁଁ ପୂର୍ବରୁ ତାଙ୍କୁ ଯାଇ ଅନୁରୋଧ କରିଥିଲି ସେ କଳା ଜଗତରେ ଶ୍ରୀଯୁକ୍ତ ପଟ୍ଟନାୟକ ନୂଆ ଇତିହାସ ସୃଷ୍ଟି କରି ପ୍ରଥମଥର ପାଇଁ କାନ୍‌ଭାସ୍‌ରେ ରଙ୍ଗ ତୂଳୀରେ ଛବି ଆଙ୍କି ପ୍ରଦର୍ଶନୀ ଉଦ୍‌ଘାଟନ କରିବେ

Digitized by srujanika@gmail.com

ଏବଂ ମୁଖ୍ୟମନ୍ତ୍ରୀ ମଧ ଯଥା ସମୟରେ ଆସି ସମସ୍ତଙ୍କ ଗହଣରେ କାନ୍‌ଭାସରେ ରଙ୍ଗତୂଳୀରେ ପ୍ରଥମେ ବଡ଼ 'ଠ'ଟିଏ ଆଙ୍କି ତା ଭିତରେ ପୁଣି ଛୋଟିଆ 'ଠ'ଟିଏ କରି କଳାରଙ୍ଗ ଭରିଦେଇ ପ୍ରଭୁ ଜଗନ୍ନାଥଙ୍କ ଆଖିର ଚିତ୍ର ଅଙ୍କନ କରି ପ୍ରଦର୍ଶନୀ ଉଦ୍‌ଘାଟନ କରି ସମସ୍ତଙ୍କୁ ବିସ୍ମିତ କରିଦେଇଥିଲେ । ଠିକ୍ ସେହିପରି ଦ୍ୱିତୀୟ ବାର୍ଷିକ ଚିତ୍ରକଳା ପ୍ରଦର୍ଶନୀକୁ ମଧ ମନ୍ତ୍ରୀ ଶ୍ରୀଯୁକ୍ତ ଗଙ୍ଗାଧର ମହାପାତ୍ର ଆସି ଉଦ୍‌ଘାଟନ କରିଥିଲେ । ଏହି କଳା ପ୍ରଦର୍ଶନୀର ବିଗ୍ଭରକ ଥିଲେ ଶିଳ୍ପୀ ରମେଶ ଚନ୍ଦ୍ର ମହାନ୍ତି, ପୂର୍ଣ୍ଣଚନ୍ଦ୍ର ପ୍ରଧାନ ଓ ଚନ୍ଦ୍ରଶେଖର ରାଓ ।

କଳ୍ପନା ଛକ ଉପରେ ପୁଣି ବି.କେ. ଆର୍ଟ୍ କଲେଜ ପାଇଁ ଘରଟିଏ ଖୋଜିବା ପାଇଁ ସ୍କୁଟର୍ ପଛରେ ବସି ଦିନରାତି ପାଠୀ ବାବୁ, ମୁଁ, ରାଓ ବାବୁ ବହୁତ ବୁଲି ଶେଷରେ ଘରଟିଏ ପାଇଲୁ । ଘରଟିଏ ମିଳିଗଲା ପରେ କେଉଁ ରୁମ୍‌ରେ କି ବିଭାଗ ହେବ, ଅଧ୍ୟାପକମାନେ କେଉଁଠି ବସିବେ, ଅଫିସ୍, ପ୍ରିନସ୍‌ପାଲ୍‌ଙ୍କ ରୁମ୍ ସବୁ ଠିକ୍ ହୋଇଗଲା । କୁମ୍ଭାର ଚକ ଆସିଲେ ଅଧ୍ୟାପକ ଦେବରାଜ ସାହୁ ମାଟିକାମ କରାଇବେ, ଟେରାକୋଟା ହେବ । ବଡ଼ପଥର ଆସିଲେ ଭାସ୍କର୍ଯ୍ୟ ଖୋଦେଇ ହେବ, କେତେ କଣ ଚିନ୍ତା ହେଲା । ସତକୁ ସତ ସବୁ ଆସିଗଲା, କାମ ବି ଠିକ୍ ହେଲା । କିନ୍ତୁ ପୁଣି ଖିଆଲ୍ ପଶିଲା ଶାନ୍ତିନିକେତନ କଳାଭବନର ଅଧକ୍ଷ କାଞ୍ଚନ ଦା' (ପ୍ରଫେସର କାଞ୍ଚନ ଚକ୍ରବର୍ତ୍ତୀ) ଆସିବେ, ତେଣୁ ଅତିଥି ଗୃହଟିଏ ଦରକାର । ସମ୍ବଲପୁରୀ ବିଛଣା ଗ୍ଭଦର କିଣା ପାଇଁ କଲେଜର ଅର୍ଥ ନଥିବାରୁ ପାଠୀ ବାବୁ ବିଦେଶରୁ ଆଣିଥିବା ବିଛଣା ଗ୍ଭଦରକୁ ଅବନ୍ତୀ ଦେବୀ (ପାଠୀ ବାବୁଙ୍କ ଧର୍ମପତ୍ନୀ) ପଠାଇଥିଲେ ତାଙ୍କ ସାଇତା ବାକ୍ସ ଭିତରୁ । ରେଡ଼ିମେଡ୍ ଆମ୍ବକାଠ ଖଟ କିଣା ହେଲା ରାଜମହଲ ଛକର ଫୁଟ୍‌ପାଥ୍‌ରୁ ।

ଚମତ୍କାର ପରିବେଶରେ ସୃଷ୍ଟି ହୋଇଗଲା ଅତିଥି ଗୃହ । ପାଖ ହତାରେ ଭୁବନକୁ ଡାକି ଶାନ୍ତିନିକେତନ ଶୈଳୀରେ ଗ୍ଭଳ ଛପର ନଡ଼ାରେ ଦୋଗ୍ଭଳିଆ ଘରଟିଏ ତିଆରି ହେଲା । ଯୋଜନା ହେଲା ଏହା 'ଗ୍ଭ' କାଣ୍ଟିନ୍ ହେବ । ସିମେଣ୍ଟ ବେଞ୍ଚ ରାତା ରାତି ତିଆରି ହେଲା । ପୁଣି ବିଦେଶରୁ ଆସିଥିବା ବୁଦ୍ଧଙ୍କ ପୋଷ୍ଟର ଓ ଛାତ୍ରଛାତ୍ରୀଙ୍କ ପେଣ୍ଟିଂ କାନୁରେ ଟଙ୍ଗାହେଲା । ଏ ସବୁ ଦେଖି କାଞ୍ଚନ ଦା କହିପକାଇଲେ - 'ଦିନୁ ! ତୁମରା ସବାଏ ମିଲେ, ବି.କେ କଲେଜଟାକେ ରାତାରାତି ସର୍ଗ କୋରେ ଦିଏଛେ ।' ସମସ୍ତେ ଏକାଠି ବସି ଭୁବନର କାଣ୍ଟିନ୍‌ରେ ଗ୍ଭ ପିଇବା ବେଳେ ବିଦେଶ ଚିତ୍ରକଳାର ଚର୍ଚ୍ଚାଠୁ ଆରମ୍ଭ କରି ନାନା ପ୍ରକାର ସୁଖ-ଦୁଃଖ କଥା ଚର୍ଚ୍ଚା ହୁଏ । ପୁଣି ଆମେ ସମସ୍ତେ ସପ୍ନ ଦେଖୁ ବି.କେ ଆର୍ଟ୍ କଲେଜ୍‌ରେ କ'ଣ ଏମିତି କାର୍ଯ୍ୟ କରିବା ଯେପରି ସବୁ ଶିଳ୍ପୀମାନଙ୍କ ମନକୁ ଛୁଇଁବ, ଦେଶ ବିଦେଶରେ ନାଁ ହେବ । **ସମସ୍ତେ ଏକ ସ୍ୱରରେ କହନ୍ତି ଏ ଦାୟିତ୍ୱ ପାଠୀ ବାବୁଙ୍କର । ସେ ବିଦେଶ ଯାଉଛନ୍ତି । ତେଣୁ ତାଙ୍କ ଚିନ୍ତାଧାରା ଓ ପ୍ରେରଣାରେ ଆମେ କାମ କରିବାକୁ ପ୍ରସ୍ତୁତ ହୋଇଯାଉ । ସେ ଡ଼ଙ୍ଗାର ମଙ୍ଗୁଆଳ ହୁଅନ୍ତୁ । ସତକୁ ସତ ସେଇୟା ହିଁ ହୁଏ ।** ଅଧିକାଂଶ ଦିନ କଲେଜ ଅପରାହ୍‌ଣ ପାଞ୍ଚଟା ପରେ ବନ୍ଦ ହେଲେ ବି ସେ ରାତି ଅନିଦ୍ରା ହୋଇ କାମ କରନ୍ତି । ରାତି ୯ଟା ୧୦ଟା ପର୍ଯ୍ୟନ୍ତ ପ୍ରାୟ ଆମେ ସବୁ ବିଭିନ୍ନ ପ୍ରୋଗାମ୍ ସମ୍ପର୍କୀୟ ଆଲୋଚନା କରିଥାଉ । ମୁଁ ପ୍ରତ୍ୟେକ ଦିନ କଟକ ଫେରିଆସେ । ଦିନେ ଦିନେ ସକାଳେ ବଳଦେବ ମହାରଥୀ ଓ ରାଓବାବୁ କହନ୍ତି, 'ଗତକାଲି ରାତିରେ ଭୁବନ ଓ ଫକୀର ହାତରେ ପାଠୀ ବାବୁ ଆମକୁ ଡ଼କାଇଥିଲେ । ରାତି ଦୁଇଟା ପର୍ଯ୍ୟନ୍ତ ପ୍ରଦର୍ଶନୀ ନିମନ୍ତେ କାର୍ଯ୍ୟ କରିବାକୁ ପଡ଼ିଥିଲା ।' ଅଧ୍ୟାପକ ମାନେ କେହି କିଛି କୁହନ୍ତିନି ବା ଭାବନ୍ତିନି । **ମାତ୍ର ଥରେ ଥରେ ସେମାନଙ୍କ ଧର୍ମପତ୍ନୀମାନେ କଲେଜକୁ ବିଭିନ୍ନ ପ୍ରୋଗାମ୍‌ରେ ଆସିଥିବା ବେଳେ ରସିକତା କରି କହନ୍ତି ଆହା ! ଏ କଲେଜର ଅଧକ୍ଷ ପାଠୀ ବାବୁ କେତେ ପରିଶ୍ରମ କରିପାରୁଛନ୍ତି, ତାଙ୍କର କ'ଣ ପରିବାର ନାହାନ୍ତି ? ସିଏ କଣ ରାତିରେ ଶୁଅନ୍ତିନି କି ? ତାଙ୍କପାଇଁ ଆମେ ବି ଘରେ ହଇରାଣ ହୋଇଯାଉଛୁ'** କିନ୍ତୁ ଶୟନେ ସପନେ ସବୁବେଳେ ଆର୍ଟ୍ କଲେଜ । ଆମ ସାଇପଡ଼ିଶାରେ ବି.କେ ଆର୍ଟ୍ କଲେଜର ପ୍ରଶଂସା ଶୁଣିଲେ ଆମକୁ ଖୁସି ଲାଗେ ।'

Digitized by srujanika@gmail.com

୧୯୮୫ ଫେବୃୟାରୀ ମାସରେ ଓଡ଼ିଶା ସରକାରଙ୍କ ପକ୍ଷରୁ ବିଜ୍ଞାନ ଓ ପରିବେଶ ବିଭାଗ ପକ୍ଷରୁ ଶିଳ୍ପୀମାନଙ୍କ କର୍ମଶାଳା ଯୋଜନା କରାଯାଇଥିଲା । ପ୍ରଫେସର ରାଧାମୋହନ ଓ ଆମ ବି.କେ ଆର୍ଟ୍ କଲେଜ ସହାୟତାରେ ଟଙ୍କପାଣି ରୋଡ଼ପାଖରେ ଥିବା ପ୍ରସିଦ୍ଧ ଗ୍ରାଫିକ୍ ଶିଳ୍ପୀ ବାବ୍‌ଲା ସେନାପତି, (ନୀଳମଣି ସେନାପତି, ଆଇ.ସି.ଏସ୍‌ଙ୍କ ପୁଅ)ଙ୍କ ଅତ୍ୟନ୍ତ ମନୋରମ ବଗିଚାରେ କର୍ମଶାଳାର ଆୟୋଜନ ହେଲା । ଆର୍ଟ୍ କଲେଜରେ ସିଲେଇ ହୋଇ ବ୍ଲକ ଛପା ହୋଇ, କାନ୍ଧରେ ପଡ଼ିଥିବା ଝୁଲା ବେଗ୍‌କୁ ଓଡ଼ିଶାର ବହୁ ଶିଳ୍ପୀ ସ୍ୱାଗତ କରିଥିଲେ । ଠିକ୍ ସେହିପରି ସର୍ବଭାରତୀୟ ସ୍ତରରେ ଏନ୍.ସି.ଇ.ଆର୍.ଟି ନୂଆଦିଲ୍ଲୀ ଓ ସି.ସି.ଆର୍.ଟିଙ୍କ ସହାୟତାରେ ୬୦ ଜଣ କଳା ଶିକ୍ଷକଙ୍କୁ ନେଇ ଏକ ଚମତ୍କାର ଶିବିରର ଆୟୋଜନ କରାଯାଇଥିଲା । ଭାରତବର୍ଷର ବିଶିଷ୍ଟ ଲୋକମାନେ ଏଥିରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ ଡ଼କ୍ଟର ମୁଲକ୍‌ରାଜ ଆନନ୍ଦ, ପ୍ରଫେସର ଭବେଶ ସ୍ୟାନାଲ୍, ପ୍ରଫେସର ରତନ ପାରିମୁ, ଜ୍ୟୋତି ଭଟ୍ଟ, ବଲବୀର ସିଂ କଟ୍, ସୁନୀଲ କୋଠାରୀ, କାଞ୍ଚନ ଚକ୍ରବର୍ତ୍ତୀ, ରାଜା-ରାଧାରେଡ଼ି, ଶାଶ୍ୱତୀ ସେନ୍ ପ୍ରଭୃତି ଥିଲେ ଅନ୍ୟତମ । ବିଭିନ୍ନ ସମୟରେ କଲେଜକୁ ଭାରତବର୍ଷ ତଥା ଓଡ଼ିଶାର ଖ୍ୟାତନାମା ଶିଳ୍ପୀ, କବି, ସାହିତ୍ୟିକ, ସଙ୍ଗୀତଜ୍ଞମାନେ ଆସି ଛାତ୍ରଛାତ୍ରୀମାନଙ୍କୁ ଦିଗ୍‌ଦର୍ଶନ ଦେଉଥିଲେ । ଡକ୍ଟର ମୁଲକ୍‌ରାଜ ଆନନ୍ଦଙ୍କ ସହିତ କଲେଜର ସମସ୍ତ ଛାତ୍ରଛାତ୍ରୀ, ଅଧକ୍ଷ, ଅଧ୍ୟାପକ ଯେତେବେଳେ କୋଣାର୍କ ମନ୍ଦିର ବେଢ଼ାରେ ବସିଥିଲେ, ସଞ୍ଜ ହୋଇ ଆସିଥିଲା, ଜହ୍ନ ଉଇଁ ଆସୁଥାଏ ଝାଉଁବଣ ଭିତରୁ ଡକ୍ଟର ଆନନ୍ଦ ଗପି ଚାଲିଥିଲେ ପୃଥିବୀର କଳା ଓ କଳାକାରଙ୍କ ଅସରନ୍ତି ମନଲୋଭାଣିଆ ଗଳ୍ପ । ତା ମଧ୍ୟ ଆଉ ଜୀବନରେ ଭୁଲି ହେବନି । ଫେରିବା ବାଟରେ ନିମାପଡ଼ାରେ ଜିଦ୍‌କରି ପାଠୀ ବାବୁଙ୍କଠାରୁ ଖୁସିରେ ଆମେ ସବୁ ଛେନା ଝିଲି ମିଠା ଖାଇଥିଲୁ ।

କଲେଜରେ ପୁଣି ଗଢ଼ାହେଲା ଲିଟେରାରୀ କ୍ଲବ୍, ସ୍କେଚିଂ କ୍ଲବ୍, ଡ୍ରାମା କ୍ଲବ୍, ସଂଗ୍ ଏଣ୍ଡ ମ୍ୟୁଜିକ୍ କ୍ଲବ୍ । ଛାତ୍ରଛାତ୍ରୀମାନେ ବିଭିନ୍ନ ବିଭାଗରେ ଅଂଶ ଗ୍ରହଣ କରି ପୁରସ୍କୃତ ହେଉଥିଲେ ବାର୍ଷିକ କଳା ପ୍ରଦର୍ଶନୀରେ । ବିଭିନ୍ନ ବିଭାଗର ବିଚାରକ ରୂପେ ପ୍ରତିଷ୍ଠିତ ବ୍ୟକ୍ତିମାନେ ଆସୁଥିଲେ ।

ଚିତ୍ର, ମୁଦ୍ରା, ତ୍ରଙ୍ଗ, ଡିଜାଇନ୍, ଇମେଜ୍ ପ୍ରଭୃତି ଅନେକ ପବ୍ଲିକେଶନ୍ ପାଠୀ ବାବୁଙ୍କ ତତ୍ତ୍ୱାବଧାନରେ ପ୍ରକାଶିତ ହୋଇ ଭାରତବର୍ଷର ଅନେକ ଆର୍ଟ୍ କଲେଜର ଲାଇବ୍ରେରୀକୁ ଯାଇଛି । ଥରେ ଥରେ ସେ ବିଦେଶ ଭ୍ରମଣରେ ଯାଉଥିଲା ବେଳେ ଏ ଗୁଡ଼ିକ ଗୋଟିଏ ଗୋଟିଏ ସତନ୍ତ୍ର ପ୍ୟାକେଟ୍ କରି ରେଣୁ (କଲେଜର ମହିଳା ପିଅନ) ତାଙ୍କ ଆଟାଚିରେ ରଖିଦେଉଥିଲା । ଆମେ ପଚାରିଲେ ସେ ଉତ୍ତର ଦିଅନ୍ତି ବିଦେଶରେ ଲୋକେ ବି.କେ ଆର୍ଟ୍ କଲେଜକୁ ଜାଣିଲେ ଆମେ ତାଙ୍କଠାରୁ କଲେଜ୍ ପାଇଁ ସାହାଯ୍ୟ ପାଇ ପାରିବୁ । ସତକୁ ସତ 'ଆଲିସ୍ ବୋନ୍‌ର ଫାଉଣ୍ଡେସନ୍ ଫର୍ ଫଣ୍ଡାମେଣ୍ଟାଲ୍ ରିସର୍ଚ୍ଚ ଇନ୍ ଆର୍ଟ୍' ପକ୍ଷରୁ ମେମୋରିଆଲ୍ ଆୱାର୍ଡ଼ ପାଇଁ ସେ ଦଶ ହଜାର ଟଙ୍କା ଆଣି ବ୍ୟାଙ୍କରେ ସ୍ଥାୟୀ ଜମା ରଖିଥିଲେ ଏବଂ ପ୍ରତିବର୍ଷ ଭାସ୍କର୍ଯ୍ୟ ବିଭାଗର ଜଣେ ଛାତ୍ରଙ୍କୁ ଏହି ସ୍ଥାୟୀ ଟଙ୍କାର ସୁଧରେ ଆଜିଯାଏ ଆୱାର୍ଡ଼ ଦିଆଯାଉଛି । ସେହିପରି 'ଦିବ୍ୟରଞ୍ଜନ ପାଣି ମେମୋରିଆଲ୍ ଆୱାର୍ଡ଼'ର ବ୍ୟବସ୍ଥା ମଧ୍ୟ ସେ କରାଇଥିଲେ । କଲେଜରେ ବିଭିନ୍ନ ସମୟରେ ବିଭୂତି କାନୁନ୍‌ଗୋ ମେମୋରିଆଲ୍ ଲେକ୍‌ଚର୍, ସର୍ବଭାରତୀୟ ୱାର୍କସପ୍, ଚିତ୍ରମେଳା ଆଦି କରାଯାଉଥିଲା । ଟେକସ୍‌ଟାଇଲ୍ ୱାର୍କସପ୍‌କୁ ବ୍ରିଟିଶ୍ କାଉନସିଲ୍‌ର ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଶିଳ୍ପୀ ମିସେସ୍ ବବି କକ୍ସ୍‌ଙ୍କୁ ବିଦେଶରୁ ଆଣି କଲେଜ୍‌ର ଛାତ୍ର ଛାତ୍ରୀଙ୍କୁ ପ୍ରଥମ ଥର ପାଇଁ ଡ଼େମନ୍‌ଷ୍ଟ୍ରେସନ୍‌ର ବ୍ୟବସ୍ଥା କରାଇଥିଲେ । ଓଡ଼ିଶାର ପଟ୍ଟଚିତ୍ରକୁ ନୂଆ ଚିନ୍ତାଧାରା ନେଇ ଆଙ୍କିବା ପାଇଁ ପାରମ୍ପାରିକ ଶିଳ୍ପୀମାନଙ୍କୁ ଏକତ୍ରିତ କରି ଏକ ସତନ୍ତ୍ର କର୍ମଶାଳାର ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ଏଥିନିମନ୍ତେ ଶ୍ରୀଯୁକ୍ତ ରାଜକିଶୋର ଭୁଜବଳ, ଆଇ.ଏ.ଏସ୍‌ଙ୍କ ଯଥେଷ୍ଟ ଅବଦାନ ଥିଲା । 'କଳିଙ୍ଗ ବାଲିଯାତ୍ରା' ଇଣ୍ଡୋନେସିଆର ଉତ୍ସବକୁ ପାଠୀ ବାବୁଙ୍କ ସହ ଦୁଇଜଣ କଲେଜ ଛାତ୍ର ବାଳକୃଷ୍ଣ ନନ୍ଦ ଓ ସଂଗ୍ରାମ ମହାରଣା ଯାଇ ଏ କଲେଜ ପାଇଁ ଗୌରବ ଅର୍ଜନ କରିଥିଲେ ।

ପ୍ରଥମ କରି କଲେଜର ଚିତ୍ରମେଳା ଉତ୍ସବ ହେବ । ତେଣୁ ସମସ୍ତ ବିଭାଗର ଅଧ୍ୟାପକମାନେ ନିଜ ନିଜ ବିଭାଗର ଛାତ୍ରଛାତ୍ରୀମାନଙ୍କୁ ନେଇ କାର୍ଯ୍ୟ କରାଉଥାନ୍ତି । ଚିତ୍ର ବିଭାଗରୁ ନବବର୍ଷର ଅଭିନନ୍ଦନ

Digitized by srujanika@gmail.com

ପତ୍ର, ଜଳରଙ୍ଗ, ତୈଳଚିତ୍ରର ଭୂଦୃଶ୍ୟ, ଗ୍ରାଫିକ୍ ବିଭାଗରୁ ନାନା ପ୍ରକାରର ବେଗ୍, ରୁମାଲ୍, ସିଲ୍କସ୍କ୍ରିନ୍‌ରେ ଛପା ହୋଇ ଘରେ ଟଙ୍ଗା ହେବାପାଇଁ ପରଦା, କ୍ୟାଲେଣ୍ଡର୍, ଭାସ୍କର୍ଯ୍ୟ ବିଭାଗରୁ ଟେରାକୋଟାର ଘର ସାଜସଜ୍ଜା ନିମନ୍ତେ ହାତୀ, ଘୋଡ଼ା ନାନା ପ୍ରକାରର ଛୋଟ ବଡ଼ କଣ୍ଢେଇ, ବେକରେ ପକାଉଥିବା ହାରର ଲକେଟ୍, କମରସିଆଲ୍ ଆର୍ଟ୍ ପକ୍ଷରୁ ନାନା ପ୍ରକାରର ସୌନ୍ଦର୍ଯ୍ୟ ପରିପାଟୀ ଥାଇ ଚିତ୍ର, କ୍ୟାଲେଣ୍ଡର ପ୍ରଭୃତି ମେଳାରେ ସଜ୍ଜିତ କରାଯାଉଥିଲା । ଏତଦ୍‌ବ୍ୟତୀତ କଳା ଇତିହାସ ବିଭାଗରୁ 'ଚିତ୍ର' ନାମରେ ଏକ ଜର୍ଣ୍ଣାଲ୍ ମଧ୍ୟ ମେଳାରେ ବିକ୍ରି କରାଯାଉଥିଲା । ତା ସାଙ୍ଗକୁ ଥିଲା ମୀନାବଜାର । ନାନା ପ୍ରକାର ଖାଦ୍ୟସାମଗ୍ରୀକୁ ଛାତ୍ରଛାତ୍ରୀମାନେ ନିଜ ହାତରେ ପ୍ରସ୍ତୁତ କରି ବିକ୍ରି କରୁଥାନ୍ତି । କଚ୍ଚନା ଛକ କଲେଜ ଗେଟ୍ ସାମନାରେ ଥାଏ ବିରାଟ୍ କନାର ବ୍ୟାନର୍ । ସମସ୍ତ ବିଷୟ ଲେଖା ଯାଇ ଦର୍ଶକମାନଙ୍କୁ ଆକୃଷ୍ଟ କଲାଭଳି ଚିତ୍ରଥାଏ । ଦିନରାତି କାହାକୁ ନିଦ ନଥାଏ । ସମସ୍ତେ କି ବ୍ୟସ୍ତ ଆଉ କି ଖୁସି । ମାଇକ୍‌ରେ କ୍ଲାସିକାଲ୍ ସଂଗୀତର ମୂର୍ଚ୍ଛନା ପରିବେଶକୁ ମଟୁଆଲା କରିଦେଉଥିଲା । ସଂସ୍କୃତି ବିଭାଗର ସମସ୍ତ ହାକିମମାନଙ୍କୁ କଲେଜ ତରଫରୁ ନିମନ୍ତ୍ରଣ କରାଯାଇଥାଏ । ସେମାନଙ୍କ ଭିତରୁ କେତେକ ଛବି ଆଉ କଣ୍ଢେଇ କିଣନ୍ତି । ଅଣ୍ଡାସିଝା, ବରା, ଘୁଗୁନି, ଘ ଖାଆନ୍ତି । କିନ୍ତୁ କହିବା ବାହୁଲ୍ୟ, ହସି ହସି ପଞ୍ଜାବୀ ପକେଟରୁ ପଇସା ଦିଅନ୍ତି ପାଠୀ ବାବୁ । କାରଣ ଛାତ୍ରଛାତ୍ରୀମାନେ ପୋଷ୍ଟର୍‌ରେ ଲେଖିଥାନ୍ତି 'ଆଜି ନଗଦ କାଲି ଧାର' । ନଗଦ ପଇସା ଧରି ଆମେ ସବୁ ଛାତ୍ରଛାତ୍ରୀଙ୍କଠାରୁ ଜିନିଷ କିଣି ଥାଉ ଘର ପାଇଁ । ପ୍ରକୃତରେ ସେ ଆନନ୍ଦ ଆଉ କାହିଁ ?

କଲେଜର ବିଭିନ୍ନ ସମୟରେ ବର୍ଷଯାକ ନାନା ପ୍ରକାର ପ୍ରୋଗ୍ରାମ୍ ଲାଗିରହିଥାଏ । କେତେବେଳେ ଶାନ୍ତିନିକେତନ ଢଙ୍ଗର କଚ୍ଚାମେଳା ତ କେତେବେଳେ ଦିଲ୍ଲୀ, କୋଣାର୍କ, ଖିଚିଂ, ରତ୍ନଗିରି ଆଉ ତାପଙ୍ଗ ରେ କର୍ମଶାଳା । ଅଦ୍ୱୈତ ଗଡ଼ନାୟକ, ଆର୍ତ୍ତବନ୍ଧୁ ରାଉତ, ଅଞ୍ଜନ କୁମାର ସାହୁ ପଥର ମୂର୍ତ୍ତି କାଟିଲା ବେଳକୁ ଚିତ୍ର ବିଭାଗର ଜୟନ୍ତ ପଣ୍ଡା ଯାଇ ପହଞ୍ଚିଲେଣି ଚିକାଗୋରେ । ଥରେ ବନାରସରୁ ଆସିଥିଲେ ପ୍ରସିଦ୍ଧ ଭସ୍କର୍ଯ୍ୟ ଶିଳ୍ପୀ ପ୍ରଫେସର ବଲବୀର ସିଂ କଟ୍ ରାତି ଅନିଦ୍ରା ହୋଇ ପଥର ଓ ନିହାଣ ମୁନରେ ସେ ଛାତ୍ରଙ୍କ ସହ ଯେଉଁ କାର୍ଯ୍ୟ କରିଯାଇଛନ୍ତି ତାହା ବି.କେ. ଆର୍ଟ୍ କଲେଜର ଇତିହାସ ହୋଇ ରହିଯିବ । ଏକଥା ନିରାଟ ସତ ଯେ, ଏହା ହିଁ ଥିଲା ଓଡ଼ିଶା କଳାଶିକ୍ଷା କ୍ଷେତ୍ରରେ ପ୍ରଥମ ଆଧୁନିକ ବିଧିବଦ୍ଧ ପଥର ଖୋଦେଇ ।

ଠିକ୍ ସେହିପରି ବିଭିନ୍ନ ସମୟରେ ଶିଳ୍ପୀମାନଙ୍କ ମଧ୍ୟରେ ପ୍ରଫେସର୍ ଅଜିତ୍ କେଶରୀ ରାୟ, ଅନନ୍ତ ପଣ୍ଡା, ମୂରଲୀଧର ଟାଲୀ, ବିନୋଦ ରାଉତରାୟ, ରବି ନାରାୟଣ ନାୟକ, ପ୍ରଫୁଲ୍ଲ ମହାନ୍ତି, ଯତୀନ୍ ଦାସ, ଅସୀମ ବସୁ, ଶ୍ୟାମ ସୁନ୍ଦର ପଟ୍ଟନାୟକ, ଚନ୍ଦ୍ର ଶେଖର ରାଓ, ରମେଶ ଚନ୍ଦ୍ର ମହାନ୍ତି, ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ, ବନ ବିହାରୀ ପରିଡ଼ା, ଡକ୍ଟର ଦୁର୍ଗା ପ୍ରସାଦ ପଟ୍ଟନାୟକ, ଗୌରାଙ୍ଗ ଚରଣ ସୋମ, ଦୁର୍ଗା ପ୍ରସାଦ ଦାସ, ବିପ୍ର ଚରଣ ମହାନ୍ତି, ଅସିତ ମୁଖାର୍ଜୀ, ନିତ୍ୟାନନ୍ଦ ମହାପାତ୍ର, ଲକ୍ଷ୍ମୀଧର ଦାସ, ସୁନାମଣି ସାମଲ, ବଂଶୀଧର ପ୍ରତିହାରୀ, କାଶୀନାଥ ଜେନା, କାଳିନ୍ଦୀ ଭେଦନ ଜେନା ଓ ଉଦୟ ଜେନାଙ୍କ ସମେତ ଦେଶବିଦେଶର ବହୁ ପ୍ରତିଷ୍ଠିତ ଶିଳ୍ପୀ, କବି, ସାମ୍ବାଦିକ, ରାଜନୈତିକ ନେତା, ସାଂସ୍କୃତିକ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ କରୁଥିବା ବ୍ୟକ୍ତିବିଶେଷ, ସଂଗୀତଜ୍ଞ, ନୃତ୍ୟଶିଳ୍ପୀ ଓ ବିଭିନ୍ନ ସରକାରୀ, ବେସରକାରୀ ସଂଗଠନର କର୍ମକର୍ତ୍ତାମାନେ ବିଭିନ୍ନ ସମୟରେ ଆସି ବି.କେ. ଆର୍ଟ୍ କଲେଜର ସୁଖ-ଦୁଃଖରେ ଭାଗନେଇ ଆମକୁ ଉତ୍ସାହିତ କରୁଥିଲେ । ଏସବୁ ମୂଳରେ ଥିଲା ପାଠୀ ବାବୁଙ୍କ ପ୍ରଚେଷ୍ଟା ଓ ତାଙ୍କ ପ୍ରଚେଷ୍ଟାକୁ ସଫଳ କରିବାକୁ ମୋତେ ଦିନରାତି ହାଡ଼ଭଙ୍ଗା ଖଟଣି କରି ବହୁତ ଧାଁ ଧଉଡ଼ କରିବାକୁ ପଡ଼ୁଥିଲା । ମୋଟ କଥାରେ ରାଜଧାନୀ ଭୁବନେଶ୍ୱରରେ ଏପରି ଏକ କଳା ମହାବିଦ୍ୟାଳୟ ପ୍ରତିଷ୍ଠାହେବା ପରଠାରୁ ସରକାରୀ କୋଠାବାଡ଼ିର ସାଜ ସଜ୍ଜାରେ ତଥା ବହୁ ବ୍ୟକ୍ତିବିଶେଷଙ୍କର ଝିଅ, ପୁଅଙ୍କର ବିଭାଘରର ସାଜସଜ୍ଜା ମଧ୍ୟ ଆମକୁ କରିବାକୁ ପଡ଼ୁଥିଲା । ଏଥି ନିମନ୍ତେ ବାହାରର ଶିଳ୍ପୀମାନେ ବିଭିନ୍ନ ସମୟରେ ଆମକୁ ଆକ୍ଷେପ କରି ଅନେକ କଥା କହିଥାନ୍ତି ସତ ମାତ୍ର ବି.କେ ଆର୍ଟ୍ କଲେଜ୍‌ର ଉନ୍ନତି ପାଇଁ ଏସବୁ କାମ ଆମେ ଆନ୍ତରିକତା ସହ କରୁଥିଲୁ ।

Digitized by srujanika@gmail.com

କଲେଜର ଗୋଟିଏ ପାଖରେ ଥାଏ ବି.ଜେ.ବି. କଲେଜ୍ ଏବଂ ସାମନାରେ ଥାଏ ବି.ଜେ.ବି. ଇଂଲିଶ୍ ମିଡ଼ିୟମ୍ ସ୍କୁଲ । ଦଳ ଦଳ ହୋଇ ଛାତ୍ରଛାତ୍ରୀ, ସେମାନଙ୍କ ଅଭିଭାବକଗଣ ଓ ବଡ଼ଗଡ଼ ବ୍ରିଟ୍ କଲୋନୀକୁ ଯାଉଥିବା ଜନସାଧାରଣ ତଥା ଭୁବନେଶ୍ୱରର କଳାପ୍ରେମୀ ବହୁ ବିଳମ୍ବିତ ରାତି ପର୍ଯ୍ୟନ୍ତ ଆମ ଗହଣରେ ରହି ଛାତ୍ରଛାତ୍ରୀଙ୍କୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ କଲେଜର ଏପରି ମହତ୍ କାର୍ଯ୍ୟକୁ ସ୍ୱାଗତ ଜଣାଉଥାନ୍ତି । ମୁଁ କିନ୍ତୁ ତରତର ହୁଏ କଟକ ଫେରିବା ପାଇଁ । କାରଣ ପୁଣି ତା ପରଦିନ ସକାଳୁ କଟକରୁ କଣ୍ଟନା ବସ୍ ଧରି ଦିନ ଦଶଟା ବେଳକୁ କଲେଜରେ ପହଞ୍ଚିବା ମୋର ଦୈନନ୍ଦିନ ରୁଟିନ୍ ପରି ଗଢ଼ି ଚାଲିଥାଏ । କଲେଜ ପାଖରେ ପାଠୀ ବାବୁଙ୍କ କ୍ୱାଟର୍ । ଆମେ ବେଳେବେଳେ ଅଧ୍ୟାପକମାନେ ସାଙ୍ଗ ହୋଇ ତାଙ୍କ ଘରକୁ ଯାଉ । ମୁଁ ଥାଏ ସେମାନଙ୍କ ଭିତରେ ବୟସରେ ବଡ଼, ତେଣୁ ଆଗରେ ଥାଏ । ଥରେ ଅବନ୍ତୀ ଦେବୀ ଆମକୁ ଦେଖି କହିଲେ, 'କଣ ଆଜି ବି.କେ.ଆର୍ଟ୍ କଲେଜର କ୍ଲାସ ଏଇଠି ଆମ ଘରେ ହେବ ? ସକାଳୁ ତ ପାଠୀ ବାବୁ ଗୁଡ଼ିଏ ବହି ପତ୍ର, ଖାତା କଲମ ଧରି କ'ଣ ଲେଖୁଛନ୍ତି ଯେ ଦିନ ୧୨ଟା ହେବ ଏଯାଏଁ ଗାଧୋଇ ନାହାନ୍ତି କି କିଛି ଖାଇନାହାନ୍ତି । ଗତକାଲି କଲେଜ କାମରେ ତିୱାରୀ ସାହେବ, ସୁଧାଂଶୁ ମୋହନ ରାଉତରାୟ ଓ ମୁଖ୍ୟମନ୍ତ୍ରୀଙ୍କ ସହ ବିଳମ୍ବିତ ରାତି ଯାଏ କଣ ଆଲୋଚନା କରି ଘରକୁ ଫେରିଛନ୍ତି । ଆମେସବୁ ଆଶ୍ଚର୍ଯ୍ୟ ହୋଇଯାଉ । ପାଠୀ ବାବୁ ହସି ହସି କହନ୍ତି, 'ସରକାର କିଛି ଟଙ୍କା ଦେବେ । ପୁଣି ଆମେ କଲେଜରେ ନୂଆ ପ୍ରୋଗାମ୍ କିଛି କରିବା । ଚାଲନ୍ତୁ ମୁଁ ପାଞ୍ଚ ମିନିଟ୍‌ରେ ଗାଧୋଇ, ଖାଇ କଲେଜ୍ ଯାଉଛି ।' ଆମେ ଫେରିଲା ବେଳେ ରାସ୍ତାରେ କଥାବାର୍ତ୍ତା ହେଉ ପ୍ରକୃତରେ ଏ ଲୋକଟାର କି ଅଦ୍ଭୁତ ଶକ୍ତି । ଯେକୌଣସି କଥାରେ "ହଁ' କରିବା ବ୍ୟତୀତ 'ନାହିଁ' ଶବ୍ଦ ପ୍ରତ୍ୟୟ ଆମେ ତାଙ୍କଠୁ ଶୁଣିନୁ । ଥରେ ଥରେ ଅବନ୍ତୀ ଦେବୀ କହନ୍ତି ଶିବବାବୁ, "ସବୁ ଆର୍ଟିଷ୍ଟମାନେ କ'ଣ ପାଠୀ ବାବୁ ପରି ପାଗଳ । ଏହାଙ୍କର ଘର ନାହିଁ, ଦୁଆର ନାହିଁ, ସ୍ତ୍ରୀ ନାହିଁ, ଛୁଆ ପିଲା ନାହିଁ, ଖାଇବା ନାହିଁ, ଶୋଇବା ନାହିଁ, ସବୁବେଳେ ଖାଲି ବି.କେ. ଆର୍ଟ୍ କଲେଜ, ବି. କେ. ଆର୍ଟ୍ କଲେଜ । ମୁଁ ତ ବୁଝାଇ ପାରିଲିନି । ହେଲେ ଆପଣମାନେ ସବୁ ଟିକିଏ ବୁଝାନ୍ତୁ ।''

ଅଧିକାଂଶ ଦିନ କଲେଜକୁ ଆସୁଥାନ୍ତି ଅସୀମ ଦା ଓ ରୋହିତ ବଟୁ । ବେଳେ ବେଳେ ନିତ୍ୟାନନ୍ଦ ମିଶ୍ର (ଗ୍ରାଫ୍‌ଟେକ୍ ପ୍ରିଣ୍ଟିଙ୍ଗ୍ ପ୍ରୋସେସ୍‌ର ମାଲିକ) ସେମାନେ ସରକାରଙ୍କଠାରୁ ଲକ୍ଷାଧିକ ଟଙ୍କାର ଚିତ୍ର ବହି ଛପା ଓ ସାଜସଜ୍ଜାର ଅର୍ଡ଼ର ନେଇଥାନ୍ତି । ମାତ୍ର ସରକାର ଆଦେଶ ଦେଇଥାନ୍ତି ମୂଳ ଡିଜାଇନ୍‌ଟିର ନକ୍‌ସାଟି ବି.କେ. ଆର୍ଟ୍ କଲେଜର ଅଧକ୍ଷ ପାଠୀ ବାବୁଙ୍କଠାରେ ହିଁ କଲେ ତା ସରକାର ଗ୍ରହଣ କରିବେ । **ସେମାନେ ବ୍ୟକ୍ତିଗତ ଭାବେ କିଛି ଟଙ୍କା ପାଠୀ ବାବୁଙ୍କୁ ପାରିଶ୍ରମିକ ଦେଇଥାନ୍ତି ମାତ୍ର ସେ ଟଙ୍କାରେ କଲେଜ ନିମନ୍ତେ ଫୁଲକୁଣ୍ଡ, ଭାସ୍କର୍ଯ୍ୟମୂର୍ତ୍ତି ପାଇଁ ପଥର ଆଉ କଲେଜ କାନ୍ଥରେ ରଙ୍ଗ ଦେବା ପାଇଁ ସବୁ ଟଙ୍କା ଗଗନ ବାବୁଙ୍କୁ ଦେଇଦିଅନ୍ତି । ଅତିଥିଙ୍କ ଆଦର ଅଭ୍ୟର୍ଥନା ନିମନ୍ତେ ସବୁବେଳେ ଯାହା ଖର୍ଚ୍ଚ ହୋଇଥାଏ ତା ସେଇଥିରୁ ଏବଂ ମଝିରେ ମଝିରେ ତାଙ୍କ ଦରମାରୁ ମଧ୍ୟ ଖର୍ଚ୍ଚ ସେ କରିଥାନ୍ତି ।** ଆମ୍ଭେମାନେ ସବୁ ମଝିରେ ମଝିରେ ଦରମାରୁ କିଛି ଟଙ୍କା ସଂଗ୍ରହ କରି ଅତିଥିଙ୍କ ପାଇଁ ଚା' ବିସ୍କୁଟର ବ୍ୟବସ୍ଥା କରିଥାଉ । କଲେଜଟିଏ ଗଢ଼ି ତାକୁ ସୁଚାରୁ ରୂପେ ଚଳାଇବା ଦାୟିତ୍ୱ ସରକାରଙ୍କ ଯେତିକି ତା' ଠାରୁ ବେଶୀ ଥିଲା ସେ ସମୟର ସମସ୍ତ ଅଧ୍ୟାପକ, ଅଧକ୍ଷ ଓ କଲେଜ ପରିଚାଳନା କରୁଥିବା କର୍ମକର୍ତ୍ତାମାନଙ୍କର । ତେଣୁ ଅଫିସ୍ ଦାୟିତ୍ୱରେ ଥିବା ଗଗନ ବାବୁ, ସୁବୁଦ୍ଧି ବାବୁ ଓ ସମସ୍ତ ଚତୁର୍ଥ ଶ୍ରେଣୀ କର୍ମଚାରୀମାନେ ହାତକୁ ହାତ ମିଳାଇ ଦିନରାତି ଆମକୁ ସାହାଯ୍ୟ କରୁଥିଲେ ।

ସବୁଠାରୁ ବେଶୀ ଖୁସି ଲାଗୁଥିଲା, ଆମେ ଯେଉଁ କେତେ ଜଣ ଏକାଠି ମିଳିମିଶି କାନ୍ଧକୁ କାନ୍ଧ ମିଳାଇ ଏକା ସରରେ ସବୁ କାମ କଲେଜରେ କରୁଥିଲୁ ଏଥିରେ ଓଡ଼ିଶା ସରକାର ଓ ଆମ ସଂସ୍କୃତି ବିଭାଗର କର୍ମକର୍ତ୍ତାମାନେ ବହୁତ ଖୁସି ହେଉଥିଲେ । ବିଶେଷ କରି ସୁଧାଂଶୁ ମୋହନ ରାଉତରାୟ ଜଣେ କବି ହୋଇଥିବାରୁ ଶିଳ୍ପୀମାନଙ୍କ ମନକଥା ଭଲ ଭାବେ ବୁଝିପାରୁଥିଲେ । ତାଙ୍କୁ କାଗଜ ପତ୍ରରେ ବେଶୀ ମାତ୍ରାରେ ସାହାଯ୍ୟ କରୁଥିଲେ ସେକ୍ରେଟେରିୟଟ୍‌ର ସଂସ୍କୃତି ବିଭାଗର ଗୁଣନିଧି

Digitized by srujanika@gmail.com

ଜେନା । ଅବଶ୍ୟ ଜେନାବାବୁ ଅନେକ ସମୟରେ ଗୋଟିଏ କାମ ପାଇଁ ଆମକୁ ଦଶଥର ଦୌଡ଼ାଇ ଦେଉଥିଲେ । ତଥାପି ଦୁଃଖ ନଥିଲା । ସଂସ୍କୃତି ବିଭାଗର ଗଙ୍ଗାଧର ମହାନ୍ତି ବହୁତ ରସିକ ଲୋକ ଥିଲେ । ସେ ସୁଧାଂଶୁ ମୋହନ ରାଉତରାୟ, ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ଓ ମୁଖ୍ୟ ଶାସନସଚିବ ଶ୍ରୀଯୁକ୍ତ ସୁଧାଂଶୁଭୂଷଣ ମିଶ୍ର, ଆଇ.ଏ.ଏସ୍‌କୁ ସବୁକଥା ବୁଝାଇ ତାଙ୍କ ମାନସ ସନ୍ତାନ ବି.କେ. ଆର୍ଟ୍‌କୁ କିପରି ଅଧିକ ସରକାରୀ ସାହାଯ୍ୟ ମିଳିପାରିବ, କିପରି ଅଧିକ ସୁବିଧା ସୁଯୋଗ ସବୁବେଳେ ଚେଷ୍ଟା କରୁଥିଲେ । ଏପରିକି ସର୍ବଭାରତୀୟ ଓ ଆନ୍ତର୍ଜାତିକ କ୍ଷେତ୍ରରେ ଆସୁଥିବା ବିଶିଷ୍ଟ କଳାକାର ଓ ମନୀଷୀମାନଙ୍କୁ ପାଠୀ ବାବୁ ନିମନ୍ତ୍ରଣ କରି ଓଡ଼ିଶା ନେଇ ଆସୁଥିବାରୁ ସରକାରୀ ଅତିଥିଭବନ ସହଜରେ ମିଳି ଯାଉଥିଲା । ଆମ୍ଭମାନଙ୍କ ଆର୍ଥିକ ଅବସ୍ଥା ସଚ୍ଛଳ ନଥିବାରୁ ନିଜେ ପାଠୀ ବାବୁ ଘରୁ ଗିଫ୍‌ଟ୍ ଆଣି ତାଙ୍କୁ ଦେଇ ତାଙ୍କଠାରୁ କଲେଜର ସୁନାମ ଅର୍ଜନ କରୁଥିଲେ । ଏଇଟା ତାଙ୍କର ଗୋଟିଏ ବିଶେଷ ବଡ଼ ଗୁଣ ଥିଲା ବୋଲି ପ୍ରାୟ ଓଡ଼ିଶାର ଅଧିକାଂଶ ଶିଳ୍ପୀ ଓ ଲୋକମାନେ ଭଲ ଅଧିକେ ଚର୍ଚ୍ଚା କରିଥାନ୍ତି । **ସେ ଯେତେବେଳେ ବିଦେଶ ଗସ୍ତରେ ଯାଉଥିଲେ ଫେରିଲା ପରେ ମନେ କରି ସମସ୍ତଙ୍କ ପାଇଁ ଛୋଟ ବଡ଼ ଗିଫ୍‌ଟ୍ ଆଣି ଦେଉଥିଲେ । କାହା ପାଇଁ ନେକ୍‌ଟାଏ୍, ହାତବନ୍ଧା ଘଣ୍ଟା, ମୋନାଲିସାର ପ୍ରିଣ୍ଟ୍, କଲମ, ଅତର, ଗଞ୍ଜି, ବିଦେଶୀ ଛତା, ସୁଟ୍‌କେଶ୍ ଇତ୍ୟାଦି, ଇତ୍ୟାଦି ।** ଅନେକ ସମୟରେ ବହୁତ ଚର୍ଚ୍ଚା ହୁଏ ଦିନନାଥ ପାଠୀ ବହୁତ ଟଙ୍କା ଖାଇଗଲେ, ମାରିଦେଲେ, ନେଇଗଲେ ଇତ୍ୟାଦି ଇତ୍ୟାଦି । କିନ୍ତୁ ତା ଭିତରେ ଆଉ ଗୋଟିଏ ନିରାଟ ସତ କଥା ଲୁଚି ରହିଥିଲା ଏହା ବହୁତ କମ୍ ଲୋକଙ୍କୁ ଜଣା । ତା ହେଲା କଲେଜର ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ତାଙ୍କର ଆର୍ଥିକ ସାହାଯ୍ୟ । ଆମେ ସବୁ ଏକାଠି ମିଳିମିଶି ଅନେକ ଦିନ କାର୍ଯ୍ୟ କରିଛୁ । **ମୁଁ ଏକଥା ମଧ୍ୟ ଦେଖିଛି ଆଉ ବନ୍ଧୁମାନେ ମଧ୍ୟ ଦେଖିଛନ୍ତି କଲେଜର ବିଭିନ୍ନ ସମୟରେ ଯେତେ ପ୍ରଦର୍ଶନୀ ହୁଏ, ତା'ର ଛପାଛପି ଦାୟିତ୍ୱ, କେଉଁ ପିଲା ଦିଲ୍ଲୀ ଯିବ, କିଏ ନାଗପୁର ଯିବ ଆଓ୍ୱାର୍ଡ଼ ଆଣିବା ପାଇଁ ତ କିଏ ପଥର କିଣିବ ମୂର୍ତ୍ତି ଗଢ଼ିବା ପାଇଁ, ଅଳ୍ପ ବହୁତେ ସମସ୍ତଙ୍କୁ ସେ ତାଙ୍କ ପକେଟରୁ ଅଜସ୍ର ଟଙ୍କା ବଢ଼େଇ ଦେଉଥିଲେ ।** ଏପରିକି ଗଗନବାବୁଙ୍କୁ ପାଠୀ ବାବୁ କହିଥାନ୍ତି ମାସର ତାଙ୍କ ଦରମା ଟଙ୍କାରେ କଲେଜ କାନ୍ଥ ପାଇଁ ରଙ୍ଗ କିଣି ଖର୍ଚ୍ଚ କରିବ । ଟଙ୍କା ଯେମିତି ଆସୁଥିଲା ସେମିତି ପାଣିପରି ଖର୍ଚ୍ଚ ମଧ୍ୟ ହେଉଥିଲା । ସେ ସମୟର ପ୍ରକାଶନ, ପ୍ରଦର୍ଶନୀ ଓ ଅନ୍ୟାନ୍ୟ ଆୟୋଜନ ଯେଉଁଳି ଉଚ୍ଚକୋଟୀର ହେଉଥିଲା ତାହାକୁ ଟପିବା ବଡ଼ କଷ୍ଟସାଧ୍ୟ । ପାଠୀ ବାବୁ ସେ କଲେଜରୁ ଯିବାପରେ ବହୁତ କଥାର ପରିବର୍ତ୍ତନ ହୋଇଯାଇଛି । କିଛି କାର୍ଯ୍ୟ ବି ବନ୍ଦ ହୋଇଗଲାଣି ।

କଲେଜର ଆର୍ଥିକ ଅଭାବଅନଟନ ମଧ୍ୟରେ ବି ମଝିରେ ମଝିରେ ମା ଲକ୍ଷ୍ମୀଙ୍କ କୃପାରୁ ଥରେ ଥରେ ଧନ ବର୍ଷା ମଧ୍ୟ ହୋଇ ଯାଉଥିଲା । ୧୯୮୬ରେ ତାଙ୍କ ବ୍ୟକ୍ତିଗତ ଚେଷ୍ଟାରେ ଥରେ ସେ ସୁଇଡ଼େନ୍‌ରେ ଏକ ଲୋକପ୍ରିୟ କଳା ପ୍ରଦର୍ଶନୀ କରିବା ନିମନ୍ତେ ପ୍ରାୟ କୋଡ଼ିଏ, ପଚିଶି ଲକ୍ଷ ଟଙ୍କା ପାଇଥାନ୍ତି । [୨] ସେ ଏହି ପ୍ରଦର୍ଶନୀର ନିଜେ ଭିଜୁଏଲାଇଜର୍ ଓ ଡିଜାଇନର୍ ହୋଇଥିବାରୁ ତାଙ୍କର ମନମୁତାବକ କଳାକୃତି କିଣିବାର ସାଧୀନତା ପାଇଥିଲେ । ଏହି ଖବର ଶୁଣି ଓଡ଼ିଶାର ବିଭିନ୍ନ ମହଲରେ ହଇଚଇ ସୃଷ୍ଟି ହୋଇଗଲା । ସବୁ ଟଙ୍କା ଓଡ଼ିଶା ଲଳିତ କଳା ଏକାଡ଼େମୀରେ ସରକାର ଜମା କରିଥିଲେ । ପାଠୀ ବାବୁ ସେଠାରୁ ଟଙ୍କା ଆଣି ଖର୍ଚ୍ଚ କରୁଥିଲେ । ବି.କେ. ଆର୍ଟ୍ କଲେଜର ଅଧ୍ୟାପକ, କର୍ମଚାରୀ, ଛାତ୍ରଛାତ୍ରୀମାନଙ୍କ ସହାୟତାରେ ଦିନରାତି ଆର୍ଟ୍ କାମ ସହ ଜିନିଷପତ୍ର କିଣା ଚାଲିଲା । ଭଙ୍ଗା ସ୍କୁଟର୍‌ଠାରୁ ଆରମ୍ଭ କରି ଅତି ଦଦରା ଭଙ୍ଗା ଉଠା ପାନ ଦୋକାନୀର କ୍ୟାବିନ୍ ଦିଲ୍ଲୀ, ମାନ୍ଦ୍ରାଜ, ବମ୍ବେ, କଲିକତାରୁ ଯାବତୀୟ ପୁରୁଣା ଜିନିଷ ଏପରିକି ଗୋଟିଏ ଟ୍ରକ୍ ଭର୍ତ୍ତି ଅସରପା ସହ ରାଜା ରବି ବର୍ମାଙ୍କ ପୁରୁଣା ଛବିର ପ୍ରିଣ୍ଟସ୍ ମଧ୍ୟ ସେ କିଣିଥିଲେ । ଲକ୍ଷ, ଲକ୍ଷ, ହଜାର, ହଜାର ଟଙ୍କା ଧରି କିଏ ଉଡ଼ାଜାହାଜରେ ଜିନିଷ କିଣିବାକୁ ଦିଲ୍ଲୀ ଗଲାଣିତ ଆଉ କିଏ ଟ୍ରେନ୍‌ରେ ମାନ୍ଦ୍ରାଜ ଗଲାଣି । ଅବଶ୍ୟ କଲେଜର ଅଧ୍ୟାପକ ଡି.ଏନ୍. ରାଓ, ବଳଦେବ ମହାରଥୀ ଓ ଛାତ୍ରମାନେ ଏଥିନିମନ୍ତେ କିଛି କାର୍ଯ୍ୟ କରି ଭଲ ପଇସା ପାଇଥିଲେ । କିନ୍ତୁ ମୁଁ ପାଞ୍ଚ ପଇସାଟିଏ ବି ପାଇନି କି ପାଠୀ ବାବୁ ମଧ୍ୟ କିଛି ନେଇ ନଥିଲେ । ମୋର ଏଥିନିମନ୍ତେ ମନରେ ଆଦୌ ଦୁଃଖ ନଥିଲା - ଖୁସି

Digitized by srujanika@gmail.com

ଲାଗୁଥିଲା ଯେ ସେହି ସମୟରେ ପାଠୀ ବାବୁ ମଧ ଅନେକ ଟଙ୍କା ଖର୍ଚ୍ଚ କରି କଲେଜର ବହୁତ ଉନ୍ନତିମୂଳକ କାର୍ଯ୍ୟ କରାଇ ପାରିଥିଲେ । ସୁଇଡ଼େନ୍ ପ୍ରଦର୍ଶନୀକୁ ସାଙ୍ଗରେ ବିଶିଷ୍ଟ ଶିଳ୍ପୀ ଶ୍ରୀ ଅସୀମ ବସୁ (ଅସୀମ ଦା) ଛାତ୍ର ସଂଗ୍ରାମ ମହାରଣା ଓ ରୋହିତ ବଟୁକୁ ସେ ନେଇ ଯାଇଥିଲେ । ସେ ଯେତେବେଳେ ବିଦେଶ ଯାଉଥିଲେ ବି.କେ. ଆର୍ଟ୍ କଲେଜର ପ୍ରକାଶିତ ପୁସ୍ତକ ସେମାନଙ୍କୁ ଉପହାର ଦେଇ ଏକ ମନ୍ତବ୍ୟ ପୁସ୍ତିକାରେ ସେମାନଙ୍କ ଅଭିମତ ଲେଖି ଆଣୁଥିଲେ । ସରକାରୀ ସ୍ତରରେ ଏଣୁ ବି.କେ. ଆର୍ଟ୍ କଲେଜକୁ ବହୁତ ସମ୍ମାନ ମିଳୁଥିଲା । ଯଦିଓ ଖଲ୍ଲିକୋଟ କଳା ମହାବିଦ୍ୟାଳୟ ପୁରୁଣା ଓ ଆମେ ସବୁ ସେହି ଅନୁଷ୍ଠାନର ଛାତ୍ର, ସେ ସମୟରେ ଖଲ୍ଲିକୋଟରେ ଥିବା ଅଧ୍ୟାପକମାନେ ଅଧିକାଂଶ ଆମର ନମସ୍ୟ କିନ୍ତୁ ବେଳେ ବେଳେ ସେଠାକାର ଛାତ୍ରଛାତ୍ରୀମାନଙ୍କୁ ସେମାନେ ବୁଝାଇ ଦେଉଥିଲେ ଯେ ଭୁବନେଶ୍ୱର ଆର୍ଟ୍ କଲେଜ ସରକାରୀ ଅନୁଷ୍ଠାନ ନୁହେଁ ଏହା ଏକ ପ୍ରାଇଭେଟ୍ କଳା କଲେଜ । ତେଣୁ ପାଠୀ ବାବୁ ବାହାରୁ, ବିଶେଷକରି ବିଦେଶରୁ ପ୍ରଚୁର ଟଙ୍କା ଆଣି ଏହିପରି ପ୍ରଦର୍ଶନୀ କରାଇ, ପୁସ୍ତକ ଛପାଇ, ସରକାରଙ୍କ ଠାରୁ ବାହାବା ନେଉଛନ୍ତି । ସୁଇଡ଼େନ୍‌ରେ ପାଠୀ ବାବୁଙ୍କୁ ଭିଜୁଏଲାଇଜର୍ ରଖା ଯାଇଥିଲା । ଆଉ ବି.କେ. ଆର୍ଟ୍ କଲେଜର ଅଧକ୍ଷ ଭାବେ ପାଠୀ ବାବୁଙ୍କ ନାଁ ସବୁ ଖବର କାଗଜରେ ପ୍ରକାଶିତ ହୋଇଥିଲା ।

ଦିନକର ଘଟଣା - ଏପ୍ରିଲ୍ ମାସର ମୁଣ୍ଡଫଟା ଖରା । ପାଠୀ ବାବୁ ମୋତେ କହିଲେ, ଶିବବାବୁ ମୋ ସ୍କୁଟର ପଛରେ ବସନ୍ତୁ ଯିବା ବାଣୀବିହାର, ଉତ୍କଳ ଇଉନିଭର୍‌ସିଟିକୁ । କୁଳପତିଙ୍କୁ ଦେଖା କରିବା - ସେ'ତ ଆପଣଙ୍କ ବନ୍ଧୁବାନ୍ଧବ ଲୋକ । ମେଜର ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାସଙ୍କୁ କଲେଜ କଥା କହିବା, ଆମ ବହିଦେବା, ଆଉ ଯେମିତି ଆମକୁ ଖୁବ୍ ଶୀଘ୍ର ଏଫିଲିଏସନ୍ ମିଳିଯାଏ । ତାଙ୍କୁ ଅନୁରୋଧ କରିବା, ସେଇୟା ହିଁ ହେଲା । କୁଳପତି ଆମ କଲେଜର ସୁନାମ ଆଗରୁ ଜାଣିଥିଲେ । ବହୁତ ଖୁସି ହେଲେ ଆମକୁ ଦେଖି । ତାଙ୍କ ପରାମର୍ଶାନୁଯାୟୀ ଶାନ୍ତିନିକେତନ, ବରୋଦା, ବନାରସ୍, ଦିଲ୍ଲୀ ଆର୍ଟ୍ କଲେଜରୁ ପ୍ରସ୍‌ପେକ୍ଟସ୍ ମଗାଇ ସେଇ ଢାଞ୍ଚାରେ ଆମେ ନିୟମାବଳୀ ପ୍ରସ୍ତୁତ ନିମନ୍ତେ ପରାମର୍ଶ କଲାପରେ ପ୍ରଫେସର ଡକ୍ଟର କରୁଣା ସାଗର ବେହେରା, ପ୍ରଫେସର ଡକ୍ଟର ପ୍ରିୟମ୍ବଦା ମହାନ୍ତି (ହେଜ୍‌ମାଦି) ପ୍ରମୁଖ ଆସିଥିଲେ କଲେଜ ପରିଦର୍ଶନରେ । ସେମାନେ ସମସ୍ତେ ସଂସ୍କୃତି-ସମ୍ପନ୍ନ ବ୍ୟକ୍ତି ହୋଇଥିବାରୁ କଲେଜ ପରିଦର୍ଶନ କରି ଆତ୍ମସନ୍ତୋଷ ଲାଭ କରି ରାଜଧାନୀରେ ଏପରି ଏକ କଳା କଲେଜ ଅନେକ ଦିନରୁ ସରକାରଙ୍କ ପ୍ରତିଷ୍ଠା କରିବା ଉଚିତ ବୋଲି ମତ ଦେଇଥିଲେ । ସେମାନଙ୍କ ଦୃଷ୍ଟି ଆକର୍ଷଣ ନିମନ୍ତେ ଆମେ ସମସ୍ତେ ମିଶି କଲେଜରେ ଏକ ଚିତ୍ରକଳା ଓ ଭାସ୍କର୍ଯ୍ୟ ପ୍ରଦର୍ଶନୀର ଆୟୋଜନ ମଧ କରିଥିଲୁ । ଏହାର କିଛିଦିନ ପରେ କୁଳପତିଙ୍କ ଅଶେଷ କୃପାରୁ ଆମେ ଏଫିଲେସନ୍ ପାଇଗଲୁ ।[୩] **ଇୟୁନିଭରସିଟିରୁ ଆମେ ଫେରିଲାବେଳେ ମଝି ରାସ୍ତାରେ ପାଠୀ ବାବୁଙ୍କ ସ୍କୁଟରରୁ ପେଟ୍ରୋଲ୍ ସରିଗଲା - ସ୍କୁଟର୍ ବନ୍ଦ । ମୁଁ ପଛରୁ ଠେଲୁଛି । ସେ ହ୍ୟାଣ୍ଡଲ୍ ଧରି ଗଡ଼ାଉଛନ୍ତି । କାଁଭାଁ ଯାଉଥିବା ଲୋକ ଆମର ଏଦୃଶ୍ୟ ଦେଖି ହସିବା ସହ ଆଶ୍ଚର୍ଯ୍ୟ ହେଉଥାନ୍ତି । ଦିନ ଦୁଇଟା । ଟାଏଁ ଟାଏଁ ଖରାରେ ମୁଣ୍ଡ ଫାଟି ପଡୁଛି । ମୋ ମୁଣ୍ଡରେ ସବୁବେଳେ ବହୁତ ବାଳ, ତାଙ୍କର ଅଳ୍ପ ବାଳ ହେତୁ ସେ ଅଧିକ କଷ୍ଟ ପାଇଥିଲେ । କଲେଜ ଗଢ଼ିବାରେ ଅନେକ ସ୍ମୃତି ଭିତରେ ଏହା ବି ଅନ୍ୟ ଏକ ମଧୁର ସ୍ମୃତି ।**

କଞ୍ଚନା ଛକ କୋଠାଟିର ମାଲିକ ଥିଲେ ପ୍ରଫେସର ଶିବ କୁମାର ମିଶ୍ର । ସେ ଅଧିକାଂଶ ସମୟ ଓଡ଼ିଶା ବାହାରେ ରହନ୍ତି । ତାଙ୍କ ସ୍ତ୍ରୀ ଆମ ମାଉସୀ, ଟିକିଏ କଡ଼ା ମିଜାଜ୍‌ର ଲୋକ । ଉଭୟେ ଅତ୍ୟଧିକ ବନ୍ଧୁବତ୍ସଳ, ସ୍ନେହୀ ଓ ଦୟାବାନ୍ ଉପକାରୀ ଥିଲେ । ତାଙ୍କ ଘରଟି ତିଆରି ହେବା ଦିନଠାରୁ ଅଧିକାଂଶ ଦିନ ମୁଁ ଓ ପାଠୀ ବାବୁ ଉଭୟେ ଯାଇ ତାଙ୍କୁ ବରାବର ଦେଖା କରି ଏଇ ଘରକୁ ଆମ କଲେଜକୁ ଭଡ଼ାରେ ଦେବାକୁ ବହୁତ ଅନୁରୋଧ କଲାପରେ କିଏ ଆମର ଓ ତାଙ୍କର ଜଣାଶୁଣା ଲୋକ ଅଛନ୍ତି ବୋଲି ପ୍ରଥମେ ପଚାରିଲେ । ଏଥିରେ ଆମକୁ ବିଶେଷ ସାହାଯ୍ୟ କରିଥିଲେ ଶ୍ରୀଯୁକ୍ତ ସାତକଡ଼ି ହୋତା ଓ ସମ୍ମାନନୀୟା ଶ୍ରୀମତୀ ଗୀତା ହୋତା (ଏମାନେ ମୋର ମଉସା ମାଉସୀ) । ପ୍ରଫେସର ମିଶ୍ର ତାଙ୍କ ପରିବାରର ମଧ ବନ୍ଧୁ । ସେମାନେ କହିଥିଲେ ଦିନନାଥ ଓ ଶିବ ଅଛନ୍ତି ।

Digitized by srujanika@gmail.com

ତେଣୁ ତାଙ୍କୁ ଭଡ଼ାରେ ଦିଅନ୍ତୁ । ଆପଣଙ୍କ ଘରେ ଆର୍ଟ୍ କଲେଜ ହେବ, ମ୍ୟୁଜିୟମ୍ ପରି ଦିଶିବ । ଦେଶ ବିଦେଶରୁ ଲୋକେ ଆସିବେ, ଦେଖିବେ, ଖୁସିହେବେ, ସତକୁ ସତ ସେଇୟା ହେଲା । ସଂସ୍କୃତି ବିଭାଗ ସହ ଏକ ଚୁକ୍ତିନାମା ପରେ ତାଙ୍କ ଟେଲିଫୋନ୍ ମଧ ଆମେ ବ୍ୟବହାର କଲୁ । ବେଶୀ ଟଙ୍କା ହେବା ପରେ ଟେଲିଫୋନ୍ କଟିଗଲା । କଞ୍ଚନା ଛକ କୋଠାରେ କଲେଜ ହେବାପରେ ତାହା ବହୁତ ଲୋକମାନଙ୍କ ନଜରରେ ପଡ଼ିଲା । ସେ କୋଠାରେ ଅନେକ ପ୍ରଦର୍ଶନୀ, କଳାଶିବିର, ସେମିନାର୍, ପିକ୍‌ନିକ୍, ଷ୍ଟଡ଼ିଟୁର୍ ଆୟୋଜନ କରାଯାଇଥିଲା । ଅନେକ ସମୟରେ ବିଭିନ୍ନ ଉତ୍ସବକୁ ଓଡ଼ିଶା ସଂସ୍କୃତିକୁ ଭଲ ପାଉଥିବା ବହୁ ବନ୍ଧୁମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ଶରତ କୁମାର କର, ସେକ୍ ମତଲୁବ୍ ଅଲ୍ଲି, ଡକ୍ଟର ପ୍ରସନ୍ନ ପାଟଶାଣୀ, ଶରତ ରାଉତ, ଅଧ୍ୟାପକ ପ୍ରଫୁଲ୍ଲ ତ୍ରିପାଠୀ, ପ୍ରଫେସର ସୌରୀନ୍ଦ୍ର ବାରିକ, ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ, ପଣ୍ଡିତ ଦାମୋଦର ହୋତା, ସୂର୍ଯ୍ୟ ମିଶ୍ର, ଡକ୍ଟର ଭାବଗ୍ରାହୀ ମିଶ୍ର, ପ୍ରମୁଖ ଆସି ଯୋଗ ଦେଉଥିଲେ ।

ଦିନକର ଘଟଣା । ଘରର ମାଲିକ ପ୍ରଫେସର୍ ମିଶ୍ର ଥାନ୍ତି ଦିଲ୍ଲୀରେ । ତାଙ୍କ ପୋର୍ଟିକୋ ପାଚେରୀକୁ ରାତିରେ ସଂପୂର୍ଣ୍ଣ ଭାବେ ଲୋକ ଲଗାଇ ପାଠୀ ବାବୁ ଭାଙ୍ଗି ଦେଇଥାନ୍ତି । ପୁଣି ସକାଳ ଦଶଟା ବେଳକୁ ବିରାଟ ବିରାଟ ପଥର ଟ୍ରକରେ ଆସି ଗଦା ହୋଇଛି । କଲେଜର ପିଲାମାନେ ଲାଗିଗଲେ ଗାର୍ଡ଼େନ ସ୍କଲ୍‌ପଚର୍ କରିବା ପାଇଁ । କୋଣାର୍କ ମନ୍ଦିର ତିଆରି ହେଲା ପରି ନିହଣ ମୁହଁର ଠକ୍ ଠକ୍ ଶବ୍ଦରେ ଦିନରାତି କମ୍ପୁ ଥାଏ । ରାସ୍ତାରେ ଯାଉଥିବା ଲୋକ ପଶି ଆସି ଘଡ଼ିଏ ଘହିଁ ରହନ୍ତି । ତାଙ୍କ ପାଚେରୀ ଭଙ୍ଗାଯିବା କଥା ପ୍ରଫେସର ମିଶ୍ରଙ୍କୁ କିଏ ଜଣାଇ ଦେଇଥାଏ । ରାଗରେ ସେ ଦିନେ ହଠାତ୍ ଦିଲ୍ଲୀରୁ ମାଉସୀଙ୍କ ସହ ଆସି ଯେତେବେଳେ କର୍ମମୁଖର କଲେଜକୁ ଦେଖିଦେଲେ ପାଠୀ ବାବୁଙ୍କୁ ଓ ମୋତେ ଖୁସିରେ କୁଣ୍ଢାଇ ପକାଇ ସବୁ ପଥର ମୂର୍ତ୍ତିକୁ ଦେଖିଦେଇ କହିଲେ ମୋ ଘରଟିକୁ ଆପଣମାନେ ମ୍ୟୁଜିୟମ୍ କରିଦେଲେ । ଆମେ ବହୁତ ଖୁସି । କଲେଜ ଚୌକିଦାର ଭୁବନ ଟିକେ ଆଶ୍ୱସ୍ତି ଲାଭ କରିଥିଲା । କଲେଜର ବାର୍ଷିକ ପ୍ରଦର୍ଶନୀ ପାଇଁ ଥରେ ବିଗ୍ଚରକ ରୂପେ ଆସିଥାନ୍ତି ମାଡ୍ରାସ୍ ଆର୍ଟ୍ କଲେଜରୁ ଖ୍ୟାତନାମା ଶିଳ୍ପୀ କାନ୍ନିଆପାନ୍ ଓ ଆର୍.ବି. ଭାସ୍କରନ୍ । ସେମାନେ କଲେଜ ପରିସର ଦେଖି ଭୂୟସୀ ପ୍ରଶଂସା କରିଥିଲେ ଓ ଛାତ୍ରଛାତ୍ରୀ ତଥା ଅଧ୍ୟାପକମାନଙ୍କୁ ମାଡ୍ରାସ୍‌ର ଆର୍ଟିଷ୍ଟ ଭିଲେଜ୍ ଘ୍ଚଳମଣ୍ଡଳକୁ ନିମନ୍ତ୍ରଣ କରିଥିଲେ । ଭାରତ ବର୍ଷରେ ଦିନେ ବି.କେ. ଆର୍ଟ୍ କଲେଜ ବହୁତ ନାଁ କମାଇବ ଏକଥା ଉପସ୍ଥାନ ପୁସ୍ତିକାରେ ଲେଖି ଯାଇଥିଲେ ।

ପାଠୀ ବାବୁ ଅନେକ ସମୟରେ ବିଦେଶ ଗସ୍ତ କରୁଥାନ୍ତି । ସେ ଯେତେବେଳେ ବିଦେଶକୁ ଯାଆନ୍ତି ପ୍ରାୟ ଅଧିକାଂଶ ସମୟରେ ସେ ମୋତେ ହିଁ ପ୍ରିନ୍‌ସିପାଲ୍ ଘ୍ଚର୍ଜରେ ରଖି ଯାଉଥିଲେ । ସେ ଭଲ ଭାବେ ଜାଣିଥିଲେ ଯେ ମୁଁ ନିୟମିତ ଭାବେ କଟକରୁ ସକାଳ ଆଠରୁ ବାହାରି ବସ୍ ଧରି ରାଜମହଲରେ ପହଞ୍ଚିବି ସାଢ଼େ ନଅ ଦଶରେ ଓ ଠିକ୍ ୧୦ରେ କଲେଜରେ ପହଞ୍ଚିଯିବି । ଅଧ୍ୟାପକ ବନ୍ଧୁ ଓ କଲେଜର କର୍ମଘ୍ଚରୀମାନେ ତାଙ୍କ ଅନୁପସ୍ଥିତିରେ ସୁରୁଖୁରୁରେ କଲେଜ ଚଳେଇ ନେଉଥାନ୍ତି । ଏପରିକି ମାସ, ମାସ । ଥରେ ଥରେ ବନ୍ଧୁ ଅଧ୍ୟାପକ ଡି.ଏନ୍ ରାଓ ମୋତେ କହନ୍ତି ପାଠୀ ବାବୁ ସୁଇଜରଲ୍ୟାଣ୍ଡରୁ ଚିଠିଦେଇ ଗୋଟିଏ ଦୀର୍ଘ ତାଲିକା ପଠାଇଛନ୍ତି କଲେଜ ପାଇଁ କଣ କରିବାକୁ ହେବ ଓ କାହାକୁ ଦେଖା କରିବାକୁ ହେବ । ତେଣୁ ମୋର ଦିନରାତି, ନିଦ ନାହିଁ । କଲେଜ କାମ ନ କଲେ ଆସିଲେ ଗାଳି ଖାଇବି । ଠିକ୍ ଗଗନ ବାବୁ, ସୁବୁଦ୍ଧି ବାବୁଙ୍କୁ ବି ସେଇପରି ଅନୁରୋଧ ଚିଠି । ତାର କେତୋଟି ଉଦାହରଣ ଏଠାରେ ଦିଆଗଲା ।

ଦେବରାଜ ସାହୁ ମାଟି ଟେରାକୋଟା କାମ ପ୍ରଥମେ କଲେଜରେ ଆରମ୍ଭ କରାଇଥିଲେ । ତାହା ବହୁତ ଆଳଙ୍କାରିକ ଥାଇ ଉଚ୍ଚ ପ୍ରଶଂସିତ ହୋଇଥିଲା । ଆଧୁନିକ ପଥର ଭାସ୍କର୍ଯ୍ୟ, ନିମନ୍ତେ ତାଙ୍କୁ ଅଧିକ ଗବେଷଣା ନିମନ୍ତେ ବାହାରକୁ ପଠାଇବାକୁ ପାଠୀ ବାବୁ ସରକାରଙ୍କୁ ଚିଠି ଲେଖିଥିଲେ । ମାତ୍ର କେତେକ ଅନିବାର୍ଯ୍ୟ କାରଣରୁ ସେ ନିଜ ପୂର୍ବ ବିଭାଗକୁ ଫେରି ଯାଇଥିଲେ ।

ବି.କେ. ଆର୍ଟ୍ କଲେଜ ପାଇଁ ଆମେ ସବୁ ଦିନରାତି ବହୁତ ଖଟିଛୁ ଓ ପରିଶ୍ରମ କରିଛୁ । ଏପରିକି ସମସ୍ତଙ୍କ ପରିବାରର ସ୍ତ୍ରୀ, ଛୁଆପିଲାମାନେ ମଧ ଭଣା ଅଧିକେ ପ୍ରାୟ ଅଧିକାଂଶ ସମୟରେ

Digitized by srujanika@gmail.com

ବ୍ୟସ୍ତ ରହିଯାନ୍ତି । ଥରେ ଥରେ ଅଧ୍ୟାପକ ବଳଦେବ ମହାରଥୀ ମୋତେ କହିଥାନ୍ତି ସାର୍, ବି.କେ. ଆର୍ଟ୍ କଲେଜରେ ଖଟି, ଖଟି ମୁଁ ହାଲିଆ । ଉପଶାସନ ସଚିବ ଶ୍ରୀ ସୁଧାଂଶୁ ମୋହନ ରାଉତ୍‌ରାୟଙ୍କ କାମ ସହିତ ପୁଣି ପାଠୀ ବାବୁଙ୍କ କାମ । ତେଣୁ ଭାବୁଛି ମୁଁ ପି.ଆର୍. ଡିପାର୍ଟମେଣ୍ଟକୁ ପୁଣି ଫେରିଯିବି । ମହାରଥୀଙ୍କ ହାତରେ ଭଲ ଡିଜାଇନ୍ ଓ ଚିତ୍ର ହୁଏ ବୋଲି ବେଶି ଡାକରା ତାଙ୍କୁ ହିଁ ହେଉଥିଲା ।

ଓଡ଼ିଶାରେ ବି.କେ. ଆର୍ଟ୍ କଲେଜରେ ଯେତେବେଳେ ସିଲକ୍ ସ୍କ୍ରିନ୍ ପ୍ରିଣ୍ଟ ମାଧ୍ୟମରେ ଅଧ୍ୟାପକ ଡି.ଏନ୍. ରାଓ ପରଦା କନା, କ୍ୟାଲେଣ୍ଡର, ନବବର୍ଷର ଅଭିନନ୍ଦନ ପତ୍ର, ରଙ୍ଗିନ୍ ଗ୍ରାଫିକ୍ ପ୍ରିଣ୍ଟ କାମ ଆରମ୍ଭ କଲେ ତାହା କଲେଜ ଛାତ୍ରଛାତ୍ରୀମାନଙ୍କୁ ଅଧିକ ପ୍ରେରଣା ଦେବା ଆରମ୍ଭ କଲା । ମଝିରେ ମଝିରେ ଗ୍ରାଫିକ୍ ଆର୍ଟିଷ୍ଟ ବାବ୍‌ଲା ସେନାପତି, ରାମହରି ଜେନା ଆସି ପିଲାମାନଙ୍କୁ ପ୍ରିଣ୍ଟ ମେକିଂ ସଂପର୍କରେ ମଧ୍ୟ ଅଧିକ ତଥ୍ୟ ଯୋଗାଉ ଥିଲେ । ଯଦ୍ଦ୍ୱାରା କଳା ଛାତ୍ରଛାତ୍ରୀମାନେ ମଧ୍ୟ ବାହାରେ କାମ କରି କିଛି ଅର୍ଥ ରୋଜଗାର କରି ରଙ୍ଗ, ତୂଳୀ କିଣିବାକୁ ସକ୍ଷମ ହୋଇ ପାରୁଥିଲେ ।

ଏ ସବୁକଥା ଲେଖିଲା ବେଳକୁ ପୁଣି ମନେ ପଡ଼ିଯାଏ ପୁରୁଣା କଥା । ୧୯୮୦ ମସିହାରେ ପାଠୀ ବାବୁ ଓ.ଟି.ଡ଼ି.ସିରେ ଥିବା ବେଳେ ଆରମ୍ଭ କରିଥିଲେ ଚିତ୍ର ବାରମାସୀ । ବର୍ଷଯାକର କ୍ୟାଲେଣ୍ଡରରେ ପ୍ରତ୍ୟେକ ମାସରେ ଜଣେ ଜଣେ ଶିଳ୍ପୀ ତାଙ୍କ କଳା ପ୍ରଦର୍ଶନୀ କରିବା ପ୍ରୋଗାମ୍ ଛପା ହୋଇଥାଏ । ମୋର ଏକକ କଳା ପ୍ରଦର୍ଶନୀ ଉଦ୍‌ଘାଟନ କରିବା ପାଇଁ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ମୋର ଅନୁରୋଧ ରକ୍ଷାକରି ଉଦ୍‌ଘାଟନ କରିଥିଲେ । ଏଥିପାଇଁ ଓ.ଟି.ଡ଼ି.ସିର ଏମ୍.ଡ଼ି.ଙ୍କ ଠାରୁ ବିଧିବଦ୍ଧ ନିମନ୍ତ୍ରଣ ଥାଇ ଅନୁରୋଧ ପତ୍ର ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଯିବା କଥା । ପାଠୀ ବାବୁ ସେ କଥା ନକରି ମୋ ଜରିଆରେ ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କରିଥିଲେ । ମୁଖ୍ୟମନ୍ତ୍ରୀ ଆମ ଅନୁରୋଧ ସିଧା ସଳଖ ଗ୍ରହଣ କରିଥିବାରୁ ଏମ୍.ଡ଼ି ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ପଣ୍ଡା ଆମ ଉପରେ କ୍ଷୁବ୍ଧ ହୋଇଥିଲେ । ଚିତ୍ର ବାରମାସୀ ଓ.ଟି.ଡ଼ି.ସି ଦ୍ୱାରା ଆୟୋଜନ କରାଯାଇଥିଲା । ଏହି ସତନ୍ତ୍ର କଳା କାର୍ଯ୍ୟକ୍ରମ ଶିଳ୍ପୀ ଓ କଳାକାରଙ୍କୁ ଯଥେଷ୍ଟ ଆନନ୍ଦ ଦେଇଥିଲେ ମଧ୍ୟ ବିଭିନ୍ନ କାରଣରୁ ପରବର୍ତ୍ତୀ ସମୟରେ ତାହା ବନ୍ଦ କରାଯାଇଥିଲା । ଏଥିନିମନ୍ତେ ବହୁ ଶିଳ୍ପୀମାନଙ୍କ ମନରେ କ୍ଷୋଭ ଜାତ ହୋଇଥିଲା ଓ ସେହି ଜିଦ୍‌ରେ ପୁଣି ବି.କେ. ଆର୍ଟ୍ କଲେଜରେ ପାଠୀ ବାବୁ ଶିଳ୍ପୀମାନଙ୍କ ଏକକ କଳା ପ୍ରଦର୍ଶନୀ କରିବାର ବ୍ୟବସ୍ଥା କରିଥିଲେ । ଏହା ଓଡ଼ିଶାରେ ବୟସ୍କଠାରୁ ତରୁଣ ଗୋଷ୍ଠୀର ଶିଳ୍ପୀମାନଙ୍କ ମଧ୍ୟରେ ଆନନ୍ଦ ଦେଇଥିଲା ।[୪]

**ବି.କେ. ଆର୍ଟ୍ କଲେଜର ଛାତ୍ରଛାତ୍ରୀମାନଙ୍କ ନିମନ୍ତେ କଲେଜର ଲାଇବ୍ରେରୀରେ ପ୍ରଥମେ ସେପରି କିଛି କଳାପୁସ୍ତକ ନଥିଲା । ପାଠୀ ବାବୁ ତାଙ୍କ ନିଜର ସବୁ ଆର୍ଟ୍ ବହି, ଆଲ୍‌ବମ୍ ଓ କଳା ଇତିହାସ ପୁସ୍ତକ ଘରୁ ଆଣି ପିଲାମାନଙ୍କୁ ଦେଉଥିଲେ । ମୁଁ ବିଶିଷ୍ଟ ଶିଳ୍ପୀଙ୍କ ଚିତ୍ର ଏବଂ କଳା ପ୍ରଦର୍ଶନୀର ପେପର୍ କଟିଙ୍ଗ୍ ସବୁ ଏକତ୍ର କରି ସଜାଇ ରଖିଥିଲି । ପିଲାମାନଙ୍କୁ ଦେଖାଉଥିଲି ।** ଭାରତବର୍ଷ ଓ ଓଡ଼ିଶାର ବଡ଼ ବଡ଼ ଶିଳ୍ପୀମାନଙ୍କ ଚିତ୍ର ସହ ସେମାନଙ୍କର ଜୀବନୀ ଓ ଚିତ୍ର ସବୁ ଛାତ୍ରଛାତ୍ରୀଙ୍କୁ ଦେଖାଇଲେ ସେମାନେ ବହୁତ ଖୁସି ହେଉଥିଲେ । ପ୍ରକାଶ ଥାଉକି ସେ ସମୟରେ କଲେଜରେ କୌଣସି ଥିଓରି ଲେକ୍‌ଚରର୍ ନିଯୁକ୍ତି ପାଇ ନଥିଲେ । ପାଠୀ ବାବୁ ନିଜେ କଳା ଇତିହାସ ପିଲାମାନଙ୍କୁ ପଢ଼ାଉଥିଲେ ।

ବିଭିନ୍ନ ସମୟରେ ବି.କେ. ଆର୍ଟ୍ କଲେଜର ଛାତ୍ରଛାତ୍ରୀମାନେ ଦେଶ ବିଦେଶରେ ବହୁତ ସୁନାମ ଅର୍ଜନ କରିଛନ୍ତି । ଭାସ୍କର୍ଯ୍ୟରେ ଅଦ୍ୱୈତ ଗଡ଼ନାୟକ, ଆର୍ତ୍ତବନ୍ଧୁ ରାଉତ, ଜଗନ୍ନାଥ ପଣ୍ଡା, ଶୋଭନ କୁମାର, ଅଞ୍ଜନ ସାହୁ, ପ୍ରତାପ ଜେନା ଓ ଆଉ ସେମାନଙ୍କ ସହ ଚିତ୍ରକଳାରେ ଜୟନ୍ତ ପଣ୍ଡା, ଜ୍ୟୋତିରଞ୍ଜନ ପାଣିଗ୍ରାହୀ, ସୁଧାଂଶୁ ଭୂଷଣ ସୂତାର, ଚକ୍ରଧର ବେହେରା ଓ କଳା ଇତିହାସରେ ପ୍ରଦୋଷ ମିଶ୍ର, ଦିଲ୍ଲୀପ ତ୍ରିପାଠୀ ପ୍ରମୁଖ ଯୁବ ଶିଳ୍ପୀମାନେ ଯଥେଷ୍ଟ ସୁନାମ ଅର୍ଜନ କରିଛନ୍ତି । କଳା ଇତିହାସରେ ଡକ୍ଟରେଟ୍ ପାଇବାରେ ଦିଲ୍ଲୀପ ତ୍ରିପାଠୀ ପ୍ରଥମ ଛାତ୍ରଭାବେ ଏ କଲେଜର ଗୌରବ । ଏମାନଙ୍କ ବ୍ୟତୀତ ଆହୁରି ଅନେକ ଯୁବ ଭାସ୍କର୍ଯ୍ୟ ଶିଳ୍ପୀ ଓ ଚିତ୍ର ଶିଳ୍ପୀ ଅନ୍ତର୍ଜାତୀୟ, ଜାତୀୟ ତଥା ପ୍ରାଦେଶିକ ସ୍ତରର କଳା ପ୍ରଦର୍ଶନୀରେ ଭାଗନେଇ କଲେଜର ସୁନାମ ଆଣିଥିବା ଗୌରବର ବିଷୟ ।

Digitized by srujanika@gmail.com

**ବି.କେ. ଆର୍ଟ୍ କଲେଜରେ ଆମେ ସମସ୍ତେ ଗୋଟିଏ ପରିବାରର ଲୋକ ପରି ଚଳୁଥିଲୁ। ପ୍ରତ୍ୟେକ ଦିନର ସୁଖ-ଦୁଃଖ, ଭଲ-ମନ୍ଦ ସମସ୍ତେ ପରସ୍ପର ଭିତରେ ଆଲୋଚନା କରୁଥିଲୁ , ସୁଖଦୁଃଖରେ ଭାଗୀ ହେଉଥିଲୁ । ଆମେ ସବୁ ଅଧ୍ୟାପକ ଆମ ସ୍ତ୍ରୀ ଓ ଛୁଆପିଲାଙ୍କୁ ଧରି ଟ୍ରେନ୍‌ରେ ଏକାଠି ଶାନ୍ତିନିକେତନ, କଲିକତା ଯାଇ ଛାତ୍ରଛାତ୍ରୀଙ୍କ ଗହଣରେ ଗୋଟିଏ ବଡ଼ ପରିବାର ଭଳି ଚଳୁଥିଲୁ ।** ଡେପୁଟେସନ୍‌ରେ ବିଭିନ୍ନ ବିଭାଗରୁ ଆସିଥିବା ଅଧ୍ୟାପକମାନେ ଓଡ଼ିଶା ଲୋକସେବା ଆୟୋଗ ଦ୍ୱାରା କଲେଜରେ ନିୟମିତ ସ୍ଥାୟୀ ହେବା ପାଇଁ ଇଣ୍ଟରଭିଉ ଦେଇ ସାମୟିକ ଅସୁବିଧା ନିମନ୍ତେ ଗଭୀର ଦୁଃଖ ପ୍ରକାଶ କରି ମାନସିକ ଭାରସାମ୍ୟ ହରାଇ ବସିଥିଲେ । ମାତ୍ର ପରବର୍ତ୍ତୀ ସମୟରେ ସେ ସବୁର ସମାଧାନ ହୋଇ ସମସ୍ତେ ନିଜର ଅଭିଜ୍ଞତା ବଳରେ ସ୍ଥାୟୀ ଅଧ୍ୟାପକ ରୂପେ ଲୋକସେବା ଆୟୋଗ ଦ୍ୱାରା ମନୋନୀତ ହୋଇ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଦ୍ୱାରା ବି.କେ. ଆର୍ଟ୍ କଲେଜରେ ଯୋଗ ଦେଇଥିଲେ । ପୁରୁଣା ଅଧ୍ୟାପକ ଶିବ ପାଣିଗ୍ରାହୀ, ଡି.ଏନ୍.ରାଓ, ବଳଦେବ ମହାରଥାଙ୍କ ସହ ନୂଆ ଭାବେ ଆସି ସମୟ ଅନୁଯାୟୀ ଅଧ୍ୟାପକ ବ୍ୟୋମକେଶ ମହାନ୍ତି, ଦାମୋଦର ବେହେରା, ଜୟନ୍ତ କୁମାର ଦାସ, ଗଜେନ୍ଦ୍ର କୁମାର ପାଢ଼ୀ, ଶୈଳବାଳା ନାୟକ, ଗଜେନ୍ଦ୍ର ପ୍ରସାଦ ସାହୁ, ମାନସ ରଞ୍ଜନ ଜେନା, ମୀନକେତନ ପଟ୍ଟନାୟକ ପ୍ରମୁଖ ବିଭିନ୍ନ ବିଭାଗର ଦାୟିତ୍ୱ ନେଲେ । ଖଲ୍ଲିକୋଟ କଳା ମହାବିଦ୍ୟାଳୟରୁ ଅଧ୍ୟାପକ ଚନ୍ଦ୍ରମଣି ବିଶ୍ୱାଳ ବଦଳି ହୋଇ ଆସି ବି.କେ. ଆର୍ଟ୍ କଲେଜରେ କଳା ଇତିହାସ ବିଭାଗର ଦାୟିତ୍ୱ ନେଲେ । ଅଧ୍ୟାପକ ବ୍ୟୋମକେଶ ମହାନ୍ତି ବି.ଏଚ୍.ୟୁରୁ ପାସ୍ କରି ଆସି ଯୋଗ ଦେଇଥିବାରୁ କିଛି ନୂଆ ପ୍ରୋଗାମ୍ କରିବାକୁ ଇଚ୍ଛା କରି କଞ୍ଚନା ଛକରେ ଥିବା ବି.କେ. ଆର୍ଟ୍ କଲେଜରେ ପ୍ରଥମ କରି ଯୁଗଳବନ୍ଦୀ କାର୍ଯ୍ୟକ୍ରମର ଦାୟିତ୍ୱ ନେଇଥିଲେ । ବାଦ୍ୟ ଯନ୍ତ୍ରର ତାଳେ ତାଳେ ଆମେ ସବୁ ଅଧ୍ୟାପକ ଓ ଛାତ୍ରଛାତ୍ରୀମାନେ ମିଶି ରଙ୍ଗତୂଳୀ ମାଧମରେ ଯେଉଁ ଚିତ୍ର ଆଙ୍କିଥିଲୁ ତା ସମସ୍ତଙ୍କୁ ମୁଗ୍ଧ କରିଥିଲା - ପଣ୍ଡିତ ରବିଶଙ୍କର ଓ ପ୍ରସିଦ୍ଧ ଶିଳ୍ପୀ ଏମ୍.ଏଫ୍. ହୁସେନ୍‌ଙ୍କ ଯୁଗଳବନ୍ଦୀ ପରି ଏହି ଦୃଶ୍ୟକୁ ଦର୍ଶକମାନେ ମଧ ଉପଭୋଗ କରିଥିଲେ ।

ସମୟ ଗଡ଼ି ଚାଲୁଥାଏ । ଖଣ୍ଡଗିରି ପାଦ ଦେଶରେ ନୂଆ କୋଠା ତିଆରି ସରିଲା । ନୂଆ ଘରକୁ କଞ୍ଚନା ଛକରୁ ସମସ୍ତ ଜିନିଷପତ୍ର ବୁହା ହୋଇଗଲା । ପ୍ରକାଶ ଥାଉକି ଏହି ନୂଆ କୋଠାଟିର ନିର୍ମାଣ ଅଷ୍ଟଦଳ ପଦ୍ମମଣ୍ଡଳ ଯନ୍ତ୍ର ଉପରେ ବିଦେଶୀ ଢାଞ୍ଚାରେ ଗଢାହୋଇଥିଲା ଏବଂ ଏଥି ନିମନ୍ତେ ଦିନରାତି ଖରାତରାରେ ଆମେସବୁ ମିଳିମିଶି ଧାଁ ଧଉଡ଼ କରି ତଦାରଖ କରୁଥିଲୁ । ବିଶେଷ କରି ପାଠୀ ବାବୁଙ୍କ ସପ୍ନ ଥିଲା ଏହାକୁ ଏକ ଅନ୍ତର୍ଜାତୀୟ ସ୍ତରର କଳା ମହାବିଦ୍ୟାଳୟ ଭାବେ ଗଢ଼ିତୋଳିବାକୁ । ମାତ୍ର ବିଧିର ବିଧାନ ଅନ୍ୟ ପ୍ରକାର । ପାଠୀ ବାବୁ ଗଲାପରେ ମହା ବିଦ୍ୟାଳୟର କାମ ଅଧୁରା ରହିଗଲା । କଲେଜର ଶୁଭ ଉଦ୍‌ଘାଟନ ହୋଇଥିଲା ୧୯୯୪ ଅଗଷ୍ଟ ୫ ତାରିଖରେ । କେନ୍ଦ୍ର ଲଳିତ କଳା ଏକାଡ଼େମୀର ଚେୟାରମ୍ୟାନ୍ ଶ୍ରୀଯୁକ୍ତ ରାମନିବାସ ମିର୍ଦ୍ଧା ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ, ସଂସ୍କୃତି ମନ୍ତ୍ରୀ ଶ୍ରୀଯୁକ୍ତ ଚୈତନ୍ୟ ପ୍ରସାଦ ମାଝୀ ଓ ଜଳ ସେଚନ ମନ୍ତ୍ରୀ ଶ୍ରୀଯୁକ୍ତ ବିଜୟ ମହାପାତ୍ର ତଥା ଓଡ଼ିଶା ସଂସ୍କୃତି ବିଭାଗର ଉଚ୍ଚପଦସ୍ଥ କର୍ମଚାରୀମାନେ ଯୋଗ ଦେଇଥିଲେ । ପାଠୀ ବାବୁ କେନ୍ଦ୍ର ଲଳିତ କଳା ଏକାଡ଼େମୀ ଦିଲ୍ଲୀ ସଚିବ ଦାୟିତ୍ୱ ଗ୍ରହଣ କଲାପରେ ଚନ୍ଦ୍ରମଣି ବିଶ୍ୱାଳ ବି.କେ. ଆର୍ଟ୍ କଲେଜର ଅଧକ୍ଷ ପଦରେ ନିଯୁକ୍ତି ପାଇଲେ ।

ଚନ୍ଦ୍ରମଣି ବିଶ୍ୱାଳଙ୍କ ତତ୍ତ୍ୱାବଧାନରେ କଲେଜ ଚାଲୁଥିବା ବେଳେ ହଠାତ୍ କେତେକ ଅନିୟମିତତା ଦେଖାଦେବାରୁ ଓ କଲେଜର ଶିକ୍ଷକମାନଙ୍କ ମଧରେ ଅସନ୍ତୋଷ ଜାଗ୍ରତ ହେବାରୁ ଛାତ୍ରଛାତ୍ରୀମାନଙ୍କ ମଧରେ ନୈରାଶ୍ୟ ଭାବ ଦେଖାଦେଲା । ସରକାର ତାଙ୍କୁ ଖଲ୍ଲିକୋଟକୁ ବଦଳି କଲେ ଓ ଶ୍ରୀ ବିଶ୍ୱାଳ ବାଧ ହୋଇ ଛୁଟି ନେଇ ରହିଲେ । ସରକାର ଏହାକୁ ଉପଲବ୍ଧି କରି ପୁଣି ଖଲ୍ଲିକୋଟ କଳା ମହାବିଦ୍ୟାଳୟର ଅଧକ୍ଷ ଅଲେଖ ଚନ୍ଦ୍ର ସାହୁଙ୍କୁ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟର ଅଧକ୍ଷ ଦାୟିତ୍ୱ ଦେଲେ । ଏସବୁ ଘଟଣା ୨୦୦୦ ମସିହା ଭିତରେ ଘଟିଗଲା । ମୁଁ ୨୦୦୧ ଫେବୃୟାରୀ ମାସରେ ସରକାରୀ ଚାକିରିରୁ ଅବସର ଗ୍ରହଣ କଲି ।

Digitized by srujanika@gmail.com

ଡକ୍ଟର ଦିନନାଥ ପାଠୀ କେନ୍ଦ୍ର ଲଳିତ କଳା ଏକାଡ଼େମୀରୁ ଅବ୍ୟାହତି ନେଲାପରେ ଆଉ ଓଡ଼ିଶା ସରକାରଙ୍କ ଚାକିରିରେ ଯୋଗଦେବା ଉଚିତ ମନେକଲେ ନାହିଁ । ଯେଉଁମାନେ କଲେଜ ଦାୟିତ୍ୱରେ ଥିଲେ ସେମାନେ ଡକ୍ଟର ପାଠୀ ପୁଣି କଲେଜ ଫେରନ୍ତୁ ବୋଲି ଚାହୁଁନଥିଲେ । ସେ ଓଡ଼ିଶା ଲଳିତକଳା ଏକାଡ଼େମୀର ସଚିବ ରହନ୍ତୁ ବୋଲି ମଧ ମତ ପ୍ରକାଶ ପାଇଥିଲା । କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚିବ ରହିଲା ପରେ ପୁଣି ରାଜ୍ୟ ଲଳିତ କଳା ଏକାଡ଼େମୀକୁ ଫେରିବାକୁ ତାଙ୍କର ଇଚ୍ଛା ନଥିଲା ।[୪] ତେଣୁ ସେ ସେଚ୍ଛାକୃତ ଭାବେ ସରକାରୀ ଚାକିରିରୁ ଅବସର ନେଇ, ଚିତ୍ର ସୃଷ୍ଟି, ଗ୍ରନ୍ଥ ପ୍ରଣୟନ ଓ ସାହିତ୍ୟ ସୃଷ୍ଟିରେ ମନୋନିବେଶ କଲେ । ଓଡ଼ିଶାର ଶିଳ୍ପୀ ବିଶେଷ କରି ଯୁବ ପିଢ଼ିର ଶିଳ୍ପୀମାନଙ୍କୁ ଜାତୀୟ ସ୍ତରରେ ନାଁ କମାଇ ନିଜ ପାଦରେ କିପରି ଚାଲିବାକୁ ହୁଏ ତା'ର ଦିଗ୍‌ଦର୍ଶନ ସେ ଅଦ୍ୟାବଧି ଦେଉଛନ୍ତି ।

୧- ଡକ୍ଟର ଦିନନାଥ ପାଠୀ ମହାବିଦ୍ୟାଳୟରେ ଅଧକ୍ଷ ଭାବରେ ଯୋଗଦେଲାପରେ ହିଁ ରାଜ୍ୟ ସଂଗ୍ରହାଳୟ ପ୍ରାଙ୍ଗଣରେ ଛାତ୍ର ଗ୍ରହଣ ପାଇଁ ପ୍ରବେଶିକା ପରୀକ୍ଷା ଏବଂ କଲେଜ ଉଦ୍‌ଘାଟନ ପାଇଁ ଆୟୋଜନ କରାଯାଇଥିଲା । ଏହି ଉଭୟ କାର୍ଯ୍ୟକ୍ରମରେ ଡକ୍ଟର ପାଠୀ ଓ ତତ୍‌କାଳୀନ ସଂସ୍କୃତି ନିର୍ଦ୍ଦେଶକ ଶ୍ରୀଯୁକ୍ତ ସୁବାସ ପାଣିଙ୍କ ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଅତି ଦୁଃଖର କଥା ମହାବିଦ୍ୟାଳୟର ଉଦ୍‌ଘାଟନ ଉତ୍ସବରେ ଅଧକ୍ଷ ଦିନନାଥ ପାଠୀଙ୍କୁ ମଞ୍ଚ ଉପରେ ବସିବାର ସୁଯୋଗ ଦିଆଯାଇନଥିଲା ।

୨- ଭାରତ ସରକାର 'ଫେଷ୍ଟିଭଲ୍ ଅଫ୍ ଇଣ୍ଡିଆ' ପ୍ରଦର୍ଶନୀ କରିବା ପାଇଁ ମୋଟ ଦଶଲକ୍ଷ ଟଙ୍କା ଅନୁଦାନ ଦେଇଥିଲେ । ଏହି ଟଙ୍କା ଓଡ଼ିଶା ଲଳିତ କଳା ଏକାଡ଼େମୀରେ ଜମାଥିଲା । ଡକ୍ଟର ପାଠୀ ସେଥିରୁ ନଅଲକ୍ଷ ପଞ୍ଚଚାଳିଶି ହଜାର ଖର୍ଚ୍ଚକରି ପଞ୍ଚାବନ ହଜାର ଟଙ୍କା ଭାରତ ସରକାରଙ୍କୁ ଫେରସ୍ତ କରିଥିଲେ । ଅବଶ୍ୟ ଦଶ ବାର ବର୍ଷର ବ୍ୟବଧାନ ପରେ ତାହା କୋଡ଼ିଏ ପଚିଶ ଲକ୍ଷ ହୋଇପାରିଥାନ୍ତା ।

୩- ପ୍ରଫେସର ଡକ୍ଟର ମନ୍ମଥ ନାଥ ଦାସ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବାବେଳେ କଲେଜ ପରିଦର୍ଶନ କରିବାପାଇଁ ଗୋଟିଏ ଟିମ୍ ପଠାଇଥିଲେ । ସେ ଦଳରେ ପ୍ରଫେସର୍ କରୁଣା ସାଗର ବେହେରା, ପ୍ରଫେସର୍ ପ୍ରିୟମ୍ବଦା ମହାନ୍ତି ହେଜମାଦି ଓ ପ୍ରଫେସର୍ ଗଙ୍ଗାଧର ସାହୁ ଥିଲେ । ସେ ସମୟରେ ଡକ୍ଟର ପାଠୀ ଦିଲ୍ଲୀ ଗସ୍ତରେ ଥିଲେ । ସେ ଶିବବାବୁଙ୍କୁ ବନ୍ଧୁଭାବରେ କଲେଜ ଦାୟିତ୍ୱ ବୁଝିବା ପାଇଁ ଅନୁରୋଧ କରିଥିଲେ । ଶିବବାବୁ ଆହୁରି କଲେଜରେ ଯୋଗ ଦେଇ ନଥାନ୍ତି । ପରିଦର୍ଶନକାରୀ ଦଳ ଅଧକ୍ଷ ଓ କଲେଜକୁ ଭଲଭାବରେ ଜାଣିଥିବାରୁ ବିଶ୍ୱବିଦ୍ୟାଳୟ ସହ ଏଫିଲିଏସନ୍ ପାଇଁ ସୁପାରିଶ କରିଥିଲେ । ଏଥିଲା ଦି'ବର୍ଷିଆ ଇଣ୍ଟରମିଡ଼ିଏଟ୍ ପାଠ୍ୟକ୍ରମ ପାଇଁ ସ୍ୱୀକୃତି । ମେଜର ପି.କେ ଦାସ କୁଳପତିଙ୍କ ସ୍ୱତନ୍ତ୍ର କ୍ଷମତା ପ୍ରୟୋଗକରି ଡ଼ିଗ୍ରୀ ପାଠ୍ୟକ୍ରମ ପାଇଁ ପରେ ସ୍ୱୀକୃତି ଦେଇଥିଲେ ।

୪- ମୋ ପାଖକୁ ତାଙ୍କ ବ୍ୟକ୍ତିଗତ ଚିଠିରେ ଥରେ ଥରେ ସେ ବିଦେଶରୁ କଲେଜ ସମ୍ପର୍କୀୟ କେତେ କଥା ଲେଖିଥାନ୍ତି । ତାହାର କିଛିତ ଉଦାହରଣ ଏଠାରେ ପାଠକମାନଙ୍କ ପାଇଁ ଉଲ୍ଲେଖ କରୁଛି ।

James Park

London, 6th June 93

ନମସ୍କାର ନେବେ । କିଛିଦିନ ହେବ ଚିଠି ଲେଖିବି ଲେଖିବି ଭାବି ଡେରି ହୋଇଗଲାଣି । Victoria and Albert Museum ଆଉ British Museum କାମ ସାରିଲିଣି ।

x x x x Art gallery ବୁଲୁଛି । Exhibition ଦେଖୁଛି । ଏଠି Indian Painter ମାନଙ୍କର ଗୋଟିଏ Group Exhibitionର Inaugurationକୁ ଯାଇଥିଲି । Bhupen Khakar, Vivan Sundaram, Saroj Gogipal, Nalini Malini, Ravinder Reddy ଭାଗ ନେଇଥିଲେ । ସେଠି ଆମ ଓଡ଼ିଶାର ପ୍ରଫୁଲ୍ଲ ମହାନ୍ତିଙ୍କ ସାଙ୍ଗରେ ଦେଖା ହେଲା । ମୁଁ ଆମ B. K. Art College କଥା କହିଲି ଓ Catalogue ସମସ୍ତଙ୍କୁ ଦେଲି । ସମସ୍ତେ ବହୁତ ଖୁସିହେଲେ । x x x x ସବୁବେଳେ ଭାବୁଛି ଏମିତି ଜାଗାକୁ ଦୁଇ ଚାରିଜଣ ସାଙ୍ଗ ମିଶିକରି ଆସିExhibition କରନ୍ତେ । Sponsorship ବିନା ଏହା ସମ୍ଭବ ନୁହେଁ । ଲକ୍ଷାଧିକ ଟଙ୍କା ଦରକାର । Oriya Artist ପାଇବେ କେଉଁଠୁ ? ବିଭିନ୍ନ ଅସୁବିଧା ସତ୍ତ୍ୱେ ଆମେ କେତେ ଜଣ ଓଡ଼ିଶାରେ ଯାହା କିଛି କରିଛେ ।

ଏଠାରେ Art Exhibition, Research କରିବା ପାଇଁ ବହୁତ ସୁବିଧା ଯାହା କଳ୍ପନା କରିହେବନି । ସମସ୍ତେ ପ୍ରାୟ Free Lancer । ଆମେ ଓଡ଼ିଶାରେ ଶିଳ୍ପୀମାନେ ଖୁବ୍ ଅଭାଗା । କିରାଣିମାନଙ୍କ ପାଖରେ ଗୋଡ଼ ଭାଙ୍ଗି ଠିଆ ହୋଇ ଦିନ ଯାଉଛି ।

କଲେଜ କଥା ବୁଝୁଥିବେ । ଇତି

ଆପଣଙ୍କର ଦିନନାଥ ୬.୬.୯୩

Digitized by srujanika@gmail.com

British Council, 10, Spring Gardens, London
14th June

Dear Siba babu,
It is a nice feeling to write to you from far off London. I had come to see this Art College. Quite large building with one thousand students. The teachers are amiable
The B. K. Art College catalogues, we had published, really saved my face. I presented W.A.'s, Cuttack the City of my Love, and our College catalogues at the institutes I visited. These were highly appreciated. We have to send the other publications of our college after I return to Orissa.

With my regards to all of you
and greetings from London
Yours
Dinanath

Festival of India
Bangalore
28th Dec.
Dear Siba babu,
Please be strict and vigilant in the college and also see that all classes start properly in time. Hope Devaraj Sahoo has returned with new knowledge on metal casting. Also tell him to place order for a truck load of large stones for carving modern sculptures in the college.

With my regards and
best wishes for a happy New Year
Yours
Dinanath

୬- ଦିଲ୍ଲୀ ଛାଡ଼ିବା ଭିତରେ ଦିନନାଥ ବାବୁ ନେହେରୁ ଫେଲୋସିପ୍ ପାଇସାରିଥିଲେ । ପରେ ପରେ "ଆଲିସ୍ ବୋନର ଇନ୍‌ଷ୍ଟିଚ୍ୟୁଟ୍" ବନାରସର ନିର୍ଦ୍ଦେଶକ ଭାବେ ଯୋଗଦେଲେ ଏବଂ ଅଦ୍ୟାପି ସେ ସେଠାରେ କାର୍ଯ୍ୟରତ ।

ସମ୍ପାଦକ

Digitized by srujanika@gmail.com

ଡି.ଏନ୍. ରାଓ

## ଜୀବନ : ଯେତେ ଯାତନା, ଯେତେ ବିଡ଼ମ୍ବନା, ସେତେ ଆସ୍ପର୍ଦ୍ଧା

ମୋ ଦାଦା କହନ୍ତି - ରୂପ କଲେ ବାୟା ହୋଇଯିବୁ । କିନ୍ତୁ ଚିତ୍ର ଆଙ୍କିବାକୁ ଭାରି ଇଚ୍ଛା । ଥରେ ଭଞ୍ଜନଗରରେ ଠାକୁରାଣୀ ଯାତ୍ରା ହେଉଥାଏ । ମୋ ଦାଦା ପୁଅ ଭାଇକୁ ଶ୍ରୀକୃଷ୍ଣ ବେଶ କଲି । ତା' ଦେହରେ ସିଧା ନୀଳରଙ୍ଗର ଏନାମେଲ୍ କଲର୍ ବୋଲି ଦେଲି । ଏଥିଲାଗି ଦାଦାଙ୍କଠୁ ପ୍ରବଳ ମାଡ଼ ଖାଇଲି । ରବିବାର ଓ ଛୁଟିଦିନମାନଙ୍କରେ ଆମ ଗାଁ ଲୋହରାଖଣ୍ଡି ନଈ ବାଲିରେ ସୁନ୍ଦର ସୁନ୍ଦର ଦୁର୍ଗମାନ ତିଆରି କରୁ । ସମୟ କେମିତି କଟେ, ଜଣା ପଡ଼େନାହିଁ । ଖାଇବା ପିଇବା କଥା ଭୁଲିଯାଉ । ଶେଷରେ ସାନ ଭାଇନା ପାଖରୁ ମାଡ଼ ଖାଏ । ଘରେ ମୋ ପାଇଁ ଚିନ୍ତା - ଇଏ କ'ଣ ହେବ ?

ମୋ ବଡ଼ ଭାଇନା ରଘୁନାଥ ରାଓ ୧୯୬୪ ମସିହାରେ ଭୁବନେଶ୍ୱରରେ ଚାକିରି ପାଇଲେ । ମୁଁ ମଧ୍ୟ ଭୁବନେଶ୍ୱର ଆସିଲି । ଭାଇନା ଓ.ଆର.ଟି.ରେ ଚାକିରି କରିବାକୁ କହିଲେ । କିନ୍ତୁ ମୋର ଇଚ୍ଛା ନଥାଏ । ମୁଁ ଆର୍ଟିଷ୍ଟ୍ ହେବାକୁ ଚାହେଁ । ଭୁବନେଶ୍ୱର ମୋତେ ଭଲ ଲାଗୁନଥାଏ । ପିଲାଦିନର ସାଙ୍ଗମାନଙ୍କ କଥା ମନେ ପଡୁଥାଏ । ଭଞ୍ଜନଗରର ପାହାଡ଼, ପାହାଡ଼ର ଖସଡ଼ା ପଥର, ପାହାଡ଼ ଉପରର ବାଘ ଗୁମ୍ଫା, ରସଲକୋଣ୍ଡା ଘାଇ, ଲୋହରାଖଣ୍ଡି ନଈ, ନଈର ବଡ଼ ବଡ଼ ପଥର, ନଈ ତଡ଼ର ଶୁଣ୍ଠି ତୋଟାର ସ୍ମୃତି ସବୁ ମୋତେ ପଛରୁ ଟାଣୁଥାନ୍ତି । ନୂଆ ଜାଗା କାହାରି ସହ ପରିଚୟ ନାହିଁ । ବରା, ସିଙ୍ଗଡ଼ାକୁ ଦେଖିଲେ ଦୁଃଖ ଲାଗେ । କାରଣ ଇଡ଼ଲି, ଦୋଷା, ଚଟଣି, ସମ୍ବର ଭୁବନେଶ୍ୱରରେ ସେତେବେଳେ କମ୍ ମିଳୁଥାଏ । ଦିନେ ବିନ୍ଦୁସରୋବର କଡ଼ ବାସୁଦେବ ମନ୍ଦିର ପାଖରେ ଦେଖିଲି ଲେଖିକା ଷ୍ଟୁଡ଼ିଓ ନାମରେ ସୁନ୍ଦର ବୋର୍ଡ଼ଟିଏ ମରାଯାଇଛି । ପାଖକୁ ଯାଇ ଦେଖିଲି, କେତେଗୁଡ଼ିଏ ଚିତ୍ର କାନ୍ଥରେ ଟଙ୍ଗା ହେଇଛି । ଏତିକିବେଳେ ହଠାତ୍ ପଛଆଡୁ ଜଣେ ଭଦ୍ରଲୋକ ମୋ କାନ୍ଧରେ ହାତ ଦେଇ ପଚାରିଲେ କ'ଣ ଦେଖୁଛ ? ତୁମେ କିଏ ? ପୂରା ଗଞ୍ଜାମ ଭାଷାରେ ମୋ ପରିଚୟଟି ଦେଲି । ସେ ଖୁସି ହୋଇ ମୋତେ ଭିତରକୁ ନେଲେ । ଭିତରେ ଆଉ ତିନି ଜଣ ଭଦ୍ରଲୋକ ବସି ଚିତ୍ର କରୁଛନ୍ତି । ସେମାନେ ହେଲେ, ଏନ୍. ଚନ୍ଦ୍ରଶେଖର ରାଓ, ଦିନନାଥ ପାଠୀ ଏବଂ ରଙ୍ଗନାଥ ସାଇଁ । ପ୍ରଥମ ବ୍ୟକ୍ତିଟି ହେଉଛନ୍ତି କାଶୀନାଥ ଜେନା । ଏ ସମସ୍ତେ ସେତେବେଳକୁ ଖଲ୍ଲିକୋଟ କଳା ମହାବିଦ୍ୟାଳୟରୁ ପାଶ୍ କରିସାରିଛନ୍ତି । ରାଓ ବାବୁ ଓ ପାଠୀ ବାବୁ ସେକ୍ରେଟେରିୟଟ୍‌ରେ ଚାକିରି କରୁଥିଲେ । ଜେନା ବାବୁ ଓ ରଙ୍ଗ ବାବୁ ଚାକିରି ପାଇନଥାନ୍ତି । ଷ୍ଟୁଡ଼ିଓଟି କରିଥାନ୍ତି । ଆଡ୍‌ଭୋକେଟ୍ ଅଖିଳ ମୋହନ ପଟ୍ଟନାୟକ ଫେମିଲ୍ଲି ପ୍ଲାନିଂ ଅଫିସ୍‌ର କେତେଗୁଡ଼ିଏ ହୋଡ଼ିଂ ଆଣି ଲେଖିକା ଷ୍ଟୁଡ଼ିଓକୁ ଚିତ୍ର କରିବାକୁ ଅର୍ଡ଼ର ଦେଇଥିଲେ । ସେ କାମଗୁଡ଼ିକ ଯୋଗେଶ ନିବାସରେ ହେଉଥାଏ । ଏଥର ମୋତେ ସମସ୍ତେ ଗଞ୍ଜାମୀ ଭାଷାରେ ଆକ୍ରମଣ କଲେ । ତମେ ଆର୍ଟିଷ୍ଟ ହବ କି ହେ ? ମୁଁ ତେଲୁଗୁ ମିଶା ଗଞ୍ଜାମ ଭାଷାରେ କଥା କହୁଥାଏ । ମୋ ଉପରେ ଏପରି ଆକ୍ରମଣ କଲେ ଯେ, ମୁଁ ମଝିରେ ମଝିରେ ତେଲୁଗୁରେ ମଧ୍ୟ ଜବାବ ଦେଇଦେଉଥାଏ । ଏଥିରେ ଚନ୍ଦ୍ର ରାଓ ମୋତେ ବହୁତ ସାହାଯ୍ୟ କରନ୍ତି । ତୁମେ ଏଠାରେ ଚାକିରି କରିବ ? ମୁଁ ଖୁସି ହେଇ 'ହଁ' କହିଲି । ପାଠୀ ବାବୁ ସେ କମିଟିର ଚେୟାରମେନ୍ ପରି କଥା କହୁଥାନ୍ତି । ସେ ଆଣ୍ଠୁଯାଏ ନାଲି ଗାମୁଛା ପିନ୍ଧିଥିଲେ । ମୁହଁରେ ମେଞ୍ଚାଏ ଦାଢ଼ି । ଚେହେରାଟା ଏପରି ଥିଲା ଯେ, ଜୋର୍‌ରେ ପବନ ହେଲେ ଉଡ଼ିଯିବେ । ପାଠୀ ବାବୁ ପାଟିରେ ଦାନ୍ତକାଠି ଧରି ଆଗରେ ଚାଲିଲେ । ତାଙ୍କ ପଛରେ ରଙ୍ଗ ବାବୁ ଟ୍ରାଞ୍ଜିଷ୍ଟର୍ ବଜେଇ ବଜେଇ ଯାଉଥାନ୍ତି । ରାଓ ବାବୁ, ମୁଁ ଓ ଜେନା ବାବୁ ପଛରେ ଚାଲିଲୁ । ମୁଁ କିନ୍ତୁ ଜାଣି ପାରିଲିନି, କୋଉଠିକୁ ଆମେ ଯାଉଛୁ । **ସମସ୍ତେ କୋଟିତୀର୍ଥ ରାସ୍ତାଦେଇ କେଦାରଗୌରୀକୁ ଗାଧୋଇବାକୁ ଗଲେ । ସେଠାରେ ମୁଁ ରେଡ଼ିଓ, ସାବୁନ୍, ଗାମୁଛା ଜଗି ବସିଲି । ଗାଧୁଆରୁ ଫେରି ପାଠୀ ବାବୁ ଓ ସମସ୍ତେ ତମେ ଚାକିରି ପାଇଗଲ ହେ ବୋଲି ଘୋଷଣା କଲେ ।** ପାଠୀ ବାବୁ ଓ ରାଓ ବାବୁ

Digitized by srujanika@gmail.com

ସେକ୍ରେଟେରୀଏଟ୍ ଚ୍ଲିଗଲେ । ମୋତେ ଆଦେଶ ହେଲା ସନ୍ଧ୍ୟାରେ ଯୋଗେଶ ନିବାସରେ ଦେଖା କର । ମୁଁ ଘରକୁ ଫେରିଲି ଓ ସନ୍ଧ୍ୟାରେ ଧଳା ପ୍ୟାଣ୍ଟ ଓ ଧଳା ସାର୍ଟ ପିନ୍ଧି ଯୋଗେଶ ନିବାସରେ ଦେଖାକଲି । ମୋତେ ଦେଖି ସମସ୍ତେ ବହେ ହସିଲେ ଆଉ କହିଲେ, ସାର୍ଟ୍ ପ୍ୟାଣ୍ଟ ବାହାର କର । କାମରେ ଲାଗିଯା, ତମର ଚାକିରି ଆରମ୍ଭ । ମୋର କାମ ହେଲା, ବିଶାଳକାୟ ହୋର୍ଡ଼ିଂ ବୋର୍ଡ଼ ସବୁକୁ ବାଲିକାଗଜରେ ଘଷି ପ୍ରାଇମର୍ ଲଗେଇବା । ପରେ ଗୋଟିଏ ନୀଳରଙ୍ଗର ଫ୍ଲାଟ୍ କଲର୍ ଦେବା । ରଙ୍କ ବାବୁ ଓ ମୁଁ ମିଶି ଚିତ୍ରର ଷ୍ଟେନ୍‌ସିଲ୍ ମାରୁ ଏବଂ ଫ୍ଲାଟ୍ କରୁ । ପାଠୀ ବାବୁ ଓ ରାଓ ବାବୁ ଅଫିସ୍‌ରୁ ଫେରିବା ପରେ ଦୁହେଁ ଛବିକୁ ଫିନିସିଂ କରନ୍ତି । ଶେଷରେ ଜେନା ବାବୁ ବାହାରେଁ ଫୁଲ୍ ବର୍ଷାଓ, ମେରା ମେହେବୁବ୍ ଆୟାହେ ଗାଇ ଗାଇ ଚକ୍ଷୁଦାନ ଦେଲାପରି ଛୋଟ ପରିବାର-ସୁଖୀ, ବଡ଼ ପରିବାର-ଦୁଃଖୀ ବୋଲି ଅକ୍ଷର ଲେଖିଯା'ନ୍ତି । ଏପରି କେତେମାସ ମୋର ଚାକିରି ଚାଲିଲା । ବଡ଼ ପରିବାରର ଡ୍ରଇଁ ସବୁରେ ଲାଇନ୍ ମାରିବା ଶିଖିଗଲି । ମୋର ପରିଶ୍ରମ ଓ କାମରେ ଆଗ୍ରହ ଦେଖି ସମସ୍ତେ ମୋତେ ଭଲ ପାଇଲେ । କାମ ସରିଲା ଏବଂ ମୋର ଚାକିରି ମଧ ସରିଗଲା । ଚାରି ପାଞ୍ଚ ମାସର ଦରମା ବାବଦରେ ନବେ ଟଙ୍କା ପାଇଲି । ସେଥିରେ ମୁଁ ବହୁତ ଖୁସି ହେଲି କାରଣ ସେ ଥିଲା ମୋର ଜୀବନର ପ୍ରଥମ ରୋଜଗାର ।

ଇତି ମଧ୍ୟରେ ମୋର ପରିବାର ସହ ଏହି ଶିଳ୍ପୀମାନଙ୍କର ପରିଚୟ ହୋଇଗଲା । ମୋତେ ଖଲ୍ଲିକୋଟ କଳା ବିଦ୍ୟାଳୟରେ ପଢ଼େଇବାକୁ ବାପାଙ୍କୁ ଅନୁରୋଧ କଲେ ସେମାନେ । ବାପାଙ୍କର ଇଚ୍ଛାଥିଲେ ମଧ ଅର୍ଥ ଅଭାବରୁ ବାପା ମନା କରିବାକୁ ବାଧ ହେଲେ । ଗୋଟେ ଦୁଇଟା ବର୍ଷ ଘରେ ବସିବାକୁ ପଡ଼ିଲା । 'ଲେଖିକା ଷ୍ଟୁଡ଼ିଓ'ରେ ହିଁ ଆସି ବସେ । ମୋର ଇଚ୍ଛା ଖଲ୍ଲିକୋଟରେ ପଢ଼ିବି । ତା ବ୍ୟତୀତ ଅନ୍ୟ କିଛି କରିବି ନାହିଁ । ଶେଷରେ ରଘୁନାଥ ଭାଇନା ଓ ଭାସ୍କର ଭାଇନା ରାଜି ହେଲେ ପଢ଼େଇବା ପାଇଁ । ବାପା ମଧ ଖୁସି ହେଲେ । କିନ୍ତୁ ସେହିବର୍ଷ ଏଣ୍ଟ୍ରାନ୍ସ ପରୀକ୍ଷା ସରିଯାଇଥିବା ଯୋଗୁଁ ପରବର୍ଷକୁ ଅପେକ୍ଷା କରିବାକୁ ପଡ଼ିଲା । ରାଓ ବାବୁ, ପାଠୀ ବାବୁ ଓ ଜେନା ବାବୁ କେହି ବାହା ହେଇ ନଥିଲେ । ସମସ୍ତେ ମେସ୍ କରି ରହୁଥିଲେ । ମୁଁ ବହୁତ ସମୟ ସେହିଠାରେ କଟାଏ । ଦେଖୁ ଦେଖୁ ବର୍ଷଟିଏ ବିତି ଗଲା । ଏହା ଭିତରେ ଶିଳ୍ପୀ ଅନନ୍ତ ପଣ୍ଡାଙ୍କ ସହ ମୋର ପରିଚୟ ହେଇଗଲା । ତାଙ୍କର ପ୍ରଥମ ଛାତ୍ର ହେଉଛନ୍ତି ଦିନନାଥ ପାଠୀ ପରେ କାଶୀନାଥ ଜେନା । ତେଣୁ ସେ ଭୁବନେଶ୍ୱର ଆସିଲେ ସେମାନଙ୍କ ପାଖରେ ବହୁତ ସମୟରେ ରହନ୍ତି ।

୧୯୬୭ ମସିହାରେ ଖଲ୍ଲିକୋଟ ବିଦ୍ୟାଳୟକୁ ଏଣ୍ଟ୍ରାନ୍ସ ଦେବାକୁ ଭାଇନାଙ୍କ ସହ ଗଲି । କେବଳ ପଣ୍ଡା ସାର୍‌ଙ୍କୁ ହିଁ ମୁଁ ଜାଣେ । ଅନ୍ୟ କାହାରିକୁ ମୁଁ ଜାଣି ନଥିଲି । ସାର୍‌ଙ୍କୁ ଦେଖାକଲି । ସେ କହିଲେ, ମୋର ପରିଚୟ ଏଠାରେ ଦିଅନାହିଁ । ଯଦି ଦିଅ ତେବେ ଏଠାରେ ସିଟ୍ ପାଇବା ମୁସ୍କିଲ୍। ଏହାଶୁଣି ମୋତେ ଚାରିଆଡ଼େ ଅନ୍ଧାର ଦିଶିଲା । ମୁଁ କ'ଣ କରିବି ? ପୁଣି ସାର୍ କହିଲେ, ମୋତେ ଏଠାରେ କେହି ଭଲ ପାଆନ୍ତି ନାହିଁ । ଏଠାରେ ମୋ କଥା ରହିବ ନାହିଁ । ମୁଁ ମୋ ଭାଗ୍ୟକୁ ଆଦରି ପରୀକ୍ଷାଟି ଦେଇ ଭୁବନେଶ୍ୱର ଫେରିଲି । ସବୁକଥା ପାଠୀ ବାବୁ ଓ ଅନ୍ୟମାନଙ୍କୁ କହିଲି । ସେମାନେ ମୋତେ ସାହସ ଦେଇ କହିଲେ, ତୁମ ହାତ ଖୁବ୍ ଭଲ । ତୁମେ ନିଶ୍ଚୟ ସିଟ୍ ପାଇବ । ବ୍ୟସ୍ତ ହୁଅନାହିଁ । କିନ୍ତୁ ଯା ଭିତରେ ମାସେ ଚାଲିଗଲାଣି । କିଛି ଖବର ନଥାଏ । ଭାରି ବ୍ୟସ୍ତ ଲାଗୁଥାଏ। ଶେଷରେ ଶୁଭ ଖବର ଥାଇ ଚିଠିଟିଏ ପାଇଲି । ତୁମେ ତୁରନ୍ତ ଆସି ଜଏନ୍ କର । ଏହା ସହ ସ୍କଲର୍‌ସିପ୍ ମଧ ପାଇଲି । ଘରେ ଭାରି ଖୁସି ହେଲେ । ସେହିବର୍ଷ ହିଁ ସେକ୍ରେଟେରିଏଟ୍‌ରୁ ଆସି ପାଠୀ ବାବୁ ବୋଧହୁଏ ସେଣ୍ଟ୍ରାଲ୍ ସ୍କୁଲ୍‌ରେ ଆର୍ଟ୍‌ଟିଚର୍ ଭାବେ, ଆସିକା ଟେକ୍‌ନିକାଲ୍ ସ୍କୁଲ୍‌ରେ ଚନ୍ଦ୍ରଶେଖର ରାଓ ଆର୍ଟ୍‌ଟିଚର୍ ଭାବେ ଏବଂ କାଶୀନାଥ ଜେନା ଫେମ୍ଲିପ୍ଲାନିଂରେ ଆର୍ଟିଷ୍ଟ କମ୍ ଫଟୋଗ୍ରାଫର୍ ଭାବେ ଜଏନ୍ କଲେ ।

Digitized by srujanika@gmail.com

ଏହା ଭିତରେ ମୁଁ ପଣ୍ଡା ସାର୍‌ଙ୍କ ପ୍ରିୟ ଛାତ୍ର ହୋଇଗଲି । ସେ ସବୁବେଳେ କହନ୍ତି, ପାଠୀ ହେଉଛି ମୋର ପ୍ରଥମ ଛାତ୍ର ଏବଂ ଖୁବ୍ ପ୍ରିୟ ମଧ୍ୟ । ତା' ସହ ଟକ୍କର ଦେବାକୁ ଓଡ଼ିଶାରେ ବର୍ତ୍ତମାନ କେହି ନାହାନ୍ତି କି ଭବିଷ୍ୟତରେ ନଥିବେ । ମଝିରେ ମଝିରେ ମୋର ଅଜାଣତରେ ମୋ ପାଟିରୁ ବାହାରି ଆସେ, ସାର୍ ମୁଁ କ'ଣ ପାଠୀ ବାବୁଙ୍କ ପରି ପ୍ରିୟ ଛାତ୍ର ହୋଇପାରିବି ନାହିଁ ? ସେ କହନ୍ତି, ତମେ ମୋର ପ୍ରିୟ ଛାତ୍ର ନିଶ୍ଚୟ ହେଲେ ପାଠୀ ଭଳି ହେବାକୁ ହେଲେ ତୁମକୁ ବହୁତ ପରିଶ୍ରମ କରିବାକୁ ହେବ । ସାର୍ ଆପଣ ଯାହା କହିଲେ ସବୁ କରିବି । ସାର୍ କହନ୍ତି, ତା ହେଲେ ଚାଲ ଆସନ୍ତାକାଲି ଚିଲିକାରେ ମାଛ ଧରିବା । ସେଇଠି କ୍ଲାସ୍ କରିବା । ସେତେବେଳେ ଅନନ୍ତ ପଣ୍ଡାଙ୍କ ପେଣ୍ଟିଂ କ୍ଲାସ୍‌ରେ ମୁଁ କେବଳ ଏକମାତ୍ର ଛାତ୍ର ଏବଂ ମୋର ଏକମାତ୍ର ଗୁରୁ ଅନନ୍ତ ପଣ୍ଡା । ଯଦିଓ ସେ ସମୟରେ ପଣ୍ଡା ସାର୍‌ଙ୍କ ସହ ସମସ୍ତଙ୍କର ବିଦ୍ୱେଷ ଲାଗି ରହିଥାଏ । ଏଣୁ ଛାତ୍ର ଜୀବନରେ ପଣ୍ଡା ସାର୍‌ଙ୍କ ଛାତ୍ର ହିସାବରେ ମୋତେ ବହୁତ ଦୁଃଖ ଓ ଯନ୍ତ୍ରଣା ସହିବାକୁ ପଡ଼ିଥିଲା । ଏପରିକି ବିନୋଦ ସାର୍ (ବିନୋଦ ରାଉତରାୟ) ମଧ୍ୟ ମୋତେ ଭୁଲ୍ ବୁଝି କମ୍ ନମ୍ବର ଦେଲେ । କିନ୍ତୁ ଭଗବାନଙ୍କ ଆଶୀର୍ବାଦରୁ ଆଜି ଗ୍ରାଫିକସ୍ ଅଧ୍ୟାପକ ହୋଇପାରିଲି । ଭଗବାନଙ୍କ ଆଶୀର୍ବାଦ ଦିନନାଥ ପାଠୀଙ୍କ ମାଧ୍ୟମରେ ମୋ ଉପରେ ଅଜାଡ଼ି ହୋଇ ପଡ଼ିଲା । ତେଣୁ ଆମେ ଯେଉଁଠିକୁ ଗଲୁ ସେଠାରେ ଧରିନିଅ କ୍ଲାସ୍‌କଲୁ । ମାଛ ଧରିବା ଦ୍ୱାରା ଏକାଗ୍ରତାର ବୃଦ୍ଧି ଘଟେ ଏବଂ ଏହା ଜଣେ ଚିତ୍ରକର ପାଇଁ ଅତ୍ୟନ୍ତ ଆବଶ୍ୟକ ବୋଲି ସାର୍ କହନ୍ତି । ସେ ମୋତେ ରବୀନ୍ଦ୍ର ସଙ୍ଗୀତ ଗାଇବା, ସୀତାର ବଜେଇବା ଶିଖେଇଲେ । ପ୍ରାୟ ସବୁଦିନ ତାଙ୍କୁ ମୁଁ ଶାନ୍ତିନିକେତନ କଥା ପଚାରେ । ସେ ଯେମିତି ବର୍ଣ୍ଣନା କରନ୍ତି ମୁଁ ଅନୁଭବ କରେ ଯେ ଶାନ୍ତିନିକେତନରେ ମୁଁ ଅଛି । ମୁଁ ସାର୍‌ଙ୍କ ଘରେ ରହି ପାଠ ପଢୁଥାଏ ।

ମୋର ଶେଷବର୍ଷ ପରୀକ୍ଷା ଚାଲିଥାଏ । ହଠାତ୍ ଖବର ଆସିଲା, ମୋର ବାପା ଚାଲିଗଲେ । ଏହା ଶୁଣି ମୁଁ ଭୁବନେଶ୍ୱର ଆସିଲି । ହେଲେ ବାପାଙ୍କୁ ଆଉ ଦେଖିପାରିଲି ନାହିଁ । ମନକୁ ଏକ ଶକ୍ତ ଧକ୍କା ଲାଗିଲା । ତାହା ମୁଁ କେବେ ଭୁଲି ପାରିବି ନାହିଁ । ଖଲ୍ଲିକୋଟରୁ ପରୀକ୍ଷା ଦେଇ ଆସିଲି । ପରୀକ୍ଷାଫଳ ବାହାରି ନଥାଏ । ବେକାରଟାରେ କ'ଣ କରିବି ? ସେହି ସମୟରେ 'ଶିଳ୍ପୀ ସଂସଦ' ସଂସ୍ଥା ତରଫରୁ ଭୁବନେଶ୍ୱରରେ 'ଚିତ୍ରମ୍ ସ୍କୁଲ୍ ଅଫ୍ ଆର୍ଟ୍' ଚାଲିଥାଏ । ଏହି ସ୍କୁଲ୍‌ର ପ୍ରଭାବ ଖଲ୍ଲିକୋଟ ସ୍କୁଲ ଉପରେ ମଧ୍ୟ ପଡ଼ିଥାଏ । କାରଣ ଏଠାକାର ଷ୍ଟାଫ୍ ଖଲ୍ଲିକୋଟ ଷ୍ଟାଫ୍ ଠାରୁ କିଛି କମ୍ ନୁହନ୍ତି । ଏଠାରେ ଅସିତ୍ ମୁଖାର୍ଜୀ, ଅସୀମ୍ ବସୁ, ଦିନନାଥ ପାଠୀ, ଉଦୟ ଜେନା, ବୈଷ୍ଣବ ସାମଲ, ଦେବରାଜ ସାହୁ, ମଦନ ପଣ୍ଡା ଓ ଅନ୍ୟାନ୍ୟ ଶିଳ୍ପୀମାନେ ଶିକ୍ଷା ଦେଉଥାନ୍ତି । ଅସୀମ୍ ଦା' ଏବଂ ପାଠୀ ବାବୁଙ୍କୁ ମୁଁ ଦେଖା କଲି । ମୋର ସବୁକଥା କହିଲି । ଦୁହେଁ କ'ଣ କଥା ହେଲେ କେଜାଣି, **ମୋତେ ପାଠୀ ବାବୁ ପଚାରିଲେ, କ'ଣ ତୁମେ ଚିତ୍ରମ୍‌ରେ ଅଧ୍ୟାପକ ଚାକିରି କରିବ ? ପ୍ରଥମେ ମୁଁ କିଛି ବୁଝିନପାରି ମୋ ଅଜାଣତରେ ମୁଣ୍ଡ ଟୁଙ୍ଗାରିଲି । ସାଙ୍ଗେ ସାଙ୍ଗେ ପାଠୀ ବାବୁ ଦୁଇଟି କାଗଜ ବଢ଼ାଇ ଦେଲେ । ଗୋଟିଏ ଚିଠି ହେଉଛି ଏପୋଏଣ୍ଟମେଣ୍ଟ ଲେଟର୍, ଦ୍ୱିତୀୟଟି ହେଉଛି ଚିତ୍ରମ୍ ସ୍କୁଲ୍‌ର ରୁଟିନ୍ ।** ଚିତ୍ରମ୍ ସ୍କୁଲ୍‌ର ଛାତ୍ରମାନେ ମୋ' ଠାରୁ ବୟସରେ ଯଥେଷ୍ଟ ବଡ଼ । ସମସ୍ତେ ମୋତେ ସାର୍ ସାର୍ ବୋଲି ଡାକିଲେ, ପ୍ରଣାମ କଲେ । ଗୋଟିଏ କଥା ମନେ ପଡ଼ିଗଲା । ସେହି ସମୟରେ ରାଜମହଲ ଛକର ଲଟେରୀ ପ୍ରଚାର କଥା । କିଏ କହିପାରେ, ଏକ ଟଙ୍କା ବିନିମୟରେ ଆଜିର ଦାଣ୍ଡର ଭିକାରୀ କାଲି ସକାଳେ ଲକ୍ଷେ ଦଶହଜାର ଟଙ୍କାର ମାଲିକ ନ ହୋଇପାରେ !! କଥାଟି ସତ ପରି ଲାଗିଲା । ଚିତ୍ରମ୍‌ର ଛାତ୍ରମାନେ ହେଲେ, ପ୍ରଭାତ ମିଶ୍ର, (ଏବେକାର ଇଂଜିନିୟର ଇନ୍ ଚିଫ୍), ରବି ତ୍ରିପାଠୀ, (ଏବେକାର ସୁପରିଟେଣ୍ଡିଙ୍ଗ୍ ଇଂଜିନିୟର), କାଶୀନାଥ ସାହୁ, (ପି.ଡବ୍ଲୁ.ଡ଼ି ବିଭାଗର ଡ୍ରାଫସ୍ ମେନ୍) ବିନୋଦିନୀ ମିଶ୍ର, (ଏବେକାର ସମ୍ବଲପୁର ଲ' କଲେଜ ପ୍ରିନ୍‌ସିପାଲ) ଏବଂ ଏସ୍. ଜୟନ୍ତୀ, ମୀରା ଦେ, ଭଗବାନ ସାହୁ ଇତ୍ୟାଦି । ଏମାନଙ୍କ ଭିତରେ ଛାତ୍ରୀ ପୁଷ୍ପା ଜୈନ ଅନ୍ୟତମ । ଏମାନଙ୍କର ଶିକ୍ଷକ ଥିଲି ମୁଁ କିନ୍ତୁ ସମସ୍ତଙ୍କଠୁ ବୋଧେ କନିଷ୍ଠତମ । ଶାନ୍ତିନିକେତନ ଦେଖିବାର ପ୍ରବଳ ଇଚ୍ଛାଥାଏ ।

Digitized by srujanika@gmail.com

ପଣ୍ଡା ସାର୍‌ଙ୍କ ଠାରୁ ଶୁଣିଛି କେତେ କଥା । ପାଠୀ ବାବୁ ସେଣ୍ଟ୍ରାଲ୍ ସ୍କୁଲ୍ ଛାଡ଼ି ୧୯୭୨ ମସିହାରେ ରାଜ୍ୟ ସଂଗ୍ରହାଳୟରେ କ୍ୟୁରେଟର୍ ଭାବେ ଯୋଗ ଦେଇଥା'ନ୍ତି । ମୁଁ ବି.ଜେ.ବି କଲେଜରେ ଚାକିରି କରିଥାଏ । ଆମ ଦୁଇଜଣଙ୍କର ପ୍ରତ୍ୟେକ ଦିନ ସାକ୍ଷାତ ହୁଏ । ସେ କଥାଛଳରେ କହିଲେ ରାଓ ତମେ ମୋ ସହ ଶାନ୍ତିନିକେତନ ଆସିବ ? ସେଠି କଳାଭବନରେ ଗୋଟେ ସେମିନାର୍‌ରେ ମୋର ଟକ୍ ଦେବାର ଅଛି । ମୁଁ ଖୁସିରେ ହଁ ମାରିଲି । କିଛିଦିନ ପରେ ଶାନ୍ତିନିକେତନ ବାହାରିଲି । ହାଓ୍ବଡ଼ାରେ ଓହ୍ଲେଇ ଶାନ୍ତିନିକେତନ ଟ୍ରେନ୍‌ରେ ଚଢ଼ିଲୁ । ପ୍ରଥମ ଥର ପାଇଁ ଟ୍ରେନ୍‌ରେ ବାଉଲ୍ ଗୀତ ଶୁଣିଲି । ପଣ୍ଡାସାର୍‌ଙ୍କ କଥା ବହୁତ ମନେ ପଡ଼ିଲା । ରାତିରେ ପାଠୀ ବାବୁ ଓ ମୁଁ ବିଶ୍ୱଭାରତୀର ଗେଷ୍ଟହାଉସ୍‌ରେ ରହିଲୁ । ଆଖିରେ ନିଦ ନାହିଁ । କାରଣ ସକାଳ ହେଲେ ମୋର ବହୁଦିନର ଇପ୍‌ସିତ ଶାନ୍ତିନିକେତନକୁ ପ୍ରାଣଭରି ଦେଖିବି । ପାଠୀ ବାବୁ ଶୋଇଥାନ୍ତି । ଆଉ ମୁଁ ଶୋଇ ରହିପାରିଲିନି । ଭୋର ସାଢେ ଚାରିରୁ ବିଛଣାରୁ ଉଠି ତଳକୁ ଆସିଲି । ଦେଖିଲି ଚୌକିଦାରଟେ ଅଛି । ତାକୁ ଅନୁରୋଧ କରି ସାଇକେଲ ଗୋଟେ ମାଗିଲି । ସେ ଦୟାପୂର୍ବକ ନିଜ ସାଇକେଲ୍‌ଟି ମୋତେ ଦେଲା । ସାଇକେଲ୍ ଧରି ଚାଲିଲି । କଳାଭବନ, ଚୀଇନା ଭବନ, କିଙ୍କର ଦା'ଙ୍କର ସାନ୍ତାଳ ପରିବାର, ଗାନ୍ଧି, ସୁଜାତା, ଭାସ୍କର୍ଯ୍ୟଗୁଡ଼ିକ ଦେଖିଲି । ଶ୍ରୀନିକେତନ ଗଲି । କିନ୍ତୁ ପଣ୍ଡା ସାର୍ ଯୋଉ ଶାନ୍ତିନିକେତନର ସ୍କେଚ୍ ମୋ ଭିତରେ ଆଙ୍କି ଦେଇଥିଲେ, ତାହା ମୁଁ କୋଉଠି ବି ପାଇଲିନି । ଏଣେ ସକାଳ ନଅ ହେଲାଣି । ସବୁ କ୍ଲାସ୍‌ଗୁଡ଼ିକ ଖୋଲିଗଲାଣି । ଦାଦା ଓ ଦିଦିମାନେ ସାଇକେଲ୍‌ରେ ଛୁଟୁଛନ୍ତି । ଯାହାକୁ ଦେଖିଲି, ମୋର ସେହି ଗୋଟିଏ କଥା । 'ଶାନ୍ତିନିକେତନ କୋଥାଏ ?' ସମସ୍ତଙ୍କଠୁ ସେହି ଗୋଟେ ଉତ୍ତର । 'ଏଇ ଯେ ଶାନ୍ତିନିକେତନ ।' ଶେଷରେ ପାଠୀ ବାବୁ ଓ ଚୌକିଦାର୍‌ର ସାଇକେଲ୍ କଥା ମନେପଡ଼ିଲା । ତୁରନ୍ତ ଗେଷ୍ଟହାଉସ୍ ଫେରିଲି । ଦେଖିଲି ସେଠାରେ ଚହଳ ପଡ଼ିଛି । ଚୌକିଦାର୍‌ର ସାଇକେଲ୍ କିଏ ଠକେଇ ନେଇଯାଇଛି । ମୁଁ ମୁଣ୍ଡ ତଳକୁ କରି ସାଇକେଲ୍‌ଟି ଫେରେଇଲି । ପାଠୀ ବାବୁ କାନମୂଳରେ ଚୁପ୍‌ଚୁପ୍ ପଚାରିଲେ, 'ଶାନ୍ତିନିକେତନ ଦେଖିଲ ?' କହିବାକୁ ଗଲେ ପାଠୀ ବାବୁଙ୍କ ଲାଗି ହିଁ ମୁଁ ପ୍ରଥମେ ଶାନ୍ତିନିକେତନ ଦେଖିଲି ।

୧୯୭୧ ମସିହାରେ ବି.ଜେ.ବି କଲେଜର ପ୍ରାଣୀ ବିଜ୍ଞାନ ବିଭାଗରେ ଆର୍ଟିଷ୍ଟ କମ୍ ଫଟୋଗ୍ରାଫର୍ ଭାବେ ଯୋଗ ଦେଲି । ଅବନ୍ତୀ ଭାଉଜ (ପାଠୀ ବାବୁଙ୍କ ସ୍ତ୍ରୀ) ଓ କୁନୁ (ତାଙ୍କ ପୁଅ) ବାଲେଶ୍ୱରରେ ପ୍ରାୟ ରହନ୍ତି । ମୁଁ ପ୍ରାୟ ସବୁବେଳେ ପାଠୀ ବାବୁଙ୍କ ଘରେ ଥାଏ । ପାଠୀ ବାବୁ ମଧ୍ୟ ବି.ଜେ.ବି କଲେଜ ଆସନ୍ତି । **ଦିନେ ଦୁର୍ଗା ପଣ୍ଡାଙ୍କ ସହ କ୍ୟାମେରା ଧରି ପାଠୀ ବାବୁ ବି.ଜେ.ବି କଲେଜ ଆସିଲେ । 'ଆସ ତୁମର ଫଟୋ ଉଠାଯିବ ।' ମୁଁ ପଚାରିଲି, 'କାହିଁକି ?' "ପରେ କଥା ହେବା । ଆଗେ ଆସ ।' ମୁଁ ଦାଢ଼ି କାଟିନାହିଁ କହିଲି । 'ଦାଢ଼ିରୁ କ'ଣ ମିଳିବ ? ଏଇ ବାରଣ୍ଡାରେ ବସ ।' କହି ଫଟୋ ଉଠେଇ ଚାଲିଗଲେ । ମୁଁ କିଛି ବୁଝିପାରିଲିନି । ବୋଧେ ମୋ ଜୀବନ ଏକ ନୂତନ ମୋଡ଼ ନେଲା ଭାବିଲି ।** କାରଣ ପରେ ମୁଁ ଜାଣିଲି 'ଓ୍ୱା' ପ୍ରଥମ କରି କାଟଲଗ୍ ଛାପି ଗ୍ରୁପ ସୋ କରୁଛି । ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟ ଏସୋସିଏସନ୍ କିମ୍ବା 'ଓ୍ୱା' ୧୯୬୯ ରୁ ପ୍ରତିଷ୍ଠା ହୋଇଥିଲା । କିନ୍ତୁ ଏହା ଏବେ ଅନ୍ୟ ଏକ ରୂପ ନେଇଛି । ଏଥିରେ ସଭ୍ୟଥିଲେ ଆଠ ଜଣ । ପ୍ରତ୍ୟେକ ମାସରେ ପ୍ରଦର୍ଶନୀ ହୁଏ । ଯାହାଫଳରେ ଆମର ସମୟ କଟେଇବା ପାଇଁ ଗୋଟେ ଉଚିତ ବାହାନା ମିଳିଯାଉଥିଲା । ଏଥିରେ ସଭ୍ୟମାନେ ହେଲେ ଡଃ ଜେ.ପି. ଦାସ, ଆଇ.ଏ.ଏସ୍, କାଶୀନାଥ ଜେନା, ଦୁର୍ଗା ପଣ୍ଡା, ବି. ଦଣ୍ଡପାଣି, ପୁଷ୍ପା ଜୈନ, ଡି.ଏନ୍. ରାଓ, ଅନନ୍ତ ପଣ୍ଡା, ଚେୟାରମେନ୍ ଏବଂ ଦିନନାଥ ପାଠୀ, ସେକ୍ରେଟେରୀ । ସମସ୍ତଙ୍କ ଠାରୁ ମୁଁ ବୋଧ ହୁଏ ତ ଥିଲି କନିଷ୍ଠ ।

ଦିନକର ଘଟଣା । ଜୋରସୋର୍‌ରେ ପ୍ରଦର୍ଶନୀ ଚାଲିଥାଏ । ଆମମାନଙ୍କର ଫଟୋଗ୍ରାଫ୍ ଏବଂ ପେଣ୍ଟିଂର ଫଟୋଗ୍ରାଫ୍ ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଖବରକାଗଜରେ ତଥା ଟେଲିଗ୍ରାଫ୍ ଭଳି

Digitized by srujanika@gmail.com

ଇଂରାଜୀ କାଗଜରେ ପ୍ରକାଶ ପାଇଥାଏ । ପତ୍ରପତ୍ରିକାରୁ ଜାଣି ଆମ ବି.ଜେ.ବି କଲେଜର ପ୍ରାଣୀ ବିଜ୍ଞାନର ପ୍ରାଧ୍ୟାପକ କହିଲେ, 'ଆପଣ ତ ବଡ଼ ଆର୍ଟିଷ୍ଟ୍ ହୋଇଗଲେଣି । ଏହି ଦୁଇଟି ଡାଇଗ୍ରାମ୍ ଟିକିଏ କରିଦେବେ ।' ଏଣେ ପୁଣି ପାଠୀ ବାବୁ କହିଛନ୍ତି ସନ୍ଧ୍ୟା ଘରିଟା ସୁଦ୍ଧା ମୋତେ ମ୍ୟୁଜିୟମ୍‌ରେ ପହଞ୍ଚିବାକୁ ପଡ଼ିବ । କାରଣ କଟକରେ 'ଓ୍ୱା'ର ଗ୍ରୁପ୍ ସୋ କରିବୁ । ୟୁନିୟନ୍ କ୍ଲବର ହଲ୍‌ଟି ଦେଖିବାକୁ ଯିବୁ । ତେଣୁ ଡାଏଗ୍ରାମ୍ ଦୁଇଟି କରିବାକୁ ବସିଲି । ତା'ର ସାଇଜ୍ ହେଉଛି ୨ ଇଞ୍ଚ x ୨ ଇଞ୍ଚ । ବହିରେ ଛପା ହୋଇଥିବା ଚିତ୍ରକୁ ଟ୍ରେସିଂ ପେପର୍‌ରେ କେବଳ ଉତାରିବା କଥା । ସେଥିରେ ମାତ୍ର କେତେଟା ବିନ୍ଦୁ ଓ କେତେଟା ଗାର ଛଡ଼ା ଅନ୍ୟ କିଛି ନାହିଁ । ଚିତ୍ର ଦୁଇଟି ମୁଁ ଅଧଘଣ୍ଟାରେ ସାରିଦେଲି । ପ୍ରାଧ୍ୟାପକଙ୍କୁ ନେଇ ଦେଖେଇଲି । ସେ ଦେଖି ହସିଲେ ଏବଂ କହିଲେ, 'ଏହା ସାଇଣ୍ଟିଫିକ୍ ଡାଏଗ୍ରାମ୍ । ଏହା ଆଙ୍କିବା ଏତେ ସହଜ ନୁହେଁ । ଏହା ଆଙ୍କିବାକୁ ଘରିଦିନ ଦରକାର ।' ଏହା କହି ମୋତେ ଫେରାଇ ଦେଲେ । ମୁଁ ବହୁତ ଚିନ୍ତାରେ ପଡ଼ିଲି । ସବୁତ ଠିକ୍ ଅଛି ଭାବି ରଖିଦେଇ କଟକ ଘଲିଲି ।

କଟକରେ ପ୍ରଦର୍ଶନୀ ଦୁଇତିନି ଦିନପରେ ଆରମ୍ଭ ହେବ । ପାଠୀ ବାବୁ ଏହାପାଇଁ ନ୍ୟୁଜ୍ ତିଆରି କରି ମୋତେ ଦେଲେ । ତାକୁ ମୁଁ କାର୍ବନ ପକେଇ ଘରି କପି କଲି । ସେଥିରେ ମୁଁ ଦସ୍ତଖତ କରି ସାଇକେଲରେ ଯାଇ **ମାତୃଭୂମି** ପାଇଁ ବରେନ୍ଦ୍ର କୃଷ୍ଣ ଧଳଙ୍କୁ **ପ୍ରଜାତନ୍ତ୍ର** ପାଇଁ ଜଗଦୀଶ ପାଣିଙ୍କୁ ଓ **ସମାଜ** ପାଇଁ ପ୍ରଦୋଷ ପଟ୍ଟନାୟକଙ୍କୁ ଦେଇଆସିଲି । ପ୍ରଦର୍ଶନୀ ପୂର୍ବରୁ ସବୁ କାଗଜରେ ନ୍ୟୁଜ୍ ବାହାରିଲା । ଆଜି କଟକରେ ପ୍ରଦର୍ଶନୀ । ପୁଷ୍ପାଜୈନ ତାଙ୍କର ମାଟାଡ଼ୋର୍ ଗାଡ଼ିରେ ସାମୀଙ୍କ ସହ ଆସିଲେ । ସେଥିରେ ଛବିତକ ରଖି ରବି ତ୍ରିପାଠୀ, ପ୍ରଭାତ ମିଶ୍ର, ମୁଁ ଏବଂ ପାଠୀ ବାବୁ ଘଲିଲୁ କଟକ । ଆଗରୁ ପାଠୀ ବାବୁ କାଶୀ ଜେନାଙ୍କୁ କହିଥିଲେ, ତାଙ୍କ ଅଫିସ୍‌ର ଫେମ୍ଲିପ୍ଲାନିଂ ଡିସ୍‌ପ୍ଲେବୋର୍ଡ୍ ୟୁନିୟନ କ୍ଲବ୍ ଠାରେ ସଜେଇ ରଖିବାକୁ । ଆମେ ୟୁନିୟନ କ୍ଲବ୍‌ଠାରେ ପହଞ୍ଚିଲୁ । ଫେମ୍ଲିପ୍ଲାନିଂ ଡିସ୍‌ପ୍ଲେବୋର୍ଡ୍ ପଛପଟକୁ ସାମ୍ନା କରି ଆମର ଛବିଗୁଡ଼ିକ ଟାଙ୍ଗିଲୁ । **ପ୍ରଜାତନ୍ତ୍ର** ସଂପାଦକ ଶୀହର୍ଷ ମିଶ୍ର ଉଦ୍‌ଘାଟନ କରି ପ୍ରଶଂସା କରି କହିଲେ ଉତ୍କଳ ଦେଶର ଉତ୍କୃଷ୍ଟ କଳା .......... **ମାତୃଭୂମି** ସଂପାଦକ ବିଚିତ୍ରାନନ୍ଦ କର ବହୁ ପ୍ରଶଂସା କରି କଥା କହିଲେ । କଟକରେ ତିନିଦିନ ଧରି ପ୍ରଦର୍ଶନୀ ହେଲା । ପ୍ରଥମରୁ ହାତରୁ ଘନ୍ଦା କରି ନିଜ ପଇସାରେ ତିନି ଘରିଖଣ୍ଡ ଛବିର ବ୍ଲକ୍ କରିରଖିଥାଉ । କାରଣ ୧୯୭୨-୭୩ ମସିହାରେ ଓଡ଼ିଶାରେ ଅଫସେଟ୍ ମେସିନ୍ ନଥାଏ ଏବଂ ଆମର ପତ୍ରପତ୍ରିକାରେ ବ୍ଲକ୍ ସହ ନ୍ୟୁଜ୍ ବାହାରିବା ଦରକାର । ରାତିରେ ପାଠୀ ବାବୁ ବସି ପ୍ରଦର୍ଶନୀର ରିଭ୍ୟୁ ଲେଖନ୍ତି । ପରେ ତାକୁ କାର୍ବନ ପକେଇ ମୁଁ ବହୁ ଯତ୍ନରେ ଉତାରି ଲେଖା ସହ ବ୍ଲକ୍ ନେଇ ସାଇକେଲ୍‌ରେ ପ୍ରଜାତନ୍ତ୍ର ପ୍ରେସ୍ ଯାଇ ଘ', ପାନ ଦେଇ ବ୍ଲକ୍ ସହ ଛାପିବାକୁ ଅନୁରୋଧ କରେ । ସେଠାରେ ଛପା ସରିବା ମାତ୍ରେ ପୁଣି ସାଇକେଲ୍ ମାରି **ମାତୃଭୂମି, କଳିଙ୍ଗ** ତା'ପରେ ଭୁବନେଶ୍ୱର ଫେରି **ସରାଜ୍ୟ** ଅଫିସ୍‌ରେ ଦେଇଆସେ । ନ୍ୟୁଜ୍ ବାହାର କରିବା କାମ ମୋର । ରିଭ୍ୟୁ ଲେଖିବା ଦାୟିତ୍ୱ ପାଠୀ ବାବୁଙ୍କର ।

**ପାଠୀ ବାବୁ ଥରେ ମୋତେ କହିଲେ ତୁମେ ଗୋଟେ ଏକକ ପ୍ରଦର୍ଶନୀ କର । କିନ୍ତୁ ମୋର ସାହସ ହେଉ ନଥାଏ । ଆର୍ଥିକ ଅସଚ୍ଛଳତା ପାଇଁ । ୧୯୭୩ ମସିହାରେ ଦୁଇ ତିନି ହଜାର ଟଙ୍କା ମୁଁ ମୋ ଦରମାର ଏରିଏର୍ ପାଇଲି । ଟଙ୍କା ପାଇବା କଥା ଭାଇଙ୍କୁ କହିବା ସହ ଏକ ଚିତ୍ରକଳା ପ୍ରଦର୍ଶନୀ କରିବା କଥା ବି କହିଲି ।** ତୁମ ବାହାଘର ପାଇଁ ବି କିଛି ଟଙ୍କା ସଂଚୟ କରି ରଖ । ଭାଇନା କହିଲେ । କିନ୍ତୁ ମୁଁ ଏକକ ପ୍ରଦର୍ଶନୀ କରିବି କହିଲାରୁ ଦୁଃଖ କଲେ । ସେ ଦୁଃଖ କରିବା ଗୋଟେ ଦୃଷ୍ଟିରୁ ଠିକ୍ ଥିଲେ ମଧ୍ୟ ମୋ ପାଇଁ ଏକକ ଚିତ୍ରକଳା ପ୍ରଦର୍ଶନୀ କରିବା ନିହାତି ଆବଶ୍ୟକ ଥିଲା । ୧୯୭୩ ମସିହା ଭୁବନେଶ୍ୱର ଚିଲଡ୍ରେନସ୍ ପାର୍କ ପଛ ପଟେ ଥିବା ଅର୍ଦ୍ଧଚନ୍ଦ୍ରାକୃତି ଘରେ ପ୍ରଦର୍ଶନୀ କଲି ଏବଂ ଘରି ପୃଷ୍ଠାର ଓ୍ୱା ବୁଲେଟିନ୍ ପାଠୀ ବାବୁ ବାହାର କଲେ ।

Digitized by srujanika@gmail.com

ପ୍ରଦର୍ଶନୀ ଉଦ୍‌ଘାଟନ କଲେ ଡକ୍ଟର. ଡି.ସି. ମିଶ୍ର, ଡି.ପି.ଆଇ (ହାୟର) । ଏଥିପାଇଁ ପାଠୀ ବାବୁଙ୍କର ଅବଦାନ ବହୁତ । ସବୁ ଖବର କାଗଜରେ ନ୍ୟୁଜ୍ ଓ ରିଭ୍ୟୁ ମଧ୍ୟ ବାହାରିଲା । ଏସବୁ ପଢ଼ିଲା ପରେ ବଡ଼ ଭାଇନା ବହୁତ ଖୁସି ହେଲେ । ଯଦି ମୁଁ ସେହି ସମୟରେ ପ୍ରଦର୍ଶନୀ କରିବାକୁ ସାହସ କରିନଥାନ୍ତି, ବୋଧେ ଆଜି ଶିଳ୍ପୀଟିଏ ହୋଇ ବଞ୍ଚି ନଥାନ୍ତି । ସେବେ ଠାରୁ ପାଠୀ ବାବୁଙ୍କ ପ୍ରତି ମୋର ଭକ୍ତି ଏବଂ ସମ୍ମାନ ଆସ୍ତେ ଆସ୍ତେ ବଢ଼ିବାକୁ ଲାଗିଲା । ଯାହାଫଳରେ ଆଜି ମଧ୍ୟ ମୁଁ ପାଠୀ ବାବୁ ନ କହି ପାଠୀ ସାର୍ ବୋଲି କହି ସମ୍ବୋଧନ କରେ । କିନ୍ତୁ ସେ ମଧ୍ୟ ଛାଡ଼ିବା ଲୋକ ନୁହଁ । ମୋତେ ରାଓ ସାର୍ ବୋଲି ଡାକିବା ସହ ଗାଳି ମଧ୍ୟ ଦିଅନ୍ତି । ଗାଳିରେ କିନ୍ତୁ ଆନ୍ତରିକତା ଭରି ରହିଥାଏ ।

'ଓ୍ଵା' ସଭ୍ୟମାନେ ଆସ୍ତେ ଆସ୍ତେ ଦୂରକୁ ଚାଲିଗଲେ । ପୁଷ୍ପା ଜୈନ, ଜେ.ପି. ଦାସ ଦିଲ୍ଲୀକୁ ବଦଳି ହେଇଗଲେ । ଦୁର୍ଗା ପଣ୍ଡା, ବି. ଦଣ୍ଡପାଣି ନୀରବ ଦର୍ଶକ ହୋଇ ରହିଗଲେ । କାଶୀଜେନା କଟକ ବଦଳି ହୋଇଗଲେ । ଅନନ୍ତ ପଣ୍ଡା ପାରିବାରିକ ଅସ୍ଥିରତାରେ ବ୍ୟସ୍ତ ରହିଲେ । ଶେଷରେ ମୁଁ ଓ ପାଠୀ ବାବୁ 'ଓ୍ଵା'କୁ ଧରି ଭୁବନେଶ୍ୱରରେ ରହିଲୁ । ସେହି ସମୟରେ ଚନ୍ଦ୍ରଶେଖର ରାଓ ଆସ୍କାରେ ରହୁଥିଲେ ମଧ୍ୟ ଆମକୁ ସହଯୋଗ କରୁଥିଲେ । ପରେ ପରେ ରାମହରି ଜେନା ଆମ ସହିତ ସାମିଲ୍ ହେଲେ । ସେହି ସମୟରେ ନିଜକୁ ବଡ଼ ବୋଲାଉଥିବା ଚିତ୍ରଶିଳ୍ପୀମାନେ 'ଓ୍ଵା' ସଂସ୍ଥା ଓ ଆମକୁ ଦେଖି ଥଟ୍ଟା କରିବାରେ ଲାଗିଲେ ।

**ପାଠୀ ବାବୁ ସ୍ଥିର କଲେ, ଯୋଉମାନେ ଥଟ୍ଟା କରୁଛନ୍ତି, ସେମାନଙ୍କର ପ୍ରଦର୍ଶନୀ କିପରି କରିବା ? ଦିଲ୍ଲୀ କଳାମେଳାରେ ଏକ ପ୍ରଦର୍ଶନୀ କରିବା ପାଇଁ ସେ ଯୋଜନା କଲେ । କିନ୍ତୁ ମୁଁ ପଚାରିଲି, ଏତେ ପଇସା କୋଉଠୁ ଆସିବ ? ସେ ସାହସ ଦେଲେ । କହିଲେ, ପ୍ରଥମେ ଛବି ସଂଗ୍ରହ କର** । ତା'ପରେ ନିଜକୁ ବଡ଼ ଭାବୁଥିବା ଶିଳ୍ପୀମାନଙ୍କୁ କହିଲୁ, ଆମକୁ ଛବି ଦିଅନ୍ତୁ । ଆମେ ଦିଲ୍ଲୀରେ ପ୍ରଦର୍ଶନୀ କରିବୁ । କେବଳ ଖଣ୍ଡେ ଛବି ଦେଲେ ଖୁସି ହେବୁ । ଦିଲ୍ଲୀ କଥା ଶୁଣିବା ପରେ ସମସ୍ତେ ଛବି ଦେବାକୁ ଲାଗିପଡ଼ିଲେ । ସାଇକେଲ୍‌ରେ ସମସ୍ତଙ୍କ ପାଖକୁ ଯାଇ ତାଙ୍କର ପାସ୍‌ପୋର୍ଟ ଫଟୋ ଉଠାଇଲୁ ଏବଂ ତିନୋଟି ପ୍ରେସ୍‌ରେ ଯଥା - କଟକ ବିଦ୍ୟାପୁରୀ ପ୍ରେସ୍, ଭୁବନେଶ୍ୱର କ୍ୱାଲିଟି ପ୍ରେସ୍ ଏବଂ ସତ୍ୟଶ୍ରୀ ପ୍ରେସ୍‌ରେ ରାତିଦିନ ପଡ଼ିରହି ପ୍ରଦର୍ଶନୀ ପୁସ୍ତିକାକୁ ଛାପିଲୁ । ପ୍ରାୟ ୨୦/୨୫ ଜଣଙ୍କ ଛବିର ଫଟୋ ସହ ପୁସ୍ତିକା ପ୍ରକାଶ ପାଇଲା । ପ୍ରଦର୍ଶନୀର ନାମ ରଖାଗଲା, 'ଜଗନ୍ନାଥ ଏବଂ ଓଡ଼ିଆ ଆର୍ଟିଷ୍ଟ' । ଏହି ପ୍ରଦର୍ଶନୀ ଦିଲ୍ଲୀ ଏବଂ କଲିକତାରେ ପ୍ରଦର୍ଶିତ ହେଲା । କଲିକତା ଏକାଡ଼େମୀ ଅଫ୍ ଫାଇନ୍ ଆର୍ଟ୍‌ସ୍ ପ୍ରଦର୍ଶନୀ ଦାୟିତ୍ୱରେ ମୁଁ ଥାଏ । ଲେଡ଼ି ରାନୁ ମୁଖାର୍ଜୀ ଏବଂ ରଥୀନ ମିତ୍ର ପ୍ରଦର୍ଶନୀ ଉଦ୍‌ଘାଟନ କଲେ । ଉଦ୍‌ଘାଟନ ପରେ ପାଠୀ ବାବୁ ଭୁବନେଶ୍ୱର ଫେରିଆସିଲେ । ମୁଁ ସେଠାରେ ଏକାଥାଏ । ମୁଁ ଲକ୍ଷ୍ୟ କରିଛି, ପ୍ରଦର୍ଶନୀ ଦେଖିବାବେଳେ କିଛିଲୋକ ଜଗନ୍ନାଥଙ୍କ ପ୍ରତି ଭକ୍ତିରେ ପାଦରୁ ଜୋତା ବାହାର କରି ପ୍ରଦର୍ଶନୀ ଗୃହକୁ ଆସୁଥିଲେ ।

ଆମ କେତେଜଣଙ୍କୁ ସେତେବେଳେ ଓଡ଼ିଶା ଲଳିତ କଳା ଏକାଡ଼େମୀ କର୍ମକର୍ତ୍ତାମାନେ ଭଲ ପାଉ ନଥିଲେ । ଫଳସ୍ୱରୂପ ବେଳେବେଳେ ଆମମାନଙ୍କ ଛବିସବୁ ପୁରସ୍କାର ପାଇବା ଦୂରର କଥା ପ୍ରଦର୍ଶିତ ମଧ୍ୟ ହେଉନଥିଲା । ତେଣୁ ପାଠୀ ବାବୁ ମ୍ୟୁଜିୟମ୍‌ରେ କ୍ୟୁରେଟର୍ ଥିବାବେଳେ ଏକ ଚିତ୍ର ପ୍ରଦର୍ଶନୀ କରିବାକୁ ସ୍ଥିର କଲେ ଏବଂ ସମସ୍ତ ଚିତ୍ରଶିଳ୍ପୀଙ୍କୁ ମ୍ୟୁଜିୟମ୍ ତରଫରୁ ଛବି ଦେବାକୁ ଚିଠି ଦେଲେ । ଚିଠି ପାଇ କେତେକ ବରିଷ୍ଠ ଶିଳ୍ପୀ ରାସ୍ତାରେ ପାଠୀ ବାବୁଙ୍କୁ ଅଟକାଇ ଯୁକ୍ତି କଲେ ଯେ, ଆପଣଙ୍କର କି ଅଧିକାର ଅଛି ଛବି ମାଗିବା ପାଇଁ । ଆପଣ କ'ଣ ଏକାଡ଼େମୀର ସେକ୍ରେଟେରୀ ? ସେହି ସମୟରେ ଏକାଡ଼େମୀର ସେକ୍ରେଟେରୀ ଜଣେ ଓ.ଏ.ଏସ୍. ଅଫିସର୍ ଥିଲେ । ପାଠୀ ବାବୁ ଧୀର ସ୍ଥିର ଭାବେ ଉତ୍ତର ଦେଲେ ଆମକୁ ପ୍ରଦର୍ଶନୀ କରିବା ପାଇଁ କଲ୍‌ଚର୍ ଡିପାର୍ଟମେଣ୍ଟର କମିଶନର୍ ଅନୁମତି ଦେଇଛନ୍ତି । ଆପଣ ଇଚ୍ଛା ନଥିଲେ ଛବି ନଦେଇ ପାରନ୍ତି । ଏଥିପାଇଁ ଆମେ ବାଧ

Digitized by srujanika@gmail.com

କରୁନାହୁଁ । ଏହାକହି ଆମେ ଦୁହେଁ ଚିଠି ବାଣ୍ଟିବା ପାଇଁ ସାଇକେଲ ଛୁଟେଇଲୁ । ସେହି ପ୍ରଦର୍ଶନୀଟି ଖୁବ୍ ଭଲ ହେଇଥିଲା । କିପରି ଛବି ଡିସ୍‌ପ୍ଲେ କରାଯାଏ ତାହା ସେହି ପ୍ରଦର୍ଶନୀରୁ ଜାଣି ହେଲା । ମ୍ୟୁଜିୟମ୍‌ର ଏହି ପ୍ରଦର୍ଶନୀର ଡିସ୍‌ପ୍ଲେକୁ ଦେଖି ସମସ୍ତେ ବହୁତ ପ୍ରଶଂସା କରିଥିଲେ । ଏହା ପରେ ପରେ 'ଓ୍ୱା' ତରଫରୁ ସେହି ମ୍ୟୁଜିୟମ୍ ବିଲ୍‌ଡ଼ିଂରେ ୧୯୭୪ ମସିହାରେ ଚନ୍ଦ୍ରମଣି ବିଶ୍ୱାଳଙ୍କର ଏକକ ଚିତ୍ର ପ୍ରଦର୍ଶନୀଟିଏ ହେଲା ଏବଂ ଚନ୍ଦ୍ରମଣିଙ୍କ ଚିତ୍ର ସମ୍ପର୍କରେ ପାଠୀ ବାବୁ ବୁଲେଟିନ୍ ମଧ୍ୟ ପ୍ରକାଶ କଲେ । କେଉଁଠୁ ପଇସା ଆସୁଥାଏ ଜଣା ପଡୁନଥାଏ ।

ଏହାପରେ ପାଠୀ ବାବୁ ଓ.ଟି.ଡି.ସିରେ ଡିଭିଜନାଲ୍ ମ୍ୟାନେଜର୍ ଭାବେ ଯୋଗ ଦେଲେ । ଓ.ଟି.ଡି.ସି. ସଂସ୍ଥା ପ୍ରଥମ କରି ଆରମ୍ଭ ହୋଇଥିବାରୁ ଓ.ଟି.ଡି.ସିର ଲୋଗୋ କରିବାକୁ ପାଠୀ ବାବୁଙ୍କୁ ଦାୟିତ୍ୱ ଦିଆଗଲା । ସେ ବହୁତ ଚିନ୍ତାକରି ଓଡ଼ିଶାର ବଡ଼ଠାକୁରଙ୍କୁ ଆଖି ଆଗରେ ରଖି ଲୋଗୋ କଲେ । କିନ୍ତୁ ଏଥିପାଇଁ କେତେକ ସାହିତ୍ୟିକ ଆପତ୍ତି କରି ସରକାରଙ୍କୁ ଚିଠି ଦେଲେ, ବଡ଼ଠାକୁର ଜଗନ୍ନାଥଙ୍କୁ ମଦ ଗ୍ଲାସ୍‌ରେ, ପ୍ଲେଟ୍‌ରେ ଛାପିବା ଘୋର ଅନ୍ୟାୟ । କିନ୍ତୁ ତାହା ବଡ଼ ଠାକୁରଙ୍କ ଛବି ନୁହେଁ, ସେଥିରେ କେବଳ O.T.D.C.ର ଚାରିଟି ଅକ୍ଷର ସଜା ଯାଇଛି । କିନ୍ତୁ ଏକଥା ଯାହାକୁ କହିଲେ ମଧ୍ୟ କେହି ଶୁଣିଲେ ନାହିଁ । ଶେଷରେ ଲୋଗୋଟିର ପରିବର୍ତ୍ତନ ହେଲା । କିନ୍ତୁ କହିବା ବାହୁଲ୍ୟ, ଆପତ୍ତି କରିଥିବା ବ୍ୟକ୍ତିମାନେ ସ୍କୁଟର୍ ଚକାରେ, ହାତରେ, ବେକରେ, ଗାଈ ଚମଡ଼ା ବ୍ୟାଗ୍‌ରେ ମଧ୍ୟ ସିଧା ଠାକୁରଙ୍କ ଚିତ୍ର ଲଗେଇ ବୁଲି ଜଗନ୍ନାଥ ଭକ୍ତିରେ ଗଦ୍‌ଗଦ୍ ହେଇଯାଉଛନ୍ତି । ଠାକୁରଙ୍କ ଅବସ୍ଥା ଖୁବ୍ ଶୋଚନୀୟ । O.T.D.C.ରେ ଥିବାବେଳେ ପାଠୀ ବାବୁ ଚିନ୍ତାକରି କହିଲେ, ଦେଖ ରାଓ, ବାହାରୁ ବହୁତ ପର୍ଯ୍ୟଟକ ଆସୁଛନ୍ତି । ଏଠାରେ ଆର୍ଟ୍ ଗ୍ୟାଲେରୀ ମଧ୍ୟ ନାହିଁ । ଓଡ଼ିଶାରେ ବହୁ ବଡ଼ ବଡ଼ ଶିଳ୍ପୀ ଅଛନ୍ତି । କିନ୍ତୁ ତାଙ୍କ ଛବି ଦେଖିବାର ସୁଯୋଗ ମଧ୍ୟ ନାହିଁ । ଭାବୁଛି ଗୋଟେ ଗ୍ୟାଲେରୀ କରିବି । ତାହାହିଁ କଲେ ଏବଂ ଗ୍ୟାଲେରୀର ନାମ ଦେଲେ, 'ଚିତ୍ରବିଥୀ' ଓ ଚିତ୍ର କାର୍ଯ୍ୟକ୍ରମର ନାଁ ହେଲା "ଚିତ୍ରବାରମାସୀ" । ବର୍ଷକର ଚିତ୍ରଶିଳ୍ପୀମାନଙ୍କର ତାଲିକା କରି କଲିକତା ଯାଇ ପ୍ରଥମ କରି ସିଲ୍‌ସ୍କ୍ରିନ୍‌ରେ ଛାପିଲେ । ସେଥିରେ ପ୍ରତି ମାସରେ ଏକସପ୍ତାହ ଧରି ଜଣେ ଶିଳ୍ପୀର ଏକକ ପ୍ରଦର୍ଶନୀ ହୁଏ ଏବଂ O.T.D.C. ତରଫରୁ ଆର୍ଟିଷ୍ଟଙ୍କ ପରିଚୟ ସହ ଏକ କ୍ୟାଟ୍‌ଲଗ୍ ମଧ୍ୟ ଛପାହୁଏ । ଠିକ୍ ସମୟରେ O.T.D.C. ସମସ୍ତଙ୍କୁ ନିମନ୍ତ୍ରଣ ପତ୍ର ମଧ୍ୟ ପଠାନ୍ତି । ଏହି "ଚିତ୍ରବାରମାସୀ"ରେ ଯେଉଁ ବରିଷ୍ଠଶିଳ୍ପୀମାନେ ଭାଗ ନେଇଥିଲେ । ସେମାନେ ହେଲେ ଅସିତ୍ ମୁଖାର୍ଜୀ, ଅସୀମ୍ ବସୁ, ଅନନ୍ତ ପଣ୍ଡାଙ୍କ ପରେ ଚନ୍ଦ୍ରଶେଖର ରାଓ, ଶିବ ପାଣିଗ୍ରାହୀ, ରାମହରି ଜେନା, ମୁଁ ଓ ଅନ୍ୟାନ୍ୟମାନେ । ଏପରି ବାରମାସରେ ବାର ଜଣଙ୍କ ପ୍ରଦର୍ଶନୀ ହେଲା । ଏମିତି ଦୁଇଚାରିମାସ ପରେ ସବୁ ଶିଳ୍ପୀମାନେ ପ୍ରଦର୍ଶନୀ ଦେଖିବାକୁ ଆସିବାରେ ଲାଗିଲେ । **ଏତିକିରେ କଥାଟି ସରିଲା ନାହିଁ । ପୁଣି ଆଉ କେତେକ ବରିଷ୍ଠ ଶିଳ୍ପୀବନ୍ଧୁମାନେ କହିଲେ, ଚିତ୍ର ପ୍ରଦର୍ଶନୀ କରିବା O.T.D.C.ର କାମ ନୁହେଁ । କିନ୍ତୁ କ'ଣ କରିବା ? ଜିଙ୍କି ଯୋଉଠିକୁ ଯିବ ଧାନ ହିଁ କୁଟିବ । ସେଣ୍ଟ୍ରାଲ୍ ସ୍କୁଲ୍‌ରେ ଥିବାବେଳେ ପ୍ରଦର୍ଶନୀ, ମ୍ୟୁଜିୟମ୍‌ରେ ଥିବା ବେଳେ ପ୍ରଦର୍ଶନୀ ଓ O.T.D.C.ରେ ମଧ୍ୟ ସେହି ପ୍ରଦର୍ଶନୀ ।**

ତା' ପରେ ପରେ ଓଡ଼ିଶାରେ, ଓଡ଼ିଶା ବାହାରେ ବାଙ୍ଗାଲୋର୍, ବମ୍ବେ, ମାଡ୍ରାସ୍, କଲିକତା, ଦିଲ୍ଲୀ, ଚଣ୍ଡୀଗଡ଼, ବାରାଣସୀ, ଶେଷରେ ଭାରତ ବାହାରେ ଫେଷ୍ଟିଭେଲ୍ ଅଫ୍ ଇଣ୍ଡିଆ, ସୁଇଡ଼େନ, U.S.S.R. International Festival, ବାଲି (ଇଣ୍ଡୋନେସିଆ), ପ୍ରଭୃତି ପ୍ରଦର୍ଶନୀରେ ମୋର ପୂର୍ଣ୍ଣ ସହଯୋଗ ଥିଲା । ମୋର କାମ ମଧ୍ୟ ଏହିସବୁ ସ୍ଥାନକୁ ଯାଇଛି । କିନ୍ତୁ ମୁଁ ନିଜେ ଭାରତ ବାହାରକୁ ଯାଇପାରିଲି ନାହିଁ । ଯେଉଁମାନେ ସେସବୁ ଆଡ଼େ ଯାଇଛନ୍ତି କିମ୍ବା ଯାଉଛନ୍ତି ସେମାନେ କଥା ଆଳରେ ଯାହା କହନ୍ତି ସେଥିରେ ମୋ ପ୍ରତି ତାଚ୍ଛଲ୍ୟ ଭାବଥାଏ । ଯାହାକି ମୋତେ ଦୁଃଖ ଲାଗେ । ମୋର ମଧ୍ୟ ବାହାରକୁ ଯିବାକୁ ଇଚ୍ଛା । ପୁଣି ପ୍ରଶ୍ନ ଉଠେ ବାହାରକୁ ଯିବା କ'ଣ ନିହାତି ଦର୍କାର ? ଯଦି ମୋ ଭାଗ୍ୟରେ ନାହିଁ ........... । ଅନ୍ତତଃ ଚିତ୍ରଶିଳ୍ପୀଟିଏ ହୋଇ ଜୀବନଯାକ ବଞ୍ଚିପାରିଲେ ଯଥେଷ୍ଟ ନୁହେଁକି ? ଅନେକ ପ୍ରଶ୍ନର ସମାଧାନ ନପାଇ ଯନ୍ତ୍ରଣାରେ ଛାଟିପିଟି ହେବାକୁ ପଡୁଛି ।

Digitized by srujanika@gmail.com

ଖଲ୍ଲିକୋଟରେ ପଢିବା ସମୟରେ ସିନିୟର୍ ଭାଇମାନଙ୍କ ସହ ମୁଁ ମଧ ବ୍ରହ୍ମପୁର, ଗଞ୍ଜାମ କଳା ପରିଷଦ, କଟକ ବିଷୁବ ମିଳନ ଓ ଅନ୍ୟାନ୍ୟ ପ୍ରଦର୍ଶନୀରେ ଭାଗ ନିଏ । ଥରେ ଏକ ଖବର କାଗଜରେ ଡି. ନାରାୟଣ ରାଓ ବଦଳରେ ଡକ୍ଟର ନାରାୟଣ ରାଓ ଓ ଡି.ଏନ୍. ରାଓ ବଦଳରେ ଡକ୍ଟର ରାଓ ଭୁଲ୍‌ରେ ଛପା ହେଲା । ସେବେଠାରୁ ଆମ ପଣ୍ଡା ସାର୍ ଡକ୍ଟର ରାଓ ବୋଲି ମୋତେ ଡାକନ୍ତି । ଏପରି ଅନେକଥର ଏବେ ମଧ ଭୁଲ୍‌ରେ ଡକ୍ଟର ରାଓ ବୋଲି ଛପା ହେଉଛି । ଲୋକେ ମଧ ଡକ୍ଟର ରାଓ ବୋଲି ମୋତେ ଡାକନ୍ତି । କିନ୍ତୁ ମୁଁ ଡକ୍ଟର ହୋଇପାରିଲିନି କି ସୀତାରିଷ୍ଟ ମଧ ହୋଇ ପାରିଲିନି । ମୋତେ ପ୍ରଥମେ ଚିତ୍ରକର ହେବାକୁ ହେବ । ମୁଁ ବି.ଜେ.ବି କଲେଜରେ ଚାକିରି ପାଇବା ପରେ ସଙ୍ଗୀତ ମହାବିଦ୍ୟାଳୟରେ ସୀତାର କ୍ଲାସ୍‌ରେ ଜଏନ କଲି । ନୂଆ ସୀତାର ମଧ କିଣିଲି । ତୁମେ କ'ଣ ହେବାକୁ ଚାହୁଁଛ ? ତୁମ ପରିଚୟ କ'ଣ ? ପାଠୀ ବାବୁ ପଚାରିଲେ । କଥାଟି ମୋତେ ଠିକ୍ ଲାଗିଲା । ସୀତାର ଶିଖିବା ପାଇଁ ଦିନକୁ ତିନି ଚାରିଘଣ୍ଟା ସମୟ ଦେବାକୁ ପଡ଼ିବ । ଏପଟେ ଚିତ୍ରକର ହେବାପାଇଁ ମଧ ପରିଶ୍ରମ କରିବାକୁ ପଡ଼ିବ ଏବଂ 'ଓ୍ୱା' ସଂଗଠନ ପାଇଁ ମଧ ସମୟ ଦେବାକୁ ପଡ଼ିବ । ପ୍ରଥମେ ତୁମର ଗୁରୁ ଦାୟିତ୍ୱ ଠିକ୍ ଭାବେ ତୁଲାଅ । ନୂଆ କରି ବି.କେ. କଲେଜ ହେଇଛି । ତୁମ ଉପରେ ପିଲାଙ୍କ ଭବିଷ୍ୟତ ନିର୍ଭର କରେ । ସେକଥା ମୋତେ ଠିକ୍ ଲାଗିଲା । କିନ୍ତୁ ଆଜିର ଛାତ୍ରମାନେ କ'ଣ ସେକଥା ବୁଝିପାରିଛନ୍ତି ? କେବେ ଅନୁଭବ କରି ପାରିଛନ୍ତି ? ଦିନରାତି କଲେଜ ପାଇଁ ନଲାଗି ଯଦି ମୁଁ ଅର୍ଥ ଉପାର୍ଜନରେ ଲାଗିଥାନ୍ତି ଏବଂ ଠିକ୍ ଦଶଟା ବେଳେ କଲେଜକୁ ଯାଇ ଚାରିଟାବେଳେ ଫେରିଆସିଥା'ନ୍ତି, ତାହା ହେଲେ ମୋ ଜୀବନ ଏକ ଭିନ୍ନ ମୋଡ଼ ନେଇଥା'ନ୍ତା । ୧୯୫୭ ମସିହାରେ ତିଆରି ହୋଇଥିବା ଖଲ୍ଲିକୋଟ କଲେଜର ସ୍ଥାନ ଆଜି କୋଉଠି ଏବଂ ୧୯୮୪ ମସିହାରେ ହେଇଥିବା ବି.କେ. କଲେଜର ଛାତ୍ରମାନଙ୍କ ସ୍ଥାନ ଆଜି କୋଉଠି ? ଏକଥା କେବଳ ସେହି ଛାତ୍ରମାନେ ହିଁ ବୁଝୁଥିବେ ।

ମୁଁ ପାଠୀ ବାବୁଙ୍କ ଦୁଇ ଦୁଇଟି ପିଏଚ୍.ଡି. ପାଇଁ ଯଥେଷ୍ଟ କାମ କରିଛି ଏବଂ ଆନନ୍ଦ ପାଇଛି । ଏକଥା ସେ ନିଜେ ସ୍ୱୀକାର କରନ୍ତି ଏବଂ ବନ୍ଧୁମାନଙ୍କ ଗହଣରେ ମଧ କହନ୍ତି । ପାଠୀ ବାବୁ ଓ ମୁଁ ମିଶି ବହୁତ ପ୍ରୋଜେକ୍ଟ କାମ କରିଛୁ । ବହୁ ଆଦିବାସୀ ଜାଗାମାନଙ୍କରେ ବୁଲିଛୁ । ପାଠୀ ବାବୁଙ୍କର ବହୁ ଇଚ୍ଛା ଥିଲା ମାଡ୍ରାସ୍ ଚୋଳମଣ୍ଡଳରେ ଯୋଉ ପ୍ରକାର ଆର୍ଟିଷ୍ଟ ଭିଲେଜ୍ ଅଛି, ଓଡ଼ିଶାରେ ସେ ପ୍ରକାର ଗୋଟେ ଆର୍ଟିଷ୍ଟ ଭିଲେଜ୍ କରିବା ପାଇଁ । ପ୍ରଫୁଲ୍ଲ ତ୍ରିପାଠୀ, ରବି ତ୍ରିପାଠୀ, ମୁଁ ଓ ପାଠୀ ବାବୁ ସମସ୍ତେ ଧଉଳିଗିରି ପାଖରେ ଗୋଟେ ଜାଗା ଦେଖିଲୁ ଏବଂ ପରବର୍ତ୍ତୀ ରବିବାର ସେଠାକୁ ଯିବାକୁ ଆମେ ସ୍ଥିର କଲୁ । ରବିବାରୁ ପୂର୍ବରୁ ମୋତେ ପାଠୀ ବାବୁ କହିଲେ, ତୁମେ ଘରେ ଅପେକ୍ଷା କର । ମୁଁ ଆସିବି । ସେ କଳ୍ପନା ଫ୍ଲାଟ ସ୍ଥିତ 3R–2/1 କ୍ୱାଟର୍‌ରେ ଥା'ନ୍ତି, ମୁଁ E 2/2 ବି.ଜେ.ବି ଫ୍ଲାଟ୍‌ରେ ଥାଏ । କହିବା ଅନୁଯାୟୀ ଦିନ ଦୁଇଟା ସମୟରେ ଆମ ଘରକୁ ବାହାରିଲେ । ତାଙ୍କ ଘରେ ଭାଉଜ ମନା କରିବା ସତ୍ତ୍ୱେ ସେ ଫ୍ଲାଟ୍‌ରୁ ବାହାରି ଆସିଲେ । ଠିକ୍ ବି.ଜେ.ବି କଲେଜର ଖେଳ ପଡ଼ିଆ ପାଖରେ ପଛଆଡୁ କାର୍‌ଟିଏ ଆସି ପାଠୀ ବାବୁଙ୍କ ସ୍କୁଟର୍‌କୁ ଧକ୍‌କା ମାରି ଦ୍ରୁତଗତିରେ ଚାଲିଗଲା । ସେଠାରେ ଥିବା ମୋର ବନ୍ଧୁ ଶ୍ୟାମସୁନ୍ଦର ମହାନ୍ତି ଏହା ଦେଖି ତାଙ୍କୁ ଉଠାଇ ଘରକୁ ନେଲେ ଏବଂ ମୋତେ ଖବର ଦେଲେ । ମୁଁ ପାଠୀ ବାବୁଙ୍କ ଘରକୁ ତତ୍‌କ୍ଷଣେ ଗଲି । ଦେଖିଲି, ଭାଉଜ ବହୁତ ଭାଙ୍ଗିପଡ଼ିଛନ୍ତି । ମୋତେ ଦେଖି ଦୁଃଖ କଲେ ଏବଂ କିଛି ସମୟ ପରେ ମୋ ଉପରେ ପ୍ରବଳ ବିରକ୍ତ ମଧ ହେଲେ । ପାଠୀ ବାବୁଙ୍କର ଅଣ୍ଟା ପାଖରେ ଶକ୍ତ ମାଡ଼ ହୋଇଥିଲା । ସ୍ଥିର କଲୁ, ଓଲଟପୁର ଯିବା ପାଇଁ । ଟ୍ୟାକ୍ସିରେ ଓଲଟପୁର ଗଲୁ । ସେଠାରେ ଡାଇରେକ୍ଟର୍ ଥାଆନ୍ତି ଡକ୍ଟର ରାମ ଦାସ । ନାମରୁ କିଛି ଜାଣି ହେଲା ନାହିଁ । କିନ୍ତୁ କଥାବାର୍ତ୍ତାରୁ ଜାଣିଲି, ସେ ତେଲୁଗୁ ଲୋକ । ମୁଁ ତେଲୁଗୁରେ କଥା ଆରମ୍ଭ କରିଦେଲି ରାମ ଦାସଙ୍କ ସହ । ରାମ ଦାସ ପରୀକ୍ଷା ନିରୀକ୍ଷା କରିବା ପରେ କହିଲେ, ପାଠୀ ବାବୁ ଆପଣ ରକ୍ଷା ପାଇଗଲେ । ଯଦି ଆଉ କିଛି ଦିନ ଡେରି କରିଥାନ୍ତେ,

Digitized by srujanika@gmail.com

ତେବେ ନିଶ୍ଚୟ ପାରାଲିସିସ୍ ହେଇଯାଇଥା'ନ୍ତା । ଏହାପରେ ଚିକିତ୍ସା ଆରମ୍ଭ କଲେ । ଛାତି ଠାରୁ ଅଣ୍ଟା ପର୍ଯ୍ୟନ୍ତ ପ୍ଲାଷ୍ଟର୍ କରି କିଛି ଔଷଧ ଦେଲେ । ଏହାଦେଖି ଅବନ୍ତୀ ଭାଉଜ ବିଚଳିତ ହେଲେ । ସବୁକଥା ଜାଣି ସେ ସେବା କରିବାରେ ଲାଗିଲେ । ଘରେ ହିଟଲର୍ ଶାସନ ଚଳେଇଲେ । ଠିକ୍ ସମୟରେ ଖାଇବା ଏବଂ ବିଶ୍ରାମ ନେବା ଏମିତି ୪/୬ ଦିନ ବିତିଗଲା । ଏହାରି ଭିତରେ ତାଙ୍କର ପୁରୁଣା ବନ୍ଧୁମାନେ ଆସି ଦେଖିଯାଆନ୍ତି । ଥରେ ଦୁଇଜଣ ବନ୍ଧୁ ପାଠୀ ବାବୁଙ୍କ ଅବସ୍ଥା ଦେଖି କହିଲେ, ଛାତି ଠାରୁ ଅଣ୍ଟା ପର୍ଯ୍ୟନ୍ତ ପ୍ଲାଷ୍ଟର ହେଇଛି । ପୁଣି ୨୧ ଦିନ । ଏମିତି କିପରି ରହିବେ । ହୁସିଆର ରହନ୍ତୁ । ପ୍ଲାଷ୍ଟର ଭିତର ଦେଇ ଅସରପା ପଶିବାର ସମ୍ଭାବନା ଅଛି । ଅସରପା ପଶିଗଲେ ସମ୍ଭାଳି ହେବ ନାହିଁ । ଏ କଥାରେ ସେଠାରେ ଥିବା ଅନ୍ୟ ବନ୍ଧୁମାନେ ଏଣ୍ଟୁଅ ଭଳି ମୁଣ୍ଡ ଟୁଙ୍ଗାରିଲେ ।

ସେହିଦିନ ରାତିର ଘଟଣା । ରାତି ଦଶଟାରେ ଭାଉଜ ଆମ ଘରକୁ ଖବର ପଠାଇଲେ, ଯୋଉ ଅବସ୍ଥାରେ ଅଛ ଶୀଘ୍ର ଆସି ଯାଅ । ମୁଁ ତୁରନ୍ତ ଯାଇ ଦେଖିଲି । ପାଠୀ ବାବୁଙ୍କ ଅବସ୍ଥା ଅସମ୍ଭାଳ । ପାଠୀ ବାବୁ ମୋତେ କହିଲେ, ମୋ ଅଣ୍ଟା ଭିତରେ ୨/୪ଟି ଅସରପା ପଶିଯାଇଛନ୍ତି । ଆମେ ଯେତେ ବୁଝାଇଲେ ମଧ୍ୟ ସେ ବୁଝିଲେ ନାହିଁ । ତୁରନ୍ତ ପ୍ଲାଷ୍ଟର କାଟିବା ପାଇଁ ଆଦେଶ ଦେଲେ । ଆମେ ନ ଶୁଣିବାରୁ ସେ ଏକାଏକା ରାସ୍ତାକୁ ଦୌଡ଼ିଲେ । ସେତେବେଳେକୁ ରାତି ଦୁଇଟା ହେଲାଣି । କଳ୍ପନା ଫ୍ଲାଟ୍‌ରେ ଥିବା ଅନ୍ୟ ଡାକ୍ତରଙ୍କ ପାଖକୁ ଗଲିଲେ । ଶେଷରେ ତାଙ୍କ କଥା ହିଁ ରହିଲା । ପ୍ଲାଷ୍ଟର କଟା ହେଲା । ରାତିରେ ମୁଁ ସେଠାରେ ରହିଲି । ସକାଳୁ ଉଠି ମୁଁ ରାମ ଦାସଙ୍କ ପାଖକୁ ଗଲି । ସେ I.R.C. ଭିଲେଜ୍‌ରେ ରହନ୍ତି । ସେ ଆସି ପାଠୀ ବାବୁଙ୍କ ଅବସ୍ଥା ଦେଖିଲେ । ଅସରପା କଥା ଶୁଣି ପାଠୀ ବାବୁଙ୍କୁ ଓ ତାଙ୍କ ବନ୍ଧୁମାନଙ୍କୁ ଗାଳି ଦେଲେ । ପୁଣି ଥରେ ପ୍ଲାଷ୍ଟର ହେଲା । କିନ୍ତୁ ତାଙ୍କ ମନରେ ଅସରପା ଭୟ ରହିଗଲା । ତେଣୁ ଦେଢ଼ଫୁଟିଆ ଗୋଟାଏ ଫୋରସେପ୍ (ଷ୍ଟିଲ୍ ଚିମୁଟା) ଏବଂ କିଛି ରେକ୍ଟିଫାଏଡ୍ ସ୍ପିରିଟ ଆଣି ପାଠୀ ବାବୁଙ୍କୁ ଦେଲି । ମଝିରେ ମଝିରେ ପାଠୀ ବାବୁ ଛାତି ଆଡୁ ସ୍ପିରିଟ୍ ପକାନ୍ତି ଓ ଚିମୁଟାରେ ମିଛ ମିଛରେ ଅସରପାକୁ ମାରନ୍ତି । କିନ୍ତୁ ଗୋଟିଏ କଥା ମୁଁ ମନେ ରଖିଛି ସେ କୌଣସି ଦୁଃଖରେ ଭାଙ୍ଗି ପଡ଼ନ୍ତି ନାହିଁ ଏବଂ କାହା ଆଗରେ ଦୁଃଖ ପ୍ରକାଶ କରନ୍ତି ନାହିଁ । ଦୁଃଖକୁ ସୁଖ ଭାବେ ଗ୍ରହଣ କରି ହସନ୍ତି ଓ ହସାନ୍ତି । ସମୟକୁ ନଷ୍ଟ ନକରି କିଛି ନା କିଛି କରନ୍ତି । ତାଙ୍କ ଜୀବନ ସହିତ ମୁଁ ଏମିତି ଭାବେ ଜଡ଼ିତ ଯେ ତାହା ଲେଖିଲେ ଗୋଟେ ଗ୍ରନ୍ଥ ହେବ । ମୁଁ ତାଙ୍କୁ କେବେକେବେ ଶିକ୍ଷକ ରୂପେ, ବଡ଼ ଭାଇନା ରୂପେ ଦେଖେ । ତାଙ୍କୁ ବହୁତ ସମ୍ମାନ ଦିଏ । ସେ ମୋଠାରୁ ସାତ ବର୍ଷ ବଡ଼ ହେଲେ ସେ ମୋତେ ବନ୍ଧୁ ରୂପେ ଗ୍ରହଣ କରିଛନ୍ତି । **ମୁଁ କିନ୍ତୁ ଏଥିରେ ଏକମତ ହୋଇ ପାରୁନାହିଁ କାରଣ ତାଙ୍କର ପରିଶ୍ରମ ଓ ପ୍ରତିଭାକୁ ମୁଁ ସମ୍ମାନ ଦିଏ । ଏପରିକି ଥରେ ଥରେ ତାଙ୍କ ପାଖ ଚୌକିରେ ନବସି ସଂଭ୍ରମତାରେ ତାଙ୍କଠୁ ଟିକିଏ ଦୂରେଇ ବସେ ।**

ପାଠୀ ବାବୁଙ୍କ ସହ ମୋର କେତେକ ଅଭୁଲା ସ୍ମୃତି - ଯାହା ପାଠୀ ବାବୁଙ୍କର ରସିକ ପଣିଆ ଏବଂ ସବୁ ଦୁଃଖ ସତ୍ତ୍ୱେ ସେ ଯେ ଜଣେ ଖୁସ୍ ମିଜାଜ୍‌ର ଲୋକ ଏହା ପ୍ରମାଣ କରେ ।

ଦିନେ ଆମେ ସକାଳ ଆଠରେ ସଂସ୍କୃତି ବିଭାଗର କମିଶନର୍‌ଙ୍କୁ ଦେଖାକରି ପ୍ରଦର୍ଶନୀ ବିଷୟରେ କଥାହେବା ପାଇଁ ସ୍ଥିର କଲୁ । ମୁଁ ସେହିଦିନ ରାତିରେ ପାଠୀ ବାବୁଙ୍କ ବସାରେ ରହିଗଲି । ମୁଁ ସକାଳେ ଟିକେ ଡେରିରେ ବିଛଣା ଛାଡ଼େ । ମୁଁ ତରବର ହୋଇ ଉଠି ପାଇଖାନା ଯିବାକୁ ବାହାରିଲି । ସେ ମଧ୍ୟ ଯିବାକୁ ବାହାରି ଥିଲେ । ମୋର ଯିବାର ଦେଖି କହିଲେ, ଯାଓ, ପାଇଖାନାରୁ ଶୀଘ୍ର ଆସିଲେ ମୁଁ ଯିବି । ମୋର ଡେରି ହେଲା । ମୋର ଆସିବା ବେଳକୁ ସେ ସଫା ଡ୍ରେସ୍ ପିନ୍ଧି କମିଶନର୍‌ଙ୍କ ପାଖକୁ ଯିବାକୁ ପ୍ରସ୍ତୁତ ହୋଇ ଯାଇଛନ୍ତି । ମୁଁ ପ୍ରଶ୍ନ କଲି, ଆପଣ ପାଇଖାନା ଯିବେ ନାହିଁ କି ? ମୋର ସବୁକାମ ସରିଛି । ତୁମର ହିଁ ଡେରି କହି ଝରକା ଦେଇ ଦୂରରେ ପଡ଼ିଥିବା ଗୋଟେ ଖବର କାଗଜ ପୁଡ଼ିଆକୁ ମୋତେ ଦେଖାଇ ଦେଲେ । ମୋର ବୁଝିବାରେ ଆଉ ଅସୁବିଧା ହେଲା ନାହିଁ । ଆଉ ଡେରି ନକରି ସାଇକେଲ ଧରି କମିଶନର୍‌ଙ୍କ ପାଖକୁ ଦଉଡ଼ିଲୁ ।

Digitized by srujanika@gmail.com

ଥରେ ସନ୍ଧ୍ୟାବେଳେ ଜଳଖିଆ କରିବାକୁ ଯାଇଥାଉ । ସେତେବେଳେ ବାପୁଜୀ ନଗରର ସାଉଥ୍ ଇଣ୍ଡିଆନ୍ ହୋଟେଲ୍‌ଟି ନୂଆକରି ହୋଇଥାଏ । ଯାତ୍ରା ପରି ଲୋକଙ୍କ ଭିଡ଼ । ବାହାରେ ମଧ ଭିକାରୀଙ୍କ ଭିଡ଼ । ଇଡ଼ଲି, ଦୋଷା ଖାଇ ସମ୍ବର, ଚଟଣୀକୁ ଲୋକେ ପିଇ ଯାଆନ୍ତି । ସିଟ୍ ପାଇବା ପାଇଁ ଲାଇନ୍ ଲଗେଇବାକୁ ପଡ଼େ । ବହୁକଷ୍ଟରେ ଦୁଇଟି ସିଟ୍ ପାଇଲୁ । ଏଣେ ପ୍ରବଳ ଭୋକ ହେଉଛି । ଦୁଇଟି ଦୋଷା ଓ ଦୁଇ ପ୍ଲେଟ ଦହିବରା ବରାଦ ଦେଲୁ । ଅଧଘଣ୍ଟା ପରେ ଦୟାରେ ଦେଲାପରି ହସ ହସ ମୁହଁକରି ଦୁଇଟି ଦୋଷା ଆମକୁ ଦେଲା । ତାହା ପାଞ୍ଚ ମିନିଟ୍‌ରେ ଖତମ୍ କରିଦେଲୁ । ସେମିତି ଦହିବରା ମଧ ଶୀଘ୍ର ପାଇଲୁ ନାହିଁ । ଯାହାହେଉ ଡେରି ହେଲେବି ଦହିଟିକିଏ ଖାଇବା ପରେ ପେଟ ଟିକିଏ ଉଶ୍ୱାସ ହେଲା । ପଇସା ପଇଠ କରିବାକୁ ବିଲ୍ ଧରି ବାହାରକୁ ବାହାରିଲୁ । ରାସ୍ତାରେ ବସି ଥିବା ଭିକାରୀମାନେ ବାବୁ ବାବୁ କହି ଘେରି ଗଲେ । ପାଠୀ ବାବୁ ମୋତେ କହିଲେ, ତୁମେ ସାଇକେଲ୍ ବାହାର କର । ଏହାକହି ଭିକାରୀଙ୍କ ଗିନାରେ ଦୁଇଟି ସୁନ୍ଦର ଷ୍ଟିଲ୍ ଗ୍ଲାସ ପକେଇ ଦେଲେ । ପଇସା ବଦଳରେ ଗ୍ଲାସ ପଡ଼ିବା ଦେଖି ଭିକାରୀ ଦିହେଁ ତତ୍‌କ୍ଷଣେ ଉତ୍ତର ଦିଗକୁ ଦୌଡ଼ିଲେ । ଆମେ ଦୁହେଁ ଦକ୍ଷିଣ ଦିଗକୁ ସାଇକେଲ୍ ଛୁଟେଇଲୁ ।

ସେ ସେଣ୍ଟ୍ରାଲ୍ ସ୍କୁଲରେ ଆର୍ଟ୍‌ଟିଚର୍ ଥିବାବେଳେ ସତ୍ୟନଗର ଲେବଲ୍‌କ୍ରସିଂ ପାଖରେ ଗୋଟେ ଭଡ଼ା ଘରେ ଥା'ନ୍ତି । ସେହି ସମୟରେ କୁନୁ (ସୌଭାଗ୍ୟ)ର ଜନ୍ମ । କୁନୁକୁ ମୁଁ କେତେ ଭଲ ପାଏ ତାହା ଲେଖାରେ ପ୍ରକାଶ କରିହେବନି । ସିଏ ଯୋଉ ଘରେ ଥିଲେ ସେଠି ଗୋଟିଏ ମାତ୍ର ବଖରା ଆଉ ଆଗରେ ବାରଣ୍ଡା ଓ ଘର ପଛରେ ବାରଣ୍ଡା । ବାରଣ୍ଡାର ଲମ୍ବ ପ୍ରାୟ ଚାରି ଫୁଟରେ ପନ୍ଦର ଫୁଟ । ଘରର ଲମ୍ବ ପ୍ରାୟ ପନ୍ଦର ଫୁଟରେ ବାର ଫୁଟ ହେବ । ବାହାର ବାରଣ୍ଡାରେ ଗୋଟେ ବାଉଁଶ ଚାଞ୍ଚଟେ ଓହଳି ଥାଏ । ୧୫x୧୨ ଫୁଟ ଘରକୁ ସମାନ ଭାବରେ ଚାରିଭାଗ କରି ଚକ୍‌ଖଡ଼ିରେ ଗାର ପକାଇ ଦେଇଥାଆନ୍ତି । ଏଥର ବଖରାଏ ଚାରୋଟି ବଖରାରେ ପରିଣତ ହେଇଗଲା ମାତ୍ର ଖଣ୍ଡିଏ ଚକ୍‌ଖଡ଼ି ଗାରରେ । ପ୍ରତ୍ୟେକ ବଖରାର ଆୟତନ ଛଅରେ ସାତଅଧେ ଫୁଟ ହେବ । ଗୋଟେ ହେଲା ଡ୍ରଇଂ ରୁମ୍ । ତା' ପାଖରେ ଷ୍ଟଡ଼ି ରୁମ୍, ଆରଟି ଡାଇନିଂ ଏବଂ ଶେଷଟି ହେଲା ବେଡ୍ ରୁମ୍ । ତାଙ୍କ ଘରେ ଛୋଟ ଚାକର ପିଲାଟିଏ ଥାଏ । ଯଦି କୌଣସି ଭଦ୍ର ଲୋକ ପାଠୀ ବାବୁଙ୍କୁ ଦେଖା କରିବାକୁ ଆସନ୍ତି ତେବେ ସଙ୍ଗେ ସଙ୍ଗେ ଚାକର ପିଲା ତାଙ୍କୁ ବାରଣ୍ଡାରେ ବସାଇ ଘର ଭିତରକୁ ଆସେ ଏବଂ ଦେଖେ, ପାଠୀ ବାବୁ କୋଉ ଛକରେ ଅଛନ୍ତି । ତା'ପରେ ହାତରେ ପାଣି ଗ୍ଲାସଟେ ଧରି ଫେରେ ଏବଂ କହେ, ବାବୁ ଷ୍ଟଡ଼ି ରୁମ୍‌ରେ ଅଛନ୍ତି । ଅପେକ୍ଷା କରନ୍ତୁ । ଏମିତି ପାଠୀ ବାବୁ ସବୁ ଦୁଃଖ ସବୁ ଅସୁବିଧାକୁ ସୁଖ ଓ ସୁବିଧାରେ ରୂପାନ୍ତରିତ କରିଦିଅନ୍ତି ଏବଂ ସବୁକୁ ସହଜରେ ଗ୍ରହଣ କରିନିଅନ୍ତି । କିନ୍ତୁ କୁନୁ (ସୌଭାଗ୍ୟ) ଜନ୍ମ ହେବାପରେ ସେ ସୌଭାଗ୍ୟବାନ୍, ଶକ୍ତିମାନ୍ ହୋଇଗଲେ । ସେବେଠୁ ଆଉ ପାଠୀ ବାବୁ ପଛକୁ ଫେରି ଚାହିଁ ନାହାନ୍ତି ।

ମୁଁ ତାଙ୍କୁ ଜାଣିବା ଠାରୁ ସେ ଲେଖାଲେଖି କରନ୍ତି । ଚିତ୍ର ଉପରେ କେତୋଟି ଆର୍ଟିକଲ୍ ମଧ ମୁଁ ଖବର କାଗଜ, ପତ୍ରପତ୍ରିକା, ଆସନ୍ତାକାଲି, ନବରବି, ଝଙ୍କାର ତଥା ଅନ୍ୟାନ୍ୟ ପତ୍ରିକାରେ ପଢ଼ିଛି । ତାଙ୍କର ପ୍ରବଳ ଇଚ୍ଛା ଥିଲା ଆର୍ଟ୍ କଲେଜରେ ଚାକିରୀ କରିବାକୁ । **ଏପରିକି ଖଲ୍ଲିକୋଟ ଆର୍ଟ୍ ସ୍କୁଲ୍‌ରୁ ପାଶ୍ କଲାପରେ ସେଠାରେ ପିଅନ୍ ଚାକିରି କରିବାକୁ ଆଗ୍ରହ ପ୍ରକାଶ କରିଥିଲେ । ଯେହେତୁ ସେ ସେବେଳକୁ ଅଧିକ ପାଠ ପଢିଥିଲେ (ମ୍ୟାଟ୍ରିକ ପାଶ୍ ଓ ଡିପ୍ଲୋମା) ତେଣୁ ସେଠି ଚାକିରି ହେଲା ନାହିଁ ।** ଖଲ୍ଲିକୋଟ ଆର୍ଟ୍ କଲେଜ ପାଇଁ ଲେକ୍‌ଚରର୍ ଆବଶ୍ୟକ ବୋଲି ଆଡ୍‌ଭଟାଇଜ୍‌ମେଣ୍ଟ ବାହାରିଲା । ଅଧ୍ୟାପକ ଚାକିରୀ ପାଇଁ ସେ ପ୍ରସ୍ତୁତ ହେଲେ । ସେ ଜାଣିଲେ ଏଥିପାଇଁ ଅନ୍ୟ କ୍ୟାଣ୍ଡିଡେଟ୍‌ମାନେ ବହି ଛାପୁଛନ୍ତି । ତେଣୁ ସେ ଆଗରୁ ଲେଖିଥିବା ସବୁ ଆର୍ଟିକଲ୍‌କୁ ନେଇ ଗୋଟେ ବହି ଛାପିଲେ, ବହିର ନାମ- 'ଚିୟତେ ଇତି' । ନିଜର ଖଣ୍ଡେ ରଙ୍ଗୀନ ଛବି (ବାସୁଆ ବଳଦ) ବହିର କଭର ରୂପେ ବ୍ୟବହାର କଲେ । ବହିଟି ଛପା ହେଲା ପରେ ତାଙ୍କ

Digitized by srujanika@gmail.com

ବନ୍ଧୁମାନଙ୍କୁ ସେଥିରୁ ଖଣ୍ଡେ ଖଣ୍ଡେ ଉପହାର ଦେଲେ । ସମସ୍ତେ ବହିଟିକୁ ଦେଖି ଖୁସି ହେଲେ । କିନ୍ତୁ ଜଣେ ବନ୍ଧୁ ବହିଟିକୁ ଧରି ଛାତକୁ ଫୋପାଡ଼ି ହସି ହସି କହିଲେ, ତୁମେ ତ ଡ୍ରଇଁ ମାଷ୍ଟର୍। ସେଥିରେ ପୁଣି ବହି ଛପା ହେଉଛି । ବୋଧେ ସେ ବନ୍ଧୁଜଣକ ଖୁସିରେ ଏହା କରିଥାଇ ପାରନ୍ତି, କିନ୍ତୁ ଡ୍ରଇଁ ମାଷ୍ଟର୍‌ଙ୍କ ମନରେ ଏହା ବହୁତ ଆଘାତ ଲାଗିଲା । ସେ କିଛି ବୁଝିପାରିଲେ ନାହିଁ । ନୀରବରେ ରହିଗଲେ । ବୋଧେ ସେବେଠାରୁ ସେ ସ୍ଥିର କରିନେଇଛନ୍ତି ଯେ ନିଜକୁ ଏକ କଳା ଐତିହାସିକ, ସାହିତ୍ୟିକ, ଚିତ୍ରକର ହିସାବରେ ଆନ୍ତର୍ଜାତିକ ସ୍ତରରେ ପରିଚିତ କରାଇବା ପାଇଁ ।

୧୯୭୭-୭୮ ମସିହା କଥା । କ୍ୟାପିଟାଲ ମାର୍କେଟ୍‌ରେ 'ଅଳକା' ଦୋକାନରେ ବିଦେଶୀ ଲୁଗା ବିକ୍ରୀ ହେଉଥାଏ । ସେଠାରେ ଷ୍ଟ୍ରେଚ୍ କନା କିଣିବା ପାଇଁ ସକାଳରୁ ଯାଇ ଲାଇନ୍ ଲଗେଇବାକୁ ପଡ଼େ ଏବଂ ଲାଇନ୍‌ରେ ପ୍ରାୟ ୫୦/୬୦ ଲୋକରୁ କମ୍ ନଥାନ୍ତି । ଦିନେ ପାଠୀ ବାବୁଙ୍କୁ ନ ଜଣାଇ ଅବନ୍ତୀ ଭାଉଜ ଲାଇନ୍‌ରେ ଛିଡ଼ା ହୋଇ ଖଣ୍ଡେ ପ୍ୟାଣ୍ଟ୍ ଓ ସାର୍ଟ୍‌କନା କିଣିଆଣି ତାଙ୍କ ମାପରେ ପ୍ୟାଣ୍ଟ୍‌ସାର୍ଟ୍ ସିଲାଇଲେ । ଏକଥା ପାଠୀ ବାବୁ ମୋଟେ ଜାଣିନଥିଲେ । ଭଲଦିନ ଦେଖି ସ୍ୱାମୀଙ୍କୁ ଉପହାର ଦେଲେ । ତାହାଦେଖି ପାଠୀ ବାବୁ ଆଶ୍ଚର୍ଯ୍ୟ ହେଲେ, ଖୁସି ହେଲେ ଏବଂ ଡ୍ରେସ୍‌ର ରଙ୍ଗ ଦେଖି ଡରିଗଲେ । କିନ୍ତୁ ଶ୍ରୀମତୀଙ୍କ ଆଦେଶକୁ ମାନି ଏହା ଧାରଣ କଲେ । ଯିଏ ପାଠୀ ବାବୁଙ୍କୁ ଦେଖିଲା, ସିଏ ଆଶ୍ଚର୍ଯ୍ୟ ହେଲା । କାରଣ ସବୁବେଳେ ପାଠୀ ବାବୁ ଆର୍ଟିଷ୍ଟିକ୍ କଲର୍ ଡ୍ରେସ୍ ପିନ୍ଧନ୍ତି । ଏବେ ଯାହା ପିନ୍ଧିଛନ୍ତି - ପ୍ୟାଣ୍ଟ୍ କଲରଟି ପୂରା ଜେଡ୍ ବ୍ଲାକ୍, ସାର୍ଟ ରଙ୍ଗଟି ଗୋଲାପୀ । ସେଥିରେ ପୁଣି ଷ୍ଟ୍ରେଚ୍ କନା, ଯାହାକୁ ସେ ଦେଖିଲେ ଘୃଣା କରନ୍ତି । କିନ୍ତୁ ବାବୁଙ୍କର ଉପାୟ ନାହିଁ । ମୁଁ ବାବୁଙ୍କୁ ଦେଖି ବହୁତ ହସିଲି । ଚୁପ୍ କର । ଖୁବ୍ ଭଲ ହୋଇଛି କହ । ଭାଉଜ ମୋତେ ଏହା ଉପହାର ଦେଇଛି । ଉପାୟ ନାହିଁ । ଏଥର ପାଠୀ ବାବୁଙ୍କ ପାଳି । ସେବି କିଛି ଉପହାର ଦେବାକୁ ଚାହିଁଲେ । ଦୋକାନକୁ ଯାଇ ସେ ଅବନ୍ତୀଙ୍କ ପାଇଁ ଦୁଇଟି ଶାଢ଼ି କିଣିଲେ । ସେ ଦୁଇଟି ଶାଢ଼ିରୁ ଗୋଟିଏ ହେଉଛି ଗଞ୍ଜାମର ବମକେଇ ଶାଢ଼ି, ଅନ୍ୟଟି ସମ୍ବଲପୁରୀ ଶାଢ଼ି । ରଙ୍ଗଗୁଡ଼ିକ ଖୁବ୍ ଆର୍ଟିଷ୍ଟିକ୍ ହୋଇଛି । ଧଡ଼ିରେ କୁମ୍ଭ ଓ ଯାହାର ନକ୍ସା ଅତି ଚମତ୍କାର । ଇଣ୍ଡିଆନ୍‌ରେଡ୍ ସହ ଧଳା ଧଡ଼ି । ୟଲୋ ଅକର୍ ସହ କଳା ଧଡ଼ି । ଆମେ ଦୁହେଁ ଏପରି କଲର ଶାଢ଼ି ସିଲେକ୍ସନ କରିବାରୁ ଖୁବ୍ ଖୁସି ହେଲୁ । ନିଜକୁ ନେସ୍‌ନାଲ୍ ଆର୍ଟିଷ୍ଟ ଭଳିଆ ଭାବିଲୁ । ପାଠୀ ବାବୁ ସ୍ନେହର ସହ ପତ୍ନୀଙ୍କ ହାତକୁ ବଢାଇଦେଲେ ଦୁଇଟି ଶାଢ଼ି । ମୁଁ ପାଖରେ ଛିଡ଼ା ହୋଇଥାଏ । ଭାଉଜ ଶାଢ଼ିଗୁଡ଼ିକର ରଙ୍ଗ ଦେଖିଲେ ଏବଂ ଉଚ୍ଚା ଦାମ୍ ମଧ ଦେଖିଲେ। କିଛି ସମୟ ନୀରବ ରହି କହିଲେ, ତୁମେ କି ଆର୍ଟିଷ୍ଟ ? ତୁମେ ଶାଢ଼ି ବାଛି ଜାଣିଛ ? ଏ ପୁରୁଣା ଶାଢ଼ିଗୁଡ଼ାକ କେତେ ଦାମ୍‌ରେ କିଣିଛ ? ତୁମ ପାଇଁ କେତେ କଷ୍ଟରେ ଲାଇନ୍‌ର ଛିଡ଼ା ହେଇ କେତେ ବଢ଼ିଆ ଡ୍ରେସ୍ କରିଛି, ଆଉ ତୁମେ .......... । ଏହିସବୁ କଥା ଭିତରେ ମୁଁ ସେଠାରୁ ତାଙ୍କ ଅଜାଣତରେ ଦୂରେଇ ଗଲି । ତା'ପରେ କ'ଣ ହେଲା ମୁଁ ଜାଣେ ନାହିଁ । ଦୁଇଦିନ ପରେ ତାଙ୍କ ଘରକୁ ଗଲି । ଦେଖିଲି ସବୁ ଠିକ୍ ହେଇଯାଇଛି । ଭାଉଜ ଖୁସିରେ ମୋ ହାତକୁ ଚା' ବଢେଇ ଦେଲେ । କିନ୍ତୁ ମୁଁ ଶାଢ଼ି କଥା ଆଉ ଉଠେଇବାକୁ ସାହସ କଲିନି ।

ମୁଁ ପାଠୀ ବାବୁଙ୍କ ପରିବାର ଏବଂ ଚନ୍ଦ୍ରଶେଖର ରାଓଙ୍କ ପରିବାରରେ ଜଣେ ସଦସ୍ୟ କହିଲେ ଭୁଲ୍ ହେବନାହିଁ । କାରଣ ଏମାନଙ୍କର ବିବାହ ପୂର୍ବରୁ ଏମାନଙ୍କ ସହ ପରିଚିତ । ପାଠୀ ବାବୁଙ୍କ ପରିବାର ଖୁବ୍ ଭଲ । ଆଜି ପାଠୀ ବାବୁ ଏତେ ବଡ଼ ହେବା ପଛରେ ଅବନ୍ତୀ ଭାଉଜଙ୍କ ପ୍ରେରଣା ଏବଂ ଅବଦାନ ରହିଛି । ସ୍ୱାମୀଙ୍କ ପାଇଁ ସେ ବହୁତ କିଛି ତ୍ୟାଗ କରିଛନ୍ତି । ଏଣୁ ସେ ୧୯୬୭ରୁ ୧୯୭୮ ଯାଏ ସେ ବାଲେଶ୍ୱରରେ ଚାକିରି କରି ରହିଲେ । କାରଣ ସେ ଏଠାକୁ ଆସିଲେ ପାଠୀ ବାବୁଙ୍କ ଶିଳ୍ପୀ ସାଧୀନତାରେ ଆଞ୍ଚ ଆସିବ । ତେଲ ଲୁଣ ସଂସାରରେ ସେ କାଳେ ବୁଡ଼ିଯିବେ । ତେଣୁ ସେ ସେଠାରେ ରହି ସବୁପ୍ରକାର ସାହାଯ୍ୟ କରନ୍ତି । ପ୍ରଦର୍ଶନୀ ପାଇଁ ଟଙ୍କା ପଠାନ୍ତି । ଏମ୍.ଏ ପଢ଼ିବା ପାଇଁ ବାଧ କଲେ । ସେ ଅଫିସର୍ ନହେବାଯାଏ ଭୁବନେଶ୍ୱର ଆସିବି ନାହିଁ କହି ସେଠାରେ ରହିଲେ । ସେଥିପାଇଁ ସେ ଯେତେକଷ୍ଟ ସହିବା କଥା ବାଲେଶ୍ୱରରେ ରହି ସହିଲେ । ଶେଷରେ ପାଠୀ

Digitized by srujanika@gmail.com

ବାବୁ ଏମ. ଏ. ପ୍ରଥମ ଶ୍ରେଣୀରେ ପାଶ୍ କଲେ । ସରକାରୀ କ୍ୱାଟର୍ ପାଇବା ପରେ ଭାଉଜ ବାଲେଶ୍ୱରରୁ ଭୁବନେଶ୍ୱର ଆସିଲେ । ପାଠୀ ବାବୁ ଦିଲ୍ଲୀରେ ଥିବାବେଳେ ମୋତେ ଅନେକଥର କହିଛନ୍ତି, ରାଓ ତୁମ ଭାଉଜ ଏଠାରେ ଥିଲେ କେତେ ଖୁସିରେ ରହିପାରିଥାଆନ୍ତେ । ସେ ଯାହା ଚାହୁଁଥିଲେ ସବୁକିଛି ମୁଁ ଆଜି କରିଛି । କିନ୍ତୁ ସେ ଆଜି ମୋ ପାଖରେ ନରହି ବାଲେଶ୍ୱରରେ । ସେ ଭୀମଟାଙ୍ଗୀରେ ଘର କଲାବେଳେ ଅନେକଥର ମୋତେ କହିଛନ୍ତି, ଏଥର ନିଶ୍ଚିତ ଅବନ୍ତୀ ଘର ପ୍ରତିଷ୍ଠାବେଳେ ଆସିବ । ଅବନ୍ତୀ ପାଇଁ, ନିଜ ପରିବାର ପାଇଁ ଅନ୍ୟ ବନ୍ଧୁ ବାନ୍ଧବଙ୍କୁ ପାଠୀ ବାବୁଙ୍କୁ ଛାଡ଼ିବାକୁ ପଡ଼ିଲା । ଶେଷରେ ଅବନ୍ତୀ ଭୀମଟାଙ୍ଗୀ ଘରକୁ ରୋଗାକ୍ରାନ୍ତ ଅବସ୍ଥାରେ ଆସିଲେ ଓ ଶେଷ ନିଶ୍ୱାସ କୁନୁ ଓ ପାଠୀ ବାବୁଙ୍କ ପାଖରେ ହିଁ ତ୍ୟାଗ କଲେ ।

ଥରକର କଥା, କୁନୁ ପରେ ଗୋଟେ ପୁଅ ଜନ୍ମ ହେଲା । କିଛି ସମୟ ପରେ ତା'ର ମୃତ୍ୟୁ ହୋଇଗଲା । ପାଠୀ ବାବୁ ଏକଥା କାହାକୁ କିଛି ନକହି ନିଜ ଛୁଆକୁ ଗୋଟେ ହାତରେ ଏବଂ ଅନ୍ୟ ହାତରେ ଛୋଟିଆ ଶାବଳ ଗୋଟେ ଧରି ବର୍ତ୍ତମାନ ବଡ଼ଗଡ଼ ମାର୍କେଟ୍ କମ୍ପ୍ଲେକ୍ସ ପାଖରେ ଥିବା ମଶାଣିରେ ପୋତି ଦେଇ ଆସିଲେ । ସବୁ ସରିବା ପରେ ମୁଁ ଜାଣିଲି । ପରେ ପରେ ମାମା (ସୁନନ୍ଦା)ର ଜନ୍ମ । ସୁନନ୍ଦା (ମାମା) ଜନ୍ମ ବେଳେ ବହୁତ ମୋଟାସୋଟା ଥିଲା । ନାକ, ଆଖି, ମୁହଁ ଦେଖିବାକୁ ଠିକ୍ ପାଠୀ ବାବୁଙ୍କ ପରି । ସେ ମାମାକୁ ବହୁତ ଭଲ ପାଉଥିଲେ । ମାମା ଚିତ୍ର ଭଲ କରୁଥିଲା । ଓଡ଼ିଶୀ ନୃତ୍ୟର ବିଶିଷ୍ଟ ଗୁରୁମାନେ ଯଥା ସଂଯୁକ୍ତା ପାଣିଗ୍ରାହୀ, ଦେବ ପ୍ରସାଦ ଦାସ, ସହଦେବ ପାଢ଼ୀ ଆସି ମାମାକୁ ନାଚ ଶିଖାଉଥିଲେ । ମାମା ଶେଷରେ ଘରର କେନ୍ଦ୍ରବିନ୍ଦୁ ହୋଇଗଲା । ସମସ୍ତଙ୍କୁ ସ୍ନେହରେ ବାନ୍ଧି ରଖିଲା । କୁନୁ ଓ ମାମା ଦୁହିଁକୁ ଦେଖିଲେ ଖୁସି ଲାଗୁଥିଲା । ଘରଟା ପୁଣି ଖୁସିରେ ଉଛୁଳି ପଡ଼ିଲା ।

ଏଥିମଧ୍ୟରେ ପାଠୀ ବାବୁ ବି.କେ. ଘରୁ କଳା ମହାବିଦ୍ୟାଳୟରେ ଅଧକ୍ଷ ହୋଇ ଯୋଗଦେଲେ । ମୁଁ ମଧ୍ୟ ସେହି କଲେଜରେ ଅଧାପକ ହେଇ ଯୋଗ ଦେଲି । ତାଙ୍କ ଆଖି ଆଗରେ ଶାନ୍ତିନିକେତନ, ବରୋଦା, ଦିଲ୍ଲୀର କଳା ମହାବିଦ୍ୟାଳୟ ନାଚିଉଠିଲା ବାରମାସରେ ତେର ଆଖଡ଼ା ପରି ସବୁବେଳେ କଲେଜରେ କିଛି ନା କିଛି କାର୍ଯ୍ୟକ୍ରମ ଲାଗିରହିଲା । ଥରେ ବିଭୁତି କାନୁନ୍‌ଗୋ ସ୍ମୃତି ଦିବସରେ ଭାଷଣ ଦେବା ପାଇଁ ଶାନ୍ତିନିକେତନରୁ କାଞ୍ଚନ'ଦା (ପ୍ରଫେସର୍ କାଞ୍ଚନ ଚକ୍ରବର୍ତ୍ତୀ) ଆସି ପହଞ୍ଚିଲେ । ପରଦିନ ତାଙ୍କର ଭାଷଣ ଅଛି । ସେ ସାଥିରେ ତାଙ୍କ କୋଡ଼ିଏ ପୃଷ୍ଠାର ଲିଖିତ ଭାଷଣ ଆଣି ପାଠୀ ବାବୁଙ୍କୁ ଦେଲେ । ଯାହାକୁ କି ଓଡ଼ିଆ ଭାଷାରେ ଅନୁବାଦ କରିବାର ଆବଶ୍ୟକତାକୁ ଅନୁଭବ କରି ପାଠୀ ବାବୁ ମୋତେ ଚୁପ୍‌କିନା ପଚାରିଲେ ଯେ, ଆସନ୍ତା କାଲି ଦିନ ୧୧ ସୁଦ୍ଧା ଏହାକୁ ଓଡ଼ିଆ ଅନୁବାଦ କରି ଛାପିଦେଇ ପାରିବକି ? ମୁଁ ଚେଷ୍ଟା କରିବି କହିଲି । ସେ ମୋତେ କହିଲେ - ଏହା ଯେପରି ଠିକ୍ ସମୟରେ ନିଶ୍ଚିତ ଭାବେ ହୁଏ । ଏ ଦାୟିତ୍ୱ ତୁମର । ମୁଁ ଲେଖାଟି ଆଣି ଡକ୍ଟର ଭଗବାନ ପଣ୍ଡାଙ୍କୁ ଅନୁବାଦ କରିବାକୁ ଅନୁରୋଧ କଲି । ସେ ଅନୁବାଦ କରି ମୋତେ ସନ୍ଧ୍ୟାରେ ଦେଲେ । ମୁନ୍‌ଲାଇଟ୍ ପ୍ରେସ୍‌କୁ ଆଗରୁ ମୁଁ କହି ରଖିଥାଏ । ଲେଖାଟି ପାଇବା ସଙ୍ଗେ ସଙ୍ଗେ ସେ ଦୁଇ ଚାରିଜଣଙ୍କୁ ଧରି କଂପୋଜିଂ ଆରମ୍ଭ କଲେ । ରାତିରେ ପ୍ରୁଫ୍‌ଟି ମୋତେ ଦେଲେ । ମୁଁ ପୁଣି ଭଗବାନ ପଣ୍ଡାଙ୍କ ପାଖକୁ ଯାଇ ପ୍ରୁଫ୍ କରେକ୍‌ସନ୍ କରି ଆଣି ପ୍ରେସ୍‌ରେ ଦେଇ ଛାପି ଆଣିଲି । ବକ୍ତୃତା ଆରମ୍ଭ ହେବା ପୂର୍ବରୁ ମୁଁ ଓଡ଼ିଆ ଅନୁବାଦ ପୁସ୍ତିକାଟିକୁ ପିଲାମାନଙ୍କୁ ବାଣ୍ଟି ଦେଲି । ଏହା ଦେଖି କାଞ୍ଚନ'ଦା ପାଠୀ ବାବୁଙ୍କୁ ପଚାରିଲେ, ରାଓ କ'ଣ ସେଠାରେ ବାଣ୍ଟୁଛନ୍ତି ? ସେ ସବୁ କଥା ଜାଣିବାପରେ କହିଲେ, ଏହା ଆମ ଶାନ୍ତିନିକେତନରେ କେବେହେଲେ ସମ୍ଭବ ହୋଇପାରିନଥାନ୍ତା । ଏଥିପାଇଁ ସରକାରଙ୍କଠୁ ଅନୁମତି ନେବାକୁ ପଡ଼ିଥାନ୍ତା । ଏଥିପାଇଁ ପ୍ରାୟ ମାସେ ସମୟ ଲାଗି ଯାଇଥାନ୍ତା ।

କଲେଜ ଠିକ୍ ଚାଲିଥାଏ । ଅବନ୍ତୀ ଭାଉଜ ଠିକ୍ ସମୟରେ କଲେଜକୁ ଆହାର ପଠେଇ ଦିଅନ୍ତି । ସନ୍ଧ୍ୟାବେଳେ ଜଳଖିଆ ମଧ୍ୟ ପଠେଇ ଦିଅନ୍ତି । ଏପରିକି ଦିନ ଛଅରୁ ରାତି ଦଶ ପର୍ଯ୍ୟନ୍ତ

Digitized by srujanika@gmail.com

ଆମେ କଲେଜରେ ରହିଯାଉଥିଲୁ । 'ଚିତ୍ର ମେଳା' ସମୟରେ ଘରକୁ ଯିବାକୁ ମଧ୍ୟ ସମୟ ପାଉ ନଥିଲୁ । **ଥରେ ଥରେ ପାଠୀ ବାବୁ ଅବନ୍ତୀ ଭାଉଜଙ୍କୁ କହନ୍ତି, ତୁମର ଦୁଇଟି ଛୁଆ । ମୋର କିନ୍ତୁ ଦୁଇଶହ ଛୁଆ । ସେମାନଙ୍କୁ ଠିକ୍ ରାସ୍ତା ଦେଖେଇବା ମୋ ଉପରେ ନିର୍ଭର କରୁଛି । ଓଡ଼ିଶାର ଚିତ୍ରଶିଳ୍ପୀମାନଙ୍କୁ ଭାରତ ତଥା ଭାରତ ବାହାରେ ପରିଚିତ କରେଇବାର ଦାୟିତ୍ୱ ଆମ ଉପରେ ଅଛି ।** କିନ୍ତୁ ସବୁ ଓଲଟ ପାଲଟ ହୋଇଗଲା । ମାମାର ଦେହ ହଠାତ୍ ୧୯୮୫ ମସିହାରୁ ଧୀରେ ଧୀରେ ଖରାପ ଆଡ଼କୁ ଗତି କରିବାକୁ ଲାଗିଲା । ତା'ପରେ ତାଙ୍କ ପାରିବାରିକ ଆକାଶରେ କଳାମେଘ ଘୋଟି ଆସିଲା । ମାମାକୁ ବହୁ ଡାକ୍ତର, କବିରାଜ ତଥା ହୋମିଓପାଥି ଡାକ୍ତରଙ୍କୁ ଦେଖାଗଲା । ଗୁଣି ଗାରେଡ଼ି ଉପଗ୍ରହ ମଧ୍ୟ ହେଲା । ଯିଏ ଯାହା କହିଲା ସବୁ କରାଗଲା । ହେଲେ କିଛି ସୁଫଳ ମିଳିଲା ନାହିଁ । ଶେଷରେ କୋଚିଲା ଖାଇ ଚଢେଇ ମାରି ତା'ର ମାଂସ ଓ ତେଲ ଖାଇଲେ ଭଲ ହୋଇଯିବାର କେହିଜଣେ କହିବାରୁ ତା' ମଧ୍ୟ କରାଗଲା । କିନ୍ତୁ ମାମାର କୌଣସି ଉନ୍ନତି ଦେଖାଗଲା ନାହିଁ । ପାଠୀ ବାବୁଙ୍କ ଘରେ ପୁଣି ଅଶାନ୍ତି ଦେଖାଦେଲା । ଏଣେ କଲେଜ ଉପରେ ସମସ୍ତଙ୍କ ଦୃଷ୍ଟି । କିଛି ବି ସମାଧାନ ହୋଇପାରୁନାହିଁ । ଶେଷରେ କଲେଜ ଦାୟିତ୍ୱ ମୋତେ ଦେଇ ମାମାକୁ ଧରି ଦିଲ୍ଲୀ ଏ.ଆଇ.ଏମ୍.ଏସ୍‌କୁ ପାଠୀ ବାବୁ ଗଲେ । ବହୁ ପଇସା ଖର୍ଚ୍ଚ କଲେ । ଶେଷରେ ମୋତେ ଦିଲ୍ଲୀ ଡକାଇଲେ । ମୁଁ, ସେଠାରେ ରହିଲି । ପାଠୀ ବାବୁ ଓଡ଼ିଶା ଆସିଲେ । କାରଣ ମାର୍ଚ୍ଚ ମାସର ସରକାରୀ କଥା । ସେ କଲେଜରେ ରହିବା ନିହାତି ଦର୍କାର । ମୁଁ, ଅବନ୍ତୀଭାଉଜ ଓ କୁନୁ ଓଡ଼ିଶା ଭବନରେ ରହିଲୁ । ସେଠି ଅଧିକ ଦିନ ହେବାରୁ ହାଉଜ୍‌ଖାସ୍ ଜଗନ୍ନାଥ ମନ୍ଦିରରେ ଆସି ରହିଲୁ । ମାମା ହସ୍‌ପିଟାଲରେ ଥାଏ । ପ୍ରାୟ ଗୋଟେ ମାସ ପରେ ମାମାକୁ ଧରି ଭୁବନେଶ୍ୱର ଫେରିଲୁ । ଏଥର ପାଠୀ ବାବୁ ସ୍ଥିର କଲେ, ମାମାକୁ ସୁଇଜରଲ୍ୟାଣ୍ଡ ନେବା ପାଇଁ । ପାଠୀ ବାବୁ, ମାମା ଓ ଅବନ୍ତୀ ଭାଉଜ ସୁଇଜର୍‌ଲ୍ୟାଣ୍ଡ ଯିବେ ଓ କୁନୁ ଆମ ଘରେ ରହିବ । ମୁଁ କିନ୍ତୁ ଏଥିରେ ଆପତ୍ତି କଲି । କୁନୁ ଆମଘରେ ରହିବାର କିଛି ଆପତ୍ତି ନାହିଁ । କିନ୍ତୁ କୁନୁକୁ ଆପଣଙ୍କ ସାଙ୍ଗେ ନେବାଟା ଠିକ୍ ହେବ । ସେଥିରେ ପାଠୀ ବାବୁ ରାଜି ହେଲେ । ସମସ୍ତେ ସୁଇଜର୍‌ଲ୍ୟାଣ୍ଡ ଗଲେ । ସେଠାରେ ମାମାକୁ ଚିକିତ୍ସା କରି ଫେରିଲେ । ପୁଣି ବର୍ଷକ ପରେ ମାମା ଓ ପାଠୀ ବାବୁ ସୁଇଜର୍‌ଲ୍ୟାଣ୍ଡ ଗଲେ । ଶେଷରେ ୧୯୮୮ ମସିହା ଜୁନ୍ ମାସରେ ମାମା ଓ ପାଠୀ ବାବୁ ପୁଣି ସୁଇଜର୍‌ଲ୍ୟାଣ୍ଡ ଗଲେ । ମାମାର ଦେହ ଏତେ ଖରାପ ହୋଇଯାଇଥିଲା ଯେ ଆଖି, କିଡ଼ନି ଓ ଆଣ୍ଠୁ ଉପରେ ବହୁତ ପ୍ରଭାବ ପଡ଼ିଲା । ପାଠୀ ବାବୁଙ୍କ ବନ୍ଧୁ ଡକ୍ଟର ଫିସର୍ ପୃଥିବୀର ସବୁ ଡାକ୍ତରଙ୍କ ସହ ପରାମର୍ଶ କଲେ । ଶେଷରେ ଡାକ୍ତରମାନେ କହିଲେ, ଆଉ ଭଲ ହେବାର ନାହିଁ । ଶେଷରେ ମାମାକୁ ଧରି ୮.୭.୧୯୮୮ରେ ଭୁବନେଶ୍ୱରରେ ପହଞ୍ଚିଲେ । ମାମାକୁ ଦେଖି ଅବନ୍ତୀ ଭାଉଜ ଦୁଃଖରେ ପୂରା ଭାଙ୍ଗି ପଡ଼ିଲେ । ପାଠୀ ବାବୁଙ୍କ ଦୁର୍ଦ୍ଦିନ ଅବସ୍ଥା ଦେଖିଲେ ମନେ ହେଉଥାଏ, ଏ କ'ଣ ସେହି ଲୋକ ? ଝିଅ ପାଇଁ କେତେ ଡାକ୍ତର, କେତେ ବନ୍ଧୁ କେତେ ଲୋକଙ୍କର ସାହାଯ୍ୟ ନେଲେ ତଥାପି କିଛି ଫଳ ହେଲା ନାହିଁ । ଶେଷରେ ୧୦.୭.୧୯୮୮ ଦିନ ଆମ ସମସ୍ତଙ୍କ ଠାରୁ ହସି ହସି ବିଦାୟ ନେବା ପୂର୍ବରୁ ବାପା ମାଆଙ୍କୁ ଭଲରେ ରହିବା ପାଇଁ ପରାମର୍ଶ ଦେଇ ଚିରଦିନ ପାଇଁ ମାମା ଆଖି ବୁଜିଦେଲା ।

ମାମାକୁ ହସ୍‌ପିଟାଲରୁ ଘରକୁ ଆଣିଲେ । ପାଠୀ ବାବୁ ଓ ଅବନ୍ତୀ ଭାଉଜଙ୍କ ଅବସ୍ଥା ଦେଖି ହେଉନଥାଏ । ମାମାର କଥା ଗ୍ରରିଆଡ଼େ ପ୍ରଘ୍ରର ହୋଇଗଲା । କଲେଜର ଛାତ୍ରମାନେ, ଶିକ୍ଷକ ଓ ଷ୍ଟାଫ୍ ସମସ୍ତେ ଆସିଲେ । (ମାମା ସହ ଦିଲ୍ଲୀ ହସପିଟାଲ୍‌ରେ ମୁଁ ପ୍ରାୟ ଏକମାସ ବିତେଇଛି । ମୁଁ ସକାଳେ ବସାରୁ ବାହାରିବା ପରେ ରାସ୍ତାରୁ କେତୋଟି ରଙ୍ଗୀନ୍ ଗୋଲାପ ଫୁଲ ନେଇ ସବୁଦିନ ମାମାକୁ ଦିଏ । ସେ ବହୁତ ଖୁସି ହୁଏ । ପ୍ରତ୍ୟେକ ଫୁଲର ରଙ୍ଗର ନାମ ମୋତେ କହି ଖୁସି କରାଏ ।) ସେଦିନ ସମସ୍ତେ ମିଶି ମାମାକୁ ପୁରୁଣା ଭୁବନେଶ୍ୱରର ଗରାବଡୁ ମଶାଣିକୁ ନେଲୁ । ସେଠାରେ ଯାହା ସବୁ କର୍ମ କରିବା କଥା ମ୍ୟୁଜିୟମର କୁଞ୍ଜ ଭାଇନା କଲେ । ଏଥର ମୁଖାଗ୍ନି ଦେବା କଥା । ଦୂରରେ ଏକ ଘ୍ରଦିନୀ ପାଖରେ ପାଠୀ ବାବୁ, ସୁଧାଂଶୁ ମୋହନ ରାଉତରାୟ ଏବଂ ଅନ୍ୟମାନେ ବସିଥାନ୍ତି ।

Digitized by srujanika@gmail.com

ମୁଖାଗ୍ନି ଦେବାକୁ ପାଠୀ ବାବୁଙ୍କୁ ଡକରା ହେଲା । ସେ ଆସିଲେ ନାହିଁ ।  ଶେଷରେ ମୁଁ ଯାଇ ବାଧ କଲି ।  ପାଠୀ ବାବୁ କହିଲେ, ରାଓ ତୁମେ ମୁଖାଗ୍ନି ଦେଇଦିଅ ।  ତୁମେ ଦେବା ଯାହା ମୁଁ ଦେବା ଏକାକଥା ।  କିନ୍ତୁ ମୁଁ ପାଠୀ ବାବୁଙ୍କ ମନକଥା ବୁଝିଗଲି ।  ସେ ମାମାକୁ ଏତେ ଭଲ ପାଉଥିଲେ ଯେ, ଏ କର୍ମ କରିବାକୁ ଇଚ୍ଛା  କରୁନାହାନ୍ତି ।  ଶେଷରେ ତାଙ୍କ କଥା ହିଁ ରହିଲା ।  ମୁଁ ମୁଖାଗ୍ନି ଦେବା ପୂର୍ବରୁ ମୋର ଛାତ୍ର ଦ୍ୱାରା ବଜାରରୁ ଆଣିଥିବା ଗୋଲାପଫୁଲ ପେନ୍ଥା ମାମା ହାତକୁ ଧରାଇ ଦେଲି ।  ସେ ଅଭିମାନରେ ଆଉ ଫୁଲର ରଙ୍ଗ କହିଲା ନାହିଁ ।  ମାମାକୁ ମୁଁ କିନ୍ତୁ କହିଛି, ଦେଖ୍ ମାମା ଏଇ ଗରାବଡୁ ମଶାଣିରେ ମୋର ଗୁରୁମା ଉର୍ବଶୀ ପଣ୍ଡା, ମୋର ଅଜା, ବାପା ଓ ମାଆ, ତୋର ପ୍ରିୟ ଲକ୍ଷ୍ମୀ ଖୁଡ଼ି ଏଠାରେ ହିଁ ଲୀନ ହୋଇଛନ୍ତି ।  ମୋର ମଧ ଏଠାକୁ ଆସିବାର ଇଚ୍ଛା ।  ମୋ ଇଚ୍ଛା ତୁ ନିଶ୍ଚୟ ପୂରଣ କରିବୁ ।  ବୋଧେ ତାହାହିଁ ସେ ନିଶ୍ଚୟ କରିବ ।  କାରଣ କିଛି ବର୍ଷ ତଳେ ଅବନ୍ତୀ ଭାଉଜ ମଧ ବାଲେଶ୍ୱରରୁ ଆସି ମାମା ପାଖରେ ହିଁ ଲୀନ ହୋଇଯାଇଛନ୍ତି ।



Digitized by srujanika@gmail.com

ରାମହରି ଜେନା

# ଦୂର ବହୁଦୂର ଏକା ସାଙ୍ଗେ କଳାର ଗହନ ପଥରେ : ଅନୁଭବର କିଛି କଥା

ଘକିରି ସାଙ୍ଗକୁ କଳାସାଧନା ଦୁଇ ନାଆରେ ଗୋଡ଼ ଦେଲା ଭଳିଆ କଥା । ଓଡ଼ିଶାରେ ଆମେ ସବୁ ଘକିରିଆ ଆର୍ଟିଷ୍ଟ । ବେଳପଡ଼ିଲେ ଛବି ଆଙ୍କୁ । ବର୍ଷରେ ଏଇ ହାତ ଗଣତିରେ ତିନି ଘରିଖଣ୍ଡ ଅଙ୍କାଅଙ୍କି କଲାବେଳକୁ ଆମର କଣ୍ଠାଗ୍ରତ ଅବସ୍ଥା । ସେଇଟା ପୁଣି ପ୍ରଦର୍ଶନୀ କିମ୍ବା କଳାଶିବିରରେ ଯୋଗଦେବାର ସୁଯୋଗ ପାଇଲେ ଯାଇ ଆମର ମୁଡ୍ ଆସିଥାଏ । ସାଧାରଣରେ ରାଜଧାନୀରେ ଆମର ଯେଉଁ ଘର ଖଣ୍ଡିକ ଅଛି ଏଇଠି ଛବି ପାଇଁ ଷ୍ଟୁଡ଼ିଓର ଅଭାବ । ଡ୍ରଇଁ ରୁମ୍‌ରେ ତ ସୋଫାସେଟ୍, ଡିଭାନ୍, ଟି.ଭି କେବିନେଟ ଓ ଟି.ଭି, ସ୍ତ୍ରୀଙ୍କ ହାତ ତିଆରି ପ୍ଲାଷ୍ଟିକ/କନା କଣ୍ଢେଇର କାଚ ସୋକେଶ୍ । ଏପଟେ ଡାଇନିଂ ଟେବୁଲ । ଶୋଇବା ଘରକଥା ନକହିଲେ ଭଲ । ଖଟ, ଆଲଣା, ଦି'ଦିଟା ଆଲମିରା, ଆମ ବାହାଘର ସମୟର ସ୍ତ୍ରୀଙ୍କ ଡ୍ରେସିଂ ଟେବୁଲ । ତାଙ୍କ ଯଉତୁକ ଟ୍ରଙ୍କପେଡ଼ି ଆଉ ଫ୍ରିଜ୍ । ଆର ଘରଟା ପିଲାମାନଙ୍କ ରୁମ୍ । ସେ ପାଖର ଦିଟା ରୁମ୍ ତ ଭଡ଼ାରେ ନାଗିଚି । ଆଉ ରହିଲା ଏଇ ବାରଣ୍ଡା ଭଳିଆ ଯାଫ୍ରିକରା ରୁମ୍, ଚେୟାର ଟେବୁଲ୍, ସ୍କୁଟର, ସାଇକେଲ, ଘଉଳ ବସ୍ତା, ଷ୍ଟାଣ୍ଡରେ ଜୋତା ଭର୍ତ୍ତି, ଘରେ ଆଉ ଜାଗା କାହିଁ ? ଛବି ଆଙ୍କିବା ଯାଇତାଇ କଥା ନୁହେଁ, ରିତିମତ ଷ୍ଟୁଡ଼ିଓଟିଏ ଦରକାର । ତା'ପରେ ଆମ ରାଜ୍ୟରେ ବିକ୍ରିବଟାର କୌଣସି ସରକାରୀ ବ୍ୟବସ୍ଥା ମଧ୍ୟ ନାଇଁ ଯେ ବର୍ଷରେ ଦଶକୋଡ଼ିଏ ହଜାର ରୋଜଗାର ହେଇଯିବ । ଲୋକେ ଆର୍ଟ୍ ଫାର୍ଟ୍ ମଧ୍ୟ କିଛି ବୁଝନ୍ତିନି । ଆମ ଘରକୁ ଆସି ଆର୍ଟ୍ ଫାର୍ଟ୍ କଥା କିଏ କେବେ ପଘରି ଥିବାର ମୋର ହେତୁନାହିଁ । ହେଲା ଆମେ ସବୁ ଆର୍ଟ୍ ସ୍କୁଲରେ ପାଠ ପଢ଼ିଲୁ ବୋଲି କଣ ଚିତ୍ର ଆଙ୍କିବାକୁ ବାଧ୍ୟ ! କାଇଁ ଓଡ଼ିଆରେ ଏମ୍.ଏ. ବାଲାଏ ତ ସାହିତ୍ୟ କରୁନାହାନ୍ତି ? ସାଇନ୍‌ବୋର୍ଡ଼ ସାଇଜ୍‌ର ନେମ୍ ପ୍ଲେଟ୍‌ଟା ପଇସା ଖର୍ଚ୍ଚକରି ନଗେଇଚୁ ସେଇଟା ବଡ଼କଥା ।

ରବିବାରିଆ ଦିବ୍ୟ ଭୋଜନଟେ ପକେଇ, ଦି' ଘରିଟା ସିଗ୍ରେଟ୍ ଫୁଙ୍କି ମୋ ରୁମ୍‌ରେ ଚିତ୍ରନେଇ ବ୍ୟସ୍ତ ଥାଏ । ସେପ୍ଟେମ୍ବର ଶେଷରେ କିଛି ବଙ୍ଗାଳୀ ସାଙ୍ଗଙ୍କ ସାଥିରେ ମୋର ଗ୍ରୁପ୍ ସୋ କଲିକତା ଏକାଡ଼େମୀ ଅଫ୍ ଫାଇନ୍ ଆର୍ଟ୍ସ୍‌ରେ । ହାତଗଣତିରେ ପାଞ୍ଚଟା ମାସ । ଛଅ ଛଅଟା ପେଣ୍ଟିଂ ଦେବାକୁ ହେବ, ସାଥିରେ ମୋର କିଛି ଲିଥୋ ପ୍ରିଣ୍ଟ ନେଇଯିବି । ପେଣ୍ଟିଂ ପାଇଁ ସମୟ ପାଉନି । ଲିଥୋ ଆଉ ଏଚିଂ କରୁ କରୁ ସମୟ ପଳେଇ ଯାଉଛି, ଖାଲି ଯାହା ଏଇ ଶନିବାର ଓ ରବିବାର ଦି'ଟା ଦିନରେ ଘରେ ବସିହେଉଛି କାନ୍‌ଭାସ ପାଖରେ । ଆର ରୁମ୍‌ରୁ ଅଞ୍ଜନ ଓ ସଜଳର ଘୁଙ୍ଗୁଡ଼ି, ଅଞ୍ଜନ ଓ ସଜଳ ବି.କେ. କଲେଜର ଛାତ୍ର, ମୋ ପାଖରେ ରହୁଥିଲେ । ଏପ୍ରିଲ ମାସର ଝାଳୁଆ ଖରା ।

ଆଖିକୁ ନିଦ ଆସିଯାଉଛି, କେତେ ଆଉ ଫୁଙ୍କିବି । ବୋଉଥିଲେ ଘ କରିଦେଇଥା'ନ୍ତା । ଅଞ୍ଜନକୁ ଉଠେଇ ଘ ପିଇ ଯିବାକୁ ଇଚ୍ଛା ହେଲା । ଭାଇନା ଦୋକାନ ଆଗରେ ଠିଆହେଇ ଘ' ପିଇବା ମଜାଟା ହିଁ ଅଲଗା । ଭାଇନା ଦୂରରୁ ଆମକୁ ଦେଖୁ ଦେଖୁ ତା'ର ଅନ୍ଧାରୁଆ କାଠ କେବିନ୍ ଭିତରୁ ନମସ୍କାର ପକେଇବ । କେବିନ୍ ଭିତରୁ ତା'ର ଚକ୍‌ଚକ୍ ଧୋବ ଫରଫର ଦି ଧାଡ଼ି ଦାନ୍ତ ଦେଖାଯିବ । କଳା କିଟି କିଟି ଗୋଟେ ହାଡ଼ୁଆ ହାତ ଓ୍ୱିଲସ୍ ଫିଲଟର୍ ପ୍ୟାକେଟ୍‌ଟେ ମୋ ଆଡ଼କୁ ବଢ଼େଇ ଦେଇ ସ୍ପେଶାଲ ଘ ବନେଇବସିବ । ଅଞ୍ଜନ ସିଗ୍ରେଟ୍ ନବନି, କହିବ ସାର୍ ଆସିଯିବେ । ଆପଣଙ୍କ ସେଥିରୁ ଫୁଙ୍କେ ଟାଣିଦେବି ।

କଳ୍ପନା ଛକ ସିନେମା ପେଣ୍ଡାଲରୁ ବରଗଡ଼ ଆଡ଼କୁ ଗଲାବେଳେ ଯେଉଁ ପ୍ରଥମ ଛକଟା ପଡ଼ିବ ତା'ର ବାଁ ପଟ କଲ୍‌ଭଟ ପାଖ ମଳିଛିଆ, ବୁଢା କେବିନ୍‌ଟା ଭାଇନା କେବିନ୍ । ହାରାହାରି ଘରିଫୁଟ ସାତଇଞ୍ଚ ଲମ୍ବାର କଳା ହାଡୁଆ ମଣିଷଟେ । କମଳା ରଙ୍ଗର କସକରା ଚଉଦପା ଧୋତିଟେ

Digitized by srujanika@gmail.com

ପିନ୍ଧିଥିବ, ବେକରେ କସକରା ଖୋର୍ଦ୍ଧା ଗାମୁଛାଟେ ଗୁଡ଼େଇଥିବ । ତା ହାଡୁଆ ଛାତିରେ ବାମୁଣିଆ ପଇତାଟା ଦାଉ ଦାଉ ଦିଶୁଥିବ । ଏ କେବିନ୍‌ର ଡାହାଣ ପଟ ଘରଟା ରବିର, ବରା ଘୁଘୁନି ଦୋକାନ । ଦି'ଟା କାଠ ବେଞ୍ଚ ଓ ଗୋଟେ ଛୋଟ କେବିନ୍ ସାଙ୍ଗକୁ ମାଟି ଚୁଲି । ଭାରି ମୁଡ଼ି ମିଜାଜ୍‌ର ମଣିଷଟେ ରବି, ଇଚ୍ଛା ହେଲେ ଦୋକାନ ଖୋଲିବ । ବାକି ସମୟରେ ସେଇ ବେଞ୍ଚରେ ବସି ଲକ୍ଷ୍ମୀମାର୍କା ବିଡ଼ି ଟାଣୁଥିବ । ଦୋକାନରେ ମଧ୍ୟ ଭାଇନାର ବାକିଖାତା ଭଳିଆ ଆମର ଖାତା ଖୋଲା ହେଇଥାଏ । ରବିର ତାଜା ବରା ଆଉ ଧନିଆ ପତ୍ର ଦିଆ ଘୁଘୁନିର ସୁଆଦ ଆଉ କୋଉଠି ମିଳିବନି । ତା ଦୋକାନ କାଠ ବେଞ୍ଚରେ ସବୁବେଳେ ଦି ଚାରିଟା ଆର୍ଟ୍ କଲେଜିଆ ବସିଥିବେ । ଆମ ରାଓ ମାଷ୍ଟ୍ରେ (ଡି.ଏନ୍) ମତେ ରବିଦୋକାନର ବରା ଘୁଘୁନି ଖୁବ୍ ଖୁଆଇଛନ୍ତି । ଛକର ଡାହାଣ ପଟରେ ବି.ଜେ.ବି ସ୍କୁଲ ଛକ ଦୁର୍ଗାମଣ୍ଡପର ଧାଡ଼ିଏ ପକ୍କା ଦୋକାନ ଘର । ପ୍ରଥମ ଘରଟା ଚୁଲିଆ ଚା' ଦୋକାନ । ସକାଳୁ ସକାଳୁ ଅଞ୍ଜନ, ସଜଳ, ଜୟନ୍ତ ଓ ମୁଁ ଏଇଠିକି ଗଡୁଥିଲୁ ଚା ପାଇଁ । ସୁଧାଂଶୁ (ଚିତ୍ରଶିଳ୍ପୀ ସୁଧାଂଶୁ ଶେଖର ଶତପଥୀ) ଅରବିନ୍ଦ ସ୍କୁଲକୁ ଗଲାବେଳେ ଏଇଠି ତା'ର ଲୁନା ଅଟକି ଯାଉଥିଲା । ଧୋବ ଖଦୀର କୁର୍ତ୍ତା ପିନ୍ଧି ପାଠୀ ସାର୍ ଆମ ସାଙ୍ଗରେ ଜୁଟି ଯାଉଥିଲେ । ଆମେ ସବୁ ଗରମ ଇଡ଼ିଲିରେ ଚିନି ମଡ଼େଇ ଖାଉଥିଲୁ । ସୁଧାଂଶୁ ତାର କନାବ୍ୟାଗ୍ ଭିତରୁ 'ଓ୍ୱା'ର ମିନିଟ୍ ଖାତା ଓ ମେମ୍ବର ଫି ଟିପା ଖାତା, ଅନ୍ୟାନ୍ୟ ଫାଇଲ୍ ଖୋଲି ଅଫିସ୍ ଆରମ୍ଭ କରୁଥିଲା । ପାଠୀ ସାର୍ ସକାଳ ଟହଲ ପାଇଁ କଲେଜ ଭିତରକୁ ଯାଉଥିଲେ, ଆମ ଆଡ଼ା ଭାଙ୍ଗୁଥିଲା । ଚୁଲିଆ ଦୋକାନ ଆଗର ମାଙ୍କଡ଼ା ପଥର ପାଚେରୀ ଘେରା ତିନି ମହଲା, ସିମେଣ୍ଟ ପେଣ୍ଟ ଦିଆ କୋଠାଟା ବି.କେ ଆର୍ଟ୍ କଲେଜ । ମୁଁ ଏ କଲେଜରେ ଚାକିରି ନ କରୁଥିଲେ ବି ଏ ଛକରେ ମୋର ପରିଚୟଟା କଲେଜର ଚାକିରିଆ ବୋଲି ଅନେକ ଦିନ ପର୍ଯ୍ୟନ୍ତ ରହିଯାଇଛି । ମୁଁ କିମିତି କେଜାଣି କଲେଜ ସାଙ୍ଗରେ ଯୋଡ଼ିହେଇ ଯାଇଛି, ଭାବ ହେଇଯାଇଛି । ଆସିକା ଟେକିନିକାଲ୍ ସ୍କୁଲରେ ଥିଲା ବେଳେ ଭୁବନେଶ୍ୱର ଆସିଲେ ଏଇ କଲେଜର ଗେଷ୍ଟହାଉସ୍‌ରେ ମୋର କେମ୍ପ ପକାଉଥିଲି । ପ୍ରିନ୍‌ସ୍‌ପାଲ୍‌ଙ୍କ ଆତିଥେୟତାରେ, ଆତ୍ମୀୟତାରେ ବାନ୍ଧି ହେଇଯାଇଛି । ଟେକିନିକାଲ୍ ସ୍କୁଲ ଛାଡ଼ି ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତକଳା କେନ୍ଦ୍ରରେ ନିଯୁକ୍ତି ପରେ ମଧ୍ୟ ଏଇ କଲେଜ ଗେଷ୍ଟରୁମ୍‌ରେ ଦେଢ଼ ମାସ ରହିଥିଲି । ପରେ ଗୋଟେ ଘର ଛାଡ଼ି K-୫, ରମ୍ଭାଦେବୀଙ୍କ ଘରେ ଭଡ଼ାରେ ରହିଲି । କଲେଜର ନିଜର ଘର ନଥିବାରୁ ଭଡ଼ାଘରେ ବିଭୁତି କାନୁନ୍‌ଗୋ କଳା ମହାବିଦ୍ୟାଳୟ ଖୋଲାଯାଇଥିଲା । ବାହାର ଭିତର ଯୁଆଡୁ ଦେଖିଲେ ବି କଲେଜରେ ସରକାରୀ ଗନ୍ଧ ପାଇହେଉ ନଥିଲା । ଗେଟ୍ ଦି କଡ଼ରେ ଦି'ଟା ନଡ଼ିଆ ଗଛ ସାଙ୍ଗକୁ ଧାଡ଼ି ଧାଡ଼ି କାମିନୀ, ମାଳତି, ଗଙ୍ଗଶିଉଳି ଓ ମନାସ ଚମ୍ପା ଫୁଲର ଗଛଲତା । ସଂଜ ହେଲେ ଫୁଲର ବାସନା ରୋମାଞ୍ଚିତ କରୁଥିଲା । ସିମେଣ୍ଟ ପେଡ଼େଷ୍ଟାଲ୍‌ରେ ଠିଆ ପଥରର ମଡ଼ର୍ଣ୍ଣ ସ୍କଲପ୍‌ଚର୍ ଆଉ ପାଚେରୀ କଡ଼େ କଡ଼େ ସିମେଣ୍ଟ ଓ ପ୍ଲାଷ୍ଟର୍ ଅଫ୍ ପ୍ୟାରିସ୍‌ର ବିଭିନ୍ନ ମୂର୍ତ୍ତି । ବାଁ ପଟରେ ଗୋଟେ ଝଙ୍କାଳିଆ ଆମ୍ବଗଛ, ପାଖକୁ ଲାଗି ବାତାପି, ସଜନା ଛୁଇଁ, ବାରମାସିଆ କାଗଜି ଲେମ୍ବୁଗଛ । ଆମ୍ବଗଛ ମୂଳରେ ଚାରିପାଞ୍ଚଟା କୁଣ୍ଢେମୋଟର ଲମ୍ବା ତାପଙ୍ଗ ପଥର ପେଟେଇ ହେଇ ପଡ଼ିଥା'ନ୍ତି । ଆମେ ସଞ୍ଜ ସକାଳେ କିମ୍ବା ଛୁଟଦିନ ମାନଙ୍କରେ ଏଇଠି ପଥର ଉପରେ ବସି ଆଡ୍ଡା ମାରୁ । କଲେଜ ସମୟରେ ଏଇଠି ଜାଗା ଖାଲି ନଥାଏ । ଆର୍ଟ୍‌କଲେଜର ନୂଆ ନୂଆ ପ୍ରେମ ଶିଖୁଥିବା ପ୍ରେମୀଯୁଗଳ ସବୁ ଏଇ ଆମ୍ରକୁଞ୍ଜ ତଳେ ବସି ସପ୍ନ ଦେଖନ୍ତି - "ହମେ ତୋ ଲୁଟ୍ ଲିୟା । ମିଲ୍‌କେ ହୁସ୍‌ନେ ଓ୍ୱାଲୋଁନେ । କାଲେ କାଲେ ବାଲୋନେଁ, ଗୋରେ ଗୋରେ ଗାଲୋନେଁ ........... ।"

କୋଠା ଆଗରେ ବସ୍ ଲାଗିଲା ଭଳିଆ ଗୋଟେ ବଡ଼ ପୋର୍ଟିକୋ । ପୋର୍ଟିକୋକୁ ଲାଗି ପାଲିଶ୍ କରା ନାଲିସିମେଣ୍ଟର ବାରଣ୍ଡା । ବାରଣ୍ଡାର ଦୁଇ ପାଖରେ ଦୁଇଟା ଓ ମଝିରେ ଗୋଟେ ଦୁଆର । ମଝି ଦୁଆରେ ପଶିଲେ ଗୋଟେ ଲମ୍ବା ଘର, ଗ୍ରାଫିକ୍ ବା ଛାପାଚିତ୍ର କଳାର ବିଭାଗ । କାନ୍ଥରେ ସବୁଆଡ଼େ କାଠଖୋଦେଇ , ଲିନୋ ଓ ସେରୀଗ୍ରାଫ୍‌ର ପ୍ରିଣ୍ଟ ଟଙ୍ଗା ହେଇଚି । ଲିନ୍‌ସିଡ୍ ତେଲ, କିରୋସିନି ଓ ପ୍ରିଣ୍ଟକାଳିର ମିଶ୍ରିତ ଫେଣ୍ଟା ଫେଣ୍ଟି ଗନ୍ଧ ଗ୍ରାଫିକ୍ ବିଭାଗର ଏକ ମଧୁର ଅନୁଭବ । ବାରଣ୍ଡା କାନ୍ଥରେ ସୁଦୃଶ୍ୟ ପ୍ରକାଣ୍ଡକାୟ ଫ୍ରେମକରା ରଙ୍ଗୀନ ପୋଷ୍ଟର୍ । ସୁଇଜରଲ୍ୟାଣ୍ଡ ରିଟ୍‌ବର୍ଗ୍ ମିଉଜିୟମ୍ ଏତେ ଯତ୍ନ ଓ ସାବଧାନରେ ଛାପିଚି ଯେ ଭ୍ରମହେବ ଏହା ପୋଷ୍ଟର୍ କି ମୂଳଚିତ୍ର । ବାଁ

Digitized by srujanika@gmail.com

ପଟ କାନ୍ଥରେ ରାଜସ୍ଥାନ ଲୋକ କଳାକାର ଗୋପାଳଙ୍କ ଉଜ୍ଜ୍ୱଳ ଘନରଙ୍ଗର କୋଲାଜ୍ । ମଝି କାନ୍ଥରେ ତାଳ ଗଣ୍ଡିରେ ଖୋଦିତ ଦକ୍ଷିଣ ଆଫ୍ରିକୀୟ ନାୟିକାର ମୁଖମଣ୍ଡଳ । ଡାହାଣ ପଟରେ ପାହାଡ଼ି ପେଣ୍ଟିଙ୍ଗ୍‌ରେ ଶିକାରର ଦୃଶ୍ୟ ଶୋଭା ପାଉଥିଲା । ବାଁ ପଟ କୋଣରେ ସଜଳ ମିଶିଲା । ଦୂରରୁ ସଜଳ କହିଲା ରାମ ଦା ! ସାର୍ ବାଲ୍‌କୋନିମେଁ ହୈ । ପାଠୀ ସାର୍ ବାଲ୍‌କୋନିରେ, ଗଛରେ ପାଣି ଦେଉଥା'ନ୍ତି । ସେ ଆର୍ଟ୍ କଲେଜର ଅଧକ୍ଷ । ରାତିର ଶୋଇବା ସମୟ ଛଡ଼ା ଆଉ ସବୁବେଳେ କଲେଜ ପରିସରରେ ଥିବେ । ପାଞ୍ଚ ଫୁଟ ସାତଇଞ୍ଚିଆ ଡେଙ୍ଗା, ସାସ୍ଥ୍ୟବାନ, ଲମ୍ବା କଲି ଓ କପିଳଦେବ ଷ୍ଟାଇଲର ହଳେ ନିଶ । ବେଳେ ବେଳେ କପିଳଦେବଙ୍କ ବଡ଼ ଭାଇ ପରି ଦିଶନ୍ତି । କଟନ୍ ଟ୍ରାଉଜର୍ ସାଙ୍ଗକୁ ଫେବ୍ ଇଣ୍ଡିଆର ଖଦୀ କୁର୍ତ୍ତା । ଆମେ ସମସ୍ତେ ବାଲ୍‌କୋନିରେ ପହଁଚିଲୁ । ଭାଇନା ଦୋକାନ ଚାହା ସେଇଠିକୁ ଆସିଲା, ହେଲେ ଆମର ସିଗ୍ରେଟ୍ ଫୁଙ୍କା ହେଇପାରିଲାନି । ବର୍ଷାଦିନିଆ ଧାନ ଗହୀରରେ ବେନ୍ଦଳାକୁ ମାଛ ଗଡ଼ିଲା ଭଳିଆ, ତାଙ୍କର ଛାତ୍ର ଅଦ୍ୱୈତ, ଜୟନ୍ତ, ଅମର, ସଂଗ୍ରାମ, ବିନୋଦ, ସୁବ୍ରତ, କମଳାକ୍ଷ ଓ ବାଁଶୁରୀ ପ୍ରଭୃତି ଆସି ଦେଖାହେଲେ । ଧୀରେ ଧୀରେ ବାଲ୍‌କୋନିରେ ଆଡ୍ଡାଟା ଜମି ଉଠିଲା । ପ୍ରଦର୍ଶନୀ, ଚିତ୍ରର ସାଂପ୍ରତିକ କଳା ଧାରା, ବିଭିନ୍ନ କଥା ଆଲୋଚନା ହେଲା । ପାଠୀ ସାର୍ କହିଲେ ଆମେ ଆଉ ଗୋଟେ ରାଜ୍ୟସ୍ତରୀୟ ପ୍ରଦର୍ଶନୀ କରିବା, ପୁରସ୍କାର ଓ ସମ୍ବର୍ଦ୍ଧନା ଦେବା । ପ୍ରଦର୍ଶନୀର ନାଁ Summer Show ରଖାଯିବା ନିଷ୍ପତ୍ତି ହେଲା । ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟ୍ ଆସୋସିଏସନ୍ ମାଧମରେ ହେବ । ଷାଠିଏ ଦଶକରେ ଓଡ଼ିଶାର ସାଂପ୍ରତିକ କଳାର ବିକାଶ ଓ ପ୍ରସାରର ଏକ ପ୍ରମୁଖ ଅନୁଷ୍ଠାନ ରୂପେ 'ଓ୍ୱା'ର ପରିକଳ୍ପନା ହେଇଥିଲା । ଏକ ଦୃଢ଼ ପ୍ରତିଶ୍ରୁତିବଦ୍ଧତା ନେଇ ତାଙ୍କ ଗୁରୁ ଅନନ୍ତ ପଣ୍ଡାଙ୍କ ସାଥିରେ ମିଶି ସେ 'ଓ୍ୱା' ଗଢ଼ିଥିଲେ । ପରେ ଚନ୍ଦ୍ରଶେଖର ରାଓ, ଡି.ଏନ୍.ରାଓ, କାଶୀନାଥ ଜେନା, ଶିବ ପାଣିଗ୍ରାହୀଙ୍କ ଆନ୍ତରିକ ସହଯୋଗରେ ଓ ବିନା ସରକାରୀ ଅନୁଦାନରେ 'ଓ୍ୱା' ତା'ର କାର୍ଯ୍ୟକ୍ରମମାନ ନିୟମିତ ରୂପେ ଆୟୋଜନ କଲା । ଗ୍ରୁପ୍ ପ୍ରଦର୍ଶନୀ, ଆଲୋଚନାଚକ୍ରମାନ କରିଛି , ଇଂରାଜୀରେ 'ଓ୍ୱା' ବୁଲେଟିନ୍ ପ୍ରକାଶ କରିଛି । ସାଂପ୍ରତିକ କଳାରେ ଓଡ଼ିଶା ଲଳିତ କଳା ଏକାଡ଼େମୀ ପରେ 'ଓ୍ୱା' ଓଡ଼ିଆ ଚିତ୍ରକାରମାନଙ୍କ ପାଇଁ ଏକମାତ୍ର ବେସରକାରୀ ସହଯୋଗୀ ଅନୁଷ୍ଠାନ । ସାଂପ୍ରତିକ କଳା ଓ କଳାକାରମାନଙ୍କ ନିମନ୍ତେ ଯେଉଁକଥା ଓଡ଼ିଶା ସରକାର ଚିନ୍ତା ମଧ କରିନାହିଁ, ତାକୁ ବିଭିନ୍ନ ସମୟରେ, ବିଭିନ୍ନ ଉପାୟରେ ନୂଆ ଚିନ୍ତା ଓ ନୂତନ ଦିଗ୍‌ଦର୍ଶନ ଦେଇ ସେ ତାକୁ ସୁଘରୁ ରୂପେ କରିପାରିଛନ୍ତି । ତାଙ୍କର ପାରଦର୍ଶିତା ହେତୁ ବହୁ ସମୟରେ ତାଙ୍କୁ ସମାଲୋଚନା ଓ କୁତ୍ସାରଟନାର ଶୀକାର ହେବାକୁ ପଡ଼ିଛି । ପଛେଇଯିବା କିମ୍ବା ଦବିଯିବାର ଚାରିତ୍ରିକ ଗୁଣ ନଥିବାରୁ, ସେ ଆହୁରି ବଳିଷ୍ଠ, ଯୁଗଧର୍ମୀ ଦୃଷ୍ଟିଭଙ୍ଗୀରେ, ନୂଆ ଶୈଳୀରେ ଆମ ଓଡ଼ିଆ ଶିଳ୍ପୀଙ୍କୁ, ଆମର ସାଂପ୍ରତିକ କଳାକୁ ଜାତୀୟ ସ୍ତରରେ ଉପସ୍ଥାପନା କରିଛନ୍ତି । **ଆଜି ଆମ ଓଡ଼ିଶା ଶିଳ୍ପୀଙ୍କ ଜାତୀୟ ସୀକୃତି ପାଇଁ ସେ ସମସ୍ତ ପ୍ରଶଂସାର ଏକମାତ୍ର ଅଧିକାରୀ । ଓଡ଼ିଶାର ନବକଳା ଆନ୍ଦୋଳନର ଡକ୍ଟର ପାଠୀ ନିଜେ ପ୍ରଚୁର ସଂଭାବନାର ଏକ ସୁଦୃଢ଼ ଅନୁଷ୍ଠାନ ।** ସେ ବହୁଧା ଶିଳ୍ପୀ ସଂସଦ, ଚିତ୍ରମ୍ ସ୍କୁଲ ଅଫ୍ ଆର୍ଟ୍, ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍, କ୍ରାଫଟ୍ କାଉନସିଲ୍ ଅଫ୍ ଓଡ଼ିଶା, ଓଡ଼ିଶା ରିସର୍ଚ୍ଚ ସୋସାଇଟି, ଓଡ଼ିଶା କଲଚରାଲ୍ ଫୋରମ୍, ସୁନନ୍ଦା ପାଠୀ ଫାଉଣ୍ଡେସନ୍ ପ୍ରଭୃତିର ପ୍ରତିଷ୍ଠାତା ଓ ପରିଚାଳକ । ଓଡ଼ିଶାର ଲୋକକଳା, ପ୍ରାଚୀନ ଚିତ୍ର, ମ୍ୟୁରାଲ୍ ପେଣ୍ଟିଙ୍ଗ୍, ପଟଚିତ୍ର, ବୟନକଳା, ଚିତ୍ରକଳା ଓ ଆଧୁନିକ କଳା ଗବେଷଣା, କଳାଶିକ୍ଷା ଓ ଶିଶୁ ଚିତ୍ରକଳା ପ୍ରଭୃତିର ପ୍ରସାର ନିମନ୍ତେ ସବୁବେଳେ ଯତ୍ନଶୀଳ ଓ ତତ୍ପର । ସେ 'ଓ୍ୱା'ର ପ୍ରତିଷ୍ଠାତା ଓ କର୍ଣ୍ଣଧାର । ତାଙ୍କରି ପ୍ରେରଣାରେ ଆଜି ଡଜନେ କବି, ସାହିତ୍ୟିକ, ପ୍ରଶାସକ ଓ ଗୃହିଣୀ ଚିତ୍ରକାର ହେଇପାରିଛନ୍ତି । ସେମାନଙ୍କ ଚିତ୍ରକୁ ଓଡ଼ିଶାରେ ତଥା ଓଡ଼ିଶା ବାହାରେ ବିଭିନ୍ନ ପ୍ରଦର୍ଶନୀରେ ପ୍ରଦର୍ଶିତ କରିଛନ୍ତି । ଓଡ଼ିଶା ସଂସ୍କୃତି ବିଭାଗ ତଥା ଲଳିତ କଳା ଏକାଡ଼େମୀ 'ଓ୍ୱା' ପ୍ରତି ସବୁବେଳେ ପାତର ଅନ୍ତର ଭାବ ଦେଖେଇ ସମସ୍ତ ପ୍ରକାର ସରକାରୀ ସୁବିଧା ସୁଯୋଗରୁ ବଞ୍ଚିତ କରିଛନ୍ତି । ତଥାପି ବ୍ୟକ୍ତିଗତ ଚେଷ୍ଟା ଓ ଚାନ୍ଦା ଭେଦାରେ, ବନ୍ଧୁ ସହୋଦରମାନଙ୍କ ସହଯୋଗରେ ଦିନକୁ ଦିନ 'ଓ୍ୱା' ନୂତନ କାର୍ଯ୍ୟମାନ କରିଚାଲିଛି । ଚନ୍ଦ୍ରଶେଖର ରାଓ 'ଓ୍ୱା'ର ଚେୟାରମେନ୍ ଓ ଡି.ଏନ୍. ରାଓ ସେକ୍ରେଟାରୀ । ଉଭୟେ ପାଠୀ ସାର୍‌ଙ୍କ ଘନିଷ୍ଠ ବନ୍ଧୁ ! ଡି.ଏନ୍ ତାଙ୍କର ଅନୁଜ । ସ୍ନେହ ଓ ଶ୍ରଦ୍ଧାରେ ପାଠୀ ସାର୍ ତାଙ୍କୁ ତେଲେଙ୍ଗା ଡାକିଥାନ୍ତି ।

Digitized by srujanika@gmail.com

ବାଲ୍‌କୋନିର ଆଲୋଚନା ଧୀରେ ଧୀରେ ପାକଳ ଧରିଲା । ଚେୟାରମେନ୍ ଓ ସେକ୍ରେଟେରୀ ଜରୁରୀ ଡାକରା ପାଇ, ଧରାହେଇ ଆସିଲେ । ପ୍ରଦର୍ଶନୀ ଓ ପୁରସ୍କାର କଥା ସମସ୍ତଙ୍କ ମନକୁ ପାଇଲା । ସମସ୍ୟା ହେଲା ଟଙ୍କା । ସେ ସଙ୍ଗେ ସଙ୍ଗେ କହିଲେ, "ଅଞ୍ଜନ, ସଜଳ ! ତୁମେ ସବୁ ଏ ବର୍ଷ (୧୯୮୯) ରାଜ୍ୟ ପୁରସ୍କାର ପାଇଛ, ରାମହରି ତ ନ୍ୟାସନାଲ୍ ପାଇଚି, ତମ K-୪ ତ ସବୁ ମାରିନେଇଛି । 'ଓ୍ଵା'କୁ କିଛି ଟଙ୍କା ଦିଅ । ଧାର ସୂତ୍ରରେ ଦିଅ, ମୁଁ ପରେ ଶୁଝିଦେବି, ନହେଲେ ମଲାପରେ ମରିଚ ଗଛ ହେଇ ତମ ଋଣ ପରିଶୋଧ କରିଦେବି । ଗାଁରେ ଡହଳ ବିକଳ ହେଇ ବୁଲିବି ।" ସତରେ ଆମ K-୪ ସେ ବର୍ଷ ତିନିଟା ପୁରସ୍କାର ପାଇଥାଏ । ପ୍ରଥମ ଥର ପାଇଁ ଓଡ଼ିଶାର ଜାତୀୟ ପୁରସ୍କାର ମଧ୍ୟ ଆମ ବସାର ଗୌରବ ବଢ଼େଇଦେଇ ଥାଏ । ସୁତରାଂ K-୪ ର ବାସିନ୍ଦାମାନଙ୍କ ମନରେ ଗ୍ୟାସ୍ ଭର୍ତ୍ତି । ସଙ୍ଗେ ସଙ୍ଗେ ରାଜି ହେଇଗଲୁ । ସେଇଠି ବାଲ୍‌କୋନିରେ ଖବର କାଗଜ ପାଇଁ ନ୍ୟୁଜ୍ ଲେଖା ହେଲା । ଜାତୀୟ ପ୍ରଦର୍ଶନୀର ଛାଞ୍ଚରେ ପ୍ରଦର୍ଶନୀର ନିୟମାବଳୀ ପସ୍ତୁତ ହେଇ, ଭୋଳାନାଥ ପ୍ରେସ୍‌ରେ ଛପାହେଲା । ଆମ ବସା ଏ ଭିତରେ 'ଓ୍ଵା'ର ଅଫିସରେ ରୂପାନ୍ତରିତ ହେଇଯାଇଥାଏ । ଛୁଟିଦିନ ଓ ସକାଳ ସଞ୍ଜରେ ଆମେ ସବୁ 'ଓ୍ଵା'ର ଶୃଙ୍ଖଳିତ କର୍ମଚାରୀ ରୂପେ କାମକରୁ । ଦୁଇ ସପ୍ତାହ ପରେ ପେଣ୍ଟିଙ୍ଗ୍, ଗ୍ରାଫିକିସ୍ ଓ ସ୍କଲପଚର୍‌ମାନ ଆସି ପହଞ୍ଚିବାକୁ ଲାଗିଲା । ପାଠୀ ସାର୍ କଞ୍ଚନା ଫ୍ଲାଟରେ ରହନ୍ତି, ସକାଳୁ ସାଢ଼େ ପାଞ୍ଚରେ ଆସି ଆମ ବସାରେ ହାଜର ହେବେ। ଘରା ପର୍ବ ପରେ ହିସାବ ନିକାଶ, ଛବି ଦେଖାଦେଖି ହେଇ, କୋଉଠୁ କେତେ ଛବି ଆସିଛି, ଆଉ ସବୁ କେଉଁଠୁ ଆସିବାର ଅଛି । ଏଣ୍ଟ୍ରି ଫି କେତେ ମିଳିଛି ହିସାବ ନିକାଶ ହୁଏ । ରେଜିଷ୍ଟାରରେ ଏଣ୍ଟ୍ରି କରାହୁଏ । କାଟ୍‌ଲଗ୍ ହୁଏ ।

ତାଙ୍କ ପ୍ରସ୍ତାବ ଅନୁଯାୟୀ ସେଇ ୧୯୮୯ ପ୍ରଥମ ଓ୍ଵା Summer Show ର ବିଚାରକ ରୂପେ ମାଡ୍ରାସର ପ୍ରଖ୍ୟାତ ଭାସ୍କର ସି. ଦକ୍ଷିଣା ମୁର୍ତ୍ତି ଓ ଲକ୍ଷ୍ନୌସ୍ଥିତ କେନ୍ଦ୍ର ଏକାଡ଼େମୀର ଆଞ୍ଚଳିକ କେନ୍ଦ୍ରର ତତ୍‌କାଳୀନ କ୍ଷେତ୍ରୀୟ ସଂପାଦକ ଅଖିଳେଶ ନିଗମଙ୍କୁ ନିମନ୍ତ୍ରଣ କରାହେଲା । ସେମାନେ ଆମ ବସାରେ ଦୁଇଦିନ ତନ୍ନତନ୍ନ କରି ଓଡ଼ିଆ ପେଣ୍ଟିଙ୍ଗ୍, ଗ୍ରାଫିକସ୍ ଓ ଭାସ୍କର୍ଯ୍ୟ ମାନ ଦେଖି ସାତ ଗୋଟି ଶ୍ରେଷ୍ଠ କୃତିକୁ ଚୟନ କରିଥିଲେ । ସେମାନଙ୍କୁ ପାଠୀ ବାବୁ ନିଜେ ପୁରୀ, ଭୁବନେଶ୍ୱର, କୋଣାର୍କ, ଲଳିତଗିରି ଓ ଖଣ୍ଡଗିରି ପ୍ରଭୃତି ଦେଖେଇବାର ଦାୟିତ୍ୱ ନେଇଥିଲେ । Summer Showର ଲୋଗୋ ନେଇ ଅନେକ ବିଚାର ବିମର୍ଶ ପରେ ଗୋଟାଏ ଫ୍ରେମ୍ ଭିତରୁ ବାହାରକୁ ଉଡ଼ିଯିବାର ଉପକ୍ରମ କରୁଥିବା, ପକ୍ଷୀ ଆକୃତିର ଦୁଇଟା ଇଂଗ୍ରେଜୀ ଏସ୍‌କୁ ନେଇ ମୁଁ ଲୋଗାର ସଂଯୋଜନା କରିଥିଲି । ସୁଇଡ଼େନ୍‌ରେ ଭାରତ ଉତ୍ସବରେ ଭାରତୀୟ ଲୋକକଳାର ନିର୍ଦ୍ଦେଶକ ରୂପେ ଚମତ୍କାର ପ୍ରଦର୍ଶନୀ କରି ଡକ୍ଟର ପାଠୀ ଫେରିଥାନ୍ତି ଓ ମସ୍କୋ ଭାରତ ଉତ୍ସବର ପ୍ରାରମ୍ଭିକ କାମ ଆରମ୍ଭ କରି, ଥରେ ମସ୍କୋ ଯାତ୍ରା କରି ଫେରିଥାନ୍ତି । ପ୍ରବଳ ଦମ୍‌ରେ Summer Show ରୁଚିପୂର୍ଣ୍ଣ ସଫଳତା ପାଇଁ ସେ ଅଣ୍ଟା ଭିଡ଼ିଲେ । ଓଡ଼ିଶାର ପ୍ରଥମ ରଙ୍ଗିନ କ୍ୟାଟ୍‌ଲଗ୍ ସେଇ ବର୍ଷ ଦିଲ୍ଲୀରୁ ପ୍ରିଣ୍ଟକରି ସେ ଆଣିଲେ । ଉତ୍ସାହ, ଉଦ୍ଦୀପନା ସହ କଲେଜର ତାଙ୍କର ପ୍ରାୟ ସବୁ ଛାତ୍ରଛାତ୍ରୀ ଓ ଅନ୍ୟାନ୍ୟ ଶିଳ୍ପୀ ବନ୍ଧୁମାନେ, ଆମେ ସବୁ ଉନ୍ମାଦିତ ହେଇଉଠିଲୁ ।

ରାଷ୍ଟ୍ରୀୟ ଲଳିତ କଳାକେନ୍ଦ୍ରର ଗ୍ୟାଲେରୀରେ ପ୍ରଦର୍ଶନୀର ଆୟୋଜନ ହେଲା । ପ୍ରବେଶ ଦୁଆର ଆଗରେ ଧାନ, ମୁଗ, ବିରି, କାନ୍ଦୁଲ, ବରଗୁଡ଼ି, ସାଇବ ଚଣା ପ୍ରଭୃତି ଶସ୍ୟରେ ଅତି ସୁନ୍ଦର ଆଲପନା ଚିତ୍ର ହେଲା ଓ ତା ମଝିରେ ଗୋଟାଏ ଚଉଡ଼ା ମୁହଁଥିବା ପିତଳ ହଣ୍ଡାରେ ପାଣି ଭର୍ତ୍ତିକରି, ତାରି ଉପରେ ପଦ୍ମଫୁଲ ସବୁ ସଜାଗଲା । ମେ ମାସର ମୁଣ୍ଡଫଟା ଭୁବନେଶ୍ୱରିଆ ଖରାରେ ଅତିଥିମାନେ ସମବେତ ହେଇଥାନ୍ତି । ଓଡ଼ିଶାର ବିଭିନ୍ନ ନଦୀରୁ ସଂଗ୍ରହ କରି ଅଣାହେଇଥିବା ପବିତ୍ର ଜଳକୁ ଅତିଥି ଗଣ, ହଣ୍ଡାପାଣିରେ ଢ଼ାଳି ଅନନ୍ତ ସମୁଦ୍ର ସର୍ଜନା କଲେ । ଯୋଡ଼ିଶଙ୍ଖ ଓ ହୁଳହୁଳିର ମଧୁର ନିନାଦରେ 'ଓ୍ଵା' ଗ୍ରୀଷ୍ମ ପ୍ରଦର୍ଶନୀର ଉଦ୍‌ଘାଟନ ହେଲା । ଗାଡ଼ି ମୋଟରରେ ଆମ କଳାକେନ୍ଦ୍ରର ପରିସର ଭରିଯାଇଥିଲା । ହର୍ଷଉଲ୍ଲାସରେ ସାତଜଣ କଳାକାରଙ୍କୁ 'ଓ୍ଵା' ରାଜ୍ୟ ପୁରସ୍କାର ସ୍ୱରୂପ ଅଙ୍ଗବସ୍ତ୍ର ଓ ମାନପତ୍ର ଦେଇ ସମ୍ମାନିତ କରାଗଲା । ପରବର୍ତ୍ତୀ ବର୍ଷମାନଙ୍କରେ ଆହୁରି ଭିନ୍ନ, ତଥା ଉନ୍ନତ ରୁଚିର

Digitized by srujanika@gmail.com

ଉତ୍ସବ ଆୟୋଜନ ମାନ ହେଲା । ଆମ ଯୁବଗୋଷ୍ଠୀଙ୍କ ଭିତରେ ନୂତନ ଆଶା ଓ ଉଦ୍ଦୀପନା ସୃଷ୍ଟି କରିବାରେ ଗ୍ରୀଷ୍ମକାଳୀନ ପ୍ରଦର୍ଶନୀ ସଫଳ ହେଲା । **ସବୁ କର୍ମଶୀଳ ଶିଳ୍ପୀ ଖଲ୍ଲିକୋଟ ଆର୍ଟ୍ ସ୍କୁଲ ଓ ବି.କେ ଆର୍ଟ୍ କଲେଜର ଛାତ୍ରଛାତ୍ରୀଙ୍କୁ ନେଇ ସେ ବିଭିନ୍ନ କାର୍ଯ୍ୟକ୍ରମମାନ ଆୟୋଜନ କଲେ । ଗୋଷ୍ଠୀ ତଥା ସଂକୀର୍ଣ୍ଣ ଆଞ୍ଚଳିକ ଭେଦଭାବରୁ ଊର୍ଦ୍ଧ୍ୱରେ ରହି ଓଡ଼ିଶାର ସାଂପ୍ରତିକ କଳାର ବିକାଶ ହିଁ ତାଙ୍କର ମୂଳଲକ୍ଷ୍ୟ ଥିଲା । ତାଙ୍କର କାର୍ଯ୍ୟଧାରା, ଦୂରଦୃଷ୍ଟି, ନୂତନ ଦିଗ୍‌ଦର୍ଶନ ତଥା ପାରିବାର ପଣିଆ, ଅନେକ ସମୟରେ ତାଙ୍କର ସମବୟସ୍କ ବନ୍ଧୁମାନଙ୍କ ଗାତ୍ରଦାହର କାରଣ ହେଇଚି । ସେପଟେ ତାଙ୍କର ନିନ୍ଦୁକମାନେ ବ୍ୟକ୍ତିଗତ ଈର୍ଷା ଓ ଅଭିସନ୍ଧି ରଖି ତାଙ୍କୁ ବଦନାମ କରିବାରେ, କୁତ୍ସାରଟନା କରିବାରେ ତତ୍ପର ହେଇଉଠିଲେ ।** ଏପଟେ ସେ ଦ୍ୱିଗୁଣିତ ଦମ୍ଭରେ ଓଡ଼ିଶାର କଳା ଓ କଳାକାରମାନଙ୍କ ପ୍ରଚାର ଓ ବିକାଶ ପାଇଁ, ଇଂରାଜୀରେ ପୁସ୍ତକ, ପତ୍ରିକା, ପ୍ରଦର୍ଶନୀ, ଆଲୋଚନା ଚକ୍ରମାନ ନିୟମିତ ଆୟୋଜନ କରିଚାଲିଲେ । ବମ୍ବେ 'ଜାହାଙ୍ଗୀର ଆର୍ଟ୍ ଗ୍ୟାଲେରୀ', ଦିଲ୍ଲୀ 'କଳାମେଳା'ରେ ଓ କଲିକତାରେ **Jagannatha and the Oriya Artists**, ମାଡ୍ରାସରେ **Orissa Artists on the Move**, ଦିଲ୍ଲୀରେ, ଓଡ଼ିଆ କବିତା ଓ ଚିତ୍ରର ପ୍ରଦର୍ଶନୀ **Manifestations**, ଚଣ୍ଡିଗଡ଼ରେ **The Spring is not Over** ପ୍ରଭୃତି ଆଖିଦୃଶିଆ ପ୍ରଦର୍ଶନୀ ମାନ ଆୟୋଜନ କରି ଓଡ଼ିଶା ବାହାରେ ଆମ କଳା ଓ କଳାକାରଗଣଙ୍କୁ ପରିଚିତ କରାଇଲେ । Summer Show ତଥା ଅନ୍ୟାନ୍ୟ ପ୍ରଦର୍ଶନୀମାନଙ୍କର ରଙ୍ଗିନ କାଟ୍‌ଲଗ୍, ବର୍ଣ୍ଣାଢ଼୍ୟ ଉତ୍ସବର ପରିପାଟି ଦେଖି ତାଙ୍କର ବନ୍ଧୁମାନେ ଭ୍ରୂକୁଞ୍ଚନ ପୂର୍ବକ ପାଠୀ କୋଉଠୁ ପୋତା ଧନ ମାରିଦେଇଚି ବୋଲି ପଛରେ ଟୁପୁରଟାପର ହେଉଥାନ୍ତି । ସେମାନଙ୍କର ଅସହିଷ୍ଣୁତା ଓ ଏଣେ ତାଙ୍କର ଦୃଢ଼ ମନୋବଳ, କାର୍ଯ୍ୟଧାରା ତାଙ୍କୁ ଓଡ଼ିଶାରେ ଏକ ଚର୍ଚ୍ଚିତ ବ୍ୟକ୍ତିତ୍ୱ ରୂପେ ପ୍ରତିଷ୍ଠା ଆଣିଦେଲା । ପ୍ରଦର୍ଶନୀ ହେଉ କି ସେମିନାର୍ ହେଉ, ସନ୍ଧ୍ୟାରେ କଲେଜ ଆମ୍ବଗଛ ମୂଳେ ରନ୍ଧାରନ୍ଧିଟେ ହେବ । ସେ ତ ଶାକାହାରୀ । ତାଙ୍କ ପାଇଁ ଭଲ ଡାଲମା କି ସନ୍ତୁଳାଟେ ସାଙ୍ଗରେ ନଡ଼ିଆ କି ଟମାଟୋ ଖଜୁରୀର ପାଚେଡ଼ିଟେ ହେଲେ ହେଲା । ଆମ ସମସ୍ତଙ୍କ ପାଇଁ ଖାସି କିମ୍ବା କୁକୁଡ଼ା ମାଁଉସର କଡ଼ା ମସଲାବାଲା କଷାର ବନ୍ଦୋବସ୍ତ ହବ । ମିଟିଙ୍ଗ୍ ୱିଥ୍‌ଆଉଟ୍ ଇଟିଙ୍ଗ୍‌ରେ ସୋରତା ନଥାଏ । ଦିଗପହଣ୍ଡି ରାଜାଙ୍କ ରାଜବଇଦ, ଜାତିରେ ବାମ୍ଣ । ପେଟପୁରା ଖିଆପିଆ ବନ୍ଦୋବସ୍ତଟା ନହେଲେ ସବୁ ପାଣିଫାଟିଯିବ । ଯାହା ଥରେ ମନକୁ ଆସିଚି ତାକୁ କରିଦେଖେଇ ଦେବାର ବାହାଦୂରି ଅଛି ତାଙ୍କର । ସ୍ୱାଭିମାନୀ, ଆତ୍ମମର୍ଯ୍ୟଦା ସଂପନ୍ନ, ଜିଦିଆ ମଣିଷଟେ ଆମ **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** । ଋଣ କରି ନିଶରେ ଘିଅ ମାରିବା ତାଙ୍କ ଆଭିଜାତ୍ୟ ।

ସବୁଦିନିଆ ସକାଳଭ୍ରମଣରେ ଆଉ ଦିନେ ମାଷ୍ଟ୍ରେ ଆସି ଆମ ବସାରେ ହାଜର ହେଲେ । ଅତ୍ୟନ୍ତ ଗମ୍ଭୀର ମୁଖମଣ୍ଡଳ । ଆଖି କୋରଡ଼ରେ ପଶି, ମନ୍ଦାର ଫୁଲିଆ ଲାଲ ଦେଖାଯାଉଚି । ଦୁଃଖ ଓ ହତାଶାରେ ରାତି କଟିଚି, ଭଲ ନିଦ ହେଇନି ମାଷ୍ଟ୍ରେଙ୍କୁ । ଶାରଳା ପୁରସ୍କାର ଘୋଷଣା କାଲି ସନ୍ଧ୍ୟାରେ ହେଇଚି । ଆମ ଚିତ୍ରକାର ମାନଙ୍କ ବେକରେ ଗାମୁଛା ଖଣ୍ଡିଏ ହେଲେ ପଡ଼ିଲାନି । ଆମ ମୁରଲୀ ବାବୁ ତାଙ୍କ କ୍ୟାଲେଣ୍ଡର କରି କରି ଏବେ ଆଖିକୁ ଭଲରେ ଦୃଶ୍ୟ ହେଉନି, ହାତ ଥରିବାକୁ ଆରମ୍ଭ କଲାଣି । ତାଙ୍କ କଥା ମଧ୍ୟ ବିଚାରକୁ ନେଲେନି । ଆମେ ଏ ଜାତି ପାଇଁ କ'ଣ ନ କରିଛୁ । କୋଣାର୍କ ଗଢ଼ିଦେଇଛୁ, ଜଗନ୍ନାଥ ରୂପ କଳ୍ପନା କରିଦେଇଛୁ । ବୁଗୁଡ଼ା ବିରଞ୍ଚି ନାରାୟଣ ମନ୍ଦିରରେ, ସୀତାବିଞ୍ଜିରେ ଅପୂର୍ବ ମ୍ୟୁରାଲ୍ ପେଣ୍ଟିଙ୍ଗ୍ ସର୍ଜନା କରିଦେଇଛୁ । ଆଉ ଆମ ସାହିତ୍ୟିକଙ୍କ ପାଇଁ ଯତ୍ନରେ ସବୁ କି ସୁନ୍ଦର ସୁନ୍ଦର ମନଲୋଭା ପ୍ରଚ୍ଛଦ ଚିତ୍ର ନ ଆଙ୍କିଚୁ ! ହେଲେ ଆମକୁ ସାଙ୍ଗରେ ନନେଇ ସେମାନେ ଆମକୁ ଦୁଆରପାଳ କରିଦେଲେ ଆଉ ଅନ୍ତଃପୁରରେ ମଜା ଲୁଟିଲେ । ଲୋକେ ଯେଉଁ ପୁସ୍ତକ ପାଇଁ ପୁରସ୍କାର ପାଇବେ ତା'ର ପ୍ରଚ୍ଛଦଟା ତ ଆମର । ଆମେ ତାଙ୍କର ବେଶ ପରିପାଟିକୁ, ଆବରଣକୁ ରୁଚିମନ୍ତ କରି ତାଙ୍କୁ ଆକର୍ଷଣୀୟ କରିଚୁ । ବହିଟା ପୁରସ୍କାର ପାଇଲା ସାଥିରେ ଚିତ୍ରସହ ମିଶି ପୁରସ୍କୃତ ହେବା କଥା । ଆମକୁ କିଏ ପଚାରିବ ଏ ରାଇଜରେ ? ମାଷ୍ଟ୍ରେ ଅଣ୍ଟାଭିଡ଼ି ବାହାରିଲେ, ସଂକଳ୍ପ ନେଲେ ସେ ତାଙ୍କ ଗୁରୁଜନ, ପ୍ରବୀଣ କଳାକାରଙ୍କୁ କଳାରେ ସେମାନଙ୍କ ଅବଦାନ ନିମନ୍ତେ ନୋବେଲ ପୁରସ୍କାର ଦେବେ ।

Digitized by srujanika@gmail.com

ଲଳିତକଳା ଏକାଡ଼େମୀର ସର୍ବୋଚ୍ଚ ପୁରସ୍କାର ଧର୍ମପଦ ପାଇଁ ବର୍ଷ ବର୍ଷ ତିନି ବର୍ଷ ଘଡ଼କପରି ଅନେଇ ବସିଥିବ । ତିନି ବର୍ଷରେ ଜଣଙ୍କ କପାଳରେ ଶିକା ଛିଡ଼ିବ । ପ୍ରତି ତିନି ବର୍ଷରେ ଥରେ ହିସାବରେ ଆମର ଭୀଷ୍ମ ପିତାମହ, ମହାନ୍ ଯୋଦ୍ଧାମାନଙ୍କ ପାଳି ହୁଏତ ତାଙ୍କ ଜୀବଦ୍ଦଶାରେ ଥରେ ହେଲେ ଆସିବନି । ତା ପୁଣି ଷାଠିଏ ବର୍ଷିଆ ସାର୍ଟିଫିକେଟ ଧାରୀମାନେ ହିଁ ପାଇବେ, ଧନ୍ୟ କହିବ ଏ ଜାତିକୁ । ମାଷ୍ଟ୍ରେ ବ୍ୟସ୍ତହେଲେ । ଯୋଜନା ପ୍ରସ୍ତୁତ କଲେ । 'ଓ୍ୱା'ର ଚେୟାରମେନ୍ ଓ ସେକ୍ରେଟାରୀ ଜରୁରୀ ଡାକରାପାଇ ଆମ ବସା ('ଓ୍ୱା'ର ବିନା ପଞ୍ଜୀକୃତ କାର୍ଯ୍ୟାଳୟ)ରେ ତୁରନ୍ତ ଉପସ୍ଥିତ ହେଲେ। ସକାଳର ଭାବ ଗମ୍ଭୀର ପରିବେଶରେ ସେ ତାଙ୍କ ଅନ୍ତରର ଦୁଃଖ ଜାତିଭାଇଙ୍କ ପ୍ରତି ହତାଦର, ତାଙ୍କ ଅବଶୋଷ ଓ ଉତ୍ତର ଦାୟିତ୍ୱ ସମ୍ବନ୍ଧରେ ବିଶେଷ ଆଲୋଚନା କଲେ । କହିଲେ, 'ଆମେ ଗୁରୁପୂଜା କରିବା, ପୂଜ୍ୟପୂଜା ପରମ୍ପରାର ପୁନରୁଦ୍ଧାର କରିବା ।' ନିଷ୍ପତ୍ତି ହେଲା ସେଇ ବର୍ଷ ୧୯୮୮ ରୁ 'ଓ୍ୱା' ଚିତ୍ରକଳାରେ ବିଶେଷ ପାରଦର୍ଶିତା ଓ ପରାକାଷ୍ଠା ନିମନ୍ତେ ବୟୋଜ୍ୟେଷ୍ଠ କଳାକାରଙ୍କୁ ସମ୍ମାନିତ କରିବ । **କଳାରତ୍ନ, କଳା ବିଭୂଷଣ, କଳା ଭୂଷଣ** ଓ **କଳା ଶ୍ରୀ** ଉପାଧିମାନ ପ୍ରବର୍ତ୍ତନ କରି ନିଜକୁ ଧନ୍ୟ ମନେ କରିବ । 'ଓ୍ୱା'ର ଗ୍ରୀଷ୍ମ ପ୍ରଦର୍ଶନୀ ଅବସରରେ ଆମର ଗୁରୁ ଓ ପ୍ରବୀଣ କଳାକାରଙ୍କ କଳାକୃତିକୁ ସତନ୍ତ୍ର ମର୍ଯ୍ୟଦା ସହ ପ୍ରଦର୍ଶିତ କରିବା ସାଙ୍ଗକୁ, ପ୍ରଦର୍ଶନୀ ପୁସ୍ତିକାରେ ସେମାନଙ୍କ କୃତିର ରଙ୍ଗୀନ ଫଟୋ ସ୍ଥାନପାଇବ । ସତନ୍ତ୍ର ବର୍ଣ୍ଣାଢ଼୍ୟ ଉତ୍ସବରେ ପାଟବସ୍ତ୍ର, ତାମ୍ରଫଳକ ସହ ବନ୍ଦାପନା ପୂର୍ବକ ସେମାନଙ୍କର ସ୍ତୁତିଗାନ କରିବ । ସମସ୍ତଙ୍କ ମନକୁ କଥାଟା ବେଶ୍ ପାଇଲା । ଆମର ସଭ୍ୟମାନଙ୍କ ଭିତରୁ କେତେକଙ୍କ ମୁଖମଣ୍ଡଳ ବେଶ୍ ଉଜ୍ଜ୍ୱଳ ଦେଖାଗଲା । ବର୍ଷେ ଦି ବର୍ଷରେ ସେମାନଙ୍କ ପାଳି ଆସିବ । 'ଦେଇଥିଲେ ପାଇ ବୁଣିଥିଲେ ଦାୟୀ, ନ ଦେଇଥିଲେ ପଡ଼ିଆ ଭୂଇଁରେ ଗୋଧନ ଚରାଇ ।'

ପୁନାରେ ଆମର ଶିଳ୍ପୀବନ୍ଧୁ ସୁଧାକର ଚୌହାନ ରହନ୍ତି । ତୁରନ୍ତ ତାଙ୍କ ସହ ଯୋଗାଯୋଗ, କରାଗଲା । ସେ କିଛି ବର୍ଷ ତଳେ ଏଇ ଭୁବନେଶ୍ୱରରେ ବର୍ଷେ ଗ୍ରାଫିକ୍ କାମ କରି ଫେରିଥାନ୍ତି । ପଦକ ଓ ଫଳକ ନିର୍ମାଣରେ ଉତ୍ତମ କାରିଗରୀ କୌଶଳ ତାଙ୍କୁ ଜଣା । ଆନ୍ତର୍ଜାତୀୟ ଗୁଣାତ୍ମକ ମାନର ପଦାର୍ଥ ତିଆରି କରିବାର ବ୍ୟବସାୟ ତାଙ୍କର ଅଛି । ଡିଜାଇନ୍ କରି ଥରେ ପଠେଇଦେଲେ ନିଷ୍ପତ୍ତି । ଆମ କଟକୀ ତିଆରି ଫଳକର କାରିଗରୀ କୌଶଳ, ମାଷ୍ଟ୍ରଙ୍କ ଜଗତୀକରଣ ମନକୁ ସବୁବେଳେ ନିରାଶ କରିଚି । ସୁଧାକର ଆଗରୁ 'ସୁନନ୍ଦା ପୁରସ୍କାର'ର ସ୍ୱର୍ଣ୍ଣପଦକ ଆମକୁ ଯୋଗାଇଛନ୍ତି । ଉତ୍ସବର ଠିକ୍ ଗୋଟାଏ ଦିନ ଆଗରୁ ଆସି ସେ କିମ୍ବା ତାଙ୍କର ସହଯୋଗୀ ଭୁବନେଶ୍ୱର ପହଞ୍ଚିଯିବେ । ଟଙ୍କା ପଇସା ପାଇଁ ବ୍ୟସ୍ତତା ମଧ ନାହିଁ । ବର୍ଷେ ଦି ବର୍ଷରେ କିସ୍ତି ସୂତ୍ରରେ ପୈଠ କରି ଦେଇହବ । ସେଇ ବର୍ଷ ମେ ମାସ ତାରିରେ 'ଓ୍ୱା'ର ଗ୍ରୀଷ୍ମ ପ୍ରଦର୍ଶନୀ (Summer Show) ର ଆୟୋଜନ ହେଲା ଓ ପ୍ରଖ୍ୟାତ ଶିଳ୍ପୀ ମୁରଲୀଧର ଟାଲି, ଅଜିତକେଶରୀ ରାୟ, ଅନନ୍ତ ପଣ୍ଡା ଏବଂ ଦୁର୍ଗାପ୍ରସାଦ ଦାସକୁ ଯଥାକ୍ରମେ - କଳାରତ୍ନ, କଳା ବିଭୂଷଣ, କଳା ଭୂଷଣ ଓ କଳା ଶ୍ରୀ ଉପାଧିରେ ସମ୍ମାନିତ କରାଗଲା । ଓଡ଼ିଶାର କଳା ଜଗତରେ ଏକ ନୂତନ ପରମ୍ପରାର ଶିଳାନ୍ୟାସ ହେଲା ।

**ନବେ ଦଶକ ଯାଏଁ ସୁଯୋଗ ଅଭାବରୁ ହେଉ ଅଥବା ଅନ୍ୟ ଯେକୌଣସି କାରଣରୁ ହେଉ ଜାତୀୟ କଳାସ୍ରୋତରେ ସାମିଲ ହେବାର ଗୌରବ ଆମେ ପାଇପାରୁନଥିଲୁ । ୧୯୮୮ ସୁଦ୍ଧା ଆମେ ହାତଗଣତିରେ ଛରିପାଞ୍ଚ ଜଣ ଓଡ଼ିଆଙ୍କ କଳାକୃତି, ଜାତୀୟ ପ୍ରଦର୍ଶନୀ (ପ୍ରତିଯୋଗିତା)ରେ ସ୍ଥାନ ପାଇପାରିଥିଲା । ଜାତୀୟ ସ୍ତରରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ କିମ୍ବା ସଙ୍ଗୀତ ନାଟକ ଏକାଡ଼େମୀରେ ଭାରତର ପ୍ରତ୍ୟେକ ଭାଷା ଓ ଆଞ୍ଚଳିକ ନୃତ୍ୟ ତଥା ସଂଗୀତ ପାଇଁ କୋଟାର ବ୍ୟବସ୍ଥା ରହିଆସିଛି ।** ସୁତରାଂ ପ୍ରତିବର୍ଷ ପ୍ରତି ରାଜ୍ୟରୁ, ସାହିତ୍ୟରେ ନୃତ୍ୟ ଓ ସଙ୍ଗୀତରେ ବ୍ୟକ୍ତିବିଶେଷମାନେ ପୁରସ୍କୃତ ହେଇଥାଆନ୍ତି । ହେଲେ ସାଂପ୍ରତିକ ଚିତ୍ର, ଭାସ୍କର୍ଯ୍ୟ ଓ ଗ୍ରାଫିକ କଳା ପାଇଁ କୋଟାବ୍ୟବସ୍ଥା ନ ହେଇ ଜାତୀୟ ସ୍ତରରେ ପ୍ରତିଯୋଗିତାର ବ୍ୟବସ୍ଥା ହେଇଥାଏ । ଏଥିରେ ନା ଭାଷା ନା ଭୌଗୋଳିକ ବିଭାଜନର ଭିନ୍ନତା ଅଛି, ନା ଜାତିଆଣ ଭାବ ଅଛି । କଳା ତ ସାର୍ବଜନୀନ ବିଶ୍ୱଭାଷା । ଅତଏବ ଚିତ୍ରକଳାରେ 'ଜାତୀୟ ପୁରସ୍କାର' ପାଇଁ କୌଣସି ସଂରକ୍ଷଣର

Digitized by srujanika@gmail.com

ବ୍ୟବସ୍ଥା ଲଳିତ କଳା ଏକାଡ଼େମୀ ସନ୍ନିଧାନରେ ରଖାହେଇନି । ପ୍ରତିଯୋଗିତାରେ ଯୋଗ୍ୟ ବିବେଚିତ ହେଲେ ଯାଇ ପୁରସ୍କାର ପ୍ରାପ୍ତି ଲାଗି ତୁମର ଯୋଗ୍ୟତା ରହିବ । ଶେଷ ପର୍ଯ୍ୟାୟର ଚୟନରେ ମାତ୍ର ଦଶ ଜଣ କୃତିଶିଳ୍ପୀଙ୍କୁ ଜାତୀୟ ପୁରସ୍କାର ଦିଆଯିବ । ଭାରତ ସାଧୀନତାର ୪୨ ବର୍ଷପରେ ମଧ୍ୟ ଆମେ ଏଇଠି ଯେଉଁମାନେ ସବୁ ସମୟରେ ମରି ଜିଉଁଥିବା ଶିଳ୍ପୀମାନଙ୍କ କୌଣସି ପରିଚୟ ଦିଲ୍ଲୀ ଦରବାରରେ ନଥିଲା । ଆମର ଶରତ ଚନ୍ଦ୍ର ଦେଓ, ଗୋପାଳ କାନୁନ୍‌ଗୋ, ବିପିନ ବିହାରୀ ଚୌଧୁରୀ କିମ୍ବା ବିମ୍ବାଧରଙ୍କ କଥା, ଆମେ ଯେତେଜୋରରେ, ବିଭିନ୍ନ ମୁଦ୍ରା ଦେଖେଇ ଏଇଠି ଭାଷଣ ମାରିଲେ ବି ଆମର ଶବ୍ଦ କାଠଯୋଡ଼ି ବାଲିରେ ପୋତିହେଇ ଯାଉଛି । କାଠଯୋଡ଼ି ଡେଇଁ ତାର ସର ବାହାରକୁ ଯାଇପାରୁନି । ଆମ ରାଇଜରେ ତ ପ୍ରତିଭାର ଅଭାବ ନାହିଁ, ଯୋଗ୍ୟତାର ଅଭାବ ନାହିଁ ? ଖାଲି ଯାହା ଯୁଗଧର୍ମୀ ପ୍ରଚାର ଓ ପ୍ରୋତ୍ସାହନ ନାହିଁ । ମାଷ୍ଟ୍ରେ ଅଣ୍ଟା ଭିଡ଼ିଲେ, ଆମକୁ ଦିଲ୍ଲୀରେ ପହଞ୍ଚିବାକୁ ହେବ । ସିଏ ଏବେ ଆଉ କେବଳ ଦିଗପହଣ୍ଡିର ଡ୍ରଇଁମାଷ୍ଟର ହେଇରହି ନାହାନ୍ତି । ବି.କେ ଆର୍ଟ୍ କଲେଜର ପ୍ରତିଷ୍ଠାତା ଅଧ୍ୟକ୍ଷ । ତାଙ୍କରି ଉପରେ ଭରସା କରି ତାଙ୍କର ଶତାଧିକ ଛାତ୍ରଛାତ୍ରୀ ଭବିଷ୍ୟତରେ କଳାକାରର ହେବାର ସପ୍ନ ଦେଖୁଛନ୍ତି, ସେମାନଙ୍କ କଥା କ'ଣ ହେବ ? ସେମାନେ ବି କ'ଣ ସରକାରୀ ଚାକିରି କିମ୍ବା ଡ୍ରଇଁ ମାଷ୍ଟର (ଯାହା ଏବେ ସରକାରୀ ସ୍ତରରେ ମୃତବତ୍)ଙ୍କ ଆର୍ଟିଷ୍ଟ କମ୍ ଫଟୋଗ୍ରାଫର୍ ହେଇ, ଆଡ଼ମ୍ବରରେ ସାଇନ୍‌ବୋର୍ଡ଼ଟିମାନ ଝୁଲେଇ ପେଟରେ ଓଦାକନା ମାରି ଏ ଭିଟାମାଟି କାମୁଡ଼ି ପଡ଼ିଥିବେ ? ଯେଉଁ କଳା ଆନ୍ଦୋଳନ ସେ ୧୯୬୯ରେ ଗୁରୁ ଅନନ୍ତ ପଣ୍ଡାଙ୍କ ସହ ମିଶି ଆରମ୍ଭ କରିଥିଲେ ତାକୁ ତୀବ୍ର କରିବାକୁ ହେବ । ସଂକଳ୍ପ ନେବାକୁ ହେବ । ଯେପର୍ଯ୍ୟନ୍ତ ଜାତୀୟ ତଥା ଆନ୍ତର୍ଜାତିକ ସମସାମୟିକ କଳାଧାରା ଓ କଳାପ୍ରବାହ ସମ୍ବନ୍ଧରେ ଆମର ଆଲୋଚନା ନହେବ, ବିତର୍କ ନହେବ ବଙ୍ଗଳାରେ, ଦିଲ୍ଲୀରେ, ମୁମ୍ବାଇରେ ଓ ଚେନ୍ନାଇରେ କ'ଣ ଘଟୁଛି, ତାହା ଭବିଷ୍ୟତର ରଙ୍ଗିନ୍ ସପ୍ନରେ ମସ୍‌ଗୁଲ ଯୁବପିଢ଼ି ନ ଜାଣିବେ, ସେ ମହାନ୍ ଧାରାରେ ନିଜକୁ ମିଶେଇ ନଦେବେ, ସେ ପର୍ଯ୍ୟନ୍ତ ଆମର ସାଂପ୍ରତିକ କଳାର ଉନ୍ନତି ସମ୍ଭବ ହେଇପାରିବନି । ଆମ ଓଡ଼ିଆଙ୍କ ଚିତ୍ର, ସେମାନଙ୍କ ଜୀବନୀ, ସେମାନଙ୍କ ଚିତ୍ରଧାରାର ସମୀକ୍ଷା ନେଇ, ଇଂରାଜୀ ପୁସ୍ତିକା ପ୍ରକାଶିତ ନ କରାଗଲେ ଆମ କଳାକାରଙ୍କ କଥା କେହି ଜାଣିପାରିବେନି । ମାଷ୍ଟ୍ରେ ଏକ ଦୀର୍ଘ କାର୍ଯ୍ୟକ୍ରମର ଖସଡ଼ା ତିଆରି କଲେ, ଦିଗପହଣ୍ଡିରେ ଭାଇନା ସାଙ୍ଗରେ କେତେ କ'ଣ ଅସାଧ କଥା କରାହେଇଛି । ଆଉ ଏ କାମଟା କ'ଣ ବଳେଇଯିବ ?

୧୯୮୨ ମସିହାରେ ଦିଲ୍ଲୀ 'କଳାମେଳା' ଓ ସେଇ ବର୍ଷ କଲିକତାର "ଏକାଡ଼େମୀ ଅଫ୍ ଫାଇନ୍ ଆର୍ଟ୍‌ସ୍"ରେ ଜଗନ୍ନାଥ ଓ ଓଡ଼ିଆ ଚିତ୍ରକାର ପ୍ରଦର୍ଶନୀ ବେଶ୍ ସଫଳ ହେଇଥିଲା । ମୋର ମନେଅଛି, ସେ ପ୍ରସ୍ତୁତି । ମୁଁ ଆସିକା ଟେକ୍‌ନିକାଲ୍ ସ୍କୁଲରେ ଶିକ୍ଷକତା କରୁଥାଏ । ଦିନେ ତାଙ୍କ ଠାରୁ ଗୋଟାଏ ସୁନ୍ଦର ଚିଠି ପାଇଲି । ଦିଲ୍ଲୀରେ ରାଷ୍ଟ୍ରୀୟ କଳାମେଳାରେ 'ଓ୍ୱା' ଭାଗନେବ । ଜଗନ୍ନାଥଙ୍କ ବିଷୟବସ୍ତୁ ନେଇ ପୂରା ପ୍ରଦର୍ଶନୀର ଆୟୋଜନ । ମୁଁ ପାଞ୍ଚଗୋଟି ତୈଳଚିତ୍ର ନେଇ ଦିନେ ଆସି ଭୁବନେଶ୍ୱରରେ ପହଞ୍ଚିଲି । ଦାଦା (ଅସୀମବସୁ) ବାପୁଜୀ ନଗରରେ ରହୁଥାନ୍ତି । ତାଙ୍କର ବସାରେ ଛବି ସଂଗ୍ରହ କରାହେଉଥାଏ । ଚନ୍ଦ୍ରଶେଖର ରାଓ ସାନାଟୋରିଅମ୍‌ରେ ବସା ନେଇଥାନ୍ତି । ସେତେବେଳେ ଭୁବନେଶ୍ୱର ଆସିଲେ ମୁଁ ତାଙ୍କ ଘରେ ରହୁଥାଏ । କ୍ୱାଲିଟି ପ୍ରେସ୍‌ରେ କାଟଲଗ୍ ଛପା ହେଉଥିଲା । ଦୁଇଦିନ ପରେ ଛାପିଲେ ଆମେ ସବୁ ଦିଲ୍ଲୀ ଯିବୁ । ନିର୍ଦ୍ଧାରିତ ତାରିଖ ସୁଦ୍ଧା ଛବି ସବୁ ଜମାଦେବା ଲାଗି ବହୁପୂର୍ବରୁ ସମସ୍ତଙ୍କୁ ଅନୁରୋଧ କରାଯାଇଥିଲେ ସୁଦ୍ଧା ବହୁ କଳାକାର ଛବି ଦେଇ ନଥାନ୍ତି । ସେମାନେ ନିଜେ ଆସିବାକୁ ତାଙ୍କର ସମୟ ନାହିଁ । ଶେଷରେ ଚନ୍ଦ୍ରଶେଖର ରାଓ, ଡି.ଏନ୍. ରାଓ ଗୋଟେପଟେ ପାଠୀ ବାବୁ ଏବଂ ମୁଁ ଆଉଗୋଟେ ପଟେ ରିକ୍‌ସା ଧରି, ସୁକାନ୍ତି ପଟ୍ଟନାୟକ, ଶ୍ୱେତପଦ୍ମା ଜେନା, ଦେଓଲାଲିକର୍, ମୁରଲୀଧର ଟାଲି ପ୍ରଭୃତିଙ୍କ ଘରୁ ଛବିସବୁ ସଂଗ୍ରହ କରି ଆଣିବାକୁ ହେଲା । ପ୍ରଦର୍ଶନୀ ଲାଗି ସାମାନ୍ୟ ଚାନ୍ଦାଦେବା କଥା ତ ଦୂରକଥା, ରିକ୍‌ସାଭଡ଼ାଟା ମଧ୍ୟ କେହି ଦେଉ ନଥାନ୍ତି । ଯଥା ସମ୍ଭବ ଚାନ୍ଦାର ଅଭାବରୁ, ପ୍ୟାକିଙ୍ଗ୍ ଜିନିଷ କିଣା ହେଇପାରିଲାନି । ସେପଟେ ଆର୍ଟିଷ୍ଟମାନଙ୍କ ତାଗିଦା, ଆପଣମାନେ ଭଲ ଭାବରେ ପ୍ୟାକିଙ୍ଗ୍ କରି ଛବି ନେଇ ଫେରେଇବେ ।

Digitized by srujanika@gmail.com

ଦାଦା Studio ଡ୍ରାମା ସେଟ୍‌ରୁ କିଛି କନା ଦେଲେ । ବାକି ପାଠୀ ବାବୁ ତାଙ୍କ ଘରୁ ଭାଉଜଙ୍କୁ ଲୁଚେଇ କିଛି ବେଡ୍‌ସିଟ୍ ତାଙ୍କ ଲାମ୍ବି ସ୍କୁଟରରେ ଧରି ପହଞ୍ଚିଗଲେ । ନିର୍ଦ୍ଧାରିତ ଦିନରେ ଭୁବନେଶ୍ୱରରୁ ପାଠୀ ବାବୁ, ଦୁର୍ଗାଚରଣ ପଣ୍ଡା ଓ ମୁଁ ଟ୍ରେନ୍ ଧରିଲୁ । ବେକ୍ରଭ୍ୟାନ୍‌ରେ ଛବି ବୁକିଙ୍ଗ୍ କରିବାକୁ ପଇସା ନଥାଏ । ସେଇ କମ୍ପାର୍ଟମେଣ୍ଟରେ ଛବିନେଇ ବାହାରିଲୁ । କଟକରେ ଶିବ ପାଣିଗ୍ରାହୀ ଓ କାଶୀନାଥ ଜେନା ସସ୍ତ୍ରୀକ ଉଠିଲେ । କଳାମେଳାରେ ଆମ ଓଡ଼ିଆଙ୍କ ପ୍ରଦର୍ଶନୀ ବେଶ୍ ସଫଳତା ପାଇଥିଲା । ସବୁଠୁ ବଡ଼କଥା, ଇଂରେଜୀରେ ପ୍ରକାଶିତ କାଟ୍‌ଲଗ୍ ଜଗନ୍ନାଥ ଓ ଓଡ଼ିଆ ଚିତ୍ରକାର ଖୁବ୍ ଲୋକପ୍ରିୟ ହେଇଥିଲା । ବିଭିନ୍ନ ଇଂରେଜୀ ଓ ହିନ୍ଦୀ ଖବର କାଗଜରେ ସମୀକ୍ଷାମାନ ବାହାରିଥିଲା । ପରେ ଏକାଡ଼େମୀ ଅଫ୍ ଫାଇନ୍ ଆର୍ଟ୍‌ସ୍ କଲିକତାର ଲେଡ଼ି ରାନୁ ମୁଖାର୍ଜୀଙ୍କ ସତନ୍ତ୍ର ନିମନ୍ତ୍ରଣରେ, କଲିକତାରେ ସେଇ ପ୍ରଦର୍ଶନୀ ଅନୁଷ୍ଠିତ ହେଇଥିଲା ।

୧୯୮୮ ମେ ମାସ ୧୨ ତାରିଖରେ ସାଂପ୍ରତିକ ଓଡ଼ିଆ ଚିତ୍ରକଳାର ଗୋଟେ ବଡ଼ ଜାତୀୟ ସେମିନାର ପାଠୀ ବାବୁ ଆୟୋଜନ କଲେ । ଜାତୀୟ ସ୍ତରର ବହୁ ବଡ଼ ବଡ଼ କଳା ସମୀକ୍ଷକ, ପ୍ରଫେସର ଓ କଳାପ୍ରଶାସକଙ୍କୁ ସେ ନିମନ୍ତ୍ରଣ କରି ଆଣିଲେ । ଓଡ଼ିଶାର ବିଶିଷ୍ଟ ଓ ନବୀନ-ନବୀନାଙ୍କ କୃତି ସଂଗ୍ରହ କରି ଗୋଟାଏ ବଡ଼ ପ୍ରଦର୍ଶନୀ ମଧ୍ୟ ଆୟୋଜିତ ହେଲା । ସୂଚନା ଭବନର ଶୀତତାପ ନିୟନ୍ତ୍ରିତ କକ୍ଷରେ **ଇଭଲ୍ୟୁସନ୍ ଅଫ୍ କଣ୍ଟେମ୍‌ପୋରାରୀ ଆର୍ଟ୍ ଅଫ୍ ଓଡ଼ିଶା** ଆଲୋଚନା ଚକ୍ର । ସେପଟେ ପ୍ରଦର୍ଶନୀ କକ୍ଷରେ ଶରତଚନ୍ଦ୍ର ଦେଓ, ଗୋପାଳ କାନୁନ୍‌ଗୋ, ବିପିନ୍‌ବିହାରୀ ଚୌଧୁରୀ, ବସନ୍ତ ପଣ୍ଡା, ହରିଶରଣ ମହାପାତ୍ର, ଶ୍ରୀକାନ୍ତ ପଣ୍ଡା, ପୂର୍ଣ୍ଣଚନ୍ଦ୍ର ସିଂ, ବିଦ୍ୟାଧର ବର୍ମା, ଅଜିତ୍ କେଶରୀ ରାୟ, ଅନନ୍ତ ପଣ୍ଡାଙ୍କ ସାଙ୍ଗରେ ଆମ ନୂଆପିଢ଼ିର ଚିତ୍ର ସବୁ ସ୍ଥାନ ପାଇଥାଏ । ଚମତ୍କାର ବ୍ୟବସ୍ଥା । ସେମିନାର୍‌ର ପେପର୍ ସବୁ ସାଇକ୍ଲୋଷ୍ଟାଇଲ୍‌ରେ ଛପାହେଇ ତାରିଖ, ଅଧିବେଶନ, ବକ୍ତାଙ୍କ ନାମ ଲେଖାହେଇ ପ୍ୟାକେଟ୍ ପ୍ୟାକେଟ୍ ହେଇ ରଖାହେଇଥାଏ । ନିର୍ଦ୍ଧାରିତ ଦିନ ଓ ଠିକ୍ ସମୟରେ ନିର୍ଦ୍ଦିଷ୍ଟ ବିଷୟବସ୍ତୁର ପେପର୍ ଯେପରି ଠିକଣା ଭାବେ ସମସ୍ତେ ପାଇପାରିବେ ତା'ର ବ୍ୟବସ୍ଥା ହେଇଥାଏ । ସେମିନାର୍ ପାଇଁ ସୁନ୍ଦର କାନ୍ଧଝୁଲା ମୁଣା ତିଆରି ହେଲା । ତା' ସାଙ୍ଗକୁ ସମ୍ବଲପୁରୀ କନାରେ ତିଆରି ହେଲା ଫାଇଲ୍ ଓ ଫୋଲ୍‌ଡ଼ର୍ । ସେମିନାର୍ ପ୍ରଦର୍ଶନୀ ସାଙ୍ଗକୁ ସିଲକ୍ ସ୍କ୍ରୀନରେ 'ଓ୍ୱା'ର ସିମ୍ବଲ୍ ଛପାଗଲା । ଅତିଥି ଓ ସେମିନାର୍‌ରେ ଭାଗ ନେଉଥିବା ବିଶେଷ ବ୍ୟକ୍ତିମାନଙ୍କୁ ଦିଆହେବ । **ଏତେ ସୁନ୍ଦର ଡିଜାଇନ୍ ଓ ଚମତ୍କାର ଏଥେନିକ୍ ରଙ୍ଗର ଝୁଲାମୁଣା ଓ ଫାଇଲ୍ ମୁଁ ତା ଆଗରୁ କେବେ ଦେଖିନଥିଲି । ମାଷ୍ଟ୍ରେ ତ ମୋ ଭଳିଆ କିଛି ଲୋକଙ୍କ ଆଖିକୁ ବଦଳେଇ ଦେଲେ ।** ଦିଲ୍ଲୀ ଖଦୀ ଓ ଗ୍ରାମେଦ୍ୟୋଗରୁ ରଙ୍ଗିନ ହ୍ୟାଣ୍ଡମେଡ଼୍ ପେପର୍ ଆଣି ନିମନ୍ତ୍ରଣ ପତ୍ର ଛପାହେଲା । ସେଇ ଏକା ମ୍ୟାଚିଙ୍ଗ୍ କାଗଜରେ ହାତରେ କାଟି ଲଫାପା ତିଆରି କରାଗଲା । ଆଜି ଭଳିଆ ସେତେବେଳେ ଭୁବନେଶ୍ୱରରେ ଲଫାପା ତିଆରି ଡାଇସ୍‌ର୍ ବ୍ୟବସ୍ଥା ନଥିଲା । ଭୁବନେଶ୍ୱରର ସବୁ ହସ୍ତତନ୍ତ ଦୋକାନ ମାନ ବୁଲି ବୁଲି ବଢ଼ିଆ ଓଡ଼ିଶୀ ଡିଜାଇନ୍‌ର ପଣତ ଓ ଧଡ଼ିଥିବା ଓଡ଼ିଶୀ ଶାଢ଼ି କିଣାହେଇ ବ୍ୟାନର୍ ଲେଖାହେଲା । ତାଙ୍କ ରାଜ୍ୟର ତନ୍ତବୁଣା ଶାଢ଼ି ଓ ହସ୍ତଶିଳ୍ପ ପାଇଁ ସବୁବେଳେ ମାଷ୍ଟ୍ରଙ୍କ ଛାତି କୁଣ୍ଢେମୋଟ । ଫୁଲ ତୋଡ଼ା ବଦଳରେ ଓଡ଼ିଶୀ ଅଙ୍ଗବସ୍ତ୍ର (ଗାମୁଛା) ଦେଇ, କପାଳରେ ଚନ୍ଦନ କର୍ପୂରର ଚିତା ଦେଇ ଅତିଥିମାନଙ୍କୁ ସ୍ୱାଗତ କରାଗଲା । ଟେବୁଲ ଉପରେ ଧୋବ ଫରଫର ଗଦର ତା' ଉପରେ ମାଟି ସରାମାନଙ୍କରେ ବିଭିନ୍ନ ଫୁଲ ସଜ୍ଜା ହେଇଥାଏ । ସୂଚନା ଭବନର ଗେଟ୍ ଠାରୁ ପାଇଖାନା ଯାଏଁ ତାଙ୍କ ଆଖି । କୋଉଠି କିଏ ସିଗାରେଟ୍ ଖାଇ ଫିଙ୍ଗିଚିତ କୋଉଠି ଆମ ପାନୁଆ ଭାଇ, ପିଚ୍‌କରି ଫୁଲକୁଣ୍ଡ, ଗଛ କିମ୍ବା କାନ୍ଥ କଣମାନଙ୍କରେ ପାନଥୁମ୍ପ ପକେଇ ଦେଇଛନ୍ତି ମାଷ୍ଟ୍ରଙ୍କ ଆଖିରୁ କେହି ବାଦପଡ଼ିବେନି । ସେ ନିଜେ ଖଣ୍ଡିଆ ବିଡ଼ି, ଅଧାଜଳା ସିଗାରେଟ୍‌ମାନ ଉଠେଇ ଡଷ୍ଟବିନ୍‌ରେ ପକେଇବେ । କାହାକୁ ସେଇଟା ଉଠାଅ, କହିବେନି, ନିଜେ କରିଦେଇଯିବେ । ସେପଟେ କୁଣ୍ଡ ପାନଛେପ ପାଣିପକେଇ ଧୂଆହେବ ତ ସୂଚନା ଭବନର କାନ୍ଥକୋଣ ପାନଥୁମ୍ପ ଯାଗାରେ ଧଳା କାଗଜ ଅଠାରେ ମଡ଼ାହେବ । ସବୁଥିରେ ଏକ ଅନ୍ତରଙ୍ଗ ସଂଭ୍ରାନ୍ତ, ରୁଚିଶୀଳ ଭାବ ।

Digitized by srujanika@gmail.com

ନୂତନ ପ୍ରଥା ଓ ପରମ୍ପରା ତିଆରି କରିବାରେ ମାଷ୍ଟ୍ରେ ସବୁବେଳେ ଚେଷ୍ଟିତ । ସେମିନାର୍ ଓ ପ୍ରଦର୍ଶନୀର ଉଦ୍‌ଘାଟନ ହେଇପାରିବନି । ଏଇଟା କ'ଣ କୋଠା, ସଡ଼କ ନା ବ୍ରିଜ୍ ହେଇଚି ଯେ ଉଦ୍‌ଘାଟନ ହେବ । ୧୯୮୮ର ମେ ବାର ତାରିଖରେ ଓଡ଼ିଆ ଚିତ୍ରକଳା ସେମିନାର୍‌ର ଲୋକାର୍ପଣ ହେଲା । ଜାତୀୟ ଲଳିତ କଳା 'ଏକାଡ଼େମୀର ଉପାଧକ୍ଷ ଶ୍ରୀ ଆନନ୍ଦ ଦେବ ମୁଖ୍ୟ ଅତିଥି ରୂପେ ଯୋଗଦେଇଥିଲେ । ଏବେ ଏବେ ଓଡ଼ିଶାରେ ଏଇ 'ଲୋକାର୍ପଣ' ଅଭ୍ୟାସଗତ ହେଇଗଲାଣି । ସେମିନାର୍‌ରେ ଘରିଆକିଆ ବ୍ୟବସ୍ଥା ହେଇଥାଏ । ସକାଳେ ଦି ଥାକ । ମଧ୍ୟାହ୍ନ ଭୋଜନ ପରେ ଆଉ ଦି' ଥାକ । ଆର୍ଟ କଲେଜର ବାଁ ପଟ ଆମ୍ବଗଛ ପାଖରେ ରୋଷେଇର ଆୟୋଜନ ଚାଲିଥାଏ । ବନ୍ଧୁ ରୋହିତ ବଟୁ, ଲିଙ୍ଗରାଜ ମହାପ୍ରଭୁଙ୍କ ଖାସ୍ ସେବକ । ଖାଦ୍ୟପେୟ ଦାୟିତ୍ୱ ସିଏ ନିଜ କାନ୍ଧରେ ନେଇଛନ୍ତି । ମାଷ୍ଟ୍ରଙ୍କ ଆଜ୍ଞା, ବଛା ବଛା ଓଡ଼ିଆ ଆଇଟମ୍ କଦଳୀ ପତ୍ରରେ ପରଷା ହେବ । ସୂଚନା ଭବନରୁ ଅତିଥି କଳାକାର ଓ କଳାଛାତ୍ରମାନଙ୍କୁ ନେବାଆଣିବା ସକାଶେ ମିନିବସ୍ ଓ ଆମ୍ବାସଡ଼ାର୍ କାର୍‌ମାନ ଜଗିରହିଛନ୍ତି । ଝିଅ ବାହାଘରର ଯୋଗାଡ଼ ଭଳିଆ ନିଶାରେ ସବୁ କାମଚାଲିଚି । ଦୁଇଶହ ଲୋକଙ୍କ ଖିଆପିଆ । ଓଡ଼ିଶା ବାହାରୁ ଆସିଥିବା ଅତିଥିମାନଙ୍କ କୌଣସି ଅସୁବିଧା ନହେବା ଦରକାର । ସେମାନେ ତ ଆମର ବରଯାତ୍ରୀ । ତାଙ୍କ ସନ୍ତୋଷ ନହେଲେ ଆମ ଓଡ଼ିଶୀ ଚିତ୍ର /ଚିତ୍ରକାର ଘରବୁଡ଼ା ହେଇ ରହିଯିବେ । ସବୁକଥା ଅତି ସତର୍କତାରେ, ଆନ୍ତରିକତାରେ ହେଉଥିଲା, ଭାବିଲେ ଆଜି ଆଶ୍ଚର୍ଯ୍ୟ ଲାଗୁଛି । ସେ ଉଦ୍ଦୀପନା, ଉତ୍ସାହ, ଏକାଠି କାମ କରିବାର ସେ ଦମ୍ଭ ଓ ବିଶ୍ୱାସ ଏବେ ଗଲା କୁଆଡ଼େ ? ସେଇ କିଛିବର୍ଷ ସାଂପ୍ରତିକ କଳା ଉତ୍ସବମୁଖର ଥିଲା । ଆମେ ସବୁ ତତ୍ପର ଆଉ ଦାୟିତ୍ୱବାନ ହେଇଉଠିଥିଲୁ । 'ମୁଁ' ରୁ ଆମେ ହେଇ, ଚିନ୍ତା ଓ ଚେତନାକୁ ଗୁଡ୍ୱିମନ୍ତ କରି ଆଗେଇ ନେବାରେ ସଂକଳ୍ପ ନେଇଥିଲୁ । ଦିନସାରା ସେମିନାର୍‌ର ବ୍ୟବସ୍ଥା ଓ ଜଞ୍ଜାଳରୁ ମୁକ୍ତି ପାଇ ସନ୍ଧ୍ୟାରେ, କଲେଜ ଛାତରେ ସଙ୍ଗୀତ ଆସରର ଆୟୋଜନ ହେଉଥିଲା । ପ୍ରେମ ଓ ସ୍ନେହରେ ବାନ୍ଧିହୋଇ ସମସ୍ତେ ଏକାଠି ହେଉଥିଲେ । ଆମ୍ବଗଛ ମୂଳରୁ ଡାଲମାର ଜିରାଭୁଙ୍କ ମଝିମଝିରେ ସଙ୍ଗୀତ ଆସରକୁ ପଶିଆସୁଥିଲା । ଅନନ୍ତ ପଣ୍ଡା ସୀତାର ଓ ରବୀନ୍ଦ୍ର ସଙ୍ଗୀତରେ ସମସ୍ତଙ୍କୁ ମୁଗ୍ଧ କରି ରଖୁଥିଲେ । ରାତି ଗଭୀର ହେଲେ ଆସର ଜମି ଉଠୁଥିଲା । ମେଘ ଛାତିରେ ମଥା ରଖି ଜହ୍ନ ଆହୁରି ସୁନ୍ଦର ଦିଶୁଥିଲା । ଆତ୍ମତୃପ୍ତିରେ ସବୁ ବିହ୍ୱଳିତ ହେଇ ପଡୁଥିଲେ । ମାଷ୍ଟ୍ରେ ତାଙ୍କ ଛାତ୍ରମାନଙ୍କ ସ୍ୱରରେ ସ୍ୱର ମିଳେଇ ଗୀତ ଗାଉଥିଲେ କିମ୍ବା ମାଟିହାଣ୍ଡି ଅଥବା ଡ୍ରଇଁବୋର୍ଡ଼ରେ ବାଜାବଜେଇ ତାଳ ଦେଉଥିଲେ । ଆକାଶରେ କ୍ଳାନ୍ତ ଜହ୍ନ ଆଖି ବୁଜୁଥିଲା ।

ସକାଳ ସାତଟାରେ ନୂଆ ବେଶବାସ ହେଇ କଲେଜରେ ହାଜର ହେଉ ଯାଉଥିଲେ ମାଷ୍ଟ୍ରେ । ଗ୍ରାଫିକସ୍ ଡିପାର୍ଟମେଣ୍ଟରେ ଘୁଙ୍ଗୁଡ଼ି ମାରୁଥିବା ଛାତ୍ରଦଳଙ୍କୁ ନିଦରୁ ଉଠେଇବେ । ଗାଧେଇ ପାଧେଇ ସଅଳ ପହଞ୍ଚିବାକୁ କଡ଼ା ତାଗିଦ୍ କରିବେ । ସେପଟେ ଅନ୍ୟାନ୍ୟ ବ୍ୟବସ୍ଥା ଦେଖିବାକୁ ଅଛି । ଦି'ପହରିଆ ଖାଦ୍ୟ ବ୍ୟବସ୍ଥା, ପାନ୍ଥନିବାସ ଅତିଥିଙ୍କ ସୁବିଧା ଅସୁବିଧା, ସେ ଦିନର ସବୁ ସେମିନାର୍ ପେପର୍, ସ୍ଲାଇଡ୍ ପ୍ରୋଜେକ୍‌ଟ୍‌ର୍, ଝୁଲାମୁଣା, ଜଆ, ବାଉଁଶ କୁଲା ଓଗେର ସବୁ ଗୋଟି ଗୋଟି ଲିଷ୍ଟ କଲାପରି, ଟାଙ୍ଗିରେ ଧରି ଧାଇଁବେ ସୂଚନା ଭବନକୁ । ଘଣ୍ଟେ ଆଗରୁ ସେଇଠି ନ ପହଁଚିଲେ ସବୁ ଗୋଳମାଳ ହୋଇଯିବ । ସଫା ସଫିଠୁ ଆରମ୍ଭକରି ମଞ୍ଚ ସଜା ପର୍ଯ୍ୟନ୍ତ ସବୁଠିକୁ ନିଘା । ସେ ଦିନର ମଞ୍ଚ ଫୁଲରେ ସଜାହେବ, ଅତର ଛିଞ୍ଚା ହେବ, ଟେବୁଲ ଉପରର ଗ୍ଲାସ ସବୁ ଚକ ଚକିଆ ହେବ, ପିଇବା ପାଣି ଆଉ ବୋତଲ ଧୁଆ ହେବ । ମାଇକ୍ ଠିକ୍ କାମ କରୁଚି କି ନାହିଁ ଦେଖାହେବ, ବାଥ୍ ରୁମ୍‌ରେ ଫିନାଇଲ୍ ପଡ଼ିଚିକି ନାଇଁ, ସ୍ଲାଇଡ୍ ପ୍ରୋଜେକ୍ଟର ଠିକ୍ କାମ କରୁଚି ତ ! ଅସଲ ବେଳକୁ ସିଏ ଚାଲିବନି । ଏସବୁ ଦେଖି ସନ୍ତୋଷ ହେଲାପରେ ମାଷ୍ଟ୍ରେଯାଇ ମୁଖ୍ୟଦ୍ୱାରରେ ଡ୍ୟୁଟିରେ ହାଜର ହେବେ । ଅତିଥିଙ୍କୁ ସାଗତ କରିଆଣିବେ । ଚମତ୍କାର ବ୍ୟବସ୍ଥା, ଅସୀମ ଧୈର୍ଯ୍ୟ । ସ୍ୱୟଂ ସଂପୂର୍ଣ୍ଣ, ରୁଚିଶୀଳ ଓ ଉଗ୍ର ଓଡ଼ିଆ ସାଭିମାନର ମଣିଷଟେ ଆମ ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ । ସଦାବେଳେ ବିଭିନ୍ନ କାମରେ ନିଜକୁ ବ୍ୟସ୍ତ ରଖୁଥିବା ତଥା ବନ୍ଧୁ ଓ ଛାତ୍ରଛାତ୍ରୀଙ୍କ ଗହଳିରେ ମଜ୍ଜି ରହିବାକୁ ଭଲ ପାଉଥିବା ଏ ମଣିଷଟା ସତରେ ଭିନ୍ନ, ନିଆରା । ଆଉ ବେଳେ ବେଳେ ବିଚିତ୍ର ।

Digitized by srujanika@gmail.com

ବି.କେ କଲେଜ ଓ NCERT ଦିଲ୍ଲୀ ସହଯୋଗରେ କଳା ଶିକ୍ଷକମାନଙ୍କ କର୍ମଶାଳା ଚାଲିଥାଏ । ଓଡ଼ିଶା ତଥା ଓଡ଼ିଶା ବାହାରୁ ବହୁ କଳା ଶିକ୍ଷକ ଯୋଗଦେଇଥାନ୍ତି । କର୍ମଶାଳାର ବିଶେଷ ପର୍ବ, ବିଦାୟବେଳାରେ କଣ୍ଠରୁଦ୍ଧ ହେଇଯାଉଥାଏ । ଛଳ ଛଳ ଆଖିରେ ସେ କହୁଥିଲେ ଆପଣମାନେ ଯିଏ ଯେଉଁଠି ଥାନ୍ତୁ, ସେ ଅଞ୍ଚଳର ଲୋକକଳା ଓ ଲୋକ ସଂସ୍କୃତିକୁ ଚିହ୍ନିବାକୁ ଚେଷ୍ଟା କରନ୍ତୁ । ଆଖ ପାଖ ଗାଁକୁ ଛାତ୍ରମାନଙ୍କୁ ନେଇଯାଆନ୍ତୁ ; ଠାକୁରାଣୀ ମନ୍ଦିର, ମଠ, ଭାଗବତ ଟୁଙ୍ଗୀ ଦେଖାନ୍ତୁ, ଦେଖନ୍ତୁ । ମଠକାନ୍ଥର ମ୍ୟୁରାଲ୍ ପେଣ୍ଟିଙ୍ଗ୍ ଦେଖନ୍ତୁ । କିଏ ସେ ଚିତ୍ରକାର ତା'ର ବଂଶକୁଳ ଖୋଜି ବାହାର କରନ୍ତୁ । ଗାଁରେ ; ତନ୍ତୀଶାଳରେ, କଂସାରୀଖାନାରେ ଓ ଭାଗବତ ଟୁଙ୍ଗୀରେ ପିଲାଙ୍କୁ ନେଇ ବସନ୍ତୁ । ଗାଁ ମୁଣ୍ଡ ବରଗଛ ମୂଳର ପୋଡ଼ା ମାଟି ଘୋଡ଼ା ସବୁକୁ ନିରେଖନ୍ତୁ । ଯାନି ଯାତରା, ଦଣ୍ଡନାଟ, ଘୋଡ଼ାନାଚ, ଓଷାକୋଠିରେ ନିଜକୁ ସାମିଲ କରନ୍ତୁ । କଳାପଟା ଆଉ ଚକ୍ ଖଡ଼ିରେ କଳା ପାଠ୍ୟକ୍ରମକୁ ବାନ୍ଧି ରଖିବାର ବେଳ ସରିଆସିଛି । କଳାଶିବିର ବଡ଼କଥା ନୁହେଁ, ବଡ଼କଥା ଆମେ ସବୁ ଗୋଟିଏ ଜାଗାରେ ଏକାଠି ହେଇପାରିଲେ । ଦୁଃଖ ସୁଖକୁ ବାଣ୍ଟିଲେ ।

ଆସିକା ଟେକ୍‌ନିକାଲ ହାଇସ୍କୁଲରେ ମୁଁ ଚିତ୍ର ଶିକ୍ଷକ ଥାଏ । ବୋଇରାଣୀ, ଏବର କବିସୂର୍ଯ୍ୟ ନଗର ଓ ଆସିକା ମଝିରେ ଚିନି କାରଖାନା ପୂର୍ବରୁ ଯେଉଁ ମୁଣ୍ଡିଆ ଢିପ ଜାଗାଟା ପଡ଼ିବ ଓ ଏବେ ଯେଉଁଠି ଆସିକା କଲେଜ ଚାଲିଛି, ସେଇ ବଡ଼ ଦିଗହରା ଓ ତିନି ମହଲା କୋଠା ସବୁ ଆମର ସ୍କୁଲଥିଲା । ୧୯୮୦ ଆଗରୁ ଏଠି ଚନ୍ଦ୍ରଶେଖର ରାଓ ଚିତ୍ରଶିକ୍ଷକତା କରୁଥାନ୍ତି । ତାଙ୍କ ଘରେ ମାଷ୍ଟ୍ରଙ୍କୁ ବହୁବାର ଦେଖିଚି, ମିଶିଛି । ସେଇ ସ୍କୁଲ ବାରଣ୍ଡାରୁ ଆମ ଗାଁକୁ ଦେଖି ହୁଏ । ଆମ ଗାଁ ବଡ଼ବନ୍ଧର ନୀଳକଇଁ ସବୁ ଗଣିହୁଏ । ଆମ ଘୁମୁସର ଅଞ୍ଚଳରେ ଦୁର୍ଗାପୂଜା ବେଳେ ଆଉଗୋଟେ ଯାତରା ହୁଏ । ଗାଁର ହରିଜନ ଓ ଋଷିକୁଳର ଲୋକମାନେ ମେଳିହେଇ ଏ ପର୍ବ ପାଳନ୍ତି । ଦଳେ ଲୋକ ଘଙ୍ଗୁବାଇଦର ତାଳେ ତାଳେ, ଗୀତ ଗାଇ ଗାଇ, ନାଚି ନାଚି ଚାଲିଥିବେ, ଗାଁକୁ ଗାଁ । ଗୋଟେ ସୁନ୍ଦୁରିଆ ଭେଣ୍ଡିଆ ପିଲା ମାଇକିନା(ମଙ୍ଗଳା) ବେଶହେଇ, ମୁଣ୍ଡରେ ପଞ୍ଚମୁଖୀ ପିତଳ କଳସୀରେ ମନ୍ଦାର ଫୁଲ, ସିନ୍ଦୁର ଓ କଳା ଚୂଡ଼ି ପିନ୍ଧେଇ ହାତରେ ମୟୂର ପିଅଁମୁଠା ଧରି, ଘୁଙ୍ଗୁର ବାନ୍ଧି ଘଙ୍ଗୁର ତାଳେ ତାଳେ ନାଚି ନାଚି ଚାଲିଥିବ । ଗାୟେଣୀ ଗୀତ ଛାଡୁଥିବେ । ଗାଁକୁ ଗାଁ, ସାଇକୁ ସାଇ ବୁଲି, ଧାନ, ମୁଗ, ବିରି, ପଇସା ଯିଏ ଯାହା ଦେଲା ଶିତଳ ସଂଗ୍ରହ କରୁଥିବେ । ସଞ୍ଜବେଳକୁ ଗାଁକୁ ଫେରିବେ । ସଉଚ ବାଉଚଟେ ହେଇ ରୁଣ୍ଡ ହେଇଯିବେ କୋଠିଶାଳ ଛାମୁଣ୍ଡିଆ ତଳେ । କାନ୍ଥରେ ବିରାଟ ଓଷାକୋଠି ଚିତ୍ର ହେଇଥିବ । ବଇଠା ଉପରେ, ନୂଆ ବାଉଁଶ ଚାଙ୍ଗୁଡ଼ିରେ ବାର କିସମର ବିହନ, ଧାନ, ମୁଗ, ବରଗୁଡ଼ି, ବାଇଲ, ରାଣୀ, ସୋରିଷ ଓଗେର ଗଜା ପଡ଼ିଥିବ । ଗୋବର ଲିପା ହେଇଥିବ । ଲୋକେ ବସିଥିବେ । ଢଣ କୋଇଲାର ତାଳେ ତାଳେ ଗାୟେଣୀ ଗୀତ ବୋଲୁଥିବ । ତୁହାକୁ ତୁହା ଝୁଣା ମାଡ଼ ହେଉଥିବ ଓ ଜଣକ ପରେ ଜଣକୁ କାଳେଶୀ ଲାଗୁଥିବ । କାଳେଶୀ ଓ ଗାୟେଣୀ ମଧ୍ୟରେ ପ୍ରଶ୍ନ ଉତ୍ତର ଚାଲିଥିବ । ଗାଁ ଯାକର ଅଣ୍ଡିରା, ମାଇକିନା ଓ ପିଲାପିଲି ଏ ତାମସା ଦେଖୁଥିବେ । ପିଲାଦିନରୁ ଏ ଆଡ଼ମ୍ବର ପ୍ରତିବର୍ଷ ମୁଁ ଦେଖିଚି ଗାଁରେ ଜାନି ଯାତରା ଦେଖିଲା ଢଙ୍ଗରେ । ସେଇବର୍ଷ ଡ୍ରଇଁମାଷ୍ଟ୍ରେ ତାଙ୍କ ବିଦେଶୀ ବନ୍ଧୁ ଫିସର୍ ସାହେବଙ୍କ ସଙ୍ଗେ ଆସି ଆମ ଗାଁରେ ପହଞ୍ଚିଲେ । ମାଷ୍ଟ୍ରଙ୍କ ତୁଣ୍ଡରୁ ଆଗରୁ ଶୁଣିଚି ଫିସର୍ ସାହେବ, ପୃଥିବୀର ଜଣେ ଖ୍ୟାତନାମା କଳା ଐତିହାସିକ । ସୁଇଜର୍‌ଲ୍ୟାଣ୍ଡ ରିଟ୍‌ବର୍ଗ୍ ମ୍ୟୁଜିୟମ୍‌ର ନିର୍ଦ୍ଦେଶକ । ଆଫ୍ରିକା ଓ ଆମ ଭାରତର ଗୁଜୁରାଟ ଓ ହିମାଞ୍ଚଳ ପ୍ରଦେଶ ଉପରେ ଗବେଷଣା କରି ମୋଟା ମୋଟା ବହିସବୁ ଛାପିଛନ୍ତି । ଆମ ଓଡ଼ିଶା ଉପରେ **Orissa Kunst und Kultur in Nordost Indien** ନାଁରେ ଜର୍ମାନ୍ ଭାଷାରେ ଫଟୋଚିତ୍ର ସହ ଚମତ୍କାର ବହି ଛାପିଛନ୍ତି । ଡକ୍ଟର ସୀତାକାନ୍ତ ମହାପାତ୍ର ଓ ଆମ ଡ୍ରଇଁମାଷ୍ଟ୍ରେଙ୍କ ସାଙ୍ଗରେ ମିଶି ଫିସର୍ ସାହେବ ଏ ବହି ରଚନା କରିଛନ୍ତି । ଏବେ ଆସିଛନ୍ତି ଆମ ଘୁମୁସର ଅଞ୍ଚଳର କୋଠିଶାଳ ଉପରେ ବହି କରିବେ ।

ଆସିକା ଚିନି କାରଖାନା ଗେଷ୍ଟହାଉସ୍‌ରେ ଫିସର୍ ସାହେବ ଓ ଡ୍ରଇଁମାଷ୍ଟ୍ରେଙ୍କ ସାଥିରେ ମୁଁ ମଧ୍ୟ ରହିଲି । ସିଏ ରାଜ୍ୟ ସରକାରଙ୍କ ବିଶିଷ୍ଟ ସରକାରୀ ଅତିଥି । ସକାଳ ଛଅରେ ଜଳଖିଆ ଖାଇ

Digitized by srujanika@gmail.com

ବାହାରିଯାଉ । ଡ୍ରାଇଭର ପାଖସିଟ୍‌ରେ ସାହେବ । ପଛସିଟ୍‌ରେ ମାଷ୍ଟ୍ରେଙ୍କ ସାଙ୍ଗରେ ମୁଁ । ଗଲାରାତ୍ରିରେ ଯୋଜନା ତିଆରି ସରିଥାଏ । କୋଉ କୋଉ ଗାଁକୁ ଯିବୁ ଓ କ'ଣ ସବୁ କାମ ହେବ । ଆସିକାରୁ ଭଞ୍ଜନଗର, ବେଲଗୁଣ୍ଠା, ବାଲିପଦର, ସେପଟେ ଦିଗପହଣ୍ଡିରୁ ପାରଳାଖେମଣ୍ଡି, ବ୍ରହ୍ମପୁର, କବିସୂର୍ଯ୍ୟ ନଗର, ପୁରୁଷୋତ୍ତମପୁର, ଶେରଗଡ଼, ମୁଣ୍ଡମରେଇ ଗାଁକୁ ଗାଁ ଖେଦି ପାରିବୁ । ଶହ ଶହ ଫଟୋ ଉଠେଇ ଚାଲିଥାନ୍ତି ଫିସର୍ । ମାଷ୍ଟ୍ରେ ଗୋଟେ ଛୋଟ ଟେପ୍‌ରେକଡ଼ର୍ ଓ ତାଙ୍କ ଟିପାଖାତା ନେଇ ଗାହାଣୀ ଗୀତ, ଚିତ୍ରକାରର ବଂଶବୃତ୍ତି, ପରମ୍ପରା ସବୁ ରେକର୍ଡ଼ କରିଚାଲିଥାନ୍ତି । ଗାଁ ଲୋକମାନେ ଆଗ୍ରହ ଓ ଆତିଥେୟତାରେ ସହଯୋଗର ହାତ ବଢ଼ାଉଥାନ୍ତି । ଗୋଟେ ଗାଁରୁ ଆଉ ଗୋଟେ ଗାଁକୁ ଗଲାବେଳେ, ମାଷ୍ଟ୍ରେ ଫିସର୍‌ଙ୍କୁ ଇଂରାଜୀରେ ପ୍ରାଞ୍ଜଳ ଭାବେ ବୁଝେଇ ଦେଉଥାନ୍ତି ସବୁକଥା, କୋଠିଶାଳର ପରମ୍ପରା । ଫିସର୍ ଗାଡ଼ି ଆଗ ସିଟ୍‌ରେ ଗୋଟେ ଛୋଟ ଟାଇପ୍ ରାଇଟରରେ ଧଡ଼୍‌ଧାଡ଼୍ ଟାଇପ୍ କରି ପକଉଥା'ନ୍ତି ।

କୋଠିଶାଳ ବା ଓଷାକୋଠି ୧୩ ରୁ ୨୧ ଦିନ ପର୍ଯ୍ୟନ୍ତ ପାଳନ କରାଯାଇଥାଏ । ସାଧାରଣତଃ ହରିଜନ ଓ ପଛୁଆ ଜାତିର ଲୋକମାନେ ଆଗେ ଏ ପର୍ବ ପାଳନ କରୁଥିଲେ । ପରେ ଚଷାକୁଳ ତଥା ଥିଲାବାଲା ଲୋକେ ଜାତି ନିର୍ବିଶେଷରେ ମାନସିକ କରି ଏ ପର୍ବ ପାଳନ କଲେ । ହେତୁ ହେବା ଦିନରୁ ଏ ପର୍ବ ଆମ ଗାଁ ତଥା ସାଇ ପଡ଼ିଶା ଗାଁରେ ଦେଖି ଆସିଛି । ହେଲେ ଆମ ମାଷ୍ଟ୍ରଙ୍କ ସାଙ୍ଗରେ ଦେଖିଲାବେଳେ ହିଁ ବୁଝିଲି କି ସମ୍ଭ୍ରାନ୍ତ ସାଂସ୍କୃତିକ ପରମ୍ପରା ଆମ ଗାଁ ଗାଁରେ ଯୁଗ ଯୁଗ ଧରି ଚଳିଆସିଚି । ଗୋଟାଏ ପର୍ବରେ ମ୍ୟୁରାଲ୍ ପେଣ୍ଟିଙ୍ଗ୍ ସାଙ୍ଗକୁ ଲୋକ ସଙ୍ଗୀତ ଓ ନୃତ୍ୟ ନାଟକରେ ଭରା ଲୋକକଥା, ଲୋକପର୍ବର ଅପୂର୍ବ ସମନ୍ୱୟ । ଶେଷଦିନ ସଂକୀର୍ତ୍ତନ, ଘଣ୍ଟବାଦ୍ୟ ଓ ହୁଳହୁଳି ସହ ଶୋଭାଯାତ୍ରା ବାହାରିଥାଏ । ଗାଁର ସ୍ତ୍ରୀ ଲୋକମାନେ ମୁଣ୍ଡରେ ବାଉଁଶକୁଲା ଓ ତାଟରେ ପୂଜା ସାମଗ୍ରୀମାନ ଧରି ଗାଁ ମୁଣ୍ଡର ପୋଖରୀ କିମ୍ବା ନଦୀରେ ବିସର୍ଜନ କରନ୍ତି । ଚିତ୍ରିତ କାନ୍ଥରେ ନୂଆ ବାଲିମାଟି ଚୂନ ଲିପା ହେଇ ଉତ୍ସବ ସାଙ୍ଗ ହୁଏ । ମାଷ୍ଟ୍ରଙ୍କ ଆଖିରେ ଦେଖିଚି ମୋ ଗାଁ ଗଣ୍ଡାର ଅପାଠୁଆ ଗାଉଁଲି ଲୋକଙ୍କୁ, ଯେଉଁମାନେ, ନିଜ ଗାଁରେ, ନିଜ ସାହିରେ, ନିଜ ଘରେ ଓଡ଼ିଆ ସାଂସ୍କୃତିକ ପରମ୍ପରାକୁ ମଜାମଜି କରି ଆଜି ବି ବଞ୍ଚେଇ ରଖିଛନ୍ତି, ଗର୍ବରେ ଗୌରବରେ । ୧୯୯୪ ମସିହାରେ ଆମ ଡ୍ରଇଁମାଷ୍ଟ୍ରେ ଓ ଫିସର୍‌ଙ୍କ ଲିଖିତ ସେଇ 'ଓଷାକୋଠି' ବହିଟି ଇନ୍ଦିରା ଗାନ୍ଧି ନ୍ୟାସନାଲ୍ ସେଣ୍ଟର୍ ଫର୍ ଦ ଆର୍ଟ୍‌ସ୍ ନୂଆଦିଲ୍ଲୀ ଓ ରିଟ୍‌ବର୍ଗ୍ ମ୍ୟୁଜିୟମ୍ ଜୁରିକ୍‌ର ଯୁଗ୍ମସହାୟତାରେ ପ୍ରକାଶ ପାଇଛି । ମନଲୋଭା ଓ ଉପାଦେୟ ସଚିତ୍ର ସଂକଳନ । ମୋ ଗାଁର, ପାଖ ଗାଁର, ମୋ ଅଞ୍ଚଳର ଭାଇନା, ମାମୁଁ ମଉସା, ପିଉସାମାନଙ୍କ ଫଟୋ, ଆମ ସ୍କୁଲର ଜଗୁଆଳୀ ଚାଙ୍ଗୁବାଦ୍ୟ ବାଲା ଉତ୍ସବ ନାହାକର ଫଟୋ ସେଥିରେ ଛପା ଯାଇଛି । ଚାଙ୍ଗୁ ବାଦ୍ୟ ଓ ଦଣ୍ଡନାଟ ପାଟ ଢୋଲର ନାଁ କରା ଗାହାକ ସିଏ ଯିଏ ଆଲ୍ଲା ଗାୟେଣୀଙ୍କୁ ତା ଚାଙ୍ଗୁର ଗମ୍ଭୀର ତାଳରେ ଝାଳନାଳ କରିଦେଇପାରୁଥିଲା । ପୁରୁଷୋତ୍ତମପୁର କୁମ୍ଭାରୀ ଗାଁର ଚିତ୍ରକର ହରିପଣ୍ଡା ଯାହାଙ୍କ ହାତର ଚମତ୍କାରିତାରେ ଶିବ ତାଣ୍ଡବ କରୁଥିଲେ, ତଅପୋଇ ଜୀବନ ପାଉଥିଲା, ଉଭା ହେଇପଡୁଥିଲେ ମା କାଳୀ, ମା ମଙ୍ଗଳା, ଆଉ ତାଙ୍କ ସାତଭଉଣୀ – ଭାଲିଆଖାଇ, ଆଖୁଖାଇ, ପ୍ରଭୃତି ଆଉ ସବୁ ଚଣ୍ଡୀଚାମୁଣ୍ଡୀମାନେ । ଆମର ସେ ଦିନର ଗାଁ ଦାଣ୍ଡ, ମଠ, ମନ୍ଦିର ସବୁ ଜୀବନ୍ତ ହେଇଯାଇଚି । ଏବେ ଆଉ ଆମ ଗାଁ ତଥା ପଡ଼ିଶା ଗାଁରେ ନଡ଼ା କିମ୍ବା ତାମ୍ଭୁଲୀ ଚାଳରେ କଖାରୁ ଫୁଲ ଫୁଟୁନି । ସବୁ ଚାଳ ସିମେଣ୍ଟ ଛାତରେ ରୂପାନ୍ତରିତ ହେଇଯାଇଚି । ମାଷ୍ଟ୍ରଙ୍କ ଉଦ୍ୟମରେ ଖାଲି କୋଠିଶାଳ ପର୍ବ କାହିଁକି, ବୁଗୁଡ଼ା ବିରଞ୍ଚି ନାରାୟଣ ମନ୍ଦିରର ଭିତ୍ତି ଚିତ୍ର, ଧରାକୋଟ ଜଗନ୍ନାଥ ମନ୍ଦିର ତଥା ଉଆସ ଭିତରର ଚିତ୍ର ପ୍ରଭୃତିକୁ ନେଇ ମୋଟା ମୋଟା ସଚିତ୍ର ପୋଥିରେ ସଂଗୃହୀତ ହେଇ ରହିଯାଇଚି ଭବିଷ୍ୟତ ବଂଶଧରଙ୍କ ପାଇଁ ।

**କେନ୍ଦ୍ର ଲଳିତ କଳା ଏକାଡ଼େମୀର ସାଧାରଣ ପରିଷଦକୁ ୧୯୮୯ରେ ମାଷ୍ଟ୍ରେ ନିର୍ବାଚିତ ହେଲେ ଓ ସେଇବର୍ଷ କାର୍ଯ୍ୟନିର୍ବାହୀ ପରିଷଦକୁ ମଧ୍ୟ ମନୋନୀତ ହେଲେ । ଆମେ ଓଡ଼ିଆଙ୍କ ଭାଗ୍ୟାକାଶରେ ସତେ ଯେମିତି ନୂତନ ସୂର୍ଯ୍ୟୋଦୟ ଘଟିଲା । ତାଙ୍କରି ଉଦ୍ୟମରେ ବିଭିନ୍ନ ଜାତୀୟ ଅନ୍ତର୍ଜାତୀୟ ଉତ୍ସବମାନଙ୍କରେ ଓଡ଼ିଆଙ୍କୁ ସୁଯୋଗ ଦେବା ପାଇଁ ସେ ରୀତିମତ**

Digitized by srujanika@gmail.com

ଉଦ୍ୟମ ଜାରିରଖିଲେ। ସମ୍ମାନଜନକ ଆନ୍ତର୍ଜାତିକ ଟ୍ରିନାଲେ ତଥା ଆନ୍ତର୍ଜାତିକ ପ୍ରଦର୍ଶନୀମାନଙ୍କରେ ଆମର ଶିଳ୍ପୀମାନେ ଭାଗନେବାର ସୁଯୋଗ ପାଇପାରିଲେ । ପୂର୍ବରୁ କହିଛି ଓଡ଼ିଶାରୁ ଆମେ ପାଞ୍ଚଛଅ ଜଣ କେବଳ ଜାତୀୟ ପ୍ରଦର୍ଶନୀମାନଙ୍କରେ ଅଂଶଗ୍ରହଣ କରିଆସିଥିଲୁ। ତାଙ୍କରି ଉଦ୍ୟମରେ ଆମର ୪୦ ଜଣଙ୍କ କଳାକୃତି ଜାତୀୟ ପ୍ରଦର୍ଶନୀରେ ବିଭିନ୍ନ ବର୍ଷମାନଙ୍କରେ ପ୍ରଦର୍ଶିତ ହେଲା। ଯେଉଁ ଜାତୀୟ ପୁରସ୍କାର ଆମ ପାଇଁ ଦିନେ ଆକାଶ କୁସୁମ ଥିଲା ତାହା ସେଇବର୍ଷ ଆମ ହାତରେ ଧରାଦେଲା। ଏବେ ଆମେ ଚାରିଜଣ ଜାତୀୟ ପୁରସ୍କାର ପାଇବା ସହ ଚାରି ଜଣ ଜାତୀୟ ପ୍ରଦର୍ଶନୀରେ Honourable Mention ପାଇବାର ଗୌରବ ପାଇଛୁ। ଆମର ଯୁବଶିଳ୍ପୀ ଗବେଷଣା ବୃତ୍ତି ପାଇପାରିଲେ ଆମ ଓଡ଼ିଆଙ୍କ ପାଇଁ ଦିଲ୍ଲୀ ଦରବାର ଆଉ ଅପହଞ୍ଚ ହେଇରହିଲାନି । ଶିଳ୍ପୀଗୁରୁ ଶରତଚନ୍ଦ୍ର ଦେବଙ୍କ କଳାକୃତି ଓ ଜୀବନୀର ସଚିତ୍ର ପୁସ୍ତିକା ତାଙ୍କ ସମ୍ପାଦନାରେ ପ୍ରକାଶିତ ହେଲା। ଜଣେ ଓଡ଼ିଆ ହିସାବରେ ଏହାଥିଲା ଏକାଡ଼େମୀର ପ୍ରଥମ ମନୋଗ୍ରାଫ୍। ଶିଳ୍ପୀ ବିଦ୍ୟାଧର ବର୍ମାଙ୍କ ପ୍ରସାଧନ ଓ ଶିଳ୍ପୀ ଅଜିତ କେଶରୀ ରାୟଙ୍କ ବାହାଘର ଚିତ୍ରର କଲର ପ୍ରିଣ୍ଟ୍ ପ୍ରକାଶିତ ହେଲା। ବହୁ ଜାତୀୟ ଓ ଆନ୍ତର୍ଜାତିକ ପ୍ରଦର୍ଶନୀ ଓ କାର୍ଯ୍ୟକ୍ରମ ଭୁବନେଶ୍ୱରେ ଅନୁଷ୍ଠିତ ହେଲା। ଆନ୍ତର୍ଜାତୀୟ ଗ୍ରାଫିକ୍ କର୍ମଶାଳା, **Veteran Artists of India** ପ୍ରଦର୍ଶନୀ, **Primitive Vigour** ଜାତୀୟ ପ୍ରଦର୍ଶନୀ ଓ ଆଲୋଚନା ଚକ୍ର ଲଳିତଗିରି ଠାରେ ଜାତୀୟ ଭାସ୍କର୍ଯ୍ୟ କର୍ମଶାଳା ତଥା ନାଲ୍‌କୋର ମିଳିତ ସହୟତାରେ ଦାମନଯୋଡ଼ି ଠାରେ ଜାତୀୟ ଫଟୋଗ୍ରାଫିକ୍ କର୍ମଶାଳା ପ୍ରଭୃତି ଅନୁଷ୍ଠିତ ହେଇପାରିଲା। ୧୯୯୪ ମସିହାରେ ସେ ଜାତୀୟ ଏକାଡ଼େମୀର ସଚିବ ନିଯୁକ୍ତି ପାଇଲେ। ସୁତରାଂ ଦିଲ୍ଲୀ ଆମ ଯୁବ ପିଢ଼ି ପାଇଁ ଏକ ନିରାପଦ କର୍ମସ୍ଥଳୀ ହେଲା। ତାଙ୍କ ବସାଘର ଓଡ଼ିଆ ଶିଳ୍ପୀ ଓ ଅଣଶିଳ୍ପୀମାନଙ୍କ ପେଣ୍ଠସ୍ଥଳୀରେ ପରିଣତ ହେଲା। ଧୀରେ ଧୀରେ ପତିତପାବନ ମେସ୍ ସମସ୍ତଙ୍କ ପ୍ରିୟ ସ୍ଥଳୀ ହୋଇଗଲା ଓ ଜାତୀୟ ସ୍ତରରେ ଆଜି ଆମେ ଏକ ସତନ୍ତ୍ର ମର୍ଯ୍ୟାଦାବନ୍ତ ସ୍ଥାନ ହାସଲ କରିପାରିଲୁ।

ଛଅ ଜଣ ସମସାମୟିକ ଓଡ଼ିଆ ଚିତ୍ରକରଙ୍କୁ ନେଇ ସେ ଏକ ସୁନ୍ଦର ଗ୍ରନ୍ଥର ପରିକଳ୍ପନା କଲେ, ଯାହା ୧୯୯୭ ମସିହାରେ **Oddiyan** ନାମରେ ପ୍ରକାଶିତ ହେଲା। ଦିଲ୍ଲୀର ହରମାନ୍ ପବ୍ଲିସିଙ୍ଗ୍ ହାଉସ୍ ଓ ୱାର୍କିଙ୍ଗ୍ ଆର୍ଟିଷ୍ଟ ଆସୋସିଏସନ୍ ଏହା ପ୍ରକାଶ କରିଛନ୍ତି । ୨୦୦୧ରେ ଦୁଇବର୍ଷର ଅକ୍ଳାନ୍ତ ପରିଶ୍ରମରେ ସେ ପୁଣି ଓଡ଼ିଆ ସାଂପ୍ରତିକ ଶିଳ୍ପକଳା ଓ ଶିଳ୍ପୀଙ୍କ ଉପରେ ଆଉ ଗୋଟେ ବଡ଼ ଗ୍ରନ୍ଥର ବ୍ୟବସ୍ଥା କଲେ। ଯାହା **Let a Thousand Flowers Bloom** ନାମରେ ଦିଲ୍ଲୀର ଆର୍ୟନ୍ ପବ୍ଲିସରସ୍ ଓ ୱାର୍କିଙ୍ଗ୍ ଆର୍ଟିଷ୍ଟ୍ ଆସୋସିଏସନ୍ ପ୍ରକାଶ କରିଛି। ଏଥିରେ ଓଡ଼ିଶାର ସାମ୍ପ୍ରତିକ କଳାର ଭିତ୍ତିଭୂମି ଓ କ୍ରମବିକାଶ ସହ ସମସ୍ତ ଘଟଣାବଳୀ ସ୍ଥାନିତ ହୋଇଛି। ଦୁଇଶହ ଚବିଶ ପୃଷ୍ଠାର ଏ ଗ୍ରନ୍ଥରେ ୧୩୭ଟି ରଙ୍ଗିନ୍ ଓ ୨୩୦ଟି କଳାଧଳା ଚିତ୍ର ସ୍ଥାନ ପାଇଛି। ଏହା ସାଂପ୍ରତିକ ଚିତ୍ରକଳାର ଏକ ବିରଳ ଗ୍ରନ୍ଥ।

Digitized by srujanika@gmail.com

ବଳଦେବ ମହାରଥୀ

## ଅଳଙ୍କରଣ ସହବାସ

ଅଳଙ୍କରଣ ଏକ ଶୈଳ୍ପିକ ପ୍ରକିୟା । କେଉଁ ଆଦିମ କାଳରୁ ମଣିଷ ନିଜ ଅଙ୍ଗସୌଷ୍ଟବର ସୌନ୍ଦର୍ଯ୍ୟ ବୃଦ୍ଧିପାଇଁ ରୂପ ବିଳାସକୁ ଅଳଙ୍କରଣର ଏକ ଅପରିହାର୍ଯ୍ୟ ଅଙ୍ଗଭାବେ ଗ୍ରହଣ କରିଆସିଛି । କି ପୁରୁଷ, କି ନାରୀ କିଏ ହେଲେ ଅଳଙ୍କରଣର ରୂପ ଦୁନିଆରୁ ଅଲଗା ନୁହଁନ୍ତି । ଆଦିମ ମଣିଷ ଯେଉଁ ଦିନ ଝରଣା ଜଳରେ ନିଜ ମୁହଁ ପଖାଳୁ ପଖାଳୁ ନିଜ ଦେହ ଓ ମନକୁ ଆବିଷ୍କାର କଲା, ସେବେଠାରୁ ନିଜ ଚେତନ ଓ ଅବଚେତନ ଭିତରେ ନିଜକୁ ସଜେଇ ହେବାର ଆକାଂକ୍ଷା ହିଁ ଅଳଙ୍କରଣ ସହବାସ ।

ଏହି ବାସନା ଧୀରେ ଧୀରେ ମଣିଷର ପ୍ରବୃତ୍ତିଗତ ହେଇ ପଡ଼ିଲା । ଆଉ ନିଜ ଦେହରୁ ଉତୁରି ପଡ଼ି ନିଜ ପରିବେଶ ଭିତରକୁ ମଧ୍ୟ ବ୍ୟାପିଗଲା । ଅଳଙ୍କରଣର ଶୈଳ୍ପିକ ବୈଭବ ନିଜର ସହଜସାଧ୍ୟ ପରିଧି ଭିତରେ ନ ରହି ଏକ ସ୍ୱତନ୍ତ୍ର କୌଶଳ ଦାବୀ କଲା । ଏଇଥି ପାଇଁ ଦରକାର ପଡ଼ିଲେ, କୁମ୍ଭାର, କମାର, ବଢ଼େଇ, କାରିଗର । ଏମାନଙ୍କ ଅଙ୍ଗକାରିକ ସର୍ଜନାକୁ କଳା ଶ୍ରେଣୀଭୁକ୍ତ କରାଗଲା । ପୁଷ୍ପଗୁନ୍ଥନ ଠାରୁ ଆରମ୍ଭକରି ରତିବିଳାସ ପର୍ଯ୍ୟନ୍ତ ସବୁ ଅଳଙ୍କରଣ କଳା ଶ୍ରେଣୀଭୁକ୍ତ ହେଲା । ଶେଷରେ କଳା ହୋଇଗଲା ଚଉଷଠି ପ୍ରକାର- ଜଣେ ଚିତ୍ରଶିଳ୍ପୀ କେବଳ ସର୍ଜନା କରେନି, ସେ କଳାସହିତ (ସହ)ବାସ କରେ । ପ୍ରତ୍ୟେକ ସୃଜନ କର୍ମ ସହବାସ ପ୍ରକ୍ରିୟା ଉପରେ ଆଧାରିତ, ଏଥିରୁ ଅଳଙ୍କରଣ କର୍ମ ବାଦ୍‌ଯାଆନ୍ତା କିପରି ? ଅଳଙ୍କରଣର ଉତ୍ସ ଓ ତା' ସହିତ ମୋର ସମ୍ପୃକ୍ତି ବିଷୟ ଭାବୁଭାବୁ ମୋ ଶିଳ୍ପୀ ଜୀବନର ଆଦ୍ୟସ୍ମୃତି ମନରେ ଉଙ୍କି ମାରୁଛି । ସେହି ଦିନମାନଙ୍କର ଆସ୍ପୃହା, ଉଚ୍ଚାଟନ ଏବେ ବି ମୋ ମନ ଭିତରେ ସଜୀବ ଅଛି । ମୋ ଶିଳ୍ପୀଜୀବନ ସେ ସବୁ ଅନୁଭୂତିରେ ରସାଣିତ ହୋଇଯାଇଛି । ସମୟ ଅତିକ୍ରମ ହେବା ସାଙ୍ଗରେ କଳାର ବିଭିନ୍ନ ବିଭାଗ ସେମାନଙ୍କ ସ୍ୱରୂପ ବିସ୍ତାରିତ କରି ଅଲଗା ଅଲଗା ଫାଙ୍କାରେ ପ୍ରକାଶିତ ହେଇଯାଇଛନ୍ତି । ଚିତ୍ର, ଭାସ୍କର୍ଯ୍ୟ, କାରୁଶିଳ୍ପ, ଅଳଙ୍କରଣ ସମଭାବରେ ମୋତେ ଆକର୍ଷିତ କରିଛନ୍ତି । ମୋର କଳାସାଧନାରେ ସେମାନେ କେବଳ ସୃଜନ ପ୍ରେରଣା ଯୋଗାଇ ଦେଇନାହାନ୍ତି ବରଂ ଜୀବନ ନିର୍ବାହ ପାଇଁ ଶକ୍ତି ସାମର୍ଥ୍ୟ ମଧ୍ୟ ଦେଇ ଜୀବନକୁ ସରସ ଓ ସୁନ୍ଦର କରିଦେଇଛନ୍ତି । ଏଣୁ ମୁଁ ଅଳଙ୍କରଣ ସହିତ ବାସକରେ ଓ ସହବାସ କହିବାରେ ସୃଜନ ପ୍ରକ୍ରିୟାର ଏକ ନିଗୂଢ଼ ରହସ୍ୟକୁ ହିଁ ପ୍ରକାଶ କରିବାକୁ ଚେଷ୍ଟା କରୁଛି କହିବାକୁ ହେବ ।

୨୭ ବର୍ଷ ପୂର୍ବେ ଖଲ୍ଲିକୋଟ ସରକାରୀ ମହାବିଦ୍ୟାଳୟରୁ କଳା ଶିକ୍ଷା ଶେଷ କରି ଫେରିବା ପରଠୁ ଆଜି ପର୍ଯ୍ୟନ୍ତ ଜୀବନର ବହୁ ଅନୁଭବ ବିତିଗଲାଣି । ପରସ୍ତ ପରସ୍ତ ହୋଇ ଲେସି ହୋଇଯାଇଥିବା ସେ କଥା ସବୁକୁ ଗୋଟି ଗୋଟି କରି ଭାବି ବସିଲେ, ଭାବି ହୁଏନି ଏବେ ଆଉ । ଅନେକ ବିସ୍ମୃତ, ଅନେକ ପୁଣି ଜୀବିତ । ଆହୁରି ସତ ଯେ ମନେ ରଖିଥିବା ଅନେକ କଥା ଏବେବି ମୋ ପାଇଁ ଶ୍ରେୟ । ରବି ସାର୍‌ଙ୍କ ପାଖରେ ବସି ୱାସ୍ ପେଣ୍ଟିଙ୍ଗ୍ କରିବାଠୁ ଶତପଥୀ ସାର୍‌ଙ୍କ ସଙ୍ଗେ ଲୁଙ୍ଗି କଛାମାରି ତା' ଉପରେ ପ୍ୟାଣ୍ଟ୍ ପିନ୍ଧି କଲେଜ ପଛ ପାହାଡ଼କୁ କୁଟୁରା ଶୀକାର କରିବାକୁ ଗଲା ପର୍ଯ୍ୟନ୍ତ ସବୁକଥା ଚଳଚ୍ଚିତ୍ର ପରି ଏବେବି ଆତଯାତ ହୁଅନ୍ତି ମନ ଭିତରେ । ବେହେରା ସାର୍‌ଙ୍କର ରାତିଅଧିଆ ପାଟିତୁଣ୍ଡରେ ନିଦ ଭାଙ୍ଗିଗଲେ ପାଣିଟାଙ୍କି ପଟ ପାହାଡ଼ରୁ କୁଟୁରା ଡାକ ଶୁଭେ । ପରିସ୍ଥିତି ଭୌତିକ ମନେହୁଏ ଅଧିକ । ବେହେରା ସାର୍‌କୁ ପୁଣି ସକାଳୁ ଦେଖିଲେ ରାତିକଥାକୁ ସେଇ ବ୍ୟକ୍ତି ସଙ୍ଗେ ମିଶେଇ ଭାବିଲେ କେମିତି ଅଖାଡୁଆ ଲାଗେ । ଧୋତି କୁର୍ତ୍ତା ପିନ୍ଧା ସାଢେ ଛଅଫୁଟିଆ ମଣିଷଟିଏ । ଘୁହଁଦେଲେ ହସିଦିଅନ୍ତି, ଅନ୍ତରଙ୍ଗ ହସ, ନମସ୍କାର କଲେ କେମିତି ଇତସ୍ତତଃ ହୋଇପଡ଼ନ୍ତି । ତାଙ୍କ ତିଆରି ଛବି ବାକ୍ସ ଅଛେ ବହୁତ ସମସ୍ତଙ୍କ ପାଖେ ଥିବ ଆଜି ପର୍ଯ୍ୟନ୍ତ । ଛବିର ଫ୍ରେମ କରନ୍ତି ଏବଂ ପ୍ରାୟ ଦିନତମାମ ତାଙ୍କ ଷ୍ଟୁଡ଼ିଓରେ ଥାଆନ୍ତି । ସନ୍ଧ୍ୟା ପରେ ପରେ କେମିତି ବେଖାପିଆ ଧରେ ତାଙ୍କ

Digitized by srujanika@gmail.com

ମନ, ଏକଦମ୍ ତରଳି ଥାଆନ୍ତି, ମିଶିଯାନ୍ତି ମହାବିଦ୍ୟାଳୟର ରାଜକୀୟ ଅନ୍ଧକାର ସାଙ୍ଗରେ ଓ ରାତିଅଧକୁ ପୁଣି ତାଙ୍କ ଚିତ୍କାର, ବିଳାପ ଓ ଯାବତୀୟ ଖୋଲାଖୋଲି କଥା ରାଜକୀୟତାକୁ ମୁହୂର୍ତ୍ତକ ପାଇଁ ହଲଚଲ କରିଦିଏ ।

ଖଲିକୋଟରେ ରୋଷେଇବାସ ସାରି ଖାଇପିଇ କ୍ଲାସ୍‌କୁ ଗଲେ ଦିନ ସୁରୁ ହୁଏ । ଓପରଓଳି ବଜାରରେ ବୁଲାବୁଲି, ସ୍କେଚ୍ କରିବା, ବଣ୍ଡା, ଉଲିଗାରୁ ସାଙ୍ଗଙ୍କୁ ଏତେ ବଡ଼ବଡ଼ ଲଙ୍କା ଚପ୍ ଖାଇବାର ନିଆରା ନିଶା । ବେଳେ ବେଳେ ଚିଲିକା ନହେଲେ ନିର୍ମଳଝର । ସବୁଠି କେହି ନଥିଲା ପରି ଲାଗନ୍ତି । ଏଠୁ ଉତ୍ସାହଟା ଜଲଦି ସରିଯାଏ । ମନ ହଠାତ୍ ମରିଯାଏ । କେମିତି ହେଇ ସବୁ ସରିଗଲା ପରି ବୋଧ ହୁଏ । ସନ୍ଧ୍ୟାରେ କବିତା ଆସର, ଗୁଲିଖଟି, ଘରକଥା, ଭବିଷ୍ୟତ କଥା, ଆସନ୍ତାକାଲିର କଥା, ଏପରିକି ଖରାଛୁଟି ପର୍ଯ୍ୟନ୍ତ ମନେ ମନେ କେତେକଥା ଭାବିବାକୁ ଭଲ ଲାଗେ । ବେଶୀ ଅନ୍ଧାରିଆ ହେଲେ ଛବି କରିବାକୁ ବସେ ନିଦ ଆସିଲା ପର୍ଯ୍ୟନ୍ତ ହଷ୍ଟେଲ୍‌ରେ । କିନ୍ତୁ ପ୍ରିଫେଟ୍ ରୁମରେ ମୁଁ ଏକା ରହେ ଏବଂ ଏକାଏକା ପରିବେଶ ବେଶୀ ଭୌତିକ ଲାଗେ । କବାଟ ଫାଙ୍କରେ ବାହାରର ଅନ୍ଧାର ବେଶ୍ ଆଇଭରି ଲାଗେ । ନିଜର ନିଃଶ୍ୱାସ ବି ଭୌତିକ ଲାଗେ । ସେତେବେଳର ବୟସ ଏତେ ରଙ୍ଗିନ ହେଇ ନଥିଲା, ମନ ତଥାପି ମିଳନର ସାଦଗ୍ରଖି ନଥିଲା ତେଣୁ ଏକା ଏକା ସତରେ ନିଛାଟିଆ ଲାଗୁଥାଏ ।

ପ୍ରଥମ ଓ ଦ୍ୱିତୀୟ ବର୍ଷ ରାଜାଙ୍କ ଘୋଡ଼ାଶାଳ ହଷ୍ଟେଲ୍‌ରେ ଓ ବାକି ଦରବାର ହଲ୍ ପାଖ ହଷ୍ଟେଲ୍‌ରେ । ବିରାଟ ଚଉଖୁଣ୍ଟିଆ ପଥର ଅଗଣାର କଣିକିଆ ଘରଟା ମୋର । ଭାତ ଡାଲମା ପ୍ରାୟ ସବୁବେଳେ । ବେଳେବେଳେ ଚିଲିକା ବଣ୍ଡିଆ ନହେଲେ ଚୁଙ୍ଗୁଡ଼ି ଝୋଳ ।

ମନେଅଛି - ଥରେ ମୋର ଜଣେ ସାଙ୍ଗ କୃଷ୍ଣ ମୃଦୁଳିକୁ ଶାଢ଼ି ପିନ୍ଧାଇ ପ୍ରିନ୍‌ସ୍‌ପାଲ୍‌ଙ୍କ (ଅଜିତ ସାର୍) କ୍ୱାଟର ପାଖରେ ପହଞ୍ଚ କହିଲି ବୋଉ ଆସିଛି । ଅଜିତ ସାର୍ ନମସ୍କାର କରି ବୋଉକୁ ପାଛୋଟି ନେବେ ବୋଲି ଶିଡ଼ି ଓହ୍ଲେଇଲା ବେଳେ ଏପ୍ରିଲ ମାସିଆ ହସ ହସି ସାର୍‌ଙ୍କୁ ଏପ୍ରିଲ ଫୁଲ୍ କଲାବେଳେ ତାଙ୍କ ମୁହଁର ସ୍ମିତହାସ୍ୟ ଏବେ ବି ମନେ ଅଛି । ସେଥିରେ ଶିକ୍ଷକ ସୁଲଭ ଆକଟ ନଥିଲା କି ମାଷ୍ଟ୍ରିଆ ଅହଂକାର ନଥିଲା । ଏକ ନିର୍ଲିପ୍ତ ଆତ୍ମତୃପ୍ତି ଥିଲା ସେ ହସରେ । ପରିସ୍ଥିତିରେ ଆମୋଦିତ ତାଙ୍କ ନିର୍ଘାତ ସଂଭ୍ରାନ୍ତିର ପରିଚ୍ଛନ୍ନତା ଏତେ ଅନ୍ତରଙ୍ଗ ଆଉ ସ୍ପଷ୍ଟ ଥିଲା ଯେ ଏବେ ଅଧ୍ୟାପନା କଲାବେଳେ ସେମିତି ଅନୁଭବଟିଏ ଆଜିଯାଏ ଦୁର୍ଲ୍ଲଭ ମୋ ପାଇଁ ।

ଖରାଦିନିଆ ରାତିରେ ଆମେ ସମସ୍ତେ ପ୍ରାୟ ଦରବାର ହଲ୍‌ପଟ ବାରଣ୍ଡାରେ ଶୋଉ । ଇଟାଲିଆନ୍ ଟାଇଲ୍ ବିଛା ଚଟାଣକୁ ଲାଗି ଡେକୋରେଟିଭ୍ ଲୁହାଗ୍ରୀଲ୍‌ର ବାଡ଼ । ମନ ଛୁଇଁ ଗଲାପରି ପବନରେ ଭାସିଆସେ ସାଙ୍ଗ ଭୋଳାନାଥର ବଂଶୀର ରିଆଜ୍ । ଗୋଟାଏ ରାଜକୀୟ ପରିପାଟୀରେ ଭରିଥାଏ ମନ । ଅନ୍ଧାରରେ ରାଜପ୍ରାସାଦର ଶିଉଳିଲଗା କାନ୍ଥର ସିଲଉଟ୍ ବିରାଟ ଏକ ଷ୍ଟାଚ୍ୟୁର ପେଡ଼େଷ୍ଟାଲ୍ ପରି ଲାଗୁଥାଏ । ଉପରେ ଆକାଶ କାନ୍‌ଭାସ୍‌ରେ ତାରାର ବୁଟିକରା ପସରା । ସେତେବେଳେ ଶେଯରେ ଗଡ଼ି ପଡ଼ିଲେ କାହିଁକି କେମିତି ଆତୁର ଲାଗେ ଭିତରଟା, ଭୋଳାନାଥ କେଉଁ ରାଗରେ ବଂଶୀ ବଜାଉଥାଉ ସେ ଆଡ଼କୁ ଆଉ ନିଘା ରହେନାହିଁ । ଗୋଲେଇ ଶିଡ଼ିରେ କିଏ ଜଣେ ଉଠିଗଲା ପରି ଲାଗେ କେହି ନଥିଲେ ବି କିଏ ଥିବା ପରି ଲାଗେ ।

ସତରେ, ପାଠପଢ଼ା ସମୟ ସାଙ୍ଗଙ୍କୁ ସେ ବୟସର ଗୋଟାଏ ନିଆରା ରଙ୍ଗ । ଅନ୍ୟ ଦିନମାନଙ୍କରେ ସେ ସବୁ ଅନୁଭବ ମହାର୍ଘ ହୋଇଥାଏ । କେବେ ବି ଫେରି ଆସେନି ସେପରି ସମୟ ଏବଂ ସେ ବୟସର ରୂପକଛ । ଅମାବାସ୍ୟା-ପୂର୍ଣ୍ଣିମା ପରି ଭଲ ଆଉ ଭେଲର ବିଳାସ ଲାଗି ରହିଥାଏ ଏଇ ପୃଥିବୀରେ । ଅନ୍ଧାରକୁ ଏବଂ ଆଲୋକକୁ ସମାନ ଅନୁପାତରେ ଭଲ ପାଇବାର ବ୍ୟକ୍ତି । ତା'ରି ମାୟା-ପରିବେଶ ଏତେ ବ୍ୟାପକ ଓ ପରିବ୍ୟାପ୍ତ ଯେ କୌଣସି ଏକ ନିର୍ଦ୍ଦିଷ୍ଟ ରୂପରେ ମଣିଷ ତା'ର

Digitized by srujanika@gmail.com

ଚିରନ୍ତନ ସତ୍ତାକୁ ଖୋଜି ପାଏ ନାହିଁ । ଏ ପୃଥିବୀରେ ପ୍ରତ୍ୟେକ ବ୍ୟକ୍ତି ତା'ର ନିଜର ପୃଥିବୀ ଗଢ଼ିବାରେ ବ୍ୟସ୍ତ । ଏକାନ୍ତ ନିଜର ତା'ର ପ୍ରଜ୍ଞା, ବିଶ୍ୱାସ, ନୈତିକତା ଆଉ ସ୍ୱପ୍ନ । ଏଥିରେ ଅନ୍ୟ ବିଶ୍ୱର ସଂପର୍କ ନଥାଏ । ପାଠ ପଢ଼ା ବୟସର ବିଶ୍ୱରୂପ ତା' ପରର ପୃଥିବୀ ସଙ୍ଗେ ସଂପର୍କ ରକ୍ଷାକରିବାକୁ ବାଧ ହୁଏନା, କକ୍ଷଚ୍ୟୁତ ମଧ ହୁଏନା । ତେଣୁ ଏଇମିତି ଏକ ନାତିଦୀର୍ଘ ଜୀବନର ଯାତ୍ରା । ଏବେ ଯେଉଁ ଗୁଣାତ୍ମକ ମାନର କଥା କୁହାଯାଉଛି, ସେହିପରି ବୋଧେ ବ୍ୟକ୍ତିର ଜୀବନ ଦର୍ଶନ ଏବଂ ସିଦ୍ଧାନ୍ତ ନେବାର ମୁହୂର୍ତ୍ତ । ଗୋଟିଏ ମୁହୂର୍ତ୍ତରେ ହୀରୋସୀମା ଧ୍ୱଂସ ହୁଏ, ଜୀବନ ରହିଥାଏ ଦେହରେ, ପୁଣି ଦେହୋତ୍ତର ଜୀବନଟି ସମସ୍ତ ପ୍ରକାର ରସାନୁଭୂତିକୁ ଜାବୁଡ଼ି ଧରିଥାଏ । ବିଭିନ୍ନ ସମୟର ମୁହୂର୍ତ୍ତକର ନିଷ୍ପତ୍ତିରେ ଇତିହାସ ତିଆରି ହୁଏ । ଇତିହାସ ନିକଟରେ କୌଣସି ନୈତିକ ଗୁଣ ନାହିଁ । କିନ୍ତୁ ବହୁ ଗୁଣରେ ଅବଗୁଣରେ ଗୁନ୍ଥା ଇତିହାସ । ଇତିହାସ ଗୁଣ ନିର୍ଲିପ୍ତ । ବଞ୍ଚିଥିବା ପର୍ଯ୍ୟନ୍ତ ବ୍ୟକ୍ତି କ'ଣ କରେ, କ'ଣ ପାଇଁ କରେ, କାହା ପାଇଁ କରେ ଓ କାହିଁକି କରେ ? ସବୁ କର୍ମ କଣ କର୍ମଯୋଗ ସଂକଳିତ ? ସବୁ କରଣୀୟ କ'ଣ କାର୍ଯ୍ୟ ? ଏପରି ଅନେକ କଥା ଭାବିବା ଏକ ବ୍ୟକ୍ତିକୈନ୍ଦ୍ରିକ ମାନସିକ ଅଭାବବୋଧ ଏବଂ ଯାହା କରାଯାଇଥାଏ ସେହିପରି ଏକ ଇତିହାସ ଲେଖି ହେଇଯାଇଥାଏ ପ୍ରକାରାନ୍ତରେ । ଇତିହାସ ତିଆରି କରିବା ବ୍ୟକ୍ତିଠୁଁ ଇତିହାସ ଲେଖିବା ବ୍ୟକ୍ତି ଅଧିକ ବଳବାନ ଏବଂ ଯୁକ୍ତିଯୁକ୍ତ ବୋଲି ପ୍ରମାଣିତ ହୁଏ ଭବିଷ୍ୟତରେ କିନ୍ତୁ ଇତିହାସର ଡହଡ଼ହ ସତକୁ ସମୟ ଢାଙ୍କି ପାରେନା, ବେଳ ପାଇଲେ ସତ୍ୟ ଉକୁଟି ଉଠେ ।

ଅତୀତକୁ ଏବେ ବର୍ତ୍ତମାନରେ ସାଉଁଟିଲା ବେଳେ କେତେ କ'ଣ ଆସିଥାଏ ଝୋଲି ଭିତରକୁ କ'ଣ କେତେ ମଧ ରହିଥାଆନ୍ତି । ଅତୀତକୁ ଟିକିନିଖି କରି ନିଜର ଭାଷାରେ କହିବା ଏତେ ସହଜ ନୁହେଁ । ଅର୍ଦ୍ଧସତ୍ୟ ।

ତଥାପି ମନେ ପଡ଼େ ଯେତେବେଳେ ଶ୍ରୀଯୁକ୍ତ ଅନନ୍ତ ପଣ୍ଡା ମୋ ପାଇଁ ଡ୍ରଇଁମାଷ୍ଟର ଘକିରିଟିର ନିଯୁକ୍ତିପତ୍ର ଧରି ମୋ ଘରକୁ ଆସିଥିଲେ ଏବଂ ଜୀବନରେ ଡ୍ରଇଁମାଷ୍ଟର ହେବିନି ବୋଲି ଏକ ବିରାଟ ନିଷ୍ପତ୍ତିକୁ କୁଣ୍ଡାଇ ଧରିଥିଲି ଏବଂ ସାର୍‌ଙ୍କୁ ଦେଖା ନକରି ଖସିଗଲି । କାରଣ ସେତେବେଳେ ଡ୍ରଇଁମାଷ୍ଟରମାନଙ୍କର ସାମାଜିକ ଏବଂ ଅର୍ଥନୈତିକ ସ୍ଥିତି ସଂପର୍କିତ କଥା ଶୁଣି ଶୁଣି ମନରେ ଆଉ ସରାଗ ନଥିଲା ସେ ଘକିରି ପ୍ରତି । ସେଇମିତି ଥରେ ପୁରୀ ଜିଲ୍ଲା ସ୍କୁଲର ଡ୍ରଇଁମାଷ୍ଟର ଘକିରୀ ପାଇଁ ପୁରୀ ଯାଇଥିଲି । ଆମ ଚନ୍ଦ୍ରମଣି ସାର୍ ଦେଖା ହେଇଗଲେ, କିଛି ଅନ୍ତରଙ୍ଗ ଆଳାପ ପରେ ମତେ ଜଣେ ଅନୁଭବୀର ଭାଷାରେ କହିଲେ ବୁଝିଲ, "ବଳଦେବ ! ୫୦ଟା କୂଅ ଏଠି ସେଠି ଖୋଳିବା ଅପେକ୍ଷା ଗୋଟେ ଭଲ ଆଉ ଗଭୀର କୂଅ ଖୋଳ ମିଠା ପାଣି ବାହାରିବ ।" ସେତେବେଳେ ସେ କଥାର ମର୍ମାର୍ଥ ବୁଝିପାରି ନଥିଲେ କ'ଣ ହେଲା, ଏବେ କିନ୍ତୁ ମୁଁ ଅନୁଭବ କରିପାରୁଛି ସତରେ ଏକସ୍ଥ ଗଭୀର କୂଅର ପାଣି ମିଠା ।

ସୂଚନା ଓ ଲୋକ ସଂପର୍କ ବିଭାଗରେ ଘକିରୀ ପୂର୍ବରୁ ନାଲ୍‌କୋର ବାର୍ଷିକ କ୍ୟାଲେଣ୍ଡର ଚିତ୍ର କରିବା କଥା ପାଠୀ ସାର୍ କହିଲେ । ଏଭଳି ରଙ୍ଗିନ୍ କ୍ୟାଲେଣ୍ଡରର ପରିକଳ୍ପନା ଓଡ଼ିଶାରେ ସେତେବେଳେ ପ୍ରଥମ । ପାଠୀ ସାର୍ ଚିତ୍ରଶିଳ୍ପୀ ଚୟନ ଓ ଚିତ୍ରଗୁଡ଼ିକର ବିଘରର ଦାୟିତ୍ୱରେ ଥିଲେ । ଆମେ ପ୍ରାୟ ୫/୬ ଜଣ ଚିତ୍ରଶିଳ୍ପୀଙ୍କ ଭିତରେ ସେ ଅନ୍ୟତମ । ମତେ କଳିଙ୍ଗ ଯୁଦ୍ଧ ପରର ଚିତ୍ର ପାଇଁ କୁହାଗଲା । ଏବଂ ପରେ ଚିତ୍ରର ସମୀକ୍ଷା କଲାବେଳେ ଐତିହାସିକ ଡକ୍ଟର ମନ୍ମଥନାଥ ଦାସ କହିଲେ, "ଆର୍ଟିଷ୍ଟ ! ତମେ ଅଶୋକଙ୍କ ମୁହଁରେ ଉଭୟ ରାଜକୀୟତା ଏବଂ ସତ୍ୟ ଉପଲବ୍ଧିର ଯେଉଁ ଭାବ ରଙ୍ଗେଇ ପାରିଛ, ତାହା ଅତୀବ ଚମତ୍କାର । ଭଗବାନ ତୁମକୁ ଆଶୀର୍ବାଦ କରନ୍ତୁ ।"

**ଲୋକସଂପର୍କ ବିଭାଗରେ ଆର୍ଟିଷ୍ଟ ଘକିରି କରିବାରେ ପାଠୀ ସାର୍‌ଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ମୋତେ ଏ ଘକିରିରେ ରଖିବେ ବୋଲି ଏକରକମ ମନସ୍ଥ କରି ଲୋକସଂପର୍କ ବିଭାଗର ଉପନିର୍ଦ୍ଦେଶକ ଆର୍ତ୍ତବନ୍ଧୁ ରାଉତ, ଦିନନାଥ ପାଠୀଙ୍କୁ ଇଣ୍ଟରଭ୍ୟୁ ବୋର୍ଡ଼ର ଏକ୍ସପାର୍ଟ୍**

Digitized by srujanika@gmail.com

**ମନୋନୀତ କରି ଆଣିଥିଲେ । ଦୁର୍ଗା ଚରଣ ପଣ୍ଡାଙ୍କ ଆର୍ଟେକ୍ସ ସଂସ୍ଥାରେ କାମ କରୁଥିବା ବେଳେ ଦିନନାଥ ପାଠୀ ସାର୍‌ଙ୍କ ସଙ୍ଗେ ସାକ୍ଷାତ । ସେ ମୋ ଚିତ୍ରକାମରେ ମୁଗ୍ଧ ହେଇ ଦୁର୍ଗା ପଣ୍ଡାଙ୍କୁ ମୋ ସଂପର୍କରେ ପଗ୍ଚରି ବୁଝିଥିଲେ ଓ ଦୁର୍ଗା ପଣ୍ଡା ମୋ ଲାଗି ଭଲ ଚାକିରିଟିଏ ଯୋଗାଡ଼ କରିଦେବା ପାଇଁ ପାଠୀ ସାର୍‌ଙ୍କୁ ଅନୁରୋଧ କରିଥିଲେ ।** ଚାକିରି କାଳରେ ସମସ୍ତଙ୍କର ଆଖି ମୋ ଉପରେ ଥାଏ । ଉତ୍କଳ ପ୍ରସଙ୍ଗ ଓ ଓଡ଼ିଶା ରିଭ୍ୟୁର ପ୍ରଚ୍ଛଦ ଓ ଅଳଙ୍କରଣ ଦାୟିତ୍ୱ ମୋ ଉପରେ ! ପ୍ରହରାଜ ସତ୍ୟ ନାରାୟଣ ନନ୍ଦ ଓ ସତ୍ୟାନନ୍ଦ ଚମ୍ପତିରାୟଙ୍କ ପରି ପ୍ରତିଷ୍ଠିତ କବିମାନଙ୍କ ସଂସର୍ଗ ଲାଭ କରିବାର ସୌଭାଗ୍ୟ ମିଳିଥିଲା ମତେ । ଓଡ଼ିଶାରେ, ଶିଳ୍ପୀ ଭାବରେ ପ୍ରତିଷ୍ଠା ବୋଧହୁଏ ସେଇଠୁ ଆରମ୍ଭ ଏବଂ କ୍ରମେ ଶାଖା ପ୍ରଶାଖା ଦେଇ ପରିବ୍ୟାପ୍ତ ହେବାକୁ ଲାଗିଲା । ମୋ ଠିକଣା ସମସ୍ତେ ଜାଣିଗଲେ । ପତ୍ରିକା ଦୁଇଟିର ରଙ୍ଗ ବଦଳିଗଲା । ପାଠୀ ସାର୍‌ଙ୍କ ଅଧକ୍ଷତାରେ ଭୁବନେଶ୍ୱରରେ ଆରମ୍ଭ ହେଲା ବିଭୂତି କାନୁନ୍‌ଗୋ ଘରୁ ଓ କାରୁକଳା ମହାବିଦ୍ୟାଳୟ । ଅନ୍ୟାନ୍ୟ ସବୁ ବରିଷ୍ଠ ଚିତ୍ରଶିଳ୍ପୀଙ୍କ ଭିତରେ ମୁଁ ଥାଏ ସର୍ବକନିଷ୍ଠ । ଲୋକସଂପର୍କ ବିଭାଗରେ ସେତେବେଳେ ନିର୍ଦ୍ଦେଶକ ଙ୍ଗ. ଫଣୀଭୂଷଣ ଦାସ, ତାଙ୍କର ଇଚ୍ଛା ନଥାଏ ମୁଁ ଯାଏ ବୋଲି । ଏଠି ପୁଣି ପାଠୀସାର୍ ତାଙ୍କର କାର୍ଯ୍ୟ ଦକ୍ଷତାର ଉତ୍କର୍ଷ ଦେଖେଇଲେ । କୌଣସିମତେ ସେଠାରୁ ରିଲିଭ୍ ହୋଇ ଆସି ଜଏନ୍ କଲି ବିଭୂତି କାନୁନ୍‌ଗୋ ଘରୁ ଓ କାରୁକଳା ମହାବିଦ୍ୟାଳୟରେ । ଅଧ୍ୟାପକ, ଡିଜାଇନ୍ ବିଭାଗ ! ଟଙ୍କପାଣି ରୋଡ଼ର ଭଡ଼ାଘରେ । ଭଡାଘରେ କଲେଜ ଅରମ୍ଭ ହେଇଥାଏ । ସ୍କୁଲରେ ମାଷ୍ଟର ନହେବା ପାଇଁ ଡରୁଥିବା ସେଦିନର ବଳଦେବ ମହାରଥୀ ମାଷ୍ଟର ହେଲା ପଢ଼େଇଲା, ପଢ଼ିଲା ସେତେବେଳେର ପିଲାମାନେ ବେଶ୍ ଭଲଥିଲେ । ଛାତ୍ରସୁଲଭ ବ୍ୟକ୍ତିଚରିତ୍ର, କର୍ମଠ ଏବଂ କର୍ମଯୋଗୀ ।

ଶ୍ରୀମତୀ ଇନ୍ଦିରା ଗାନ୍ଧି ରାଜ୍ୟ ସଂଗ୍ରହାଳୟ ପରିଦର୍ଶନରେ ଆସିବା ପାଇଁ କାମ । ସଚିବାଳୟରେ ମ୍ୟୁରାଲ୍ ପେଣ୍ଟିଙ୍ଗ୍ ତଥା ଦିଲ୍ଲୀର ଅପନା ଉତ୍ସବ ବା ଆନ୍ତର୍ଜାତିକ ବାଣିଜ୍ୟ ମେଳା କାମଠୁ କୋଣାର୍କ ନୃତ୍ୟ ମହୋତ୍ସବ କାମରେ ସବୁଠି ମୁଁ ଥିବି, ଆମେ ଥିବୁ । ଆଗରେ ପାଠୀ ସାର୍, ରାତି ଅନିଦ୍ରା ହୋଇ କାମ କଲାବେଳେ ଲାଗେ ଆମେ ସତରେ କୋଣାର୍କ ତିଆରିଛୁ । ଏବଂ ସବୁଠି ଆମକୁ ଆଖିରେ ରଖି ପାଠୀ ସାର୍ ଯେ କୌଣସି କାମ ପାଇଁ ହଁ ମାରୁଥିଲେ ପଇସା ମିଳୁ ନ ମିଳୁ । ବାହାବା ଅନେକ ମିଳିଛି ଏବେ ମଧ୍ୟ । ସେସବୁ ଏଭଳି ଅନ୍ତରଙ୍ଗ ଅନୁଭବ, ଇତିହାସରୁ ପଢ଼ିଲେ ବି ବିଶ୍ୱାସ କରିହେବନି ।

ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ, ସୁଇଡ଼େନ୍ କାମ ପାଇଁ ପାଠୀ ବାବୁ ଭିଜୁଆଲାଇଜର୍ ଏବଂ ଡିଜାଇନର୍ ଭାବରେ ସମସ୍ତ ଦାୟିତ୍ୱ ଦେଇ ଯେତେବେଳେ ଆମକୁ କହିଲେ ବିଶ୍ୱାସ ହେଲାନି ପ୍ରଥମରେ । ଚନ୍ଦ୍ରଶେଖର ରାଓ ଓ ମୁଁ ମିଶି ୧୨/୧୪ ଫୁଟ ଏକ ମ୍ୟୁରାଲ୍ ଚିତ୍ର କରିଥିଲୁ ଯାହାର ଭିତ୍ତିଭୂମି ଭାରତୀୟ ରାସ୍ତା । ବିଶେଷତଃ, ଇଣ୍ଡିଆନ୍ ପପୁଲାର୍ ଆର୍ଟ୍ ଉପରେ ସନ୍ନିବେସିତ ଥିଲା ସର୍ବୋପରି ପ୍ରଦର୍ଶନୀର ଆଭିମୁଖ୍ୟ । ମଝିରେ ସୁଇଡ଼େନ୍ ଯିବାର କଥା ପାଠୀ ସାର୍‌ଙ୍କଠୁ ଶୁଣିଲି । ମନେ ମନେ ଉଲ୍ଲସିତ ହେଲି । କିନ୍ତୁ ପରେ ଅନ୍ୟମାନେ ଯଥା - ବଢ଼େଇ, ମାଟିମିସ୍ତ୍ରୀ ପର୍ଯ୍ୟନ୍ତ ଗଲେ ମୋ ବେଳକୁ କଥା ବଦଳିଗଲା, ମୁଁ ଆଉ ପାରିଲିନି । ସୁଇଡ଼େନ୍‌ରୁ ଫେରି ମୋ ଛାତ୍ର ସଂଗ୍ରାମ ଓ ଅନ୍ୟମାନେ ତାଙ୍କ ଅନୁଭବ କହିଲାବେଳେ ମତେ ଗପ ଶୁଣିଲାପରି ଲାଗିଲା । ଏବେ ସେସବୁ ଭାବିଲେ ଅଡୁଆ ଲାଗେ । ନଯାଇ ପାରିବାର ଗ୍ଲାନି ନୁହେଁ ବରଂ ସେତେବେଳର ସେସବୁ ଆକାଂକ୍ଷା ଏତେ ବ୍ୟକ୍ତିଗତ ହେବା ଉଚିତ ନଥିଲା ବୋଧହୁଏ, ସେଥିପାଇଁ ସେ ସଂପର୍କିତ ସବୁ କଥା ଏବେ ଆମୋଦିତ କରିବା ପରିବର୍ତ୍ତେ ବିରକ୍ତିକର ଲାଗେ ।

ବିଷୟବସ୍ତୁ, ଅନୁଭୂତି ସର୍ବସ ହେଲାବେଳେ ଏତେ ବ୍ୟାପକ ହୁଏ ଯେ ସାମଗ୍ରିକ ଭାବରେ ତା'ର ଏକ ଆଲେଖ୍ୟ ପ୍ରସ୍ତୁତ କରିବା ଏକ ଦୁରୁହ ବ୍ୟାପାର । ତେଣୁ ଅନେକ କଥା, ବିଷୟବସ୍ତୁ ସଂପର୍କିତ ହୋଇ ମଧ୍ୟ ଲେଖି ହୁଏନି । ବିଶେଷ କରି ଏହିପରିପ୍ରେକ୍ଷୀରେ ତାହା ସର୍ବାଦୌ ସମୀଚୀନ ନୁହେଁ । ଏଇସବୁ ଘଟଣା ଦୁଇ ଦଶନ୍ଧି ପୂର୍ବର କଥା, ବିସ୍ମୃତ, ତଥାପି ଅଂଶିକ ଜୀବିତ, ଯେତେ ସବୁ ସେ ସମର୍ପିତ ସମୟର କାମ, ବିଶ୍ୱାସନୀୟ ସମ୍ପର୍କ ଜନିତ ଉଦ୍ଦୀପନା ଆକାଶ ଛୁଆଁ, ଆକାଶ ସବୁ

Digitized by srujanika@gmail.com

ଫିକା ପଡ଼ିଲାଣି ଏବେ ଜୀବନ ସଂଘର୍ଷରେ । ଅର୍ଥହୀନ ଲାଗେ ଆଶା । ମମତ୍ୱବୋଧ ବିଷାକ୍ତ ହେଇଥାଏ । ଅସହାୟତା ସବାର ହୁଏ ମନରେ ।

ଜଣେ ତଦାନୀନ୍ତନ ପଦସ୍ଥ ସରକାରୀ କର୍ମଚାରୀଙ୍କ ଝିଅ ବାହାଘର ଘଟଣାରେ ଏକ ବିରକ୍ତିକର ସଂପୃକ୍ତିକୁ ନେଇ ଏଇ କଥାଟି । ବନ୍ଧୁ ଡ଼ି.ଏନ୍ ଏବଂ ମୁଁ, ପାଠୀ ସାର୍‌ଙ୍କ ନିର୍ଦ୍ଦେଶରେ ସେଠାକୁ ଚିତା ପକେଇବାକୁ ଯିବାର କଥା । ପାଠୀ ସାର୍‌ଙ୍କ ଗୋଟେ ଗୁଣ ଏବେବି ଭଲ ଲାଗେନି, କାମଟେ ଦେଇଦିଅନ୍ତି, ନିଜର ବୋଲି ଲାଗନ୍ତି, କିନ୍ତୁ କାମଟି କ'ଣ ହେବ, କିପରି ହେବ, ସେ କଥା ଯିଏ କରିବ ତା'ର ସେଥିପ୍ରତି ଦୃଷ୍ଟିଭଙ୍ଗୀ କ'ଣ ହେବ ସେକଥା ସେ ଭାବନ୍ତି ନି; ଏବଂ ସେ ସମୟର ଯେ କୌଣସି କାମର ଉଦ୍ଦେଶ୍ୟ ପଛଆଡ଼େ ଆମେ, ଡେମୋକ୍ଲିସ୍‌ଙ୍କ ଖଣ୍ଡାପରି ଝୁଲୁଥିବା ପି.ଏସ୍.ସି ପରୀକ୍ଷା ହିଁ ତାର କାରଣ ବୋଲି ଅନୁଭବ କରି ତାହା କାର୍ଯ୍ୟକାରୀ କରିବାକୁ ବାଧ୍ୟ ହେଉ । ସେଦିନ ରାତିରେ, ବଜାରରୁ ପୋଷ୍ଟର୍ ଧଳାରଙ୍ଗ ଦୁଇଟି ଡବା କିଣି ସେଠାରେ ପହଞ୍ଚି ନିର୍ଦ୍ଦେଶାନୁସାରୀ କାମ କରି ସାରିଛୁ, ଜଣେ ୧୬/୧୭ ବର୍ଷର ବାଳକ ଆସି ଆମକୁ, ଏଠିସେଠି ଆଉ ଦି ଚାରିଟା ଚିତ୍ର କରିବାକୁ ନିର୍ଦ୍ଦେଶ ଦେଲା । ସେଦିନ ମୁଁ ନିଜକୁ ଟେଣ୍ଟହାଉସ୍ ଲୋକମାନଙ୍କ ସାଙ୍ଗରେ ସାମିଲ୍ କରିପାରିଲିନି । ଏବେ କିନ୍ତୁ ଓଡ଼ିଶାର ବହୁ ବିଶିଷ୍ଟ ଶିଳ୍ପୀ ଟେଣ୍ଟହାଉସ୍ ବାଲାଙ୍କ ନିର୍ଦ୍ଦେଶରେ, ପଇସା ଲୋଭରେ ଦିଲ୍ଲୀ ଯାଇ ଓଡ଼ିଶା ମଣ୍ଡପରେ ଅଳଙ୍କରଣ କାର୍ଯ୍ୟ କରୁଛନ୍ତି । ରାତିର ପ୍ରଥମ ପ୍ରହର କଟିଗଲାଣି ଗ୍ଲାନି ଓ ଅବବୋଧ ତଥା କ୍ଲାନ୍ତିରେ ମାନସିକ ବିକୃତି, ବୟସ୍କ ନାମକରା, ଲମ୍ବା Biodata ତାଲିକା ଭୁକ୍ତ ଚିତ୍ରଶିଳ୍ପୀଙ୍କର କଳାକୃତି ତର୍ଜମା କରୁଛି ଜଣେ ଛୋଟ ପିଲା । ପରିସ୍ଥିତିକୁ ବିଚାର କରାଯାଉ । ସୀମା ଟପିଗଲା, ଅପମାନିତ ଲାଗିଲା, ପାଖକୁ ଡାକି ପିଲାକୁ ଇଂରାଜୀରେ ଗପ କହିଲା ପରି ବୁଝାଇ ଦେଲି କଥାଟି । ସେ ମଧ୍ୟ ଯେପରି ସଂକିତ ହେଇଗଲା ଏବଂ ଧନ୍ୟବାଦ ସହ ଫେରିଆସିଲୁ ଡ଼ି.ଏନ୍ ଓ ମୁଁ । ଡି.ଏନ୍ କିନ୍ତୁ ପୁରାଛାନିଆ, କି କଲ ବନ୍ଧୁ, ରାଜାଙ୍କ ପୁଅକୁ ଜବାବ ଦେଲ ଏଇ ଭାବ ତାଙ୍କ ଆଖିରେ, ଆଚରଣରେ । ହାୟରେ ଦେଶ ! ଏଠି ତ ଶିଳ୍ପୀ ହେବା ପାଇଁ, ଓଡ଼ିଶାରେ ତିଷ୍ଠି ରହିବା ପାଇଁ ଏଭଳି ଆଇ.ଏ.ଏସ୍ ଅଫିସରମାନଙ୍କର ସୁପାରିଶ ଲୋଡ଼ା ହୁଏ । ସେଥିପାଇଁ ବୋଧହୁଏ ଅଭିଜ୍ଞ ପାଠୀ ବାବୁ ଆମକୁ ସେଠାକୁ ପଠେଇଥିଲେ ।

**ପରୀକ୍ଷାମୂଳକ ଭାବରେ, ଅନେକ କାର୍ଯ୍ୟ କରାଯାଇଛି ମଧ୍ୟ ସେତେବେଳେ । ସେଇ ପରିମାଣରେ ପାରିଶ୍ରମିକ ମିଳିନି । ସେଇ କ୍ରମରେ କାମ କରି ଆଜିଯାଏ ସେମିତି ଗୋଟେ କ'ଣ ବଡ଼ଟେ ଅବା ଭଲଟେ ପାଇଲା ପରି ମନେ ହୁଏନି । ଯାହା ସାଧାରଣ ଭାବେ ମିଳିଛି ବୋଲି ଭାବିହୁଏ ତାକୁ ବଡ଼ ବୋଲି କହିବାକୁ ବା ଲେଖିବାକୁ ପଡୁଛି ଏବେ । ଗୋଟେ ସମୟରେ ପ୍ରଶସ୍ତି, ପ୍ରଶଂସାଗୁଡ଼ାକ ଅଭିଜାତ୍ୟପୂର୍ଣ୍ଣ ଲାଗିଥାଏ ଏବଂ ସମୟାନୁକ୍ରମେ ବୟସର, ପରିବାର ଓ ସମାଜର ଦାୟିତ୍ୱବୋଧ ଭିତରେ ଘସି ମାଜି ହୋଇ ଦେଖିଲେ ଲାଗେ କ'ଣଟା ହେଲା ? ମହାବିଦ୍ୟାଳୟର ଗୋଟେ କଂକ୍ରିଟ ଖୁମ୍ବ ଭଳି ନିଜର ବ୍ୟକ୍ତିସତ୍ତାର ନିର୍ଜୀବ ସ୍ଥିତିକୁ ଅନୁଭବ ଅବା ଆକଳନ କରିବା ଯାହା ସାର ହେଲା ।**

୧୯୯୪ରେ ପାଠୀ ବାବୁ ମହାବିଦ୍ୟାଳୟ ଛାଡ଼ି ଦିଲ୍ଲୀରେ ସଚିବ, ଜାତୀୟ ଲଳିତ କଳା ଏକାଡ଼େମୀ । ମନରେ ଅଙ୍କୁରୋଦ୍‌ଗମ ହେଲା ଅନେକ ସଂଭାବନା । ଦୀର୍ଘ ଦିନର ଆଶା ଏବଂ ତା'ର ସକାରାତ୍ମକ ଫଳ ଭୋଗରେ ଅପେକ୍ଷାକୃତ କର୍ମଚଞ୍ଚଳ ଲାଗିଲା । ଜାତୀୟ ଚିତ୍ରକଳା ପ୍ରଦର୍ଶନୀ ପାଇଁ ଛବି କରିବା, କଳା ମେଳାରେ ସକ୍ରିୟ ଅଂଶଗ୍ରହଣ କରିବା ଇତ୍ୟାଦି କାମ ଚାଲିଲା । ବ୍ୟକ୍ତିଗତ ଭାବରେ ବିଗତ ଦିନଗୁଡ଼ିକର ସମସ୍ତ କାର୍ଯ୍ୟକଳାପ ଓ ବଶମ୍ବଦୀୟ ମନୋଭାବକୁ ତର୍ଜମା କରି ମନେ ମନେ ଭିନ୍ନ ଭିନ୍ନ କଳ୍ପନା ପ୍ରବଣ ଚିନ୍ତାସବୁ ରୂପ ନେଲା । ଯାହାର ଫଳ ଭୋଗ ଆଶାରେ ସାତ୍ତ୍ୱିକ ତଥା ଆତ୍ମିକ ଯୋଗ୍ୟତା ସମ୍ବଳିତ ଏକ ମନ, ଭିତରେ ଭିତରେ ଉଲ୍ଲସିତ ହେଲା । କିନ୍ତୁ ପରେ ସେସବୁ ଅଧିକ ସମନ୍ୱିତ ପରି ମନେ ହେଲାନି । ସବୁ କେମିତି ବେଖାପିଆ ଘଟିଲା ମୋ ପାଇଁ । ଯେପରି ବହୁ

Digitized by srujanika@gmail.com

ପ୍ରାଚୀନ ଏକ ମାନସିକ ଅନୁଭବକୁ ଫରୁଆରେ ରଖି ସାତତାଳ ପଙ୍କ ତଳେ ପୋତି ଦେଲାପରି । ସେସବୁ କଥା ଏବେ ପରିଷ୍କାର ଭାବେ କହିବାରେ କିଛି ମାନେ ନାହିଁ । କାରଣ ଅନେକ କଥା ଏତେ ଅପରିଷ୍କାର ଯେ ଉପୁଜିର କାରଣକୁ ବାରମ୍ବାର ମଇଳା କରୁଥିବା ଭଳି ଏକ ବ୍ୟଭିଚାରୀ ଭାବ ।

ଏପରି ଅନ୍ତଃକରଣରେ ଚିତ୍ତପ୍ରକ୍ରିୟା ନିର୍ବେଦ, ବିଷାଦଗ୍ରସ୍ତ ଓ ବିତର୍କଗ୍ରସ୍ତ ହୋଇପଡ଼େ । ଏବଂ ତା'ର ପ୍ରଭାବରେ ମାନବୀୟ ସଂପର୍କରେ ଆକର୍ଷଣ ଓ ବିକର୍ଷଣର ଅନ୍ୟତମ ହେତୁ ହୋଇ ପଡ଼େ ତଥା ସ୍ଥାୟୀ ଭାବରେ ଅନୁଶୋଚନା ଓ ତତ୍‌ଜନିତ ବିଫଳତା ଅନ୍ତଃସ୍ତର ସୌନ୍ଦର୍ଯ୍ୟବୋଧକୁ ବିବଶ କରିପକାଏ । ଏବଂ ନିଷ୍ପନ୍ନ ଘଟେ ଏକ ପ୍ରତିସ୍ପର୍ଦ୍ଧୀ ଉଦ୍ଦୀପନା ଯାହାର ଉଦ୍ଦୀପନ ବିଭାବ ତତ୍‌ସମ୍ପର୍କିତ ସମସ୍ତ ଘଟଣାବଳୀକୁ ନେଇ ହୋଇଥାଏ । ଅଳଙ୍କରଣ ପୁଣି ରୌଦ୍ରରସ ସିକ୍ତ ହୁଏ ଏବଂ ତର୍କ, ବିତର୍କ, ଆବେଗ ଓ ଭ୍ରାନ୍ତି (Hallucination) ପରି ବ୍ୟଭିଚାର ଭାବର ଉପୁନ୍ନ ଘଟିଥାଏ ।

ତେଣୁ ଅଳଙ୍କରଣ ସହବାସ ନିହାତି ଏକ କାବ୍ୟିକ ଶୀର୍ଷକ ହୋଇଥିବାରୁ ତାହା ଅନେକାଂଶରେ ପରିମାର୍ଜିତ ଓ ଆହୁରି ରସଯୁକ୍ତ କରିହେବ । ଯେତେ ମାର୍ଜିତ ହେବ ଶୀର୍ଷକର ସଂଜ୍ଞା କଥନିକା ସେତେ ପ୍ରାଞ୍ଜଳ ହେବା ସ୍ୱାଭାବିକ । ଶୀତ ଦିନର ଅତିକ୍ରାନ୍ତ ଅପରାହ୍ଣ । ଏଇ, ମୋ ବିଭାଗର ଝରକାରୁ ଖଣ୍ଡଗିରିର ଝାପ୍‌ସା ଦୃଶ୍ୟ । ସୂର୍ଯ୍ୟତାପ ଜନିତ କ୍ଳାନ୍ତି ଅବା ଅବସାଦ ନାହିଁ । ନିଃସଙ୍ଗ ସମୟ,ପଥହୀନ ଆଦିଅନ୍ତ ସବୁଜିମାରେ ଗେରୁରଙ୍ଗର ମନ୍ଦିର, ଆକାଶ ଈଷତ୍ ଧୂସର । ଦେହ ଶିତେଇ ଥାଏ, ମନ ଦଉଡ଼ି ଥାଏ କାହିଁ କେତେ ଦୂର ପୁଣି ନିମିଷକେ ଫେରିଆସେ । ସେତିକି ବେଳେ ଠିକ୍ ଘଦରଟିଏ ଘୋଡ଼ି ହୋଇ ନିଜେ ନିଜକୁ କିଏ କେଉଁଠି ପାଏ ହଠାତ୍ କହିହୁଏନି । ସେଇଭଳି ଏକ ପରିବେଶରେ ଏଭଳି ଏକ ଶୀର୍ଷକକୁ ନେଇ ଲେଖାଲେଖି କରିବାକୁ ମନ କୁଣ୍ଠିତ ନହେଲେ ମଧ୍ୟ ଉଚ୍ଚାଟ ହୁଏନି । ତଥାପି ଅନେକ ଲେଖିସାରିଲାଣି ।

ଶିଉଳି ଲଗା ଗ୍ରେ ପଥର ଉପରେ ଭେରେଡ଼ିଆନ୍ ଗ୍ରୀନ୍‌ର ଲଟାଗୁଳ୍ମ, ଫିକା ଗେରୁରଙ୍ଗର ମନ୍ଦିର ଚୂଡ଼ା ଏବଂ ଇଣ୍ଡିଗୋ ଆକାଶର ବିସ୍ତୃତି ତା ଉପରେ, କେମିତି ସବୁ ବେଖାପିଆ ଲାଗୁଛି କାହା ସହ କାହାର ଆଙ୍ଗିକ ସଂପର୍କ ନଥାଇ ମଧ୍ୟ ସମସ୍ତଙ୍କର ନିଜସ୍ୱ ପ୍ରଦର୍ଶନ, ଏକ ବିବାଦୀୟ ସହାବସ୍ଥାନ । ଏଭଳି ପରିସ୍ଥିତି ଓ ପରିବେଶ କେଉଁ ଅଳଂକାର ପର୍ଯ୍ୟାୟଭୁକ୍ତ ହେବ ଜାଣିନି । **ଆଲୁମିନିୟମ୍ ଫ୍ରେମ୍ କରା ପାଠୀ ବାବୁଙ୍କ ବେଳର ଡିଆରି ଝରକା ଦେଇ ଶିରି ଶିରି ପବନ ଦେହରେ ଲାଗିଲେ ଅଜାଣତରେ ଦେଖିବାକୁ ଇଚ୍ଛା ହୁଏ ଦେହ, ମନ ଓ ଅନୁଭବକୁ ଅତି ପାଖରେ । ସାରା, ମନଆକାଶର ଧୂସର ରଙ୍ଗ ଉପରେ ସବୁଜ ସ୍ମୃତିଚାରଣ ଏବେ ବେଖାପିଆ ଲାଗୁଛି । ସବୁ ସ୍ମୃତି ଚାରଣରେ ଅନୁଭବ ହୁଏତ ଏମିତି ସନ୍ଧ୍ୟାକୁଆଟେ ପିଠିରେ ଘଲି ଯିବାର ଅନୁଭବଟିଏ ପ୍ରାଞ୍ଜଳ ହୋଇ ଉଠୁଛି ଯେମିତି ।** ସୌକୁମାର୍ଯ୍ୟହୀନ ଭାବ କୈବଲ୍ୟର ଅକଳ୍ପନୀୟ ଅନୁଭବ । ବିହଙ୍ଗମ ଦୃଷ୍ଟିରେ ଅଷ୍ଟଦଳପଦ୍ମ ସଦୃଶ କଲେଜ ବିଲ୍‌ଡ଼ିଙ୍ଗ୍ ସେତେବେଳେ କୋଳାହଳ ହୀନ, ନିଥର, ରଙ୍ଗହୀନ, ନିଷ୍ପ୍ରଭ । ଏବଂ ମୁଁ ଆତ୍ମସଙ୍ଗମରେ ଅଧୀର ଅଧୀଶ୍ୱର ଆଲୁମିନିୟମ୍ ଫ୍ରେମରେ ଏକ ଝୁଲନ୍ତ ଛବି ପରି ଲଟକି ରହିଥିଲି, ଡରଜି ଯାଉଥିଲି ଯେପରି ବର୍ତ୍ତମାନରୁ ଅତୀତକୁ ।

Digitized by srujanika@gmail.com

**ସୁବ୍ରତ କୁମାର ମଲ୍ଲିକ**

# ଆମେ ଆର୍ଟ୍ କଲେଜ ଗଢ଼ିଥିଲୁ

୧୯୮୪ ମସିହା । ବି.କେ. କଲେଜ ଅଫ୍ ଆର୍ଟ୍ ଆଣ୍ଡ୍ କ୍ରାଫ୍ଟସ୍ ପ୍ରତିଷ୍ଠା ହେବା ପରେ ପ୍ରଥମ ପ୍ରବେଶିକା ପରୀକ୍ଷାରେ ଆବେଦନ କରିଥିଲାବେଳେ ନିର୍ବାଚିତ ତାଲିକାରୁ ମୋର ନାମ କଟିଯାଇଥିଲା । ତା'ପରେ ମୁଁ ସାକ୍ଷାତ୍ କରିଥିଲି ଦିନନାଥ ପାଠୀ ସାର୍‌ଙ୍କୁ । ମୋର ଅନୁରୋଧ ପରେ ସେ କହିଲେ ଯେହେତୁ କଟକ କଲେଜର ପିଲାମାନଙ୍କୁ ପ୍ରାଥମିକ ସୁଯୋଗ ଦିଆଗଲା ତୁମ କଥା ଜୁଲାଇ ମାସରେ ବିଚାର କରାଯିବ । ସର୍ଗତ ବିଭୂତି କାନୁନ୍‌ଗୋ ମହଲ୍ଲଦିଆ ବଜାରରେ ନିଜ ଉଦ୍ୟମରେ ଗୋଟିଏ ଆର୍ଟ୍ କଲେଜ କରିଥିଲେ । ବିଭୂତି କାନୁନ୍‌ଗୋ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ବନ୍ଧୁ ହୋଇଥିବା ଦୃଷ୍ଟିରୁ ସରକାର ଏହାର ପରିଚାଳନା ଦାୟିତ୍ୱ ନିଅନ୍ତୁ ବୋଲି ସେ ଅନେକ ଥର ଅନୁରୋଧ ମଧ କରିଥିଲେ । ଇତି ମଧ୍ୟରେ ତାଙ୍କର ଦେହାନ୍ତ ହେବାରୁ ଜାନକୀ ବଲ୍ଲଭ ପଟ୍ଟନାୟକ ଏକ ନୂଆ କଳା ମହାବିଦ୍ୟାଳୟ ଭୁବନେଶ୍ୱରଠାରେ ପ୍ରତିଷ୍ଠା କରିବାକୁ ସ୍ଥିର କଲେ ଏବଂ ତାହା ବିଭୂତି କାନୁନ୍‌ଗୋଙ୍କ ଏକାଦଶାହ ଦିନ ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ର ସହିତ ୩/୪, ଖାରବେଳ ନଗର, ୟୁନିଟ୍-୩ ଠାରେ ଏକା ସାଙ୍ଗରେ ଶୁଭାରମ୍ଭ ହେଲା । ପ୍ରତିଷ୍ଠାବାନ କଳାକାର ଓ କେନ୍ଦ୍ର ଲଳିତକଳା ଏକାଡ଼େମୀର ସଭାପତି କେ.କେ. ହେବର୍‌ଙ୍କ ଦ୍ୱାରା ଏହାର ଶୁଭାରମ୍ଭ କାର୍ଯ୍ୟ କରାଯାଇଥିଲା । କ୍ଲାସ୍ ପ୍ରଥମେ ସରସ୍ୱତୀ ପୂଜାଠାରୁ ଆରମ୍ଭ ହେଲା । ମୁଁ ସେହି ବର୍ଷ ଅର୍ଥାତ୍ ୧୯୮୪ ମସିହା ଜୁଲାଇ ମାସରେ ପ୍ରବେଶିକା ପରୀକ୍ଷା ଦେଇ ୮ମ ସ୍ଥାନ ଅଧିକାର କରି ବି.କେ. କଲେଜ୍ ଅଫ୍ ଆର୍ଟ୍ ଆଣ୍ଡ୍ କ୍ରାଫ୍ଟସ୍‌ରେ ଅଧ୍ୟୟନ କରିବାର ସୁଯୋଗ ପାଇଲି । ଏହାପର ଠାରୁ ସାର୍‌ଙ୍କ (ଡକ୍ଟର ଦିନନାଥ ପାଠୀ) ସାଙ୍ଗରେ ସଂପର୍କ ।

ଯେମିତି ଘରି କାନ୍ଥରେ ଘରଟିଏ ହୁଏନି ସେମିତି ସରକାର ଅର୍ଥ ଓ ପଦବୀ ଯୋଗାଡ଼ କରି କଲେଜଟିଏ ପ୍ରତିଷ୍ଠା କରିଦେଲେ ଗୋଟିଏ ଆଦର୍ଶ କଲେଜ ଗଢ଼ି ହୋଇଯାଏନି । ଖଲ୍ଲିକୋଟଠାରେ ୧୯୫୭ ଠାରୁ ସରକାରୀ ଉଦ୍ୟମରେ କଲେଜ ପ୍ରତିଷ୍ଠା ହୋଇ ମଧ ରାଜ୍ୟ, ଦେଶ ତଥା ଜନମାନସରେ ବିଶେଷ ପ୍ରଭାବ ପକାଇ ପାରିନାହିଁ । କଲେଜଟି ଛାତ୍ରଛାତ୍ରୀ, ଅଧ୍ୟାପକ ଅଧ୍ୟାପିକା ତଥା ଅଧକ୍ଷଙ୍କ ଅଧବ୍ୟବସାୟକୁ ନେଇ ହିଁ ଗଢ଼ି ଉଠେ । ଅଧକ୍ଷ ଦୂରଦୃଷ୍ଟି ସଂପନ୍ନ ହେଲେ, ନିଷ୍ଠାବାନ୍ ତଥା ପ୍ରଗତିଶୀଳ ମନୋଭାବର ହେଇପାରିଲେ ହିଁ କଲେଜ ତାର ଉନ୍ନତି ପଥରେ ଅଗ୍ରସର ହୁଏ । ଭୁବନେଶ୍ୱରର ବି.କେ. କଲେଜରେ ଅଧକ୍ଷ ହେବାପାଇଁ ଓଡ଼ିଶାର ବହୁ ପ୍ରତିଷ୍ଠିତ ଶିଳ୍ପୀ ପାଗ ବାନ୍ଧିଥିଲେ । କିଏ କହୁଥିଲା ମୁଁ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ରୂପରେଖ ଗଢ଼ିଥିଲି ଏବଂ ଭୁବନେଶ୍ୱରଠାରେ ଅନ୍ୟଏକ କଳା ମହାବିଦ୍ୟାଳୟର ସପ୍ନ ଦେଖିଥିଲି, ମୋ କଥା ଡକ୍ଟର ମହତାବ ଜାଣନ୍ତି । ଆଉ କିଏ କହୁଥିଲା ଭୁବନେଶ୍ୱରରେ କଳା ମହାବିଦ୍ୟାଳୟଟିଏ ଗଢ଼ିବା ମୋ ଶେଷ ଇଚ୍ଛାଥିଲା । ତା ନ ହୋଇଥିଲେ ମୁଁ ଆତ୍ମାହୂତି ଦେବାକୁ ମଧ ପ୍ରସ୍ତୁତଥିଲି । ଏହି ଦୌଡ଼ ତାଲିକାରେ ମଧ ଦୁଇଜଣ ବିଶିଷ୍ଟ ଶିଳ୍ପୀ ଯିଏକି ପାଠୀ ସାର୍‌ଙ୍କ ଶିକ୍ଷାଗୁରୁ ଅଧ୍ୟାପକ ଅନନ୍ତ ପଣ୍ଡା ଓ ବିପ୍ରଚରଣ ମହାନ୍ତି ଥିଲେ କିନ୍ତୁ ସବୁ କଳ୍ପନା ଜଳ୍ପନାର ଅବସାନ ଘଟାଇ ପାଠୀ ସାର୍ ଅଧକ୍ଷ ହେଲେ । ଶେଷରେ ଗୁରୁଙ୍କୁ ଚେଲା ବଳିଗଲେ । ଗୋଟିଏ କଳା ଅନୁଷ୍ଠାନ କିମିତି ଭଲ ଭାବରେ ଗଢ଼ିବାକୁ ହୁଏ ସେକଥା ପାଠୀ ସାର୍‌ଙ୍କୁ ଭଲ ଭାବରେ ଜଣାଥିଲା ।

ପାଠୀ ସାର୍ ତ "ଭବଘୁରା ଭବନାଥ" । ସେ ଏହା ପୂର୍ବରୁ ୟୁରୋପ ମହାଦେଶର ଅଧିକାଂଶ ଆର୍ଟ୍ କଲେଜ ଏବଂ ଆମ ଦେଶର ପ୍ରମୁଖ କଳା ମହାବିଦ୍ୟାଳୟ ଯଥା-ଶାନ୍ତିନିକେତନର କଳାଭବନ, ବରୋଦାର ଏମ୍. ଏସ୍. ୟୁନିଭର୍‌ସିଟି, ଦିଲ୍ଲୀ ଆର୍ଟ୍ କଲେଜ, ଚଣ୍ଡିଗଡ଼, କଲିକତା, ବାଙ୍ଗାଲୋର ପ୍ରଭୃତି ସହରର କଳାଅନୁଷ୍ଠାନମାନ ଅନୁଧ୍ୟାନ କରିସାରିଥାନ୍ତି । ଅଷ୍ଟଦଳ ପଦ୍ମମଣ୍ଡଳ ମଧ୍ୟରେ ବିଭୂତି

Digitized by srujanika@gmail.com

କାନୁନ୍‌ଗୋର ମୂଳ ଇଂରାଜୀ ଅକ୍ଷର ବି.କେ.(BK)କୁ ମୂଳ ଉପାଦାନ ହିସାବରେ ନେଇ ସାର୍ ପରିକଳ୍ପନା କଲେ କଲେଜର ଲୋଗୋ । ଏହି ପ୍ରତୀକ ସରକାରୀ ଚିଠିପତ୍ରରେ ବ୍ୟବହାର କରାଗଲା । ଲାଗିଲା ଯେମିତି ଏହା ଏକ ସ୍ୱୟଂଶାସିତ ମହାବିଦ୍ୟାଳୟ । ଏହାର ଅବିକଳ ଆକାର ନେଇ ପରବର୍ତ୍ତୀ କାଳରେ ବର୍ତ୍ତମାନ କଲେଜ କୋଠାର ନକ୍ସା ତିଆରି ହେଲା । ଏହାପରେ ୧୯୫୭ ମସିହାରୁ ସ୍ଥାପିତ ଖଲ୍ଲିକୋଟ ସରକାରୀ ଷ୍ଟାରୁ ଓ କାରୁ କଳା ମହାବିଦ୍ୟାଳୟର ଚେତା ପଶିଲା । ଏହି ମୂଳ ଚିନ୍ତାଧାରାକୁ ଆଧାର କରି ସେମାନେ ମଧ୍ୟ ପ୍ରତୀକ ତିଆରି କଲେ ଯାହା ଯବକାଚରେ ନ ଦେଖିଲେ ଆଜି ବି ସ୍ପଷ୍ଟ କିଛି ବୁଝା ପଡ଼ୁନି । ଏହାପରେ ପ୍ରଥମ କରି କଲେଜରେ ପାଦ ଦେଇଥିବା ଛାତ୍ରଛାତ୍ରୀମାନେ ପରସ୍ପର ଏକ ଛୋଟ ପରିବାରରେ ବାନ୍ଧି ହେଇ ପରିବେଶ ତିଆରିରେ ଲାଗି ପଡ଼ିଲେ । ସାର୍ ଆରମ୍ଭ କଲେ ନବାଗତଙ୍କୁ ପାଇଁ ସ୍ୱାଗତ ସମ୍ବର୍ଦ୍ଧନା "ସ୍ୱାଗତିକା" । ଏଥିରେ ନବାଗତ ଓ ନବାଗତାଙ୍କୁ ଉପର କ୍ଲାସ୍‌ରେ ପଢୁଥିବା ଅପାମାନେ ଚନ୍ଦନ ସିନ୍ଦୂର ଟିପା ଏବଂ ଫୁଲ ଦେଇ ସ୍ୱାଗତ କରନ୍ତି ଏବଂ ପରେ ନବାଗତଙ୍କୁ ସେମାନଙ୍କର ହବି ବିଷୟରେ ପଚରାଯାଏ । ଶେଷରେ ଭୋଜି । ଦିନଟି ଉତ୍ସବମୁଖର ହେଇ ଉଠେ । ସଚରାଚର କଲେଜମାନଙ୍କରେ ହେଉଥିବା ରେଗିଙ୍ଗ୍ ବଦଳରେ ଏଠାରେ ସ୍ୱାଗତିକା ହୁଏ ଓ ଏଥିରେ ସାର୍‌ଙ୍କ ପ୍ରମୁଖ ଭୂମିକା ଥାଏ । ଟେବୁଲ୍ କେଉଁଠି ପଡ଼ିବ, ସାର୍‌ମାନେ କିପରି ବସିବେ, ପିଲାମାନେ କିପରି ବସିବେ, ଦରି କିପରି ପଡ଼ିବ ଇତ୍ୟାଦି ଇତ୍ୟାଦି । ସାର୍ ଚାହୁଁଥିଲେ ଅନୁଷ୍ଠାନକୁ ନୂଆ ଭାବରେ ଗଢ଼ିବା ପାଇଁ । ସେଥିରେ ପିଲାମାନେ ଥିଲେ ଗୁରୁତ୍ୱପୂର୍ଣ୍ଣ ଭାଗୀଦାର୍ । ସାର୍ ମଧ୍ୟ ସବୁବେଳେ ଚାହୁଁଥିଲେ ଏହି ଛୋଟିଆ କଳା ମହାବିଦ୍ୟାଳୟ କିପରି ଲୋକଙ୍କ ମାନସପଟରେ ପ୍ରତିଫଳିତ ହେବ ।

୧୯୮୪ ମସିହା ଭାରତର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧି ରାଜ୍ୟ ସଂଗ୍ରହାଳୟର ସୁବର୍ଣ୍ଣ ଜୟନ୍ତୀ ଉତ୍ସବକୁ ଉଦ୍‌ଘାଟନ କରିବା ପାଇଁ ଆସିଥାନ୍ତି । ସବୁ ପ୍ରକାର ଆୟୋଜନ ଚାଲିଥାଏ । ସଂସ୍କୃତି ସଚିବ ଏ.ଏନ୍. ତିୱାରୀ ସାର୍‌ଙ୍କୁ ଦାୟିତ୍ୱ ଦେଲେ, ଏହି ଆୟୋଜନକୁ କିପରି ରୁଚିପୂର୍ଣ୍ଣ କରିବାକୁ ହେବ । ସାର୍‌ଙ୍କର ଚିନ୍ତାଧାରା ଓଡ଼ିଶାର କଳାକୁ ବିଶ୍ୱ ଦରବାରରେ କିପରି ପହଞ୍ଚାଇ ହେବ । ସେଥିପାଇଁ ସେ ସବୁବେଳେ ତତ୍ପର । ସେ ଯୋଜନା କଲେ ସଂଗ୍ରହାଳୟର ସବୁ ବାରଣ୍ଡାରେ ଓଡ଼ିଶାର ଝୋଟି ପଡ଼ିବ । ସଂଗ୍ରହାଳୟ ଛୋଟିଆ କୋଠା ନୁହେଁ । ତିୱାରୀ ସାହେବ ପ୍ରସ୍ତାବଟିକୁ ଭାରି ପସନ୍ଦ କଲେ ମଧ୍ୟ ଏସବୁ ଏତେ କମ୍ ସମୟରେ କିପରି ସରିବ ସନ୍ଦେହ କଲେ । ସାର୍ କିନ୍ତୁ ହୋଇଯିବ କହି କାର୍ଯ୍ୟରେ ଲାଗିପଡ଼ିଲେ । ଆମେ ଚାଲିଲୁ ସଂଗ୍ରହାଳୟ । ଫାଙ୍କା କୋଠା, ସେଠିକାମ ଆରମ୍ଭ ହେଲା । ସବୁ ଅଧ୍ୟାପକମାନେ ମଧ୍ୟ ସେଇଠି । ସାର୍‌ଙ୍କ ଭାଷାରେ, ଚିତ୍ର ଶିକ୍ଷା କୌଣସି ଆବଦ୍ଧ ଘର କିମ୍ବା ନିର୍ଦ୍ଦିଷ୍ଟ ସମୟ ସୀମାରେ ଦିନ ଦଶଟାରୁ ଅପରାହ୍ଣ ଚାରିଟା ମଧ୍ୟରେ ଦିଆଯାଏ ନାହିଁ । ଯେମିତିକି କାମରେ ସବୁ ସମୟରେ କଳାର ସ୍ୱତନ୍ତ୍ରତା ପ୍ରତିଫଳିତ ହେବା ଉଚିତ୍ ।

ସାର୍ ଆଗରୁ ସଂଗ୍ରହ କରିଥିବା ଓଡ଼ିଶୀ ଝୋଟିର ନକ୍ସାଗୁଡ଼ିକୁ ଆମକୁ ଦେଇ କିପରି ହେବ ତାହା ବତାଇ ଦେଇ ପ୍ଲାଷ୍ଟିକ୍ ପେଣ୍ଟରେ ଅଙ୍କନ କରିବାକୁ କହିଲେ । ସେହିଠାରେ ଜଳଖିଆ, ସେଠାରେ କ୍ଲାସ୍ । ନିର୍ଦ୍ଧାରିତ ତାରିଖ ଦିନ ଶ୍ରୀମତୀ ଗାନ୍ଧି ଆସିବା ପୂର୍ବରୁ କାମ ଶେଷ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ତିୱାରୀ ସାହେବ ଏହି କାର୍ଯ୍ୟ ଦେଖି ଯେତିକି ପ୍ରୀତ ହୋଇଥିଲେ ତାହାଠାରୁ ଅଧିକା ଖୁସି ହୋଇଯାଇଥିଲେ ଶ୍ରୀମତୀ ଗାନ୍ଧି । ଏହି ଝୋଟିଗୁଡ଼ିକ ଶ୍ରୀମତୀ ଗାନ୍ଧିଙ୍କର ବାଲ୍ୟ ସ୍ମୃତିକୁ ରୋମନ୍ଥିତ କରି ଦେଇଥିଲା । ସେ ସେଠାରେ ଶିଳ୍ପୀଙ୍କୁ ଖୋଜିଲେ ଏହା କାହାଦ୍ୱାରା ଅଙ୍କା ଯାଇଛି ବୋଲି ସେ ପଚାରନ୍ତେ ଆମ ମୁଖ୍ୟମନ୍ତ୍ରୀ ସାର୍‌ଙ୍କୁ ପରିଚୟ କରାଇ ଦେଲେ । ସାର୍‌ଙ୍କ ପିଠିରେ ହାତ ଦେଇ ଶ୍ରୀମତୀ ଗାନ୍ଧି କହିଲେ excellent । ତମ ପିଲାଙ୍କ ଝୋଟି ମୋତେ ଶାନ୍ତିନିକେତନ ମନେପକାଇ ଦେଲା । ଏହା ପୂର୍ବରୁ ଆମକୁ ଶ୍ରୀମତୀ ଗାନ୍ଧି ଆସିବା ସ୍ଥଳକୁ ଯିବା ଆସିବା ପାଇଁ ଗୋଟିଏ ସ୍ୱତନ୍ତ୍ର ପାସ୍ ମିଳିଥାଏ । ଏତେ ନିକଟରୁ ସେହି ମହିୟସୀ ମହିଳାଙ୍କୁ ଫୁଲ ଦେଇ ସ୍ୱାଗତ

Digitized by srujanika@gmail.com

କରିଥିଲୁ ଆମେ । କିନ୍ତୁ ଭାଗ୍ୟର ବିଡ଼ମ୍ବନା ସେ ଘଟଣାର ଗୋଟିଏ ଦିନ ପରେ ନିଜ ବାସଭବନରେ ଦେହରକ୍ଷୀଙ୍କ ଦ୍ୱାରା ନିହତ ହେଲେ । ସାର୍ ସମସ୍ତ ଛାତ୍ରଛାତ୍ରୀ ଓ ଅଧ୍ୟାପକମାନଙ୍କୁ ଡାକି ଶୋକସଭା କଲେ ଏବଂ ଶୋକ ପ୍ରସ୍ତାବ ଗ୍ରହଣ କରାଇ ତାଙ୍କ ବାସଭବନ ନୂଆଦିଲ୍ଲୀକୁ ପଠାଇ ଦିଆଯାଇଥିଲା ।

ଏହାପରେ ଆଉ ଗୋଟିଏ ପଦକ୍ଷେପ ସାର୍ ନେଲେ । ସେ ଚିନ୍ତା କରୁଥାନ୍ତି କିପରି ଆମେମାନେ କରୁଥିବା କାମଗୁଡ଼ିକ ସାଧାରଣ ଲୋକଙ୍କ ପାଖରେ ପହଞ୍ଚିବ ଏବଂ ସେହିପରି ଏକ ସୁଯୋଗକୁ ରୂପ ଦେଲେ **ଚିତ୍ରମେଳା** ନାଁଆରେ । ମୁକ୍ତେଶ୍ୱର ମନ୍ଦିର ପାଖରେ ପ୍ରଥମ କରି ଆରମ୍ଭ ହେଉଥାଏ ଓଡ଼ିଶୀ ଡାନ୍ସ୍ ଫେଷ୍ଟିଭାଲ୍ । ବିଶାଳ ଆୟୋଜନ । ରାଜଧାନୀର ଉଚ୍ଚ ଶ୍ରେଣୀର ଲୋକମାନେ ଏହାକୁ ଉପଭୋଗ କରିବାକୁ ଆସୁଥାନ୍ତି ଏବଂ ଦେଶର ଅନ୍ୟପ୍ରାନ୍ତରୁ ଲୋକ ମଧ୍ୟ । ସେହିପରି ସ୍ଥାନରେ ଆମର ଚିତ୍ରମେଳା କରିବାକୁ ସାର୍ ଦେଇଥିବା ପ୍ରସ୍ତାବକୁ ସରକାର ଆଗ୍ରହ ସହକାରେ ମଞ୍ଜୁର କରିଦେଲେ । ଆମେ ଲାଗିଲୁ କାମରେ, ଫୁଲ୍‌ଦମ୍‌ରେ । ରାତିଦିନ କଲେଜ ସବୁବେଳେ ଖୋଲା । ବିଭିନ୍ନ ବିଭାଗରେ କାମ ଆଗେଇ ଚାଲିଥାଏ । ସାର୍ ସମସ୍ତ କାର୍ଯ୍ୟ ବ୍ୟକ୍ତିଗତ ଭାବରେ ତଦାରଖ କରୁଥାନ୍ତି । ଗୋଟିଏ ସପ୍ତାହ ବ୍ୟାପୀ କଳାମେଳା ଚାଲୁଥିବା ସ୍ଥଳେ କଳାକୃତିକୁ କ୍ରୟ କରିବାରେ ରାଜଧାନୀ ଲୋକଙ୍କର ରୁଚି ଦେଖି ଆମ୍ଭେମାନେ ଚକିତ ହୋଇ ଯାଉଥିଲୁ ଏବଂ ତାହା ସବୁ ବିକ୍ରୟ ହୋଇ ଯାଉଥିବାରୁ ଆମେ ଘରକୁ ଆସି ପୁଣି ନୂଆ କାମନେଇ ସନ୍ଧ୍ୟାବେଳକୁ ସେଠାରେ ହାଜର ହୋଇ ଯାଉଥିଲୁ । ସମସ୍ତେ ଏହି କାର୍ଯ୍ୟର ସଫଳତା ସାର୍‌ଙ୍କୁ ଦେଉଥିଲା ବେଳେ ସାର୍ କିନ୍ତୁ ସଙ୍ଗେ ସଙ୍ଗେ ଆମକୁ ପ୍ରଶଂସା କହୁଥିଲେ 'ପିଲାମାନେ କରିଛନ୍ତି ।' ଏହା ସଫଳ ହେବାପରେ ଏହି କାର୍ଯ୍ୟକୁ ବଡ ଆକାରରେ କଲେଜ ପରିସରରେ ପ୍ରତି ବର୍ଷ ଡିସେମ୍ବର ମାସରେ କରିବାକୁ ସ୍ଥିର ହୁଏ । ଏବଂ କଲେଜ ପରିସରରେ ସବୁ ବିଭାଗର ଅଲଗା ଅଲଗା ଷ୍ଟଲ୍‌ରେ ଆମର କାମ ବିକ୍ରୟ ହେଉଥିବାବେଳେ ଗ୍ରାଫିକ୍ ବିଭାଗର ବିନୋଦ ଭାଇଙ୍କ (ଏବେ ଜଟଣୀ ରେଲଓ୍ୱେ ସ୍କୁଲରେ) ଚା' ଷ୍ଟଲ୍, ଦୀପା ଓ ମମତା ଅପାଙ୍କ ଚାଟ୍ ଷ୍ଟଲ୍ ମଧ୍ୟ କରାଗଲା । କିନ୍ତୁ ଆମର ଚିତ୍ରପରି ବିନୁ ଭାଇଙ୍କ ଚା ଓ ଅପାମାନଙ୍କ ଚାଟ୍ ଶସ୍ତାରେ ମିଳୁ ନଥିଲା । ବଜାର ଅପେକ୍ଷା ଖୁବ୍ ଚଢ଼ା ଦରରେ ବିକ୍ରି ହେଉଥିଲା । ଠିକ୍ ଥ୍ରୀ ଷ୍ଟାର୍ ହୋଟେଲ୍ ପରି । ପରେ ଏହା ଆମ କଲେଜର ବାର୍ଷିକ ଚିତ୍ରମେଳା ଭାରି ଲୋକପ୍ରିୟ ହେଲା । ଖବର କାଗଜରେ ଆମ କଲେଜର ଚର୍ଚ୍ଚା ଆମର ଛୋଟିଆ କଲେଜକୁ ଖୁବ୍ ବଡ଼ କରିଦେଲା । ଅତି ଦୁଃଖର କଥା ଏବେ ଆଉ କେନ୍ଦ୍ର ଲଳିତ କଳା ଏକାଡ଼େମୀରେ କଳାମେଳା ହେଉଛି ନା ଆର୍ଟ୍ କଲେଜରେ ଚିତ୍ରମେଳା ହେଉଛି । କେତେ ଶୀଘ୍ର କୁଆଡ଼େ ସବୁ ଏତେକଥା ବଦଳିଗଲା ।

ଏହିପରି ଅନେକ ପ୍ରୋଗ୍ରାମ୍ ସହିତ ଚିତ୍ରକଳାର ଭିତିରି ରହସ୍ୟ ମଧ୍ୟ ସାର୍ ଆମମାନଙ୍କ ସହ ଆଲୋଚନା କରୁଥାନ୍ତି ଯାହାଦ୍ୱାରା କ୍ଲାସ୍‌ରୁମ୍‌ର ପାଠପଢ଼ା କାର୍ଯ୍ୟକ୍ଷେତ୍ରକୁ ବ୍ୟାପିଗଲା । ସବୁବେଳେ ଖବର କାଗଜରେ କଲେଜର କଥା । ମୁଁ ଯେତେବେଳେ ଘରକୁ ଯାଏ ବାପା କୁହନ୍ତି ବାବୁ, 'ତୁମ କଲେଜ କଥା ବାହାରିଛି ।' ବାପାଙ୍କର ଅନେକ ତୃପ୍ତି । ମୋ ପୁଅ ଏହି କଲେଜରେ ପଢୁଛି । ଗୋଟିଏ ଆଦର୍ଶ କଲେଜ ହିସାବରେ ସାରା ଦେଶରେ ସୁଖ୍ୟାତି ପାଇବା ଦେଖି କେତେକ ଖଳବୁଦ୍ଧି ଲୋକ କହୁଥାନ୍ତି, 'ପାଠୀ ପିଲାମାନଙ୍କୁ ବୁଲା ବେପାରୀ କରିଦେଲା । କ୍ଲାସ୍‌ରେ କେହି ରହୁ ନାହାନ୍ତି ସବୁବେଳେ ପ୍ରୋଗ୍ରାମ୍ କଲେ କ'ଣ ହବ ?' କିନ୍ତୁ ସେମାନେ ବୁଝିପାରିଲେ ନାହିଁ, କଲେଜର ଧରାବନ୍ଧା ପାଠ ଅପେକ୍ଷା ଏହିସବୁ କାର୍ଯ୍ୟକ୍ରମ ଦ୍ୱାରା ପିଲାମାନେ ଅଧିକ ଜ୍ଞାନ ଆହରଣ କରିଥାନ୍ତି । ଅଧିକ ସକ୍ରିୟ ହେଇଥାନ୍ତି । କେହି କେହି ବାହାର ଲୋକ ଆସିଲେ ସାର୍ ପ୍ରତ୍ୟେକ ପିଲାଙ୍କୁ କଥା କୁହାଇ ମଜା ନିଅନ୍ତି । ଅଧ୍ୟାପକ ଓ ଅଧକ୍ଷଙ୍କର ଚାଲି ଚଳଣ, କଥାଭାଷା ନକଲ କରି ପରିବେଷଣ କରିବାରେ ଛାତ୍ରଛାତ୍ରୀମାନଙ୍କୁ ପ୍ରତିବନ୍ଧକ ନଥାଏ । ଏଭଳି ପରିବେଷଣରେ କୁଆଁ ଭାଇ (ପ୍ରଦ୍ୟୁମ୍ନ ମହାନ୍ତି) ସବୁଠୁ ଆଗେ । ପ୍ରତ୍ୟେକ ସାର୍‌ଙ୍କ ଅବିକଳ ନକଲ କରିବାରେ ସେ ମାହିର୍ । କୁଆଁଭାଇ ସମସ୍ତଙ୍କର ପ୍ରିୟପାତ୍ର । ସବୁବେଳେ କଲେଜର ପରିବେଶକୁ ଚଳଚଞ୍ଚଳ କରି ରଖିଥାନ୍ତି । ତାଙ୍କ ସହିତ ତାଳ ଦିଅନ୍ତି ରବିଭାଇ (ରବି ବନିକ) ।

Digitized by srujanika@gmail.com

ସବୁ ବିଷୟରେ ଯେପରି ରୋମାଣ୍ଟିକ୍ ସିନ୍ ରହେ, ତାହା କଲେଜରୁ ବା କିପରି ବାଦ୍ ପଡ଼ିବ । ମାନେ ପ୍ରେମ, ଭଲ ପାଇବା କଥା ମୁଁ କହୁଛି । ଏସବୁ ସାର୍‌ଙ୍କ ଲକ୍ଷ୍ୟରୁ ବାଦ୍ ପଡ଼ି ନଥାଏ । କିଏ କାହା ସହିତ ଗପ କରୁଛି, କିପରି ଭାବେ କଥା ହେଉଛି, ସବୁ ଦେଖି ସାର୍ ଅନୁମାନ କରିନେବେ ସେ ପୁଅ ଝିଅଙ୍କର କିପରି ସମ୍ପର୍କ । ଯାହା ହେଉ ସେ କିନ୍ତୁ ସବୁ ସମ୍ପର୍କର ନାମ ରଖିଥାନ୍ତି 'ସାଙ୍ଗ' । ଏହିଠାରୁ ଆରମ୍ଭ ହୋଇଥାଏ ମନର ଭାବକୁ ପରିପ୍ରକାଶ କରିବାର ଆଉ ଏକ ଦିଗ 'କବିତା' ସେଥିପାଇଁ ଆରମ୍ଭ କରାଗଲା **କଳା ଓ କବିତା**ର ପ୍ରକାଶନ । ସେଥିରେ ବଳଦେବ ସାର୍ ଅଳଙ୍କରଣ କଲେ । ଆଉ ଆମେ ଲେଖିଲୁ କବିତା । ରାତାରାତି ସବୁ ପିଲା କବି ବନିଗଲେ । ଆମ୍ବ ଗଛମୂଳେ ଲେମ୍ବୁ ଗଛ ମୂଳେ ସମସ୍ତେ କବି ବନିଥାନ୍ତି, ଚାଲିଲା କବିତା ଆସର । ସେତେବେଳେ କଲେଜର ବଡ଼ବାବୁ ଗଗନ ବାବୁ, ସାନ ବାବୁ ଓ ସୁବୁଦ୍ଧି ବାବୁ ମଧ୍ୟ ସେଥିରୁ ବାଦ୍ ପଡ଼ନ୍ତେ କିପରି ? କିନ୍ତୁ କବିତାକୁ ଠିକ୍ ଭାବେ ଆବୃତ୍ତି କରିବାର ସମସ୍ୟାକୁ ସୁଧାରିବା ପାଇଁ ଚିତ୍ରଶିଳ୍ପୀ ଅସୀମ ବସୁଙ୍କୁ ଡକାଗଲା । ସେ ଗୋଟିଏ କବିତା ଉତ୍ସବ ମାଧ୍ୟମରେ ଆମକୁ ବତାଇ ଦେଲେ କିପରି କବିତାକୁ ଆବୃତ୍ତି କରାଯାଏ । ସେଥିରୁ ଆଜି ଯେଉଁ କବିତା ମୋର ମନେପଡ଼େ ତାହା ମୋର ସହପାଠିନୀ ନୀରାଲକ୍ଷ୍ମୀ ପଳେଇଙ୍କ 'ମା' ।

ନଅ ମାସ ନଅ ଦିନ ଗର୍ଭରେ ଧରି ଶେଷରେ ଯାହାକୁ ମୁଁ ଜନ୍ମ ଦେଇଛି
ଏଡ଼ିକିଟାରୁ ଏତେବଡ଼ ଯାହାକୁ ମୁଁ ପାଳିପୋଷି ବଡ଼ କଲି
ଯଦି କିଏ ତାକୁ ପଚାରେ ତୁ କାହା ପୁଅ ତ ସେ ତା'ର ବାପା ନାଁ କହୁଛି

(ନୀରାଲକ୍ଷ୍ମୀ ପଲାଇ ଏବେବି ଅବିବାହିତା । ସେ ଭାରତ ସରକାରଙ୍କ ବୟନଶିଳ୍ପ ଓ ହସ୍ତଶିଳ୍ପ ବିଭାଗର ରିଜଓନାଲ୍ ଡାଇରେକ୍ଟର୍ ଭାବେ କଲିକତାଠାରେ ଅବସ୍ଥାପିତ)

ଏବଂ ଅତସୀ ଅପାଙ୍କର କବିତା 'ନାରୀମୁକ୍ତି' :

ନାରୀମୁକ୍ତିର ଦୁହାଇ ଦେଇ ବନ୍ଦୀ କର ନିଜକୁ କିଆଁ
ପୁରୁଷ ତ କେବେ ମୁକ୍ତି ଚାହିଁନି ସାଧୀନତା ପାଇଁ ହୋଇନି ଠିଆ
ନାରୀମୁକ୍ତିର ଦୁହାଇ ଦେଇ ବନ୍ଦୀ କର ନିଜକୁ କିଆଁ

(ଅତସୀ ଅପା ଚିତ୍ରଶିଳ୍ପୀ ଅସୀମ ବସୁଙ୍କ ବଡ଼ଝିଅ, ଆମ କଲେଜର ଅମର ଭାଇଙ୍କ ସଙ୍ଗେ ବାହାହୋଇ ଘର ସଂସାର କଲେଣି । ତାଙ୍କର ଝିଅ ନାଁ ହେଲା ଅଦିତି)

**ସାର୍‌ଙ୍କର ଭୂମିକା କଲେଜ ଠିକ୍ ଗଢ଼ିବାର ଯେତିକି ଗୁରୁତ୍ୱପୂର୍ଣ୍ଣ ତା'ଠାରୁ ଅଧିକ ସୁଶୀଳ ଛାତ୍ରଛାତ୍ରୀଙ୍କ ଭବିଷ୍ୟତ ଗଢ଼ିବାରେ । କିପରି ଚିତ୍ରକଳେ ତାହା ସର୍ବଭାରତୀୟ ସ୍ତରରେ ଖାପ ଖାଇବ ଏବଂ ତାହା କିପରି ଠିକ୍ ଭାବରେ ବନ୍ଧେଇ ହେବ ସେ ବିଷୟରେ ନିଜେ ତଦାରଖ କରିଥାନ୍ତି ।** ଏପରିକି ଛବି ଓ ଭାସ୍କର୍ଯ୍ୟ ପ୍ୟାକିଙ୍ଗ୍ କରି ଷ୍ଟେସନ୍‌ରେ ପହଞ୍ଚିବା ପର୍ଯ୍ୟନ୍ତ ସାର୍ ନିଜେ ଉପସ୍ଥିତ ରହିଥାନ୍ତି ।

ପେଣ୍ଟିଙ୍ଗ୍‌ର ମାନବୃଦ୍ଧି କରିବାକୁ ସୌନ୍ଦର୍ଯ୍ୟବୋଧ ଜ୍ଞାନ ଯେ ନିହାତି ଆବଶ୍ୟକ ତାହା ସବୁ ସମୟରେ ଦୃଷ୍ଟି ଦିଅନ୍ତି ସେ । ପିଲାଙ୍କ ସୃଜନଶୀଳତାକୁ ମାର୍ଜିତ ଓ ଶାଣୀତ କରିବାପାଇଁ ଶାସ୍ତ୍ରୀୟ ନୃତ୍ୟ ସଙ୍ଗୀତର କାର୍ଯ୍ୟକ୍ରମ ମଧ୍ୟ ଆୟୋଜନ କରିଥାନ୍ତି । ଏଥିରେ ନୃତ୍ୟପ୍ରବୀଣା ସଂଯୁକ୍ତା ପାଣିଗ୍ରାହୀ, କୁଚୁପୁଡ଼ୀ ନୃତ୍ୟ ଗୁରୁ ରାଜା ରାଧା ରେଡ୍ଡୀ, ଓଡ଼ିଶୀ ନୃତ୍ୟଗୁରୁ ଦେବ ପ୍ରସାଦ ଦାସ, କଥକ ଶିଳ୍ପୀ ଶାଶ୍ୱତୀ ସେନ ପ୍ରମୁଖ ନୃତ୍ୟଶିଳ୍ପୀମାନଙ୍କୁ କଲେଜକୁ ଡାକି ତାଙ୍କଦ୍ୱାରା ନୃତ୍ୟ ପ୍ରଦର୍ଶନ କରାଇ ଆମମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିଥାନ୍ତି । ବାର୍ଷିକ ଚିତ୍ରକଳା ପ୍ରଦର୍ଶନୀରେ ପ୍ରତ୍ୟେକ ବିଭାଗ ନିଜ ନିଜ ପ୍ରକାଶନ ଉପରେ ଗୁରୁତ୍ୱ ଦେଉଥିବା ଉଲ୍ଲେଖଯୋଗ୍ୟ । ଯେମିତି ଚିତ୍ରକଳା ବିଭାଗରେ **ତୁଳି**, ଡିଜାଇନ୍ ବିଭାଗରେ **ଡିଜାଇନ୍**, ଗ୍ରାଫିକ୍ସ ବିଭାଗରେ **ମୁଦ୍ରା**, ସ୍ଥାପତ୍ୟ ବିଭାଗରେ

Digitized by srujanika@gmail.com

**ଇମେଜ୍** ଓ କଳା ଇତିହାସ ବିଭାଗରେ **ଚିତ୍ର । କଳା ଓ କବିତାର** ପ୍ରକାଶନ ନିୟମିତ ଭାବରେ ପ୍ରକାଶ କରିବାରେ ସେ ସଦା ତତ୍ପର ଥାଆନ୍ତି । ସେ ସବୁକୁ ଟାଇପ୍ ହେବାଠାରୁ କଭର୍ ବନ୍ଧେଇ ପର୍ଯ୍ୟନ୍ତ ନିଜେ ତଦାରଖ କରୁଥିଲେ । ଆଉ ଆମେମାନେ ଦିନରାତି ସେହି କାର୍ଯ୍ୟରେ ଲାଗିଥାଉ । ଏଥିପାଇଁ ସର୍ଗତ ବାବୁଲା ସେନାପତିଙ୍କର ନିର୍ଦ୍ଦିଷ୍ଟ ଭୂମିକା ଥିଲା । ସିଲ୍କ୍ ସ୍କ୍ରୀନ୍ ମାଧ୍ୟମରେ ପ୍ରିଣ୍ଟିଙ୍ଗ୍ ଓଡ଼ିଶାରେ ପ୍ରଥମ କରି କରିଥିବା ବାବୁଲା ସେନାପତି ଆମ କଲେଜରେ ତା'ର ୱାର୍କସପ୍ କରାଇ ଆମ୍ଭମାନଙ୍କୁ ସେ ସମ୍ପର୍କରେ ଅବଗତ କରାଇଥିଲେ ଓ ତା'ପରେ ଆମ କଲେଜରେ ଡି.ଏନ୍. ରାଓ ସାର୍‌ଙ୍କ ପ୍ରଚେଷ୍ଟାରେ ପ୍ରିଣ୍ଟିଙ୍ଗ୍ କରାଯାଇ ତାକୁ ସାରା ଓଡ଼ିଶାରେ ପହଞ୍ଚାଇ ଦିଆଯାଇଥିଲା ।

ଯେକୌଣସି ଶିକ୍ଷାନୁଷ୍ଠାନରେ କିଛିନା କିଛି ଅଭାବ ଥିଲାବେଳେ ଆମ କଲେଜରେ କିଛି ଅଭାବ ନଥିଲା ଭଳି ବୋଧ ହେଉଥିଲା । ଅବଶ୍ୟ ସାର୍ ଓ ଅଧ୍ୟାପକମାନଙ୍କ ସଂଖ୍ୟା ଆବଶ୍ୟକତା ଠାରୁ କମ୍ ଥିଲା । ସେହି ଅଭାବକୁ ସାର୍ ଅନୁଭବ କରିବାକୁ ଦେଉ ନଥିଲେ । ଏଇ ଯେମିତି ଦେଶର ଖ୍ୟାତି ଅର୍ଜନ କରିଥିବା ଚିତ୍ରକରମାନଙ୍କୁ ଆମ କଲେଜ ପରିସର ମଧ୍ୟକୁ ଆମନ୍ତ୍ରଣ କରି ଏ ଅଭାବକୁ ପୂରଣ କରିବା ପାଇଁ ପଦକ୍ଷେପ । ଏହା ମଧ୍ୟରେ ୧୯୮୫ରେ ଟଙ୍କପାଣି ରୋଡ଼ରେ ଥିବା କଲେଜ ଗୃହ କଞ୍ଚନାଛକ ପାଖ ବି.ଜେ.ବି ନଗର, କେ-୬, ଘରକୁ ସ୍ଥାନାନ୍ତରିତ ହେଲା । ଏହାଥିଲା ସାର୍‌ଙ୍କର ସରକାରୀ ବାସଭବନରୁ ମାତ୍ର କେଇ ମିଟର ଦୂର । ଏହି ସ୍ଥାନାନ୍ତରଣ ବିରୋଧରେ କିଛି ପିଲା ଅବଶ୍ୟ ସର ଉତ୍ତୋଳନ କରିଥିଲେ ଜଣେ ଅଧ୍ୟାପକଙ୍କ ନିର୍ଦ୍ଦେଶରେ । ସାର୍‌ଙ୍କ ଉତ୍ତର ଥିଲା ମହାବିଦ୍ୟାଳୟର କ୍ୟାମ୍ପସ୍‌ଭିତରେ ଅଧ୍ୟକ୍ଷଙ୍କ କ୍ୱାଟର ରହିବା ଉଚିତ, ଏହା କିନ୍ତୁ କେତେ ମିଟର ଦୂରମାତ୍ର ।

ବି.କେ. କଲେଜର ଉଚ୍ଚତମ ସୋପାନକୁ ଆରୋହଣ କରିବା ପର୍ବ ଏହି କୋଠାଘରୁ ଆରମ୍ଭ ହୋଇଥାଏ । ଏହିଠାକୁ ସାର୍‌ଙ୍କ ଅନୁରୋଧ କ୍ରମେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ସୁବିଖ୍ୟାତ ଭାସ୍କର ବଲ୍‌ବୀର ସିଂ କଟ୍ ଆସିଥିଲେ । ସେ ତାପଙ୍ଗଠାରେ ଥିବା ପଥର ଖଣିରେ ରହି ପଥର ଭାସ୍କର୍ଯ୍ୟ ଗଢୁଥିଲେ । ତାଙ୍କ କାର୍ଯ୍ୟ ଶୈଳୀରେ ଅନୁପ୍ରାଣିତ ହୋଇ ଅଞ୍ଜନ, ଅଦ୍ୱୈତ ଏବଂ ମୁଁ ଗ୍ଭଲିଲୁ ତାପଙ୍ଗ । ତାଙ୍କ ପାଖରେ ରହି କାମ କରିବାରେ ଯେଉଁ ଆନନ୍ଦ ମିଳୁଥିଲା ତାହା ଅତି ରୋମାଞ୍ଚକର । ଅଧୁନାକ ବନାରସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଆଜି ତାଙ୍କର ନିଖୋଜରେ ତାଙ୍କର ଛାତ୍ରବତ୍ସଳ ସାନ୍ନିଧ ଖୁବ୍ ମନେପଡ଼େ । ସେଠାରେ ତାଙ୍କ ସହିତ ଅଞ୍ଜନ ଓ ଅଦ୍ୱୈତ ପଥରରେ କାମ କରୁଥିଲାବେଳେ ମୁଁ ଜଳରଙ୍ଗରେ କାମ କରୁଥିଲି । ପରବର୍ତ୍ତୀ ପର୍ଯ୍ୟାୟରେ ଅଞ୍ଜନ ଓ ଅଦ୍ୱୈତ ଓଡ଼ିଶାରେ ସାହଣ ପଥରରେ କାମ ଆରମ୍ଭ କଲେ । ଏହା ପୂର୍ବରୁ କାଁ ଭାଁ ପଥରର ଆଧୁନିକ ଭାସ୍କର୍ଯ୍ୟ ହୋଇଥିବା ବେଳେ ଏହି ଦୁଇଜଣ ଆଧୁନିକ ଓଡ଼ିଶାରେ ପଥରରେ ସମସାମୟିକ ଭାସ୍କର୍ଯ୍ୟ କାମ କରିବାରେ ପ୍ରବର୍ତ୍ତକ କହିଲେ ଅତ୍ୟୁକ୍ତି ହେବନାହିଁ । ଏହାପରେ ସାହାଣ ପଥର, ମାର୍ବଲ ଓ ଗ୍ରାନାଇଟ୍‌ରେ ମଧ୍ୟ ବି.କେ. କଲେଜରେ କାର୍ଯ୍ୟ ଅତି ପ୍ରଖର ଗତିରେ ଆଗେଇ ଗ୍ଭଲିଲା । ସେତେବେଳେ ଜଗନ୍ନାଥ, ଶୋଭନ୍ ଓ ପ୍ରତାପ, ଅଞ୍ଜନର ପାଖରେ ଥାଆନ୍ତି କାମ ଶିଖିବା ପାଇଁ । ଏହି ସମୟରେ ଆର୍ତ୍ତ ଭାଇ (ଆର୍ତ୍ତବନ୍ଧୁ ରାଉତ, ଏବେ ଅହମଦାବାଦରେ) ଭୋପାଳ ବିନାଲେରେ (ଦୁଇବର୍ଷରେ ଥରେ ହେଉଥିବା ଚିତ୍ରକଳା ପ୍ରଦର୍ଶନୀ) କଳା ରଙ୍ଗରେ ଅଲୋଡ଼ା ପ୍ଲାଷ୍ଟିକ୍‌ରେ ତିଆରି କୁଆ ଭାସ୍କର୍ଯ୍ୟ ପାଇଁ ପୁରସ୍କୃତ ହେଲେ । ସେହି ସମୟରେ ଏହି ପୁରସ୍କାର ଓଡ଼ିଶାର କଳା କ୍ଷେତ୍ରରେ ସବୁଠାରୁ ବଡ଼ ଥିଲା ଓ ଆମ୍ଭମାନଙ୍କୁ କାର୍ଯ୍ୟ କରିବାରେ ବହୁତ ଅନୁପ୍ରାଣିତ କରିଥିଲା ।

ଏହା ପରେ ସାର୍ ଦିଲ୍ଲୀ ଇଣ୍ଟରନେସ୍‌ନାଲ୍ ଟ୍ରେଡ୍ ଫେୟାର୍‌ରେ ଓଡ଼ିଶା ପାଭିଲିଅନ୍‌ର ଭିଜୁଆଲାଇଜର୍ ହିସାବରେ କମିଶନ୍ ପାଇଲେ । ସେଠାରେ କଲେଜ୍ ଷ୍ଟୁଡେଣ୍ଟମାନେ କାମ କରୁଥାନ୍ତି । ଏଥିରେ ସରକାରୀ କାମ ଯେତିକି ହେଉଥାଏ ତା'ଠାରୁ ବେଶୀ ଭାଗ ଥାଏ ଦିଲ୍ଲୀ ଆର୍ଟ୍ ମୁଭ୍‌ମେଣ୍ଟ ବିଷୟରେ ଖୋଜ୍ ଖବର ରଖିବା । ପରେ ପରେ ସାର୍ ସୁଇଡ଼େନ୍ ଓ ସୋଭିଏତ୍ ରଷ୍ୟରେ ହେଉଥିବା

Digitized by srujanika@gmail.com

**ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ**ରେ ଭିଜୁଆଲାଇଜର୍ ଭାବରେ ନିଯୁକ୍ତି ପାଇଥିଲେ । ସେହି ସମୟରେ କଥା ଲେଖିବସିଲେ ଗୋଟିଏ ବହି ହେବ ଯାହା ସାର୍ ତାଙ୍କର ଗଳ୍ପ ସଂକଳନ **ଭବଘୁରା ଭବନାଥ** ରେ ଲେଖିସାରିଛନ୍ତି । ସାରା ଭାରତରୁ କଳାକୃତିକୁ ସଂଗ୍ରହ କରିବା ଦାୟିତ୍ୱରେ ଆମେ ଥିଲୁ । ଯିଏ ଯେଉଁଠାକୁ ଗଲେ ସାର୍‌ଙ୍କ କିଛି ଆପତ୍ତି ନଥାଏ । ଆମ୍ଭମାନଙ୍କୁ ସେହି ସାଧୀନତା ମିଳିଥାଏ । କେହି କେହି ଉଡ଼ାଜାହାଜରେ ଯାଇ ଉପରେ ଉଡ଼ିବାର ଆକାଂକ୍ଷାକୁ ଚରିତାର୍ଥ ମଧ୍ୟ କରୁଥିଲେ ।

ଏହି ସମୟରେ ଆମେରିକାର ଏକ ଉଦ୍ୟମୀ ଯୁବକ ସହିତ ସାର୍‌ଙ୍କ ଦେଖାହୁଏ । ସେ ଯୁବକ ଜାଣିବାକୁ ଚାହୁଁଥାଏ କମ୍ ମୂଲ୍ୟ ନେଇ କିଏ ତା'ର ପ୍ରୋଜେକ୍ଟରେ ଚିତ୍ର କାମ କରିବ । ଦିଲ୍ଲୀରୁ ବୁଲାବୁଲି ସାରି ସାର୍‌ଙ୍କ ସହିତ ତା'ର କଥୋପକଥନ ଭୁବନେଶ୍ୱରରେ ଆରମ୍ଭ ହୁଏ । **ସାର୍ ସେହି ସମୟରେ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ କାର୍ଯ୍ୟରେ ବ୍ୟସ୍ତ ଥିବାରୁ ସାର୍‌ଙ୍କ ପ୍ରିୟ ଛାତ୍ରମାନଙ୍କ ମଧ୍ୟରୁ ଜଣେ ମୋର ବନ୍ଧୁ ଜୟନ୍ତଙ୍କୁ ସେ ଯୁବକ ସହିତ ପରିଚୟ କରାଇ ଦିଅନ୍ତି । ସେ ଯୁବକର ନାମ ଜ୍ୟାକ୍ ।** ଏହାପରେ ଜ୍ୟାକ୍ ଭୁବନେଶ୍ୱରରେ କଳ୍ପନା ଅଞ୍ଚଳରେ ଘର ଭଡ଼ା ନେଇ କାର୍ଯ୍ୟ ଆରମ୍ଭ କରେ । ତା'ର ଅଦ୍ଭୁତ ଖିଆଲ୍ । ତାର ଯୋଜନା ଥିଲା ପୃଥିବୀର ମାନଚିତ୍ରରେ ଦେଶ ମହାଦେଶଗୁଡ଼ିକୁ ବିଭିନ୍ନ ପଶୁର ଆକାରରେ ପରିକଳ୍ପନା କରିବା ଏବଂ ଏହାକୁ ଏକ ବୃହତ୍ କାନ୍‌ଭାସ୍‌ରେ ପେଣ୍ଟିଙ୍ଗ୍ କରିବା । ଭୁବନେଶ୍ୱରରେ ଏତେ ବଡ଼ କାନ୍‌ଭାସ୍ ମିଳୁ ନଥିବାରୁ ଏହାକୁ କଲିକତାରୁ ଆଣିବାକୁ ଜୟନ୍ତ ଓ ସେ ଉଡ଼ାଜାହାଜରେ ଯାଆନ୍ତି । ଏହା କିନ୍ତୁ ଆମ୍ଭମାନଙ୍କ ଗହଣରେ ଚହଳ ପକେଇଦେଲା । ତା'ପରେ ଜ୍ୟାକ୍ ସହିତ ବହୁବାର ଭାବ ଆଦାନପ୍ରଦାନ ଘଟିଛି, ଏପରିକି ତାହା ସହିତ ହିନ୍ଦୀ ସିନେମା ଦେଖାହୋଇଛି । ସେ ସିନେମାର ଗୀତ ନାଚ ଦେଖି କହେ, It is very funny, ସେ ହିନ୍ଦୀ ବୁଝେନି, ଯାହା କେବଳ ଦେଖେ ଓ ଖୁସୀ ହୁଏ । କାରଣ ଇଂରାଜୀ ସିନେମାରେ ଏଭଳି ଗୀତ ନଥାଏ । ଜ୍ୟାକ୍‌ର କାମ ସରୁ ସରୁ କିନ୍ତୁ ଅନେକ ଡେରି । ସେତେବେଳକୁ ଭୁବନେଶ୍ୱରରେ ପ୍ରବଳ ଗରମ ପଡ଼ିଲାଣି । ଥଣ୍ଡା ଦେଶର ଜ୍ୟାକ୍ ଦେହରେ ଏ ଗରମ ଜଳବାୟୁ ସହିଲାନି । ସେ ବାହୁଡ଼ିଲା ଜୟନ୍ତ ଉପରେ କାର୍ଯ୍ୟର ସମସ୍ତ ଭାର ସମର୍ପି ଦେଇ । ଏପରିକି ଏହାକୁ ଚିକାଗୋରେ ପହଞ୍ଚାଇବା ଦାୟିତ୍ୱ ମଧ୍ୟ ବନ୍ଧୁ ଜୟନ୍ତ ପୂରା କଲେ । **ଚିକାଗୋରେ ଜୟନ୍ତ ଜ୍ୟାକ୍ ଘରେ ରହି ବିଦେଶୀ ପାନୀୟ ଓ ଫଳରସ ପାନକରି ତିନି ମାସପରେ ଯେତେବେଳେ ଭୁବନେଶ୍ୱରକୁ ବହୁ ସ୍ମୃତି ଧରି ବାହୁଡ଼େ ଆମେ କିନ୍ତୁ ପୂର୍ବର ଜୟନ୍ତ ନ ପାଇ ଆମେରିକାନ୍ ପରି ଦିଶୁଥିବା ଜୟନ୍ତଙ୍କୁ ପାଇଲୁ ।**

ଏହି ସମୟରେ କେ-୬ରେ ଚାଲିଥିବା କଲେଜ ପାଖକୁ ଲାଗି କେ-୮ ରେ ଆମେ ଭଡ଼ା ରହିଥାଉ । କଲେଜର ପ୍ରତ୍ୟେକ କାମରେ ସମାନ ଭାଗୀଦାର ହେଉଥିବା ରାମହରି ଜେନା (ଭାଇ) ଆମ ସହିତ ଥାଆନ୍ତି । ପ୍ରତ୍ୟେକ କାର୍ଯ୍ୟରେ ରାମ୍ ଭାଇଙ୍କର ଆମ ସହିତ ଭାରି ପଟୁଥାଏ । ସାର୍ ଓ ଆମ ମଧ୍ୟରେ ସେ ଯେପରି ମିଡ଼ିଲ୍ ମ୍ୟାନ୍ । ସାର୍ କିନ୍ତୁ ତାଙ୍କୁ ଭାରି ପସନ୍ଦ କରୁଥାନ୍ତି । କେହି କେହି କୁହନ୍ତି ସାର୍ ତାଙ୍କ କଥାନୁସାରେ ଅନେକ କାର୍ଯ୍ୟ କରିଥାନ୍ତି । ସେତେବେଳେ ରାମହରି ଭାଇ ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରରେ ଗ୍ରାଫିକ୍ ସୁପରଭାଇଜର୍ । ଗୋଟେ ଘରେ ଆଉ ପାଖରେ ରହୁଥିବା ଦୃଷ୍ଟିରୁ ସାର୍‌ଙ୍କର ମନରେ ଆସିଲା ପ୍ରାତଃ ଭ୍ରମଣ କଥା । ଦିନେ ରାତି ନ ପାହୁଣୁ ଆମ ମେସ୍‌ରେ ସାର୍ ହାଜର । ମେସ୍‌ରେ ସାର୍‌ଙ୍କୁ ଦେଖି ଆମେ ଧଡ଼ପଡ଼ ହୋଇ ଉଠିଲାବେଳକୁ ସାର୍ କହିଲେ, ଚାଲଯିବା । କୁଆଡ଼େ ଯିବା କିଛି ନ ପଚାରି ନଜାଣି ସାର୍‌ଙ୍କ ପଛରେ ଚାଲିଲୁ । ବି.ଜେ.ବି ନଗର, ବ୍ରିଟ୍ କଲୋନୀ, ବରଗଡ଼ରେ ଯେତେ ପିଲା ଓ ଅଧ୍ୟାପକ ରହୁଥିଲେ ସମସ୍ତଙ୍କୁ ସେ ନିଜର ପ୍ରଭାତ ଚାଲିରେ ସାମିଲ୍ କରି ଶେଷରେ ଆସି କଲେଜ ପରିସରରେ ଭୁବନା ଚା' ଷ୍ଟଲ୍‌ରେ ପହଞ୍ଚିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ସେ ଷ୍ଟଲ୍ ପରିଚାଳନା ଭାର ଫକୀରା ନେଇଥିଲା । ସେଠାରେ ପିଆ ହେବ ଚା' । ସମସ୍ତେ ପିଇବେ ପଇସା କିଏ ଦେବ ତାହା ସାର୍ ପିଇ ସାରିଲା ବେଳକୁ ଚା' କହିବେ । ପ୍ରତିଦିନ ଅଲଗା ଅଲଗା ବନ୍ଧୁ

Digitized by srujanika@gmail.com

ଆତିଥ୍ୟ ଦାୟିତ୍ୱରେ ରହିବେ । ଆଉ ସେହି ଗାଲିରେ ଯେଉଁମାନେ ସାମିଲ୍ ହେଉଥାନ୍ତି ସେମାନେ ହେଲେ ରାମହରି ଭାଇ, ଡ଼ି.ଏନ୍. ରାଓ ସାର୍, ଚନ୍ଦ୍ର ରାଓ ସାର୍, ସୁଧାଂଶୁ ଶତପଥୀ ସାର୍ ଆଉ ସବୁ ଆମେମାନେ । ସୁଧାଂଶୁ ସାର୍‌ଙ୍କୁ ତାଙ୍କ ପଛରେ ଆମେ 'ତ' ସାର୍ ଡାକୁ, କାରଣ ସେ କଥାରେ କଥାରେ 'ତ' ବହୁବାର ବ୍ୟବହାର କରନ୍ତି । ଏପରି ଗ୍ସ' ପର୍ବ ସରିଲାବେଳକୁ ଦିନ ଆଠ । ତା'ପରେ କଲେଜ ପାଇଁ ପ୍ରସ୍ତୁତି । ଏପରି ସାରାଦିନ ଚଳଚଞ୍ଚଳ ହୁଏ କଲେଜ । ସନ୍ଧ୍ୟାରୁ ପୁଣି ଆସର । ବେଳ କାଳ ଉଣ୍ଡି ପୁଣି ସମସ୍ତେ ଗଡ଼ନ୍ତି ଆଲୋଚନାକୁ । ସେଠାରେ ପ୍ରାଗୈତିହାସିକ କଳା ଇତିହାସ ପାଖରୁ ସମସାମୟିକ କଳା ପର୍ଯ୍ୟନ୍ତ କଥା ପଡ଼େ । କଲେଜର ଆଲୋଚନଚକ୍ରମାନଙ୍କରେ ବହୁ ବିଜ୍ଞ ପଣ୍ଡିତମାନେ ଯୋଗ ଦିଅନ୍ତି । ସେମାନଙ୍କ ମଧ୍ୟରୁ ପ୍ରଫେସର ଭବେଶ ସାନ୍ୟାଲ୍, ପ୍ରଫେସର ଜ୍ୟୋତି ଭଟ୍ଟ, ଆନନ୍ଦଦେବ, ପ୍ରଫେସର ଅଜିତ୍ ଚକ୍ରବର୍ତ୍ତୀ, ପ୍ରଫେସର କାଞ୍ଚନ ଚକ୍ରବର୍ତ୍ତୀ, ପ୍ରଫେସର ଜୟନ୍ତ ଚକ୍ରବର୍ତ୍ତୀ ଓ ଇଂଲଣ୍ଡ ଡାର୍ଟିଙ୍ଗଟନ୍‌ର ବବି କକ୍ସ୍‌ଙ୍କର ଗେଷ୍ଟ ଲେକ୍‌ଚରର୍ ଭାବେ ଆଗମନ ଉଲ୍ଲେଖଯୋଗ୍ୟ । ଏମାନେ ସବୁ ଭାରତୀୟ ସାଂପ୍ରତିକ ଚିତ୍ରକଳା ଜଗତର ଜଣେ ଜଣେ ରଥୀ, ବିଭିନ୍ନ ବିଶ୍ୱବିଦ୍ୟାଳୟର ନାମଜାଦା କଳା ଶିକ୍ଷକ ।

ବ୍ରିଟିଶ୍ କାଉନ୍‌ସିଲ୍‌ର ଏକ ପ୍ରୋଜେକ୍ଟରେ ଆମ କଲେଜକୁ ଆସିଥାନ୍ତି ଶ୍ରୀମତୀ ବବି କକ୍ସ୍ । କଲେଜରେ ଭବ୍ୟ ସାଗତ ପରେ ଆରମ୍ଭ ହୋଇଥାଏ ୱାର୍କସପ୍ । ସେ ଟେପେଷ୍ଟ୍ରି ବିଷୟରେ ଡେମନ୍‌ଷ୍ଟ୍ରେସନ୍ ଦେଉଥାନ୍ତି । ଆମ କଲେଜରେ ବହୁ ପିଲା ଏଥିରେ ଅଂଶ ଗ୍ରହଣ କରୁଥାନ୍ତି । ଏଥିରେ ବିନି (ବିଦ୍ୟୁତ୍‌ଲତା ପାଟଶାଣୀ) କିନ୍ତୁ ଆଗରେ ଥାଏ । ବବିଙ୍କର ଅତି ପ୍ରିୟ ହୋଇଯାଇଥାଏ । ସେ ତାଙ୍କୁ ଉପଦେଶ ଦିଅନ୍ତି Commonwealth Foundationର Fellowship ପାଇଁ ଆବେଦନ କରିବାକୁ । ଏଥିରେ ବିନି କୃତକାର୍ଯ୍ୟ ହୋଇଥିଲେ ମଧ୍ୟ ଆମ ସମାଜର କେତେକ ଅନିବାର୍ଯ୍ୟ ଲୌକିକ ବାଧାବନ୍ଧନ ଯୋଗୁଁ ଏହା କାର୍ଯ୍ୟକାରୀ ହୋଇପାରିନଥିଲା । **କିନ୍ତୁ ଏହାପୂର୍ବରୁ ସବୁ ବନ୍ଧୁମାନଙ୍କର ପ୍ରଶ୍ନଥିଲା ଖଣ୍ଡି ଇଂରାଜୀ କହୁଥିବା ସରଳା ଝିଅ ବିନି, କିପରି ଇଂଲଣ୍ଡରେ ଏକବର୍ଷ ରହିବ । ଏହାପରେ ଅବଶ୍ୟ ସେଠାରେ ଅନୁଷ୍ଠିତ 'ଭିଉ ଅଫ୍ ଦି ନିଉ' ପ୍ରଦର୍ଶନୀରେ ତା'ର ଗୋଟେ ଟେପେଷ୍ଟ୍ରି ପ୍ରଦର୍ଶୀତ ହୋଇ ବିକ୍ରି ବି ହୋଇଯାଇଥାଏ ୩୦୦ ପାଉଣ୍ଡ୍ ମୂଲ୍ୟରେ ।** ସେତେବେଳର ଭାରତୀୟ ମୁଦ୍ରାରେ ପାଖାପାଖି ୯ ହଜାର ଟଙ୍କା । ଏହି ଅର୍ଥରେ ପ୍ରଭାବିତ ହୋଇ ବିନି ଅନେକ ଟେପେଷ୍ଟ୍ରି କରିଥିଲେ ମଧ୍ୟ ତାହାର ଆଦର ଓଡ଼ିଶାରେ ନଥିବାରୁ ପରବର୍ତ୍ତୀ ପର୍ଯ୍ୟାୟରେ ଗ୍ରାଫିକ୍‌କୁ ମୁହଁ ଫେରାଇ ଦେଇଥିଲା । କଲେଜକୁ ଭଲ ପାଇ, ଘାତ ପ୍ରତିଘାତ ମଧ୍ୟରେ, ଛାତ୍ର ଜୀବନରେ ଅନେକ ସ୍ମୃତି ଆଜି ଆଉ ତାଜା ହୋଇ ରହିନାହିଁ । କିନ୍ତୁ ଆଜି ବି କଲେଜ ବିରୋଧରେ କେହି ମତବ୍ୟକ୍ତ କଲେ ତାକୁ ମୁଁ ସହଜରେ ଗ୍ରହଣ କରି ପାରେନି ।

ଏହାପରେ କେତେଖଣ୍ଡି କଳାମେଘ ସାର୍‌ଙ୍କ ଆଦର୍ଶ ଅନୁଷ୍ଠାନର ଆକାଶକୁ ଗ୍ରାସ କରିଥିଲା ଯାହା ଆଜିର ବି.କେ. କଲେଜରେ ବର୍ଷଣ ମୁଖର ଉଚାଟ ହେଇ ସମସ୍ତ ଉଦ୍ଦୀପନା ଭସେଇ ନେଉଛି, ସିକ୍ତ କରୁଛି । ଏହା ମଧ୍ୟରେ ପାଞ୍ଚ ବର୍ଷ ଅତିବାହିତ ହୋଇଥାଏ । ଛାତ୍ରମାନଙ୍କର ମୁଖ୍ୟ ସମସ୍ୟା ପରୀକ୍ଷା । ଏଥିପାଇଁ ସାର୍‌ଙ୍କ ସହ ବହୁ ଛାତ୍ରଛାତ୍ରୀଙ୍କର ମନୋମାଳିନ୍ୟ । ଶେଷରେ ମେଜର୍ ପି.କେ. ଦାସ, ଉତ୍କଳ ୟୁନିଭର୍‌ସିଟିର ଭାଇସ୍ ଚାନ୍‌ସେଲର୍ ଥିବାବେଳେ ମନମୁଗ୍ଧକର କଲେଜର ପ୍ରଦର୍ଶନୀ ଦେଖି ଭି.ସି.ଙ୍କର ସତନ୍ତ୍ର କ୍ଷମତାକୁ କାର୍ଯ୍ୟକାରୀ କରି କଲେଜର ପରୀକ୍ଷା ସମ୍ବନ୍ଧୀୟ ନାନା ଅଡୁଆକୁ ସଜାଡ଼ି ଥିଲେ । ଏହି କାର୍ଯ୍ୟ ପରେ ସାର୍‌ଙ୍କ ପ୍ରୟାସ ଥାଏ କିପରି କଲେଜକୁ ନିଜସ ଘର ମିଳିବ । ସରକାର ଖଣ୍ଡଗିରି ପାଖରେ ମାତ୍ର ପାଞ୍ଚ ଏକର ଜମି କଲେଜ ପାଇଁ ଦେଲେ । ଏଥିରେ କ'ଣ ହେବ ? ସାର୍‌ଙ୍କର ସପ୍ନ ଫିକା ପଡ଼ିଆସୁଥାଏ । ଯାହା ବି ହେଉ ଅଞ୍ଜନ କହିଲାପରି 'କାନ୍ଦୁଥିବ, ଯାହା ପାଉଥିବ ବାନ୍ଧୁଥିବ' ତେଣୁ ସେହି ଜମିରେ ବିଲ୍‌ଡିଙ୍ଗ୍‌ର ପରିକଳ୍ପନା କଲେ । ତାହା ଅବିକଳ କଲେଜର ଅଷ୍ଟଦଳ ପଦ୍ମମଣ୍ଡଳ ପ୍ରତୀକ ଉପରେ ଗଢ଼ାଗଲା । ଯଦିଓ ସରକାରୀ ସ୍ଥପତିଙ୍କ ଅଯଥା ହସ୍ତକ୍ଷେପ ଫଳରେ ଏହାକୁ କିଛିଟା ପରିବର୍ତ୍ତନ କରାଯାଇଛି । ମଝିରେ ମଝିରେ ଆମେ ସାର୍‌ଙ୍କ

Digitized by srujanika@gmail.com

ସହିତ ସେଠାରେ କୋଠା ଦେଖିବା ପାଇଁ ଗଲେ ଆମ ସହିତ ରାଓ ସାର୍ କହି ବସନ୍ତି ମୋର ଏହି ଜାଗାରେ ଗ୍ରାଫିକ୍ ଷ୍ଟୁଡ଼ିଓ ହେବ । ଆମେ କହୁ ଆମର ପେଣ୍ଟିଙ୍ଗ୍ ଡିପାର୍ଟମେଣ୍ଟ୍ ରୟାଲ୍ ଡିପାର୍ଟମେଣ୍ଟ ତେଣୁ ଆମର ଷ୍ଟୁଡ଼ିଓ ଉପର ମହଲାରେ ହେବ । କିଛିଦିନ ପରେ ତାହା ବାସ୍ତବରେ ପରିଣତ ହେଲା । ଅସଂପୂର୍ଣ୍ଣ କୋଠାକୁ କଲେଜ ସ୍ଥାନାନ୍ତରିତ କରିବାକୁ ସାର୍‌ଙ୍କର ମନ ହେଉନଥାଏ । ଉପରେ ଦର୍ଶାଇଥିବା କଳାମେଘ କଲେଜକୁ ବେଶୀ ବେଶୀ ଗ୍ରାସ କରିବାକୁ ବସିଥାଏ, ଲାଗୁଥାଏ ବିଷ ବର୍ଷିବ । କ'ଣ ହେଲା କେଜାଣି ସାର୍‌ଙ୍କ ପ୍ରିୟ କଲେଜକୁ ସାର୍ ପରିତ୍ୟାଗ କରିବାକୁ ସ୍ଥିର କଲେ । ତାହା ଦେଖିବାକୁ ଆମେ ଆଉ ଛାତ୍ର ହିସାବରେ ନଥିଲୁ । ଆମର ଅନେକ ସପ୍ନ କେଉଁ ଦୂରରେ ଛାଡ଼ି ଆସିଲେ ବି ନଜର ଥାଏ ସେହି ବହୁ ସ୍ମୃତି ବିଜଡ଼ିତ ଆମର ପ୍ରିୟ ବି.କେ. କଲେଜକୁ । ଶିକ୍ଷା ସମାପ୍ତି ପରେ କର୍ମକ୍ଷେତ୍ର । ସାର୍‌ଙ୍କ ସହିତ କେତେ ଯେ ମନୋମାଳିନ୍ୟ, ରାଗରୁଷା ତାହା ଛାତ୍ର ଶିକ୍ଷକ ମଧ୍ୟରେ ଏକ ସାଧାରଣ କଥା, କିନ୍ତୁ ସାର୍ ସେସବୁ ପଛରେ ପକାଇ ସ୍ଥିର କଲେ କଲେଜ ପରିତ୍ୟାଗ କରିବାକୁ ।

ଏହି କଥାକୁ ଅନେକ ବିଶ୍ୱାସ କରିନଥିଲେ ମଧ କଥାଟି ଥିଲା ସତ୍ୟ । ସାର୍‌ଙ୍କର ଅଧୁରା ସପ୍ନକୁ ଖଣ୍ଡଗିରିରେ ଛାଡ଼ିଦେଇ ଚାଲିଗଲେ କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚିବ ହୋଇ । ଭୁବନେଶ୍ୱରରେ ରହିଗଲା ଆମର ବି.କେ. କଲେଜ । ମୁଁ ସେତେବେଳକୁ ଖଲ୍ଲିକୋଟ ସରକାରୀ ଚାରୁ ଓ କାରୁକଳା ମହାବିଦ୍ୟାଳୟରେ ଚିତ୍ରକଳା ବିଭାଗରେ ଅଧ୍ୟାପକ ଭାବେ ଯୋଗ ଦେଇଥାଏ । ସାର୍‌ଙ୍କ ସହ ଆଲୋଚନା ବେଳେ ଏହି ପ୍ରସଙ୍ଗ ମୁଁ ପଚାରିଥିଲି, ସାର୍ ଆପଣ କଲେଜକୁ ଛାଡ଼ି କାହିଁକି ଗଲେ ? ଏହି ପ୍ରଶ୍ନର ଉତ୍ତରରେ ସେ କହିଥିଲେ, ଏହି ଅଧୁରା ସପ୍ନକୁ ମୁଁ ତୁମ୍ଭମାନଙ୍କ ହାତରେ ଦେଇଯାଉଛି । କିନ୍ତୁ ଏହି ଉତ୍ତରରେ ମୁଁ ସନ୍ତୁଷ୍ଟ ହୋଇପାରି ନଥିଲି । ଛାତ୍ର ସମୟରେ ଗୋଟିଏ କବିତା ଯାହା ଅନ୍ୟ ଉଦ୍ଦେଶ୍ୟରେ ଲେଖା ଯାଇଥିଲା ତାହା ଏଠାରେ ଅବତାରଣା କରୁଛି ।

**ଦୂରକୁ ଦୂରକୁ ଚାଲିଗଲ ତୁମେ ମୋତେ ପାସୋରିବା ପାଇଁ**
**ଯେତେ ପାସୋରିଲେ ତୁମର ସ୍ମୃତିକୁ ଭୁଲି ମୁଁ ପାରିବି ନାହିଁ ।**
**ଘନ ଅନ୍ଧକାରେ ତୁମକୁ ଖୋଜିବି, ତୁମର ସପ୍ନକୁ ସାକାର କରିବି**
**ସେଦିନର ସେହି ସ୍ମୃତି-ବିଜଡ଼ିତ ଦିବାରଜନୀ ଏଠାରେ ପାଉନାହିଁ,**
**ଦୂରକୁ ଦୂରକୁ ଚାଲିଗଲ ତୁମେ ମୋତେ ପାସୋରିବା ପାଇଁ ।**

ଆଜି ସପରିବାର ଖଣ୍ଡଗିରି ବୁଲିଗଲେ ଦୂରରୁ ସେହି ପ୍ରିୟ ବି.କେ. କଲେଜକୁ ଦେଖିଲେ ମୁଁ ବିନିକୁ (ଏବେ ମୋର ଧର୍ମପତ୍ନୀ) ସଂଭ୍ରମରେ ପଚାରେ ଏହି କ'ଣ ସେହି କଲେଜ ଯେଉଁଠାରେ ଆମେ ପଢୁଥିଲେ ?

Digitized by srujanika@gmail.com

ଏମ୍. ଶୋଭନ କୁମାର

## ଡକ୍ଟର ଦିନନାଥ ପାଠୀ : ସାର୍ ବି ବନ୍ଧୁ ବି

ପାଠୀ ମଉସାଙ୍କୁ 'ପାଠୀ ସାର୍' ଡାକିବାକୁ ଛ'ଅ ମାସ ଲାଗିଗଲା। ତଥାପି ବେଳେ ବେଳେ କ୍ଲାସ୍ ରୁମ୍‌ରେ ପାଠୀ ମଉସା ମୁହଁରେ ପଶିଯାଏ। ଯାହାହେଉ କିଛିଦିନ ପରେ ପାଠୀ ସାର୍ କହିବା ଧୀରେ ଧୀରେ ଅଭ୍ୟାସରେ ପରିଣତ ହେଇଗଲା। ପାଠୀ-ମଉସା ମ୍ୟୁଜିୟମ୍‌ରେ କଳା ବିଭାଗର କ୍ୟୁରେଟର୍ ଚାକିରି କରୁଥିଲା ବେଳେ ବହୁବାର ଆମ ଘରକୁ ଆସିଛନ୍ତି। ଆମ ଘର ଗଞ୍ଜାମ ଦିଗପହଣ୍ଡି ପାଖ ଖେଡ଼ଙ୍ଗପୁର ଗାଁରେ। ମୋ ବାପା ବଡ଼ଖେମୁଣ୍ଡି ହାଇସ୍କୁଲରେ ପଢୁଥିଲେ। ପାଠୀ ମଉସାଙ୍କ ଗାଁ ଦିଗପହଣ୍ଡି ଓ ସେ ବାପାଙ୍କ ସହପାଠୀ। ଏସବୁ ସଂପର୍କ ଛନ୍ଦିହେଇ ପାରିବାରିକ ସ୍ତରରେ ପହଞ୍ଚିଯାଏ। ଏଣୁ ପରବର୍ତ୍ତୀ ସମୟର ପାଠୀ ସାର୍ ମୋର ମଉସା ହିଁ ଥିଲେ। ସେଇ ମ୍ୟୁଜିୟମ୍ କଲୋନୀରେ ହିଁ ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ।

ବି.କେ. କଲେଜରେ ଥରେ ସିଲେକ୍‌ସନ୍ ହେଲାପରେ ବି, ବାପା ଆର୍ଟ୍ ପଢ଼ିବାକୁ ମୋତେ ଅନୁମତି ଦେଲେନାହିଁ। ବାପାଙ୍କ ଇଚ୍ଛା ଥିଲା ମୁଁ ବମ୍ବେର ଜେ.ଜେ. କଲେଜରେ ଆର୍କିଟେକ୍‌ଚର୍ ପଢ଼େ। ମ୍ୟୁଜିୟମ୍‌ର ଅଧିକାଂଶ ମଉସାମାନେ ମଧ ବାପାଙ୍କୁ ବୁଝେଇ ଦେଇଥିଲେ ଯେ ବି.କେ. କଲେଜରେ ମୋତେ ନ ପଢ଼ାଇବା ପାଇଁ। ବି.କେରେ ପଢ଼ିଲେ ପୁଅର ଭବିଷ୍ୟତ ଅନ୍ଧକାର ହେଇଯିବ। ବଙ୍ଗ ଖଲ୍ଲିକୋଟ ଭଲ। ମୋତେ ମଧ ଦେଖାହେଲେ କହନ୍ତି, ଶୋଭନ୍, ତୁ ପାଠୀ କଲେଜକୁ ଯାଆନା, ତାଙ୍କୁ ନିଜକୁ ତ ଆର୍ଟ୍ ଆସେନି, ସେଠି ତୁ କ'ଣ ଶିଖିବୁ। କିନ୍ତୁ ଆର୍ଟ୍ ପଢ଼ିବା ପାଇଁ ମୋର ଭାରି ଇଚ୍ଛାଥାଏ। ବାପାଙ୍କୁ ଯେତେ ତେଲେଇଲେ ବି ସେ ରାଜି ହେଉ ନଥାନ୍ତି। ମା'ଙ୍କଠାରୁ ପଇସାନେଇ ପୁଣି ଦରଖାସ୍ତ କଲି। ଇଣ୍ଟରଭ୍ୟୁ ଆଗଦିନ ମା'ଙ୍କୁ ନେଇ ଡି.ଏନ୍. ସାରଙ୍କ (ଅଧ୍ୟାପକ ଡି.ଏନ୍. ରାଓ) ଘରକୁ ଗଲି। ମା ତାଙ୍କୁ ତାମୁଡୁ (ସାନ ଭାଇ) ବୋଲି ଡାକନ୍ତି। ମା ଓ ଡି.ଏନ୍. ସାର୍ ସାଇ ପଡ଼ିଶା, ଭଞ୍ଜନଗରର ଗୋଟିଏ ସାହିର।

ଇଣ୍ଟରଭ୍ୟୁ ଦିନ ପାଠୀ ମଉସା ମୋତେ ପ୍ରଶ୍ନ ପଚାରିଲେ 'କିହୋ, ମ୍ୟୁଜିୟମ୍ କଲୋନୀ, ଏଥର ଆର୍ଟ୍ ପଢ଼ିବଟି ?' ଆଉ ରାଓ ସାର୍ ଆଗରୁ ମୋତେ କହିଦେଇଥିବା ଦୁଇଗୋଟି ପ୍ରଶ୍ନ ମଧ ପଚରାଗଲା। ମୁଁ ଚଟାପଟ୍ ଉତ୍ତର ଦେଇ ବାହାଦୁରୀ ନେଲି। ଏତିକିରେ ସାକ୍ଷାତ୍‌କାର ଶେଷ ହେଲା। ମୋ ନାଁ ଷ୍ଟାଇପେଣ୍ଡ ତାଲିକାରେ ବି ରହିଲା।

ପାଠୀ ମଉସା ସେତେବେଳେ କଞ୍ଚନା ଫ୍ଲାଟ୍‌ର ସରକାରୀ ଘରେ ରହୁଥିଲେ। ତାଙ୍କ ପଡ଼ିଶା ସରକାରୀ ଘରେ ଗୁଣନିଧି ମାଷ୍ଟ୍ରେଙ୍କ ଫ୍ଲାଟ୍‌ସ୍କୁଲରେ ପ୍ରାଥମିକ ଶ୍ରେଣୀରେ ମୁଁ ଆଗରୁ ପଢୁଥାଏ। ପ୍ରତିଦିନ ଆମ କାମ ହେଲା ପାଠୀ ମଉସାଙ୍କ ଘର ବାରିପଟୁ ଜିନିଷ ଖୋଜିବା। ଆମ ସାଙ୍ଗମାନେ କହନ୍ତି ତାଙ୍କ ବାରିପଟୁ ଅନେକ ପ୍ରକାର ରଙ୍ଗ ଓ ଆର୍ଟ୍ ଜିନିଷ ମିଳେ। ମୁଁ ପିଲାଙ୍କ ପାଇବା ଦେଖିଛି, କିନ୍ତୁ ମୁଁ କେବେ କିଛି ପାଇପାରି ନାହିଁ।

ମୁଁ ଆଜି ମୋର ପୁରୁଣା ଦୁଇଟି ଦିନକୁ ଭାରି ମନେ ପକାଏ। ମନେ ମନେ ଖୁସି ହୁଏ। ତାକୁ ହିଁ କଳାକାର ଜୀବନର ସଫଳତାର ଦାୟୀ ରଖେ। ପ୍ରଥମଟି ରାଓ ସାର୍‌ଙ୍କ ସହିତ ସାକ୍ଷତରେ ପ୍ରଥମ ଦିନରେ ତେଲୁଗୁରେ ମୋର ଜଣେ ସାଙ୍ଗକୁ ଦେଖାଇ ତୁଳନା କରି ବୁଝେଇଥିବା କଥା, ଅନ୍ୟଟି ପାଠୀ ସାର୍ କିଛି ବଢ଼େଇଙ୍କୁ ନେଇ ଇଣ୍ଡିଆ ଇଣ୍ଟରନେସ୍‌ନାଲ୍ ଟ୍ରେଡ୍ ଫେୟାର୍ କାମରେ ଦିଲ୍ଲୀ ପଠାଇଥିବା କଥା।

Digitized by srujanika@gmail.com

ଦିନେ ପାଠୀ ସାର୍ ମୋତେ ଡାକି ପଚାରିଲେ, ''କିହୋ, ମ୍ୟୁଜିୟମ୍ କଲୋନୀ, ତମେ କେବେ ଦିଲ୍ଲୀ ଯାଇଛ ? କିଛି ଲୋକଙ୍କୁ ସାଙ୍ଗରେ ନେଇ ଦିଲ୍ଲୀ ଯାଇ ପାରିବ ? ହିନ୍ଦୀ କହି ଆସୁଛି ?'' ମୁଁ କୌଣସି ଉତ୍ତର ଫେରେଇବା ଅବସ୍ଥାରେ ନଥାଏ । ଆଗରୁ ତ ଦିଲ୍ଲୀ ଯାଇ ନଥାଏ । ମନରେ ଡର ଥାଏ । ଭଲ ହିନ୍ଦୀ ବି କହିପାରୁନଥାଏ । କିନ୍ତୁ ମନରେ ସାହସ ବାନ୍ଧି କହିଲି ହଁ ଦିଲ୍ଲୀ ଯାଇପାରିବି । ମୁଁ ଲୋକଙ୍କୁ ନେଇ ଦିଲ୍ଲୀ ପହଞ୍ଚିବା ପୂର୍ବରୁ ପାଠୀ ସାର୍ ଉଡ଼ାଜାହାଜରେ ଆସି ଦିଲ୍ଲୀ ପହଞ୍ଚିଯାଇଥାନ୍ତି । ମୁଁ ଦିଲ୍ଲୀ ପହଞ୍ଚି ଦେଖିଲି ଆମ କଲେଜର ଅନେକ ଛାତ୍ର ସେଠି ପହଞ୍ଚି ଯାଇଛନ୍ତି । ପାଠୀ ସାର୍ ସେମାନଙ୍କ ସଙ୍ଗେ ବେଶ୍ ଥଟ୍ଟା ତାମସା ଜମଉଥାନ୍ତି । ବିଭିନ୍ନ ବିଭାଗୀୟ ଅଫିସର୍ ଓ ଉଚ୍ଚପଦସ୍ଥ କର୍ମକର୍ତ୍ତାଙ୍କ ସଙ୍ଗେ ପାଠୀ ସାର୍ ଯେଉଁଭଳି କଥାବର୍ତ୍ତା କରୁଥିଲେ ଓ ସାର୍‌ଙ୍କ ପ୍ରତି ସେମାନଙ୍କ ଖାତିରି ଦେଖି ସାର୍‌ଙ୍କ ବିରୁଦ୍ଧରେ ମ୍ୟୁଜିୟମ୍ ମଉସାମାନେ କହିଥିବା ନୀଚ କଥା କେତେ ଯେ ଅସୂୟାପ୍ରଣୋଦିତ ତାହା ମୁଁ ହୃଦୟଙ୍ଗମ କରିପାରିଲି । ଆଶ୍ଚର୍ଯ୍ୟ ଲାଗିଲା ଜଣେ ଚିତ୍ରକାର ଓ ଆର୍ଟ୍ କଲେଜର ଅଧକ୍ଷ ଏତେ ପାରଙ୍ଗମ ହେଇପାରେ ! ମୁଁ ଥତମତ ହେଉଥିବା ଦେଖି ପାଠୀ ସାର୍ ପଚାରିଲେ, ''କିହୋ, ମ୍ୟୁଜିୟମ୍ କଲୋନୀ, କି କାମ ଚାଲିଛି ? ଟିକିଏ କାମ ବନ୍ଦ ରହୁ । ନ୍ୟାସ୍‌ନାଲ୍ ମ୍ୟୁଜିୟମ୍ ଓ ଆର୍ଟ୍ ଗ୍ୟାଲେରୀ ଦେଖିଆସ । ଆଉ ଭୁବନେଶ୍ୱର ଫେରିଲାବେଳେ ଚାନ୍ଦିନୀଚୌକରୁ ମା'ଙ୍କ ପାଇଁ ଗୋଟେ ଶାଲ ଆଉ ବାପାଙ୍କ ପାଇଁ ସ୍ୱଇଟର୍ ନେବାକୁ ଭୁଲିବନି'' । ଆମେ ଫେରିଲା ବେଳେ ଆମ ସମସ୍ତଙ୍କୁ ଗୋଟିଏ ଗୋଟିଏ କମ୍ବଳ ଓ ଗୋଟିଏ ଗୋଟିଏ ପଞ୍ଜାବୀ ମିଳିଲା । ସମସ୍ତେ ଭାରି ଖୁସି । କିନ୍ତୁ ସାର୍ ପିନ୍ଧିଥିବା ପଞ୍ଜାବୀଟି ମୋତେ ଭାରି ପସନ୍ଦ ଥିଲା । ଖଦୀ ଗ୍ରାମଦ୍ୟୋଗ ଭବନରୁ ସେହି ରଙ୍ଗର ପଞ୍ଜାବୀଟିଏ ବାଛି ବାଛି କିଣିଲି । ସାର୍‌ଙ୍କ ବାଁପଟ କାନ୍ଧ ଓ ମୋର ବାଁପଟ ହାତ ଟିକିଏ ଅଡୁଆ, ପଞ୍ଜାବୀଟି ପିନ୍ଧିଲାପରେ ଠିକ୍ ସାର୍‌ଙ୍କ ଭଳି ଦେଖାଗଲି । ତା ପରଦିନ ଆମେ ଟ୍ରେନ୍‌ରେ ଚଢ଼ି ଭୁବନେଶ୍ୱର ପହଞ୍ଚିଲୁ । ମୁଁ ପ୍ରଥମକରି ସେହି ପଞ୍ଜାବୀଟି ମଡ଼େଇ କଲେଜ ବାହାରିଲି । ଦୂରରୁ ପିଲା ମୋତେ ଦେଖି ପାଠୀ ସାର୍ ଆସୁଛନ୍ତି ଭାବି କ୍ଲାସ୍ ରୁମ୍‌ରେ ପଶିଗଲେ ଓ କ୍ଲାସ୍‌ରେ ପାଟିତୁଣ୍ଡ କରୁଥିବା ପିଲା ଚୁପ୍ ହେଇଗଲେ । ପ୍ରିନସ୍‌ପାଲ୍‌ଙ୍କ ଅଫିସ୍ ଆଗରେ ବସୁଥିବା ରେଣୁ ମଧ ସଂଭ୍ରମରେ ବେଳେଅଧେ ମୋତେ ଦେଖି ଠିଆ ହେଇପଡ଼ିଥିବ ।

ଦିଲ୍ଲୀରୁ ଫେରିବାପରେ ମୋର ଆଖି ଅଧା ଖୋଲିଗଲା । ଜୀବନରେ ଆର୍ଟିଷ୍ଟ୍ ହେବା ଝୁଙ୍କ୍ ବଢ଼ିଗଲା । ପାଠୀ ସାର୍‌ଙ୍କ ସାଙ୍ଗରେ ମଧ ସଂପର୍କ ମଜାଳିଆ ହେଇ ଆସିଲା । ପାଠୀ ସାର୍‌ଙ୍କ ଜଳରଙ୍ଗ (Water colour) ଛବି ମୋତେ ଭାରି ପ୍ରଭାବିତ କରିଛି । ସାର୍ ମୋ କାମର ପ୍ରଶଂସା କରିବା ଆରମ୍ଭ କରିଦେଲେ । ମୁଁ ଖୁସିରେ ଫାଟି ପଡୁଥାଏ । ଛାତି କୁଣ୍ଢେ ମୋଟ ହେଇଯାଉଥାଏ । ଭାବିଦେଲି ସାର୍‌ଙ୍କ ପରି ପେଣ୍ଟର୍ ହେବି । ସାର୍ ପୂରା ସମୟ କଲେଜରେ କଟାନ୍ତି । ଏପରିକି ରାତିରେ ମଧ କଲେଜରେ ରହିଯାଆନ୍ତି । ସେ ସମୟରେ ଅନେକ ସିନିୟର୍ ଭାଇମାନେ ମଧ ରାତିରେ କଲେଜରେ ରହି କାମ କରନ୍ତି ଓ ସେଇଠି ହିଁ ଶୋଇ ଯାଆନ୍ତି । ଆମଘର କଲେଜଠାରୁ ଡାକେ ବାଟ ହେଇଥିଲେ ମଧ ମୁଁ ଘରେ ଗଣ୍ଡେ ଖାଇଦେଇ କଲେଜକୁ ଚାଲିଆସେ ଆଉ ଏଇଠି ହିଁ ରହିଯାଏ ।

ପଞ୍ଚମ ବର୍ଷର ଭାସ୍କର୍ଯ୍ୟ ବିଭାଗ ଛାତ୍ରମାନେ ବ୍ରୋଞ୍ଜ ଢଳେଇ ଶିଖିବା ପାଇଁ କାମ ଆରମ୍ଭ କରିଦେଇଥାନ୍ତି । ମୁଁ ପଢୁଥାଏ ଦ୍ୱିତୀୟ ବର୍ଷରେ । ସେମାନଙ୍କୁ ଦେଖି ମୁଁ ମଧ ବ୍ରୋଞ୍ଜ ଢଳେଇ ପାଇଁ ମହମର ଛୋଟିଆ ଘୋଡ଼ାଟିଏ ଆରମ୍ଭ କରିଦେଇଥାଏ । ଏହା ଭାସ୍କର୍ଯ୍ୟ ବିଭାଗର ସାର୍‌ଙ୍କ ଆଖିରେ ଗଲାନି । ମୋ ମନରେ ଡର । ସାର ରାଗିଲେ ପରୀକ୍ଷାରେ ମାର୍କ କାଟିଦେବେ । ଶୀତରାତି, ଲୁଚେଇ ଲୁଚେଇ ମୁଁ ମହମକାମ କରୁଥାଏ । ପାଠୀ ସାର୍ ଏକଲମ୍ବା ଓଭର କୋଟ୍ ପିନ୍ଧି ପହଞ୍ଚିଲେ । ପଚାରିଲେ, ''ବ୍ରୋଞ୍ଜ କରୁଛ ? କର, କର, କାଷ୍ଟିଙ୍ଗ ମଧ କର'' । ଏତକ କଥା ମୋତେ ଉତ୍ସାହିତ କରିଦେଲା ।

Digitized by srujanika@gmail.com

ପୁଣି ସେ କହିଲେ 'ସ୍କଲପ୍‌ଚର୍ ନିଅ'। ମୋତେ କିନ୍ତୁ ଏ ମାଟି କାଦୁଅ କାମ ପସନ୍ଦ ନଥାଏ। ସାର୍‌ଙ୍କ ସେଦିନର ସେତିକି କଥାରେ ମୁଁ ପେଣ୍ଟିଙ୍ଗ୍‌ରେ ସର୍ବୋଚ୍ଚ ନମ୍ବର ରଖିଥିଲେ ମଧ୍ୟ ସ୍କଲପ୍‌ଚର୍ ନେଲି। ମୁଁ ଶୁଣିଛି କେତେ କହିଛନ୍ତି ମୋର ହାତ ଖରାପ, ମୁଁ କି ବା ଭାସ୍କର୍ଯ୍ୟ କରିବି। ଲୋକେ ସନ୍ଦେହ ପ୍ରକାଶ କରିଛନ୍ତି। କିନ୍ତୁ ପାଠୀ ସାର୍ ବୋଧହୁଏ ମୋ ଭବିଷ୍ୟତ ଜାଣି ପାରିଥିଲେ।

ସେ ବର୍ଷ ଭାସ୍କର୍ଯ୍ୟ ବିଭାଗରେ ମୋର ଚତୁର୍ଥ ବର୍ଷ। ସାର୍‌ଙ୍କ ଆଶୀର୍ବାଦରେ କାମ ବଢ଼ି ଚାଲିଛି। ଆମେ ରାତିସାରା ପଥର ବାଡ଼େଇ ବାଡ଼େଇ ସାର୍‌ଙ୍କୁ ଶୁଆଇ ଦେଉ ନଥାଉ। ଆମେ ସବୁ କାମ କରିବା ଦେଖି ସେ ଖୁସି ହେଇଯାଆନ୍ତି। ତାଙ୍କୁ ଲାଗେ ସେ ଯିମିତି ଆମ ସାଙ୍ଗରେ ମିଶି କାମ କରୁଛନ୍ତି। ବହୁତ ଡେରିଯାଏ ଆମ ପାଖରେ ବସି ଗପ ଜମଉଥାନ୍ତି। ଭାସ୍କର୍ଯ୍ୟ ସଂପର୍କରେ ଅନେକ କଥା କହନ୍ତି। ଦୁଇ ପାହୁଣ୍ଡ ଦୂରରେ ଥିବା ନିଜ ଘରକୁ ଯାଇ ଖାଇ ଆସିବାକୁ ଇଚ୍ଛା ହେଉନଥାଏ। କଲେଜରେ ହିଁ ଡାଲମାଭାତର ଆୟୋଜନ ହୁଏ। ସାର୍‌ବି ଚାନ୍ଦା ଦେବେ ଆଉ ଆମ ସାଙ୍ଗରେ ଖାଇବେ। କଲେଜର ପିଅନଠାରୁ ଆରମ୍ଭ କରି ପ୍ରିନସ୍‌ପାଲ୍‌ଙ୍କ ପର୍ଯ୍ୟନ୍ତ ସମସ୍ତେ ଏକା ଭଳି କଲେଜରେ ଚଳୁଥିଲେ।

ଦିନେ ଦିନେ କ୍ଲାସ ଚାଲିଥିବା ସମୟରେ ସାର୍‌ଙ୍କ ଚକର୍ ପଡ଼େ। ସେ ବିଦେଶରେ ଦେଖିଥିବା ବିଭିନ୍ନ ଭାସ୍କର୍ଯ୍ୟ, କଳାକାର ଓ ସେମାନଙ୍କ କର୍ମଶାଳାମାନଙ୍କ ସଂପର୍କରେ ତଥ୍ୟ ବାଢ଼ନ୍ତି। ସାର୍‌ଙ୍କ କଥା ଶୁଣି ମୁଁ ବିଦେଶ ଯିବାର ସ୍ୱପ୍ନ ଦେଖେ। ସେଇଠି କଲେଜରେ ଥାଇ ମଧ୍ୟ ଆମେ କଳ୍ପନାରେ ଲଣ୍ଡନ, ପ୍ୟାରିସ୍ ପଳେଇଯାଉ। **ଥରେ ଥରେ କ'ଣ ହୁଏ କେଜାଣି ପାଠୀ ସାର୍ ଆମ ଷ୍ଟୁଡ଼ିଓର ଅଳିଆ ଅସନା ସଫା କରିବସନ୍ତି। ନିଜେ ଝାଡୁଧରି ଧୂଳି ଝାଡ଼ନ୍ତି। ଆଉ ଥରେ ଥରେ ପଚା ସଢ଼ା ନାଳ ଭିତରେ ହାତ ପୂରେଇ ସଫା କରନ୍ତି। ଆମେ ସମସ୍ତେ ସାର୍‌ଙ୍କ ସାଙ୍ଗରେ ମିଶି କାମରେ ଲାଗିପଡୁ।** ଆମ ସ୍କଲପ୍‌ଚର୍ ଷ୍ଟୁଡ଼ିଓ ତାରପୋଲିନ୍ ଢଙ୍କା ଛାତ ତଳେ ଘର ଅଗଣା ଭିତରେ ହେଉଥିଲା ଓ ଘରଯାକର ପଚ୍ଚାନାଳ ଆମ ଷ୍ଟୁଡ଼ିଓ ଭିତର ଦେଇ ଯାଇଥିଲା। ଆଶ୍ଚର୍ଯ୍ୟ, କଲେଜର ଅଧ୍ୟକ୍ଷ ବୋଲି ଟିକିଏ ଗର୍ବ ନାହିଁ। ଯିଏ ଟିକିଏ ସ୍ନେହ ଦେଲା, ଆଗ ପଛ ନ ଦେଖି ନ ଭାବି ଗୋଟାପଣ ତା'ର ହେଇଯାଆନ୍ତି।

ବି.କେ. କଲେଜରେ ପାଠପଢ଼ା ସରିଲାପରେ ଆମେ କେଇଜଣ ପିଲା ପି.ଜି କରିବା ପାଇଁ ବନାରସ, ବରୋଦା, ଶାନ୍ତିନିକେତନ ଗଲୁ। ଓଡ଼ିଶା ଟପିଲେ ଆମ ସମସ୍ତଙ୍କର ସାର୍ ପାଠୀ ସାର୍। ସ୍କଲପ୍‌ଚର୍ ହେଉ କି ପେଣ୍ଟିଙ୍ଗ୍ ହେଉ ଆଉ କାହାକୁ ବାହାରେ ଚିହ୍ନନ୍ତି ନାହିଁ। ତାଙ୍କର ଛାତ୍ର ବୋଲି ପରିଚୟ ଦେଲେ କିଏ କିଏ ପ୍ରଶଂସା ତ ଆଉ କିଏ କିଏ ନିନ୍ଦା ମଧ୍ୟ କରନ୍ତି। ମୁଁ ବନାରସରେ ପଢୁଥାଏ। ଦିନେ ଶୁଣିଲି ସାର୍ କଲେଜ ଛାଡ଼ି ଏବେ ଦିଲ୍ଲୀରେ। ମୋର ବି.ଏଚ.ୟୁରେ ଏମ୍.ଏଫ୍.ଏ ସରିଲାପରେ ମୁଁ ମଧ୍ୟ ଦିଲ୍ଲୀରେ ପହଞ୍ଚିଲି। ମୋ ଆଗରୁ ବହୁପିଲା ଦିଲ୍ଲୀ ଆସି ଯାଇଥାନ୍ତି ଓ ନିଜ ନିଜ ଆସ୍ଥାନ ଜମେଇ ସାରିଥାନ୍ତି।

ଦିଲ୍ଲୀରେ ଘର ଭଡ଼ାଟିଏ ନେଇ ରହିଲି। ମୋ କାମ ପାଇଁ ତ ନିହାତି ଷ୍ଟୁଡ଼ିଓଟିଏ ଦରକାର। ଅଧିକାଂଶ ସମୟ ସାର୍‌ଙ୍କ ବାହାୱଲ୍‌ପୁର୍ ହାଉସ୍ କ୍ୱାର୍ଟର୍‌ରେ ପହଞ୍ଚେ। ସେଠି ଲାଗେ ବି.କେ. କଲେଜର ପରିବେଶ ନାହିଁ। ଭାରି ଜୋର୍‌ସୋର୍ ରାଜନୀତି ଚାଲିଛି। ଲାଗିଲା ସାର୍ ମଧ୍ୟ ବଦଳି ଯାଇଛନ୍ତି। ସେ ମଧ୍ୟ ଛାତ୍ରମାନଙ୍କ ରାଜନୀତିରେ ଭାଗ ନେଉଛନ୍ତି। କିନ୍ତୁ ହେଇପାରେ ମୋର ଅଭିମାନରୁ ଏଭଳି ମୋତେ ଲାଗିଥାଇପାରେ। ଏଭଳି ଭାବି ନେବାରେ ମୋର ମୂର୍ଖାମି ବି ଥାଇପାରେ। ତଥାପି ଭଲ ଲାଗିଲା ସାର୍ ଲଳିତ କଳା ଏକାଡ଼େମୀ ଭଳି ସର୍ବଭାରତୀୟ ବିରାଟ ଅନୁଷ୍ଠାନ ଦାୟିତ୍ୱରେ ଥାଇ ମଧ୍ୟ ଆମେ ସବୁ ଛାତ୍ରଛାତ୍ରୀଙ୍କ ବିଷୟରେ ଚିନ୍ତା କରନ୍ତି। ଘରକୁ ଆସିଲେ ଆଉ କିଏ ନ କହିଲେ ବି ସାର୍ ନିଜେ କହନ୍ତି।

Digitized by srujanika@gmail.com

ରୁହ ଭାତଡ଼ାଲମା ଖାଇ ଦେଇଯିବ । ଅଧିକାଂଶ ଥର ଭାତଡ଼ାଲମା ଖାଉ ଖାଉ ଡେରି ହେଇଯାଏ । ଆଉ ଆମେ ସମସ୍ତେ ସାର୍‌ଙ୍କ ଡ୍ରଇଁ ରୁମ୍‌ରେ ହିଁ ଗଡ଼ିପଡୁ । ସାର୍ ବି ଆମ ସାଙ୍ଗରେ ସୋଫା ଉପରେ ଗଡ଼ିପଡ଼ନ୍ତି ।

ପାଠୀ ସାର୍ ଲଳିତକଳା ଏକାଡ଼େମୀର ସଚିବ ହିସାବରେ ଓ ବିଶେଷକରି ଓଡ଼ିଆ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ନ୍ୟାସନାଲ୍ ଆୱାର୍ଡ଼, ପରଚେଜ୍ ଓ ଲଳିତ କଳାର ବିଭିନ୍ନ କାର୍ଯ୍ୟକ୍ରମରେ ଓଡ଼ିଆମାନଙ୍କୁ ସାମିଲ କରୁଥାନ୍ତି । ଯିଏ ପାଇଗଲା ସେ ଖୁସି, ଯିଏ ନ ପାଇଲା ସେ ପଛରେ ଶୋଧିଲା । ଗାଳିଖାଇବା ସାର ହୁଏ । ମୁଁ ଭଲଭଲ କାମ କରି ପ୍ରଦର୍ଶନୀମାନଙ୍କରେ ଦେଉଥାଏ । ତଥାପି କିଛି ହେଉନଥାଏ । ବାହାରେ ଘରଭଡ଼ା ଦେଇନପାରି ମୁଁ ଶେଷରେ ସାର୍‌ଙ୍କ ପତିତପାବନ ମେସ୍‌ରେ ଦାଖଲ ହେଇଗଲି । ଦିଲ୍ଲୀରେ ଆର୍ଟିଷ୍ଟ୍ ହେଇ ବଞ୍ଚିବା ପାଇଁ ଯେତିକି ଅର୍ଥ ସମ୍ବଳ ଦରକାର ମୋର ନଥାଏ । ଶେଷରେ ବୁଝିଲି ଖାଲି କାମ କଲେ କି ଅଭିମାନ କଲେ ଫଳ ଫଳିବନି । କାମ ସହିତ ରାଜନୀତିଟି ଦରକାର । ଆମ ଓଡ଼ିଆଙ୍କ ସବୁଥିରେ ରାଜନୀତି । ଏପରିକି ପଲିଟିକ୍‌ସ୍‌ରେ ମଧ ରାଜନୀତି । ସାର୍ ଚାହୁଁଥିଲେ ବି ମୋତେ ବିଶେଷ ସୁଯୋଗ ଦେଇପାରୁ ନଥାନ୍ତି । **ପିଲାଙ୍କ ଲମ୍ବା ଲାଇନ୍ ଲାଗିଛି । ଆମେ ଦକେ ପିଲା । ଆଉ ଓଡ଼ିଶାର କଳାକାରଙ୍କ ପାଇଁ ସେ ତ ଜଣେ ମାତ୍ର ଦଇବବିଧାତା, ହର୍ତ୍ତାକର୍ତ୍ତା ଆଉ ବିଧାତା । ବୋଧହୁଏ ଆଜି ଯେଉଁ କେତେ ଜଣ ଓଡ଼ିଆ କଳାକାର ଜାତୀୟସ୍ତରରେ ତିଷ୍ଠି ରହିଛନ୍ତି, ସାର୍ ନଥିଲେ ସେମାନଙ୍କ ପତ୍ତା ରହି ନଥାନ୍ତା । ଏ କଳାଜଗତର ଜଂଜାଳ ଭିତରେ କୁଆଡ଼େ ଲୁଚିହଜି ଯାଇଥାନ୍ତେ । ଯାହା ହେଉ ଏବେ ଆମର ନ୍ୟାସନାଲ୍ ଆୱାର୍ଡ଼ ସଂଖ୍ୟା ବଢ଼ିବଢ଼ି ସାତ ଆଠକୁ ପହଞ୍ଚିଲାଣି ।** ମୋର ସାଙ୍ଗସାଥିମାନେ ମଧ ପାଇବାକୁ ଲାଗିଲେଣି । ସାର୍‌ଙ୍କ ପତିତପାବନ ମେସ୍‌ରେ ରହିବାରୁ ଗୋଟିଏ ବଡ଼ ସୁଯୋଗ ମିଳିଲା । ସାର୍‌ଙ୍କୁ ଦେଖା କରିବାକୁ ଭାରତବର୍ଷର ବିଭିନ୍ନ ପ୍ରଦେଶରୁ ଯେତେ ବଡ଼ ବଡ଼ ଆର୍ଟିଷ୍ଟମାନେ ଆସନ୍ତି ତାଙ୍କ ସଙ୍ଗେ ଦେଖାସାକ୍ଷାତ ହୁଏ । ଦିଲ୍ଲୀର ସବୁ ନାମଜାଦା ଚିତ୍ରକରଙ୍କ ସାଙ୍ଗରେ ମଧ ଘନିଷ୍ଠତା ବଢ଼ିଲା । ସାର୍ ଓ ଆମେ ଓଡ଼ିଆ ପିଲା ମିଶି ରବୀନ୍ଦ୍ର ଭବନରେ ଗୋଟିଏ ମସ୍ତବଡ଼ ଚିତ୍ର ପ୍ରଦର୍ଶନୀ **ବିଅଣ୍ଡ୍ ଦ ସୋରସ୍** ଆୟୋଜନ କଲୁ । ସେଠି ମୋର ଦୁଇଟି ଟେରାକୋଟା ଭାସ୍କର୍ଯ୍ୟ ଓ ଦୁଇଟି ଇନ୍‌ଷ୍ଟଲେସନ୍ ପ୍ରଦର୍ଶିତ ହେଇଥିଲା । ଦିଲ୍ଲୀର ବଡ଼ ବଡ଼ ଶିଳ୍ପୀମାନେ ତାକୁ ଦେଖି ଖୁବ୍ ତାରିଫ୍ କଲେ । ମୋ ମନରେ ସାହସ ପଶିଲା ।

ଭାଗ୍ୟକୁ ଚୀନରେ ଦୁଇବର୍ଷ ସିରାମିକ୍ କଳାରେ ଗବେଷଣା କରିବା ପାଇଁ ଭାରତ ସରକାରଙ୍କ ତରଫରୁ ମୋତେ ବୃତ୍ତି ମିଳିଲା । ମେସ୍ ପିଲା ଓ ସାର୍ ମିଶି ଧୁମ୍ ଧାମ୍‌ରେ ମୋତେ ବିଦାୟ ସମ୍ବର୍ଦ୍ଧନା ଦେଲେ । ସାର୍ ବଳେଇ ବଳେଇ ତାଙ୍କର ଫର୍ ଓଭର୍ କୋଟ୍‌ଟି ମୋତେ ଦେଇଥାନ୍ତି । କହିଥାନ୍ତି ଶୋଭନ୍ ଚୀନରେ ବହୁତ ଶୀତ ଏଇଟି ସାଙ୍ଗରେ ଥାଉ । ଚୀନରେ ପହଞ୍ଚି ପ୍ରଥମେ ଚୀନଭାଷା ଶିଖିବାକୁ ପଡ଼ିଲା । ନୂଆ ଦେଶ, ନୂଆ ଲୋକ, ନୂଆ ପରିବେଶ ନିଜକୁ ଅଡୁଆ ଅଡୁଆ ଲାଗୁଥାଏ । ଖାପ ଖୁଆଇ ହେଉ ନଥାଏ । ଖୁବ୍ ଏକା ଏକା ଲାଗୁଥାଏ । ଭାରତ ଲେଉଟି ଯିବାକୁ ମନ କହୁଥାଏ । ସାର୍‌ଙ୍କ ପାଖରୁ ଲମ୍ବା ଲମ୍ବା ଚମତ୍କାର ହାତଲେଖା ଚିଠି ପାଉଥାଏ । ଏକୁଟିଆ ଲାଗିଲେ ଏ ଚିଠିଗୁଡ଼ିକୁ ବାରମ୍ବାର ପଢ଼ି ମନକୁ ବୁଝେଇ ଦେଉଥାଏ ।

ମନେ ମନେ ଭାବିଲି ପାଠୀ ସାର୍‌ଙ୍କୁ ଚୀନ ନିମନ୍ତ୍ରଣ କରିବି । ଚୀନ ଦେଶ, ତା'ର କଳା ସଂସ୍କୃତି ପ୍ରତି ପାଠୀ ସାର୍‌ଙ୍କ ଅସମ୍ଭବ ଆକର୍ଷଣ ଥାଏ । ସିଏ ତ ଆମକୁ ବି.କେ କଲେଜରେ ଚୀନ, ଜାପାନ କଳା ପଢ଼ାଉଥାନ୍ତି ଏଣୁ ଏଭଳି ନିମନ୍ତ୍ରଣ ତାଙ୍କୁ ଯଥେଷ୍ଟ ଆନନ୍ଦ ଦେବ । ସେତେବେଳକୁ ପାଠୀ ସାର୍ ଲଳିତ କଳା ଏକାଡ଼େମୀ ଛାଡ଼ି ଜବାହରଲାଲ୍ ନେହୁରୁ ଫେଲୋସିପ୍ ପାଇ ଓଡ଼ିଶାର

Digitized by srujanika@gmail.com

ଚିତ୍ରକଳା ସଂପର୍କରେ ଗବେଷଣା କରୁଥାନ୍ତି । ମୁଁ ଚୀନରେ ନିଜର ଚିତ୍ର ପ୍ରଦର୍ଶନୀ ମାନ କରୁଥାଏ ଏବଂ ବିଭିନ୍ନ ବିଶ୍ୱପ୍ରଦର୍ଶନୀମାନଙ୍କରେ ଭାଗ ନେଉଥାଏ । ମୋର ଇଚ୍ଛାଥାଏ ପାଠୀ ସାର୍ ଓ ମୁଁ ମିଶି ଚୀନରେ ପ୍ରଦର୍ଶନୀ କରନ୍ତୁ ।

ମୁଁ ଚୀନ୍ ଆସିଗଲା ପରେ ଜଗନ୍ନାଥ ଭାଇ ଜାପାନରେ ଗବେଷଣା କରିବା ପାଇଁ ଜାପାନ ଫାଉଣ୍ଡେସନ୍ ଫେଲୋସିପ୍ ପାଇ କ୍ୟୋଟୋରେ ପହଞ୍ଚିଥାନ୍ତି । ଆମେ ଦୁଇବନ୍ଧୁ ଟେଲିଫୋନ୍‌ରେ କଥା ହେଉଥାଉ । ଜଗା ଭାଇଙ୍କ ବି ଇଚ୍ଛାଥାଏ ସାର୍ ଚୀନ ଆସନ୍ତୁ, ସେଠୁ ଜାପାନ ଆସି ବୁଲାବୁଲି କରିଯିବେ । ଆମେ ଦୁଇଜଣ ମନସ୍ଥ କଲୁ ଆମ ନିଜ ସ୍କଲରସିପ୍ ପଇସାରେ ସାର୍‌ଙ୍କ ଉଡ଼ାଜାହାଜ ଖର୍ଚ୍ଚ ବହନ କରିବୁ । ଯଦିଓ ନିଜେ ଟିକେଟ କରି ଚୀନ ଜାପାନ ପରିଦର୍ଶନରେ ଆସିବା ସାର୍‌ଙ୍କ ପାଇଁ ଅସୁବିଧା ନଥିଲା ତଥାପି ଜାପାନ ଫାଉଣ୍ଡେସନ୍ ଫେଲୋସିପ୍ ପଇସା ବେଶୀ, ତେଣୁ ଜଗା ଭାଇ ପିଠିଏ ଟିକେଟ ଦେବାପାଇଁ ରାଜି ହୋଇଗଲେ । ସାର୍ ଆଉ ଅଧା ଟିକେଟ୍ ହାତରୁ ମିଶେଇ ଚୀନରେ ଆସି ପହଞ୍ଚିଗଲେ ।

ଚୀନ୍‌ରେ ପାଠୀ ସାର୍‌ଙ୍କ ପାଇଁ ଚୀନ ଦେଶର କଳା ମହାବିଦ୍ୟାଳୟ ଓ ସାଉଥ୍‌ଇଷ୍ଟ ଏସିଆନ୍ ଷ୍ଟଡ଼ିଜ୍ ପକ୍ଷରୁ ଦୁଇଟି ଭାଷଣ ଦେବାର ଆୟୋଜନ ହେଇଥିଲା । ମୁଁ ପ୍ରଫେସର୍‌ଙ୍କୁ ଅନୁରୋଧ କରି ଏତକ ଆୟୋଜନ କରିଥାଏ । ଭାଷଣର ବିଷୟବସ୍ତୁ ଥିଲା ଚୀନ ଓ ଭାରତର କଳାତ୍ମକ ଆକଳନ ଓ ସାଂସ୍କୃତିକ ବିନିମୟ । ତା ସହିତ ସପ୍ତମ ବିଶ୍ୱ କଳା ପ୍ରଦର୍ଶନୀରେ ଭାଗନେବା ପାଇଁ ଚୀନ୍ ପକ୍ଷରୁ ସାର୍‌ଙ୍କ ପାଇଁ ନିମନ୍ତ୍ରଣ ମଧ୍ୟ ଯାଇଥାଏ । ସେ ବର୍ଷ ୟୁରୋପର ବହୁ ଦେଶ, ଏସୀୟ ମହାଦେଶ, ଜାପାନ, ହଂକଂ, କୋରିଆ ପ୍ରଭୃତିରୁ ସହସ୍ରାଧିକ କଳାକାର ନିମନ୍ତ୍ରିତ ହେଇ ପ୍ରଦର୍ଶନୀରେ ଯୋଗ ଦେଉଥାନ୍ତି । ଏହି ପ୍ରଦର୍ଶନୀରେ ସାର୍‌ଙ୍କ ସାଙ୍ଗରେ ମୁଁ, ଆଉଜଣେ ଭାରତୀୟ ଚୀନ ଦେଶର ଛାତ୍ର । ସାର୍ ଦିଲ୍ଲୀରୁ ମୋର ଓ ତାଙ୍କର ବାଏଓଡେଟା ଓ ଫଟୋଥାଇ ଚମତ୍କାର ରଙ୍ଗିନ ଫୋଲ୍‌ଡ଼ର ଛପେଇ ଆଣିଥାନ୍ତି । ଫୋଲ୍‌ଡର୍‌ର ଶୀର୍ଷକ ଥାଏ କଲ୍‌ଚରାଲ୍ ପାର୍ଟନର୍‌ସିପ୍ । ଫୋଲ୍‌ଡ଼ର୍‌ରେ ମୋର ଲଞ୍ଚବକ୍ସ ଓ ସାର୍‌ଙ୍କ ପର୍ବତ ଚିତ୍ର ଛପା ହେଇଥାଏ । ପଛପୃଷ୍ଠାରେ ଥାଏ, ଆମ କଳା ପରମ୍ପରା ସଂପର୍କରେ ବୟାନ୍ ।

ବେଇଜିଙ୍ଗ୍ ଏୟାର୍‌ପୋର୍ଟରେ ସାର୍‌ଙ୍କୁ ଦେଖିଲା ପରେ ଏତେ ଖୁସିଲାଗିଲା ଯେ ତା'ର ସୀମା ରହିଲା ନାହିଁ । ସେ ନା ଦେଖାଯାଉଥିଲେ ପ୍ରିନ୍‌ସ୍‌ପାଲ୍, ନା ସଚିବ ନା ପାଠୀ ମଉସା ଭଳି । ସେ ଲାଗୁଥିଲେ ଜଣେ ବୌଦ୍ଧଭିକ୍ଷୁ ଭଳି । ସେତେବେଳେ ତାଙ୍କର କଥାଭାଷା ସଂପୂର୍ଣ୍ଣ ଅଲଗା ଲାଗୁଥିଲା । ମୁଁ ଆଉ ମୋ ସାଙ୍ଗରେ ପ୍ରଫେସର, ସାର୍‌ଙ୍କୁ ପାଛୋଟି ଆଣିଲୁ । ରହିବା ପାଇଁ ଛାତ୍ରାବାସର ଗୋଟିଏ ରୁମ୍ । ରୁମ୍‌ଟି ଜଣେ ମୋର ପାକିସ୍ଥାନୀ ସାଙ୍ଗ ପିଲାର । ସେ ତା ଦେଶକୁ ଚାଲିଯାଇଥାଏ । ତା ସ୍ତ୍ରୀ ଚୀନ୍ ଦେଶର ଜଣେ ଝିଅ ଅତି ଆଗ୍ରହ ସହକାରେ ତା ରୁମ୍‌ଟି ସାର୍‌ଙ୍କ ପାଇଁ ଛାଡ଼ି ଦେଇଥିଲା । ସେ ଦିନସାରା ଆମେ ଦୁଇଜଣ ରୁମ୍ ଭିତରେ ବସି କେତେ କଥା ଗପିଲୁ । ଭୁବନେଶ୍ୱରଠାରୁ ଦିଲ୍ଲୀ ଯାଏଁ । ତା ଭିତରେ ଓଡ଼ିଶା ଖବର, ପରିବାର ଖବର, ନୂଆ ଜୀବନ ପାଇଲା ଭଳି ଲାଗିଲା । ତା ପର ଦିନଠୁଁ ବୁଲା ଆରମ୍ଭ ହେଲା । ଟିଆନ୍‌ମେନ୍ ସ୍କୋୟାର୍, ଫରବିଡ଼େନ୍ ପ୍ୟାଲେସ୍, କେତେ ବନ, ଉପବନ, ବିପଣୀ, ଗ୍ୟାଲେରୀ, ରେଷ୍ଟୁରାଣ୍ଟ, ଥିଏଟର୍ । ଚାଲୁ ଚାଲୁ ଥକି ପଡ଼ିଲେ ଗଛମୂଳେ ବସିପଡ଼ି ସେତେବେଳେ ଲେଖାଚାଲିଥିବା ତାଙ୍କ ସାୟୋନାରା ଉପନ୍ୟାସ ସଂପର୍କରେ ଆଲୋଚନା । ସାର୍ ବଦଳିଯିବାର କାରଣ ବୋଧହୁଏ ଥିଲା ତାଙ୍କ **ସାୟୋନାରା** ଉପନ୍ୟାସ ।

ଚୀନ ଦେଶରେ ଖାଇବା ବଡ଼ ଅଡୁଆ, ସବୁ ଆଇଁଷିଆ । ପୁଣି ସବୁ ଖାଦ୍ୟ କାଠିରେ ଖାଇବା ମୋ ଅଭ୍ୟାସ ଥିଲା ବୋଲି ମୁଁ ଚଳେଇ ନେଉଥିଲି । ଥରେ ଆମେ ଦୁହେଁ ଚାଇନା ହୋଟେଲରେ

Digitized by srujanika@gmail.com

ଖାଇଲା ବେଳେ ଛତୁ ତରକାରୀରେ ସାର୍ ଦୁଇତିନି ଥର ମାଂସ ହାବୁଡ଼ିଲେ । ତା ପରଠୁ ଆମେ ନିଷ୍ପତ୍ତି କଲୁ ହୋଟେଲରେ ଖାଇବୁନି । ବେଇଜିଙ୍ଗ୍‌ର ଭାରତୀୟ ଦୂତାବାସରେ ମୋର ଜଣେ ଚିହ୍ନା ରଶ୍ମିରଂଜନ ସେଠୀ ଥାଆନ୍ତି । ତାଙ୍କ ଘରେ ପହଞ୍ଚିଗଲୁ । ସେ ଅବିବାହିତ ପୁଣି ଓଡ଼ିଆ ଲୋକ । ଆମକୁ ଖୁବ୍ ଆଦରରେ ରଖିଲେ । ମୁଁ ସକାଳୁ ସକାଳୁ ସାର୍‌ଙ୍କ ପସନ୍ଦ ହେଲା ପରି ଶାଗ ସନ୍ତୁଳା ନହେଲେ ଭାତଡ଼ାଲମା ରୋଷେଇ କରିଦିଏ । ପେଟେ ପେଟେ ଖାଇ ଦେଇ ଆମେ ବୁଲିବାକୁ ବାହାରିଯାଉ ।

ଚୀ'ନ ର ଗ୍ରେଟ୍ ୱାଲ୍, ସିଆନ୍‌ର ପ୍ରତ୍ନତାତ୍ତ୍ୱିକ ଖନନ, ମଣିଷେ ମଣିଷେ ଉଚ୍ଚାର ଷଷ୍ଠ ସପ୍ତମ ଶତାବ୍ଦୀର ଟେରାକୋଟା ଘୋଡ଼ା, ଆମ ପିପିଲି କାମ ଭଳି ସେଠାକାର ଚନ୍ଦୁଆ କାମ ବୁଲି ଦେଖିଲୁ । ଆମ ଦୁହିଁଙ୍କର ଅନ୍ତର୍ଦ୍ଦେଶୀୟ ଚିତ୍ର ପ୍ରଦର୍ଶନୀ ଆରମ୍ଭ ହେଲା । ପ୍ରଦର୍ଶନୀ ହଲ୍‌ରେ ଆମେ ଯେ ଯାହାର କାମ ସଜେଇ ଦେଲୁ । ସେ ବର୍ଷ ଚୀନ ଦେଶରେ ବ୍ୟାଘ୍ରବର୍ଷ ପାଳିତ ହେଉଥାଏ । ଦର୍ଶକମାନେ ସାର୍‌ଙ୍କ **ବାଘ ଓ ପଦ୍ମବନ** ଛବିଟିର ଖୁବ୍ ତାରିଫ୍ କରୁଥାନ୍ତି । ମୁଁ ମନେ ମନେ ଭାବୁଥାଏ ସାର୍‌ଙ୍କୁ ପୁରସ୍କାରଟିଏ ମିଳିଯାଆନ୍ତି କି । ସତକୁ ସତ ବିଚାରକ ମଣ୍ଡଳୀ **ବାଘ ଓ ପଦ୍ମବନକୁ** ପୁରସ୍କାର ଦେବାପାଇଁ ନିଷ୍ପତ୍ତି କଲେ । ମୋତେ ତ ଚୀନଭାଷା ଆସୁଥାଏ । ମୁଁ ହାବଭାବରୁ ଠଉରେଇ ନେଇ ସାର୍‌ଙ୍କୁ ଆସି କୁଣ୍ଢେଇ ପକେଇ 'କଂଗ୍ରାଚୁଲେସନ୍' ଜଣେଇ ଦେଲି ତାଙ୍କର ଆନ୍ତର୍ଜାତୀୟ ପୁରସ୍କାର ପାଇଁ ।

**କ୍ଷଣିକ ପାଇଁ ମୋ ମନ ବାହଓ୍ୱାଲ୍‌ପୁର୍ ହାଉସ୍‌ର ପତିତପାବନ ମେସ୍ ଆଡ଼େ ଉଡ଼ିଗଲା । ମୋ ମନ ଭିତରେ ଅହଂକାର ଉଙ୍କିମାରିଲା, ମୁଁ ଭାବିଲି ସାର୍ ସିନା ଓଡ଼ିଆ ପିଲାଙ୍କୁ ନ୍ୟାସନାଲ୍ ଆଓ୍ୱାର୍ଡ଼ ଦେଇପାରିଛନ୍ତି ବୋଲି ଗର୍ବ କରନ୍ତି ମୁଁ ତ ସାର୍‌ଙ୍କୁ ଇଣ୍ଟରନ୍ୟାସନାଲ୍ ଆଓ୍ୱାର୍ଡ଼ ଦେଇପାରିଲି** - ହୋଟେଲରେ ପୁରସ୍କାର ବିତରଣ ଉତ୍ସବର ଅନୁଭୂତି ଅବିସ୍ମରଣୀୟ । ଏତେ ବଡ଼ ଆଡ଼ମ୍ବର । ଏତେ ଦେଶ ବିଦେଶର ଶିଳ୍ପୀମାନଙ୍କ ଭିତରେ ଆମେ ଦୁଇଜଣ ଓଡ଼ିଆ ଶିଳ୍ପୀ । ଚାଇନିଜ୍ ଢଙ୍ଗରେ ପୁରସ୍କାର ଦିଆ ଯାଉଥିଲା, ଡ୍ରମ୍‌ର ତାଳେ ତାଳେ ଡ୍ରିଲ୍ କଲାଭଳି ଶିଳ୍ପୀମାନେ ମଞ୍ଚ ଉପରକୁ ଉଠୁଥାନ୍ତି । ତଳେ ଅନ୍ୟ ଶିଳ୍ପୀ ଓ ଅତିଥିମାନେ ହାତରେ ପାନପାତ୍ର ଧରି ସେମାନଙ୍କୁ ଚିଏରସ୍ କରୁଥାନ୍ତି । ସାର୍ ପୁରସ୍କାର ଗ୍ରହଣ କରି ସିଧା ମୋ ପାଖରେ ପହଞ୍ଚିଲେ । ମୋତେ ଧନ୍ୟବାଦ ଜଣେଇଲେ, କହିଲେ ତମେ ଚୀନ ନିମନ୍ତ୍ରଣ କରି ନଥିଲେ ମୁଁ ଆଜି ଜୀବନର ଏତେବଡ଼ ପୁରସ୍କାରଟି ପାଇପାରି ନଥାନ୍ତି । ତେଣୁ ଆଉଥରେ ଧନ୍ୟବାଦ । ଲାଗିଲା ଆମେତ ଗୁରୁଶିଷ୍ୟରୁ ଏବେ ଦୁଇ ବନ୍ଧୁ ହେଇଗଲୁ ।

ଏଠି ଗୋଟିଏ ମଜାକଥା ସ୍ମରଣ କରୁଛି । ଚୀନ ରହଣି ବେଳର କଥା । ବେଇଜିଙ୍ଗ୍‌ରେ ମୋର ଦଳେ ସାଙ୍ଗସାଥୀ ଥାଆନ୍ତି । ସେମାନଙ୍କ ଭିତରେ ପୁଅଙ୍କ ଅପେକ୍ଷା ଝିଅଙ୍କ ସଂଖ୍ୟା ବେଶୀ । ବେଳେ ବେଳେ ମୁଁ କାର୍ଯ୍ୟବ୍ୟସ୍ତ ଥିଲେ ସାର୍ ସେମାନଙ୍କ ସଙ୍ଗେ ବୁଲିବାକୁ ଯାଆନ୍ତି ସେମାନେ ମଧ ସାର୍‌ଙ୍କ ସଙ୍ଗେ ସମୟ ବିତେଇବାକୁ ଖୁବ୍ ଭଲ ପାଆନ୍ତି । ଅନେକ କହନ୍ତି ତମ ସାର୍ ଭାରି ରୋମାଣ୍ଟିକ୍ । ଇଂରେଜୀ କହୁଥିବା ମୋର ଜଣେ ଝିଅ ସାଙ୍ଗ ସାର୍‌ଙ୍କୁ ଖୁବ୍ ପସନ୍ଦ କରୁଥାଏ । ସାର୍‌ଙ୍କ ବ୍ୟବହାରରେ ସେ ମୁଗ୍ଧ । ସାର୍‌ଙ୍କୁ ପ୍ରେମିକ ଆସନରେ ବସେଇ ସାରିଥାଏ । ସେ ତା ମନକଥା ସାର୍‌ଙ୍କୁ କହି ନପାରି ମୋତେ କହିଲା । ମୁଁ ମଧ କିପରି ଏପରି କଥା ସାର୍‌ଙ୍କୁ କହିପାରିବି । ଝିଅ ଜଣକ ଭାବ ବିହ୍ୱଳିତା ହେଇ ବାହା ହେବା କଥା ଭାବି ବସିଲାଣି । ଧୀରେ ଧୀରେ ଭାରତ ଫେରିବା ସମୟ ହେଇ ଆସୁଥାଏ । ଆମେ ସିଆନ୍ ଭ୍ରମଣରୁ ଫେରିବା ପରେ ସେ ଝିଅକୁ ମୁଁ ବୁଝେଇଲି, କିନ୍ତୁ ସେ ବୁଝିବାକୁ ନାରାଜ ।

Digitized by srujanika@gmail.com

ସେ ଥରେ ଦେଖା କରିବାକୁ ବାଧ୍ୟକଲା ଓ ସାର୍‌ଙ୍କୁ ଫୋନ୍ କରି ଏକ ଡିସ୍କୋକୁ ନିମନ୍ତ୍ରଣ କଲା । ସାର୍ କିମିତି କେଜାଣି ଗନ୍ଧ ବାରିପାରି ଜଣେ ଛାତ୍ରୀଙ୍କୁ ଯିମିତି ଉପଦେଶ ଦେଇ ବୁଝେଇବା କଥା ସିମିତି ବୁଝେଇ ଦେଲେ ଓ ସେ ରାତିରେ ବାହାନା କରି ଆଉ ଡିସ୍କୋକୁ ଆମ ସାଙ୍ଗେ ଆସିଲେ ନାହିଁ । ଲାଗେ ସାର୍ ବହୁତ କଥା ଜାଣନ୍ତି । ଇତିହାସରୁ ଆରମ୍ଭକରି ବର୍ତ୍ତମାନର ସାମାଜିକ ଚଳଣି ପର୍ଯ୍ୟନ୍ତ । ଛାତ୍ରଛାତ୍ରୀଙ୍କ ସଙ୍ଗେ ସଂପର୍କ ଜଣେ ଅଭିଭାବକ ଭଳି, ନିଜର କିଏ ଜଣେ ଅତି ନିଜର ଭଳି । କିନ୍ତୁ କଥା ଭାଷା ମନଖୋଲା ଏବଂ ରସରସିଆ । ତେଣୁ ବେଳେବେଳେ ଅନ୍ୟମାନେ ଅସଲ ମର୍ମ ବୁଝି ନପାରି ଭୁଲ ବୁଝନ୍ତି ।

ବନ୍ଧୁତା ନିବିଡ଼ ହେବାରୁ ଏବେ ତମେରୁ ତୁ'ରେ ଆସି ପହଞ୍ଚିଯାଇଛି । ଭାରତ ଫେରିଲା ପରେ ସବୁଦିନ ଯାଇ ଘରେ ଦେଖା ନକଲେ ମନ ଖୁଜ୍‌ବୁଜ୍ ଲାଗେ । ବେଳେବେଳେ ଆମ ପ୍ରେମିକାଙ୍କ କଥା ଶୁଣିଲା ପରେ ମାଉସୀଙ୍କୁ ମନେ ପକାନ୍ତି ଓ ତାଙ୍କ ବିଷୟରେ କହିବସନ୍ତି । ଭୁବନେଶ୍ୱରରେ ଗୋଟିଏ ମେସ୍‌ରେ ତାଙ୍କର ବାହାଘର କିମିତି ହେଇଥିଲା, ମାଉସୀଙ୍କ ସାଙ୍ଗେ ପ୍ରେମ କଥା ଓ ମାଉସୀ ସାର୍‌ଙ୍କ ପାଇଁ ବାଲେଶ୍ୱରରୁ ଟ୍ରେନ୍‌ରେ ତାଙ୍କ ପସନ୍ଦର ବଡ଼ ଡେକ୍‌ଚିରେ ଚହ୍ଲା ଆଣିବା କଥା, ସାର୍ ଅଣ୍ଡା ଖାଇବେ ବୋଲି ଘରେ ଢାବଲରେ କୁକୁଡ଼ା ପାଳିବା କଥା ଇତ୍ୟାଦି, ଇତ୍ୟାଦି ।

ମୁଁ ମାଉସୀଙ୍କୁ ମଧ ଭଲ ଭାବେ ଜାଣେ, ବଡ଼ କର୍ମଠ ମହିଳା । ମୁଁ ସ୍କୁଲରୁ ଫେରିଲାବେଳେ ସେ ଅଫିସରୁ ଫେରୁଥିଲେ ରାସ୍ତାରେ ଦେଖାହୁଏ । ମାମା (ସାର୍‌ଙ୍କ ଝିଅ)ର କାଳ ହେଇଗଲା ପରେ ମାଉସୀ ମାନସିକ ଭାରସାମ୍ୟ ହରେଇ ବସିଲେ । ଭୁବନେଶ୍ୱର ଛାଡ଼ି ନିଜ ବାପ ଘର ବାଲେଶ୍ୱରକୁ ପଳେଇଗଲେ । ସାର୍ ବାହାରକୁ ଦେଖାନ୍ତିନି, କିନ୍ତୁ ମନରେ, ଅନ୍ତରରେ ଝୁରି ହୁଅନ୍ତି । କୋଣାର୍କ ମନ୍ଦିର ପାଖରେ ମାଉସୀ କୁନୁ ଓ ମାମା ଠିଆ ହେଇଥିବା ଫୋଟଟିଏ ଟେବୁଲ ଉପରେ ରଖିଥାନ୍ତି । ଏବେ ମାଉସୀ ବି ନାହାନ୍ତି । ତାଙ୍କର ଦେହାନ୍ତ ହେଇଯାଇଛି । ସେ ଏବେ ସେହି ଫୋଟ ଉପରେ ଅଧାଚିତ୍ରିତ ଦୁର୍ଗାଙ୍କର ଫଟୋଟିଏ ରଖିଲେଣି । ସେ ବୋଧହୁଏ ମାଉସୀଙ୍କୁ ଦେବୀଟିଏ କରି ବସେଇ ଦେଇଛନ୍ତି । ପରିସ୍ଥିତିକୁ କିପରି ସାମନା କରିବାକୁ ହୁଏ, ବିପଦକୁ ହସି ହସି ସହିନେଇ ଜୀବନରେ ଆଗେଇ ଯିବାର ସଂକଳ୍ପ କମିତି କରିବାକୁ ହୁଏ ତାଙ୍କଠୁ ଶିଖିବା କଥା । ଲାଗିବ ସେ ଭଗବାନଙ୍କୁ ମାନନ୍ତି ନାହିଁ । କିନ୍ତୁ ସବୁ ବିପଦରେ ଭଗବାନ ତାଙ୍କୁ ସାହା ହୁଅନ୍ତି ବୋଲି କହନ୍ତି । ତାଙ୍କ ସାଙ୍ଗେ କଥା ହେଲେ ବୟସର ତାରତମ୍ୟ ହଟିଯାଏ । ସବୁବେଳେ ନିଜେ ହିଁ କଥା କହିବାକୁ ଆଗେଇ ଆସିବେ । ଅନ୍ୟ କାହାକୁ କଥା କହିବାକୁ ଦେବେନି । ସବୁବେଳେ ଯୁକ୍ତି-ତର୍କ କରିବେ । କଳାଚର୍ଚ୍ଚା ଆରମ୍ଭହେଲେ ବେଳକାଳର ଠିକଣା ରହେନି । ଓଡ଼ିଶାର କଳା ଆନ୍ଦୋଳନ କଥା ପଡ଼ିଲେ ରାତି ପାହିଯିବ । ରାତି ଏତେ ହେବ ଯେ ଡାଲମାଭାତ ଖାଇ ତାଙ୍କ ଘରେ ଶୋଇଯିବାକୁ ହେବ । ସବୁବେଳେ ଚିନ୍ତିତ ଓଡ଼ିଶାର କଳା କିମିତି ଆଗେଇବ । ଗଞ୍ଜାମ ପ୍ରୀତି ପ୍ରବଳ କିନ୍ତୁ ସାର୍‌ଙ୍କର ଅତି ପ୍ରିୟ ଅନେକ ଛାତ୍ର ଓ ବନ୍ଧୁ ଅଣ ଗଞ୍ଜାମୀ । ଯେଉଁ କାମ ଆରମ୍ଭ ହେବ ଶେଷ ହେଲାଯାଏଁ ତରନାହିଁ । ଆଜିକାଲି ସାହିତ୍ୟରେ ବେଶି ମାତିଛନ୍ତି । ଗୋଟେ ପରେ ଆଉ ଗୋଟିଏ ଉପନ୍ୟାସ ଲେଖା ଚାଲିଛି ।

ସେଦିନ ଆମେ ଦୁହେଁ ପାରଳାଖେମୁଣ୍ଡି ଚିତ୍ରକାର ସାହିରେ ଡକ୍ଟର ବିଜୟ କୁମାର ରଥଙ୍କ ଘରେ ଟେରାବାଡ଼ ଭିତରେ ରାଧାକୃଷ୍ଣ ମୂର୍ତ୍ତିଙ୍କ ବନକର ଫଟୋ ଉଠେଇବାକୁ ଯାଇଥାଉ । ରାଧା, କୃଷ୍ଣ ଓ ଲଳିତାଙ୍କୁ ଚିତ୍ରକର ଉଲଗ୍ନ କଲା, ଦେହ ସାଙ୍ଗରେ ଗୁପ୍ତାଙ୍ଗ ମଧ ଚିତ୍ରଣ କଲା । ଏକଥା ଦେଖି ସାର୍‌ଙ୍କ ମନରେ ବହୁ କଳ୍ପନା ଉଙ୍କି ମାରିଲା । ଗାଡ଼ିରେ ଫେରୁଥିବାବେଳେ ସେ ତାଙ୍କ ଉପନ୍ୟାସ **ପୁନର୍ନବା**ର ଛାଞ୍ଚ ମୋତେ କହିଲେ । ସେଦିନର ସେହି ସ୍ଫୁଲିଙ୍ଗ ଏତେ ବଡ଼ ସାହିତ୍ୟ କୃତି ପାଇଁ

Digitized by srujanika@gmail.com

ଖୋରାକ ଯୋଗେଇ ଦେଲା । ତା ପରେ ଛ' ମାସ ଭିତରେ ପୁନର୍ନବା ଶେଷ । କାମର ଅନ୍ତ ନାହିଁ । କଳା ହେଉ, ଗବେଷଣା ହେଉ, ସାହିତ୍ୟ ହେଉ ସବୁବେଳେ ନୂଆ ନୂଆ ସୃଷ୍ଟିର ଅନ୍ୱେଷଣରେ । ସମୟ ଆଉ କମ୍ ରହିଲା । ଦେଖୁ ଦେଖୁ ଆସି ଷାଠିଏ ପୂରିବ । ଏ ଦେହ ମେସିନ୍‌ଟା ଯଦି ଠିକ୍ ଚାଲିବ ତେବେ ଆଉ ଦଶ ବର୍ଷ କାମ କରିହେବ । ଜୀବନରେ ବହୁ ସମୟ ବରବାଦ ହେଇଛି ଓଡ଼ିଆ ଶିଳ୍ପୀଙ୍କ ପଛରେ । ଏବେ ଆଉ ଡର ନାହିଁ । ଜୀବନରେ କ'ଣ ବା କରିହେଇଛି । ସିମିତି କିଛି ଆଖିଦୃଶିଆ ନୁହେଁ । କେବଳ କିଛିଟା ଛାତ୍ରଛାତ୍ରୀଙ୍କୁ ତିଆରି କରାହେଇ ପାରିଛି, ଆଉ କିଛି ଘନିଷ୍ଠ ବନ୍ଧୁ । କଳାର ବେପାର କରିବା ପାଇଁ ଦୋକାନ ଖୋଲି ଦେଇଥିଲେ ଏ ବୁଢ଼ାକାଳେ ସ୍କୁଟର ଠେଲିବାକୁ ପଡ଼ି ନଥାନ୍ତା ।

ଏ ହେଲା ସାର୍‌ଙ୍କ ବକ୍ତବ୍ୟ ।

ବି.କେ କଲେଜରେ ଛାତ୍ର ଥିବାବେଳେ ପ୍ରଥମ ଦିଲ୍ଲୀଯାତ୍ରା ମୋର ଭ୍ରମଣ ରେଖା ଖୋଲିଦେଲା । **ମୁଁ ତାଙ୍କର ଅତି ଆଦରର ଛାତ୍ରଭାବେ ତାଙ୍କ ଅସରନ୍ତି ପାଣ୍ଡିତ୍ୟରୁ, ମନନଶୀଳତାରୁ, ସର୍ଜନପ୍ରେରଣାରୁ କାଣିଚାଏ କାଣିଚାଏ ଲାଭ କରି ଅନୁପ୍ରେରିତ ହେଇ ଆଜି କେବଳ ଭାରତ ନୁହେଁ, ପୃଥିବୀର ବିଭିନ୍ନ ପ୍ରାନ୍ତରେ କଳା ପ୍ରଦର୍ଶନ କରି କେବଳ ମୋର ନିଜର ନୁହେଁ, ତାଙ୍କର ଓ ଓଡ଼ିଶାର ମଧ ଟେକ ରଖିପାରିଛି ।** ସେ ମୋର କେବଳ ଚିତ୍ରକଳାର ଶିକ୍ଷକ ନୁହଁନ୍ତି, ସ୍ନେହ, ପ୍ରେମ, ଉଦାରତା, ନିଷ୍ଠା, ସମୟୋପଯୋଗିତା, ଗବେଷଣା, ସାହିତ୍ୟ ଆହୁରି ଅନେକ ଅନେକ ବିଷୟର ଶିକ୍ଷକ ଓ ବନ୍ଧୁ ବି । ଏଭଳି ସଂପର୍କ ଗଢ଼ି ପାରିଥିବାରୁ ମୁଁ ନିଜକୁ ଅତି ଭାଗ୍ୟବାନ ବିଚାରକରେ ଓ ଏହା ଜନ୍ମଜନ୍ମାନ୍ତରର ସଂସ୍କାର ବୋଲି ମନେକରି ତାଙ୍କ ସୁସ୍ଥ ନିରାମୟ ଦୀର୍ଘଜୀବନ କାମନା କରେ ।



Digitized by srujanika@gmail.com

ରାଜୀବ ଲୋଚନ ସାହୁ

## ତଥାପି ଆଶାର ବଳୟରେ କଳା ପରିବାର

ପ୍ରେମରୁ କଳା ନା କଳାରୁ ପ୍ରେମ । ଏହା ଅମିମାଂସିତ ରହିଥିଲେ ମଧ୍ୟ ପ୍ରେମ ଯେ ଏକ କଳା ଏହା ଶାସ୍ତ୍ରୀୟ, ଶାସ୍ତ୍ରସୀକୃତ । ବାତ୍ସ୍ୟାୟନ ତାଙ୍କ କାମସୂତ୍ର ଗ୍ରନ୍ଥରେ ଚିତ୍ରକଳାକୁ ଚଉଷଠି କଳା ଭିତରେ ସ୍ଥାନ ଦେଇଛନ୍ତି । ଏଣୁ ଯେଉଁମାନେ ଚିତ୍ରକଳା ଅଧ୍ୟୟନ କରନ୍ତି, ସେମାନେ କାମକଳା ସମ୍ପର୍କରେ ସମ୍ପୂର୍ଣ୍ଣ ଅଭିହିତ ଥାଆନ୍ତି । ଦେହ ଓ ତାର ରୂପକୁ ନେଇ ଯେଉଁମାନେ ଚିତ୍ରଶିଳ୍ପୀର ବେଉସା ଆରମ୍ଭ କରନ୍ତି, ସେମାନେ ଦେହ ସମ୍ପର୍କରେ, ତାର ଆବେଦନ, ସମ୍ମୋହନ ଓ ଆସକ୍ତି ସମ୍ପର୍କରେ ସଚେତନ ଥାଆନ୍ତି ।

କଲେଜରେ ପାଠ ପଢୁଥିଲା ବେଳେ ସାଧାରଣ ଭାବେ ପ୍ରେମ ସମ୍ପର୍କରେ ସଚେତନ ହେବା କିଛି ବଡ଼କଥା ନୁହେଁ । ଆଜି କାଲି କମ୍ପୁଟର୍, ଟିଭି ଓ ଫେସନ୍ ସୋ ଯୁଗରେ ପ୍ରେମ ଆପେ ଆପେ କଲେଜ ପରିସର ଭିତରେ ଅଙ୍କୁରିତ ହୋଇଥାଏ ।

ମୁଁ ବିଭୂତି କାନୁନ୍‌ଗୋ ଘରୁକଳା ମହାବିଦ୍ୟାଳୟରେ ପଢୁଥିଲା ବେଳର କିଛି ଅନୁଭୂତି କହୁଛି ।

ଡକ୍ଟର ପାଠୀ ସେତେବେଳେ କଲେଜର ଅଧ୍ୟକ୍ଷ ଥାଆନ୍ତି ଏବଂ ପ୍ରାୟ ପ୍ରତିବର୍ଷ ବିଦେଶ ଭ୍ରମଣରେ ଯାଉଥାଆନ୍ତି । ଏଣୁ ପ୍ରେମ ପ୍ରତି ତାଙ୍କର ଆଭିମୁଖ୍ୟ ସମ୍ପୂର୍ଣ୍ଣ ଅଲଗା ଥିଲା । ସେ ରକ୍ଷଣଶୀଳ ଅଧ୍ୟକ୍ଷମାନଙ୍କ ଭଳି କଲେଜରେ ପ୍ରେମର ବିରୋଧ କରୁ ନଥିଲେ । ତାଙ୍କର ହୁଏତ ମତ ଥିଲା, ପ୍ରେମ ଛାତ୍ରଛାତ୍ରୀଙ୍କୁ ଅଯଥା ଜଞ୍ଜାଳ ଓ ଆବିଳତାରେ ଛନ୍ଦି ନ ଦେଉ । ପ୍ରେମ ସେମାନଙ୍କ ଜୀବନକୁ ସରସ ସୁନ୍ଦର କରୁ । ସେମାନେ ରୁଚିବନ୍ତ ଓ ସର୍ଜନଶୀଳ ହୁଅନ୍ତୁ । ଅନ୍ୟପଟେ ପ୍ରେମ ଯଦିଚ ଅନାବିଳ ଓ ସର୍ଗୀୟ, ତଥାପି ତାର ଆବେଦନ ଦୈହିକ ହୋଇଗଲେ ତାହା ଆବିଳ ହେବାକୁ ବାଧ୍ୟ ।

ସେତେବେଳର ମୋର ବନ୍ଧୁ ଓ ବାନ୍ଧବୀମାନଙ୍କର ପ୍ରେମ ଅତି ଏକାନ୍ତ, ବ୍ୟକ୍ତିଗତ ବ୍ୟାପାର ହୋଇଥିଲେ ମଧ୍ୟ ତାର ସୁଗନ୍ଧ କଲେଜର ପରିସରକୁ ମହକାଇ ଦେଉଥିଲା । କଲେଜର ଆମ୍ବଗଛ ତଳର ସିମେଣ୍ଟ ଚଉପାଢ଼ି ଏଇ ଏକାନ୍ତ ଓ ନିଭୃତ ପ୍ରେମ ବିନିମୟ ଓ ସଂଘରର କୁଞ୍ଜ ଥିଲା । ଆଉ ପିଲାମାନେ ଏଇଠି ବସି ଏକାନ୍ତରେ ପ୍ରେମାଳାପ କରିବା ପାଇଁ ହୁଏତ ଏଇ ଚଉପାଢ଼ିଗୁଡ଼ିକୁ ଅଧ୍ୟକ୍ଷ ତିଆରି କରିଥିଲେ । ଅନ୍ତତଃ ଏଭଳି କଥା ଏବେ କହିଲେ ଧୃଷ୍ଟତା ହେବନାହିଁ । ମୁଁ ଏବଂ ଆମ ସାଙ୍ଗ ସାଥୀମାନେ ସମସ୍ତେ ବିବାହିତ ଏବଂ ସ୍ୱାମୀ ସ୍ତ୍ରୀ ଓ ବାପା ମା ହୋଇ ଘରସଂସାର କରି ଭାରତର ବିଭିନ୍ନ ଜାଗାରେ ରହିଲୁଣି । ଏଣୁ ଆଉ ଥରେ ସେଇ ଆମ୍ରକୁଞ୍ଜର ଦିନ ଭିତରକୁ ଫେରିଗଲେ କେମିତି ହୁଅନ୍ତା ? କେତେ ଫୁସ୍‌ଫାସ୍ କଥା, କେତେ ଛାତି ଧଡ଼ ଧଡ଼, କେତେ ମିଳନ ଆଉ ବିରହ, ରାଗ ରୁଷା, ମାନ ଅଭିମାନ, ସେଇ ନିଭୃତ କୁଞ୍ଜ ଭିତରେ ହଜି ଯାଇନି ! ନା ଆଉ ସେ କୁଞ୍ଜ ଅଛି ନା ଯୌବନର ମାଦକତା ଅଛି ନା କିଛି ପାଇଲୁନି ବୋଲି ନିରାଶବୋଧ ଅଛି । ଯାହାକିଛି ବାକି ରହିଯାଇଥିଲା ଏବେ ସେସବୁ ସପ୍ନରେ, ଚିତ୍ରରେ, କବିତାରେ ପାଇ ହେଇଯାଇଛି ।

ବଗବଗୁଲି ଭଳି ହଂସହଂସୀ ଭଳି ବା ମୟୂରମୟୂରୀ ଭଳି କେତେ ନାଚ, କେତେ ଗୀତ, କେତେ ରଙ୍ଗର ପସରା ସେ କୁଞ୍ଜରେ ଅଜାଡ଼ି ହୋଇ ନ ଯାଇଛି । ଯେଉଁ ବଗବଗୁଲି ଯୋଡ଼ି ହୋଇ ଡେଣାରେ ଡେଣାକୁ ଛନ୍ଦି ସୁଦୂର ଦିଗନ୍ତ ଡେଇଁ ଉଡ଼ି ଯାଇଛନ୍ତି ନିଜର ନୀଡ଼ ରଚନା ପାଇଁ ମୁଁ ସେମାନଙ୍କ କଥା ଏଠି କହୁଛି । ସେଥିପାଇଁ ତ କଳା ଓ କବିତା ବହିର ପ୍ରକାଶନ, ନହେଲେ ଆର୍ଟ୍ କଲେଜରେ କି କବିତା ! ଯେଉଁ କଥାଯାକ ଗଛମୂଳେ ବାକି ରହିଯାଉଥିଲା ତାହା ପୁଣି କବିତାର ପଙ୍କ୍ତି ହୋଇ

Digitized by srujanika@gmail.com

ଉତୁରି ଆସୁଥିଲା । କବିତା ପାଠୋତ୍ସବରେ ଦରଦ ଦେଇ ପ୍ରେମିକ ପ୍ରେମିକାମାନେ ତାହା ବୀର ଦର୍ପରେ ପାଠ କରୁଥିଲେ, ଅଧ୍ୟକ୍ଷ, ଅଧ୍ୟାପକ, ସହପାଠୀ ସମସ୍ତେ ଶୁଣୁଥିଲେ ଏବଂ ଯିଏ ହେଜିବା ବାଲା ଚୁପ୍‌ଚାପ୍ ହେଜୁଥିଲା, ଘେନୁଥିଲା । ଏହିମାନେ ହିଁ ଲଇଲା ମଜନୁ ହୋଇ ଯାଉଥିଲେ । ବେଳେବେଳେ କେଦାରଗୌରୀ ତ ବେଳେବେଳେ ରାଧାକୃଷ୍ଣ । ପ୍ରତି ସୋମବାରେ ଲିଙ୍ଗରାଜ ମନ୍ଦିରରେ ନଡ଼ିଆ ଭଙ୍ଗା ହେଉଥିଲା ଏବଂ ତାର ଫାଙ୍କେ ଫାଙ୍କେ ନଡ଼ିଆ ଧରି ବାନ୍ଧବୀମାନଙ୍କ ଘରେ ଭକ୍ତିପୂତ ଚିତ୍ତରେ ପହଞ୍ଚି ଯାଉଥିଲେ ପ୍ରେମିକମାନେ । ମଉସା ମାଉସୀଙ୍କୁ ଚିକ୍କଣ ନମସ୍କାର ପରେ ଭେଟୁଥିଲେ ସେମାନଙ୍କ ପ୍ରେମିକାମାନଙ୍କୁ । ପ୍ରେମର ଏ ଫର୍ମୂଲା ବୋଧହୁଏ ଖୁବ୍ ଆଦିମ ପରମ୍ପରା ଥିଲା । ବେଳେ ବେଳେ ପ୍ରେମ ବଦଳରେ ଚିଠିଟିଏ ପ୍ରେମିକା ହାତରେ ବଢ଼ାଇ ଦେଇ ଆମ ବନ୍ଧୁମାନେ ଫେରି ଆସୁଥିଲେ । ବେଳେ ବେଳେ ପ୍ରେମ ଚିଠି ଥିଓରି ଖାତାରୁ ଖସିପଡ଼ି ଭୁଲରେ ଅଧ୍ୟକ୍ଷ ଡକ୍ଟର ଦିନନାଥ ପାଠୀଙ୍କ ହାତ୍‌ରେ ବି ପଡ଼ିଯାଉଥିଲା । ସେ ପୂର୍ବାପର ସମ୍ପର୍କ ନ ଯୋଡ଼ି ତାକୁ କ୍ଲାସ୍‌ରେ ପଢ଼ି ଦେଉଥିଲେ । ନତୁବା ଜେରକ୍ସରେ ଏନ୍‌ଲାର୍ଜ୍ କରି ନୋଟିସ୍ ବୋର୍ଡ଼ରେ ଲଗାଇ ଦେଉଥିଲେ । ବୁଝିବା ଲୋକମାନେ ଆପେ ଆପେ ବୁଝି ଯାଉଥିଲେ । ପ୍ରେମିକାମାନଙ୍କର ବାପାମାନେ ବା ଅଭିଭାବକମାନେ ଅଧ୍ୟକ୍ଷଙ୍କର ବନ୍ଧୁ ହୋଇଥିବା ହେତୁ ଅଧ୍ୟକ୍ଷଙ୍କ ନିକଟରେ ସବୁ ପ୍ରେମର ଫାଇଲ୍ ଡୋର ବନ୍ଧାହୋଇ ରହୁଥିଲା । କିନ୍ତୁ ଅଧ୍ୟକ୍ଷ ନା ସେସବୁ ଫାଇଲ କେବେ ଖୋଲୁଥିଲେ ନା ତା ଉପରେ କାର୍ଯ୍ୟାନୁଷ୍ଠାନ କରୁଥିଲେ । ଅଧ୍ୟକ୍ଷଙ୍କ ପାଖରେ ବେଳେବେଳେ ବେନାମି ଚିଠି ବି ପହଞ୍ଚୁଥିଲା । ଆମେ ଶୁଣିଲା ଭଳି ସେ ତାକୁ ବଡ଼ ପାଟିରେ କ୍ଲାସ୍‌ରେ ପଢୁଥିଲେ, ନ ହେଲେ ବେଳେବେଳେ ଭୁଲରେ କ୍ଲାସ୍‌ରେ ଛାଡ଼ି ଦେଇ ଯାଉଥିଲେ । ପ୍ରେମିକ ଓ ପ୍ରେମିକା ପରସ୍ପର ନିକଟତର ହୁଅନ୍ତୁ, ଏହା ବୋଧହୁଏ ଅଧ୍ୟକ୍ଷଙ୍କର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା । ଏଣୁ ସେ ପ୍ରେମିକ ଓ ପ୍ରେମିକାଙ୍କୁ ଚିତ୍ର ପ୍ରଦର୍ଶନୀ କରିବା ଆଳରେ ଭୁବନେଶ୍ୱର ବାହାରକୁ ପଠାଇ ଦେଉଥିଲେ ନହେଲେ କିଏ କଲେଜକୁ ଅତିଥି ଆସିଲେ ସେମାନଙ୍କୁ ଗାଇଡ୍ ଭାବରେ ଟାକ୍ସିରେ ଏକାନ୍ତ ଭ୍ରମଣର ସୁଯୋଗ ଦେଉଥିଲେ ।

ଏସବୁ କଥାରୁ ସାଧାରଣତଃ ଲାଗିବ କଲେଜର ଅଧ୍ୟକ୍ଷ ମଧ୍ୟ ଏଇ ପ୍ରେମ ବ୍ୟାପାରରେ ସମ୍ପୂର୍ଣ୍ଣ ସଂଶ୍ଳିଷ୍ଟ ଥିଲେ । କଥାଟି ମିଛ ନୁହେଁ କି ସତ ବି ନୁହେଁ । ପ୍ରେମର ଚିତ୍ରଭାଷା ଅତି ଅସ୍ପଷ୍ଟ । ଅଧ୍ୟକ୍ଷଙ୍କ କହିବା କଥା ପ୍ରେମ କୌଣସି ବାରଣ ମାନେନା । ତାହା ଜନ୍ମମୃତ୍ୟୁ ଭଳି ଚିରନ୍ତନ । ତାଙ୍କ ଛାତ୍ରଛାତ୍ରୀମାନେ ତ ସମସ୍ତେ ପ୍ରାପ୍ତ ବୟସ୍କ ବୟସ୍କା ଓ ପ୍ରେମ କରିବାର ଅଧିକାର ବି ସେମାନଙ୍କର ଅଛି । ଏଣୁ ଅଯଥା ହସ୍ତକ୍ଷେପ କରିବା ସେ ଉଚିତ ମନେ କରୁ ନଥିଲେ । ମୁଁ ଏବେ ଭାବୁଛି ସେତେବେଳେ ହସ୍ତକ୍ଷେପ କରିଥିଲେ ବି କିଛି ଉପକାର ମିଳନ୍ତା ନାହିଁ । ଅଧ୍ୟକ୍ଷଙ୍କର ମାନସିକ ଦୁଶ୍ଚିନ୍ତା କେବଳ ବଢ଼ନ୍ତା । ସେ ମଜାରେ କହୁଥିଲେ ଓଡ଼ିଶାରେ କିଛି କଳା ପରିବାର ଗଢ଼ିଉଠୁ, ପ୍ରେମରେ ବସନ୍ତର ହିଲ୍ଲୋଳ ରହୁ, ଇନ୍ଦ୍ରଧନୁର ଉଜ୍ଜ୍ୱଳ ରଙ୍ଗରେ ପ୍ରେମ ଦାଉ ଦାଉ ଦେଇ ଜଳୁ । ତେଣୁ ସେ କଲେଜର ଛାତ୍ରଛାତ୍ରୀଙ୍କ ପ୍ରେମ ବିବାହରେ ଅଭିଭାବକର ଭୂମିକା ମଧ୍ୟ ନିର୍ବାହ କରୁଥିଲେ ।

ପ୍ରେମର ପୁଷ୍ପିଳ ଉପାଖ୍ୟାନ ଯେ କେବଳ ବିଭୂତି କାନୁନ୍‌ଗୋ କଲେଜରେ ରାତିର ଗଙ୍ଗଶିଉଳି ଭଳି ଝରି ପଡୁଥିଲା ତା ନୁହେଁ, କଳା ବିଦ୍ୟାଳୟର ଆଦିଭୂମି ମରାଳମାଳିନୀ ନୀଳାମ୍ବୁ ଚିଲିକା ତଟ ଖଲ୍ଲିକୋଟରେ ଏହାର ପ୍ରଥମ ବୀଜ ବପନ ହେଲା । ସେହିଠୁ ଆରମ୍ଭ ହୁଏ ଓଡ଼ିଶାରେ ଶିଳ୍ପୀ ପରିବାରର ପରିକଳ୍ପନା । ଭୁଲ କହିଲି, ଏହାର ଚେର ଶାନ୍ତିନିକେତନରୁ ଓଡ଼ିଶା ଆସିଥିଲା । ନନ୍ଦଲାଲ କୁଆଡ଼େ ଗୌରାଙ୍ଗ ସୋମ୍ ଓ ବୀଣା ସୋମ୍‌ଙ୍କୁ କଳାଭବନର ଆମ୍ରକୁଞ୍ଜରେ ବିବାହ କରେଇଥିଲେ । ମୋ ପାଇଁ ଏହା କିମ୍ବଦନ୍ତୀ । ସେତେବେଳେ ଆଚାର୍ଯ୍ୟ ନନ୍ଦଲାଲ କଳାଭବନର ଅଧ୍ୟକ୍ଷ ଥିଲେ ଓ ଗୌରାଙ୍ଗ ସୋମ୍ ଓ ବୀଣା ସୋମ୍ ଛାତ୍ରଛାତ୍ରୀ ଥିଲେ ।

Digitized by srujanika@gmail.com

ଛାତ୍ର ଜୀବନରେ ଅଙ୍କୁରିତ ହେଇଥିବା ପ୍ରେମଲତା ପରେ ପରେ ଜୀବନକୁ ଛନ୍ଦିଦିଏ । ସେମାନଙ୍କ ଅଜାଣତରେ ସେମାନେ ଛନ୍ଦି ହେଇଯାଆନ୍ତି । ଓଡ଼ିଶାରେ ପ୍ରେମ ପରମ୍ପରାର ଗହନ ପଥରେ ଆଗେଇଯାଇ ବହୁ କଳା ପରିବାର (Art Couple) ଗଢ଼ି ଉଠିଛି । ସେମାନେ ଉଭୟେ ମୋର ନମସ୍ୟ, ନମସ୍ୟା, ଗୁରୁ ଓ ଗୁର୍ବୀ ଭଳି । ସେମାନଙ୍କ ନାମ ସ୍ମରଣ କରିବା ଅସମୀଚୀନ ହେବନି । ଓଡ଼ିଶା ଲଳିତ କଳା ଏକାଡ଼େମୀର ପୂର୍ବତନ ସଚିବ ବିଶିଷ୍ଟ ଚିତ୍ରଶିଳ୍ପୀ ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ ଓ ତାଙ୍କ ସହଧର୍ମିଣୀ ଜ୍ୟୋତିର୍ମୟୀ କାନୁନ୍‌ଗୋ, ବର୍ତ୍ତମାନର ସଚିବ ଅଧ୍ୟାପକ ଚନ୍ଦ୍ରମଣି ବିଶ୍ୱାଳ ଓ ତାଙ୍କ ପତ୍ନୀ ଶୈଳବାଳା ବିଶ୍ୱାଳ ଉଭୟେ ବିଶିଷ୍ଟ ଚିତ୍ରଶିଳ୍ପୀ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ବିଶିଷ୍ଟ ଶିଳ୍ପୀ ଦୀପ୍ତିପ୍ରକାଶ ମହାନ୍ତି ଓ ତାଙ୍କ ସହଧର୍ମିଣୀ ସନ୍ଧ୍ୟାରାଣୀ ରାଉତ ଓଡ଼ିଶାର ନାମଜାଦା କଳା ପରିବାର କହିଲେ ଅତ୍ୟୁକ୍ତି ହେବନାହିଁ ।

ମୋର ସହପାଠୀ ତଥା ବଡ଼ଭାଇ ଓ ଅପାମାନଙ୍କ ମଧ୍ୟରୁ ଅଞ୍ଜନ କୁମାର ସାହୁ ଓ ଅପର୍ଣ୍ଣା ରାୟ, ସୁବ୍ରତ କୁମାର ମଲ୍ଲିକ ଓ ବିଦ୍ୟୁତଲତା ପାଟଶାଣୀ, ସାଜଲ ପାତ୍ର ଓ ବବିତା ମିଶ୍ର, ପ୍ରଦୋଷ କୁମାର ମିଶ୍ର ଓ ସଂଗୀତା ଦେବୀ (ରାଓ), ସବିତା ପଣ୍ଡା ଓ ସୁଶାନ୍ତ ପାଣିଗ୍ରାହୀ, ଗୌରହରି ରାଉତ ଓ ସାଧନା ମିଶ୍ର, ଜୟନ୍ତ କୁମାର ପଣ୍ଡା ଓ ରଶ୍ମିରେଖା ପଣ୍ଡା, ଜଗନ୍ନାଥ ପଣ୍ଡା ଓ ପ୍ରଣତି ମହାପାତ୍ର, ଶୋଭନ କୁମାର ଓ ହେଲେନ ବାଳା ବ୍ରହ୍ମା, ପ୍ରଦୋଷ ସାଇଁ ଓ ନିବେଦିତା ପଟ୍ଟନାୟକ, ସଂଗ୍ରାମକେଶରୀ କର ଓ ରୀନା ପୁଷ୍ଟି, ଅମର କୁମାର ଜେନା ଓ ଅତସୀ ବସୁ, ଶ୍ୟାମାପ୍ରସାଦ ଟାଲି ଓ ଲିପିଶ୍ରୀ ନାୟକ ତଥା ଶ୍ୟାମା ପ୍ରସାଦ ପଟ୍ଟନାୟକ ଓ ରାଜଲକ୍ଷ୍ମୀ ମଲ୍ଲିକଙ୍କ କଥା ଏବେ ମୋର ମନେ ପଡ଼ିଯାଉଛି । ମୁଁ ଅବଶ୍ୟ ଏ ପୂଣ୍ୟ କାର୍ଯ୍ୟରେ ସଫଳ ହେଇପାରିଲିନି, ଏଣୁ ଓଡ଼ଗାଁ ଆଡ଼େ ମୁହଁ ଫେରେଇଲି ।

ପ୍ରେମ କଳା ସମୟରେ ଏହି ଯୁଗଳମୂରତିମାନେ ଭାସମାନ ସପ୍ନଗୁଡ଼ିକୁ ନିଜ ଆୟତ୍ତ ଭିତରକୁ ଆଣିବାକୁ ଲାଗିପଡ଼ିଥିଲେ । ଉଚ୍ଚପାହାଡ଼ର ଚୂଡ଼ାଭଳି ମନରେ କେତେ ଉଚ୍ଚ ଆଶା ଆଉ ଅଭିଳାଷ । ଆଗକୁ ମାଡ଼ିଯିବାର ଶପଥ, ସଂସାରକୁ ବର୍ଣ୍ଣିଳ କରିବାର କେତେ ପ୍ରତିଜ୍ଞା । ଓଡ଼ିଶାକୁ ଟେକି ନେଇ କାହିଁ କେତେ ଉଚ୍ଚରେ ଥୋଇ ଦେବାର ସଂକଳ୍ପ । ଆକାଶରେ ସୁନାର ସିଂହାସନ ଉପରେ ଆସନ ପାରି ବସିବାର କେତେ ଆସ୍ପର୍ଦ୍ଧା । ସେତେବେଳେ ଏମାନଙ୍କୁ ଦେଖି ଲାଗୁଥିଲା ଧରଣୀ ହସି ଉଠିବ । ସତେ ଯେପରି କଳା କ୍ଷେତ୍ରରେ କିଛି ନୂଆ ମୋଡ଼ ନେବ । ଧୀରେ ଧୀରେ ଏମାନେ ପ୍ରଣୟ ସୂତ୍ରରେ ବାନ୍ଧି ହେଇଗଲେ । ସଂସାର ଆଗକୁ ଲମ୍ବିଲା । ଅନ୍ନଚିନ୍ତା ଚମତ୍କାରହେଲା । ଯେଉଁମାନେ ଚାକିରି କଲେ ସେମାନେ ଚାକିରି ଭିତରେ ହଜିଗଲେ । ସପ୍ନମାନେ ସ୍ଥବିର ହେଇଗଲେ ।

ଏହି କଳା ପରିବାର (Art Couple) ଦେଇ ଯାହା ଆଶା କରାଯାଉଥିଲା ତାହା ସଫଳ ହେଇପାରିଲାନି । ଓଡ଼ିଶାରେ ନାରୀଶିଳ୍ପୀ ଜାଗରଣ ଆସି ପାରିଲାନି । ମୋଟାମୋଟି ଯାହାକୁ ତାହା । ଓଡ଼ିଶାରେ ନାରୀ ଚିତ୍ରଶିଳ୍ପୀ ଆଗେଇ ଆସୁ ନଥିବା ବଡ଼ ଦୁଃଖର କଥା । ଯେଉଁମାନେ ଆମ୍ବଗଛକୁ ସାକ୍ଷୀରଖି କହିଥିଲେ ଆମେ ଶିଳ୍ପୀ ହେଇ ବଂଚିବା, ଆମ ଦେଶ ଆମକୁ ନେଇ ଗର୍ବ କରିବ ବୋଲି କହୁଥିଲେ ପରବର୍ତ୍ତୀ କାଳରେ ନାନା ଆଳଦେଖେଇ ଘର ଭିତରେ ହିଁ ସେମାନେ ରହିଗଲେ । ବେଳେ ବେଳେ ଏମାନଙ୍କୁ ଦେଖାମିଳେ ସଂସ୍କୃତି ବିଭାଗର ବା ଏକାଡ଼େମୀର କଳାଶିବିରମାନଙ୍କରେ ବା ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍‌ର ସେମିନାର୍‌ମାନଙ୍କରେ ଭଦ୍ରମହିଳା ପୋଷାକରେ ସ୍ୱାମୀଙ୍କ ସହଧର୍ମିଣୀ ଭାବରେ, ସାଙ୍ଗରେ ଜଣେ ଅଧେ ଭବିଷ୍ୟତ ବଂଶଧର ସହ ଡକ୍ଟର ପାଠୀଙ୍କ ଭାଷାରେ 'Mobile Sculpture' । ବେଳେବେଳେ ସେମାନଙ୍କ ପୁରୁଣା ଛବିରୁ ଖଣ୍ଡେଅଧେ ପ୍ରଦର୍ଶନୀମାନଙ୍କରେ ଦେଖିବାକୁ ମିଳେ । ସେଇ ପୁରୁଣା ସପ୍ନ ।

ପରିବାରର ଦାୟିତ୍ୱ ଓ ଶିଳ୍ପୀର ନୈତିକ ଦାୟିତ୍ୱ ଭିତରର ପ୍ରଭେଦ ସେମାନେ ଏ ଭିତରେ ସଂପୂର୍ଣ୍ଣ ଭୁଲିଯାଇଛନ୍ତି । ଗତବର୍ଷ ଜଣେ ଅପାଙ୍କୁ ଦେଖାହେଇଥିଲା । ମୁଁ ପଚାରିଲି, 'ଖବର କ'ଣ ?

Digitized by srujanika@gmail.com

କୁଆଡ଼େ ଗଲା ସେ ବଜ୍ର ଶପଥ ।' ଅପା ବାପୁକୁ ଦେଖାଇ କହିଲେ, 'ଆଉ ଟିକିଏ ବଡ଼ ହେଇଯାଉ ମୁଁ ଛବିପାଇଁ ସମୟ ଦେବି ।' ବାପୁ ପରେ ଦୀପୁ ସୁଖ ସଂସାରକୁ ନ' ଆସିଲେ ହେଲା । ଆମ ମା, ମାଉସୀମାନେ ବଡ଼ ବଡ଼ ପରିବାରର ବୋଝ ମୁଣ୍ଡେଇ ମଧ୍ୟ ଓଡ଼ିଶାର ଲୋକକଳାକୁ ଆଗେଇ ନେଇ ପାରିଥିଲେ । ଦାରିଦ୍ର୍ୟ ଭିତରେ କଳା ଦାଉ ଦାଉ ହେଇ ଜଳି ଉଠୁଥିଲା । ଏତେ ପ୍ରାଚୁର୍ଯ୍ୟ ଭିତରେ ବି ସଂପ୍ରତିକ କଳା ଆଗେଇ ପାରୁନି ।

**ଜଣେ ଲେଖିକା ହେବା ଯେତେ ସହଜ, ଜଣେ ଚିତ୍ରଶିଳ୍ପୀ ହେବା ତେତେ ସହଜ ନୁହେଁ । କାନ୍‌ଭାସ୍, ରଙ୍ଗ, କାଠ, ପଥର, ଜିଙ୍କ୍‌ପ୍ଲେଟ୍, ଚିତ୍ର ପ୍ରଦର୍ଶନୀ, କ୍ୟାଟ୍‌ଲାଗ୍ ଛପା ଏତେ ବ୍ୟୟସାପେକ୍ଷ ଯେ ତାହା ନେଇଆଣିଥୋଇବା ଭାରି କଷ୍ଟ । ଡଜନେ କାଗଜ ଓ ଭଲ କବିତା ସଂକଳନ ଦଶ ପନ୍ଦର ହେଲେ ଜ୍ଞାନପୀଠ କିମ୍ବା ସରସତୀ ଅଥବା ସାରଳା ସମ୍ମାନ ମିଳିଯାଇପାରେ କିନ୍ତୁ ଉତ୍କଳ ରାଜ୍ୟରେ ଚିତ୍ରଶିଳ୍ପୀ ହେଇ ମୁଣ୍ଡଟେକି ବଞ୍ଚିବା କାଠିକର ପାଠ, ସମ୍ମାନ ତ ଦୂରର କଥା ।**

ଯେଉଁମାନେ ଶିଳ୍ପୀ ହେବାର ସପ୍ନଦେଖି ପ୍ରେମରୁ ବାସ୍ତବ ଜୀବନ ଭିତରକୁ ଗୋଡ଼ ବଢ଼ାଇ ଦେଇଥିଲେ ସେମାନେ ସାଧାରଣ ଗୃହିଣୀ ଭଳି ଚୂଲିମୁଣ୍ଡେ ସମୟ ବାହି ନବାଟା ଦେଶ ପାଇଁ କଦାଚିତ ଶୁଭ ଲକ୍ଷଣ ନୁହେଁ । ଅଧକ୍ଷ ପାଠୀଙ୍କର Art Couple ସପ୍ନ ସପ୍ନରେ ହିଁ ରହିଗଲା । ହାୟରେ ଅଭାଗା ଆମ୍ରକୁଞ୍ଜ । ଡକ୍ଟର ପାଠୀଙ୍କର କେବଳ ଏତିକି ଲାଭ ହେଇଛି, ଏ ପରିବାରମାନଙ୍କରେ ପହଞ୍ଚିଗଲେ ସେମାନେ ଭୂରିଭୋଜନରେ, ସ୍ନେହରେ, ସମ୍ମାନରେ ତାଙ୍କୁ ଆପ୍ୟାୟିତ କରିଦେଉଛନ୍ତି, ନାତିଟିଏ ବା ନାତୁଣୀଟିଏ ପାଖରେ ଆସି ଗେଲ ହେଇପଡୁଛି । ଡକ୍ଟର ପାଠୀ ଏବେ କହିଲେଣି, ଏଇ Mobile Sculptureମାନେ କୁଆଡ଼େ ଭବିଷ୍ୟତରେ କଳା ପରିବାର ଗଢ଼ିବେ ଓ ଓଡ଼ିଶାରେ ନାରୀ-ଶିଳ୍ପୀ-ଜାଗରଣ ନିଶ୍ଚୟ ହେବ ।



Digitized by srujanika@gmail.com

**ଅନୁପ ଷଣ୍ଢ**

## ''ଅନୁପ ! ତୁମେ ଆଜି ମୋ ସାର୍ ହେଲ''

ପ୍ରିନ୍‌ସ୍‌ପାଲ୍ ଯେ କେତେବେଳେ ପାଠୀ ସାର୍ ସମ୍ବୋଧନ ଭିତରେ ହଜିଯାଇଥାନ୍ତି, ତା'ର ଅନୁଭବ ହେଲା ଖଇରାଗଡ଼ରେ M.F.A. ଶ୍ରେଣୀରେ ଯୋଗଦେଲା ପରେ । ମୁଁ ଆନନ୍ଦ-ଆବିଷ୍ଟ ହୋଇ ଯାଇଥାଏ ସାର୍‌ଙ୍କ ଘରକୁ ଖୁସି ଖବରଟି ଜଣାଇବା ପାଇଁ, ଘରେ ପହଞ୍ଚିଲି । କଲିଙ୍ଗବେଲ୍ ତ ନଥାଏ କବାଟ ଠକ୍ ଠକ୍ କଲା ପୂର୍ବରୁ ସୁବାସ ସହ ସାକ୍ଷାତ୍ ହେଲା । ପଗ୍ଭରିଲି - ପ୍ରିନ୍‌ସ୍‌ପାଲ୍ ଅଛନ୍ତି । ସୁବାସ ମୁଣ୍ଡଟୁଙ୍ଗାରି ଉତ୍ତର ଦେଲା ହଁ ଅଛନ୍ତି-ଭିତରକୁ ଆସନ୍ତୁ । ହଠାତ୍ ମୁଁ ଅନୁଭବ କଲି କିଛି ବ୍ୟତିକ୍ରମ, ପ୍ରିନ୍‌ସ୍‌ପାଲ ଦାୟିତ୍ୱ ତୁଲାଉଥିବା ମଣିଷ ଜଣକ ଦିନ ୧୧ଟା ପରେ ଘରେ ରହିବାର ବିଲକ୍ଷଣ । ସାର୍, ସେତେବେଳକୁ ବି.କେ. କଲେଜ ଛାଡ଼ିବା ଏବଂ ଦିଲ୍ଲୀ ଲଳିତ କଳା ଏକାଡ଼େମୀର ସଚିବ ହେବାର ମଝାମଝିରେ । ସାର୍ ଆସିଲେ, ଅଭିନନ୍ଦନ ଜଣାଇଲେ, ମିଶ୍ର ସାର୍‌ଙ୍କ ପାଖକୁ ବନ୍ଧୁତ୍ୱର ଚିଠିଟେ ଲେଖି ମୋ ହାତକୁ ବଢ଼ାଇଦେଲେ । ସେତେବେଳଠୁଁ ମୁଁ ଚିନ୍ତାକରିବାକୁ ଲାଗିଥାଏ 'ପ୍ରିନ୍‌ସ୍‌ପାଲ୍'ର ଶୂନ୍ୟସ୍ଥାନ ପୂରଣ କରିବାର ପରିପୂରକ ଶବ୍ଦଟାଏ । ଅବଶ୍ୟ ଶବ୍ଦଟିଏ ମିଳିଲା ଖଇରାଗଡ଼ ପହଞ୍ଚିଲା ପରେ, ପାଠୀ ସାର୍ ଭାବରେ ମିଶ୍ରସାର୍, ଅନ୍ୟ ପ୍ରଫେସର୍, କଳାକାର, କଳାଛାତ୍ରଙ୍କ ଗହଣରେ । ପ୍ରିନ୍‌ସ୍‌ପାଲ୍ ଶବ୍ଦଟି ଧୀରେ ଧୀରେ ପାଠୀ ସାର୍‌ର ଆତ୍ମୀୟତା ମଧ୍ୟରେ ଲୀନ ହୋଇଗଲା ।

ବି.କେ. କଲେଜ ଯିବାର ତିନି ମାସ ହୋଇଥାଏ, ପ୍ରିନ୍‌ସ୍‌ପାଲ୍ କ୍ଲାସକୁ ଆସି ସ୍କେଚ୍ ଖାତା ଦେଖୁଥାନ୍ତି । ହଠାତ୍ ମୋ ଆଡ଼କୁ ଅନେଇ ଛିଡ଼ାହେବାକୁ ଇଙ୍ଗିତଦେଇ କହିଲେ - କ'ଣ ଲଗାଉଛ ମୁଣ୍ଡରେ ? ତଳକୁ ମୁଣ୍ଡପୋତି କହିଲି ନଡ଼ିଆ ତେଲ । ତେଲ ଲଗାଅନି ମୁଣ୍ଡରେ, କଲେଜ କାନ୍ଥ ଖରାପ ହେଉଛି । ମୁଁ କାନ୍ଥ ଆଡ଼କୁ ଗ୍ଭହିଁଲି, କାନ୍ଥରେ ତେଲ ଚିକିଟା ଦାଗ । ମୁଁ ତଳକୁ ମୁଣ୍ଡ ପୋତିଲି । ଏଥିରୁ ଅନୁଭବ କରିହେବ ସେ କେତେ ଭଲ ପାଉଥିଲେ ତାଙ୍କ କଲେଜକୁ, କଲେଜର ଡିସ୍‌ଟେମ୍ପର୍ ବୋଳା କାନ୍ଥକୁ । ସେତେବେଳେ ଆମେ କଲେଜରେ ତଳେ ବସୁଥିଲୁ ଧାଡ଼ିଧାଡ଼ି ହୋଇ । ଚେୟାର୍ ଟେବୁଲ୍‌ରେ ବସିବାର ପରମ୍ପରା ନଥିଲା ସେଠି । ତେଣୁ କାନ୍ଥପାଖ ପିଲା କାନ୍ଥରେ ଡେରିହେବା ସ୍ୱଭାବିକ ଥିଲା ।

କଲେଜର ଛାତ୍ରଛାତ୍ରୀ, ସାର୍‌ମାନେ ତଥା ଅନ୍ୟ କର୍ମଗ୍ଭରୀମାନେ ଏକ ପରିବାର ଭଳି ଏକମନ ହୋଇ ଚଳୁଥିଲେ ଏବଂ ଘରର ମୁରବୀ ଭଳି ସମସ୍ତଙ୍କ ମନକୁ ନେଇ କଲେଜକୁ ଚଳଉଥିଲେ ସାର୍ । ଓଡ଼ିଆଙ୍କ ବାର ମାସରେ ତେର ପର୍ବଭଳି କଲେଜରେ ବର୍ଷଯାକ ଲାଗି ରହିଥିଲା ଉତ୍ସବ । ସ୍ୱାଗତିକା, ଗଣେଶପୂଜା, ଗୁରୁଦିବସ, ଚିତ୍ରମେଳା, କବିତାପାଠୋତ୍ସବ, ନାଟ୍ୟୋତ୍ସବ, ସରସ୍ୱତୀପୂଜା, ବାର୍ଷିକ ଚିତ୍ର ପ୍ରଦର୍ଶନୀ (ବାର୍ଷିକଉତ୍ସବ) ଆଦି କେତେ କ'ଣ ? ସପ୍ତାହର ପ୍ରତ୍ୟେକ ଶନିବାରରେ ସେମିନାର୍‌ର ଆୟୋଜନ ହେଉଥିଲା । ପିଲାମାନେ ପରସ୍ପରର ଚିତ୍ର ସଂପର୍କରେ ଆଲୋଚନା କରୁଥିଲେ । ଏବଂ ବିଭିନ୍ନ କଳା ଧାରା ସଂପର୍କରେ ବିଗ୍ଭର ବିମର୍ଶ ମଧ୍ୟ ହେଉଥିଲା । ନୂଆ ପିଲାଙ୍କୁ କଲେଜରେ ସ୍ୱାଗତ କରାଯିବାର ଉତ୍ସବଥିଲା ସ୍ୱାଗତିକା । ଉତ୍ସବର ସମାପ୍ତି ହେଉଥିଲା ମହୋତ୍ସବ ଭଳି - ଅରୁଆ ଭାତ, ବାଡ଼ିଆ ଡାଲମା ସହ କାଚମାର୍କା ଚଟଣିରେ ।

ପାଠୀ ସାର୍‌ଙ୍କ କଳାମେଳାର ପରିକଳ୍ପନା, କଳ୍ପନା ଛକରୁ ଉଦ୍ଭବି, ବିସ୍ତାରି ଯାଇଥିଲା ପୂରା ଭୁବନେଶ୍ୱର ନଗରୀକୁ । ପ୍ରାୟତଃ ଡ଼ିସେମ୍ବର ମାସ ଶେଷ ସପ୍ତାହରେ କଳାମେଳା ଆରମ୍ଭ ହେଉଥିଲା । ବହୁ ଦର୍ଶକ, ଅଭିଭାବକ, ବୁଦ୍ଧିଜୀବୀ, କଳାପ୍ରେମୀ, ରସିକଙ୍କ ଭିଡ଼ ଜମୁଥିଲା ବି.କେ. କଲେଜର ଛୋଟିଆ ପରିସର ଭିତରେ । ପ୍ରସ୍ତୁତି ଆରମ୍ଭ ହେଉଥିଲା ପ୍ରାୟତଃ ମାସେ ପୂର୍ବରୁ ଟେରାକୋଟାର ହାତୀ, ଘୋଡ଼ା, ସବାରୀ, Wall Hanging ଆଦି ମାଟିରେ ତିଆରି ହୋଇ ଧାଡ଼ିଧାଡ଼ି ହୋଇ Sculpture

Digitized by srujanika@gmail.com

Department (ଭାସ୍କର୍ଯ୍ୟ ବିଭାଗ)ରେ ଭର୍ତ୍ତି ହୋଇଯାଉଥିଲା । ପ୍ରିନ୍‌ସପାଲ୍ ଆସି ପ୍ରସ୍ତୁତି କାମ ଦେଖୁଥିଲେ ଏବଂ ଉତ୍ସାହିତ କରୁଥିଲେ ଛାତ୍ରଛାତ୍ରୀଙ୍କୁ । ଆମେ Painting Department (ଚିତ୍ରକଳା ବିଭାଗ)ର ପିଲାମାନେ ରାତ୍ରିଅନିଦ୍ରା ରହି ଗ୍ରୀଟିଙ୍ଗ୍‌ସ୍, Water Colour Painting ଆଦି ତିଆରି କରି ଭରିଦେଉଥିଲୁଁ ଷ୍ଟଲ ସବୁକୁ । ଗ୍ରାଫିକ୍ ଡିପାର୍ଟମେଣ୍ଟର ଷ୍ଟଲ୍‌କଥା ନିଆରା । କାନ୍ଧଝୁଲା ବ୍ୟାଗ୍, କେଲେଣ୍ଡର ଆଦି ଆକର୍ଷିତ କରି ଆଣିଥାଏ ପ୍ରାୟତଃ ସମସ୍ତଙ୍କୁ । ମେଳା ସମୟରେ ପ୍ରତ୍ୟେକ ଦିନ ରାତ୍ରିରେ ଆୟୋଜିତ ହୁଏ Camp Fire, ନାଚଗୀତର ଆସର ଜମିଯାଏ, ନିଆଁ ଘେରିପାଖରେ ଘେରି ପ୍ରିନ୍‌ସ୍‌ପାଲ୍, ଅନ୍ୟ ସାର୍‌ମାନେ ତଥା ସବୁ ଛାତ୍ରଛାତ୍ରୀ ମସ୍‌ଗୁଲ୍ ହୋଇଯାଆନ୍ତି । ବଡ଼ ସାନ, ସିନିୟର୍-ଜୁନିୟର୍ କିଛି ଫରକ୍ ନଥାଏ ସେଠି । ବହୁଥର ପାଠୀ ସାର୍ ଟିଣଡ଼ବା କିମ୍ବା ଥାଳି ବଜାଇ ଝୁମି ଉଠିବାର ଦୃଶ୍ୟ ରୋମାଞ୍ଚିତ କରିଛି ଆମ୍ଭମାନଙ୍କୁ ।

ଚିତ୍ରମେଳା ଭଳି ଭୁବନା କେଣ୍ଟିନ୍ ଥିଲା ପାଠୀ ସାର୍‌ଙ୍କ ଅମଳର ମନେ ରଖିଲା ଭଳି ସ୍ମୃତିଟିଏ । କେଣ୍ଟିନ୍ ଅର୍ଥାତ୍ ବାଉଁଶର ଖୁଣ୍ଟାକୁ ଘେରି ବାଉଁଶ ପାଟିଆର ପଟି, ତା ଉପରେ ଖଣ୍ଡିଏ ଦି-ଚଉତା ତାଳିପକା କେରପାଲ୍ । କେଣ୍ଟିନ୍ ସାମ୍ନାରେ ସିମେଣ୍ଟର ବେଞ୍ଚ, ଚା, ପକୁଡ଼ି, ବରା ଘୁଗୁନିର ଭୁରୁଭୁରୁ ବାସ୍ନା ତ୍ରିତଳରେ ସ୍ଥିତ Painting Departmentକୁ ମଧ ସମ୍ମୋହିତ କରିଦେଉଥିଲା । ଆମ୍ବଗଛ ମୂଳରେ ଗଛକୁ ଘେରି ତିଆରି ହୋଇଥିଲା କେତୋଟି ସିମେଣ୍ଟ ମଣ୍ଡପ । ଆମ ସହପାଠୀ କାଜଲ୍ ପାତ୍ର ଆମ୍ବଗଛଟିକୁ କଦମ୍ବ ଗଛ କହି କୁରୁଳି ଉଠୁଥିଲା ଅଶେଷ ଆନନ୍ଦରେ । ଯୋଡ଼ି ଦାର୍ ପ୍ରେମିକପ୍ରେମିକା ଏଠିସେଠି ନବସି ଆମ୍ବଗଛ ମୂଳରେ ସାଧୀନ ଚିତ୍ତରେ ବସିବାର ଅଭିନବ ପରିକଳ୍ପନା ଥିଲା ପାଠୀ ସାର୍‌ଙ୍କର । ଏଥିରୁ ଜଣାଯାଏ ସାର୍ ସତରେ କେତେ ରସିକ ......... ଯେତେହେଲେ କଳାକାର ତ' । ଶାନ୍ତିନିକେତନ ଶୈଳୀରେ ତିଆରିବାକୁ ଲାଗିଥିଲେ କଲେଜର ଛୋଟିଆ ପରିବେଶଟିକୁ ।

**ମୋ ପ୍ରଚେଷ୍ଟାରେ ବନ୍ଧୁ ପ୍ରବୀର, ପଞ୍ଚାନନ, ସଂଜୟ ତଥା ବାନ୍ଧବୀ ମଧୁମିତାର ସହଯୋଗରେ ଆମେ ପ୍ରକାଶ କରିଥିଲୁଁ ଏକ କଳା ସାହିତ୍ୟ ପତ୍ରିକା "କୁଆର' । ଆଠ ପୃଷ୍ଠାର ଏହି ଲିଫ୍‌ଲେଟ୍ ପତ୍ରିକା ପାଇଁ ବହୁ ଉପଦେଶ ତଥା ପରାମର୍ଶ ମିଳିଥିଲା ପାଠୀ ସାର୍‌ଙ୍କଠାରୁ ।** ପତ୍ରିକାର ନିୟମିତ ପ୍ରକାଶନ ପାଇଁ କିଛି ଆର୍ଥିକ ସହାୟତା ମଧ ସେ କରିଥିଲେ । ଅବଶ୍ୟ ଦୁଇବର୍ଷର ନିୟମିତ ପ୍ରକାଶ ପରେ ପତ୍ରିକାଟି ଆପେ ବନ୍ଦ ହୋଇଯାଇଥିଲା । ସେ ସମୟରେ ବହୁଦିନ ପର୍ଯ୍ୟନ୍ତ ମୋତେ ପ୍ରତିଷ୍ଠାତା ସମ୍ପାଦକ କହି ସମ୍ବୋଧନ କରୁଥିଲେ । ସାର୍‌ଙ୍କ ସମ୍ବୋଧନ ଭିତରେ ଲୁଚି ରହିଥିଲା ଅନାବିଳ ସ୍ନେହ ତଥା ପରିପକ୍ୱ ରସିକତା ।

ଶିକ୍ଷାବର୍ଷର ଅନ୍ତିମକ୍ଷଣରେ କଲେଜରେ ପାଳନ ହୋଇଥାଏ ବାର୍ଷିକ ଉତ୍ସବ । ଏହି ବାର୍ଷିକ ଉତ୍ସବର ପ୍ରମୁଖ ଆକର୍ଷଣ ରହେ କବିତା ପାଠୋତ୍ସବ, ବାର୍ଷିକ ଚିତ୍ର ପ୍ରଦର୍ଶନୀ ଏବଂ ନାଟକ ଉତ୍ସବ । କଲେଜରେ ଅଧ୍ୟୟନ ସମୟ ମଧ୍ୟରେ ମୋର ପ୍ରତ୍ୟକ୍ଷ ସଂଶ୍ଳିଷ୍ଟତାରେ ପ୍ରଦର୍ଶିତ କରାଇଥିଲୁଁ ତିନୋଟି ଡ୍ରାମା । ନାଟକ ଲେଖାଠୁଁ ଆରମ୍ଭକରି ଅଭିନୟ ପର୍ଯ୍ୟନ୍ତ ସବୁଥିରେ ମୋର ସଂଶ୍ଳିଷ୍ଟତା ଥିଲା । ମୋର ତୃତୀୟ ବର୍ଷର ଅଧ୍ୟୟନ ସମୟରେ ବନ୍ଧୁ ପ୍ରବୀରର ସହଯୋଗରେ ଲେଖିଥିଲୁଁ ନାଟକ 'ରଙ୍ଗତୂଳୀର ମଣିଷ' ଏବଂ ଆମେ ଦୁହେଁ ହିଁ ନିର୍ଦ୍ଦେଶନା ଦେଇଥିଲୁଁ ନାଟକଟିକୁ । ନାଟକଟି ପ୍ରଦର୍ଶିତ ହେବା ପୂର୍ବରୁ ପାଠୀ ସାର୍ ବାରମ୍ବାର ଆସି ପ୍ରସ୍ତୁତି ଦେଖିଥିଲେ ଏବଂ ତାଙ୍କର ନିର୍ଦ୍ଦେଶକ୍ରମେ ନାଟକଟି ମୁକ୍ତଭାବେ ପ୍ରାକୃତିକ ପରିବେଶରେ ରାଷ୍ଟ୍ରୀୟ ଲଳିତ କଳାକେନ୍ଦ୍ରର ପରିସର ମଧ୍ୟରେ ଅନୁଷ୍ଠିତ ହୋଇଥିଲା । ସାର୍‌ଙ୍କ ପରାମର୍ଶ ଓ ନିର୍ଦ୍ଦେଶ ମୁତାବକ ଅଭିନବ ଶୈଳୀରେ ପରିସରର ବିଭିନ୍ନ ଅଂଶକୁ ଏକଏକ ଦୃଶ୍ୟଭାବେ (location)ପ୍ରୟୋଗ କରିଥିଲୁ । ନିର୍ବାଚିତ ସ୍ଥାନମାନଙ୍କରେ ଆଲୋକ ପ୍ରଜ୍ଜ୍ୱଳିତ ହୋଇ ଦୃଶ୍ୟର ପ୍ରାରମ୍ଭ ହେଉଥିଲା ଏବଂ ପୂରା ଦୃଶ୍ୟର ସମାପ୍ତିପରେ ଅନ୍ଧକାର ଆଚ୍ଛାଦିତ କରୁଥିଲା ପରିସରକୁ । ଡ୍ରାମା ସରିବାପରେ ପ୍ରାୟ ରାତି ୧୨ଟା ପର୍ଯ୍ୟନ୍ତ ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରର ଘାସଗାଲିଚ୍ଛ ଉପରେ ବସି ଚିତ୍ର, ନାଟକ, କବିତା, କଳା ଓ କଳା ରାଜନୀତି ସବୁକିଛି

Digitized by srujanika@gmail.com

ଆଲୋଚିତ ତଥା ମୁକ୍ତ ମନ ବିନିମୟ ହେଉଥିଲା ସାର୍‌ଙ୍କ ସହ । ଆମ୍ଭମାନଙ୍କ ଶେଷ ବର୍ଷରେ ପୁଣିଥରେ ନାଟକଟିଏ ମଞ୍ଚସ୍ଥ କରିବାକୁ ମନସ୍ଥ କରି ସାର୍‌ଙ୍କ ପାଖରେ ଉପସ୍ଥିତ ହେଲାକ୍ଷଣି, ସାର୍ ତାଙ୍କ ମନକଥା କହିଥିଲେ ଗୁରୁ ଶରତଚନ୍ଦ୍ର ଦେବଙ୍କ ଚିତ୍ର 'ଶ୍ଳୋକଛନ୍ଦ'କୁ ନାଟ୍ୟରୂପାନ୍ତର କରିବା ପାଇଁ । ଏହି ପରାମର୍ଶ ଆଶ୍ଚର୍ଯ୍ୟଚକିତ କରିଥିଲା ଆମ୍ଭମାନଙ୍କୁ ଏବଂ ମୁଁ, ପ୍ରବୀର ଓ ପଞ୍ଚାନନ (ସାର୍‌ଙ୍କ ଶବ୍ଦରେ ବାଲେଶ୍ୱରିଆ) ଏହି ଅସମ୍ଭବ ପରିକଳ୍ପନା ଭିତରେ ହଜିଗଲୁଁ । ହେଲେ ଶେଷପର୍ଯ୍ୟନ୍ତ କୌଣସି କୂଳକିନାରା ନ'ପାଇ ସାର୍‌ଙ୍କ ପାଖରେ ଉପସ୍ଥିତ ହେଲାପରେ, ସେ ମନର ଇଚ୍ଛାକୁ ନାଟ୍ୟରୂପରେ ବ୍ୟକ୍ତ କଲେ । ଚିତ୍ରର ଚରିତ୍ର ଧୀରେ ଧୀରେ ନାଟ୍ୟରୂପରେ ରୂପାନ୍ତରିତ ହୋଇ ଚଳଚଞ୍ଚଳ - ଗତିଶୀଳ ହେବାରେ ଲାଗିଲେ । ନାଟ୍ୟଉତ୍ସବର ପ୍ରଥମ ସନ୍ଧ୍ୟାରେ 'ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀ ସମାଃ ଯତ୍ କ୍ରୌଞ୍ଚ ମିଥୁନାଦେକମ୍ବଧିଃ କାମମୋହିତମ୍' (ପ୍ରଥମ ଶ୍ଳୋକ, ରାମାୟଣ) ଶ୍ଳୋକର ଉଦ୍‌ଘୋଷଣ ସହ ମଞ୍ଚ ଆଲୋକିତ ହେବା ପରେ ପରିବେଶ ରଙ୍ଗମୟ ଓ ରସମୟ ହୋଇଉଠିଲା । **ନାଟକ ସରିବାକ୍ଷଣି ସାର୍ ଆସି ଆମ୍ଭମାନଙ୍କୁ ଆନନ୍ଦରେ ଆବିଷ୍ଟ ହୋଇ ଅଭିନନ୍ଦନ ଜଣାଇଲେ । ସତେ ଯେପରି ତାଙ୍କ ସପ୍ନର ସଫଳ ରୂପାୟନ ହୋଇପାରିଥିଲା ନାଟକରେ । ସାର୍ ଭାବବିହ୍ୱଳ ହୋଇ କହିଥିଲେ ଅନୁପ ! ତୁମେ ଆଜି ମୋ ସାର୍ (ମୁଁ ଶରତଚନ୍ଦ୍ରଙ୍କ ଚରିତ୍ରରେ ଅଭିନୟ କରୁଥିଲି) ମୁଁ ସେଇ ପଦକ କଥାରେ ତଟସ୍ଥ ହୋଇଯାଇଥିଲି ।**

ବି.କେ. କଲେଜରେ ପଢ଼ା ସରିବା ପରେ M.F.A. ପଢିବା ପାଇଁ ମୁଁ ଖଇରାଗଡ଼ ଗଲି । ସେଠାର ରହଣି କାଳରେ ପରୋକ୍ଷ, ପ୍ରତ୍ୟକ୍ଷ ଭାବରେ ସାର୍‌ଙ୍କର ବହୁ ସାହାଯ୍ୟ, ସହଯୋଗ ତଥା ପରାମର୍ଶ ମିଳିଥିଲା । ପରବର୍ତ୍ତୀ ସମୟରେ ମୋତେ ଗବେଷଣା ପାଇଁ ୟୁ.ଜି.ସି. ଫେଲୋସିପ୍ ମିଳିଲାପରେ ସାର୍‌ଙ୍କର ଆଶୀର୍ବାଦ ଓ ପରାମର୍ଶ ପାଇଁ ପହଞ୍ଚିଲି ଏବଂ ତାଙ୍କରି ନିର୍ଦ୍ଦେଶକ୍ରମେ ପ୍ରଫେସର ଉମେଶ ଚନ୍ଦ୍ର ମିଶ୍ର ସାର୍‌ଙ୍କ ଅଧୀନରେ ଇନ୍ଦିରା କଳା ସଂଗୀତ ବିଶ୍ୱବିଦ୍ୟାଳୟ, ଖଇରାଗଡ଼ରେ "Folk Paintings of Coastal Orissa" ବିଷୟରେ ଗବେଷଣା କରିବାର ସିଦ୍ଧାନ୍ତ ନେଇଥିଲି । ମୋର ଗବେଷଣାର ଗୋଟିଏ ବର୍ଷ ନ ପୁରୁଣୁ ମୋର Guide ମିଶ୍ର ସାର୍‌ଙ୍କ ଦେହାନ୍ତ ହେବାରୁ Universityର ଅନୁମତିକ୍ରମେ ପାଠୀ ସାର୍‌ଙ୍କ ଅଧୀନରେ ଗବେଷଣା କରିବାର ଅପୂର୍ବ ସୁଯୋଗ ମିଳିଥିଲା । ତାଙ୍କର ସମସ୍ତ ଅଭିଜ୍ଞତା, ଅନୁଭବକୁ ବିଭିନ୍ନ କ୍ଷଣରେ ବିତରିବା ସହ, Field Survey ସମୟରେ ବିଭିନ୍ନ ଗାଁ ବୁଲିବା ସହ ବିଭିନ୍ନ ଅମୂଲ୍ୟ ପରାମର୍ଶମାନ ଦେଇଥିଲେ । ଜଣେ ଚିତ୍ରକର, ଆଦର୍ଶ - ଶିକ୍ଷକ, କଳା-ଐତିହାସିକ, ସୃଜନଶୀଳ ଲେଖକ, କଳା-ସମାଲୋଚକ ହେବା ସହ ଜଣେ ସଫଳ ଗବେଷକ ତଥା ଗବେଷଣା ନିର୍ଦ୍ଦେଶକ ମଧ୍ୟ ।

ଖଇରାଗଡ଼ରେ ଇନ୍ଦିରା କଳା ସଂଗୀତ ବିଶ୍ୱବିଦ୍ୟାଳୟରେ U.G.C. Refresher Course ହେବା ଅବସରରେ ସାର୍ ୨୦୦୦ ମସିହା ନଭେମ୍ବର ୧୬ ତାରିଖରେ Resource Person ଭାବରେ ଖଇରାଗଡ଼ ପହଞ୍ଚିଥିଲେ । ସେଠାରେ ତିନିଦିନର ରହଣି ସମୟରେ ଓଡ଼ିଶାର Classical Painting, Art Tradition, ଓଡ଼ିଶାର ଆଦିବାସୀ କଳା ଓ ଲୋକକଳା ଉପରେ ଦେଇଥିବା ସାରଗର୍ଭକ ପ୍ରବଚନ ହତଚକିତ କରିଥିଲା ସେଠାର ଅଂଶଗ୍ରହଣକାରୀ ଶିକ୍ଷକ, ଶିକ୍ଷାବିଦ୍ ତଥା ଗବେଷକମାନଙ୍କୁ । ସାର୍ ସେଠାରେ ଆଙ୍କିଥିବା ପୁଷ୍କରଣୀ ସିରିଜ୍‌ର ଏକ ଚିତ୍ର ଏବେ ମଧ୍ୟ ସେଠାରେ ସାର୍‌ଙ୍କର ଉପସ୍ଥିତିକୁ ଅନୁଭବ କରାଇଥାଏ । ପରବର୍ତ୍ତୀ ସମୟରେ University Academic Council Visual Art ର member ଭାବରେ ସାର୍ ମନୋନୀତ ହୋଇଛନ୍ତି ୨୦୦୧ ରୁ ଦୁଇବର୍ଷ ପାଇଁ ।

ମୋର ଅନୁରୋଧକ୍ରମେ ସାର୍ ମୋ ବାହାଘରରେ ଉପସ୍ଥିତ ହେବାର ପ୍ରତିଶ୍ରୁତି ଥିଲା ମୋ ପାଇଁ ବହୁ ଉତ୍ସାହପ୍ରଦ । ତଥାପି ବିଶ୍ୱାସ ହେଉ ନଥାଏ । ସତକୁ ସତ ଯେତେବେଳେ ସାର୍, ରାଓ ସାର୍, ରାମହରି ସାର୍‌ଙ୍କ ସହ ଭୋଗରାଇରେ ଆମଘରେ ଉପସ୍ଥିତ ହେଲେ ମୁଁ ରୋମାଞ୍ଚିତ

Digitized by srujanika@gmail.com

ହୋଇଯାଇଥିଲି । ମୋ ବାହାଘର ବ୍ୟତୀତ ସାର୍‌ଙ୍କର ଭୋଗରାଇରେ ଉପସ୍ଥିତ ହେବାର ଅନ୍ୟଏକ ଆକର୍ଷଣ ଥିଲା ସାର୍‌ଙ୍କ ଗୁରୁ ଚିତ୍ରଶିଳ୍ପୀ ଅନନ୍ତ ପଣ୍ଡାଙ୍କ ଜନ୍ମସ୍ଥାନ ଦର୍ଶନ । ସେହି ଆସକ୍ତିର ବଶବର୍ତ୍ତୀ ହୋଇ ସାର୍ ଅନନ୍ତ ପଣ୍ଡାଙ୍କ ପୈତୃକ ଘରେ ପହଞ୍ଚି ସେଠାର ମାଟି ମୁଣ୍ଡରେ ଲଗାଇଥିଲେ - ଏହାହିଁ ସାର୍‌ଙ୍କ ବିଶାଳ ବ୍ୟକ୍ତିତ୍ୱ ଏବଂ ଗୁରୁ ପ୍ରୀତିର ଉଦାହରଣ । ଏଠାରେ ଉଲ୍ଲେଖ କରିବା ଆବଶ୍ୟକ ଯେ ଅନନ୍ତ ପଣ୍ଡାଙ୍କ ପିତା ବସନ୍ତ ପଣ୍ଡା ମଧ ଜଣେ ସୁନାମଧନ୍ୟ ପ୍ରବୀଣ ଚିତ୍ରକର ଥିଲେ । ମୋର ବାହାଘର ଆଲ୍‌ବମ୍‌ରେ ଟ୍ରଲି ରିକ୍ସା ଉପରେ ପାଠୀ ସାର୍‌ଙ୍କର ନାଚିବାର ଫଟୋ ଦେଖିଲେ ଯେକେହି ଆଶ୍ଚର୍ଯ୍ୟଚକିତ ହୋଇଯିବ । ବିବାହ ଶୋଭାଯାତ୍ରାରେ ସାର୍‌ଙ୍କର ନାଚ ଆଚମ୍ଭିତ କରିଥିଲା ସମସ୍ତଙ୍କୁ, ଏଢ଼େ ବିଶାଳ ବ୍ୟକ୍ତିତ୍ୱର ଅଧିକାରୀ ବ୍ୟାଣ୍ଡର ତାଳେ ତାଳେ ଝୁମି ଉଠିବାର ଦୃଶ୍ୟ ଅସାମଞ୍ଜସ୍ୟ ଭଳି ଲାଗିଥିଲା ଅନ୍ୟମାନଙ୍କୁ ।

ଏମିତି ବହୁ ରୋମାଞ୍ଚିତ ମୁହୂର୍ତ୍ତ ଓ ଘଟଣାର ସୁମଧୁର ସ୍ମୃତି ସାର୍‌ଙ୍କ ସହ ରହିଛି । ସାର୍‌ଙ୍କୁ ଦେଖିଛି ଅନୁଭବ କରିଛି ଏବଂ କରୁଛି ମଧ । ସାର୍ ଏଯାଏଁ ପ୍ରିନ୍‌ସ୍‌ପାଲ୍ ଶବ୍ଦର ସରହଦ ଭିତରେ ଥିଲେ - ଅବଶ୍ୟ B.K. Collegeରେ ତାଙ୍କୁ, ତାଙ୍କର ଏହି ଷାଠିଏ ବର୍ଷ ପୂର୍ତ୍ତିରେ ବିଦାୟ ସମ୍ବର୍ଦ୍ଧନା ମିଳିଥାନ୍ତା । ପରନ୍ତୁ ବାରମ୍ବାର ସାଗତ ହେବାର ବ୍ୟକ୍ତିତ୍ୱର ବିଦାୟ ନଥାଏ - ସମ୍ଭବତଃ ସେଥିପାଇଁ ସାର୍ ବିଦାୟର ଆୟୋଜନଠୁଁ ଦୂରରେ ରହିଛନ୍ତି ଏବଂ ଆମେ ସମସ୍ତେ ତାଙ୍କର ଆପଣାର, ଅତି ଆପଣାର ହେବାର ସମ୍ଭାବନାକୁ ଅସୀକାର କରିପାରିନାହୁଁ ।



Digitized by srujanika@gmail.com

ଜୟନ୍ତ କୁମାର ଦାସ

## ଚିତ୍ରକଳା ଶିକ୍ଷାକ୍ଷେତ୍ରରେ ବ୍ରୋଞ୍ଜ କାଷ୍ଟିଙ୍ଗର ପ୍ରୟୋଗ

ଓଡ଼ିଶା ପଥରଖୋଦାଇ ଶିଳ୍ପ ପାଇଁ ବିଶ୍ୱପ୍ରସିଦ୍ଧି ଲାଭ କରିଥିଲା ଏବଂ ଓଡ଼ିଶା କାରିଗରଙ୍କ ଢଳେଇ ପିତଳ ମୂର୍ତ୍ତି ପ୍ରତି ମନ୍ଦିରରେ ପୂଜା ପାଉଥିଲେ ଏବଂ ଉଭୟ ଶିଳ୍ପକୌଶଳ ଶହଶହ ବର୍ଷ ଧରି ଆମର କଳା ପରମ୍ପରାକୁ ଋଦ୍ଧିମନ୍ତ କରିଥିଲା । କିନ୍ତୁ ଆଧୁନିକ କଳାଶିକ୍ଷା କ୍ଷେତ୍ରରେ ଏସବୁର ପ୍ରୟୋଗ ବହୁଦିନ ଧରି ହୋଇ ନଥିଲା । ଆମେ ପ୍ଲାଷ୍ଟର୍ ଅଫ୍ ପ୍ୟାରିସ୍ ଓ ସିମେଣ୍ଟ ପ୍ରତି ଅହେତୁକ ଭାବେ ଆକୃଷ୍ଟ ହୋଇପଡ଼ିଥିଲୁ । ନିର୍ବିବାଦରେ କୁହାଯାଇପାରିବ ଏହା ଉପନିବେଶୀୟ ଶାସନର ପ୍ରଭାବ । ଆମର ଅଧକ୍ଷ ଡକ୍ଟର ଦିନନାଥ ପାଠୀ ନିଜେ ଜଣେ କଳା ଗବେଷକ ଓ କଳାତତ୍ତ୍ୱବିତ୍ ହୋଇଥିବା ଫଳରେ ଏ ବିଷୟଗୁଡ଼ିକୁ ମୋ ଅପେକ୍ଷା ସେ ଭଲ ଭାବରେ ହୃଦୟଙ୍ଗମ କରିଥିଲେ ଏବଂ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟରେ ମାଟି (ଟେରାକୋଟା), ପଥର ଓ ବ୍ରୋଞ୍ଜ କାଷ୍ଟିଙ୍ଗର ପ୍ରୟୋଗ ପାଇଁ ଚେଷ୍ଟିତ ଥିଲେ ।

ମୁଁ କଲେଜରେ ଅଧ୍ୟାପକ ଭାବେ ଯୋଗଦେଲା ବେଳକୁ କଳାକ୍ଷେତ୍ରରେ ମୋର ଅଗ୍ରଜ ଦେବରାଜ ସାହୁ ଟେରାକୋଟା, କୁମ୍ଭାରଚକ ଏବଂ ମାଟି ଭାଟି ସହିତ ଛାତ୍ରଛାତ୍ରୀଙ୍କୁ ଭଲ ଭାବରେ ପରିଚିତ କରାଇଦେଇଥିଲେ । କଳାଶିକ୍ଷା କ୍ଷେତ୍ରରେ ଏଭଳି ପ୍ରୟୋଗ ପ୍ରଶଂସନୀୟ । ଅଧକ୍ଷ ଡକ୍ଟର ପାଠୀ ନିଜେ ଜଣେ ଭାସ୍କର ନ ହୋଇଥିଲେ ମଧ୍ୟ କଳାଶିକ୍ଷା କ୍ଷେତ୍ରରେ ତାଙ୍କ ବିଚାର, ପ୍ରୟୋଗ ଓ ଦୂରଦୃଷ୍ଟି ନିଶ୍ଚିତ ଭାବେ ଓଡ଼ିଶାରେ ଥିବା କଳା ମହାବିଦ୍ୟାଳୟର ଅଧକ୍ଷମାନଙ୍କଠାରୁ ଉନ୍ନତମାନର ଥିଲା, ଏହା ତାଙ୍କ କାର୍ଯ୍ୟପ୍ରଣାଳୀକୁ ପର୍ଯ୍ୟାଲୋଚନା କଲେ ଯେ କେହି ସ୍ୱୀକାର କରିବ ।

ସେଭଳି ଭାବରେ ଦେଖିବାକୁ ଗଲେ ପଥରରେ ଖୋଦେଇ କାମ କଲେଜରେ ଆରମ୍ଭ କରିବା ପାଇଁ ମୁଁ ଆଉ ଛାତ୍ର ଅଞ୍ଜନ ଦୁହେଁ ଏକାସାଙ୍ଗରେ ମୋର ଲୁନାରେ ଡାପଙ୍ଗକୁ ଯାଇ ପଥରର ବରାଦ ଦେଇ ଆସିବା ପରେ ପରେ ଆରମ୍ଭ ହୋଇଥିଲା । ତାହା ମଧ୍ୟ ପ୍ରଥମତଃ ମୋର ନିରବଚ୍ଛିନ୍ନ ପ୍ରଚେଷ୍ଟାରେ ସମ୍ଭବ ହୋଇପାରିଥିଲା । ଏଥିରେ ସବୁ ଛାତ୍ରମାନେ ଯୋଗ ଦେଇ ମହାବିଦ୍ୟାଳୟର ଭାସ୍କର୍ଯ୍ୟ ବିଭାଗକୁ ଋଦ୍ଧିମନ୍ତ କରିଥିଲେ । ଭାରତବିଖ୍ୟାତ ଭାସ୍କର ପ୍ରଫେସର ବଲବୀର ସିଂହ କଟ୍ ସର୍ବଭାରତୀୟ ଚିତ୍ରଶିକ୍ଷକ ଶିବିରରେ ଯୋଗ ଦେବାକୁ ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟକୁ ଆସିଥିବା ଅବସରରେ ପିଲାମାନଙ୍କୁ ପଥର ଖୋଦେଇ କୌଶଳ ସହିତ ପରିଚିତ କରାଇଦେଇଥିଲେ । ଅଦ୍ୱୈତ, ଅଜୟ, ଆର୍ତ୍ତ, ଅଞ୍ଜନ ପ୍ରଭୃତି ପଥରରେ ଭାସ୍କର୍ଯ୍ୟ ଗଢ଼ିବା ଆରମ୍ଭ କରିଦେଇଥିଲେ ।

କେବଳ ବାକିଥିଲା ବ୍ରୋଞ୍ଜ କାଷ୍ଟିଙ୍ଗ୍ । ଡକ୍ଟର ପାଠୀ ମନେମନେ ଜଣେ କିଏ ବୈଷୟିକ ବ୍ୟକ୍ତିଙ୍କ ଅପେକ୍ଷାରେ ଥିଲେ । କଲେଜରେ ମୋର ଯୋଗଦାନ ତାଙ୍କ ମନରେ ଆଶା ସଞ୍ଚାର କଲା । ସେତେବେଳର ସଂସ୍କୃତି ନିର୍ଦ୍ଦେଶକ ସୁବାସ ପାଣି ଅଧକ୍ଷଙ୍କୁ ଭଲ ପାଉଥିଲେ ଏବଂ ତାଙ୍କ ମାଧ୍ୟମରେ ଅଧକ୍ଷ କଲେଜ ପାଇଁ ନାନା ସୁବିଧା ସୁଯୋଗ ଯୋଗାଡ଼ କରିଦେଉଥିଲେ ।

ମୁଁ ଏଠାରେ ମୋ ନିଜ ସମ୍ପର୍କରେ ସାମାନ୍ୟ ସୂଚନା ଦେବା ସମୀଚୀନ ହେବ । ମୁଁ ଖଲ୍ଲିକୋଟ କଳାମହାବିଦ୍ୟାଳୟରେ ଛାତ୍ରଥିବା ଅବସ୍ଥାରେ ବ୍ରୋଞ୍ଜ କାଷ୍ଟିଙ୍ଗର ଆଦିଗୁରୁ ବିପ୍ରଚରଣ ମହାନ୍ତିଙ୍କ ପଟ୍ଟଶିଷ୍ୟ ଥିଲି । ବିପ୍ର ସାର୍ କଲିକତା କଳା ମହାବିଦ୍ୟାଳୟର ଛାତ୍ର ଥିବାହେତୁ ସେ କଲିକତା ମହାନଗରୀରେ ଥିବା ବ୍ରୋଞ୍ଜ ମୂର୍ତ୍ତିଗୁଡ଼ିକୁ ଭଲଭାବେ ଅନୁଧ୍ୟାନ କରିଥିଲେ । ଏହି ମୂର୍ତ୍ତିଗୁଡ଼ିକ ବ୍ରିଟିଶ ଭାସ୍କରମାନଙ୍କ ଦ୍ୱାରା ନିର୍ମିତ ହୋଇଥିବାରୁ ଏଗୁଡ଼ିକର ଗଢ଼ଣ ପ୍ରଣାଳୀ ଅତି ଉଚ୍ଚମାନର ଥିଲା । ଏହି ମୂର୍ତ୍ତିଗୁଡ଼ିକର ରୂପ ସୌଷ୍ଠବ, ଅବୟବର ମାଂସଳ ଭାବ, ବେଶପୋଷାକର ରୈଖୀକତା ଅତ୍ୟନ୍ତ ଆଦର୍ଶସ୍ଥାନୀୟ ଥିଲା । ବିପ୍ର ସାର୍ ମାଡ୍ରାସ୍ ଯାଇ କିଛିଦିନ ମାଡ୍ରାସ୍

Digitized by srujanika@gmail.com

କଳାବିଦ୍ୟାଳୟର ଅଧକ୍ଷ ପ୍ରସିଦ୍ଧ ଭାସ୍କର ଦେବୀ ପ୍ରସାଦ ରାୟ ଚୌଧୁରୀଙ୍କଠାରୁ ବ୍ରୋଞ୍ଜ କାଷ୍ଟିଙ୍ଗ୍ କୌଶଳ ଶିକ୍ଷା କରିବା କଥା ତାଙ୍କଠାରୁ ଶୁଣିଛି । ବିପ୍ର ସାର୍ ଚମତ୍କାର ରିଏଲିଷ୍ଟିକ୍ ଶୈଳୀର ଭାସ୍କର୍ଯ୍ୟ ଗଢୁଥିଲେ ମଧ୍ୟ ନାନା ସ୍ଥାନୀୟ କାରଣରୁ ତାଙ୍କ ବ୍ରୋଞ୍ଜ କାଷ୍ଟିଙ୍ଗ୍ ଷ୍ଟୁଡ଼ିଓକୁ କଲେଜଠାରୁ ଅଲଗା ରଖିଥିଲେ । ସେ ରହୁଥିବା ତାଙ୍କ କ୍ୱାର୍ଟର ପଛଭାଗରେ ଷ୍ଟୁଡ଼ିଓ ରହିଥିଲା । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ହେଲା ସେତେବେଳେ ମିଳୁଥିବା ସ୍ୱଳ୍ପ ଦରମାରେ ଜଣେ ଶିଳ୍ପୀ ହୋଇ ବଞ୍ଚିରହିବା ଓ ପରିବାରର ଭରଣ ପୋଷଣ କରିବା । ଅଧ୍ୟାପକ ବିପ୍ର ସାର୍‌ଙ୍କ ପରିବାରର ଆୟତନ ଯଥେଷ୍ଟ ବଡ଼ ଥିଲା ଏବଂ ଦରମା ବାହାରେ କିଛି ଅର୍ଥ ରୋଜଗାର କରିବା ପାଇଁ ସେ ବ୍ରୋଞ୍ଜ କାଷ୍ଟିଙ୍ଗ୍ କଳାକୁ ବ୍ୟବହାର କରୁଥିଲେ । ସେ ଏହାକୁ ଅତ୍ୟନ୍ତ ନିଭୃତ ଭାବେ ପ୍ରୟୋଗ କରୁଥିଲେ । ଏଣୁ ବିପ୍ର ସାର୍ ଖଲ୍ଲିକୋଟ କଳା ବିଦ୍ୟାଳୟର ଜଣେ ପ୍ରମୁଖ ଅଧ୍ୟାପକ ଥିଲେ ମଧ୍ୟ ବ୍ରୋଞ୍ଜ କାଷ୍ଟିଙ୍ଗ୍ କଳାଶିକ୍ଷାର ମୂଳସ୍ରୋତ ସହିତ ମିଶିପାରି ନଥିଲା ।

ବ୍ରୋଞ୍ଜ କାଷ୍ଟିଙ୍ଗ୍ ପ୍ରତି ବିପ୍ର ସାର୍‌ଙ୍କ ମନୋଭାବକୁ ଅନୁଶୀଳନ କରିବାକୁ ହେଲେ ଆମକୁ ଭାରତୀୟ ଶିଳ୍ପ ପରଂପରାର ଗୁରୁ-ଶିଷ୍ୟ ସମ୍ପର୍କ ଉପରେ ଦୃଷ୍ଟିପାତ କରିବାକୁ ହେବ । ଆମର କାରିଗରମାନେ କୌଳିକ ବୃତ୍ତିର ଗହନ ବିଦ୍ୟାକୁ ନିଜ ପରିବାରର ସଦସ୍ୟ ବା ଅନ୍ୟକେହି ବିଶ୍ୱସ୍ତ ଶିଷ୍ୟ ବ୍ୟତିରେକ ଅନ୍ୟକାହାରିକୁ ସହଜରେ ବିତରଣ କରୁନଥିଲେ । କାରଣ ଏହି ବିଦ୍ୟାକୁ ସେମାନେ ସେମାନଙ୍କ କାରିଗର ସଂପ୍ରଦାୟ ବା ପରିବାରରେ ଶହଶହ ବର୍ଷଧରି ପ୍ରୟୋଗ କରି ଉତ୍କର୍ଷରେ ପହଞ୍ଚି ପାରିଥିଲେ । ଏହି ବିଦ୍ୟାର ଗହନତା ଓ ଶୁଦ୍ଧତା ଉପରେ ପରିବାରର ମର୍ଯ୍ୟାଦା ଓ ପରିପୋଷଣ ମଧ୍ୟ ନିର୍ଭର କରୁଥିଲା । ମୁଁ ମୋ ବ୍ୟବହାର ଓ ଶିକ୍ଷା ଗ୍ରହଣ କରିବାର ଆଗ୍ରହ ଓ ସର୍ବୋପରି ମୋର ସଙ୍କୋଚ ପଣିଆ ଓ ସେବା ମନୋବୃତ୍ତି ଯୋଗୁ ବିପ୍ର ସାର୍‌ଙ୍କ ଶ୍ରଦ୍ଧା ଓ ବିଶ୍ୱାସଭାଜନ ହୋଇପାରିଥିଲି । ମୁଁ ଛାତ୍ର ପଣିଆରୁ ଉତ୍ତୀର୍ଣ୍ଣ ହୋଇ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିସାରିଥିବା ହେତୁ ସାର୍ ମୋତେ ତାଙ୍କ ପରିବାରର ଲୋକଭଳି ଗ୍ରହଣ କରିଥିଲେ ଓ ଏହା ମୋତେ ବ୍ରୋଞ୍ଜ କାଷ୍ଟିଙ୍ଗ୍‌ର ଅନେକ କୌଶଳ ଆୟତ୍ତ କରିବାରେ ସହାୟକ ହୋଇଥିଲା ।

ବିପ୍ର ସାର୍ ସ୍କୁଲରୁ (ପରେ ମହାବିଦ୍ୟାଳୟ) ଫେରିଲାପରେ ନିଜ ଷ୍ଟୁଡ଼ିଓରେ ବିଭିନ୍ନ କାର୍ଯ୍ୟରେ ନିମଗ୍ନ ରହୁଥିଲେ । ସାର୍ ସେ ସମୟର ଓଡ଼ିଶାରେ ଏକମାତ୍ର ବ୍ରୋଞ୍ଜ ଢଳେଇରେ ପାରଙ୍ଗମ ଭାସ୍କର ଥିଲେ । ବ୍ରୋଞ୍ଜମୂର୍ତ୍ତି ବ୍ୟତୀତ ଗ୍ରାନାଇଟ୍ (କଳାମୁଗୁନି ପଥର) ଏବଂ ମାର୍ବଲରେ ମଧ୍ୟ ସେ ପ୍ରତିକୃତି ଗଢୁଥିଲେ । ତାଙ୍କର ଭଗ୍ନସ୍ୱାସ୍ଥ୍ୟ ସତ୍ତ୍ୱେ ଏତେ କରି ପରିଶ୍ରମ କରିବା ମୁଁ ଅନ୍ୟ କାହାରିକୁ ଦେଖିନାହିଁ । ସରକାରୀ ମହାବିଦ୍ୟାଳୟରୁ ଅବସର ଗ୍ରହଣ କରିସାରିବା ପରେ ମଧ୍ୟ ସେ ଅହର୍ନିଶ ଷ୍ଟୁଡ଼ିଓରେ କାମ କରିବା ଅବ୍ୟାହତ ରଖିଥିଲେ । ଏଭଳିକି ମୃତ୍ୟୁର ପ୍ରାୟ ଶେଷପର୍ଯ୍ୟନ୍ତ ସେ ଶିଳ୍ପକାମରେ କର୍ମଠ ଥିଲେ । ବ୍ରୋଞ୍ଜ କାଷ୍ଟିଙ୍ଗ୍ ପାଇଁ ନିଆଁ ପାଖରେ ରହି କାମ କରିବା ସହଜ ବ୍ୟାପାର ନୁହେଁ । ମାଟିରେ ମୂର୍ତ୍ତିଟିଏ ଗଢ଼ିଦେବା ଯେତିକି ସହଜସାଧ୍ୟ ତାକୁ ମହମରେ ଗଢ଼ି, ସେଥିରୁ ପ୍ଲାଷ୍ଟର ମୋଲ୍ଡ଼ ନେଇ, ପୁଣି ଛାଞ୍ଚଗଢ଼ି, ସେଥିରେ ଆଉଟା ବ୍ରୋଞ୍ଜଢ଼ାଳି, ଖଣ୍ଡବିଖଣ୍ଡିତ ବ୍ରୋଞ୍ଜ ଅବୟବ ସମୂହକୁ ୱେଲ୍‌ଡିଙ୍ଗ୍ କରି ପୂର୍ଣ୍ଣ ଅବୟବ ବ୍ରୋଞ୍ଜମୂର୍ତ୍ତିରେ ପରିଣତ କରିବା କଷ୍ଟସାଧ୍ୟ ବ୍ୟାପାର । ବିଦେଶରେ ଏଭଳିକି ଭାରତ ବର୍ଷର ଅନ୍ୟାନ୍ୟ ବଡ଼ ସହରମାନଙ୍କରେ ଜଣେ ଭାସ୍କରକୁ ନିଜେ ସବୁକଥା କରିବା ଆବଶ୍ୟକ ହୁଏନି । ଟେକ୍‌ନିସିଏନ୍ ଯୋଗାଡ଼ କରିବା କଷ୍ଟସାଧ୍ୟ ନୁହେଁ । କିଛିବର୍ଷ ତଳେ ଆମେ ଓଡ଼ିଶାରେ ଏତେ ଉନ୍ନତ ଅବସ୍ଥାରେ ପହଞ୍ଚି ନଥିଲୁ । ବ୍ରୋଞ୍ଜ କଳାକୁ ମୂର୍ତ୍ତି ଗଠନରେ ବ୍ୟବହାର କରି ଏଭଳି ସ୍ତରରେ ପହଞ୍ଚେଇବାରେ ବିପ୍ରଚରଣ ମହାନ୍ତିଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ ।

ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟକୁ ପଣ୍ଡିତ ରଘୁନାଥ ମୁର୍ମୁଙ୍କ ଗୋଟିଏ ପୂର୍ଣ୍ଣାୟବ ମୂର୍ତ୍ତି ଗଢ଼ିବା ପାଇଁ ଆଦେଶ ଆସିଲା । ସେ କାଳରେ ଲଫାଫାରେ କୋଟେସନ୍ ଧରି କଲେଜର ଅଧକ୍ଷ ବା ଅଧ୍ୟାପକଙ୍କୁ କଣ୍ଟ୍ରାକ୍ଟରଙ୍କ ଭଳି ବାରଦ୍ୱାର ଶୁଙ୍ଘିପିଣ୍ଡା ହେବାକୁ ପଡୁନଥିଲା । ସରକାରୀ ସ୍ତରରେ ଅଧକ୍ଷ ବିଶ୍ୱାସଯୋଗ୍ୟ ସ୍ଥିତିରେ

Digitized by srujanika@gmail.com

ଥିଲେ ଏବଂ ସରକାର ହୃଦୟଙ୍ଗମ କରିଥିଲେ ଯେ ପ୍ରତିମୂର୍ତ୍ତି ନିର୍ମାଣକାର୍ଯ୍ୟ ଶିଶୁଅବସ୍ଥାରେ ଥିବା ମହାବିଦ୍ୟାଳୟକୁ ସାହାଯ୍ୟ କରିବ । ସୁବାସ ପାଣି ଦକ୍ଷ ପ୍ରଶାସକ ଥିଲେ ଏଣୁ ଅଧକ୍ଷ ଦେଇଥିବା ଏଷ୍ଟିମେଟ୍ ସରକାରୀ ସ୍ୱୀକୃତି ଲାଭ କରିଥିଲା ।

ଅଧକ୍ଷ ଡକ୍ଟର ପାଠୀ ଯେତେବେଳେ ପଣ୍ଡିତ ରଘୁନାଥ ମୁର୍ମୁଙ୍କ ମୂର୍ତ୍ତିଗଢ଼ିବା କଥା ମୋତେ କହିଲେ, ମୁଁ ଉତ୍ସାହିତ ହୋଇପଡ଼ିଥିଲି । ମୂର୍ତ୍ତି ଗଢ଼ାହେବ ଓ ପିଲା ବ୍ରୋଞ୍ଜ୍ ଢଳେଇ ଶିକ୍ଷା କରିବେ । ଅଧକ୍ଷଙ୍କ ଯୁକ୍ତି ମୋ ପାଇଁ ଅକାଟ୍ୟ ଥିଲା । ସେ କଥାଟି ସିଧା ଆରମ୍ଭ ନକରି ଗୋଟିଏ ଚମତ୍କାର ଉଦାହରଣ ଦେଇ ଆରମ୍ଭ କଲେ । ସେ କହିଥିଲେ, ''ପ୍ରତ୍ୟେକ ଶିକ୍ଷକ ଗୋଟିଏ ଗୋଟିଏ ଜଳନ୍ତା ପ୍ରଦୀପ ସଦୃଶ୍ୟ । ନିଜେ ଜଳି ଅପରକୁ ଆଲୋକ ପ୍ରଦାନ କରିବା ପ୍ରଦୀପର ଧର୍ମ । ଜଣେ ସଚ୍ଚା ଶିକ୍ଷକର କର୍ତ୍ତବ୍ୟ ହେଲା ତାଙ୍କ ଶିଷ୍ୟ-ଶିଷ୍ୟାଙ୍କ ହୃଦୟରେ ଏହି ଆଲୋକବର୍ତ୍ତିକାକୁ ପ୍ରଜ୍ଜ୍ୱଳିତ କରିବା । ଗୋଟିଏ ପ୍ରଦୀପରୁ ସହସ୍ର ପ୍ରଦୀପର ସୃଷ୍ଟିହେଉ, ଏହାହିଁ ମୋର ଇଚ୍ଛା ଏବଂ ତମେ ହିଁ ଏହି କାର୍ଯ୍ୟଟି କରିପାରିବ ବୋଲି ମୋର ବିଶ୍ୱାସ । ତମରି ହାତରେ ଆଧୁନିକ କଳାଶିକ୍ଷା କ୍ଷେତ୍ରରେ ବ୍ରୋଞ୍ଜଢ଼ଳେଇର ଶୁଭାରମ୍ଭ ହେବ । ଆଜିଯାଏଁ ଓଡ଼ିଶାରେ ଯାହା ସମ୍ଭବ ହୋଇନାହିଁ ତାହା ପ୍ରଥମ କରି ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟରେ ସମ୍ଭବ ହେବ । ଏଣୁ ତମେ ବ୍ରୋଞ୍ଜ କାଷ୍ଟିଙ୍ଗ୍ କାର୍ଯ୍ୟ ଆରମ୍ଭ କର ।''

ମୁଁ ଅଧକ୍ଷଙ୍କ କଥାରେ ହଁ ଭରିଲି । ଆମ କଲେଜର ଅଧକ୍ଷ ଡକ୍ଟର ପାଠୀ ସାର୍‌ଙ୍କ ଛାତ୍ର ହୋଇଥିଲେ ମଧ୍ୟ ତାଙ୍କ ବିଚକ୍ଷଣ କଳାଶୈଳୀ, କାମ କରିବାରେ ଦକ୍ଷତା ଓ ସର୍ବୋପରି ତାଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ଶ୍ରଦ୍ଧା କରୁଥିଲେ । ବିପ୍ରସାର୍ କହିଲେ, ''ଜୟନ୍ତ, ଖଲିକୋଟ ଓ ଭୁବନେଶ୍ୱର ମଧ୍ୟରେ ଅନେକ ତଫାତ୍ । ପାଠୀ କେବଳ ଭାରତ ନୁହେଁ ପୃଥିବୀର ବିଭିନ୍ନ କଳା ଅନୁଷ୍ଠାନ ଦେଖିଛି । ସେଇ ଅନୁପ୍ରେରଣାରେ ସେ ତା' କଲେଜଟିକୁ ଗଢ଼ିବାକୁ ଚାହୁଁଛି । ତମେ ତମର ଭବିଷ୍ୟତ ଚିନ୍ତାକର । କେବଳ ପାଠୀ ପାଖରେ ନୁହେଁ, ସରକାରଙ୍କ ପାଖରେ ମଧ୍ୟ ତମେ ଜଣେ ଭଲଶିଳ୍ପୀ ଓ ଶିକ୍ଷକ ବୋଲି ପ୍ରମାଣିତ ହେବ । ସମୟ ବଦଳି ଯାଇଛି ଏଣୁ ଖଲିକୋଟର ମାନସିକତାରେ ରହି ତମେ ତମ ଭୁବନେଶ୍ୱର କଲେଜକୁ ଆକଳନ କଲେ ଚଳିବନି । ପାଠୀ ଏବଂ ତମ କଲେଜ ତମର ଶକ୍ତି ଓ ସାମର୍ଥ୍ୟ ଚାହୁଁଛନ୍ତି । ଏଣୁ ତମେ କୁଣ୍ଠା କରନା ।''

କଳ୍ପନା ଭଡ଼ାଘରେ ବ୍ରୋଞ୍ଜ କାଷ୍ଟିଙ୍ଗ୍ ଷ୍ଟୁଡ଼ିଓ ପାଇଁ ପ୍ରଶସ୍ତ ଜାଗା ନଥିଲା । ଅଗଣାରେ ତାର୍‌ପୋଲିନ୍ ବନ୍ଧା ହେଲା । କାମକୁ ଦି' ଭାଗ କରାଗଲା । ମାଟି ଓ ପ୍ଲାଷ୍ଟର କାମ ଅଗଣାରେ । ଫର୍‌ନେସ୍, ନିଆଁ ଓ ତରଳାକାମ ବଗିଚାରେ, ଖୋଲା ଆକାଶ ତଳେ । ଦଳେ ପିଲା ଅସମ୍ଭବ ଭାବରେ ଅନୁପ୍ରାଣିତ ହୋଇ ରାତିଦିନ କାମ ଶିଖିବା ଉଦ୍ଦେଶ୍ୟରେ ଜଗି ରହିଲେ । ମୋ ପିଛା ଛାଡ଼ିଲେ ନାହିଁ । ମୋର ସେହି ଦଳରେ ଯେଉଁମାନେ ଥିଲେ ସେମାନେ ହେଲେ ଅଦ୍ୱୈତ, ଅଜୟ, ବିଜୟ, ମାନସ, ଚନ୍ଦନ, ଜ୍ୟୋତି, ଶୋଭନ କୁମାର, ସରୋଜ ପ୍ରଭୃତି । ମୋର ଅଧ୍ୟାପକ ବନ୍ଧୁମାନଙ୍କ ପାଇଁ ଏହି କାମଗୁଡ଼ିକ ମଧ୍ୟ ଅଭିନବ ଥିଲା । ସେମାନେ ଖୁବ୍ ଆଗ୍ରହରେ ମୂର୍ତ୍ତି ଗଢ଼ଣ କାର୍ଯ୍ୟ ପ୍ରତି ନିଘା ରଖିଥିଲେ । କଲେଜ ପଡ଼ିଶା ତ ଅଧ୍ୟକ୍ଷଙ୍କ ଘର । ଏଣୁ ଯାଉଣୁ ଆସୁଣୁ, ସକାଳ ସନ୍ଧ୍ୟା ସେ ଅଭାବ ଅସୁବିଧାର ଖବର ରଖୁଥିଲେ ଓ ମୋର କାମ ଏବଂ ସହଯୋଗ ପ୍ରତି ଅତ୍ୟନ୍ତ ସଚେତନ ଥିଲେ । ସେ ଯେ କଳାଶିକ୍ଷା କ୍ଷେତ୍ରରେ ବ୍ରୋଞ୍ଜ କାଷ୍ଟିଙ୍ଗ୍ କାମକୁ ଶେଷରେ ସାମିଲ କରିପାରିଛନ୍ତି, ସେଥିପାଇଁ ଖୁବ୍ ଆତ୍ମପ୍ରତ୍ୟୟର ସହିତ ସମଗ୍ର ଘଟଣାବଳୀକୁ ଗ୍ରହଣ କରୁଥିଲେ । ଯଦି ଚାରୁକଳାରେ ବ୍ରୋଞ୍ଜ ମାଧ୍ୟମର ଆଭାସ ପରିଲକ୍ଷିତ ହୋଇଥାଏ, ତେବେ ତାହା ପାଠୀ ସାର୍‌ଙ୍କର ଅନ୍ୟତମ ଅବଦାନ ।

କିନ୍ତୁ କଲେଜର କିଛି ନିନ୍ଦୁକମାନେ କୁତ୍ସାରଟନା କରିବାକୁ ପଛେଇଲେ ନାହିଁ । ସେମାନଙ୍କ ଯୁକ୍ତି ହେଲା, ଏ ପାଠୀଟା ତ ବ୍ରୋଞ୍ଜ ଫ୍ରୋଞ୍ଜ କିଛି ବୁଝେନାହିଁ, ସିଏ ପୁଣି ପିଲାଙ୍କୁ କିଭଳି ମାର୍ଗଦର୍ଶନ ଦେଖାଇବ ? ଜୟନ୍ତ

Digitized by srujanika@gmail.com

ଖଲିକୋଟରୁ ଆସି ଏଠି କି ମୂର୍ତ୍ତି ଗଢ଼ିବ ? ଖଲିକୋଟ ଆର୍ଟ୍ ସ୍କୁଲର ସିନିୟର୍ ଭାସ୍କର୍ଯ୍ୟ ଛାତ୍ରମାନେ ବିଭିନ୍ନ ଆଳ କରି କଲେଜ ଆଡ଼େ ପଛଁତରା ମାରିଲେ । ନିଜ ଆଖିରେ ସବୁ ଦେଖି ମଧ୍ୟ ନ ଦେଖିଲା ପରି ନ ଜାଣିଲା ପରି ହେଲେ । କିନ୍ତୁ ସେମାନେ ମର୍ମେ ମର୍ମେ ଅନୁଭବ କରୁଥିଲେ ଯେ ଯାହା ଘଟିଯାଉଛି ଓଡ଼ିଶାର କଳାକ୍ଷେତ୍ରରେ ତାହା ଅଭୂତପୂର୍ବ ।

ବ୍ରୋଞ୍ଜ ଢଳେଇ ପାଇଁ ରାଜମହେନ୍ଦ୍ରୀରୁ କ୍ରୁସିବଲ୍ (ବ୍ରୋଞ୍ଜ ତରଳେଇବାର ପାତ୍ର) ଆସିଲା । ମଣିଷ ଉଚ୍ଚର ଲୁହା ଚିମୁଟା ମୁଁ ବନେଇ ଆଣିଲି । ଏଭଳି ଯେତେକ ସାଜ ସରଂଜାମ ଯୋଗାଡ଼ କରାଗଲା । ଶେଷରେ ବ୍ରୋଞ୍ଜ ତରଳେଇବା ପାଇଁ ଆଉ ରଡ଼ରଡ଼ ନିଆଁରୁ କ୍ରୁସିବଲ୍ ଉଠେଇ ମୋଲ୍ଡ଼ ଭିତରେ ଢାଳିବା ପାଇଁ ବିପ୍ର ସାର୍‌ଙ୍କ ଲୋକଙ୍କୁ ମଧ୍ୟ ଖଲ୍ଲିକୋଟରୁ ଆଣିଲି । ଏବେ ମନେହେଲା ବିପ୍ର ସାର୍‌ଙ୍କ ବ୍ରୋଞ୍ଜଷ୍ଟୁଡ଼ିଓର ମିନି ଗଢ଼ଣଟିଏ ବିଭୂତି କାନୁନ୍‌ଗୋ କଲେଜରେ ତିଆରି ହେଇଗଲା । ଫରକ ଭିତରେ ଏତିକି ଯେ ଖଲ୍ଲିକୋଟରେ ବିପ୍ର ସାର୍ ଓ ତାଙ୍କ ମୂଲିଆ କିନ୍ତୁ ଏଠି ବିପ୍ର ସାର୍‌ଙ୍କ ଜାଗାରେ ମୁଁ ଏବଂ ମୋର କେତେକ ଛାତ୍ର ଓ କଲେଜର ଚତୁର୍ଥଶ୍ରେଣୀ କର୍ମଚାରୀ ଭୁବନ ଓ ଅଶୋକ ପ୍ରଭୃତି । କାମ ଚାଲୁଥିବାବେଳେ ଅଧକ୍ଷ ନିର୍ଦ୍ଦେଶକ ସୁବାସ ପାଣିଙ୍କୁ କଲେଜକୁ ଡାକି ଆଣିଲେ । ସୁବାସ ବାବୁ ଏତେ ସବୁ ଯୋଗାଡ଼ଯନ୍ତ୍ର ଦେଖି ସେଦିନ ସ୍ତମ୍ଭୀଭୂତ ହେଇପଡ଼ିଥିଲେ । ଏବେ ସମସ୍ତେ ଆଶ୍ୱସ୍ତ ଅନୁଭବ କଲେ ଯେ ସତରେ ଜୟନ୍ତ ବ୍ରୋଞ୍ଜ ପ୍ରତିମୂର୍ତ୍ତି ଗଢ଼ିପାରିବ । ଏହି ଘଟଣାଟି ବର୍ତ୍ତମାନ ଅତି ସାଧାରଣ ମନେହୋଇପାରେ କାରଣ ଭାରତ ବର୍ଷର ଅନ୍ୟାନ୍ୟ ପ୍ରମୁଖ କଳା ମହାବିଦ୍ୟାଳୟ ମାନଙ୍କରେ ବ୍ରୋଞ୍ଜ୍ କାଷ୍ଟିଙ୍ଗ୍ ଷ୍ଟୁଡ଼ିଓ ଅଛି ଓ ସେଠାରେ କାଷ୍ଟିଙ୍ଗ୍ ଏକ ନିତିଦିନିଆ ଘଟଣା । କିନ୍ତୁ ଓଡ଼ିଶାରେ କଳାଶିକ୍ଷାର ମୂଳସ୍ରୋତରେ ବ୍ରୋଞ୍ଜ ପ୍ରତିମୂର୍ତ୍ତିକୁ ସାମିଲ ନକରିବା ପାଇଁ ଯେଉଁସବୁ ବ୍ୟକ୍ତିଗତ ଅଭାବବୋଧ ଥିଲା ଓ ଏଥିପାଇଁ ମାନସିକ ସ୍ତରରେ ଯେଉଁସବୁ ପ୍ରତିବନ୍ଧକ ଥିଲା ତାହା ଅଧକ୍ଷଙ୍କ ପ୍ରୋତ୍ସାହନ ଯୋଗୁଁ ଅପସରିଯାଇଥିଲା । ଯେଉଁଦିନ ଢଳେଇ ହେଇଥିବା ମୂର୍ତ୍ତିର ଅଂଶଗୁଡ଼ିକୁ ଯୋଡ଼ାଯୋଡ଼ି କରିସାରିଲା ପରେ ପୂର୍ଣ୍ଣାବୟବ ମୂର୍ତ୍ତିଟି କଲେଜ ଅଗଣାରେ ତାର୍‌ପୋଲିନ୍ ଛାତ ତଳେ ଠିଆ ହୋଇଗଲା ସେଦିନର ଆନନ୍ଦ ଓ ଉଦ୍‌ବେଳନ କହିଲେ ନସରେ । ଏହା ଭିତରେ ବହୁ ବାଧାବିଘ୍ନରେ ଦିନ ଅତିବାହିତ ହୋଇଛି, ଯାହାର କି ଶେଷରେ ଆନନ୍ଦରେ ପରିସମାପ୍ତି ଘଟିଛି ।

ତା'ପରେ ମୂର୍ତ୍ତିଟି ଟ୍ରକ୍‌ରେ ଲଦାଯାଇ ରାଇରଙ୍ଗପୁର ଚାଲିଲା । ମୂର୍ତ୍ତିଟିକୁ ହାତଛଡ଼ା କରିବାକୁ ମୋ ମନ କହିଲାନି । ମୁଁ ମଧ୍ୟ ମୂର୍ତ୍ତିସାଙ୍ଗରେ ଟ୍ରକ୍‌ରେ ଦାଖଲ ହେଲି । ପଣ୍ଡିତ ରଘୁନାଥ ମୁର୍ମୁ ଆଦିବାସୀ ନେତା । ତାଙ୍କ ଜନ୍ମଦିନରେ ମୂର୍ତ୍ତିଟି ରାଇରଙ୍ଗପୁରଠାରେ ପ୍ରତିଷ୍ଠା ପାଇବ । ଟ୍ରକ୍ ପଛରେ ଆୟାସଡ଼ର୍ କାର୍‌ରେ କଲେଜର ଅଧ୍ୟକ୍ଷ, ଅଧାପକ ଦାମୋଦର ବେହେରା, ଜ୍ୟୋତି ପାଣିଗ୍ରାହୀ । ମୂର୍ତ୍ତି ବସେଇ ସାରି ଫେରିଲାବାଟରେ ରାସ୍ତାସାରା ଗୋଟିଏ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ମିଳିଲା । ଶହଶହ ସଂଖ୍ୟାରେ ଆଦିବାସୀ କାନ୍ଧରେ ଭାରାନେଇ ମୂର୍ତ୍ତି ପ୍ରତିଷ୍ଠା ଉତ୍ସବରେ ଭାଗ ନେବା ପାଇଁ ରାଇରଙ୍ଗପୁର ଚାଲିଛନ୍ତି । କେଉଁଠି କେଉଁଠି ରାସ୍ତାକଡ଼ ଶାଳବଣ ଭିତରେ ଆଦିବାସୀ ପରିବାରଟିଏ ତା' ପିଲାଛୁଆକୁ ନେଇ ମୁଢ଼ିମାଂସ ମହାଆନନ୍ଦରେ ଖାଇ ଚାଲିଛି । ମନେହେଉଛି ଏକ ଉତ୍ସବମୁଖର ପରିବେଶ । ଆମ ଅଧକ୍ଷ ଡକ୍ଟର ପାଠୀ ତ କବି । ସେ ଶେଷରେ କହିପକେଇଲେ, **"ଜୟନ୍ତ ଏ ଉତ୍ସବ କେବଳ ତମରି ପାଇଁ । ଦେଖ ତମେ ଯେ ବ୍ରୋଞ୍ଜ କାଷ୍ଟିଙ୍ଗକୁ କଳାଶିକ୍ଷାର ମୂଳସ୍ରୋତରେ ସାମିଲ କରିପାରିଲ ସେଇଥି ପାଇଁ ଏ ଉତ୍ସବର ଆୟୋଜନ । ମୁଁ ଯେଉଁ ପ୍ରଦୀପ ପ୍ରଜ୍ୱଳନର ବେଳ କଥା କହିଥିଲି ତାର ମହିମା ତମେ ଖୁବ୍‌ଶୀଘ୍ର ଅନୁଭବ କରିପାରିବ ।** ତମେ ଯେଭଳି ବିପ୍ର ସାର୍‌ଙ୍କ ଐତିହ୍ୟକୁ ଆହରଣ କରି ଏଠି ପରିବେଷଣ କରିପାରିଲ, ସେଭଳି ତମର ବହୁ ଛାତ୍ର ଜଣେ ଜଣେ ଜୟନ୍ତ ବନିଯାଇ ଗୋଟିଏ ରଘୁନାଥ ମୁର୍ମୁ ନୁହେଁ ଶହଶହ ମୂର୍ତ୍ତି ଗଢ଼ିବେ । ଏହାହିଁ ଆମର ଭାରତୀୟ ଗୁରୁ ପରମ୍ପରା । ତମେ ମୋତେ ବିପ୍ର ସାର୍‌ଙ୍କ ଯେଉଁ ଆଶ୍ୱାସନାର ବାଣୀ କହୁଥିଲ ଯେ ସେ ବ୍ରୋଞ୍ଜ କଳାକୁ ଏଭଳି ଭାବରେ ସାର୍ ବ୍ୟବହାର କରିଛନ୍ତି ଯେ, ଭାସ୍କର ଶିଳ୍ପୀଟିଏ କେବେ ବେକାର ହେବନି କି ତା'ର ପେଟ ଅପୋଷା ରହିବ ନାହିଁ, ତାହା ମଧ୍ୟ ତମେ ତମ ଛାତ୍ରମାନଙ୍କ ପାଖରେ ଦେଖିବ ।"

Digitized by srujanika@gmail.com

**ଅଞ୍ଜନ କୁମାର ସାହୁ**

## ଭାବ-ଅନୁଭବ : ପଥର ସାଙ୍ଗରେ ପଥର ହେବାର ନିଶା

ବି.କେ କଲେଜ ଅଫ୍ ଆର୍ଟ ଆଣ୍ଡ କ୍ରାଫ୍ଟସ୍‌ର ପ୍ରବେଶିକା ପରୀକ୍ଷାରେ ମୁଁ ସିଟ୍ ନ ପାଇ ପୂରା ପୂରି ହତାଶ ହୋଇଯାଇଥିଲି। ୱେଟିଂ ଲିଷ୍ଟରେ ମୋର ନାଁ ଥାଏ। ମୋ ଭିଣୋଇଙ୍କ ପାଇଁ ଅନ୍ୟମାନେ ମୋତେ ଭଲ ଚିତ୍ର କରୁଥିବା ପିଲାଟିଏ ବୋଲି ଜାଣୁଥିଲେ । କେବେ ଚିତ୍ରଟିଏ କରିଦେଲେ ସାବାସୀ ମିଳିଯାଏ । ପ୍ରବେଶିକା ପରୀକ୍ଷାରେ ମୋର ଅସଫଳତାକୁ ସହଜରେ ନେଇ ପାରିନଥିଲେ ମୋର ଭିଣୋଇ। ଅଧକ୍ଷ ମହୋଦୟଙ୍କୁ ଅନୁରୋଧ କଲେ। ମୋ ବାପା ଜଣେ କଳାକାର ଜାଣି ପାଠୀ ସାର୍ କହିଲେ ସିଟ୍ ଖାଲି ପଡ଼ିଲେ ନିଶ୍ଚୟ ମିଳିବ। କଲେଜର କିରାଣି ଗଗନ ବାବୁ ଓ ସୁବୁଦ୍ଧି ବାବୁଙ୍କୁ କହିଦେଇ ମୁଁ ଗାଁକୁ ଫେରିଆସିଲି। ସିଟ୍ କିଛି ଖାଲି ପଡ଼ିଲା ପରେ ସେକେଣ୍ଡ ସିଲେକ୍ସନ୍‌ରେ ମୁଁ ସିଟ୍‌ଟିଏ ପାଇଲି। ସେଇ ଦିନଠାରୁ କଲେଜ ସହ ମୋର ଶିଳ୍ପୀ ଜୀବନ ଯୋଡ଼ି ହୋଇ ଯାଇଥିଲା। ଟଙ୍କପାଣି ରୋଡ଼ସ୍ଥିତ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟରେ ପ୍ରବେଶିକା ପରୀକ୍ଷା ଦିନ ମୁଁ ଅଧକ୍ଷ ଡକ୍ଟର ଦିନନାଥ ପାଠୀଙ୍କୁ ଦେଖିଥିଲି... ତାପରେ କଲେଜରେ ବହୁବାର ଦେଖିଛି... କିନ୍ତୁ ମନେ ନାହିଁ କେତେବେଳେ କେମିତି ସେ ଅଧକ୍ଷର ସଂଭ୍ରମରୁ ଆମର ପ୍ରିୟ ପାଠୀ ସାର୍ ହୋଇଯାଇଥିଲେ। ଏ ଦେଶରେ ଅନେକ ଶିକ୍ଷକ ଅଛନ୍ତି କିନ୍ତୁ ଓଡ଼ିଶା ଭଳି ପଛୁଆ ରାଜ୍ୟରେ ସବୁ ସୁବିଧା ଅସୁବିଧାକୁ କାନ୍ଧରେ ବୋହି ଆମ କଲେଜର ଯିଏ ପ୍ରାଣ ପ୍ରତିଷ୍ଠା କରି ସାରା ବିଶ୍ୱ ଦରବାରରେ ପହଞ୍ଚାଇ ପାରିଛନ୍ତି ସେ କେବଳ ଜଣେ ସାମାନ୍ୟ କଳାକାର ନୁହଁନ୍ତି, ଜଣେ ଦକ୍ଷ ସଂଗଠକ ଯେକି ଋଷି, ଯୋଗୀମାନଙ୍କ ଭଳି ଛାତ୍ରଛାତ୍ରୀମାନଙ୍କୁ ସଦ୍‌ମାର୍ଗ ଦେଇଛନ୍ତି। ନିଜ ଜୀବନର ସବୁ ଦୁଃଖ ସୁଖକୁ ଏକାକାର କରି ଯେ ଆମମାନଙ୍କ ପାଇଁ ଖଟିଛନ୍ତି ଓ ରାତି ଦିନର ହିସାବ ନକରି କଲେଜ ପାଇଁ କାମ କରିଛନ୍ତି, ଓଡ଼ିଶାରେ କଳାର ଉନ୍ନତି ପାଇଁ ଯେ ସବୁବେଳେ ସ୍ୱପ୍ନ ଦେଖନ୍ତି ସେଭଳି ମଣିଷଟିଏ ଆମର ପ୍ରିୟ ସାର୍ ପାଠୀ ସାର୍।

ମୁଁ ମୋର ଭଉଣୀ ଭିଣୋଇଙ୍କ ପାଖରେ ରହି ପାଠ ପଢୁଥାଏ, ବିଚିତ୍ର ପାଠ ପଢ଼ା, ସମୟ ଅସମୟ, ଜାଗା ଅଜାଗା କିଛି ନାହିଁ। କେଉଁଠି ପୋଖରୀ କୂଳରେ ତ କେତେବେଳେ ମନ୍ଦିର ବା ଗୁମ୍ଫା ପାଖରେ ଦଳ ଦଳ ପିଲା Water colour study ରେ ବସିଯାଇଥିବେ, ଷ୍ଟେସନରେ ସ୍କେଚ୍ କରୁଥିବେ । ଏଭଳି ପାଠପଢ଼ା କିଛି ଲୋକଙ୍କର ବଦହଜମି ହେଉଥିଲା ନିଶ୍ଚୟ । ବେଳେବେଳେ ପିଲାମାନଙ୍କୁ କିଛି ଅସାମାଜିକ ଲୋକଙ୍କଠାରୁ ଅଶ୍ଳୀଳ ମନ୍ତବ୍ୟ ମଧ ଶୁଣିବାକୁ ପଡୁଥିଲା। କ'ଣ କରିବା ଆମର ପାଠତ ସେଇଆ.. ଏଭଳି ଚାଲିଥାଏ ଆମର ପାଠପଢ଼ା। ମଝିରେ ମଝିରେ ସେମିନାର୍, ୱାର୍କସପ୍, ମଝିରେ ମଝିରେ ଆମ ଅଧକ୍ଷଙ୍କର ବିଦେଶ ଯାତ୍ରା। ଏସବୁ କଥା ଅନ୍ୟ ଆଗରେ କହିଲାବେଳେ ଆମର ଛାତି କୁଣ୍ଢେମୋଟ ହୋଇଯାଉଥିଲା। ଟଙ୍କପାଣି ରୋଡ଼ର ସେ କଲେଜରୁ ସେ ବର୍ଷ ସବୁ ଡିପାର୍ଟମେଣ୍ଟ ତରଫରୁ ମାଗାଜିନ୍‌ମାନ ପ୍ରକାଶ ପାଇଲା: ଚିତ୍ର, ମୁଦ୍ରା, ଇମେଜ୍, ଡ୍ରଇଁ, କଳା ଓ କବିତା ଏସବୁ ଏକାସାଙ୍ଗରେ ହାତରେ ଧରିବାର ଆନନ୍ଦ ଆମ ପାଇଁ ଯେମିତି ଏକ ନୂଆ ଅନୁଭୂତି ଥିଲା। ମୁଁ ଯାହାକୁ ପାଏ ତାକୁ ଆମ କଲେଜ ମାଗାଜିନ୍ ଓ କ୍ୟାଟ୍‌ଲଗ୍ ଦେଖାଏ।

ମୁଁ ଗାଁକୁ ଯାଇଥାଏ ସେଠାରେ ଜଣେ ଶିକ୍ଷକଙ୍କୁ ଏସବୁ ପ୍ରକାଶନ ଦେଖାଇଲା ପରେ ସେ ମୋତେ ପଚାରିଲେ ତୁ Art College ରେ ପଢୁଛୁ ନା Art University ରେ, **ସତକଥା ଏଭଳି ସବୁ ଡିପାର୍ଟମେଣ୍ଟର ପବ୍ଲିକେଶନ୍ ବୋଧହୁଏ କେଉଁ ୟୁନିଭର୍‌ସିଟି ହିଁ କରି ପାରୁଥିବ। ଏସବୁ କେବଳ ଆମର ଶିକ୍ଷକମାନଙ୍କର ଅକ୍ଲାନ୍ତ ପରିଶ୍ରମ, ପିଲାମାନଙ୍କ** Creative impulse **ଓ ଆମର ପାଠୀ ସାର୍‌ଙ୍କର ସବୁବେଳେ କିଛି ନୂଆ କହିବାର ମନ୍ତ୍ର ଯୋଗୁଁ ହିଁ ସମ୍ଭବ ହେଉଥିଲା।**

Digitized by srujanika@gmail.com

ଛୁଟି ପରେ ଆମର କଲେଜ ଗୋଟେ ଭଡ଼ା ଘର ଛାଡ଼ି ଆଉ ଗୋଟିଏ ଭଡ଼ାଘରକୁ ସ୍ଥାନାନ୍ତରିତ ହେଲା । ଏଇଟି ହେଲା କେ-୬, କଛନା ଛକ ଯାହାକି ଆମ ଅଧକ୍ଷଙ୍କ ଘରଠାରୁ ପାଖ । ସିନେମା ହଲ, ବଜାର, ଗାଁ, କଲୋନୀ ସବୁର ଫେଣ୍ଟାଫେଣ୍ଟି ଛାପ ଥିବା ଗୋଟିଏ ଜାଗା । କଲେଜ ଖୋଲିଲା, ପିଲାମାନେ ନୂଆ କରି କଲେଜରେ ପ୍ରବେଶ କଲେ । ତିନୋଟି ବ୍ୟାଚର ପିଲା ପୁଅଝିଅ ଏକାଠି ମିଳାମିଶା ହେଇ ସ୍କେଚ୍ କରନ୍ତି ଏବଂ କାନ୍ଧରେ ଝୁଲା ବ୍ୟାଗ ଖଣ୍ଡେ ଖଣ୍ଡେ ପକାଇ କଲେଜକୁ ପଢ଼ିବା ପାଇଁ ଆସନ୍ତି, ସ୍କେଚ୍ ବହି, ପେପର୍ ରୋଲ୍ ଓ ରଙ୍ଗ ଡିବା ରଖିବା ପାଇଁ ଝୁଲା ବ୍ୟାଗ ହିଁ ସବୁଠାରୁ ଶ୍ରେୟ । ୧୫୦ ପିଲାଙ୍କ ସାଙ୍ଗକୁ ୧୦/୫୦ ଝିଅ କଳାକାରମାନଙ୍କର ମିଳାମିଶା ଲୋକାଲ୍ ଟୋକାଙ୍କ ଆଖିରେ ଯାଏନି । ବରା, ଗୁଲୁଗୁଲା ଦୋକାନରେ ବସି ସମୟେ ସମୟେ ସେମାନେ ଆମ ପିଲାମାନଙ୍କୁ ଥଟ୍ଟା, ତାମସା ମଧ କରନ୍ତି ।

ଆମେ କଳାକାରମାନେ ବି କମ୍ ନୁହଁ । ପାଠୀ ସାର୍‌ଙ୍କ ମନରେ ଅସରନ୍ତି କାର୍ଯ୍ୟକ୍ରମ ଓ ଅସରନ୍ତି ଯୋଜନା; କେତେବେଳେ ସେମିନାର୍ ତ କେତେବେଳେ ୱାର୍କସପ୍ କେତେବେଳେ ମ୍ୟୁଜିୟମ୍‌ରେ ଝୋଟି ଚିତା ପଡ଼ିବ ତ କେତେବେଳେ ନୂଆ ଗ୍ୟାଲେରୀ ଉଦ୍‌ଘାଟନ ହେବ । ଯେତେ ବିଚିତ୍ର ଆମର ପାଠପଢ଼ା ସେତେ ବିଚିତ୍ର ଥିଲେ ଆମର ପାଠୀ ସାର୍ । ମାଗଣାରେ ପାଲା କରି ପାରିବାର ଲୋକ । ବଡ଼ ବଡ଼ ମନୀଷୀମାନଙ୍କର ପାଦ ପଡ଼ିଲା ଆମ ମହାବିଦ୍ୟାଳୟରେ  ଜାତୀୟ, ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ କଳାକାର ଓ କଳା ସମୀକ୍ଷକଙ୍କ ଠାରୁ ଲେଖା ଆଣି ଆମ ଚିତ୍ର ମାଗାଜିନ୍‌ରେ ପାଠୀ ସାର୍ ସ୍ଥାନ ଦେଲେ । କେତେବେଳେ କିଏ ପ୍ରବନ୍ଧ ଲେଖିଲାଣି, ତ କାହା ହାତରେ କଲେଜର ପତ୍ରିକା ଉନ୍ମୋଚନ ହେଲାଣି । ଦେଖୁ ଦେଖୁ ସାର୍ ଭାରତ ବର୍ଷର ସବୁ Institution ରେ BK College କୁ ପରିଚିତ କରାଇଦେଲେ । ଏସବୁ ପଛରେ ପାଠୀ ସାର୍‌ଙ୍କର ଅବଦାନ କୌଣସି ଭାଷାରେ ବ୍ୟକ୍ତ କରିହେବନି ଏବଂ ମୋ ପାଇଁ ଏହା ଲେଖିବା ଅସମ୍ଭବ ମଧ । ଆମେ ଯେତେବେଳେ ବାହାର ୟୁନିଭର୍‌ସିଟିରେ MFA entrance ଦେବା ପାଇଁ ଯାଉଥିଲୁ ସେତେବେଳେ ଆମମାନଙ୍କର Album, Catalouge, Magazine ଦେଖି ସେଠାକାର ଛାତ୍ର ଓ ଶିକ୍ଷକମାନେ ଟେରା ହୋଇଯାଉଥିଲେ । କାରଣ ସେଠାକାର ମାଷ୍ଟ୍ରେ ତାଙ୍କର ପାଠପଢ଼ା ଦିନଠାରୁ ଶିକ୍ଷକତା କରିବା ଭିତରେ ଏତେଗୁଡ଼େ Publication ହାତରେ ଧରି ନଥିଲେ ।

Entrance ପୂର୍ବରୁ ବି.କେ. କଲେଜ ପିଲାମାନଙ୍କର ଅଲଗା impression । ପାଠପଢ଼ା ଭିତରେ ସବୁ ୟୁନିଭର୍‌ସିଟି ସହ ଆମମାନଙ୍କର ସମ୍ପର୍କ ହୋଇ ସାରିଥାଏ । Study tour ରେ ପାଠୀ ସାର୍ ଆମମାନଙ୍କ ସହ ଯେତେବେଳେ ଶାନ୍ତିନିକେତନ ଯାଇଥିଲେ ସେତେବେଳେ ଆମ କଲେଜ ସହ ଶାନ୍ତିନିକେତନ ସମ୍ପର୍କ ଖୁବ୍ ବଢ଼ିଯାଇଥାଏ । କାଞ୍ଚନଦା, ଅଜିତ୍ ଦା, କେବେବି ଦେଖିଲେ ପଚାରନ୍ତି - କି ତୁମି... ପାଠୀର୍ student ନା କି...  ? ଆମେ ମଧ ଗର୍ବର ସହ ମୁଣ୍ଡ ଟୁଙ୍ଗାରି ଉତ୍ତର ଦେଉ । କାରଣ ଆମର ପାଠୀ ସାର୍ ଓଡ଼ିଶାର ଛୋଟିଆ କଲେଜର ଅଧକ୍ଷ ହୋଇଥିଲେ ମଧ ତାଙ୍କର ବ୍ୟକ୍ତିତ୍ୱ ଓ ଜ୍ଞାନ ପାଇଁ କେହିବି ତାଙ୍କୁ ଅବହେଳା କରିପାରିବେ ନାହିଁ ।

ମୋ ମତରେ ଆର୍ଟ୍ କଲେଜରେ ପଢ଼ିବା, ଡିଗ୍ରୀ ପାଇବା ସବୁଠାରୁ ସହଜ କଥା କିନ୍ତୁ ଜଣେ ଭଲ ଶିକ୍ଷକ ପାଇବା, ଜଣେ ଭଲ କଳାକାରର ଛାତ୍ର ହେବା ସୌଭାଗ୍ୟର କଥା । NCERT ତରଫରୁ Art teachers ମାନଙ୍କ ପାଇଁ ଗୋଟେ ବଡ଼ ଧରଣର ୱାର୍କସପ୍ ଆମ କଲେଜରେ ଚାଲିଥାଏ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଭାସ୍କର୍ଯ୍ୟ ବିଭାଗର ମୁଖ୍ୟ ବଲବୀରସିଂହ କଟ୍ ଯେକି ଅନନ୍ତ ପଣ୍ଡାଙ୍କର ବନ୍ଧୁ ସେ ସେଇ କାର୍ଯ୍ୟକ୍ରମରେ ଓଡ଼ିଶା ଆସନ୍ତି.. ବଲ୍‌ବୀର୍‌ସିଂହ ସାରା ଭାରତ ବର୍ଷ ପାଇଁ ଜଣେ ଖ୍ୟାତନାମା ଭାସ୍କର୍ଯ୍ୟ ଶିଳ୍ପୀ । ୱାର୍କସପ୍‌ରେ ସେଦିନ ଯୋଗଦେବା ପାଇଁ ଟ୍ରେନ୍ ଯୋଗେ ଭୁବନେଶ୍ୱର ଆସୁଥାନ୍ତି ।

Digitized by srujanika@gmail.com

କମଳାକ୍ଷ ଭାଇ ଓ ଅନ୍ୟମାନେ ତାଙ୍କୁ ପାଛୋଟି ଆଣିବା ପାଇଁ ଷ୍ଟେସନ ବେଞ୍ଚ ଉପରେ ପହଞ୍ଚିବାର ସାମାନ୍ୟ ବିଳମ୍ବ ହୋଇଯାଇଥାଏ। ଟ୍ରେନ ପହଞ୍ଚି ଷ୍ଟେସନ ଛାଡ଼ି ସାରିଥାଏ। କଟ୍ ସାହେବଙ୍କୁ ନପାଇ କମଳାକ୍ଷ ଓ ଅନ୍ୟମାନେ ବ୍ୟସ୍ତ ହୋଇ ପଡ଼ିଲେ। ଷ୍ଟେସନରୁ ସେ ରହିବା ପାଇଁ ଉଦ୍ଦିଷ୍ଟ ହୋଟେଲ୍ ଓ କଲେଜକୁ ଫୋନ କରି ବୁଝିଲେ କଟ୍ ସାହେବ ପହଞ୍ଚି ନାହାନ୍ତି। ବହୁ ସମୟ ଧରି ଖୋଜା ଖୋଜି ପରେ, ସମସ୍ତେ କଲେଜକୁ ଫେରି ଆସିବା ପାଇଁ ଭାବୁଥିବା ବେଳେ ଷ୍ଟେସନରେ winter bag ଭିତରୁ ଅଳ୍ପ ଦେଖାଯାଉଥିବା ସର୍ଦ୍ଦାର ପଗଡ଼ି ଦେଖି କମଳାକ୍ଷ ଭାଇ winter bag କୁ ଟିକେ ହଲେଇ ଦେବାରୁ winter bag ଚେନ୍ ଖୋଲି ସେଥିରୁ କ୍ଷୀଣକାୟ, ଡେଙ୍ଗା, ସର୍ଦ୍ଦାରଟିଏ ବାହାରିଲେ । ଏଥର ତାଙ୍କୁ ଚିହ୍ନିବାରେ ଅସୁବିଧା ହେଲାନି । ସେମାନେ ଜାଣି ପାରିଲେ ଯେ ଏହି ହିଁ ସେ ଲୋକ, ଯାହାକୁ ସେମାନେ ଗତ କେତେ ଘଣ୍ଟା ଧରି ଖୋଜୁଥିଲେ। କମଳାକ୍ଷ ଭାଇ କିଛି କହିବା ପୂର୍ବରୁ କଟ୍ ସାହେବ କହିଲେ, "କ୍ୟା ତୁମ ସାରେ ବିକେ କଲେଜ କେ ହୋ, ଆରେ, ମୈନେ ସୋଚା, କୋଇ ନେହିଁ ହେି ତୋ ଫିର୍... ମେ ସୁବହ କଲେଜ ଚଲା ଆତା... ଠିକ୍ ହୈ... ଚଲୋ ଚାଏ ପିତେ ହେଁ, ଫିର୍ ଚଲେଙ୍ଗେ।"

ସେଦିନ କଟ୍‌ସାହେବ କଲେଜରେ ପହଞ୍ଚିଲେ, ଖୁବ୍ କମ୍ ସମୟରେ ସମସ୍ତଙ୍କ ସହ ମିଶିଗଲେ, ଆପଣାର ହୋଇଗଲେ। ସକାଳୁ ସକାଳୁ ଅନନ୍ତ ପଣ୍ଡାଙ୍କ ସାଙ୍ଗରେ ଯାଇ ଓଲ୍ଡ ଟାଉନ୍‌ର ରଘୁ ମହାପାତ୍ରଙ୍କ ୱାର୍କସପ୍‌ରୁ ଖଣ୍ଡେ ପଥର ଆଣି ସଂଧ୍ୟାରେ କଲେଜ ଛାତ ଉପରେ ଏକ ମଡେଲିଂ ଟେବୁଲ୍ ଉପରେ ରଖି carving ଆରମ୍ଭ କଲେ। ସେଦିନ ସେ କୌଣସି ଫର୍ମ ନ କରି ଷ୍ଟୋନ୍‌ର nature ଓ grains କୁ ପରୀକ୍ଷା କରୁଥାଆନ୍ତି, କାରଣ khodolite ରେ କାମ କରିବା ତାଙ୍କ ପାଇଁ ପ୍ରଥମ ଥିଲା। ଆମେ ସମସ୍ତେ ତାଙ୍କର carvingକୁ ଦେଖୁଥାଉ । ତାଙ୍କ ସହ ବିତାଇଥିବା କେତୋଟି ମୁହୂର୍ତ୍ତରେ ସେ ଆମକୁ stone sculpture ବିଷୟରେ ଅନେକ କଥା କହିଥିଲେ। ସେ ସବୁ କଥା ଆମମାନଙ୍କୁ ବହୁତ ଭଲ ଲାଗିଥିଲା। stone ତା'ର ନିଜର shape ଭିତରେ sculptureର form କୁ ଲୁଚାଇ ରଖିଥାଏ। sculpture ତାକୁ ଖୋଜି ଖୋଜି ପାଇଯାଏ। ଏଭଳି ଅନେକ କଥା ଶୁଣିଲା ପରେ ମୁଁ ମନେ ମନେ ବଲବୀରସିଂହ କଟ୍‌କୁ ମୋର ଗୁରୁ ବୋଲି ଭାବି ନେଇଥାଏ। ତାଙ୍କର କେଇ ପଦ କଥାକୁ ମନେରଖି ମୁଁ ଆମ କଲେଜରେ stone carving ଆରମ୍ଭ କରିଥିଲି। **ସେହିଦିନ ସଂଧ୍ୟାରେ ବଲବୀରସିଂହ କଟ୍‌ଙ୍କର ପଥର ଉପରେ କେତୋଟି ନିହାଣର ସଂଘାତ ଓଡ଼ିଶା ପାଇଁ** modern stone sculpture **ର ବାଟ ଫିଟାଇ ଦେଲା।** ଓଡ଼ିଶାର ମୂର୍ତ୍ତି ଶିଳ୍ପୀମାନେ ଗରୀୟାନ । ଓଡ଼ିଶାର ପ୍ରସ୍ତର ମୂର୍ତ୍ତିର କାରୁକଳାରେ ଏକ ସତନ୍ତ୍ରତା ଅଛି । ସେଥିରୁ ହଟି କରି ନୂଆ form କୁ ରୂପ ଦେବାରେ ବଲ୍‌ବୀରସିଂହ କଟ, ଅଦ୍ୱୈତ ଗଡ଼ନାଏକ, ଆର୍ତ୍ତବନ୍ଧୁ ରାଉତ, ବିଜୟ ରାଉତ, ଜଗନ୍ନାଥ ପଣ୍ଡା, କାଳୀକିଙ୍କର ଦେ, କୈଳାସ ମହାରଣା, ପ୍ରତାପ ଜେନା, ଶଶିକାନ୍ତ ପଟ୍ଟନାୟକ, ମୁଁ ଓ ଆହୁରି ଅନେକେ ଗୋଟିଏ ସୂତାରେ ଗୁନ୍ଥି ହୋଇଗଲେ। ଏହି ସମୟରେ ରିଜିଓନାଲ୍ ସେଣ୍ଟର୍‌ଠାରେ ଗୋଟେ All India Sculptors' Camp ର ଆୟୋଜନ କରାଯାଇଥାଏ। ସେଥିରେ ଭାଗ ନେଇଥିବା ଶିଳ୍ପୀମାନେ ହେଲେ ଜମ୍ମୁର ଖଜୁରିୟା, ଲକ୍ଷ୍ନୌର ଶ୍ରୀଖଣ୍ଡେ, ମାଡ୍ରାସର କାନିୟାପାନ, କଲିକତାର ଦିଲ୍ଲୀପ ସାହା ଓ ଆହୁରି ଅନେକ। ସେମାନଙ୍କ କାମ କରିବାର ଶୈଳୀ ଓ ଆକାର ପ୍ରସ୍ତୁତି ଆମମାନଙ୍କୁ ବହୁତ ଅନୁପ୍ରାଣିତ କରିଥିଲା। ମୁଁ ରିଜିଓନାଲ୍ ସେଣ୍ଟର୍‌କୁ ଯାଇ ସେମାନଙ୍କ ସହ ପୁରା ସମୟ ପଥର ଖୋଦେଇରେ ସାହାଯ୍ୟ କରୁଥାଏ କିନ୍ତୁ ଅସଲ କଥା ନୂଆ କରି form କୁ ବୁଝିବା ଓ elements କୁ arrange (ସଂଯୋଜନା) କରିବା ହିଁ ମୁଁ ସେମାନଙ୍କଠାରୁ ଶିଖୁଥାଏ। ଏହା ପରେ ପରେ ବଲବୀରସିଂହ କଟ୍ ତାପଙ୍ଗ ଖଣିରେ କାମ କରିବା ପାଇଁ ଆସିଲେ। ଶିତିକାନ୍ତ ଭାଇ ସେତେବେଳେ ବନାରସରେ ପଢୁଥାନ୍ତି । ସେ ବଲବୀର କଟ୍‌ଙ୍କର ଶିଷ୍ୟ। ବଲବୀର୍ ସାର୍‌ଙ୍କୁ ଦେଖା କରିବାକୁ ସେ ମୋତେ ଖବର ଦେଲେ । ମୁଁ

Digitized by srujanika@gmail.com

ଓ ଜୟନ୍ତ ପଣ୍ଡା ତାପଙ୍ଗ ଚାଲିଲୁ । ସେଠାରେ ତାଙ୍କର କାମ କରିବା ଓ ରହିବାର style ମୋତେ ବହୁତ ଭଲ ଲାଗିଲା । ସେ କେବଳ କାମ କରୁ ନଥାନ୍ତି କାମ ସହ ଆଖପାଖ ଗାଁର ଲୋକଙ୍କର ଫଟୋଗ୍ରାଫି କରିବା ଓ ତାଙ୍କର ଜୀବନଶୈଳୀକୁ ଭଲ ଭାବରେ ବୁଝିବା ଓ ସମସ୍ତଙ୍କର ନାଁ ମନେରଖିବାରେ ବଲ୍‌ବୀର ସାର୍ ଧୁରନ୍ଧର ଥିଲେ। ସତରେ ବଲବୀର ସାର୍‌ଙ୍କର ସେ ସବୁ କଥା ମନେ ପଡ଼ିଲେ... ଆଖିରେ ଲୁହ ଆପେ ଆପେ ଆସିଯାଏ ।

**ବଲବୀର୍ ସାର୍ କେଉଁଠି ଅଛନ୍ତି ମୁଁ ଜାଣେନି କିନ୍ତୁ ମୋ ଭଳି ଅନେକ ଯୁବଶିଳ୍ପୀଙ୍କ ହୃଦୟରେ ସେ ଜଣେ ସ୍ନେହୀ, ଜ୍ଞାନୀ, କର୍ମଠ ଓ ସଚ୍ଚା ଶିକ୍ଷକ ହୋଇ ରହିଥିବେ। ଛାତ୍ରମାନଙ୍କୁ ନିଜ ପିଲାଭଳି ସ୍ନେହ ଦେବା, ନିଜେ ନଖାଇ ନପିଇ ପିଲାଙ୍କ ପାଇଁ ମାଇଲ ମାଇଲ ଯାତ୍ରା କରିବା, ରାତି ରାତି ଅନିଦ୍ରା ରହି କାମ କରିବା, ପଥରର ଅକୁହା ଭାଷାକୁ ବୁଝିପାରୁଥିବା ଶିଳ୍ପୀ ବଲ୍‌ବୀର ସିଂହ କଟ୍ ମୋ ପାଇଁ ଜଣେ ଗୁରୁଙ୍କ ଠାରୁ ଆହୁରି ବହୁ ଊର୍ଦ୍ଧ୍ୱରେ।**

କଲେଜରେ କ୍ଲାସ ନକରି ମୁଁ ଏକରକମ ତାପଙ୍ଗରେ ରହିବା ଆରମ୍ଭ କରିଦେଲି। ବଲବୀର ସାର୍‌ଙ୍କର କାମ ତାପଙ୍ଗରୁ ଟ୍ରକ୍‌ରେ ବୁହା ହୋଇ କାନପୁର ଚାଲିଗଲା । ସେଇଟା ଗୋଟେ ୧୬ ଫୁଟର Sculpture ଥିଲା। ତାହା ଏବେ କାନପୁର IIT ପରିସର ଭିତରେ ଅଛି। ମୋର କିନ୍ତୁ ତାପଙ୍ଗ ସହ ସମ୍ପର୍କ ନିବିଡ଼ ହୋଇ ଯାଇଥିଲା। ମୁଁ ଯେତେବେଳେ ଭୁବନେଶ୍ୱର ଆସେ ସେତେବେଳେ ତାପଙ୍ଗ ପଥର ଖଣି ସପ୍ନରେ ଦେଖାଦିଏ... ମୁଁ ପୁଣି କଲେଜ ସାରି ତାପଙ୍ଗ ଫେରିଯାଏ । କେବେକେବେ ସୁବ୍ରତ ମୋ ସହ ସେଇଠି ରହିଯାଏ। ସେଇ ଖଣିରେ ରହି sculpture କରିବାର ଅନୁଭୂତି ମୋତେ କେମିତି ଏକ ଅଲଗା ଆନନ୍ଦ ଦେଇଥିଲା। ପଥର ପାହାଡ଼, ପଥର ଖଣି, ପଥୁରିଆ, ମୋ ପାଇଁ ଯେମିତି ଜୀବନର ଗୋଟେ ଅଙ୍ଗ ହୋଇଯାଇଥିଲେ। ପରେ ଅଦ୍ୱୈତ ମୋ ସହ ସାଙ୍ଗ ହୋଇ carving ଆରମ୍ଭ କଲା।

ଅଦ୍ୱୈତ ଭାଇର ସମ୍ପର୍କ ବହୁତ ଜମିଲା । ଏକାଠି ପଥର କାଟିବା, ଖାଇବା, ଶୋଇବା ବହୁତ ଆନନ୍ଦ ଲାଗୁଥିଲା। ପଥର ଖଣିରେ ରହିବା ଭିତରେ ଆମର ନିଶଦାଢ଼ି ଲମ୍ୱି ଗଲା। ଲୋକମାନେ ଆମକୁ ବଲବୀର୍ ସିଂହର ଚେଲା ବୋଲି କହିବା ଆରମ୍ଭ କରି ଦେଇଥାଆନ୍ତି।

ତାପଙ୍ଗରେ କାମ କରିବା କଥା, ଅନେକ ଚର୍ଚ୍ଚାର ବିଷୟ ହେଲା, ମୋର ମନେ ଅଛି ମୋର ଡିପାର୍ଟ୍‌ମେଣ୍ଟର ସାର୍ ଅଧ୍ୟକ୍ଷଙ୍କୁ ମୋ ନାମରେ ଅଭିଯୋଗ ଦେଲେ ଯେ ଅଂଜନ ତାପଙ୍ଗରେ କ୍ଲାସ କରୁଛି, କଲେଜ ଷ୍ଟୁଡିଓରେ ରହୁ । ସେତେବେଳେ ସାର୍ ମୋତେ ଦିନେ ପଚାରିଲେ କ'ଣ ଅଂଜନ ତୁମେ ଏଠି ପାଠ ପଢୁଛ ଆଉ ତାପଙ୍ଗରେ କାମ କରୁଛ ? ସେତେବେଳେ ମୋତେ ବହୁତ ଡର ଲାଗିଥିଲା। କିନ୍ତୁ ମୁଁ ଟିକେ ଛେପ ଢୋକି ଉତ୍ତର ଦେଲି, କହିଲି, ସାର୍ ଆପଣ ପରା କହିଛନ୍ତି କାମ କରିବାର ସମୟ ଅସମୟ ଜାଗା ଅଜାଗା କିଛି ନାହିଁ। ସେଦିନ ମୁଁ ଦେଖିଛି ସାର୍ କିଭଳି ନିଜ ଭୁଲ ବୁଝିପାରିଲେ ଏବଂ ଏହା ତାଙ୍କର ମହାନତା ଯେ, ସେ ମୋ କଥାକୁ ଖରାପରେ ନେଲେନି। କିନ୍ତୁ ମୋତେ ଡର ଲାଗୁଥିଲା ସାରଙ୍କ ମୁହଁରେ ଏତେ ବଡ଼ କଥା । ମନେ ଅଛି ସେ ଦିନଯାକ ମୋତେ ଖାଇବା ପିଇବାକୁ ଭଲ ଲାଗିଲାନି, ତା ପରଦିନ ସାର୍ ମୋତେ ଅଫିସ୍‌ରୁ ଡକାଇ ପଠାଇଲେ । ମୁଁ ପୂରାପୂରି ଡରିଯାଇଥାଏ। ଡରି ଡରି ସାର୍‌ଙ୍କ ପାଖକୁ ଗଲି । ରାଓ ସାର୍, ଶିବ ସାର୍ ଅଫିସ୍‌ରେ ବସିଥାଆନ୍ତି। ସାର୍ ମୋତେ ପଚାରିଲେ ତୁମେ ତାପଙ୍ଗ କେବେ ଯାଉଛ ? ମୁଁ କିଛି ଉତ୍ତର ଦେବା ପୂର୍ବରୁ ସାର୍ କହିଲେ ଶୁଣ ଆମେ କଲେଜରେ ଗୋଟେ କ୍ୟାମ୍ପ କରିବା । ତୁମେ ପଥର ଆଣି କଲେଜ୍ କ୍ୟାମ୍ପସ୍‌ରେ ପକାଅ କାମ ହେବ ଏବଂ Display ହେବ। **ମୁଁ ସାର୍‌ଙ୍କ କଥାରେ ତାପଙ୍ଗ**

Digitized by srujanika@gmail.com

**ଯାଇ ବଡ଼ ବଡ଼ ପଥର ଆଣି କଲେଜ କ୍ୟାମ୍ପସ୍‌ରେ ପକାଇଲି । କଲେଜର ପରିବେଶ ବଦଳି ଗଲା । ତାପରେ ଦିନରାତି ସମସ୍ତଙ୍କ ପାଇଁ ଏକାକାର ହୋଇଗଲା । କଲେଜର ସବୁପିଲା ଲାଗିପଡ଼ିଲେ Stone carvingରେ । ଧୀରେ ଧୀରେ ତାପଙ୍କର ପଥର shape ନେବା ଆରମ୍ଭ ହେଲା । ପାଠୀ ସାର୍ ମଧ୍ୟ carving କରିବା ଆରମ୍ଭ କରିଦେଲେ ।** ରାଓ ସାର୍ କ୍ୟାମେରାରେ ଫଟୋ ଡକୁମେଣ୍ଟସନ୍ ଆରମ୍ଭ କରିଦେଲେ । ତାପରେ ପ୍ରତ୍ୟେକ sculpture ପାଇଁ cement ରେ pedestal ତିଆରି ହେଲା । କେଉଁ sculpture କେଉଁଠି ରହିବ ତାର ସ୍ଥାନ ନିରୂପଣ କଲାପରେ sculpture ସବୁ pedestal ଉପରେ ଉଠିଗଲା । ପଥର ଉଠିବା ସମୟରେ କେବଳ sculpture department ନୁହେଁ ସବୁ ଡିପାର୍ଟମେଣ୍ଟରେ ପିଲା ହାତ ଲଗାଇ sculpture ଠିଆ କରେଇଲେ । ଆର୍ତ୍ତ ଭାଇର "Bull" ଅଦ୍ୱୈତ ଭାଇର "Dancing figures" ମୋର "Time wheel" ଅଜୟ ପଣ୍ଡାର "Ganesh" ଲକ୍ଷ୍ମୀ ଭାଇର "Figures"- ଏଭଳି ଅନେକ sculpture ଆମ ଛୋଟ କଲେଜ ପରିସରର ରୂପ ବଦଳାଇ ଦେଲା । ଏଥିରେ ସବୁଠୁଁ ବଡ଼ କଥା ହେଲା ଯେ ଯାହା କେବେ ବି ଓଡ଼ିଶାର ବଡ଼ ବଡ଼ Institution ଯଥା ଲଳିତକଳା ଏକାଡ଼େମୀ ଓ ବହୁ ପୁରାତନ ଆର୍ଟ୍ କଲେଜରେ ପଥର ଭାସ୍କର୍ଯ୍ୟ ଗଢ଼ିବା ଓ ସେମାନଙ୍କ କାର୍ଯ୍ୟ ପରିସରରେ ଅବସ୍ଥାପିତ କରିପାରିବାର ସପ୍ନ ସୁଦ୍ଧା କେବେ ଦେଖି ପାରିନଥିଲେ । ପାଠୀ ସାର୍‌ଙ୍କ ଛୋଟିଆ ଉଦ୍ୟମରେ sculpture gardenର ଏକ ନମୁନା ଆମ କଲେଜ ହତାରେ ସାକାର ରୂପ ନେଇ ପାରିଥିଲା । ସେହି ବର୍ଷ ୧୯୮୭ରେ ମୁଁ ଓଡ଼ିଶା ଲଳିତ କଳା ଏକାଡ଼େମୀ ତରଫରୁ stone sculpture ପାଇଁ ପୁରସ୍କାର ପାଇଥାଏ ଏବଂ ଆର୍ତ୍ତ ଭାଇ ସେହି ବର୍ଷ ଭାରତ ଭବନର ବିନାଲେ exhibition ରୁ ପୁରସ୍କାର ପାଇଥାଆନ୍ତି । ଏହା ଆମ କଲେଜ ପାଇଁ ଅତି ଗୌରବ କଥା ହେଇଥାଏ । ପାଠୀ ସାର୍ ବିଭିନ୍ନ ସଭାରେ ଆମମାନଙ୍କର କାମର ପ୍ରଶଂସା କରନ୍ତି ଓ ଆମ ଉତ୍ସାହ ବଢ଼ାନ୍ତି । ଏହା ପରଠାରୁ କଚ୍ଚନା ଛକରେ ଥିବା ବି.କେ. କଲେଜ ପରିସର ଭିତରେ chisel ଓ hammerର ଶବ୍ଦ କେବେ ବନ୍ଦ ହୋଇନାହିଁ । ରାତିଦିନ ଆମ ପାଇଁ କଲେଜଟା ଥିଲା କର୍ମସ୍ଥଳୀ । ରାତିର ବିଳମ୍ବିତ ପ୍ରହରରେ ନିଜ ଘରକୁ ଫେରୁଥିବା ସୁଧାଂଶୁ ସାର୍ (ତ' ସାରେ) ଅଟକି ଯାଇ ୨ଦମ ସିଗାରେଟ ବଢ଼ାଇ ଦେଇ କହୁଥିଲେ- "ତ' ବାବା... ଏମିତି କଲେ... ତ ଖୁବ୍ ଭଲ ନିଶ୍ଚୟ..।''

ସବୁଠାରୁ ଆନନ୍ଦ କଥା ଯାହା ନ ଲେଖି ରହିପାରୁନି ସେଇଟା ହେଲା ପାଠୀ ସାର୍‌ଙ୍କର "Love garden concept" । ପରସ୍ପରକୁ ଭଲ ପାଇବା ଯେ କଳାକାରମାନଙ୍କର ଏକ ସ୍ୱାଭାବିକ ପରିଣତି ଏକଥା ସାର୍ ଭଲଭାବରେ ବୁଝିଥିଲେ । ଏହାକୁ ଆହୁରି ସହଜ ଓ ସୁନ୍ଦର କରିବା ପାଇଁ sculpture ଓ stone blocks ନେଇ ସାର୍ ଏକ ଗାର୍ଡେନ୍‌ର କନ୍‌ସେପ୍ଟ ଦେଲେ । କଲେଜ ପରିସର ଭିତରେ ଥିବା ଛୋଟ ଆମ୍ବ ଗଛ ମୂଳରେ sitting arrangement ତିଆରି କଲେ ଏବଂ କହୁଥିଲେ ଅଞ୍ଜନ, ଅପର୍ଣ୍ଣା ଶୁଣ, ପୋଏଟ୍ରି ପାଇଁ ମୁଁ ଗୋଟେ ଗାର୍ଡେନ୍ ତିଆରି କରିଛି, କ'ଣ ଭଲ ହୋଇଛି ତ ? ସେତେବେଳେ ଆଁ ↑ ଏସବୁ କିଛି ଅଡୁଆ ଲାଗୁ ନଥିଲା । ପିଲାମାନଙ୍କ କଥାକୁ ଭଲପାଇବା ଓ ସବୁ ଭଲମନ୍ଦକୁ ସହଜରେ ଗ୍ରହଣ କରି ନେବାରେ ସାର୍‌ଙ୍କ ଉଦାରତାକୁ ପିଲାଏ ମଧ୍ୟ ସହଜରେ ବୁଝିପାରୁଥିଲେ । ଛାତ୍ରଙ୍କ ପ୍ରତି ସାର୍‌ଙ୍କ ଶ୍ରଦ୍ଧା ଏପରି ଥିଲା ଯେ ପିଲାଙ୍କୁ ବହଲେଇବା ପାଇଁ ଅନ୍ୟମାନଙ୍କ ଭଳି ସାର୍‌ଙ୍କୁ ଝୁଲା ବ୍ୟାଗରେ ଚକ୍‌ଲେଟ୍ ବା ଟଫି ନେଇ ଯିବାକୁ ପଡୁ ନଥିଲା ।

ମଝିରେ ମଝିରେ ଆମ କଲେଜକୁ ନେଇ କିଛି ଲୋକ ଭିନ୍ନ ଭିନ୍ନ ମତ ପୋଷଣ କରନ୍ତି, ଅନେକ ଗୁଲିଖଟି ଶୁଣିବାକୁ ପଡ଼େ । ଏସବୁ ଆମକୁ ଭଲ ଲାଗେନି । ଅନେକ ଥର ଅନେକଙ୍କ ସହ ଆମର ଯୁକ୍ତିତର୍କ ମଧ୍ୟ ହୁଏ । ଥରେ ନିଜକୁ ସାମ୍ବାଦିକ ବୋଲାଉଥିବା ଜଣେ ଭଦ୍ରବ୍ୟକ୍ତି କହିଲେ

Digitized by srujanika@gmail.com

ପାଠୀ ବାବୁ ତାଙ୍କ ଅଫିସ୍‌କୁ ଖାଲି ଚକ୍‌ଚାକ୍ କରୁଛନ୍ତି, କଲେଜରେ ଇଆଡ଼େ କିଛି ନ ଥାଉ ପଛେ, ମାଷ୍ଟ୍ରେଙ୍କ କଥାତ ଛାଡ଼ । ପୁଅ ଝିଅମାନେ ଆଉ କାହାନ୍ତି ? ସତ କଥା, ପିଲାମାନେ ତ କେଉଁଠି ନଥାନ୍ତି ନାମ ଲେଖାନ୍ତି, ପାଠ ପଢ଼ନ୍ତି, ପାଠ ସରିଗଲେ ଚାକିରି ବା କାମ ଅନ୍ୱେଷଣରେ ବାହାରି ପଡ଼ନ୍ତି। କିନ୍ତୁ ଆମ କଲେଜ ଏକ ଏଭଳି କଲେଜ ଯେଉଁଠି ପିଲା ନାମ ଲେଖାନ୍ତି, କଳା ସର୍ଜନା କରନ୍ତି, ସମାଜକୁ କିଛି ଦାନ କରିଯାଆନ୍ତି। ଏଠି ଫୁଲ ଗଛ ଲଗାହୁଏ। ଫୁଲ ଫୁଟେ। ବାସ ଚହଟେ । କିନ୍ତୁ ସାମ୍ବାଦିକ ବନ୍ଧୁ ଗଜରାକୁ ମୁଜରା ବୋଲି ଭାବୁଥିଲେ । କିନ୍ତୁ ସେ ଜାଣନ୍ତିନି ଯେ ଫୁଲରୁ ରସ ନ ବାହାରିଲେ ଆୟୁର୍ବେଦର ମାନେ ନଥାଏ।

ରାମହରି ଭାଇ ଆମକୁ ସବୁବେଳେ ଆକଟ କରୁଥିଲେ, ଅଯଥା ଝଗଡ଼ାରୁ ଦୂରେଇ ରହିବା ପାଇଁ ହିଁ କହୁଥିଲେ। ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରରେ ଚାକିରି କରିବା ପରେ ଆମ କଲେଜ ଗେଷ୍ଟ ହାଉସ୍‌ରେ ରହିବା ପରଠାରୁ ସେ ଆମର ଆଉ ଜଣେ ସାର୍ ହୋଇଯାଇଥିଲେ। କିନ୍ତୁ ଆମ ପାଇଁ ସେ ହେଉଛନ୍ତି ପ୍ରିୟ ରାମଦା'। ରାମଦା' ଆମଠାରୁ ୭/୮ ବର୍ଷ ବୟସରେ ବଡ଼,ବନ୍ଧୁ, ବଡ଼ଭାଇ ଓ ଶିକ୍ଷକର ମର୍ଯ୍ୟାଦା ଦେଇ ଆସିଛି ମୁଁ ତାଙ୍କୁ। ସକାଳୁ ଉଠି ସେ ମୋତେ ଚା' ପିଇବାକୁ ଡାକି ନେଉଥିଲେ, ସେତେବେଳକୁ ତାଙ୍କର ଆଖି ଦୁଇଟା ଲାଲ, କାରଣ ରାତି ଯାକ ମୋର ଠକ୍ ଠକ୍ ପଥର କଟା ଶବ୍ଦରେ ସେ ଶୋଇ ପାରୁ ନଥିଲେ। ପ୍ରଥମେ କିଛି ଦିନ କବାଟ ଝରକା ବନ୍ଦ କରି ଶୋଇବାକୁ ଚେଷ୍ଟା କଲେ କିନ୍ତୁ ତା'ପରେ ଶବ୍ଦ ସହିତ ଏଭଳି ଅଭ୍ୟସ୍ତ ହୋଇଗଲେ ଯେ ବିନା ପଥର କଟାର ଶବ୍ଦରେ ତାଙ୍କୁ ନିଦ ହେଲାନାହିଁ। ସଜଳ ପାତ୍ର ମଧ ରାତିରେ ପେଣ୍ଟିଙ୍ଗ୍ ଆରମ୍ଭ କଲା। ଧୀରେ ଧୀରେ ମୋର ନାଇଟ୍ ଷ୍ଟୁଡିଓରେ ସାଥିଙ୍କ ସଂଖ୍ୟା ବଢ଼ି ଚାଲିଲା ଏବଂ ଆମର ବଦଭ୍ୟାସ ମଧ ବଢ଼ି ଚାଲିଲା। ସଜଳ ବହୁତ ସିଗାରେଟ୍ ପିଏ । ତାକୁ ସାଙ୍ଗ ଦେବାପାଇଁ ମୁଁ ମଧ ପଛାଏନି। ମଝିରେ ମଝିରେ ପାଠୀ ସାର୍ ରାଗନ୍ତି ଆମ ଉପରେ। କିଛି ଦିନ ବନ୍ଦ ପୁଣି ଶୃଗାଳଙ୍କ ସୋମବାର। ସେ ଯାହା ହେଉ ପରବର୍ତ୍ତୀ ସମୟରେ ଆମେ ସାର୍‌ଙ୍କ କଥା ବୁଝି ପାରିଥିଲୁ ଯେ ସିଗାରେଟ୍ ବା ମାଦକ ଦ୍ରବ୍ୟ ସେବନ ନ କରୁଥିବା କଳାକାରମାନେ ମଧ ନୂତନ ସୃଷ୍ଟି କରିପାରନ୍ତି। ପଦ ମର୍ଯ୍ୟାଦା ଓ କ୍ଷମତା ଜଣେ ଶିଳ୍ପୀକୁ ତା'ର ସୃଷ୍ଟି ପଥରୁ ବିଚ୍ୟୁତ କରି ପାରେନା; ଯାହାର ଜ୍ୱଳନ୍ତ ପ୍ରମାଣ ହିଁ ନିଜେ ଆମର ପାଠୀ ସାର୍। ତ' ସାରେ (ସୁଧାଂଶୁ ମାଷ୍ଟ୍ରେ) କୁହନ୍ତି ''ତ ବାବା ଚିତ୍ରର ନିଶାତ ବାବା ବଡ଼ ନିଶା.. ଆଉ ନିଶା ଦରକାର କ'ଣ ?'' ସକାଳୁ ଉଠି ଘାସ ମାନଙ୍କ ସହ ସିଗାରେଟ୍‌ର ଅର୍ଦ୍ଧ ଦଗ୍ଧ ଅଂଶମାନଙ୍କୁ ବାଛି ଫୋପାଡ଼ି ଦିଅନ୍ତି ରାମଦା'। ଘାସ ବଛା, gardening ଓ ପରେ ନାଇଟ୍ ଷ୍ଟୁଡିଓର ପିଣ୍ଡି ତିଆରିରେ ଲାଗିଯାଉ ଆମେ। ରାମଦା', ବାଁସୁରି, ମନୋଜ, ଶ୍ୟାମ, ସୁବ୍ରତ, ଦିଲ୍ଲୀପ, ଅଶୋକ, ଭୂବନ ଓ ଅନ୍ୟମାନଙ୍କ ସହାୟତାରେ ସେଦିନ ପିଣ୍ଡିଟିର ତିଆରି ଶେଷ ହେଲା । ସବୁଦିନ ରାତିରେ କାମ ହୁଏ, ଚର୍ଚ୍ଚା ହୁଏ, ତର୍କ ବିତର୍କରେ ରାତି ବିତିଯାଏ। ତା ପରେ ଭୂବନ, ଫକୀରା କାଣ୍ଟିନରେ ତିଆରି କରନ୍ତି ଚା ଜଳଖିଆ । ପରିଶେଷରେ କଳାକାରମାନଙ୍କ ପାଇଁ ରାତ୍ରି ଭୋଜନର ପ୍ରସ୍ତୁତି କରେ ଭୂବନ। ଖାଇବା ପିଇବାର ହିସାବ ନ ରଖିପାରି ଅଚିରେ ବନ୍ଦ ହୋଇଯାଏ ଭୂବନର କ୍ୟାଣ୍ଟିନ। କିନ୍ତୁ ଆମ ନାଇଟ୍ ଷ୍ଟୁଡିଓରେ କାମ ବନ୍ଦ ହୁଏନି। କଳ୍ପନା ଫ୍ଲାଟର କିଛି ଲୋକ ଠକ୍ ଠକ୍ ଶବ୍ଦକୁ ନିଶ୍ଚୟ ରାଗନ୍ତି। ଆଉ କିଛି ଲୋକ ଓଡ଼ିଶାର ଗୌରବମୟ କଳା ଇତିହାସକୁ ମନେ ପକାଇ ଭାବନ୍ତି ଯାହାହେଉ sculptor ମାନେ ଆମର ରାତ୍ରୀ ଜଗୁଆଳୀ କାମ କରୁଛନ୍ତି।

କିଛିଦିନ କଲେଜରେ ରହିବା ପରେ ଆମେ ଭଡ଼ାଘରେ ରହିବା ଆରମ୍ଭ କଲୁ । ସେଇଟା ଥିଲା ସମାଜ ସେବିକା ରମ୍ଭା ଦେବୀଙ୍କ ଘର। ପ୍ଲଟ ନଂ କେ-୮, ବିଜେବି ନଗର। ସେଇଠାରେ ପୁଣି

Digitized by srujanika@gmail.com

ଆରମ୍ଭ ହେଲା ଓଡ଼ିଆ କଳାକାରମାନଙ୍କର ଭିନ୍ନ ଏକ ଜୟଯାତ୍ରା । କିଛିଦିନ ଧରି ଶୋଇ ରହିଥିବା Working Artists Association ତା'ର Summer Show Exhibition ର ପ୍ରସ୍ତୁତିରେ ଲାଗିଲା । ପାଠୀ ସାର୍ ସବୁ ସମୟରେ ଆମ ପାଖରେ ପହଞ୍ଚି ଯାଆନ୍ତି । ଛବି ସବୁ ଆସିଲା ଧୀରେ ଧୀରେ ଆମର ବାରଣ୍ଡାରୁ ଆରମ୍ଭ କରି ରୁମ୍ ଭିତର ପର୍ଯ୍ୟନ୍ତ କୌଣସି ଜାଗା ଫାଙ୍କା ରହିଲା ନାହିଁ। ପ୍ରଥମ କରି ଏତେବଡ଼ Exhibitionର ଆୟୋଜନର ଦାୟିତ୍ୱର ସବୁ କାମରେ ଆମେ ଆଗୁଆ ହୋଇ ବାହାରି ପଡୁଥିଲୁ। Exhibition ର list କରିବା ଏବଂ ଛବି ପତ୍ର ସଜାଇ ରଖିବାର ଦାୟିତ୍ୱ ଆମ ଉପରେ, ଶିଳ୍ପୀମାନଙ୍କର ପେଣ୍ଟିଙ୍ଗ୍ସ୍ ସବୁ ରୁମ୍ ଭିତରେ ରଖି ଆମେ ରାତିରେ ଛାତ ଉପରେ ଚଟ ଚଟ କୋଲ୍‌ଟାର୍ ସିଟ୍‌ରେ ଶୋଇ ସେଇ Exhibitionକୁ ସଫଳ ରୂପ ଦେଇଥିଲୁ। ଏ ଭିତରେ ପାଠୀ ସାର୍ ଓ ରାଓ ସାର୍‌ଙ୍କର ଆମ ମେସ୍‌କୁ ଯିବା ଆସିବା ଏକ ନିତିଦିନିଆ ଅଭ୍ୟାସ ହୋଇଯାଇଥିଲା । Officeରୁ କାମ ସାରିବା ପରେ ସାର୍ ଆମ ପାଖରେ ଘଣ୍ଟାଏ ଦି'ଘଣ୍ଟା ନିଶ୍ଚୟ କାଟୁଥିଲେ, କଥା କଥାରେ ଅନେକ ଇତିହାସର ପୃଷ୍ଠା ଓଲଟାନ୍ତି ସାର୍। ଛାତ୍ର ଜୀବନରୁ ଶିଳ୍ପୀ, ଅଧ୍ୟାପକ ଓ ଅଧ୍ୟକ୍ଷ, ଜୀବନ ବୃତ୍ତାନ୍ତ କହନ୍ତି ସାରେ। ବିପିନ୍ (ବିପିନ୍ ବିହାରୀ ସାହୁ) ବାବୁ ମଧ୍ୟ ଆମ ମେସ୍‌ରେ ସମୟେ ସମୟେ ଅତିଥି ହୁଅନ୍ତି। ରାମହରି ଭାଇର ରୁମ୍‌ରେ ଟି.ଭି.ଟିଏ ଲାଗିଲା। ଆମର ରାମାୟଣ, ମହାଭାରତ ଦେଖିବା ପାଇଁ ଅନ୍ୟତ୍ର ଯିବାକୁ ପଡ଼ିଲା ନାହିଁ। ସୁବ୍ରତ ଓ ଅଦ୍ୱୈତ ଆମର ସବୁଦିନିଆ ଗେଷ୍ଟ୍। ଏ ଭିତରେ ସଜଳର ସାନଭାଇ କାଜଲ ଓ ତାର ସାଙ୍ଗମାନେ ମଧ୍ୟ ଆମ ସହ ରହିବା ଆରମ୍ଭ କରି ସାରିଥାଆନ୍ତି । ମେସ୍‌ରେ ରହିବା ଖାଇବାର ଠିକଣା ନଥାଏ। ତଥାପି ରାମହରି ଭାଇର ଚିକ୍କଣ କାମ ସବୁବେଳେ, ଖାଇବା ପିଇବାଠାରୁ ସେଲୋଟେପ୍ ଚିପ୍‌କେଇବା ଯାଏଁ ସବୁଥିରେ ଚିକ୍କଣ, ମଝି ମଝିରେ ଆମର ଆସର ଜମି ଉଠେ। କବି, କଥାକାର, ସାମ୍ବାଦିକ ଆମର ଅତିଥି ସାଜନ୍ତି। ଯୋଗାଡ଼ରେ ସଜଳ ଖୁବ୍ ତତ୍ପର, ମିକ୍ସଚର୍ ଠାରୁ ପିଆଜ ପର୍ଯ୍ୟନ୍ତ, ଦାଲ୍ ଚଡ଼କା ଠାରୁ ଚିକେନ୍ ପର୍ଯ୍ୟନ୍ତ ସବୁ ଠିକ୍ ଠିକ୍ ସମୟରେ ଯୋଗାଡ଼ ହୋଇଯାଏ। ରାତିରେ ମୁଁ ଓ ଅଦ୍ୱୈତ sculpture କରୁ ରାମହରି ଭାଇ ଓ ସଜଳ ପେଣ୍ଟିଙ୍ଗ୍ କରନ୍ତି।

ସେଇ ବର୍ଷ ୧୯୮୯ରେ ରାମହରି ଭାଇ National Award ମଧ୍ୟ ପାଇଲେ। ଏହା ଆମ ପାଇଁ ଏକ ଗର୍ବର କଥା ଥିଲା। କାରଣ National Award ପାଇଥିବା ପେଣ୍ଟିଙ୍ଗ୍ ଆମ ମେସ୍‌ରେ ହିଁ ରୂପ ନେଇଥିଲା। ଏହା ଓଡ଼ିଶା ପାଇଁ ଗର୍ବର ବିଷୟ ତ ନିଶ୍ଚୟ କିନ୍ତୁ ଆମମାନଙ୍କ ଛାତି ୨/୪ଇଞ୍ଚ ଫୁଲି କରି ଥାଏ। Sculpture ଓ Painting କାମରେ ଆମ ମେସ୍ ସବୁବେଳେ ଚଳଚଞ୍ଚଳ ଥାଏ । କଲେଜର ପିଲାମାନଙ୍କ ପାଇଁ କେ-୮ ଆଉ ଏକ ଡିପାର୍ଟମେଣ୍ଟ୍ ହୋଇଗଲା। ରାତି ଦିନ କାମ ଚାଲିଥାଏ। ସୁଧା ଓ ଅପର୍ଣ୍ଣା ମଧ୍ୟ ଆମ ସହ ସାମିଲ ହୋଇ ସାରିଥାଆନ୍ତି । ରାମହରି ଭାଇ ଧୀରେ ଧୀରେ ଆମ କଲେଜ ପିଲାମାନଙ୍କର ଶିକ୍ଷକ ଭଳି ହୋଇଗଲେ। ଏହାପରେ ଆମକୁ ରାମହରି ଭାଇ ମେସ୍‌ରୁ ବାହାର କରିବାର ସମୟ ଆସିଯାଇଥାଏ। ତାଙ୍କର ବାନ୍ଧବୀ ବଙ୍ଗୀୟ କନ୍ୟା ଚଇତା ଭାଉଜର ଭୂମିକା ନେଇ ଆସିବାର ସମୟ ପାଖେଇ ଆସିଲା। ରାମହରି ଭାଇଙ୍କୁ ବରବେଶ କରି ଛାଡ଼ିବା ପର୍ଯ୍ୟନ୍ତ ଆମେ ସେଇଠି ଥାଉ, ତା'ପରେ ରମ୍ଭା ଦେବୀଙ୍କର ସେଇ ପରିସର ଭିତରେ ଥିବା ଆଉଟ୍ ହାଉସ୍ ଆମର ଆଶ୍ରୟ ସ୍ଥଳୀ ହୋଇଗଲା। ନୂଆ ଭାଉଜ ନୂଆ ହୋଇ ଆମ ମେସ୍‌ରେ ପ୍ରବେଶ କଲେ।

ଆମେ ଆମର ଛେଣିହାତୁଡ଼ି ରଙ୍ଗତୂଳୀ ନେଇ ଆଉଟ୍ ହାଉସ୍‌କୁ ଚାଲିଲୁ। ଠିକ୍ ସେଇ ସମୟରେ ଜୟନ୍ତ ପଣ୍ଡା ଆମେରିକାରୁ ଫେରିଥାଏ। ତାର ମଧ୍ୟ ରହିବା ପାଇଁ ଜାଗା ନଥାଏ। ଜୟନ୍ତ ମୋର ବନ୍ଧୁ । ରହିବ ବା କେଉଁଠି। ଶେଷରେ ଆମରି ପାଖରେ ରହିବା ଆରମ୍ଭ କଲା। ଆମର ରୁମ୍ ଦୁଇଟି ଆମେରିକାରୁ ଆନୀତ ବିଦେଶୀ ସେଣ୍ଟ୍‌ର ବାସନାରେ ମହ ମହ ହୋଇ ଉଠିଲା। ଅବଶ୍ୟ ବିହାରୀଙ୍କର

Digitized by srujanika@gmail.com

ଝାଳ ଗନ୍ଧ ସହ ମିଶି ଏକରକମ ନୂଆ ମହକ ସୃଷ୍ଟି କରୁଥିଲା। ବେଳେବେଳେ ମେସ୍‌ରେ ଏତେ ଲୋକ ହୋଇ ଯାଆନ୍ତି ଯେ ଶୋଇବା ପାଇଁ ଯାଗା ମିଳେନି। ରମ୍ଭା ଦେବୀଙ୍କର କେବେ କିଛି ଅଭିଯୋଗ ନଥାଏ । ବରଂ ସେ ନୂଆ ନୂଆ ପିଲାଙ୍କୁ ଦେଖିଲେ ଖୁସି ହୁଅନ୍ତି। ରମ୍ଭା ଦେବୀଙ୍କର ସେ ପରିସରଟି ଗୋଟେ ଆର୍ଟ୍ କଲେଜ ଭଳି ହିଁ ଲାଗେ। ସେଇ ଦୁଇଟି ରୁମ୍‌ରେ କେତେ ଯେ କଥା ନ ଘଟିଛି, କେତେ ଯେ ସପ୍ନ ନ ଦେଖା ହେଇଛି, ସେ ସବୁ ଲେଖିଲେ ଇତିହାସ ହେବ। ଅନେକ ସପ୍ନର ତାଜ୍ ସେଇଠି ସୃଷ୍ଟି ହୋଇଥିଲା। ସଫଳତା ଓ ବିଫଳତାର ଊର୍ଦ୍ଧ୍ୱରେ ଥିଲେ ଆମ ମେସ୍‌ର ପିଲାମାନେ। ସବୁବେଳେ କିଛି କିଛି କାମ ହେଉଥାଏ। ଏହି ଭିତରେ ରଞ୍ଜନ ମଧ ଆମ ସହ ସାଙ୍ଗ ହୋଇଯାଇଥାଏ । ତା'ର ସ୍କ୍ରିନ୍ ପ୍ରିଣ୍ଟିଂ ୟୁନିଟ୍‌ଟି ଆମ ମେସ୍‌ରେ ଖୋଲି ସାରିଥାଏ।

ଏହି ଭିତରେ ମୁଁ ବନାରସରେ ଏଣ୍ଟ୍ରାନ୍‌ସ ଦେଇ ସାରିଥାଏ । ଅଦ୍ୱୈତ ଭାଇ ଦିଲ୍ଲୀ କଲେଜ୍ ଅଫ୍ ଆର୍ଟ୍‌ରେ ସିଟ୍ ପାଇବା ପରେ ମୁଁ ବନାରସରେ ବଲବୀର୍ କଟ୍‌ଙ୍କ ପାଖରେ ଆଡ୍‌ମିସନ୍ ନେଲି। ଆଉ ଭାଇ ବରୋଦରେ ପି.ଜି. ପଢ଼ିବା ପାଇଁ ଚାଲିଲେ। ବନାରସ ଘାଟ, ଲସି ଓ ବଲବୀର୍ ମୋ ପାଇଁ ଆକର୍ଷଣ ଥିଲା। ବି.କେ. କଲେଜ ସହ ମୋର ସମ୍ପର୍କ ଓ କେ-୮ ସହ ସମ୍ପର୍କ କିନ୍ତୁ ସେଇମିତି ସାଇତା ହୋଇଥାଏ। ବି.କେ. କଲେଜର ପ୍ରତ୍ୟେକ କାମରେ ଆମେ ସାମିଲ ହେଉଥିଲୁ। ତାର କାରଣ ହେଲା ସାର୍‌ମାନେ ମଧ ଆମକୁ ବହୁତ ଭଲ ପାଉଥିଲେ। ମୁଁ ଜାଣେନି କେତେ ହଜାଇଛି କେତେ ପାଇଛି...

କିନ୍ତୁ ସ୍ମୃତିରେ ରହିଥିବା ସମସ୍ତ ଘଟଣାକୁ ନିରେଖି ଦେଖିଲେ ଆମର ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟରେ ପଢ଼ିବା ସମୟର ସ୍ମୃତି ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସେମିତି ସଦ୍ୟ ହୋଇ ରହିଥିବ।

ପାଠୀ ସାର୍, ରାଓ ସାର୍, ଶିବ ସାର୍, ଦେବରାଜ ସାର୍ ତଥା ଆମକୁ କେବେ କେମିତି ପଦେ ଅଧେ କଥା କହି ଜୀବନକୁ ସରସ ସୁନ୍ଦର କରିଦେଇଥିବା ସମସ୍ତ ଗୁରୁ ଓ କଳା ମନୀଷୀମାନଙ୍କୁ ମୁଁ ମୋର ହୃଦୟର କୋଟି କୋଟି ପ୍ରଣାମ ଜଣାଉଛି।



Digitized by srujanika@gmail.com

ପ୍ରଫୁଲ୍ଲ ଚନ୍ଦ୍ର ଧୀର

## ପତିତ ପାବନ ମେସ୍

ମେସ୍‌ର ଆଭିଧାନିକ ଅର୍ଥ ମୋତେ ଉତ୍ସାହପ୍ରଦ ନୁହେଁ । ମେସ୍ ହେଲା ଅସଂଯତ, ଅପରିଷ୍କାର ଅବସ୍ଥାନ । ଏଭଳି ଅବସ୍ଥାନ କିଛିଲୋକଙ୍କୁ ତ ସୁହାଏ, ଶିଳ୍ପୀଙ୍କର କିନ୍ତୁ ଏହା ସହଜାତ ପ୍ରକୃତି କୁହାଯାଇ ପାରିବ । ଦିଲ୍ଲୀ ନଗରୀର ପ୍ରସିଦ୍ଧ ମଣ୍ଡି ହାଉସ୍ ଛକ ପାଖରେ ଭଗବାନ ଦାସ ରୋଡ଼ କଡ଼େ କଡ଼େ ବାହୱାଲ୍‌ପୁର୍ ହାଉସ୍ । ପ୍ରକାଣ୍ଡ ହତା । ତା'ରି ଭିତରେ ଏନ୍.ଏସ୍.ଡି (ନ୍ୟାସ୍‌ନାଲ୍ ସ୍କୁଲ୍ ଅଫ୍ ଡ୍ରାମା), ସି.ସି.ଆର.ଟି(ସେଣ୍ଟର୍ ଫର୍ କଲଚରାଲ୍ ରିସୋର୍ସ୍ ଆଣ୍ଡ ଟ୍ରେନିଙ୍ଗ୍) ସଂସ୍କୃତି ବିଭାଗର ତୁଳସୀ ଲାଇବ୍ରେରୀ, କଥକ କେନ୍ଦ୍ର ଏବଂ ତା ସହିତ ଲଳିତ କଳା ଏକାଡ଼େମୀର ଅତିଥି ଭବନ, କାଣ୍ଟିନ୍, ଷ୍ଟୋର୍ ଏବଂ ସଚିବଙ୍କ ବଙ୍ଗଳା ।

ଦିନନାଥ ପାଠୀ କେନ୍ଦ୍ର ଲଳିତକଳା ଏକାଡ଼େମୀରେ ସଚିବ ହୋଇ ଯୋଗଦେଲା ପରେ ତାଙ୍କ ସରକାରୀ ବଙ୍ଗଳାଟି ବି.କେ. ଆର୍ଟ୍ କଲେଜରୁ ନଗଦ ପାସ କରିଥିବା ପିଲାଙ୍କ ମେସ୍ ପାଲଟି ଯାଇଥିଲା । ବଙ୍ଗଳାଟିରେ ସାନ ବଡ଼ ହୋଇ ଚାରୋଟି ରୁମ୍ । ଘରେ ପଶୁ ପଶୁ ବାଁ ପଟକୁ ଟ୍ୟଏଲେଟ୍ ଓ ଗାଧୁଆ ଘର, ତାପରେ ବୈଠକ ଖାନା, ଏହି ଜାଗାଟି ହିଁ ଆଡ୍ଡାଜାଗା ମେସ୍‌ର ପ୍ରାଣ କେନ୍ଦ୍ର, ତା ପାଖକୁ ଲାଗି ଡାହାଣ ପଟକୁ ସଚିବଙ୍କ ଶୟନ କକ୍ଷ । ସେଇ ଏକା ଘର କିନ୍ତୁ ଅନ୍ୟ ଖଞ୍ଜାରେ ରନ୍ଧାଘର ଏବଂ ଆଉ ଦୁଇଟି ରୁମ୍ । ସେଇ ଗୋଟିଏ ବଡ଼ କୋଠାରେ ଉତ୍ତର ଦିଗକୁ ସଚିବଙ୍କ ଘର ତ ଦକ୍ଷିଣ ଦିଗକୁ କଥକ କେନ୍ଦ୍ର । ସବୁବେଳେ ଅଭ୍ୟାସରତ କଥକ ନୃତ୍ୟଶିଳ୍ପୀଙ୍କ ଛନ୍ଦୋବଦ୍ଧ ପାଦର ଘୁଙ୍ଗୁର ଶବ୍ଦ । ଘର ଆଗରେ ବିରାଟ ଲନ୍ ଓ ତା'ରି ମଝିରେ ବଟବୃକ୍ଷ ଭଳିଆ ଝଙ୍କାଳିଆ ଗୋଟିଏ ରବର ଗଛ । ଏହା ତଳେ ପ୍ରେମୀ ଯୁଗଳଙ୍କ ସବୁବେଳେ ଆଡ୍ଡା । ଏହି ହତା ଭିତରେ ପୁଅଝିଅଙ୍କ ଚଳପ୍ରଚଳ ପରିବେଶକୁ ବର୍ଣ୍ଣିଳ କରିରଖେ । ଏହା ଭିତରେ ପୁଣି ରଙ୍ଗମଞ୍ଚ, ଦିନେ ନାଟକ ତ ଦିନେ ନୃତ୍ୟ, ଆଉ ଦିନେ ସଂଗୀତ । ମୋତେ ଏ ପରିବେଶ ଏତେ ଭଲଲାଗେ ଯେ, ମୁଁ ଦିଲ୍ଲୀଗଲେ ଅନ୍ୟ କେଉଁଠି ନରହି ଏଇଠି ପହଞ୍ଚିଯାଏ । ସମସ୍ତେ ତ ବି.କେ. କଲେଜର ପିଲା । ମୁଁ ଏମାନଙ୍କୁ କଳ୍ପନାଛକରେ ଥିବା କଲେଜ ଅମଳରୁ ଦେଖି ଆସୁଚି । ଏମାନେ ଏବେ ବେକାର, ବି.କେ. କଲେଜରୁ ପାସ୍ କଲାପରେ କିଏ ବମ୍ବେ, କିଏ ବରୋଦା, କିଏ ଚଣ୍ଡିଗଡ଼ ଆଉ କିଏ ଚଣ୍ଡିଗଡ଼ରୁ ପିଜି କଲାପରେ ସେମାନଙ୍କ ଅତି ଆଦରର ପାଠୀ ସାର୍‌ଙ୍କ ନିକଟରେ ପହଞ୍ଚିଯାଇଛନ୍ତି । ଯେଉଁ କେତେଜଣ ଦିଲ୍ଲୀ କଲେଜ ଅଫ୍ ଆର୍ଟ୍‌ରୁ ପି.ଜି. ସାରିଲେ ସେମାନେ ବି ଓଡ଼ିଶା ନ ଫେରି ଦିଲ୍ଲୀରେ, ସଚିବଙ୍କ ବଙ୍ଗଳାରେ ।

**ପାଠୀ ବାବୁଙ୍କ ଅଭ୍ୟାସ ପିଲାଙ୍କ ସାଙ୍ଗରେ ମେଳି ହେଇ ରହିବେ । ସେ ନିଜକୁ ଶିକ୍ଷକ ଭୂମିକାରୁ ଉତୁରେଇ ଆଣି ବନ୍ଧୁର ଭୂମିକାରେ ସ୍ଥାପନା କରିଦେଇଛନ୍ତି । ମୁଁ ଦେଖିଛି ପାଠୀ ବାବୁ ତାଙ୍କର ପୁରୁଣା ଛାତ୍ର ବା ଛାତ୍ରୀଟିଏ ଦେଖିଲେ କହିବେ, ଏଠି କ'ଣ କରୁଚ, ଦିଲ୍ଲୀ ଚାଲିଆସ । ମୋ ବସାଘର ଅଛି । ସେଠି ତମର ଅନେକ ସାଙ୍ଗ ଅଛନ୍ତି ସେମାନେ ସାଙ୍ଗରେ ମିଳିମିଶି ରହିବ । ଭାତ ଡାଲମାର ଅଭାବ ରହିବନି** । କିଏ ସେମିତି ସେମିତି ପହଞ୍ଚିଲାଣି ତ କିଏ ଲଳିତ କଳା ଫେଲୋସିପ୍ ପାଇ ଦିଲ୍ଲୀରେ ହାଜର । ଜଗନ୍ନାଥ ପଣ୍ଡା କହିଲା, ସାର୍ ମୁଁ କ'ଣ ଆର୍ଟ୍‌ହିଷ୍ଟ୍ରି କରିବି ଯେ ମୋତେ ଫେଲୋସିପ୍ ଦିଆଯାଇଛି ? ପାଠୀ ସାର୍ କହିଲେ ଫେଲୋସିପ୍ ଦିଲ୍ଲୀ ଆସିବା ପାଇଁ ଗୋଟିଏ ବାହାନା । ଦିଲ୍ଲୀ ବିଶ୍ୱକୁ ଗବାକ୍ଷ, ଏଠି ନପହଞ୍ଚିଲେ ଜଣେ ମଡ଼ର୍ଣ୍ଣ ଆର୍ଟିଷ୍ଟ ଜୀବନରେ କ'ଣ ବା କରିପାରିବ ? ଏଣୁ 'ଚଲୋଦିଲ୍ଲୀ' । ଏମିତି ଏମିତି ହେଇ ଏଠାରେ ଓଡ଼ିଆ ପିଲାଙ୍କ ଭିଡ଼ । ଅସହାୟ, ବୁଭୁକ୍ଷୁ, ବେସାହାରା ଯୁବ ଓଡ଼ିଆ ଶିଳ୍ପୀ ଯେଉଁମାନଙ୍କ ଆଖିରେ ସାଗରର ସ୍ୱପ୍ନ କିନ୍ତୁ ପେଟରେ ବୁଭୁକ୍ଷାର ଆର୍ତ୍ତନାଦ । ବୈଠକ ଖାନାରେ ବେଶ୍ ଲମ୍ୱାଚଉଡ଼ା କାର୍ପେଟ, ତାରି

Digitized by srujanika@gmail.com

ଉପରେ ଧୂଆଁ ରଙ୍ଗର ଅପ୍‌ହୋଲ୍‌ଷ୍ଟୋର ଥାଇ ସୋଫା, ମଝିରେ, ସେଣ୍ଟର ଟେବଲ୍ । ଉତ୍ତର ପଟ କାନ୍ଥକୁ ଲାଗି ଗୋଟିଏ ଡିଭାନ୍ । ଏଇଟି ସୁଧାଂଶୁ ଭୂଷଣ ସୂତାରଙ୍କ ଆସ୍ଥାନ । ପଶ୍ଚିମ ପଟ କାନ୍ଥପାଖକୁ ଜ୍ୟୋତି ପାଣିଗ୍ରାହୀ । ବାକି ଅତିଥି ଅଭ୍ୟାଗତ କାର୍ପେଟ ଉପରେ । ସଚିବଙ୍କ ଶୟନ କକ୍ଷରେ ଦୁଇଟି ଖଟ, ଖାସ୍ କିଏ ଅତିଥି ଆସିଲେ ସେମାନଙ୍କୁ ଏଇଠି ଚର୍ଚ୍ଚା କରାଯାଏ । ବୈଠକ ଖାନାରେ କୁଲର୍‌ଟିଏ ଲାଗିଥାଏ । ଏଣୁ ଅଧିକାଂଶ ସମୟରେ ପାଠୀ ବାବୁ ଓ ଯୁବଶିଳ୍ପୀମାନେ ଏଇଠି କାର୍ପେଟ ଉପରେ, ସୋଫାରେ, ଡିଭାନ୍ ଉପରେ, ଯତ୍ର ତତ୍ର ରାତ୍ରୀ ଯାପନ କରନ୍ତି । ମୁଁ, ପାଠୀଙ୍କର ଅନ୍ୟାନ୍ୟ ବନ୍ଧୁ ଯଥା କାଶୀନାଥ ଜେନା, ଡି.ଏନ୍.ରାଓଙ୍କ ସାଙ୍ଗରେ ବେଳେ ବେଳେ ସରକାରୀ ଗସ୍ତରେ ଯାଇ ଏଇଠି ପହଞ୍ଚେ । ଅଫିସ୍ କାମରେ ଯାଇଥିଲେ ରାମହରି ଜେନା ମଧ ଏଇ ବୈଠକ ଖାନାରେ ଶିଳ୍ପୀଙ୍କ ଗହଣରେ ସାମିଲ ହେଇଯାଆନ୍ତି । ବୈଠକଖାନାଟି ପ୍ଲାଟଫର୍ମର ତୃତୀୟଶ୍ରେଣୀ ବିଶ୍ରାମାଗାର ଭଳି ଲାଗେ । ଏଇଥିରୁ ବୋଧହୁଏ ପତିତ ପାବନ ନାଁର ଉଦ୍ଭବ । ଯଦିକିଏ ବିଶିଷ୍ଟ ଅତିଥି ପହଞ୍ଚିଯାଆନ୍ତି, ଧରାଯାଉ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ଶଙ୍କରଲାଲ ପୁରୋହିତ ବା ଏଇ ଧରଣର ଅନ୍ୟକିଏ, ସତ୍ୟ ମହାପାତ୍ର ବା କୈଳାସ ମେହେର, ସେମାନଙ୍କ ପାଇଁ ଲଳିତ କଳା ଏକାଡ଼େମୀର ଅତିଥି ଭବନରେ ରହଣି ବ୍ୟବସ୍ଥା ହୁଏ । କିନ୍ତୁ ଚାହାପାଣି ଏବଂ ଭୋଜନ ପତିତ ପାବନ ମେସ୍‌ରେ ବଢ଼େ ।

ମେସ୍ କେତେ ଜଣଙ୍କୁ ଚଳେଇ ନେବ, ଧରାଯାଉ ଦଶ ପନ୍ଦର। ଦିନବେଳେ ଯେଉଁମାନେ ଆତଯାତ ହେଉଥାନ୍ତି ସେମାନଙ୍କ ସଂଖ୍ୟା କୋଡ଼ିଏ, ପଚିଶ ହେବ । ସେମାନଙ୍କ ଭିତରୁ ଅଧିକାଂଶ ଲଳିତ କଳା ଏକାଡ଼େମୀ ଗେଷ୍ଟ୍‌ହାଉସ୍‌ର ଅଘୋଷିତ ଅତିଥି । ଗେଷ୍ଟ୍‌ହାଉସ୍ ରେଜିଷ୍ଟ୍ରି ଖାତାରେ ନାଁ ଦରଜ କରିବାକୁ ପଡ଼େନି । ଗେଷ୍ଟ୍‌ହାଉସ୍ ଦାୟିତ୍ୱରେ ଥିବା ସରକାରୀ କର୍ମଚାରୀ ଜାଣିଥାନ୍ତି ଏମାନେ ସଚିବଙ୍କ ଖାସ୍ ଲୋକ । ସେମାନଙ୍କ ପେମେଣ୍ଟ ସଚିବ ବୁଝିବେ । ଅଧିକାଂଶ ଦିନ ଗେଷ୍ଟ୍‌ହାଉସ୍ ଖାଲିଥିଲେ ଡର୍‌ମିଟରୀ ମାହାଳିଆ ଉପଲବ୍ଧ ହେଇଯାଏ । ମୋର ମନେହୁଏ ଏଭଳି ବ୍ୟବସ୍ଥା ପତିତ ପାବନ ମେସ୍‌ର ବୃହତ୍ତର ପରିଧିର ଅଂଶ ବିଶେଷ (ଗ୍ରେଟ୍‌ର ନୋଏଡ଼ା ଭଳି ଧରାଯାଉ) ।

ଦିନବେଳା ବୈଠକ ଖାନାଟି ଟିପ୍‌ଟାପ୍ ରହେ । ସକାଳ ବେଳା ତ ସଚିବଙ୍କୁ କିଏ ଦେଖା କରିବାକୁ ଆସନ୍ତିନି କିନ୍ତୁ ସନ୍ଧ୍ୟା ବେଳା ଏବଂ ବିଶେଷ ଛୁଟିଦିନ ମାନଙ୍କରେ ଦିଲ୍ଲୀ ତଥା ଭାରତର ଅନ୍ୟାନ୍ୟ ପ୍ରାନ୍ତରରୁ ଆସିଥିବା ବିଶିଷ୍ଟ ଶିଳ୍ପୀମାନେ ସଚିବଙ୍କୁ ଦେଖା କରିବାକୁ ଆସନ୍ତି । ଓଡ଼ିଆ ଶିଳ୍ପୀଙ୍କ ଭିତରୁ ପାରିବାର ପିଲା କେଇଜଣ ଚାହା ପାଣିର ବ୍ୟବସ୍ଥା କରିଦିଅନ୍ତି । ଏନ୍.ଏସ୍.ଡି କ୍ୟାଣ୍ଟିନ୍‌ରେ ମିକ୍ସଚର୍ ସମୋଷା, କୋକ୍‌ର ଅଭାବ ନଥାଏ । ଅତିଥିଙ୍କ ଧାରଣା ହୁଏ ସତେ ଯିମିତି ପାରିବାରିକ ଚର୍ଚ୍ଚା । ମୁଁ ମୋ ରହଣିମାନଙ୍କ ମଧରେ ଅଧିକାଂଶ ଥର ଯେଉଁମାନଙ୍କୁ ଭେଟେ ସେମାନେ ହେଲେ ଫଟୋଗ୍ରାଫର୍ ତ୍ୟାଗରାଜନ୍, ଦିଲ୍ଲୀ କଲେଜ୍ ଅଫ୍ ଆର୍ଟ୍‌ର ଅଧକ୍ଷ ପ୍ରଫେସର ନିରେନ୍ ସେନ୍‌ଗୁପ୍ତ, ରାଜୀବ ଲୋଚନ, କ୍ରୀଷେନ୍ ଆହୁଜା, ଜଗଦୀଶ ଦେ, କାଞ୍ଚନ ଚନ୍ଦର୍, ଜଗଦୀଶ, ଘଡ଼ି ଷ୍ଟୁଡିଓର ଅନ୍ତେବାସୀଙ୍କ ମଧରୁ ଉମେଶ ବର୍ମା, କାଳିଚରଣ ଗୁପ୍ତା, କେରଳର ହରିଦାସନ୍, ମାଡ୍ରାସର ଦକ୍ଷିଣା ମୂର୍ତ୍ତି, ହାଇଦ୍ରାବାଦର ରାଜେୟା, ବରୋଦାର ପ୍ରଫେସର ଜ୍ୟୋତି ଭଟ୍ଟ, ରତନ ପାରିମୁ, ବମ୍ବେର ପ୍ରୟାଗ ଝା ଚିଲ୍ଲର, କାଶୀନାଥ ସାଲ୍‌ଭେ, ମଧ ପ୍ରଦେଶର ୟୁସୁଫ୍, ପାଟନାର ବିରେଶ୍ୱର ଭଟ୍ଟାଚାର୍ଯ୍ୟ, ଶ୍ୟାମ ଶର୍ମା, କଲିକତାର ବିଷ୍ଣୁ ଦାସ ତଥା ଅନ୍ୟମାନେ । ଭାରତ ବର୍ଷର ବିଶିଷ୍ଟ ଶିଳ୍ପୀମାନଙ୍କର ଏଠି ସମାବେଶ ଘଟେ ।

ଲଳିତ କଳା ଏକାଡ଼େମୀର ସାଧାରଣ ପରିଷଦ ବା କାର୍ଯ୍ୟନିର୍ବାହୀ ସଭା ବସିବାକୁ ଥିଲେ ଅତିଥିଙ୍କ ସଂଖ୍ୟା ଅସମ୍ଭବ ଭାବେ ବଢ଼ିଯାଏ । ସଚିବଙ୍କ ଦଳ(ଉପାଧକ୍ଷ ଆନନ୍ଦ ଦେବଙ୍କ ଦଳ) ଲଳିତ କଳା ଏକାଡ଼େମୀରେ ରାଜ୍ କରୁଥାନ୍ତି । ସଚିବଙ୍କ ଦ୍ୱୈତ ଦାୟିତ୍ୱ-ସରକାରଙ୍କ କର୍ମଚାରୀ

Digitized by srujanika@gmail.com

ଭାବେ ଏବଂ ଦଳର ଜଣେ ପ୍ରମୁଖ ସଭ୍ୟଭାବେ । କାର୍ଯ୍ୟ ନିର୍ବାହୀ ସମିତିରେ ଆଲୋଚନା ହେଇ ନିଷ୍ପତ୍ତି ହେବାକୁ ଥିବା ପ୍ରସ୍ତାବ ମାନ ରବୀନ୍ଦ୍ର ଭବନରେ ଥିବା ସଚିବଙ୍କ ଅଫିସ କିମ୍ବା ଉପାଧକ୍ଷ ଆନନ୍ଦ ଦେବଙ୍କ ଦପ୍ତରରେ କୋର୍‌କମିଟୀ ବୈଠକରେ ଆଲୋଚନା ହୁଏ । ସବୁ ଗୁରୁତ୍ୱ ପୂର୍ଣ୍ଣ କଥାଗୁଡ଼ିକ ଆଗରୁ ନିଷ୍ପତ୍ତି ହେଇଯାଏ । ମୁଁ ସଚିବଙ୍କ ବନ୍ଧୁ ହେଇଥିବାରୁ ଅନ୍ୟମାନେ ଜାଣିବା ପୂର୍ବରୁ ସବୁକଥା ଜାଣିସାରିଥାଏ । ଏସବୁ ଘଟଣାକ୍ରମ ଜାଣିବାରେ ରାମହରି ଜେନା ମଧ୍ଯ ସାମିଲ ହୋଇଯାଆନ୍ତି । ଜାତୀୟ କଳା ରାଜନୀତିରେ ପତିତ ପାବନ ମେସ୍‌ର ଭୂମିକା ସ୍ପଷ୍ଟ ହେଇଯାଏ । ଏହାର ସୁଦୂର ପ୍ରସାରୀ ପ୍ରଭାବ ଓଡ଼ିଆ ଶିଳ୍ପୀଙ୍କ ଉପରେ ପଡ଼େ । ସଚିବ ସମାଲୋଚନା, ନିନ୍ଦାର ଶରବ୍ୟ ହୁଅନ୍ତି । ନିଷ୍କର୍ଷ ବାହାରେ- ଶଳେ ବି.କେ. କଲେଜ ବାଲା ସବୁ ମାରିନେଉଛନ୍ତି । ସଚିବଙ୍କୁ ଅନ୍ତତଃ ମେସ୍‌ପିଲାଙ୍କ ପାଖରେ ନିରପେକ୍ଷତାର ପ୍ରମାଣ ଦେବା ଆବଶ୍ୟକ ପଡୁନଥିଲେ ମଧ୍ଯ ସେ ପରୋକ୍ଷରେ ନିଜ କାର୍ଯ୍ୟ ମାଧ୍ୟମରେ ତାହା ସୂଚେଇ ଦିଅନ୍ତି । ଅବଶ୍ୟ ସଚିବ ଯାହା ଚାହାଁନ୍ତି ତାକୁ କଳେ ବଳେ କୌଶଳେ କରାଇ ନିଅନ୍ତି । ତାଙ୍କ ପାର୍ଟିତ ସରକାର ଚଳାଉଛନ୍ତି, ଏଣୁ କାମ କରେଇ ନେବାରେ ବିଶେଷ ଅସୁବିଧା ହୁଏନାହିଁ ।

ମୁଁ ଏଠି ତିନୋଟି ଘଟଣାର ଉଲ୍ଲେଖ କରିବି । ନ୍ୟାସନାଲ୍ ଏକ୍‌ଜିବିସନ୍‌ର ମନୋନୟନ୍ ଚାଲିଥାଏ । ସେ ସନ୍ଧ୍ୟାରେ ଶ୍ରାନ୍ତ କ୍ଲାନ୍ତ ଅବସ୍ଥାରେ ସଚିବ ମେସ୍‌କୁ ଫେରିଲେ । ଜଗନ୍ନାଥ ପଣ୍ଡା ଲଳିତ କଳା ଏକାଡ଼େମୀ ଡରମିଟେରୀରେ ରହୁଥାଏ । ପିଲା ପଠେଇ ତାକୁ ମେସ୍‌କୁ ଡକେଇଲେ । ସେତେବେଳକୁ ନଅ, ସାଢେ ନଅ ହେବ । ଜଗନ୍ନାଥ ସନ୍ତର୍ପଣରେ ଆସି ପହଞ୍ଚିଲା । ସଚିବ ଆଦେଶ ଦେବା ଭଙ୍ଗିରେ କହିଲେ, 'ଜଗା ! ତୁ ଗେଷ୍ଟହାଉସ୍ ଛାଡ଼ି ତୁରନ୍ତ ଅନ୍ୟତ୍ର ପଳେଇ ଯା ।' ଏଭଳି ଆଦେଶର ମର୍ମ ଆମେ ବି ତ ବୁଝି ପାରିଲୁନାହିଁ, ଜଗନ୍ନାଥ କ'ଣ ବା ବୁଝିବ । ସେ ଖାଲି ବଲ୍ ବଲ୍ କରି ସଚିବଙ୍କ ମୁହଁକୁ ଚାହିଁଲା । କହିଲା'ଏତେ ରାତିରେ ମୁଁ କୁଆଡ଼େ ଯିବି ?' ପାଠୀ ବାବୁ କହିଲେ 'ଏବେ ବାକ୍ୟ ବିନିମୟର ବେଳ ନୁହେଁ । ମୁଁ ଯେତିକି କହିଲି ତା'ଠାରୁ ଅଧିକା କହିହେବନି ।' ଜଗନ୍ନାଥ ବିଚରା ତା'ର ବେଗ୍ ପତ୍ର ଧରି କିଏ ଜଣେ ତା'ର ବନ୍ଧୁଙ୍କ ଘରକୁ ଡେରା ଉଠେଇଲା । ଘଟଣାଟି ମନେହେଲା ଅତି କର୍କଶ ଓ ଦୟନୀୟ । କିନ୍ତୁ ତା ପରଦିନ ସକାଳୁ ଜଣାପଡ଼ିଲା ଯେ, ସେ ଲଳିତ କଳା ଏକାଡ଼େମୀର ଜାତୀୟ ପୁରସ୍କାର ପାଇଛି । ଏତେ କମ୍ ବୟସରେ ପୁରସ୍କାର ପାଇବା ଅନେକ ଶିଳ୍ପୀଙ୍କ ଦେହରେ ଗଲାନି । ଲଳିତ କଳା ଏକାଡ଼େମୀ ଗେଷ୍ଟହାଉସ୍‌ରେ ତା ପରଦିନ ପ୍ରତିବାଦର ଗୁଞ୍ଜରଣ ଶୁଣାଗଲା । ବୋଧହୁଏ ଏଭଳି ଏକ ପରିଣତିର ଆଶଙ୍କା କରି ସଚିବ ସେଇ ରାତିରେ ପତିତପାବନ ମେସ୍‌ରୁ ଜଗନ୍ନାଥ ପଣ୍ଡାକୁ ବିଦାୟ କରିଦେଇଥିଲେ ।

ଦ୍ୱିତୀୟ ଘଟଣାଟି ବି ଲଳିତକଳା ଏକାଡ଼େମୀର ନ୍ୟାସନାଲ୍ ଆୱାର୍ଡ଼କୁ ନେଇ । ଓଡ଼ିଶା ଶିଳ୍ପୀମାନେ ପୁରସ୍କାର ପାଆନ୍ତୁ ଏକଥା ପାଠୀ ବାବୁ ଚାହୁଁଥିଲେ ଓ ତଦନୁଯାୟୀ କାର୍ଯ୍ୟ ମଧ୍ଯ କଳେବଳେ କୌଶଳେ କରୁଥିଲେ । ଏସବୁ କାର୍ଯ୍ୟରେ ସଚିବ ଯେତେ ଧରାପଡ଼ିବାକୁ ଚାହୁଁନଥିଲେ ମଧ୍ଯ ନିଜକୁ ଲୁଚେଇ ହେଉନଥିଲା । ଦିଲ୍ଲୀ ଶିଳ୍ପୀ ଓ ଓଡ଼ିଆ ଶିଳ୍ପୀ ଓଡ଼ିଆ ସଚିବଙ୍କ ଚାଲବାଜି ବୁଝିପାରୁଥିଲେ । ଓଡ଼ିଶାର ବରିଷ୍ଠ ଶିଳ୍ପୀ ଶିବ ପାଣିଗ୍ରାହୀଙ୍କୁ ଜାତୀୟ ପୁରସ୍କାର ଦେବାପାଇଁ ଯୋଜନା କରାଗଲା । ଅଜିତ କେଶରୀ ରାୟ ଜୁରି ହେଇ ଆସିଲେ, ପୁରସ୍କାର ମନୋନୟନ ସରିଲା ଅଥଚ ଶିବ ବାବୁ ସେ ତାଲିକାରେ ଅନ୍ତର୍ଭୁକ୍ତ ହେଇପାରିଲେ ନାହିଁ । ରବୀନ୍ଦ୍ର ଭବନ ଗ୍ୟାଲେରୀରେ ପୁରସ୍କାର ମନୋନୟନ କାମ ଚାଲିଛି । ଭିତରେ ଜୁରୀମାନେ ଅଛନ୍ତି । ଗ୍ୟାଲେରୀ ବାହାରେ ଦିଲ୍ଲୀର ଶିଳ୍ପୀ ଓ ସାମ୍ବାଦିକମାନେ ଚାକି ରହିଛନ୍ତି ଫଳାଫଳକୁ । ସଚିବ କୌଣସି ଗୋଟିଏ ଆଳକରି ଗ୍ୟାଲେରୀ ଭିତରେ ପଶିଲେ । କାରଣ ହେଲା ଅଜିତ କେଶରୀ ରାୟ କୌଣସି ଗୋଟିଏ ସନ୍ଦେହ ମୋଚନ କରିବା ପାଇଁ ସଚିବଙ୍କୁ ଡକେଇଛନ୍ତି । ଭିତରେ ପଶି ଦେଖିଲେ ପୁରସ୍କାର

Digitized by srujanika@gmail.com

ତାଲିକା ସରି ଆସିଲାଣି । ଏବେ କରାଯିବ କଣ ? ଜଣେ ସାଧୁ ଦଳେପିଲା କଇଁଛଟିକୁ ପିଠି କଡ଼ିଆ ବାଡ଼େଇ ବାଡ଼େଇ ହତାଶ ହେଇପଡୁଥିବା ଦେଖି ଉପଦେଶ ଦେବାଛଳରେ କହିଲେ, ପିଲାମାନେ ଏମିତି ଯେତେ ବାଡ଼େଇଲେ କଇଁଛ ମରିବନି, ତାକୁ ଓଲଟେଇ ବାଡ଼ିରେ ବାଡ଼ିଏ ପକାଅ । ଦେଖିବ କଇଁଛର ପଞ୍ଚତ୍ୱ ପ୍ରାପ୍ତି ହୋଇଯିବ । ସେମିତି ପାଠୀ କହିଲେ ନ୍ୟାସନାଲ୍ ଆୱାର୍ଡ଼ ସିନା ଶେଷ ହୋଇଗଲା । ଅନରବଲ୍ ମେନ୍‌ସନ୍ ତ ଅଛି । ଅନ୍‌ରବଲ୍ ମେନ୍‌ସନ୍ ପାଇଁ ଏକାଡ଼େମୀ ତ ଟଙ୍କା ପଇସା ଖର୍ଚ୍ଚ କରୁନି ଏଣୁ ଦଶ ଜାଗାରେ ୧୧,୧୨ ହେଲେ ବି କ୍ଷତି କ'ଣ । ବିଚାରକ ମଣ୍ଡଳୀ କଥାର ମର୍ମ ବୁଝିଗଲେ । ସଚିବଙ୍କ ଅନୁରୋଧରେ ଗୋଟିଏ ନୁହେଁ, ଦୁଇଟି ଆୱାର୍ଡ଼ ମିଳିଗଲା, ଗୋଟିଏ ଶିବ ପାଣିଗ୍ରାହୀଙ୍କୁ ଅନ୍ୟଟି ଅଞ୍ଜନ କୁମାର ସାହୁଙ୍କୁ । ପତିତ ପାବନ ମେସ୍‌ର ପ୍ରଭାବ ଏତକି । ସଚିବଙ୍କ ଏହି ବଙ୍ଗଳାରେ ପାଠୀ ବାବୁଙ୍କ ଆଗରୁ ଯେଉଁମାନେ ସଚିବ ଥିଲେ ସେମାନେ ସମସ୍ତେ ନିଜ ଶୋଇବା ଘରେ ବିଭିନ୍ନ ବିଦେଶୀ ପାନୀୟ ମହଜୁଦ୍ ରଖୁଥିଲେ । ପାଠୀ ବାବୁ ତ ନିରାଣିଆ ଲୋକ, ପାଣି ପଣା ଚଳେନି, ଏଣୁ ଉପାଧକ୍ଷ ଏବଂ ଏକସ୍‌କ୍ୟୁଟିଭ୍ ମେମ୍ବରମାନଙ୍କୁ ଆପ୍ୟାୟିତ କରିବା ଆବଶ୍ୟକ ହୁଏନାହିଁ । ଲଳିତ କଳା ଏକାଡ଼େମୀ ଗେଷ୍ଟହାଉସ୍‌ରେ ଯେଉଁ ଶିଳ୍ପୀମାନେ ମଦ ପିଅନ୍ତି ତାଙ୍କୁ ଧରିବା ପାଇଁ ସେ ଗୋଟିଏ ସ୍କ୍ୱାଡ୍ ବନେଇ ଥିଲେ । ପାଠୀ ବାବୁ ରାତିଅଧିଆ ସ୍କ୍ୱାଡ୍ ନେଇ ଗେଷ୍ଟହାଉସ୍‌ରେ ପହଞ୍ଚିଯାଆନ୍ତି ଏବଂ ସ୍କ୍ୱାଡ୍ ଆସିବା ଶୁଣି ମଦ ଆସର ବନ୍ଦ ହେଇଯାଏ । କିନ୍ତୁ ଏହି ସ୍କ୍ୱାଡ୍‌ର କିଛି ସଭ୍ୟ ନିଜେ ମଦ୍ୟପାନ କରନ୍ତି । ପାଠୀ ବାବୁ ପତିତ ପାବନ ମେସ୍‌ରେ ଉପସ୍ଥିତ ଥିଲେ, ଧରାଯାଉ କାଶୀନାଥ ଜେନା ଅତିଥି ହେଇ ରହିଥିଲେ, ଆମେ ରବର ଗଛ ମୂଳକୁ ଚାଲିଯାଉ । ସେଠି ଆସର ଜମେ । ପାଠୀ ବାବୁ ଏ ଘଟଣା ସମ୍ପର୍କରେ ସମ୍ପୂର୍ଣ୍ଣ ଅବହିତ ଥାଆନ୍ତି । ଅତିଥିମାନଙ୍କୁ ଆପ୍ୟାୟିତ କରିବା ତାଙ୍କର କର୍ତ୍ତବ୍ୟ ବୋଲି ସେ ଧରିନେଇଥାନ୍ତି । ଥରକର ଘଟଣା, ଆଗକୁ ହୋଲିଥାଏ । ପତିତ ପାବନ ମେସ୍‌ରେ କାଶୀନାଥ ଜେନା ପହଞ୍ଚିଥାଏ । ମୁଁ ବି ପହଞ୍ଚିଥାଏ । ହୋଲିଦିନ ରଙ୍ଗଖେଳ ଧୁମ୍ ଧାମ୍‌ରେ ହେଲା । ଏନ୍.ଏସ୍.ଡି. ପିଲାଏ ବାଜା ବଜେଇ କ୍ୟାମ୍ପସ୍‌କୁ କମ୍ପେଇ ଦେଉଥାନ୍ତି । ପତିତ ପାବନ ମେସ୍ ପିଲାମାନେ ଉନ୍ମାଦିତ ହେଲେ । ରବର ଗଛମୂଳେ ପାନୀୟର ବ୍ୟବସ୍ଥାହେଲା । କାଶୀନାଥ ଜେନା ପିଉ ପିଉ ଅଧିକା ଚଢ଼େଇ ଦେଲା । ତା'ପରେ ଏନ୍.ଏସ୍.ଡି ପିଲାଙ୍କୁ ଦେଖା ଦେଖି ନାଚିବା ଆରମ୍ଭ କରିଦେଲା । ନାଚ ସାଙ୍ଗରେ ସିଏ ଗୀତ ବି ଗାଉଥାଏ ।

ପାଦରେ ପାଦ ଛନ୍ଦା ପାଦେ ନୂପୁର ବନ୍ଧା
ଯୋଡ଼ି ମହୁରୀ ଆରେ ବଜା ମୃଦଙ୍ଗ
ବଜାରେ ବାଜାବାଲା
ତାକ୍ ତା ଧିନ୍ଦା କେ ତାକ୍ ତା ଧିନ୍ଦା ।

କାଶୀ ସାଙ୍ଗରେ ଜ୍ୟୋତି ପାଣିଗ୍ରାହୀ, ସୁଧାଂଶୁ ସୂତାର, ପ୍ରତୁଲ ଦାଶ, ସଜଳ ପାତ୍ର, ଦିଲ୍ଲୀପ ତ୍ରିପାଠୀ ଓଗେର ନାଚୁଥାନ୍ତି । ଢୋଲକି ମାଡ଼ ହେଉଥାଏ । ପତିତପାବନ ମେସ୍‌ର ନାଚ ରବର ଗଛମୂଳେ ଜମି ଉଠିଲା । ଏନ୍.ଏସ୍.ଡି.ର ଝିଅପିଲାମାନେ ମାଡ଼ିଆସିଲେ । ସେମାନେ ବି ଉତ୍ତାଳ ଅବସ୍ଥାରେ ଥାଆନ୍ତି । କାଶୀ ଦୁଇଜଣ ଝିଅଙ୍କ କାନ୍ଧରେ ହାତରଖି ନାଚିବା ଆରମ୍ଭ କରିଦେଲା । ଦେଖନା ମଜା । ବଡ଼ ଦୁଃଖର କଥା କାଶୀ ଆଉ ଆମ ଗହଣରେ ନାହିଁ ।

ମୁଁ ତୃତୀୟ ଘଟଣାଟିର ଆହୁରି ଉଲ୍ଲେଖ କରିନି । ଘଟଣାଟି ପତିତ ପାବନ ମେସ୍‌ର ପିଲାଙ୍କୁ ନେଇ ଲଳିତ କଳା ଏକାଡ଼େମୀର ରବୀନ୍ଦ୍ର ଭବନ ଗ୍ୟାଲେରୀରେ ଚିତ୍ରପ୍ରଦର୍ଶନୀ । ସବୁ ପିଲା ବିଭୂତି କାନୁନ୍‌ଗୋ କଲେଜର ଛାତ୍ରଛାତ୍ରୀ । ଏଠି ସେମାନଙ୍କ ନେତୃତ୍ୱ ନେଲେ ସେମାନଙ୍କ ପୂର୍ବତନ ଅଧକ୍ଷ

Digitized by srujanika@gmail.com

ଦିନନାଥ ପାଠୀ । ଗୁରୁ ଶିଷ୍ୟ ପରମ୍ପରାର ଏକ ମହନୀୟ ଉଦାହରଣ । ଆର୍ଟିଷ୍ଟମାନଙ୍କୁ ମେଳି କରି ଚିତ୍ରପ୍ରଦର୍ଶନୀ ହେଉ ବା ଅନ୍ୟ କିଛି କାର୍ଯ୍ୟକ୍ରମ ହେଉ- ତାକୁ ସୁଚାରୁରୂପେ ଚଳେଇ ନେବା କାଠିକର ପାଠ । ଦିଲ୍ଲୀରେ ଓଡ଼ିଆ ଶିଳ୍ପୀଙ୍କ ଏତେବଡ଼ ଚିତ୍ର ପ୍ରଦର୍ଶନୀ ଆଗରୁ କେବେ ହେଇନଥିଲା । ମୋତେ ଲାଗୁନି ନିକଟ ଭବିଷ୍ୟତରେ ଏଭଳି ଗୋଟିଏ ଆଖିଦୃଶିଆ କାର୍ଯ୍ୟକ୍ରମ ହେଇପାରିବ । ପ୍ରଦର୍ଶନୀର ଶିର୍ଷକ ଥିଲା **ବିଅଣ୍ଡ ଦ ସୋରସ୍‌**- ନିଜ ଦେଶରୁ ଗୋଡ଼ କାଢ଼ି ଦିଲ୍ଲୀ ଆସିଥିବା ଚିତ୍ରଶିଳ୍ପୀଙ୍କ ପ୍ରଦର୍ଶନୀ । ପ୍ରଦର୍ଶନୀର ପ୍ରିଭ୍ୟୁ ପତିତ ପାବନ ମେସ୍‌ରେ ଆୟୋଜିତ ହୋଇଥିଲା । ଖାନା ପିନାର ଆସର ଜମି ଉଠିଥିଲା । ମନେ ହୁଏ ସଚିବ ଖାନା ପିନା ବନ୍ଦୋବସ୍ତର ଦାୟିତ୍ୱ ନେଇଥିଲେ । ଦିଲ୍ଲୀର ବଛା ବଛା ବିଶିଷ୍ଟ ଚିତ୍ରଶିଳ୍ପୀ ଓ ସାମ୍ବାଦିକମାନେ ପତିତ ପାବନ ମେସ୍‌ରେ ଭିଡ଼ଜମେଇ ଥିଲେ । ପାଠୀ ବାବୁ ଭାରତର ପ୍ରାକ୍ତନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ଚିତ୍ରବିଦ୍ୟାରେ ଗୃହଶିକ୍ଷକ ଥାଆନ୍ତି । ସେ ଭି.ପି.ସିଂହଙ୍କୁ ପ୍ରଦର୍ଶନୀ ଉଦ୍‌ଘାଟନ କରିବା ପାଇଁ ନିମନ୍ତ୍ରଣ କରିଆଣିଲେ । ଉଦ୍‌ଘାଟନ ଉତ୍ସବ ସ୍ମରଣୀୟ ହେଇ ରହିଗଲା । ଦେଢ଼ ଘଣ୍ଟାକାଳ ଉଦ୍‌ଘାଟକ ପ୍ରତି ଛବି, ପ୍ରତି ଭାସ୍କର୍ଯ୍ୟକୁ ତନ୍ନ ତନ୍ନ କରି ଦେଖୁଥାନ୍ତି । ଉପଭୋଗ କରୁଥାନ୍ତି । **ସତକଥା କହିବାକୁ ଗଲେ ଓଡ଼ିଆ ଶିଳ୍ପୀ ଧନ୍ୟ ହେଇଗଲେ । କିଏ ଯେ ନିଜ ଛବି ନ ବିକିଛି ବୋଲି ନୁହଁ । ସମଗ୍ର ବିକାଧନ ସାତ ଆଠ ଲକ୍ଷ ଟଙ୍କା ହେବ । ଏବେ ହିସାବ କଲେ କୋଟିଏରେ ପହଞ୍ଚିବ। ଦିଲ୍ଲୀର ଶିଳ୍ପୀ ମହଲ ଓଡ଼ିଶାର ସାଂପ୍ରତିକ କଳାର ମହତ୍ତ୍ୱ ହେଜିଲେ । ସଚିବଙ୍କ ଶିକ୍ଷା ସମ୍ପର୍କ ଓ ସଂଗଠନ ଦକ୍ଷତା ହେଜିଲେ । ଏହି ପ୍ରଦର୍ଶନୀ ଓଡ଼ିଆ ଶିଳ୍ପୀଙ୍କୁ ଦିଲ୍ଲୀରେ ପରିଚିତ କରେଇ ଦେଲା ।** ମୋର ଯେତିକି ଧାରଣା ଅଛି, ଏହା ଆଗରୁ ଦିଲ୍ଲୀରେ ଯତୀନ ଦାସଙ୍କୁ ଛାଡ଼ି ଅନ୍ୟ କେଉଁ ଓଡ଼ିଆ ଶିଳ୍ପୀଙ୍କ ଏତେ କରାମତି ନ ଥିଲା । ଓଡ଼ିଆ ଶିଳ୍ପୀଙ୍କ କ୍ଷେତ୍ରରେ ପାଠୀ ବାବୁ ଅସମ୍ଭବକୁ ସମ୍ଭବ କରିଦେଲେ । ଚାରିଆଡ଼େ ପତିତପାବନ ମେସ୍‌ର ଜୟ ଜୟକାର ।

ପତିତ ପାବନ ମେସ୍ ସବୁବେଳେ ଚଳଚଞ୍ଚଳ ଥାଏ । ସନ୍ଧ୍ୟାହେଲେ ସଚିବ ଅଫିସ୍‌ରୁ ଫେରନ୍ତି । ଶିଳ୍ପୀମାନେ ଯେଝାକାମ ସାରି ନୀଡ଼କୁ ଫେରନ୍ତି । ଜ୍ୟୋତି ପାଣିଗ୍ରାହୀ ଗୋଟିଏ ଢୋଲ୍‌କି କିଣି ଆଣିଥାଏ । ଦିଲ୍ଲୀପ ତ୍ରିପାଠୀ ପାଖରେ ହାର୍‌ମୋନିଅମ୍ ଥାଏ । ସନ୍ଧ୍ୟାରେ ଆସର ଜମେ । ଦିଲ୍ଲୀପ ଭଞ୍ଜନଗରର ପିଲା, ଭଲ ଛାନ୍ଦ ଚଉପଦୀ ଗାଏ । ଅନ୍ୟମାନେ ବେଳେ ବେଳେ ସିନେମା ଗୀତ ଗାଆନ୍ତି । ମେସ୍‌ର ଅନ୍ତେବାସୀମାନେ ସଙ୍ଗୀତର ତାଳେ ତାଳେ ଝୁମନ୍ତି । ଏହି ଆସରରେ ମେସ୍‌ରେ ଦିନାକେତେ ଆତିଥ୍ୟ ଗ୍ରହଣ କରିଥିବା ସତ୍ୟ ମହାପାତ୍ରଙ୍କ ବଡ଼ଝିଅ ସାତୀ, ଦିଲ୍ଲୀପର ନବବିବାହିତା ସ୍ତ୍ରୀ ସବିତା, ସଜଳ ପାତ୍ରର ସହଧର୍ମିଣୀ ବବିତା, ଅଞ୍ଜନ ସାହୁର ଧର୍ମପତ୍ନୀ ଅପର୍ଣ୍ଣା ମଧ୍ୟ ଯୋଗ ଦେଇ ପରିବେଶକୁ ବର୍ଣ୍ଣିଳ ଓ ରସବନ୍ତ କରିଦିଅନ୍ତି । ସଙ୍ଗୀତ ଆସର ପରେ ଭବିଷ୍ୟତ କର୍ମପନ୍ଥା ବି ଏଠି ସ୍ଥିର କରାଯାଏ ।

**ବିଅଣ୍ଡ ଦ ସୋର୍‌ସ୍‌** ମିଳିତ ପ୍ରଦର୍ଶନୀର ସଫଳତା ପରେ ସମସ୍ତଙ୍କ ମନରେ ଆତ୍ମ ପ୍ରତ୍ୟୟ ବଢ଼ିଲା । ଏହି ପ୍ରଦର୍ଶନୀର ଆବାହକ ଭାବେ ପାଠୀ ବାବୁ 'ବିଶ୍ୱ' ବୋଲି ଗୋଟିଏ ସଂସ୍ଥାର ନାଁ ଦେଇ ଦେଇଥିଲେ । ଏହି ସଂସ୍ଥାର ରୂପରେଖ ଆହୁରି ପରିଷ୍କାର ହୋଇନଥାଏ । ଦିନେ ଆସରରେ ପାଠୀ ବାବୁ ତାଙ୍କ ବିଶ୍ୱର ସଂପୂର୍ଣ୍ଣ ଯୋଜନା ଶୁଣେଇଲେ । ବିଶ୍ୱ ହେଉଛି ଦିଲ୍ଲୀରେ ଓଡ଼ିଆ ଶିଳ୍ପୀଙ୍କ ଗାଁ । ତା ପରଠାରୁ ପ୍ରତି ରବିବାରେ ଲଳିତ କଳା ଏକାଡ଼େମୀର ଭ୍ୟାନ୍ ଧରି ପତିତ ପାବନ ମେସ୍‌ର ପିଲାମାନେ ଦିଲ୍ଲୀ ଖେଦିଗଲେ ଜାଗା ସନ୍ଧାନରେ । ନୋଏଡ଼ା, ଗୁଡ଼୍‌ଗାଓଁଠାରୁ ଆରମ୍ଭକରି ଛତରପୁର ନଙ୍ଗଲୋଇଯାଏଁ । ପ୍ରସ୍ତାବ ଥିଲା ପ୍ରଦର୍ଶନୀରେ ବିକା ହେଇଥିବା ଛବି ପଇସାରେ ଆଉ କିଛି ମିଶେଇ ଖଣ୍ଡେ ଖଣ୍ଡେ ଜାଗା କିଣାଯିବ। ପାଠୀ ବାବୁ ମଧ୍ୟ ସ୍ଥିର କରିଥିଲେ ସିଏ ଆଉ ଓଡ଼ିଶା ନ ଫେରି ସେଇଠି ଓଡ଼ିଆ ଶିଳ୍ପୀଙ୍କ ସାଙ୍ଗରେ ରହିବେ । କିଏ କିଏ ସେହି ଗାଁରେ ଗୋଟିଏ ଜଗନ୍ନାଥ ମନ୍ଦିର

Digitized by srujanika@gmail.com

ପ୍ରତିଷ୍ଠା କରିବାର ସପ୍ନ ଦେଖିଲେ । ନଙ୍ଗ୍‌ଲୋଇ ପାଖ ଲାଲ୍‌ଡୋରା ଜମି କିଣିବା ପାଇଁ ଆପାତତଃ ସ୍ଥିର ହେଲା । ଏବେ କିନ୍ତୁ ଶିଳ୍ପୀଙ୍କ ଅସଲ ମୁଖା ପଦାରେ ପଡ଼ିଗଲା । ଜଣେ କହିଲା 'କ' ଯଦି ଶିଳ୍ପଗ୍ରାମରେ ଘର କରିରହେ ମୁଁ ସେଠି ତା ସାଙ୍ଗରେ ରହିବିନି । ଆଉ ଜଣେ କହିଲା ଛବି ବିକା ପଇସା ସରିଆସିଲାଣି । ଆଉ କିଏ ମତ ଦେଲା ଯେ ଦିଲ୍ଲୀରେ ସିଏ ଘର କରି ରହିବା ପାଇଁ ତା ବାପା ମାଁ ରାଜି ହେବେନି । ଅତ୍ୟନ୍ତ ଗୋଳମାଳିଆ ପରିସ୍ଥିତିଟିଏ ଉପୁଜିଲା । **ପାଠୀ ବାବୁ ତାଙ୍କର ପ୍ରିୟ ଛାତ୍ର ଛାତ୍ରୀଙ୍କର ଅସଲ ମନୋଭାବ ହେଜି ପାରିଲେ । ସିଏ ଅନୁମାନ କରିନେଲେ ଯେ ବିଶ୍ୱର ପରିକଳ୍ପନା ଆଉ ରୂପ ନେବାର ନୁହେଁ ।** ଶେଷରେ ସେଇ ଜାଗାରେ ସଜଳ ପାତ୍ର ଜମି କିଣି ଘର କରିରହିଲା । ଆଉ ଅନ୍ୟମାନେ ଯେଝାବାଟ ଧରିଲେ । ଏଭଳି ବିଡ଼ମ୍ବନା ଯେ ଏବେ ମେସ୍‌ର ପୂର୍ବତନ ସଭ୍ୟମାନେ ଦିଲ୍ଲୀରେ ଘରକରି ବସା ବାନ୍ଧିଲେଣି । ଏ ମାମଲାରେ ଜଗନ୍ନାଥ ପଣ୍ଡା ସମସ୍ତଙ୍କ ଆଗରେ, ତା'ର ଏବେ ଦୁଇଟି ଘର ଆଉ ଗୋଟିଏ ଫାର୍ମ ହାଉସ୍, ଦିଲ୍ଲୀପ କୁମାର ତ୍ରିପାଠୀ, ସୁଧାଂଶୁଭୂଷଣ ସୂତାର, ପ୍ରତୁଲ ଦାଶ ଓ ତପନ ଦାଶଙ୍କ ଏପାରଟ୍‌ମେଣ୍ଟ । ଶୁଣାଯାଉଛି ଜ୍ୟୋତିରଞ୍ଜନ ପାଣିଗ୍ରାହୀ ଭଡ଼ାରହୁଥିବା ଘରକୁ କିଣି ନେଲାଣି । ତା ବାହାରେ ନୋଏଡ଼ାରେ ଷ୍ଟୁଡ଼ିଓ ପାଇଁ ଘର କରିଛି । ମୋ ପାଖରେ ଅବଶ୍ୟ ସମସ୍ତଙ୍କ ହିସାବ ପତ୍ର ନାହିଁ ।

ପାଠୀ ବାବୁ ଲଳିତ କଳା ଏକାଡ଼େମୀରୁ ଇସ୍ତଫାଦେଲା ପରେ ପତିତ ପାବନ ମେସ୍‌ର ପଡିଆରା କମିଗଲା । ପତ୍ରଝଡ଼ା ଗଛରୁ ପକ୍ଷୀମାନେ ଉଡ଼ିଗଲା ଭଳି ଅନ୍ତେବାସୀ ଯେଝା ନୀଡ଼କୁ ବାହୁଡ଼ି ଗଲେ । ଶୋଭନ ଚୀନ ସରକାରଙ୍କ ସ୍କଲରସିପ୍ ପାଇ ବେଇଜିଙ୍ଗ୍ ଚାଲିଗଲା, ଜଗନ୍ନାଥ ଜାପାନିଜ୍ ସ୍କଲରସିପ୍ ପାଇ ଜାପାନ, ଦିଲ୍ଲୀପ ଭଡ଼ାଘର ନେଇ ଅନ୍ୟତ୍ର ଆଉ ଜ୍ୟୋତି ପାଣିଗ୍ରାହୀ କଡ଼କଡ଼ଡୁମାରେ ଭଡ଼ାଘର ନେଲା । ସଜଳ, କାଜଲଙ୍କ ଘର ତିଆରି ସରିଲାପରେ ସେମାନେ ଚାଲିଗଲେ ନଙ୍ଗ୍‌ଲୋଇ । ପତିତ ପାବନ ମେସ୍‌ର ଆକାର ସଂକୁଚିତ ହୋଇଗଲା । ପତିତ ପାବନ ମେସ୍‌ର ସ୍ଥାୟିତ୍ୱ ହେଲା ମାତ୍ର ଦୁଇବର୍ଷ ।

ପାଠୀ ବାବୁ ଏବେ ଲଜପତ୍ ନଗରରେ ଘର ଭଡ଼ା ନେଇ ରହିଲେ । ତାଙ୍କ ସାଙ୍ଗରେ ରହିଲେ ସୁଧାଂଶୁ ଭୂଷଣ ସୂତାର, ଜଗନ୍ନାଥ ପଣ୍ଡା ଓ ପ୍ରତାପ ଜେନା । ପୁଣି ଆରମ୍ଭ ହୋଇଗଲା ମେସ୍ । ପତିତ ପାବନ ମେସ୍-୨ । ଛୋଟିଆ ଛୋଟିଆ ବଖରା । ଲନ୍ ଓ ରବର ଗଛ ଆଉ କୁଆଡୁ ଆସିବ । କିନ୍ତୁ ଏଠି ଏଭଳି ପରିସ୍ଥିତିରେ ଆରମ୍ଭ ହେଲା ପୁଅ ଝିଅଙ୍କ ମଧରେ ପ୍ରେମ । ପ୍ରେମରୁ ପରିଣତି ପରିଣୟ । ପାଠୀ ବାବୁ ପ୍ରେମରେ ଯେଭଳି ନୀରବଦ୍ରଷ୍ଟା ପରିଣୟ ବେଳେ ମଧସ୍ଥି ଓ ମୁରବୀ ।

ପୁଣି ଦଳକ ଲାଜପତ୍ ନଗରର ଅନ୍ୟଗୋଟିଏ ଏପାର୍‌ଟମେଣ୍ଟ୍‌କୁ ଉଠାଇ ନେଲେ ପତିତ ପାବନ ମେସ୍ । ମେସ୍ ହେଇଗଲା ନମ୍ବର ୩ । ମୁଁ ଥରେ ଦି ଥର ଏହି ମେସ୍‌ରେ ଡେରା ପକାଇ ଥିବି । ମେସ୍ ୨ରୁ ମେସ୍ ୩ର ସ୍ଥିତି ଭଲ । ଦୁଇଟି ବଖରା, ରନ୍ଧାଘର, ଗାଧୁଆ ଘର ଓ ବାଲ୍‌କୋନି । ବାଲ୍‌କୋନିରେ ଚାଦର ବିଛେଇ ପାଠୀ ବାବୁ ମୁଁ କେତେଥର ଶୋଇଥିବୁ । ପ୍ରାୟ ବର୍ଷେ ଏଣେ ତେଣେ ଡେରା ପରିବର୍ତ୍ତନ ପରେ ପାଠୀ ବାବୁ ନିଷ୍ପତ୍ତି କଲେ ଓଡ଼ିଶା ଫେରିବେ । ସିଏ ସେତେବେଳକୁ ଜବାହରଲାଲ୍ ନେହେରୁ ଫେଲୋସିପ୍ ପାଇସାରିଥାନ୍ତି ।

**କିନ୍ତୁ ପତିତ ପାବନ ମେସ୍‌ର ଭାତ, ଡାଲମା ଓ ବସାଦହି ଏବେବି ସ୍ମୃତିରେ ବଳବତ୍ତର ଅଛି ଏବଂ ଓଡ଼ିଶାର ସାମ୍ପ୍ରତିକ କଳା ଇତିହାସରେ ପତିତପାବନ ମେସ୍‌ର ଉଲ୍ଲେଖନୀୟ ଭୂମିକା ସହଜରେ ହଜିଯିବାର ନୁହେଁ ।**

Digitized by srujanika@gmail.com








ଲଳିତ କଳା ଏକାଡ଼େମୀର ସାଧାରଣ ପରିଷଦ ବୈଠକରେ ଅଧ୍ୟକ୍ଷ ରାମନିବାସ ମିର୍ଦ୍ଧା, ସଚିବ ବି.ପି. କମ୍ବୋଜ, ଜାତୀୟ ଆଧୁନିକ ଚିତ୍ର ଗ୍ୟାଲେରୀର ନିର୍ଦ୍ଦେଶିକା ଅଞ୍ଜଳି ସେନ୍, ପ୍ରଫେସର୍ ସନତ କର, ଚନ୍ଦ୍ରଶେଖର ରାଓ, ଭି.ଜି. ଆଲାନି ଓ ଅନ୍ୟାନ୍ୟ ସଭ୍ୟଙ୍କ ସହ, ୧୯୮୯

କେନ୍ଦ୍ର ଲଳିତ କଳା ଏକାଡ଼େମୀର ପ୍ରଥମ ଜାତୀୟ ଫଟୋଗ୍ରାଫି ପ୍ରଦର୍ଶନୀ ଉଦ୍‌ଘାଟନ ଉତ୍ସବରେ ଡକ୍ଟର କରଣ ସିଂହ, ଅଧ୍ୟକ୍ଷ ରାମ ନିବାସ ମିର୍ଦ୍ଧାଙ୍କ ଗହଣରେ ସଚିବ, ୧୯୯୬

ବିଅଣ୍ଡ ଦ ସୋରସ୍ ଚିତ୍ର ପ୍ରଦର୍ଶନୀରେ ଅଶୋକ ବାଜପେୟୀ ଓଡ଼ିଆ ଶିଳ୍ପୀଙ୍କ ସହିତ ଆଲୋଚନା କରୁଛନ୍ତି । ସେମାନଙ୍କ ମଧ୍ୟରେ ଅଛନ୍ତି ଜଗନ୍ନାଥ ପଣ୍ଡା, ଦିଲ୍ଲୀପ କୁମାର ତ୍ରିପାଠୀ, ରାଜୀବ ଲୋଚନ ସାହୁ, ଅଞ୍ଜନ କମାର ସାହୁ, କାଜଲ ପାତ୍ର, ବବିତା ମିଶ୍ର, ସଜଲ ପାତ୍ର ଓ ଦିନନାଥ ପାଠୀ, ୧୯୯୫

Digitized by srujanika@gmail.com





35 Years of Art ଚିତ୍ର ପ୍ରଦର୍ଶନୀରେ ଭବେଶ ଚନ୍ଦ୍ର ସାନ୍ୟାଲ, ଆନନ୍ଦ ଦେବ ଓ ରାଜେନ୍ଦ୍ର ପଟତ୍ତ୍ୱାରୀଙ୍କ ଗହଣରେ ରବୀନ୍ଦ୍ର ଭବନ ଗ୍ୟାଲେରୀରେ, ୧୯୯୧

ବ୍ରଜେନ୍ଦ୍ର ନାଥ ଗୋସ୍ୱାମୀଙ୍କ ସହ ରବୀନ୍ଦ୍ର ଭବନ ଗ୍ୟାଲେରୀରେ କ୍ରାଫଟ୍‌ସ୍ କାଉନ୍‌ସିଲ୍ ଅଫ୍ ଓଡ଼ିଶାର କାରୁଶିଳ୍ପୀ ପଞ୍ଜୀକରଣ ଦେଖୁଥିବା ଅବସରରେ, ୧୯୯୧

Digitized by srujanika@gmail.com






ଦିନନାଥଙ୍କ ଭାମଟାଙ୍ଗି ଘରେ ଗୁରୁଙ୍କ ସହ ଦିଲ୍ଲୀପ କୁମାର ତ୍ରିପାଠୀ, ୨୦୦୨

୧୯୯୩ ଦାମନଯୋଡ଼ି ଚିତ୍ରକଳା ଉତ୍ସବ ଉଦ୍‌ଘାଟନ ଅବସରରେ

Digitized by srujanika@gmail.com

ରାଜେନ୍ଦ୍ର ପ୍ରସାଦ ଦାସ

## ଭୂମିରୁ ଭୂମା

'ଯେ ପକ୍ଷୀ ଉଡ଼େ ଯେତେଦୂର
ସେ ଜାଣେ ତହିଁର ବେଭାର ।'

ଡକ୍ଟର ଦିନନାଥ ପାଠୀ ସମକାଳୀନ ଓଡ଼ିଶା ତଥା ଭାରତର ଅନ୍ୟତମ ବିଶିଷ୍ଟ ସର୍ଜନଶୀଳ ପ୍ରତିଭା ଭାବରେ ସୁବିଦିତ । ତାଙ୍କ କୃତିତ୍ୱ ବିଷୟରେ କଲେ ମୋ କାନରେ କଳହଂସର ନିଃସନ ଧ୍ୱନିତ ହୁଏ । ହଂସ-ହଂସୀ ଜଳ ସ୍ଥଳ ତଥା ଆକାଶରେ ବିଚରଣ କରନ୍ତି । ଜଳରେ ସନ୍ତରଣ କରିବା ସେମାନଙ୍କର ବିଳାସ । ସ୍ଥଳରେ ଢଳି ଢଳି ଚାଲିବା ସେମାନଙ୍କର ଲୀଳା । ଆକାଶ ବକ୍ଷରେ ହଜାର ହଜାର କ୍ରୋଶ ଉଡ଼ିଯିବା ଓ ସେତେବେଳେ ଗଗନପବନକୁ ସମ୍ମିଳିତ ନିଃସନରେ ମୁଖରିତ କରିବାରେ ସେମାନେ ନିଜକୁ ସମ୍ପୂର୍ଣ୍ଣ ପ୍ରଗତିଶୀଳ ଭାବରେ ପ୍ରକାଶ କରନ୍ତି । ଏହାହିଁ ହଂସ-ସିଦ୍ଧି ।

ଦିନନାଥ ମୂଳତଃ ଶିଳ୍ପୀ । ତାଙ୍କର ଶିଳ୍ପୀସତ୍ତା ତଥା ଶିଳ୍ପୀ ସରୂପର ଯଥାର୍ଥ ଅବବୋଧ ପାଇଁ ଶିଳ୍ପ ଶବ୍ଦଟିର ତାତ୍ପର୍ଯ୍ୟ ଜାଣିବା ପ୍ରୟୋଜନ । ପ୍ରଫେସର୍ ପାଠକ ଓ ପ୍ରଫେସର ମାୟର୍‌ହୋଫର୍ ଏହି ଶବ୍ଦଟି 'ପିଶ୍' ଧାତୁରୁ ନିଷ୍ପନ୍ନ ହୋଇଥିବା ପ୍ରମାଣ କରିଛନ୍ତି । ପିଶ୍ ଉଭୟ ଗ୍ରୀକ୍ ଓ ଲାଟିନ୍‌ରେ 'ପାଇକ୍', ଜର୍ମାନ୍‌ରେ 'ପାଇଗ୍' ଓ ପ୍ରାଚୀନ ଗଥିକ୍‌ରେ 'ଫେହା' । ଏହି ଭାଷାଗୁଡ଼ିକରେ ଏହି ଶବ୍ଦଗୁଡ଼ିକ ମଣ୍ଡନ କରାଇବା, ଭୂଷିତ କରାଇବା, ଚିତ୍ରଣ କରାଇବା, ରଙ୍ଗେଇବା ବା ଆଙ୍କିବା ଅର୍ଥରେ ବ୍ୟବହୃତ । ଋଗ୍‌ବେଦର ନବମ ଓ ଦଶମ ମଣ୍ଡଳରେ 'ପିଶ୍' ଶବ୍ଦ ସଂପର୍କିତ 'ସୁଶିପ' ଶବ୍ଦ ବ୍ୟବହାର କରାଯାଇଛି । ସେଠାରେ ମଧ୍ୟ ଏହାଦ୍ୱାରା ମଣ୍ଡନ କରିବା ବା ଅଳଂକରଣ କରିବା ବୁଝାଯାଏ । ଶିଳ୍ପ ଏହାହିଁ ତ କରେ । ଶିଳ୍ପ ମଣ୍ଡନ କରାଏ ଓ ଶୋଭିତ କରାଏ । ଏହା 'ଶିଳ୍ପ'ର କାମ । ବୈଦିକ ସାହିତ୍ୟରେ 'ଶିଳ୍ପ' ଉଭୟ କରିବା ଓ ଚର୍ଚ୍ଚା ଅର୍ଥରେ ପ୍ରଯୁକ୍ତ ହୋଇଛି । କର୍ମ ହିସାବରେ 'ଶିଳ୍ପାନି କ୍ରିୟନ୍ତା', ଚର୍ଚ୍ଚା ବା ଶାସ୍ତ୍ର ଭାବରେ 'ଶିଳ୍ପାନି ସଂସତି' ଅର୍ଥାତ୍ ଶିଳ୍ପଗୁଡ଼ିକୁ ଆବୃତ୍ତି କରାଯାଏ । ତେଣୁ ଏହି ଉଭୟତ୍ର ବିଚରଣ କରୁଥିବା ବ୍ୟକ୍ତି ହିଁ ଶିଳ୍ପୀ । ଅର୍ଥାତ୍ ଯେ ଅଳଂକରଣ କର୍ମ କରେ ଓ ଯେ ସେଘେନି ଆଲୋଚନା କରେ, ଉଭୟେ ଶିଳ୍ପ ହିଁ କରନ୍ତି, ତେଣୁ ଶିଳ୍ପୀ । ଶାସ୍ତ୍ରଭାବରେ ଶିଳ୍ପ ଆଲୋଚନା କରୁଥିବା ଲୋକ କେବଳ ଗବେଷକ ନୁହେଁ, ସେ ଶିଳ୍ପୀ ମଧ୍ୟ । ଜଣେ ଉଭୟତ୍ର ସଫଳ ହେବା ସହଜ ନୁହେଁ । ମାତ୍ର ଦିନନାଥ ଏହା ସମ୍ଭବ କରିଛନ୍ତି । ସେ ଶିଳ୍ପ ସର୍ଜନା କରିଛନ୍ତି ଓ ଶିଳ୍ପଘେନି ଆଲୋଚନା କରିଛନ୍ତି । ତାଙ୍କର ସର୍ଜନାତ୍ମକ କାର୍ଯ୍ୟ କେବଳ ଶିଳ୍ପରେ ବା ମଣ୍ଡନ କରିବାରେ ସୀମିତ ନୁହେଁ । ସେ ଚିତ୍ରଶିଳ୍ପୀ ଓ ଭାଷା-ଶିଳ୍ପୀ । ଭାଷାଶିଳ୍ପୀଭାବରେ କବିତା, ଗଳ୍ପ, ଭ୍ରମଣ କାହାଣୀ ଓ ଉପନ୍ୟାସରେ ନିଜର ଉତ୍କର୍ଷ ପ୍ରମାଣ କରିଛନ୍ତି । ସେ ଉଭୟ ଓଡ଼ିଆ ଓ ଇଂରାଜୀରେ ଆତ୍ମପ୍ରକାଶ କରିଛନ୍ତି । ଚିତ୍ରଶିଳ୍ପୀ ଭାବରେ ସେ ଭାରତର ଅନ୍ୟତମ ଅଗ୍ରଣୀ ଶିଳ୍ପୀ ଭାବରେ ପ୍ରତିଷ୍ଠିତ ।

ଏହି ପ୍ରବନ୍ଧ ଦିନନାଥଙ୍କ ଶିଳ୍ପାଲୋଚନା ସଂପର୍କରେ ଲେଖାଯାଉଛି । ଦଶମ-ଏକାଦଶ ଶତାବ୍ଦୀର ଓଡ଼ିଶାର ଶିଳ୍ପଶାସ୍ତ୍ର 'ଶିଳ୍ପ ପ୍ରକାଶ'ର ସିଦ୍ଧାନ୍ତ ଯେ 'ଶିଳ୍ପବିଦ୍ୟା ସଦା ଶ୍ରେଷ୍ଠା ସର୍ବଦାନନ୍ଦଦାୟିକା, ତେଣୁ ଶିଳ୍ପ ରଚନା କେବଳ ନୁହେଁ, ଶିଳ୍ପାଲୋଚନା ମଧ୍ୟ 'ଶ୍ରେଷ୍ଠା' ଓ 'ସର୍ବଦା-ଆନନ୍ଦ-ଦାୟିକା' ହେବା ପରମ୍ପରାସିଦ୍ଧ । ଶିଳ୍ପବିଦ୍ୟା କେବଳ ଶିଳ୍ପୀକୁ ଆନନ୍ଦ ଦିଏନା, ଅନ୍ୟମାନଙ୍କୁ ମଧ୍ୟ ଆନନ୍ଦ ଦିଏ । ବେଳେବେଳେ ନୁହେଁ, ସବୁବେଳେ । ସପ୍ତଦଶ ଶତାବ୍ଦୀର ଓଡ଼ିଶାର ଶିଳ୍ପଶାସ୍ତ୍ର 'ଶିଳ୍ପ ରତ୍ନକୋଷଃ' ସିଦ୍ଧାନ୍ତରେ-

Digitized by srujanika@gmail.com

'ଶିଳ୍ପଂ ହି ପରମପୂଜ୍ୟଂ ସର୍ବଦର୍ଶନ ଲକ୍ଷଣମ୍
ସର୍ବ ପ୍ରମାଣ ରୂପାୟ ସାକାର ତତ୍ତ୍ୱମେବଚ ।"

ଶିଳ୍ପ ପରମ ପୂଜ୍ୟ, କାରଣ ଏହାଦ୍ୱାରା ସକଳ ଦର୍ଶନ **ପ୍ରକ୍ଷୁଷ ହୁଏ** । ଏଥିରେ ସକଳ ପ୍ରମାଣ ବା ପରିମାପକ ବା ଏକ ପରିଭାଷାରେ 'ମାପକାଠି' ଅର୍ଥାତ୍ **ଷ୍ଟାଣ୍ଡାଡ୍** ପ୍ରକଟିତ **ହୁଏ** । ଏହା ତତ୍ତ୍ୱମାନ**ଙ୍କୁ** ମଧ୍ୟ ସାକାର କରାଏ । ଶିଳ୍ପ ପ୍ରକାଶ ଗୋଟିଏ ବଡ଼ ଗୁରୁତ୍ୱପୂର୍ଣ୍ଣ କଥା କହିଛି । ଶିଳ୍ପରେ ସିଦ୍ଧିଲାଭ କଲେ ଜନ୍ମାନ୍ତର ହୁଏ ନାହିଁ । ଅନ୍ୟତମ ଶିଳ୍ପଶାସ୍ତ୍ର 'ବାସ୍ତୁ ସୂତ୍ର ଉପନିଷଦ' ଶିଳ୍ପକର୍ମକୁ **ଯଜ୍ଞ** ବୋଲି କହିଛି । ଶିଳ୍ପୀଟିଏ ଶିଳ୍ପ ସଂରଚନା ବେଳେ କ'ଣ କରେ ? ସେ ଧ୍ୟାନସ୍ଥ ହୋଇ ଶିଳ୍ପକର୍ମରେ ତଲ୍ଲୀନ ହୁଏ । ଏହି ସ୍ଥିତିରେ ସେ ଅରୂପର ଧ୍ୟାନ କରେ । ଧ୍ୟାନବଳରେ ସେ ଅରୂପକୁ ରୂପ ଦେବାକୁ ସକ୍ଷମ ହୁଏ । ଦିନନାଥଙ୍କର ପ୍ରସିଦ୍ଧ ଚିତ୍ର **ଭୁବନେଶ୍ୱରକୁ ପ୍ରଣତି** (Homage to Bhubaneswar)ରେ ଏପରି ଅରୂପ-ରୂପ ଦର୍ଶନ ସମ୍ଭବ ହୋଇଛି । ଶିଳ୍ପାଲୋଚନାବେଳେ ଶିଳ୍ପୀ ଆଉ ଏକ ସ୍ତରରେ କ୍ରିୟାଶୀଳ ହୁଏ । ତାର ଲକ୍ଷ୍ୟ ଶିଳ୍ପର ମର୍ମୋଦ୍‌ଘାଟନ । ଏ ପ୍ରକାର କାମ ଖାଲି ଧରାବନ୍ଧା ନିତିଦିନିଆ ଗତବନ୍ଧା ମେକାନିକାଲ୍ କାମ ନୁହେଁ । ମେକାନିକାଲ୍ ଆଲୋଚନାରେ ବର୍ଣ୍ଣନା ରହେ, ରହସ୍ୟ ନୁହେଁ । 'ମର୍ମୋଦ୍‌ଘାଟନ' ତ ଆହୁରି ଦୂରର କଥା । ଦିନନାଥ ଶିଳ୍ପାଲୋଚନାରେ ଶିଳ୍ପର ମର୍ମୋଦ୍‌ଘାଟନରେ ପ୍ରୟାସୀ ହୋଇଛନ୍ତି । ଅନେକାଂଶରେ ସଫଳ ହୋଇଛନ୍ତି । ସିଦ୍ଧିଲାଭ ପାଇଁ ପ୍ରୟାସୀ ହେବାର ସାଧନା ସିଦ୍ଧିଲାଭ ନୁହେଁ । ସେ ଦିଗରେ ଯାତ୍ରା । ଗୋଟେ ଗୋଟେ ମୁହୂର୍ତ୍ତରେ ହୁଏତ ମର୍ମକଥା ଚୈତନ୍ୟକୁ ଆଚ୍ଛନ୍ନ କରେ । ସେଇ ସଫଳତା ହିଁ ସିଦ୍ଧି । ମୋର ଧାରଣା ଯେ ଦିନନାଥ ଏପରି ସିଦ୍ଧି ଲାଭ କରିଛନ୍ତି । ବିଦ୍ୟା ଅନନ୍ତ । ତେଣୁ ବିଦ୍ୟାଲୋଚନାର ଆରମ୍ଭ ଅଛି ସିନା ଅନ୍ତ ନାହିଁ । ତେବେ ଜଣେ ସିଦ୍ଧିଲାଭ କରିଛି କି ନାହିଁ ଜାଣିବା କଷ୍ଟ ନୁହେଁ । ବ୍ରହ୍ମଦର୍ଶନ କରିଥିବା ସାଧକ ଅନ୍ୟକୁ ବ୍ରହ୍ମଦର୍ଶନ କରାଇପାରନ୍ତି । ଅବଶ୍ୟ ସେଥିପାଇଁ ଶିକ୍ଷାର୍ଥୀର ଗଭୀର ନିଷ୍ଠା ଓ ଏକାଗ୍ର ସାଧନା ପ୍ରୟୋଜନ । ଦିନନାଥ ଶିଳ୍ପର ରହସ୍ୟ ଓ ମର୍ମ ସଂପର୍କରେ ଅନ୍ୟମାନଙ୍କୁ ଅବହିତ କରାଇବା ଦିଗରେ ଅନେକାଂଶରେ ସଫଳ ହୋଇଛନ୍ତି ।

ଗବେଷଣା ଦ୍ୱାରା ଶିଳ୍ପ-ରହସ୍ୟ ଜାଣିବା ଲକ୍ଷ୍ୟରେ ଦିନନାଥଙ୍କର ଯାତ୍ରା ବିଂଶ ଶତାବ୍ଦୀର ସପ୍ତମ ଦଶକରେ ଆରମ୍ଭ ହେଲା । ସେ ଓଡ଼ିଶାର ଚିତ୍ରକଳାର ଇତିହାସ ରଚନା କରିବା ପାଇଁ ବାହାରିଲେ । ୧୯୮୦ରେ ତାଙ୍କର ଗବେଷଣା ନିବନ୍ଧ ଉତ୍କଳ ବିଶ୍ୱବିଦ୍ୟାଳୟର ପିଏଚ୍.ଡି ଡିଗ୍ରୀ ପାଇଁ ଯୋଗ୍ୟ ବିବେଚିତ ହେଲା । ଦିନନାଥ, ଡକ୍ଟର ଦିନନାଥ ହେଲେ, ମାତ୍ର ସାଧାରଣ ପାଠକମାନଙ୍କୁ ଏ ଗ୍ରନ୍ଥଟି ସଂପୂର୍ଣ୍ଣ ପଢିବା ପାଇଁ ଦୁଇ ଦଶନ୍ଧି କାଳ ଅପେକ୍ଷା କରିବାକୁ ହେଲା । ଏହାର ପ୍ରଥମଭାଗ **ଓଡ଼ିଶାର ପାରମ୍ପରିକ ଚିତ୍ରକଳା** (Traditional Paintings of Orissa) ନାମରେ ୧୯୯୦ରେ ପ୍ରକାଶିତ ହେଲା । ଦ୍ୱିତୀୟଭାଗ **ଓଡ଼ିଶା ଚିତ୍ରକଳାର ସାରକଥା** (Essence of Orissan Paintings) ୨୦୦୧ରେ ପ୍ରକାଶିତ ହେଲା । ଏହି ଗ୍ରନ୍ଥଦ୍ୱୟରେ ଦିନନାଥ ପୋଥିଚିତ୍ର, ପଟଚିତ୍ର, କାଗଜ-ଚିତ୍ର, ତଥା ବାଡ଼ ବା ଭିତ୍ତିଚିତ୍ର ଘେନି ଆଲୋଚନା କରିଛନ୍ତି । ଓଡ଼ିଶାରେ ଚିତ୍ରକଳାର ପ୍ରାଚୀନତା, ବିବର୍ତ୍ତନ ଓ ସାଫଲ୍ୟ ସଂପର୍କରେ ଶିଳ୍ପୀ ଅନେକ ନୂତନ ଦିଗନ୍ତ ଉନ୍ମୋଚନ କରିଛନ୍ତି । ମାତ୍ର ଓଡ଼ିଶାର ଚିତ୍ରକଳାର ଏକ ସଂପୂର୍ଣ୍ଣ ଇତିହାସ ରଚନା ପାଇଁ ଆହୁରି ଅନେକ କାମ କରିବାକୁ ହେବ । 'ଏହାକୁ ସଂପୂର୍ଣ୍ଣ ଭାବରେ ଉପସ୍ଥାପନ କରାଇବା ପାଇଁ ଆହୁରି ଅନେକ ବିଷୟ ଯୋଗ କରିବା ଏବେବି ବାକି ରହିଛି ।' (a lot still remains to be added to present it in its totality) ଏ 'totality' ଶବ୍ଦଟିର ବ୍ୟଞ୍ଜନା ଅତି ବ୍ୟାପକ । 'ସମ୍ପୂର୍ଣ୍ଣ', 'ସାମଗ୍ରିକ', 'ମୋଟ' ଇତ୍ୟାଦି ବହୁ ଶବ୍ଦର ଅର୍ଥ ଏଥିରେ ଗର୍ଭିତ ।

Digitized by srujanika@gmail.com

ଦିନନାଥ ନିଜେ ଏକାକୀ ଓ ବେଳେବେଳେ କେତେକ ବନ୍ଧୁଙ୍କ ସହ ମିଶି ଓଡ଼ିଶା ଚିତ୍ରକଳାର ସାମଗ୍ରିକ ରୂପ ପ୍ରକଟ କରାଇବା ପାଇଁ ଉଦ୍ୟମ ଜାରି ରଖିଛନ୍ତି । ଓଡ଼ିଶାର ଚିତ୍ରକଳା ବହୁଭାବରେ ନିଜକୁ ପ୍ରକାଶ କରିଛି । ଲୋକକଳାରୁ ମନ୍ଦିର କଳାଯାଏ ଏହାର ବ୍ୟାପ୍ତି । ପୁଣି କାଳ ବିସ୍ତାରରେ ଏହା ପ୍ରାଗୈତିହାସ ଯୁଗରୁ ଅଧୁନାତନ ସମୟଯାଏ ଲମ୍ବିରହିଛି । ହେମଗିରି ଆଦିର ଗୁହାଚିତ୍ର ଠାରୁ ସୀତାବିଂଝିର ପ୍ରାଚୀର ଚିତ୍ର ତଥା ବୁଗୁଡ଼ାର ବିରଞ୍ଚିନାରାୟଣ ମନ୍ଦିରର ଭିତ୍ତିଚିତ୍ର ଦେଇ ଓଷାକୋଠିର ଠାକୁରାଣୀ-ଠାକୁରମାନଙ୍କର ଭିତ୍ତିଚିତ୍ର ଯାଏ ଏହି ଚିତ୍ରକଳା ନାନାଭାବରେ ଆତ୍ମପ୍ରକାଶ କରିଛି । ପ୍ରାଗ୍‌ଐତିହାସିକ ଯୁଗକୁ ବାଦ୍‌ଦେଲେ ବି ଓଡ଼ିଶାରେ ସଭ୍ୟତାର ଇତିହାସ-ମଳାଗୁଣୀ ଢଳର 'ଗୋଲବାଇ'ର ତାମ୍ର-ପ୍ରସ୍ତର ଯୁଗରୁ ଆରମ୍ଭ ହେବା ଦିନରୁ - ସାଢ଼େ ଚାରିହଜାର ବର୍ଷ ବିତିଲାଣି । ସେଥିପାଇଁ ଓଡ଼ିଶା-ଚିତ୍ରକଳାର ପୂର୍ଣ୍ଣାଙ୍ଗ ତଥା ସାମଗ୍ରିକ ଇତିହାସ ରଚନାପାଇଁ ବହୁ ବ୍ୟକ୍ତି ଓ ବହୁ ଅନୁଷ୍ଠାନଙ୍କର ସଂଘବଦ୍ଧ ତଥା ଯୋଜନାବଦ୍ଧ ଉଦ୍ୟମ ଆବଶ୍ୟକ ।

ଲୋକକଳା (Folk Art) ଓ ଧ୍ରୁପଦୀ କଳା (Classical Art) ପରସ୍ପରର ପରିପୂରକ । ଗୋଟିଏ ଅଭାବରେ ଅନ୍ୟଟିର ସମ୍ୟକ୍ ଅବବୋଧ ସମ୍ଭବ ନୁହେଁ । ଲୋକକଳା ନଥିଲେ ଧ୍ରୁପଦୀକଳା ଆସନ୍ତା କୁଆଡୁ ? ଓଡ଼ିଶାର ଲୋକକଳା ଘେନି ଗବେଷଣା କରିବା ପାଇଁ ବାହାରି ଦିନନାଥ ଓ ତାଙ୍କର ବନ୍ଧୁଏବର୍‌ହାର୍ଡ୍ ଫିସର୍ (ପୃଥିବୀ ପ୍ରସିଦ୍ଧ ରିଟ୍‌ବର୍ଗ୍ ମିଉଜିୟମ୍‌ର ପ୍ରଖ୍ୟାତ ଡିରେକ୍ଟର) ଦକ୍ଷିଣ ଓଡ଼ିଶାର 'ଓଷାକୋଠି' ପର୍ବର ଭିତ୍ତିଚିତ୍ର ଗୁଡ଼ିକ ଅଧ୍ୟୟନ କଲେ । ୧୯୮୧ ଓ ୧୯୮୨ ଦୁଇବର୍ଷକାଳ ଗାଁରୁ ଗାଁ ବୁଲି ସେମାନେ ସେଗୁଡ଼ିକୁ ନିରୀକ୍ଷଣ କଲେ । ଏହି କ୍ଷେତ୍ରାଧ୍ୟୟନ (Field-study) ପରେ ଉପଲବ୍ଧ ତଥ୍ୟାବଳୀରୁ ପରିପାକ କରି ସାଧାରଣରେ ଗ୍ରହଣଯୋଗ୍ୟ ହେଲାପରି ଉପସ୍ଥାପନା କରାଗଲା । ରିଟ୍‌ବର୍ଗ ମିଉଜିୟମ୍ ଓ ଇନ୍ଦିରାଗାନ୍ଧି ଜାତୀୟ କଳାକେନ୍ଦ୍ର ଦ୍ୱାରା (Indira Gandhi National Centre for the Arts) ମିଳିତ ଭାବରେ 'ଠାକୁରାଣୀ ଓ ଠାକୁରମାନଙ୍କ ପାଇଁ ଭିତ୍ତିଚିତ୍ର' (*Murals for Goddesses and Gods*) ନାମରେ ଏହା ୧୯୯୬ରେ ପ୍ରକାଶିତ ହୋଇଛି ।

ଆସିକାକୁ କେନ୍ଦ୍ରକରି ପୂର୍ବରେ ବ୍ରହ୍ମପୁରଠାରୁ ପଶ୍ଚିମରେ ଭଂଜନଗର, ଦକ୍ଷିଣରେ ଚିକିଟିଗଡ଼ଠାରୁ ଉତ୍ତରରେ ବୁଗୁଡ଼ା ଯାଏ ଓଷାକୋଠି ପର୍ବ ପାଳିତ ହୁଏ । ଭିତ୍ତିଚିତ୍ରରେ ଅଙ୍କିତ ଦେବଦେବୀ ପୂଜା ପାଇଁ ଓଷାକୋଠି ଭାରତରେ ଅଦ୍ୱିତୀୟ । ଗୁଜୁରାଟ ଦେବଦେବୀ ଚିତ୍ର ଛପା ହୋଇଥିବା କନା, ଅନୁରୂପ ଚିତ୍ରଥିବା ଘଡ଼ୁଆ ଓ କାଠୁଝୁଲା-ପଟ୍ଟଗୁଡ଼ିକ ବ୍ୟବହାର କରାଯାଇ ହେଉଥିବା ପୂଜା ସହିତ ଓଷାକୋଠିର ସାଦୃଶ୍ୟ ଥିଲେ ମଧ୍ୟ, ଓଡ଼ିଶା ଓ ଗୁଜରାଟରେ ପୂଜିତ ହେଉଥିବା ଦେବଦେବୀଙ୍କ ମଧ୍ୟରେ ପାର୍ଥକ୍ୟ ସ୍ୱଚ୍ଛ । ଗୁଜରାଟର ଏ ପ୍ରକାର ପୂଜାରେ ଶିବ-ନଟରାଜଙ୍କ ସ୍ଥାନ ଗୌଣ । ଓଷାକୋଠିରେ 'ତେତିଶକୋଟି' ଦେବତା ସ୍ଥାନ ପାଆନ୍ତି । ସେମାନଙ୍କ ସହଯୋଗୀ ଓ ସହକାରୀଙ୍କ ସହିତ ଅନ୍ତତଃ କୋଡ଼ିଏଟି ଦେବଦେବୀ ଚିହ୍ନିହୁଅନ୍ତି । ଏ ସଭିଙ୍କୁ ଏକାଠି ଗଣିଲେ ସେମାନଙ୍କ ସଂଖ୍ୟା ବେଳେବେଳେ ଶହେଯାଏ ହେବା ବିଚିତ୍ର ନୁହେଁ । ଖାଲି ଦେବ-ଦେବୀ ନୁହନ୍ତି, ରାମାୟଣ ମହାଭାରତର ବୀରମାନେ ମଧ୍ୟ ଓଷାକୋଠିରେ ପୂଜା ପାଆନ୍ତି । ସମସ୍ତଙ୍କ ଭିତରେ 'ଠାକୁରାଣୀ' ମୁଖ୍ୟ । ଏହାଙ୍କୁ ଆଦିମାତା କୁହାଯାଏ । ଏହି ଆଦିମାତା ମଙ୍ଗଳା, କାଳୀ ଅବା ଦୁର୍ଗା ଭାବରେ ଚିତ୍ରିତା ହୁଅନ୍ତି । ବିଂଶ ଶତାବ୍ଦୀରେ ଦୁର୍ଗା ମହିଷମର୍ଦ୍ଦିନୀଙ୍କ ବ୍ୟାପକ ପ୍ରସାର ହୋଇଛି । କୋଠିର କେନ୍ଦ୍ରରେ ମଙ୍ଗଳା ଓ ଶିବ-ନଟରାଜ ରହନ୍ତି । ଶିବକେନ୍ଦ୍ରରେ ଥିଲେ ତାଙ୍କ ପାଖରେ ଦୁର୍ଗା ବା କାଳୀଙ୍କୁ ଆଙ୍କିବା ବିଧି । ସେମାନଙ୍କୁ ଘେରି ଅନ୍ୟ ଦେବ-ଦେବୀ, ନାୟକ-ନାୟିକା ଓ ସେମାନଙ୍କ ସହଯୋଗୀ ତଥା ସହକାରୀଙ୍କ ଚିତ୍ର ଅଙ୍କାଯାଏ । ଦୁର୍ଗା ସାଧାରଣତଃ ବନଦୁର୍ଗା ବା ଗିରିଦୁର୍ଗା

Digitized by srujanika@gmail.com

ନାମରେ ଅଭିହିତା ହୁଅନ୍ତି । ସିଂହ ବା ବ୍ୟାଘ୍ରବାହନ ମୁକ୍ତହୋଇ ସେ ମହିଷ-ମର୍ଦ୍ଦିନୀ ରୂପେ ଅଙ୍କିତା ହୁଅନ୍ତି । ଠାକୁରାଣୀ ଶାନ୍ତ ରୂପରେ ପାର୍ବତୀ ଓ ଉଗ୍ର ରୂପରେ କାଳୀ । ଏ ଠାକୁରାଣୀଙ୍କ ଚଉପିଠି ଗଙ୍ଗା, ଯମୁନା, ସରସ୍ୱତୀ, ଗଣେଶ ଓ ସମୟ ସମୟରେ ହନୁମାନ ମଧ ରହିଥାନ୍ତି ।

ଓଷାକୋଠି ସାଧାରଣତଃ ସମାଜର ପଛୁଆବର୍ଗ ବୋଲି ଚିହ୍ନା ଚଷା ଓ ଗଉଡ଼ମାନଙ୍କର ଉତ୍ସବ । ଚିତ୍ରଗୁଡ଼ିକୁ ତାଲିମପ୍ରାପ୍ତ ପେଶାଦାର ଚିତ୍ରକାର ବା ସ୍ଥାନୀୟ କଳାକାରମାନେ ଆଙ୍କନ୍ତି । ଚିତ୍ରକାର ବାହାରୁ ବା ନିଜ ଭିତରୁ ଯୋଉଠୁ ଆସନ୍ତୁ, ସେମାନେ ବିଭିନ୍ନ ଜାତିର ଲୋକ ଅର୍ଥାତ୍ କୌଣସି ନିର୍ଦ୍ଦିଷ୍ଟ ଜାତିର ଲୋକେ ଏପରି କାମ କରିବା ପାଇଁ ନାହାନ୍ତି । ଓଷାକୋଠିରେ ଚିତ୍ରକାରମାନଙ୍କ ପରି ଗାୟେଣୀମାନଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଓଷାକୋଠିର ଗୀତଗୁଡ଼ିକ ଲୋକଗୀତର ଉତ୍କୃଷ୍ଟ ଉଦାହରଣ । ଏ ଗୀତଗୁଡ଼ିକରେ ଜୀବନର ମୂଲ୍ୟବୋଧଠାରୁ ଭକ୍ତ ଓ ଠାକୁରାଣୀଙ୍କ ଭିତରର ମାନ-ଅଭିମାନ, ରାଗ-ରୁଷା ଇତ୍ୟାଦି ରହିଥାଏ । ମାତ୍ର ସବୁ ଗୀତରେ ରହେ ସଂପୂର୍ଣ୍ଣ ଆତ୍ମ ସମର୍ପଣ । ଗାଇବା ବେଳେ ଗାୟେଣୀ ଖାଲି ଭକ୍ତ ନୁହେଁ ଦେବତା ବି । ନିୟମିତ ପୂଜାର୍ଚ୍ଚନା ସହିତ ସଦାସର୍ବଦା ଠାକୁରାଣୀଙ୍କୁ ଭାବିଲେ ହିଁ ଦୈବୀକୃପା ମିଳେ । ଏହିପରି ଗୋଟିଏ ଗୀତର ଉପସଂହାର ହେଲା -

‘ତିନି ସଂଜ୍ୟାବେଳେ ତିନି ସଂଜଦେଲି
ଗାଈଗୋଠବେଳେ ଖୁରପାଣି ଦେଲି ।
ତୁମ୍ଭଙ୍କୁ ଭାଳି ବସିଲି ଗୋ ଦେବୀଏ
ତୁମ୍ଭଙ୍କୁ ଭାଳି ବସିଲି ।।’

ଏବର କ୍ଷୟିଷ୍ଣୁ କାଳର ପ୍ରଭାବରେ ଓଷାକୋଠି କ୍ରମଶଃ ନିଜର ସରଳ ସ୍ୱାଭାବିକତା ହରାଉଛି । ଅନେକ ସମୟରେ ପୂଜାର୍ଚ୍ଚନା ମୁଖ୍ୟ ନହୋଇ ମଉଜମଜଲିସ ବା ଲୋକଦେଖାଣିଆ ଆଡ଼ମ୍ବର ପ୍ରଦର୍ଶିତ ହେବାରେ ଲାଗିଛି । ଚିତ୍ରଗୁଡ଼ିକ ମଧ ନିଜର ପାରମ୍ପରିକ ସ୍ୱାଭାବିକତା ହରାଇ କ୍ୟାଲେଣ୍ଡରର ଘଷରା ମାତ୍ର ଚଟକଦାର ଦେବଦେବୀଙ୍କ ଚିତ୍ରପରି ଏବେ ଅଙ୍କା ହେଉଛି । ସିନେମା ପୋଷ୍ଟରମାନଙ୍କର ଚଟୁଳ ଯୌନ ଆବେଦନ ପ୍ରକାଶ କରୁଥିବାପରି ଚିତ୍ରମଧ ଓଷାକୋଠି ମଣ୍ଡନ କଲେଣି, ଗୀତଗୁଡ଼ିକର ସ୍ୱର ଓ ଶୈଳୀ ସିନେମା ବା ଘରୁ ଓଡ଼ିଆ ଗୀତପରି ଚଟୁଳ, ଚଟକଦାର ଓ ଦ୍ୱ୍ୟର୍ଥବ୍ୟଞ୍ଜକ ହେବାରେ ଲାଗିଛନ୍ତି । ଏସବୁ ‘ଆଧୁନିକତା’ ସହିତ ଫିଲ୍ମ ଓ ଟିଭି ପ୍ରଦର୍ଶନ ମଧ ଏ ଉତ୍ସବରେ ସାମିଲ ହେଉଛି । ଏହି ଆଧୁନିକତା ପାରମ୍ପରିକ ଓଷାକୋଠିର ବିଲୋପସାଧନ କରିବା ପୂର୍ବରୁ ଏବ୍‌ରହାର୍ଡ୍ ଓ ଦିନନାଥ ଏହାର ମୌଳ ସ୍ୱାଭାବିକ ରୂପ ଆମ୍ଭମାନଙ୍କୁ ଉପହାର ଦେଇଛନ୍ତି । ସେଥିପାଇଁ ଆମ୍ଭେମାନେ କୃତଜ୍ଞ ରହିବା ଉଚିତ ।

କେବଳ ନିମ୍ନବର୍ଗର ଲୋକେ ନୁହନ୍ତି, ସମାଜର ସବୁବର୍ଗର ଭକ୍ତମାନେ ପ୍ରତିମା ପୂଜା କରନ୍ତି । ପ୍ରତିମାର ଜନ୍ମ ଓ ପ୍ରୟୋଗନୀୟତା ଘେନି ବହୁତ ଆଲୋଚନା ହୋଇଛି । ସେଗୁଡ଼ିକ ମଧ୍ୟରୁ ଓଡ଼ିଶାରୁ ଉପଲବ୍ଧ ଅଥର୍ବବେଦୀୟ ପିପ୍ପଳାଦ-ପରମ୍ପରାର ଶିଳ୍ପଶାସ୍ତ୍ର ‘ବାସ୍ତୁ ସୂତ୍ର ଉପନିଷଦ’ ଏ ଘେନି କହିଥିବା ନିମ୍ନଲିଖିତ ବ୍ୟାଖ୍ୟା ଅତୀବ ଗୁରୁତ୍ୱପୂର୍ଣ୍ଣ।

ଏହି ଉପନିଷଦର ପ୍ରଥମ ପ୍ରପାଠକର ପଞ୍ଚମ ସୂତ୍ରରେ କୁହାଗଲା -

‘ଶିଳ୍ପାତ୍ ପ୍ରତିମା ଜାୟନ୍ତେ’ ବା ଶିଳ୍ପରୁ ପ୍ରତିମା ଜନ୍ମହୁଏ । ଏହି ସୂତ୍ରଟିର ବ୍ୟାଖ୍ୟାଟିକାରେ ପ୍ରତିମାର ପ୍ରୟୋଜନୀୟତା ସହିତ ମୂର୍ତ୍ତିକଳାର ଅସଲ ଲକ୍ଷ୍ୟ ସଂପର୍କରେ କୁହାହେଲା (କେବଳ ଅନୁବାଦ ଦେଉଛି) ପ୍ରତିମାରୁ ଶ୍ରଦ୍ଧା, ଶ୍ରଦ୍ଧାରୁ ଐକାନ୍ତିକ ନିଷ୍ଠା, ନିଷ୍ଠାରୁ ଜ୍ଞାନ ଓ ଜ୍ଞାନରୁ ମୋକ୍ଷ ଲାଭ ହୁଏ । ଶିଳ୍ପରୁ ପ୍ରତିମାର ଜନ୍ମଠାରୁ ଆରମ୍ଭକରି ପ୍ରତିମା ମାଧ୍ୟମରେ ମୋକ୍ଷଲାଭ ହେଉଛି ମୂର୍ତ୍ତିକଳାର ‘ପଞ୍ଚ ସୋପାନ’ ।

Digitized by srujanika@gmail.com

ଓଷାକୋଠି ପରିପ୍ରେକ୍ଷୀରେ ଚିତ୍ର ନଥିଲେ କଣ ହୁଅନ୍ତା ? ସେହି ଉପନିଷଦର ୧ମ ପ୍ରପାଠକର ସପ୍ତମ ସୂତ୍ରରେ କହିଛି -

'ଶରୀର ମୂର୍ତ୍ତିରହିତେ ମନ ଆବେଶ୍ୟ ବିଶେଷଣ ବିକଳ୍ପି ଦୋଷଯୁକ୍ତ ଭବତି ।' ମୂର୍ତ୍ତି ନଥାଇ ପୂଜା କଲେ, ନାନା କଥା କଳ୍ପନାକରି ମନ ଆବିଳ ବା ଦୋଷଯୁକ୍ତ ହୁଏ । ଅନ୍ୟ ଭାବରେ ପ୍ରତିମା ବା ଚିତ୍ରଟିଏ ସ୍ଥାପନ କରି ତାଙ୍କୁ ପୂଜା କଲେ ମନ ଏକମୁଖୀ ହୋଇ ଠାକୁରାଣୀ (ବା ଠାକୁର)ଙ୍କ ଠାରେ ନିବଦ୍ଧ ହୁଏ । ତେଣୁ ପରିଣାମରେ ପୂର୍ବରୁ କୁହାଯାଇଥିବା ପରି ଶ୍ରଦ୍ଧା, ନିଷ୍ଠା, ଜ୍ଞାନ ଓ ମୋକ୍ଷ ମିଳେ ।

ପ୍ରତିମା କ'ଣ କେବଳ କଳ୍ପନା ପ୍ରସୂତ ? ଜଗତର ସବୁରୂପ ଗୋଟିଏ ମୌଳ ରୂପର ପ୍ରତିରୂପ ବୋଲି ବେଦ କହନ୍ତି - 'ରୂପଂ ରୂପଂ ପ୍ରତିରୂପୋ ଭୁବ ।' 'ମୂଳ-ରୂପ'ରୁ ପ୍ରତିମା ବା ପ୍ରତିରୂପର ଉଦ୍ଭବ ପ୍ରକ୍ରିୟା ବୁଝାଇବାକୁ ଯାଇ ଉପରୋକ୍ତ ସୂତ୍ରର ବ୍ୟାଖ୍ୟାରେ କୁହାଗଲା -

ମୂଳ-ରୂପରୁ ପ୍ରତିମା ସମ୍ବନ୍ଧୀୟ ଜ୍ଞାନ ବା ତତ୍ତ୍ୱ ଲାଭ ହୁଏ । ଏହି ଜ୍ଞାନରୁ ଧାରଣା, ଧାରଣାରୁ ଦେବ-ଦେବୀ ସଂପର୍କିତ ଗୀତ ବା 'ଗାଥା' ଓ ଦେବଦେବୀ ସଂପର୍କିତ ମିଥ୍ ବା ପୁରାଣ କାହାଣୀ ବା 'କଥା'ର ଉଦ୍ଭବ ହୁଏ । ଏହି 'ଗାଥା' ଓ 'କଥା'କୁ ଆଶ୍ରାକରି ସ୍ଥାପନ ବା ଶିଳ୍ପୀ (ଚିତ୍ରକାର, ମୂର୍ତ୍ତିକାର) ପ୍ରତିମା (ବା ଚିତ୍ର) ତିଆରି କରେ ।

ବାସ୍ତୁ ସୂତ୍ର ଉପନିଷଦର ଏ ସୂତ୍ର ଦୁଇଟିର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ । ମନ ଆବିଳ ନହେବା ପାଇଁ ସଭିଙ୍କୁ ମୂର୍ତ୍ତି ବା ପ୍ରତିମାର ଶରଣ ନେବାକୁ ପଡ଼ିବ । ଜଗତର ପ୍ରତ୍ୟେକ ରୂପ ଗୋଟିଏ ମୌଳ ବା ଆଦିରୂପର ପ୍ରତିମା ବା ପ୍ରତିରୂପ । ଏ ପ୍ରତିରୂପ ଗଢ଼ିବା ପାଇଁ 'ଗାଥା' ଓ 'କଥା'କୁ ଆଶ୍ରା କରିବାକୁ ହେବ । ଉପସ୍ଥିତ କ୍ଷେତ୍ରରେ ଓଷାକୋଠିର ଗୀତଗୁଡ଼ିକ ଏକାଧାରରେ 'ଗାଥା' ଓ 'କଥା' । ଏ ପ୍ରବନ୍ଧର ପାଠକ-ପାଠିକାମାନେ ମନ୍ଦିରକୁ ଯାଇ ବା କୌଣସି ପୂଜା-ପାର୍ବଣରେ ଦେବଦର୍ଶନ କଲାବେଳେ, ଏହି କଥାଗୁଡ଼ିକ ସ୍ମରଣ କଲେ ସମସ୍ତଙ୍କର ଅଶେଷ ମଙ୍ଗଳ ହେବ । ଓଷାକୋଠି ଗାୟେଣୀର ତୁମ୍ଭଙ୍କୁ ଭାଳି ବସିଲି ଗୋ ଦେବୀଏ, ତୁମ୍ଭଙ୍କୁ ଭାଳି ବସିଲିରେ ପ୍ରକଟିତ ଐକାନ୍ତିକ ନିଷ୍ଠାରୁ ଜ୍ଞାନ ଓ ସେହି ଜ୍ଞାନରୁ ମୋକ୍ଷ ଲାଭ ହେବ ହିଁ ହେବ, ଲୋକ-ପରମ୍ପରା ଓ ଶାସ୍ତ୍ର-ପରମ୍ପରାର ଐକ୍ୟ ତଥା ସମାନତା ପ୍ରମାଣ କରିବା ପାଇଁ ଅଧିକ ଉଦ୍ଧୃତି ବା ତଟର ପ୍ରୟୋଜନ ନାହିଁ । ଏବର୍‌ହାର୍ଡ୍ ଓ ଦିନନାଥ ଏ ପ୍ରକାର ଏକ ବିସ୍ମୟକର ପରମ୍ପରାକୁ ଲୋକଲୋଚନକୁ ଆଣିବା ପାଇଁ ଦେଖାଇଥିବା ଗଭୀର ନିଷ୍ଠା, ଐକାନ୍ତିକ ନିଷ୍ଠାରେ ପରିଣତ ହେଉ । ପରିଣାମରେ ସେମାନଙ୍କୁ ଜ୍ଞାନ ଓ ମୋକ୍ଷ ମିଳୁ ।

ଆଦିବାସୀ କଳା ଓଡ଼ିଶାର ଲୋକ (Folk) ଓ ଧ୍ରୁପଦୀ (Classical) କଳାର ଅନ୍ୟତମ ବିଭାବ ଓ ବିଭବ । ଦିନନାଥଙ୍କ ଆଦିବାସୀ କଳା ସଂକ୍ରାନ୍ତୀୟ ଗ୍ରନ୍ଥ 'ଚିତ୍ରିତ ପ୍ରତିମା ସମୂହ' (Painted Icons) ୧୯୯୬ରେ ପ୍ରକାଶିତ ହୋଇଛି । ଏ ରାଜ୍ୟରେ ବାଷଠିଟି ଆଦିବାସୀ-ଗୋଷ୍ଠୀ ଅଛନ୍ତି । ପ୍ରତ୍ୟେକ ଗୋଷ୍ଠୀର ନିଜସ୍ୱ ଭାଷା, ଚଳଣି, ପରମ୍ପରା ଓ କଳା ଅଛି । ଏହି ଗୋଷ୍ଠୀମାନଙ୍କ ମଧ୍ୟରୁ ସଉରା ଗୋଷ୍ଠୀ ଅନ୍ୟତମ ଓ ମୁଖ୍ୟ ଗୋଷ୍ଠୀ । ସଉରାମାନେ ନିଜ ନିଜ ଘରର ଭିତରପଟ କାନ୍ଥରେ ଦେବତାମାନଙ୍କର ଚିତ୍ର ଆଙ୍କନ୍ତି ବା ଅଙ୍କନ କରାନ୍ତି । ବେଳେବେଳେ ଅପଦେବତାମାନଙ୍କ ଚିତ୍ର ମଧ୍ୟ ଅଙ୍କା ଯାଏ । ଦେବତା ଓ ଅପଦେବତା ସଭିଏଁ ପୂଜାର ଅଧିକାରୀ । ସେମାନେ ପୂଜାର୍ଚ୍ଚନା ପାଇ ତୋଷ ହେଲେ ଘରେ ରହୁଥିବା ଲୋକଙ୍କର ମଙ୍ଗଳ କରନ୍ତି ଓ ସେମାନଙ୍କୁ ବିପଦ ଆପଦରୁ ରକ୍ଷା କରନ୍ତି । ଜନନେତା ଡକ୍ଟର ଗିରିଧର ଗମାଙ୍ଗ 'ଚିତ୍ରିତ ପ୍ରତିମା ସମୂହ' ପ୍ରାକ୍‌କଥନରେ ଦେଇଥିବା ମନ୍ତବ୍ୟ କେତୋଟିରୁ ଦିନନାଥଙ୍କ ଏ ଗବେଷଣା ତଥା ପ୍ରକାଶିତ ଗ୍ରନ୍ଥର ସଫଳତା କଳନା କରାଯାଇ ପାରିବ । ଶ୍ରୀଯୁକ୍ତ ଗମାଙ୍ଗଙ୍କ ଇଂରାଜୀର ଓଡ଼ିଆ ମର୍ମାନୁବାଦ ହେଲା - ନଗର ସଭ୍ୟତା, ଶିକ୍ଷା ପ୍ରସାର ଓ ଆଧୁନିକତା ଆଦିର ପ୍ରଭାବରୁ ସଉରାମାନଙ୍କର ଜୀବନଚର୍ଯ୍ୟା ଓ ସାଂସ୍କୃତିକ ମୂଲ୍ୟବୋଧଗୁଡ଼ିକ

Digitized by srujanika@gmail.com

ପରିବର୍ତ୍ତିତ ହେବାରେ ଲାଗିଛି । ତେଣୁ ଉତ୍ତରପୁରୁଷମାନଙ୍କ ଅବଗତି ପାଇଁ ସଉରା କଳା-କୃତିଗୁଡ଼ିକର ପଞ୍ଜିକରଣ ତଥା ସଂରକ୍ଷଣ ଏକାନ୍ତ ପ୍ରୟୋଜନ । ମୁଁ ନିଜେ ନିଜର ଶାରୀରିକ, ଆବେଗିକ ଓ ସର୍ଜନାତ୍ମକ ସତ୍ତାରେ ଏହି ମହାନ ଜାତିର ଦାୟାଦ । ସେଥିପାଇଁ ମୋର ଗର୍ବ । ମୁଁ ଆହ୍ଲାଦିତ ଯେ ସଉରା କଳାଘେନି ଏପରି ଗବେଷଣା ହୋଇଛି ଓ ଏଭଳି ଗ୍ରନ୍ଥ ପ୍ରକାଶିତ ହେଉଛି ।

ସଉରା ଚିତ୍ରଶିଳ୍ପୀଠାରୁ ଧ୍ରୁପଦୀ ମନ୍ଦିର ଶିଳ୍ପୀ ଯାଏ ସବୁ ଶିଳ୍ପୀଙ୍କ ପାଇଁ ମୂର୍ତ୍ତିଗଠନ ବା ଚିତ୍ରାଙ୍କନ ଏକ ପବିତ୍ର କର୍ତ୍ତବ୍ୟ । ଜଣେ ଚିତ୍ରକର ପ୍ରତିରୂପଟିଏ ସର୍ଜନା କଲାବେଳେ ସ୍ୱୟଂ ବିଶ୍ୱକର୍ମାରେ ପରିଣତ ହୁଏ, ତା' ହାତରେ ରୂପ ପାଉଥିବା ଦେବତା ତାକୁ ଯେପରି ପରିଚାଳିତ କରି ଯେଉଁଭଳି ପ୍ରତିରୂପଟିଏ ଗଢ଼ିବାକୁ କହନ୍ତି, ସେ ସେଇଭଳି କରେ । ଏହା ଏକ ବିଶ୍ୱଜନୀନ ଉପଲବ୍ଧି । ସଉରା କିଡ଼ାରୁ ଗମାଙ୍ଗ (ପୃ. ୩୬)ଙ୍କ ଠାରୁ କୋଣାର୍କର ପୂଜାବିଗ୍ରହ ମହାଭାସ୍କରଙ୍କୁ ନିର୍ମାଣ କରିଥିବା ସୂତ୍ରଧର ସଦାଶିବ ବା ଦିନନାଥ ଆଦି ଏକ ଭିନ୍ନରାଜ୍ୟରେ ଥିଲାଭଳି ବାସ କରନ୍ତି । ଏ ସ୍ଥିତି ବଜାୟ ରହେ । କାମଟି ସଂପୂର୍ଣ୍ଣ ହେବାଯାଏ, ସେମାନଙ୍କର ଏ ରୂପଗଠନ ବା ଚିତ୍ରାଙ୍କନର ବାହାର ସଂରଚନାରେ ମଧ୍ୟ ଲୋକ ଓ ଧ୍ରୁପଦୀ କଳାକାର ସମାନ ଭାବରେ ଅଗ୍ରସର ହୁଅନ୍ତି । ସଉରା-ଚିତ୍ର ଗୋଟିଏ କୋଠି ଭିତରେ ଅଙ୍କାଯାଏ । କୋଠିଟି ସାଧାରଣତଃ ବର୍ଗାକାର । ବେଳେବେଳେ ଏହାର ଉପର ଭାଗରେ ଏକ ତ୍ରିଭୁଜାକାର ଘର ରହେ । ସଉରା-ଚିତ୍ରର କୋଠି, ଓଷାକୋଠିର କୋଠି, ଏପରିକି ଜହ୍ନି ଓଷାର ଜହ୍ନି-ଫୁଲ-କାକୁଡ଼ିଫୁଲ-କଇଁଫୁଲ ତିଆରି କୋଠି ଆଦି ସବୁ କୋଠି ଶିଳ୍ପ-ଶାସ୍ତ୍ର ପରିଭାଷାରେ କୋଷ୍ଠକ । ଏହା ମୂର୍ତ୍ତିଗଠନ ପାଇଁ ବ୍ୟବହୃତ ହୁଏ । ଭାସ୍କର୍ଯ୍ୟରେ ଏହି 'କୋଠି' ବା 'କୋଷ୍ଠକ' ଆହୁରି ସାନସାନ କୋଠି ବା କ୍ଷେତ୍ରରେ ବିଭକ୍ତ ହୁଏ । ପୂଜାବିଗ୍ରହ ପାଇଁ ଏ ସାନକୋଠିର ସଂଖ୍ୟା ଷୋହଳ । କୋଠିରେ ତିନି ପ୍ରକାର ରେଖାର ବ୍ୟବହାର ହୋଇଯାଏ । ସଉରା କୋଠିରେ ଘର ନ ଥିଲେ ତିନି ଜାଗାରେ ଦୁଇ ପ୍ରକାର ରେଖା ଥାଏ । ଲମ୍ବ ବା ଉର୍ଦ୍ଧ୍ୱଗାମୀ ରେଖା । ଉର୍ଦ୍ଧ୍ୱଗ ଅଗ୍ନିଶିଖାର ପ୍ରତୀକ । ଆଡ଼ରେଖା ବା ଭୂମିସହ ସମାନ୍ତରାଳ ରେଖା ନଦୀର ପ୍ରବାହପରି ହୋଇଥିବାରୁ 'ଜଳ'ର ପ୍ରତୀକ । ତୀର୍ଯ୍ୟକ୍‌ରେଖା (ଘର ଥିଲେ) ବା କର୍ଣ୍ଣ-ରେଖା ନିଜର ତୀର୍ଯ୍ୟକ୍ ଗତି ପାଇଁ ବାୟୁର ପ୍ରତୀକ । ଏହିପରି ଭାବରେ ଚିତ୍ରର ମୂଳରେଖାଗୁଡ଼ିକ ବିଶ୍ୱଜନୀନ ଓ ସାର୍ବଜନୀନ । ନାଭି ମଣିଷ ଶରୀରର କେନ୍ଦ୍ର ହେଲାପରି, କୋଷ୍ଠକର କେନ୍ଦ୍ରବିନ୍ଦୁ ହିଁ ମୂର୍ତ୍ତିର ନାଭି ବା ମର୍ମବିନ୍ଦୁ । ବିଗ୍ରହ ରଚନାବେଳେ ମର୍ମବିନ୍ଦୁଟି ଚିହ୍ନିତ ହେଲାପରେ ସେ ସ୍ଥାନକୁ ଆଉ ମଠାମଠି ନକରି ସେହିପରି ଛାଡ଼ି ଦିଆଯାଏ । ସେଇଠୁ ଆରମ୍ଭ କରି ଶିଳ୍ପୀଧ୍ୟାନ 'ଦୃଷ୍ଟ' ରୂପଟିକୁ ଧୀରେ ଧୀରେ ଗଢ଼ିଥାଏ । ସଉରା ଚିତ୍ରକାର ମଧ୍ୟ ଗୋଟିଏ ବିନ୍ଦୁରୁ ତା ଚିତ୍ରକୁ ରୂପଦିଏ । ସେହି ବିନ୍ଦୁ ଘେରିପିଠି ସେ ଧୀରେ ଧୀରେ ତା 'ଦୃଷ୍ଟ ରୂପ ଗୁଡ଼ିକଦ୍ୱାରା ସମଗ୍ର କୋଠିଟି ଭରିଦିଏ । ଦିନନାଥଙ୍କ ଭାଷାରେ - ଜଣେ ଚିତ୍ରକର ଚିତ୍ରକ୍ଷେତ୍ରଟି ସୀମା ନିର୍ଦ୍ଧାରଣ ପରେ (କୋଠିଟିକୁ ତାହାକୁ କେତେଗୁଡ଼ିଏ ସାନ ସାନ ପଟି ଓ କ୍ଷେତ୍ରରେ ଭାଗ କରି ସେଥିରେ ଚିତ୍ର ଆଙ୍କେ । ମାତ୍ର ସଉରା ଶିଳ୍ପୀଟି ତା ଆଖିସାମ୍ନାର କାନ୍ଥଟିକୁ ଗୋଟିଏ କ୍ଷେତ୍ର ବା ଭୂମି ବୋଲି ଗ୍ରହଣ କରି ତହିଁର ଗୋଟିଏ ବିନ୍ଦୁରୁ ଆରମ୍ଭ କରି ଧୀରେ ଧୀରେ ସବୁଦିଗରେ ମାଡ଼ିଯାଇ ତାର 'କୃଷ୍ଟ' ରୂପକୁ ଆଙ୍କେ । (Unlike the Chitrakara who demarcates the painted area and the available space into bands and compartments, the Soura painter starts to draw from a point within his conceptualized wall-space and builds up his vision gradually spreading out in all directions. p. 40) ଅସଲ କଥାଟି ହେଲା ଯେ ଗୋଟିଏ ଠା'ରୁ ବା ବିନ୍ଦୁରୁ ହଂସ ଡେଣା ମେଲିବ ଓ ସେଇଠୁ ଯେତେଦୂର ଯେପରି ଉଡ଼ିବା ଦରକାର ସେତେଦୂର ଓ ସେହିପରି ଉଡ଼ିବ ।

ବହିଟି ଗୋଟିଏ ପ୍ରସ୍ତାବରେ ସରିଛି । (ଲୋକମାନଙ୍କ ମଧ୍ୟରେ) ଠିକଣା ସଚେତନତା ସୃଷ୍ଟି କରିବା ପାଇଁ (ପୁରୁଣା) ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ କେତେଗୋଟି ନକ୍ସାଙ୍କନ (ଡିଜାଇନ୍) ଓ ଚିତ୍ର-ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠିତ ହେଉ, ସେଠାରେ ସଉରା ଚିତ୍ର-ପ୍ରତିମା ଆଙ୍କିବା ଶିଖାଇବା ପାଇଁ ପ୍ରତିଭାଧର ସଉରା ତରୁଣମାନଙ୍କୁ ଶିକ୍ଷା ଦିଆଯାଉ । (To create the right kind of awareness a

Digitized by srujanika@gmail.com

few design and production centres be established in Ganjam and Koraput districts to train the talented Soura youths in production of Soura icons. p.61 ) ଅଣଆଦିବାସୀଏ ତ ଓଡ଼ିଶାରେ ଆଦିବାସୀ ବିଶ୍ୱବିଦ୍ୟାଳୟଟିଏ ସ୍ଥାପନ କରିପାରିଲେ ନାହିଁ । ଏମିତି କେନ୍ଦ୍ର କେତୋଟି ହେଲେ କରନ୍ତୁ । ସଂସ୍କୃତି ବିଶ୍ୱବିଦ୍ୟାଳୟ, ଓଡ଼ିଶା ଲଳିତ କଳା ଏକାଡ଼େମୀ ଏଥିପାଇଁ ମନଯୋଗୀ ହେଲେ ଭଲ କାମଟିଏ କରନ୍ତେ । ମାତ୍ର ମୋ ମନରେ ସବୁବେଳେ ପ୍ରଶ୍ନ - ଏହା ହେବକି ? ଏମାନେ କେହି ଏ କାମ କରିବେ କି ? ମୁଁ ଜାଣେ ଯେ ଏଠି ଏପରି କାମ ହୁଏନାହିଁ । ତେଣୁ ଦିନନାଥଙ୍କ ଏ ପ୍ରସ୍ତାବ କାର୍ଯ୍ୟକାରୀ ହେବନାହିଁ । କୋଣାର୍କ ତିଆରି କାହାଣୀ ନ ପଢ଼ି, ନ ଜାଣି, କୋଣାର୍କର ଶିଳ୍ପୋତ୍କର୍ଷ ବିଷୟରେ କୌଣସି ସପ୍ନ ଧାରଣା ନଥାଇକି ଏବର ଓଡ଼ିଆଏ ଆମେ କୋଣାର୍କ ଗଢ଼ିଥିଲୁ କହି ବାହାସ୍ଫୋଟ ମାରିଲାପରି ଗିରିଧର ବା କିଡ଼ାରୁଙ୍କ ନାତି, ଅଣନାତି ଆଉ ପଣନାତିଏ, ଆମର ଚିତ୍ରପରମ୍ପରା ଥିଲା, ଆମେ ଚିତ୍ର-ପ୍ରତିମା- ଗଢୁଥିଲୁ, ଚିତ୍ରିତ-ପ୍ରତିମା ଅଙ୍କନ କରୁଥିଲୁ ବୋଲି ହୁଏତ କହିବୁଲିବେ, ସେତେବେଳକୁ ଚିତ୍ର ବା ପରମ୍ପରା ନଥିବ ।

ଓଡ଼ିଶାର 'ପୋଥିଚିତ୍ର'ର ଗୌରବମୟ ଇତିହାସ ଅଛି । ମାତ୍ର ତାଳପତ୍ରର ଆୟୁ ସୀମିତ । ପୁଣି ତେଲ, ଉଇ, ପୋକ, ମୂଷା, ନିଆଁଠାରୁ ବର୍ତ୍ତି ବିପତ୍ତି ବି ଅଛି । ଏସବୁ ଦୃଷ୍ଟିରୁ ପୁରୁଣା ପୋଥିରୁ ନୂଆପୋଥି ନକଲ କରାଯାଇ ପୁରୁଣାକୁ 'ଜଳଶାୟୀ' କରିବା ପରମ୍ପରା ଥିଲା । ସେଥିପାଇଁ ଆମ ସମୟକୁ ବର୍ତ୍ତିଯାଇଥିବା ପୋଥିଗୁଡ଼ିକ ବେଶୀ ପୁରୁଣା ନହେବା ସ୍ୱାଭବିକ । ଏହା ସବୁ ଚିତ୍ର ଓ ଅଣଚିତ୍ର ପୋଥିପାଇଁ ପ୍ରଯୁଜ୍ୟ । ସେଥିପାଇଁ ଏବେ ମଧ ବର୍ତ୍ତି ରହିଥିବା ପୋଥିଗୁଡ଼ିକ ବିଶେଷରେ ଚିତ୍ର ପୋଥିଗୁଡ଼ିକ ପୁସ୍ତକାକାରରେ ପ୍ରକାଶିତ ହୋଇ ବା ମାଇକ୍ରୋଫିଲ୍ମ, ମାଇକ୍ରୋଫିସ୍ ବା ଅଧୁନା ଉପଲବ୍ଧ ଅନ୍ୟାନ୍ୟ ପ୍ରଣାଳୀରେ ଉତ୍ତରପିଢ଼ିମାନଙ୍କ ପାଇଁ ସଂରକ୍ଷିତ ହେବା ଆବଶ୍ୟକ । ଓଡ଼ିଶାର ସଂସ୍କୃତି ବିଭାଗ ଓ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଅଳ୍ପ କେତେଖଣ୍ଡି ଚିତ୍ରପୋଥି ପ୍ରକାଶ କରି ଦୀର୍ଘକାଳ ହେଲା ନୀରବ ରହିଛନ୍ତି । ଏହି ପରିପ୍ରେକ୍ଷୀରେ ଏବର୍‌ହାର୍ଡ୍ ଓ ଦିନନାଥଙ୍କ ମିଳିତ ପ୍ରଚେଷ୍ଟାରେ ଜୁରିକ୍‌ର ରିଟ୍‌ବର୍ଗ ମ୍ୟୁଜିୟମରେ ସଂରକ୍ଷିତ ଓ ଅନେକଦିନ ତଳେ ଏଲିସବୋନରଙ୍କ ଦ୍ୱାରା ସଂଗୃହୀତ ଉପେନ୍ଦ୍ର ଭଞ୍ଜଙ୍କ ରସିକ-ହାରାବଳୀର ଚିତ୍ରପୋଥିର ସଂପାଦନା ଓ ପ୍ରକାଶନ ଅତୀବ ସ୍ପୃହଣୀୟ ଏକ ଘଟଣା । ଖାଲି ପୁସ୍ତକାକାରରେ ପ୍ରକାଶିତ ହୋଇଥିଲେ, ଏହା ପ୍ରକାଶିତ ଚିତ୍ରପୋଥି ରୂପେ ତାଲିକାଭୁକ୍ତ ହୋଇଥାନ୍ତା । ମାତ୍ର ଏ ପୁସ୍ତକଟି ଯେପରି ରୁଚିକର, ମନୋହର, ପରିଚ୍ଛନ୍ନ ଓ ମୂଳାନୁଗ ଭାବରେ ପ୍ରକାଶିତ ହୋଇଛି, ତାହା ଏ କ୍ଷେତ୍ରରେ କାମ କରୁଥିବା ବା ଭବିଷ୍ୟତରେ କାମ କରିବାକୁ ବାହାରିବା ସମସ୍ତଙ୍କର ଆଦର୍ଶ ହୋଇ ରହିବ । ବହିଟି ଜର୍ମାନ୍ ଭାଷାରେ ପ୍ରକାଶିତ ହୋଇଛି । ଶିରୋନାମଟି ହେଲା 'ରସିକ-ହାରାବଳୀ' ଏହା ଜର୍ମାନ୍ ନାମ । ଏହି ଶିରୋନାମ ତଳେ ଉପ-ଶିରୋନାମଟିଏ ଦିଆଯାଇଛି - Self illustriate Palmblatter Zur Rasika Haravali – Romanze des Dichters Upendera Bhanja von Orissa, Indian. ଏହାର ମୋଟାମୋଟି ଓଡ଼ିଆ ଅର୍ଥ ହେବ : ଭାରତର ଓଡ଼ିଶାର ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୟ କାବ୍ୟ ରସିକ ହାରାବଳୀର ଏକ ଚିତ୍ରିତ ତାଳପତ୍ର ପୋଥି ।

ଓଡ଼ିଶାର ପୁରୁଣା ଭିତ୍ତିଚିତ୍ର ଓ ପୋଥିଚିତ୍ରଗୁଡ଼ିକର ପରିଚୟ ଲିପି ସେଇ ଚିତ୍ର ପାଖରେ ଦିଆଯାଇଥାଏ । ଇଂରାଜୀରେ ଆମେ ଏହାକୁ "ଲାବେଲ ବା ଲେବୁଲ" ମରା ଚିତ୍ର କହୁଁ । ରସିକ ହାରାବଳୀର ଚିତ୍ରଗୁଡ଼ିକରେ ଏହିପରି ପରିଚୟ ଲେଖାହୋଇଛି । ଗଛ-ଗଛ, ଫଳ-ଫଳ, ଚଢେଇ-ଚଢେଇଙ୍କ ମଧରେ ପାର୍ଥକ୍ୟ ଦେଖାଇବା ପାଇଁ ହେଉ ବା ନଜାଣିବାର ଲୋକଙ୍କୁ ଜଣାଇବା ପାଇଁ ହେଉ, ଅଙ୍କନ-ଭିନ୍ନତା ସହିତ ଠିକଣା ପରିଚୟ ଲେଖାଯାଇଛି - ଏ ଆମ୍ବ, ଏ ଆୟଡ଼ା, ଏ ବେଲ, ଏ ଗୁଆ, ଏ ଟଭା ବା ଏ ହଂସ, ଏ ବକ, ଏ ହଂସରାଳୀ, ଏ ଗଣ୍ଡଭୈରବ ଠାରୁ 'ବାଘ-ଠେକୁଆ' ଆଦି

Digitized by srujanika@gmail.com

ଲେଖା ହୋଇଛି । ପୁଣି ଚିତ୍ରିତ ଘଟଣା ବୁଝାଇବା ପାଇଁ ମଧ୍ୟ ସେହିପରି ପରିଚୟ ଲେଖା ଅଛି - 'ଏପରେ ଗନ୍ଧସତୀ', 'କୋକିଳ ସ୍ନାନ', 'ଏଠାରେ ପାଦ ଘଷୁଛନ୍ତି' ଇତ୍ୟାଦି । ପୋଥିଟି ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ଲିଖିତ ଓ ଚିତ୍ରିତ ହୋଇଥିଲା ବୋଲି ଅନୁମାନ । ପ୍ରସଙ୍ଗ କ୍ରମେ ଲେଖକ ଦୁହେଁ ୧୮୯୦ରେ ଅଙ୍କିତ ଚିତ୍ରକର ରଘୁନାଥ ପୃଷ୍ଟିଙ୍କର କେତୋଟି 'ପୋଥିଚିତ୍ର' ପୁସ୍ତକରେ ପ୍ରକାଶ କରିଛନ୍ତି । ଫଳରେ ପ୍ରାୟ ଏକଶତାବ୍ଦୀ ବ୍ୟବଧାନରେ ଅଙ୍କିତ ଚିତ୍ରାବଳୀର ତୁଳନାତ୍ମକ ଅନୁଧ୍ୟାନ ସମ୍ଭବ ହୋଇଛି । ରସିକ ହାରାବଳୀର ଚିତ୍ରଗୁଡ଼ିକୁ 'ରଙ୍ଗିନ ଚିତ୍ରଭାବରେ' ମୁଦ୍ରିତ କରାଇବା ସହିତ ଅନେକ ଚିତ୍ରର 'କଳା-ଧଳା' ରୂପ ମଧ୍ୟ ମୁଦ୍ରିତ ହୋଇଛି । ରଙ୍ଗିନ ଓ କଳାଧଳା ଚିତ୍ରାବଳୀକୁ ତୁଳନା କଲେ ରଙ୍ଗୀନ ଚିତ୍ରଗୁଡ଼ିକର 'ମଣ୍ଡନ' ପୁଣି ପ୍ରକଟିତ ହେଲାବେଳକୁ 'କଳା-ଧଳା' ଚିତ୍ରର ତୀକ୍ଷ୍ଣତା (Sharpness) ମନୋଯୋଗ ଆକର୍ଷଣ କରୁଛି । ପ୍ରସଙ୍ଗକ୍ରମେ ଆଉ କେତୋଟି ଚିତ୍ରପୋଥିର ଚିତ୍ର ମଧ୍ୟ ମୁଦ୍ରିତ ହୋଇଛି । ସବୁଗୁଡ଼ିକୁ ଦେଖିଲେ ପୋଥିଚିତ୍ରର ପରମ୍ପରା, ପ୍ରବାହ ତଥା ବିବର୍ତ୍ତନର ସୂଚନା ମିଳୁଛି । ଓଡ଼ିଶା ପୋଥିଚିତ୍ରର ଏକ ସଂକ୍ଷିପ୍ତ ଐତିହାସିକ ବିବରଣୀ ପ୍ରଶ୍ନର ଅନ୍ୟତମ ଆକର୍ଷଣ । ଏ ଗ୍ରନ୍ଥଟିର ଇଂରାଜୀ ଓ ଓଡ଼ିଆ ସଂସ୍କରଣ ପ୍ରକାଶିତ ହେବା ଉଚିତ । ଇଂରାଜୀ ସଂସ୍କରଣ ଦ୍ୱାରା ଭାରତ ଓ ଭାରତ ବାହାରେ ଆହୁରି ଅନେକ ଆଗ୍ରହୀ ଲୋକ ଓଡ଼ିଶାର ଚିତ୍ର-ପରମ୍ପରା ସହ ପରିଚିତ ହୋଇପାରନ୍ତେ । ଓଡ଼ିଆ ସଂସ୍କରଣରେ ଦୁଇଟି ଲାଭ ହୁଅନ୍ତା । ଓଡ଼ିଶାର ବହୁଲୋକ ନିଜର 'ପୋଥିଚିତ୍ର' ସହ ପରିଚିତ ହୁଅନ୍ତେ । ଦ୍ୱିତୀୟ ଲାଭ ହୁଅନ୍ତା ପାଠଭେଦରେ 'ରସିକ ହାରାବଳୀ'ର ଏକ ନିର୍ଭରଯୋଗ୍ୟ ମୂଳାନୁଗ ସଂପାଦିତ ସଂସ୍କରଣ । ଚିତ୍ରପୋଥି ଛାପିବା ଏକ ବ୍ୟୟ ବହୁଳ କର୍ମ । ମାତ୍ର ଏହାର ବ୍ଲକ୍ ବା ଟ୍ରାନ୍ସପାରେନ୍ସିଗୁଡ଼ିକ ରିଟ୍‌ବର୍ଗ ମ୍ୟୁଜିୟମ୍‌ରେ ଉପଲବ୍ଧ ହେବାଯୋଗୁଁ ଓଡ଼ିଆ ଓ ଇଂରାଜୀ ସଂସ୍କରଣର ପ୍ରକାଶନ ଅପେକ୍ଷାକୃତ କମ୍ ଖର୍ଚ୍ଚରେ ହୋଇପାରିବ । ମାତ୍ର ମୋର ସେଇ ପୁରୁଣା ପ୍ରଶ୍ନ, 'କିଏ କରିବ ?'

ଦିନନାଥ ଏକାକୀ ତଥା ଏବ୍‌ରହାର୍ଡ଼୍‌ଙ୍କ ପରି ବନ୍ଧୁମାନଙ୍କ ସହ ମିଳିତ ହୋଇ ଶିଳ୍ପ ଗବେଷଣା କାମରେ ଲାଗିଛନ୍ତି । ମୋ ଜାଣିବାରେ ଧରାକୋଟ ଜଗନ୍ନାଥ ଦେଉଳ ସଂପର୍କିତ ତାଙ୍କର ଗବେଷଣା ଗ୍ରନ୍ଥ ନିକଟରେ ମୁକ୍ତିଲାଭ କରିଛି । ସେହିପରି 'ପୁରୁଣାଚିତ୍ରର ନବଜନ୍ମ' ବା 'ନବୀକରଣ' ତାଙ୍କର ଅନ୍ୟଏକ ଗବେଷଣା । ଏହା ମଧ୍ୟ ଶୀଘ୍ର ପ୍ରକାଶିତ ହେବାର ସମ୍ଭାବନା ଅଛି । ଏ ପ୍ରବାହ କାମରେ ଲାଗି ଦିନନାଥ ଓ ତାଙ୍କ ବନ୍ଧୁମାନେ ଶିଳ୍ପ-ସିଦ୍ଧ ହେବାରେ ଈଶ୍ୱର ସେମାନଙ୍କର ସହାୟ ହୁଅନ୍ତୁ ।

Digitized by srujanika@gmail.com

**ଦିଲ୍ଲୀପ କୁମାର ତ୍ରିପାଠୀ**

## କଳା ଗବେଷଣା ଯାହାଙ୍କ ବିଳାସ

୧୯୮୫ ମସିହାର କୌଣସି ଏକ ଅପରାହ୍ନ । ଭଞ୍ଜନଗର ମହାବିଦ୍ୟାଳୟର ରୌପ୍ୟଜୟନ୍ତୀ କାର୍ଯ୍ୟକ୍ରମ ଖୁବ୍ ଜୋର୍ ସୋର୍‌ରେ ଚାଲିଥାଏ । ଲକ୍ଷ୍ମଣ କୁମାର ପରିଡ଼ା ଥାଆନ୍ତି ଅଧ୍ୟକ୍ଷ । ତାଙ୍କ ଆଦେଶରେ ଜୟନ୍ତୀ ସାଜସଜ୍ଜା କାମଟିଏ ପାଇଲି । କଲେଜ ଅଡ଼ିଟୋରିୟମ୍‌ର ସାମ୍ନାକାନ୍ଥରେ ଡିଜାଇନ୍ ହେବ । ଏଥିପାଇଁ ନଅଶହ ଟଙ୍କା ମିଳିବ । ବାଇଶିଫୁଟ ଓସାର ଏବଂ ଅଠର ଫୁଟ ଉଚ୍ଚର ଏଇ ପେଣ୍ଡାଲ୍‌ର ଦୁଇ ପାଖରୁ ଡାଳିଲତା ହେଇ ତାଳା ଉପରେ ସରିବ ଏବଂ ଠିକ୍ ମଝିରେ କଲେଜର କ୍ରେଷ୍ଟ ରହିବ । କାମ ଆରମ୍ଭ ହେଲା । ଅଧ୍ୟାପକ, ଛାତ୍ରଛାତ୍ରୀମାନେ ଆସି ତାରିଫ୍ କରିବା, ହସିବା, ଟିଟିକାରି ମାରିବା ସହ ଗଞ୍ଜାମ ଶୈଳୀରେ ଦୋଅକ୍ଷରୀରେ ପ୍ରଶଂସା କରିବାକୁ ମଧ୍ୟ ପଛେଇଲେନି । ଉପରେ କ୍ରେଷ୍ଟକୁ ରଙ୍ଗ କରିବା ବେଳକୁ ହଠାତ୍ ତଳୁ ଶବ୍ଦ ଶୁଭିଲା, 'ହଇହୋ ପେଣ୍ଟର୍, ତଳକୁ ଆସ ।' ପେଣ୍ଡାଲ୍ ତାଳା ଉପରୁ ତଳକୁ ଅନେଇଲି । ଗହମ ରଙ୍ଗର ଲୋକଟିଏ । ଚନ୍ଦନ ରଙ୍ଗର ଟସର ପଞ୍ଜାବୀ, ଦେହରେ ଚୂଡ଼ିଦାର । ବାଁ ହାତରେ ସୁନାରଙ୍ଗର ଘଣ୍ଟା, କଳାଫିତାରେ ବନ୍ଧାହେଇଛି । କାନ୍ଧରେ ଚମଡ଼ା ବ୍ୟାଗ୍, ପାଦରେ କୋଲ୍ହାପୁରୀ ଚପଲ । ପିନ୍‌ପିନ୍ କଳାବାଳ ଆଉ ଖୁବ୍‌ଷ୍ଟ୍ରଙ୍ଗ୍ ନିଶ । ବେକରୁ କଳା ସୂତାରେ ଚଷମା ଛାତି ଉପରେ ଝୁଲୁଛି । ତଳକୁ ଓହ୍ଲେଇ ନମସ୍କାର କଲି । ଭଦ୍ରଲୋକ ଜଣକ ବ୍ରହ୍ମପୁରୀ ଢଙ୍ଗରେ ପଚାରିଲେ, କୋ'ଠେ ଡ୍ରାଇଁ ପଢ଼ିଚ ହେ ..... । କିଅଣ ଖାଲି ଜାପାନିଜ୍ ଫ୍ଲୋରାଲ୍ ଆଉ ପେଟାଲ୍ ଡିଜାଇନ୍ ଯାକ ପକେଇ ଯାଉଚ । ସମ୍ଭ୍ରମରେ ଏ କଲେଜରୁ ଇତିହାସ ଅନର୍ସସହ ବି.ଏ ପାସ୍ କରି, ଖଲ୍ଲିକୋଟରେ ବର୍ଷେ ପଢ଼ି ଫେରିଆସିଛି ବୋଲି ଜଣେଇଲି । ଆଉଜଣେ ଭଦ୍ରଲୋକ ପାଖାପାଖି ସେଇ ପୋଷାକରେ ଥିଲେ । ଚନ୍ଦାମୁଣ୍ଡ, ବାଙ୍ଗରା ଏବଂ ଲହସା ପେଟ । ପର୍ସଭଳି ବେକରେ ଝୁଲୁଥିବା କନା ବ୍ୟାଗ୍‌ରୁ ଜାଇଫଳ ଖାଉଥିଲେ । ମୋ କଥାରେ ସେ ଅବଶୋଷ କଲେ କିନ୍ତୁ ଡିଜାଇନ୍ ଭଲ ହେଇଛି ବୋଲି ପ୍ରଶଂସା କଲେ । ପଚାରିଲେ ଛାତ୍ରବୃତ୍ତି ପାଇଲେ ପାଠ ପଢ଼ିବ ? ମୁଁ ନିରୁତ୍ତର । ପରଦିନ ଇଂରାଜୀ ଅଧ୍ୟାପକ ବିଷ୍ଣୁ ପ୍ରସାଦ ପରିଚ୍ଛା ପଟ୍ଟନାୟକ ଭିଜିଟିଙ୍ଗ୍ କାର୍ଡ଼ଟିଏ ଦେଇ କହିଲେ, କାଲି ମିଶିଥିବା ଏଇ ଲୋକଙ୍କୁ ଭୁବନେଶ୍ୱରରେ ଦେଖାକର । ଦଶବାର ଦିନ ପରେ ଭୁବନେଶ୍ୱରରେ ଯାଇ ଦୁଇଜଣଯାକ ଭଦ୍ରଲୋକଙ୍କୁ ଦେଖାକଲି । ପ୍ରଥମ ଜଣକ ଥିଲେ ଡକ୍ଟର ଦିନନାଥ ପାଠୀ ଏବଂ ଦ୍ୱିତୀୟ ଜଣକ ଡି.ଏନ୍. ରାଓ । ଯଥାକ୍ରମେ ଭୁବନେଶ୍ୱର ବି.କେ. ଚାରୁକଳା ମହାବିଦ୍ୟାଳୟର ଅଧ୍ୟକ୍ଷ ଏବଂ ଗ୍ରାଫିକ୍ କଳାର ଅଧ୍ୟାପକ ।

ଭାଲିଆଖାଇ ଗାଁରେ ରହି ଭଞ୍ଜନଗର ବ୍ୟତୀତ ବ୍ରହ୍ମପୁରକୁ ହିଁ ବଡ଼ ସହର ବୋଲି ଭାବୁଥିବା ମୋ ଭଳି ଜଣେ ଗାଉଁଲି, ଯେତେବେଳେ ଭୁବନେଶ୍ୱରରେ ପହଞ୍ଚିଲା, ତା ଆଖି ଖୋସି ହୋଇଗଲା । ଭୁବନେଶ୍ୱରରେ ପହଞ୍ଚି ଏବର ପୁରୁଣା ବସ୍‌ଷ୍ଟାଣ୍ଡରେ ଓହ୍ଲେଇ ସ୍ଥାଣୁ ହେଇଗଲି । କିଏ ଅଛି ଯେ କାହା ପାଖକୁ ଯିବି । ରାତି ଆଠ'ଟା ନ'ଟା । ପରେଡ଼୍ ପଡ଼ିଆର ସିମେଣ୍ଟ ଚାନ୍ଦିନୀରେ ବସି ବସି ଥକ୍କା ମାଇଲି । ଖୁଲ୍‌ଖୁଲିଆ ପବନରେ ନିଦ ଆସିଗଲା । ସାର୍ଟିଫିକେଟ୍ ଗଣ୍ଡାକ ଫୋମ୍ ବ୍ୟାଗ୍ ଭିତରେ । ମୁଣ୍ଡତଳେ ବ୍ୟାଗ୍ ରଖି ନିଦେଇଗଲି । ରାତି ଦୁଇଟା ସରିକି ହେବ । ପିଠିରେ ପ୍ରହାରଟିଏ ପଡ଼ିଲା । ଛାନିଆରେ ନିଦ ଛାଡ଼ିଗଲା । ଅନେଇଲି । ଦୁଇଟି ଓଡ଼ିଶା ପୋଲିସ୍ । ତଲାସି ନେଲାପରେ ଘଟଣା ବୁଝିଲେ । ସିଧା ଏକ ନମ୍ବର ଥାନାକୁ ନେଇ କାଠ ବେଞ୍ଚରେ ବସେଇଲେ । ରାତି ସେଇଠି ପାଇଲା । ସକାଳୁ ଶୌଚାଳୟରେ ନିତ୍ୟକର୍ମ ସାରି ଠିକଣା ଯାଗାରେ ପହଞ୍ଚିବା ପରେ କଲେଜର ବଡ଼ବାବୁ ଗଗନ ମହାନ୍ତି ହେଟାଭଳି ରଡ଼ିକରି କହିଲେ, ପ୍ରିନ୍‌ସ୍‌ପାଲ୍ ନାହାନ୍ତି । ବିଦେଶ ଯାଇଛନ୍ତି । ଏବେ ସେପ୍‌ଟେମ୍ବର ମାସରେ ଶଳା କୋଉଠି ଆଡ଼ମିଶନ୍ ହେଲାଣି ? କୋଉଠୁ ଆଉଚ ବେ । ଭାରି

Digitized by srujanika@gmail.com

ଅଖାଡୁଆ ଲାଗିଲା । ପୁଣି ପାଞ୍ଚଦିନ ଅପେକ୍ଷା କରିବାକୁ ପଡ଼ିବ । ରାଓ ସାର୍‌ଙ୍କ ସହ ଦେଖା ପରେ ଧୈର୍ଯ୍ୟ ଧରିଲି । ଆଶ୍ୱାସନା ପାଇ ଫେରିଲି ।

ପାଠୀ ସାର୍ ବିଦେଶରୁ ଫେରିବା ପରେ ମୋର ଦ୍ୱିତୀୟ ବାର୍ଷିକ ଛାତ୍ରରୂପେ ନାମ ଲେଖାଗଲା । ସେତେବେଳର ଭଞ୍ଜନଗର ବିଧାୟକ ଉମାକାନ୍ତ ମିଶ୍ରଙ୍କ ସରକାରୀ ବାସଭବନରେ ରହଣି ହେଲା । ଚାରି ପାଞ୍ଚ ମାସ ପରେ ସେଠି ଆଉ ରହିବା ଅସମ୍ଭାଳ ହେଲା । ନିର୍ବାଚନ ମଣ୍ଡଳୀର ନେତା, ଖଣ୍ଡିନେତା, କୁଜିନେତା, ଗଜାନେତା ସବୁ ସେଇଠି ଠୁଳ ହେବା ସ୍ୱାଭାବିକ । କଳାଚର୍ଚ୍ଚାର ମୋଡ଼ ବଦଳିଲା । ଉମାବାବୁଙ୍କ ସାହାଯ୍ୟ ମତେ ଭୁବନେଶ୍ୱରକୁ ଚିହ୍ନେଇଲା । ବାଧହେଇ ବରଗଡ଼ରେ ଭଡ଼ାଘରଟିଏ ନେଇ ରାକୁ ଜେନା କଲୋନୀରେ ରହିଲି । ସେଇ ଜାଗାରେ କଲେଜର ବହୁ ପିଲା ମେସ୍‌କରି ରହୁଥିଲେ । କଲେଜ ପରିବେଶରେ ଖାପଖୁଆଇ ଚଳିବା ଯଦିଓ କଷ୍ଟ ନଥିଲା, ମାସରେ ପନ୍ଦର ଦିନ ମଧ୍ୟ ଭୁବନେଶ୍ୱରରେ ରହିବା କଷ୍ଟ ହେଉଥିଲା । ଆର୍ଥିକ ପରିସ୍ଥିତି ସ୍ୱଚ୍ଛଳ ନଥିବାରୁ ପ୍ରତିମାସରେ ଦଶ ପନ୍ଦର ଦିନ ପାଇଁ ଗାଁକୁ ଚାଲି ଆସୁଥିଲି । ଭୁଲ୍, ଠିକ୍, ଅନିୟମିତତାକୁ ରାଓ ସାର୍ ଜଗିଦେଉ ଥିଲେ ଏବଂ ସୁଧାରିନେଇ ମୋର ଜଣେ ତତ୍ତ୍ୱାବଧାରକ ହୋଇଯାଇଥିଲେ । ରାଓ ସାର୍ ଓ ପାଠୀ ସାର୍‌ଙ୍କ ଅଗାଢ଼ ବନ୍ଧୁତ୍ୱ । ମୁଁ ବୁଝିପାରୁ ନଥିଲି, ଖଲ୍ଲିକୋଟରେ ତ ଏମିତି ବନ୍ଧୁତ୍ୱ ଶିକ୍ଷକମାନଙ୍କ ଭିତରେ ନଥିଲା । ଏଠାରେ କିପରି ସମ୍ଭବ ! କ୍ଲାସ୍ ସରିବା ପରେ ରାଓ ସାର୍ ତାଙ୍କର ବ୍ୟକ୍ତିଗତ କ୍ଲାସ୍ କରୁଥିଲେ ଏବଂ ମୋତେ ନିର୍ଧୁମ୍ ଶୋଧୁଥିଲେ । ଦରକାର ହେଲେ ଚାହା ପାନ ବି ଖୁଆଉଥିଲେ । ଆର୍ଟ୍ କଲେଜରେ ଏସବୁ କଥା ନୂଆ ନୁହେଁ । **ରାଓ ସାର୍‌ଙ୍କ ଯତ୍ନରେ ଧରାହେଇ ମୁଁ ପାଠୀ ସାର୍‌ଙ୍କ ସାମ୍ନାରେ ପହଁଞ୍ଚିଲି । ହଠାତ୍ ସାମ୍ନାରେ ପଡ଼ି ଖସିପାରିଲିନି । କହିଲେ 'କିହୋ' ! ଭଞ୍ଜନଗର ଡହରା, ଇତିହାସରେ ଗ୍ରାଜୁଏଟ୍ ହେଇଛ, ପଢ଼ାଶୁଣା ହେଉ କହି ବ୍ୟାଗ୍‌ରୁ ତାଙ୍କର ଗୋଟିଏ ପୁରୁଣା ଇଂରାଜୀ ପ୍ରବନ୍ଧକୁ ମତେ ବଢ଼େଇଦେଇ ଟାନ୍‌ସ୍‌ଲେସନ୍ କରିବାକୁ କହିଲେ । ଅସମ୍ଭବ ଆନନ୍ଦ ଓ ସଂଭ୍ରମ । ଟ୍ରାନ୍‌ସ୍‌ଲେସନ୍ କାର୍ଯ୍ୟକୁ କଷ୍ଟେ ମଷ୍ଟେ ସାରି ଫେରେଇ ସାରିବା ପରେ, ଆଉ ଖସିବାର ନୁହେଁ । ମୋର ଅଜ୍ଞାତରେ କଳା ସମାଲୋଚନା ପ୍ରଶିକ୍ଷଣ ଦେବା ବୋଧେ ସାର୍ ଆରମ୍ଭ କରିଦେଲେ ।** ଚିତ୍ର ପ୍ରଦର୍ଶନୀଟିଏ ହେଉ ବା ଚିତ୍ର ସମ୍ପର୍କୀୟ ଅନୁଷ୍ଠାନଟିଏ ହେଉ, ସେସବୁର ସମାଲୋଚନା ଓ ଉପସ୍ଥାପନାର କୌଶଳ ପାଠୀ ସାର୍ ଶିଖେଇ ଆସିଲେ । ଏ ପ୍ରବୃତ୍ତି ଏପରି ହୋଇଗଲା ଯେ, କାର୍ଯ୍ୟକ୍ରମର ଉପସ୍ଥାପନାକୁ ସନ୍ଧ୍ୟା ସୁଦ୍ଧା ଲେଖି, ସକାଳୁ ସକାଳୁ କଟକ ଯାଇ ଖବର କାଗଜ ଅଫିସ୍‌ରେ ଦେଇ ଆସିବାକୁ ହୁଏ । ଗାଡ଼ି ଖର୍ଚ୍ଚ ଓ ଖାଇବା ଖର୍ଚ୍ଚ ଦେଇ ସାର୍ ଅନ୍ୟ କାମରେ ବ୍ୟସ୍ତ ରହନ୍ତି । ପରଦିନ କାଗଜରେ ଲେଖା ବାହାରିବା ପରେ କଲେଜରେ ହଇଚଇ ହୁଏ । କିଛି ଶିଳ୍ପୀ ଖୁସି ହେଲାବେଳେ ଆଉକିଛି ବିଚଳିତ ମଧ୍ୟ ହେଉଥିଲେ । ଏମିତି ଥରେ 'ପ୍ରଜାତନ୍ତ୍ର' ସାପ୍ତାହିକୀରେ ''କର୍ତ୍ତବ୍ୟନିଷ୍ଠ ଶିଳ୍ପୀର ନାମ- ଫଳକ ଦରକାର ନାହିଁ'' (୧୪-୨୦, ଏପ୍ରିଲ୍, ୧୯୯୧) ଶୀର୍ଷକରେ ଶିଳ୍ପୀ ଚନ୍ଦ୍ରଶେଖର ରାଓଙ୍କର ସାକ୍ଷାତ୍‌କାରଟିଏ ଛାପିଥିଲି । ଏଇ କଳା ସମାଲୋଚନା ଶିଳ୍ପୀମାନଙ୍କ ଉପରେ ଖୁବ୍ ପ୍ରଭାବ ପକାଇଲା । କଲେଜର କିଛି ଅଧ୍ୟାପକ ମୋ ଉପରେ ଖୁବ୍ କ୍ଷୁବ୍ଧ ହେଇଗଲେ । କାରଣ ସେତେବେଳେ କଲେଜରେ ନେମ୍‌ପ୍ଲେଟ୍‌କୁ ନେଇ ଏକ ଗରମାଗରମ ପରିସ୍ଥିତି ହେଇଥିଲା । ଶିବ ପାଣିଗ୍ରାହୀ ତାଙ୍କ ନେମ୍‌ପ୍ଲେଟର ସାଇଜ୍ ଯାହା ରଖିଲେ, ବ୍ୟୋମକେଶ ମହାନ୍ତି (ଦୁହେଁ ଚିତ୍ର ବିଭାଗର ଅଧ୍ୟାପକ) ତାଙ୍କ ନେମ୍‌ପ୍ଲେଟର ସାଇଜ୍ ଦିଗୁଣା କରୁଥିଲେ । 'ପ୍ରଜାତନ୍ତ୍ର'ର ସାକ୍ଷାତ୍‌କାର ଦେଖି ବ୍ୟୋମକେଶ ସାର୍ ଖୁବ୍ ରାଗିଗଲେ ଏବଂ ଖୁବ୍ ଗୁଡ଼ାଏ ବକି ଦେଇଗଲେ । ଶେଷରେ ମାଡ଼ଦେବାକୁ ବି ଧମକି ଛାଡ଼ିଲେ ନାହିଁ । ଓଡ଼ିଶାରେ କଳା ସଚେତନତା ଓ ଉନ୍ନତିରେ ଲୋକମାଧ୍ୟମ ଓ ଛପାମାଧ୍ୟମର ଗୁରୁତ୍ୱ ନେଇ ଆଗେଇବା ବେଳେ ସମାଲୋଚକଙ୍କୁ ମାଡ଼ ମାରିବା, ତାଙ୍କ ପଛରେ ଗୁଣ୍ଡା ଲଗେଇବା କଥା ଶୁଣି ପାଠୀ ସାର୍ ବିଚଳିତ ନ ହେବା ଦେଖି ମୁଁ ଅବାକ୍ ହୋଇଯାଇଥିଲି । ସଚ୍ଚୋଟତା ଓ ଦାୟିତ୍ୱବୋଧର ଏକ ସତେଜ ଉଦାହରଣ

Digitized by srujanika@gmail.com

ସାର୍ଙ୍କଠାରୁ ସେ ଦିନ ମୁଁ ଶିଖିଲି । କଳା ସମାଲୋଚନାରେ ଆଉ ଦୁଇପାଦ ଆଗେଇବାକୁ ପ୍ରୟାସ କଲି । କଲେଜର ହେଉ ବା ଲଳିତ କଳା ଏକାଡ଼େମୀର ହେଉ, ଅଥବା ୱାର୍କିଙ୍ଗ୍ ଆର୍ଟିଷ୍ଟ୍ସ୍ ଆସୋସିଏସନ୍‌ର ହେଉ ଅବା ଶିଳ୍ପୀ ସଂସଦର କୌଣସି କାର୍ଯ୍ୟକ୍ରମ ହେଉ କଳା ସମାଲୋଚନାରୁ ଏମାନେ ବାଦ ପଡୁନଥିଲେ। ସାର୍ଙ୍କ ଏଭଳି ପ୍ରୋତ୍ସାହନ ହୁଏତ ମୋର ପରବର୍ତ୍ତୀ ଜୀବନକୁ ସମାଲୋଚକଭାବେ ଗଢ଼ିତୋଳିବାରେ ସାହାଯ୍ୟ କରୁଥିଲା । ସାର୍ କହନ୍ତି, ଛୋଟ ଛୋଟ ଲେଖାକୁ କେବେ ହେୟ କରନି । ପାଣିବିନ୍ଦୁରୁ ସମୁଦ୍ର ହେଲା ପରି, ଛୋଟ ଛୋଟ ଉପସ୍ଥାପନା ଶେଷରେ ସନ୍ଦର୍ଭ ହୋଇଯାଇପାରେ । ଗବେଷଣାର ସରୁଖିଅ ଏଇଠୁ ଆରମ୍ଭ ହୁଏ । ଏହାକୁ ତେଣୁ ନ୍ୟୂନ କରନାହିଁ। ସାର୍ଙ୍କ ଏଭଳି ଅଭିବ୍ୟକ୍ତି ତାଙ୍କର ଗବେଷଣାତ୍ମକ ପ୍ରବୃତ୍ତି ଓ ଅନୁଭୂତିର ମାନ ବଢ଼େଇଥିବା ଆମେ ଜାଣିପାରିଲୁ । ୧୯୬୫ ମସିହାରୁ ଏ ଅଭ୍ୟାସ ସାର୍ଙ୍କ ରହିଛି ଓ ରହିଆସିଛି । ଗବେଷଣାକୁ ଏକ ସଉକ୍ ଭାବେ ସେ ଗ୍ରହଣ କରିଆସିଛନ୍ତି । **ଗବେଷଣା ତାଙ୍କର ପ୍ରାଣ, ଉନ୍ମାଦ ତଥା ଶିହରଣ । ଅନୁଭବ ପରେ ଜଣାଗଲା ଯେ, ସାର୍ଙ୍କ ଗବେଷଣା କାର୍ଯ୍ୟ ଖୁବ୍ ପ୍ରଭାବଶାଳୀ, ଖର୍ଚ୍ଚାନ୍ତ ତଥା ଆମୋଦପୂର୍ଣ୍ଣ । ଗ୍ରନ୍ଥ ଅଧ୍ୟୟନ ସହ କ୍ଷେତ୍ର ଅଧ୍ୟୟନ (field-study) ତାଙ୍କ ଜୀବନ ଓ ଜୀବିକାର ଏକ ନିର୍ଘାତ ନିଶା । କୌଣସି ନୂଆ ଦରବ ସନ୍ଧାନରେ ଗବେଷକ ମାତିଯାଇ, କ୍ରମବ୍ୟତିକ୍ରମର ପର୍ଯ୍ୟାୟ ପାର ହେଲା ପରେ ''ଇଉରେକା''ରେ ଯେଉଁ ଅପାର ଆନନ୍ଦ ପାଏ, ତାହା ରମଣ ସୁଖ ସହିତ ସମାନ ହୋଇଯାଏ ।** ଅନୁସନ୍ଧାନର ଅବୟବକୁ କାଟି କାଟି କ୍ଷତ ସ୍ଥାନରୁ ଅଣୁପ୍ରମାଣ ସନ୍ଧାନ ପାଇବା ଯେତିକି ଯନ୍ତ୍ରଣାଦଗ୍ଧ ସେତିକି ଆନନ୍ଦମୟ । ତାହା ହିଁ ସତ୍ୟ, ଶିବ ଓ ସୁନ୍ଦର । କାର୍ଯ୍ୟ କରୁ କରୁ କୁଫଳର ସାମନା କରିବାକୁ ପଡ଼ୁଥିଲେ ମଧ୍ୟ ସଫଳ ନ ହେବା ଯାଏ ଗବେଷଣାର ନିଶା ମୁଣ୍ଡରୁ ଓହ୍ଲାଏନି । ୧୯୮୭ ମସିହାରେ ତାଙ୍କର ଧରାକୋଟ ସନ୍ଦର୍ଭ କାର୍ଯ୍ୟରେ ସାମିଲ ହେବାପରେ ଏ ସଉକକୁ ମୁଁ ଅଙ୍ଗେ ଅଙ୍ଗେ ଅନୁଭବ କରିଛି । ମୁଁ ଗଞ୍ଜାମ ବାସିନ୍ଦା ହୋଇଥିଲେ ହେଁ, ଧରାକୋଟ ରାଜ୍ୟର କଳାସଂସ୍କୃତିକୁ କେବେ ପାଖରୁ ଦେଖିବା ସୁଯୋଗ ପାଇ ନଥିଲି । ଆମ ଘରେ ଧରାକୋଟ ରାଜା କୃଷ୍ଣସିଂହଙ୍କ ପ୍ରଣୀତ ମହାଭାରତକୁ ନନା ଚର୍ଚ୍ଚା କରୁଥିବା ଶୁଣିଛି । ପରେ ଯେତେବେଳେ ସାର୍ଙ୍କ ଗବେଷଣା ନିଶାରେ ଉଦ୍‌ବୁଦ୍ଧ ହୋଇ ନିଜେ ତାଙ୍କ ସହ ଗଲି, ମୋ ମାନସିକ ସ୍ତରରେ ଐନ୍ଦ୍ରଜାଲିକତାର ସଂଭାଷଣ ଚକ୍କର୍ କାଟିଲା । ଧରାକୋଟ, ଅସରନ୍ତି କଳା ଓ ସାହିତ୍ୟର ଗନ୍ତାଘର, ରାଜକୀୟତା ଓ ରାଜପରମ୍ପରାର ରୂପରେଖ ମତେ ଅଭିଭୂତ କରିଦେଲା । ମନକୁ ଧିକ୍କାର କରି ଭାବିଲି, ଧରାକୋଟ ଭଳି ମୋର ଜନ୍ମସ୍ଥାନ ଘୁମୁସରରେ କ'ଣ ବା ନାହିଁ ? ତାକୁ କେମିତି ଉଦ୍ଧାର କରାଯାଇପାରିବ ? ଦଶ-ବାରଥର ଧରାକୋଟକୁ ସାର୍ଙ୍କ ଗବେଷଣା କାର୍ଯରେ ତଥ୍ୟ ସଂଗ୍ରହ ପାଇଁ ଯାଇଛି ଏବଂ ବୈଷୟିକ ଜ୍ଞାନକୁ ମୋ ଅଜାଣତରେ ସାର୍ ମତେ ଦେଇଦେଇଛନ୍ତି ବୋଲି ପରେ ଜାଣିପାରିଲି । ମୁଁ ମୋର ସନ୍ଦର୍ଭ ପ୍ରସ୍ତୁତ କଲାବେଳେ ସଚେତନ ହେଲି ଯେ, ଆଗରୁ ସାର୍ ବୋଧେ ମତେ ଏଇ କାର୍ଯ୍ୟ କରିବାକୁ ପ୍ରଶିକ୍ଷଣ ଦେଉଥିଲେ ।

ବର୍ଷର ଚାରିମାସ ଗବେଷଣାରେ ସେ ବିତେଇ ଥାଆନ୍ତି । କ୍ଷେତ୍ର ଅଧ୍ୟୟନ ଯିବାବେଳେ ଏକା ଯିବା କେବେ ଆମେ ଦେଖିନାହୁଁ । ସାଙ୍ଗରେ ତାଙ୍କର ଟିମ୍ ରହନ୍ତି । ଟିମ୍‌ଟି ଚାରି ପାଞ୍ଚଜଣଙ୍କ ଭିତରେ ସୀମିତ ରହେ । ଅଧିକା ହେଲେ ଟ୍ୟାକ୍ସିରେ ଜାଗା ଧରେନି । ଡ଼ି.ଏନ୍. ରାଓ ସାର୍, ବାଳକୃଷ୍ଣ ନନ୍ଦ, ମୁଁ ତଥା ସାର୍ଙ୍କୁ ନେଇ ଟିମ୍ । ରାଓ ସାର୍ ତିନି ଚାରୋଟି କ୍ୟାମେରାକୁ ବ୍ୟାଗ୍‌ରେ ପୂରାନ୍ତି । କଳାଧଳା, ରଙ୍ଗିନ୍ ତଥା ଟ୍ରାନ୍ସପେରନ୍‌ସି ରୋଲ୍ ପ୍ରଚୁର କିଣାଯାଇ ସତନ୍ତ୍ର ବ୍ୟାଗରେ ମହଜୁଦ ରହେ । ସାତ ଆଠ ଯୋଡ଼ା ପେନ୍‌ସିଲ୍ ବ୍ୟାଟେରୀ, ଦୁଇଯୋଡ଼ା ଫ୍ଲାସ୍‌ଗନ୍ ପ୍ରସ୍ତୁତ ହୋଇରହେ । ଜାଗା ଉପରେ ଏମାନେ କାମରେ ଆସନ୍ତି । ସାର୍ ଟ୍ୟାକ୍ସିର ବାଁପଟ ସିଟ୍‌ରେ ବସନ୍ତି ବା କେବେ କେବେ ଡ୍ରାଇଭର ପାଖରେ ବସି ଆଡ୍ଡା ଜମାନ୍ତି । ପାଖରେ ରାଓ ସାର୍ । ବାଳକୃଷ୍ଣ ଓ ମୁଁ ଆଗପଛ ହେଇ ବସିଯାଉ । ଗାଡ଼ି ତଥ୍ୟ ସଂଗ୍ରହରେ ଦକ୍ଷିଣ ଓଡ଼ିଶା ଆଡ଼କୁ ଛୁଟେ । ସାର୍ ତାଙ୍କର କାଗଜପତ୍ର ଓ କ୍ୟାମେରା ବ୍ୟାଗ୍

Digitized by srujanika@gmail.com

ଧରି ବସନ୍ତି । ନିଜର ପୋଷାକପତ୍ର, ପୁସ୍ତକ, ନୋଟ୍‌ବହି ଓ ଅନ୍ୟାନ୍ୟ ରେକର୍ଡ଼ ପତ୍ର ପ୍ରତି ସାର୍ ଖୁବ୍ ସଚେତନ । କ୍ୟାମେରା ବ୍ୟାଗ୍ କିପରି ବାଦ ପଡ଼ିବ । ନିଜନିଜ ଦାୟିତ୍ୱରେ ସଜାଗ ରହିବା ପାଇଁ ସମସ୍ତଙ୍କୁ ସେ ତାଗିଦା ଦେଇଥାନ୍ତି । ତ୍ରୁଟିବିଚ୍ୟୁତି ହେଲେ ହରିବ୍ରହ୍ମାବି ରଖି ପାରିବେନି । ଦରକାର ହେଲେ ସାର୍‌ଙ୍କ ହାତ ଉଠିଯିବା ବି ଅସମ୍ଭବ ନୁହେଁ । ଅଧିକାଂଶ ସମୟରେ ପାଠୀ ସାର୍ ତାଙ୍କର ସବୁ ରାଗ ରାଓ ସାର୍‌ଙ୍କ ଉପରେ ସାରିଦିଅନ୍ତି, ବେଳେବେଳେ ବଳକା ତକ ମୋ ଉପରେ ପଡ଼ିଯାଏ । ଆମେ ଜାଣିପାରୁ ବର୍ତ୍ତମାନ ଭୋକ ବୋଧହୁଏ ତୀବ୍ର ହେଲାଣି, ହୋଟେଲ ଆଡ଼େ ମୁହାଁଉ ।

ସମୟାନୁବର୍ତ୍ତିତା ସାର୍‌ଙ୍କ ଏକ ପରମ ସହଚର । ତାଙ୍କ ନନାଙ୍କଠାରୁ ଏହା ପାଇଛନ୍ତି ବୋଲି ସେ ସବୁବେଳେ କହନ୍ତି । ଭୋର୍ ପାଞ୍ଚଟାରୁ ଉଠି ନିତ୍ୟକର୍ମ ସାରି ପୋଷାକ ପିନ୍ଧି ଛ'ଟା ସୁଦ୍ଧା ସେ ପ୍ରସ୍ତୁତ ହୋଇଯାଆନ୍ତି । ନିଜେ ପ୍ରସ୍ତୁତ ହେବା ଭିତରେ ସାର୍ ସମସ୍ତଙ୍କୁ ଡାକପକେଇ ଉଠାନ୍ତି । ରାଓ ସାର୍ ଡେରିରେ ଉଠନ୍ତି । କିନ୍ତୁ, ସାର୍‌ଙ୍କ ଡାକରେ ଉଠିବା ଆଗରୁ କୁମ୍ଭୀରଭଳିଆ ଘାଲେଇ ହେଇ ସେ ବିଛଣାରେ ପଡ଼ିରହନ୍ତି । ନଉଠିଲେ ସାର୍, ରାଓ ସାର୍‌ଙ୍କ ବିଶାଳ ବପୁ ଉପରେ ଚଢ଼ିଯାଇ କୁଦାଦଳା କଲାପରେ ମୁଁ ଚଢ଼ିଯାଏ । ସାର୍ ଏବେ ଓ୍ୱାର୍ମ୍ ଅପ୍‌ହେଇ 'ଟ୍ୱ' କାଇଁରେ'........ ବୋଲି ଖୋଜନ୍ତି । ପାଠୀ ସାର୍ କହନ୍ତି, ତାତା ରାଓ, ଏଇଟା ଲର୍ଜ୍, ତମ ଆନ୍ନାଓଦିନା ଘର ନୁହେଁ କି ଶ୍ୱଶୁର ଘର ନୁହେଁ ଯେ ଟ୍ୱ'ମିଳିବ । ଇସାରାରେ ରାଓ ସାର୍‌କୁ ସାଙ୍ଗରେ ନେଇ ଟ୍ୱ' ପିଇବା ପାଇଁ ମୁଁ ବାହାରି ପଡେ । ରାଓ ସାର୍ ତିନି ଗ୍ଲାସିଟି ଟ୍ୱ' ଧଡ଼ାଧଡ଼ ପିଇ ଆସି ସିଧା ନିତ୍ୟକର୍ମ ସାରନ୍ତି । ରାସ୍ତାରେ ଖିଆପିଆ ହୁଏ । ଡେରି ହେଲେ ଅଧୈର୍ଯ୍ୟ ହେଇ ''ଶଳା ତେଲେଙ୍ଗା, ମତେ ବୁଡ଼େଇଲୁ'' କହି ପାଠୀ ସାର୍ ଘୋଷି ହୁଅନ୍ତି । ପୁଣି ହସର ଜୁଆର ଛୁଟେ । କୁମାର ସଂଭବରୁ ସାହିତ୍ୟ ଆରମ୍ଭ ହେଇ ଚେଲୁପତିର ଅଶ୍ଳୀଳ ଶବ୍ଦ ପର୍ଯ୍ୟନ୍ତ ଚର୍ଚ୍ଚା ହେଇଯାଏ । ଗାଁ ଗାଁ ଭିତରେ ତଥ୍ୟସଂଗ୍ରହ, ନକ୍‌ସାଅଙ୍କା, ଫଟୋ, ଇଣ୍ଟେରଭ୍ୟୁରୁ ଫେରି ପାଖ ଫଟୋ ଷ୍ଟୁଡ଼ିଓରେ ରୋଲ୍ ଗୁଡ଼ିକୁ ଧୁଆଯାଏ । ଯଦି କିଛି ଅସୁବିଧା ଥାଏ, ତାହେଲେ ପୁଣି ପୁରୁଣା ଜାଗାକୁ ଫେରି ଆଉଥରେ ଫଟୋ ନେବାକୁ ପଡ଼େ । ଗାଁର ଚିତ୍ରକାରଟିଏ ହେଉ, ମିସ୍ତ୍ରୀଟିଏ, ବଢ଼େଇଟିଏ ବା କୁମ୍ଭାରଟିଏ ହେଉ, ଅଥବା କଳାସହ ଯୋଡ଼ାହୁଆ ଲୋକଟିଏ ହେଉ, ତାକୁ କେତେବେଳେ କେଉଁଠି କିଭଳି ଠାବ କରିବାକୁ ହେବ ସାର୍ ସେକଥା ଭଲଭାବେ ଜାଣନ୍ତି । ଏଭଳି ଲୋକଙ୍କୁ ଧରିବା ପାଇଁ ମୁହଁ-ଅନ୍ଧାରିଆ ସକାଳୁ, ଉଦୁଉଦିଆ ଦିପହରରେ ବା ରାତିରେ ମଧ୍ୟ ବିଭିନ୍ନ ଗାଁକୁ ଯିବା ହେଇଛି ।

ପାରମ୍ପରିକ କଳା, ଲୋକକଳା ତଥା ଆଦିବାସୀକଳାର ବିଶାଳ ଭଣ୍ଡାରକୁ ଘାଣ୍ଟି ତା ଭିତରୁ ପ୍ରକୃତ ସୁନାକୁ ଖୋଜି ବାହାର କରିବାରେ ସାର୍ ହେଉଛନ୍ତି ଓଡ଼ିଶାର ଜଣେ ମାତ୍ର ବ୍ୟକ୍ତି । ତାଙ୍କ ସହିତ ମୋ ଜଣାଶୁଣା ଆଗରୁ ଏ ନିଶାର ଆରମ୍ଭ ହୋଇଥାଏ । ତାଙ୍କର ସ୍ୱିଜସ୍ ବନ୍ଧୁ ତଥା ଜୁରିକ୍ ମ୍ୟୁଜିୟମ୍‌ର ନିର୍ଦ୍ଦେଶକ ଡକ୍ଟର ଏବର୍‌ହାର୍ଡ୍ ଫିସର୍‌ଙ୍କ ଠାରୁ ଗବେଷଣାର ସଉକ ଓ କାଏଦା ସେ ଶିଖିଛନ୍ତି । ଟର୍ଚ୍ଚ ଆଲୁଅକୁ କେତେଦୂର ଫିଙ୍ଗିବାକୁ ହେବ, ସେକଥା ମଧ୍ୟ ସେ ନିଜ ଛାତ୍ରଛାତ୍ରୀଙ୍କୁ ବୁଝେଇବାକୁ ଚେଷ୍ଟା କରିଛନ୍ତି । ଯେଉଁମାନେ ରିସର୍ଚ୍ଚର ବର୍ତ୍ତିକା ଜଳେଇ ଜାଣିଲେ ସେମାନେ ଧନକୁ ପାଇଛନ୍ତି ଓ ପାଉଛନ୍ତି ଏବଂ ଯେଉଁମାନେ ପାରିଲେନି ବା ପାରିବାକୁ ଚେଷ୍ଟା କଲେନି, ସେମାନେ ଅନ୍ଧାରରେ ବାଡ଼ି ବୁଲେଇ ବୁଲେଇ ଅନ୍ଧଭଳି ଦରାଣ୍ଡୁଛନ୍ତି । **ଗବେଷଣାର ରନ୍ଧନ ଭିତରୁ ଯେଉଁ ସାଦିଷ୍ଟ ପାକକୁ ସେ ପ୍ରସ୍ତୁତ କଲେ, ତା ଭିତରେ ଓଡ଼ିଶୀ ଚିତ୍ରକଳା ଓ ତା'ର କଳା ଇତିହାସ ପ୍ରାଧାନ୍ୟ ଲାଭକରି ବସିଛି । ଓଡ଼ିଶାର ଲୋକକଳା ତାଙ୍କ ମାଧ୍ୟମରେ ବିଶ୍ୱଜୟୀ ହେଇପାରିଛି । ସପ୍ତଦଶ ଶତାବ୍ଦୀର ପୋଥିଚିତ୍ରର ଅବଧାରଣାକୁ ପ୍ରଥମେ ଲୋକଙ୍କ ପାଖରେ ପହଞ୍ଚାଇବାରେ ସେ ହେଉଛନ୍ତି ମୁଖ୍ୟ ।** ତାଙ୍କ ବନ୍ଧୁ ଡକ୍ଟର ଫିସର୍‌ଙ୍କ ସହାୟତାରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସଚିତ୍ର **ରସିକ ହାରାବଳୀ** କାବ୍ୟର ତର୍ଜମାକୁ ଜର୍ମାନ ଭାଷାରେ ସ୍ୱିଜରଲ୍ୟାଣ୍ଡରେ ଛପାଗଲା । ଯେତେବେଳେ ତାହା ପୃଥିବୀର ବିଭିନ୍ନ ସ୍ଥାନରେ ପହଁଞ୍ଚିଲା, ବିଶ୍ୱର ବୁଦ୍ଧିଜୀବୀମାନେ ଓଡ଼ିଶା ଓ

Digitized by srujanika@gmail.com

ଓଡ଼ିଆ ଚିତ୍ରକୁ ଆଚ୍ଛା ଢ଼ଙ୍ଗରେ ଚିହ୍ନିପାରିଲେ । ଥରେ କ୍ଷେତ୍ର ଅଧ୍ୟୟନରୁ ଫେରିଲା ପରେ ଦୁଇ ତିନୋଟି ଅଧ୍ୟାୟକୁ ସେ ଲେଖିପକାନ୍ତି । ପାରମ୍ପରିକ ଚିତ୍ରର ଆଭିଧାନିକତା, ସାଂକେତିକତା ଓ ସୌନ୍ଦର୍ଯ୍ୟବୋଧ ଭିତରେ ଲୋକାଚାର ତଥା ଆଦିମତାକୁ କଳିବା ପାଇଁ ସେ ଆଦିବାସୀ କଳାପ୍ରତି ଦୁର୍ବଳ ହୋଇପଡ଼ିଲେ । **କ୍ରାଫଟ୍ସ୍ କାଉନ୍ସିଲ୍ ଅଫ୍ ଓଡ଼ିଶା** ନାମରେ ଏକ ଗବେଷଣା ଅନୁଷ୍ଠାନ ଗଢ଼ାଯାଇ ଲୋକକଳା ଓ ଆଦିବାସୀ କଳାର ଗବେଷଣା ଆରମ୍ଭ ହେଲା ।

ଏହି ସଂସ୍ଥା ଆରମ୍ଭ ହେଲା ବେଳକୁ ମୋର ପାଠପଢ଼ା ସରିଯାଇଥାଏ । ଜିନିଷପତ୍ର ବାନ୍ଧି ମୁଁ ଲକ୍ଷ୍ମୀନୃସିଂହ ବସ୍‌ରେ ବସି ଭଞ୍ଜନଗରରେ ହାଜର । ଦୁଇ ଚାରିଦିନ ପରେ ସାର୍ ଜାଣିଲେ ଯେ ମୁଁ ଗାଁକୁ ଚାଲିଯାଇଛି । କିଛି ଦିନପରେ ବାଳକୃଷ୍ଣ ଚିଠିଟିଏ ନେଇ ଆମ ଘରେ ପହଞ୍ଚିଲା । ଚିଠିରେ ଲେଖାଥିଲା, x x x ଓଡ଼ିଶାର କଳା ପ୍ରତି ତୁମର ସାଭିମାନ ରହିବା ଉଚିତ୍ । ଜୀବନରେ ଯଦି ଓଡ଼ିଶା ପାଇଁ ଓ ନିଜ ପାଇଁ କିଛି କରିବାର ଥାଏ ତା ହେଲେ ଏ ଚିଠି ପାଇ ତୁରନ୍ତ ଆସ । ତୁମର ବନ୍ଦୋବସ୍ତ କରାଯିବ । ତୁମର ପାଠୀ ସାର୍, ୧୨.୯.୯୦ । ବାଳକୃଷ୍ଣ ସହ ଭୁବନେଶ୍ୱର ପୁଣି ଫେରିଲି । ମନରେ ଭୟଥାଇ ସାର୍‌ଙ୍କୁ ଦେଖାକଲି । ସହାନୁଭୂତିର ହସଟିଏ ହସିଦେଇ ସାର୍ ଭୁବନେଶ୍ୱରରେ ରହିବାକୁ ପରାମର୍ଶ ଦେଲେ । 'କ୍ରାଫ୍‌ସ୍ କାଉନ୍‌ସିଲ୍ ଅଫ୍ ଓଡ଼ିଶା'ରେ ସହାୟକ ଗବେଷକ ଭାବେ ନିଯୁକ୍ତି ଦେଇଦେଲେ । ମାସକୁ ପାଞ୍ଚଶହ ଟଙ୍କା ହାତଖର୍ଚ୍ଚ ସହ ରହିବା ଖର୍ଚ୍ଚ ମିଳିଲା । କଲେଜ୍‌ର ଗ୍ରାଫିକ୍ ଷ୍ଟୁଡ଼ିଓ ଭିତରେ ରାତ୍ରିଯାପନ ହୁଏ । ମୋ ସହ ଆଉ କିଛି ଛାତ୍ର ମଧ୍ୟ ସେଠି ଡେରା ପକାଉଥିଲେ । ଦିନରେ ଲୋକସଂପର୍କ ସ୍ଥାପନ କରି ବିଭିନ୍ନ ସ୍ଥାନରୁ ଗବେଷଣାତ୍ମକ ତଥ୍ୟ ସଂଗ୍ରହ ହେଉଥିବା ବେଳେ, ରାତିରେ କଲେଜ ଭିତରେ ଶୋଇ ପଡୁଥିଲି । ଏମିତିରେ ମାସକର ଅଧିକାଂଶ ଦିନ ଭୁବନେଶ୍ୱର ବାହାରେ ବିତୁଥିଲା । କୋରାପୁଟ ଓ ଫୁଲବାଣୀ ଅଞ୍ଚଳର ଆଦିବାସୀ କଳାର ତଥ୍ୟ ପାଇଁ ମଧ୍ୟ ଯିବାକୁ ପଡୁଥିଲା । କଲେଜର ସମସ୍ତ ଦାୟିତ୍ୱ ସହ ଏଇଭଳି ଗବେଷଣା କାର୍ଯ୍ୟ ପାଇଁ ସାର୍ ଛୁଟିଦିନ ଓ ରାତିରେ ହିଁ ସମୟ ଦେଇପାରୁଥିଲେ । କେବେ କେବେ ବିଦେଶ ଗସ୍ତରେ ଚାଲିଗଲା ପରେ ରାଓ ସାର୍‌ଙ୍କୁ କିଛି ଦାୟିତ୍ୱ ଦେଇ ଚାଲିଯାଉଥିଲେ । ରାଓ ସାର୍ ପାଠୀ ସାର୍‌ଙ୍କ ଆଦେଶକୁ ଲକ୍ଷ୍ମଣ ପରି ମାନନ୍ତି । ସାର୍‌ଙ୍କ ଅନୁପସ୍ଥିତିରେ ଦାୟିତ୍ୱ ସଂପୂର୍ଣ୍ଣ କରିବାକୁ ସବୁବେଳେ ଆଗୁଆ ହୋଇଥିବା ମୁଁ ଦେଖିଆସିଛି ।

୧୯୯୦ ମସିହା ଜୁନ୍ ମାସରେ ପାଠୀ ସାର୍ ସୁଇଜରଲ୍ୟାଣ୍ଡ ଗସ୍ତରେ ଯିବା ପୂର୍ବରୁ ପଦ୍ମପୁର ଅଞ୍ଚଳର ସୌରା ଚିତ୍ରକୁ ଡକୁମେଣ୍ଟେସନ୍ କରିବାକୁ ରାଓ ସାର୍‌ଙ୍କୁ ପରାମର୍ଶ ଦେଇଥିଲେ । ପୁଣି, ସେଠାରୁ କାମକୁ ଆହୁରି ଜଲଦି କରିବା ପାଇଁ ବିଦେଶରୁ ଟେଲିଫୋନ୍‌ରେ ରାଓ ସାର୍‌ଙ୍କୁ ଆଦେଶ ଦେଲେ । ଡଲଫିନ୍ ଟ୍ରାଭେଲ୍‌ସ୍‌ରୁ ଜିପ୍‌ଟିଏ ଆସିଲା । ପହଲି (ପ୍ରହ୍ଲାଦ) ଡ୍ରାଇଭର ସକାଳୁ ସକାଳୁ ଗାଡ଼ିନେଇ ରାଓ ସାର୍‌ଙ୍କ ପାଖରେ ହାଜର ହେଲା । ରାଓ ସାର୍ ଆଗ ସିଟ୍‌ରେ ବସିବା ପରେ, ବାଳକୃଷ୍ଣ ଏବଂ ମୁଁ ପଛରେ ଜାଗା ଜମେଇଲୁ । କିନ୍ତୁ, ଲକ୍ଷ୍ୟ ଗୋଟିଏ । ଯେକୌଣସି ପ୍ରକାରେ ପାଠୀ ସାର୍ ଫେରିବା ପୂର୍ବରୁ କାମ ଶେଷ ହେବା ଦରକାର । ପଦ୍ମପୁରରେ ପହଞ୍ଚି ଆଖୁ ସିଂ ଗାଁକୁ ଆସି ସେ ଗାଁର ପଞ୍ଚାୟତ ଘରେ ରହିଲୁ । ସେଦିନ ନିର୍ଦ୍ଧୁମ ବର୍ଷା ହେଇଯାଇଥାଏ ଏବଂ ମେଘର ବଳ ମଧ୍ୟ ଭାଙ୍ଗି ନଥାଏ । ପଞ୍ଚାୟତ ଘରେ ଚାରୋଟି ଦଉଡ଼ିଆ ଖଟକୁ ଲଗେଇଦେଇ ସେ ଗାଁର ସରୋଜ ମହାପାତ୍ର ଚାଦର ବିଛେଇ ଦେଲେ । ରାତିଟି ପଞ୍ଚାୟତ ଘରେ ମଶାମାନଙ୍କ ସାଙ୍ଗରେ ଯେନତେନ ବିତିଲା । ସକାଳୁ ଉଠି ନିତ୍ୟକର୍ମ ସାରି ଆରମ୍ଭ ହେଲା ସଉରା ଗାଁମାନଙ୍କରେ ସଉରା ଶିଳ୍ପୀଙ୍କ ସହିତ ସାକ୍ଷାତକାର ଏବଂ ସେମାନଙ୍କ ହାତଅଙ୍କା କାନ୍ଥ ଚିତ୍ରର ଡ଼କ୍ୟୁମେଣ୍ଟେସନ୍ । ତିନି ଦିନ ଭିତରେ ଅନ୍ତରଝୋଲି, କର୍ଣ୍ଣପାଡୁ, କେନ୍ଦୁଗୁଡ଼ା, ଲିମାଗୁଡ଼ା, ମରିଚଗୁଡ଼ା, ପେରପଙ୍ଗ, ସନ୍ଧିଖାଲ ପ୍ରଭୃତି ସଉରା ଗାଁ ବୁଲା ସରିଲା । କାମ ଶେଷ ହେଇଯାଇଥିବାରୁ ମନ ପ୍ରଫୁଲ୍ଲ ଥାଏ ତା ପରଦିନ ଆସି ଭୁବନେଶ୍ୱରରେ ପହଞ୍ଚିଲୁ ।

Digitized by srujanika@gmail.com

ଏମିତି ଆଉ ଦିନେ ପାଠୀ ସାର୍‌ଙ୍କ ଗବେଷଣା ଗାଡ଼ି ଛୁଟିଲା ଗଞ୍ଜାମକୁ । ବ୍ରହ୍ମପୁରରୁ ପାରଳାଖେମଣ୍ଡି, ପାରଳାରୁ ଜଳନ୍ତର, ଜଳନ୍ତରରୁ କାଞ୍ଚିଲି, କାଞ୍ଚିଲିରୁ ଚିକିଟି, ଚିକିଟିରୁ ଧରାକୋଟ, ଧରାକୋଟରୁ ବୁଗୁଡ଼ା, ବୁଗୁଡ଼ାରୁ ଭଞ୍ଜନଗର, ଭଞ୍ଜନଗରରୁ ବାଲିଗୁଡ଼ା, ବାଲିଗୁଡ଼ାରୁ ବେଲଘର, ବେଲଘରରୁ ବିଷମକଟକ, ବିଷମକଟକରୁ କୁର୍ଲି, କୁର୍ଲିରୁ ପୁଣି ଭୁବନେଶ୍ୱର । ପାରମ୍ପରିକ କଳାକୁ ଗଞ୍ଜାମରେ ବିଶ୍ଳେଷଣ କରି ଆଦିବାସୀ ଅଧ୍ୟୁଷିତ ଫୁଲବାଣୀ ତଥା କଳାହାଣ୍ଡି ଜିଲ୍ଲାରେ କନ୍ଧମାନଙ୍କ କଳାର ଜ୍ଞାନ ଆହରଣ କରିବା ଥିଲା ଉଦ୍ଦେଶ୍ୟ । କନ୍ଧମାନେ ଆଦିବାସୀ ହେଲେ ହେଁ, ସେମାନଙ୍କ ଜୀବନ ହିଁ କଳାର ପରିପ୍ରକାଶ । କନ୍ଧମାନେ ପ୍ରତ୍ୟେକେ ଜଣେ ଜଣେ ନିଛକ ଶିଳ୍ପୀ ଓ ସେମାନେ ନିଜ ପରମ୍ପରା ସଂପର୍କରେ ଖୁବ୍ ସଚେତନ । ମୁଖ୍ୟତଃ, ନିଜ ସଂସ୍କୃତିରେ ଥିବା କଳାକୃତିକୁ ସେମାନେ ସମ୍ମାନ ଦେଇଥିବା ବେଳେ ସେ ଅଞ୍ଚଳର ପାଣମାନଙ୍କ ଦ୍ୱାରା ସେମାନଙ୍କ କଳାକୃତି ଶୋଷିତ ହୁଏ । କାରଣ, କନ୍ଧମାନେ ସାଧାରଣତଃ ସରଳ ବିଶ୍ୱାସୀ ହୋଇଥିବାରୁ, ପାଣମାନେ ସେମାନଙ୍କୁ ଶୋଷଣ କରିଥାନ୍ତି । ନିଜକୁ କନ୍ଧ ବୋଲି ମିଛରେ କହି ଏଇ ପାଣମାନେ ଫାଇଦା ନେଇଥାନ୍ତି । ଫୁଲବାଣୀରେ ଥିବା ଶିତୁଳିଆ ଓ ଖୋରଦ୍ଧା ଜାତିର ଲୋକ କନ୍ଧମାନଙ୍କ ପାଇଁ ବ୍ରୋଞ୍ଜ ପ୍ରତିମା ତିଆରି କରିବାରେ ସିଦ୍ଧହସ୍ତ । ଯାହାକି ଗବେଷକମାନେ କନ୍ଧବ୍ରୋଞ୍ଜ ବୋଲି ଆଖ୍ୟା ଦେଇଛନ୍ତି । ପାଣମାନେ ତେଲ ଓ ଅଳନ୍ଧୁ ଦେଇ ବ୍ରୋଞ୍ଜ ପ୍ରତିମାଙ୍କୁ ଦୁଇଶହ ବର୍ଷର ପୁରୁଣାକଳା ବୋଲି ବିଭିନ୍ନ ମ୍ୟୁଜିୟମ୍‌ରେ ବିକ୍ରି କରିଥାନ୍ତି । ବାଲିଗୁଡ଼ା ପାଖ ବାରଖମା ଗାଁରେ ଏସବୁର ଅନୁଶୀଳନ ସାରି ବେଲଘରର କୁଟିଆ କନ୍ଧମାନଙ୍କ ଜାକେର ଖମ୍ବର ଗବେଷଣା ତଥ୍ୟ ସଂଗ୍ରହ କଲା ପରେ ବିଷମକଟକରେ ଥିବା ଡଙ୍ଗରିଆ କନ୍ଧମାନଙ୍କ ବୟନକଳା ଅନୁଧାନରେ ଯିବା ହେଲା । କୁର୍ଲିଠାରୁ ଆଗକୁ ଆଉ ଗାଡ଼ି ଯାଇପାରେନି । ତେଣୁ କୁର୍ଲିଠାରୁ ଚାଲି ଚାଲି କୁମନ କୁମ୍ଭା ଗାଁରେ ପହଁଞ୍ଚିଲୁ । ସାର୍‌ଙ୍କୁ ମିଶେଇ ଚାରିଜଣିଆ ଟିମ୍ । ପାହାଡ଼ ଉଠିଉଠି ସେ ଗାଁରେ ପହଁଞ୍ଚିଲା ବେଳକୁ ସମସ୍ତଙ୍କର ଦମ୍ ଫାଟି ଯାଇଥିଲା । ଦଶହରା ସମୟ । ସେଦିନ ମହାଷ୍ଟମୀ । କୁମନ କୁମ୍ଭା ଗାଁ ଲୋକେ କାଛାପିନ୍ଧା ଡଙ୍ଗରିଆ କନ୍ଧ । ଧନୁଶର ଟାଙ୍ଗିଆ ଛଡ଼ା କିଛି ବୁଝନ୍ତିନି । ଗାଁ ଦାଣ୍ଡରେ ଦେଖିଲୁ ଦଶ ପନ୍ଦର ଜଣ ପୁରୁଷ ମହୁମାଛି ଓ କଲିକତରାକୁ କେନାଶାଗରେ ସିଝେଇ ସାଗୁଆନ୍ ପତ୍ରରେ ଖାଉଛନ୍ତି । କ୍ୟାମେରା ଧରି ରାଓ ସାର୍ ଫଟୋ ନେବାକୁ ଉଦ୍ୟତ ହେଲା ବେଳକୁ, ଦୁଇଜଣ କନ୍ଧ ଧାରୁଆ ଟାଙ୍ଗିଆ ଦିଟା ଧରି ଆମକୁ ମାରିବାକୁ ଝପଟି ଆସିଲେ । ରାଓ ସାର୍ ବାଳକୃଷ୍ଣଙ୍କୁ ଏବଂ ମୁଁ ପାଠୀ ସାର୍‌ଙ୍କୁ ଧରି ଏକ ମୁହାଁ ହେଇ ଦୌଡ଼ିଲୁ । ଭାଗ୍ୟଭଲ ସେ ଅଞ୍ଚଳର ଗ୍ରାମରକ୍ଷୀ ଯୋଗକୁ ପହଁଞ୍ଚିବାରୁ ଆମ ଜୀବନରକ୍ଷା ହୋଇଗଲା । ଗ୍ରାମରକ୍ଷୀ କହିଲା ଯେ, 'ପୂର୍ବରୁ ସେ ଗାଁରେ ଏମିତି ବାହାରୁ ଫଟୋ ନେବାକୁ ଆସି କିଛି ସହରୀବାବୁ ସେ ଗାଁରୁ ଦୁଇଟି ଟିରିଲାକୁ ଉଠେଇ ନେଇଛନ୍ତି । ତେଣୁ, କ୍ୟାମେରା ଦେଖିଲେ ସେମାନେ ମାରିବେ ।'

ବେଳେ ବେଳେ ସମୟ ଅଭାବରୁ ଏକାଏକା ଯାଇ ଗବେଷଣା ତଥ୍ୟ ସଂଗ୍ରହ କରିବାକୁ ପାଠୀ ସାର୍ ମତେ ପଠେଇ ଦିଅନ୍ତି । ଏଥିପାଇଁ ମତେ ଟ୍ୟାକ୍ସି ମିଳେନି । ବସ୍‌ରେ ଯିବାକୁ ହୁଏ । ସଉରା ଚିତ୍ରକଳାର ତଥ୍ୟ ପାଇଁ ଏମିତି ଦିନେ ମତେ ଗୁଣୁପୁର ଅଞ୍ଚଳ ଯିବାକୁ ହେଲା । ବ୍ରହ୍ମପୁରରୁ ବସ୍‌ରେ ଯାଇ ଗୁଣୁପୁରରେ ରାତି ନଅଟା ବେଳକୁ ଓହ୍ଲେଇଲି । ଗୁଣୁପୁର ସହର ମୋ ପାଇଁ ନୂଆ । ଗୁଣୁପୁରରୁ ଭିତରକୁ ଆହୁରି ତିରିଶି କିଲୋମିଟର ଯାଇ ପୁଟାସିଂ ଅଞ୍ଚଳରେ ମତେ କାମ କରିବାକୁ ହେବ । ରାତିରେ ସେ ଅଞ୍ଚଳକୁ ବସ୍ ଯାଉନଥାଏ । ତେଣୁ ଗୁଣୁପୁରର କୌଣସି ଏକ ଲଜ୍‌ରେ ରାତିରେ ରହି ସକାଳେ ଯିବା ଠିକ୍ କଲି । ଲଜ୍‌ରେ ଆଉ ଜଣେ ଆମ ଗାଁ ପାଖର ଲୋକ ପୁଟାସିଂ ଥାନା ଇନ୍‌ଚାର୍ଜ ନିଶାମଣି ମଲ୍ଲିକଙ୍କ ସହ ରହି ପରଦିନ ସକାଳେ ବାହାରିଲୁ । ଥାନାଘରେ ମୋର ବ୍ୟାଗ ପତ୍ର ରଖି, ଜଣେ କନେଷ୍ଟବଳର ସାଇକେଲ ନେଇ ଗାଁ ଗାଁ ବୁଲି ସୌରା ଚିତ୍ରକାରମାନଙ୍କ ସହ ସଂପର୍କ ରଖି ବେଳ ନବୁଡୁଣୁ ଥାନାରେ ହାଜର, ଅନ୍ଧାର ହେଲେ ଭାଲୁ, ବାଘ, ହାତୀ ଭୟ । ପୁଟାସିଂଠାରୁ ଦୁଇ ତିନି କିଲୋମିଟର ଦୂରରେ ଡୁଙ୍‌ଡୁଙ୍ଗାର ଗାଁ । ଯାତିନ ଶବର ପାଖରୁ କିଛି

Digitized by srujanika@gmail.com

ତଥ୍ୟ ସଂଗ୍ରହ କରି ଫେରିଲା ବେଳକୁ ସନ୍ଧ୍ୟା ସାତ ଟା ଆଠଟା ହୋଇ ଯାଇଥାଏ । ଯାତିନ ଘରେ ସୁଆଁ ଖିରି ଆଉ ମକା ସିଝାଖାଇ ଫେରିବା ବେଳେ ସାଇକେଲର ଚେନ୍ ଛିଣ୍ଡିଗଲା । ନିରୁପାୟରେ ସାଇକେଲକୁ ଗଡ଼େଇ ଗଡ଼େଇ କୌଣସି ପ୍ରକାରେ ଅନ୍ଧାରରେ ପିଚୁ ରାସ୍ତାରେ ଆସି ପହଁଞ୍ଚିଲି । ଅରମା ଅନ୍ଧାର ଭିତରେ ଭୟ ଯୋଗୁଁ ମୋ କାନ ଦିଟା ଠିଆ ଠିଆ ହୋଇଯାଇଥାଏ । ଦେହ ଶୀତେଇ ଉଠୁଥାଏ । ସାହସ ବାନ୍ଧି ସାଇକେଲର ଷ୍ଟାଣ୍ଡ ମାଇଲି । ଚକାରେ ହାତ ମାରି ଦେଖିଲି ଚେନ୍ ନାହିଁ । କେଉଁଠି ଗଳିପଡ଼ିଛି । ବ୍ୟାଗରୁ ଟର୍ଚ୍ଚ ବାହାର କଲି । ସାହସ ବଢ଼ିଲା । ଖଣ୍ଡେ ବାଟ ଆସିବା ପରେ ଗୋଟାଏ ଗନ୍ଧ ମୁଁ ବାରିପାରିଲି । ଠାକୁରାଣୀ ଯାତ୍ରା ସମୟରେ ଭଞ୍ଜନଗରରେ ସର୍କସ ହେଉଥିବା ଜାଗା ଯେମିତି ଗନ୍ଧାଏ ଠିକ୍ ସେମିତି ଗନ୍ଧ । ପଛିଆଡ଼କୁ ଚାହିଁ, ଭୟରେ ଗୀତଟିଏ ବଡ଼ପାଟିରେ ଗାଇବା ଆରମ୍ଭକରି ମୁଁ ପୁଟାସିଂ ଆଡ଼କୁ ଚାଲୁଥାଏ । ଗନ୍ଧ ଅଧିକା ବାରିଲି । ବାଆଁ ପଟର ଅର୍ଜ୍ଜୁନ ଗଛପାଖରେ ଶବ୍ଦଟିଏ ହେଲା । ଟର୍ଚ୍ଚ ପକେଇ ଦେଖିଲି । କିଛି ଦିଶିଲାନି । ପୁଣି ଗଛ ଉପରକୁ ଟର୍ଚ୍ଚ ପକେଇ ଯାହା ଦେଖିଲି, ମୁଁ ମୁର୍ଚ୍ଛା ହୋଇଯିବା ଭଳି ଲାଗିଲା । ଭୟରେ ପରିଶ୍ରା ବି ହେଇଗଲା । ନିଆଁଭଳି ଆଖି ଦିଟା ଟର୍ଚ୍ଚ ଆଲୁଅରେ ଜଳୁଛି । ୟେଲୋ ଅକର ସହ କ୍ରୋମ୍ ୟେଲୋର ଏକ ଫେଣ୍ଟାଫେଣ୍ଟି ଦେହ । ତା ଉପରେ କଳା ଛିଟା । ଅର୍ଜୁନ ଗଛର ଉପରେ ଆସ୍ଥାନ ଜମେଇ କଲରା ପତିରିଆ ବାଘଟା ମନ୍ଦିର ପ୍ରହରିଣୀ ସିଂହ ଭଳି ମୋ ଆଡ଼କୁ ଏକା ଲୟରେ ଚାହିଁଚି । ସୁବିଧା ଦେଖି କୁଦି ପଡ଼ିବାର କିଛି ଅସମ୍ଭବ ନଥିଲା । ବାଘ ଦେଖି ମୋ ହୃତକମ୍ପନ ଆହୁରି ବଢୁଥିବା ଅନୁଭବ କରୁଥିଲି । ଅନୁଭବ ଭିତରେ ଭଗବାନଙ୍କ ଅନୁକମ୍ପା ଲୋଡୁଥିଲି । ବଡ଼ ବଡ଼ କଦମ ପକେଇ ପୁଟାସିଂ ମୋଡ଼ ପାଖରେ ପହଁଞ୍ଚିଲି । ମୋଡ଼ର ଡାହାଣରେ ଆଶ୍ରମ ସ୍କୁଲ । ଲାଇଟ ଜଳୁଛି । ଛାତ୍ରାବାସର ଛାତ୍ରମାନେ ପାଟିତୁଣ୍ଡ କରୁଛନ୍ତି । ସାହସ ପଶିଲା । ଦୁମ୍‌କରି ସାଇକେଲକୁ ସ୍କୁଲ ଗେଟ୍ ପାଖରେ ଫିଙ୍ଗିଦେଇ ଗେଟ୍ ଖୋଲିବାକୁ ଚେଷ୍ଟା କଲି । ଗେଟ୍‌ରେ ତାଲା । ସ୍କୁଲର ଜଣେ ଶିକ୍ଷକ ଧାଇଁ ଆସିଲେ । ଜଲଦି ଗେଟ୍ ଖୋଲିବାକୁ କହିବାରୁ, ପ୍ରବେଶ ନିଷେଧ ବୋଲି ଉତ୍ତର ମିଳିଲା । ପଛକୁ ଟର୍ଚ୍ଚ ପକେଇ ଶିକ୍ଷକଙ୍କୁ ଅଠା ଅଠା ପାଟିରେ, ବା ....... ବା ...... ବାଘ ବୋଲି କହିଲି । ଗେଟ୍ ଖୋଲି ଭିତରକୁ ନେଇଗଲେ । ଢାଳେ ପାଣି ଏକା ନିଶ୍ବାସରେ ପିଇଗଲି । ଏପଟେ ନିଶାମଣି ବାବୁ ବ୍ୟସ୍ତରେ ଦୁଇଜଣ ପୋଲିସକୁ ବନ୍ଧୁକ ସହ ଡୁଙ୍ଗ୍‌ଡୁଙ୍ଗାର ପଠେଇଲା ବେଳକୁ ସ୍କୁଲ ପାଖରେ କୋଳାହଳ ଦେଖି ପୋଲିସ ସେଠାରେ ପହଁଞ୍ଚିଲେ । ଶିକ୍ଷକ ଜଣକ ମୋକଥା କହି ସେମାନଙ୍କ ସହ ମତେ ଥାନାକୁ ପଠେଇ ଦେଲେ । ସ୍କୁଲ ପିଅନ ସାଇକେଲ ନେଇ ଆସିଲା । ରାତିରେ ଖାଇ ଶୋଇଲା ବେଳକୁ ମଲ୍ଲବାବୁ ପିତୃସୁଲଭ ଭଙ୍ଗୀରେ, ପୋଲିସ ଭାଷାରେ ଶୋଧି ଦେଇଗଲେ ।

ପୁଟାସିଂ ଅଞ୍ଚଳର ସଉରା ଚିତ୍ରକରମାନଙ୍କ ଠାରୁ ତଥ୍ୟ ନେଇ ଭୁବନେଶ୍ୱର ଫେରିଲି । ପରେ ଯେତେବେଳେ ସେଇ ଅଞ୍ଚଳ ଯିବାହେଲା, ମଲ୍ଲବାବୁଙ୍କ କଥା ସବୁବେଳେ ମନେପଡ଼େ ।

**ଗବେଷଣାରେ ବାହାରିଲେ ଭୋକଶୋଷ ଭୁଲିଯିବାକୁ ହୁଏ । କେଉଁଠି କେତେବେଳେ କିଭଳି ସମୟ ବିତେଇବାକୁ ପଡ଼େ, ତାହା ଅନୁଭବୀ ହିଁ ଜାଣନ୍ତି । ହୋଟେଲ୍‌ରେ ଖାଇବା ବାରଣ ଥିବାରୁ ମଠ, ମନ୍ଦିର କିମ୍ବା ପରିଚିତ ଲୋକଙ୍କ ଘରେ ଖାଇବାକୁ ସାର୍ ପସନ୍ଦ କରୁଥିଲେ ।** ନିଜ ସାସ୍ଥ୍ୟ ଠିକ୍ ନହେଲେ ଗବେଷଣାର ସାସ୍ଥ୍ୟ ମଧ ଖରାପ ହୋଇଯିବା ସାଭାବିକ୍ । ଜାତିଧର୍ମର କୌଣସି ଧାରକ ନାହିଁ । ବ୍ରାହ୍ମଣ- ଠାରୁ ଚଣ୍ଡାଳପର୍ଯ୍ୟନ୍ତ ସବୁ ଘରେ ମଧ ପତର ପଡ଼ୁଥିଲା ।

ସାର୍‌ଙ୍କ କ୍ଷେତ୍ର ଗବେଷଣାରେ ଦୁଇଟି କଥା ଲକ୍ଷ୍ୟ କରାଯାଏ । ପ୍ରଥମଟି ହେଉଛି, ତଥ୍ୟଦାତାର ପରିଚୟ ଓ ସେ ଚିତ୍ରକର ହୋଇଥିଲେ ତାର ବଂଶଲତା ଓ ଚିତ୍ରପରମ୍ପରାର ଇତିହାସ । ଦ୍ୱିତୀୟତଃ ହସ୍ତଗତ କଳାର ସୃଜନଶୀଳ ପରିବ୍ୟାପ୍ତି । ଗବେଷଣା ସମୟରେ କାରିଗରର

Digitized by srujanika@gmail.com

ହାତକାମଟିଏ ପାଇଲେ ତାକୁ ଯେତେ ମହଙ୍ଗା ହେଲେ ବି ସେ କିଣି ଆଣି ନିଜ କଲେକ୍‌ସନରେ ସାମିଲ୍ କରନ୍ତି । କହିବାକୁ ଗଲେ ସାର୍‌ଙ୍କ ଘରୋଇ ଷ୍ଟୁଡ଼ିଓ ଓଡ଼ିଶା ଲୋକକଳାର ଏକ ମ୍ୟୁଜିୟମ୍ ଏବଂ ତାଙ୍କ ଲାଇବ୍ରେରୀ ଉପାଦେୟ କଳା ଇତିହାସ ଗ୍ରନ୍ଥରେ ଭରପୂର ।

ଭବାନୀପାଟଣା ଗସ୍ତରେ ଏମିତି ଦିନେ ଯିବା ହେଲା । ବାଲିଗୁଡ଼ାରୁ ତୁମୁଡ଼ିବନ୍ଧ ଯାଇ ତୁମୁଡ଼ିବନ୍ଧରେ ରାତ୍ରୀଯାପନ ପରେ ଭବାନୀପାଟଣାରେ ପହଁଞ୍ଚିଲୁ । ଭବାନୀପାଟଣାର ଏକ ରାଧାକୃଷ୍ଣ ମନ୍ଦିରର ମୁଖଶାଳା ପାଖ ଦକ୍ଷିଣ କାନ୍ଥରେ ପ୍ରାଚୀନ ଚିତ୍ରର ସନ୍ଧାନ ମିଳିଲା । ପାଠୀ ସାର୍ ନାଚିଗଲେ। ଦୁହେଁ ଉପରକୁ ଯାଇ କାନ୍ଥ ପଲସ୍ତରା ଛଡ଼େଇବାରେ ଲାଗିଲୁ । ରାଓ .......... ରାଓ ବୋଲି ଉପରୁ ସାର୍ ଚିଲ୍ଲେଇଲେ । ରାଓ ସାର୍ ତାଙ୍କର ଲମ୍ବୋଦର ଉପରେ ବୋଫର୍ସ୍ ତୋପଭଳି ତିନୋଟି କ୍ୟାମେରା ଝୁଲେଇ, ଓଜନିଆ ଶରୀରରେ ଧଁସଁ ହେଇ କଷ୍ଟେ ମଷ୍ଟେ ଉପରକୁ ଆସି ଫଟୋ ନେଲେ । ରୋଲ ଧୋଇଲା ବେଳକୁ ଫୋଟ ଧୂଆଁଳିଆ ଦେଖାଗଲା । ଦୁଃଖ ହେଲା । ରାଓ ସାର୍ ଗାଳି ଫଭାଳିଲେ । ଭାଗ୍ୟକୁ ସୁମରି ରହିବା ହେଲା । ଭବାନୀପାଟଣାରେ ପଇସାପତ୍ରର ଅଭାବ ଘଟିଲା । ଡଙ୍ଗରିଆ କନ୍ଧମାନଙ୍କର ଗୋଟିଏ ଶାଢ଼ିକୁ ପାଠୀ ସାର୍ କିଣିଦେଇଥିବାରୁ ପକେଟ ଖାଲି ହୋଇଗଲା । ରାଓ ସାର୍ ବଳ ଦେଲେ । ଭବାନୀପାଟଣା ହାଇସ୍କୁଲର ଚିତ୍ରଶିକ୍ଷକ, ପଟ୍ଟନାୟକବାବୁଙ୍କଠାରୁ ରାଓ ସାର୍ ସୁଧରେ ଟଙ୍କାନେଇ ଆସିଲେ । ପୁଣି, ସାର୍‌ଙ୍କ ଝୁଙ୍କ ସରିନି । ଆହୁରି କଳାକୃତି କିଣି ପକେଇଲେ । ଏଇ ଝୁଙ୍କ୍, ଏଇ ନିର୍ଭିକତା, ଏଇ ସାଦ, ଏଇ ବିଭୋରତା ଆମକୁ ଆଶ୍ଚର୍ଯ୍ୟ କରେ । **ଗାଁ କାରିଗର ଠାରୁ ଗଂଜପା, ପଟଚିତ୍ର, କାଠଖୋଦେଇ ଯାହା ପାଇଲେ ଆଣିବେ ହିଁ ଆଣିବେ । ଚଢ଼ା ଦାମରେ କିଣିବେ । କ୍ଷତି ହେଲା ବୋଲି ପ୍ରଶ୍ନ କଲେ କହିବେ, କାରିଗରଟା, ପଇସା ପାଣିରେ ପଡ଼ିଯିବନି । ତା କଥା କିଏ ବୁଝୁଛି ? ତାକୁ କିଏ ପଚାରୁଛି ? ଆହୁରି ଅଧିକ ଦେବା କଥା ।** ଦରଦ ଦେଇ, ଦରଦ ନେଇ ସେ ନିଜେ ଚିତ୍ରକର ହେଇଥିବାରୁ, ଆମକୁ ବୁଝିବା କଷ୍ଟ ହୁଏନି । ଏବେ ମୁଁ କ୍ଷେତ୍ର ଗବେଷଣାରେ ଗଲେ ସାର୍‌ଙ୍କ ଧାରାକୁ ନିଜର କରିବାକୁ ପଛେଇ ପାରୁନି । କାରଣ, ଚିତ୍ରକାରର କଥା ମୋ ପାଇଁ ଅବୁଝା ନୁହେଁ । ସାର୍ ମୃତେ ଆଗରୁ ବୁଝେଇ ଦେଇଛନ୍ତି ।

୧୯୮୯ ମସିହା । ଏଥର ଗବେଷଣା ଯାତ୍ରାରେ ସାର୍‌ଙ୍କ ଟିମ୍ ନାହାନ୍ତି । ଟ୍ୟାକ୍ସି ବି ନାହିଁ। ଲୋକ ମଧ୍ୟ ନାହାନ୍ତି । ଆମେ ଗୁରୁଶିଷ୍ୟ ଉଭୟେ ଭୁବନେଶ୍ୱରରୁ ଓଡ଼ିଶା ରାଜ୍ୟ ସଡ଼କ ପରିବହନର ନାଲିଆ ଗାଡ଼ିରେ ବାହାରିଲୁ । ଭୁବନେଶ୍ୱରରୁ ଆସ୍କା ଯିବାବେଳେ ଗାଡ଼ି ଖଲ୍ଲିକୋଟରେ ରହେ । ଯାତ୍ରୀ ଚ୍ହ' ପିଅନ୍ତି । ଆମେ ବି ଓହ୍ଲେଇଲୁ । ସାର୍ ତାଙ୍କର ପୁରୁଣା ଖଲ୍ଲିକୋଟ ବସଷ୍ଟାଣ୍ଡ, ମାର୍କଣ୍ଡ ହୋଟେଲ, ତ୍ରିନାଥ ପାନଦୋକାନ ଆଡ଼କୁ ନଜର ବୁଲେଇ ଆଣିଲେ । ମୁଁ ମଧ୍ୟ ସ୍ମୃତିଘ୍ରରଣ କଲି । ସାର୍‌ଙ୍କ ଜଣେ ଦିଜଣ ଚିହ୍ନାମୁହଁ ମଧ୍ୟ ଆଖିରେ ପଡ଼ିଲେ। ତାଙ୍କର ଜଣେ ସମସାମୟିକ ଖଲ୍ଲିକୋଟ ବାସିନ୍ଦା ସାର୍‌ଙ୍କୁ ଦେଖି କହିଲେ, 'ଆଃ ......ଥାଃ ..... ମାଃ...... ଦିନ୍ନାଥ କିଏ ? ଏଇଠେ କେତଲେ..... ଆର୍ଟ୍ ସ୍କୁଲକୁ ନା କିଅଣ ।' ସାର୍ କହିଲେ 'ଆସ୍କା ଯାଉଛି ।' ଭଦ୍ରଲୋକ କହିଲେ, 'ହେଲେ ..... ତମର ଗାଡ଼ିଟା ।' ସାର୍ କହିଲେ, 'ଡ୍ରାଇଭରଟା ବିଭା ହେବାକୁ ଯାଇଛି ତ, ଆଣିହେଲାନି ।' 'କେତେଦିନ ପରେ ଦେଖା ହେ । ମୁଁ ତ ଏଇଠେ ଏକା । ପୁଅଟା ପାରିଗଲାଣି । ହେଲେ, କେତଲେ କିମିତି ଆସୁଥ...... ଯାଉଥ । ବଡ଼ କୃତ କୃତ ଲାଗିଲା ହେ କହି ଭଦ୍ର ଲୋକ ପରିବା ଦୋକାନକୁ ମୁହେଁଇଲେ ।' ଗାଡ଼ିଛାଡ଼ିଲା । ସାର୍‌ଙ୍କ ଏଭଳି ଉତ୍ତର ମୁଁ କିଛି ବୁଝିପାରିଲିନି । ଗାଡ଼ି, ଡ୍ରାଇଭର, ବିଭାଘର କଥା ଦୋହରେଇଲି । ସାର୍ କହିଲେ, ଏମାନେ ମତେ ଜଣେ ବିରାଟ ପଇସାବାଲା ଲୋକ ବୋଲି ଭାବନ୍ତି । ମୋର ଗାଡ଼ି ଅଛି । ମାଲ୍ ବେଶୀ ଅଛି ବୋଲି କଳନା କରିଛନ୍ତି । ତେଣୁ ଏଇମିତି ଚରିତ୍ରମାନଙ୍କୁ ହାୱା ମାରିବାକୁ ହୁଏ । ଏଥିରେ ପାପ ହେବନି । କିଏ କାହାକୁ କେମିତି କଳନା କରେ, ହାୱା ମାରେ, **ଭବଘୂରା ଭବନାଥ** ବହିରେ ମୁଁ ଲେଖିଦେଇଛି । ରାତି ନ'ଟାରେ ଗାଡ଼ି ଆସ୍କାରେ ପହଞ୍ଚିଲା । ବ୍ୟାଗ୍ ପତ୍ରନେଇ ସୁଇଟ୍‌ହୋମ୍ ଲର୍ଜ୍‌ରେ ରହି ସକାଳୁ ଧରାକୋଟ ଗଲୁ । ଧରାକୋଟ ରାଜବାଟୀରେ

Digitized by srujanika@gmail.com

ଦୁଇଦିନ ରହଣି । ରଜାଘର ଦିବ୍ୟ ଅନ୍ନ, ଘିଅ ପିଠା ଖାଇ ଦୁହିଁଙ୍କ ପେଟ ଖରାପ ହେଲା । ଧରାକୋଟରେ ପ୍ରବଳ ବର୍ଷା ଲାଗିଛି । ବାହାରକୁ ବାହାରି ହେଉନଥାଏ । କିନ୍ତୁ, ଧରାକୋଟରୁ ପୋଲସରା ଆସିବାକୁ ହେବ । ତେଣୁ, ଦୁଇଟି ତଲାରି କିଣି ବର୍ଷାରେ ଆସି ବସ୍‌କୁ ଅପେକ୍ଷା କଲୁ । ଲୋକେ ଆମକୁ ଅନେଇ ହସିବା ଆରମ୍ଭ କଲେ । କାରଣ, ସହରୀ ଡାଞ୍ଚୁଆ ଲୋକେ ଛତା ବା ବର୍ଷାତି ନ ଧରି ତଲାରି ମୁଣ୍ଡେଇବା ଧରାକୋଟରେ ନିଶ୍ଚୟ ହସକଥା । ଆସ୍କାରେ ପହଁଞ୍ଚି ପାଲପକା ଟ୍ରକରେ ବସି ପୋଲସରା ଯାତ୍ରା ହେଲା । ପୋଲସରା ଆଗରୁ ମଥୁରା ଗାଁ । ଏଇଠି ଚିତ୍ରକାର ଓ ମହାରଣାମାନଙ୍କ ଘର । ଗାଡ଼ି ପ୍ରବଳ ଜାଟ । ବର୍ଷାର ସିଣିସିଣିଆ ଭିତରେ ସୋରଳ ସୁମାଣ୍ଡିର ଶୁଖୁଆତୁଣୀ ମାଇକିନାମାନଙ୍କ କିଳିକିଳା ରଡ଼ିରେ ଗାଡ଼ି ଭିତରଟା ଆହୁରି ଉଜ୍ଜ୍ୱଟ ହେଇଗଲା । ଡ୍ରାଇଭର ପାଖରେ ତଲାରି ବ୍ୟାଗପତ୍ର ରଖି ସିଟ୍‌ନେଇ ବସିଲୁ । ଗାଡ଼ି ଭିତରଟା ଶୁଖୁଆର ବିଚୁକୁଟିଆ ଗନ୍ଧ । ପେଟରୁ ଭାତ ବାହାରିଯିବା ବି ବିଚିତ୍ର ନୁହେଁ । ଦୁହେଁ ଗଞ୍ଜାମ ବାସିନ୍ଦା ହେଇଥିବାରୁ ଶୁଖୁଆତୁଣୀଙ୍କ ସହ ସହଯାତ୍ରୀ ହେବା ଦେହରେ ଆଗରୁ ହେଜିଛୁ । କୌଣସି ପ୍ରକାରେ ମଥୁରା ଗାଁ ରୋଟରେ ଓହ୍ଲେଇଲୁ । ସେଠାରୁ ଚିତ୍ରକାର ଘରକୁ ଯିବା କଥା । ପିଠିରେ କାନ୍ଧରେ ବ୍ୟାଗରଖି ତଲାରି ମୁଣ୍ଡେଇ ବିଲମାଳରେ ଚିତ୍ରକାରର ଘର ଆଡ଼କୁ ମୁହାଁଇଲୁ । ସାର୍ ତାଙ୍କ ଗ୍ଭଲିର ପିକ୍‌ଅପ୍ ବଢ଼େଇଲେ । ଚିତ୍ରକାର ଗାଁରେ ଯାଇ ଦେଖିଲା ବେଳକୁ, ଘରେ ଚିତ୍ରକାର ନାହିଁ । ମନ୍ଦିର କାମରେ ଅନ୍ୟ ଗାଁକୁ ବାହାରି ଯାଇଥିଲା । ପୁଣି ପୋଲସରା ଫେରିବୁ । ଆଠ କିଲୋମିଟର ଯାଇ ପୁଣି ଆଠ କିଲୋମିଟର ଫେରିବାକୁ ପଡ଼ିଲା । ଫେରିବା ବାଟରେ ସାର୍ ପୋଖରୀ ପାଣି ଗଲେ । ପୋଖରୀ ହୁଡ଼ା ଉପରେ ମୁଁ ଜିନିଷ ପତ୍ର ଧରି ଜଗିବସିଲି । କେବଳ ପଞ୍ଚାବୀଟି ପିନ୍ଧି ସାର୍ ବିଲହୁଡ଼ା ତଳେ ଲୁଚିଗଲେ । ସାର୍‌ଙ୍କ ଫେରିବା ବେଳେ, ପୋଲସରା ଗାଁର ବେଶ୍ ଖାସା ଆଚ୍ଛା ଦୁଇଜଣ ସ୍ତ୍ରୀଲୋକ ସାର୍‌କୁ ତୀକ୍ଷ୍ଣ ଦୃଷ୍ଟିରେ ଗ୍ଭହିଁଛନ୍ତି । ଗଞ୍ଜାମ ଶୈଳୀର ବେଶ । ହାତରେ ଖଡୁ ଗୁଳୁଗୁ । ନାକରେ ଦଣ୍ଡି । ବେକରେ ଖାସୁଲୁ । ରାଇକା ଓ ସାୟା ବିହୀନ ଶରୀର । ଭାରି ବକ୍ଷୋଜ । କେବଳ ଲୁଗା ଯାହା ଘୋଡ଼େଇ ହେଇଛି । ଓଢ଼ଣା ମୁଣ୍ଡର ଅଧାରୁ ଖସିଆସିଛି । ଡାହାଣ ହାତକୁ କାନି ମଙ୍ଗରେ ପୂରେଇ ପାଟିକୁ ଘୋଡ଼େଇ ସ୍ତ୍ରୀ ଲୋକ ଦୁହେଁ ମୁରୁକି ହସା ମାଇଲେ । ସାର୍ ତଲାରି ମୁଣ୍ଡେଇ ଏବେ ପୋଖରୀ ହୁଡ଼ା ଉଠିଲେ । ଜଣେ ମତେ ପଗ୍ଭରିଲା, କୋ ଗାଁରେ ପିଲା ତମର ମୁଁ କିଛି କହିଲିନି । ଅନ୍ୟ ଜଣକ ସାର୍‌ଙ୍କ ଦେଖେଇ କହିଲା, ଇ.... ମା ........ ଦେଖେଲୋ.......... କୋ ଗାଁର ଅଣ୍ଡରାଟା, ବଡ଼ ଅଙ୍ଗିଟା ପିନ୍ଧିକିରି ବନ୍ଧ ଆଡ଼େ ଆଉଛି । ଅନ୍ୟଜଣକ କହିଲା, ଏ.......ଡା.......... ଦେଖେଡି, ଭିତେରେ କିଛି ହେଲେ ତ ପିନ୍ଧିନାଇଆଉ । ଏ ଡା..... ଭିତରେ ତ ଗାଉଁଗ୍ଭେ ହେଲେ ନାଇଁଲୋ । ଏତା....... ଅଜନ୍ତର ନାଗୁନାଇଁ କିଲୋ । ଅନାଡି.......... ଏଡ଼େ ବଡ଼ ନୋକୁଟା ହଗେରାଗାଣ୍ଡିରେ.... ନୁଗାଟା ଛୁଆଞ୍ଚି ହେଲାନିକିଲୋ । ସାର୍‌ଙ୍କ କାନରେ ଯେମିତି ଏଇ କେତେ ପଦ ବାଜିଛି, ଏକା ନିଃଶ୍ୱାସରେ ସେ ଯାଇ ଡୋଠ ଭିତରେ ହାଜର । ଗାଧୁଆ ହେଲା । ଦୁହେଁ ଆସି ପୋଲସରାରେ ଖିଆପିଆ କରି ପୁଣି ପାଲପକା ଟ୍ରକରେ ବସି ଆସ୍କାରେ ପହଁଞ୍ଚିଲୁ । ମୋର ମନେହେଲା, ପରିସ୍ଥିତିକୁ ମୁକାବିଲା କରି ଗବେଷଣାରେ ଆଗେଇବାକୁ ହୁଏ । ସେ ଅଭ୍ୟାସ ଥିଲେ କେଉଁଠି ଅସୁବିଧା ହେବନି ।

ସାର୍‌ଙ୍କ ମେଳାପି ପ୍ରକୃତି, ତାଙ୍କର ଏଇ ସଉକ୍‌ରେ ଖୁବ୍ ସାହାଯ୍ୟ କରିଛି । ତେଣୁ କୌଣସି ବନ୍ଧୁ ତାଙ୍କଠାରୁ ଖସି ଯାଇପାରନ୍ତିନି । ସାର୍‌ଙ୍କ ବାକ୍‌ପଟୁତା, ଚିନ୍ତନ ଓ ଜ୍ଞାନାନ୍ୱେଷୀ ଆମୋଦରେ ବନ୍ଧୁମାନେ ସହଜରେ ନିଜର ହୋଇପଡ଼ନ୍ତି । ଗଞ୍ଜାମ ବା ଦକ୍ଷିଣ ଓଡ଼ିଶା ଗଲେ ତାଙ୍କର ଜଣେ ନିବିଡ଼ ବନ୍ଧୁଙ୍କ ସାହାଯ୍ୟ ଅନିବାର୍ଯ୍ୟ ହେଇପଡ଼େ । ଚିତ୍ରଶିଳ୍ପୀ ତଥା ଗଞ୍ଜାମର ଜଣେ ପ୍ରହ୍ଲାଦ ନାଟକ ଗୁରୁ ଭାବେ ପ୍ରସିଦ୍ଧି ଲାଭ କରିଥିବା ବିଶ୍ୱବିହାରୀ ଖାଡ଼ଙ୍ଗା, ସବୁବେଳେ ଛାୟାମାୟାଭଳି ସାର୍‌ଙ୍କ ଗବେଷଣାରେ ଯୋଡ଼ି ହେଇ ରହିଥାନ୍ତି । ଖାଡ଼ଙ୍ଗା ବାବୁ ବନ୍ଧୁ ପ୍ରିୟ ଓ ସ୍ନେହୀ । କିନ୍ତୁ, ମହାଟିଙ୍ଗା । ନିଜ ପ୍ରବୃତ୍ତିକୁ ପରିବାରର ସମସ୍ତଙ୍କୁ ମଧ୍ୟ ବାଣ୍ଟି ଦେଇଛନ୍ତି । ସଂସ୍କୃତ ସାହିତ୍ୟରେ ପାରଙ୍ଗମ । ସଙ୍ଗୀତ ଶାସ୍ତ୍ରରେ

Digitized by srujanika@gmail.com

ଦିଗ୍ଗଜ । ଧରାକୋଟ ହାଇସ୍କୁଲରେ ଚିତ୍ରଶିକ୍ଷକ ଥିବା ବେଳେ ସାର୍‌ଙ୍କ ମାଧମରେ ମୋର ତାଙ୍କ ସହ ପରିଚୟ । ମୋ ସଂପର୍କ ଏତେ ନିବିଡ଼ ହୋଇଗଲା ଯେ, ମୋତେ ତାଙ୍କର ପୁଅ ଭାବେ ଗ୍ରହଣ କରିନେଲେ । ସାର୍‌ଙ୍କ ଗବେଷଣା ପରେ, ସେ ମୋର ଗବେଷଣାରେ ଏତେ ସାହାଯ୍ୟ କଲେ ଯେ, ଖାଡ଼ଙ୍ଗା ମଉସାଙ୍କ ସହଯୋଗ ବିନା ମୋର ସନ୍ଦର୍ଭ ଅଧୁରା ରହିଯାଇଥାନ୍ତା ।

ଖଲ୍ଲିକୋଟରେ ଚିତ୍ରଶିକ୍ଷା ସମୟରେ ଖାଡ଼ଙ୍ଗା ମଉସା ପାଠୀ ସାର୍‌ଙ୍କଠାରୁ ଦୁଇବର୍ଷ ଜୁନିୟର୍ ଥିଲେ । ଗଞ୍ଜାମ ଗସ୍ତରେ ସେ ସାର୍‌ଙ୍କ କାମରେ ସାମିଲ୍ ହୁଅନ୍ତି । ଭୋଜନ ଏବଂ ରହଣି ତାଙ୍କ ଘରେ ହୁଏ । ରାସ୍ତାରେ ଖାଡ଼ଙ୍ଗା ମଉସାଙ୍କର ନାଟକୀୟ କାରିଗରି ଆରମ୍ଭ ହୁଏ । ବେଦ, ଉପନିଷଦ, ଭଞ୍ଜ, କବିସୂର୍ଯ୍ୟ ତଥା ପ୍ରହ୍ଲାଦ ନାଟକର ଚର୍ଚ୍ଚା । ତାଙ୍କ ଗାୟନରେ ବାତୁଳି ବାଜେନି । ବାଣ ମାରିଲା ଭଳି ଗାଇଯାଆନ୍ତି । ଗାଁମାନଙ୍କରେ ପ୍ରହ୍ଲାଦ ନାଟକ କରୁଥିବା ବେଳର ଅଭିଜ୍ଞତା ସବୁ ଏକାଠି କରି ଶୁଣାନ୍ତି । ଆମୋଦପୂର୍ଣ୍ଣ ବକ୍ତବ୍ୟରେ ଥକ୍କା ମେଣ୍ଟି ଯାଏ । ହାର୍‌ଭାର୍ଡ୍ ବିଶ୍ୱବିଦ୍ୟାଳୟର ଥିଏଟର୍ ବିଭାଗର ପ୍ରଫେସର୍ ଡକ୍ଟର ଜନ୍ ଏମିଙ୍କୁ କିଭଳି ସେ ଗବେଷଣାରେ ସାହାଯ୍ୟ କରିଥିଲେ ତଥା ଗଞ୍ଜାମର ପ୍ରହ୍ଲାଦ ନାଟକକୁ ବିଶ୍ୱବିଖ୍ୟାତ କରିବା ପାଇଁ କି କି ତଥ୍ୟ ଯୋଗେଇଥିଲେ, ଜନ୍‌କୁ ପ୍ରହ୍ଲାଦ ନାଟକ ଦେଖେଇବା ସମୟରେ କୌଣସି ଏକ ନାଟପୁଞ୍ଜାରେ ସାପୁଆ ଚରିତ୍ରରେ ଥିବା ଭେଣ୍ଡିଆଟିଏ ନାଗସାପ ପ୍ଲେଟରେ କିପରି ଟଳି ପଡ଼ିଥିଲା, ସେକଥା ମଧ୍ୟ ଶୁଣେଇଛନ୍ତି । ଶାସ୍ତ୍ରୀୟ କଥା ବା ଅଭିଜ୍ଞତା କହିବା ବେଳେ ଗଞ୍ଜାମୀ ଗାଳିକୁ କଥାରେ ଲଥା ଭଳି ଯୋଡ଼ନ୍ତି । ଗାଳି ମାଧମରେ ନିଜ ବକ୍ତବ୍ୟକୁ ଆହୁରି ରଞ୍ଜକ କରିଦିଅନ୍ତି ।

ଚିତ୍ରକଳା ଓ କଳା ଇତିହାସର ସମନ୍ୱିତ ଗବେଷକ ଭାବେ ପାଠୀ ସାର୍ ହେଉଛନ୍ତି ପ୍ରଥମ ଓଡ଼ିଆ । ଉତ୍କଳ ଓ ବିଶ୍ୱଭାରତୀରୁ କଳା ଇତିହାସରେ ଦୁଇଟି ଡକ୍‌ଟରେଟ୍ ସେ ପାଇଛନ୍ତି । ତାଙ୍କର ପ୍ରଥମ ପି.ଏଚ.ଡ଼ି କଥା ଶୁଣିଥିଲେ ମଧ୍ୟ, ଦ୍ୱିତୀୟ ସଂଦର୍ଭ କାର୍ଯ୍ୟକୁ ହେଜିଛି । ଅଧକ୍ଷ ଥିବାବେଳେ ଅଧିକାଂଶ ଛାତ୍ରଛାତ୍ରୀଙ୍କଠାରୁ ସେ ଗବେଷଣା କାର୍ଯ୍ୟର ଆଶା ରଖି ସେମାନଙ୍କୁ ଉଚିତ ରାସ୍ତାରେ ଯିବାକଥା କହିଆସୁଥିଲେ । ଉଚ୍ଚଶିକ୍ଷା, ଉଚ୍ଚବିଦ୍ୟା, ଉଚ୍ଚଭାବଧାରା, ତଥା କଳାରେ ଉଚ୍ଚମାନ ରଖିବାକୁ ସେ ସେମାନଙ୍କୁ ତିଆରି କରି ବସିଲେ । କଳାଶିକ୍ଷାରେ ବୌଦ୍ଧିକ ଗବେଷଣାର ପୁଟ ଦେଇ ମହାବିଦ୍ୟାଳୟକୁ ପୃଥିବୀ ପ୍ରସିଦ୍ଧ କରିବାକୁ ସକ୍ଷମ ହେଲେ । **ସରକାରୀ ଶିକ୍ଷକ ଭାବେ ଦରମା ନେଉଥିବା ଓ ଦରମା ନେଇ ଛାତ୍ରଛାତ୍ରୀଙ୍କୁ ଚିହ୍ନିଥିବା ଶିକ୍ଷକଙ୍କ ମଧ୍ୟରେ ଖୁବ୍ ତଫାତ୍ ଥାଏ । ଜଣେ ଉତ୍ତମ ଛାତ୍ର ହେବା ଯେତେ କଠିଣ, ଜଣେ ଉତ୍ତମ ଶିକ୍ଷକ ହେବା ତହୁଁ ବଳି ଦୁରୂହ । ଉତ୍ତମ ଶିକ୍ଷକ, ସୌଭାଗ୍ୟରେ ହିଁ କଳା ଅନୁଷ୍ଠାନ ବା ଶିକ୍ଷାନୁଷ୍ଠାନକୁ ମିଳିଥାଏ । ଏଭଳି ଚରିତ୍ର ଓଡ଼ିଶାରେ ଖୁବ୍ ବିରଳ । ଚିଙ୍କିଟି ଦେଉ ତଥା ଖଲ୍ଲିକୋଟ କଳା ମହାବିଦ୍ୟାଳୟର ପ୍ରଥମ ଅଧକ୍ଷ ଶିଳ୍ପୀଗୁରୁ ଶରତଚନ୍ଦ୍ର ଦେବଙ୍କ ପରେ ଡକ୍ଟର ପାଠୀ ଉତ୍ତମ ଶିକ୍ଷକ ଭାବେ ଗ୍ରହଣୀୟ ହେବେ ।** ଶାନ୍ତିନିକେତନର ଇତିହାସରେ ମଧ୍ୟ ଏପରି ଦୃଷ୍ଟାନ୍ତ ଦେଖିବାକୁ ମିଳିଛି । ଶିଳ୍ପୀଗୁରୁ ନନ୍ଦଲାଲ ବୋଷ ଜଣେ ସଚ୍ଚା ଶିକ୍ଷକ ଥିଲେ ବୋଲି, ସେଠାକାର ବରିଷ୍ଠ ଶିଳ୍ପୀମାନଙ୍କଠାରୁ ଶୁଣିଛି । ଦୀର୍ଘ ପୃଷ୍ଠାର ମୋଟା ବାୟୋଡ଼ାଟା ଭିତରେ ସାର୍ ତାଙ୍କ ଶିଳ୍ପୀ ଜୀବନକୁ ଆହୁରି ବ୍ୟାପକ କରିବାକୁ ଚେଷ୍ଟିତ । ଯଦି ସେ ନ କରୁଥାନ୍ତେ, ପଚାଶ ପାଖାପାଖି ବହି ବାହାରିଲା କିପରି ? ଏଥିରେ ଖାଲି କଳା ଇତିହାସ ନାହିଁ, ଅଛି ଗଳ୍ପ, ଉପନ୍ୟାସ, ଭ୍ରମଣ କାହାଣୀ, ଆତ୍ମଜୀବନୀ ଓ କବିତା । ଏ ତାଲିକା ବାହାରେ ପୁଣି ଅଛି କୋଡ଼ିଏ-ତିରିଶିଟି ପ୍ରଦର୍ଶନୀ ପୁସ୍ତକ । ଏବେବି ସେ ଛାତ୍ର । ଅଧ୍ୟୟନ ଓ ଅଧ୍ୟବ୍ୟବସାୟର ଅନ୍ତ ନାହିଁ । ପଢାରେ ଅନ୍ତ ହେବାକଥା ନୁହେଁ ବୋଲି 'ନେହେରୁ ଫେଲୋସିପ୍' ତାଙ୍କ ଗବେଷଣାକୁ ଆହୁରି ବ୍ୟାପକ କରିଦେଉଛି । ଏଣୁ ଆଜି ଏଲିସ୍ ବୋନର୍ ଇନ୍‌ଷ୍ଟିଚ୍ୟୁଟ୍‌ର ନିର୍ଦ୍ଦେଶକ ସେ ହୋଇପାରିଲେ । ଛାତ୍ରଛାତ୍ରୀ ଆହୁରି ତିଆରି କରିବାରେ ବିତୃଷ୍ଣା ନାହିଁ କିମ୍ବା ନିଜେ ଛାତ୍ର ହେବାର କୌଣସି ପରବାୟ ନାହିଁ ।

Digitized by srujanika@gmail.com

୧୯୮୯ ମସିହା ନଭେମ୍ବର ୨୩ ତାରିଖର ସକାଳ । ସାର୍‌ଙ୍କ ଦ୍ୱିତୀୟ ସଂଦର୍ଭର ଶେଷ ପର୍ଯ୍ୟାୟ କାର୍ଯ୍ୟ ଖୁବ୍ ତୀବ୍ର ହୋଇଥାଏ । ଇଲେକ୍‌ଟ୍ରୋନିକ୍ ଟାଇପ୍‌ମେସିନ୍‌ରେ ଥାକଥାକ ସନ୍ଦର୍ଭ ପୃଷ୍ଠା ଟାଇପ୍ ହୋଇ ଆସୁଥାଏ । କଟକ ରୋଡ଼ରେ ନୂଆକରି ଖୋଲିଥିବା ଲକି ଜେରକ୍ସରେ ପ୍ରତିଲିପି ପ୍ରସ୍ତୁତି ହେଉଛି । ସାର୍‌ଙ୍କ କଞ୍ଚନା ଫ୍ଲାଟ ଘରେ ଆମେ କେତେଜଣ ଛାତ୍ର ବସି ଅଠା ମଡ଼ିଆ ଓ ଟାଚିଂ କାମରେ ଲାଗିଥାଉ । ଥାକଥାକ ପ୍ରତିଲିପି ସଜାଡ଼ୁ ସଜାଡ଼ୁ ସାର୍ ତାଙ୍କର ଚଷମାତଳୁ ଊର୍ଦ୍ଧ୍ୱ ତୀର୍ଯ୍ୟକ ଦୃଷ୍ଟିରେ ମତେ ଅନେଇ କହିଲେ, ଆଉ ବର୍ଷେ ପରେ ତମର ଡିଗ୍ରୀ ସରିବ । କଳା ଇତିହାସରେ ପି.ଜି. କଲେ ତମର ଫାଇଦା । ମୁଁ ବଞ୍ଚିଥିବା ଭିତରେ ତୁମେ କେଉଁଦିନ ଏମିତି ଥେସିସ୍ ପ୍ରସ୍ତୁତ କରିବ ? ମୁଁ ମରିଗଲେ ଗଲି । ଏ କାର୍ଯ୍ୟ ଓଡ଼ିଶାରେ କେହି କରୁନାହାନ୍ତି । ତୁମଠାରୁ ଆଶାକରି ରହିଲି । କଳା ଇତିହାସ ପଢ଼ । ଏଭଳି ଥିସିସ୍‌କର । ଯଦି ବଞ୍ଚିଥାଏ ତା ହେଲେ ଦେଖିବି । ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ 'ହଁ' ମାଇଲି । **ଭବିଷ୍ୟତକୁ ଆଶା ଥିଲେ ବି ମଣିଷ ବେଳେ ବେଳେ ନିରାଶ ହୋଇଥାଏ । କିନ୍ତୁ, ସାର୍‌ଙ୍କ ସେ ଦିନର ଭାବପ୍ରବଣତା ମୋ ପାଇଁ ଉଚିତ ଆଶୀର୍ବାଦର ରୂପ ନେଲା । ଏଗାରବର୍ଷ ବା ପ୍ରାୟ ଗୋଟିଏ ଯୁଗ ଲାଗିଗଲା। ସାର୍‌ଙ୍କ ତଦାରଖରେ ଦକ୍ଷିଣ ଓଡ଼ିଶାର ଲୋକନାଟକରେ ଚିତ୍ରକଳାର ପ୍ରଭାବ ଶୀର୍ଷକ ମୋର ପିଏଚ.ଡ଼ି ଆୱାର୍ଡ଼ ହେଲା ।** ସାର୍‌ଙ୍କ ଉପଦେଶ ଥିଲା ଯେ, ମରିବା ପର୍ଯ୍ୟନ୍ତ ଏଇକାର୍ଯ୍ୟ ଓଡ଼ିଶା ପାଇଁ କରିବାକୁ ହେବ । କିନ୍ତୁ ଚେଷ୍ଟା ଏବେ ବି ଅବ୍ୟାହତ । ସୁଫଳ ଓ ବିଫଳର ହିସାବ ଏତେ ଶୀଘ୍ର ନୁହେଁ।

ମୁଁ ଶାନ୍ତିନିକେତନରୁ କଳା ଇତିହାସରେ ସ୍ନାତକୋତ୍ତର ଡିଗ୍ରୀ ନେଇ ଭୁବନେଶ୍ୱର ଫେରିଲି। ସାର୍‌ଙ୍କ ଚନ୍ଦ୍ରଶେଖରପୁର ଘରେ ରହଣି । ଡି.ଏମ୍. ସ୍କୁଲରେ ଆଡ଼ହକରେ ଚିତ୍ରଶିକ୍ଷକ ଚାକିରିଟିଏ ମିଳିଲା କେବଳ ସାର୍‌ଙ୍କ ସୁପାରିଶ ଯୋଗୁଁ । ମୋର ବିବାହ ସରିଯାଇଥିଲେ ହେଁ ସ୍ତ୍ରୀଙ୍କୁ ତାଙ୍କ ପିତ୍ରାଳୟ କଟକରେ ରହିବାକୁ ପଡୁଥିଲା । ୧୯୯୩ ମସିହା ଗଣେଶ ଚତୁର୍ଥୀ ଦିନ ସାର୍ ତାଙ୍କର ଚନ୍ଦ୍ରଶେଖରପୁର ଘର ଛାଡ଼ି ବର୍ତ୍ତମାନର ଭୀମଟାଙ୍ଗି ଘରକୁ ସ୍ଥାନାନ୍ତରିତ ହେଲେ। ଘରର ତଦାରଖ କରି ସ୍ତ୍ରୀଙ୍କୁ ନେଇ ଚନ୍ଦ୍ରଶେଖରପୁର ଘରେ ରହିବାକୁ ଉପଦେଶ ଦେଇଗଲେ। ଗଲାବେଳେ ହଳେ ଫୁଲ୍‌ପ୍ୟାଣ୍ଟ୍ ଓ ଫୁଲସାର୍ଟ୍, ଗୋଟିଏ ବଡ଼ ମାଟିହାଣ୍ଡି, ତାୱା, ପିଠାଖଡ଼ିକା, ବଡ଼ଘଡ଼ମୁଚ, ଦୁଇଟି ଷ୍ଟିଲ୍‌ଗିନା, ଗୋଟିଏ ହିଟର୍, ଦୁଇଟି ଷ୍ଟିଲ୍‌ଡ଼େକ୍‌ଚି, ଗୋଟିଏ ରସଡ଼େକଚି, ଦୁଇଟି ଷ୍ଟିଲ୍‌ଥାଳି, ରୁଟିଗଢ଼ା ବେଲଣା ଏବଂ ଗୋଟିଏ ଚିକ୍କଣ ପଟି ଆମ ପାଇଁ ଛାଡ଼ି ଦେଇଗଲେ। କହିଲେ ଦିଲ୍ଲୀପ, ସବିତାକୁ ନେଇ ଏଇଠି ସଂସାର ଆରମ୍ଭ କର । ଭଗବାନ ଅଛନ୍ତି । ତମେମାନେ ଯଦି ଠିକ୍ ବାଟରେ ରହିଥିବ, ଭଗବାନ ତମକୁ ବାଟକଢ଼େଇ ନେବେ। ମୋର ସଂସାରିକ ଜୀବନ ତଥା କର୍ମମୟ ଜୀବନର ପ୍ରଥମ ପାହାଚ ଚଢ଼ିବାରେ ଶକ୍ତି ତଥା ବଞ୍ଚିବାରେ ପ୍ରଥମ ଭାତମୁଠା ମୁଁ ସାର୍‌ଙ୍କ ସେ ଘରୁ ପାଇଲି । ସାର୍ ଦେଇଥିବା ସେଇ ଛୋଟ ଛୋଟ ଜିନିଷ ସବୁ ମୋ ପାଇଁ ଗୋଟିଏ ଗୋଟିଏ ମହାର୍ଘ ଦରବ ହେଇ ରହିଯାଇଛନ୍ତି । ଏବେ ସୁଦ୍ଧା ସାଇତି ରଖିଛୁ ହୁଏତ କେବେ, କେଉଁଠି, କେତେବେଳେ, କିଏ ନା କିଏ, ଆମେ ମରିଗଲା ପରେ, ମୋ ବଂଶରେ ଥାଇ ଜଣେ ବି ସାର୍‌ଙ୍କୁ ମନେ ପକେଇବ । ଏଇ ଜିନିଷ ସବୁ ମହେଞ୍ଜୋଦାରୋ, ହରପ୍ପାର ଅମୂଲ୍ୟ ଦରବ ହେଇଯାଇପାରନ୍ତି । ସେଇ ଜିନିଷ ଉପରେ ନଜର ପଡ଼ିଲେ ସ୍ମୃତି ଅନୁଭୂତି ହୋଇ ଆମ ସ୍ୱାମୀସ୍ତ୍ରୀ ଉଭୟଙ୍କୁ ଜାବୁଡ଼ି ଧରେ । ଆଖିରୁ ଲୁହ ନ ଝରି ରହିପାରେନି।

ହଠାତ୍ ଏକ ସନ୍ଧ୍ୟାରେ ଆସି ସାର୍ ବସାରେ ପହଁଚିଲେ । ସାଙ୍ଗରେ ରାଓ ସାର୍ । ସବିତା ଯାଇ କବାଟ ଖୋଲୁଖୋଲୁ ପଚାରିଲେ, ତମର ଟାଉଟର୍ ସାମୀ କାହିଁ ? ଭିତରୁ ଆସି ପ୍ରଣାମ କରୁ କରୁ କହିଲେ, ସମୟ ନାହିଁ । କାଗଜ ବାହାରକର । ପିଏଚ.ଡ଼ି ସିନୋପ୍‌ସିସ୍ ଲେଖ । ଲେଖାର ଧାରାକୁ ଧରେଇଦେଇ ଦୁଇଦିନ ପରେ ଫାଇନାଲ୍ କରିବାକୁ ଆଦେଶ ଦେଇଗଲେ। ସିନୋପ୍‌ସିସ୍ ସରିଲା । ରେଜିଷ୍ଟ୍ରେସନ୍ କରିବାକୁ ହେବ । ଡି.ଏମ୍ ସ୍କୁଲରେ ଶିକ୍ଷକତା କରୁଥିଲେ ମଧ, ଦରମା ପାଉଥିଲେ ମଧ, ଆର୍ଥିକ ଅଭାବ ନିଶ୍ଚିତ ଭାବେ ଲାଗି ରହିଥାଏ । କିଛି ଟଙ୍କା ହେଲେ ବ୍ରହ୍ମପୁର

Digitized by srujanika@gmail.com

ବିଶ୍ୱବିଦ୍ୟାଳୟରେ ରେଜିଷ୍ଟ୍ରି ହେଇଯିବ । ଚିନ୍ତା ଘାରୁଛି । ପଟିଆ ଗାଁର କଣ୍ଟ୍ରୋଲ ଦୋକାନୀ ରାମନାଥ ସାହୁ । ମୋର ଅସୁବିଧା କଥା ଶୁଣି ହଜାରେ ଟଙ୍କା ଘରେ ଆସି ଦେଇଗଲେ । ପରଦିନ (୧୯୯୪ ଜାନୁଆରୀ ୧୨ ତାରିଖ) ବ୍ରହ୍ମପୁର ଯାଇ ପିଏଚ୍.ଡ଼ି.ରେ ନାମଲେଖେଇ ଆସିଲି । ରାମ ବାବୁଙ୍କ ଅକୁଣ୍ଠ ସାହାଯ୍ୟ ନିଶ୍ଚିତ ଭାବେ ମୋର ଦାୟିତ୍ୱ ବଢ଼େଇ ଦେଲା । ୧୯୯୪ ଫେବୃୟାରୀ ମାସରେ ମୋ ସଂନ୍ଦର୍ଭର ପ୍ରଥମ କ୍ଷେତ୍ର ଅଧୟନର ଆରମ୍ଭ । ସେଇ ପୁରୁଣା ଅନୁଭୂତି । ସେଇ ପ୍ରେରଣା । ଯାହା ସାର୍‌ଙ୍କ ଠାରୁ ପାଇଥିଲି । ଫର୍ମୁଲା ଏକା । ଆଗେଇବାରେ ଅସୁବିଧା ପ୍ରାୟ ନଥିଲା ।

ମଇ ମାସରେ ଚାକିରିରୁ ଛଟେଇ । ସ୍କୁଲ ଯିବା ବନ୍ଦ । ବଞ୍ଚିବାର ଝରକା ବି ବନ୍ଦ । କଷ୍ଟେମଷ୍ଟେ ବଞ୍ଚିବାର ରାସ୍ତା ଦେଖିବା ଭିତରେ ହଠାତ୍ ଦିନେ ଦୂରଦର୍ଶନର କଳାସଂସ୍କୃତିର ପ୍ରୋଗ୍ରାମ୍ ଏକ୍‌ଜିକ୍ୟୁଟିଭ୍ ଡକ୍ଟର ମାଳତୀ ସିଂହଙ୍କ ଡାକରା ମିଳିଲା । ଓଡ଼ିଶାର କଳା ସଂସ୍କୃତି ଉପରେ ମୁଁ କୁଆଡ଼େ କାମ କରୁଛି ବୋଲି ସେ 'ପ୍ରଜାତନ୍ତ୍ର' ଅଫିସରୁ ଶୁଣିଥିଲେ । ଟେଲିଭିଜନ୍‌ରେ ଚାରୋଟି ପ୍ରୋଗ୍ରାମ୍ ପାଇଲି । ଏଥି ସହ କଟକ ବେତାର କେନ୍ଦ୍ରରେ ମଧ କିଛି ପ୍ରୋଗ୍ରାମ ମିଳିଗଲା । ବେତାର କେନ୍ଦ୍ରରେ ଶିଳ୍ପୀ ଶିବ ପାଣିଗ୍ରାହୀଙ୍କର ଓ ଡାକ୍ତର ଜେ.ପି. ଦାସ (ହୃଦରୋଗ ବିଶେଷଜ୍ଞ)ଙ୍କ କଳାକୁ ନେଇ ଦୁଇଟି କୋଡ଼ିଏ ମିନିଟ୍‌ର ସାକ୍ଷାତ୍‌କାର ପ୍ରସାରଣ ହୋଇଥିଲା । ଓଡ଼ିଶାର କଳା ଶିକ୍ଷା, ସଂରକ୍ଷଣ ତଥା କିଛି କିଛି ସାକ୍ଷାତ୍‌କାର ମଧ ଉପସ୍ଥାପନା କରିବାକୁ ଗୌର ପଟ୍ଟନାୟକ ଏବଂ ରମାପଦ ନନ୍ଦ ପ୍ରୋତ୍ସାହନ ଦେଇଥିଲେ । ରେକର୍ଡ଼ିଂ ପାଇଁ ମୋ ପାଖରେ ଟେପ୍‌ରେକର୍ଡ଼ରଟିଏ ନଥିଲା । ଡକ୍ଟର ଜେ.ପି ଦାସଙ୍କର କୋଡ଼ିଏ ମିନିଟ୍ ସାକ୍ଷାତ୍‌କାର ରେକଡ଼ିଂ ତାଙ୍କର କ୍ଲିନିକ୍‌ରେ କରାଯାଇଥିଲା ଏବଂ କ୍ଲିନିକ୍ ସାମ୍ନା ସୋରୁମ୍‌ରୁ ଟେପ୍ ରେକର୍ଡ଼ରଟିଏ ଅଣା ଯାଇଥିଲା । ଜେ.ପି. ଦାସ ଏତେ ଖୁସି ହେଲେ ଯେ, ଶେଷରେ ସେହି ଟେପ୍‌ରେକର୍ଡ଼ରଟି ଉପହାର ଦେଇଦେଲେ । ତାହା ମୋ ଗବେଷଣା ଜୀବନରେ କାମରେ ଆସିଲା । ଏଥିରେ ପ୍ରାୟ ତିନିଶହ ବ୍ୟକ୍ତିଙ୍କର ସାକ୍ଷାତ୍‌କାର ରେକର୍ଡ଼ିଂ କରିପାରିଲି । ଏସବୁ କାର୍ଯ୍ୟ ହେଉଥିଲେ ହେଁ ଅଭାବ ଖୁବ୍ ଜୋର୍‌ରେ ଆମକୁ ଗ୍ରାସ କରିବସିଲା । ଅଭାବ ସବୁ ବ୍ୟକ୍ତିଙ୍କ ଜୀବନରେ ଆସିଥାଏ । ଯାହା ତା' ପାଇଁ ଏକ ଅନୁଭୂତି ହେଇ ରହିଯାଏ, ଶେଷରେ ଅବିସ୍ମରଣୀୟ ମଧ ହେଇପଡ଼େ । ଅଭାବରେ ସଢୁଥାଉ । ଦେଖୁ ଦେଖୁ ଉପବାସ ଆରମ୍ଭ ହେଲା । ଏକରୁ ଦୁଇ, ଦୁଇରୁ ତିନି । ବଢ଼ି ବଢ଼ି ଉପବାସ ଛଅ ଦିନରେ ପହଁଞ୍ଚିଲା । ଲଜ୍ଜା ଓ ସରମରେ ମୁଁ ସାର୍‌ମାନଙ୍କୁ ଜଣେଇ ନଥାଏ । ରାସନ୍ ବାଲାର ବାକି ଦେବା ଅସମ୍ଭବ । ଉପବାସର ଶେଷ ଦିନ । ଡକ୍ଟର ବିଜୟ ରଥ (ଏବେ ଓଡ଼ିଶା ପୁରାତତ୍ତ୍ୱ ବିଭାଗର ଅଧୀକ୍ଷକ) ସ୍ତ୍ରୀଙ୍କୁ ନେଇ ବସାରେ ପହଞ୍ଚିଲେ । ପାଣିଛଡ଼ା କିଛି ନାହିଁ । ଭିତର କଥା ଜାଣିବାରେ ତାଙ୍କର କୌଣସି ଅସୁବିଧା ରହିଲାନି । ବୁହେ ଗାଳିଦେଲେ । ରାସନ୍ ପାଇଁ କିଛି ଟଙ୍କା ଦେଇଗଲେ । ଜୀବନରେ ପ୍ରାକ୍‌ଟିକାଲ୍ ହେବାକୁ ପରାମର୍ଶ ଦେଇଗଲେ । ଡକ୍ଟର ରଥଙ୍କ ଯୋଗୁଁ ଜୀବନରକ୍ଷା ହେଇଗଲା । ତାଙ୍କ ଦୟାରୁ ଆଉ କିଛିବାଟ ବଞ୍ଚିଗଲୁ ।

ଯା ଭିତରେ ସାର୍ ଦିଲ୍ଲୀ ଲଳିତ କଳା ଏକାଡ଼େମୀର ସଚିବ ହେଇ ଚାଲିଯାଇଥିଲେ । ପ୍ରକାଶନ ପ୍ରସ୍ତୁତି ସହାୟକ ପଦ ପାଇଁ ଏକାଡ଼େମୀ ପ୍ରାର୍ଥୀ ଲୋଡ଼ିଲେ । ଆବେଦନ କଲି । ଇଣ୍ଟରଭ୍ୟୁ ପାଇଁ ଡାକରା ଆସିଲା । ଯିବା ପାଇଁ ଯୁ ନାହିଁ । ଜେ.ପି. ଦାସଙ୍କୁ ଦୁଃଖ ଜଣାଇଲି । ଦିଲ୍ଲୀ ଯିବା ଆସିବା ପାଇଁ ଦୁଇଟି ଟିକେଟ କରିଦେଲେ । ଦୂରଦର୍ଶନରେ ମୋର ପୁରୁଣା ଶିକ୍ଷକ ଶ୍ରୀ ବିପ୍ରଚରଣ ମହାନ୍ତିଙ୍କର ମୋ ଦ୍ୱାରା ପ୍ରସ୍ତୁତ ଏକ ସାକ୍ଷାତ୍‌କାର ପରେ, ବିପ୍ରସାର୍ ମତେ ଚାରିଶହ ଟଙ୍କା ଦେଇ କହିଲେ, ତମେ ଇଣ୍ଟରଭ୍ୟୁକୁ ଯାଅ । ମୁଁ ଆଶୀର୍ବାଦ କରୁଛି । ଇଣ୍ଟରଭ୍ୟୁ ହେଲା । କୃତକାର୍ଯ୍ୟ ହେଲି । ଚାକିରି ପାଇଲି । ଅନ୍ନ ଚିନ୍ତା ଚମତ୍‌କାରରୁ ଭଗବାନ ନିବୃତ୍ତ କରିବାକୁ ସାହାଯ୍ୟ କଲେ । ପାଠୀ ସାର୍ ମୋ ପେଟପାଇଁ ଦାନା ଖଞ୍ଜିଦେଲେ । ସାର୍ ସଚିବ । ସାର୍‌ଙ୍କ କ୍ୱାର୍ଟରରେ ମେସ୍ ଆରମ୍ଭ ହେଲା । **ପତିତପାବନ ମେସ୍** ବାହାୱଲ୍‌ପୁର୍ ହାଉସ୍, ଏନ୍.ଏସ୍.ଡ଼ି. କ୍ୟାମ୍ପସ୍‌ରେ । ପ୍ରଥମ ଚଢ଼େଇ ମୁଁ ବସାବାନ୍ଧିଲି ସେ ମେସ୍‌ରେ । ଚାକିରିର ଏପଇଣ୍ଟମେଣ୍ଟ ଚିଠି ସାର୍‌ଙ୍କ ଠାରୁ ପାଇଲି । ଚିଠିଟି ହାତକୁ ବଢ଼େଇ ଦେଇ

Digitized by srujanika@gmail.com

ସାର୍ କହିଲେ, ଭଗବାନ ଅନ୍ନପାଣି ଦେଲେ । କ୍ଲର୍କ ଭଳି ନୋଟ୍‌ସିଟ୍ ତଳେ ରହିଯିବାକୁ ଚେଷ୍ଟାକରନା । ଏଠାକାର ପରିସ୍ଥିତି ଭଲ ନୁହେଁ । ଓଡ଼ିଶାଠାରୁ ଆହୁରି ମାରାତ୍ମକ ଏ ଜାଗା । ଈର୍ଷାରେ ଲୋକ ଜଳିବେ । ଖାତିର୍ କରିବନି । ତୁମ ସ୍କିଲ୍ ଓ କାର୍ଯ୍ୟକୁ ସିଦ୍ଧ କରିବ । ଲୋକେ ଈର୍ଷା ହେଲେ ତୁମର ମଙ୍ଗଳ । ଚାକିରି ମିଳିଲା ବୋଲି ସଂଦର୍ଭ ଏବଂ ଲେଖାପଢ଼ାରେ ଯେପରି ବିଚ୍ୟୁତି ନହୁଏ । ଭଲରେ ରୁହ । କାଲି ଜଏନ୍ କରିନିଅ । ରିସର୍ଚ୍ଚର ଟର୍ଚ୍ଚ ଲାଇଟ୍‌କୁ ଜଳେଇବାରେ ଖୋରାକ୍ ମିଳିଗଲା । ସାର୍‌ଙ୍କ ଅନାବିଳ ସ୍ନେହ ମୋ ପାଇଁ ଆଶୀର୍ବାଦର ରୂପ ନେଇବସିଲା ।

ସାର୍ ଦିଲ୍ଲୀରେ ଦୁଇବର୍ଷ ସଚିବ ପଦରେ ରହିଥିବା ଭିତରେ ମୁଁ ଦେଖିଛି, ଅଫିସ୍‌ର ପ୍ରତ୍ୟେକ ପ୍ରୋଗ୍ରାମରେ ଓଡ଼ିଶୀ ଛାପ ବାଜେ । ଓଡ଼ିଆ ପିଲାମାନେ କାମ ପାଆନ୍ତି । ଓଡ଼ିଆ ସ୍କଲାର୍‌ମାନେ ଭାଷଣ ଦିଅନ୍ତି । ପାଠୀ ସାର୍ ସବୁବେଳେ ନିଜ ସଂସ୍କୃତି କଥା କହନ୍ତି । ସାର୍ ଏକାଡ଼େମୀରୁ ଚାଲିଯିବାର ପାଞ୍ଚ-ଛ ବର୍ଷପରେ ଏବେ ଶୁଣୁଛୁ ଯେ, ଏକାଡ଼େମୀ ଗଠନର ଚାଳିଶ ବର୍ଷପରେ, ଏକାଡ଼େମୀ ପ୍ରଥମ ଓଡ଼ିଆ ସଚିବ ପାଇଥିଲା ଏବଂ ଏକାଡ଼େମୀ ଇତିହାସରେ ସବୁଠାରୁ ସେ ବେଶୀ କାମ, ଆଉ ନୂଆ ନୂଆ କାମ କରିଦେଇ ଦେଶସାରା ଚହଳ ପକାଇଦେଇଥିଲେ । ଅଫିସ୍‌ର ଭଲମନ୍ଦକୁ, ନିନ୍ଦା ପ୍ରଶଂସାକୁ ଖାତିର ନଥିଲା ତାଙ୍କର । ଜାତୀୟସ୍ତରରେ ଓଡ଼ିଶାର ତାଳପତ୍ର ପୋଥିଚିତ୍ରର ଡକୁମେଣ୍ଟସନ୍ କରି ଏକାଡ଼େମୀ ଅଭିଲେଖକୁ ସମୃଦ୍ଧ କରିବାର ଅବଦାନ ସାର୍‌ଙ୍କର ହିଁ ରହିଲା । ଏକାଡ଼େମୀକୁ ଆସୁଥିବା ଶିଳ୍ପୀ ତଥା ଗବେଷକମାନଙ୍କ ପାଖରେ ଓଡ଼ିଶୀ ଚିତ୍ରକଳା ଆଶ୍ଚର୍ଯ୍ୟ ଭାବେ ପହଁଞ୍ଚିଲା । ଓଡ଼ିଶାର ତାଳପତ୍ର ପୋଥି ଡକୁମେଣ୍ଟ୍ କରିବା ପାଇଁ ଏକାଡ଼େମୀ ଫଟୋଗ୍ରାଫ୍‌ର ଆସି ଯେତେବେଳେ ପୋଥିଚିତ୍ର ବିଭାଗକୁ ଯାଏ, ମ୍ୟୁଜିୟମ୍ ଲୋକେ ତାଙ୍କୁ ପୂରେଇ ଦେଲେ ନାହିଁ । ବହୁ ଖଚକଥା ଶୁଣେଇଲେ । ସେମାନଙ୍କର କହିବା କଥା ଥିଲା ଯେ, ପାଠୀ ବାବୁ ଏସବୁ ନେଇ ବିଦେଶରେ ବିକିବେ । ଆମ ଜିନିଷ ଆମ ପାଖରେ ଥାଉ । ଏଥିରେ ଖୁବ୍ ଦୁଃଖ ହେଲା । ଏକାଡ଼େମୀର ଉଦ୍ଦେଶ୍ୟ ଖରାପ ନଥିଲା । କେବଳ କୂପମଣ୍ଡୁକ କରି ଆମ ସଂସ୍କୃତିକୁ ରଖିବା କେତେଦୂର ତାତ୍ପର୍ଯ୍ୟପୂର୍ଣ୍ଣ ସେ କଥା ମ୍ୟୁଜିୟମ୍ ଅଧିକାରୀ ବୁଝିବା ଦରକାର ଥିଲା । ଗବେଷଣା କ'ଣ ସେମାନେ ଜାଣିନଥିଲେ । ଯେତିକି ତଥ୍ୟ ଡକ୍ୟୁମେଣ୍ଟ୍ କରି ଏକାଡ଼େମୀରେ ସେ ରଖି ଯାଇଛନ୍ତି, ଯିଏ ତାକୁ ବ୍ୟବହାର କରୁଛି ଓଡ଼ିଶାକୁ ସବୁଠାରୁ ଶ୍ରେଷ୍ଠ ସଂସ୍କୃତି ସମ୍ପନ୍ନ ରାଜ୍ୟ ବୋଲି ସ୍ୱୀକାର କରୁଛନ୍ତି । ମ୍ୟୁଜିୟମ୍ କର୍ତ୍ତୃପକ୍ଷ ଆସି ଏହା ଯାଞ୍ଚ କରିନେବା ଉଚିତ । ନିଜ ସ୍ଥାନର, ନିଜ ରାଜ୍ୟର ସଂସ୍କୃତି କଥା କହୁଥିବା ବ୍ୟକ୍ତି ଡକ୍ଟର ପାଠୀ ଯଦି କୌଣସି ଓଡ଼ିଆଠାରୁ ଓଡ଼ିଶା ବିରୁଦ୍ଧରେ ଶୁଣନ୍ତି ତା' ହେଲେ ତା'ର ଚଉଦ ପୁରୁଷ ଉଦ୍ଧାର କରନ୍ତି । ଏଥିପାଇଁ ହେଉ ବା ଈର୍ଷାରେ ହେଉ, ସାର୍‌ଙ୍କ ସହ ବହୁ ବ୍ୟକ୍ତିଙ୍କ ମତାନ୍ତର ଘଟିଛି ଏବଂ ଘଟୁଛି ମଧ୍ୟ ।

ଆଧୁନିକ ସାହିତ୍ୟିକମାନଙ୍କୁ ସାହିତ୍ୟ କ୍ଷେତ୍ରରେ ଟକ୍କର୍ ଦେବାକୁ ସାର୍ ହଠାତ୍ ଅଣ୍ଟା ଭିଡ଼ିଲେ । ଓଡ଼ିଆ ଭାଷାରେ ନିଜର ଦାମ୍ଭିକତାକୁ ପ୍ରମାଣ କରିବସିଲେ । ଆତ୍ମଜୀବନୀ **ଦିଗପହଣ୍ଡିର ତ୍ରଇଁମାଷ୍ଟ୍ରେ** ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଦିଆଗଲା । ଗଳ୍ପ ପରେ ଉପନ୍ୟାସ । ପ୍ରଥମ ଉପନ୍ୟାସ **ସାୟୋନାରା**ର କଳେବର ଦେଖି ଦିଗ୍‌ଗଜ ଓଡ଼ିଆ ସାହିତ୍ୟିକମାନେ ଭରମିଗଲେ । କିଛି କହିଲେ, ବହିର ଚେହେରା ଭଲ, ଆଉକିଛି କହିଲେ ଗରିବ ସାହିତ୍ୟିକ ଆମେ, ଏମିତି କ'ଣ ଛାପିପାରିବୁ । ରୟାଲିଟି ବିନା କ'ଣ ବହି ପ୍ରକାଶନ ହୁଏ ? କଭର୍ ଡିଜାଇନ୍ ପାଇଁ ତ ଆମେ ଚିତ୍ରଶିଳ୍ପୀଙ୍କୁ ପଇସା ଦେଇପାରୁନୁ । ଏତେ ପଇସା କେମିତି ଖର୍ଚ୍ଚ କରିବୁ ? **ଏସବୁ କଥା ତର୍ଜମା କଲାପରେ ଜଣାପଡ଼େ ଯେ, ଯଦି ଓଡ଼ିଆ ଶିଳ୍ପୀମାନଙ୍କୁ କଦାକାର, ସମାଜର ଘୃଣ୍ୟଜୀବ ଭାବେ ରୂପ ଦିଆଯାଇଥାଏ, ତା' ହେଲେ ଆମର ନାଟ୍ୟକାର ଏବଂ ସାହିତ୍ୟିକମାନେ ସେଥିପାଇଁ ଦାୟୀ ରହିବେ ।**

Digitized by srujanika@gmail.com

ଚିତ୍ରରେ ହେଉ ବା ସାହିତ୍ୟରେ ହେଉ ଅଥବା ବକ୍ତୃତାରେ ହେଉ ପାଠୀ ସାର୍ ସବୁବେଳେ ନିଜ ସଂସ୍କୃତି କଥା କହନ୍ତି ଏବଂ ଯାହା କହନ୍ତି ତାକୁ ବିଶଦଭାବେ ନିଜ ଜୀବନରେ ସଙ୍ଗ କରିନେଇଛନ୍ତି । ଏଭଳି ମନୋଭାବ ରଖିବା ଏବଂ ତାକୁ ସଠିକ୍ ଭାବେ କାର୍ଯ୍ୟ କରିବାରେ ଯେଉଁ ଫରକ୍ ଥାଏ, କାର୍ଯ୍ୟକାରୀ କରିବାବେଳେ ତାହା ସାରଙ୍କ ପାଖରେ ଆମେ ଦେଖିନାହୁଁ । ଭାଷଣ ଦେଉଥିବା ବ୍ୟକ୍ତିମାନେ ବହୁକ୍ଷେତ୍ରରେ ସମାଧାନ କରିପାରନ୍ତିନି । କାହାଠାରେ ଏଭଳି ମନୋଭାବ ଦେଖିଲେ ସେ ତିକ୍ତତା ପୋଷଣ କରନ୍ତି । ଏଭଳି ଏକ ଅନୁଭୂତି ମୋ ସାମ୍ନାରେ ଘଟିଗଲା । ୧୯୯୮ ମସିହା ମଇ ମାସରେ ମୁଁ ମୋର ଗବେଷଣା କାମରେ ଦିଲ୍ଲୀରୁ ଆମ ଗାଁ ଆଡ଼େ ଯାଇଥାଏ । ସାର୍ ମଧ ମୋ ସାଙ୍ଗରେ ଥିଲେ । ଦକ୍ଷିଣଓଡ଼ିଶାର ବିଭିନ୍ନ ଜାଗା ବୁଲି ବୁଲି ବେଲଗୁଣ୍ଠାରେ ପହଁଞ୍ଚିଲୁ ସନ୍ଧ୍ୟା ଆଠରେ । ନୃସିଂହ ମନ୍ଦିରର ମଧ୍ୟଯୁଗୀୟ ଭିତ୍ତିଚିତ୍ର ଦେଖିବାକୁ ହେବ । ମୁଖଶାଳାର ଉତ୍ତର ଓ ଦକ୍ଷିଣ କାନ୍ଥରେ ଥିବା ରାମପଟ୍ଟାଭିଷେକ ଚିତ୍ରର ଫଟୋ ସଂଗ୍ରହ କରିବା ଥିଲା ମୁଖ୍ୟ ଅଭିପ୍ରାୟ । ଚିତ୍ରଗୁଡ଼ିକ ଖୁବ୍ ମର୍ମସ୍ପର୍ଶୀ ତଥା ନାଟକୀୟ ଥିଲା । ପଟଚିତ୍ର ଧାରାରେ ରଙ୍ଗବନକ । ରେଖା ରୁଚିପୂର୍ଣ୍ଣ । କିନ୍ତୁ, ଗବେଷଣାରୁ ଜଣାପଡ଼ିଥିଲା ଯେ, ଚିତ୍ରଗୁଡ଼ିକ କଲିକତି କ୍ୟାଲେଣ୍ଡର ଢାଞ୍ଚାକୁ ଆବୋରି ନେଇଥିଲା । ୧୯୯୫ ମସିହାରେ ଏହାର ଫଟୋ ମୁଁ ସଂଗ୍ରହ କରିଥିଲେ ହେଁ, ଆଉଥରେ ଫଟୋ ନେବା ଉଚିତ ବୋଲି, ମନ୍ଦିର ଭିତରେ ପଶିଲୁ । ଉତ୍ସାହରେ କ୍ୟାମେରା ସେଟ୍ କରି ଗଲାବେଳକୁ ଦେଖିଲୁ କାନ୍ଥ ଦେହରେ ଚିତ୍ର ନାହିଁ । ଦେହରୁ ଝାଳ ବାହାରିଗଲା । ପାଦତଳ ମାଟି ହଲିବାକୁ ଲାଗିଲା । ରାଗରେ ତଥା ଦୁଃଖରେ ଓଠ ଥରା ଧଇଲା । ବୁଝିବାରେ ଜଣାଗଲା ଯେ, ବେଲଗୁଣ୍ଠାର ଜଣେ କୁମୁଟି ଦାତାଙ୍କ ଦାନରେ ଚିତ୍ର ବଦଳରେ ପାଇଖାନା ଟାଇଲ୍ କାନ୍ଥରେ ଲଗେଇ ଦିଆଯାଇଛି । ଦୁହେଁ ନିରୁପାୟ । ଯୋଗକୁ ମନ୍ଦିର ସାମ୍ନା ପେଣ୍ଡରେ ସରସତୀ ଶିଶୁ ମନ୍ଦିରର ବାର୍ଷିକ ଉତ୍ସବର ଆୟୋଜନ ଚାଲିଥାଏ । ଉଦ୍ୟୋକ୍ତାମାନେ ଜଗିବସିଥାନ୍ତି । ମୁଖ୍ୟଅତିଥି ଆସିନାହାନ୍ତି । ସାର୍‌ଙ୍କୁ ଦେଖି ଉଦ୍ୟୋକ୍ତାମାନେ ମଞ୍ଚ ଉପରକୁ ପାଛୋଟି ନେଲେ । ସାର୍ ସମ୍ମାନିତ ଅତିଥି । ଭଞ୍ଜନଗର କଲେଜର ଅଧକ୍ଷ ଗଂଜନିଧି ତ୍ରିପାଠୀ, ମୁଖ୍ୟବକ୍ତା । ଭଞ୍ଜନଗର ଷ୍ଟେଟ୍ ବ୍ୟାଙ୍କ୍ ମ୍ୟାନେଜର ଆଉଜଣେ ସମ୍ମାନିତ ଅତିଥି ଥିଲେ । ମ୍ୟାନେଜର ବାବୁ ଶିଶୁ ଛାତ୍ର ଓ ସଭାସଦଙ୍କୁ ଘଇନା ଜାପାନ ଉପରେ ଏକ ଲମ୍ବା ଭାଷଣ ଦେଲେ । ଅଧକ୍ଷ ଗାଲାସ୍କି କଥା କହି ଜ୍ଞାନର ରୋମନ୍ଥନ କରି ପକେଇଲେ । ଶେଷରେ ସାର୍‌ଙ୍କ ଭାଷଣ । କ୍ଷୋଭ, ଦୁଃଖ, ଯନ୍ତ୍ରଣା ତଥା ସଂସ୍କୃତି ପ୍ରତି ଅବମାନନାର ନିଆଁରେ ଜଳୁଥିବା ସାର୍‌ଙ୍କ ଉଚ୍ଚାଙ୍ଗ ଭାଷଣ ବେଲଗୁଣ୍ଠା ଲୋକକୁ ଖୁବ୍ ଆଲୋଡ଼ିତ କଲା । ଭାଷଣର ବାକ୍ୟବାଣ ଧାରୁଆ ତୀର ଭଳି ଶ୍ରୋତାଙ୍କ ଦେହରେ ଭେଦିଗଲା । ଭାଷଣର କିୟଦଂଶ ମୋ ରେକର୍ଡ଼ରରେ ମଧ ସଂଗୃହୀତ ହୋଇଥିଲା । ତାହା ପାଠକଙ୍କ ନିମନ୍ତେ ପ୍ରଦତ୍ତ କଲି ।

''ଆପଣମାନେ ପିଲାଙ୍କ ସ୍କୁଲ ପରୀକ୍ଷା ପାଇଁ ଚିନ୍ତିତ । ମୋର ପୁଅ ବା ଝିଅ ପରୀକ୍ଷାରେ କେତେ ନମ୍ବର ପାଇବେ । ପୁଅ ମୋର ମନ୍ତ୍ରୀ ହେଇକିରି ଆସିବ । କୋଠା, ମଟରଗାଡ଼ି ମାଳ ମାଳ ଲମ୍ୱିଯିବ । ମନେ ରଖନ୍ତୁ, ଦେଶ ଓ ସମୟ ବର୍ତ୍ତମାନ ବଦଳି ଯାଇଛି । ଆମକୁ ଯେ ପାଠ ପଢ଼ା ହେଉଛି, ସେଥିରେ ମାନବିକତା ନାହିଁ , ସୌନ୍ଦର୍ଯ୍ୟ କିମ୍ବା ଐତିହ୍ୟ ପ୍ରତି ସମ୍ମାନ ନାହିଁ । ପରୀକ୍ଷା ଖାତାର ନମ୍ବର ଭିତରେ ମଣିଷ, ମଣିଷ ହେଇ ବଞ୍ଚେନାହିଁ । x x x ହେ ମୋର ବନ୍ଧୁମାନେ, ଉଡ଼ାଜାହଜରେ ବସିଲେ ମଣିଷ ବଡ଼ ହୋଇଯାଏ ନାହିଁ । ମୁଁ ହୁଏତ ଗଲା କୋଡ଼ିଏ ବର୍ଷ ହେଲା ଉଡ଼ାଜାହାଜରେ ହିଁ ଉଡୁଛି । ମୁଁ ଆପଣଙ୍କ କଥା କହୁଛି (ମ୍ୟାନେଜରଙ୍କୁ ହାତଦେଖେଇ)। ଉପରେ ଉଡ଼ୁଛି ବୋଲି ମୁଁ ନିଜକୁ ଦୂରେଇ ପାରିବିନି ମାଟିରୁ । ଯଦି ମୋର ମାଟିର ଲୋକଙ୍କୁ ଚିହ୍ନିବାକୁ ହେବ, ଯଦି ଏଇ ବେଲଗୁଣ୍ଠାର ସଂସ୍କୃତିକୁ ଚିହ୍ନିବାକୁ ହେବ, ତାହା ଆପଣଙ୍କ ପାଠ୍ୟପୁସ୍ତକରେ ଲେଖାହୋଇ ନାହିଁ, ତେଣୁ ସେଇକଥା ଆପଣ ଏଇ ମାଟିରୁ ବାହାର କରନ୍ତୁ । ପବନରେ ଏ ମାଟିର କଥା ଶୁଣନ୍ତୁ, ଏଇ ଗାଁର ସୂର୍ଯ୍ୟାସ୍ତରେ ଗାଁର ସଂସ୍କୃତିକୁ ଚିହ୍ନିପାରିବେ । ଲାଗୁଛି ସୂର୍ଯ୍ୟାସ୍ତରୁ ସେହି ରକ୍ତିମା ହଜିଯାଇଛି,

Digitized by srujanika@gmail.com

ଯିମିତି ଏ ଗାଁରୁ ସଂସ୍କୃତି ହଜିଯାଇଛି । ନା ସେହି ଗରିମା ଅଛି ନା ସଂସ୍କୃତି ? ତେଣୁ ଆପଣମାନେ ଯଦି ଭଲ ମଣିଷ ହେବାକୁ ଚାହାନ୍ତି, ଓଡ଼ିଆ ହେଇ ପରିଚୟ ଦେବାକୁ ଚାହାନ୍ତି ତା'ହେଲେ ମକ୍ଷି ଡାଙ୍ଗିର ସଂସ୍କୃତିକୁ ଭୁଲିଯାଆନ୍ତୁ । ଏଇ ଜାପାନ କଥା କହୁଥିଲେ ଜଣେ ବନ୍ଧୁ (ସଭାର ଅତିଥିଙ୍କୁ ଇଙ୍ଗିତ କରି) । ମୁଁ ଜାପାନ ଯାଇଥିଲି ଗଲାବର୍ଷ । ମାସେ ସେଇଠେ ଥିଲି । ଜାପାନ ଲୋକେ ଏମିତି ବିଦେଶୀ ଚୌକିରେ (ସଭାର ପ୍ଲାଷ୍ଟିକ ଚୌକିକୁ ଦେଖାଇ) ବସନ୍ତି ନାହିଁ । ସେମାନେ ସପମଶିଣା ପକେଇ ତଳେ ବସନ୍ତି । ଯୋଉ ଜାତି ସୂକ୍ଷ୍ମ କ୍ୟାମେରା ତିଆରି କରିପାରେ, ବିଳାସପୂର୍ଣ୍ଣ ଗାଡ଼ି ତିଆରି କରିପାରେ, ଟିଭି ତିଆରି କରିପାରେ, ସେଇଜାତି ଗୋଡ଼କୁ ଗୋଡ଼ ଛନ୍ଦି ତଳେ ବସି ଚାହାପାନ କରିବା ପରମ୍ପରାକୁ ମଧ୍ୟ ବଜାୟ ରଖିପାରେ । ଯେଉଁ ବଳଦ ଘୂରିନପାରି ବେଙ୍ଗଳା ଖୁଣ୍ଟିରୁ ଖସିଯାଏ, ସେ ପରମ୍ପରାରୁ ବିଚ୍ୟୁତ ହେଇଯାଏ, ଯଦି ମୁଁ ମୋ ମାଟିର କଥା ନ ବୁଝେ, ନ କହେ, ତା ହେଲେ ସେ କଥାର କିଛି ମୂଲ୍ୟ ନାହିଁ । ଯେ ଯେତେ ବଡ଼ ପାଠୁଆ ହେଉ ଏ ସମାଜରେ କିଛି ଯା'ଆସେ ନାହିଁ । ତେଣୁ ଆପଣମାନେ ଆପଣଙ୍କ ଜନ୍ମମାଟି ଏଇ ବେଲଗୁଣ୍ଠାକୁ ପ୍ରଥମେ ଚିହ୍ନିବାକୁ ଚେଷ୍ଟା କରନ୍ତୁ । ମୁଁ ବେଲଗୁଣ୍ଠାକୁ ଦେଖିବା ପାଇଁ ଆସିଥିଲି, କୋଡ଼ିଏ ବର୍ଷପରେ ସତରେ ଚିହ୍ନିପାରିଲି ନାହିଁ । ଲାଗିଲା କୋଡ଼ିଏ ବର୍ଷତଳର ମୋ ବେଲଗୁଣ୍ଠା ମୃତ । ମୋର ସେଇ ନୃସିଂହ ମନ୍ଦିର ନାହିଁ । କାନ୍ଥରେ ଯେଉଁ ରାମପଟ୍ଟାଭିଷେକ ଚିତ୍ର ଥିଲା, ତା' ଉଠେଇ ଦେଇ ମୂତ୍ରାଗାରର ଟାଇଲ୍ ଲଗାଇ ଦିଆହୋଇଛି ତାହା ଏକ ଅପସଂସ୍କୃତିର ପରିଚୟ । ଏଥିପାଇଁ ଆପଣମାନେ ଦାୟୀ । ତେଣୁ ଆପଣଙ୍କର ଯେଉଁ କଳା ଅଛି ତାକୁ ଚିହ୍ନିବାକୁ ଚେଷ୍ଟା କରନ୍ତୁ । ତା' ହେଲେ ଆପଣ ବେଲଗୁଣ୍ଠାକୁ ଚିହ୍ନିପାରିବେ । ମୁଁ ଏତିକି କହି ବିଦାୟ ନେଉଛି ।

ଏ ଭାଷଣ ବେଲଗୁଣ୍ଠା ଗାଁରେ ଖୁବ୍ ଆଲୋଡ଼ନ ସୃଷ୍ଟିକଲା । ମୁଁ ୧୯୯୯ରେ ପୁଣି ସେଠାକୁ ଗଲାପରେ ଶୁଣିଲି ଯେ ମନ୍ଦିର ଟ୍ରଷ୍ଟି, ଗରୁଡ଼ ବଖରାର ବଳକା କାନ୍ଥଚିତ୍ରମାନଙ୍କୁ ସଂରକ୍ଷଣ କରିବାକୁ ନିଷ୍ପତ୍ତି ନେଇଛନ୍ତି ।

ଗବେଷଣାର ସଉକ୍ ଏବେବି ସାର୍‌ଙ୍କ ଠାରେ ଉନ୍ମାଦିତ । ଓଡ଼ିଶାର ସମକାଳୀନ କଳାକୁ ଭାରତରେ ଚିହ୍ନଟ କରିବା ପାଇଁ ଆହୁରି କଦମ୍ ଆଗକୁ ଆଗକୁ ବଢୁଛି । ଏହାକୁ କେଉଁଠି କେତେବେଳେ କେଉଁ ସ୍ଥାନରେ ରଖାଯିବ ତା'ର ଆୟୋଜନକୁ ସାର୍ ଖୁବ୍ କ୍ଷିପ୍ର କରିଦେଇଛନ୍ତି । ଛଅ ଜଣ ଆଧୁନିକ ଓଡ଼ିଆ ଶିଳ୍ପୀଙ୍କୁ ନେଇ **ଓଡ୍ଡୀୟାନ୍** ପୁସ୍ତକ ପ୍ରକାଶ ହେବା ପରେ, **ଲେଟ୍ ଏ ଥାଉଜେଣ୍ଡ ଫ୍ଲାୱର୍ସ୍ ବ୍ଲୁମ୍** ପୁସ୍ତକର କଳେବର ପୁଣି ଓଡ଼ିଶାର ଆଧୁନିକ କଳା ଇତିହାସକୁ ଋଦ୍ଧିମନ୍ତ କରିଛି । ସାର୍‌ଙ୍କ କଲମ ଥକି ଯାଉନି । କଲମ ନିଜେ ନ ଥକି ଛାତ୍ରଛାତ୍ରୀମାନଙ୍କୁ ମଧ୍ୟ ବାଧ୍ୟ କରୁଛି ଆହୁରି ଆଗକୁ ଆଗକୁ ଚାଲିବାପାଇଁ । ପଡ଼ିଉଠି ଖଣ୍ଡିଆ ଖାବୁଡ଼ା ହେଇ ଚାଲୁଛନ୍ତି ସେମାନେ । ତଥାପି ମନରେ କିଛି ସନ୍ଦେହ କରନ୍ତି । ରାସ୍ତାର ଅନ୍ତ କେଉଁଠି ? ଏମିତି ହିଁ ଚାଲିବାକୁ ପଡ଼ିବ ବୋଧେ ! ଫାଷ୍ଟ ଏଡ୍‌ଭାନ୍ସବ୍ୟବସ୍ଥା ନାହିଁ । କେବଳ ଦୀର୍ଘ ସମୟ ଚିକିତ୍ସା ସରୂପ ଲେଖା, ପ୍ରବନ୍ଧ, ପୁଣି ଲେଖା, ଚିତ୍ର, ପ୍ରଦର୍ଶନୀ ଓ ପ୍ରବନ୍ଧ ପୁଣି ଆଉଏକ ପାଠଚକ୍ର ଓ ସେହି ଆଲୋଚନା ଭିତରୁ ପ୍ରକାଶନଟିଏ । ସବୁବେଳେ ସାର୍‌ଙ୍କ ଲୋମଗଙ୍କୁରା କଥା ପ୍ରତିଧ୍ୱନିତ ହୋଇ ଏକ ସୁମନ ବେଳାର ଉଦ୍ଦୀପନାରେ ଉନ୍ମାଦ ତୋଳି ଆନ୍ଦୋଳିତ ହୁଏ। ମରିବା ପର୍ଯ୍ୟନ୍ତ ଏ ସଉକ ରଖ । ଓଡ଼ିଆ, ଓଡ଼ିଶା, ଓଡ଼ିଶାର ସଂସ୍କୃତି ଓ ଓଡ଼ିଆ ଜାତିକୁ କ'ଣ ବା ଆମେ ଦେଇପାରିବା ? ଆମେ ନେତା ନୁହଁ ଯେ ସ୍କୁଲ ଘର, ଗାଁ ରାସ୍ତା, ପାଣିକଳ, ବିଜୁଳିବତୀ ଲଗେଇ ପାରିବା । ବ୍ୟୁରୋକ୍ରେଟ୍ ନୁହଁ ଯେ, ନାଲି ଫିତା ତଳେ ଲୋକଙ୍କୁ ବାନ୍ଧି ରଖି ଶାସନ କରିବା, ଇଂଜିନିୟର ନୁହଁ ଯେ, ଜାତୀୟ ରାଜପଥର ତତଲା ପିଚୁଡ଼ବା ତଳେ ହଜିଯିବା । ଶିଳ୍ପୀ, ସମାଲୋଚକ, କଳା ଐତିହାସିକ ଭାବେ ବଞ୍ଚିବାକୁ ହେଲେ ଗବେଷଣାର ସଉକ୍‌କୁ ଗ୍ରହଣ କରିବାକୁ ହେବ ନିଶାଗ୍ରସ୍ତ ମଣିଷ ଭଳି । ତୁମେମାନେ ଯେଉଁଠି ଥାଅ, ନିଜ ମାଟିର, ନିଜ ଗାଁର, ନିଜ ସଂସ୍କୃତିର, ନିଜ କଳାର ନିଜ ସାହିତ୍ୟ କଥା କହି ଜିତିବାକୁ ବାଜି ଲଗାଅ । ନିଶ୍ଚୟ ଜିତିବ ।

Digitized by srujanika@gmail.com

ପ୍ରଦୋଷ କୁମାର ମିଶ୍ର

## ବ୍ୟାପକ ସୃଜନ ପରିସରରେ ଦିନନାଥଙ୍କ କଳା ଇତିହାସ ଗବେଷଣା

ବାରାଣସୀର ଆଲିସ୍ ବୋନର୍ ସଂସ୍ଥାରେ ପ୍ରବାସ ସମୟରେ ଦିନନାଥ ପାଠୀଙ୍କ ବ୍ୟସ୍ତ ସମୟରୁ କିଛି ବାଣ୍ଟିବାର ସୁଯୋଗ ମିଳିଯାଏ ଓ ସେଇ ଭିତରେ ତାଙ୍କ ଅନ୍ୟତ୍ର କାର୍ଯ୍ୟବହୁଳ ଜୀବନର ମହତ୍ୱପୂର୍ଣ୍ଣ ବିନିମୟରେ ଅର୍ଜିଥିବା ଅନୁଭବର ସଫଳତା, ବିଫଳତା, ଖୁସି, ଦୁଃଖ, ଅନୁତାପ ଓ ଉତ୍ସାହର ଏକ ଲେଖାଯୋଗ୍ୟ ସନ୍ଦର୍ଭ ଆପେ ଆପେ ଏଇ ସମୟର ବ୍ୟବଧାନକୁ ଭରି ଦେଇଥାଏ । ବହୁମୁଖୀ ପ୍ରତିଭାର ଅଧିକାରୀ ଦିନନାଥ ଜୀବନକୁ କେବେ କଳାରୁ ଅଲଗା କରିନାହାନ୍ତି । ଏବେ ବି ସେଇ ପ୍ରଖର ବିଚାର, ଦିଗନ୍ତବ୍ୟାପି କଳ୍ପନା, ଯୋଜନା ଓ ତା'ର ରୂପାୟନକୁ ନେଇ ସେ ଚିନ୍ତିତ । କେବେ ତ ଭାବିବା ଦରକାର ଯେ ଶରୀର ଓ ମନ ଉଭୟର ପରିପକ୍ୱ ହେବାର ସମୟ ଭିନ୍ନ ଭିନ୍ନ। ମନ ଓ ଶରୀର ଉଭୟ ପରିପକ୍ୱ ହେବାରେ ଲାଗିଥିବା ବେଳେ ସେଇ ଗତିରେ ତାଳମିଳାଇ କଳା, କଳାକାର, କଳାଜଗତ ଓ କଳା ପର୍ଯ୍ୟାୟର ଚିନ୍ତା- ଅର୍ଥପୂର୍ଣ୍ଣ କଳାଯାତ୍ରାରେ ଶରୀରର ଭୂମିକା ଗୁରୁତ୍ୱପୂର୍ଣ୍ଣ ମନେ ହେଉଥିଲେ ମଧ ମନ ଓ ଦୃଢ଼ ଇଚ୍ଛା ଶକ୍ତି ହିଁ ଯାତ୍ରାକୁ ନିୟନ୍ତ୍ରଣ କରି ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ଦେଇପାରେ।

ଦିନନାଥଙ୍କ ଭାଷାରେ 'କଇଁଛ ପିଠିରେ ସମୟ ଚାଲିଛି'- ଏହି ପ୍ରସଙ୍ଗ ଭିତରେ କଇଁଛ ଗତିର ଧୀର ଓ ନିରନ୍ତରତା ତଥା ଠେକୁଆର ଆତ୍ମ ସନ୍ତୁଷ୍ଟି ଓ କାଳକ୍ଷେପଣର ମାର୍ମିକ ଅବବୋଧ ଆମ ନିକଟରେ ଗୁରୁତ୍ୱପୂର୍ଣ୍ଣ। ପ୍ରସଙ୍ଗ ଏଠି ଜୀବନ ଯାତ୍ରାର ଅବବୋଧ । ବିଷୟଟି କିଛି ଅନ୍ଧ ହାତୀ ଦେଖିବାକୁ ଯାଇ ଏକ ବିଚିତ୍ର ଖଣ୍ଡିତ ଅନୁଭୂତି ନେଇ ଫେରିଆସିବା ଭଳି କଥା ନ ହେଉ। ଥୋକେ କେବଳ ନାଚକୁ, କେହି ଗୀତକୁ, କେହି ସଙ୍ଗୀତ ତ କେହି ସାହିତ୍ୟକୁ ଅସଲ କଳା କହିବା ବେଳେ, ଓଡ଼ିଶା ଭଳି କଳାର ଗନ୍ତାଘରେ ଉଲ୍ଲାସ ଓ ବୌଦ୍ଧିକତାର ସାମଗ୍ରିକ ରଜ୍ଜୁରେ କଳାକୁ ବାନ୍ଧି ରଖିବାର ସଫଳ ଚେଷ୍ଟା କରିଛନ୍ତି ଦିନନାଥ । ଆଜିର କଳାକ୍ଷେତ୍ରରେ, ବିଶେଷକରି ଭାରତୀୟ ଉପମହାଦେଶରେ, ସାଂସ୍କୃତିକ ଅଧ୍ୟୟନକୁ ଅଧିକ ମହତ୍ୱ ଦିଆଯାଉଛି । କାରଣ ସେଇଟା କେବଳ କୌଣସି ନିର୍ଦ୍ଦିଷ୍ଟ ବିଧିରେ ନହୋଇ ସମଗ୍ରତାରେ ପାରସ୍ପରିକ ସମ୍ବନ୍ଧକୁ ପ୍ରକାଶିତ କରୁଛି । ଗୀତ, ସଂଗୀତ, ନାଚ, ସିନେମା, ସଂସ୍କାର(କୌଳିକ), ଜୀବନଶୈଳୀ ସମସ୍ତଙ୍କ ସଂସ୍ପର୍ଶରୁ କଳାର ନିର୍ମାଣ । ଏକଥା ଦିନନାଥ ଠିକ୍ ବୁଝିସାରିଥିଲେ ବୋଲି ସାରଗର୍ଭକ ତାଙ୍କ ଲେଖା। ଦିନନାଥଙ୍କ ଗବେଷଣା, ଚିତ୍ରୋପନ୍ୟାସ, ଜୀବନୀ, ପ୍ରବନ୍ଧ ଓ କବିତାରଚନା ମଧ କଳା-ସର୍ଜନାର ବୃହତ୍ତର ପରିଧି ମଧରେ ତାଙ୍କୁ ସ୍ଥାନିତ କରିଦେଇଛି। ଯେଭଳି ହାତ, ଗୋଡ଼, କାନ, ନାକ ଓ ଆଖି ଅଲଗା ମନେହେଲେବି ତା'ର ସମଷ୍ଟି କେବଳ ମଣିଷ ନୁହେଁ ସେଭଳି ଏହି ସମଗ୍ରତା ମଧରେ ପ୍ରବହମାନ ସାରବତ୍ତା ବା ପ୍ରାଣବତ୍ତା ହିଁ ମଣିଷ, ସେଭଳି ଦିନନାଥଙ୍କ ସୃଜନର ଓ ତା'ର ବିଭିନ୍ନ ବିଧା ଭିତରେ ପ୍ରବାହିତ ଅନ୍ତଃସ୍ରୋତ ହିଁ ତାଙ୍କ ଗବେଷଣା ଓ ରଚନାର ବୈଶିଷ୍ଟ୍ୟ।

ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟରେ କଳା ଇତିହାସ ବିଷୟ ପଢ଼ିବା ଆରମ୍ଭ କରି ଚଣ୍ଡୀଗଡ଼ ଓ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଗବେଷଣା ସଂପୂର୍ଣ୍ଣ କରିବା ମୋ ପାଇଁ ଏକ ଅଦ୍‌ଭୂତ ଅନୁଭବ ଆଣିଦେଇଥିଲା । ସମ୍ଭବତଃ ତା ପରେ ମୁଁ ବୁଝିପାରିଥିଲି ଯେ କଳା ସୃଷ୍ଟି ଓ ଅଧ୍ୟୟନ ଜୀବନକୁ ଆବୋରି ରଖିଛି, - ମଣିଷ ତା'ର ରଚନା କରିନି ବରଂ ଉଭୟ ପରସ୍ପରର ପରିପୂରକ ଅଙ୍ଗ ଅଟନ୍ତି । ଗବେଷଣା ଏକ ଦୁରୂହ ବ୍ୟାପାର । କିନ୍ତୁ ଦିନନାଥ ଏହାକୁ ସରଳ ଓ ବୋଧଗମ୍ୟ କରିବାର ଉପାୟକୁ ଖୁବ୍ ସତର୍କତାର ସହ ଅନୁସରଣ କରିଆସିଛନ୍ତି । ସୌଭାଗ୍ୟବଶତଃ ମୁଁ ଅନେକ କଳା ଇତିହାସକାରଙ୍କ ସମ୍ପର୍କରେ ଆସିଛି । ଅନେକ ଅଛନ୍ତି ଯେଉଁମାନେ ବିଶ୍ୱ ପରିପ୍ରେକ୍ଷୀରେ କାମ କରି

Digitized by srujanika@gmail.com

ନାମ ଅର୍ଜନ କରିଛନ୍ତି କିନ୍ତୁ ଦିନନାଥ କେବେ ବି ମାଟିକୁ ଛାଡ଼ି ନାହାନ୍ତି । ବରଂ ନିଜ ଓଡ଼ିଶା ମାଟିର କଳାକୁ ବିଶ୍ୱ ଦରବାରରେ ଆବଶ୍ୟକତା ଅନୁଯାୟୀ ପରିବେଷିତ କରିଛନ୍ତି । ଦିନନାଥଙ୍କ ଦ୍ୱାରା ରଚିତ ଅନେକ ପୁସ୍ତକ ଏହି ଉକ୍ତିକୁ ଯଥାର୍ଥ କରନ୍ତି, ଯାହାର ପ୍ରାସଙ୍ଗିକ ମର୍ମ ଏହି ଲେଖାରେ କରିବା ଆବଶ୍ୟକ । ତା'ଠୁ ଅଧିକା ଜରୁରୀ ହେଲା ସେମାନଙ୍କ ଅନ୍ତ ସମ୍ବନ୍ଧ, କଳାର ଓ କଳ୍ପନା ଓ କଳା ପ୍ରବନ୍ଧ ବହିରୁ ବିୟର ରୂପ ନିର୍ମାଣ ଏବଂ ଆଖ୍ୟାନ । **ଟିୟତେ ଇତିରୁ** କଳା ଇତିହାସ ଲେଖା ସେ ଆରମ୍ଭ କରନ୍ତି କିନ୍ତୁ ୧୯୮୦ର ପୁସ୍ତକ **ଓଡ଼ିଶା କୁନ୍‌ଷ୍ଟ ଉଣ୍ଡ୍ କୁଲଟୁର୍ ଇନ୍ ନର୍ଡଷ୍ଟ୍ ଇଣ୍ଡିଏନ୍** ତାଙ୍କ ଅଧ୍ୟୟନକୁ ଏକ ନୂତନ ରୂପ ପ୍ରଦାନ କଲା । ଏବର୍‌ହାର୍ଡ୍ ଫିସର୍ ଓ ସୀତାକାନ୍ତ ମହାପାତ୍ରଙ୍କ ସହ ଯୁଗ୍ମ ଲେଖନରେ ପ୍ରସ୍ତୁତ ଏହି ବହିଟି ମୁଖ୍ୟତଃ କଳା-ନୃତତ୍ତ୍ୱ ସମ୍ବନ୍ଧିତ ଦୃଷ୍ଟିକୋଣ ସହିତ ଦିନନାଥଙ୍କୁ ସାମାଜିକ ପରିଦୃଶ୍ୟ ଓ କଳା ନିର୍ମାଣ ସହିତ ସିଧା ସମ୍ପର୍କରେ ଆଣିଲା । ଏବର୍‌ହାର୍ଡ୍‌ଙ୍କ ଶୈଳୀରେ ଏହି ଗବେଷଣା ଏକ ଭିନ୍ନ କଳା ଐତିହାସିକ ପରମ୍ପରାର ଉନ୍ମୋଚନ କଲା ଓଡ଼ିଶାରେ, ଯେଉଁଥିରେ ପୂର୍ବରୁ ନିୟୋଜିତ ଥିଲେ ବିଖ୍ୟାତ କଳା ଐତିହାସିକ ବି.ଏନ୍. ଗୋସ୍ୱାମୀ, ହାକୁ ଶାହ ଓ ବାଲନ ନାମ୍ବିଆର । କଠିନ ପରିଶ୍ରମର ସଫଳ କୃତି ଏଇ ପୁସ୍ତକର ରଚନା, ଦିନନାଥ ସ୍ୱୀକାର କରନ୍ତି, ତାଙ୍କୁ ଏକ ନବୀନ ଓ ରଚନାତ୍ମକ ଦିଗନ୍ତ ପ୍ରତି ସଚେତ କରାଇଥିଲା । ଏଇ ଗବେଷଣା ଆଭିମୁଖ୍ୟର ପରିବର୍ତ୍ତନକୁ ଆଧାର କରି, ଗୋଟିଏ ପରେ ଗୋଟିଏ କୃତିର ରଚନା ହେଲା ଓ ଶୃଙ୍ଖଳାରେ ଦ୍ୱିତୀୟ ପ୍ରକାଶନ ଥିଲା **ମୁରାଲ୍ ପେଣ୍ଟିଙ୍ଗ୍‌ସ୍ ଇନ୍ ଓଡ଼ିଶା** ଯାହା ମୂଳତଃ ସୀତାବିଞ୍ଜିର ରାବଣଛାୟା, ବିରଞ୍ଚି ନାରାୟଣ ମନ୍ଦିର ର ଭିତ୍ତିଚିତ୍ର, ଧରାକୋଟର ଜଗନ୍ନାଥ ମନ୍ଦିର, ଚିକିଟି ଗଡ଼ର ଚୈତନ୍ୟ ମଠ, ଜୟପୁରର ଶ୍ରୀକାଳୀକା ମନ୍ଦିରର, ପୃଷ୍ଠଭୂମିକୁ କେନ୍ଦ୍ର କରି ପ୍ରକାଶିତ ହେଲା । ଏଇ ପୁସ୍ତକଟି କ୍ଷେତ୍ର ଗବେଷଣା ଉପରେ ନିର୍ଭର କରି ଓଡ଼ିଶାର ପାରମ୍ପରିକ ଭିତ୍ତିଚିତ୍ର ଉପରେ ଲେଖାଯାଇଥିବା ପ୍ରଥମ ବହି । ସମୁଦ୍ରଭଳି ଅଥଳ ଗଭୀର ଓଡ଼ିଶାର କଳା ଓ ସାଂସ୍କୃତିକ ସଂପଦ, ଯାହାର କିଛି ଅଂଶ ଆଜି ପାଠକ ପାଖରେ ପହଞ୍ଚିଛି, ତାହା କେବଳ ଦିନନାଥଙ୍କ ଲେଖା ମାଧ୍ୟମରେ। ଏହିପରି ଓଡ଼ିଶାନ୍ ମୁରାଲ ବହିରେ ତଥ୍ୟ ସହିତ ଶୈଳୀ, କଳାକାରର ବିଚାର ଓ ବିବେଚନାକୁ ସଫଳ ରୂପାୟନ କରିଥିଲେ ଦିନନାଥ । ଓଡ଼ିଶାର ପାରମ୍ପରିକ କଳା ସଂକ୍ରାନ୍ତୀୟ ଗବେଷଣାର ନିର୍ଯ୍ୟାସ ସ୍ୱରୂପ **ଟ୍ରାଡ଼ିଶନାଲ୍ ପେଣ୍ଟିଙ୍ଗ୍‌ସ୍ ଅଫ୍ ଓଡ଼ିଶା**, କେବଳ ଭିତ୍ତିଚିତ୍ର ନୁହେଁ, ତା ସହିତ ତାଳପତ୍ର ଚିତ୍ର, ପଟଚିତ୍ର ଓ କାଗଜ ଚିତ୍ରର ଅନେକ ସୂକ୍ଷ୍ମ ତଥ୍ୟକୁ ଭିତ୍ତିକରି ପ୍ରକାଶିତ ହେଲା । ଏହା ପୂର୍ବରୁ ଅନେକ ବିଦ୍ୱାନ ଏଇ ପାରମ୍ପରିକ ପ୍ରସିଦ୍ଧ ଚିତ୍ରକଳାକୁ ସଂକଳନ କରିବାକୁ ଚେଷ୍ଟା କଲେ ମଧ୍ୟ ମୌଳିକ ସ୍ରୋତ, ଚିତ୍ରକାରଙ୍କ ସହ ସାକ୍ଷାତ୍କାର, ବିଧି ଓ ପରମ୍ପରାର ଅନେକ ଗୂଢ଼ତତ୍ତ୍ୱ ଏଇ ପୁସ୍ତକଦ୍ୱୟରେ ରଚନା କଲେ ଦିନନାଥ । ଜେ.ପି. ଦାସ କୃତ **ପୁରୀ ପେଣ୍ଟିଙ୍ଗ୍‌ସ୍** ମଧ୍ୟ ପଟଚିତ୍ର ଗବେଷଣାର ଅନ୍ୟ ଏକ ଉଲ୍ଲେଖନୀୟ ସନ୍ଦର୍ଭ ।

**Heritage of Orissa: Land and People** ଓଡ଼ିଶାର ଲୋକ, ପ୍ରାନ୍ତ, ଲଘୁକଳା ଓ ଶିଳ୍ପର ପରମ୍ପରା ସଂପର୍କୀୟ ରଚନା । **Jayadeva and Gitagovinda in the Tradition of Orissa** । ଅନେକ ମତାମତ, ଦ୍ୱନ୍ଦ୍ୱ ଓ ପ୍ରଶ୍ନବାଚୀ ମଧ୍ୟରେ ଗୀତଗୋବିନ୍ଦର ରଚନା ତଥ୍ୟ ଭିତ୍ତିକ ହୋଇଥିବାରୁ ପ୍ରାମାଣିକତା ଦୃଷ୍ଟିରୁ ଅଦ୍ୱିତୀୟ । ଓଡ଼ିଶାର ସାହିତ୍ୟ ପରମ୍ପରା, ଚିତ୍ର, ନୃତ୍ୟ ଇତ୍ୟାଦି ବିଭିନ୍ନ ମାଧ୍ୟମରେ ଜୟଦେବ ଯେପରି ଓଡ଼ିଆ ଜାତିର ପ୍ରାଣକେନ୍ଦ୍ରକୁ ଛୁଇଁ ଯାଇଛନ୍ତି ତା'ର ଏକ ଆକଳନ ଏହି ସଂକଳନରେ ସ୍ଥାନିତ ହୋଇଛି। ଓଡ଼ିଶାର ସଂସ୍କୃତି ଓ ଜନଜୀବନ ସଂପର୍କରେ କୌଣସି ପ୍ରାମାଣିକ ଗ୍ରନ୍ଥ ଇଂରାଜୀ ଭାଷାରେ ଆଗରୁ ସମ୍ଭବ ହୋଇନଥିଲା । ଦିନନାଥଙ୍କ ଦ୍ୱାରା ସମ୍ପାଦିତ ଏହି ଗ୍ରନ୍ଥଟି ବିଷୟ ଚର୍ଚ୍ଚାର ବ୍ୟାପକତା ଦୃଷ୍ଟିରୁ ଏକ ଉଲ୍ଲେଖନୀୟ ଗ୍ରନ୍ଥ।

Digitized by srujanika@gmail.com

ଆଧୁନିକ ଯୁଗର ବିଦ୍ୟାର୍ଥୀ ଓ ଗବେଷକମାନେ ଶୀତତାପ ନିୟନ୍ତ୍ରିତ ଲାଇବ୍ରେରୀରେ ବସି ସେକେଣ୍ଡାରୀ ସୋର୍ସ ବା କେବଳ ଅନ୍ୟ ଲେଖକଙ୍କ ବହି ଉପରେ ନିର୍ଭରଶୀଳ ହୋଇ ପଡ଼ିଲେଣି। କ୍ଷେତ୍ରକୁ ଯାଇ ଘରଘର ବୁଲି ବିବରଣୀ ଏକାଠି କରିବା, ତାଙ୍କ ବ୍ୟବହାରର ଥିବା ପ୍ରତିବିମ୍ବ ଚିତ୍ର ବା ଅନ୍ୟ କଳାରୂପର ବିବେଚନା କରିବା, ଡାଏରୀଟିଏ ନେଇ ମୌଳିକ ତଥ୍ୟର ଲିପିବଦ୍ଧ କରିବା, ବାସ୍ତବିକ ପରିସ୍ଥିତିର ଫଟୋଟିଏ ଉଠାଇ ବିଚାରକୁ ନେଇ ଏକ ତାତ୍ତ୍ୱିକ ରୂପ ଦେବା, ଆଜିର ସମୟରେ ଏକ ସମୟ ସାପେକ୍ଷ୍ୟ ବ୍ୟାପାର । ତେଣୁ ସହଜ ଓ ସୋଫିଷ୍ଟିକେଟେଡ୍ ଉପାୟକୁ ଆଦରି କିଛି ଇଂରେଜୀ ଶବ୍ଦ ଗଢ଼ିବା ଭାଙ୍ଗିବା ପୁନଃରଚନା କରି ସିଦ୍ଧାନ୍ତଟିଏ ଥୋଇଦେବା ସରଳ । କିଏ ବୁଝିବ ଯାହା ଭିଜୁଆଲ୍ କଲ୍‌ଚର୍ ବା ପ୍ରାକ୍ସିସ୍‌ରେ ଅଛି ତାହା କେତେ ସ୍ୱଚ୍ଛ, ଶୁଦ୍ଧ ଓ ନିଆରା-ଅଛୁଆଁ ତେଣୁ ବିଶିଷ୍ଟ । ପ୍ରଥମେ ଗାଁ ଛାଡ଼ି ସହର ଓ ତାପରେ ମେଟ୍ରୋ ଓ କସ୍ମୋ-ତାପରେ ? ଗତି ଯଦି ନିୟନ୍ତ୍ରଣରୁ ବାହାର ହୁଏ ତେବେ ଲକ୍ଷ୍ୟ ଭ୍ରଷ୍ଟ ହେବାର ବିକଳ୍ପ ଅଧିକ । ସଭିଏଁ ବିନ୍ଦୁ(ଗାଁ)ରୁ ବିସ୍ତାର (କସ୍ମୋ)ର ପରିଧିକୁ ଗଲେ ସୂକ୍ଷ୍ମ (ମୌଳିକ)କୁ ବୁଝିବ କିଏ । ଆବଶ୍ୟକତା ହେଉଛି ଏଇ ସବୁ ଅନୁଭବ ନେଇ ବିନ୍ଦୁକୁ ଫେରିବା- ବିଶ୍ଳେଷଣ କରିବା ବିସ୍ତାର ପରିପ୍ରେକ୍ଷୀରୁ ବିନ୍ଦୁର ମହତ୍ୱ । **ଦିନନାଥ ରିଭର୍ସ ଯାତ୍ରାଟି ପୂରା କରିସାରିଛନ୍ତି ଦିଗପହଣ୍ଡିରୁ-ଜୁରିକ୍ ଓ ଲେଉଟାଣି ଦିଗପହଣ୍ଡିକୁ, ଗଞ୍ଜାମକୁ, ଦକ୍ଷିଣ ଓଡ଼ିଶାକୁ । ବ୍ୟକ୍ତିଗତ ଭାବେ କହିବାକୁ ଗଲେ ଗବେଷଣା ଦିନନାଥଙ୍କ ସର୍ଜନ ସଂସାରର ଦ୍ୱିତୀୟ ବିନ୍ଦୁ ଯାହା ତାଙ୍କ ଜୀବନକୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିଛି ।** କଳା ଇତିହାସର ପରିପ୍ରେକ୍ଷୀରେ ଏହା ଏକ ଯୁଗାନ୍ତକାରୀ ପ୍ରସ୍ତୁତି ଥିଲା, ଏହା ଭାରତର ପାରମ୍ପରିକ କଳା ଓ ଲୋକ ପରମ୍ପରାକୁ ପ୍ରତିନିଧିତ୍ୱ କରିବାରେ ସଫଳ ହୋଇପାରିଛି। ଏଇସବୁ ଆଲୋଚନା କରିବାର ତାତ୍ପର୍ଯ୍ୟ ହେଉଛି, ଦିନନାଥଙ୍କ ଗବେଷଣା ଚିତ୍ରକରଙ୍କ ଶାଳ ଓ ଓଷାକୋଠିରୁ ଆରମ୍ଭ ହୋଇ ରିନିଉଆଲ୍ ଆର୍ଟ୍ ମଧ୍ୟ ନେଇ ଚିତ୍ର ଉପନ୍ୟାସ (art fiction) ରୂପରେ ପୁନର୍ନବା ବହିରେ ପରିଣତ ହୋଇଛି। ଏଇ ଫିକ୍‌ସନ୍‌ଟି ଓଷାକୋଠି, କଳାକୁଞ୍ଜ ଏବଂ ଅନ୍ୟାନ୍ୟ ଲୋକ ବିଶ୍ୱାସ ଓ ପରମ୍ପରାର ଏକ କଳାତ୍ମକ ଓ ଗୁଣାତ୍ମକ ମାନ ସହିତ ଓଡ଼ିଶାବାସୀଙ୍କୁ ସରଳଭାଷାରେ ଉପଲବ୍ଧ ହେଲା । ଅନେକକଳା କୌଶଳ ଯେପରି ପଥର କାଟିବା, କାଠ ଖୋଦେଇ କରିବା ମାଟିରେ ମୂର୍ତ୍ତି ଗଢ଼ିବା ସହିତ ମଠ ସଂସ୍କୃତିର ଏକ ନିଛକ ଚିତ୍ର ସାବଲୀଳ ତଥା ମଞ୍ଜୁଳ ଓଡ଼ିଆ ଭାଷାରେ ବର୍ଣ୍ଣନା କରି ଦିନନାଥ ଓଡ଼ିଶାର କଳା ମର୍ମଜ୍ଞଙ୍କୁ ଋଦ୍ଧିମନ୍ତ କରିପାରିଛନ୍ତି। ମନ ଥିଲେ ଗବେଷଣାର ତଥ୍ୟପୂର୍ଣ୍ଣ ମୂର୍ଦ୍ଧଣ୍ୟ ଆଲୋଚନା ମଧ୍ୟ ପାଦଟୀକାର ଜଂଜାଳରୁ ଓହ୍ଲେଇ ସ୍ୱଚ୍ଛନ୍ଦ ଭାଷା ଓ ଚିନ୍ତା ଦେଇ ଜନମାନସକୁ ପ୍ରଚୋଦିତ କରିପାରେ ।

ଦିନନାଥଙ୍କ ଗବେଷଣାର ପ୍ରକୃତି ନିଆରା । Field studyରୁ ଫେରିବା ପରେ ଫଟୋ ଓ ବିବରଣୀକୁ ସଜାଡ଼ି ବସିବା ବେଳେ ଛାତ୍ର, ସହଯୋଗୀ ଓ କଳାମର୍ମଜ୍ଞଙ୍କ ସହ ଅନେକ ଚର୍ଚ୍ଚା କରନ୍ତି-କୁହନ୍ତି ଏଇ ଆଦାନପ୍ରଦାନ, ତର୍କ ବିତର୍କ ଓ ଚର୍ଚ୍ଚାରେ ଯେଉଁ ସାର ମିଳେ ତାକୁ ଗବେଷଣାରେ ସେ ସ୍ଥାନ ଦିଅନ୍ତି । କହିବାକୁ ଗଲେ ପ୍ରୟୋଗ ଶାଳାରେ ବୈଜ୍ଞାନିକମାନେ ନିଜ ସିଦ୍ଧାନ୍ତର ପ୍ରୟୋଗାତ୍ମକ ପରୀକ୍ଷା କଲାପରି ଏକ ନିରପେକ୍ଷ ଗୋଷ୍ଠୀ ସହ ତାଙ୍କର ସମସ୍ୟା ଓ ପ୍ରାପ୍ତି ଗ୍ରହଣୀୟତା କଷଟିରେ ପରୀକ୍ଷା କରି ନିଷ୍କର୍ଷରେ ପହଞ୍ଚନ୍ତି ଦିନନାଥ । ପ୍ରାୟ ସବୁ ବିଖ୍ୟାତ କଳା ଇତିହାସକାରଙ୍କ ଅନେକ ବିଶିଷ୍ଟ ଲକ୍ଷଣରୁ ଏଇଟା ଗୋଟେ ।

**ଦିନନାଥ ଓଡ଼ିଶା ଭଳି ଏକ ଉପେକ୍ଷିତ ବାତାବରଣରେ ରହିଲେ ମଧ୍ୟ ସୁଇସ୍ ଆନ୍ତର୍ଜାତିକ ଗବେଷକ ଏବର୍‌ହାର୍ଡ୍ ଫିସର୍‌ଙ୍କ ସାନ୍ନିଧ୍ୟ ତାଙ୍କୁ ଧନ୍ୟ କରିଛି କଳା ଚିନ୍ତନ ଓ ବିବେଚନାରେ । ଦିନନାଥ କ୍ଷେତ୍ର ପରିଦର୍ଶନରେ ନ ଯାଇ, ନ ଦେଖି ଗବେଷଣା ଆଗକୁ ବଢ଼ାଇ ନଥାନ୍ତି ।** ତଥ୍ୟ ଭିତ୍ତିକତା, ଦୃଶ୍ୟ ନିର୍ଭରଶୀଳତା ଓ ବିଶ୍ଳେଷଣ କଳା ଗବେଷଣାର

Digitized by srujanika@gmail.com

ମୌଳିକତା । ଏସବୁ ଆଦ୍ୟ ଗବେଷଣା ଭିତ୍ତିଭୂମି ନିର୍ମାଣ କରିବାରେ ସହାୟକ ହୋଇଥାଏ । ଏପରି ନୁହେଁ ଯେ ପୂର୍ବରୁ ନିଆଯାଇଥିବା ଫଟୋ ଓ ବିବରଣୀକୁ ଗ୍ରହଣ କରାଯାଏନି । ପୂନର୍ନବା ଚିତ୍ରୋପନ୍ୟାସରେ ଚିତ୍ରକାର କେବଳ କୁଶଳୀ କାରିଗର ନୁହେଁ ବରଂ ନବଯୌବନ ପ୍ରକ୍ରିୟାର ସୂତ୍ରଧର । ତେଣୁ ଏଭଳି ଉପନ୍ୟାସ ପୁସ୍ତକର ରଚନା କଳାକୁ ବ୍ୟାବହାରିକ ଦୃଷ୍ଟିକୋଣ ସହିତ ଖାପ ଖୁଆଇ ଦୃଶ୍ୟସଂସ୍କୃତି ସ୍ତରକୁ ନେଇଯାଏ । ପ୍ରାୟ ଏଇ ବିଷୟକୁ ଆଧାର କରି ଦିନନାଥ Renewal Art ବା ପୂନର୍ନବୀତ କଳା ସମ୍ପର୍କରେ ଗବେଷଣା କରିବା ପାଇଁ ଜବାହରଲାଲ୍ ନେହେରୁ ଫେଲୋସିପ୍ ପାଇଥିଲେ । ଏଭଳି ଫେଲୋସିପ୍ ପାଇବାରେ ସେ ଓଡ଼ିଶାର ପ୍ରଥମ ଗବେଷକ । ତାଙ୍କ ଆଗରୁ ଭାଷାତତ୍ତ୍ୱବିତ୍ ଦେବୀ ପ୍ରସନ୍ନ ପଟ୍ଟନାୟକ ଯଦିଚ ଏହି ଫେଲୋସିପ୍ ପାଇଥିଲେ, ତାଙ୍କର କର୍ମଭୂମି ଥିଲା ମହିଶୂର । **ମୋର ମନେ ଅଛି ପୂଜା ପାଇଁ ବ୍ୟବହୃତ ଚିତ୍ରିତ ପଟିସବୁ ବିସର୍ଜନ ପ୍ରକ୍ରିୟାରୁ ଉଦ୍ଧାର କରି ଆଣି ଉତ୍ସାହର ସହ ଚର୍ଚ୍ଚା କରିବା ଓ ଆମ ଭଳି କଳା ଐତିହାସିକମାନଙ୍କୁ ଜୀବନରେ ଉଭାରିବାର ସାହସକୁ ଆଧାରକରି ଆଗେଇ ନେବା ବେଳେ ସେ କୁହନ୍ତି- ଯେ କଳାରେ ଭାବନାକୁ ଓ ଇନ୍ଦ୍ରିୟାନୁଭୂତିକୁ ସ୍ଥାନ ଦେବା ଏକ ସାଧାରଣ କଥା କିନ୍ତୁ ସିଦ୍ଧାନ୍ତର ଅନୁଭୂତି ପ୍ରାଣର ବାହକ ଭାବରେ କଳାର ସର୍ଜନ, ଆବାହନ ଓ ବିସର୍ଜନ ପ୍ରକ୍ରିୟାକୁ କେତେ ଜୀବନ୍ତ କରିଦିଏ ।** ତେଣୁ ଯେକୌଣସି ପର୍ଯ୍ୟାୟର କଳାର ସମ୍ପୂର୍ଣ୍ଣ ଅବଧାରଣା, ଅନୁଶୀଳନ ଓ ଅନ୍ତଃ ଆଲୋଡ଼ନ ଆବଶ୍ୟକ । ବିଭୂତି କାନୁନ୍‌ଗୋ ମହାବିଦ୍ୟାଳୟରେ ଛାତ୍ରାବସ୍ଥାରେ ଏହା ବୁଝିବାରେ ଜଟିଳ ଥିଲା କିନ୍ତୁ ସମୟାନୁସାରେ ବିଷୟର ଅନେକ ନିର୍ଯ୍ୟାସ ଓ ଅପରିହାର୍ଯ୍ୟତା ସହିତ ପରିଚିତ ହୋଇ ପ୍ରାୟ ୧୫ବର୍ଷ ଅଧ୍ୟାପନା ପରେ ମତେ ଲାଗେ ଯେ ଦିନନାଥ ସେ ସମୟରେ ମଧ ସମ୍ପୂର୍ଣ୍ଣ କଳାର ମାର୍ମିକ ଉପଲବ୍ଧି, ତା'ର ପ୍ରକାଶ ବିଧି କଥା ବୁଝିଥିଲେ । ୨୦୦୭ରେ ଗାୟତ୍ରୀ ସିହ୍ନାଙ୍କ ଭିଜୁଆଲ୍ କଲ୍‌ଚର୍ ମାର୍ଗ ପତ୍ରିକା ଦ୍ୱାରା ପ୍ରକାଶିତ ହେବା ପରେ ତାହା ଅନେକ ଭାରତୀୟ କଳାକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ୨୦୦୦ରେ When was Modernism ଏଇ ଦୃଷ୍ଟିକୋଣକୁ ପରିଭାଷିତ କରିଥିଲା । କିନ୍ତୁ ଯେହେତୁ ଏଇ ପୁସ୍ତକଟି ଗୀତା କପୁରଙ୍କ lecture series ଉପରେ ଆଧାରିତ ଥିଲା ତେଣୁ କୌଣସି ଚହଳ ପକାଇପାରି ନଥିଲା । ତପତିଗୁହା ଠାକୁର ତାଙ୍କ ପୁସ୍ତକ -Art Anthropological Study ରେ colonialର ପ୍ରୟୋଗ ଓ ଆଧୁନିକ ଭାରତୀୟ କଳାରେ ବଙ୍ଗଳାର ଯୋଗଦାନକୁ ରେଖାଙ୍କିତ କରିଥିଲେ । ଏ ସମସ୍ତ ଲେଖା ମୂଳତଃ ସଂଗ୍ରହାଳୟ, ଗ୍ରନ୍ଥାଳୟ ଓ ଅଭିଲେଖାଗାରରେ ସଂଗୃହୀତ । କଳାକୃତି ଉପରେ ପ୍ରତ୍ୟକ୍ଷ ଭାବେ ଆଧାରିତ ନହେଲେ ନିଜ ଆଖି ଓ କଲମକୁ ସନ୍ତୁଷ୍ଟି ଦେବ କିଏ ? ତେଣୁ ଯେ ପର୍ଯ୍ୟନ୍ତ ସେମାନେ କ୍ଷେତ୍ର ଗବେଷଣାର ଶ୍ରମ କରିନାହାନ୍ତି ତାଙ୍କ ପାଠ ସାର୍ଥକ ହେବନି । ଧରାକୋଟ ଜଗନ୍ନାଥ ମନ୍ଦିରର ଗବେଷଣା ଚାଲିଥିବା ବେଳେ, ଛାତ ତଳର ଚିତ୍ର ଫଟୋ ଉଠାଉଥିବା ବେଳେ ସିଡ଼ିଟି ଖସିଗଲା କିନ୍ତୁ ଧୈର୍ଯ୍ୟର ସହ ଦିନନାଥ କାର୍ଯ୍ୟ ସମ୍ପନ୍ନ କରି ଏକ ନୂତନ ଦିଗର ଉନ୍ମୋଚନ କରି ଫେରିଲେ । ପଟଚିତ୍ରର ପରମ୍ପରା କେବଳ ପୁରୀର ମାଲିକାନା ନୁହେଁ ବରଂ ଦକ୍ଷିଣ ଓଡ଼ିଶାରେ ଏଇ ପରମ୍ପରାର କଳାକାର ଏକ ବିରଳ ପଦ୍ଧତିକୁ ଆପଣେଇ କଳାରେ ପୁଟ ଭରିଚାଲିଥିଲେ । ପ୍ରତ୍ୟେକଟି ପେନାଲ୍ ଆଳଙ୍କାରିକ ହେଉ ବା ରୂପଭିତ୍ତିକ ହେଉ, ସବୁର ସଜାଣ ଓ ଚର୍ଚ୍ଚା ଭିନ୍ନ । କଳାର ମାଧ୍ୟମ ଦେଇ କଳାକାରର ମନ ଭେଦିବା ବାଟଟା ଦିନନାଥଙ୍କୁ ଜଣା । ସମ୍ଭବତଃ ସେଇଥିପାଇଁ ସେ ଆଧୁନିକ କଳା ସହିତ ପାରମ୍ପରିକ ପ୍ରୟୋଗ ଓ ସଂସ୍କାରକୁ ପ୍ରାଥମିକତା ଦେଇ ଆସିଛନ୍ତି ।

ଏଇ ଭିତରେ ତାଙ୍କର ପରିଚୟ ହୁଏ ରମଲି ଇବ୍ରାହୀମ୍‌ଙ୍କ ସଙ୍ଗରେ । ଓଡ଼ିଶୀ ନୃତ୍ୟଗୁରୁଙ୍କ ସହ କୁଆଲା ଲୁମ୍‌ପୁରରେ ଏବଂ ସେ ହଠାତ୍ ସେଇ ଛନ୍ଦ, ତାଳ ଓ ବିଷୟ ପ୍ରତି ପୁରୁଣା ଆଗ୍ରହକୁ ଜାହିର୍ କରିବାରେ ଲାଗିଯାନ୍ତି । ଗୁରୁ ଦେବପ୍ରସାଦ ଦାସଙ୍କ ଓଡ଼ିଶୀ ନୃତ୍ୟଶୈଳୀରେ ପ୍ରଭାବିତ ହୋଇ ସେ ଓଡ଼ିଶୀ ନୃତ୍ୟ ବିଷୟରେ ପଢ଼ିବା ଆରମ୍ଭ କରନ୍ତି । ସଂଯୁକ୍ତା ଓ ରଘୁନାଥ ପାଣିଗ୍ରାହୀଙ୍କ ସହ ପୁରୁଣା

Digitized by srujanika@gmail.com

ପରିଚୟ ଓ ଓଡ଼ିଶୀ ସହ କୋଣାର୍କ ନାଟମଣ୍ଡପରୁ ଅନୁଭବର ପୁଟୁଳି ଖୋଲି ସେ ବୁଝିଲେ ଯେ ଓଡ଼ିଶୀ ନାଚର ପ୍ରସିଦ୍ଧିରେ ଭାସି କୌଣସି ଗୁରୁତ୍ୱପୂର୍ଣ୍ଣ ଗବେଷଣା କାର୍ଯ୍ୟ କରାଯାଇନାହିଁ, ତା ନୁହେଁ ଯେଉଁ କେତୋଟି ପୁସ୍ତକର ରଚନା ମଧ ହୋଇଛି, ତା ବି ଅଭିସନ୍ଧିମୂଳକ ଓ ତ୍ରୁଟିପୂର୍ଣ୍ଣ । ଓଡ଼ିଶୀ ନୃତ୍ୟାଙ୍ଗନାଙ୍କ ଓଢ଼ଣୀ ପକାଇବା ବା ନ ପକାଇବା ପ୍ରସଙ୍ଗକୁ ନେଇ ଓଡ଼ିଶାରେ କିଛି ନୃତ୍ୟ ଅନଭିଜ୍ଞ ସାମ୍ବାଦିକ ଯେଭଳି ସମ୍ବାଦ ପତ୍ରରେ ରମଲି ଇବ୍ରାହୀମ୍‌ଙ୍କ ବିରୁଦ୍ଧରେ କୁତ୍ସାରଟନା କଲେ ତାହା ଦିନନାଥଙ୍କୁ ମାନସିକ ଯନ୍ତ୍ରଣା ଦେଲା । ସେ ନିଷ୍ପତ୍ତି ନେଲେ ଯେ ଓଡ଼ିଶୀ ନୃତ୍ୟ ସଂପର୍କରେ ଗୋଟିଏ ପ୍ରାମାଣିକ ସମାଲୋଚନା ମୂଳକ ଗ୍ରନ୍ଥ ରଚନା କରିବେ । ଲିପିବଦ୍ଧ କଲେ ଅନେକ ଅକୁହା, ଅଲେଖା, ଓ ଗୂଢ଼ କଥା **ରିଥିଙ୍କିଙ୍ଗ୍ ଓଡ଼ିଶୀ'** ପୁସ୍ତକରେ । ଅନେକ ଏହାକୁ ନୃତ୍ୟକ୍ଷେତ୍ରରେ ଦିନନାଥଙ୍କ ଅନଧିକାର ପ୍ରବେଶ କହିବା ବେଳେ ସେମାନେ କୌଣସି ଯୁକ୍ତି ବା ତଥ୍ୟ ବଳରେ ବହିର ଅକାଟ୍ୟ ପ୍ରମାଣକୁ ଖଣ୍ଡନ କରି ପାରିନଥିଲେ । । ସେଇ ଶୃଙ୍ଖଳାରେ ଓଡ଼ିଶୀ-୩କୁ ରଖାଯାଇପାରେ । ବୈଷୟିକ ଗବେଷଣାରେ ଦିନନାଥଙ୍କ ପ୍ରବୃତ୍ତି, ନିଷ୍ଠା ଓ ସମର୍ପଣ ଓଡ଼ିଶାର କଳାକୁ ଏକ ନୂତନ ଦିଗନ୍ତ ପ୍ରଦାନ କରିଛି । କାରଣ ଏଥିରେ ସ୍ଥାନିତ ଗୋଟିଏ ଲେଖାରେ ସେ ଓଡ଼ିଶୀ ନୃତ୍ୟକୁ କେନ୍ଦ୍ରବିନ୍ଦୁରେ ଅବସ୍ଥାପିତ କରି କଳାର ଅନ୍ୟ ସବୁ ବିଭବକୁ ଏଥିରୁ ଉଦ୍ଭବ ହୋଇ ପ୍ରସାରିତ ହେଲାପରି ସେ ଦର୍ଶାଇଛନ୍ତି । ଦିଗପହଣ୍ଡିରୁ ଜୁରିକ୍‌କୁ ଯାତ୍ରାର ପ୍ରସାର ଓ ପ୍ରଭାବ ସ୍ପଷ୍ଟ ଦେଖା ଦେଲାଣି । ଅନେକ କଳା ମର୍ମଜ୍ଞ ଓ ରସିକ ଦିନନାଥଙ୍କ ଏହି କଳାଯାତ୍ରାକୁ ଅନନ୍ୟ ବୋଲି ସ୍ୱୀକାର କରନ୍ତି । କିଏ ଜାଣିଥିଲା ସଉରା, କନ୍ଧ ଜନଜାତିର କଳା ସମ୍ଭାରକୁ ତାଙ୍କ କଳା ଓ ଜୀବନର ତାଳମେଳକୁ ? ଆଜି ପଛକୁ ଫେରି ଦେଖିଲେ ବୁଝାପଡ଼େ ଯେ ଆଦିବାସୀ କଲ୍ୟାଣ ବିଭାଗଠାରୁ ଅଧିକ ଉପାଦେୟ ଚିତ୍ର ଓ ଲେଖା ଦିନନାଥଙ୍କ ସଂଗ୍ରହରେ ଅଛି । ଏଇ ନିଷ୍ଠାପୂର୍ଣ୍ଣ ଯୋଗଦାନକୁ ଉଲ୍ଲେଖକରି ଦିନନାଥଙ୍କ **Festival of India** ର ସୁଇଡେନ୍ ଓ ସୋଭିଏତ୍ ସଂଘର ଭାରତ ଉତ୍ସବରେ ସେ କେବଳ ଭାରତର ପ୍ରତିନିଧିତ୍ୱ କରିନଥିଲେ ଉତ୍ସବ ଉପଲକ୍ଷେ ଅନୁଷ୍ଠିତ Popular Art of India ପ୍ରକଳ୍ପର ଡିଜାଇନ୍‌ର, କ୍ୟୁରେଟର୍ ଓ କମିଶନର ଥିଲେ । ଏଭଳି ଏକ ଆନ୍ତର୍ଜାତିକ ପ୍ରକଳ୍ପ ରୂପାୟନ କରିବାର ସୁଯୋଗ ମିଳିଥିଲା ୧୯୮୬ରେ । ବିଶ୍ୱସ୍ତରରେ ଏହା ଏକ ଦୁର୍ଲଭ ଉପଲବ୍ଧି ।

ମୋର ମନେ ଅଛି ୧୯୮୮ରେ ଓଡ଼ିଶାର ସାମସାମୟିକ କଳା ବିଷୟରେ ଭୁବନେଶ୍ୱରଠାରେ ଅନୁଷ୍ଠିତ ଜାତୀୟ ସେମିନାର୍ । ଆମେ ବିଦ୍ୟାର୍ଥୀ ଥାଉ ବିଭୂତି କାନୁନ୍‌ଗୋ କଲେଜରେ । ଏଇ ସେମିନାର୍‌ରେ ଭାରତ ବର୍ଷର ବଛା ବଛା ଅନେକ ଅଧ୍ୟାପକ, କଳା ଐତିହାସିକ ଓ ଶିଳ୍ପୀ ଯୋଗଦେଇ ନିଜ ମତ ବିନିମୟ କରିଛନ୍ତି ଓ ଆମେ ତାଙ୍କର ସାନ୍ନିଧ୍ୟ ପାଇ କୃତାର୍ଥ ହୋଇଛୁ । ପ୍ରକୃତରେ ଭାବ ବିନିମୟର ଏତେ ଲାଭ, ଆମେ ସେକଥା ସେଇ ସମୟରେ ବୁଝି ପାରିଥିଲୁ । ୧୯୮୯ରେ ଓଡ଼ିଶାରେ କଳା ଶିକ୍ଷା ବିଷୟକ ସେମିନାର୍ ଓ ଏଇ ରାଜ୍ୟସ୍ତରୀୟ ସଂଗୋଷ୍ଠୀରେ ପ୍ରଥମଥର ଆମେ ଅନେକ ବିଖ୍ୟାତ କଳାକାର ଓ ତାଙ୍କ ବିଚାର ସହିତ ପରିଚିତ ହେବାର ସୁଯୋଗ ପାଇଲୁ । । ୧୯୯୧ରେ ପୁଣି ଗୋଟିଏ ଜାତୀୟ ସଂଗୋଷ୍ଠୀ ମୋର ବ୍ୟକ୍ତିଗତ ଜୀବନର ଧାରା ବଦଳାଇ ଦେଲା । Tribal Art : Primitivism and Modern Relevance ଶୀର୍ଷକ ଏଇ ସଂଗୋଷ୍ଠୀରେ ଆୟୋଜକ ରୂପରେ କାମକରି କାଞ୍ଚନ ଚକ୍ରବର୍ତ୍ତୀଙ୍କ ପରି ବିଦ୍ୱାନଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ମିଳିଲା । ଚର୍ଚ୍ଚାରୁ ମିଳିଲା ଯେ ପୁସ୍ତକରୁ ସଂଗୃହୀତ ବୁଦ୍ଧି ଓ ବ୍ୟକ୍ତିର ଅନୁଭବରୁ ପ୍ରୟୋଗର ତାରତମ୍ୟ । ସେଇ ସଂଗୋଷ୍ଠୀ ଆୟୋଜନ ପରେ ଏକ ପୁସ୍ତକ ରଚନା ଓ ମୋର ସମ୍ପାଦକୀୟ କାର୍ଯ୍ୟର ଅନୁଭବ ଆରମ୍ଭ ହେଲା । ଅନୁପ୍ରାଣିତ ହୋଇ ମୁଁ ଚଣ୍ଡୀଗଡ଼ରେ କଳାଇତିହାସ ପଢ଼ିବା ପାଇଁ ଯାଇଥିଲି । ନିକଟରେ ରହି ଦିନନାଥଙ୍କ ବ୍ୟକ୍ତିତ୍ୱକୁ ଦେଖିଲେ ସଭିଏଁ ବୁଝିପାରିଛନ୍ତି ତାଙ୍କ ମହକ କିନ୍ତୁ ସଫଳତାର ପ୍ରତ୍ୟେକ ସିଡ଼ିରେ ଅଗ୍ରସର ହେବା ସଙ୍ଗେ ସଙ୍ଗେ ତାଙ୍କ ପ୍ରେରଣାର, ବିଶ୍ୱାସର ଓ ସାହସର ସଂପ୍ରେଷଣୀୟତାକୁ ବୁଝିହୁଏ ।

Digitized by srujanika@gmail.com

ସମକାଳୀନ କଳାକାରଙ୍କ ବୌଦ୍ଧିକ ସ୍ଥିତି ସଦାକାଳେ ଦୟନୀୟ । ସେମାନେ କଳା ନିର୍ମାଣ କରିପାରନ୍ତି, ତା ପାଖରେ ଠିଆହୋଇ ଫଟୋଉଠାଇ ପାରନ୍ତି କିନ୍ତୁ କଳା ସଂପର୍କରେ ଦୁଇପଦ କଥା କହିବା ବେଳେ ଅବ୍ୟବସ୍ଥିତ ହୋଇଯାନ୍ତି । ଓଡ଼ିଶାରେ ଏଭଳି ଶିଳ୍ପୀଙ୍କ ସଂଖ୍ୟା ଯଥେଷ୍ଟ ବେଶୀ । ଦିନନାଥ ଅନେକଥର ମହାବିଦ୍ୟାଳୟରେ କଳାଚର୍ଚ୍ଚା ଓ ଆଲୋଚନାକୁ ସ୍ଥାନ ଦେଇଥିବା ବେଳେ ଅନେକ ଏଥିରୁ ବିରତ ରହିବାକୁ ହିଁ ସାର୍ଥକ ମଣନ୍ତି । ବୋଧହୁଏ ସେଥିପାଇଁ ବରୋଦା, ଶାନ୍ତିନିକେତନ ଓ ଦିଲ୍ଲୀ ପଳାୟନପରେ ନୂତନ ଭାବରେ ବୁଦ୍ଧି ଅର୍ଜନ କରିବାକୁ ପଡ଼ିଥାଏ । **ଆଜିର ଗ୍ୟାଲେରୀ ପ୍ରଚୋଦିତ କଳାର ବିପଣୀରେ ଯେଉଁ ଶିଳ୍ପୀମାନେ ନିଜକୁ ଯଥାଯୋଗ୍ୟ କରି ଧନ ଭଣ୍ଡାରର ରକ୍ଷକ ସାଜିଛନ୍ତି ସେମାନଙ୍କ ପାଇଁ କଳାର ବୌଦ୍ଧିକ ଆଲୋଚନା ଅନାବଶ୍ୟକ। ଦିନନାଥଙ୍କ ସମୟ ଓ କର୍ତ୍ତବ୍ୟର ତାଡ଼ନା ଅନ୍ୟ ପ୍ରକାରର। ସେ କେବଳ ବ୍ୟକ୍ତିଗତ କଳା ସାଧନା ବା ଅଧ୍ୟାପନା ମଧ୍ୟରେ ନିଜର ପ୍ରୟାସକୁ ସୀମିତ ନରଖି ଓଡ଼ିଶାର ସମସାମୟିକ ଶିଳ୍ପୀ ଓ ଶିଳ୍ପ ପ୍ରତି ପ୍ରକାଶନ ମାଧ୍ୟମରେ ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛନ୍ତି।** ସୂଚନା ବିହୀନ କଳା କ୍ଷେତ୍ର ଓଡ଼ିଶାରେ, ସୂଚନାଟିଏ ଖୋଜିବା କେତେ କଷ୍ଟ, ଯିଏ କରେ ସିଏ ଜାଣେ । **Oddiyan** ପୁସ୍ତକଟି ସମସାମୟିକ ଶିଳ୍ପୀଙ୍କ କଳାର ଆଲୋଚନାରେ ପରିପୁଷ୍ଟ। ଓଡ଼ିଶାର ସମକାଳୀନ କଳା ସଂପର୍କରେ ଇଂରାଜୀ ଭାଷାର ଏହା ପ୍ରଥମ ବହି। ଶିଳ୍ପୀଙ୍କ କୃତି ସଂକ୍ରାନ୍ତରେ ଲେଖା ଏଇ ପୁସ୍ତକଟିରେ ଦିନନାଥ ପାଠୀ, ଚନ୍ଦ୍ରଶେଖର ରାଓ, ଶିବ ପାଣିଗ୍ରାହୀ, ରାମହରି ଜେନା, କାଶୀନାଥ ଜେନା ଓ ଡି.ଏନ୍. ରାଓଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱର ଗାଥା କୀର୍ତ୍ତିତ । ତା ସହିତ ଦିନନାଥଙ୍କ ସମକାଳୀନ କଳା ଯାତ୍ରା ଉପରେ ଆଧାରିତ ସମ୍ପାଦକୀୟ - 'ଦିଗ ନିର୍ଦ୍ଧାରଣ କର।' ଜାତୀୟ କ୍ଷେତ୍ରରେ ବେଶ୍ ଆଦୃତ ହୋଇଥିବା ଏହି ସଂକଳନଟି ଓଡ଼ିଆ କଳା ଓ ସମସାମୟିକ କଳା ବୃତ୍ତିକୁ ଦେଶ ବିଦେଶରେ ପହଞ୍ଚାଇପାରିଲା । ଠିକ୍ ସେଇପରି ଯୁବ କଳାକାରମାନଙ୍କ ଉପଲବ୍ଧି ଓ ଧାରାକୁ ଆଧାର କରି **Continuity in the Flux: Orissa**ର ରଚନା ଓ ସମ୍ପାଦନା କରାଗଲା । ରାଜେନ୍ଦ୍ର ପ୍ରସାଦ ଦାସଙ୍କ ବାସ୍ତୁଶାସ୍ତ୍ର ବିବେଚନାକୁ ନେଇ ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟ ଓ ଓଡ଼ିଶାର କଳା ପର୍ଯ୍ୟାୟକୁ ସ୍ଥାନଦେବା ସଙ୍ଗେ ସଙ୍ଗେ ଦିନନାଥ ସଂପାଦକୀୟରେ ସଂକ୍ରମଣ କାଳର ସମସ୍ୟାକୁ ପ୍ରସ୍ତାବିତ କରିଥିଲେ । ସଂକ୍ରମଣରେ ଯେଉଁ ଅସ୍ଥିରତା ଓ ସେଇ ଅସ୍ଥିରତାରୁ ସ୍ଥିରତାର ପ୍ରାପ୍ତିକୁ ବ୍ୟାଖ୍ୟା କରାଯାଇଥିଲା ଏଇ ପୁସ୍ତକରେ । **Oddiyan, Six Contemporary Painters** ଏବଂ **Continuity in the Flux : Orissa** ଗ୍ରନ୍ଥ ଦୁଇଟିର ସଂକଳନ ଓ ସଂପାଦନ ସହଯୋଗୀ ଥିଲେ ରମେଶ ଚନ୍ଦ୍ର ପାଣିଗ୍ରାହୀ।

ସମକାଳୀନ ଓଡ଼ିଶାର କଳା ଅନେକ ପାରସ୍ପରିକ ପ୍ରେରଣାର ସ୍ରୋତରେ ଅନୁପ୍ରାଣିତ । ତାହା ପ୍ୟାରିସ୍‌ର ଘନବାଦ ହେଉ ବା ମିନିମାଲିଷ୍ଟିକ୍ ବା ଇନ୍‌ସ୍ଟଲେଶନ୍, ଅଦ୍ଭୁତ ମିଶ୍ରଣ ଓ ଚାକ୍ଷୁଷ ପ୍ରତୀକ ମଧ୍ୟ ନେଇ ଏକରୂପତା ହାସିଲ କରିଛି ଏଇ କଳା । କିନ୍ତୁ କଳାକାରଙ୍କ ବିଷୟରେ ଆଲୋଚନା, ବିବେଚନା ଓ ସମୀକ୍ଷା ଅନେକ ପ୍ରାକୃତିକ ଦ୍ୱନ୍ଦ୍ୱର ବଳୟ ଭିତରେ ଅଣନିଶ୍ୱାସୀ ହୋଇ ପଡ଼ିଛି । ସମକାଳୀନ କଳାଯାତ୍ରା ଓଡ଼ିଶାରେ ଖଲ୍ଲିକୋଟ କଳା ବିଦ୍ୟାଳୟରୁ ଆରମ୍ଭ ହୋଇ ଅଧୁନା ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇସାରିବା ପରେ ମଧ୍ୟ କଳା ଲେଖନ ଅବହେଳାର ଶିକାର । ଏଇ ଅବହେଳିତ ଅବସ୍ଥାରେ କଳାର ଯାତ୍ରାକୁ ଉଦ୍ଧାର କରିବାକୁ ଯାଇ ଦିନନାଥ **Let a Thousand Flowers Bloom : Contemporary Art of Orissa** ଶୀର୍ଷକ ପୁସ୍ତକ ପରିକଳ୍ପନା କରନ୍ତି। ଏହି ପୁସ୍ତକ Contemporary Art of Baroda ଏବଂ Madras Metaphorର ପ୍ରକାଶନ ପରେ ସର୍ବ ଭାରତୀୟ ସ୍ତରରେ ତୃତୀୟ ସଂକଳନ। **ସମ୍ଭବତଃ ବହି ପରିକଳ୍ପନାରୁ ବହିର ମୁଦ୍ରଣ ସରିବା ଭିତରେ ଏକ ନୂତନ ଓ ସର୍ଜନାତ୍ମକ କଳାବିଚାରର ଆବାହଓ୍ୱା ଓଡ଼ିଶାର ସମକାଳୀନ କଳାକୁ ଗମ୍ଭୀର ଚର୍ଚ୍ଚାର ପରିଧି ମଧ୍ୟକୁ ଟାଣି ଆଣିଥିଲା** । ଅନେକ କଳାକାର କେବଳ ପୁସ୍ତକ

Digitized by srujanika@gmail.com

ପରିଶିଷ୍ଟରେ ଦିଆଯାଇଥିବା କାଳକ୍ରମିକ କଳାବିକାଶର ସନ୍ଦର୍ଭକୁ ନେଇ ଉତ୍ସାହିତ ଓ ବିସ୍ମିତ ହୋଇଯାଇଥିଲେ କାରଣ ସେଥିରେ ପ୍ରତ୍ୟେକ କଳାକାରର ବ୍ୟକ୍ତିତ୍ୱ ଓ କୃତିତ୍ୱ ବ୍ୟତିରେକ ପ୍ରଦର୍ଶନୀ ଆୟୋଜନ, ସଂପାନ ଓ ରଚନାର ଟିକିନିଖି ବିବରଣୀ ଲିପିବଦ୍ଧ ଥିଲା । କ୍ରମିକ ସାମ୍ବତ୍ସରୀକ କଳା ପରିକ୍ରମା ବ୍ୟତୀତ ନୂତନ କଳାଧାରାର ଉଦ୍ଭବ, ବିକାଶର ମଧ ଉଲ୍ଲେଖ ଅନ୍ତଃରାଷ୍ଟ୍ରୀୟ ପ୍ରକାରେ ବ୍ୟକ୍ତ କରାଯାଇଥିଲା ଓ ମୋଟାମୋଟି ଓଡ଼ିଶାର ସମକାଳୀନ କଳାର ଆନ୍ତର୍ଜାତିକ ପୃଷ୍ଠଭୂମିକୁ ପ୍ରମାଣିତ କରାଯାଇଥିଲା । ଦିନନାଥ ସୌଭାଗ୍ୟ ପାଠୀଙ୍କ ସହ ଏଇ ବହିକୁ ସଂପାଦିତ କଲାବେଳେ ଅନେକ ପ୍ରାମାଣିକ ତଥ୍ୟ ଉପସ୍ଥାପନ କରି, ପୁସ୍ତକଟିକୁ ଅର୍ଥପ୍ରଦ କରିପାରିଥିଲେ । ଏଥିରେ ମୂଳତଃ ଚାରୋଟି ପରିଚ୍ଛେଦ ଥିଲା, ସେଗୁଡ଼ିକ ହେଲା ଦିନନାଥଙ୍କ ଏକ ଦୀର୍ଘ ପ୍ରବନ୍ଧ : The Emergence of Modernism (1950-2000) ଅଲେଖ ଚରଣ ସାହୁଙ୍କ Khallikote in the 1980s and 1990s, ଦିଲ୍ଲୀପ କୁମାର ତ୍ରିପାଠୀଙ୍କ The Centre and the Periphery ପ୍ରଦୋଷ ମିଶ୍ରଙ୍କ Spelling Regional Flavour ଏବଂ ସୌଭାଗ୍ୟ ପାଠୀଙ୍କ Internationalism and Envisioning the Future. ଦେଖିବାକୁ ଗଲେ ଏହି ସଂକଳନଟି ସଂପୂର୍ଣ୍ଣରୂପରେ ତଥ୍ୟ ଭିତ୍ତିକ ଗବେଷଣା ଆଧାରିତ ପ୍ରସ୍ତୁତି । ଏଭଳି ବିସ୍ତୃତ ଆଲୋଚନା ଇଂରାଜୀ ଭାଷାରେ (ଓଡ଼ିଆ ଭାଷାରେ ମଧ) ଆଗରୁ ସମ୍ଭବ ହୋଇନଥିଲା ।

**ଛାତ୍ରମାନଙ୍କ ସହ ରହିବା, ସମାନୁଭବ କରିବା ଏବଂ ଉତ୍ସାହିତ ହୋଇ ସେହି ଉତ୍ସାହକୁ ବିତରଣ କରିବାର ଅଦ୍ଭୁତ ଶକ୍ତି ଅଛି ଦିନନାଥଙ୍କ ପାଖରେ । ତେଣୁ କହିବାକୁ ଗଲେ ସେ ନୂତନ ଏକ କଳା ଯୁଗର ଅଦୃଶ୍ୟ ରେଖାଙ୍କନରେ ବର୍ତ୍ତମାନ ମଧ ବ୍ୟସ୍ତ ଅଛନ୍ତି ଓ ଗବେଷଣା ମାଧମରେ ଅନେକ ନୂତନ, ଅନେକ କଳାତ୍ମକ ଆନ୍ତର୍ଜାତିକ ଅଭ୍ୟାସକୁ ଅକୁଣ୍ଠରେ ଯୁବ କଳାକାରଙ୍କ ଭିତରେ ବିତରଣ କରି ଚାଲିଛନ୍ତି ।** ବିଭୂତି କାନୁନ୍‌ଗୋ ମହାବିଦ୍ୟାଳୟରେ ଅଧକ୍ଷ ରହିଥିବା ସମୟରେ ଅନେକ ଖ୍ୟାତିଲବ୍ଧ କଳାକାର ଓ ମର୍ମଜ୍ଞ କଳାରସିକଙ୍କୁ ନିମନ୍ତ୍ରିତ କରି ଛାତ୍ରଙ୍କୁ ସେଇ ଅତିଥିମାନଙ୍କ ଉପଲବ୍ଧି ମାଧମରେ ନୂତନ ଦିଗରେ ଅଗ୍ରସର ହେବା ପାଇଁ ଅନୁପ୍ରାଣିତ କରିପାରିଥିଲେ । ଅଦ୍ୱୈତ ଗଡ଼ନାୟକଙ୍କ ଦିଲ୍ଲୀସ୍ଥିତ କଳା ମହାବିଦ୍ୟାଳୟରେ ନିଜର ବହୁମୁଖୀ ପ୍ରତିଭାକୁ ପ୍ରକଟ କରିବା ହେଉ, ଆର୍ତ୍ତବନ୍ଧୁ ରାଉତଙ୍କ ଭୋପାଳ ବିନାଲେରେ ନିଜ କଳାକୃତିର ସୀକୃତି ହେଉ, ଜଗନ୍ନାଥ ପଣ୍ଡା ଓ ଶୋଭନ କୁମାରଙ୍କ ଜାପାନ ଓ ଚୀନ ଫେଲୋସିପ୍ ହେଉ, ଦିଲ୍ଲୀପ କୁମାର ତ୍ରିପାଠୀଙ୍କୁ କେନ୍ଦ୍ର ଲଳିତ କଳା ଏକାଡ଼େମୀରେ ଅବସ୍ଥାପନା ହେଉ ବା ମୋତେ କଳାଇତିହାସରେ ଚଣ୍ଡୀଗଡ଼ରେ ପ୍ରଫେସର୍ ବ୍ରଜେନ୍ଦ୍ର ନାଥ ଗୋସାମୀଙ୍କ ତତ୍ତ୍ୱାବଧାନରେ ଅଧୟନର ବ୍ୟବସ୍ଥା ହେଉ, ସୁଧାଂଶୁ ଭୂଷଣ ସୂତାର ସହ ଜାପାନ ଭ୍ରମଣ ହେଉ ବା ଜ୍ୟୋତି ପାଣିଗ୍ରାହୀଙ୍କୁ ପତିତପାବନ ମେସ୍‌ର ସଦସ୍ୟ ଭାବରେ ଗ୍ରହଣ କରି କଳ୍ୟାଭାସର ଦୃଶ୍ୟମାନ ଗତିକୁ ନେପଥ୍ୟେରେ ରହି ବରାବର ଅଗ୍ରଗାମୀ କରାଇବାର ଶ୍ରେୟ ଦିନନାଥଙ୍କୁ ଯାଏ । ଆଜିର ସମକାଳୀନ ଭାରତୀୟ/ଆନ୍ତର୍ଜାତୀୟ କଳା ଜଗତରେ ପ୍ରବେଶର ପ୍ରଥମ ସୋପାନ ନିର୍ମାଣ କରି ଓଡ଼ିଶାର ଯୁବ କଳାକାରମାନଙ୍କୁ ସେହି ସୋପାନରେ ଚାଲିବାର ଆତ୍ମପ୍ରତ୍ୟୟ ଓ ଖ୍ୟାତି ପ୍ରାପ୍ତିର ଯେଉଁ ବିମଳ ଉଦାହରଣ ଗୁରୁଭାବେ ସୃଷ୍ଟି କରିବାରେ ସକ୍ଷମ ହୋଇଛନ୍ତି ସେହି ଅକୁଣ୍ଠ ସ୍ନେହଦଗ୍ଧ ପ୍ରଚେଷ୍ଟାର ଅହେତୁକ, ନିଛକ ଓ ପ୍ରଗତିଶୀଳ କାର୍ଯ୍ୟଧାରାକୁ ଭୁଲିବାର ନୁହେଁ । ବାଦ, ବିବାଦ, ତର୍କ ବିତର୍କ ମୋହ ଓ ଈର୍ଷାର ବଳୟକୁ ଅତିକ୍ରମ କରି ଦିନନାଥଙ୍କ ଯୁଗନିର୍ମାଣକାରୀ ଯୋଜନା ଓ ରୂପାୟନକୁ ତାଙ୍କର ସହକର୍ମୀ ଓ ଛାତ୍ରଛାତ୍ରୀ ସୀକାର କରନ୍ତି । କଳାକାରର ଦୃଷ୍ଟି ବିସ୍ତାର, କଳାର ନିରନ୍ତର ବିକାଶ କରାଇବା ପରେ ତା ସହିତ କଳାଚର୍ଚ୍ଚା ଓ ଗବେଷଣାତ୍ମକ ବିବରଣ ନିର୍ମାଣର ସାକ୍ଷୀ ହେଉଛି ଦିନନାଥଙ୍କ ନିଷ୍ଠା । **ମରିଯିବାପରେ ହଜିଯିବାର ଭୟ ତାଙ୍କୁ ଶିଖାଇଛି କଳା ମଧମରେ ଅମରତ୍ୱର ଆସାଦନ, ଯା'ର ସେ ପ୍ରତିନିଧିତ୍ୱ କରନ୍ତି ।**

Digitized by srujanika@gmail.com

ଜୀବନର କୌଣସି ଅନୁଭବ ଅନୁପଲବ୍ଧ ନ ହେଉ, ମୋ (ଦିନନାଥ) ଝର୍କାରୁ ପୃଥିବୀର ଦୃଶ୍ୟ ନିଆରା, ତେଣୁ ଲିପିବଦ୍ଧ ରହିଲେ ରାହୁଲ ସଂକୃତାୟନଙ୍କ ପରମ୍ପରା ଆଗକୁ ବଢ଼ିବା ଲୋକ ବୁଝିବେ ଭୋଲ୍‌ଗାରୁ ଗଙ୍ଗାର ଯାତ୍ରା ମଧ୍ୟରେ କେତେ ଚରିତ୍ର ଜୀବନ୍ତ ହୁଅନ୍ତି ଓ ଜୀବନର ଆର ପାରିକୁ ଚାଲିଯାନ୍ତି ଜୀବନସାଥୀରେ ରହି । ଯାତ୍ରାବୃତ୍ତାନ୍ତ ତ ନୁହେଁ କଳା ଇତିହାସର ଏକ ନୂତନ ଭାବାଭିବ୍ୟକ୍ତି, ମନ ତ ନୁହେଁ କଳା ବିଚାରର ଗନ୍ତାଘର, ଦିନନାଥଙ୍କ ସାୟୋନାରାର ପାଠକ ବୁଝିପାରିବ 'ଟି ସେରିମନିର' ମର୍ମ କଣ । ସେ ବୁଝିବ Good Bye (ସାୟୋନାରା) କେତେ ଅନ୍ତରଙ୍ଗ ମୁହୂର୍ତ୍ତକୁ ନିବିଡ଼ତାର ସୀମାକୁ ଟାଣିଆଣିଛି । ଜାପାନର wood cut, landscape, screen painting ସହିତ ଲେସ୍‌ବିଆନ୍, ଇନ୍‌ଷ୍ଟଲେସନ୍ ଆର୍ଟ୍, ଆର୍ଟ୍ ପରଫାର୍‌ମନ୍ସ ଭଳି ଅନେକ ତଥ୍ୟ ଭିତ୍ତିକ ବିବରଣ ଏହି art fictionକୁ ଜୀବନ୍ତ କରିଛି । ଉପନ୍ୟାସତ କଳ୍ପନା ଓ ବାସ୍ତବର ଫେଣ୍ଟାଫେଣ୍ଟି ବକ୍ତବ୍ୟ, କିଏ କହିପାରିବ ଯେ ଏହା କେବଳ ଗପ ? ସାଧାରଣ ପାଠକ ପାଇଁ ଅଶେଷ କଳାତ୍ମକ ସୂଚନାର ଗନ୍ତାଘର ଏହି କଳା ଉପନ୍ୟାସ । ଲେଖିବା ସମୟରେ ଓ ସଂପାଦନ ସମୟରେ ଏତେ ଉତ୍ସାହର ସହ ସେ ଆମକୁ ଶୁଣାଇଥାନ୍ତି କାହାଣୀର ବିବର୍ତ୍ତନ, ଲାଗେ ଯେପରି କୌଣସି ଗବେଷଣାରତ ବିଦ୍ୟାର୍ଥୀ ତା ନିଜ ଗୁରୁଙ୍କୁ Thesisର ପଠନ କରି ଶବ୍ଦ ଭାଷା ଓ ଭାବର ଗୁରୁତ୍ୱକୁ ପ୍ରତିପାଦିତ କରୁଛି । ଜନ୍ମ ଓ ବିକାଶ ସହିତ ଉତ୍ଥାନ ଓ ପତନ ଭିତରେ ଚରିତ୍ର ନିଜର ଭାବକୁ ବିସ୍ତାର କରୁଛି । ଯେପରି **ଶ୍ଳୋକଛନ୍ଦ** ଚିତ୍ରୋପନ୍ୟାସର ପୃଷ୍ଠାରେ ଶରତ ଚନ୍ଦ୍ର ଦେବଙ୍କ ଜଳ ଯାତ୍ରା କାଳରେ ବୋଟିଚେଲିଙ୍କ- The Creation ର ବୃତ୍ତାନ୍ତ । ଲାଗେ ଯେପରି ବିଶ୍ୱ କଳାଇତିହାସର ନିର୍ଯ୍ୟାସ ଛାଣି ହୋଇ ଆସିଛି ଏଇ ଉପନ୍ୟାସରେ । 'ମା ନିଷାଦ' ଚିତ୍ରରୁ ଆରମ୍ଭ କରି ରାଜା ରାଜୁଡ଼ାଙ୍କ କଥା, ତା ମଝିରେ ମଝିରେ କଳାର ଉପାଖ୍ୟାନ ଓ ବିଭିନ୍ନ ସାଦିଷ୍ଟ ବ୍ୟଞ୍ଜନ ଓ ରାଜକୀୟ ଆତିଥ୍ୟ ଓ ଆଡ଼ମ୍ବରର ବ୍ୟବହାରିକ ବିସ୍ତାର ବିବରଣ-ଯେମିତି ଲାଗିବ କେହି ଜଣେ ରାଜସଭାର ଲେଖନକାର ଶରତଚନ୍ଦ୍ର ଦେବଙ୍କ ପାଖେ ପାଖେ ରହି ତାଙ୍କ ଜୀବନର ଘଟଣା ସମଗ୍ରକୁ ଲିପିବଦ୍ଧ କରିଛି କ୍ଷଣ କ୍ଷଣ । ହୁଏତ ସେ ନିଜେ ବି ବଞ୍ଚିଥିଲେ ଏପରି ଜୀବନ୍ତ ବର୍ଣ୍ଣନା ଉତାରିପାରି ନଥାନ୍ତେ ତାଙ୍କ ଲେଖାରେ । ରାଜମହଲର ଟିକିନିଖି ବିବରଣ ତା'ର ପ୍ରାଚୀନତାର ମହତ୍ତ୍ୱ- ପ୍ରତିପାଦନରେ ମଣିଷ-ମଣିଷ, ମଣିଷ-କଳା, ମଣିଷ ଓ ସ୍ଥାପତ୍ୟର ଏକ ଅଭିନବ ସଂଯୋଗ ସ୍ଥାପିତ କରିଛନ୍ତି ଦିନନାଥ । କହିହେବ କି ଏହା କାଳ୍ପନିକ ? ହୁଏତ ବାସ୍ତବତା କଳ୍ପନାର ଖିଅକୁ ସଂଯତ କରି ନିଜ ଆୟତ୍ତରେ ରଖି ପାଠକଙ୍କୁ କଳା ଓ ସାହିତ୍ୟର ଅନ୍ୟ ଏକ ସଂସାରକୁ ବାଟ କଢାଇ ନେଇଛି ।

ଦିନନାଥଙ୍କ ବାରାଣସୀ ପ୍ରବାସ, ତାଙ୍କ ଜୀବନରେ ଏକ ଅଦ୍ଭୁତ ଅନୁଭୂତି ଆଣି ଦେଇଛି । ସେଇ ଅନୁଭୂତିରେ ମୁଁ, ରାଜୀବ ଲୋଚନ ସାହୁ, ଦିପ୍ତୀ (ମହାନ୍ତି/ପଟ୍ଟନାୟକ) ମଧ୍ୟ ସାମିଲ । ଉତ୍ତରଣ ଓ ଅବତରଣ ମଧ୍ୟଭାଗରେ ସ୍ଥାପିତ କରିଛନ୍ତି ଗଙ୍ଗାକୁ । ଦୃଶ୍ୟ ଗଙ୍ଗା, ସାମାଜିକ ଗଙ୍ଗା, ନଦୀ ଗଙ୍ଗା, ଚିତ୍ର ଗଙ୍ଗା ଓ ଗଙ୍ଗା ସଂସ୍କୃତିକୁ ଖିଅରେ ବାନ୍ଧିରଖିବା ସମୟରେ ବିଭିନ୍ନ ଚରିତ୍ରଙ୍କ ଆବିର୍ଭାବ ଭିତରେ ବିଖ୍ୟାତ କଳା ମର୍ମଜ୍ଞ ଆଲିସ୍ ବୋନରଙ୍କ ଗବେଷଣା କେନ୍ଦ୍ର, ଆଲିସ୍ ବୋନରଙ୍କ ଶିକ୍ଷାନୁଭୂତି ଗୌତମ ବୁଦ୍ଧଙ୍କଠାରୁ ଆରମ୍ଭ କରି ନିଜ ପର୍ଯ୍ୟନ୍ତ ଚରିତ୍ର ମାନଙ୍କର ଜୀବନ ବ୍ୟାପ୍ତି କାଳ୍ପନିକ ଉପନ୍ୟାସରେ ବ୍ୟକ୍ତ କରିଛନ୍ତି ଦିନନାଥ । ଛୋଟ ଛୋଟ ସୂକ୍ଷ୍ମ ଅନୁଭୂତି, କାହାଣୀ, ମିଥ୍ ଓ କାଳ୍ପନିକ ବ୍ୟାଖ୍ୟାକୁ ସନ୍ତୁଳିତ କଲି ତୋଳିଛନ୍ତି ଏକ ଅଦ୍ଭୁତ କାହାଣୀ । କାହାଣୀକୁ ଚରିତାର୍ଥ କରିବାକୁ କଳା ପ୍ରଦର୍ଶନୀ **Ganga to Ganges** ର ସମନ୍ୱୟ ସୃଷ୍ଟି କରିଛନ୍ତି ସେ । ସଂସ୍କୃତି ନଗରୀ କାଶୀରୁ ଆଧୁନିକ ନଗରୀ ବନାରସର ଦୂରତ୍ୱକୁ କଳାତ୍ମକ ଢଙ୍ଗରେ ପ୍ରସ୍ତୁତ କରିବା ସମୟରେ ସେ କେବେବି ଦର୍ଶନର ବଳୟରୁ ବିଚ୍ୟୁତ ହୋଇନାହାନ୍ତି । ଉପନ୍ୟାସରେ ପ୍ରତ୍ୟେକ ଭାଗ, ଅଂଶ, ଚରିତ୍ର, ସଂଯୋଜନା ସତେ ଯେମିତି ଦର୍ଶନର ଆଖି ଓ ମନକୁ ଭରିଦେଉଛି । ରୂଢ଼ିବାଦିତା ଓ ପରମ୍ପରାର ଢାଲ ଖୋଲି

Digitized by srujanika@gmail.com

ମୁକ୍ତ କରିଦେବାର ସାହସ ଏ ଉପନ୍ୟାସର ଛତ୍ରେ ଛତ୍ରେ ପ୍ରକଟିତ । ତେଣୁ କଳା ଗବେଷଣା ଶୈକ୍ଷିକ ଭିତ୍ତିଭୂମି ଉପରେ ଆଧାରିତ ହେଉ ବା ପ୍ରାୟୋଗ ଧାରାରେ ସମାହିତ ହୋଇ, ବିଶେଷଜ୍ଞଙ୍କ ପାଇଁ ଅଭିପ୍ରେରିତ ହେଉ, ଉଦ୍ଦିଷ୍ଟ ହେଉ ବା ସାଧାରଣ ବ୍ୟକ୍ତି ବିଶେଷ ପାଇଁ, ଦିନନାଥ କଳାବୃତ୍ତିରେ ନିତ୍ୟ ନୂତନ ଆନନ୍ଦର ଉପଲବ୍ଧିକୁ ମୋ ପରି ଅନେକ ସତୀର୍ଥଙ୍କ ପାଖରେ ମାର୍ମିକ ପ୍ରସ୍ତୁତି କରିଥାନ୍ତି ।

ନିଜ ବାପାଙ୍କ ଜୀବନ କାହାଣୀ ହେଉ ବା ଶରତଚନ୍ଦ୍ର ଦେବଙ୍କର ଜୀବନ ଚରିତ ହେଉ, ଶିକ୍ଷକ ଅଜିତ କେଶରୀ ରାୟ ହୁଅନ୍ତୁ ବା ବନ୍ଧୁ ଶିବ ପାଣିଗ୍ରାହୀ ବା ଚନ୍ଦ୍ରଶେଖର ରାଓ, କଳା ଲେଖକ ଜେ.ପି.ଦାସ ହୁଅନ୍ତୁ ବା ଖ୍ୟାତିପ୍ରାପ୍ତ ଚିତ୍ରଶିଳ୍ପୀ ପ୍ରଫୁଲ ମହାନ୍ତି ଅଥବା ନିଜର ଜୀବନ ବୃତ୍ତାନ୍ତ ହେଉ, କେବେ ବି ଦିନନାଥ ଅତିଶୟୋକ୍ତିର ଆଶ୍ରୟ ନେଇ ନାହାନ୍ତି । ପ୍ରତ୍ୟେକର ଯୋଗଦାନକୁ କଳାର ବିସ୍ତାରିତ ପ୍ରେକ୍ଷାପଟରେ ସୀକାର କରି ତାଙ୍କର ବାସ୍ତବିକ ଅବସ୍ଥାକୁ ଲିପିବଦ୍ଧ କରିବାର କଷ୍ଟ କରିଛନ୍ତି ସେ । ଶୈଳୀ, ମାଧ୍ୟମ, ବିଚାର ଓ ପ୍ରବୃତ୍ତିକୁ ଆଧାର କରି ସେ ଲେଖିଛନ୍ତି ପ୍ରତ୍ୟେକ ଜୀବନୀ । ତେଣୁ ସମସ୍ତ ପୁସ୍ତକ, କଳାରୁ କଳାକାର ପର୍ଯ୍ୟନ୍ତ, ଓଡ଼ିଶାର କଳା ଦଶା ଓ ଦିଗ ନିର୍ମାଣରେ ଅଭୂତପୂର୍ବ ଯୋଗଦାନ ଦେଇଛି ।

କୌଣସି ଲେଖାର ସବୁଠାରୁ କଷ୍ଟସାଧ ବ୍ୟାପାର ହେଉଛି ଶବ୍ଦ ହଟାଇବାର ନିର୍ଣ୍ଣୟ ନେବା, ମୁଁ ମଧ୍ୟ ନେଇଛି କିନ୍ତୁ ମୋ ଅନୁଭବ ନିଆରା । ଯେତେ ହଟାଇବାର ନିର୍ଣ୍ଣୟ ନେଇଛି - ସେତେ ବଢ଼ିଚାଲିଛି । ଏଇଟା ନିର୍ଣ୍ଣିତ ନୁହେଁ, କାରଣ ଯଦି କୌଣସି ବ୍ୟକ୍ତିର ଗବେଷଣାତ୍ମକ ଜ୍ଞାନର ଆଲୋଚନା କରାଯାଏ ତାହା ସୀମିତ ହୋଇଯାଏ କିନ୍ତୁ ଦିନନାଥଙ୍କ ଗବେଷଣା ଜଟିଳ ସନ୍ଦର୍ଭରୁ ସରଳ ଭାଷାର ସୀମାଯାଏଁ ଯାତ୍ରା କରିଛି । ନିର୍ଣ୍ଣୟ ନେବାର ଅଧିକାର ଦିନନାଥଙ୍କ ରଚନା ମୋ ହାତରୁ ଛଡ଼ାଇ ନେଇଛନ୍ତି । ରଚନାବଳୀର ଖିଅ, ଶାଖା, ପ୍ରଶାଖା ଅନେକ ଭିତରକୁ ପରସ୍ପରର ଆବରଣକୁ ଛେଦ କରି ମାଡ଼ିଯାଇଛି । କେତେବେଳେ ଦିନନାଥ କଳା ଇତିହାସରୁ ପ୍ରସ୍ଥାନକରି ଦୃଶ୍ୟ ସଂସ୍କୃତିର ମହତ୍ୱପୂର୍ଣ୍ଣ ବଳୟ ମଧ୍ୟରେ ପାଦ ଦେଇଛନ୍ତି, ମୁଁ ତ ଜାଣିନି-ସେ ହୁଏତ ନିଜେ ଅନୁଭବ କରିଥିବେ, କିନ୍ତୁ ବଳୟର ବିସ୍ତାର ଆଜିବି ଥମିନି । ଠିକ୍ ସେମିତି ଚାଲିଛି ଯେପରି ୨୬ବର୍ଷ ପୂର୍ବେ ଥିଲା, ସେଇ ଉନ୍ମାଦ, ଆନନ୍ଦ, ଆତ୍ମୀୟତାର ସହିତ । **ମୁଁ ଏକଦା ଲେଖିଥିଲି ସେ ଯେତିକି ଜୋରରେ କୁହନ୍ତି, ସେତିକି ଜୋର୍‌ରେ ଲେଖନ୍ତି, ସେତିକି ଜୋରରେ ବ୍ରସ୍ ଚାଳନା କରନ୍ତି, ସେତିକି ଜୋର୍‌ରେ ଚାଲନ୍ତି- ସତେ ଯେପରି ଗତି ମଧ୍ୟ ତାଙ୍କ ନିକଟରେ ଗତିହୀନ ହୋଇପଡ଼େ ।** ବିଶ୍ୱର ନିର୍ମାଣ ଶୂନ୍ୟରୁ ଉଦ୍‌ଭବ ହେଉ ହେଉ, କୌଣସି ମାଧ୍ୟମରେ ବାନ୍ଧି ରଖିବାର ଚାତୁରୀ ତାଙ୍କୁ ଜଣା, ତେଣୁ ହୁଏତ ଗୋଟିଏ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ପାଇଁ ଗବେଷଣା କରିବା ବେଉସା ହୋଇପାରେ ହେଲେ ଦିନନାଥ ପାଠୀଙ୍କ ପାଇଁ ଏହା ଉତ୍ସବ । ଗବେଷଣା ତତ୍ତ୍ୱ ଶିକ୍ଷକଟିଏ ବୁଝାଇବା ବେଳେ ଦିନନାଥ ତା'ର ପ୍ରବର୍ତ୍ତନରୁ ପରିବର୍ତ୍ତନର ଧାରା ନିର୍ମାଣ କରୁଥା'ନ୍ତି । ଓଡ଼ିଶାରେ ଜନ୍ମହୋଇ ଓଡ଼ିଶାର କଳାକୁ ନେଇ ବିଶ୍ୱର ଆନୁଷ୍ଠାନିକ ସ୍ତରରେ ପହଞ୍ଚାଇବା ଓ ପୁଣି ବୈଷୟିକ ଅନୁଭବକୁ ଓଡ଼ିଶୀ କଳା ସଂସ୍କୃତିର ପରିଧିକୁ ଟାଣି ଆଣି ପ୍ରୟୋଗ କରିବା ବୋଧହୁଏ ଦିନନାଥ ରୂପକ ଅନୁଷ୍ଠାନରୁ ଶିଖିବାକୁ ହେବ ।

ରାତି ହେଲାଣି ଆଲିସ୍ ବୋନର୍‌ଙ୍କ ଗବେଷଣାର ପୀଠରେ । ସେଇ ମନ୍ଦ ମନ୍ଦ ସ୍ମିତହାସ୍ୟର ସହ ସେ ପୁଣି ପଚାରିବେ ବୋଧେ, 'ପ୍ରଦୋଷ ! ତୋର ଲେଖା ସରିଲା କି ?' ଅକ୍ଳାନ୍ତ ପରିଶ୍ରମ, ନିରବଚ୍ଛିନ୍ନ ମନୋଭାବ, ଆଖ୍ୟା-ଭକ୍ତିର ଉର୍ଦ୍ଧ୍ୱରେ ଦିନନାଥ-ତାଙ୍କର ଗବେଷଣାର ଧାରା, ଓଡ଼ିଶା ପାଇଁ ଆଶୀର୍ବାଦ । ତାଙ୍କୁ ଗୁରୁ ହିସାବରେ ପାଇ ମୋ ଜୀବନ ସାର୍ଥକ ।

Digitized by srujanika@gmail.com

**ଅଲେଖ ଚରଣ ସାହୁ**

## କଳା ଇତିହାସ ଗବେଷଣାରେ ଡକ୍ଟର ଦିନନାଥ ଏକ ଅନନ୍ୟ ପ୍ରତିଭା

ବିଗତ ତିନି ଦଶନ୍ଧିର ଓଡ଼ିଶାର ଆଧୁନିକ କଳା ଓ କଳା ଇତିହାସର ପୃଷ୍ଠା ଓଲଟାଇଲେ କେବଳ ଗୋଟିଏ ଲୋକ ସାମନାକୁ ଆସନ୍ତି - ସେ ହେଉଛନ୍ତି ବିଶିଷ୍ଟ କଳାକାର ଓ କଳା ଐତିହାସିକ ଡକ୍ଟର ଦିନନାଥ ପାଠୀ । ନିଜେ ଜଣେ କଳାକାର ହୋଇଥିବାରୁ, କଳା ଇତିହାସ ଓ ସୃଜନଶୀଳ ସାହିତ୍ୟ, ନୃତ୍ୟ ଓ ସଙ୍ଗୀତ ଚର୍ଚ୍ଚାକୁ ସେ ନିଜର ନିଶା ଓ ପେଶା ଭାବରେ ଧରି ନେଇଛନ୍ତି । ଗୋଟିଏ ହାତରେ ତୂଳୀ ଓ ଅନ୍ୟ ହାତରେ କଲମ ସେ ଚାଳନା କରନ୍ତି । ତାହା ପୁଣି କେତେବେଳେ କେଉଁ ସ୍ୱର, ଛନ୍ଦ, ଲୟ, ତାଳ, ମାନର ମାପକାଠି ମାଧ୍ୟମରେ । ସେଥିରେ ଥାଏ ନୂତନ ସ୍ୱାଦ ଓ ଅନ୍ତର୍ନିହିତ ଭାବପ୍ରବଣତା । ଶହ ଶହ ବର୍ଷଧରି ଯେଉଁ କଳା, ସାହିତ୍ୟ, ନୃତ୍ୟ, ସଙ୍ଗୀତର ମୂର୍ଚ୍ଛନା କେବଳ ଗୋଟିଏ ଆଂଶିକ ଦୃଷ୍ଟିଭଙ୍ଗୀରେ ବିଚାର କରାଯାଉଥିବା ବେଳେ, ଡକ୍ଟର ପାଠୀ ଖୋଜି ପାଇଛନ୍ତି ଏକ ସମନ୍ୱିତ ଭିନ୍ନ ସ୍ୱର ଓ ଛନ୍ଦ, ଯାହା ସାମଗ୍ରିକ । ଦୃଷ୍ଟିଭଙ୍ଗୀ ସ୍ୱତନ୍ତ୍ର, ସାର୍ବଜନୀନ ଓ ବ୍ୟାପକ । କେତେବେଳେ ଘୁଙ୍ଗୁର ଓ ମାର୍ଦ୍ଦଳର ଛନ୍ଦ ତ ଆଉ କେତେବେଳେ ଓଡ଼ିଶୀ ସଂସ୍କୃତିର ନିଛକ ବାସ୍ତବତାର ଧ୍ୱନି । ଖୋଜିବାକୁ ଚେଷ୍ଟା କଲେ - ତାହା ହୁଏ ବ୍ୟାପକ ଓ ଅଗଣିତ । ସାରା ଜୀବନ ସେ ନିଜକୁ ସଂପୂର୍ଣ୍ଣ ଭାବରେ ଉତ୍ସର୍ଗ କରି ଦେଇଛନ୍ତି - ଏହିସବୁ ସାଧନା କ୍ଷେତ୍ରରେ, ପାରୁର୍ଯ୍ୟ, କ୍ଷମତା ଓ ଆତ୍ମବଡ଼ିମା ଠାରୁ ନିଜକୁ ବହୁଦୂରକୁ ଠେଲିଦେଇ କେବଳ ନିଜର କର୍ତ୍ତବ୍ୟ ଓ ସ୍ୱାଭିମାନକୁ ସାଇତି ରଖିଛନ୍ତି ପସରା ମେଲା ପରଶ କାଠିରେ । ବେଳେବେଳେ ଗୋଟିଏ ପଟରୁ ଲେଖା ଆରମ୍ଭ କରି ଅନ୍ୟ ପଟକୁ ଗଲାବେଳେ ତାହା ପୁଣି ଛନ୍ଦି ହୋଇଯାଏ ବାନ୍ଧଲୁଗାର ମଣ୍ଡନରେ ।

ଓଡ଼ିଶାର କଳା ଓ କଳା ଇତିହାସ ଉପରେ ଆଲୋଚନା କଲେ ଲାଗେ ଡକ୍ଟର ପାଠୀଙ୍କର ସ୍ଥାନ ସ୍ୱତନ୍ତ୍ର । ଦୀର୍ଘଦିନ ଧରି କଳାକୁ ତ କିଏ କିପରି ବୁଝନ୍ତି ମାତ୍ର କଳା ଇତିହାସ କଥା କହିବା ବେଳକୁ ତାହା ବି ଏକ ବେସୁରା ଛନ୍ଦ ପରି ଲାଗେ । କଳା ତ କଳା- ପୁଣି କଳା ଇତିହାସ କ'ଣ ? ଏହାର କି ପ୍ରୟୋଜନ ରହିଛି ? **ଚିତ୍ରକଳାକୁ ତ ଆଖିରେ ଦେଖି ଆନନ୍ଦ ଗ୍ରହଣ କରିବୁ - ତା'ର ଇତିହାସ ଜାଣିବା କ'ଣ ଦରକାର ? ଏହାର ସମାଧାନ ଓ ବିଚାର କେବଳ ଡକ୍ଟର ପାଠୀଙ୍କର ଲିଖିତ ଓ ସଂକଳିତ ଗ୍ରନ୍ଥ ସମୂହରୁ ଜାଣିବାକୁ ମିଳିବ ।**

ଆଧୁନିକ ଓଡ଼ିଶାର କଳା, କଳାକାର ଓ ଶିକ୍ଷାନୁଷ୍ଠାନ କେବଳ ମୁଣ୍ଡ ଟେକିଥିଲା ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ । ଯେହେତୁ ଓଡ଼ିଶାରେ ସେତେବେଳକୁ କୌଣସି ବିଧିବଦ୍ଧ କଳା ଅନୁଷ୍ଠାନ ନଥିଲା, ଯେଉଁ କେତେଜଣ ଓଡ଼ିଆ ଶିଳ୍ପୀ କଳାଶିକ୍ଷା କରିବାକୁ ଚାହୁଁଥିଲେ - ସେମାନଙ୍କୁ ଓଡ଼ିଶା ବାହାରେ ବା ବିଦେଶରେ ଶିକ୍ଷା ଗ୍ରହଣ କରିବାକୁ ପଡୁଥିଲା । ସେମାନଙ୍କୁ କଲିକତା, ଶାନ୍ତିନିକେତନ, ଲକ୍ଷ୍ନୌ, ବମ୍ବେ ବା ମାଡ୍ରାସ ଯିବାକୁ ହେଉଥିଲା । କିଏ ହୁଏତ ଚିତ୍ରକଳାରେ, ଆଉ କିଏ ଭାସ୍କର୍ଯ୍ୟ ବା ଆଉ କିଏ ବାଣିଜ୍ୟ ବା ମୁଦ୍ରଣ କଳା ଉପରେ କେବଳ ପ୍ରୟୋଗିକ ଶିକ୍ଷା ଗ୍ରହଣ କରୁଥିଲେ ଓ ତତ୍‌ସମ୍ବନ୍ଧୀୟ ନନ୍ଦନତତ୍ତ୍ୱର ସମ୍ୟକ ସୂଚନା ପାଉଥିଲେ । ମାତ୍ର କଳାକୁ ବୁଝିବା, ତାହା ମଧ୍ୟରେ ଲୁଚି ରହିଥିବା ଭାବଧାରାକୁ ଗଭୀର ଦୃଷ୍ଟିଭଙ୍ଗୀରେ ଗ୍ରହଣ କରିବା ବା ତା'ର ତର୍ଜମାର କୌଣସି ଆବଶ୍ୟକତା ଅନୁଭବ କରୁନଥିଲେ । ନିଜ କଳାସାଧନା ବ୍ୟତୀତ ନିଜ ଚାରିପଟରେ ହଜାର ହଜାର ବର୍ଷଧରି ତିଷ୍ଠି ରହିଥିବା କଳାକାରର କଳାଚାତୁରୀପୂର୍ଣ୍ଣ ଝୋଟି, ମୁରୁଜ, ଚିତା, ତାଳପତ୍ର ପୋଥିଚିତ୍ର, ପଟଚିତ୍ର, ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ ସମ୍ପର୍କରେ ଆଲୋଚନାକୁ ନିଜର ଗୁରୁଦାୟିତ୍ୱ ବୋଲି ଅନୁଭବ କରୁନଥିଲେ । ବିଦେଶୀ ଲେଖକଙ୍କର କେତୋଟି ହାତଗଣତା ବହି, ଯାହାକୁ ସେମାନେ ବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ଦେଖିଥିଲେ ତାହା ଛଡ଼ା ଶିକ୍ଷା ସମାପ୍ତି ପରେ ଆଉ କେବେ କୌଣସି କଳା

Digitized by srujanika@gmail.com

ଇତିହାସ ଓ ନନ୍ଦନତତ୍ତ୍ୱ ଉପରେ ପୁସ୍ତକ ବା ପତ୍ରପତ୍ରିକା ଦେଖିବାର ସୁଯୋଗ ମଧ୍ୟ ନଥିଲା । ଫଳତଃ ବହୁବର୍ଷଧରି ଓଡ଼ିଶାର ପାରମ୍ପରିକ କଳା, ଲୋକକଳା ଜନ ସମୂହକୁ ଆସି ପାରିନଥିଲା । ଯେଉଁମାନେ ବାସ୍ତବରେ କଳାକାର, ସେମାନେ ତୂଳୀ, ନିହାଣ, ମୁଗୁର ଚାଳନା ବ୍ୟତୀତ ଅନ୍ୟ କୌଣସି ବୌଦ୍ଧିକ ସାଧନା ପ୍ରତି ସେଭଳି କୌଣସି ଆଗ୍ରହ ନଥିଲା କି ପ୍ରେରଣା ନଥିଲା । ଏହି ଅଭାବକୁ ପୂରଣ କରିବା ପାଇଁ ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଡକ୍ଟର ପାଠୀ ହିଁ ଆଗଭର ହୋଇ କଳା ଇତିହାସ ଓ ନନ୍ଦନତତ୍ତ୍ୱ ଉପରେ ଯେଉଁ କେତୋଟି ସନ୍ଦର୍ଭ ଉପସ୍ଥାପନା କରିଛନ୍ତି, ତାହା ହିଁ ଓଡ଼ିଶାର କଳାକାରର ବ୍ୟକ୍ତିତ୍ୱ ଓ ମହାନତାକୁ ପରିପ୍ରକାଶ କରେ ।

ଖଲ୍ଲିକୋଟର କଳାବିଦ୍ୟାଳୟ ୧୯୫୭ ମସିହାରେ ସ୍ଥାପନ କରାଗଲା । ୧୯୫୭ ମସିହାରୁ ୧୯୭୯ ମସିହା ପର୍ଯ୍ୟନ୍ତ କଳାରେ ଚାରିବର୍ଷିଆ ଡିପ୍ଲୋମା ପାଠ୍ୟଖସଡ଼ା ଚାଲୁଥିଲା । କେବଳ ପ୍ରାୟୋଗିକ ଶିକ୍ଷା ବ୍ୟତୀତ, ନନ୍ଦନତତ୍ତ୍ୱ ଓ କଳା ଇତିହାସ ଅଧ୍ୟାପନା କରିବା ପାଇଁ କୌଣସି ଶିକ୍ଷକ ନଥିଲେ । କେବଳ ଶିକ୍ଷକମାନେ ଶ୍ରେଣୀରେ ପାଠ ପଢ଼ାଇବା ବେଳେ ନିଜର ଅନୁଭୂତି ଓ ନିଜନିଜ ଅନୁଷ୍ଠାନ ଓ ଶିକ୍ଷକମାନଙ୍କର କଳାକୃତି ସଂପର୍କରେ ଯାହା କିଛି ଧାରଣା ଦେଉଥିଲେ ତାହା ହିଁ ଥିଲା ଛାତ୍ରଛାତ୍ରୀମାନଙ୍କର କଳା ସମ୍ପର୍କରେ ବିଶେଷ ଜ୍ଞାନ ଆହରଣ କରିବାର ସୁଯୋଗ । ଓଡ଼ିଶାର ତଥା ପୃଥିବୀର କଳା ସଂସ୍କୃତି କେତେ ଯେ ସମୃଦ୍ଧ ଓ ବ୍ୟାପକ ତାହା ମଧ୍ୟ ଠିକ୍ ଭାବରେ ବୁଝିବାର ଅବକାଶ ନଥିଲା । ଅନୁଷ୍ଠାନ ପାଇଁ ଗୋଟିଏ ଭଲ ପାଠଗାର ଯେ ଆବଶ୍ୟକ ସେକଥା ମଧ୍ୟ ସପ୍ନ ପରି ଥିଲା । ହାତଗଣତି କେତୋଟି ଗଳ୍ପ, ସାହିତ୍ୟ, କବିତା ଏବଂ କଳା ଉପରେ ଇଂରେଜୀ ଭାଷାରେ ଲିଖିତ କେତୋଟି ପୁସ୍ତକ ବ୍ୟତୀତ କିଛି ଉପାଦେୟ ବହି ବିଦ୍ୟାଳୟରେ ନଥିଲା । ଏବେ ଦୁଇ ପ୍ରମୁଖ ସରକାରୀ କଳା ମହାବିଦ୍ୟାଳୟକୁ ବହୁ ପୁସ୍ତକ ଆସିଲାଣି, ମାତ୍ର ଆଜି ପର୍ଯ୍ୟନ୍ତ ଜଣେ ହେଲେ ଗ୍ରନ୍ଥାଗାରିକ ନାହାଁନ୍ତି । ତେଣୁ ପିଲାମାନେ କିପରି ଗ୍ରନ୍ଥାଗାରକୁ ବ୍ୟବହାର କରୁଛନ୍ତି ତାହା ସ୍ପଷ୍ଟ ।

ଯେଉଁ କଳାକାରମାନେ ଓଡ଼ିଶା ବାହାରୁ ଅଧ୍ୟୟନ ସାରି ଓଡ଼ିଶା ଫେରିଲେ, ସେମାନେ ନିଜର ପେଶା ଛଡ଼ା ଆଉ କିଛି ବୁଝୁନଥିଲେ । କଳା ଉପରେ ଓଡ଼ିଆ ଭାଷାରେ କୌଣସି ପୁସ୍ତକ ନଥିଲା । ଜଗବନ୍ଧୁ ସିଂହ, ରାଧାଚରଣ ପଣ୍ଡାଙ୍କ ବ୍ୟତୀତ ଓଡ଼ିଶାର ପ୍ରାଚୀନ ସଂସ୍କୃତି, ଭାସ୍କର୍ଯ୍ୟ ସ୍ଥାପତ୍ୟ ଓ ଚିତ୍ରକଳା ଉପରେ ଅନ୍ୟ କୌଣସି ଉପାଦେୟ ପୁସ୍ତକ ରଚନା କରିବା ପାଇଁ ଅନ୍ୟ କୌଣସି ଐତିହାସିକ ସମର୍ଥ ହୋଇପାରିନଥିଲେ । ଏହି ପରିପ୍ରେକ୍ଷୀରେ ଗୋପାଳ କାନୁନ୍‌ଗୋ ଥିଲେ ସାମାନ୍ୟ ପୃଥକ୍ । ସେ ଯେପରି ଜଣେ ସୁପ୍ରତିଷ୍ଠିତ କଳାକାର ଥିଲେ ସେହିଭଳି ଜଣେ ସଫଳ କବି, ଅନୁବାଦକ ଓ ପ୍ରାବନ୍ଧିକ ମଧ୍ୟ ଥିଲେ । ସେ ଓଡ଼ିଶାର କଳା, ଭାସ୍କର୍ଯ୍ୟ ଉପରେ କେତେଖଣ୍ଡି ପୁସ୍ତକ ଓଡ଼ିଆ ଭାଷାରେ ଲେଖିଥିଲେ । କଳା ଇତିହାସ ଏକ ବ୍ୟାପକ ବିଷୟ । ଏଥିରେ ସାହିତ୍ୟ, ସଂସ୍କୃତି, ଦର୍ଶନ, ସୌନ୍ଦର୍ଯ୍ୟ ଓ ନନ୍ଦନତତ୍ତ୍ୱ ବିଭିନ୍ନ ଭାବରେ ଛନ୍ଦାୟିତ ହୋଇଥାଏ । ତାକୁ ଠିକ୍ ଭାବରେ ବୁଝିବା ଓ ଅନ୍ୟକୁ ବୁଝାଇବାର ଯେଉଁ ଜ୍ଞାନ ଓ ଦକ୍ଷତାର ଆବଶ୍ୟକତା ଥିଲା, ତାହା ହୁଏତ ଅନ୍ୟ ଶିଳ୍ପୀଙ୍କ ପାଖରେ ନଥିଲା । ଗୋପାଳ କାନୁନ୍‌ଗୋ ଜଣେ ସ୍ନାତକ ତଥା କଲିକତା କଳା ବିଦ୍ୟାଳୟରୁ କଳାଶିକ୍ଷା କରିଥିବାରୁ କଳା ଉପରେ ଲେଖା ଲେଖି କରିବାର ପ୍ରଗାଢ଼ ଆକାଂକ୍ଷା ଥିଲା । ତାଙ୍କ ରଚିତ **କଳାର ବିଚାର, ଉତ୍କଳର ଚିତ୍ରକଳା** ପ୍ରଭୃତି ପୁସ୍ତକଗୁଡ଼ିକ ଉଲ୍ଲେଖଯୋଗ୍ୟ । ସେହିଭଳି ବିନୋଦ ରାଉତରାୟ ମଧ୍ୟ ଜଣେ ଉତ୍ତମ କଳାକାର । ସେ ଜଣେ ଶିଶୁସାହିତ୍ୟିକ ଓ ପ୍ରାବନ୍ଧିକ ଭାବରେ ଓଡ଼ିଶାର କଳା ଉପରେ ଅନେକ ପୁସ୍ତକ ସଂକଳନ କରିଛନ୍ତି । ବିଶେଷ କରି ଚିତ୍ରଶିକ୍ଷା, କଳା-କାହାଣୀ, ଓଡ଼ିଶାର ଚିତା, ଲିନୋଲିୟମ୍‌ର ଆତ୍ମକଥା, ଆଲେଖ୍ୟ ବିଚାର, ଲୋକକଳା ଓ ଲୋକସଂସ୍କୃତି, ସୃଜନଶୀଳ କଳା ଓ ସୌନ୍ଦର୍ଯ୍ୟବୋଧ, ନନ୍ଦନର କୁଞ୍ଜତଳେ, ସୌନ୍ଦର୍ଯ୍ୟବୋଧ ଚର୍ଚ୍ଚା ଓ ସଂପ୍ରତିକ କଳାକାର ଯଥା ଶିଳ୍ପୀ ବିମ୍ବାଧର ବର୍ମା, ଗୋପାଳ କାନୁନ୍‌ଗୋଙ୍କ ଉପରେ ଆଧାରିତ ପୁସ୍ତକ ଗୁଡ଼ିକ ଉଲ୍ଲେଖଯୋଗ୍ୟ ।

Digitized by srujanika@gmail.com

ମାତ୍ର କଳା ଇତିହାସ ଓ ନନ୍ଦନତତ୍ତ୍ୱ ଉପରେ ମୌଳିକ ସନ୍ଦର୍ଭ ଲେଖିବା ନିଶ୍ଚିତ ଭାବରେ ଏକ କଷ୍ଟକର ବ୍ୟାପାର । ଏଥିପାଇଁ ଯେଉଁ ଜ୍ଞାନ, କ୍ଷେତ୍ର ଗବେଷଣା, ପ୍ରତ୍ୟକ୍ଷ ଅନୁଭୂତି, ନିଜର ସଂପୃକ୍ତି, ସହାୟକ ପୁସ୍ତକ, ଦେଶ ବିଦେଶରେ ଘଟୁଥିବା କଳାର ପରିବର୍ତ୍ତନ ତଥା ଆନୁସଙ୍ଗିକ ଉଦାହରଣ ପ୍ରଭୃତିର ଯେଉଁ ପ୍ରୟୋଜନ ଥାଏ, ତାହା ହୁଏତ ବିନୋଦ ରାଉତରାୟଙ୍କର ଅବଦାନ ଭିତରେ ଅଭାବ ଥିଲା । ତଥାପି ନିଜର ଅକ୍ଳାନ୍ତ ଅଧ୍ୟବସାୟ ଓ ପ୍ରଚେଷ୍ଟା ଫଳରେ କଳା ଇତିହାସ, କଳାଶିକ୍ଷା ଓ ନନ୍ଦନତତ୍ତ୍ୱକୁ ଆଗକୁ ବଢ଼େଇ ନେବା ଉପରେ ବିନୋଦ ରାଉତରାୟଙ୍କର ଭୂମିକା ସ୍ମରଣଯୋଗ୍ୟ ।

ମୁଁ ବିଶ୍ୱଭାରତୀ ବିଶ୍ୱ ବିଦ୍ୟାଳୟ ଶାନ୍ତିନିକେତନ ଓ ମହାରାଜ ସୟାଜୀରାଓ ବିଶ୍ୱବିଦ୍ୟାଳୟ, ବରୋଦାରେ ଅଧ୍ୟୟନ କାଳରେ ଭାରତର ବିଶିଷ୍ଟ କଳା ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ମାନଙ୍କର ସାନ୍ନିଧ୍ୟ ପାଇଥିଲେ ମଧ୍ୟ ନିଜର ଅସହାୟତା ପାଇଁ ହୁଏତ କିଛି କରିପାରିନାହିଁ । ଓଡ଼ିଶା ବାହାରେ ଓଡ଼ିଆମାନଙ୍କୁ କିପରି ହିନସ୍ତା ହେବାକୁ ପଡ଼ିଥାଏ, ତାହା ବଖାଣିଲେ ଗୋଟିଏ ପୁସ୍ତକ ହେବ । ଓଡ଼ିଶାର ପିଲା କଳା, କଳା-ଇତିହାସ ଓ ନନ୍ଦନତତ୍ତ୍ୱ କହିଲେ କିଛି ବୁଝନ୍ତି ନାହିଁ । ଓଡ଼ିଶାର ଅର୍ଥନୈତିକ ଦୁର୍ବଳତା ବ୍ୟକ୍ତିର ବ୍ୟକ୍ତିତ୍ୱ ଗଢ଼ିବାରେ ବାଧକତା ସୃଷ୍ଟିକରେ । ଅନେକ କ୍ଷେତ୍ରରେ ଅପମାନର ଦ୍ୱାରସ୍ଥ ହେବାକୁ ମଧ୍ୟ ହୁଏ । ତଥାପି କଠୋର ପରିଶ୍ରମ, ନିଷ୍ଠା ଓ କର୍ତ୍ତବ୍ୟବୋଧ ସେ ସବୁ ସାମୟିକ ବାଧାକୁ ଅକ୍ଳାନ୍ତରେ ଅପସାରି ନେଇଥିଲା । ଓଡ଼ିଶାରେ ଚାକିରି କରିବି, ଓଡ଼ିଆ ପିଲାମାନଙ୍କୁ ପାଠ ପଢ଼ାଇବି ଏହାହିଁ ଭାବି ମୁଁ ଓଡ଼ିଶା ଚାଲି ଆସିଥିଲି । ଓଡ଼ିଶାର କଳାକାର ତଥା ଛାତ୍ର ଛାତ୍ରୀମାନଙ୍କୁ କିଭଳି କଳା-ଇତିହାସ ଓ ନନ୍ଦନତତ୍ତ୍ୱ ଉପରେ ସମ୍ୟକ ଜ୍ଞାନର ପ୍ରତିଫଳନ କରିଛି ତାହା ସମୟ ହିଁ କହିବ । ପାଠ ପଢ଼ାଇବା ଯେପରି ମୋର ନିଶା ଓ ପେଶା ହୋଇଯାଇଥିଲା । ପୁସ୍ତକ ସଂକଳନ କରିବାରେ ଅବଶ୍ୟ କୌଣସି ବାଧା ନଥିଲା, ମାତ୍ର ଇଂରେଜୀ, ବଙ୍ଗଳା ଓ ହିନ୍ଦୀ ପ୍ରଭୃତି ଭାଷାରେ ଯେତେବେଳେ ପୁସ୍ତକ ମିଳୁଛି ସେତେବେଳେ ଓଡ଼ିଆ ଭାଷାରେ ପୁଣି ପୁସ୍ତକ ଲେଖିବାକୁ ହୁଏତ ଅଧିକ ଗୁରୁତ୍ୱ ନେଇ ନଥିଲି । ମାତ୍ର ବର୍ତ୍ତମାନ ଅବସର ସମୟରେ ସେ ସବୁର ପୂରଣ କରିବାକୁ ଚେଷ୍ଟା କରିବି ।

ଅନ୍ୟପଟରେ ଦିନନାଥ ପାଠୀ ଥିଲେ ଜଣେ ଭିନ୍ନ ଧରଣର ମଣିଷ । କେତେବେଳେ ଶିଳ୍ପୀ ସଂସଦ ଗଢ଼ି ଚିତ୍ରମ କଳାବିଦ୍ୟାଳୟ ପରିଚାଳନା କଲେଣି ତ ଆଉ କେତେବେଳେ ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍‌କୁ ରୂପଦେଇ ଅନ୍ୟ କଳାକାର ବନ୍ଧୁଙ୍କ ସହିତ ଚିତ୍ରକଳାର ପ୍ରଦର୍ଶନୀ କଲେଣି । ଆଉ କେତେବେଳେ ଏକକ ପ୍ରଦର୍ଶନୀ, ଆଉ କେତେବେଳେ ସୁଇଜରଲାଣ୍ଡ ତ ଆଉ କେତେବେଳେ ଚୀନ, ଜାପାନ, ମିଶର ପ୍ରଭୃତି ଦେଶ ଭ୍ରମଣ କରି ନିଜର ପ୍ରଦର୍ଶନୀ କରିବା ସହିତ ସେହି ଦେଶମାନଙ୍କରେ ଭାରତୀୟ ତଥା ଓଡ଼ିଶୀ କଳା ସମ୍ପର୍କରେ ଭାଷଣ ସାଙ୍ଗକୁ ଉଲ୍ଲେଖନୀୟ ସନ୍ଦର୍ଭ ସଂକଳନ କଲେଣି । ସେହିଭଳି ବିଭିନ୍ନ ସରକାରୀ ଦାୟିତ୍ୱରେ ରହି ମଧ୍ୟ ଭାରତର ରାଜଧାନୀ ଦିଲ୍ଲୀଠାରୁ ଆରମ୍ଭକରି ଅନ୍ୟ ବିଶିଷ୍ଟ ମହାନଗରୀ ମାନଙ୍କରେ ଓଡ଼ିଶା ତଥା ଭାରତର ଚିତ୍ରକଳା ପ୍ରଦର୍ଶନ ତଥା କଳାମହୋତ୍ସବ ଆଦିରେ କିଭଳି ବ୍ୟସ୍ତ ରହିଥାନ୍ତି ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଖଲ୍ଲିକୋଟ କଳାବିଦ୍ୟାଳୟର ସେହି ଅଭାବନୀୟ ପରିବେଶ ଭିତରୁ ଉଠୁରି ବିଶ୍ୱର ସମସ୍ତ ବଳୟକୁ ସ୍ପର୍ଶ କରିବାର ଆସ୍ପର୍ଦ୍ଧା କଥା ଭାବିଲା ବେଳକୁ ସାହସ କୁଳାଏ ନାହିଁ। ଅଭିଭୂତ ହେବାକୁ ହୁଏ ଜଣେ ଲୋକର ସାହସ ଓ ଦକ୍ଷତାକୁ ନେଇ । ନିଜ ପାରିବାରିକ ସୁଖଦୁଃଖରେ ଯେତିକି ସମ୍ପୃକ୍ତି, ତାହାଠାରୁ ଅଧିକ ଚିତ୍ରକଳାର ପ୍ରସାର, କଳାକାରମାନଙ୍କର ମାନ୍ୟତା ତଥା ଓଡ଼ିଶାର ଶିଳ୍ପୀ ଭାରତ ତଥା ପୃଥିବୀ ମାନଚିତ୍ରରେ କିପରି ସ୍ଥାନ ପାଇବ ସେଥିନେଇ ବ୍ୟଗ୍ରତା । ନିଜର ଦୃଢ଼ ବ୍ୟକ୍ତିତ୍ୱ ଓ ସଫଳ ନେତୃତ୍ୱ ଫଳରେ ସେ ଭାରତର ତଥା ପୃଥିବୀର ବହୁ ବିଶିଷ୍ଟ କଳାକାର, କଳା ଐତିହାସିକ, ଶିକ୍ଷାବିତ୍, କବି, ସାହିତ୍ୟିକ, ନୃତ୍ୟଶିଳ୍ପୀ ଓ ସଂଗୀତଜ୍ଞ ପ୍ରଭୃତିଙ୍କର ଅତି ନିକଟତର ହୋଇ ପାରିଛନ୍ତି । ଦେଶ ବିଦେଶରେ ଓଡ଼ିଶାର କଳାକାର ଓ କଳା ଐତିହାସିକ କହିଲେ ଡକ୍ଟର ପାଠୀଙ୍କୁ ବୁଝନ୍ତି । ସାହିତ୍ୟ, ସଙ୍ଗୀତ ଓ

Digitized by srujanika@gmail.com

ଲଳିତକଳା ଏକାଡ଼େମୀ, ଉଭୟ ରାଜ୍ୟ ତଥା ଭାରତର ସେ ଜଣେ ସକ୍ରିୟ ସଦସ୍ୟ । ଖଲ୍ଲିକୋଟ କଳା ବିଦ୍ୟାଳୟରେ ସିନା ଚିତ୍ରକଳା ଅଧ୍ୟୟନ କରିଥିଲେ, ମାତ୍ର ତାଙ୍କ ବ୍ୟକ୍ତିତ୍ୱର ପ୍ରସାର ହେବାର ଥିଲା ତାର ପରବର୍ତ୍ତୀ ଜୀବନରେ । ଗୋଟିଏ ପଟରେ ପ୍ରଶାସନର ଶୃଙ୍ଖଳା ଅନୁସାରେ ଅନୁଷ୍ଠାନର ବିକାଶ, କଳାର ପ୍ରସାର, ସାମ୍ପ୍ରତିକ ଓଡ଼ିଆ କଳାକାରମାନଙ୍କ ନେତୃତ୍ୱ ନେଇ ବିଦେଶରେ ପରିଚିତ କରିବା ତଥା ସେମାନଙ୍କର ଅର୍ଥନୈତିକ ଅବସ୍ଥାକୁ ସୁଦୃଢ଼ କରିବା, କଳାଶିବିର, ଆଲୋଚନାଚକ୍ର, ପ୍ରଦର୍ଶନୀ ପ୍ରଭୃତିର ଆୟୋଜନ ଥିବାବେଳେ ଅନ୍ୟପଟରେ କେଉଁ କଳା, ସଂଗୀତ, ନୃତ୍ୟ ଉପରେ କେତେବେଳେ କ'ଣ ଲେଖା ହେବ, କେଉଁଠି ପ୍ରକାଶ କରାଯିବ ତାହାଥିଲା ଏକ ସମ୍ପୂର୍ଣ୍ଣ ଭିନ୍ନ, ବଳିଷ୍ଠ ଓ ଅଦମ୍ୟ ସାହସର ପରିଚୟ । ତାଙ୍କ ଦ୍ୱାରା ରଚିତ ବହି, ବହିର ସାଜସଜ୍ଜା, ଚିତ୍ରବର୍ଣ୍ଣନା, ରଙ୍ଗ ପ୍ରୟୋଗ, ପୁସ୍ତକ ମଲାଟ ଓ ଏଭଳିକି ନିମନ୍ତ୍ରଣ ପତ୍ରଗୁଡ଼ିକୁ ଦେଖିଲେ ମନେହେବ ଯେ ନିଶ୍ଚିତ ଭାବରେ ଏଗୁଡ଼ିକ ଭିନ୍ନ ଧରଣର ଓ ସ୍ୱତନ୍ତ୍ର ରୁଚିପୂର୍ଣ୍ଣ ପରିବେଷଣ । ବହି ଛାପିବା ବା ତା'ର ଲୋକାର୍ପଣ ପାଇଁ କୌଣସି ନିମନ୍ତ୍ରଣ କାର୍ଡ଼ ଛାପି ବିତରଣ କରିବାର ମାର୍ଗ ହେଉ, ସେଥିପାଇଁ ଯେଉଁ ଜ୍ଞାନ ଓ ନନ୍ଦନତତ୍ତ୍ୱର ଆବଶ୍ୟକ ଥାଏ, ତାହାଠାରୁ ଡକ୍ଟର ପାଠୀ ସବୁବେଳେ ଆଉ ପାଦେ ଆଗେଇ ରହୁଥିଲେ । ନିଜର ମନ ନ ମାନିବା ପର୍ଯ୍ୟନ୍ତ ପୁସ୍ତକ ପୂର୍ଣ୍ଣାଙ୍ଗ ହେଉନଥିଲା କି ଛପା ଯାଉନଥିଲା । ଏ ସବୁଥିରୁ ଅନୁମାନ କରାଯାଇ ପାରେ ଯେ ଡକ୍ଟର ପାଠୀଙ୍କର ଏହି କ୍ଷେତ୍ରରେ କେତେ ନିଷ୍ଠା, ଆଗ୍ରହ ଓ ଅବଦାନ ରହିଛି ।

ଖଲ୍ଲିକୋଟରୁ ଶିକ୍ଷା ସମାପ୍ତି ପରେ ବିଭିନ୍ନ ଅନୁଷ୍ଠାନରେ କଳା ଶିକ୍ଷକ, କଳାକାର, ଡିଜାଇନ୍‌ର, ବି.କେ. ଚାରୁ ଓ କାରୁ କଳାମହାବିଦ୍ୟାଳୟରେ ଦୀର୍ଘଦିନ ଅଧ୍ୟକ୍ଷ, ଦିଲ୍ଲୀ ଲଳିତ କଳା ଏକାଡ଼େମୀର ସଚିବ, ଓଡ଼ିଶା ଲଳିତ କଳା ଏକାଡ଼େମୀର ସଭାପତି ତଥା ବର୍ତ୍ତମାନ ବନାରସସ୍ଥିତ ଆଲିସ୍ ବୋନର୍ ଗବେଷଣା ସଂସ୍ଥାର ଡକ୍ଟର ପାଠୀ ନିର୍ଦ୍ଦେଶକ ଅଛନ୍ତି । ଏକ ଲମ୍ବାରାସ୍ତାରେ, ବହୁ ଅନୁଭୂତିକୁ ପାଥେୟ କରି ନିଜର ଜୀବନ ଓ ଜୀବିକାକୁ ସେ ନିର୍ବାଚନ କରିଛନ୍ତି । ଇତିହାସରେ ଉତ୍କଳ ବିଶ୍ୱ ବିଦ୍ୟାଳୟରୁ ଡକ୍ଟରେଟ୍ ଓ ବିଶ୍ୱ ଭାରତୀ ବିଶ୍ୱ ବିଦ୍ୟାଳୟରୁ କଳା ଇତିହାସରେ ଡକ୍ଟରେଟ୍ ଉପାଧି ପାଠୀଙ୍କର କର୍ତ୍ତବ୍ୟନିଷ୍ଠା ଓ ଅଧ୍ୟବ୍ୟସାୟକୁ ପ୍ରତିପାଦିତ କରେ । ନିଜ ଭିତରେ ଥିବା ବଳିଷ୍ଠ ପ୍ରତିଭା ଅଧିକ ଉଜ୍ଜ୍ୱଳିତ ହେଲା ଯେତେବେଳେ ସେ ଶାନ୍ତିନିକେତନର ବିଶିଷ୍ଟ କଳା ଐତିହାସିକ ପ୍ରଫେସର୍ କାଞ୍ଚନ ଚକ୍ରବର୍ତ୍ତୀ ଓ ମ୍ୟୁଜିୟମ୍ ରିଟ୍‌ବର୍ଗ୍‌ର ନିର୍ଦ୍ଦେଶକ ଡକ୍ଟର ଏବର୍‌ହାର୍ଡ୍ ଫିସର୍‌ଙ୍କ ସଂସ୍ପର୍ଶରେ ଆସିଲେ । ଦିଲ୍ଲୀ, ବାରାଣସୀ, ସୁଇଜରଲ୍ୟାଣ୍ଡ, ଫ୍ରାନ୍ସ, ଜର୍ମାନୀ, ସୁଇଡେନ୍, ଚୀନ, ଲଣ୍ଡନ ପ୍ରଭୃତି ଦେଶକୁ ବାରମ୍ବାର ଯାତ୍ରା କରିବା ଦ୍ୱାରା ବହୁ ବିଶିଷ୍ଟ କଳାକାର, ଚିତ୍ରବୀଥି, ସଂଗ୍ରହାଳୟ, ଶିଳ୍ପୀଚକ୍ର ଓ ସେ ଦେଶର ପାରମ୍ପରିକ ତଥା ଲୋକକଳା ସଂସ୍ପର୍ଶରେ ଆସିଥିଲେ । ଏସବୁ ଅନନ୍ୟ ଅନୁଭୂତିକୁ ଓଡ଼ିଶାର ପାରମ୍ପରିକ କଳା, ଲୋକକଳା, ଲୋକ ସଂସ୍କୃତି, ଲୋକାଚାର, ଜଗନ୍ନାଥ ସଂସ୍କୃତି ଓ ପରମ୍ପରା, ସାମ୍ପ୍ରତିକ ଓଡ଼ିଶାର କଳା, କଳାକାର, କଳାର ସମସ୍ୟା ଓ ତାର ସମାଧାନ, ସର୍ବଭାରତୀୟ ସ୍ତରରେ ଓଡ଼ିଆ ଶିଳ୍ପୀମାନଙ୍କର ସ୍ୱୀକୃତି, ମେଧାଛାତ୍ର ବୃତ୍ତି ପ୍ରଦାନ କ୍ଷେତ୍ରରେ ପ୍ରୟୋଗ କରି ଏବଂ ସାମୂହିକ ଉଦ୍ୟମ ପ୍ରତି ଅଧିକ ଧ୍ୟାନ ନେଇ ସେଥିରେ ସଫଳ ହୋଇଥିଲେ । ଉଦାହରଣ ସ୍ୱରୂପ ବି.କେ. ଚାରୁ ଓ କାରୁକଳା ମହାବିଦ୍ୟାଳୟର କେତେକ ଛାତ୍ର ଯଥା ଅଦ୍ୱୈତ ପ୍ରସାଦ ଗଡ଼ନାୟକ, ଜଗନ୍ନାଥ ପଣ୍ଡା, କାଳୀକିଙ୍କର ଦେ, ପ୍ରଭୃତିଙ୍କ କଳାକ୍ଷେତ୍ରରେ ଜାତୀୟ ସମ୍ମାନ ତଥା ରାମହରି ଜେନାଙ୍କ ମଧ୍ୟ ଜାତୀୟ ସମ୍ମାନ ଓଡ଼ିଶାର ଗୌରବ ବଢ଼ାଇବାରେ ସହାୟକ ହୋଇଛି । ସେମାନଙ୍କ ବ୍ୟତୀତ ସୁଧାଂଶୁ ଭୂଷଣ ସୂତାର, ପ୍ରତୁଲ ଦାଶ, ଦିଲ୍ଲୀପ କୁମାର ତ୍ରିପାଠୀ, ପ୍ରଦୋଷ ମିଶ୍ର, ଶୋଭନ କୁମାର ପ୍ରଭୃତି ଛାତ୍ରଙ୍କ ଜାତୀୟ ସ୍ତରରେ ପ୍ରତିଷ୍ଠା ଭିତରେ ଡକ୍ଟର ପାଠୀଙ୍କର ଅବଦାନ ସ୍ୱୀକାର୍ଯ୍ୟ । ଜଣେ ସଚ୍ଚା ଓଡ଼ିଆ, ସ୍ୱାଭିମାନ ଓ ସଚେତନ ବ୍ୟକ୍ତି ବିଶେଷ ଭାବରେ ଯେତେବେଳେ ଯାହା କରିବାକୁ ହୁଏ, ସେଥିରେ ସେ କେବେ ବିରତ ହୋଇନାହାନ୍ତି ।

Digitized by srujanika@gmail.com

ଓଡ଼ିଶାର ଚିତ୍ରକଳା, ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ ଉପରେ କେତେକ ଦେଶ ବିଦେଶର ଐତିହାସିକ ଓ ପ୍ରନ୍ତତତ୍ତ୍ୱବିତ୍ ବିଭିନ୍ନ ପୁସ୍ତକରେ ସମ୍ୟକ୍ ବା ବିସ୍ତୃତ ଭାବରେ ଉଲ୍ଲେଖ କରିଛନ୍ତି । ବିଶେଷକରି Stella Kramrisch, Thomae Donaldson, Joanna Williams, Eberhard Fischer, J.P. Das, J. Fergusson, Alice Boner, John Beams, Debala Mitra, Vidya Dehejia, R. D. Banerjee ପ୍ରଭୃତିଙ୍କର ବିଶିଷ୍ଟ ଅବଦାନ ଚିରସ୍ମରଣୀୟ । ଏମାନଙ୍କ ଗବେଷଣା ସହିତ ସମନ୍ୱୟ ରଖି ପାଠୀ ଓଡ଼ିଶାର ଗ୍ରାମାଞ୍ଚଳରେ ଓ ଆଦିବାସୀମାନଙ୍କ ମଧରେ ଲୁଚି ରହିଥିବା କଳା, ସଂସ୍କୃତି ଓ ତାର ଗୁରୁତ୍ୱ ପ୍ରତି ଯଥେଷ୍ଟ ଧ୍ୟାନ ଦେଇଛନ୍ତି ଓ ଦେଉଛନ୍ତି । ଡକ୍ଟର ପାଠୀଙ୍କ ରଚିତ **Traditional Paintings of Orissa** ଯେଉଁଥିରେ ଗବେଷଣା କରି ସେ Ph.D ପାଇଥିଲେ ତାହାକୁ ଦେଖିଲେ ଓଡ଼ିଶାର ଭିତ୍ତିଚିତ୍ର, ପୋଥିଚିତ୍ର, ପଟଚିତ୍ର ଠାରୁ ଆରମ୍ଭ କରି ରଙ୍ଗ ବନକର ପ୍ରଣାଳୀ ଉପରେ ବର୍ଣ୍ଣନା ମିଳିବା ସହିତ, ଲୋକ ସଂସ୍କୃତିରେ ତାର ମୂଲ୍ୟବୋଧ ଓ ସୃଜନଶୀଳତାର କେତେ ନିବିଡ଼ତା ରହିଛି - ତାହା ଜଣାପଡ଼େ । ସେହିଭଳି **Mural Paintings in Orissa** ଯାହାକି ଓଡ଼ିଶା ଲଳିତ କଳା ଏକାଡ଼େମୀ ଦ୍ୱାରା ପ୍ରକାଶିତ, ସେଥିରେ ବୁଗୁଡ଼ା ଓ ଧରାକୋଟର ଭିତ୍ତିଚିତ୍ରର ପୁଙ୍ଖାନୁପୁଙ୍ଖ ଆଲୋଚନା ସହିତ ସନ୍ନିବେଶିତ ଆଲୋକଚିତ୍ରର ବର୍ଣ୍ଣନା ମଧ ଅତ୍ୟନ୍ତ ଉତ୍କୃଷ୍ଟ । ହୁଏତ ଡକ୍ଟର ପାଠୀଙ୍କ ପୂର୍ବରୁ ଏହି ଦୁଇଟି ବିଶିଷ୍ଟ ମନ୍ଦିରରେ ଥିବା ଭିତ୍ତିଚିତ୍ର ସମ୍ପର୍କରେ କୌଣସି ଗବେଷକ ଏଭଳି ଧ୍ୟାନ ଦେଇନଥିଲେ । ସେହିଭଳି ଜଗନ୍ନାଥ ସଂସ୍କୃତିରେ ଓଡ଼ିଆ ଶିଳ୍ପୀମାନଙ୍କର ଭୂମିକାକୁ ନେଇ **Jagannatha and the Oriya Artists** ସନ୍ଦର୍ଭଟିରେ ପଟଚିତ୍ରର ଟିକିନିଖି ବର୍ଣ୍ଣନା ରଙ୍ଗବିନ୍ୟାସ ରଙ୍ଗପ୍ରସ୍ତୁତି, ଚିତ୍ର ପରମ୍ପରା, ଶିଳ୍ପୀଙ୍କର ଭୂମିକାକୁ ନେଇ ଭାରତର ବିଭିନ୍ନ କଳା ସଂସ୍କୃତି ସହିତ ତୁଳନାତ୍ମକ ଆଲୋଚନା ଦ୍ୱାରା ଓଡ଼ିଶାର ଶିଳ୍ପୀମାନଙ୍କର ଜଗନ୍ନାଥ ମନ୍ଦିର ସହିତ ଥିବା ସମ୍ପର୍କ, ପଟଚିତ୍ରର ଭୂମିକା ଅଧିକ ସ୍ପଷ୍ଟ ହେବା ସହିତ ଅଧିକ ଗବେଷଣା କରିବାରେ ଖୋରାକି ଯୋଗାଇଛି । ଆଞ୍ଚଳିକ ଭିତ୍ତିରେ ଜଗନ୍ନାଥ ମନ୍ଦିର ସମ୍ପର୍କୀୟ ଅଧିକ ତଥ୍ୟ ଓ ଆଲୋଚନା ତାଙ୍କ ଧରାକୋଟ ମନ୍ଦିର ଉପରେ ରଚିତ ସତନ୍ତ୍ର ମନୋଗ୍ରାଫ୍‌ରୁ ପାଇହୁଏ । ମନ୍ଦିରର ଭାସ୍କର୍ଯ୍ୟ ବିନ୍ୟାସ ସହିତ ମୁଖଶାଳାରେ ଥିବା ଚିତ୍ରର ତୁଳନାତ୍ମକ ଅଧ୍ୟୟନ, ସ୍ଥାପତ୍ୟଶୈଳୀର ସାତନ୍ତ୍ର୍ୟ ତଥା ମନ୍ଦିରର ପୂଜାବିଧି ଓ ରୀତିନୀତି ସଂପର୍କରେ ଆଲୋଚନା ଜଗନ୍ନାଥ ସଂସ୍କୃତିର ବ୍ୟାପକତାକୁ ବୁଝାଏ । ଏହି ବହିଟର ଶୀର୍ଷକ ହେଲା, **Art and Regional Tradition, Jagannatha Temple of Dharakote, Architecture, Sculpture, Painting and Ritual.** **ସେହିଭଳି ଗଞ୍ଜାମର ଓଷାକୋଠି ଚିତ୍ର ସହିତ ଦକ୍ଷିଣ ଓଡ଼ିଶାର ଚିତ୍ରକରଙ୍କର ଧାର୍ମିକ ପୂଜାର୍ଚ୍ଚନାର ଉଲ୍ଲେଖ** **Murals for Goddesses and Gods, Osakothi Shrines, their Rituals and their Painters in South Orissa** ପୁସ୍ତକରେ ଦେଖିବାକୁ ମିଳେ, ବନ୍ଧୁ ଏବରହାର୍ଡ୍ ଫିସରଙ୍କ ସହିତ ନିଜେ ବ୍ୟକ୍ତିଗତ ଭାବରେ ବିଭିନ୍ନ ଗ୍ରାମର ଗଳିକନ୍ଦି ବୁଲି ଯେଉଁଠି କୌଣସି କଳା ବା ସାଂସ୍କୃତିକ ନମୂନା ପାଇଛନ୍ତି ତାହାକୁ ଲିପିବଦ୍ଧ କରି ଏକ ପୁସ୍ତକରେ ସଂକଳନ କରିଛନ୍ତି । ଛୋଟ ହେଉ କି ବଡ଼ ହେଉ ଓଡ଼ିଶାର ସଂସ୍କୃତିକୁ ସମୃଦ୍ଧ କରିବାରେ ଯେଉଁ ଯେଉଁ ଅଞ୍ଚଳର ପ୍ରାଧାନ୍ୟ ରହିଛି, ତାହାକୁ ଲୋକଲୋଚନକୁ ଆଣିବାରେ ଡକ୍ଟର ପାଠୀ ସମର୍ଥ ହୋଇଛନ୍ତି । ସେହିଭଳି ଓଡ଼ିଶାର ଏକ ବିସ୍ତୃତ ଅଞ୍ଚଳ କୋରାପୁଟ, ଫୁଲବାଣୀ, ଗଞ୍ଜାମ, କଳାହାଣ୍ଡି, ମୟୂରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ, ସୁନ୍ଦରଗଡ଼, ସମ୍ବଲପୁର ପ୍ରଭୃତି ଜିଲ୍ଲାରେ ଯେଉଁଠି ବିଭିନ୍ନ ଅଞ୍ଚଳର ଆଦିବାସୀମାନେ ବାସ କରନ୍ତି, ସେମାନଙ୍କର କଳା, ସଂସ୍କୃତିକୁ ଭଲଭାବରେ ଅଧ୍ୟୟନ କରିଛନ୍ତି । **Painted Icon : Saura Wall Paintings, Kondha Bronzes, Tribal Art, Primitivism and Modern Relevance** ପ୍ରଭୃତି ପୁସ୍ତକ ରଚନା ଓ ସଂକଳନ କରିଛନ୍ତି ।

ଶ୍ରୀଜୟଦେବ ଓ ଗୀତଗୋବିନ୍ଦ ଉପରେ ଅଧିକ ମୌଳିକ ଗବେଷଣାର ଆବଶ୍ୟକ ଥିବା ଅନୁଭବ କରି ବିଭିନ୍ନ ପାରମ୍ପରିକ କଳା, ସଂସ୍କୃତିର ସଂପର୍କକୁ ବିଚାରକୁ ନେଇ ଶ୍ରୀଜୟଦେବଙ୍କ

Digitized by srujanika@gmail.com

ରଚିତ ବିଶିଷ୍ଟ ପୁସ୍ତକ 'ଗୀତଗୋବିନ୍ଦ'ର ବିସ୍ତୃତ ବର୍ଣ୍ଣନା ଭାରତୀୟ ସାହିତ୍ୟ, ସଂସ୍କୃତିରେ ଶ୍ରୀଜୟଦେବଙ୍କର ଅବଦାନ ଆଦିକୁ ଡକ୍ଟର ଭଗବାନ ପଣ୍ଡା ଓ ଡକ୍ଟର ବିଜୟ ରଥଙ୍କ ସହଯୋଗରେ ସଂକଳିତ **Jayadeva and Gitagovinda in Orissan Traditions** ପୁସ୍ତକ ବିଶେଷ ଉଲ୍ଲେଖଯୋଗ୍ୟ । କାବ୍ୟ, କବିତାକୁ ଚିତ୍ରପ୍ରିୟ କରିବା, ଚିତ୍ରକରକୁ ଅଧିକ ଭାବୁକ ଓ ରୋମାଞ୍ଚକ କରିବାରେ ଏହା ଅଧିକ ସାହାଯ୍ୟ କରେ । ସେହିଭଳି **ଆଦିମ ମଣିଷର କଳା, ଓଡ଼ିଶାର କଳା ଓ ସ୍ଥାପତ୍ୟ, ଓଡ଼ିଶାର ଲୋକକଳା** ଭଳି ପ୍ରୌଢ଼ ସାହିତ୍ୟ, **ନୀଳହ୍ରଦର ଚିତ୍ରକର, ସାୟୋନାରା, ପୁନର୍ନବା, ଶ୍ଳୋକଛନ୍ଦ, ଗଙ୍ଗାବତରଣ, ରୂପ ରଙ୍ଗ ଅନଙ୍ଗ** ପ୍ରଭୃତି ଚିତ୍ରୋପନ୍ୟାସକୁ କୁ ଅଧ୍ୟୟନ କଲେ ଡକ୍ଟର ପାଠୀ କିଭଳି ସାହିତ୍ୟ ଓ କଳା କ୍ଷେତ୍ରରେ ବିଭିନ୍ନ ଅଞ୍ଚଳର ଓ ବିଭିନ୍ନ କଳାଶୈଳୀର ସନ୍ଦର୍ଭକୁ ଏକୀଭୂତ କରିଛନ୍ତି ତାହା ନିଜର ବଳିଷ୍ଠ ଭାବପ୍ରବଣତା ଓ କର୍ତ୍ତବ୍ୟନିଷ୍ଠାକୁ ବୁଝାଏ ।

ଆତ୍ମଜୀବନୀ ରଚନା ମାଧ୍ୟମରେ ଶିଳ୍ପକଳାର ସଂପ୍ରତିକ ଭିତ୍ତିଭୂମି ସମ୍ପର୍କର ଏକ ଐତିହାସିକ ଚିତ୍ର ପାଇହୁଏ । ତାଙ୍କ ଦ୍ୱାରା ରଚିତ ଆତ୍ମଜୀବନୀ-**ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** ଏବଂ **ଚିଲିକା ପାଣିରେ ଛାଇ**ରୁ କଳା ଇତିହାସ ସମ୍ପର୍କରେ ବହୁତ ତଥ୍ୟ ମିଳେ । ଓଡ଼ିଆ ସାହିତ୍ୟରେ ଏହି ଆତ୍ମଜୀବନୀଗୁଡ଼ିକ ଯେତିକି ନବୀନ ସେତିକି ଅନନ୍ୟ । ଆଗରୁ କୌଣସି ଓଡ଼ିଆ ଶିଳ୍ପୀଙ୍କ ଆତ୍ମଜୀବନୀ ଓଡ଼ିଆ ଭାଷା ଭଣ୍ଡାରକୁ ସମୃଦ୍ଧ କରି ନ ଥିଲା । ସେଭଳି ରୂପଜୀବୀର ଡାଏରୀରେ ଗୋଟିଏ ଶିଳ୍ପୀ ଜୀବନର ନିଚ୍ଛକ ସଂଘର୍ଷ ସ୍ପଷ୍ଟ ହୋଇଯାଏ ।

ଏତଦ୍ ବ୍ୟତୀତ **Let a Thousand Flowers Bloom** ପୁସ୍ତକଟି ସ୍ମରଣୀୟ । ଏହି ପୁସ୍ତକଟିରେ ମୋର ଖଲ୍ଲିକୋଟ କଳା ବିଦ୍ୟାଳୟରେ କଳାର ପ୍ରଗତି ଉପରେ ଗୋଟିଏ ସନ୍ଦର୍ଭ ଅଛି । ଓଡ଼ିଶାର ଆଧୁନିକ କଳାର କ୍ରମ ବିକାଶ ସହ, ବିଭିନ୍ନ ଶୈଳୀର ବିବର୍ତ୍ତନ ତଥା ଶିଳ୍ପୀମାନଙ୍କର ବ୍ୟକ୍ତିଗତ ଓ ଆନୁଷ୍ଠାନିକ ଅବଦାନ ସମ୍ପର୍କରେ ସ୍ଥାନ ପାଇଛି । ତେଣୁ ପାଠୀ ଯେ କେବଳ ପାରମ୍ପରିକ କଳା ଓ ଲୋକକଳା ଉପରେ ଅଧିକ ଧ୍ୟାନ ଦିଅନ୍ତି ତାହା ନୁହେଁ ବରଂ ସଂପ୍ରତିକ କଳା, ସଂସ୍କୃତିରେ ସଚେତନ ରହିବା ସହିତ ତାହାର ବଳିଷ୍ଠତାକୁ ଲୋକ ଲୋଚନକୁ ଆଣିବାରେ ସମର୍ଥ ହୁଅନ୍ତି । କେବଳ କଳା ଓ କଳାକାର ଉପରେ ଆଲୋଚନା କରନ୍ତି ନାହିଁ ବରଂ ଜାତୀୟ କଳାଧାରାରେ ଆଞ୍ଚଳିକ କଳାଶୈଳୀର ଗୁରୁତ୍ୱ ଉପରେ ଧ୍ୟାନ ଦେଇଥାନ୍ତି, ଯଦ୍ୱାରା କୌଣସି ଲେଖା ଲେଖିବା ବେଳେ ସବୁ ଅଞ୍ଚଳକୁ କିପରି ହାତକୁ ନିଆଯିବ ସେଥିପ୍ରତି ଅଧିକ ଧ୍ୟାନ ଦିଅନ୍ତି ।

**ରୂପ ରଙ୍ଗ ଅନଙ୍ଗ** ପୁସ୍ତକଟି ସମ୍ପୂର୍ଣ୍ଣ ଭାବରେ ଏକ ନୂତନ ଧାରାର । ଏହି ବହିଟିକୁ ସାଧାରଣ ଭାବରେ ଦେଖିଲେ ଟିକେ ବ୍ୟତିକ୍ରମ ଲାଗେ । କାରଣ ପ୍ରାଚୀନ ସଂସ୍କୃତ ସାହିତ୍ୟଠାରୁ ଆରମ୍ଭ କରି ଲୋକାଚାର ଓ ତହିଁରେ କାମଭାବପ୍ରବଣତା ଓ କାମନା, ବାସନାର ଉଲ୍ଲେଖ ଉପନ୍ୟାସଟିକୁ ସରସ, ସୁନ୍ଦର ଓ ସାମ୍ପ୍ରତିକ କରିଦେଇଛି । କେବଳ ଏତିକି ନୁହେଁ ବିଭିନ୍ନ ଅଞ୍ଚଳ, ଦେଶ, ବିଦେଶ ତଥା ପ୍ରକୃତି, ପ୍ରେମ, ପ୍ରଣୟ, ବେଦନା, ଯନ୍ତ୍ରଣା, ବିଭତ୍ସତା, ରୋମାଞ୍ଚ, ଆବେଗ, ଲଜ୍ଜା, ଭୟ, ବ୍ୟାକୁଳତା ସହିତ ସଂଲଗ୍ନ ତଥାକଥିତ ପାପ, ପୁଣ୍ୟ ଓ କାମନାର ଭୟଙ୍କାରିତାକୁ ସେ ଯେପରି ବର୍ଣ୍ଣିଛନ୍ତି ତାହା ସାଗତଯୋଗ୍ୟ । ବାତ୍ସାୟନ ଋଷିଙ୍କ କାମଶାସ୍ତ୍ରଠାରୁ ଆରମ୍ଭ କରି ମହାଭାରତ, ରାମାୟଣ, କାବ୍ୟ, କବିତା, ଚିତ୍ର, ଭାସ୍କର୍ଯ୍ୟ, ସ୍ଥାପତ୍ୟର ଆଶ୍ରୟରେ ଦିନନାଥ ନିଜ ବକ୍ତବ୍ୟର ପ୍ରାମାଣିକତା ଖୋଜିଛନ୍ତି । ଏହି ଉପନ୍ୟାସରେ ବାସ୍ତବ-ଅବାସ୍ତବ, ପ୍ରାକୃତିକ-ଅପ୍ରାକୃତିକ ଯୌନଚର୍ଚ୍ଚା ଫେଣ୍ଟାଫେଣ୍ଟି ହୋଇ ଏତେ ଗଭୀରତା ମଧ୍ୟକୁ ପଶିଯାଇଛି ଯେ ତାହା ପାଠକଲେ ପାଠକ ସେଥିରୁ ସହଜରେ ବାହାରି ଆସିବା ମଧ୍ୟ କଷ୍ଟକର ବ୍ୟାପାର । କାମନା, ବାସନାଯୁକ୍ତ ମଣିଷ ଯେ କେତେ ଭୟଙ୍କର ହୁଏ ତାହାର ବର୍ଣ୍ଣନା ଯେପରି ରହିଛି ସେହିଭଳି କାମନାର ପରିପୂର୍ଣ୍ଣତାରେ (କାମନାର ବିନାଶରେ ଦୁଃଖର ବିନ୍ୟାସ)ସର୍ଗୀୟ

Digitized by srujanika@gmail.com

ସୁଖ ଓ ଦିବ୍ୟ ପ୍ରେମର ବର୍ଣ୍ଣନା ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ଠାରୁ ଆରମ୍ଭ କରି ଦେଶୀୟ ତଥା ବିଦେଶୀୟ ସାହିତ୍ୟ ବ୍ୟକ୍ତି ବିଶେଷଙ୍କର ଚରିତ୍ର ଓ ବ୍ୟବହାର ଆଦିର ବର୍ଣ୍ଣନା ଅତୀବ ବାସ୍ତବଧର୍ମୀ-ନିଛକ। ଏଠାରେ ହୁଏତ କହିପାରେ ଯେ, ବହୁ ବର୍ଷ ପରେ ଓଡିଶାର ପଟଚିତ୍ର ଓ ପୋଥିଚିତ୍ରରେ 'କାମବନ୍ଧ'ର ଯେଉଁ ବର୍ଣ୍ଣନା ରହିଛି ତଥା ଓଡିଶାର ଭାସ୍କର୍ଯ୍ୟ ଓ ମନ୍ଦିରମାନଙ୍କରେ ଯେପରି ନାରୀପୁରୁଷର କାମନା ବାସନାକୁ ଦର୍ଶାଯାଇଛି ତା'ର ସତ୍ୟତା ଓ ବାସ୍ତବତାକୁ ଖୋଜୁ ଖୋଜୁ ଭାରତୀୟ ସାହିତ୍ୟରେ ଏଭଳି ଏକ ପୁସ୍ତକର ସଂକଳନ ନିଶ୍ଚିତ ଭାବରେ ଏକ ଅନବଦ୍ୟ ସୃଷ୍ଟି। ଏଇ ପରିପ୍ରେକ୍ଷୀରେ ଡକ୍ଟର ଏବର୍‌ହାର୍ଡ୍ ଫିସର୍‌ଙ୍କ ସହଯୋଗରେ ମ୍ୟୁଜିୟମ୍ ରିଟ୍‌ବର୍ଗ ଦ୍ୱାରା ପ୍ରକାଶିତ **Amorous Delight-The Amarushataka Palmleaf Manuscript Illustrated by the Master of Sharanakula (Orissa, India)** କଳା ଇତିହାସ ସମ୍ପର୍କିତ ଗ୍ରନ୍ଥ ଗୁରୁତ୍ୱପୂର୍ଣ୍ଣ । ଏଥିରେ ଓଡ଼ିଶୀ ତାଳପତ୍ର ପୋଥିଚିତ୍ରର ପରମ୍ପରା ଓ ଉତ୍କର୍ଷ ଖୁବ୍ ଦକ୍ଷତାର ସହିତ ପ୍ରତିପାଦିତ ହୋଇପାରିଛି। ଡକ୍ଟର ପାଠୀଙ୍କ ଦ୍ୱାରା ପ୍ରକାଶିତ Rethinking Odissi ଓଡ଼ିଶୀ ନୃତ୍ୟ ସମାଲୋଚନାର ଏକ ପ୍ରାମାଣିକ ଗ୍ରନ୍ଥ। ଓଡ଼ିଶୀ ନୃତ୍ୟ ସଂପର୍କରେ ଆଗରୁ ପ୍ରକାଶିତ ପୁସ୍ତକଗୁଡ଼ିକ ଓଡ଼ିଶୀ ନୃତ୍ୟର ସମ୍ୟକ ଇତିହାସ ଓ ସୂଚନା ଦେଉଥିବା ସ୍ଥଳେ Rethinking Odissi ରେ ସନ୍ନିବେଶିତ ବୌଦ୍ଧିକ ଆଲୋଚନା ଓ ଆକଳନ ଏହାକୁ ସମାଲୋଚନା କ୍ଷେତ୍ରରେ ସତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରେ।

ସେହିଭଳି ଓଡିଶାର କଳା, ସାହିତ୍ୟ, ସଂସ୍କୃତି, ପରମ୍ପରା, ଗୀତା, ଭାଗବତ ଓ ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦକୁ ଭାରତ ବାହାରେ ପରିଚିତ କରିବା ପାଇଁ ଓଡ଼ିଆ ଓ ଇଂରାଜୀ ଭାଷା ବ୍ୟତୀତ ଜର୍ମାନ ଭାଷାରେ ମଧ୍ୟ କେତେକ ବଳିଷ୍ଠ ପୁସ୍ତକ ସଂକଳନ କରିଛନ୍ତି। କେତେବେଳେ Eberhard Fischer, Barbara Fischer ତ ଆଉ କେତେବେଳେ Dr. Sitakant Mahapatra ଙ୍କ ସହଯୋଗରେ Orissa Kunst und Kultur in Nordost-Indien. Gita and Her Village in India, Gita will Become a Dancer, Rasika Haravali... ପ୍ରଭୃତି ପୁସ୍ତକଗୁଡିକ ଉଲ୍ଲେଖଯୋଗ୍ୟ।

ବିଶ୍ୱର ଶିଶୁମାନଙ୍କୁ ଓଡ଼ିଶାର ଗ୍ରାମ୍ୟ ସଂସ୍କୃତିର ମହକ ତଥା ଓଡ଼ିଶୀ ନୃତ୍ୟର ସାମାଜିକ ଓ ଶିକ୍ଷଣୀୟ ପରମ୍ପରା ସମ୍ପର୍କରେ ସଚେତନ କରିବା ପାଇଁ ଏବର୍‌ହାର୍ଡ୍ ଫିସର୍, ବାରବରା ଫିସର୍ ଓ ସେ ମିଳିତ ଭାବେ ଦୁଇଟି ସଚିତ୍ର କିଶୋର ସାହିତ୍ୟ ପୁସ୍ତକ ପ୍ରଣୟନ କରିଛନ୍ତି। ସେହି ଦୁଇଟି ହେଲା **ଗୀତା ଓ ତା' ଗାଁ** ଏବଂ **ଗୀତା ଓଡ଼ିଶୀ ନାଚିବ** । ପ୍ରଥମ ବହିଟିକୁ ଜର୍ମାନର ଗୋଟିଏ ପ୍ରକାଶନ ସଂସ୍ଥା ପ୍ରକାଶ କରିଥିବା ସ୍ଥଳେ ଦ୍ୱିତୀୟ ବହିଟି Unicef ଦ୍ୱାରା ପ୍ରକାଶିତ।

ଉପରେ ଉଲ୍ଲିଖିତ ସମସ୍ତ ପ୍ରୟାସ ଓ ପ୍ରକାଶନ ପରିପ୍ରେକ୍ଷୀରେ ଓଡ଼ିଶାର କଳା ଇତିହାସକୁ ସମୃଦ୍ଧ କରିବାରେ ଡକ୍ଟର ପାଠୀଙ୍କର ଭୂମିକା ବାସ୍ତବରେ ପ୍ରଶଂସନୀୟ, ଉତ୍ସାହପ୍ରଦାୟକ । ଏହି ବହିଗୁଡ଼ିକ ଛାତ୍ରଛାତ୍ରୀ, ସାହିତ୍ୟିକ, ଗବେଷକ ଓ ସାଧାରଣ ବର୍ଗର ବ୍ୟକ୍ତି ବିଶେଷକୁ ନୂତନ ଆଧାର ଦେଇଛି। ସେ ଶିଳ୍ପୀ ଭାବରେ ଯେତିକି ସୁନାମ ଓ ସୁଖ୍ୟାତି ଅର୍ଜନ କରିଛନ୍ତି ତାହାଠାରୁ ବଳି କଳା ଇତିହାସ, ଶିଳ୍ପ ଗବେଷଣା ଓ ମୌଳିକ ସୃଜନଧର୍ମୀ ସାହିତ୍ୟ ସୃଷ୍ଟିରେ ଅନନ୍ୟ ପ୍ରତିଭାର ଅଧିକାରୀ ହୋଇପାରିଛନ୍ତି । ଓଡିଶାର କଳାକୁ ଆହୁରି ଅଧିକ ସମୃଦ୍ଧ ଓ ବିସ୍ତାର କରିବାରେ ଡକ୍ଟର ପାଠୀଙ୍କ ତୂଳୀ ଓ କଲମର ଚାଳନା ଆହୁରି ଅଧିକ ପ୍ରଖର ଓ ପ୍ରସାର ହେଉ, ଏହା ହିଁ ଭଗବାନଙ୍କ ନିକଟରେ ପ୍ରାର୍ଥନା।

Digitized by srujanika@gmail.com

ସୁରେଶ ବଳବନ୍ତରାୟ

# ଡକ୍ଟର ଦିନନାଥ ପାଠୀଙ୍କ ନୃତ୍ୟଗବେଷଣା :

## Rethinking Odissi ଏକ ଅନ୍ତରଙ୍ଗ ଆକଳନ

Well researched, profusely illustrated and amply documented *Rethinking Odissi*, is a valuable study on Odissi dance, in terms of its groundings, origin, development and current practice. It offers a cultural discourse and in tone, scholarship and innovative ideas, emphatically aspires to a thorough and progressive rethinking on the art, aesthetics, practice and production of this singular dance form. *Deba P. Pattnaik*, poet, critic and professor.

ହରମାନ୍ ପବ୍ଲିଶିଂ ହାଉସ୍, ନୂଆଦିଲ୍ଲୀ ଦ୍ୱାରା ୨୦୦୭ ମସିହାରେ ପ୍ରକାଶ ପାଏ ଓଡ଼ିଶୀ ନୃତ୍ୟକୁ ଏକ ଭିନ୍ନ ଦୃଷ୍ଟିଭଙ୍ଗୀରେ ଅବଲୋକନ କରିବାର ପ୍ରାମାଣିକ ଗ୍ରନ୍ଥ **Rethinking Odissi.** ଏହି ଗ୍ରନ୍ଥର ରଚୟିତା ଡକ୍ଟର ଦିନନାଥ ପାଠୀ ବହୁ ଆୟାସ ସହିତ ଏଭଳି ଉନ୍ନତମାନର ଗ୍ରନ୍ଥଟିଏ ରଚନା କଲାପରେ ଓଡ଼ିଶୀ ନୃତ୍ୟର ଇତିହାସରେ ଥିବା ବିସଙ୍ଗତି ଦୂର ହେବା ସଙ୍ଗେସଙ୍ଗେ ବହୁ ଅମୀମାଂସିତ ପ୍ରଶ୍ନର ସମାଧାନ ହୋଇଅଛି । ଏହି ଗ୍ରନ୍ଥଟି ଉତ୍ସର୍ଗୀକୃତ ହୋଇଛି ଚାର୍ଲସ ଫାବ୍ରି, ମୋହନ ଖୋକର, ମୁଲକ୍‌ରାଜ ଆନନ୍ଦ, କାଳୀଚରଣ ପଟ୍ଟନାୟକ, ଜୀବନ ପାଣି ଏବଂ ଅନେକ ସମାଲୋଚକ, ଲେଖକ, ଦ୍ରଷ୍ଟା ଏବଂ କବିଗଣଙ୍କୁ, ଯେଉଁମାନଙ୍କର ଓଡ଼ିଶୀ ନୃତ୍ୟ ପ୍ରତି ରହିଛି ଅନବଦ୍ୟ ଅବଦାନ । ଏହି ଗ୍ରନ୍ଥଟି ଭୁବନେଶ୍ୱର ଠାରେ ଅନୁଷ୍ଠିତ ତୃତୀୟ ଆନ୍ତର୍ଜାତୀୟ ଓଡ଼ିଶୀ ମହୋତ୍ସବ ଅବସରରେ ଉନ୍ମୋଚିତ ହୋଇ ଲୋକାର୍ପିତ ହୋଇଥିଲା ।

ଓଡ଼ିଶାର ବରେଣ୍ୟ କବି, ଚିତ୍ରକର ଏବଂ କଳା ଐତିହାସିକ ଡକ୍ଟର ଜଗନ୍ନାଥ ପ୍ରସାଦ ଦାସ ଏହି ଗ୍ରନ୍ଥ ସଂପର୍କରେ ପ୍ରାରମ୍ଭିକ ମନ୍ତବ୍ୟ ଦେଇ ଲେଖିଛନ୍ତି :

The master has come out with another to me, this time on yet another form of Orissan art, dance, adding to a long list of scholarly books on Orissan pictorial arts. With his involvement in the art as an impressario, organiser of an international seminar on Odissi, and as a target of a recent controversy in the Oriya press. Dinanath Pathy has enough credentials to write the definitive volume. His **Rethinking Odissi** seeks to inform you on everything you wanted to know about Odissi and were really, really afraid to ask.

କଳା ସମାଲୋଚିକା ଏବଂ ଲେଖିକା ଲୀଳା ଭେଙ୍କଟରମଣ ତାଙ୍କର ପୃଷ୍ଠବନ୍ଧରେ ଏହି ଗ୍ରନ୍ଥରେ ଲେଖିଛନ୍ତି:

Nothing if not candid, the author draws attention to the peculiarties of Odissi. Unlike a tradition documented in texts, in its reinvented form, Odissi became a text in the hands of the guru and the dancers. The time was ripe for creating this new edifice. For with persons like Abanindranath Tagore, Gaganedranath Tagore and Nandalal Bose at Shantiniketan and the great Rabindranath Tagore himself who as "a modernist with a profound sense of belonging to his land", revivalist movements had become a part of the freedom struggle. But the author raises another crucial question. In a world where change is constant, to what extent can a restructured dance form, no matter how inspired by past motifs, make claims to being 'authentic' ? Again, cautioning the reader against borrowed concepts like 'classical', his arguments conclude that *Shastriya Nrutya* is an elitist idea. He is more in agreement with Debaprasad's idea of the dance evolving from a primitive state to temple precincts passing through phrases like *kalishi*, *Oshakothi* and *Danda* and finally culminating in the **Mahari** Dance.

Digitized by srujanika@gmail.com

ରି ଥିକିଙ୍ଗ୍ ଓଡ଼ିଶୀ ଗ୍ରନ୍ଥରେ ଓଡ଼ିଶୀ ନୃତ୍ୟର ଜନ୍ମସୂତ୍ର ସହିତ ଇତିହାସ ଏବଂ ସାଂପ୍ରତିକ ସ୍ଥିତି ଓ ବିସ୍ତୃତି ସଂପର୍କରେ ଯେଉଁ ଆଲେଖ୍ୟ ପ୍ରଦାନ କରାଯାଇଛି ତାହା ଓଡ଼ିଶୀ ନୃତ୍ୟର ବହୁ ଅମୀମାଂସିତ ପ୍ରଶ୍ନର ସମାଧାନ କରୁଛି । ଓଡ଼ିଶୀ ଯେହେତୁ ଏକ ତିଆରି କରାଯାଇଥିବା ନୃତ୍ୟ ସେହେତୁ ଏଥିରେ ବିଭିନ୍ନତା ରହିବା ସ୍ୱାଭାବିକ । ଓଡ଼ିଶୀ ନୃତ୍ୟରେ ଏକ ମାନକ ସୃଷ୍ଟି କରିବା ପାଇଁ ଯେଉଁ ବିଧାନର ପ୍ରୟୋଜନ ତାହାର ଉଲ୍ଲେଖ ହିଁ ତ ରିଥିକିଙ୍ଗ୍ ଓଡ଼ିଶୀର ମୁଖ୍ୟ ଆଧାର ।

ଡକ୍ଟର ଦିନନାଥ ପାଠୀ ଏହି ଗ୍ରନ୍ଥରେ ନିମ୍ନଲିଖିତ ଶିରୋନାମାରେ ଷୋଳଟି ଅଧ୍ୟାୟ ସ୍ଥାନିତ କରିଛନ୍ତି :

୧. ଓଡ଼ିଶୀ : ଏକ ନାମବାଚକ ବିଶେଷ୍ୟ ?
୨. ପୁନର୍ଜୀବନ ଆନ୍ଦୋଳନ
୩. ଏକ ବିଧାନର ଅନୁପସ୍ଥିତି
୪. ଜୟନ୍ତିକା : ଭିନ୍ନ ମତବାଦ :
ପଙ୍କଜ ଚରଣ ଦାସ, ଦେବ ପ୍ରସାଦ ଦାସ ଏବଂ ମିନତି ମିଶ୍ର
୫. ଶାସ୍ତ୍ରୀୟତା ପାଇଁ ଆବେଶ
୬. ଶୈଳୀ : ଜଣେ ନୃତ୍ୟବ୍ୟକ୍ତିତ୍ୱର ଉତ୍ତରଣ
୭. ନୃତ୍ୟ ସଂରଚନା : ଏକ ସଦା ପରିବର୍ତ୍ତନଶୀଳ ପ୍ରକ୍ରିୟା
୮. ଓଡ଼ିଶୀ : ସଂସ୍କୃତ ବନାମ ଓଡ଼ିଆ
୯. ଶରୀରର ଭାଷାରୂପ
୧୦. ନୃତ୍ୟ ଉପଭାଷାର ପ୍ରାଧାନ୍ୟ
ପ୍ରହ୍ଲାଦ ନାଟକ
ଷଢ ସ୍ୱର ପାଟ
ସଖୀନାଟ
ରାଧାପ୍ରେମ ଲୀଳା
କୃଷ୍ଣଲୀଳା
ଛଉନାଚ
୧୧. ସଂଚରଣ :
ଗୁରୁ ପରମ୍ପରା ଏବଂ ପ୍ରଶିକ୍ଷଣ କେନ୍ଦ୍ରର ବହୁଳତା
୧୨. ପ୍ରମାଣ ସ୍ୱରୂପ ଚିତ୍ରକଳା : ଏକ ଅନାଲୋଚିତ ଅଧ୍ୟାୟ
୧୩. ଓଡ଼ିଶୀ ବେଶପୋଷାକ : ଏକ ବିବର୍ତ୍ତନ
୧୪. ଅଶ୍ଳୀଳତାର ଆପେକ୍ଷିକତା
୧୫. ନୃତ୍ୟ ଏବଂ ରାଜନୀତି
୧୬. ନବ୍ୟ ଓଡ଼ିଶୀ :
ନୃତ୍ୟର ନବଦିଗନ୍ତ :
ଆନ୍ତର୍ଜାତିକତା, ବହୁ ସାଂସ୍କୃତିକତା ଏବଂ ବହୁଭାଷିକତା

ଉପରୋକ୍ତ ଅଧ୍ୟାୟଗୁଡ଼ିକ ସହିତ ଏଥିରେ ଉପସଂହାର, ପରିଶିଷ୍ଟରେ ଅଭିନୟ ଚନ୍ଦ୍ରିକା ଉପରେ ଏକ ସଂକ୍ଷିପ୍ତ ଆକଳନ ଏବଂ ସହାୟକ ଗ୍ରନ୍ଥସୂଚୀ ସଂଯୁକ୍ତ ହୋଇଛି ।

ଯେହେତୁ ଡକ୍ଟର ପାଠୀ ଜଣେ ଚିତ୍ରଶିଳ୍ପୀ ଏବଂ ଗଞ୍ଜାମର ବୈଚିତ୍ର୍ୟମୟ ଲୋକ ଦର୍ଶନକାରୀ କଳା ସହିତ ତାଙ୍କର ଅନ୍ତରଙ୍ଗ ସମ୍ପୃକ୍ତି ରହିଛି ସେହେତୁ ଓଡ଼ିଶୀ ନୃତ୍ୟର ସାମଗ୍ରୀକ ବିଧାନ ଉପରେ ତାଙ୍କର ଅନ୍ତର୍ଦୃଷ୍ଟି

Digitized by srujanika@gmail.com

ଖୁବ୍ ତୀକ୍ଷ୍ଣ ହୋଇଛି । ଯେହେତୁ ଡକ୍ଟର ପାଠୀ ଜଣେ ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ କଳା ଗବେଷକ ଓ କଳା ସମାଲୋଚକ ତେଣୁ ତାଙ୍କର ଆକଳନ ଯେଉଁ ଦିଗ ଓ ଦିଗନ୍ତକୁ ସ୍ପର୍ଶ କରିଛି ତା'ର ପଟାନ୍ତର ନାହିଁ ।

**ଓଡ଼ିଶୀ ନୃତ୍ୟ ନିର୍ମାଣ ପରେ ଅନେକ କାଳ ବିତିଯାଇଥିଲେ ମଧ୍ୟ ରିଥ୍‌ଙ୍କିଙ୍କ ଓଡ଼ିଶୀ ଭଳି ଗୋଟିଏ ପ୍ରାମାଣିକ ଗ୍ରନ୍ଥ ଆଗରୁ ରଚିତ ହୋଇ ନଥିଲା । ଓଡ଼ିଶୀ ନୃତ୍ୟ ଉପରେ ଗବେଷଣା କରୁଥିବା ଗବେଷକମାନଙ୍କ ପାଇଁ ଏହା ଏକ ନବଦିଗନ୍ତର ଉନ୍ମୋଚନ । ଏହି ପ୍ରକାଶନରେ ସଂଯୋଜିତ ହୋଇଥିବା ଅସଂଖ୍ୟ ଆଲୋକ ଚିତ୍ର ଓଡ଼ିଶୀ ନୃତ୍ୟର ଭିତ୍ତିଭୂମି ଏବଂ ଐତିହାସିକତା ପରିପୁଷ୍ଟ ହୋଇଛି । ଏକଥା ମୁକ୍ତ କଣ୍ଠରେ ସ୍ୱୀକାର କରାଯାଇପାରେ ଯେ ଓଡ଼ିଶୀ ନୃତ୍ୟର ବିଭିନ୍ନ ବିଭାବ ଉପରେ ପ୍ରକାଶ ପାଇଥିବା ପୁସ୍ତକମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଏବଂ ଏହାର ସମସ୍ତ ଶ୍ରେୟ ଶିଳ୍ପୀଗୁରୁ, କଳାଐତିହାସିକ, ଔପନ୍ୟାସିକ, କବି, ଦ୍ରଷ୍ଟା ଡକ୍ଟର ଦିନନାଥ ପାଠୀଙ୍କର ପ୍ରାପ୍ୟ ।**



Digitized by srujanika@gmail.com

ବସନ୍ତ କୁମାର ପଣ୍ଡା

## ଦିନନାଥଙ୍କ ସୃଷ୍ଟିରେ ଏକରୂପତା : ଚିତ୍ରଶିଳ୍ପ ଓ ଶବ୍ଦଶିଳ୍ପ

''ମୋ କ୍ଷେତ୍ରରେ ଏତିକି ସୁବିଧା ଯେ ମୁଁ ଜଣେ ଚିତ୍ରକର ଏବଂ ଲେଖକ ମଧ୍ୟ । ଏଣୁ ଶିଳ୍ପୀର ସତ୍ତାରେ ଚିତ୍ର ସର୍ଜନା କରି ଲେଖକୀୟ ଅନୁକମ୍ପାରେ ନିଜେ ରଚିଥିବା ସର୍ଜନା ସମ୍ପର୍କରେ ପ୍ରକାଶ ଓ କୃତିର ସାମଗ୍ରିକ ଆକଳନ ଭିତରେ ଯିମିତି ଉଭୟ ସର୍ଜନା ଓ ସମୀକ୍ଷାର ଲେପ ଅଛି, ସେଭଳି ସମ୍ବେଦନଶୀଳ ବ୍ୟକ୍ତିସତ୍ତା ଭିତରେ ଉଭୟ ଶିଳ୍ପୀ ଏବଂ ଲେଖକର ଭୂମିକା ମଧ୍ୟ ଅଛି ।''

-ଦିନନାଥ : ଚିତ୍ରଚର୍ଚ୍ଚା, **ଚିଲିକା ପାଣିରେ ଛାଇ**

ଦିନନାଥ ସବ୍ୟସାଚୀ । କଳାଜଗତର ଦୁଇ ମୁଖ୍ୟ ବିଭାବ ଚିତ୍ର ଓ ସାହିତ୍ୟ-ଉଭୟ ଦିଗରେ ତାଙ୍କ ପ୍ରତିଭାର ଅଦ୍ଭୁତ ବିକୀରଣ ଆମେ ଲକ୍ଷ୍ୟ କରିଥାଉ । ଆଧୁନିକ ଭାରତବର୍ଷରେ ଏ ପ୍ରକାର ପ୍ରତିଭାର ମହତ୍ତମ ଉଦାହରଣ କବିଗୁରୁ ରବୀନ୍ଦ୍ରନାଥ । ଜୀବନର ଉତ୍ତୀର୍ଣ୍ଣ ବୟସରେ ରବୀନ୍ଦ୍ରନାଥ ଚିତ୍ରଶିଳ୍ପ ପ୍ରତି ଆକୃଷ୍ଟ ହୋଇଥିଲେ । ସାହିତ୍ୟରେ ରୂପପାଇ ନଥିବା ଆବେଗ, ଆତୁରତା ଓ ନିଜ ଭିତରେ ଲୁଚି ରହିଥିବା ବାଲ୍ୟ ଚପଳତା, ସାରଲ୍ୟ ତଥା ନୈର୍ବ୍ୟକ୍ତିତା ତାଙ୍କର ରେଖା ଓ ରଙ୍ଗ ଚିତ୍ରରେ ବିଭିନ୍ନ ମୁଖ, ମୁଖା, ବିଚିତ୍ରଜୀବ ଓ ନିସର୍ଗର ମାୟା ଭିତରେ ବିଚିତ୍ର ରୂପଲାଭ କରିଛି । କିନ୍ତୁ ଦିନନାଥଙ୍କ ସୃଷ୍ଟି ଜୀବନର ତାହା ଭିନ୍ନ । କବିଗୁରୁଙ୍କ ଭାବ ଶିଷ୍ୟ ହେଲେ ମଧ୍ୟ ଚିତ୍ରକଳା ତାଙ୍କର ପ୍ରଥମ ପ୍ରଣୟ । କେବଳ ଦିଗପହଣ୍ଡି ପାଠୀବଂଶର କଳାଐତିହ୍ୟର ଉତ୍ତରଦାୟାଦ ଭାବରେ ନୁହେଁ, ଆଧୁନିକ ଯୁଗରେ ପିକାସୋର କ୍ୟୁବିକୀୟ ଚିତ୍ରଶିଳ୍ପୀର ସୁଯୋଗ୍ୟ ସାଧକ ଭାବରେ ଦିନନାଥଙ୍କର ଚିତ୍ର ସୃଷ୍ଟି ଏକପ୍ରକାର ଅସପନ୍ନ ମର୍ଯ୍ୟାଦାର ଅଧିକାରୀ । ତା'ଠାରୁ କୌଣସି ଗୁଣରେ ଊଣା ନୁହେଁ ତାଙ୍କର ଚିତ୍ର ଚର୍ଚ୍ଚାର ପରାକାଷ୍ଠା । ନବଜାଗରଣ କାଳରେ ଶିଳ୍ପୀଗୁରୁ ଅବନୀନ୍ଦ୍ରନାଥ ଠାକୁରଙ୍କ ପରି ପ୍ରାଚୀନ ଉତ୍କଳର ଶିଳ୍ପାଦର୍ଶର ପୁନରୁଦ୍ଧାର ପାଇଁ ପ୍ରୟାସ କରିଛନ୍ତି ଦିନନାଥ । ନୂତନ ଚିତ୍ରକଳାରେ ସ୍ୱଚ୍ଛ ଓ ଗଭୀର ଭାବ ଚିନ୍ମୟ ରୂପ ଘେନି ପ୍ରକାଶିତ ହୋଇଛି । ଚିତ୍ରକୁ ଦାର୍ଶନିକ ଓ କାବ୍ୟିକ ଚିନ୍ତା ଦେଇ ଦେଖିବାର ଦୁର୍ନିରୀକ୍ଷ ଧାରା ଦିନନାଥଙ୍କ ବିଶ୍ଳେଷଣକୁ ବୈଶିଷ୍ଟ୍ୟ ମଣ୍ଡିତ କରିଛି । ବସ୍ତୁରୂପ ନୁହେଁ, ଭାବରୂପ ହିଁ ଚିତ୍ରର ଐଶ୍ୱର୍ଯ୍ୟ-ନନ୍ଦନତ୍ୱର ଏଇ ଚରମ ଆଦର୍ଶ ଦିନନାଥଙ୍କ ଚିତ୍ରରେ ଓ ବିଶ୍ଳେଷଣରେ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଆଧୁନିକ ଚିତ୍ର ଶିଳ୍ପରେ ମିଶ୍ର ରୂପର ସୂଚନା ଦେଇ ହାଭେଲ ଯାହା କହିଥିଲେ, 'Their work is an indication of that happy blending Eastern and Sestern', ତାହା ଦିନନାଥଙ୍କ ନିକଟରେ ଯଥାର୍ଥ ମନେହୁଏ ।

ଦିନନାଥଙ୍କ ଚିତ୍ରଶିଳ୍ପର ଜଗତ ବିପୁଳ ଓ ବିଚିତ୍ର । ବିଭିନ୍ନ ପର୍ଯ୍ୟାୟରେ ସେ ଶତଶତ ଚିତ୍ର ଆଙ୍କିଛନ୍ତି । ସୃଷ୍ଟି ପ୍ରେରଣାରେ, ପ୍ରାଣର ଆବେଗରେ କେବେ, କେବେ ପୁଣି କାର୍ଯ୍ୟାନୁରୋଧରେ, ବୃତ୍ତିର ତାଡ଼ନାରେ । କିନ୍ତୁ ପ୍ରତ୍ୟେକ ସୃଷ୍ଟିରେ ସ୍ଥୂଳ ଚିତ୍ରରୂପ ସହିତ ସୂକ୍ଷ୍ମ ଭାବରୂପର ସମାହାର ସେଗୁଡ଼ିକୁ ଅସାମାନ୍ୟ କରିଛି । ମାଧ୍ୟମ ହୋଇଛି ବିଭିନ୍ନ-ପେନ୍‌ସିଲ୍ ସ୍କେଚ୍-, ପେଷ୍ଟାଲ, ଡ୍ରଇଁ, ଇଙ୍କ୍‌ର ରେଖାଚିତ୍ର, ଜଳରଙ୍ଗ, ଲେପ ଓ ତୈଳଚିତ୍ର । ଅନୁଷଙ୍ଗ ମଧ୍ୟ ବିବିଧ-ଆଲେଖ୍ୟ, ପୂର୍ଣ୍ଣାବୟବ, ରୂପଚର୍ଯ୍ୟା, ବସ୍ତୁଚର୍ଯ୍ୟା, ଭୂଦୃଶ୍ୟ, ପୌରାଣିକ ଉପାଖ୍ୟାନ, ସାମାଜିକ ପ୍ରତିବେଦନ ଓ ଡିଜାଇନ୍ । ପ୍ରଥମ ଚିତ୍ର **ମଉଳା ଭଣଜା ଶଙ୍ଖ** ହେଉ ବା **ମେଷପାଳକ ଦମ୍ପତ୍ତି**, **କୃଷ୍ଣବାସୁଦେବ** ହେଉ ଅବା **ସ୍ୱପ୍ନସୁନ୍ଦରୀ** ବା **ବାସୁଆବଳନ୍ଦ**-ସବୁଥିରେ ଦୃଶ୍ୟମାନ ସତ୍ତା ଭିତରେ ଅଦୃଶ୍ୟର ଇଙ୍ଗିତ । ଲିଓନାର୍ଡୋ ଦା' ଭିନ୍‌ସି ଯାହାକୁ କହିଥିଲେ "The world appears to us in the form of figures". '' ଚିତ୍ରଗୁଡ଼ିକରେ ଦିନନାଥ ତାଙ୍କର ଅନୁଭୂତ ବାସ୍ତବତା ଓ ଅନନୁଭୂତ ସତ୍ୟକୁ ଏକୀଭୂତ କରିଥାନ୍ତି । ପିକାସୋ ଥରେ କହିଥିଲେ, "We all know that art is not truth, Art is a lie that makes us realize truth; at least the truth that is given us to understand. The artist must know the manner in which to convince others of the truthfulness of his lie." ଏଇ ଦୃଷ୍ଟିରୁ ଦିନନାଥ ସଫଳ ଚିତ୍ରଶିଳ୍ପୀ । ସତ୍ୟକୁ ହୃଦୟଙ୍ଗମ କରିବା ପାଇଁ ଦର୍ଶକଙ୍କୁ ପ୍ରଚୋଦିତ କରିବାରେ ତାଙ୍କ ଚିତ୍ରପଦ୍ଧତି ଅବ୍ୟର୍ଥ ।

Digitized by srujanika@gmail.com

ଚିତ୍ରଶିଳ୍ପ ହେଉଛି ନିରବତାର ଭାଷା । ବିଭିନ୍ନ ମାଧ୍ୟମରେ ପ୍ରତୀକ, ଚିତ୍ରକଳ୍ପ ଓ ଆବେଗର ବ୍ୟଞ୍ଜନା ସହଯୋଗରେ ଚିତ୍ର ଦର୍ଶକଙ୍କୁ ଯେଉଁ ସନ୍ଦେଶ ଦେଇଥାଏ, ସେଥିରେ ସତ୍ୟୋପଲବ୍‌ଧିର ସୁରାକ ଥାଏ । ବହିର୍ଜଗତର ସ୍ପର୍ଶରେ ଅନ୍ତର୍ଜଗତର ଆବିଷ୍କାର ହେଉଛି ଚିତ୍ରକଳାର ଉଦ୍ଦେଶ୍ୟ । ସୌନ୍ଦର୍ଯ୍ୟର ବହିରାବରଣ ଭିତରେ ଥିବା ନଗ୍ନସତ୍ୟର ଉନ୍ମୋଚନ ଚିତ୍ରଶିଳ୍ପୀର କାର୍ଯ୍ୟ । ଶିଳ୍ପୀର ସୌନ୍ଦର୍ଯ୍ୟ ସର୍ବଦା ମଜାଦାର ଓ ଆକର୍ଷଣୀୟ ନ ହୋଇପାରେ । ସବୁବେଳେ ମଙ୍ଗଳ, ସାମ୍ୟ ଓ ମୂର୍ତ୍ତ ବି ନୁହେଁ । ହୋଇପାରେ ଅମଙ୍ଗଳବୋଧର ପରିଚାୟକ । ବୈଷମ୍ୟ ଓ ବିମୂର୍ତ୍ତଚିନ୍ତାର ଦ୍ୟୋତକ । ସୁନ୍ଦର ଓ କୁତ୍ସିତ, ଅନୁରାଗ ଓ ବିରାଗ, ଅଳଙ୍କାର ଓ ନିରାଭରଣ-ଏ ସବୁ ଭିତରେ ପୁଣି ଏସବୁର ଊର୍ଦ୍ଧ୍ୱରେ ଚିତ୍ରର ଅନ୍ତଃସ୍ୱର ଧ୍ୱନିତ । ଦିନନାଥଙ୍କର **ତୃଷାର୍ତ୍ତ, ସ୍ୱପ୍ନ, ଦୁଃଖସୁଖ** ପ୍ରଭୃତି ଚିତ୍ରରେ ଏହାର ଇଙ୍ଗିତ ସ୍ପଷ୍ଟ ।

ଚିତ୍ରଶିଳ୍ପରେ ଥାଏ ଯେଉଁ ଆବିଷ୍କାରର ଉତ୍‌କଣ୍ଠା, ତାହା ଅଜ୍ଞାତ ସହିତ ଏକ ସମୀକରଣରେ ନିହିତ । ସକଳ ପ୍ରଥାବଦ୍ଧତା ଓ ଗତାନୁଗତିକତାକୁ ପରାହତ କରି ଏଥିରେ ଅନନୁଭୂତ ଓ ଅଜ୍ଞାତକୁ ଆବିଷ୍କାର କରିବା ପାଇଁ ଉଦଗ୍ର ଅଭିଳାଷ ଥାଏ । ଦିନନାଥଙ୍କ ଅନେକ ଚିତ୍ରର ସ୍ଥୂଳ ସୌକର୍ଯ୍ୟକୁ ଭେଦ କରି ଏପରି ସମୀକରଣର ସୂକ୍ଷ୍ମ ସ୍ୱରୂପ ବାରିହୁଏ ।

ଚିତ୍ରଶିଳ୍ପରେ ଯେଉଁ ସୃଜନ ଜିଜ୍ଞାସା ନିହିତ ଥାଏ, ତାହାର ଅନ୍ତିମ ପରିଣତି ହୁଏ ନିର୍ଦ୍ଦିଷ୍ଟ ରୂପ ପରିଗ୍ରହ ଭିତରେ । ଯାହାକୁ ଆଧୁନିକ ଚିତ୍ରାଲୋଚନାର ଭାଷାରେ କୁହାଯାଇଛି 'Crystallization' । ଏଥିରେ ଚିତ୍ରଶିଳ୍ପୀର ଦୃଷ୍ଟିନିବଦ୍ଧ ଥାଏ । ମନମୁକୁରରେ ପ୍ରତିଫଳିତ ଭାବଚିତ୍ରକୁ ସେ କାନ୍‌ଭାସ୍ ଉପରେ ରୂପଚିତ୍ର ଦେଉଥାଏ । ଅତିନ୍ଦ୍ରିୟକୁ ଇନ୍ଦ୍ରିୟଗ୍ରାହ୍ୟ କରୁଥାଏ । ଏପରି ଅବସ୍ଥା କେବଳ ଚିତ୍ରଶିଳ୍ପୀ ପାଇଁ ନୁହେଁ, ସଂଗୀତଜ୍ଞ ପାଇଁ ଓ କବି ପାଇଁ ମଧ୍ୟ ଆସିଥାଏ । ଏକଥାକୁ ବୁଝାଇବା ପାଇଁ ପିକାସୋ କହିଥିଲେ, "What do you think is an artist ? An imbecile who has nothing but eyes if he is a painter, nothing but ears if he is a musician or just a muse at all levels of the heart if he is a poet, or even just muscles if he is a boxer." ଦିନନାଥ ଚିତ୍ରୀ କେବଳ ନୁହନ୍ତି କବି । ଚାରୋଟି ଚିତ୍ରୋପନ୍ୟାସ ଓ ପାଞ୍ଚୋଟି ଚରିତୋପନ୍ୟାସ ଭିତରେ ସେ ଯେଉଁ ଅସାମାନ୍ୟ କବିତ୍ୱ ପ୍ରଦର୍ଶନ କରିଛନ୍ତି, ସେଥିରେ ଚିତ୍ରଶିଳ୍ପୀର ସତ୍ତା ଶବ୍ଦଶିଳ୍ପୀର ଅସ୍ମିତା ସହିତ ଏକାତ୍ମ ହୋଇ ଏକ ଅନନ୍ୟ ପରିଚୟ ସୃଷ୍ଟି କରିଛି । ଚିତ୍ରଶିଳ୍ପୀ ଭାବରେ ଦିନନାଥ ସ୍ଥାନ ସହିତ ଆକାର, ରଙ୍ଗ ସହିତ ଆଲୋକ ଓ ରେଖା ସହିତ ରୂପକୁ ସମନ୍ୱିତ କରି ସେଥିରୁ ଚିତ୍ରର ପ୍ରାଣସତ୍ତା ଆବିଷ୍କାରରେ ପ୍ରୟାସୀ ହୋଇଥନ୍ତି । ନିଜର ଅବଚେତନ ମନରୁ ଉଦ୍‌ଭୂତ ଭାବ ଯେତେବେଳେ କାନଭାସ୍ ଉପରେ ରୂପଗ୍ରହଣ କରେ ସେତେବେଳେ ତାହା ସାର୍ବଜନୀନ ଓ ସର୍ବକାଳିକ ବସ୍ତୁରେ ପରିଣତ ହୋଇଥାଏ । ଅଙ୍କନ ବେଳେ ଶିଳ୍ପୀ କାନ୍‌ଭାସ୍ ସହିତ ଯେଉଁ ବାର୍ତ୍ତାଳାପ କରୁଥାଏ, ତାହାର ବହିରଙ୍ଗ କ୍ରିୟା ଭିତରେ ଲୁଚି ରହିଥାଏ ଚିତ୍ରର ଅନ୍ତରଙ୍ଗ ଆତ୍ମା । ଏଇଭଳି କଥାକୁ ବୁଝାଇବା ପାଇଁ ଦିନନାଥ ଲେଖିଛନ୍ତି, '' ସ୍ମୃତିରେ ଉଜ୍ଜୀବିତ ହୋଇଥାଉ ନତୁବା ବିସ୍ମୃତିରେ ବିଲୀନ ହୋଇଥାଉ ଥରେ ରୂପ କଳ୍ପନାରେ ପ୍ରକଟି ଥିଲେ ତା'ର ତଥାପି ଅପ୍ରକାଶିତ ବର୍ଣ୍ଣବିଭା ସୃଷ୍ଟି ସତ୍ତାରୁ ଅବଚେତନକୁ ବିସ୍ତରୀ ଯାଇ ଶିଳ୍ପୀର ରଚନାକୁ ଅନେକ ରୂପ, ବର୍ଣ୍ଣ, ରସ ଓ ଛନ୍ଦରେ ଅନୁପ୍ରେରିତ କରୁଥାଏ । ମନେହୁଏ ସବୁ ମଣିଷଙ୍କ ଅବଚେତନ ସ୍ତରରେ ରୂପର ଓ ବର୍ଣ୍ଣର ସମ୍ଭାର ଲୁକ୍କାୟିତ ହେଇ ରହିଥାଏ । ରୂପ, ବର୍ଣ୍ଣ, ନାଦ, ଓ ଶବ୍ଦ-ଏହି ଚାରୋଟି ତ ସୃଷ୍ଟିର ମୌଳିକ ଉପାଦାନ । ଶିଳ୍ପୀର ଜୀବନରେ ସମସ୍ତ ପ୍ରକାର ରୂପ ଆହରଣର ସାର୍ଥକତା ଅଛି । ସବୁଗୁଡ଼ିକ ଉଦ୍‌ଭାସିତ ନ ହେଉଥିଲେ ମଧ୍ୟ ତାହା ସୃଜନ ବର୍ଷମାନଙ୍କୁ ରଶ୍ମିମନ୍ତ ଓ ରସାଣିତ କରନ୍ତି । ହେ ରୂପମାନେ ତମେ ଯେଉଁଠି ଅଛ ବ୍ୟୋମରେ, ବ୍ୟାପାରରେ, ଅପାରରେ, ମନରେ ବା ଅବଚେତନରେ, ଓହ୍ଲେଇ ଆସ । ମୋ ପ୍ରାଣରେ ଅବତର । ମୋ ସୃଷ୍ଟ ରୂପରେ ଭାଷାଗୁଞ୍ଜନ କର ।'' (**ଚିଲିକା ପାଣିରେ ଛାଇ**, ପୃ-୨୮୯)

**ଚିତ୍ରଶିଳ୍ପ ସହିତ ଦିନନାଥଙ୍କ ସୃଷ୍ଟି ଜଗତରେ ଏକାତ୍ମ ହୋଇଯାଇଛି ଶବ୍ଦଶିଳ୍ପ । ଏଥିରେ ତାଙ୍କର କୃତିତ୍ୱର କଳନା କରିବା ସ୍ୱତନ୍ତ୍ର ରଚନାର ଅପେକ୍ଷା ରଖେ । ଦିନନାଥଙ୍କ ସାହିତ୍ୟ ସୃଷ୍ଟି ଅନନ୍ୟ, କାରଣ ଓଡ଼ିଆ ସାହିତ୍ୟରେ ଏହାର ତୁଳନା ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ, ବୋଧହୁଏ ଭାରତୀୟ ସାହିତ୍ୟରେ**

Digitized by srujanika@gmail.com

ମଧ୍ୟ ବିରଳ । କାରଣ ତାଙ୍କର ଚିତ୍ରଶିଳ୍ପ ଠାରୁ ଏହା ଅଭିନ୍ନ । ଚିତ୍ର ଓ ସାହିତ୍ୟ ଏକାତ୍ମ । ଆଲୋଚକ ଚିତ୍ର ସହିତ ପରିଚିତ ନହେଲେ ତାଙ୍କ ସାହିତ୍ୟର ଆଲୋଚନା କରିବା ଅପୂର୍ଣ୍ଣ ହେବ । ଦିନନାଥଙ୍କ ସୃଷ୍ଟି ଜଗତକୁ ଆକୀର୍ଣ୍ଣ କରିଛି ତାଙ୍କର ଦୁଇଟି କବିତା ସଂକଳନ–ଅବନ୍ତୀ ଓ ଚିତ୍ରଶାଳା, ତିନୋଟି ପ୍ରବନ୍ଧଗ୍ରନ୍ଥ–ଚିରେତେଇଚି, ଚିତ୍ରଭାଷା ଓ ଚିତ୍ରିତ ଭାଷା, ଦୁଇଟି ଭ୍ରମଣକାହାଣୀ–ନୀଳହ୍ରଦର ଚିତ୍ରକର ଓ ତମେ କୁଆଲମ୍ପୁର ଦେଖିଛ ? ଦୁଇଟି ଗଳ୍ପ–ଭବଘୁରା ଭବନାଥ ଓ ସୁନାମାଛ । ଏଥିସହିତ ତାଙ୍କର ବିଶିଷ୍ଟ କୃତି ଭାବରେ ଚାରୋଟି ଉପନ୍ୟାସ–ସାୟାନାରା, ପୁନର୍ନବା, ଶ୍ଳୋକଛନ୍ଦ ଓ ଗଙ୍ଗାବତରଣ ଏବଂ ପାଞ୍ଚଖଣ୍ଡରେ ଜୀବନୀ ଆଧାରିତ ଚରିତ ଗ୍ରନ୍ଥ–ପୁଞ୍ଜିକୟାଁର ଫକୀର, ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ, ଚିଲିକାପାଣିରେ ଛାଇ, ରୂପଜୀବୀର ଡାଏରୀ ଓ ରୂପାନ୍ୱେଷୀର ରୂପକଥା । **ପ୍ରତ୍ୟେକଟି ସାହିତ୍ୟ ସୃଷ୍ଟିର ନାମକରଣ, ଭାବପ୍ରକରଣ ଓ ରୂପାନ୍ତରଣରୁ ଧାରଣା ସ୍ପଷ୍ଟ ଦୃଢ଼ିଭୂତ ହେବ ଯେ ଏ ଯେତେ ସାହିତ୍ୟ ଦିନନାଥ ରଚନା କରିଛନ୍ତି, ପ୍ରତ୍ୟେକ ରଚନାରେ ଏକମାତ୍ର ଲକ୍ଷ୍ୟ ଓ ଆଭିମୁଖ୍ୟ, ସେସବୁର ବିସ୍ତୃତି ଓ ଗଭୀରତା, ପ୍ରାରମ୍ଭ ଓ ପରିସମାପ୍ତି ସକଳ ଦିଗକୁ ଲକ୍ଷ୍ୟ କଲେ ଦେଖାଯିବ ଦିନନାଥଙ୍କ ଶିଳ୍ପଦର୍ଶନ, ଶିଳ୍ପଚର୍ଯ୍ୟା, ଶିଳ୍ପପ୍ରକରଣ ଓ ଶିଳ୍ପାନୁଭୂତି–ଯାହାକୁ ଚିତ୍ରଶିଳ୍ପୀର ରୂପରଙ୍ଗରେ ସେ 'ନୟନାଭିରାମ' କରିଥିଲେ ତାହାକୁ ସହସ୍ର ପୃଷ୍ଠବ୍ୟାପି ସାହିତ୍ୟ ଶବ୍ଦଶିଳ୍ପରେ ଜୀବନ୍ତ କରି ନିରବଧିକାଳ ଓ ବିପୁଳ ପୃଥିବୀରେ ସମଧର୍ମା ପାଠକକୁ ନିଜ ରୂପଚିତ୍ର ଓ ଭାବଚିତ୍ର ସହିତ ଏକାତ୍ମ କରାଇବେ ।**

ଭାବ ଓ ରୂପ–ଏଇ ଦିଗରୁ ଦିନନାଥଙ୍କ ସୃଷ୍ଟି ଜଗତକୁ ଆଲୋଚନା କଲାବେଳେ ବିସ୍ମିତ ଲାଗେ ଯେ ତାଙ୍କର ସୃଷ୍ଟି ପ୍ରତିଭା ଚିତ୍ର ଓ ସାହିତ୍ୟ–ଉଭୟ ଦିଗରେ ସମାନ ଭାବେ ପ୍ରକାଶିତ । ଚିତ୍ର ତାଙ୍କର ପ୍ରଧାନ କ୍ଷେତ୍ର ହେଲେ ବି ସାହିତ୍ୟକୁ ଗୌଣ ବୋଲି ମନେ କରିହେବନି । ଚିତ୍ରକରର ଦୃଷ୍ଟି ଓ ସାହିତ୍ୟିକର ଅନୁଭୂତି ଦୁଇଟିର ସମନ୍ୱୟରେ ପୁଣି ଦୁଇଟିର ଦ୍ୱନ୍ଦ୍ୱରେ ଦିନନାଥଙ୍କ ପ୍ରତିଭା ବିକଶିତ ହୋଇଛି । ନିଜର ଅନୁପମ ଚିତ୍ରଭାଷାରେ ଦିନନାଥ ଆମକୁ ଜୀବନବୃତ୍ତାନ୍ତ ଶୁଣାଇଛନ୍ତି । ପୁଣି ଉପନ୍ୟାସରେ ତାଙ୍କର ଅତି କଳ୍ପନା ଓ ମାୟା ବାସ୍ତବତା ଆମକୁ ପ୍ରଲୁବ୍ଧ କରେ । ଭାଷାର ଗତିବେଗରେ ଆମର ମନ ଆଗେଇ ଯାଏ । ଗଳ୍ପ ଶୁଣିବାର ଆବେଗରେ ଆନନ୍ଦମୁଖର ହେଲାବେଳେ ଆଖି ଆଗରେ ଫୁଟିଉଠେ ଗୋଟିଏ ଚିତ୍ର– ଭାଷାର ଲାଳିତ୍ୟ ଓ ଚିତ୍ରକଳ୍ପର ଦୋଳାରେ ଚିତ୍ର ପୁଣି ମିଳାଇଯାଏ, ପୁଣି ଭାସି ଆସେ ଆଉ ଗୋଟିଏ ଚିତ୍ର । ମନ ଭିତରେ ବାଜୁଥାଏ ଶବ୍ଦର ଝଙ୍କାର ଓ ଧ୍ୱନିର ତରଙ୍ଗରେ ଭାସି ଉଠୁଥାଏ ଚିତ୍ର । ସେ ଚିତ୍ର ପୁଣି କିପରି ? ବର୍ଣ୍ଣର ଝଙ୍କାରରେ ଫୁଟି ଉଠୁଥିବା ରୂପ । ଦିନନାଥଙ୍କ ସାହିତ୍ୟରେ ଯେପରି ଶବ୍ଦର ଝଙ୍କାର, ଚିତ୍ରରେ ସେହିପରି ବର୍ଣ୍ଣର ଝଙ୍କାର ଆମକୁ ଆକୃଷ୍ଟ କରେ । ଚିତ୍ରରେ ରଙ୍ଗର ଜଗତକୁ ଅତିକ୍ରମ କରି ରୂପର ଆଭାସ ମିଳେ, ବର୍ଣ୍ଣ ଆବରଣର ଅନ୍ତରାଳରୁ ରୂପର ବିନ୍ୟାସ । ଦୈବାତ୍ ଆମ ସାମ୍ନାରେ ଆସି ପ୍ରତିଭାତ ହୁଏ ତାଙ୍କର ରୂପର ଜଗତ । କେତେକ ସ୍ଥଳେ ସାମାନ୍ୟ ଇଙ୍ଗିତ ଦେଇ ରୂପ ବର୍ଣ୍ଣର ଅନ୍ତରାଳରେ ଆତ୍ମଗୋପନ କରେ । କେତେ ମୃଦୁ ସେଇ ଇଙ୍ଗିତ, ନିଜେ ଚିତ୍ରଶିଳ୍ପୀ ଦ୍ୱନ୍ଦ୍ୱରେ ପଡ଼ନ୍ତି ଏଇ ଇଙ୍ଗିତ ଆମେ ବୁଝିବୁକି ନାହିଁ, ଏଇ ଶବ୍ଦର ଧ୍ୱନି ଆମ କର୍ଣ୍ଣଗୋଚର ହେବ କି ନାହିଁ । ତେଣୁ ଦିନନାଥଙ୍କ ଚିତ୍ରରେ ନାମକରଣର ଗୁରୁତ୍ୱ, ତାଙ୍କ ସାହିତ୍ୟରେ ଶୀର୍ଷକର ମହତ୍ତ୍ୱ ।

ଚିତ୍ର ଓ ସାହିତ୍ୟ–ଉଭୟରେ ଦିନନାଥଙ୍କ ଶୈଳୀ ଅନନ୍ୟ । ସେଥିରେ ଚିତ୍ର ଦେଖାଇବାର ବା ସାହିତ୍ୟ କହିବାର ଅନାବଶ୍ୟକ ପ୍ରୟାସ ନ ଥାଏ । ତାହା ସ୍ୱୟଂବ୍ୟକ୍ତ ଓ ସ୍ୱୟଂବୋଧ । ''ଶବ୍ଦ ସହିତ ରୂପକୁ ଏକାତ୍ମ କରି ବାକ୍ୟ ଯଦି ହୁଏ ଉଚ୍ଚାରିତ ଚିତ୍ର, ଆଉ ଚିତ୍ର ହୋଇଉଠିଲା ରୂପର ରେଖାରେ ରଙ୍ଗ ସହିତ କଥାକୁ କୋଳେଇ ନେଇ ରୂପକଥା''– ତାହେଲେ ସେସବୁ ରଙ୍ଗର ଧ୍ୱନିରେ ଓ ରୂପର ଇଙ୍ଗିତରେ ମୂର୍ତ୍ତିମନ୍ତ । ଶିଳ୍ପାଚାର୍ଯ୍ୟ ଅବନୀନ୍ଦ୍ରନାଥଙ୍କ ଏଇ ଅମର ଉକ୍ତି ଦିନନାଥଙ୍କ ଚିତ୍ରଶିଳ୍ପ ଓ ଶବ୍ଦଶିଳ୍ପରେ ପ୍ରତିଭାତ ।

Digitized by srujanika@gmail.com









ରବୀନ୍ଦ୍ର ଭବନରେ ଅଭିନେତ୍ରୀ ମୁନ୍‌ମୁନ୍ ସେନ୍‌ଙ୍କ ସହିତ, ୧୯୯୧

ଡାରଟିଙ୍ଗ୍‌ଟନ୍ ଠାରେ ବବି କକ୍‌ସଙ୍କ ଷ୍ଟୁଡ଼ିଓରେ, ୧୯୯୦

ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ଦିନନାଥ ପାଠୀଙ୍କ ଶୈଳ୍ପିକ ତତ୍ତ୍ୱାବଧାନରେ ନିର୍ମିତ ଗ୍ରାମ୍ୟକଳା ସଂଗ୍ରହାଳୟ, ୧୯୯୮

ଷ୍ଟକ୍‌ହୋମ୍‌ର କୁଲଟର୍ ହ୍ୟୁସେଟ୍ ଠାରେ ଇଣ୍ଡିଆନ୍ ପପୁଲାର୍ ଆର୍ଟ୍ ପ୍ରଦର୍ଶନୀ ପାଇଁ କାମ କରୁଥିବା ଭାରତୀୟ କାରିଗର ଦଳ (ଅସୀମ ବସୁ, ନୃସିଂହ ମହାରଣା, ରୋହିତ ବଟ୍ଟୁ) ଓ ସୁଇଡ଼ିସ୍ କାରିଗର ଦଳଙ୍କ ନେତୃତ୍ୱ ନେଇଥିଲେ ଦିନନାଥ, ୧୯୮୭

Digitized by srujanika@gmail.com





ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍‌ର ପ୍ରଥମ ଚିତ୍ର ପ୍ରଦର୍ଶନୀ ଉଦ୍‌ଘାଟନ କଲାପରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ, ଜଗନ୍ନାଥ ପ୍ରସାଦ ଦାସ ଓ ଡି.ଏନ୍.ରାଓଙ୍କ ଗହଣରେ, ୧୯୭୩

ଶାନ୍ତିନିକେତନ ଠାରେ ସମାବର୍ତ୍ତନ ଉତ୍ସବରେ ବିଶ୍ୱବିଦ୍ୟାଳୟର ଆଚାର୍ଯ୍ୟ ଓ ଭାରତର ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ଠାରୁ ଉପାଧି ଗ୍ରହଣ, ୧୯୯୩

Digitized by srujanika@gmail.com







ସଉରା ଗାଁରେ ଚିତ୍ର ପଞ୍ଜୀକରଣ, ୧୯୮୭

କୌଣସି ଏକ ସଉରା ଘର ଗୁହାଳରେ କ୍ଳାନ୍ତି ଅପନୋଦନ କରୁଥିବା ଅବସରରେ, ୧୯୮୮

ଓଡ଼ିଶାରେ ଚିତ୍ରକଳାରେ ନିମଗ୍ନ, ୨୦୧୦

Digitized by srujanika@gmail.com







ଓଡିଶାରେ ଏବର୍ହାର୍ଡ଼୍ ଫିସର୍ଙ୍କ ସହିତ, ୨୦୧୦

ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଗ୍ରହଣ ଅବସରରେ, ୧୯୯୬

ପତନୀଟପ୍‌ରେ ଗୋଟିଏ ସର୍ବଭାରତୀୟ ଚିତ୍ରକଳା ଶିବିରରେ ମୁଖ୍ୟମନ୍ତ୍ରୀ ଫାରୁକ୍ ଅବଦୁଲ୍ଲା, ଚିତ୍ରଶିଳ୍ପୀ କାଳୀଚରଣ ଗୁପ୍ତା, ପ୍ରେମ ସିଂହ ପ୍ରଭୃତି ବନ୍ଧୁଙ୍କ ଗହଣରେ, ୧୯୯୯

Digitized by srujanika@gmail.com

# ସମୀକ୍ଷାୟନ

ସୂର୍ଯ୍ୟଦେଓ

ଭାଷାମାନେ କେବଳ କଥିତ ବା ମୁଦ୍ରିତ ଭାଷା ନୁହେଁ; ଯାହାଦ୍ୱାରା ମନ କଥା ବୁଝାଇ ଦେଇହୁଏ ତାହା ହିଁ ଭାଷା, ଭାଷା ତେଣୁ ଚିତ୍ରଭାଷା ବା ଚିତ୍ରିତଭାଷା ମଧ୍ୟ ହୋଇପାରେ, ଚିତ୍ରଦ୍ୱାରା ମଧ୍ୟ ଆମେ ଭାବର ଆଦାନପ୍ରଦାନ କରିପାରୁ । ଭାଷା ବ୍ୟକ୍ତିସତ୍ତାର ଲକ୍ଷଣ, ଭାଷା ଦୈହିକ ହୋଇପାରେ, ମାନସ ବି ହୋଇପାରେ । ଭାଷା ଭିତରେ ଭାବନା ଫୁଟିଉଠିଥାଏ, ଭାଷା ନିଜକୁ ଅନ୍ୟ ପାଖରେ ବହଲାଇ ଦିଏ ଓ ଭାଷା ମାଧ୍ୟମରେ ନିଜର ମନକୁ ମଧ୍ୟ ଚିହ୍ନି ହୁଏ ।

ଚିତ୍ର ବା ପେଣ୍ଟିଂ ମଧ୍ୟ ବର୍ଣ୍ଣନାଶୈଳୀରେ ପ୍ରତୀକଧର୍ମୀ ହୋଇପାରେ ରଙ୍ଗଦେଇ, ତୁଳୀଦେଇ, ତା'ର କହିବା କଥା ଅନ୍ୟପାଖରେ ପହଞ୍ଚାଇ ଦେଇପାରେ । ତା'ଭିତରେ ଶବ୍ଦ ଥାଏ, ଝଙ୍କାର ମଧ୍ୟ ଥାଏ, ତାହାହିଁ ଚିତ୍ରର ଭାଷା, ଚିତ୍ର ଭାଷା । ଏ ଗହନ କଥାକୁ ସରଳ ସରବରେ ପରଷନ୍ତି ଲେଖକ, ପାଠକ




ମୁଗ୍ଧ ହେବାର ଆଶା ରଖାଯାଇପାରେ । ଚିତ୍ର ଯେ, ଏକ ଭାଷା, ଚିତ୍ର ଯେ, କଥା କହିପାରେ ତାହା ପ୍ରଥମଥର ପାଇଁ ପ୍ରତିପାଦନ କରିଛନ୍ତି ଡକ୍ଟର ପାଠୀ । କବିତା ବା ଗଳ୍ପରେ ବର୍ଣ୍ଣିତ ଭାଷା ପରି ଚିତ୍ର ବି କଥା କୁହେ ତା' ରଙ୍ଗରେ, ଦୃଶ୍ୟରେ । ଚିତ୍ରକୁ ପଢ଼ିବାକୁ ହେଲେ ଚିତ୍ରଭାଷାର ବ୍ୟାକରଣ ଜ୍ଞାନ ଜରୁରୀ । ଚିତ୍ରକୁ ଅନୁଶୀଳନ ଓ ପରିଚର୍ଚ୍ଚା କରିବା ପାଇଁ ଚିତ୍ର ପଢ଼ିବା କୌଶଳକୁ ଜାଣିବାକୁ ହେବ । ସାହିତ୍ୟକୁ ସଂଗୀତକୁ ରୂପକଳ୍ପ ମାଧ୍ୟମରେ ଚିତ୍ରିତ କରାଯାଇପାରେ । ଏହାକୁ ଆଧାର କରି ବିଭିନ୍ନ ରାଗ ରାଗିଣୀ ପାଇଁ ଚିତ୍ର ରାଗମାଳା ପ୍ରସ୍ତୁତ କରାଯାଇଛି ଆଗରୁ । ଚିତ୍ରବିଗ୍ରହ ଧାରାକୁ ନେଇ ଏକ ନିଆରା ସ୍ୱାଦର ଏ ସଂକଳନ ପାଠକୀୟ ଶ୍ରଦ୍ଧା ଯେ ନିଶ୍ଚିତ ଲାଭ କରିବ ଏଥିରେ ସଂଦେହ ନାହିଁ । ଲେଖକ ପୁଣି ଆଞ୍ଚଳିକ ଶିଳ୍ପକଳାର ଜୀବନୀକରଣର ପକ୍ଷପାତୀ । ଏକ ଚମତ୍କାର ଉଦାହରଣ ସେ ଥୁଅନ୍ତି ଏ ସଂଦର୍ଭରେ

ଶ୍ରୀକାକୁଳମରେ ଏକ ଘରକାନ୍ଥରେ ସେ ଦେଖିଲେ ଓଡ଼ିଆ ଝୋଟି । ଏଠି ଓଡ଼ିଆ ଅଛନ୍ତି ଜାଣି ସେ ପୁଲକିତ ହେଲେ ପହିଲେ ଓ ଆହୁରି ପୁଲକିତ ହେଲେ ସେତେବେଳେ ଯେତେବେଳେ ଜାଣିଲେ ସେମାନଙ୍କର ବହୁ ପୂର୍ବପିଢ଼ି ଆସିଥିଲେ ଓଡ଼ିଶାରୁ ଓ ତାଙ୍କର ବଂଶଧର ଓଡ଼ିଆଭାଷା ଭୁଲିଯାଇଛନ୍ତି କିନ୍ତୁ ପାଶୋରି ନାହାନ୍ତି ଓଡ଼ିଆ ଚିତ୍ରକଳାକୁ ! ଭାଷା ଅପେକ୍ଷା ଚିତ୍ରଭାଷା ବହୁବିସ୍ତାରୀ !

ବର୍ଣ୍ଣନା ଚାତୁରୀ, ଶବ୍ଦ ସଂଯୋଜନାରେ ଲେଖକ ମାହିର । ଅଗ୍ରଣୀ ଭାରତୀୟ ଚିତ୍ରକର, ସ୍ଥପତି କଳାର ଏ ଗବେଷକ ଡକ୍ଟର ଦୀନନାଥ ପାଠୀ କ୍ଷୁଦ୍ର କଳେବରରେ ବି ସାଉଁଟି ପାରନ୍ତି ଚିତ୍ର ଗବେଷଣା ଓ ମନନଧର୍ମୀ ନିବନ୍ଧ । ମୁଦ୍ରଣ ତ୍ରୁଟିଶୂନ୍ୟ, ସଫାକାଗଜରେ ଛପା ଏ ବହି ସମ୍ଭବତଃ ପ୍ରଥମ ଚିତ୍ରଭାଷାର ବହି ! ଆରମ୍ଭ କଲେ ଥରକରେ ପଢ଼ିଦେବା ନିଶ୍ଚିତ !

ପୁସ୍ତକ

Digitized by srujanika@gmail.com

**କୃଷ୍ଣଚରଣ ପଟ୍ଟନାୟକ**

## ଚିତ୍ରରୁ ଚିତ୍ରଭାଷା ନାଟ୍ୟଭାଷା

୧୯୬୪ ମସିହା କଥା । ମୁଁ ସଚିବାଳୟର ଯୋଜନା ଓ ସମନ୍ୱୟ ବିଭାଗରେ କାର୍ଯ୍ୟ କରୁଥାଏ । ଦିନନାଥ ପାଠୀ ଆର୍ଟିଷ୍ଟ ଭାବରେ ନିଯୁକ୍ତି ପାଇ ଆମରି ବିଭାଗରେ ଯୋଗ ଦେଲେ। ସେଇଠି ହେଲା ପ୍ରଥମ ପରିଚୟ । କଳାକାର ହୃଦୟ, ସେ ସାଭାବିକ ରୀତିରେ କଳାପ୍ରତି ଆକୃଷ୍ଟ ହୁଅନ୍ତି, ଅନ୍ୟ କଳାକାରଙ୍କୁ ମଧ୍ୟ ଆକୃଷ୍ଟ କରାନ୍ତି । ସେହି ଆକର୍ଷଣରେ ଆମେ ପରସ୍ପର ସହିତ ବାନ୍ଧି ହୋଇଗଲୁ ।

ସେତେବେଳେ ସଚିବାଳୟ ସର୍ଭିସ୍ ଆସୋସିଏସନ୍‌ର ଗୋଟିଏ ମାତ୍ର ସାଂସ୍କୃତିକ ପରିଷଦ ଥିଲା । ଦୈବକ୍ରମେ ୧୯୬୬ ମସିହା ବେଳକୁ ମୁଁ ତାହାର ସଭାପତି ଥାଏ । ସେ ବର୍ଷ ଅଖିଳ ଭାରତୀୟ ସଚିବାଳୟ କର୍ମଚାରୀ ସଂଘର ଅଧିବେଶନ ଭୁବନେଶ୍ୱରରେ ହେଉଥାଏ । ଅଧିବେଶନ ଶେଷରେ ମନୋରଂଜନ କାର୍ଯ୍ୟକ୍ରମ ପାଇଁ ଗୋଟିଏ ନାଟକ ଲେଖି ମଞ୍ଚସ୍ଥ କରାଇବାର ଦାୟିତ୍ୱ ମୋ ଉପରେ ଥାଏ । ମୁଁ **ଘା** ନାମକ ଗୋଟିକ ନାଟକ ଲେଖିଲି । ବନ୍ଧୁ ଦିନନାଥଙ୍କୁ ନାଟକଟି ପଢ଼ି ଶୁଣାଇଲି । ସେ ନାଟକ ଶୁଣୁଥାନ୍ତି ଓ ତାହାର କେତୋଟି ଦୃଶ୍ୟକୁ ଷ୍ଟେନ୍‌ସିଲ୍‌ରେ ଆଙ୍କି ଦେଉଥାନ୍ତି । ସେ ଚିତ୍ରଗୁଡ଼ିକ ନାଟକର ଦୃଶ୍ୟ ନିହିତ ଭାବକୁ ଅତି ସୁନ୍ଦର ଭାବରେ ପରିସ୍ଫୁଟିତ କରୁଥାଏ । ଅଦ୍ୟାବଧି ସେହି ଚିତ୍ରଗୁଡ଼ିକ ମୋ ପାଖରେ ସାଇତା ଅଛି ।

ଅତୀତରେ କାବ୍ୟକୁ ଶ୍ରାବ୍ୟ ସ୍ତରରୁ ଆଣି ଦୃଶ୍ୟ ଭାବରେ ପରିବେଷଣ କରାଇ ଦୃଶ୍ୟକାବ୍ୟ କରାଗଲା । ଦୃଶ୍ୟକାବ୍ୟ ହେଲା ନାଟକ । ଦୃଶ୍ୟକାବ୍ୟକୁ ଯେ ଚିତ୍ରଭାଷାରେ ଫୁଟାଇ କେବଳ ଦୃଶ୍ୟ ମାଧମରେ ଉପସ୍ଥାପନ କରାଯାଇପାରେ ତାହା ମୋର ହୃଦ୍‌ବୋଧ ହେଲା ପାଠୀଙ୍କ ସହସ୍ତ ଅଙ୍କିତ ଷ୍ଟେନ୍‌ସିଲ୍‌ର ରୈଖିକ ଚିତ୍ରଗୁଡ଼ିକ ଯେତେବେଳେ ରୋନିଓ କରାଗଲା ।

ବନ୍ଧୁତ୍ୱ ଘନିଷ୍ଠ ହେଉଥାଏ । ସମ୍ପର୍କ ନିବିଡ଼ତର ହେଉଥାଏ । ସେ ବର୍ଷ ମୋର ଅନ୍ୟ ଏକ ନାଟକ **ସର୍ଗପୁରରେ ଦିନେ** ମଞ୍ଚାୟନ କରାଗଲା । ହସି ହସି ଶ୍ରୀଯୁକ୍ତ ପାଠୀ ତାହାର ମଞ୍ଚ ଦାୟିତ୍ୱ ନେଲେ । ମଞ୍ଚରୁ ରକେଟ୍ ଛଡ଼ାଯିବା, ସ୍ଥାନିତ ଅମୃତଭାଣ୍ଡ ଉଭାନ୍ ହୋଇଯିବା, ଖମ୍ବରୁ ଅଗ୍ନିକଣା ବାହାରିବା ଇତ୍ୟାଦି ତାଙ୍କ ଦ୍ୱାରା ପ୍ରସ୍ତୁତ ଅଦ୍ଭୁତ ପ୍ରକାରର ମଞ୍ଚମାୟା ଦେଖି ସେଦିନ ଦର୍ଶକ ସ୍ତମ୍ଭୀଭୂତ ହୋଇଥିଲେ ।

**ନାଟକ ସହିତ ଦିନନାଥ ଯେ ବହୁଦିନରୁ ପରିଚିତ ଥିଲେ ସେ କଥା ପରେ ତାଙ୍କରିଠାରୁ ମୁଁ ଶୁଣିବାକୁ ପାଇଲି । ସ୍କୁଲରେ ପଢ଼ିଲାବେଳୁ ସୀତାନୁସନ୍ଧାନ ନାଟକ, ପ୍ରହଲ୍ଲାଦ ନାଟକ, ରାଧାପ୍ରେମଲୀଳା, କୃଷ୍ଣଲୀଳା ଆଦି ବିଭିନ୍ନ ନାଟକ ଓ ଥିଏଟର୍ ସିନ୍ ସହିତ ନିଜକୁ ସଂପୃକ୍ତ କରୁ କରୁ ସେ ନାଟକ ସହିତ ଓତଃପ୍ରୋତ ଭାବେ ଜଡ଼ିତ ହୋଇଯାଇଥିଲେ ।**

ଶ୍ରୀଯୁକ୍ତ ପାଠୀଙ୍କର ସାଂଗଠନିକ ଦକ୍ଷତା ଥିଲା ଅପୂର୍ବ । ଦିଗପହଣ୍ଡିରେ **ଶିଳ୍ପକଳା ମନ୍ଦିର** ନାମକ ଅନୁଷ୍ଠାନରେ ସେ ଯେଉଁ ତାଲିମ ନେଇଥିଲେ ତାହା ତାଙ୍କୁ ଭୁବନେଶ୍ୱରର ଚିତ୍ରକାରମାନଙ୍କୁ ଏକାଠି କରିବାକୁ ଉତ୍ସାହିତ କରିଥିଲା । ପ୍ରଥମେ ସଚିବାଳୟ ମୁଖ୍ୟ ବିଭାଗୀୟ କାର୍ଯ୍ୟାଳୟର ଆର୍ଟିଷ୍ଟମାନଙ୍କୁ, ଭୁବନେଶ୍ୱରର ବିଭିନ୍ନ ସ୍କୁଲର ଡ୍ରଇଁ ଶିକ୍ଷକମାନଙ୍କୁ, ପେସାଦାର୍ ଓ ସୌଖୀନ୍ ଚିତ୍ରକାରମାନଙ୍କୁ ନେଇ ସେ **ଶିଳ୍ପୀ ସଂସଦ** ଗଠନ କଲେ । ଶ୍ରୀଯୁକ୍ତ ପାଠୀ ଚିତ୍ରକୁ 'ଚିତ୍ରଭାଷା' କହନ୍ତି । ତାଙ୍କ ଭାଷାରେ ଭାଷାମାନେ କେବଳ କଥିତ ଭାଷା ବା ମୁଦ୍ରିତ ଭାଷା ନୁହେଁ । ଭାଷାମାନେ

Digitized by srujanika@gmail.com

ଚିତ୍ରଭାଷା ଓ ଚିତ୍ରିତ ଭାଷା ମଧ୍ୟ । ତା ସାଙ୍ଗକୁ ଅଭିନୀତ ଭାଷା, ଗାୟିତ ଭାଷା ଇତ୍ୟାଦି ମଧ୍ୟ ଅଛି । ଭାଷାକୁ ଏହିଭଳି ବ୍ୟାପକ ଅର୍ଥରେ ବ୍ୟବହାର କରୁଥିବାରୁ ମୋ ଭଳି ଭିନ୍ନ ଭାଷାକୁ ବ୍ୟବହାର କରୁଥିବା କଳାକାରମାନେ ମଧ୍ୟ ସେ ଅନୁଷ୍ଠାନର ସୁହୃଦ୍ ସଭ୍ୟ ହେଲେ । ପରବର୍ତ୍ତୀ କାଳରେ ସେ **ଚିତ୍ରମ୍** ନାମକ ଏକ ଚିତ୍ରକଳା ବିଦ୍ୟାଳୟ ଗଢ଼ିଲେ । ତାଙ୍କର ଐକାନ୍ତିକ ଉଦ୍ୟମରେ ରାଜଧାନୀ ଭୁବନେଶ୍ୱରରେ କଳା ବିଦ୍ୟାଳୟଟିଏ ୧୯୭୪ ମସିହାରେ ପ୍ରଥମ ଥର ପାଇଁ ସ୍ଥାପିତ ହୋଇପାରିଲା । ଶ୍ରୀଯୁକ୍ତ ଦିନନାଥ ପାଠୀ ହେଲେ ଏ କଲେଜର ପ୍ରଥମ ଚିତ୍ର ଅଧ୍ୟାପକ, ସେତେବେଳର ଭାଷାରେ ଆର୍ଟ ପ୍ରଫେସର । ତାଙ୍କର ସାଂଗଠନିକ ନିଷ୍ଠା ଓ ତାହାର ଫଳଶ୍ରୁତି ଉଭୟ ମୋର ଆଖିଦେଖା ଘଟଣା ।

ଶ୍ରୀଯୁକ୍ତ ପାଠୀ ଜଣେ ଅନନ୍ୟ ଚିତ୍ରକାର । ତାଙ୍କର ପ୍ରତିଭାର ସ୍ୱୀକୃତି ସ୍ୱରୂପ ସେ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ସମ୍ମାନିତ ହୋଇଛନ୍ତି ଓ ନାନା ପୁରସ୍କାର ଦ୍ୱାରା ମଣ୍ଡିତ ହୋଇଛନ୍ତି । ତାଙ୍କର ଚିତ୍ର ପ୍ରଦର୍ଶନୀ କେବଳ ଓଡ଼ିଶାରେ ନୁହେଁ, ଦିଲ୍ଲୀରେ, ସୁଇଜରଲ୍ୟାଣ୍ଡରେ, ଇଣ୍ଡୋନେସିଆରେ, ସୁଇଡ଼େନ୍‌ରେ, ଜାପାନରେ ପ୍ରଦର୍ଶିତ ହୋଇ ଓଡ଼ିଶା ପାଇଁ ଗୌରବ ଆଣିଛି । ସେ ଭାରତର ଲଳିତ କଳା ଏକାଡ଼େମୀର ଗୌରବାବହ ତଥା ଗୁରୁତ୍ୱପୂର୍ଣ୍ଣ ସଚିବ ପଦବୀ ଅଳଙ୍କୃତ କରିଛନ୍ତି ।

କଳାର ବିଭିନ୍ନ ଭାଷାକୁ ଅଙ୍ଗୀକାର କରିପାରିଥିବାରୁ ତାଙ୍କର ତୂଳୀ ଯେତିକି ସକ୍ରିୟ, ଲେଖନୀ ମଧ୍ୟ ତତୋଽଧିକ ସକ୍ରିୟ । ସେ ଏକାଧାରରେ ଚିତ୍ରକାର, ସାହିତ୍ୟିକ ଗବେଷକ ଓ ମଞ୍ଚଶିଳ୍ପୀ ମଧ୍ୟ । ପରେ ପରେ ସିଏ ତାଙ୍କ ଶିଳ୍ପୀ ଗୁରୁ ଶରତଚନ୍ଦ୍ର ଦେବଙ୍କ ଅନନ୍ୟ ଚିତ୍ର ଶ୍ଳୋକଛନ୍ଦକୁ ନେଇ ଏକ ନାଟକ ରଚନା ଓ ମଞ୍ଚସ୍ଥ କରିଥିଲେ । ସେଭଳି ବହୁଆଗରୁ ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ ପଢୁଥିବା ବେଳେ **ଯମ ଦରବାର** ନାମରେ ଗୋଟିଏ ନାଟକ ରଚନା ଓ ପରିବେଷଣ କରିଥିଲେ । ବହୁବିଧ ପ୍ରତିଭାର ଏଭଳି ମଧୁର ସଂଗମ ଗୋଟିଏ ଲୋକ ପାଖରେ କ୍ୱଚିତ୍ ଦେଖାଯାଇଥାଏ ।

ତାଙ୍କର ଯେଉଁ ବୈଶିଷ୍ଟ୍ୟ ମୋତେ ସମଧିକ ମୁଗ୍ଧ କରିଛି, ତାହା ହେଲା ତାଙ୍କର ନିଜ ମାଟି ପ୍ରତି, ପରମ୍ପରା ପ୍ରତି, ପାରମ୍ପରିକ କଳା ପ୍ରତି ଅମାପ ଶ୍ରଦ୍ଧା । ତାଙ୍କ ଘରେ ପହଞ୍ଚିଲେ ଦେଖାଯାଏ ସଜ୍ଜିତ ହୋଇଛି ପୁରୁଣା ସିନ୍ଦୁକ, ଶଗଡ଼ଚକ, ଗ୍ରାମଘରର ଓରା ଇତ୍ୟାଦିର ସମାହାର । ସେ ସବୁର କଳାକୃତି ବେଶ୍ ଆକର୍ଷଣୀୟ । ବହୁ ଦେଶ, ବିଦେଶ ଭ୍ରମଣ କରିଥିବା, ବହୁ ଦେଶର ବହୁ ଚିତ୍ର ଗ୍ୟାଲେରୀରେ ସହସ୍ତ ଅଙ୍କିତ ଚିତ୍ର ସ୍ଥାନ ପାଇଥିବା ଶ୍ରୀଯୁକ୍ତ ପାଠୀଙ୍କର ଓଡ଼ିଶା ମାଟି ପ୍ରତି ମୋହ ଓ ଓଡ଼ିଶୀ କଳାର ପ୍ରଖ୍ୟାପନ ପ୍ରତି ଆଗ୍ରହ ତାଙ୍କୁ କେବଳ ନିଛକ ଓଡ଼ିଆର ସମ୍ମାନ ଦିଏ ନାହିଁ, ତାଙ୍କ ପ୍ରତି ଅନ୍ୟ ଓଡ଼ିଆମାନଙ୍କର ଦୃଷ୍ଟିକୁ ବିସ୍ମୟ-ବିସ୍ଫାରିତ କରେ ।

ପ୍ରତିଭାର ବହୁ ରଙ୍ଗରେ ରଞ୍ଜିତ ଦିନନାଥ ପାଠୀଙ୍କର ସହାସ୍ୟ ବଦନ, ଅମାୟିକ ବ୍ୟବହାର, ବନ୍ଧୁସୁଲଭ ଆଚରଣ ତାଙ୍କ ପାଇଁ ସୌଜନ୍ୟମୂଳକ ହୋଇପାରେ କିନ୍ତୁ ସେସବୁ ମୋତେ ଯେ ଗର୍ବିତ କରେ ଏହା ସ୍ୱୀକାର କରିବାରେ ମୋର ଦ୍ୱିଧା ନାହିଁ ।

Digitized by srujanika@gmail.com

ଦେବାଶିଷ ମହାପାତ୍ର

## ଦିନନାଥଙ୍କ ଚିତ୍ରୋପନ୍ୟାସରେ ଭାଷାବୈଚିତ୍ର୍ୟ

ଉପନ୍ୟାସରେ ଭାଷାର ଆଭିମୁଖ୍ୟ ଓ ଆବଶ୍ୟକତା କିପରି ଅପରିହାର୍ଯ୍ୟ ଓ ଆକର୍ଷଣୀୟ ତାହା ବହୁ ବରେଣ୍ୟ ସ୍ରଷ୍ଟାଙ୍କ ଉପନ୍ୟାସ ସମ୍ପର୍କିତ ମନ୍ତବ୍ୟରୁ ସ୍ପଷ୍ଟ ବୁଝିହୁଏ । Henry James କହନ୍ତି a novel is in its broadest definition a personal and direct impression of life. ଜୀବନର ପ୍ରତ୍ୟକ୍ଷ ଓ ବ୍ୟକ୍ତିଗତ ବ୍ୟାପାରକୁ ବହନ କରୁଥିବା ଉପନ୍ୟାସରେ ଜୀବନର ଦୈନନ୍ଦିନ ଭାଷାକୁ ଯେ ସ୍ଥାନ ଦିଆଯାଏ, ତାହା ଏହି ମନ୍ତବ୍ୟରୁ ମନେହୁଏ । ଅପରପକ୍ଷରେ Cardinal Newman ଏହି କଥାକୁ ଆଉ ଟିକିଏ ପ୍ରାଞ୍ଜଳ କରିଛନ୍ତି, Literature is the personal use or exercise of language. ଅନ୍ୟତମ ସ୍ରଷ୍ଟା Aldous Huxley ଉପନ୍ୟାସରେ quality of immediate experience କୁ ଗୁରୁତ୍ୱ ଦେଇ true story of a human being written in an art form ଭାବେ ଗ୍ରହଣ କରନ୍ତି । ଏହିସବୁ ମତ ମନ୍ତବ୍ୟରୁ ମନେହୁଏ ଯେ ଉପନ୍ୟାସର ବ୍ୟାପକ ପରିବେଶରେ ଭାଷାର ବାହ୍ୟ ବ୍ୟାକରଣିକ ଗଠନ ଅପେକ୍ଷା ତା'ର ଅନ୍ତରଙ୍ଗ କଳାତ୍ମକ ସଂରଚନାର ଅଧିକ ମହତ୍ତ୍ୱ ନିହିତ ।

ଏହି ପରିପ୍ରେକ୍ଷୀରେ ଆମ ସମୟର ପ୍ରଥିତଯଶା ସ୍ରଷ୍ଟା ଦିନନାଥ ପାଠୀଙ୍କ ଚାରିଗୋଟି ଚିତ୍ରୋପନ୍ୟାସର ବିଚାର କରାଯାଇପାରେ । ଚିତ୍ରୋପନ୍ୟାସରେ ଭାଷାରେ ଭୂମିକାକୁ ସ୍ରଷ୍ଟା କିଭଳି ଗୁରୁତ୍ୱପୂର୍ଣ୍ଣ ମନେ କରନ୍ତି ତାହା ତାଙ୍କର ଏକ ପ୍ରବନ୍ଧରୁ ପାଠକ ଲକ୍ଷ୍ୟ କରିଥାଏ - ''ଭାଷା ଦୃଶ୍ୟମାନ ଏବଂ ବର୍ଣ୍ଣିଳ ।  ଭାଷା ବହୁପ୍ରକାର; କଥିତ, ଲିଖିତ, ଉଚ୍ଚାରିତ, ଅନୁଚ୍ଚାରିତ, ଚିତ୍ରିତ, ଅଭିନୀତ ଏହିଭଳି ଅନେକ । ଶବ୍ଦର ସମଷ୍ଟିରେ ଭାଷା । ବର୍ଣ୍ଣ, ଅର୍ଥ ଓ ଭାବର ସମନ୍ୱୟରେ ଶବ୍ଦ । ବର୍ଣ୍ଣ ଥାଇପାରେ କିନ୍ତୁ ଅର୍ଥ ଓ ଭାବ ନଥିଲେ ବର୍ଣ୍ଣ ବର୍ଣ୍ଣାକ୍ଷର ନୁହେଁ, ବାଗ୍‌ଦରା ନୁହେଁ । ଏଇଠି ବର୍ଣ୍ଣର ସାହିତ୍ୟ ଓ କବିଭାଷା ସହିତ ସମ୍ପର୍କ । ଅପରପକ୍ଷରେ ପ୍ରତ୍ୟେକ ବର୍ଣ୍ଣ ଗୋଟିଏ ଗୋଟିଏ ଚିତ୍ରକଳ୍ପ । ରେଖା ଆକୃତି ଘେନିଲେ, ଆକୃତିବନ୍ତ ହେଲେ ବର୍ଣ୍ଣ ଅକ୍ଷରେ ।'' ସ୍ରଷ୍ଟା ଯେ ଚିତ୍ରୋପନ୍ୟାସରେ ଭାଷାକୁ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି ତାହା ତାଙ୍କର ଏହି ମନ୍ତବ୍ୟକୁ ପ୍ରତ୍ୟେକ ଚିତ୍ରୋପନ୍ୟାସ ସହ ତୁଳନା କଲେ ସ୍ପଷ୍ଟ ବୁଝାପଡେ । ସ୍ରଷ୍ଟା ଦିନନାଥଙ୍କ **ସାୟୋନାରା** (୧୯୯୮), **ପୁନର୍ନବା** (୧୯୯୯), **ଶ୍ଳୋକଛନ୍ଦ** (୨୦୦୧) ଓ **ଗଙ୍ଗାବତରଣ** (୨୦୦୨)ରେ ଭାଷାର ବୈଚିତ୍ର୍ୟ ଓ ବିବିଧତା ବାରିହୁଏ । ପ୍ରତ୍ୟେକ ଚିତ୍ରୋପନ୍ୟାସରେ ଭାଷା ଜୀବନ୍ତ ଓ ଚିତ୍ରଧର୍ମୀ । ଏହି ଆତ୍ମୀୟତାର ଭାଷା ଓ ଚିତ୍ରଧର୍ମୀ ଭାଷା ପ୍ରୟୋଗରେ ଦିନନାଥଙ୍କ କଳା କୁଶଳତା ଅନନ୍ୟ ଓ ଅପାସୋରା । ପ୍ରଥମ ଚିତ୍ରୋପନ୍ୟାସ **ସାୟୋନାରା** ରେ ଜୀବନର ସୂକ୍ଷ୍ମ ଅନୁଭବମାନଙ୍କୁ ନିଜ ଚିତ୍ରଭାଷାର ବର୍ଣ୍ଣାଳୀରେ ଚିତ୍ରିତ କରିଛନ୍ତି ଏକ ଭିନ୍ନସ୍ୱାଦର କାହାଣୀ । ସମୁଦାୟ ୨୪୨ ପୃଷ୍ଠାର ଏହି ଚିତ୍ରୋପନ୍ୟାସରେ ସ୍ରଷ୍ଟା ଭାଷାର ପ୍ରୟୋଗକୁ ବ୍ୟାପକ ଓ ବର୍ଣ୍ଣାଢ୍ୟ କରିଛନ୍ତି । ସ୍ରଷ୍ଟା ପ୍ରଥମେ ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ 'ରୁଦ୍ରସୁଧାନିଧିରୁ ପଦେ ଉଦ୍ଧାର କରିଛନ୍ତି- ''ଜଗତ ବୋଲି କି ବସ୍ତୁ । କେମନ୍ତ ଦିଶଇ ତାହା କହ । ଯୋଗୀ ବୋଇଲା ହେ ବତ୍ସ ! ତଳେ ପୃଥିବୀ ପ୍ରାୟେକ ହୋଇ ନାନାକାର ସ୍ଥୂଳ, କଠିନ ହୋଇ ବଡ଼ ବିସ୍ତାର ସ୍ଥଳେ ନ ଦିଶଇ । କୁମାର ବୋଇଲା ତଳ କିସ । ଯୋଗୀ ବୋଇଲା ଉପର ଜାଣିଲେ ସେ ତଳ ଜାଣିମାନ । ତୋତେ ଏତେକେ ତଳ ଉପର ନାହିଁ ।'' **ଶେଷରେ ନିଜେ ଦାର୍ଶନିକ ସୁଲଭ ଭାଷାରେ ପ୍ରକାଶ କରିଛନ୍ତି- ସୁଦୀର୍ଘ ସେ ଯାତ୍ରା, ଅନ୍ତରୀକ୍ଷରୁ ଅନ୍ତରୀକ୍ଷ, ହିରଣ୍ୟଗର୍ଭରୁ ହିରଣ୍ୟଗର୍ଭ, ବ୍ରହ୍ମାଣ୍ଡରୁ ବ୍ରହ୍ମାଣ୍ଡ, ବ୍ରହ୍ମରୁ ଶୂନ୍ୟ, ଶୂନ୍ୟରୁ ଶୂନ୍ୟ । ଭାରତରୁ ଜାପାନ ଓ ଜାପାନରୁ ଭାରତ । ଏ ଜିଜ୍ଞାସା, ଏ ଅନ୍ୱେଷଣ, ଏ ସନ୍ଧାନ ଅନ୍ତହୀନ । ଅନନ୍ତ ଏ ପ୍ରକ୍ରିୟା । ସ୍ଥିତିରୁ ଅସ୍ଥିତି । ଅସ୍ଥିତିରୁ ସ୍ଥିତି । ଆରମ୍ଭରୁ ଶେଷ । ଶେଷରୁ ଆରମ୍ଭ ଆଉ**

Digitized by srujanika@gmail.com

**ଓହାୟୋ ଗୋଜାଇମସୁ ଠାରୁ ସାୟୋନାରା । ସାୟୋନାରାର** ପ୍ରତ୍ୟେକ ପୃଷ୍ଠାରେ ଭାଷା ବର୍ଣ୍ଣିଳ । ସ୍ରଷ୍ଟା ଦିନନାଥ ଏହି ଚିତ୍ରୋପନ୍ୟାସରେ ଗୋଟିଏ ହାଇକୁ, କିଶୋରଚନ୍ଦ୍ରାନନ୍ଦ ଚମ୍ପୂର ପଦେ (ପୃଷ୍ଠା ୧୩), ଚମତ୍କାର ରୂପକଳ୍ପ ଓ ଚିତ୍ରଭାଷାର ପ୍ରୟୋଗ କରି ଦୁଇଟି ପ୍ରେମକବିତା (ପୃଷ୍ଠା ୧୦୧-୧୦୨, ୧୦୩-୧୦୪), 'କଠୋପନିଷଦ'ରୁ ଉଦ୍ଧାର ଓ ବ୍ୟାଖ୍ୟା (ପୃଷ୍ଠା ୧୧୦), ପୃଷ୍ଠା ୧୧୮, ୧୧୯, ୧୨୦ରେ ପ୍ରାଚୀନ କବିତାପଦ ଉଦ୍ଧାର, ପୃଷ୍ଠା ୧୪୦ରେ ବହୁ ଗୀତ ଓ ତା'ର ଅନୁବାଦ ଏବଂ ପୃଷ୍ଠା ୧୭୫ରେ ଭୀମଭୋଇଙ୍କ - 'ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ, ମୋ' ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।' ପଦ ଉଦ୍ଧାର କରି ନିଜକୁ ବହୁପାଠୀ ଭାବେ ପ୍ରମାଣିତ କରିଛନ୍ତି । ଏହି ଚିତ୍ରୋପନ୍ୟାସରେ ବର୍ଣ୍ଣନା ବୈଚିତ୍ର୍ୟ ଆକର୍ଷଣୀୟ । ପୃଷ୍ଠା ୧ରେ ସ୍ରଷ୍ଟା ଲେଖିଛନ୍ତି କୁହାଟୁଥିବା ଆଳାପ ମହୁଝରା ସ୍ୱର, ପୃଷ୍ଠା ୨ରେ ଜାପାନ ଦେଶର ବର୍ଣ୍ଣନା ଓ ପୃଷ୍ଠା ୩ରେ ଜାପାନୀ ପୁଅଝିଅଙ୍କ ଗୁଡ଼ିଉଡ଼ା ବର୍ଣ୍ଣନା ସମେତ କେତେକ ବର୍ଣ୍ଣନା ବୈଚିତ୍ର୍ୟପୂର୍ଣ୍ଣ । କେତୋଟି ଉଦାହରଣ ଦିଆଯାଇପାରେ ।

୧) ଗହମ ରଙ୍ଗର ତା ଦେହ, ବୁଦ୍ଧଙ୍କ ଭଳି ଆଜାନୁଲମ୍ବିତ ବାହୁ, ମୁଣ୍ଡିତ ମସ୍ତକ, ଅଥଚ ଆଖି ଦୁଇଟିରେ ଚଇତାଳିର ଦୁଷ୍ଟାମି ହସ ଓ ଓଠ ଦୁଇଟିରେ ଆସକ୍ତିର ଭାବ। (ପୃଷ୍ଠା - ୧୭)

୨) ମାଟିରେ ସିନା ଗନ୍ଧ ଥାଏ, ମୋହ ଥାଏ, ଆସକ୍ତି ଥାଏ । ହେଲେ ଆକାଶରେ ଥାଏ ନୀଳିମା, (ପୃଷ୍ଠା ୨୧)

ଚା'ର ବର୍ଣ୍ଣନା ମନଛୁଆଁ, କିଭଳି ଦେଖନ୍ତୁ

୩) ପାଣି ଚା'ପତି ଚିନି ଛେଚାଅଦା ସବୁ ପକେଇ ଫୁଟେଇ ତିଆରି ହେଇଥିବା ଗୋଟିଏ ମହାର୍ଘ ପାନୀୟର ନାଁ ହେଲା ଚା' ବା ଚାହା । ତା'ର ଉଷୁମ ସହିତ ହା ଟା ବାହାରି ଆସେ । ଫୁ.... ଫୁ.... ସୋଡ଼ ... ସାଡ଼.... ଶବ୍ଦ ସହିତ ଚା' ପିଆଯାଏ । ବେଳେବେଳେ ଡେକିଚିରୁ ଚା' ଗିଲାସରେ ଢଳାହେଲା ବେଳେ ବହମାନ ସ୍ରୋତର ପ୍ରବାହରେ ଗିଲାସ ଦୁଲୁକି ଉଠେ । ଚା' ଛିଟିକି ପଡ଼େ ଓ ବେଳେ ବେଳେ ପ୍ରଥମରୁ ହିଁ ଗିଲାସଟି ଗଡ଼ିପଡ଼ି ଚା' ବହିଯାଏ । ଆହା, ଉହୁ, ଓହୋ, ହେ.... ହେ....., ନା... ନା... ନା... ଭିତରେ ଚାହା ପାନର ବି ସମ୍ମୋହନ ଥାଏ । (ପୃଷ୍ଠା ୨୯) ଏତଦ୍ ବ୍ୟତୀତ ପୃଷ୍ଠା ୬୫ରେ ଭାଉଜଙ୍କୁ କେତକୀର ଚିଠି ଓ ପୃଷ୍ଠା ୮୬-୮୭ରେ କେତକୀକୁ ଭାଉଜଙ୍କ ଚିଠି ଭାଷା ଦୃଷ୍ଟିରୁ ବିଚାର୍ଯ୍ୟ । ସେହିପରି ନାରୀ ସମ୍ପର୍କରେ ପୃଷ୍ଠା ୪୪, ୨୦୮ରେ ବର୍ଣ୍ଣନା, ପ୍ରେମ ସମ୍ପର୍କରେ ପୃଷ୍ଠା ୫୬ ଓ ୨୨୫ରେ ବର୍ଣ୍ଣନା, ପୃଷ୍ଠା୪୮ରେ ବର୍ଷା ବର୍ଣ୍ଣନା ସ୍ରଷ୍ଟା ଦିନନାଥଙ୍କ ଭାଷା ବୈଚିତ୍ର୍ୟର ସାକ୍ଷର । 'ସାୟୋନାରା'ରେ ଭାଷାର ବିଶେଷତ୍ୱ ଦୃଷ୍ଟିରୁ ଆଉ ଏକ କଥା ଉଲ୍ଲେଖଯୋଗ୍ୟ । ତାହାହେଲା, ଅଳ୍ପରେ ଅନଳ୍ପକଥା । ଅର୍ଥାତ୍, ଖୁବ୍ ଛୋଟ ଛୋଟ ବାକ୍ୟରେ ଗହନ କଥା ବା କଥାର ଗଭୀରତାର ଉନ୍ମୋଚନ । ଉଦାହରଣସ୍ୱରୂପ: ଏକ ବର୍ଣ୍ଣିଳ ଆସକ୍ତି (ପୃ-୨୮), ରୁନ୍ଧା ଶାଗୁଆ ବଣ(ପୃ ୩୧), କଳା ହିଁ ଜୀବନ (ପୃ-୨୦୯), ଦେହ ବିଶ୍ୱର ପ୍ରତିଛବି (ପୃ-୨୦୯), ନାରୀର ଦେହ ରହସ୍ୟାବୃତ୍ତ (ପୃ-୯୫), ମୁଁ ଯେ (ପୃ ୧୧୮), ପ୍ରେମ ମୂଳେ ଭଗବାନ (ପୃ ୪୮), ମାତୃତ୍ୱରେ ନାରୀର ସାର୍ଥକତା (ପୃ ୫୯), ଦୁଧସର ଭଳି ପିଠିଟା ଦିଶୁଛି (ପୃ ୬୩), ଜୀବନର ଚରମ ଉତ୍କର୍ଷ ବୈରାଗ୍ୟ, ସମ୍ଭୋଗ ନୁହେଁ (ପୃ୨୨୨) ଇତ୍ୟାଦି । 'ସାୟୋନୋରା'ରୁ ଭାଷାର ସୂକ୍ଷ୍ମତା ଓ ଗଭୀରତାକୁ ବାରିହୁଏ । ଏହି ଚିତ୍ରୋପନ୍ୟାସରେ ଭାଷା ମାର୍ମିକ, ବିବିଧ, ବୈଚିତ୍ର୍ୟପୂର୍ଣ୍ଣ । ଏଥିରେ ଭାଷା ବି ଜୀବନ୍ତ ଚିତ୍ରଧର୍ମୀ । ଅନେକ ସମୟର ମନେହୁଏ 'ସାୟୋନାରା'ର ଭାଷା ତିର୍ଯ୍ୟକ୍ ଓ କାବ୍ୟିକ ।

ସ୍ରଷ୍ଟା ଦିନନାଥଙ୍କ ଦ୍ୱିତୀୟ ଚିତ୍ରୋପନ୍ୟାସ **ପୁନର୍ନବା** (୧୯୧୯) ଏକ ଚର୍ଚ୍ଚିତ **ସୃଷ୍ଟି** । ସ୍ରଷ୍ଟା ଏହି ଚିତ୍ରୋପନ୍ୟାସର ପ୍ରାରମ୍ଭରେ ଚୁମ୍ବକରେ ସୂଚାଇଛନ୍ତି, ଚିତ୍ର କ'ଣ ସତରେ ମଣିଷ ଭଳିଆ

Digitized by srujanika@gmail.com

ଦିଶେ ? ନା ମଣିଷଙ୍କ ସପ୍ନ ପରି ଲାଗେ ? ସବୁ ଛନ୍ଦାଛନ୍ଦି ଶିଆଳିଲଟା ପରି ସକାଳର କୁହୁଡ଼ି ପରି ଘାସରେ କାକରର ମୁକ୍ତା ପରି । ଚିତ୍ର କ'ଣ ସତେ ଅକୁହା କବିତା ! ଯା ଦେହରେ କଥା ହଜିଯାଏ ଯାହା କହିବ କହିବ ହୁଏ ଅଥଚ କହି ବି ପାରେନା ରହି ବି ହୁଏନା ନିଷ୍ଠୁରିରେ । କେଉଁ ସାଗରର ଅତଳ ଗର୍ଭରୁ ଆଖିରେ ଆଖିରେ ତୋଳିବାକୁ ହୁଏ ମୁକ୍ତା ହୀରା ନୀଳା ଓ ଶାମୁକା । ଚିତ୍ର କ'ଣ ନିକେ ଇ ମଣିଷ ନା ମଣିଷଙ୍କ ଛାଇ ? ମଣିଷ ପରି ଦିଶେ ଅଥଚ ମଣିଷ ନୁହେଁ, ଯାହା ମଣିଷଠୁ ଭିନ୍ନ ବୃନ୍ଦନର ପ୍ରତିଧ୍ୱନି, ଖାଲି ଅକୁହା ଯନ୍ତ୍ରଣା । ଏହି ଚମତ୍କାର କାବ୍ୟିକ ସୂଚନା **ପୁନର୍ନବା**ର ଭାଷା ଓ ଶୈଳୀର ବୈଶିଷ୍ଟ୍ୟ ବହନ କରେ । ସ୍ରଷ୍ଟାଙ୍କ ଭାଷାରେ 'ପୁନର୍ନବା' ଜଣେ ଓଡ଼ିଆ ଶିଳ୍ପୀର ଅବବୋଧର କଥା । ଚିତ୍ରଭାଷାର କଥା କବିଭାଷାରେ । ଅନୁଭୂତିର ଭାଷାନ୍ତର । ଆମ ସାହିତ୍ୟ ପରମ୍ପରାରେ ଚିତ୍ରଭାଷା ବ୍ୟତିରେକ କାବ୍ୟ ଭାଷାର ଉନ୍ମେଷ ନ ଥିଲା ବୋଲି ଜାଣିଲା ପରେ ଏଠି ଏ ଉଭୟଙ୍କୁ ଏକା ସାଙ୍ଗରେ ଅବବୋଧ କରିବାର ପ୍ରଚେଷ୍ଟା ।' ଏହି ଚିତ୍ରୋପନ୍ୟାସରେ ସାରଳାଦାସଙ୍କ କାବ୍ୟରୁ ପଙ୍‌କ୍ତି ଉଦ୍ଧାର ସହ ବିଭିନ୍ନ ଶ୍ଳୋକର ଅବତାରଣା ପାଠକକୁ ବାନ୍ଧି ରଖିଥିବା ବେଳେ ଦିନନାଥଙ୍କ ଶବ୍ଦ ଚୟନ ବା ଶବ୍ଦ ଗୁମ୍ଫନ ଏହାର ଭାଷାକୁ କରିଛି ବର୍ଣ୍ଣାଢ୍ୟ । ଯେମିତିକି: ଗୋଟିଏ ଖୁରୁମୁରୁ ଅପରାହ୍ନ (ପୃ ୧୯୫), ଜହ୍ନ ପିଠଉ ଭଳି ବିଛେଇ ହେଇ ପଡ଼ିଛି (ପୃ ୨୦୧), ଦେହ ଝଳିଉଠୁଚା (୧୬୯), ବାହାଚୂଡ଼ା ହେଇନି(୨୧) ଡାଳିମ୍ବ ଭଳି ଟୁମୁକୁଳେଇ (୩୪) ବିରହ ଏକ ବାରିଧି (ପୃ ୧୫୯), ତମର ହରଣ ଓ ରମଣ ଏକା ଭଳି ମଧୁର (୨୬୨) ପ୍ରୀତିର ନୀଳଜ୍ୱାଳା (୨୯୫) ଇତ୍ୟାଦି । ଏହିପରି ରାଶି ରାଶି ଉଦାହରଣ **ପୁନର୍ନବା**ରେ ଦେଖିବାକୁ ମିଳେ । ଏଥିରୁ ସ୍ରଷ୍ଟାଙ୍କ ଭାଷା ପ୍ରୟୋଗର କଳାକୁଶଳତା ସ୍ପଷ୍ଟ ହୁଏ । ସଂସ୍କୃତ ଶ୍ଳୋକ ଓ ମନ୍ତ୍ର (୧, ୨, ୩, ୨୮, ୧୦୯, ୧୧୮, ୧୩୦, ୧୩୧, ୧୩୨ ଇତ୍ୟାଦି) ଓଡ଼ିଆ ଭାଗବତ, ଗୀତଗୋବିନ୍ଦ, କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ ପଦାବଳୀ, ହିନ୍ଦୀଗୀତ- ତନ୍‌ଡୋଲେ ମେରା ମନ୍ ଡୋଲେ, ଆଦି ଦିନନାଥଙ୍କ ବହୁପଠନର ପ୍ରମାଣ ଦିଏ । ପୃ ୨୮୬-୨୮୭ରେ ଗାଦି ଆରୋହଣ ବିଧାନର ନିୟମ ଓ ତାଲିକାର ଭାଷା ଅପୂର୍ବ । କେତେକ ସ୍ଥାନର ସ୍ରଷ୍ଟା ଇଂରାଜୀ ଶବ୍ଦର ଆଞ୍ଚଳିକୀକରଣ କରିଛନ୍ତି । ଯେମିତିକି 'ରିଷ୍ ଉଆଚ' 'କଲକଟର' (ପୃ ୨୮) । ସ୍ରଷ୍ଟା ଦିନନାଥଙ୍କ ଶବ୍ଦଚୟନ ଓ ଗୁନ୍ଥନର ଚମତ୍କାରିତା ଆଉ କେତୋଟି ଉଦାହରଣରୁ ଲକ୍ଷ୍ୟ କରନ୍ତୁ । ତିକ୍ତୁଥ, ସକ୍ତୁଥ (୧୯୩), ଗଢ଼ଣ ସୁଖ(୧), ଭରପୂରଦିହ, ଫରୁଆ ଭଳିଆ ଆମ୍ବୁଆ ଦେହ(୨୭), ଅଖାଡୁଆ ମନ୍ତ୍ର ହଂ ହଂ ହୁଂ ହୁଂ ଦ୍ରାଂ ଦ୍ରାଂ ଦ୍ରାଂ ଦ୍ରାଂ କ୍ଲାଂ କ୍ଲାଂ ଫଟ୍‌ଫଟ୍(୩୨), ମୃଣାଳ ଭଳି ବାହୁ, କମ୍ବୁ ଭଳି ଗ୍ରୀବା-ଡମରୁ ଭଳି କଟି-ଦଧିଭାଣ୍ଡ ଭଳି ନିତମ୍ବ-କଳସ ଭଳି ସ୍ତନଯୁଗଳ ଓଲଟ ରମ୍ଭାଗଛ ଭଳି ଜଙ୍ଘ (୨୩୪) । **ପୁନର୍ନବା**ର ଠାଏ ସ୍ରଷ୍ଟା ଦିନନାଥ ଯଥାର୍ଥରେ କହିଛନ୍ତି, ଆମେ ଚିତ୍ରକର ପରା । ଆମେ ଦେବତା ଗଢୁ । କାଠ ପାଷାଣରେ ଆମେ ହିଁ ଭାଷା ଫୁଟାଉ । ପ୍ରାଣ ଭରିଦେଉ । ଚିତ୍ରଶିଳ୍ପୀ ସ୍ରଷ୍ଟା ଦିନନାଥ 'ପୁନର୍ନବା'ର ପ୍ରତ୍ୟେକ ପୃଷ୍ଠାରେ ଯେଉଁ ଭାଷା ଫୁଟାଇଛନ୍ତି ତାହା ଜୀବନ୍ତ, ପ୍ରାଣବନ୍ତ । ତିନିଶହ ପୃଷ୍ଠାର ଏହି ଚିତ୍ରୋପନ୍ୟାସରେ ଭାଷାର ବୈଚିତ୍ର୍ୟ ପାଇଁ ସ୍ରଷ୍ଟାଙ୍କ କେତୋଟି ସୂଚନା ଓ ସ୍ୱୀକାରୋକ୍ତିର ଅବଦାନ ଅନସ୍ୱୀକାର୍ଯ୍ୟ । ଉଦାହରଣସ୍ୱରୂପ : (୧) ପୁନର୍ନବା ଏକ ମହାସ୍ରୋତ, କେଉଁ ଏକ ଅବ୍ୟକ୍ତ କାଳ ଓ ସ୍ଥିତିରୁ ପ୍ରବାହରେ ଭାସିଆସେ । ବେଳେବେଳେ ଦୃଶ୍ୟ ହୁଏ । ପୁଣି ବେଳେବେଳେ ଦୃଷ୍ଟି ଶକ୍ତିର, ଇନ୍ଦ୍ରିୟାନୁଭୂତିର ବାହାରେ । ପୁନର୍ନବା ପ୍ରକ୍ରିୟା ବ୍ୟତିରେକ ଭୂମା ଅବ୍ୟକ୍ତ ରହିଯାଏ । ପୁନର୍ନବା ପରଂବ୍ରହ୍ମଙ୍କୁ ମଣିଷ ଆଗରେ ଉଭା କରାଇଦିଏ । (ପୃ) ୨୧/୨୨୨) (୨) ସବୁ ଯୁଗରେ ନାରୀ ହିଁ ସ୍ରଷ୍ଟାର ନିୟତରେ ସ୍ଥାନିତ ହୋଇଛି । ତା'ର ଭାବରାଜ୍ୟରେ ଶୀର୍ଷ ଆସନ ଆବୋରି ବସିଛି, ଆକାଶ ଭଳି ବିକଶିତ ହେଇଛି । ରୂପରେ ଓ ଗନ୍ଧରେ ଚଉଦିଗ ମହକାଇ ଦେଇଛି (ପୃ ୨୩୩) ଏଥିରୁ ବୁଝାପଡ଼େ ଯେ ସୌନ୍ଦର୍ଯ୍ୟ ଏବଂ ସମନ୍ୱୟ ପାଇଁ ସ୍ରଷ୍ଟା ଦିନନାଥ ଭାଷା ପ୍ରୟୋଗରେ କୁଶଳୀର ଦାୟିତ୍ୱ ନିର୍ବାହ କରିଛନ୍ତି ।

Digitized by srujanika@gmail.com

ପାଠୀ ପରିବର୍ତ୍ତେ ବହୁପାଠୀ ଭାବେ ଶାସ୍ତ୍ର ପୁରାଣ କାବ୍ୟକବିତାରୁ ଉଦ୍ଧୃତି କରିବା ତାଙ୍କ ଭାଷାପ୍ରୀତିର ପରିଚୟ ଦିଏ । ସେ ଉଭୟ ମାନକ ଭାଷା (standard language) ସହ ଉପଭାଷା (dialect) ବା ସ୍ଥାନୀୟ ଭାଷାର ସୁନ୍ଦର ସମନ୍ୱୟ କରିଛନ୍ତି । ଫଳରେ ଭାଷା ହୋଇଛି ଅପୂର୍ବ ଓ ଆକର୍ଷଣୀୟ । ଆବଶ୍ୟକସ୍ଥଳେ ଅନ୍ୟ ଭାଷା ଯଥା: ହିନ୍ଦୀ, ଇଂରାଜୀ, ସଂସ୍କୃତର ବ୍ୟବହାର କରିବାକୁ ସେ ପଛାଇନାହାନ୍ତି । କେତେବେଳେ ସେ ବହୁଭାଷୀ (polyglot) ତ କେତେବେଳେ ଭାଷାବିତ୍ (linguist) ଭାବେ ଭାଷାର ବ୍ୟବହାର କରିଛନ୍ତି । **ପୁନର୍ନବା**ର ଭାଷାରେ ରହିଛି ପ୍ରାଣସତ୍ତା । ଶବ୍ଦର ସଫଳ ବ୍ୟବହାରରେ, ଭାଷାର ପ୍ରୟୋଗରେ, ବିଶେଷଣର ସାର୍ଥକ ପ୍ରୟୋଗରେ, ସଂଳାପଧର୍ମୀ ବାକ୍ୟ ବ୍ୟବହାରରେ ସ୍ରଷ୍ଟା ଦିନନାଥ ଅନେକାଂଶରେ ସଫଳ ହୋଇଛନ୍ତି । ଏଥିରେ ଭାଷା କେତେବେଳେ ସାଙ୍କେତିକ ତ କେବେ ସଞ୍ଚରଣଶୀଳ । କେତେବେଳେ ତିର୍ଯ୍ୟକ୍ ତ କେତେବେଳେ ଗୀତିମୟ । **ପୁନର୍ନବା**ର ପ୍ରତ୍ୟେକ ପୃଷ୍ଠାରେ ସ୍ରଷ୍ଟା ଦିନନାଥଙ୍କ ବର୍ଣ୍ଣନା ବୈଚିତ୍ର୍ୟ ଭାଷାକୁ କରିଛି ବର୍ଣ୍ଣାଢ୍ୟ । ପ୍ରାୟ ପ୍ରତ୍ୟେକ ପୃଷ୍ଠାରେ ଦିନନାଥଙ୍କ କାବ୍ୟିକ ଉପସ୍ଥାପନ ତାଙ୍କର ଭାଷାପ୍ରୟୋଗ ଚାତୁରୀର ଉଲ୍ଲେଖନୀୟ ଉଦାହରଣ । କେତେକ ସ୍ଥଳରେ କାହାଣୀ ଛଳରେ ସ୍ରଷ୍ଟା କଥୋପକଥନ ଭାଷାରେ ନାଟକୀୟ ସଂଳାପର ସଫଳ ପ୍ରୟୋଗ କରିଛନ୍ତି । 'ପୁନର୍ନବା' ପଢ଼ିଲେ ପାଠକ ନିଶ୍ଚିତ ହୁଏ ଯେ ପ୍ରାଣକୁ ଛୁଇଁଲା ପରି, ହୃଦୟକୁ ସ୍ପର୍ଶ କଲା ପରି, ମୁଗ୍ଧ ଓ ମୋହିତ କଲାଭଳି ଭାଷା ଏହି ଚିତ୍ରୋପନ୍ୟାସରେ ସୁଲଭ । ଭାଷାର ଗାମ୍ଭୀର୍ଯ୍ୟ, ଶବ୍ଦ ସଜାଣ, ଭାଷା ବିନ୍ୟାସ, ଭାଷାର ବିହ୍ୱଳ ପରିପ୍ରକାଶ 'ପୁନର୍ନବା'କୁ ପରିଚିତ କରାଇବା ସହ ସ୍ରଷ୍ଟା ଦିନନାଥଙ୍କୁ କରିଛି ଲୋକପ୍ରିୟ ।

ଲକ୍ଷ୍ୟ କରିବାର କଥା, ପରବର୍ତ୍ତୀ ଦୁଇ ଚିତ୍ରୋପନ୍ୟାସରେ ଭାଷାର ଉତ୍ତରଣ କିଭଳି ଘଟିଛି । ଦିନନାଥଙ୍କ ତୃତୀୟ ଚିତ୍ରୋପନ୍ୟାସ **ଶ୍ଳୋକଛନ୍ଦ** (୨୦୦୧) ଭୂମିରୁ ଭୂମାର ବିସ୍ତାର ଭିତରେ ଗର୍ଭିତ ଓ ଉନ୍ମେଷିତ ରୂପକଳ୍ପର ବର୍ଣ୍ଣିଳ ପ୍ରକାଶ । ପୂର୍ବ ଦୁଇଟି ଚିତ୍ରୋପନ୍ୟାସର ଭାଷା ଓ ଶୈଳୀ ସହ ଏହାର ତୁଳନା କଲେ ଏଥିରେ କେତେକ ବିଶେଷ ବୈଶିଷ୍ଟ୍ୟ ଥିବାର ଲକ୍ଷ୍ୟ କରାଯାଏ । ଯେମିତିକି ଏହି ଉପନ୍ୟାସଟି ପୂର୍ବ ରଙ୍ଗ, ଭୂମି, ବିସ୍ତାର ଗର୍ଭ ଓ ଭୂମା ଆଦି ପାଞ୍ଚ ଭାଗରେ ବିଭକ୍ତ । ସମୁଦାୟ ୨୬୧ ପୃଷ୍ଠାର ଏହି ବହିକୁ ସ୍ରଷ୍ଟା ପୂର୍ବରଙ୍ଗ ୧-୧୫, ଭୂମି ୧୭-୬୫, ବିସ୍ତାର ୬୭-୧୩୩, ଗର୍ଭ ୧୩୫-୨୦୨, ଭୂମା ୨୦୩-୨୬୧ରେ ବିଭକ୍ତ କରିଛନ୍ତି । ଏଥିରେ ଏଲିଅଟ୍, ଭୀମଭୋଇ, ବାଲ୍ମିକୀ, କାଳିଦାସ, ରବୀନ୍ଦ୍ରନାଥଙ୍କ ସମେତ ପ୍ରାଚୀନ କବିଙ୍କୁ ସଶ୍ରଦ୍ଧ ସ୍ମରଣ କରିଛନ୍ତି ସ୍ରଷ୍ଟା । ଏହା ବ୍ୟତୀତ ଗୀତ, ଛନ୍ଦ, କବିତାରେ ବର୍ଣ୍ଣନା କରି ବର୍ଣ୍ଣନାକୁ ବର୍ଣ୍ଣିଳ କରିଛନ୍ତି । ସେ କହନ୍ତି, ଉଚ୍ଚାରଣ ଯେତେ ସଂଯତ, ଶୁଦ୍ଧ ଓ ମନ୍ତ୍ରିତ ତା'ର ନାଦ, ଆଲୋକ, ବର୍ଣ୍ଣାଳି ସେତେ ବିସ୍ମୟ ଓ ବିଭାମୟ । ସେଇଠୁ ଆରମ୍ଭ ହୁଏ ଚିତ୍ରଭାଷା ଓ କବିଭାଷାର ଅନୁପମ ଅନ୍ତଃଛନ୍ଦ । ସେହି ବର୍ଣ୍ଣିଳ ଛନ୍ଦର ମାୟାଜାଲରେ ଆୟତ୍ତ ହୋଇଯାଏ ଅନୁଭୂତି ଓ କଳ୍ପନା । x x x x ଶ୍ଳୋକଛନ୍ଦ ଚିତ୍ରର ଗାରିମା ଓ ପ୍ରାଣବତ୍ତା ଆଉ ଚିତ୍ରପଟର ଚଉହଦୀ ଭିତରେ ସୀମିତ ନୁହେଁ । ଏହା ସୃଷ୍ଟି ମାନସର ଏକ ସ୍ଫୁଲିଙ୍ଗ । ଚିତ୍ର ସହିତ ଶିଳ୍ପୀଙ୍କର ଜୀବନୀ ବି ସ୍ମୃତିଗାଥା ଓ କିମ୍ବଦନ୍ତୀ ଭଳି କୌତୂହଳପୂର୍ଣ୍ଣ ଓ କାବ୍ୟମୟ । *** ଶ୍ଳୋକଛନ୍ଦ ଓଡ଼ିଶାର ଆଧୁନିକ କଳାଜଗତରେ ଏକ ଅନନ୍ୟ ରୂପକଳ୍ପ, କାବ୍ୟଧର୍ମୀ, ବର୍ଣ୍ଣିଳ ଓ ମାର୍ମିକ । ଏଥିରେ ଉଚ୍ଚାରିତ ବାକ୍ୟର ପ୍ରତିଧ୍ୱନିକୁ ରୂପ ଓ ବର୍ଣ୍ଣରେ ପୁନଃ ବିକଶିତ କରାଇ କାବ୍ୟର ଏକ ସମାନ୍ତରାଳ ଧ୍ୱନି ଓ ବର୍ଣ୍ଣରୂପ ସାର୍ଥକ ଭାବେ ସୃଷ୍ଟି କରାଯାଇ ପାରିଛି । ଅନ୍ୟତ୍ର ସ୍ରଷ୍ଟା ଦୃଢ଼ଭାବେ କହନ୍ତି କାବ୍ୟଭାଷାରୁ ଚିତ୍ରଭାଷାକୁ ଚିତ୍ରଭାଷାରୁ କାବ୍ୟମନ୍ତ୍ରକୁ ଏବଂ କାବ୍ୟମନ୍ତ୍ରରୁ ରୂପର ବର୍ଣ୍ଣାଳୀକୁ ଆଲୋକକୁ ଓ ଚେତନାକୁ ସଞ୍ଚରିଯିବା ଓ ସଞ୍ଚରେଇବା ଭିତରେ ଯେଉଁ ନିର୍ଲିପ୍ତ ଅନାସକ୍ତ ସର୍ଜନା ଶକ୍ତିର ମହତ୍ତ୍ୱ ଅଛି ତା କେବଳ ଭାରତ ମାଟିରେ ହିଁ ସମ୍ଭବ । (ପୃ ୬୦) । ପୁସ୍ତକରେ ଲବଣିର ଦେହ, ଗହମଖେତର ରଙ୍ଗ, ସବୁଜ ଘାସର ଗରିମା, ଡେଫୋଡିଲ୍‌ର ସଫାହସ, ମେରୁରୁ ମରୁଭୂମି, ଜନାକୀର୍ଣ୍ଣ ଜନପଦରୁ

Digitized by srujanika@gmail.com

ଜନଶୂନ୍ୟ ସରହଦ ଯାଏଁ, ଦୁଧସର ଭଳି ତୋଫା ଚିକ୍କଣ ଚାଦର, ଡେଫୋଡ଼ିଲ୍‌ର କଅଁଳ ତକିଆ, ସବୁଜ ରେଶମର ଉଷ୍ଣତା ଆଦି ବର୍ଣ୍ଣନା ତାଙ୍କ ଭାଷା ପ୍ରୟୋଗର କଳା କୁଶଳତା ବିଷୟରେ ଅବଗତ କରାଏ । ପୃଷ୍ଠା ୨୩, ୨୫, ୩୧,୩୨, ୩୫, ୩୬, ୫୧, ୭୩, ୯୯, ୧୦୦, ୧୦୫, ୧୧୦, ୧୧୪, ୧୨୮, ୧୩୦, ୧୩୧, ୧୪୪, ୧୪୪, ୧୫୬, ୧୭୪, ୧୮୨, ୧୮୫, ୧୮୭, ୧୯୧ରେ ଗୀତ-କବିତା-ଛନ୍ଦ ଉଦ୍ଧାର । ପୃଷ୍ଠା ୧୬୦ରେ ଚିଠି ଓ ଏଥିରେ 'ଇତି' ସ୍ଥାନରେ ରବର୍ଟ ମ୍ୟାକ୍‌ମିଲାନ + ଜୁଲିଆ+ ଡୋରେଥି ଏବଂ ୧୮୮ ପୃଷ୍ଠାରେ ଅଥର୍ବ ବେଦରୁ 'ଚତୁର୍ଥୀ ବିଧାନ' ପରମ୍ପରାର ଶାସ୍ତ୍ରୀୟତା ଓ ବ୍ୟାଖ୍ୟା ଭାଷା ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ଏହି ଚିତ୍ରୋପନ୍ୟାସରେ ଜୀବନର ସୂକ୍ଷ୍ମ ଅନୁଭବମାନଙ୍କୁ ନିଜ ଚିତ୍ରଭାଷାର ବର୍ଣ୍ଣାଳୀରେ ଚିତ୍ରିତ କରିଛନ୍ତି ଦିନନାଥ । ଏହି ଚିତ୍ରୋପନ୍ୟାସରେ ସ୍ରଷ୍ଟା ଦିନନାଥ କହନ୍ତି, 'ଗପ ଯାହା ନଦୀର ପାଣି ତାହା, ବହି ଯାଉଥିବ ଧାର ହୋଇ ।' ପାଠକ ଏହି କଥାର ସତ୍ୟତା ପ୍ରତ୍ୟେକ ପୃଷ୍ଠା, ପ୍ରତ୍ୟେକ ଧାଡ଼ିରୁ ଉପଲବ୍ଧି କରିଥାଏ । ଭାଷା ଦୃଷ୍ଟିରୁ ପ୍ରତିଟି ପୃଷ୍ଠା ବର୍ଣ୍ଣାଢ୍ୟ ହୋଇଥିବାରୁ ମନେହୁଏ ସମଗ୍ର ଚିତ୍ରୋପନ୍ୟାସଟି ଛବିଳ ଓ ଛଳଛଳ । ଏହି ଚିତ୍ରୋପନ୍ୟାସରୁ ବି ମନେହୁଏ ଦିନନାଥଙ୍କ ଭାଷାରେ ପ୍ରାଣବତ୍ତା ଓ କାବ୍ୟିକତା ସହ ସଂଳାପଧର୍ମିତା ସୁଲଭ ଭାଷା ସୂକ୍ଷ୍ମ ଓ ଗଭୀର । ଭାଷା କାବ୍ୟିକ ଓ କଥୋପକଥନଧର୍ମୀ । ଭାଷାର ପ୍ରୟୋଗରେ ରହିଛି ବିବିଧତା । ଭାଷା ବାହ୍ୟ ବ୍ୟାକରଣିତ ଗଠନ ଅପେକ୍ଷା ତା'ର ଅନ୍ତରଙ୍ଗ କଳାତ୍ମକ ସଂରଚନାର ଅଧିକ ମହତ୍ତ୍ୱ ଏହି ଚିତ୍ରୋପନ୍ୟାସରେ ସ୍ପଷ୍ଟ ।

**ଗଙ୍ଗାବତରଣ** ଜୀବନ ପ୍ରବାହର କାବ୍ୟ ଓ ରୂପାନ୍ୱେଷୀ ରୂପାୟନଙ୍କ କାଶୀ ଅନୁଭବ କାହାଣୀ । ଏହି କାହାଣୀ କେବଳ ରୂପାନନ୍ଦଙ୍କ ନିଜସ ନୁହେଁ, ଯେଉଁମାନେ ଉତ୍ତରଣର କାମନା ରଖି ଗଙ୍ଗାରେ ଅବତରିଛନ୍ତି, ତଥାଗତ ବୁଦ୍ଧଙ୍କଠାରୁ ସୁଇସ୍ ଶିଳ୍ପୀ ଏଲିସ୍ ବୋନର୍‌ଙ୍କ ଯାଏଁ, ସେମାନଙ୍କ ଆଶା, ଆକାଂକ୍ଷା ଓ ପ୍ରାପ୍ତି ଭିତରେ ଏହି ପ୍ରୟାସ ଓ ଉଲ୍ଲାସ ସୁଷମ୍ନାରେ କୁଣ୍ଡଳିନୀ ଭଳି ସୁପ୍ତ ଓ ଜାଗ୍ରତ । ଅବତରଣ ଗଙ୍ଗାଙ୍କଠାରୁ ଆରମ୍ଭ ଓ ଗଙ୍ଗାଙ୍କ ପାଖରେ ଶେଷ, ଅବତରଣର ଆରମ୍ଭ ଓ ଶେଷ ମଧ୍ୟରେ ଏହି ଉପନ୍ୟାସ କାଶୀଧାମରେ ଗୋଟିଏ ମାତ୍ର ବର୍ଷର କାହାଣୀ, ଚିତ୍ରକଳାର ଉତ୍ତରିତ ବର୍ଣ୍ଣବିଭାରେ ବିମଣ୍ଡିତ ଓ ଚିତ୍ରତତ୍ତ୍ୱରେ ରସାଣିତ । ଏହି ସଂକ୍ଷିପ୍ତ ସୂଚନା ସହ ଆରମ୍ଭ ହୋଇଛି ଦିନନାଥଙ୍କ ଚତୁର୍ଥ ଚିତ୍ରୋପନ୍ୟାସ 'ଗଙ୍ଗାବତରଣ' (୨୦୦୨) । ସମୁଦାୟ ଦୁଇଶହ ଏକସ୍ତରୀ ପୃଷ୍ଠା ବିଶିଷ୍ଟ ଏହି ଉପନ୍ୟାସଟି ସାତଟି ପ୍ରସ୍ଥରେ ବିଭକ୍ତ । ଚିତ୍ରୋପନ୍ୟାସର ପ୍ରାରମ୍ଭରେ ଥିବା ଅମୂର୍ତ୍ତ ସଂଳାପ ଗୋଟିଏ ଦର୍ପଣ ସଦୃଶ ଏବଂ ଏଥିରେ ପ୍ରତିବିମ୍ବିତ ହୋଇଛି ସମ୍ପୂର୍ଣ୍ଣ ଗଙ୍ଗାବତରଣ । ଉଭୟ ଭାଷା ଓ ଶୈଳୀ ଦୃଷ୍ଟିରୁ ବିଚାର କଲେ ଏହି ଅମୂର୍ତ୍ତ ସଂଳାପ ନିଆରା ଭଳି ମନେହୁଏ । ଏହି ଉପନ୍ୟାସରେ ଭାଷାର ପ୍ରୟୋଗ କରି ପାଠକମାନଙ୍କୁ ଭାଷା ଦୃଷ୍ଟିରୁ ବ୍ୟାପକତା ଓ ବିବିଧତା ପ୍ରଧାନ କରିବାରେ ସଫଳ ହୋଇଛନ୍ତି ସ୍ରଷ୍ଟା ଦିନନାଥ । ତାଙ୍କ ଶବ୍ଦଗୁମ୍ଫନ ଶୈଳୀ ଭାଷା ପ୍ରୟୋଗ କ୍ଷେତ୍ରରେ ତାତ୍ପର୍ଯ୍ୟପୂର୍ଣ୍ଣ । ଉଦାହରଣ ସରୂପ-ଉଷ୍ଣ ପରିଚୟ, ଅର୍ଜିତ ଆତ୍ମୀୟତା, ନିର୍ଲିପ୍ତ ମଣିଷ, କିମ୍ଭୀରପିଠିଆ ରାସ୍ତା, ଲହସି ଆସେ, କମଳ ଭଳି ସପ୍ନିଳ ଉଲ୍ଲେଖଯୋଗ୍ୟ । ଭାଷା ବିଜ୍ଞାନ (Linguistics)ର ଜଣେ ଗବେଷକ ଭାବେ ଏହି ଲେଖକ ଅନୁଭବ କରିଛି ଯେ ଭାଷାର ଗଠନ (structure) ଓ ବ୍ୟବହାର (function) ଭାଷା ବିଜ୍ଞାନର ଗବେଷଣା ପାଇଁ ଗୁରୁତ୍ୱପୂର୍ଣ୍ଣ । ତେବେ ଭାଷାର ପ୍ରୟୋଗ ଓ ବ୍ୟବହାର ହିଁ ସାହିତ୍ୟକୁ ରସାଣିତ କରିଥାଏ । କହିବା ବାହୁଲ୍ୟ, ସାହିତ୍ୟରେ ଭାଷାର ତାତ୍ତ୍ୱିକ ଦିଗ ପରିବର୍ତ୍ତେ ବ୍ୟବହାରିକ ବାସ୍ତବତା ହିଁ ବିଶେଷ ଗୁରୁତ୍ୱ ପାଇଥାଏ । ଏହି ପରିପ୍ରେକ୍ଷୀରେ ସ୍ରଷ୍ଟା ଦିନନାଥଙ୍କ 'ଗଙ୍ଗାବତରଣ'ରେ ସ୍ଥାନିତ ଛତିଶଟି ଚମତ୍କାର ଡାଏରୀ ପୃଷ୍ଠା ବିଚାର୍ଯ୍ୟ । ସେହିପରି ପ୍ରତ୍ୟେକ ପ୍ରସ୍ଥର ପ୍ରାରମ୍ଭରେ ଔପନ୍ୟାସିକ ସନ୍ଥକବୀରଙ୍କୁ ସ୍ଥାନ ଦେଇ ସମ୍ମାନର ସହ ସ୍ମରଣ କରିବା ଆକର୍ଷଣୀୟ । ଭାଷାର ପ୍ରୟୋଗ ଦୃଷ୍ଟିରୁ ଏହି ଉପନ୍ୟାସର ଆଉ ଏକ ଦୃଷ୍ଟି ଆକର୍ଷଣକାରୀ ବିଷୟ ହେଉଛି, ଆବଶ୍ୟକତା ଅନୁସାରେ ସ୍ରଷ୍ଟା ଦିନନାଥ ଓଡ଼ିଆ ଭାଷା ବ୍ୟତିରେକେ ଅନ୍ୟ ଭାଷା ଯଥା: ହିନ୍ଦୀ, ଭୋଜପୁରୀ, ଉର୍ଦ୍ଦୁ,

Digitized by srujanika@gmail.com

ସଂସ୍କୃତ ଭାଷାର ବ୍ୟବହାର କରିଛନ୍ତି । ସ୍ରଷ୍ଟା ଦିନନାଥଙ୍କ ଏହି ଭାଷା ପ୍ରୟୋଗରୁ ତାଙ୍କ ଭାଷା ଜ୍ଞାନ ବିଷୟରେ ବୁଝାପଡ଼େ । ସେହିପରି କବୀରଙ୍କ ଦୋହା, ସଭାବ କବି ଗଙ୍ଗାଧର ମେହେରଙ୍କ କବିତା, ଶ୍ରୀମଦ୍ ଭଗବତ ଗୀତାର ଉଦ୍ଧୃତାଂଶ ଇତ୍ୟାଦି ସହ ନିଜର କାବ୍ୟିକ ଉପସ୍ଥାପନ ଭାଷାକୁ କରିଛି ବର୍ଣ୍ଣାଢ଼୍ୟ । ଆମର ଅଭୁଲା ଓ ଅପାଶୋରା ଅତୀତ ପ୍ରତି ଶ୍ରଦ୍ଧାଭାବ ପୋଷଣ କରି ସ୍ରଷ୍ଟା ଦିନନାଥ ପୁରାଣ, କିମ୍ବଦନ୍ତୀ ଓ ଇତିହାସରୁ ପ୍ରସଙ୍ଗ ଉଦ୍ଧାରପୂର୍ବକ ଚମତ୍କାର ଭାଷାରେ ରୂପାୟନ କରିଛନ୍ତି । ଭାଷାର ପ୍ରୟୋଗ ଓ ପ୍ରାସଙ୍ଗିକତାକୁ ସେ 'ଗଙ୍ଗାବତରଣ'ର ପୃଷ୍ଠା ୨୩୯ରେ ଡାଏରୀ ପୃଷ୍ଠା ଉପସ୍ଥାପନ ଛଳରେ ସୂଚାଇଛନ୍ତି ଯେ 'ଯିମିତି ଆମେ କବିତାଟିଏ ପାଠକରୁ, ତା'ର ପ୍ରତ୍ୟେକ ଶବ୍ଦକୁ ଆଦରରେ ଆଉଁଶି ଦେଉ, ସ୍ନେହରେ ଚୁମିଦେଉ, ସେଥିରେ ଗୁନ୍ଥିତ ଛନ୍ଦକୁ ମୁକୁଳେଇ ଦେଇ ତା'ର ସ୍ୱରକୁ, ଭାଷାକୁ ଢିଭରେ ମିଳେଇ ଦେଉ, ସିମିତ ଚିତ୍ର ଓ ଭାସ୍କର୍ଯ୍ୟକୁ ଅବବୋଧ କରାଯାଏ । ଚିତ୍ରର ରୂପ, ବର୍ଣ୍ଣ, ଭାସ୍କର୍ଯ୍ୟର ଆକାର ଓ ଛନ୍ଦକୁ ଆଖିରେ ଏବଂ ମନରେ ଫେଣ୍ଟିଦେଇ ତା'ର ସୌରଭକୁ ଘେନିଲେ ହିଁ କଳାର ମହତ୍ତ୍ୱ ବୁଝିହୁଏ, ମୋ' ଅନ୍ତରାମ୍ୱା ସୌଭାଗ୍ୟମୟ ଯଶମାନଙ୍କରେ ମୋତେ ପ୍ରତିଭାତ ହେଉଛନ୍ତି । କିନ୍ତୁ ଏ ଅନୁଭୂତି ଶବ୍ଦରେ କିଭଳି ପ୍ରକାଶ କରିହେବ ? ଏହା ହିଁ କାବ୍ୟର ଗହନ ଗହଳ ଅନୁଭୂତି । ଭାଷା କିନ୍ତୁ ଅନ୍ୟ ଏକ ଉତ୍ତରିତ ପ୍ରସ୍ଥରେ ମନ୍ତ୍ରିତ ନ ହେଲେ ତା'ର କଳାତ୍ମକତା ପ୍ରସ୍ଫୁଟିତ ହୋଇପାରିବନି ।' ଭାଷା ଦୃଷ୍ଟିରୁ ବିଚାର କଲେ 'ଗଙ୍ଗାବତରଣ'ର ସାତଟି ପ୍ରସ୍ଥ ମଧ୍ୟରୁ ପ୍ରଥମ ପ୍ରସ୍ଥରେ ଉମାଧର ଓ ଲତିକାନନ୍ଦଙ୍କ ହିନ୍ଦୀ ସଂଳାପ, ତାରିଣୀ ଚରଣଙ୍କ ଋଷିକୂଲ୍ୟା କାବ୍ୟକୁ ଗଙ୍ଗା କବିତାରେ ପ୍ରକାଶ, ଭଗବତ ଗୀତାର ବିଶ୍ୱରୂପ ଦର୍ଶନ ଯୋଗର ଉଦ୍ଧୃତାଂଶ, ଦ୍ୱିତୀୟ ପ୍ରସ୍ଥରେ 'ବନାରସ କୀ ସୁବହ ଲକ୍ଷ୍ନୌ କା ସାମ୍'ର ଉଲ୍ଲେଖ ଓ ବ୍ୟାଖ୍ୟା, ଭୋଜପୁରୀ ଭାଷାର ସଂଳାପ, ଗୋସ୍ୱାମୀ ତୁଳସୀ ଦାସଙ୍କ 'ରାମଚରିତ ମାନସ'ର ଦୋହା ଓ ଚୌପାଇ ଉପସ୍ଥାପନ, କବୀର ଓ ଗଙ୍ଗାଧରଙ୍କ ମଧ୍ୟରେ ତୁଳନାତ୍ମକ ଚିତ୍ର ପ୍ରଦାନ, ଏଗାରଟି ଡାଏରୀ ପୃଷ୍ଠା ଉପସ୍ଥାପନ; ତୃତୀୟ ପ୍ରସ୍ଥରେ ତିଳଖୁଡ଼ୀ ମୁହଁରେ ଗାଉଁଲୀ ଭାଷାର ପ୍ରୟୋଗ; ଚତୁର୍ଥ ପ୍ରସ୍ଥରେ କହାଓ୍ୱତ୍ ଓ ତା'ର ସରଳାର୍ଥ, ହଜରତ ନସିଖଙ୍କ କବିତାପଦ ଉଦ୍ଧାର, ହାଇଦର ଅଲ୍ଲୀର କଥକ ପ୍ରଶିକ୍ଷଣ ପ୍ରସଙ୍ଗ, ଠୁମ୍‌ରୀ ଓ ଦାଦରାର ବିଶେଷ ଉଲ୍ଲେଖ; ପଞ୍ଚମ ପ୍ରସ୍ଥରେ ତଥାଗତ ଓ କୌଣ୍ଡିନ୍ୟ ପ୍ରସଙ୍ଗ; ଷଷ୍ଠ ପ୍ରସ୍ଥରେ ପୈପଲାଦ କଚ୍ଛର ଉଦ୍ଧାର, ପଚିଶଟି ଡାଏରୀ ପୃଷ୍ଠା ଉପସ୍ଥାପନ, କବିତା ପଙ୍କ୍ତି ଉଦ୍ଧାର ଏବଂ ସପ୍ତମ ପ୍ରସ୍ଥରେ ରୂପାନନ୍ଦ ଓ ଭରତଙ୍କ କଥୋପକଥନ ଅପୂର୍ବ ଭାଷାରୀତିର ସାକ୍ଷର ବହନ କରିଥାଏ ।

**ଭାଷାର ପ୍ରାୟୋଗିକ ପୁଷ୍କଳତା ଓ ବ୍ୟାବହାରିକ ବୈଚିତ୍ର୍ୟ ଦୃଷ୍ଟିରୁ ଦିନନାଥଙ୍କ ଚାରୋଟି ଚିତ୍ରୋପନ୍ୟାସ ସାୟୋନାରା, ପୁନର୍ନବା, ଶ୍ଳୋକଛନ୍ଦ ଓ ଗଙ୍ଗାବତରଣ ସଫଳ ସୃଷ୍ଟି । ପ୍ରତ୍ୟେକ ଚିତ୍ରୋପନ୍ୟାସର ନାମକରଣ ବି ଭାଷା ଦୃଷ୍ଟିରୁ ଅପୂର୍ବ ଓ ଅନନ୍ୟ । ନାମକରଣ ଓ ସଂକ୍ଷିପ୍ତ ଓ ସାରଗର୍ଭକ, ସାଙ୍କେତିକ ଓ ସୂଚନାତ୍ମକ । ତାଙ୍କ ଚିତ୍ରୋପନ୍ୟାସ ସମଗ୍ରରେ ଭାଷାର ସୂକ୍ଷ୍ମତା ଓ ଗଭୀରତାକୁ ମାପିହୁଏ । ଏହି ଭାଷାରେ ଅଛି ପ୍ରାଣବତ୍ତା ଓ କାବ୍ୟିକତା ତଥା ସଂଳାପଧର୍ମିତା ।** ଫଳରେ ଚିତ୍ରୋପନ୍ୟାସ ସମଗ୍ରର ଭାଷା ହୋଇଛି ଚିତ୍ରଧର୍ମୀ ଓ ଜୀବନ୍ତ । ଭାଷା ବି ହୋଇଛି ଆତ୍ମୀୟତା ଓ ଆନ୍ତରିକତାର ଉପାଦାନ । ଏହି ଭାଷା ପାଠକକୁ ଛନ୍ଦିଦିଏ, ବାନ୍ଧିଦିଏ । ମୁଗ୍ଧ କରେ, ମୋହିତ ବି କରେ । ଦିନନାଥଙ୍କ ପ୍ରତ୍ୟେକ ବ୍ୟାଖ୍ୟା ଓ ବର୍ଣ୍ଣନା, ଅନୁଭୂତି ଓ ଅଭିବ୍ୟକ୍ତି, ଶବ୍ଦଚୟନ ଓ ଶବ୍ଦ ସଂଯୋଜନା, ବାକ୍ୟ ଗଠନର ଚମତ୍କାରିତା, ଅତୀତର ଭାଷା ଓ ଆଜିର ଭାଷା ମଧ୍ୟରେ ସମନ୍ୱୟ, ଦୈନନ୍ଦିନ ବ୍ୟବହାରରୁ ହଜି ହଜି ଯାଉଥିବା ବା ଦୂରେଇ ଯାଉଥିବା ଶବ୍ଦ ଗୁଡ଼ିକ ସାଉଣ୍ଟି ପରଷିଦେବା ବା ସଜେଇଦେବା ତାଙ୍କ ଭାଷା ପ୍ରୟୋଗର କୁଶଳତା ସମ୍ପର୍କରେ ସୂଚନା ଦେଇଥାଏ । ତେଣୁ କୁହାଯାଇପାରେ, ବର୍ଣ୍ଣାଢ଼୍ୟ ଓ ବୈଚିତ୍ର୍ୟପୂର୍ଣ୍ଣ ଭାଷା ପ୍ରୟୋଗ ଦୃଷ୍ଟିରୁ ଦିନନାଥଙ୍କ ଚିତ୍ରୋପନ୍ୟାସ ଯେତିକି ଚିତ୍ରିତ ଓ ଚମତ୍କୃତ, ସେତିକି ଅଭୁଲା ଓ ଅପାଶୋରା ।

Digitized by srujanika@gmail.com

ଗୌରହରି ରାଉତ (ରୂପକଳ୍ପ)

## ଚିତ୍ରଭାଷାର ଅନନ୍ୟ ବ୍ୟକ୍ତିତ୍ୱ : ଡକ୍ଟର ଦିନନାଥ ପାଠୀ

ଓଡ଼ିଶାର ଯେଉଁ କେତେଜଣ ସମସାମୟିକ ଚିତ୍ରଶିଳ୍ପୀ ସାଧନା ପଥରେ ଅଗ୍ରଗାମୀ, ସେମାନଙ୍କ ମଧ୍ୟରେ ଚିତ୍ରଶିଳ୍ପୀ ଡକ୍ଟର ଦିନନାଥ ପାଠୀ ଏକ ଅନନ୍ୟ ଭାସ୍ୱର ସ୍ୱର୍ଚ୍ଚିତ ନାମ । ପଙ୍କରୁ ପଦ୍ମ ଫୁଟିଲାପରି ଏହି ସ୍ରଷ୍ଟାପୁରୁଷ ନିୟତିର ଅତି ନିଷ୍ଠୁର, ବନ୍ଧୁର, କଙ୍କରିଳ ଏବଂ କଣ୍ଟକିତ ପଥଦେଇ ଆଗେଇ ଚାଲିଛନ୍ତି ଚରୈବତି ...... ଚରୈବତି, ନିଶାରେ । ପଶ୍ଚାତ୍ ଦୃଷ୍ଟି ନାହିଁ, ଫେରି ଚାହିଁବାକୁ ହାତରେ ସମୟ ବି କମ୍ । ଜନ୍ମ ଯାହାଙ୍କର ଚାଲିବାକୁ ସେ ଥକିଗଲେ ହେବ କି ? ଏହି ସତ୍ୟ ହିଁ ପ୍ରମାଣିତ ହୋଇଯାଇଛି ତାଙ୍କ ସୃଷ୍ଟିଶୀଳ ବ୍ୟକ୍ତିତ୍ୱ ନିକଟରେ । ପ୍ରକୃତ ସ୍ରଷ୍ଟା ଜୀବନର ଅନୁଭୂତିକୁ, ସମୟର ବହମାନ ସତ୍ୟ ଗତିକୁ ରୋଧ୍ ଦେଇପାରେ ତା' ସୃଷ୍ଟି ଭିତରେ । ଏ ଦୃଷ୍ଟିରୁ ବିଚାର କଲେ ଡକ୍ଟର ପାଠୀ ସେଇ ଫର୍ମୁଲାରେ ଗଢ଼ା ଜଣେ କଳାତ୍ମକ ଅଭିବ୍ୟକ୍ତି । ଯୁଆନ୍‌ର କୁଆରରେ ମତୁଆଲା ଜଣେ ପକ୍‌କେଶୀ ଯୁବକ । ଉତ୍ତରପଚାଶରେ ସେ ସୃଷ୍ଟିଶୀଳ, ପ୍ରଗଲ୍‌ଭ । ଏବେ ବି ତାରୁଣ୍ୟର ଝଙ୍କାରରେ ଝଙ୍କୃତ, ଆଭ୍ୟନ୍ତରୀଣ ଯୁବ ଉଦ୍ଦୀପନାର ଆନ୍ଦୋଳନରେ ସଦା ଆନ୍ଦୋଳିତ, ଚଳଚଞ୍ଚଳ । ଦୂରଦିଗନ୍ତକୁ ପ୍ରଥମେ ଛୁଇଁବାର ଆଶାନେଇ ଏଇ ଧୂରୀଣ ନୀଳହ୍ରଦର ଚିତ୍ରକରଟି ଯେତେଦୂର *ଆଗେଇଛନ୍ତି - ସେତେ ରକ୍ତ ଝରିଛି ତାଙ୍କର ପାଦରୁ, ସେତେଥର ପକ୍ଷ କଟିଛି ତାଙ୍କର ।* ତଥାପି ଶ୍ରାନ୍ତ କ୍ଲାନ୍ତ ହୋଇ ସେ ଅଟକି ଯାଇନାହାନ୍ତି କି ଘୁମନ୍ତ ଆଖିରେ ଟିକିଏ ବିଶ୍ରାମ ନେଇନାହାନ୍ତି । ଅଧିକନ୍ତୁ ଚିଲିକା ପାଣିରେ ଛାଇ ଦେଖିବାର ସପ୍ନ ବାରମ୍ବାର ତାଙ୍କ ଆଖିରେ ଧରାଦେଇଛି । ସାତବର୍ଣ୍ଣର ସକାଳ ସତେ ଯେପରି ସବୁରଙ୍ଗକୁ ଝାଡ଼ିଦେଇଛି ତାଙ୍କର ସମସ୍ତ ସୃଷ୍ଟି ଉପରେ । ଏକ ଅବ୍ୟକ୍ତ, ଅତୃପ୍ତ, ଅବଶୋଷର ପ୍ରାଣ ନେଇ ସେ ଖୋଜି ଚାଲିଛନ୍ତି ନିଜକୁ ପ୍ରକାଶ କରିବାର ରାହା । ସେ ରାହା ଏବେ ବି ଅବ୍ୟାହତ ..... ।

**ଡକ୍ଟର ପାଠୀଙ୍କ ବ୍ୟକ୍ତିତ୍ୱର ମୂଲ୍ୟାୟନ ପାଇଁ ଦୁଇଟି ପର୍ଯ୍ୟାୟ ଅନିବାର୍ଯ୍ୟ ବୋଲି ମନେହୁଏ । ଗୋଟିଏ ହେଉଛି ତାଙ୍କର ସୃଷ୍ଟିଶୀଳ ପ୍ରଗଲ୍‌ଭ ଚେତନା ଏବଂ ଅନ୍ୟଟି ଓଡ଼ିଆ ଜାତିର ସାଂସ୍କୃତିକ ଜାଗରଣ, ସାଂସ୍କୃତିକ ସାଭିମାନ ପାଇଁ ତାଙ୍କର ଐକାନ୍ତିକ ଭୂମିକା । ଅନ୍ୟ ଅର୍ଥରେ କହିଲେ ସାଧନାର ପଥେ ଚାଲିବାର ନିଶା ଓ ଦ୍ୱିତୀୟଟି ହେଲା ଓଡ଼ିଆ ଜାତିର କଳା ସଂସ୍କୃତି ପାଇଁ ଆତ୍ମବଳିଦାନ ।**

୧. ସାଧନା ପଥେ - ଭାବବିନ୍ଦୁରେ ମଞ୍ଜୁଳ ମାନସ ମର୍ମରିତ ହୋଇ ଆତ୍ମ -ନିବନ୍ଧ ହେଲେ ବ୍ୟକ୍ତିର ସକଳ ଜାଗତିକ ସତ୍ତା ଓ ଆତ୍ମ ପ୍ରତ୍ୟୟ ହ୍ରାସ ପାଏ ଏବଂ ସେତେବେଳେ ସେ ଏକ ନିତ୍ୟ ଆନନ୍ଦର, ସତ୍ୟ-ଶିବ-ସୁନ୍ଦରର ସତ୍ତାକୁ ନିଜ ଭିତରେ ଉପଲବ୍ଧି କରେ । ଏହା କେବଳ ଜଣେ ସାର୍ଥକ ସାଧକ ପକ୍ଷରେ ସମ୍ଭବ । ଐଶ୍ୱରୀୟ ଦିବ୍ୟ ଚେତନାରେ ତଲ୍ଲୀନଥିବା ଶ୍ମଶ୍ରୁଧାରୀ ଯୋଗୀ ହେଉ, ପ୍ରକୃତି ବିମୁଗ୍ଧ କବି ଅଥବା ଶିଳ୍ପୀ ହେଉ - ସାଧନାର ପଥେ ସେଇ ସତ୍-ଚିତ୍-ଆନନ୍ଦର ଶାଶ୍ୱତ ସତ୍ତା ପାଇଁ ବୋଧହୁଏ ଏମାନେ ପ୍ରଗଲ୍‌ଭ, ପାଗଳ । ସମୟର ରସଘନରେ ନିଜର ପ୍ରାଣକୁ ଆପ୍ଲୁତ କରିବାରେ ଏମାନଙ୍କର ମୋକ୍ଷ, ମୁକ୍ତି ଆଉ ନିର୍ବାଣ.......... । ଏ ପରିପ୍ରେକ୍ଷୀରେ ଡକ୍ଟର ପାଠୀଙ୍କର ସାଧନାମୟ ବ୍ୟକ୍ତିସତ୍ତାକୁ ଆଲୋଚନା କରାଯାଉ ।

ପିଲାଦିନୁ ଭାଇନାଙ୍କ ସଙ୍ଗେ ମିଶି ସଢ଼େଇ ରଙ୍ଗରେ ମୂର୍ତ୍ତି ରଙ୍ଗେଇବାଠାରୁ ଆରମ୍ଭ କରି ଆଜିର ଗଦାଗଦା ସମକାଳୀନ ଚିତ୍ର ସୃଷ୍ଟି-ଯା' ଭିତରେ ତାଙ୍କ ସାଧନାର ଦୀର୍ଘ ଇତିହାସ ଲୁଚିରହିଛି । ଏହି ଇତିହାସ ପୁଣି ପ୍ରଭାବିତ କରିଛି ଅନେକ ଶିଳ୍ପୀଙ୍କୁ । ମୃଣ୍ମୟ ମୂର୍ତ୍ତିରେ ରଙ୍ଗ ମାଖୁଥିବା ସେଦିନର

Digitized by srujanika@gmail.com

ଶିଶୁ ହାତରୁ ଆଜି ଉତୁରି ପଡ଼ିଛି ଅନେକ କଳାସୃଷ୍ଟି, ଯାହା ଓଡ଼ିଆ ମାଟିର ଗନ୍ଧକୁ ପହଞ୍ଚାଇ ପାରିଛି ଆନ୍ତର୍ଜାତିକ କଳା ଆନ୍ଦୋଳନ କ୍ଷେତ୍ରରେ । ବିଶେଷକରି ବୈଷ୍ଣବୀୟ ପ୍ରେମତତ୍ତ୍ୱକୁ ସ୍ୱକୀୟ ଶିଳ୍ପୀସୁଲଭ ବର୍ତ୍ତୁଳ ରୂପଗତି ଘନବର୍ଣ୍ଣବିନ୍ୟାସରେ ଅତି ମାର୍ମିକ ଭଙ୍ଗୀରେ ସେ କ୍ୟାନ୍‌ଭାସ୍‌ରେ ଉତ୍‌କୀର୍ଣ୍ଣ କରିଥିବାର ଦେଖାଯାଏ । ବିରହିଣୀ ଶ୍ରୀରାଧାର ଆଭ୍ୟନ୍ତରୀଣ ଭାବଧାରା, ପ୍ରୀତିରଙ୍କ ଶ୍ରୀକୃଷ୍ଣଙ୍କର ଆକୁଳ ପ୍ରେମ ନିବେଦନର ଚିତ୍ରକଳ୍ପ ଭିତରେ ଶିଳ୍ପୀଙ୍କର ନିଜସ୍ୱ ବ୍ୟକ୍ତିଗତ ଆବେଦନ ସତେ ଯେପରି ଆପଣା ଛାଏଁ ଫୁଟିଉଠିଛି । ଜୟଦେବଙ୍କର ଗୀତଗୋବିନ୍ଦ ଉପରେ ଆଧାରିତ ତାଙ୍କର ଅନେକ ଛବିରୁ ଓଡ଼ିଆ ସଂସ୍କୃତି, ଶୈଳୀ ବାରି ହୋଇପଡ଼େ । ଏସବୁ କଳା ସୃଷ୍ଟି ପ୍ରତୀକାତ୍ମକ ହେଲେ ମଧ୍ୟ ଏଥିରେ ଯେ ବଳିଷ୍ଠ ବାସ୍ତବବାଦର ସ୍ୱର ରହିଛି, ଏହା କଳାକୃତିର ଅବଲୋକନରୁ ଅନୁଭୂତ ହୁଏ । ପ୍ରାଚ୍ୟ କଥାବସ୍ତୁ ଉପରେ ସେ ନିର୍ମାଣ କରନ୍ତି ପାଶ୍ଚାତ୍ୟ ଶୈଳୀର ତାଜ୍, ଯାହାଫଳରେ କି ପ୍ରାଚ୍ୟ ପାଶ୍ଚାତ୍ୟର ସମନ୍ୱୟରେ ତାଙ୍କର ସୃଷ୍ଟି ହୁଏ ଅନନ୍ୟ ଭାସ୍ୱର । ନିଷ୍ପେଷିତ ମଣିଷମାନଙ୍କ ପ୍ରତି ଦରଦ ମଧ୍ୟ ତାଙ୍କର ଅନେକ ସୃଷ୍ଟିକଳ୍ପରେ ପ୍ରତିଫଳିତ । ବୈଦୁର୍ଯ୍ୟଖଚିତ ଏକ ସ୍ୱର୍ଣ୍ଣ ସିଂହାସନ ଉପରେ ରାଜମୁକୁଟ ଏବଂ ସେଇ ସିଂହାସନ ତଳେ ଛିଣ୍ଡା ଘୋଦର ଘୋଡ଼ିହୋଇ ଶୋଇଥିବା ଏକ ନୁଖୁରା ମଣିଷ - ଏଇ ଦୁଇ ଜୀବନଧାରାର ପ୍ରଭେଦ (ଏକ ଦିଗେ ଅହମିକାର ପ୍ରତୀକ ଭାବରେ ସିଂହାସନ ଏବଂ ରାଜ ମୁକୁଟର ଭାବପୂର୍ଣ୍ଣ ବର୍ଣ୍ଣବିନ୍ୟାସ ଓ ଅନ୍ୟ ଦିଗେ ଛିଣ୍ଡା ଘୋଦର ତଳେ କୁକ୍କୁରିକାକୁରି ହୋଇ ଥରିଯାଉଥିବା ସମାଜର ଅବହେଳିତ ନିଷ୍ପେଷିତ ଜୀବନର ବଞ୍ଚିବା ପାଇଁ ଦୁର୍ବାର ଆକାଂକ୍ଷା ଭିତରେ ସେ ସାମ୍ୟବାଦକୁ ସ୍ୱାଗତ କରନ୍ତି । ଏ ଛବିଟି ଅତ୍ୟନ୍ତ ପ୍ରାଣସ୍ପର୍ଶୀ ହୋଇପାରିଛି ।

ପ୍ରତୀକ ପାଇଁ ସେ ଅନେକ ଚିତ୍ରକଳ୍ପ, ମିଥ୍, ଇମେଜ୍‌ର ଆଶ୍ରୟ ନେଇଥିଲେ ହେଁ ତାଙ୍କର ଚିତ୍ରକଳା ମୁଖ୍ୟତଃ 'ମିଥ୍'ର ଭିତ୍ତି ଉପରେ ପ୍ରତିଷ୍ଠିତ । ତାଙ୍କର 'ମିଥ୍' ପ୍ରୟୋଗରେ ପ୍ରାଚୀନତା ଚେଇଁଉଠି ସତେଯେପରି ସାଂପ୍ରତିକ ଆଡ଼କୁ ଦୃଷ୍ଟି ନିକ୍ଷେପ କରିଛି । ଶ୍ରୀରାଧାଙ୍କର ପ୍ରୀତିତତ୍ତ୍ୱକୁ ରୂପ ଦେବାରେ ଯେପରି 'ମିଥ୍'ର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୋଇଥାଏ, ସେହିପରି ଜୟଦେବଙ୍କର ଗୀତଗୋବିନ୍ଦ ଆଧାରିତ ଛବିରେ 'ମିଥ୍' ହିଁ ମୁଖ୍ୟ ଭାବବିନ୍ଦୁ ହୋଇଉଠିଛି । ଆହ୍ଲାଦିନୀ ଶକ୍ତି ରାଧାଙ୍କର ରୂପ ସୃଷ୍ଟିରେ ଏବଂ ପରମ ପ୍ରେମମୟ ଶ୍ରୀକୃଷ୍ଣଙ୍କର ଶୃଙ୍ଗାରିକ ଚେତନାର ବର୍ଣ୍ଣବିଭାକୁ ଆହୁରି ପ୍ରାଣବନ୍ତ କରିବା ପାଇଁ ସେ ଅନେକତ୍ର କଦମ୍ବବୃକ୍ଷ, ପଦ୍ମପୋଖରୀ ଏବଂ ସେଥିରେ ମାଛ, ବକପନ୍ତି, ଶୁକପକ୍ଷୀକୁ ମାଧ୍ୟମ ଭାବରେ ଗ୍ରହଣ କରିଛନ୍ତି । ଏସବୁ ଚିତ୍ର ସୃଷ୍ଟି ଭିତରେ କେଉଁଠି ବିପ୍ରଲମ୍ଭ ଶୃଙ୍ଗାର ପ୍ରାଣସ୍ପର୍ଶୀ ଭାବରେ ଉତ୍‌କୀର୍ଣ୍ଣ ହୋଇଛି ତ ଆଉ କେଉଁଠି ସଂଭୋଗ ଶୃଙ୍ଗାର ମର୍ମସ୍ପର୍ଶୀ ଭାବରେ ଚେଇଁଉଠିଛି । ଯଦିଓ ଓଡ଼ିଶାର ଶିଳ୍ପୀମାନଙ୍କ ଭିତରେ ଏନ୍. ଚନ୍ଦ୍ରଶେଖର ରାଓଙ୍କର ଚିତ୍ରକଳାସମୂହ ଏହି କଥାବସ୍ତୁ ଉପରେ ଆଧାରିତ, ମାତ୍ର ରୂପରଚନା, ବର୍ଣ୍ଣବିନ୍ୟାସ ଶୈଳୀ, ଭାବଗମ୍ଭୀର ଅଭିବ୍ୟକ୍ତି ଏବଂ ସର୍ବୋପରି 'ମିଥ୍'ରେ ସାଂପ୍ରତିକ କଳାକୌଶଳର ସ୍ୱାତନ୍ତ୍ର ପାଇଁ ଡକ୍ଟର ପାଠୀ ହିଁ ଅନନ୍ୟ ଭାବରେ ବାରିହୋଇ ପଡ଼ନ୍ତି । **'କ'ଣ କୁହାଗଲା, ତାହା ବଡ଼ କଥା ନୁହେଁ, ମାତ୍ର କି ଭଙ୍ଗୀରେ କୁହାଗଲା ତାହା ହିଁ ମୁଖ୍ୟ ।' କହିବା ବାହୁଲ୍ୟ, କଳାର ନିର୍ଯ୍ୟାସ ଏହି ତତ୍ତ୍ୱକୁ ସ୍ୱୀକାର କରେ ଏବଂ ମୂଲ୍ୟାୟନ ଦୃଷ୍ଟିରୁ ଡକ୍ଟର ପାଠୀ ଏଥିରୁ ବାଦ୍ ପଡ଼ନ୍ତିନି ।**

ବ୍ୟାଘ୍ରାରୋହଣ ଛବିରେ ସାମ୍ପ୍ରତିକ ମଣିଷର ଜୀବନଯନ୍ତ୍ରଣାର ଛାପ ସୁସ୍ପଷ୍ଟ । ଅଦୂରରେ ଦୁଇ ନୀଳନୀଳ ବାଇଗଣୀ ପାହାଡ଼ ଉପରେ ନିଜ ଚିତ୍ରିତ ପଟା ପଟା ଦେହ ଦେଖେଇ ବାଘ ଚେଇଁ ଶୋଇଛି । ପାଟିରେ ଲାଳସା, ମନରେ ସଂଭୋଗର ନିଶା, ମଣିଷ ରକ୍ତର ସ୍ୱାଦୁ ଘାଖିଥିବା ବାଘ । ପାହାଡ଼ ତଳେ ନୀଳ ହ୍ରଦ । ସ୍ଥିର ଜଳ, ପଦ୍ମ-ସୁଶୋଭିତ । ତା'ରି କୂଳରେ ମାଂସଳ ଅପରୂପ ନାରୀଟିଏ । ତା'ର ଅଙ୍ଗବିଭା ବିଛେଇ ଦେଇ ଶୋଇ ରହିଛି । ସେହି ସୌନ୍ଦର୍ଯ୍ୟ ଭିତରେ କାମନାର ଅଦମ୍ୟ ଉଲ୍ଲାସ ଲହଡ଼ି ଖେଳୁଛି । ପଟା ପଟା ବାଘର ଦେହଭଳି, କି ସୁନ୍ଦର ଚିତ୍ରକଳ୍ପର ବିନ୍ୟାସ !

Digitized by srujanika@gmail.com

**ବ୍ୟାଘ୍ର ଓ ପଦ୍ମବନ** ଆଉ ଏକ ବଳିଷ୍ଠ ରୂପକଳ୍ପ । ପଦ୍ମବନ କୁଆଡ଼େ ରାଧା ଓ ବ୍ୟାଘ୍ର କୃଷ୍ଣଚନ୍ଦ୍ର । ବାଘ ପଦ୍ମବନ ହୁଡ଼ାରେ ଜଗିରହିଛି ଲମ୍ଫଦେବ, ଅବଗାହିବ, ପ୍ରେମରସ ଆସ୍ୱାଦନ କରିବ । ରାଧାଙ୍କୁ ପ୍ରତୀକ ଭାବେ ପ୍ରତିଭାତ କରୁଥିବା ପଦ୍ମବନର ଅପରୂପ ଲାବଣ୍ୟରେ ବାଘ ଉଚ୍ଚକିତ । ଚମତ୍କାର ମେଟାଫର୍‌ର ପ୍ରୟୋଗ ।

ଏତଦ୍‌ବ୍ୟତୀତ ସେ କଳାକ୍ଷେତ୍ରରେ ଅନ୍ୟ ଅନେକ ବିଭାଗ ଉପରେ ହସ୍ତଚାଳନା କରିଛନ୍ତି । ଗ୍ରାଫିକ୍‌ର ସୂକ୍ଷ୍ମକଳା ଯଥା ଏଚିଙ୍ଗ୍, ଇଣ୍ଟଗ୍ଲିଓ, ସେରିଗ୍ରାଫି, ଓ ଲିଥୋପ୍ରିଣ୍ଟ ଆଦି ମଧ୍ୟ ତାଙ୍କ କଳା ସାଧନାର ଏକ ଏକ ଉଦାହରଣ । ଜଳରଙ୍ଗରେ ମଧ୍ୟ ଡକ୍ଟର ପାଠୀଙ୍କର ଛାଇ ଆଲୁଅର ବର୍ଣ୍ଣବିଭାକୁ ଅନୁଭବ କରାଯାଇପାରେ । **ଶିଳ୍ପୀ ଜୀବନର ପ୍ରଥମ ପର୍ଯ୍ୟାୟରେ ଅଙ୍କିତ ଅନେକ ଆଲେଖ୍ୟ, ଭୂଦୃଶ୍ୟ, ଚିଲିକାର ଦୃଶ୍ୟରେ ଜଳରଙ୍ଗର ସଚ୍ଛ ପ୍ରୟୋଗ ଓ ବର୍ଣ୍ଣବିଭାର ପଟାନ୍ତର ନାହିଁ । ଯିମିତି ତାଙ୍କର ସ୍କେଚ୍ ବା ରେଖା ବିନ୍ୟାସରେ ରେଖାର ଦୃଢ଼ ସଂଚାଳନ, ଦାମ୍ଭିକତା ଓ ଲାଳିତ୍ୟ ହିଁ ତାଙ୍କ ସ୍କେଚ୍‌ର ମହତ୍ତ୍ୱ । ଏଥିପାଇଁ କୁହାଯାଏ ଡକ୍ଟର ପାଠୀଙ୍କର କଳାସୃଷ୍ଟି ବିଚିତ୍ର ବର୍ଣ୍ଣର ଆଲୋକରେ ଆଲୋକିତ ।** ଏଇ ବିଚିତ୍ରବର୍ଣ୍ଣା ସ୍ରଷ୍ଟାଙ୍କର ଗଦାଗଦା କାନ୍‌ଭାସ୍ ପେଣ୍ଟିଙ୍ଗ୍, ଗ୍ରାଫିକ୍, ଜଳରଙ୍ଗ ଏବଂ ଅନ୍ୟାନ୍ୟ ଚିତ୍ରକଳା ଉପରେ ସବିଶେଷ ଆଲୋକପାତ କରିବା ଏ ଲେଖକ ପକ୍ଷରେ ଦୁଃସାହସ ନିଶ୍ଚୟ ଏବଂ ଏହା ଅନ୍ୟ ସମୟ ଓ ସ୍ଥାନର ଅପେକ୍ଷା ରଖେ ।

**ସାଧନାର ପଥର ଦ୍ୱିତୀୟ ସ୍ତରରେ ଆମେ ଦେଖୁ ତାଙ୍କର ସାହିତ୍ୟିକ କୃତିସମୂହ । ତାଙ୍କର ବାଙ୍ମୟ ଅଭିବ୍ୟକ୍ତି ଦୁଇ ଦିଗନ୍ତକୁ ସ୍ପର୍ଶ କରେ । ବାଙ୍ମୟ ଚିତ୍ରପଟ ଉପରେ କିଂଚିତ୍ ଆଲୋଚନା ହେଲାପରେ ବାଙ୍ମୟ ସର ଅନ୍ୟ ଏକ ଦିଗ । ନୀରବିଚ ରଙ୍ଗର ଭାଷାକୁ ଶବ୍ଦର ଭାଷାରେ ଛନ୍ଦିଦେଇ ସେ ହୋଇଯାଆନ୍ତି ଚିତ୍ରକାବ୍ୟର ସ୍ରଷ୍ଟା ପୁରୁଷଟିଏ ।** ତୂଳୀରେ ରଙ୍ଗ ଘାଣ୍ଟୁ-ଘାଣ୍ଟୁ ସତେଅବା ସେଥିରେ ସେ ଖୋଜିଛନ୍ତି ଶବ୍ଦକୁ । ଭାବପ୍ରକାଶ କରିବାର କୌଶଳକୁ ଯେଉଁ ତୂଳୀଧରା ସ୍ରଷ୍ଟାଟିଏ ଥରେ ଆୟତ୍ତକୁ ଆଣିସାରିଛି- ଭାଷାରେ ଫୁଟେଇବା ତା' ପାଇଁ କେତେ ବାଟ କି ? ଭାବ ବଳିଷ୍ଠ ହେଲେ ଭାଷା ଖୋଜିବାର ଆବଶ୍ୟକତା ନାହିଁ, ତାହା ଛାଏଁ-ଛାଏଁ ଆସି ଧରାଦିଏ । ଡକ୍ଟର ପାଠୀଙ୍କର ସାହିତ୍ୟକୃତିକୁ ଏହି ଦୃଷ୍ଟିରୁ ବିଚାର କରାଯାଇପାରେ ।

ଯଦିଓ ସେ ପ୍ରାଥମିକ ସ୍ତରରେ 'ଦିବ୍ୟଜୀବନ' ଚେତନାରେ ଉଦ୍‌ବୁଦ୍ଧ ହୋଇ ଭଜନ, ଜଣାଣ ଆଦି କେତେକ ଚଟି ବହି ରଚନା କରିଥିଲେ । ମାତ୍ର ବିକାଶ ପର୍ଯ୍ୟାୟରେ ତାଙ୍କର **ନୀଳହ୍ରଦର ଚିତ୍ରକର, ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ, ସୁନାମାଛ, ଭବଘୂରା ଭବନାଥ, ଅବନ୍ତୀ** (କାବ୍ୟଗୁଚ୍ଛ) **ଚିତ୍ରଶାଳା** (କଳାତ୍ମକ କାବ୍ୟ), **ସାୟୋନାରା, ପୁନର୍ନବା, ଶ୍ଳୋକଛନ୍ଦ** ଆଦି ଗ୍ରନ୍ଥମାନଙ୍କରେ ତାଙ୍କର ସୃଷ୍ଟି ପ୍ରାଣମୁଖର ହୋଇଉଠିଛି । ତାଙ୍କର ପୋଖତ ହାତର ସ୍ପର୍ଶରେ ଏସବୁ ସୃଷ୍ଟି ଚିତ୍ରକଳାର ଭିନ୍ନସ୍ୱାଦ, ଭିନ୍ନଗନ୍ଧ, ଛନ୍ଦନେଇ ପୁନର୍ନବା ହୋଇଉଠନ୍ତି । ଚିତ୍ରକଳାର ସେଇ ଏକା ଆତ୍ମା, ଏକା ପ୍ରାଣ ନେଇ ଏସବୁ ସାହିତ୍ୟିକ ସୃଷ୍ଟି ଭିନ୍ନ ରୂପରେ ଆତ୍ମପ୍ରକାଶ କରନ୍ତି । ଚିତ୍ରଶାଳାରେ ନଡ଼ା, ମାଟିର ମୂର୍ତ୍ତି, ମାଟି, କାଠ ଇତ୍ୟାଦିର ମୂର୍ତ୍ତି ଯେପରି ଗଢ଼ାହୁଏ, ସେଇମିତି ଡକ୍ଟର ପାଠୀ ହିଁ ଦକ୍ଷ ବିଶ୍ୱକର୍ମା ଏବଂ ତାଙ୍କର ସମସ୍ତ ସୃଷ୍ଟି ହିଁ ତାଙ୍କ ଚିତ୍ରଶାଳାରୁ ଉତୁରୁଥିବା ବର୍ଣ୍ଣମୟ, ଭାଷାମୟ ଜୀବନ୍ତ ଆଲେଖ୍ୟର ଗୋଟିଏ ଗୋଟିଏ ପ୍ରତିମା । **ନିଜ ସମ୍ପର୍କରେ ସେ ପୁନର୍ନବାରେ କହନ୍ତି - ଯିଏ ପିତୁଳି ଗଢ଼େ ମାଟି କାଠ ରଙ୍ଗ ଓ ଭାଷାରେ ସେ ବିଶ୍ୱକର୍ମା । ଜଗନ୍ନାଥଙ୍କ ଭଳି ଅସଂପୂର୍ଣ୍ଣ ପ୍ରତିମା ଗଢୁ ବା ରାଧାଙ୍କ ଭଳି ସଂପୂର୍ଣ୍ଣ ବିଗ୍ରହ ଗଢୁ ବିଧାତା ତାକୁ ଈର୍ଷା କରନ୍ତି। ତାଠୁ ସମସ୍ତ ଜାଗତିକ ସୁଖ କାଢ଼ି ନିଅନ୍ତି । ସେ ହିଁ ନିତ୍ୟାନନ୍ଦ ।**

**ପୁନର୍ନବା** ଉପନ୍ୟାସରେ ରାଧାକୃଷ୍ଣ ତତ୍ତ୍ୱ ଏବଂ ମିଥ୍‌ର ପ୍ରଭାବ ରହିଛି - ତାହା ପ୍ରାଚୀନତାରୁ ସଂପ୍ରତିକ ଆଡ଼କୁ ଗତିମୁଖର କରାଇବ କଥାବସ୍ତୁକୁ । ଦକ୍ଷିଣ ଓଡ଼ିଶାର ଜୀବନଚିତ୍ର, ଓଡ଼ିଆ କଳାକୁଞ୍ଜ

Digitized by srujanika@gmail.com

ଶିଳ୍ପର ବର୍ଣ୍ଣନା ମଧ୍ୟ ଦେଇ ପୁସ୍ତକଟି ବେଶ୍ ସୁଖପାଠ୍ୟ ହୋଇପାରିଛି । ଚିତ୍ର ଓ ଭାଷାର ସମନ୍ୱୟ ଘଟିଛି ଚିତ୍ରଶାଳାରେ, ଅନ୍ୟ ଅର୍ଥରେ ସ୍ରଷ୍ଟାଙ୍କ ମସ୍ତିଷ୍କରେ ଏବଂ 'ପୁନର୍ନବା' ସେଇ ଚିତ୍ରଶାଳାରୁ ଉତୁରି ପଡ଼ିଥିବା ଗୋଟିଏ ଚିତ୍ରକାବ୍ୟ । ସ୍ରଷ୍ଟାଙ୍କୁ ଜଣେ ଚିତ୍ରଶିଳ୍ପୀ ଭାବରେ ଜାଣିନଥିବା କେହି ପାଠକ ଯଦି ତାଙ୍କର ସମଗ୍ର ସାହିତ୍ୟକୁ ଅନୁଧ୍ୟାନ କରେ, ତେବେ ସେ ଅନୁଭବ କରିବେ ଯେ, ଲେଖକ ଜଣେ ଚିତ୍ରଶିଳ୍ପୀ ହୋଇଥିବେ ନିଶ୍ଚୟ । ସତେଯେପରି ତାଙ୍କର ସମସ୍ତ ସାହିତ୍ୟିକ କୃତି ଚିତ୍ରମୟ ହୋଇଯାଇଛି । ପାଠକର ମନ ଭିତରେ ଚିତ୍ର ଆପେ ଆପେ ଧରାଦିଏ ତାଙ୍କ ଭାଷାରୁ । ରାଗାନୁଗା ବୈଷ୍ଣବୀୟ କଳାତତ୍ତ୍ୱ ତ ତାଙ୍କର 'ପୁନର୍ନବା'ରେ ଫେଣ୍ଟି ହୋଇ ଶବ୍ଦର ତାଳେ ତାଳେ ଭାସିଚାଲିଛି । କୃଷ୍ଣ କଥା, ସୁଧା ପ୍ରେମର ବର୍ଣ୍ଣନା ଜୟଦେବଙ୍କ ଗୀତଗୋବିନ୍ଦ କିମ୍ବା ବିଦଗ୍ଧ ଚିନ୍ତାମଣିରେ ସିନା ବର୍ଣ୍ଣିତ, ହେଲେ ସେଗୁଡ଼ିକୁ ପିତୁଳା, ପିତୁଳିମାନଙ୍କଠାରେ ଆରୋପ କରି ମୃଣ୍ମୟ ପିଣ୍ଡରେ ପ୍ରାଣ ସଞ୍ଚାର କରିଛନ୍ତି ଡକ୍ଟର ପାଠୀ ଏବଂ ପ୍ରତିଫଳନରେ ସେମାନେ 'ପୁନର୍ନବା' ହୋଇଉଠିଛନ୍ତି । ଜଣେ ଦକ୍ଷ ସ୍ରଷ୍ଟା ନହେଲେ ଏସବୁକୁ ଭେଦ କରିବା ଅସମ୍ଭବ । ଭାଷା କ୍ଲିଷ୍ଟ ନୁହେଁ, ଅତି ସାଧାରଣ, ଭାଷା ଗୁମ୍ଫନରେ ଭାବକୁ ଏତେ ମର୍ମସ୍ପର୍ଶୀ କରିପାରିଛନ୍ତି ଯେ ତାହା ପାଠକ ହୃଦୟକୁ ଛୁଇଁବ ହିଁ ଛୁଇଁବ । **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** ତାଙ୍କ ଆତ୍ମଜୀବନୀର ଏକ ବ୍ୟଙ୍ଗାତ୍ମକ ଅଭିବ୍ୟକ୍ତି । ଏହା ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ । ସେହିପରି **ଭବଘୁରା ଭବନାଥ** ମଧ୍ୟ ତାଙ୍କ ସ୍ୱାଭିମାନ ଭରା ସୁଇଡ଼େନ୍ ଅନୁଭୂତି ଉପରେ ଆଧାରିତ ଏକ ଭ୍ରମଣାତ୍ମକ ଗଳ୍ପଗ୍ରନ୍ଥ । ଏସମସ୍ତ ଗ୍ରନ୍ଥ ପାଠକଲେ ସତେଯେପରି ମନେହୁଏ ତାଙ୍କର ଆବେଗଦୀପ୍ତ କଳାପ୍ରାଣ ଚେତନାଟି ପ୍ରଗଳ୍ଭ ହୋଇଉଠିଛି କିଛି କରିଦେବାକୁ ତାହା ଭାଷାରେ ହେଉ କି ଚିତ୍ରରେ ହେଉ ।

ଏତଦ୍‌ବ୍ୟତୀତ ତାଙ୍କର କଳାସଂପର୍କୀୟ ଗବେଷଣାତ୍ମକ ଗ୍ରନ୍ଥ ମଧ୍ୟ ରହିଛି । ଜଣେ କଳା ଐତିହାସିକ, କଳା ଗବେଷକ ହିସାବରେ ଅନେକ ଗ୍ରନ୍ଥ ଇଂରାଜୀ ଏବଂ ଜର୍ମାନ ଭାଷାରେ ସେ ରଚନା କରିଛନ୍ତି । ଜୟଦେବଙ୍କର ଗୀତଗୋବିନ୍ଦ ଗ୍ରନ୍ଥକୁ ଏତେ ସୁନ୍ଦର ଅଥଚ ପ୍ରାଞ୍ଜଳ ଭାବରେ ଇଂରାଜୀରେ ପ୍ରକାଶ କରେଇ ସେ ଜଗନ୍ନାଥ ସଂସ୍କୃତିକୁ ଦେଶବିଦେଶରେ ପ୍ରସାରିତ କରିପାରିଛନ୍ତି ଯେ, ସେଥିପାଇଁ ତାଙ୍କର ଏ ପ୍ରକାର ପଦକ୍ଷେପ ପ୍ରଶଂସନୀୟ । ଏ ପ୍ରଚେଷ୍ଟା ଅଭିନବ ମଧ୍ୟ । ଏହି ଗ୍ରନ୍ଥ ଜୟଦେବ ସଂପର୍କୀତ ବଙ୍ଗୀୟ ଅପଚେଷ୍ଟାକୁ ପରାହତ କରିବାରେ ସକ୍ଷମ ହୋଇପାରିଛି । ଗୋଟିଏ ବଳିଷ୍ଠ ଯୁକ୍ତି ହେଲା - ଓଡ଼ିଶାର ଚିତ୍ରକଳାର ଗନ୍ତାଘରେ ପ୍ରାୟ ତିନି ଶହ ଗୀତଗୋବିନ୍ଦ ଚିତ୍ରିତ ତାଳପତ୍ର ଓ ସେଥିରେ ସନ୍ନିବେଶିତ ତିରିଶ ହଜାର ଚିତ୍ର ଥିବା ସ୍ଥଳେ ବଙ୍ଗୀୟ ଚିତ୍ରକଳାରେ ଖଣ୍ଡିଏ ହେଲେ ପ୍ରାଚୀନ ଗୀତଗୋବିନ୍ଦ ଚିତ୍ର ନଥିବା ବଙ୍ଗୀୟ ଆସ୍ପର୍ଦ୍ଧାକୁ ବିଡ଼ମ୍ବିତ କରୁନାହିଁକି ?

ସୁଇସ୍ ରିଟ୍‌ବର୍ଗ୍ ମ୍ୟୁଜିୟମ୍‌ର ଆନ୍ତର୍ଜାତିକ ଗବେଷକ ଡକ୍ଟର ଏବର୍‌ହାର୍ଡ୍ ଫିସର୍‌ଙ୍କ ସହଯୋଗରେ ଅନେକ ବିଶ୍ୱପ୍ରସିଦ୍ଧ ଗ୍ରନ୍ଥ ରଚନାକରି ଓଡ଼ିଶୀକଳାକୁ ବିଶ୍ୱ ଦରବାରରେ ସେ ପ୍ରତିଷ୍ଠା କରିଛନ୍ତି ।

ଚିତ୍ରଶାଳାରେ ତାଙ୍କର ଏପ୍ରକାର ସୃଜନଶୀଳ ସାଧନାର ଏକାଗ୍ରତା, ଏକମୁଖୀନତା ଅପର ପକ୍ଷରେ ଓଡ଼ିଶାର କଳା ଚାତୁରୀକୁ ବାହାରେ ପରିଚିତ କରାଇପାରିଛି । ଓଡ଼ିଶାର କଳା-କୁଞ୍ଜରେ କେତକୀଟିଏ ଫୁଟିଲେ ଦରିଆପାଣିରେ ତା'ର ମହକ ଖେଳିଯାଉଛି । **ସାଧନାର ପଥେ - ଏଇ ଲମ୍ବା ରାସ୍ତାରେ ତଥାପି ସ୍ରଷ୍ଟାପୁରୁଷ ଥକି ନାହାନ୍ତି । ଚାଲିଛନ୍ତି ଚିତ୍ରକାବ୍ୟର ଗଜଲ ଗାଇଗାଇ । କଣ୍ଟକିତ, ବନ୍ଧୁର ପଥ ତଥାପି ସେଥିରେ ସେ ଫୁଲର ଗନ୍ଧକୁ ଅନୁଭବ କରି ଚାଲିଛନ୍ତି । ଘଡ଼ିପାଖର ଝାଙ୍ଗିକୁ କାଟିକାଟି ବସନ୍ତର ସପ୍ନରେ ବିଭୋର ସ୍ରଷ୍ଟାଙ୍କର ଗତି ଅବ୍ୟାହତ ଅଜଣାର ସନ୍ଧାନରେ ।**

Digitized by srujanika@gmail.com

୨. ଓଡ଼ିଆ ଜାତିର ସାଂସ୍କୃତିକ ଜାଗରଣ/ସାଂସ୍କୃତିକ ସାଭିମାନ ପାଇଁ ଐକାନ୍ତିକ ଭୂମିକା : ଓଡ଼ିଶାର କଳା ଆନ୍ଦୋଳନକୁ ବିଶ୍ୱମୁଖୀ କରାଇବାରେ ତାଙ୍କର ରହିଛି ପ୍ରମୁଖ ଭୂମିକା । ଓଡ଼ିଶାରେ ଏକମାତ୍ର ସରକାରୀ କଳା ମହାବିଦ୍ୟାଳୟ, ଖଲିକୋଟରେ ଥିଲା । ଆଉ ଏକ କଳା ମହାବିଦ୍ୟାଳୟର ଅଭାବ ବହୁଦିନରୁ ଅନୁଭୂତ ହେଉଥିଲା । ସେ ସ୍ୱପ୍ନ ସଫଳ ହେଲା ପାଠୀ ସାର୍‌ଙ୍କର ଐକାନ୍ତିକ ନିଷ୍ଠା, ପ୍ରଚେଷ୍ଟା ଓ ଏକମୁଖୀ ଉଦ୍ୟମ ଯୋଗୁଁ । କଳାଶିକ୍ଷା ଘରିକାନ୍ଥ ଭିତରର ଶିକ୍ଷା ନୁହେଁ କି ଧରାବନ୍ଧା ତଥାକଥିତ ଶଗଡ଼ ଗୁଳାର ପ୍ରଶିକ୍ଷଣ ପ୍ରଣାଳୀରେ ଏହା ଆବଦ୍ଧ ନୁହେଁ - ଏଇ ଲକ୍ଷ୍ୟ ନେଇ ସେ କଳା ମହାବିଦ୍ୟାଳୟରେ ଆରମ୍ଭ କରନ୍ତି ଜାତୀୟ କର୍ମଶାଳା, ସେମିନାର୍ । ବାହାରର ପ୍ରତିଷ୍ଠିତ ଶିଳ୍ପୀମାନଙ୍କୁ ଆମନ୍ତ୍ରିତ କରି ଛାତ୍ରଛାତ୍ରୀମାନଙ୍କୁ କଳା ବିଷୟରେ ଦିଗନ୍ତ ବିସ୍ତାରି ଶିକ୍ଷାଦାନର ସୁଯୋଗ ଦିଅନ୍ତି । ତାଙ୍କରି ଉଦ୍ୟମରେ ହିଁ ଆରମ୍ଭ ହୁଏ **ଚିତ୍ରମେଳା** । ବର୍ଷର ଏଇ ଉତ୍ସବକୁ କଲେଜର ଅଧ୍ୟାପକ, ଅଧ୍ୟାପିକା, ଛାତ୍ରଛାତ୍ରୀ ଅତି ଉଦ୍‌ବେଗର ସହିତ ଅପେକ୍ଷା କରିଥାନ୍ତି । ଗୋଟିଏ ବର୍ଷରେ କଳା ମହାବିଦ୍ୟାଳୟର ବିଭିନ୍ନ ବିଭାଗରୁ ଯାହା କଳାନୈପୁଣ୍ୟ ଉତ୍ପାଦିତ ହୋଇଥାଏ, ଜନସାଧାରଣଙ୍କ ପାଇଁ ସେସବୁର ପ୍ରଦର୍ଶନୀର ଆୟୋଜନ ହୋଇଥାଏ । ଅତି ଆଗ୍ରହର ସହିତ ଜନସାଧାରଣ ମଧ ତାହା କ୍ରୟ କରିଥାନ୍ତି । ଉଦ୍ଦେଶ୍ୟ - ମହାବିଦ୍ୟାଳୟରେ ଅଧ୍ୟୟନରତ ଛାତ୍ରଛାତ୍ରୀମାନଙ୍କର କଳାକୁଶଳତାକୁ ଛାତ୍ର ଅବସ୍ଥାରୁ ଜନସାଧାରଣଙ୍କ ନିକଟରେ ପରିଚିତ କରାଇବା । ଫଳରେ ଓଡ଼ିଶାର ଅନ୍ଧାର କଳା-କୂପ ମଧରେ ଆଲୋକ ସଂପାତ ହୁଏ । ଧୀରେ ଧୀରେ ତାଙ୍କରି ପ୍ରେରଣା ଫଳରେ ଏଇ କଳା ମହାବିଦ୍ୟାଳୟରୁ ଉତୁରିଲେ ଅନେକ ଛାତ୍ରଛାତ୍ରୀ ଯେଉଁମାନେ କି ଜାତୀୟ ଓ ଆନ୍ତର୍ଜାତୀୟ କଳାକ୍ଷେତ୍ରରେ ବେଶ୍ ସଫଳତା ହାସଲ କଲେ । ଅନେକ ମଧ ବୃତ୍ତିଗତ ଭାବେ ପ୍ରତିଷ୍ଠିତ ସରକାରୀ ଏବଂ ବେସରକାରୀ ସଂସ୍ଥାମାନଙ୍କରେ କର୍ମମୟ ଜୀବନ ଆରମ୍ଭ କଲେ । କେବଳ ଚିତ୍ରକଳା କାହିଁକି ସାହିତ୍ୟ, ସଂଗୀତ, ନୃତ୍ୟ ଆଦି ବିଷୟରେ ଛାତ୍ରଛାତ୍ରୀମାନଙ୍କ ମନରେ ସଚେତନତା ସୃଷ୍ଟି କରିବା ପାଇଁ ଆମନ୍ତ୍ରଣ କଲେ ଲବ୍‌ଧ ପ୍ରତିଷ୍ଠ ସାହିତ୍ୟିକ, କବି, ନୃତ୍ୟ ଶିଳ୍ପୀ ଓ ସଙ୍ଗୀତ ଶିଳ୍ପୀମାନଙ୍କୁ । ଫଳରେ କଳା ମହାବିଦ୍ୟାଳୟରେ ସମସ୍ତ କଳାର ସମ୍ମେଳନ ସଂଗଠିତ ହେଲା । ଏଥିରୁ ପାଠୀ ସାର୍‌ଙ୍କର ସବୁପ୍ରକାର କଳା ପ୍ରତି ସଂବେଦନଶୀଳତାର ପରିଚୟ ମିଳେ ।

କଳା ସୃଷ୍ଟି ସହିତ ସାହିତ୍ୟ ପ୍ରତି ରୁଚି ସୃଷ୍ଟି କରିବା ପାଇଁ ସେ ଆରମ୍ଭ କଲେ ସାହିତ୍ୟ ସଂସଦ (Literary Club), ସଙ୍ଗୀତ ପରିଷଦ (Music Club), ସ୍କେଚିଙ୍ଗ୍ କ୍ଲବ (Sketching Club) ଏବଂ ୱାକିଙ୍ଗ କ୍ଲବ (Walking Club) । ପରବର୍ତ୍ତୀ ସମୟରେ ଏଥିରୁ ଅଧାଅଧି ବନ୍ଦ ହୋଇଗଲାଣି । Literary Club ବା ମହାବିଦ୍ୟାଳୟ ସାହିତ୍ୟ ସଂସଦ ତରଫରୁ ପ୍ରକାଶିତ 'କଳା ଓ କବିତା' ବାର୍ଷିକ-ପତ୍ରିକା ନିଶ୍ଚିତ ଭାବେ କଳାଶିକ୍ଷା କ୍ଷେତ୍ରରେ ଏକ ଅଭିନବ ତଥା ସଫଳ ପଦକ୍ଷେପ । ଛାତ୍ରଛାତ୍ରୀ ତଥା ଅଧ୍ୟାପକ ଓ ଅଧ୍ୟାପିକାମାନଙ୍କର କାବ୍ୟାତ୍ମକ ଅଭିବ୍ୟକ୍ତି ଓ ଭାବୋଚ୍ଛ୍ୱାସକୁ କଳା ଓ କବିତା ମାଧ୍ୟମରେ ପ୍ରକାଶ କରିବାର ଏହାଥିଲା ଅପୂର୍ବ ସୁଯୋଗ । ଏହି କଳା ଓ କବିତା ପତ୍ରିକା କାବ୍ୟଭାଷା ଓ ଚିତ୍ରଭାଷାର ମହନୀୟ ସମନ୍ୱୟ ରକ୍ଷାକରିପାରୁଥିଲା ।

ସେହିଭଳି Music Club ବା ମହାବିଦ୍ୟାଳୟର ସଙ୍ଗୀତ ପରିଷଦ ପକ୍ଷରୁ ନୂତନ ନାଟକ ରଚନା ଓ ଅଭିନୟ ପାଇଁ ଡକ୍ଟର ପାଠୀ ପ୍ରେରଣା ଯୋଗାଇ ଦେଉଥିଲେ । ଏସବୁ ରଚନାର ମୂଳକଥା ଥିଲା ଚିତ୍ରକଳା ଓ ଏଗୁଡ଼ିକ ପରଦା ଢଙ୍କା ମଞ୍ଚରେ ଅଭିନୀତ ନହୋଇ ମୁକ୍ତ ରଙ୍ଗମଞ୍ଚରେ ପାରିପାର୍ଶ୍ୱିକ ପରିବେଶର ସହାୟତାରେ ପରିଦର୍ଶିତ ହେଉଥିଲା ।

ବହୁ ଉଦ୍ୟମ, ଚେଷ୍ଟା ଫଳରେ ପାଠୀ ସାର୍ କଳା ମହାବିଦ୍ୟାଳୟ ପାଇଁ ଖଣ୍ଡଗିରି ନିକଟରେ ଏକ ଜାଗା ସରକାରଙ୍କ ଠାରୁ ମଞ୍ଜୁର କଲେ । ଏଭଳି ଏକ ଐତିହାସିକ ପର୍ଯ୍ୟଟନ ସ୍ଥଳୀରେ କଳା ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇପାରିଲେ କଳାଶିକ୍ଷା ପାଇଁ ତାହା ସହାୟ ହେବ । ଶତ ବାଧାବିଘ୍ନ

Digitized by srujanika@gmail.com

ମଧ୍ୟରେ ତାହା ସଂପୂର୍ଣ୍ଣ ହେଲା । ମାତ୍ର ନିଜର ପ୍ରାଣ ଦେଇ ଯେଉଁ ମହାବିଦ୍ୟାଳୟ ପ୍ରତିଷ୍ଠା କଲେ, ସେଠାରେ ସେ ଅଧ୍ୟକ୍ଷ ଭାବରେ ବେଶିଦିନ ରହିପାରି ନ ଥିଲେ । ମହାବିଦ୍ୟାଳୟକୁ ଅତି ଆଡ଼ମ୍ବର ସହକାରେ ଉଦ୍‌ଘାଟନ କଲାପରେ କେନ୍ଦ୍ର ଲଳିତ କଳା ଏକାଡ଼େମୀ ତରଫରୁ ତାଙ୍କୁ ସାଦର ନିମନ୍ତ୍ରଣ କରାଗଲା ସେଠାକାର ସଚିବ ପଦରେ ଯୋଗଦେବାକୁ । ପାଠୀ ସାର୍‌ଙ୍କର ସ୍ୱପ୍ନ ସାକାର ହୋଇପାରିଲାନି, ସେ କେନ୍ଦ୍ର ଏକାଡ଼େମୀରେ ସଚିବ ଭାବରେ ଯୋଗଦେଲେ ଏବଂ ତତ୍ ସଙ୍ଗେ ସଙ୍ଗେ ଛାତ୍ରଛାତ୍ରୀମାନେ ଏକ ଦକ୍ଷ ଅଧ୍ୟକ୍ଷ ତଥା କଳା-କର୍ଣ୍ଣଧାରଙ୍କୁ ସବୁଦିନ ପାଇଁ ହରାଇଲେ । ଖୁବ୍ କମ୍ ଦିନ ମଧ୍ୟରେ ଏଭଳି ଏକ ସୁଦୃଶ୍ୟ ମହାବିଦ୍ୟାଳୟ ନିର୍ମାଣରେ ପାଠୀ ସାର୍‌ଙ୍କର ଦୃଢ଼ ନିଷ୍ଠା, ଉଦ୍ୟମର ଅବଦାନକୁ କଦାପି ଅସ୍ୱୀକାର କରାଯାଇ ନପାରେ ।

ସେହିପରି ଓଡ଼ିଶାରେ ରାଷ୍ଟ୍ରୀୟ କଳାକେନ୍ଦ୍ର ପ୍ରତିଷ୍ଠାକୁ ତ୍ୱରାନ୍ୱିତ କରିବାରେ ତାଙ୍କର ଅଗ୍ରଣୀ ଭୂମିକା ରହିଛି । ଏତେ ବର୍ଷ ଭିତରେ ଯାହା ପ୍ରତିଷ୍ଠା ହୋଇପାରି ନଥିଲା, ତାହା ତାଙ୍କ ସମୟରେ ହୋଇପାରିଲା । ସିଏ କରିଥିବା ସିରାମିକ୍ ଷ୍ଟୁଡ଼ିଓର ପରିକଳ୍ପନା ସଚିବ ପଦ ଛାଡ଼ିବା ପରେ ଅଧୁରା ରହିଛି । (ରାଷ୍ଟ୍ରୀୟ ଲଳିତ କଳାକେନ୍ଦ୍ରରେ ଏଇ କିଛିବର୍ଷ ହେଲା ସିରାମିକ୍ ଷ୍ଟୁଡିଓ ଆରମ୍ଭ ହୋଇଛି - ସମ୍ପାଦକ)

**Working Artists Association** ନାମକ ସମକାଳୀନ ଶିଳ୍ପୀ ସଂଗଠନ ବର୍ତ୍ତମାନ ଓଡ଼ିଶାର କଳା କ୍ଷେତ୍ରରେ ବେଶ୍ ସକ୍ରିୟ । ଏହାରି ମାଧ୍ୟମରେ ଅନେକ ସମସାମୟିକ ଶିଳ୍ପୀ ପ୍ରତିଷ୍ଠା ପାଉଛନ୍ତି । ସମୟକୁ ସମୟ ଏହି ଅନୁଷ୍ଠାନ ମାଧ୍ୟମରେ ଚିତ୍ରକଳା ପ୍ରଦର୍ଶନୀ, କର୍ମଶାଳା, ସେମିନାର୍ ଆଦି କାର୍ଯ୍ୟକ୍ରମ ହେଉଅଛି । ବୟୋଜ୍ୟେଷ୍ଠ ଶିଳ୍ପୀମାନଙ୍କୁ ସମ୍ମାନ ଏବଂ ସମ୍ବର୍ଦ୍ଧନା ଦିଆଯାଇ ସେମାନଙ୍କର ଶୈଳ୍ପିକମାନ ବୃଦ୍ଧି କରିବାରେ ଏ ସଂଗଠନର ବିଶେଷ ଭୂମିକା ରହିଛି । କହିବା ବାହୁଲ୍ୟ,ଓଡ଼ିଶାର ନବୀନ ତଥା ପ୍ରବୀଣ ଶିଳ୍ପୀମାନଙ୍କୁ ଲୋକଲୋଚନକୁ ଆଣୁଥିବା ଏହି ସଂଗଠନର ମୁଖ୍ୟ ତଥା ପ୍ରଚ୍ଛଦ ସଂଗଠକ ହେଉଛନ୍ତି ପାଠୀ ସାର୍ ।

କୋମଳମତି ଶିଶୁମାନଙ୍କ ପ୍ରାଣରେ ଚିତ୍ରାଙ୍କନ ମାଧ୍ୟମରେ ସୌନ୍ଦର୍ଯ୍ୟ ଚେତନା ସୃଷ୍ଟି କରିବାର ଲକ୍ଷ୍ୟ ନେଇ ସେ ଆରମ୍ଭ କରନ୍ତି 'ସୁନନ୍ଦା ପାଠୀ ଫାଉଣ୍ଡେସନ୍ ।' ଏଥିରେ ସର୍ବଭାରତୀୟ ଶିଶୁ ଚିତ୍ରାଙ୍କନ ପ୍ରତିଯୋଗିତା, ପ୍ରଦର୍ଶନୀର ଆୟୋଜନ କରାଯାଉଛି । ଫଳରେ ଶିଶୁମାନଙ୍କ ମନରେ ଚିତ୍ର ପ୍ରତି ଆକର୍ଷଣ କ୍ରମେ ବୃଦ୍ଧି ପାଉଛି । ଅଭିଭାବକମାନେ ମଧ୍ୟ ଏପରି ଏକ ଶିଶୁଚିତ୍ରଭିତ୍ତିକ ଅନୁଷ୍ଠାନର ଭୂୟସୀ ପ୍ରଶଂସା କରନ୍ତି । ଶିଶୁମନସ୍ତତ୍ତ୍ୱ ପ୍ରତି ତାଙ୍କର ଆକର୍ଷଣ ଏଥିରୁ ସ୍ପଷ୍ଟ ହୋଇଥାଏ । ଏହାବ୍ୟତୀତ ଓଡ଼ିଶାର ଆହୁରି ଅନେକ ସାଂସ୍କୃତିକ ଅନୁଷ୍ଠାନ ରହିଛି, ଯେଉଁଥିରେ ଡକ୍ଟର ପାଠୀଙ୍କର ପ୍ରତ୍ୟକ୍ଷ ସଂପର୍କ ରହିଛି । ଡକ୍ଟର ପାଠୀଙ୍କୁ ଛାଡ଼ି ସେସବୁ ଅନୁଷ୍ଠାନକୁ କଳ୍ପନା କରାଯାଇ ନପାରେ ।

**ଚିତ୍ରଶିଳ୍ପୀ ପାଇଁ ତାଙ୍କ 'ମୁଁ ତ୍ୱ' ଯେତେ ଦାବି ନକରେ, ତା'ଠାରୁ ଅଧିକ ଦାବି କରେ ଓଡ଼ିଶା ଆଉ ଓଡ଼ିଆ ମାଟି । ପୃଥିବୀର ଅନେକ ଦିଗନ୍ତକୁ ଛୁଇଁଥିବା ଏଇ ଅନନ୍ୟ ବ୍ୟକ୍ତିତ୍ୱଟି ଅତି ନିରାଡ଼ମ୍ବର ଭାବରେ ନିଜର ଛାତ୍ରଟିଏ ପାଖରେ ବନ୍ଧୁବତ୍ସଳର ଭାବ ନେଇ ଘାସର ଲନ୍‌ରେ ବସି ଯେଭଳି ସ୍ମିତହାସ୍ୟରେ ଆତ୍ମୀୟତାର ସହିତ ଆଳାପ କରିପାରନ୍ତି ଏବଂ ପଥପ୍ରାନ୍ତେ ସାଭିମାନକୁ ବଳିଦେଇ ଯେଭଳି ଆନ୍ତରିକତାର ଆଳାପ କରିପାରନ୍ତି ତାହା ଅନ୍ୟ ଶିଳ୍ପୀଙ୍କ ପାଖରେ ବିରଳ ।** କେବଳ ଚିତ୍ର ସାହିତ୍ୟରେ କାହିଁକି, ତାଙ୍କର ଖାଦ୍ୟପେୟ, ଦୈନନ୍ଦିନ ଚଳଣି, ଗୃହର ସାଜସଜ୍ଜା, ପୋଷାକ-ସବୁଥିରେ ଓଡ଼ିଆର ଛିଟା, ଓଡ଼ିଶା ମାଟିର ଗନ୍ଧ ।

Digitized by srujanika@gmail.com

ପ୍ରୀତମ୍

## ଉପନ୍ୟାସର ଭାଷା

ଡ଼କ୍ଟର ଦିନନାଥ ପାଠୀଙ୍କ **ପୁନର୍ନବା** ଉପନ୍ୟାସ ପଢ଼ିଲେ ତହିଁରେ ଦକ୍ଷିଣ ଓଡ଼ିଶାର ଗୋଟିଏ ଯୁଗର ସାମାଜିକ ଚିତ୍ର ଯେଭଳି ନିଖୁଣ ଭାବରେ ବର୍ଣ୍ଣନା କରାଯାଇଛି ତାହା ପାଠକ ମନକୁ ଆଚ୍ଛନ୍ନ କରିରଖେ, ତା ସହିତ ଯେଉଁ ଅନ୍ୟ ଏକ ଦିଗଟି ପାଠକ ମନକୁ ମୁଗ୍ଧ କରେ, ତାହା ହେଉଛି ଉପନ୍ୟାସର ଭାଷା । ଯେଉଁ ସମୟର, ଯେଉଁ ସମାଜର, ଯେଉଁ ଜୀବନର ଚିତ୍ର ସତ୍ୟନିଷ୍ଠ ଭାବରେ ଦିଆଯାଇଛି, ସେଥିପାଇଁ ଏକ ସ୍ୱତନ୍ତ୍ର ଭାଷା ବ୍ୟବହାର କରାଯାଇଛି; ଏବଂ ସେଭଳି ଭାଷା ବ୍ୟବହାର କରାଯାଇ ନଥିଲେ ଉପନ୍ୟାସର ଉପଜୀବ୍ୟ କଥାବସ୍ତୁ, ସମାଜଚିତ୍ର ଓ ଦର୍ଶନର ସଫଳ ଅଭିବ୍ୟକ୍ତି ଓ ପ୍ରତିଫଳନ ସମ୍ଭବ ହୋଇପାରି ନଥାନ୍ତା ।

ଦକ୍ଷିଣ ଓଡ଼ିଶାରେ ଏଭଳି ଅନେକ ଶବ୍ଦ ଓ ଭାଷାର ଶୈଳୀ ଲୋକଙ୍କ ମଧ୍ୟରେ ପ୍ରଚଳିତ, ଯାହା ଆମ ସାହିତ୍ୟରେ ସ୍ଥାନ ପାଇନାହିଁ । କିନ୍ତୁ ସେ ଶବ୍ଦ ଓ ଶୈଳୀ ଅତ୍ୟନ୍ତ ଭାବୋଦ୍ଦୀପକ ଓ ଅର୍ଥପୂର୍ଣ୍ଣ । ଡ଼କ୍ଟର ପାଠୀ ସେ ଶବ୍ଦ ସମ୍ଭାରକୁ ତାଙ୍କ ଉପନ୍ୟାସରେ ସାର୍ଥକ ଭାବରେ ଉପଯୋଗ କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ।

ଉଦାହରଣ ସ୍ୱରୂପ ହିନସ୍ତା ହେବା, ସମାନେ ଟାକିଥିବ, ପାଣି ବିଉଷିବାରୁ, ଚାହାପତି ଚେନି, ପାଇଟି, କାବାରୁ ନାଶଦାନି ବାହାର କରି ଦି'ଚିପ ନାକ ପୁଡ଼ାରେ ଛୁଆଁଇଲେ, ପରସ୍ତେ ଛିଙ୍କାଛିଙ୍କି କରିସାରି ନିତ୍ୟାକୁ ନିଘା କଲେ । ଡାବୁଉପରେ ଲାଖି ରଖିଥିବ ; ହିୟାପ, ଫାକାସି ଉଡ଼ିଯାଇଥିବ, ଥତମତ ହେଇ, କାନ୍ଥଠଣାରେ ଦୀପଟିଏ କଳୁଥାଏ, ପହୁଡ଼ ବଖରା, ହେଜିପାରିଥାନ୍ତି, ଇଜ୍ଜତ ଦିଗଣ୍ଡା ଦିକଡ଼ା ହେବା, ଯାବିତା, ଆଜିକାଲିକା ପିଲାଙ୍କ ଦସ୍ତୁରୁ ନିଆରା, ଓପରାଣକୁ କାନ୍ଧରେ ପକାଇ ଦି'ଆଡ଼କୁ ଛାଟେଣି କରିଦେଲା, ରଞ୍ଜଘଷ ହେବା, ରଞ୍ଜହଂସଟେ ହେବ, ବହଲିଯିବା, ଶଳେଙ୍କୁ ପୋଖରୀପାଣି ହୋଇଗଲା, ପାଦ ମଞ୍ଜାଳୁଥାନ୍ତି, ଓଲଟାଣି ବୟସର ଦାସୀ, ହାଙ୍କଡ଼ ଖାଇବା, ଟାପୁ କଥା, ଭେଟଣ ହୋଇଯିବ, ବିଜାର ଲାଗୁଛି, ମାରୁକନା, ନିଷ୍ଣୁଚିରେ କାମ ଚାଳିବ, ଉଦୁବସ୍ତ ହେବା, ବନ୍ଧହୁଡ଼ା, ଓଧାଣି ବସିବା, ଛୁଞ୍ଚପାଣି ପକାଇବା, ଉପନ୍ୟାସର ଛତ୍ରେ ଛତ୍ରେ ଏଭଳି ଆହୁରି ଅନେକ ଶବ୍ଦ ରହିଛି, ଯାହା ଭାବ ପରିସ୍ଫୁଟନ ଦିଗରେ ଶାଣିତ ସାଫଲ୍ୟ ଆଣି ଦେଇଛି । **ଜନଜୀବନରୁ ହୁଏତ କ୍ରମଶଃ ଏ ଶବ୍ଦ ଗୁଡ଼ିକ ଅବଲୁପ୍ତ ହୋଇଯିବ । ଡ଼କ୍ଟର ପାଠୀ ଏଭଳି ବ୍ୟଞ୍ଜନାତ୍ମକ ଶବ୍ଦଗୁଡ଼ିକୁ ସାହିତ୍ୟରେ ଅଙ୍ଗୀଭୂତ କରିଥିବାରୁ ତାଙ୍କ ଉପନ୍ୟାସଟି ସ୍ମରଣୀୟ କୀର୍ତ୍ତିହୋଇ ରହିବ ।**

ଦକ୍ଷିଣ ଓଡ଼ିଶାରେ ପ୍ରଚଳିତ କଥାଭଙ୍ଗୀ ମଧ୍ୟ ସ୍ୱତନ୍ତ୍ର । ତାହା ଆମ ସାହିତ୍ୟରେ ପ୍ରତିଫଳିତ ହୋଇନଥିଲା । 'ପୁନର୍ନବା' ରେ ପ୍ରତି ଥର ପାଇଁ ସେଭଳି କଥାଭଙ୍ଗୀ ଚରିତ୍ରମାନଙ୍କ କଥୋପକଥନରେ ଅନ୍ତର୍ଭୁକ୍ତ କରାଯାଇ ଉପନ୍ୟାସଟିକୁ ରସୋତୀର୍ଣ୍ଣ କରାଯାଇପାରିଛି । କେତୋଟି ଉଦାହରଣ ଉଦ୍ଧାର କରୁଛି ।

"ରତିବନ୍ଧ ଚିତ୍ର ବୋଇଲେ କ'ଣ ହେ ?"
"ଆଠ ଦଶ ଶଗଡ଼ ଧାନ ହେବ ବୋଲ !"
"କୋ ପ୍ରଳୟଟା ହୋଇଯିବ ଯେ !"
"ଶଳା ନାତି ମେଞ୍ଚଡ଼ ବାପାର ଅମୁଟାକୁ ଚାହିଁଚୁ କିରେ ! ଶଳା ଯାଉଚୁନା !"

Digitized by srujanika@gmail.com

**ଗ୍ରାମ୍ୟଜୀବନର ଚିତ୍ର**

ଦକ୍ଷିଣ ଓଡ଼ିଶାର ଗ୍ରାମ୍ୟ ଜୀବନର ଚିତ୍ରକୁ ନିଖୁଣ ଭାବରେ ଉପସ୍ଥାପିତ କରିବା ପାଇଁ ଯେଉଁଭଳି ଭାଷା ଆବଶ୍ୟକ, ତାହା ଅତି ଯତ୍ନର ସହିତ ବିନ୍ୟାସ କରାଯାଇଛି ଏହି ଉପନ୍ୟାସରେ। ଗୋଟିଏ ଦିଓଟି ଉଦାହରଣ ଦେବା ପ୍ରାସଙ୍ଗିକ ହେବ।

"ଗୌରୀ ମୁହଁ ଅନ୍ଧାରରୁ ଉଠେ। ଘର ଦ୍ୱାର ଓଳାଏ। ଛୁଞ୍ଚ ପାଣି ପକାଏ। ଦାଣ୍ଡ ଦୁଆରେ ମୁରୁଜ ଦିଏ। ଠାକୁରଙ୍କ ପାଇଁ ଫୁଲ ତୋଳିଦିଏ। ଗାଧେଇ ପାଧେଇ ତୁଳସୀ ଚଉରାରେ ପାଣିଦିଏ। ଓଧାଣି ବସାଏ। ଶାଗମୁଗ ଯାହା ଥିଲେ ଗଣ୍ଡେ ଫୁଟେଇଦିଏ।''

"ମଠର ପ୍ରସାଦ ସାଦାସିଧା। କିନ୍ତୁ ସୁସାଦୁ । ମଲ୍ଲୀଫୁଲିଆ ଅରୁଆ ଅନ୍ନ ସାଙ୍ଗକୁ କାନ୍ଦୁଲ ଡ଼ାଲି, କିମ୍ୱା ମୁଗ ପଇଡି, ଖମ୍ୱଆଳୁ, ଚଣା, ବାଇଗଣ, ବଡ଼ି, ମୁନିଗା ପକେଇ ଆଛା ଘାଣ୍ଟେ। ତା ସାଙ୍ଗକୁ ଆମ୍ବିଳ । ଅନ୍ନ ବଢ଼ାହୋଇ ଡ଼ାଲି ପରଶା ଯିବାପରେ ପୋଷେ ଲେଖା ଘିଅ। ମହନ୍ତଙ୍କ ପତ୍ର ଅଲଗା, ଛ ତିଅଣ ନ ଭଜା, କଦଳୀ, କାଙ୍କଡ଼, ଭଜା, ନଡ଼ିଆ ପାଚେଡ଼ି, ଆମ୍ବୁଲ ଖଟେଇ ସାଙ୍ଗକୁ ବେସର।''

"ମହନ୍ତଙ୍କ ଦେହର ଲୁଣି ଝାଳର ବାସିଗନ୍ଧ ଓ ତାଙ୍କ ମୁହଁରୁ ପାଣ୍ଡିଆ ସୁବୁଦ୍ଧି ମସଲାର ହଳାହଳ ଲାଗୁଥିଲା ମତେ କ୍ଷଣକ ଭିତରେ ଆକ୍ରାନ୍ତ କରିଦେବ।''

"ମୁଁ ରାଧାବିନୋଦଙ୍କୁ ସ୍ମରଣାକରି କାନ୍ଥଠଣାରେ ଥୁଆହୋଇଥିବା ଅତର ଦାନୀଟାକୁ ହାତରେ ଉଠେଇନେଇ ଘୃଣାରେ ଓ ପ୍ରତିହିଂସାରେ ମହନ୍ତର ମୁହଁ ଉପରକୁ ଫୋପାଡି ଦେଲି।''

"ପୂର୍ଣ୍ଣକୁମ୍ଭ, ଯୋଡ଼ିମାଛ, ଦୀପ, କଦଳୀଗଛ, ଧେନୁପଲ, ନାଗବନ୍ଧ ଆଉ ଏମିତି ଯେତେ ଶୁଭଚିହ୍ନଅଛି, ସବୁ ଗୌରୀ ପଞ୍ଚବର୍ଣ୍ଣକ ମୁରୁଜ ଭିତରେ ବନ୍ଧକ କରିଦେଇଛି।''

"ପନ୍ଦରାଘର ମାଉସୀ, ଜହ୍ନି ଗୋଟାକ, ବାଇଗଣ ଦେବାପାଇଁ ଗୌରୀଘର ଦୁଆରେ ଟୋକେଇ ମୁଣ୍ଡରୁ କାଢ଼ି ଥୋଇଛି।"

**ଗ୍ରାମ୍ୟଜୀବନର ନିଖୁଣ ଚିତ୍ର ପାଠକ ମନରେ ଅଙ୍କିତ କରିବାପାଇଁ ଯେଉଁ ଭାଷା ବ୍ୟବହାର କରାଯାଇଛି, ତାହା ଉପନ୍ୟାସକୁ କେତେ ପ୍ରାଣବନ୍ତ ଓ ମନଛୁଆଁ କରିପାରିଛି, ଉଦ୍ଧୃତ ପଙ୍କ୍ତିଗୁଡ଼ିକରୁ ସହଜରେ ଲକ୍ଷ୍ୟ କରିହେବ।**

**ଶିଳ୍ପ ଭାଷା**

"ପିତୁଳିର ମୋଟକୁ ପାଇଲା ଭଳିଆ ଚାରି ପାଲକା କଲେ, ରାଧା ଓ ଲଳିତା ଉଭୟ ମାପରେ ସାତତାଳ ହେବେ। ଅଙ୍ଗାରରେ କାଠଗଡ଼କୁ ତିନିଭାଗରେ ଠାରିଦେଲେ । ମୁଣ୍ଡରୁ ଛାତି ମଝିଲା ପର୍ଯ୍ୟନ୍ତ ଗୋଟି ଭାଗ, ଛାତିରୁ ନାଭି ଯାଏଁ ଦ୍ୱିତୀୟ ଭାଗ ଓ ନିତମ୍ବନ୍ ନଳିପାଯାଏଁ ତୃତୀୟ ଭାଗ। ପ୍ରଥମ ଭାଗରେ ମୁଣ୍ଡ, ବେକ, କାନ୍ଧର ଅଂଶ ଓ ବୁକୁର ଉପର। ଦ୍ୱି ୍ୟ ଭାଗ ମଝିରେ ଅଣ୍ଟାପାଇଁ ରୋକଡ଼ ହୋଇ ପୁଣି ତଳ ଉପର ଦି ଥାକିଆ ହେବ- ଶିଳ୍ପୀ ଧୀରେ ଧୀରେ ନିହାଣ ଓ ବାରସି ଚଳେଇଲେ ।'' (ପୃ ୨୨୭)

''ଶେଷକୁ ନହୁରୁଣୀ ଖାଲି ଚାଲେ। ଯେତେ ଟିପ ସରସା ହୁଏ ନହୁରୁଣୀ ଫୁଲଭଳି ଉଶ୍ୱାସ ଲାଗେ।''

**ଉପର ଉଦ୍ଧୃତିରୁ ଲକ୍ଷ୍ୟ କରାଯାଇପାରେ ଶିଳ୍ପ ଓ କାରୁକୃତିର ନିର୍ମାଣ ପରିପାଟୀ ବର୍ଣ୍ଣନା କରିବା ପାଇଁ ଏକ ସତନ୍ତ୍ର ଭାଷା ଆବଶ୍ୟକ ତାହା ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଆଗରୁ ପରୀକ୍ଷିତ ହୋଇନଥିଲା।**

Digitized by srujanika@gmail.com

ମୂର୍ତ୍ତି ଗଢ଼ିଲାବେଳେ ସ୍ତନ, ଯୋନିଦେଶ ଓ ଜଙ୍ଘକୁ କିଭଳି ରୂପ ଦିଆଯିବ, ତାହା ବର୍ଣ୍ଣନା କରିବା ପାଇଁ ଏହି ଉପନ୍ୟାସରେ କିଭଳି ପଦବିନ୍ୟାସ କରାଯାଇଛି, ତାହା ବିଶେଷ ଭାବରେ ପ୍ରଣିଧାନଯୋଗ୍ୟ।

"ଛାତିରୁ ସ୍ତନ ଦିଟା ଯେମିତି ସୁଠାମ ହୋଇ ବାହାରିବ, ଟାଣ ଦିଶିବନି କି ହୁଗୁଳା ଦିଶିବନି, ଆରୋହ ଓ ଅବରୋହରେ ସାମଞ୍ଜସ୍ୟ ରହିବ। କାଖପଟୁ ଦେଖିଲେ ଲାଗିବ ଯେମିତି ପାହାଡ଼ଟିଏ ମୁଣ୍ଡ ଟେକିଛି। ଆଗପଟୁ ଦେଖିଲେ ଲାଗିବ ଯୋଡ଼ି କଳସ ଭଳି, ଅମୃତ ନିଗିଡ଼ିଯିବ, ଗୋଲହେବ, ବର୍ତ୍ତୁଳ ହେବ ଓ ସୁନ୍ଦର ହେବ। ଚୂଚୁକ ଦିଟା ଗୋଟା ଚଣା ଆକାରରେ ହେବ। ଅନାଘ୍ରତ ସ୍ତନ ତ!''

"ରାଧାଙ୍କ ଜଙ୍ଘ କଦଳୀଗଛର ଗଣ୍ଡିଭଳିଆ ରସାଳ ହେବ ଓ ବୃଶାଳ ହେବ। ଆଣ୍ଠୁ ପଦ୍ମମଣ୍ଡଳ ଭଳି ଭିତରେ ଲୁଚିରହିବ। ପେଣ୍ଠା ଆଣ୍ଠୁତଳୁ ବର୍ତ୍ତୁଳ ହୋଇ ଗୋଡ଼ ଗଣ୍ଠି ଆଡ଼କୁ କ୍ରମଶଃ ସରୁ ହେବ। ପାଦ ଭୂଇଁତଳେ ପୁରା ଚାପି ନ ରହି ସାମାନ୍ୟ ଲହରାୟିତ ହେବ। ଆଙ୍ଗୁଳି ବିନ୍ୟାସରେ ସମତା ରହିବ, ଆଙ୍ଗୁଳି ଅଗରେ ନଖ ପୋତିହୋଇ ରହିବ । ଗୋଡ଼ର ନେଡ଼ି ଅର୍ଦ୍ଧଚନ୍ଦ୍ର ଭଳି ଦେଖାଯିବ, ପାଦର ଉପରିଭାଗ ଚକୁଳିପିଠା ଭଳିଆ ପୂରିଲା ପୂରିଲା ଦିଶିବ । ପିଠିଟା କଟି ମୂଳରୁ କାନ୍ଧ ଉପରକୁ କଦଳୀପତ୍ର ଭଳି ବିସ୍ତାରିଯିବ। ମେରୁ ହାଡ଼ ଜମାରୁ ଦିଶିବନି। ଲାଗିବ ଶିଅର ଭଳି। ସେଠୁ ଦି'ଭାଗର ପିଠି ଦି'ପଟକୁ ଓଜାଡ଼ି ହୋଇ ପଡ଼ିବ।'' (ପୃ-୨୪୪)

ପେଟରେ ମାଂସଳ ଅନୁଭବ ରହିବ, ଅଥଚ ମେଦର ଆଭାସ ରହିବ ନାହିଁ। ନାଭିମଣ୍ଡଳ ପୂରିଲା ପୂରିଲା ଦିଶିବ ଓ ତା ଭିତରେ ଆକର୍ଷଣ ରହିବ ନାଭିର ଆବର୍ତ୍ତ। ନହୁରୁଣୀକୁ ଚେକେଇ କରି ବୁଲେଇ ବୁଲେଇ ଆଣିଲେ ନାଭିଟି ଗଭୀର ହେବ। ନାଭି ଗଭୀର ହେଲେ ନାରୀ ପ୍ରେମମୟୀ ହେବ । ତଳିପେଟ ନାଭିତଳୁ ଅନୁଚ୍ଚ ପାହାଡ଼ର ଅବରୋହ ଭଳି ଖସି ଆସି ଯୋନିଦେଶର ଉପରମୁଣ୍ଡରେ ଥାକି ଯିବ। ସେଠି ବଳୟଟିଏ ଲମ୍ବିଯିବ ଦୁଇ ଜାନୁର ଉପରମୂଳ ଯାଏଁ। ଏଇଠୁ ପୁଣି ଆରମ୍ଭ ହେବ ନାରୀ ଦେହର ସବୁଠାରୁ କାତରଭରା ଅଙ୍ଗଟିଏ- ଯୋନିଦେଶ । ତିନିପାହାଡ଼ ମୂଳେ ପୁଷ୍ପିଳ ଉପତ୍ୟକା ଭଳି ଜାଗାଟିଏ। କୂର୍ମ ପିଠି ଭଳି ପୀଠଟିଏ, ସମସ୍ତ ଆକର୍ଷଣ ବିକର୍ଷଣର ସରହଦଟିଏ, ସମସ୍ତ ଆବେଗ ଓ ଆକାଂକ୍ଷିତ ମୁହୂର୍ତ୍ତମାନଙ୍କ ସରାଗଟିଏ," (ପୃ-୨୪୨-୨୪୩)

**ଲକ୍ଷ୍ୟ କରିବାର କଥା ବର୍ଣ୍ଣନା କିଭଳି ଚାକ୍ଷୁଷ ଓ ଜୀବନ୍ତ, ଏବଂ ତତ୍ ସହିତ କିଭଳି ନିର୍ବିକାର, ଅଥଚ ରସୋତ୍ତୀର୍ଣ୍ଣ।**

କାଠଖୋଦେଇ କଳାର ଭାଷା ମଧ୍ୟ ସତନ୍ତ୍ର ଧରଣର। ଯଥା-

"ମଣ୍ଡପଟି ଚଉରସିଆ, ବାରହାତ ଓସାର ଓ ବାରହାତ ଲମ୍ବ। ଚାରିକୋଣକୁ ଚାରୋଟି ଖମ୍ବ। ଖମ୍ବର ବଇଠାରେ ବଦୁଅ ଉପରେ ଗଜସିଂହ, ତା' ଉପରେ କଳସ । କଳସ ଉପରେ ଉପରକୁ ହାତଛନ୍ଦି ଅଳସା । ଗୋଟିଏ ଖମ୍ବରେ ଚାରୋଟି ଅଳସା ଚାରିଦିଗକୁ ଅନେଇ ରହିବେ। ଅଳସାମାନଙ୍କ ଉପରେ ଓଲଟ ପଦ୍ମ ଖମ୍ବର ମକୁଟହେବ, ତା ଉପରେ ଶେଣି ଓ ଓରା ଥୁଆହେବ। ଓରାମାନଙ୍କରେ ଲୀଳାପଟ ଖୋଦେଇ ହେବ, କୃଷ୍ଣଜନ୍ମରୁ କଂସ ମରଣ ପର୍ଯ୍ୟନ୍ତ। ଶେଣିମାନଙ୍କର ଡାଳିଲତା କାମ, ହଂସଧଡ଼ି, ବଗଧଡ଼ି, ଗାଈଧଡ଼ି ଇତ୍ୟାଦି। କଣ ଛନ୍ଦାମାନଙ୍କରେ ରାହୁମୁଣ୍ଡ, ଓରା ଉପରେ ଖିଲାଣ ହୋଇଥିବା ଠିଆ ଖମ୍ବମାନଙ୍କର ସଖୀପଟା। ଶେଣି ଯୋଡ଼ମାନଙ୍କରେ କାଟେଣି ଛନ୍ଦ। ମଝିରେ ପଦ୍ମ ମଣ୍ଡଳ, ତା'ର ପୁଣି ଥାକ ଥାକ କରି ପାଞ୍ଚୋଟି ଲହଡ଼ି। ପ୍ରତିଟି ଲହଡ଼ି ଭିତରେ ମୂଳ ଆଡୁ ଆରମ୍ଭ ହୋଇ ବାହାରପଟକୁ ପଦ୍ମ ପାଖୁଡ଼ାମାନ ଖୋଦଇ ସରିଛି। ପାଖୁଡ଼ା ଗୁଡ଼ିକ ଆଠ, ଷୋହଳ, ବତିଶି, ଚଉଷଠି କ୍ରମରେ ଶହେ ଅଠେଇଶିରେ ସରିଛି। ପ୍ରତି ପାଖୁଡ଼ାରେ ଅଦଳବଦଳ ହୋଇ ଗୋପୀ ଓ କୃଷ୍ଣ କ୍ରୀଡ଼ା କରୁଛନ୍ତି। ପଦ୍ମମଣ୍ଡଳ ମଝିରୁ ପଣଧାଡି ତଳକୁ ଖସିଆସିଛି। ପଣସା ଉପରୁ ଚଉଡ଼ା ହୋଇ ତଳକୁ ସରୁଆ। ଥାକଥାକ ହୋଇ ପାଞ୍ଚ ଥାକ। ସବା

Digitized by srujanika@gmail.com

ଶେଷରେ କଦମ୍ବ ଫୁଲର କାଟେଣି ଗୁମ୍ଫାଟିଏ।ଏଥିରେ ମଧ୍ୟ ରାସକ୍ରୀଡ଼ା ନୃତ୍ୟଭଙ୍ଗୀର ମୂର୍ତ୍ତିମାନ ଶୋଭା ପାଉଛନ୍ତି। ପଣସାର ଝୁଲନ୍ତ ଅଙ୍ଗରେ ଓଲଟ ଶୁଆମାନେ କଦମ୍ବାକୁ ଖୁମ୍ପୁଛନ୍ତି।'' (ପୃ.୨୪୮-୨୪୯)

**ଉଦ୍ଧୃତ ପଙ୍‌କ୍ତିଗୁଡ଼ିକରୁ ସାଭାବିକ ଉପଲବ୍ଧି କରିହୁଏ ଶବ୍ଦବିନ୍ୟାସର କଳାତ୍ମକତା ଓ ଯାଦୁକରୀ ମହିମା । ଏହି ଉପନ୍ୟାସରେ ଶିଳ୍ପନିର୍ମାଣ କଳା ଓ କାରୁକୃତିର ବର୍ଣ୍ଣନା ପାଇଁ ଯେଉଁ ପଦଯୋଜନାର ବିନ୍ୟାସ କରାଯାଇଛି, ତାଦ୍ୱାରା ପ୍ରଥମଥର ପାଇଁ ବିବିଧ ଚିତ୍ରଭାଷା ଓ ପଦାବଳୀକୁ ଆମ ସାହିତ୍ୟରେ ଅଙ୍ଗୀଭୂତ କରାଯାଇଛି।**

**ଯୌନ ସମ୍ବେଦନା**

ଓଡ଼ିଆ ସାହିତ୍ୟରେ ଯୌନ ସମ୍ବେଦନା, ଆବେଗ ଓ ଅନୁଭୂତି ବିଶେଷତଃ ଉପନ୍ୟାସରେ ବିଶେଷ ଭାବରେ ରୂପାୟିତ ହୋଇଛି। **ପୁନର୍ନବା** ଉପନ୍ୟାସରେ ଯୌନ ଭାବନା ଓ ଦୃଶ୍ୟ ଅତି ଉଦାର ଓ ମୁକ୍ତ ଭାବରେ ବର୍ଣ୍ଣିତ ହୋଇଛି। କାହାଣୀ, ଦୃଶ୍ୟପଟ, ରସାନୁଭୂତି ବର୍ଣ୍ଣନା ପାଇଁ ଯେଉଁଠି ଯେତିକି ଯୌନଚିତ୍ର ପରିବେଷଣ ଆବଶ୍ୟକ, ତାହା ଦିଆଯାଇଛି।

ଉଦାହରଣ ସ୍ୱରୂପ-

"ଶଳା ନାତି ବାପାର ଅମୁକଟାକୁ ଚାହିଁବୁ । ଶଳା ଯାଉନ୍ତୁ ନା।''

"ତୁ ତ ଠାକୁରାଣୀଙ୍କ ଯୋନିଟା ଦେଖୁଛୁ। ସେ ଠାକୁରଙ୍କ ଅଣ୍ଡକୋଷଟା ଦେଖୁ। ତତେ ସମସ୍ତଙ୍କୁ ମନା।''

**ଦାର୍ଶନିକ ଭାଷା**

କଳା ଓ ଭାସ୍କର୍ଯ୍ୟ ସହିତ ସଂପୃକ୍ତ ଶିଳ୍ପୀମାନଙ୍କ ଅନ୍ତରଙ୍ଗ କଥା ଉପନ୍ୟାସର ମୁଖ୍ୟ ଉପଜୀବ୍ୟ ହୋଇଥିଲେ ମଧ୍ୟ ଏଥିରେ ଆବଶ୍ୟକ ସ୍ଥଳେ ଦର୍ଶନର ଅବତାରଣା କରାଯାଇଛି ଅତି ପ୍ରାସଙ୍ଗିକ ଭାବରେ। ବିଶେଷତଃ ରାଧାକୃଷ୍ଣ ତତ୍ତ୍ୱର ଗଭୀର ଦର୍ଶନ ସାର୍ଥକ ଭାବରେ ପରିବେଷଣ କରାଯାଇଛି। ଏଭଳି ଦର୍ଶନ ଅବତାରଣାର ଭାଷା ମଧ୍ୟ ଅତ୍ୟନ୍ତ ହୃଦୟଗ୍ରାହୀ ଓ ଚିନ୍ତା ଦ୍ୟୋତକ ହୋଇଛି।

"ତାପରେ ସେ (ବାଙ୍କବିହାରୀ) ପ୍ରବଚନ ଆରମ୍ଭିଲେ।''

''କୃଷ୍ଣଚନ୍ଦ୍ର ଓ ରାଧାରାଣୀଙ୍କ ବିଳାସ ଶ୍ରୀକୃଷ୍ଣଙ୍କ ପ୍ରତି ଜୀବାତ୍ମା ସ୍ୱରୂପିଣୀ ରାଧାଙ୍କର ଆସକ୍ତି ହିଁ ରାଧାକୃଷ୍ଣ ପ୍ରେମର ମୂଳକଥା। ମେଘରୁ ଜଳ ବହି ଧରା ଉପରେ ପ୍ରବାହିତ ହେଲେ ତାହା ଧାରା ହୁଏ। ଏହି ଧାରା ଉର୍ଦ୍ଧ୍ୱମୁଖୀ ହୋଇ ଧରାରୁ ମେଘକୁ ରାଧା ହୋଇଯାଏ। ଯିମିତି କୁଣ୍ଡଳିନୀ ମୂଳାଧାରାରୁ ଉର୍ଦ୍ଧ୍ୱମୁଖୀ ହୋଇ ସହସ୍ରାରରେ ପହଞ୍ଚିଲେ ଦିବ୍ୟାନନ୍ଦ ପ୍ରାପ୍ତି ହୁଏ, ସିମିତି ରାଧାଭାବରେ ଅଭିସରଣ କରି ପରମପୁରୁଷ କୃଷ୍ଣଙ୍କ ସହିତ ମିଳନ ହେଲେ ପରମ ଆନନ୍ଦ ମିଳେ। ଆମେ ସମସ୍ତେ ରାଧା ଭାବରେ କୃଷ୍ଣଙ୍କୁ ଭଜିଲେ କୃଷ୍ଣ ମିଳିବେ। ଶାସ୍ତ୍ରରେ କୁହାଯାଇଛି ଆରାଧୟତୀ ଇତି ରାଧା । ଅର୍ଥାତ୍ ଯିଏ ଆରାଧନା କରେ ସେ ହିଁ ରାଧା। ଆକର୍ଷୟତି ଇତି କୃଷ୍ଣ। ଅର୍ଥାତ୍ ଯିଏ ଆକର୍ଷଣ କରେ ସେ ହିଁ କୃଷ୍ଣ।''(ପୃ୨୭୨-୨୭୩)

ଏକାକିତ୍ୱ ଓ ସୌନ୍ଦର୍ଯ୍ୟବୋଧ ସମ୍ପର୍କିତ ଦର୍ଶନ ଲେଖକ ତାଙ୍କ ଉପନ୍ୟାସରେ ଅବତାରଣା କରି କହିଛନ୍ତି "ଏକାକୀତ୍ୱରେ ସୌନ୍ଦର୍ଯ୍ୟବୋଧ ନାହିଁ। ଏକାକୀତ୍ୱ ଓ ନିଃସଙ୍ଗତ୍ୱ ମାଧୁର୍ଯ୍ୟ ଭାବକୁ ପ୍ରକାଶିତ କରିପାରେ ନାହିଁ। ଏଣୁ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଆମମାନଙ୍କର ପୂଜ୍ୟ ଓ ଆରାଧ୍ୟ। ରାଧା ହେଉଛନ୍ତି ସକଳ ମାଧୁର୍ଯ୍ୟ, ସମ୍ୟକ ସୌନ୍ଦର୍ଯ୍ୟ ଓ ଲାବଣ୍ୟର ଉତ୍ସ। ଏହା ତାଙ୍କରି ପାଖରୁ ସକଳତ୍ର ବିଚ୍ଛୁରିତ ହୁଏ, ସେ ଏସବୁ ବିଭବର ଆଧାର। ତାଙ୍କର ପ୍ରାଣ ହେଉଛି କୃଷ୍ଣମୟ।''

Digitized by srujanika@gmail.com

''ରମଣ ଓ ସମ୍ଭୋଗ ତତ୍ତ୍ୱ ଉପରେ ଉପନ୍ୟାସରେ କୁହାଯାଇଛି- 'କାମନା ରହିତ ନ ହେଲେ ରମଣ ସମ୍ଭବ ନୁହେଁ । ପରମାତ୍ମା ସହିତ ଆତ୍ମାର, ଈଶ୍ୱର ସହିତ ଜୀବର ସଂଯୋଗ ହିଁ ରମଣ। ସେହି ଅନିର୍ବଚନୀୟ ରସାନନ୍ଦର ଆସ୍ୱାଦନ ହିଁ ସମ୍ଭୋଗ। ରସ ସମ୍ଭୋଗର ଚରମ ଉତ୍କର୍ଷ ହିଁ ରମଣ ।''(ପୃ ୧୫୩-୧୫୪)

**ଭାବାନୁଗତ ଭାଷା**

ଉପନ୍ୟାସ ରଚନା କଲାବେଳେ ଯେଉଁଠି ଯେଭଳି ଭାବ ବା ରସର କଥା କୁହାଯାଇଛି, ସେଥିପାଇଁ ସେଭଳି ଭାଷା ବ୍ୟବହାର କରାଯାଇଛି । ଗ୍ରାମ୍ୟ ଜୀବନର ନିଖୁଣ ଚିତ୍ର ରୂପାୟିତ କରିବା ପାଇଁ ଯେଉଁ ଭାଷା ବ୍ୟବହାର କରାଯାଇଛି ତାହା ଶିଳ୍ପ କଳା ବର୍ଣ୍ଣନା ପାଇଁ ବ୍ୟବହୃତ ଭାଷାଠାରୁ ଭିନ୍ନ। ଯୌନ ଭାବନାର ଭାଷା ଦର୍ଶନତତ୍ତ୍ୱ ବ୍ୟାଖ୍ୟାର ଭାଷାଠାରୁ ଭିନ୍ନ। କାହାଣୀ, ଘଟଣା ପ୍ରବାହ ଓ ଚିତ୍ରଣ ରେ ଭାଷା ଭାବାନୁଗତ ଓ ସେଥିପାଇଁ ହିଁ ଉପନ୍ୟାସଟି ଯେତିକି ସୁଖପାଠ୍ୟ, ସେତିକି ଚିନ୍ତାଦ୍ୟୋତକ।

ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଗୋପୀନାଥ ମହାନ୍ତି ତାଙ୍କ **ମାଟି ମଟାଳ** ଉପନ୍ୟାସରେ ଦକ୍ଷିଣ ଓଡ଼ିଶାର ଅନେକେ ସତନ୍ତ୍ର ଶବ୍ଦ କାଁ ଉଁ ବ୍ୟବହାର କରିଥିଲେ। କିନ୍ତୁ ଡ଼କ୍ଟର ଦିନନାଥ ପାଠୀ ପୁନର୍ନବା ଲେଖିଲାବେଳେ ସାହିତ୍ୟରେ ଆଦ୍ୟାବଧି ଅବ୍ୟବହୃତ ଭାବୋଦ୍ଦୀପକ ଶବ୍ଦ ସମ୍ଭାର ଅତି ଯତ୍ନର ସହିତ ଉପନ୍ୟାସର ଭାଷାରେ ଅଙ୍ଗୀଭୂତ କରିଛନ୍ତି। **ଉପନ୍ୟାସଟିର ଉପଜୀବ୍ୟ ବିଷୟବସ୍ତୁ ସତନ୍ତ୍ର ହେଲେବି ଏଥିରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଦକ୍ଷିଣ ଓଡ଼ିଶାର ପ୍ରଚଳିତ ଅନେକ ସମ୍ଭାବନାପୂର୍ଣ୍ଣ ଶବ୍ଦ ଓ କଥନ ଶୈଳୀକୁ କଳାତ୍ମକ ଛନ୍ଦରେ ଉପଯୋଗ କରିଛନ୍ତି। ତେଣୁ ଉପନ୍ୟାସର ଭାଷା ଦୃଷ୍ଟିରୁ ପୁନର୍ନବା ଓଡ଼ିଆ ସାହିତ୍ୟରେ ଏକ ଅଭୂତପୂର୍ବ ଓ ଅନନ୍ୟ ସୃଷ୍ଟି କହିଲେ ଅତ୍ୟୁକ୍ତି ହେବ ନାହିଁ।**

''ବାସନ୍ତୀ ଘରେ ସନ୍ଧ୍ୟାଆସର ଧୀରେ ଧୀରେ ଜମିବାକୁ ଲାଗିଲା।''

''ବାହାଘର ସମ୍ବାଦ କାନରେ ପଡ଼ିବାରୁ ମାଳି ସୋମନାଥ ନଅର ଅଫିସରେ ଆସି ହାଜର ହେଇଗଲା। ଦିଆନଙ୍କୁ ହାତଯୋଡ଼ି ଗୁହାରି କଲା, ସାଆନ୍ତେ, ରଜାରାଜୁଡ଼ା ବାହାଘର ଆଡ଼ମ୍ବର ଭିତରେ ସତେ ଫୁଲର ବାହାଦୁରୀ କ'ଣ। ଗଡ଼ର ସାଧାରଣ ଲୋକଟିମଧ ଗଛରୁ ଫୁଲତୋଳି ମାଳଗୁନ୍ଥି ଗଳାରେ ଲମ୍ବେଇ ଦେଉଛି। ଆମେ ଗଡ଼ରେ ରଜାଙ୍କ ଭାତିଆ ଖାଇ ପଡ଼ି ରହିଥାଉଥାଉ ସାଇବଦେଉ ଆମ ହାତ ତିଆରି ଫୁଲମାଳ ପିନ୍ଧିବେନି। ଏ କିଭଳିଆ କଥା। ସୋମନାଥ ଜଣାଇଲା ସେ ପାଟକନାରେ ଏଭଳିଆ ଚମତ୍କାର ଗୋଲାପ ଫୁଲ ତିଆରିକରି ତା ଉପରେ ଗୋଲାପ ଅତର ଛିଞ୍ଚିଦେବ ଯେ କେଉଁପୁଅର ଆନ୍ଦାଜ କାଟୁ କରିବନି। ସେ ସୋଲରେ ତିଆରି ମଲ୍ଲିକଢ଼ି ବନେଇ ଦେବ। ପଟୁଆର ପାଇଁ ସେବତୀ, ମନ୍ଦାର, କନିଅର ଗଛ ତିଆରି ଦେବ ଯେ ଆଉ ମଉଳିବାର ନାହିଁ। ବିବାହ ବେଦୀରେ ରଜାରାଣୀତ ଆଉ ସୁନାମୁକୁଟ ପିନ୍ଧବେନି, ସୋଲତିଆରି ମୁକୁଟ ପିନ୍ଧବା ମାମୁଲ। ସୋମନାଥର ସବୁ ପ୍ରସ୍ତାବରେ ଦେଓ୍ୱାନ ହଁ ଭରିଲେ।''

ନୂଆଗାଁର ଡେରା ଆଚେୟା ଝପଟି ଆସିଲା ନଅର ଅଫିସକୁ। ସେ ପଟୁଆରରେ ବାଘନାଚ କାଢ଼ିବ। ସାପୁଆସାପୁଆଣୀ ରଜାରାଣୀ, ଈଶ୍ୱରପାର୍ବତୀ ମେଳକ ମୁଖା ବାହାର କରିବ। ତା ପାଖରେ ବେଶ, ଭେଷର ଅଭାବ ନାହିଁ, ସବୁ ମହଜୁଦ ଅଛି। ଖାଲି ଦଶବାର କୋବାଳିଆ ଭେଣ୍ଡା ତାକୁ ସିଲ ହେଲେ ହେଲା। ହଳେ ହାଡ଼ିବାଇଦ ଓ ଜଣେ ମୁଖବୀଣାକାର ହେଲେ ପଟୁଆର ଲହସି ଉଠିବ । ହଳେ ମହାବଳ ବାଘ ଚିତ୍ରେଇବାକୁ ତାକୁ ଓଳିଏ ଲାଗିଯିବ । ସେ ଟୋପି, ଗାଲସି, ବାହୁଟିଯାକ ଆଉଥରେ ଚିତ୍ରେଇଦେବ । ଭିକାରୀ ରଣା ଆଉ ବାଇନାଥ ସାବତ ବାଘବେଶ ପକେଇବେ । ସେମାନଙ୍କୁ ରାଜାଦେଶ ହେଉ । ରଜାଙ୍କ ପାଇଟି ପାଇଁ ମନା କରିବାକୁ କାହାର ହେଲେ ଜୁ ନାହିଁ ।

Digitized by srujanika@gmail.com

ଖାଲି ପିଇବା ପାଇଁ କିଛି ଅଣ୍ଡାଖୋସା ଦରକାର । ପରିଚ୍ଛା ପଟ୍ଟନାୟକ ଅଭୟବାଣୀ ଶୁଣେଇଲେ । ପରୁଆ ନାହିଁ । ଆଚେୟାର ହାତରେ ପଚାଶ ଟଙ୍କା ପଇଠ କରିଦେଲେ । ଆଚେୟା ପରିଚ୍ଛା ସାଆନ୍ତଙ୍କୁ ଖୁସିରେ ବଲ ବଲ କରି ଅନେଇଲା । ମୁଣ୍ଡିଆ ମାରିଲା । ଟଙ୍କା ଗାଣ୍ଠିଆରେ ପୂରେଇ ନୂଆଗାଁ ଚାଲିଲା ।

ବାହାଘରେ ସବୁ ଆଡ଼ମ୍ବର ଗୋଟିଏ ପଟେ, ଭୋଜି ଗୋଟିଏ ପଟେ । ନଅର ଅଫିସରେ ହାଜର ହେବାପାଇଁ ମଦନ ସୁଆର, ରୋଷେଇଆ ସନାତନ ଓ ପଦ୍ମନାଭ ପାଖକୁ ଖବର ଗଲା । ମଦନ ରଜାଘର ମୁଖ୍ୟ ସୁଆର । ପିଲାଟି ହେଇଥିଲା ରାଧାମୋହନ ରାଜେନ୍ଦ୍ର ଦେବଙ୍କ ବାହାଘର ଦେଖିଛି । ବାପାଙ୍କ ସାଙ୍ଗରେ ଖନ୍ଦା ପାଖରେ ଠିଆ ହୋଇଛି । ବାହାଘର ଭୋଜିର ପଟାଟୋପ ଇନ୍ଦ୍ରସଭାର ଆୟୋଜନ ଭଳି । ପୁଣି ନିଆଁ ପାଣି କଥା । ଟିକିଏ ନିଦାନ ହୁଡ଼ିଲେ ସର୍ବନାଶ । ଜୀବନଧରି ଗଡ଼ରେ ରହିହେବନି । ଗଡ଼ଲୋକେ ମହା ଛୋକରିଆ । ଖାଲି ଚିକିଟି ବୋଲି ନୁହଁ । ସବୁଆଡ଼େ ଏକା ଭଳିଆ କଥା । ଏମିତି ଚିଗୁଲେଇବେ ଯେ ମର୍ମ ଭେଦିଯିବ । କହିବେ ଭାଇନା ଶୁଣୁଛ । ମଦନା ଶଳାଟା ଭାତ ରାନ୍ଧି ରାନ୍ଧି ବୁଢ଼ା ହେଲାଣି, ଆମ୍ବୁଲ ଖଟେଇଟେ ତ କରିଥିଲା, ସାହେବ ଦେଉଙ୍କ ଭୋଜିରେ । ଏମିତି ପୋଡ଼ି ଦେଇଥିଲା ଯେ ଚିରେଇତା ପାଣିଭଳି ଲାଗୁଥିଲା । ତୁଣ୍ଡରେ ଦେଇ ହେଉନଥିଲା । ତାପରେ ଭାଇନା ଇଆଡୁ ନିଆଁରେ ଘିଅ ପକେଇଲାଭଳି କଥା କହିବେ । ସେ'ଟା ନିଆଁଜଳଟାରେ, ନିଆଁଗିଳାଟା ମ । ଜାଣିଛୁତ ତତଲା ପେଜ ପଡ଼ିଯିବାରୁ ଫଡ଼ିଆରୁ ପରସ୍ତେ ଛାଲ ଉତୁରି ଯାଇଛି । ସେ'ଟାକୁ ରଜାଘର ଏ ସବୁ କଥାରେ କାହିଁକି ଦାୟିତ୍ୱ ଦିଅନ୍ତି କେଜାଣି । ଶଳା ନଅର ଭିତରେ ଥାକିଯାଇଛି ତ ଯିବ କୁଆଡ଼େ ।

ଏଣୁ ମଦନ ସୁଆର ସତର୍କ । କେବଳ ନିଜ ପାଇଁ ନୁହେଁ, ବେଶି ତା'ର ରନ୍ଧା ସାଙ୍ଗିଆଙ୍କ ପାଇଁ ।

''ନାସ କଣ୍ଟେ କଳରେ ଜାକିଦେଇ ଏ ବ୍ରାହ୍ମଣ ପୁଙ୍ଗାକ ଯାବିତା ଲେଖାରେ ଲାଗିଗଲେ । ମଦନା ଡାକୁଥାଏ ସନାତନ ଲେଖୁଥାଏ । ମଝିରେ କେଉଁଠି ଛାଡ଼ବାଡ଼ ହେଇଗଲେ ପଦନା ଯୋଡ଼ିଦେଉଥାଏ । ବାସୁମତୀ ଚାଉଳ, ଗୁଆଘିଅ ଠୁ ଆରମ୍ଭକରି ଧନିଆ, ପାନମହୁରୀ ଓ ଆପୁମଞ୍ଜି ଯାଏ ଯାବିତା ଦାଖଲ କରିଦେଇ ସେମାନେ ଫେରିଲେ । ଏବେ ଭଣ୍ଡାର ମେକାପ ଓ ତ୍ରିନାଥ ଡାକୁଆର ପାଇଟି । ତଲାସିଦେଲେ କାମ ବଢ଼ିବ । ଗଣ୍ଡେ ରେଡ଼ିକାଣୀଙ୍କୁ କଚେରୀ ପିଣ୍ଡାରେ ବସେଇ ସବୁ ଜିନିଷର ରଜାମାର୍କା ପାଛୋଡ଼ାଟିଏ ଦରକାର । ରୟତ ବୃନ୍ଦାବନକୁ ଡକେଇ ପଠେଇଲେ ଏ କାମ ବଢ଼େଇ ଦେବ । ଗଡ଼ରେ ଲୋକଙ୍କ ଅଭାବନାହିଁ । ଥାକ ଜାଣିଥିବା ଦରକାର । ନାଟୁକୁ ବୁଲଟୁ ଭଳି ସବୁ ଖଞ୍ଜା ହେଇଛି । ଖାଲି ଖଞ୍ଜିପାରିଲେ ହେଲା ।''

ସବୁକଥା ଗୋଟିଏ ଆଡ଼କୁ, କିନ୍ତୁ ବାମୁଣିଆ ରୀତିନୀତି ଜବର । ଅମାନିଆ ସାଙ୍ଗିଆ ବଳଦ ଭଳି କଡ଼ିଆ ଭିଡ଼ି ନେଉଥିବେ । ବାମୁଣଯାକ ମହାକୋପୀ । କର୍ମକାଣ୍ଡରେ ତାଙ୍କ ହାତ ଚିକ୍କଣ ହୁଏ । ପୋଢ଼ ଭଳି ଗିରେଇକରି ରହିଥିବେ । କର୍ମ ବଢୁଥିବ, ଅସଲ ବେଳେ ଅମୁକଟା କୁଆଡ଼େ ଗଲାବୋଲି ବୋବାଳି ଛାଡ଼ିବେ । ତାପରେ ମାର ମାର ଭଣ୍ଡାରିଆକୁ ମାର । ଆଗବେଳ ହେଇଥିଲେ ରଜାଲୋକ ଶୂଳୀରେ ଚଢ଼େଇ ଦେଇଥାନ୍ତେ ।

ରାଜ ପୁରୋହିତ ରାୟଗୁରୁ ମହାଶୟ ବିଜେହେଲେ । ଦିଆନ, ଛାମୁକରଣ ଆଉ ଯେତେକ ସେଠି କଚେରୀରେ ଉପସ୍ଥିତ ଥିଲେ ଠିଆହୋଇ ଓଳଗି ହେଲେ । ରାଇଗୁରୁ କହିଲେ ରଜାଘର ରୀତିନୀତି ପନ୍ଦର ଦିନ ଆଗରୁ ଆରମ୍ଭ ହେବା କଥା । ଅନୁମାନ କରି ବୋଇଲେ ହଁ ଆରମ୍ଭ ହେଇଯିବଣି ସିଆଡ଼େ ନଅର ଭିତର ଖଞ୍ଜରେ ପୁଅ ବାମୁଣ ଅଛି ଚଳେଇ ନେଉଥିବ । ଏବେ ଖାଲି ଗନ୍ଧସଣ ବିବାହ, ହସ୍ତଗ୍ରନ୍ଥି, କନ୍ୟାବରଣ ଓ ଚଉଠି ବିଧାନ ପାଇଁ ଯାହା ବିଧି ଦରକାର । ସେ ଘରୁ

Digitized by srujanika@gmail.com

ଯାବିତା ତିଆରି ଆଣିଥିଲେ, ଦେୱାନଙ୍କୁ ଧରେଇ ଦେଲେ । କହିଲେ ଇଷ୍ଟଦେବତା ନ୍ୟାସ ପାଇଁ, ବରୁଣକୁମ୍ଭ ସ୍ଥାପନ ପାଇଁ, ହସ୍ତଗ୍ରନ୍ଥି, ଲବଣଚଉଁରୀ ଓ ଲଜ୍ଜାହୋମ ପାଇଁ ଖେଟାକରି ଷୋଳପୂଜାଟିଏ ଦରକାର, ହୋମଟିଏ ଦରକାର ।

ସାହେବ ଦେଉ ବିଲାତରେ ପାଞ୍ଚ ଛ' ବର୍ଷ ରହିଯାଇଥିଲେ ତ, ତା'ର ଗୋଟିଏ ଭୂତଶୁଦ୍ଧି ଓ ବରୁଣ ଶୁଦ୍ଧି ପୂଜାହେବ । ସେ ଜଳଯାତ୍ରା କରିଥିଲେ ବୋଲି ବରୁଣ ଶୁଦ୍ଧି । କ'ଣ ଗୋଟିଏ ବିବାଦୀୟ ନାରୀର ନାଁ କାନରେ ପଡୁଛି । ତା'ର କୁପ୍ରଭାବ ଦୂରୀଭୂତ କରି ବିବାହ କର୍ମ ନିଷ୍କଣ୍ଟକ କରିବା ପାଇଁ ବାଳକୁମାରୀଙ୍କ ଠେ ନିଶାର୍ଦ୍ଧରେ ପୂଜା ହୋମ ଓ ଛାଗ ବଳୀର ବ୍ୟବସ୍ଥା ହେବା ବିଧେୟ । ଏକଥା ସାହେବ ଦେଉଙ୍କ କାନକୁ ଯିବା ଉଚିତ ହେବନି । ତାଙ୍କର ସର୍ବ ଶୁଭ ମନାସି ଏହି କର୍ମ କରାଯିବ । ଏଇଟା ସମ୍ପର୍କରେ ସେ ସମ୍ପୂର୍ଣ୍ଣ ଅବହିତ ଅଛନ୍ତି । ଗୁମସ୍ତା ଅଯଥା ମନ୍ତବ୍ୟ ଦେଲେ; ମହାପ୍ରୁ, ଯେଉଁ ସାଇବାଣୀଟା ଦେଉଙ୍କ ସାଙ୍ଗରେ ଗଡ଼କୁ ଆସୁ ନଥିଲା କି ଆଜ୍ଞା, ସେଇକଥା ତ । ରାଇଗୁରୁ ଇମିତିକା ରିଶା ହେଲେ ଯେ ଗୁମସ୍ତାଙ୍କ ପୋଖରୀପାଣି ଅବସ୍ଥା ହେଇଗଲା । ସେ ରାଇଗୁରୁଙ୍କ ଉପଦେଶ ଗ୍ରହଣ କରି ଷୋଳପୂଜା, ଖେଟାକରି ବ୍ୟବସ୍ଥା କରିବା ପାଇଁ ପ୍ରତିଶ୍ରୁତି ଦେଲା ।

''ବାହାଘର ପଟୁଆର ଯିବାଦିନ ଗଡ଼ଲୋକ ବେଳାଏ ଖାଇବେ । ତା ସାଙ୍ଗକୁ କୋଡ଼ିଏ ତିରିଶି ଖଣ୍ଡ ଗାଁର ଲୋକ, ଅତିଥି ଅଭ୍ୟାଗତ, ଯେତେକ ରଇତ, ହଳିଆ, ମୁଲିଆ ଖାଉନ୍ଦ, ଚାକରବାକରଙ୍କ ପାଇଁ ଖନ୍ଦା ଅଲଗା । ସବୁ ତ ଅରୁଆ, ଟିକିଏ ମୋଟା ଧରଣର ଚାଉଳ । ଡାଲି ବି ଦି' ରକମର ହେବ ଯେ ଫାଳ ମୁଗ ଆଉ ଫାଳ କାନ୍ଦୁଲ । ଚାଉଳ ହିସାବ ଶଗଡ଼ରେ, ଡାଲି ଭରଣ ନଉତିରେ, ତାଙ୍କୁ ଧରି ପରିବାପତ୍ର । ସବୁ ତୁଣ୍ଡେ ତୁଣ୍ଡେ ହିସାବ । ହାଡ଼ି ଭୁବନାକୁ ଡାକି ଗାଁ ଗାଁରେ ଧେଣ୍ଟୁରା ଦିଆଗଲା, ଭୋଜିରେ ସପରିବାର କୁଣିଆ ମଇତ୍ର ନେଇ ହାଜର ହେବାପାଇଁ ଖବର ଦେଇ ଦିଆଗଲା । ରଜାଭୋଜି ଲୋକେ ପେଟ ଫଟେଇ ଖାଇଦେବେ । ତଣ୍ଟି ପର୍ଯ୍ୟନ୍ତ ଗିଳିବେ, ହେଣ୍ଡି ମାରିବେ । କୋ ଗାଁ ଗଣ୍ଡାରୁ ବେଠି ଆଉ ଦଶ କି ପଚିଶ କୋଶ ଦୂରରୁ ଦି'ଚାରି ଭେଟି ଶଗଡ଼ ଶଗଡ଼ ନଅରରେ ଆସି ପହଞ୍ଚିଲା । ଗୁମସ୍ତା ଓ ଗନ୍ତାୟତ ପାଞ୍ଚଦଶ ରେଡ଼ିକାଙ୍କୁ ନେଇ ଶଗଡ଼ରୁ ଜିନିଷପତ୍ର ଉହ୍ଲେଇବା ଓ କଚେରୀ ପିଣ୍ଡାରେ ଗଣତି କରି ରଖିବା କାମରେ ଲାଗିଗଲେଣି । ସବୁ ଜାଗାରୁ ବଛା ବଛା ଚିଜ ଆସୁଛି, ଓଳପୁରରୁ ଡେଣ୍ଡା ବାଇଗଣ । ତା' ସାଙ୍ଗରେ ଖୁଦୁଡ଼ିରୁ କୁଜି ବାଇଗଣ ଦି' ଚାରି ପାଞ୍ଚ ଟୋକେଇ ଅଛି । କାମ୍ପ ନୂଆଗାଁରୁ ଦେଶୀ ଆଳୁ, ଆଡ଼ିସାରୁ, କରବାଲୁଆ ମୂଳା ଦେଶୀ ଓ ରେଙ୍ଗୁନ୍, ପେଣ୍ଠରୁ ବିଲାତି ଆଳୁ, ମାଧବନ୍ଧରୁ ଝଟା । ଝଟାରେ ପୁଣି ପ୍ରକାରେ ପ୍ରକାରେ, ଗୋବର୍ଦ୍ଧନ ଆଉ ଗୁହାଁର, ତା ସାଙ୍ଗକୁ ଝୁଡ଼ଙ୍ଗ, ବଡ଼କାନ୍ଦୁଲ, ବାଇଲ, ବରଗୁଡ଼ି । ଉଦାନରୁ ଦି'ଶଗଡ଼ ପାକଳ ଓ ଖୁରାଣ୍ଟି ନଡ଼ିଆ । ଖୁରାଣ୍ଟି ନଡ଼ିଆ ହୋମ ପାଇଁ ଓ କୁମ୍ଭ ପାଇଁ । ଚାନ୍ଦପୁରରୁ ଦହି, ଗୌଡ଼ଗାଁରୁ ଗୁଆଘିଅ, ବାହିନୀପତିରୁ ଖିରି ପାଇଁ ଜିରା ଚାଉଳ, ତା' ସାଙ୍ଗକୁ ଭଳଲିଆ ଚାଉଳ । ଦେଖୁ ଦେଖୁ ଦଶ ପନ୍ଦର ଶଗଡ଼ ପନିପରିବା ଆଉ ଦଶ ପନ୍ଦର ଶଗଡ଼ ଅନ୍ୟାନ୍ୟ ସରଞ୍ଜାମ ଆସି ପହଞ୍ଚିଗଲା ।

ବାହାଘର ଆଗଦିନ । ଖାସ୍ ଚିକିଟି ଗଡ଼ ଓ ପେଣ୍ଠରୁ ଯାହା ଦରବ ଆସିଥିଲା ତା ନଅର ଖନ୍ଦାପାଇଁ । ରଜାଘର ଖାନା, ପାଞ୍ଚଦଶ ଦିନତଳୁ ପିଠାପଣା, ଖଜାଗଜା, ଲଡୁଝିଲାପି, ଜଗନ୍ନାଥ ବଲ୍ଲଭ, ଘି' ବରା, ଖୁରମା, ପୋଡ଼ପିଠା, କାକରା, ଆରିସା, ଗହମଗଜା, ରସାବଳି, ମେଣ୍ଢାଶିଙ୍ଗା, କୃଷ୍ଣବଲ୍ଲବ, ବାଟୁଲୁ ଅବାଟୁଲୁ, ବୁର୍‌ଲୁ ଗାର୍‌ଲୁ, ପୁଳି ଚନ୍ଦ୍ରକାନ୍ତି, ସାକର ଫେଣି ତିଆରି ଚାଲିଛି । ରନ୍ଧାହେଉଛି । ଖିଆ ହେଉଛି । ଚାଲିଛି ଏକ ନିତ୍ୟରାସର ଆଡ଼ମ୍ବର । ଚଉଠି ବିଧାନ ଭୋଜି ପାଇଁ ଜେନାବନ୍ଧ ପୋଖରୀକୁ ଖେଟାକରି ରଖିଦିଆହେଇଛି । ଜେନାବନ୍ଧର ମାଛ ଶେଷପାଦିଆ ହେଲାଣି । ତେନ୍ତୁଳିଆବନ୍ଧ ଆଉ ଭାଲୁଘାଇରୁ ମାଛ ଧରାହେଇ ଆସୁଛି । ସୁରଳ ସୁମାଣ୍ଡିରୁ ସଜଖଇଙ୍ଗା ଆଉ

Digitized by srujanika@gmail.com

ରମ୍ଭାରୁ ଇଟକଙ୍କଡ଼ା ଆସି ଠେସି ହେଇଗଲାଣି । ଚିକିଟିପେଣ୍ଠର କଳିଙ୍ଗ ବୈଶ୍ୟ ସମାଜ ସୋରଡ଼ା ପେଣ୍ଠକୁ ଅଡ଼ର ଦେଇ ବୃହତ୍ ଗଞ୍ଜାମ ରାଜ୍ୟର ହେଟ କାନୁସୁ ମାଛ ଶଗଡ଼େ ମଗାଇ ସାଇବଦେଉଙ୍କ ଭୋଜି ପାଇଁ ଭେଟିଦେଲେ । ଗୋଟିଏ ଅଧେ ତରକାରି ହେଲେ ସିନା ମାଛ କୋଳେଇ ନଥାନ୍ତା ହେଲେ ଆଇଁଷ ଭଳିକି ଭଳି କୁପା କୁପା । ନିଅଣ୍ଟ ପଡ଼ିବା ବେଳକୁ କୁଆଡୁ କେଜାଣି ଆସି ଭରଣା ହେଇଯାଉଛି । ଦ୍ରୌପଦୀ ବସ୍ତ୍ରହରଣ ପ୍ରସଙ୍ଗରେ ଶାଢ଼ୀ ଆସି ଦ୍ରୌପଦୀଙ୍କ ଦେହରେ ଭରିଗଲା ପରି । ଆୟୋଜନରେ ସମସ୍ତେ ବ୍ୟସ୍ତ ।

କନ୍ୟାଘର ପଟେବି ଆୟୋଜନ ପୂରାଦମରେ ଚାଲିଛି । ଦିଇନ ତ ଲୋକେ ଇଛାପୁରମ୍, ସୁରଙ୍ଗୀ, ଚିକିଟି ଯା'ଆସ କରୁଛନ୍ତି । ଏଣୁ ଖବର ଅନ୍ତରର ଅଭାବ ନାହିଁ । ଇଛାପୁରମ୍‌ରେ ତମ୍ବୁ ପଡ଼ିଲାଣି । ହାଇରୋଡ଼ ଉପରେ ଭାରସାଙ୍ଗିଆ ଭଳି ଦି'ପଟକୁ ସହର । ସେଠି ସମସ୍ତେ ନିର୍ବିଘ୍ନରେ ଆସି ପହଞ୍ଚିପାରିବେ, ରହଣି ପାଇଁ ଫର୍ଚ୍ଚା ଜାଗା ଅଛି ।

ଇଛାପୁରମ୍‌ର ଦଶରା ପଡ଼ିଆରେ ଶହେ ପର୍ଯ୍ୟନ୍ତ ତମ୍ବୁ ପଡ଼ିବ । କୁଆଡୁ ଏତେ ତମ୍ବୁଆସିଛି କେଜାଣି, ଲାଗୁଛି କିଏ ଜଣେ ମୋଗଲ ବାଦଶାହ ପାରିଧିରେ ଆସି ଡେରା ପକେଇଛନ୍ତି । ବରଯାତ୍ରୀଙ୍କ ମର୍ଯ୍ୟାଦାକୁ ଖାତିରିକରି ଅଲଗା ଅଲଗା ତମ୍ବୁ କନାତ ପାଚେରୀ ଡେରାହେଇ ଖେଟା କରିଦିଆହେଇଛି । ତମ୍ବୁଯାକ ଚଉଖୁଣ୍ଟିଆ ଓ ପ୍ରକାଣ୍ଡ । ଗୋଟିଏ ଗୋଟିଏ ତମ୍ବୁ ନଅର ଭଳିଆ । ତାରି ଭିତରେ ପୁଣି ଗୋଟିଏ ଗୋଟିଏ ଚାରିପାଞ୍ଚ କୋଠରିଆ । ବର ବିଜେ ହେବାପାଇଁ ନିଆରା ତମ୍ବୁ ଲାଗୁଛି ସବୁଠୁ ସରସା । ତମ୍ବୁ ଭିତରେ ଦରବାର ଖାନା । ଯାଉଁଳା ପହୁଡ଼ ଘର, ପୋଷାକ ପରିଚ୍ଛଦ, ସାମାନପତ୍ର ରଖିବା ପାଇଁ ଭଣ୍ଡାର ଘର, ବର ବେଶ ହେବା ପାଇଁ ମଣିଷେ ଉଚ୍ଚର ଠିଆ ଦର୍ପଣ ଥାଇ ବଖରେ, ଶୃଳେଇରେ ବିଜେ ହେବାପାଇଁ ମର୍ଦ୍ଦନ ବଢ଼ିବା ପାଇଁ ସ୍ନାହାନ ରୀତି ବଢ଼େଇବା ପାଇଁ ମଣୋହି ପାଇଁ ଅଲଗା ଅଲଗା ଖଞ୍ଜା ।

ଏତ ଗଲା ବରର ତମ୍ବୁ । ବରଯାତ୍ରୀରେ ସମାଗତ ଅତିଥି, ଖାସ୍‌କରି ରାଜପରିବାରର ଲୋକଙ୍କ ପାଇଁ ସେମିତି ରାଜକୀୟ ବ୍ୟବସ୍ଥା, ସେମାନଙ୍କ ଖାତିରିକୁ ସୁହାଇଲା ଭଳି ମର୍ଯ୍ୟାଦା; ତାକୁ ଖାପ ଖୁଆଇ ଆଉ ସବୁ ବ୍ୟବସ୍ଥା । ଅତିଥି ଚର୍ଚ୍ଚାରେ ସାମାନ୍ୟ ତ୍ରୁଟି ବିଚ୍ୟୁତି ହେଲେ ବାହାଘରର ସବୁ ଆଡ଼ମ୍ବର ପା'ଡୁ ହୋଇଯିବ । ସୁରଙ୍ଗୀଙ୍କ ବଡ଼ପୁଅ ସ୍ୱୟଂ ଯୁବରାଜ ଏହି ବ୍ୟବସ୍ଥା ତଦାରଖ କରୁଛନ୍ତି । ପୁଣି ବରଯାତ୍ରୀରେ ଅଛନ୍ତି ଚିକିଟି ଗଡ଼ର ମାଣ୍ୟଗଣ୍ୟ ବ୍ୟକ୍ତି । ଆଶୁକବି ବିଦ୍ୟାଳଙ୍କାର ଭୁବନାନନ୍ଦ ମିଶ୍ର । ସଙ୍ଗୀତ ବିଷାରଦ ବାଞ୍ଛାନିଧି ଗାୟକ ରତ୍ନ । ସଦାଶିବ ବିଦ୍ୟାଭୂଷଣଙ୍କ ପୁଅ ଯୁଗଳ କିଶୋର ବିଦ୍ୟାଭୂଷଣ । ସାକ୍ଷାତ ଧନ୍ୱନ୍ତରୀ ସଦୃଶ୍ୟ ବିଶ୍ୱନାଥ କବିରାଜ, ରାଧାମୋହନ ବକ୍‌ସି । ରୂପକାରରତ୍ନ ବଳଭଦ୍ର ମହାପାତ୍ର, ଆଉ ତାଙ୍କ ସାଙ୍ଗକୁ ଦିଆନ, ଛାମୁକରଣ, ସୁମନ୍ତ, ଖଡ୍ଗରାୟ, କଥାସମୁଦ୍ର, ବିଦ୍ୟାସାଗର, ରଣଷଣ୍ଡ, ବାଣଷଣ୍ଡ, ବିଶ୍ୱାସରାୟ, ବିଷୋୟୀ, ରାୟଗୁରୁ, ପୁରୋହିତ । ଏ ସମସ୍ତଙ୍କର ତମ୍ବୁଗୁଡ଼ିକ କନ୍ୟାପଟ ଖଞ୍ଜାର ତମ୍ବୁ । ତମ୍ବୁର ଛାଉଣି ଭିତରେ ହିଁ ନଅରର ପରିକଳ୍ପନା । ତାପରେ କଉଡ଼ିଖେଳ କନକବେଦୀ ଉପରେ ତମ୍ବୁଭିତରେ ରାଣୀ, ଜେମା, ଦାସୀ ଓ ପୋଇଲିଙ୍କ ଗହଣରେ । ସୁନାର ସାତଟି କଉଡ଼ି ବେଦୀ ଉପରେ ଝଲସି ଉଠୁଛି ।

ଢ଼ୋଲର ଗମ୍ଭୀର ଘୋଷ କମ୍ପେଇ ଦେଉଛି ପଟୁଆରକୁ । ଦଶ ବାର ଘଣ୍ଟୁଆ ରଥ ପହଣ୍ଡିବେଳର ନାଦ ଉଳୁଟଉଛନ୍ତି । ବୁଗୁଡ଼ା ଭୀମଶିଆଳିର ଭରତମୁନି ଓ ବାୟାମୁନି ଏକାସାଙ୍ଗରେ ଯୋଡ଼ାଶଙ୍ଖ ଘଣ୍ଟେଧରି ଲୟେଇ ରଖିଛନ୍ତି । ଶଙ୍ଖନାଦ ପଞ୍ଚଜନ୍ୟକୁ ବଳିପଡୁଛି । ବାଜାଦଳ ପଛକୁ ହାତୀ, ପିଠିରେ ରୁପା ଛାଉଣିର ହାଉଦା, ହାଦୋଳା । ମାହୁନ୍ତମାନେ ପାଟପଗଡ଼ି ମୁଣ୍ଡରେ ବାନ୍ଧି ବସିଛନ୍ତି । ତା' ପାଖକୁ ଯୋଦ୍ଧ ବେଶରେ ସଜ୍ଜିତ ଦଶଟି ଘୋଡ଼ା । ତା' ପଛକୁ ପଛ ଆସୁଛନ୍ତି ସାପୁଆସାପୁଆଣୀ, ରଜାରାଣୀ, ଈଶ୍ୱରପାର୍ବତୀ ଓ ରାଧାକୃଷ୍ଣ ମୁଖା । ବାଜାର ତାଳେ ତାଳେ ନାଚୁଛନ୍ତି । ନାରସେୟା ଓ

Digitized by srujanika@gmail.com

ବାନାୟରଙ୍କ ବନାଟି ଖେଳ ପଟୁଆରକୁ ଦି'ଭାଗ କରିଦେଉଛି । ଅସଂଖ୍ୟ ବାଡ଼ି ଚକ୍ରବତ୍ ଶୂନ୍ୟରେ ଶୂନ୍ୟରେ ଘୂରି ଯାଉଛି । ମଝି ମଝିରେ ପଟୁଆରକୁ ଥମିଦେଇ ସେମାନେ ତୁହାକୁ ତୁହା ଅଲଗା ଖେଳ ଦେଖଉଛନ୍ତି । ପଟୁଆର ସାମାନ୍ୟ ଥମିଗଲେ ଲୁଙ୍ଗାଜିପ୍ ଉପରେ ଥୁଆ ହେଇଥିବା କୁନ୍ଦାକାଠର ରାଧା ପ୍ରେମଲୀଳା କୁଞ୍ଜଟି ଥରେ ଘୂରି ପଡୁଛି ଓ ଜିପ୍ ସାଙ୍ଗରେ ଚାଲୁଥିବା ଗାହକ ଓ ପାଳିଆମାନେ ଗୀତ ଲମ୍ବେଇ ଦେଉଛନ୍ତି । ''କୃଷ୍ଣ ହେ ଦିଅକୃପା ବରଷି'' ।

ପଟୁଆର ଭିତରେ ଦାରୀନାଟ ବି ଚାଲିଛି । କନକ ଡେବିରି ହାତ ଅଣ୍ଟା ଉପରେ ଆଉ ଖାଇଲା ହାତ ଗାଲତଳେ ଭରାରଖି ଆରମ୍ଭି ଦେଉଛି, 'ଶ୍ୟାମ ନାଗର ହେ' । ସେ ପାଳିଙ୍କି ଆଡ଼କୁ ଥରେ ଓ ଦଉକୁ ଥରେ ଅନଉଛି ପୁଣି ପଛକୁ ଘୂରିପଡ଼ି ପଟୁଆରରେ ଯାଉଥିବା ଲୋକଙ୍କୁ କଟାକ୍ଷରେ ହାଣି ଦେଉଛି । ପୁଣି ବୋଲୁଛି 'ଏବେଶ ହୋଇବ ନାହିଁ । ହରିଆ ସାଆନ୍ତ ପେଟେ ପିଇଦେଇ ଖାଲି ଝୁଲି ପଡୁଛି । ଫୁଙ୍କିଦେଲେ ଉଡ଼ିଯିବ ।

ମୁଁ ଉଦ୍ଧୃତି ଦେଉଦେଉ ଭାଷାର ଆଡ଼ମ୍ବର ଓ ବର୍ଣ୍ଣନାର ଚମତ୍କାରିତାରେ ପ୍ରଭାବିତ ହୋଇ ବାହାଘର ପଟୁଆର ଓ ଭୋଜିଭାତର ଅପୂର୍ବ ଯୋଗାଡ଼ର କେତେ ପୃଷ୍ଠା ଉଦ୍ଧାର କରିସାରିଲିଣି । ଏହାର ଏକମାତ୍ର କାରଣ ହେଲା ଆଜିଯାଏଁ ଓଡ଼ିଆ ଉପନ୍ୟାସରେ ଏଭଳି ପ୍ରସଙ୍ଗଟିଏ ମୋ' ଆଖିରେ ପଡ଼ି ନଥିଲା । ଏହା କେବଳ ଭାଷାର ଚାତୁରୀ ନୁହେଁ, ତା'ରି ଗୁମ୍ଫିତ ରାଜକୀୟ ପରମ୍ପରା ଓ ଆମ ଐତିହ୍ୟର ସୁଗନ୍ଧ । ମୁଁ **ପୁନର୍ନବା**ରୁ ପ୍ରସଙ୍ଗ ଆରମ୍ଭ କରି **ଶ୍ଳୋକଛନ୍ଦ**ର ସମ୍ମୋହିତ ପରିଧି ଭିତରେ ହଜିଯାଇଛି । ମୁଁ ଆରମ୍ଭରୁ ଯେଉଁକଥା କହି ପ୍ରସଙ୍ଗ ବଖାଣିଥିଲି ଶେଷରେ ମଧ ସେହି ଗୋଟିଏ କଥା ଦୋହରାଉଛି ଯେ ଔପନ୍ୟାସିକ ଦିନନାଥ ଭାଷାବିନ୍ୟାସର, ବର୍ଣ୍ଣନ ଚାତୁରୀର ସତେ ଯେଭଳି ଜଣେ ସମ୍ରାଟ ।



Digitized by srujanika@gmail.com



ଦୋହଦ (Homage to Bhubaneswar) ତୈଳଚିତ୍ର ୧୭୫ x ୧୨୭ ସେମି ୧୯୯୦
(କେନ୍ଦ୍ର ଲଳିତକଳା ଏକାଡେମୀ ସଂଗ୍ରହରେ ଅଛି)

Digitized by srujanika@gmail.com



ଅଭିସାରିକା ରାଧା (Abhisarika Radha) ତୈଳଚିତ୍ର, ୧୭୫ x ୧୨୭ ସେମି. ୧୯୯୦
(ଅଜଣା ସଂଗ୍ରହ)

Digitized by srujanika@gmail.com



ମଙ୍ଗଳା (Mangala) ତୈଳଚିତ୍ର ୮୭x ୭୨ ସେମି ୧୯୮୯
(ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତକଳା କେନ୍ଦ୍ର ସଂଗ୍ରହରେ ଅଛି)

Digitized by srujanika@gmail.com



ବ୍ୟାଘ୍ର ଓ ପଦ୍ମବନ (Tiger and the Lotus Pond) ତୈଳଚିତ୍ର ୧୨୦ x ୯୬ ସେମି ୧୯୯୬
୯୮' ଚାଇନା ଏକ୍ସପୋ ଦ୍ୱାରା ପୁରସ୍କୃତ
(China National Cultural and Art Corporation ବେଇଜିଙ୍ଗ ଦ୍ୱାରା ସଂଗୃହୀତ ।)

Digitized by srujanika@gmail.com



ପଦ୍ମପୁଷ୍କରିଣୀ

(Lotus Pond) ତୈଳଚିତ୍ର ୧୬୮ x ୧୫୩ ସେମି ୧୯୯୭

(Anna Vergati, 10Rou Allasseur, Paris ଦ୍ୱାରା ସଂଗୃହୀତ)

Digitized by srujanika@gmail.com



**ସ୍ପର୍ଶ** (**The Touch**) ତୈଳଚିତ୍ର, ୧୧୦x ୭୨ ସେମି. ୧୯୯୦
(କେନ୍ଦ୍ର ଲଳିତକଳା ଏକାଡେମୀ ସଂଗ୍ରହରେ ଅଛି)

Digitized by srujanika@gmail.com



ପଦ୍ମବନ ଓ ମୃଗଯୂଥ (The Pond and the Deer) ତୈଳଚିତ୍ର, ୧୫୭ x ୧୨୭ ସେମି. ୧୯୯୭
(Eicher Earth Ltd. New Delhi ସଂଗ୍ରହରେ ଅଛି)

Digitized by srujanika@gmail.com



ନାରୀ ଓ ବ୍ୟାଘ୍ର (Woman and the Tiger) ତୈଳଚିତ୍ର ୧୬୮ x ୧୪୩ ସେମି ୧୯୯୧
(ନୂଆଦିଲ୍ଲୀ ଜାତୀୟ ଆଧୁନିକ କଳା ସଂଗ୍ରହାଳୟରେ ଅଛି)

Digitized by srujanika@gmail.com

ଦେବୀପ୍ରସନ୍ନ ପଟ୍ଟନାୟକ

## ଡ୍ରଇଁମାଷ୍ଟ୍ରଙ୍କ ଡ୍ରଇଁରୁମ୍

ପରିଚୟର ପର୍ବ ପରୋକ୍ଷରେ। **ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ** ବହିଟି ପଢ଼ିବା ଅବସରରେ ବହିଟି ପଢୁଥିଲି କି ଦେଖୁଥିଲି ଠିକ୍‌ଭାବରେ ବୁଝେଇ ହେବନି। ଶବ୍ଦଗୁଡ଼ାକ ସବୁ ଯେମିତି ଚିତ୍ରମୟ ହୋଇ ଉଠୁଥିଲେ ଆଖି ଆଗରେ। 'ମାର୍ଥାମାଷ୍ଟ୍ରେ' ଚହଟି ଉଠୁଥିଲେ ରୂପମୟ ହୋଇ। ଶବ୍ଦକୁ ଏମିତି ଚିତ୍ରମୟ କରିହୁଏ। ପ୍ରାଣସଞ୍ଚାର କରି ନଚେଇ ହୁଏ ସ୍ମୃତିକୁ, ପୁଣି ଚିତ୍ରରୁ ଚରିତ୍ର ହୋଇ ସେମାନେ ଆଖିଆଗରେ ଏମିତି ଚାଲବୁଲ କରିପାରନ୍ତି, ଏକଥା ବିଶ୍ୱାସଯୋଗ୍ୟ ନହେଲେ ବି ସତ୍ୟ। ଦିନେ ଭାଗବତ ଓଲଟାଇଲା ବେଳକୁ ଭୂତ ଭୂମା ଏକାକାର ହୋଇ ନାଚିଥିଲେ ଆଖି ଆଗରେ। ଜଗନ୍ନାଥ ଦାସଙ୍କ ଆଖିରେ-

ଉଦଧି ଯାହାର ଉଦର । ଅସ୍ଥି ସମୂହ ମହୀଧର ।
ଶିରା ସମୂହ ନଦୀଗଣ । ବୃକ୍ଷ ଔଷଧି ତନୁରୋମ ।
ଜୀମୂତଗଣ ଯାର କେଶ । ସନ୍ଧ୍ୟା ଯାହାର ନିଜବାସ
ପ୍ରକୃତି ହୃଦୟ ଯାହାର । ମନ ଯାହାର ନିଶାକର ।
ପକ୍ଷୀଏ ଯାର ବ୍ୟାକରଣ । ବୁଦ୍ଧି ବିଷୟ ମନୁଗଣ ।

ସଞ୍ଚରି ଯାଇଥିଲେ ମୋ ଆଖିକୁ। ସ୍ତବ୍ଧଚକିତ ହୋଇ ସେଇଠି ପରମାତ୍ମାଙ୍କୁ ଦେଖିବାର ସୁଯୋଗ ମିଳିଥିଲା। ସ୍ରଷ୍ଟା କିଏ ? ଯିଏ ଦେଖେ ନିଜେ ଏବଂ ଶୁଣାଏ ଅନ୍ୟକୁ। ବୋଧହୁଏ ନା; ସ୍ରଷ୍ଟା ନିଜେ ଦେଖେ ଏବଂ ସାଙ୍ଗରେ ଆପଣାର ପାଠକକୁ ମଧ ଦେଖାଉଥାଏ, ସେ ଆକସ୍ମିକ ଭାବରେ ଦେଖିବାକୁ ପାଇପାରିଥିବା ଜୀବନର ଅପୂର୍ବ ମୁହୂର୍ତ୍ତ।

ଡ୍ରଇଁମାଷ୍ଟ୍ରଙ୍କ ସହ ପରବର୍ତ୍ତୀ ଦେଖା ବ୍ରହ୍ମପୁରରେ। 'ସାୟୋନାରା' ପ୍ରାୟ ସମାପ୍ତ, ସେତେବେଳକୁ। ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ବାସଭବନରେ କଥାପ୍ରସଙ୍ଗରେ ଆସିଲା 'ମେଟାଫିକ୍‌ସନ୍'ର ଓଡ଼ିଆ ପ୍ରତିଶବ୍ଦ। ଶେଷ ନିର୍ଯ୍ୟାସରେ ପହଞ୍ଚହେଲା ନାହିଁ। 'ସାୟୋନାରା' ପ୍ରକାଶିତ ହେଲା ମେଟାଫିକ୍‌ସନ୍ ଭାବରେ। ଡ୍ରଇଁମାଷ୍ଟ୍ରଙ୍କୁ ଯେମିତି ଲେଖା ଭିତରେ ଦେଖିଥିଲି, ଠିକ୍ ସେମିତି ରୂପ। ସଚ୍ଛନ୍ଦ, ସରଳ ଓ ଏବଂ ଜୀବନକୁ ଖୋଜୁଥିବା ମଣିଷଟିଏ। 'ସାୟୋନାରା'ର ଲୋକାର୍ପଣ ଉତ୍ସବରେ ପୁଣି ଦେଖା। ତା'ପରେ ଅନେକଥର ଦେଖା ହୋଇଛି - ପ୍ରତ୍ୟେକ ଥର ନୂଆ ରୂପ ଓ ନୂଆ କଳ୍ପନାର ପୃଥିବୀଟିଏ ନେଇ ସେ ବ୍ୟସ୍ତ। ଦିଗପହଣ୍ଡିରୁ 'ଅରୂପ'ର ଗୁଡ଼ିଏ ରୂପ ନେଇ ସେ ସଞ୍ଚରଣ କରିଛନ୍ତି ସମଗ୍ର ବିଶ୍ୱ।

ଡକ୍ଟର ଦିନନାଥ ପାଠୀ ସମକାଳୀନ ବୌଦ୍ଧିକ ମଣିଷମାନଙ୍କ ଭିତରେ ଟିକେ ଅଲଗା ମଣିଷ। କଳା ନୁହେଁ, ସାହିତ୍ୟର ପୃଷ୍ଠାରୁ ମୁଁ ଏଠାରେ ଚିହ୍ନିବାକୁ ଚେଷ୍ଟା କରିଛି ସ୍ରଷ୍ଟାଙ୍କୁ। କିନ୍ତୁ ତା' କେମିତି ସମ୍ଭବ। ତାଙ୍କ ଆଖିରେ ତ 'ଆମେ ଚିତ୍ରକୁ ନିଃଶବ୍ଦ କବିତା silent poetry ଏବଂ କବିତାକୁ ଉଚ୍ଚାରିତ ଚିତ୍ର ବା ଉଚ୍ଚାଟିତ ଚିତ୍ର talking picture କହୁ।' ସେଠି କବି ଓ କଳାକାର ଏକାକାର। ଦିନେ ଇମାନୁଏଲ୍ କ୍ୟାଣ୍ଟ୍ ଆମକୁ କହିଥିଲେ ବିନା ସୃଜନରେ ମଣିଷ କ'ଣ କେବେ ବଞ୍ଚିପାରେ ? ରୂପାନ୍ତରିତ ହେବା ମଣିଷର ଭାଗ୍ୟ। ସେ ପତ୍ରରେ ହେଉ ବା ପଥରରେ ହେଉ, ରଙ୍ଗରେ ହେଉ ବା ଅଙ୍ଗରେ ହେଉ- ସଦାବେଳେ ମଣିଷ ସଞ୍ଚରିଯାଏ। ତେଣୁ ତାଙ୍କ ଆଖିରେ- 'Now what do we mean by 'Soul ?' 'Soul' (Giest) is an aesthetical sense, signifying the animating principle in the mind. ଏହି ଅଙ୍କନ ପ୍ରକ୍ରିୟାର କ୍ଷେତ୍ରରେ ଦିନନାଥ ପାଠୀଙ୍କୁ ବହୁବିଧ ଇଲାକାରେ ସନ୍ଦର୍ଶନ କରିହୁଏ।

Digitized by srujanika@gmail.com

କଥାକୁ କେବଳ ସୀମିତ କରିବା ପାଇଁ କଥାସୃଜନର ମେଟାଫିକ୍‌ସନ ପରିସରର କଥା ବିଚାର କରାଯାଇପାରେ।

ପାଠୀ ମହାଶୟ ତାଙ୍କର ସଦ୍ୟ ପ୍ରକାଶିତ କଥାଗ୍ରନ୍ଥ **ଶ୍ଲୋକଛନ୍ଦ**କୁ ନାମିତ କରିଛନ୍ତି ଚିତ୍ରୋପନ୍ୟାସ ଭାବରେ। ମେଟାଫିକ୍‌ସନ୍ ଓ ଚିତ୍ରୋପନ୍ୟାସ ଭିତରେ ସତରେ କ'ଣ ଏକ ଭିନ୍ନ ବାଡ଼ବନ୍ଧ ଅନୁଭବ କରିଛନ୍ତି ସ୍ରଷ୍ଟା ! ତାଙ୍କ ନିଜ ଦୃଷ୍ଟିରେ 'ଏଠି ଆହୁରି ସ୍ପଷ୍ଟ କରିଦେବା ସମୀଚୀନ ହେବ ଯେ, କଳ୍ପନା ହିଁ ଭାଷା ଯାହା ନୈରୂପ ଓ ରୂପବାନ ମଧ୍ୟ। ଭାଷାର ଲିପି, ସରୂପର ନୈରୂପ ବଳୟ ଭରରିତ ହୋଇ ଯେଉଁ ଅର୍ଥ-ନିର୍ଯ୍ୟାସ ଭାଷାରେ ଦୃଶ୍ୟମାନ ହୁଏ ବା ପ୍ରକାଶିତ ହୁଏ ତାହାହିଁ ଚିତ୍ରଭାଷା ଅରୂପ ତିନୋଟିଯାକ ଉପନ୍ୟାସରେ ରୂପ ପରିଗ୍ରହଣ କରିଛି ଚିତ୍ରଭାଷା ମାଧ୍ୟମରେ। କଳ୍ପନାରେ କଥାଚିତ୍ର ଆଙ୍କିଛନ୍ତି ସ୍ରଷ୍ଟା। ଇଂରାଜୀରେ 'fiction' ଶବ୍ଦକୁ ବୁଝାଇବାକୁ ଯାଇ କୁହାଯାଇଛି 'Fiction' ହେଉଛି ଅରୂପକୁ ରୂପଦେବାର ଏକ କ୍ଷେତ୍ର। ପ୍ରବହମାନ ସମୟକୁ ଆପଣାର ସୀମିତ ଇଲାକାରେ ବାନ୍ଧିବା ପାଇଁ, ଚିହ୍ନିବା ପାଇଁ ଆମେ ତାକୁ ଦିନ, ମାସ, ବର୍ଷରେ ବିଭାଜିତ କରୁ। ସମୟ କ'ଣ ସତରେ ବିଭାଜିତ ହୁଏ। ଠିକ୍ ସେମିତି ଆପଣାକୁ ଅନନ୍ତ ବିଶ୍ୱର ଅସୀମ-ପ୍ରେକ୍ଷାପଟ୍ଟରେ ଅବସ୍ଥାପିତ କରିବା ନିମନ୍ତେ ଯତ୍ନ ଚାଲିଛି ସାୟୋନାରା, ପୁନର୍ନବା ଓ ଶ୍ଲୋକଛନ୍ଦର ପରିସରରେ। ଭିନ୍ନ କେବଳ ଏତିକି, ଅତୀତରେ ଓ ପ୍ରକାଶର ଧାରା ମନେହେଉଥିଲା ସତେକି ଗୋଟେ ଉପବନ। ଅନୁଭୂତି, ଅଭିଜ୍ଞତା, ସ୍ୱପ୍ନ, ସମ୍ଭାବନା ସବୁ ପ୍ରାକୃତିକ, କିନ୍ତୁ ତାକୁ ସଜେଇ ରଖିବା 'ବାଗ'ଟା ନିଜସ୍ୱ। ଯେମିତି ଘର ଆଗର 'ଲନ୍'ରେ ଧାଡ଼ିଧାଡ଼ି କ୍ରୋଟନ୍, ମାଳମାଳ ଫୁଲକୁଣ୍ଡର ପସରା ଠିଆ ହୁଅନ୍ତି, ଘାସ ଗଛ ବି ଗଜୁରି ଉଠେ ଆପଣାର ଇଚ୍ଛା ନେଇ। ଏବେ କିନ୍ତୁ ଅରଣ୍ୟର ସ୍ୱାଭାବିକତା। ଛନ୍ଦାଛନ୍ଦି ହୋଇ ବଟବୃକ୍ଷରୁ ଓହ୍ଲାଇ ଆସିଛି ବଣୁଆ ଲଟା, ଆକାଶକୁ ଲମ୍ବିଯାଇଥିବା ସିଧାସିଧା ପାଇନ୍ ଗଛର ମୂଳରେ ସିଜୁବୁଦାର ସାମ୍ରାଜ୍ୟ। ଉପବନର ସୌଖୀନ୍ ଉପନ୍ୟାସର କ୍ଷେତ୍ରରୁ ବାହାରି ଓ ଯାତ୍ରା ଅରଣ୍ୟର ପ୍ରାକୃତିକ ଭଙ୍ଗୀରେ ପ୍ରକାଶ କରିଛି ଜୀବନକୁ, ସ୍ୱପ୍ନକୁ, କାମନାକୁ। ମଣିଷଗୁଡ଼ାକ ଏଠାରେ ଚରିତ୍ର ନୁହନ୍ତି, ସଞ୍ଚାରିତ ଚିତ୍ର। ଆପଣାର କଥାକୁ ବଖାଣୁ ବଖାଣୁ କାହିଁ କେଉଁଆଡ଼େ ପରିବ୍ୟାପ୍ତ ହୋଇଯାଆନ୍ତି। ଏଥିପାଇଁ ନା ଚରିତ୍ର ଦାୟୀ, ନା ଦାୟୀ ଚରିତ୍ରକୁ ଆଙ୍କୁଥିବା କଳାକାର। ପ୍ରାମାଣିକ ଉଦାହରଣଟିଏ ଦେଖାଯାଉ-

''ତା'ର ମନରେ ଛନକା ପଶିଲା କେତକୀ ହୁଏତ ଏକାଏକା ଜାପାନ୍ ଦେଶକୁ ଉଡ଼ିଯିବ। କେତେକୀ ନେଳିଆ ଆକାଶ ଉପରକୁ ଉଠୁଛି। ସେ ଧୀରେ ଧୀରେ ଶୀତୁଆ ପବନ ଭିତରେ ମେଘରୁ ମେଘ ଡେଇଁ ଉଡ଼ିଲାଣି। କେତକୀ ଉଡୁଛି। ଯିଏ କିଛି ସମୟ ଆଗରୁ ପଚାରୁଥିଲା ସତରେ କ'ଣ ଆକାଶ କଥା କହେ ? ଏବେ ହୁଏତ ସେ ଆକାଶ ସହିତ ଖୁସିଗପ କରୁଛି। ଜାପାନୀଗୁଡ଼ି କେତକୀକୁ ହୁଏତ ଅରୁଣ କଥା ପଚାରୁଛନ୍ତି। କେତକୀ ଫୁଜିୟାମା ପାହାଡ଼ର ଚୂଡ଼ା ଉପର ଦେଇ ଉଡୁଛି। ତା'ର ଡେଣା ଅବଶ ହୋଇ ପଡ଼ିଲା ପରି ଲାଗୁଛି। ଗାଁ ମାଟିକୁ ଫେରିଯିବା ପାଇଁ କେତକୀର ମନ କହିଲାଣି।'' (ସାୟୋନାରା ପୃ-୪)

ଦିଗପହଣ୍ଡିଠାରୁ ଫୁଜିୟାମା ପର୍ବତ କେତେବା ଦୂର। ଗୁଡ଼ି ସାଙ୍ଗରେ ଦୋଳିଭଳି ଅତିକ୍ରମ କରିହୁଏ ନଗର, ଜନପଦ। ଆଶ୍ୱାସନାର ବିଷୟ - ବିଂଶଶତାବ୍ଦୀର ଶେଷପାଦରେ ଆମ ଭାଷାର ମଣିଷମାନେ ଧାରାବାହିକ ବଳୟ ଭିତରୁ ମୁକୁଳି ଯିବା ପାଇଁ ଉଦ୍ୟମ କରିଛନ୍ତି। ଏଠି ଧାରାବାହିକତାକୁ 'ପୂର୍ବକ' ଅର୍ଥରେ ଗ୍ରହଣ କଲେ ଅଧିକ ସତ୍ୟଦ୍ୟୋତକ ହେବ। କହିବାର ଅର୍ଥ ହେଲା ଅନେକ କଷ୍ଟରେ ସଂସ୍କୃତ କବଳରୁ ମୁକ୍ତି ପାଇ 'ଦେଶଜ' ପରମ୍ପରାଟିଏ ଗଢ଼ି ଉଠିଥିଲା ମାଟିରେ ପ୍ରାୟ ଚତୁର୍ଦ୍ଦଶ ଶତାବ୍ଦୀବେଳକୁ। ମାଟିର ବାସ୍ନା ଓ ଆପଣାର ସ୍ପର୍ଶ ଆମେ ପାଇଥିଲୁ ସାରଳା ଦାସ, ବଳରାମ ଦାସ ଆଉ ଜଗନ୍ନାଥ ଦାସଙ୍କ ପରି ମାଟିର ମହାକବିମାନଙ୍କ ପାଖରୁ। ଭାଗ୍ୟମନ୍ଦ-

Digitized by srujanika@gmail.com

ରାଜନୈତିକ, ଅର୍ଥନୈତିକ-ସାମାଜିକ ବିପର୍ଯ୍ୟୟ ପୁଣିଥରେ ଆମକୁ ଅନୁସରଣର ପଥରେ ଠିଆ କରେଇ ଦେଇଥିଲା ମଧ୍ୟଯୁଗରେ । ପରେ ପରେ କବିସୂର୍ଯ୍ୟ, ଗୋପାଳକୃଷ୍ଣ, ବନମାଳୀ ପରି ଅନେକ ଓଡ଼ିଆ ମଣିଷ ଜୀବନ ସଂଗୀତର ଜଣାଶୁଣା କଥା କହିଲାବେଳକୁ ପୁଣି ଥରେ ଘୋଟି ଆସିଲା ବିପର୍ଯ୍ୟୟର କଳାବାଦଲ । ଓଡ଼ିଆ କବଳିତ ହେଲା ଇଂରେଜମାନଙ୍କ ଦ୍ୱାରା । ଗାଁ ପୁଅ ଆଖିରେ ଲାଗିଲା ଧଳା ଚମଡ଼ାର ମୋହ । After Amnesia - Tradition and Changes in Indian Literary Criticism ଗ୍ରନ୍ଥରେ G. N. Devy ଏ ସମ୍ପର୍କରେ କହନ୍ତି-

However, it can be said with certainty that the violent intrusion of alien literary pressure produced many undesirable tendencies in 'bhasa' literature. The most damaging effect of this phenomenon has been a cultural amnesia, which makes the average Indian intellectual incapable of tracing his tradition backwards beyond the mid-nineteeth century. And even when traditions are traced back the sense of discrimination in that act appears to be largely absent. (୫)

**ଆଜିର ଅନେକ ସ୍ରଷ୍ଟା ଏଯାବତ୍ ଏ ପ୍ରଲୋଭନରୁ ମୁକ୍ତ ନୁହନ୍ତି । କିନ୍ତୁ ସୁଖରକଥା 'ଗଲାଣିତ ଗଲା କଥାରେ ସଙ୍ଗାତ' ବୋଲି ଆପଣାର ଦୁଃଖ ଓ ମୋହ ବଖାଣିବାକୁ ଅଣ୍ଟା ସଳଖେଇଥିବା କେତେଜଣ ଅଙ୍ଗୁଳିମେୟ ସ୍ରଷ୍ଟା ପୁରୁଷଙ୍କ ମଧ୍ୟରେ ଦିନନାଥ ପାଠୀଙ୍କୁ ଆମେ ଖୋଜିପାଉ ।** ଏଠି ବଖାଣୁଥିବା କଥା ଅତି ଆପଣାର । ଚିତ୍ରିତ ମଣିଷଗୁଡ଼ାକ ସକାଳୁ ଉଠି ମୁହଁ ଧୋଇ ଚାହିଁଲା ବେଳେ ଦାଣ୍ଡପିଣ୍ଡା ପାଖରେ ଦିଶୁଥିବା ଲୋକ ଏଠି ଆଉ ମାଟି, ପାଣି, ପବନରେ ଅଚିହ୍ନା ବାରିହୁଏ ନାହିଁ । କେବଳ ଫରକ୍ ଏତିକି ସେକାଳ ପଖାଳର ବାସ୍ନା ଖୋଜି ଗଲାବେଳେ ଅତି ଆକସ୍ମିକ ଭାବରେ ଅନେକ ସମୟରେ ଭେଟ ହୋଇଯାଏ ନରହିତୋ, ମେରୀ ପରି ଚରିତ୍ରମାନଙ୍କ ସାଙ୍ଗରେ । ସଙ୍କୁଚିତ ପୃଥିବୀରେ ଏପରି ଭେଟ ଅତି ସାଭାବିକ ଘଟଣା । ଆଜିର ପୃଥିବୀ ଆଉ ଅତୀତର ଚଟ୍‌କା ଥାଳିଆ ନୁହେଁ, ମଣିଷ ଏହାର ଶେଷ ପାଖକୁ ଗଲେ ଗଳି ପଡ଼ିବାର ସମ୍ଭାବନା ନାହିଁ । ଆଜିର ବିଶ୍ୱ ଏକ କ୍ଷୁଦ୍ର ବସତିରେ ରୂପାନ୍ତରିତ । ତେଣୁ କେତକୀ ଗର୍ଭରୁ ବୁଦ୍ଧଙ୍କ ଅବତାର ଦେଇ ଜନ୍ମଲାଭ କରିଥିବା ସନ୍ତାନର ମୁହଁ କାମୁକ କିଚିଦେଇ ପରି । ବୁଢ଼ୀ ମନରେ କଳାମେଘର ଆସ୍ତରଣ । ଅରୁଣ, ମିତାଲି, ରତନ୍ ବା ସମସ୍ତେ ବିଶ୍ୱଜୀବନର ପ୍ରତିରୂପ । ଭାରତରୁ ଜାପାନ୍ ଓ ଜାପାନ୍‌ରୁ ଭାରତ । ଏ ଜିଜ୍ଞାସା ଓ ଅନ୍ୱେଷଣ ଅବ୍ୟାହତ । ନା ଜୀବନ ସତ୍ୟ ନା ନିର୍ବାଣ । ତ୍ୟାଗ ସତ୍ୟ, ନା ଭୋଗ ? ପ୍ରଶ୍ନବାଚୀର ପୃଥିବୀରେ ପ୍ରଶ୍ନ ପରେ ପ୍ରଶ୍ନର ଲମ୍ବା ଧାଡ଼ି । ଏଠି ମଣିଷ ସମୟ ହାତରେ, ଭାଗ୍ୟ ପାଖରେ ଖେଳନାଟିଏ ହେଉ ହେଉ ଅନେକ ସମୟରେ ମହାତ୍ମା ପାଲଟିଯାଏ । ରୂପାନ୍ତରିତ ମାନବର ମୁଗ୍‌ଧ ଓ ପରିବ୍ୟାପ୍ତ ଚିତ୍ରକୁ ବିସ୍ତାରିତ ଆଖିରେ ପାଠକ ଦେଖୁଛି । ଏଠି ଅନେକ ଭାବ ଓ ଚେତନାର କଳରୋଳ । ସଂଜ୍ଞାର ଜଟିଳ ବନ୍ଧନୀ ଭିତରେ କଳା, କାଳ ଓ କଳାକାର ଆଜି ବାନ୍ଧି ହେବାକୁ ନାରାଜ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଗୋଟିଏ ବିନ୍ଦୁରେ ମେଳିବାନ୍ଧିଛନ୍ତି । ସ୍ରଷ୍ଟାଟିଏ ଚିହ୍ନାମୁହଁର ଚିତ୍ର ଆଙ୍କୁ ଆଙ୍କୁ ପ୍ରସାରିତ ହୋଇଯାଉଛି ଆପେ ଆପେ । ପରିଚିତର ନିଜସ୍ୱ ଇଲାକା ପାରିହୋଇ, ଅପରିଚିତ ସହ ବାନ୍ଧି ହୋଇଯାଉଛି । ତାକୁ ଯଦି ସାଧାରଣ ଅର୍ଥରେ ଅତିକଳ୍ପନା କହିବା, ତାହାହେଲେ ଭୁଲ୍ ହେବ ନାହିଁ । ଖାଲି ମାଟିରେ ପାଦଦେଇ, ଦୃଶ୍ୟମାନ ପୃଥିବୀକୁ ଅନୁଭବ କରି ଅନୁଭବକୁ ଉତୁରେଇ ହୁଏ ନାହିଁ । ଦୃଶ୍ୟଲୋକ ସହ ଭାବଲୋକ ଓ କଳ୍ପଲୋକ ସମନ୍ୱିତ ହୁଏ । ପରିଦୃଶ୍ୟମାନ ବିଶ୍ୱ ସହ ଆତ୍ମିକ ବିଶ୍ୱର ମେଳରେ ସୀମିତ ବସୁଧାରେ ବଞ୍ଚୁଥିବା ମଣିଷ ସଞ୍ଚରିଯାଏ ଏପରି ଏକ ଧରାରେ ଓଡ଼ିଆ କଥା ସୃଜନ ପରମ୍ପରାରେ ମେଟାଫିକ୍‌ସନ୍ ବା ଚିତ୍ରୋପନ୍ୟାସର ବିକାଶ ।

ଏ ପରିପ୍ରେକ୍ଷୀରେ ସ୍ରଷ୍ଟା ପାଠୀଙ୍କ ମେଟାଫିକ୍‌ସନାଲ୍ ପରିକଳ୍ପନାରେ ରୂପଲାଭ କରିଥିବା ତିନୋଟି ସ୍ତରରେ ଅବସ୍ଥାପିତ କରିବା ଅଧିକ ଯୁକ୍ତିଯୁକ୍ତ ମନେ ହୋଇଥାଏ । ପ୍ରଥମ ପର୍ଯ୍ୟାୟର

Digitized by srujanika@gmail.com

**ସାୟୋନାରା** ସ୍ରଷ୍ଟାଙ୍କ ପ୍ରୟୋଗର ପ୍ରାଥମିକ ପ୍ରୟାସ- ଅବଶ୍ୟ ମେଟାଫିକ୍‌ସନ୍‌ର ପରିସରରେ। ଏହି ପର୍ଯ୍ୟାୟକୁ ବିଶେଷକରି 'ବ୍ୟକ୍ତିଗତ ପ୍ରତୀକ'ର ପ୍ରୟୋଗଶାଳା ଭାବରେ ଅନୁଧ୍ୟାନ କରିହୁଏ। ଦିଗପହଣ୍ଡିରୁ ଜାପାନ୍ ଯାତ୍ରାର ଏ ପରିବ୍ୟାପ୍ତ କ୍ଷେତ୍ର ବ୍ୟକ୍ତିଗତ ଅବଚେତନର କଥା। କଳାତ୍ମକ ଅନୁଭୂତି ଏବଂ ଅନ୍ତରଙ୍ଗ ପ୍ରବୃତ୍ତିର ପ୍ରକାଶ ସବୁ ଏକାକାର ହୋଇ ଏକ ପ୍ରତୀକାତ୍ମକ ବକ୍ତବ୍ୟ ଉପସ୍ଥାପିତ କରିଥିବା ଦେଖାଯାଏ। ଜୀବନ ଏଠାରେ ଅଧ୍ୟୟନର କ୍ଷେତ୍ର। ଏ ପରିସରରେ କେତକୀ, ଅରୁଣ କେବଳ ଯୋଗସୂତ୍ରର କେନ୍ଦ୍ରବିନ୍ଦୁ। ସବିତା ଓ ସଂଗ୍ରାମର ସ୍ନେହ ଏବଂ ବୋଉର ପଣତର ସ୍ନିଗ୍‌ଧ ଇଲାକାରୁ ଓଢ଼ଣା ମେଲାଉଛି କେତକୀ। କ୍ୟୋଟୋ ସହରରେ ନରହିତୋର ସାହାଚର୍ଯ୍ୟରେ ମନ ତାର ରତ୍ନଗିରିଠାରୁ ସଞ୍ଚରିଯାଇଛି ହିରୋସୀମା ପର୍ଯ୍ୟନ୍ତ। ଦେହରୁ ବିଦେହ ଏ ଅନୁଭୂତିର ସର। ତେଣୁ ଅନୁରଣିତ ହୋଇଛି- "ପାର୍ଥିବ ଶରୀରର ମିଳନ, ଭୂମାର ବ୍ୟକ୍ତ ଅସ୍ତିତ୍ୱର ଯୌଗିକ ସରୂପ। ମିଳନ ପ୍ରକ୍ରିୟା କେବଳ ଦୈହିକ ନହୋଇ ଉତ୍ତରିତ ହେଲେ କ୍ଷଣିକ ଆନନ୍ଦାନୁଭୂତି ଅଖଣ୍ଡ ଅବ୍ୟକ୍ତରେ ପରିଣତ ହୋଇଯାଏ। ଏହାହିଁ ବ୍ରହ୍ମପ୍ରାପ୍ତି, ନିର୍ବାଣ ପ୍ରାପ୍ତି, କୃଷ୍ଣ ପ୍ରାପ୍ତି।"

ଦେହତତ୍ତ୍ୱ, କଳାତତ୍ତ୍ୱ, ଜୀବନ ତତ୍ତ୍ୱ, ନିର୍ବାଣତତ୍ତ୍ୱର ସମାହାର ସାୟୋନାରା। ଏଠି ବିଶ୍ୱ ପରିକ୍ରମା ଭିତରେ ସ୍ରଷ୍ଟା ଅତି ଆପଣାର ମାଟିର ବାଣୀକୁ ସଯତ୍ନରେ ଉପସ୍ଥାପିତ କରିଛନ୍ତି। ଅନୁଭବର କ୍ଷେତ୍ର ନିଆରା ଓ ପ୍ରକାଶର ମାର୍ଗ ଅନନ୍ୟ ସାଧାରଣ। ସ୍ରଷ୍ଟାଙ୍କ ସଂପର୍କରେ ଅମିତ ମୁଖୋପାଧ୍ୟାୟଙ୍କ ମତକୁ ଏଠାରେ ଉପସ୍ଥାପିତ କରୁଛି- 'Pathy's return to aesthetics takes two forms : interest in the significant passion through a return to simple and timeless varieties of the narrative mode, all too obviously, a preferance of the native over the sophisticated code. The native code can be explained to the area of the fantasy which can always be explained in terms of psychic delusion. Secondly, because of narrative mode originating from Gitagovind's textual sources. **କାଳାତୀତ କଥନଧାରା ଏବଂ ସରଳ ଅଭିବ୍ୟକ୍ତି ଭିତରେ ମାନବୀୟ ଅତିକଳ୍ପନାର ଅବତାରଣାକୁ ଏଠାରେ ମୁଖ୍ୟବିନ୍ଦୁ ଭାବରେ ଅନୁଧ୍ୟାନ କରିବା ଆବଶ୍ୟକ।** 'କଳା-ଜଣଭୋଗ୍ୟା'- ଏହା ଏକ ଚିରନ୍ତନ ସତ୍ୟକୁ ସୂଚୀତ କରିଥାଏ। ଖାଇବା ପାଇଁ ବଞ୍ଚିବା ମଣିଷମାନଙ୍କ ପାଇଁ କଳାସୃଷ୍ଟି କିଛି ଅର୍ଥ କେବେ ବି ରଖିନି, ଏବେ ରଖିବ ନାହିଁ ଏବଂ ଆଗାମୀ ସମୟରେ ମଧ୍ୟ ରଖିବା ସମ୍ଭବପର ନୁହେଁ। ତେଣୁ ପାଠୀଙ୍କ ସୃଷ୍ଟିର କଥା ସଂକେତ ଓ ମାନସିକ ଉଦ୍‌ଘାଟନ ଏକ ଭିନ୍ନ ମଣିଷର ଉପେକ୍ଷା ରଖେ। ଯେଉଁମାନେ କ୍ୟୋଟୋ ଓ ରତ୍ନଗିରିକୁ ଅନ୍ତରରେ ଅନୁଭବ କରନ୍ତି, ନିତ୍ୟ ନୂତନ ରୂପରେ ବୁଦ୍ଧଙ୍କ ନିର୍ବାଣ ତତ୍ତ୍ୱକୁ ଅନୁଭବ କରନ୍ତି, ଅରୁଣ ଓ ମିତାଲି ସହ ଏକାତ୍ମ ହୋଇପାରନ୍ତି, ପୁଣି ଆଖିର ଚମକରେ ନିଶିମୂରାଙ୍କ ଭାସ୍କର୍ଯ୍ୟରେ ମାନବାତ୍ମାର ଅନୁରଣନକୁ ଅନୁଭବ କରିପାରନ୍ତି, ସେମାନଙ୍କ ପାଇଁ ସଂକେତଟିଏ 'ସାୟୋନାରା'। **ଭୂ'ରୁ ଭୂମାର ବିଚରଣ ପଥ ସାୟୋନାରା।**

ଦିନନାଥଙ୍କ ଦ୍ୱିତୀୟ ଅନୁଭୂତିର ପର୍ବ **ପୁନର୍ନବା** ଏକ ଆର୍କିଟାଇପ୍‌ର କ୍ଷେତ୍ର। ଏଠି ଜନ୍ମ/ମୃତ୍ୟୁ କିଛି ଅର୍ଥ ରଖେ ନାହିଁ, ଏକ ଧାରାବାହିକ ପ୍ରକ୍ରିୟାରେ ଅନବରତ ଗଡ଼ି ଚାଲିଥାଏ ସୃଜନର ରଥଚକ୍ର। ଏ ଧାରାରେ କେବଳ ସଂଯୋଜିତ ହେଉଥାନ୍ତି କିଛି କିଛି ମଣିଷ। କିଛି ଫରକ୍ ପଡ଼େନି କାହାର ଯିବା ଓ ଆସିବା ଭିତରେ। ଭଙ୍ଗାଗଢ଼ା ତ ଚାଲିଛି ଅନବରତ। କାହାର ଅନୁପସ୍ଥିତି କେବେ ଅନୁଭୂତ ହୋଇନାହିଁ ମହାକାଳ ବକ୍ଷରେ। ଡକ୍ଟର ପାଠୀ ନିଜେ ସୃଜନର ସୂତ୍ରଧର। ମାଟିରେ, ପଥରରେ, ଶବ୍ଦରେ, ସ୍ପନ୍ଦନରେ- ରୂପାନ୍ତରଣରେ ଏ ଅନୁରଣନ। **ଏଠାରେ ଏ ବକ୍ତବ୍ୟ ଦେଲାବେଳେ ଅତି ସଚେତନ ଭାବରେ କୁହାଯାଇପାରେ ଯେ, ପୁନର୍ନବା ଓଡ଼ିଆ କଥା-ପରମ୍ପରାର ଅତ୍ୟାଧୁନିକ କଳାରୂପ। ତେଣୁ ଏହି କଳାରୂପର ଏକକ ଅର୍ଥ ଅବବୋଧ ମୂଳକଥା ନୁହେଁ। ଏହି ବକ୍ତବ୍ୟକୁ ଅଧିକ ସୁସ୍ପଷ୍ଟ କରିବା ପାଇଁ ଆମ ସମୟର ଅନ୍ୟ ଏକ ବଳିଷ୍ଠ ଯୁକ୍ତିକୁ ଏଠାରେ ଉପସ୍ଥାପିତ କରୁଛି।** ଅତ୍ୟାଧୁନିକ କଳାରୂପ ମେଟାଫିକ୍‌ସନ୍‌ର ଅଭିବ୍ୟକ୍ତି

Digitized by srujanika@gmail.com

ସମ୍ପର୍କରେ ଲିଣ୍ଡାହୋଚେନ୍ କହିଥିଲେ- "While modernist text may have worked to combat the imposition of single, authoritative meaning, post modernist metafiction tends more to play with the possibilities of meaning (from degree zero to plurisignification) and of form from minimalist narrative to galloping diegsis.)

ସ୍ରଷ୍ଟା ସହ ଏଠାରେ ପାଠକ ବି ସୃଜନ କର୍ମରେ ବ୍ୟାପୃତ। ଅର୍ଥଦ୍ୟୋତନା କ୍ଷେତ୍ରରେ ଉଭୟଙ୍କ ଗୁରୁତ୍ୱ ସମାନ। ଆଞ୍ଚଳିକ ବା ସଗୋଷ୍ଠୀ ଜୀବନର ପ୍ରତିଫଳିତ ଏଠାରେ ମୁଖ୍ୟକଥା। 'ପୁନର୍ନବା'ର କ୍ଷେତ୍ର ଏହିଠାରୁ ହିଁ ବିସ୍ତୃତି ଦିଗକୁ ଯାତ୍ରା କରିଛି। ଏ ଯାତ୍ରା ପଥରେ କେବଳ ନୀଳାମ୍ବର, ନିତ୍ୟାନନ୍ଦ, ଗୌରୀ ପ୍ରବୃତ୍ତିର ରୂପକୁ ପ୍ରତିଫଳନ କରିଛନ୍ତି। ଅରୂପ ଏମାନଙ୍କ ମାଧମରେ ରୂପ ପରିଗ୍ରହଣ କରିଛି। ଶୂନ୍ୟ କେବଳ ଆକାର ଧାରଣ କରିଛି ମାତ୍ର। ଏ ପୃଥିବୀ ତ ଏକ କଳାକୁଞ୍ଜ। ତେଣୁ ତ ପିତୁଳା ମଣିଷ ରୂପ ଧାରଣ କରିଛି, ପୁଣି ମଣିଷ ମନେ ହୋଇଛି ପିତୁଳା। କେଉଁଟା ସତ୍ୟ ଏବଂ କେଉଁଟା ଅଳୀକ - ବାଛିବା କଷ୍ଟକର ବ୍ୟାପାର।

ନିତ୍ୟାନନ୍ଦ ଓ ଗୌରୀ - ଦୁଇଟି ଅର୍ପିତ ଅଭିବ୍ୟକ୍ତି। ଗୌରୀ ତ ପୂର୍ବରୁ ଦେବାର୍ପିତା। ନିତ୍ୟାନନ୍ଦ ପାଇଁ ଆଉ କ'ଣ ବଞ୍ଚିଛି ଅର୍ପିବା ପାଇଁ। ଅପରପକ୍ଷରେ ନିତ୍ୟାନନ୍ଦ ତ ସ୍ୱୟଂସମ୍ପୂର୍ଣ୍ଣ। ଆନନ୍ଦର ନିତ୍ୟ ବଳୟ ଭିତରେ ଏକ ବିମୁଗ୍ଧ ଆତ୍ମା ମାତ୍ର। ନୀଳାମ୍ବର ସତେ ଯେପରି ପରଂବ୍ରହ୍ମଙ୍କ ଏକ ସସୀମ ସାକ୍ଷର। ମାଟିକୁ କେବଳ ପ୍ରାଣବନ୍ତ କରିନାହାନ୍ତି, ତାଙ୍କର ସ୍ପର୍ଶରେ ମାନବ ମଧ୍ୟ ରୂପାନ୍ତରିତ ମାଧବରେ। ସ୍ରଷ୍ଟା ପାଠୀ ଉତ୍କଳୀୟ କଳା ପରମ୍ପରାର ସୁଯୋଗ୍ୟ ବ୍ୟାଖ୍ୟାକାର। କେବଳ ଭିନ୍ନ-ରେଖା ଓ ରଙ୍ଗରୁ ଭାଷା ଓ ଧ୍ୱନିର ପ୍ରସଙ୍ଗରେ। ରେଖା ଓ ରଙ୍ଗରୁ କେବଳ ଭାବ ଏଠାରେ ଭିନ୍ନ ଇଲାକାରେ କାୟା ବିସ୍ତାର କରିଛି। ମାଞ୍ଚେଲିଠାରେ ରକ୍ତମାଂସର ଦେହ ନେଇ ବିଜେ ହୋଇଛନ୍ତି ସ୍ୱୟଂ ଲୀଳାମୟ। ଅବ୍ୟକ୍ତ ଏଠାରେ ବ୍ୟକ୍ତ ହୋଇଛି। **ଅରୂପ ସଞ୍ଚରି ଯାଇଛି ରୂପର ସ୍ଥୂଳ ଶରୀର ମଧ୍ୟରେ। ମଠର ଉପବନରେ ଗୌରୀ ଓ ନିତ୍ୟାନନ୍ଦ ନୁହନ୍ତି- ରାଧାକୃଷ୍ଣ ହିଁ ଯୁଗଳ ରୂପ ନେଇ ପ୍ରକାଶ ଲାଭ କରିଛନ୍ତି। ଏହା ରୂପର ରୂପାନ୍ତରଣ ନୁହେଁ, ବରଂ ଅପରିବର୍ତ୍ତିତ ଗୋଷ୍ଠୀକଳ୍ପନାର ଅଭିନବ ପ୍ରକାଶ। ଚେତନାର ନବନ୍ୟାସରେ ପୁନର୍ନବା ସ୍ରଷ୍ଟା ପ୍ରାଣର ଏକ ଅବ୍ୟକ୍ତ ଅବଚେତନର ପରିବ୍ୟାପ୍ତ ବକ୍ତବ୍ୟ।**

ଅରୂପକୁ ରୂପ ଏବଂ ଅବ୍ୟକ୍ତକୁ ଅପରିବର୍ତ୍ତିତ ବକ୍ତବ୍ୟରେ ରୂପାନ୍ତରିତ କରିସାରିବା ପରେ ସ୍ରଷ୍ଟାଙ୍କ ଅଭିଯାନ ଏଠି **ଶ୍ଲୋକଛନ୍ଦ**ର ପରିସରରେ ଅତୀତକୁ ସଂଯୋଜିତ କରିଛି ସାଂପ୍ରତିକ ସହ। ଜାତିର ପ୍ରତୀକ, ସଂସ୍କୃତିର ପ୍ରଖ୍ୟାପକ ଓ ସବୁରି ଊର୍ଦ୍ଧ୍ୱରେ ଜୀବନର ଚିତ୍ରକର ଏଠାରେ ସ୍ରଷ୍ଟା ଦିନନାଥ। କୁହାଯାଇଥିଲା ଜୀବନର ମଧୁର ଓ ମନୋଜ୍ଞ ଅଭିବ୍ୟକ୍ତି ହେଉଛି ଦୁଃଖଦ ସ୍ମୃତିର ରୋମନ୍ଥନ ମାତ୍ର। ସବୁଜାତି ସବୁ ଗୋଷ୍ଠୀ ସଂରକ୍ଷିତ କରି ରଖିଥାଏ ଏ ମନୋଜ୍ଞ ଗନ୍ତାଘର। ସମୟ, ସ୍ୱପ୍ନ, ବିଶ୍ୱାସ ଓ ଆତ୍ମଜିଜ୍ଞାସାର ସରଳତମ ଅଭିବ୍ୟକ୍ତି ସଂରକ୍ଷିତ ହୋଇ ରହିଥାଏ। ଏଠାରେ ସମୟର କ୍ରୂର ଆଘାତରେ ବିଦୀର୍ଣ୍ଣ ହୁଏ ନାହିଁ ସମ୍ପଦର ଭଣ୍ଡାର। ନିତ୍ୟନୂତନ ଅନୁଭୂତି ସଂଯୋଜିତ ହେଉଥାଏ ଅନବରତ। ତାକୁ ଆମେ କହୁ ମିଥ୍। ରତ୍ନାକରର ବାଲ୍ମୀକି ଉପାଖ୍ୟାନ ସମୟର ଧାରାରେ ରାଜପୁତ୍ରକୁ କଳାକାରରେ ଅଭିଷିକ୍ତ କରି ଏ ଭଣ୍ଡାରର ଶ୍ରୀ ସାଧନା କରେ। **ଶ୍ଲୋକଛନ୍ଦ** ଅତୀତରୁ ଉଚ୍ଚାରିତ, ଆତ୍ମିକ ମନ୍ତ୍ରରେ ଅଭିମନ୍ତ୍ରିତ ଏପରି ଏକ ଅମୃତ ଉଲ୍ଲାସ। ଜରା, ବ୍ୟାଧିର ଏ ପୃଥିବୀରେ ହଜାର ହଜାର ବର୍ଷ ଧରି ମଣିଷ ବଞ୍ଚିଆସିଛି ଏକ ସ୍ୱପ୍ନ ନେଇ। ସେ ସ୍ୱପ୍ନ-ମୃତ୍ୟୁରୁ ଊର୍ଦ୍ଧ୍ୱରେ ଜୀବନର ସଂଗୀତ ଉଚ୍ଚାରିଛି, ଦୁଃଖ ଭିତରେ ଆନନ୍ଦ ରାଗିଣୀ ଗାଇଛି, ହଜାଇବା ଭିତରେ ଗାଇବାର କଥା କହିଛି। 'ଶ୍ଲୋକଛନ୍ଦ'ର ଭାବଭୂମି ପ୍ରାପ୍ତି, ଅପ୍ରାପ୍ତିରୁ ଊର୍ଦ୍ଧ୍ୱରେ ସନାତନ ମାନବ ପ୍ରତିଷ୍ଠାର ଏକ ଆତ୍ମିକ ଉଚ୍ଚାରଣ। ଏ ଜାତି ପାଇଁ ବାଲ୍ମୀକି ଓ ଶରତଚନ୍ଦ୍ର ଉଭୟେ ଏକ ଏକ ମିଥ୍- କାଳବକ୍ଷରେ ଏକ ଏକ ସଶ୍ରଦ୍ଧ ଉଚ୍ଚାରଣ।

Digitized by srujanika@gmail.com

**ଶ୍ଳୋକଛନ୍ଦ**ର ଅନୁଭୂତି ଚରିତ ଉପନ୍ୟାସର ପାଖାପାଖି । କିନ୍ତୁ ଏଠି ଜୀବନ ବୃତ୍ତାନ୍ତ ଶୁଣେଇ ନାହାନ୍ତି ସ୍ରଷ୍ଟା ମହାଶୟ । ଆର୍ଯ୍ୟ ପରମ୍ପରାର ଏକ ସକଳ ଉପାଖ୍ୟାନର ଅନୁରଣନକୁ ପୁନଃଜୀବନ୍ୟାସ ଦେଇଛନ୍ତି ମାତ୍ର । ଟିକିଟି ରାଜବଂଶର ସନ୍ତାନ ଆଇନ ଶିକ୍ଷା କରିବାକୁ ଯାଇ ପଡ଼ିଛନ୍ତି ଚିତ୍ରକଳା ପ୍ରେମରେ । ପ୍ରେରଣାର ଉତ୍ସ ସାଜିଛନ୍ତି ଶ୍ୱେତାଙ୍ଗୀ ମେରୀ । ପ୍ରତ୍ୟାବର୍ତ୍ତନ ପରେ କିନ୍ତୁ ପତ୍ନୀ ଭାବରେ ଗ୍ରହଣ କରିଛନ୍ତି ଗୋଲାପ ପ୍ରଭାଙ୍କୁ । ଦୃଶ୍ୟମୟ ଜଗତରେ ଗୋଲାପପ୍ରଭା ଏବଂ ଅଦୃଶ୍ୟରେ ମେରୀ-ଶରତଚନ୍ଦ୍ରଙ୍କ କଳାକଳ୍ପନାର ମୂଳବିନ୍ଦୁ । ନିଜେ ଶରତଚନ୍ଦ୍ର ବ୍ୟାଧରୂପରେ ମେରୀ ପାଖରେ ନତଜାନୁ ପୁଣି ନୀଳସରସତୀଙ୍କ ଅନୁକମ୍ପାରେ ସେ ବାଲ୍ମୀକି ରୂପରେ ଆଙ୍କିଛନ୍ତି ବିଶ୍ୱରୂପ । ଜୀବନ ଓ କଳା ଏକାକାର ହୋଇ ବିଶ୍ୱଜୀବନ ଚିତ୍ରକୁ ଉପସ୍ଥାପିତ କରିଛି ଏଠାରେ । **ଚରିତ୍ର ଏଠାରେ ଚିତ୍ରମୟ ଏବଂ ଚିତ୍ର ଶବ୍ଦର ସଂଯୋଗରେ ଧ୍ୱନିମୟ ହୋଇ ସଞ୍ଚରିଯାଇଛି ଅପରିସୀମ ଦିଗରେ । ଅତୀତ ମୂର୍ତ୍ତିମନ୍ତ ବର୍ତ୍ତମାନର ପୃଷ୍ଠଭୂମିରେ ଏବଂ ବର୍ତ୍ତମାନ ପରିବ୍ୟାପ୍ତ ଭବିଷ୍ୟତ ଦିଗକୁ । ରେଖା, ରଙ୍ଗ, କାନ୍‌ଭାସ୍ ଶବ୍ଦର ବଳୟରେ ମହାଶୂନ୍ୟରେ ଆଙ୍କିଛି ପ୍ରବୃତ୍ତିର ଚିତ୍ର । ଏ ପ୍ରବୃତ୍ତି ହିସାବୀ ମଣିଷର ବନ୍ଧାବଳୟର ରୂପ କଳ୍ପନା ନୁହେଁ, ଅରୂପର ନିତ୍ୟନୂତନ ସୃଜନରେ ବିମୁଗ୍ଧ ମାନବର ଆବାହନୀ ମାତ୍ର ।**

ସ୍ରଷ୍ଟା ପାଠୀ ଏଠାରେ ଉଭୟ ରୂପ ଓ ଅରୂପ ରେଖା ଓ ଶବ୍ଦ ଭିତରେ ଥିବା ସୂକ୍ଷ୍ମ ପ୍ରତିବନ୍ଧକଟିଏ ଆଡ଼େଇ ପାଠକକୁ ନୂତନ ବିଶ୍ୱରେ ସଞ୍ଚରଣ କରିବା ନିମନ୍ତେ କ୍ଷେତ୍ର ପ୍ରସ୍ତୁତ କରିଛନ୍ତି । କଥା ରହିଲା ଆମଭଳିଆ ଗତାନୁଗତିକ ମଣିଷକୁ ନେଇ, ଧରାବନ୍ଧା ଜୀବନଧାରାରେ ଆବଦ୍ଧ ଆମପରି ମଣିଷମାନଙ୍କ ପାଇଁ ଏ ବ୍ୟାପ୍ତି କେତେଦୂର ଗ୍ରହଣୀୟ ତା'ର ଉତ୍ତର କେବଳ ମହାକାଳ ହିଁ ପ୍ରଦାନ କରିବ ।

'ମେଟାଫିକ୍‌ସନ୍', 'ଚିତ୍ରୋପନ୍ୟାସ' ଇତ୍ୟାଦି ଯେଉଁ ନାମରେ ଚିହ୍ନିତ ହେଉନା କାହିଁକି, ପାଠୀଙ୍କ କଥା ସୃଷ୍ଟିକୁ ଅନୁଧାନ କରିବା ପାଇଁ ଆବଶ୍ୟକ ଏକ ବିସ୍ତୀର୍ଣ୍ଣ ପରିସର । ଭାବ, ଦର୍ଶନ, ତତ୍ତ୍ୱ, ଜିଜ୍ଞାସା ଇତ୍ୟାଦି ଇତ୍ୟାଦି ଅନେକ ବୌଦ୍ଧିକ ଉଚ୍ଚାରଣର ସମାହାର ହେଉଛି ସ୍ରଷ୍ଟାଙ୍କ କଳାସୃଷ୍ଟି । ଏଠାରେ ଯାହାସବୁ କହିବାକୁ ଉଦ୍ୟମ କରାଯାଇଛି, ସବୁହେଲା ଡ୍ରଇଁ ମାଷ୍ଟ୍ରଙ୍କ ଡ୍ରଇଁରୁମ୍‌ର ଅନୁଭୂତି ମୋ ପାଇଁ । ଅନ୍ଦରମହଲକୁ ପ୍ରବେଶ ସମ୍ଭବ ହୋଇନାହିଁ । **ଏକ ମୁଗ୍ଧ ପାଠକ, ଏକ ଚକିତ ଦର୍ଶକର ଏ ଅଭିବ୍ୟକ୍ତି । ଦିନନାଥଙ୍କ ଅନ୍ଦର-ମହଲ ଆହୁରି ଅନେକ ଭେଳିକିର ସମାହାର । ଅବନ୍ତୀ, ନୀଳହ୍ରଦର ଚିତ୍ରକର, ଭବଘୁରା ଭବନାଥ, ସୁନାମାଛ, ପୋଥିଚିତ୍ର, ଚିତ୍ରପୋଥି ଇତ୍ୟାଦି କେତେ ଯେ କ'ଣ । ସବୁ ଭିତରେ ବିଚରଣ କରୁଥିବା ଦିନନାଥଙ୍କୁ କଥା ସୃଜନର ଏକ ସଦ୍ୟତମ ଇଲାକାରେ କେବଳ ଅନୁଭବ କରୁଥିବା ସଂଳାପ କେତେକକୁ ଏଠାରେ ଗୁନ୍ଥିବା ନିମନ୍ତେ ଚେଷ୍ଟା କରିଛି ।** ସମୟ ଯଦି ସୁଯୋଗ ଦିଏ ବହୁବିଧ ବର୍ଣ୍ଣାଳୀ ଭିତରେ ଚିହ୍ନିବାର ଉଦ୍ୟମ ଅବ୍ୟାହତ ରହିବ ନିଶ୍ଚୟ । କିନ୍ତୁ ସ୍ରଷ୍ଟା ଦିନନାଥଙ୍କ ଶବ୍ଦ, ଧ୍ୱନି, ରଙ୍ଗ ଓ ରେଖା ପ୍ରୀତି ଏମିତି ଅବ୍ୟାହତ ରହୁ । ଆଗାମୀ ସମୟ ତାଙ୍କର ମୁଗ୍ଧ ଅନୁଭବକୁ ଧାରଣ କରୁଥାଉ ଅନବରତ, ଚିତ୍ରିତ ହେଉଥାଉ ନିତ୍ୟପ୍ରତ୍ୟହ ।

''ଚିତ୍ର ସଂସ୍କୃତିକୁ ପୁର୍ନବିନ୍ୟାସ କରେ, ମଣିଷ ମଣିଷ ଭିତର ସଂପର୍କକୁ ଅର୍ଥପୂର୍ଣ୍ଣ କରେ ଏବଂ ବିଶ୍ୱର ରହସ୍ୟକୁ ଉଦ୍‌ଘାଟନ କରେ ଋତୁଚକ୍ରର ବିବର୍ତ୍ତନ ଭଳି ଚିତ୍ର ପ୍ରକୃତିର ।''

Digitized by srujanika@gmail.com

ଦେବୀ ପ୍ରସନ୍ନ ପଟ୍ଟନାୟକ

## ବନ ଉପବନ ମୁକ୍ତୋପନ୍ୟାସ ପରିକଳ୍ପନାର ଧାରାରେ 'ଗଙ୍ଗାବତରଣ'

ସାରସତ କଳା ସୃଷ୍ଟି ଏକ ମାନସିକ ବିଳାସ କ୍ଷେତ୍ର ନୁହେଁ । ସମୟ ଅପନୋଦନ କିମ୍ବା ପାଠକକୁ ଚମତ୍କୃତି ପ୍ରଦର୍ଶନ ଅପେକ୍ଷା, କଳା ପ୍ରକାଶ ଅନ୍ତରାଳରେ ମାନବର ଅଯତ୍ନ ବର୍ଦ୍ଧିତ ଅନେକ ଅପ୍ରକାଶ୍ୟ ତଥ୍ୟ ରୂପଲାଭ କରିଥାଏ । ପ୍ରାଚୀନ ଓ ମଧ୍ୟଯୁଗୀୟ ମଣିଷଠାରୁ ଆଧୁନିକ ମଣିଷର କହିବାକୁ ଅନେକ କଥା ରହିଛି । ବିଶ୍ୱାସ ଓ କଳ୍ପନାର କ୍ଷେତ୍ର ମଧ ବହୁଭାବରେ ଏଠାରେ ପରିବର୍ତ୍ତିତ । ଏହି ପରିବର୍ତ୍ତନ କେତେକ ନିଜ ଦ୍ୱାରା ସୃଷ୍ଟି; ଏବଂ ଅନ୍ୟ କେତେକ ନିଜ ହାତରେ ନଥାଏ । ଆଜିର ମଣିଷର ପରିସର ବ୍ୟାପକ । ଏହି ପରିସର ମଧ ପ୍ରତ୍ୟେକ ମୁହୂର୍ତ୍ତରେ ପରିବର୍ତ୍ତନଶୀଳ । ବହୁବିଧ ପ୍ରଶ୍ନବାଚୀ, ଦର୍ଶନ, ତଥ୍ୟ ଓ ସତ୍ୟ ଭିତରେ ଆଜିର ମଣିଷ ଭିନ୍ନ ମାନସିକତାର ସୂତ୍ରଧର । ଏ ପରିପ୍ରେକ୍ଷୀରେ ବାଡ଼ବନ୍ଧା କଳାର କ୍ଷେତ୍ର ଭିତରେ କଳାକାର ନିଜକୁ ନିରାପଦ ନ ମଣିବା ସ୍ୱାଭାବିକ । ଆଜି କୌଣସି ଫର୍ମୁଲା ଜୀବନକୁ ବା ଜୀବନର ପ୍ରକାଶ କ୍ଷେତ୍ରକୁ ପ୍ରଭାବିତ କରିବା ସମ୍ଭବପର ନୁହେଁ । ତେଣୁ ସହଜ, ସରଳ ଓ ସ୍ୱଚ୍ଛ ଭାବରେ ଅନୁଭୂତି ଓ ଅଭିଜ୍ଞତାକୁ ବଖାଣିବା ପାଇଁ କଳାକାର ଭାଙ୍ଗିବାକୁ ଉଦ୍ୟମ କରିଛି ତଥାକଥିତ ଶିଳ୍ପତତ୍ତ୍ୱର ବିଧି । ଏ ଉଦ୍ୟମର ପରିଣତି କ'ଣ ? ଆଜି ସେ ପ୍ରଶ୍ନ ନିରର୍ଥକ । ଶିଳ୍ପବିଧି ହେଉଛି ଏକ ଶାସ୍ତ୍ରୀୟଧାରା । ଏହା ମାନବର ନାନ୍ଦନିକ ଦୃଷ୍ଟିକୋଣ ଏବଂ ସମୀକ୍ଷାତ୍ମକ ଆଭିମୁଖ୍ୟକୁ ମାର୍ଗ ପ୍ରଦର୍ଶନ କରିଥାଏ । ସାଂପ୍ରତିକ କଳାକାର ଓ ପାଠକ ଉଭୟେ କୌଣସି ଧରାବନ୍ଧା ବା ଯୋଜନାବଦ୍ଧ ମାର୍ଗର ଉପାସକ ନୁହନ୍ତି । ମୁକ୍ତ ଭାବରେ ଏଠାରେ ଖୋଜାଚାଲିଛି, ଦେଖାଚାଲିଛି ।

ଏହି ପରିପ୍ରେକ୍ଷୀରେ ସାଂପ୍ରତିକ ଉପନ୍ୟାସ ପରମ୍ପରାରେ ଅନୁଭୂତ ନୂତନ ପରୀକ୍ଷାର ଧାରାକୁ ଅନୁଧ୍ୟାନ କରାଯିବା ଆବଶ୍ୟକ । ଅର୍ବାଚୀନ ହେବା ସତ୍ତ୍ୱେ, ଉପନ୍ୟାସ ଚଳନ୍ତି ସମୟର ଏକ ଲୋକପ୍ରିୟ କଳାରୂପ । ତେଣୁ ଏ କଳାବିଭବ ଉପରେ ପରୀକ୍ଷା ମଧ ଅଧିକ । ବିଶେଷ କରି ସାଧୀନତା ପରବର୍ତ୍ତୀ ସମୟରେ ବିବିଧ ଭାବରେ ଏହାର ଆଙ୍ଗିକ ଓ ଆତ୍ମିକ କ୍ଷେତ୍ରରେ ବହୁବିଧ ସମ୍ଭାବନା ଲକ୍ଷ୍ୟ କରିହୁଏ । ଏ ଧାରାରେ ବିଂଶ ଶତକର ନବମ ଦଶକ ପରବର୍ତ୍ତୀ ସମୟରେ ପରୀକ୍ଷାର କ୍ଷେତ୍ର ଅଧିକ ପ୍ରଶସ୍ତ ମନେହୁଏ । ବିଶେଷକରି ପାଶ୍ଚାତ୍ୟ ଉପନ୍ୟାସ ସାହିତ୍ୟରେ ବିକାଶ ଲାଭ କରିଥିବା ମେଟାଫିକ୍ସନ୍ ଶୈଳୀ ଓ ଭାବ ଏ ସମୟର ସାହିତ୍ୟକୁ ପ୍ରଭାବିତ କରିଥିବା ଦେଖାଯାଏ । **ପାଶ୍ଚାତ୍ୟ ଧାରାରେ ବିକାଶ ଲାଭ କରିଥିବା ମେଟାଫିକ୍ସନ୍ ମୁଖ୍ୟତଃ ଏକ ଆତ୍ମ-ସଚେତନ କଳାରୂପ । ଏଠାରେ ସ୍ରଷ୍ଟା ଓ ପାଠକ ଉଭୟଙ୍କ ଭୂମିକା ସମପରିମାଣରେ ଗୁରୁତ୍ୱପୂର୍ଣ୍ଣ । ପାଠକର ଭାଗ ଟିକେ ବେଶୀ । ପରମ୍ପରାର ସାହିତ୍ୟରେ ପାଠକ ଏକ ସ୍ତବଧିଚକିତ ଦ୍ରଷ୍ଟା ।** ସ୍ରଷ୍ଟାର ଯାଦୁଗରୀ ଖେଳ ଆଗରେ ସେ ମୁଗ୍ଧ ଦର୍ଶକଟିଏ ମାତ୍ର । ଚରିତ୍ର ସହ ପାଠକ ହସେ / କାନ୍ଦେ, ଘଟଣା ମୋଡ଼ରେ ଆଶ୍ୱସ୍ତି ଅନୁଭବ କରେ । ବର୍ଣ୍ଣନାର ଛଟା ଓ ଭାଷାର ଯାଦୁଗରୀରେ ମୁଗ୍ଧ ଚକିତ ରହେ । ମୋଟାମୋଟି କହିବାକୁ ଗଲେ ସ୍ରଷ୍ଟା ଏଠାରେ ପାଠକକୁ ତା'ର ବାସ୍ତବ ପୃଥିବୀରୁ ଟାଣିନିଏ ଏକ କାଳ୍ପନିକ ଇଲାକାକୁ । ପଠନକ୍ରିୟା ଭିତରେ ଆପଣାକୁ ମଧ ଭୁଲିଯାଏ ପାଠକ। ଏହି ସଂରଚନା ଭିତରେ ଅନେକ ସମୟରେ ପାଠକ ରୂପାନ୍ତରିତ ହୁଏ ଗ୍ରାହକରେ । ପୁଣି ଗ୍ରାହକଟିଏ ପାଇବା ପାଇଁ ସ୍ରଷ୍ଟାର ଆକୁତି ଖୁବ୍ ବେଶି । ଅନେକ ସମୟରେ ପୁଣି ପାଠକ ଓ ସୃଷ୍ଟି ଭିତରେ ଯୋଗସୂତ୍ର ରକ୍ଷା କରିବା ପାଇଁ ଟୀକାକାର / ବାଖ୍ୟାକାରର ଆବଶ୍ୟକତା ବି କମ୍ ନୁହେଁ । ମେଟାଫିକ୍ସନ୍ କ୍ଷେତ୍ରରେ ପାଠକ ଏକ ଭିନ୍ନ ଶ୍ରେଣୀରେ ସ୍ଥାନ ପାଏ । ଏଠାରେ ପାଠକ କଳାକୃତିର ଭାଷାଗତ ଚମତ୍କାରିତା ଓ କଳ୍ପନା ବୈଚିତ୍ର୍ୟ ସଂପର୍କରେ ସଚେତନ ରହି କଳାକୃତିର ସହ ଅସଂପୃକ୍ତ ରହିବା ସତ୍ତ୍ୱେ ଏଠାରେ ପାଠକ ସଂଯୁକ୍ତ ହୋଇଥାଏ ଏବଂ ସୃଷ୍ଟିଭିତରୁ ଅର୍ଥ ସଂଗ୍ରହରେ ବ୍ୟାପୃତ ରହେ । ଏଠାରେ ପାଠକ ଅତି ସଚେତନ ଭାବରେ କଳାକୃତିକୁ ଏକ ସମୟ ସ୍ପନ୍ଦନଭିତ୍ତିକ ସାଂସ୍କୃତିକ ତଥା ଐତିହାସିକ ବସ୍ତୁ ଭାବରେ ଗ୍ରହଣ କରିଥାଏ । ଅର୍ଥାତ୍ ଏଠାରେ ସୃଷ୍ଟିଲାଭ କରିଥିବା କଳାକୃତିଟି ତତ୍କାଳୀନ ଦୃଷ୍ଟିକୋଣ ସହ ଏକ ଅବିଚ୍ଛିନ୍ନ ଧାରାର ଅଂଶ ଭାବରେ ରୂପଲାଭ କରିଥାଏ ।

Digitized by srujanika@gmail.com

କଳା ସମ୍ପର୍କରେ ଅନୁଧ୍ୟାନ କଲାବେଳେ କଥାବୀଜଟି ଥାଏ ସର୍ବଦା ଅନୁଶୀଳର ମୁଖ୍ୟ ଆକର୍ଷଣ । ଅର୍ଥାତ୍ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରଖି କଳାକାର କଳା ସୃଷ୍ଟିଟିଏ ପ୍ରସ୍ତୁତ କରିଥାଏ । କଳାକାରର ମୁଖ୍ୟ ଉଦ୍ଦେଶ୍ୟର ପରିପୂରଣ ନିମନ୍ତେ ଚରିତ୍ର, କଥାବସ୍ତୁ, ଘଟଣା ତଥା ପରିବେଶ ପରିକଳ୍ପିତ ହୋଇଥାନ୍ତି । କିନ୍ତୁ ମେଟାଫିକ୍ସନ୍‌ରେ ପ୍ରକାଶର କ୍ଷେତ୍ର ଅବାଧ । ଏକ ସିଦ୍ଧାନ୍ତ ବା ଲକ୍ଷ୍ୟ ଅପେକ୍ଷା ସାମ୍ଭାବ୍ୟ ଉଦ୍ଦେଶ୍ୟର ବହୁବିଧ ପଥ ଏଠାରେ ଥାଏ ଉନ୍ମୁକ୍ତ । ପାଠକ ଏହି ବହୁବିଧ ଧାରା ଭିତରୁ ଆପଣାର ଆବଶ୍ୟକତା ଓ ବିଶ୍ୱାସକୁ ଭିତ୍ତିକରି ଅର୍ଥ ନିରୂପଣ ନିମନ୍ତେ ପ୍ରୟାସ କରିଥାଏ । ଏ କ୍ଷେତ୍ରରେ ବିଶିଷ୍ଟ ସମାଲୋଚକ Linda Hutcheonଙ୍କ ଦୃଷ୍ଟିକୋଣରୁ ଏଠାରେ ଅନୁଶୀଳନ କରାଯାଇପାରେ । ହୋଚେନଙ୍କ ଦୃଷ୍ଟିରେ ମେଟାଫିକ୍ସନ୍ ଏକ ନୂତନ କଳାରୂପ ନୁହେଁ । ଦୀର୍ଘ ବହୁବର୍ଷ ଧରି ଉପନ୍ୟାସ କ୍ଷେତ୍ରରେ ଅଭିନବ ଦୃଷ୍ଟିକୋଣ ଆରୋପ ନିମନ୍ତେ ଯେଉଁ ଉଦ୍ୟମ ଆରମ୍ଭ ହୋଇଥିଲା ଏହା ତା'ର ପରିଣତି ମାତ୍ର । ଏ ସଂପର୍କରେ ତାଙ୍କର ବକ୍ତବ୍ୟରେ ସେ John Banvillଙ୍କ ମନ୍ତବ୍ୟକୁ ଉଦ୍ଧାର କରି ସତ୍ୟର ଅବ୍ୟକ୍ତ, ବାସ୍ତବତାର ବିବିଧତା ଏବଂ ଭାଷାର ଅସଚ୍ଛ ପ୍ରକାଶ କ୍ଷମତାକୁ ସ୍ୱୀକାର କରିଛନ୍ତି । ଲିଣ୍ଡାଙ୍କ ଦୃଷ୍ଟିରେ ଏହା ହେଉଛି ଆତ୍ମ-ସମ୍ବାଦାତ୍ମକ, ଆତ୍ମ-ପ୍ରକାଶକ୍ଷମ ଏକ କଳାରୂପ। ଏ କ୍ଷେତ୍ରରେ ସେ ଫ୍ରଏଡ୍‌ଙ୍କ 'narcissism' ଶବ୍ଦକୁ ଗ୍ରହଣ କରି 'ସାର୍ବଜନୀନ ବାସ୍ତବ ଅବସ୍ଥା'ର ଚିତ୍ର ଭାବରେ ମେଟାଫିକସନ୍‌କୁ ଗ୍ରହଣ କରିଛନ୍ତି । **ଅନେକ ସମାଲୋଚକ ଅତ୍ୟାଧୁନିକ ଉପନ୍ୟାସ ଭାବରେ ମେଟାଫିକ୍ସନ୍‌କୁ ଗ୍ରହଣ କରିଛନ୍ତି । ଅତ୍ୟାଧୁନିକତା-ଆଧୁନିକତାର ଏକ ସଂପ୍ରସାରିତ ପର୍ଯ୍ୟାୟ । ଏ ପର୍ଯ୍ୟାୟରେ ଉପନ୍ୟାସର କ୍ଷେତ୍ର କେବଳ ସଂପ୍ରସାରିତ ଦୃଷ୍ଟିଭଙ୍ଗୀକୁ ନେଇ ବିକାଶଲାଭ କରିନାହିଁ; ବରଂ ଏଠାରେ ଉପସ୍ଥାପନ, ଅବବୋଧ ଓ ରୂପାୟନ ସହ କଳାକ୍ଷେତ୍ରରେ ସୃଷ୍ଟି କର୍ମର ସ୍ୱାତନ୍ତ୍ର୍ୟ ପ୍ରତିପାଦିତ ହୋଇଛି ।**

ଯୁଦ୍ଧ ପରବର୍ତ୍ତୀ ସମୟର ପାଶ୍ଚାତ୍ୟ କଳାସୃଷ୍ଟିରେ ଏକ ବିଶେଷଧରଣର ଦୃଷ୍ଟିକୋଣ ବିକାଶଲାଭ କରିଥିବା ଦେଖାଯାଏ । ମାନବର ମାନସିକ ବା ବୌଦ୍ଧିକ କାର୍ଯ୍ୟକଳାପ କଳ୍ପନାକୁ ଭିତ୍ତିକରି ଗଢ଼ି ଉଠିଥାଏ । ରୂପହୀନକୁ ରୂପ ପ୍ରଦାନ କରିବା କଳ୍ପନା ଦ୍ୱାରା ସମ୍ଭବ ହୋଇଥାଏ । ଉଦାହରଣ ସ୍ୱରୂପ ସମୟକୁ ମାନବ ନିଜର କଳ୍ପନା ଦ୍ୱାରା ଆବଦ୍ଧ କରିବାକୁ ଉଦ୍ୟମ କରିଥାଏ । ଆବଶ୍ୟକତା ଅନୁଯାୟୀ ଏହାକୁ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତରେ ବିଭାଜିତ କରିଥାଏ । ସମୟ କ'ଣ ସତରେ ଏହିପରି ଖଣ୍ଡିତ ରୂପ ନେଇ ରହିଥାଏ ? ନୁହେଁ, କେବଳ ବଂଚିବା ପାଇଁ ମାନବ ନିଜର ଆବଶ୍ୟକତା ଅନୁସାରେ ଏହାକୁ ସଜ୍ଜେଇଥାଏ । ତେଣୁ ଉପନ୍ୟାସକୁ ଏକ ମାନସିକ ସମ୍ମେଳନ ବା ସମୂହ (mental structure) ଭାବରେ ଗ୍ରହଣ କରି ଏହା ଅସତ୍ୟ ବା କାଳ୍ପନିକ ହେବା ସତ୍ତ୍ୱେ ମାନସିକ ଧାରା ବା ସଂହତି ରକ୍ଷା ନିମନ୍ତେ ସତ୍ୟ ରୂପରେ ଗ୍ରହଣୀୟ ହୋଇଥିବା ଦର୍ଶାଯାଏ । ତେଣୁ ସ୍ରଷ୍ଟାର ସଚେତନାତ୍ମକ ପ୍ରୟାସ ଅରୂପକୁ ରୂପ ପ୍ରଦାନ କଲାବେଳେ ଶବ୍ଦର ବ୍ୟାପକ ଅର୍ଥଦ୍ୟୋତନା ପ୍ରତି ପାଠକ ସଚେତନ ହେବା ଆବଶ୍ୟକ । ମେଟାଫିକ୍ସନ୍‌ର ସ୍ରଷ୍ଟା ସେଇଠି ଅପେକ୍ଷା ରଖେ । କଳାସୃଷ୍ଟି ପ୍ରକୃତିକୁ (nature), ଅରୂପକୁ-ରୂପ ପ୍ରଦାନ କରେ । ଏଠାରେ ଅଧିକ ସ୍ପଷ୍ଟ ଭାବରେ କହିବାକୁ ଗଲେ ଉପନ୍ୟାସ ଇଂରାଜୀରେ ଯାହାର ପ୍ରତିଶବ୍ଦ ହେଉଛି novel, ତା'ଠାରୁ fiction ବା କଥା ସାହିତ୍ୟର କ୍ଷେତ୍ର ଅଧିକ ବ୍ୟାପକ । ଉପନ୍ୟାସ, ଏକ କାଳ୍ପନିକ ସୃଷ୍ଟି ରୂପ (product of Imaginative activity) । କିନ୍ତୁ କଥାସାହିତ୍ୟ ବା fiction (invented narrative) ହେଉଛି ଏକ ସୃଜନକର୍ମ (activity itself) । ତେଣୁ ଏହି ସୃଜନକର୍ମ ରୂପହୀନ ପ୍ରାକୃତିକ ବିଭବକୁ ରୂପଦାନ କରିଥାଏ । ସମସ୍ତ ବୌଦ୍ଧିକ ସୃଜନକର୍ମ ଅନ୍ତରାଳରେ ମାନବର ଏହି କାଳ୍ପନିକ ପ୍ରୟାସ ଥାଏ ଅବ୍ୟାହତ ।

ଏହି ଦୃଷ୍ଟିକୋଣ ନେଇ ଅନୁଧ୍ୟାନ କଲେ ଉପନ୍ୟାସର ସୀମିତ କ୍ଷେତ୍ର ଭିତରେ ମାନସିକ ପ୍ରକାଶ ନିମନ୍ତେ ସ୍ଥାନ ବା କାହିଁ ? ଉପନ୍ୟାସ ଜୀବନକୁ, ଜୀବନର ଅନୁଭୂତିକୁ ରୂପ ପ୍ରଦାନ କରେ । ସମାଜ ଓ ସଂସ୍କୃତିର ବିସ୍ତୃତ ରୂପକୁ କାଳ୍ପନିକତାର ପ୍ରଲେପ ଦେଇ ପାଠକ ଆଗରେ ଉପସ୍ଥାପନା କରିଥାଏ । ଏହି କଳାରୂପ ଏକ ନିର୍ଦ୍ଦିଷ୍ଟ କଳାରୂପ, ଏକ ନିର୍ଦ୍ଦିଷ୍ଟ ଗତି ଏବଂ ଏକ ନିର୍ଦ୍ଦିଷ୍ଟ ଧରଣର ଧରାବନ୍ଧା ନିୟମ ଭିତରେ ଆବଦ୍ଧ । ତେଣୁ ଏ ସଂଜ୍ଞାର ଦେହଳୀ ଡେଇଁ ମାନସିକ

Digitized by srujanika@gmail.com

ବ୍ୟାପ୍ତି ଓ ବିସ୍ତୃତିକୁ ଶବ୍ଦ ମାଧ୍ୟମରେ ଉପସ୍ଥାପିତ କରିବା ଉଦ୍ୟମ ଭିତରୁ ରୂପ ଲାଭ କରିଛି ମେଟାଫିକ୍‌ସନ୍ । ଫିକ୍‌ସନ୍, ଉପନ୍ୟାସ, ରୋମାନ୍‌ସ, ସବୁ ମେଟାଫିକ୍‌ସନ୍ ଭିତରେ ଆବଦ୍ଧ । ଏହା ଏକ ନୂଆ କଳାରୂପ ନୁହେଁ । ଏହା କାଳ୍ପନିକ କଥା ସୃଜନ ଧାରାର ଏକ ପରିବର୍ଦ୍ଧିତ ରୂପ ମାତ୍ର ।

କଥାସୃଜନଧାରାରେ କଥାକାରଟିଏ ଅନେକ ସମୟରେ ଅନୁଭବ କରିଛି ଏକ ଭିନ୍ନ ଅନୁଭୂତି । ଅନେକ ସମୟରେ ଏକ ଭାବକୁ ରୂପ ଦେଲାବେଳେ ଅତି ଅସାଭାବିକ ଭାବରେ ଭିନ୍ନ ଭାବ ରୂପ ପରିଗ୍ରହଣ କରିଛି । ଏ ପ୍ରସଙ୍ଗରେ ସୁରେନ୍ଦ୍ର ମହାନ୍ତିଙ୍କ ବକ୍ତବ୍ୟକୁ ଅନୁଧ୍ୟାନ କରାଯାଇପାରେ । ନୀଳଶୈଳରେ ସରଦେଈ ଥିଲା ଏକ ପାର୍ଶ୍ୱ ଚରିତ୍ର ମାତ୍ର । କିନ୍ତୁ ପ୍ରସଙ୍ଗ କ୍ରମେ ସରଦେଈର ମୃତ୍ୟୁରେ ସ୍ରଷ୍ଟା ଜଗନ୍ନାଥଙ୍କୁ ଅପତରାରେ ଛାଡ଼ି ଫେରି ଆସିବାକୁ ବାଧ ହୋଇଛନ୍ତି । ଅସଚେତନରୁ ସଚେତନ ଭାବରେ ଏକ ପ୍ରତୀକ ଜନ୍ମଲାଭ କରିଛି । ବିଡ଼ମ୍ବିତ ଉତ୍କଳର ପ୍ରତୀକ ହୋଇ ଉଠିଛି ସରଦେଈ । ତେଣୁ କାଳ୍ପନିକ ସୃଜନ କର୍ମ ଭିତରେ ସ୍ରଷ୍ଟା କ୍ରମଶଃ ସଚେତନ ହେଉଛି ପ୍ରକୃତିକୁ ବାନ୍ଧିରଖିବା ପାଇଁ, ପ୍ରବୃତ୍ତିକୁ ରୂପ ଦେବାପାଇଁ । ଠିକ୍ ସେପରି ପାଠକର ଅବସ୍ଥା । ପାଠକ ଗ୍ରାହକ ମାତ୍ର ନୁହେଁ । ସ୍ରଷ୍ଟାଙ୍କ ସଙ୍କେତ, ଶବ୍ଦପୁଞ୍ଜ ରୂପମୟ ହୋଇ ଉଠିଛି ପାଠକ ପାଖରେ । କେତେବେଳେ ଅନୁସୃଜନରେ ସେ ବ୍ୟସ୍ତ ତ କେତେବେଳେ ସଂକେତ ଗୁଡ଼ିକୁ ରୂପ ଦେଲା ବେଳେ ସେ ସହସ୍ରଷ୍ଟାର ଆସନରେ ଆସୀନ । ଏଠାରେ ଆଉ ଆବଶ୍ୟକ ନାହିଁ ଟୀକାକାର, ବ୍ୟାଖ୍ୟାକାର ବା ସମାଲୋଚକର । ସୃଜନ ଓ ସମାଲୋଚନା ଭିତରେ ସୀମାରେଖା ଅସ୍ପଷ୍ଟ ଏ କ୍ଷେତ୍ରରେ । ଏଠାରେ ଉପନ୍ୟାସ ବା କଥା ସୃଜନ ପରମ୍ପରା ପରିବର୍ତ୍ତିତ ହୋଇନାହିଁ, ବରଂ ପ୍ରାଚୀନ ଏକ ନୂଆ ବିବର୍ତ୍ତନ ଦେଇ ନବରୂପ ନେଇ ଜନ୍ମଲାଭ କରିଛି । ଏହା ପରମ୍ପରାର ନବୀକରଣ, ବିଚ୍ୟୁତି ନୁହେଁ ।

କଥା ସୃଜନ ପରମ୍ପରାରେ ବିକାଶ ଲାଭ କରିଥିବା ଏହି ଆତ୍ମସଚେତନାତ୍ମକ ଅଭିବ୍ୟକ୍ତି ଓଡ଼ିଆ ସାହିତ୍ୟରେ ବିରଳ ନୁହେଁ । ପୂର୍ବରୁ ଆଲୋଚନା ଧାରାରେ ଲକ୍ଷ୍ୟ କରାଯାଇଛି ସାଂସ୍କୃତିକ ବିସ୍ମୃତି, ଯାହା ଊନବିଂଶ ଶତାବ୍ଦୀରୁ ଆରମ୍ଭ ହୋଇ ସାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଉତ୍କଳୀୟ ମାନସକୁ ଆକ୍ରାନ୍ତ କରିଥିଲା, ସେଥିରୁ ମୁକ୍ତ ହୋଇଛି ସାଧୀନ ମଣିଷ । ଆଧୁନିକତା ଅନୁପ୍ରବେଶ ମୂଳରେ ପାଶ୍ଚାତ୍ୟ ଶିକ୍ଷା ଓ ଶାସନ ପ୍ରଣାଳୀର ଅବଦାନ ଅନେକ । ବିସ୍ତୃତ ବିଶ୍ୱସହ ବ୍ୟକ୍ତିର ପରିଚିତି ନିମନ୍ତେ ଏ ସମୟର ଦ୍ୱାର ଉନ୍ମୁକ୍ତ କରିଛି । କିନ୍ତୁ ସବୁଠାରୁ ଲକ୍ଷ୍ୟଣୀୟ ବିଷୟ ହେଲା ପାଶ୍ଚାତ୍ୟ ଚେତନାରେ ଯାହା ଆଧୁନିକ ଦୃଷ୍ଟିକୋଣର ବିକାଶ ନିମନ୍ତେ କ୍ଷେତ୍ର ପ୍ରସ୍ତୁତ କରିଥିଲା, ତାହା ପ୍ରାଚ୍ୟ କ୍ଷେତ୍ର ଠାରୁ ଭିନ୍ନ । ପାଶ୍ଚାତ୍ୟ ଚେତନାର କେନ୍ଦ୍ର ବିନ୍ଦୁ ହେଲା ଆଧ୍ୟାତ୍ମିକ ବିଶ୍ୱାସ-ହୀନତା, ବସ୍ତୁବାଦୀ ଦୃଷ୍ଟିକୋଣର ବିକାଶ, ବ୍ୟକ୍ତିର ନିଃସଙ୍ଗ ଅନୁଭୂତି, ପାରିବାରିକ ବିଚ୍ୟୁତି, ଇତ୍ୟାଦି ଇତ୍ୟାଦି । ଭାରତୀୟ ଜୀବନରେ ଆଧୁନିକତାର ଉନ୍ମେଷ ପର୍ଯ୍ୟାୟକୁ ଅନୁଧ୍ୟାନ କଲେ ବହୁ ପାର୍ଥକ୍ୟ ଏଠାରେ ଦେଖାଯାଏ । ବିଂଶ ଶତକରେ ଆମେ ସାଧୀନତା ଲାଭ କରିଛୁ ସାମୂହିକ ଆନ୍ଦୋଳନ ମାଧ୍ୟମରେ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏଠାରେ ମାନବର ବିକାଶ ନିମନ୍ତେ ଉଦ୍ୟମ ଅବ୍ୟାହତ ରହିଛି । ସବୁ ବିକାଶ ସତ୍ତ୍ୱେ ଏଠାରେ ପରମ୍ପରା ଆମ ପାଖରେ ସୁରକ୍ଷିତ । ଜହ୍ନିଓଷା ଠାରୁ ରଥଯାତ୍ରା ପର୍ଯ୍ୟନ୍ତ ଆମର ଭାବଭୂମି ସୁବିସ୍ତୃତ । ଗ୍ରାମ୍ୟ ସଭ୍ୟତାର ମହକ ଏଯାବତ୍ ଆମଠାରୁ ଦୂର ହୋଇନାହିଁ । ପାରିବାରିକ ଯୌଥ ସଂଗଠନ ଅକ୍ଷତ ଏଯାବତ୍ । କେବଳ ବିଶ୍ୱସ୍ତରରେ ଆମର ବ୍ୟାପ୍ତି ଆମକୁ ନୂଆ ଅନୁଭୂତି ଦେଇଛି । ଏକ ସମ୍ପ୍ରସାରିତ ଅନୁଭୂତି ଭିତରେ ବ୍ୟକ୍ତିର ଚିନ୍ତା ବହୁ ଭାବରେ ବଦଳିଛି । ଅରବିନ୍ଦଙ୍କ ଠାରୁ ଆରମ୍ଭ କରି ଅଟଳ ବିହାରୀଙ୍କ ପର୍ଯ୍ୟନ୍ତ ବହୁ ବିକ୍ଷିପ୍ତ ଓ ବିଭାଜିତ କ୍ଷେତ୍ରରେ ଆମେ ପ୍ରବେଶ କରିଛୁ । ଜ୍ଞାନର ମାର୍ଗ ବଢ଼ିଛି, ପରିସର ବି ବଢ଼ିଛି । କୋଣ ଅନୁକୋଣ ସହ ଆମେ କ୍ଷଣିକରେ ସଂଯୋଜିତ ହେଉଯାଉଛୁ ଟେଲିଭିଜନ, ମୋବାଇଲ୍, କଂପ୍ୟୁଟର ମାଧ୍ୟମରେ । ଏହି ବିସ୍ତୃତି ଆମର ଜୀବନବୋଧ ଓ କଳ୍ପନାର ଧାରାକୁ ପ୍ରଭାବିତ କରିବା ଅଧିକ ଯୁକ୍ତିସଂଗତ । ତେଣୁ ଗୋଟିଏ ଦିଗରେ ଇଣ୍ଟରନେଟ୍‌ର ସଙ୍କୁଚିତ ପୃଥିବୀ ଏବଂ ଅନ୍ୟଦିଗରେ ଗୀତା, ଭାଗବତର ସମ୍ପ୍ରସାରିତ ଭାବଧାରାର ସମନ୍ୱୟ ଏ ମଣିଷ ମନରେ ଯେଉଁ ନୂତନ ବିଶ୍ୱର ସନ୍ଦେଶ ଦେଇଛି ତା'ରି ପୃଷ୍ଠଭୂମି ଉପରେ ଗଢ଼ି ଉଠିଥିବା ସ୍ରଷ୍ଟାର କଳାରାଜ୍ୟ ତାହାର ପୂର୍ବସୂରୀଙ୍କ ଠାରୁ

Digitized by srujanika@gmail.com

ଭିନ୍ନ ହେବା ସାଭାବିକ । ଏଇ ଧାରାରେ ନବେ ପରବର୍ତ୍ତୀ ସମୟରେ ଓଡ଼ିଶା ସୃଜନ କର୍ମରେ **ମୁଣ୍ଡ ଟେକିଛନ୍ତି କେତକୀ, ଗୋଲାମ ଦାସ, ନିତ୍ୟାନନ୍ଦ, ଅହଲ୍ୟା, ପଦ୍ମଲୋଚନ, ସୁଶୀ, ଗୌରୀ, ନୀଳାମ୍ବର, ନରହିଟୋ, ଗୌତମ, ଇନ୍ଦ୍ର ଇତ୍ୟାଦି ଇତ୍ୟାଦି ।**

**ଓଡ଼ିଆ କଳ୍ପସୃଜନ ପରମ୍ପରାର ଉତ୍ତରଦାୟାଦ ଭାବରେ ନବମ ଦଶକ ପରବର୍ତ୍ତୀ ସମୟରେ କେତେକ ଉଲ୍ଲେଖନୀୟ ପରିବର୍ତ୍ତନର ସ୍ୱର ଶୁଣିବାକୁ ମିଳେ । ଆକାଶର ଇଶାରା, ମହାମୋହ, ଚିଦାଭାସ, ସାୟୋନାରା ଓ ପୁନର୍ନବା ଉପନ୍ୟାସରେ । ଚିତ୍ରୋପନ୍ୟାସ, ପ୍ରାୟୋପନ୍ୟାସ, ମୁକ୍ତୋପନ୍ୟାସ, କାବ୍ୟୋପନ୍ୟାସ ଏ ସମୟର ସୃଷ୍ଟି ।** ଏହି ସ୍ରଷ୍ଟା ଶବ୍ଦରେ କଳା ରଚେ । ଚିତ୍ର କରେ, ରଙ୍ଗ ଦିଏ । ଏଠି କବି ଓ କଳାକାର ଏକ । କବିତା ଓ ଉପନ୍ୟାସର କ୍ଷେତ୍ର ଏକ । ମଣିଷର ଭାବ ରଙ୍ଗରେ, ଶବ୍ଦରେ ସଂଚରିଯାଏ । ଏହି ସଂଚରଣର ପ୍ରକାଶ ଏଠି ସ୍ପଷ୍ଟ ଅନୁଭବ କରିହୁଏ । ପ୍ରତୀକଟିଏ ଅନନ୍ତକାଳ ଧରି ଉଦ୍‌ଗୀରଣର ମାର୍ଗ ଅନ୍ୱେଷଣ କରୁ କରୁ ଅହଲ୍ୟାରେ ରୂପାନ୍ତରିତ ହୁଏ । ବିପର୍ଯ୍ୟୟ ଭାଗ୍ୟ ତ ମଣିଷ ଜାତିର । ଏ ଜାତି ତେଣୁ କେତେବେଳେ ବ୍ୟକ୍ତି ହୋଇଯାଏ, ଠିଆ ହୋଇଯାଏ ପଦ୍ମଲୋଚନର ରୂପ ନେଇ । ଭାବ / ଅଭାବ, ତ୍ୟାଗ/ଭୋଗ, ଆଲୋକ/ଅନ୍ଧାର ସବୁ କିଛିର ମିଳିତ ଆଲେଖ୍ୟ ଏ ପର୍ଯ୍ୟାୟରେ । ଏକ ବିସ୍ତୃତିକୁ ସୀମିତ ପରିସରରେ, ଏକ ଅରୂପକୁ ରୂପମୟ କରିବା ଦିଗରେ, ଏକ ଅବ୍ୟକ୍ତକୁ ବ୍ୟକ୍ତ କରିବା ନିମନ୍ତେ ଏ ଉଦ୍ୟମ । ଏଠି ଆଉ ଉପବନର ଜ୍ୟାମିତିକ ପ୍ରକାଶ ନାହିଁ, ଅଛି ଅରଣ୍ୟର ସାଭାବିକ ବିସ୍ତୃତି ।

ଏ ସଂପର୍କରେ The postmodern condition' ରେ ଲ୍ୟାଟାର୍ଡ କହନ୍ତି- Simplifying to the extreme, I define post modernism as incredulity towards metanarratives xxx the narrative function is loging its functors, its great hero, its great dangers, its great voyages, its great goal, it is being disperted in clouds of narrative language elements-narrative, but also denotative, prescriptive, descriptive and so on where, after the metanarratives, can legitimacy reside ?

ଦୃଷ୍ଟି ନିକ୍ଷେପ କଲେ ଦେଖାଯାଏ ଯେ ଅନୁକୃତିର ଅପଦୃଶ୍ୟ ବା ସିମ୍ୟୁଲେଶନ୍ ସାଂପ୍ରତିକ ଦୃଷ୍ଟିଭଙ୍ଗିକୁ ଅଧିକ ବିସ୍ତାରିତ କରିଛି । ଫରାସୀ ଚିନ୍ତାନାୟକ ବଦ୍ରିଲାର୍ଡ଼ଙ୍କ (Jean Baudrillard) ଦୃଷ୍ଟିରେ ବାସ୍ତବ-ଅବାସ୍ତବ, ଦୃଶ୍ୟ-ଅପଦୃଶ୍ୟ ଭିତରେ ପାର୍ଥକ ଅସ୍ପଷ୍ଟ ହୋଇ ବସ୍ତୁର ମୌଳିକ ନିର୍ଦ୍ଧାରିତ ମୂଲ୍ୟ କ୍ରମେ ଏବଂ ବିଜ୍ଞାପନ ମାଧ୍ୟମରେ ନିର୍ଦ୍ଧାରିତ ମୂଲ୍ୟକ୍ରମେ ପାର୍ଥକ୍ୟ ହରାଇ ବସିଛି । ଆଧୁନିକ ଦୃଷ୍ଟିରେ ଯୌକ୍ତିକତା ପରିଚ୍ଛନ୍ନତା, ପୂର୍ଣ୍ଣତା ଇତ୍ୟାଦି ଥିଲା କଳାର ଉଦ୍ଦେଶ୍ୟ । କିନ୍ତୁ ବୈଜ୍ଞାନିକ ଓ ବୈଷୟିକ ଉତ୍କର୍ଷର ପୃଥିବୀରେ ବିଜ୍ଞାନ ଓ ପ୍ରଚାର ବହୁଳତା ଭିତରେ କୌଣସି ଘଟଣା ବା ପରିସ୍ଥିତିର ବିଶ୍ୱସନୀୟତା ପୂର୍ବ ନିର୍ଦ୍ଧାରିତ ନିୟମ ବା ମୂଲ୍ୟବୋଧ ଦ୍ୱାରା ସ୍ଥିରୀକୃତ ହେବା ସମ୍ଭବ ନୁହେଁ । ପ୍ରତ୍ୟେକ ଘଟଣା ବା ପରିସ୍ଥିତି ସାମ୍ପ୍ରତିକ ସାମାଜିକ ବ୍ୟବସ୍ଥାରେ ସାମୟିକ ଓ ଅନିଶ୍ଚିତ । ତେଣୁ ପୂର୍ବ ନିର୍ଦ୍ଧାରିତ କିମ୍ବା ସାମଗ୍ରିକ ମାନଦଣ୍ଡରେ ଏହାର ବିଚାର କରିବା ସମ୍ଭବପର ନୁହେଁ । ଉତ୍ତର ଆଧୁନିକ ସାହିତ୍ୟ ଆତ୍ମ ନିରୀକ୍ଷଣାତ୍ମକ, ଆତ୍ମ ବିଦ୍ରୂପାତ୍ମକ, ବାସ୍ତବ ବର୍ଣ୍ଣନା ସହ ମିଥ୍, ସପ୍ନ ବିଦ୍ରୂପାତ୍ମକ, ସପ୍ନ ପରୀକଥା, ଏନିମେସନ୍, ଅନ୍ୟଗ୍ରହର ଚିତ୍ର ଓ ଚରିତ୍ରର ସମାହାରକୁ ନେଇ ପରିକଳ୍ପିତ । ଏହା ବ୍ୟତୀତ ନାରୀ କୈନ୍ଦ୍ରିକ ଆନ୍ଦୋଳନ, ବର୍ଣ୍ଣବୈଷମ୍ୟ ଆନ୍ଦୋଳନ, ସମଲିଙ୍ଗୀ ଆନ୍ଦୋଳନ, ଶାନ୍ତି ଆନ୍ଦୋଳନ, ଜଗତୀକରଣ ବିରୋଧି ଆନ୍ଦୋଳନ ପରି ଅନେକ ଚିନ୍ତାଧାରାର ମିଶ୍ର କାକଳିକୁ ମଧ ଉତ୍ତର ଆଧୁନିକ କଳା କ୍ଷେତ୍ରରେ ଅନୁଧ୍ୟାନ କରାଯାଏ ।

ଉତ୍ତର ଆଧୁନିକତା; ଆଧୁନିକତାର ଏକ ପ୍ରସାରିତ ଅଂଶ ପୁଣି ଏହା ମଧ ଆଧୁନିକତାରୁ ଭିନ୍ନ ଏକ ଧାରା । ତେଣୁ ଏ ସମୟର ଉପନ୍ୟାସକୁ *historigraphical metafiction* ବୋଲି କୁହାଯାଇପାରେ । ଆତ୍ମସଚେତନାମୂଳକ, ଆତ୍ମସୂଚନାକୈନ୍ଦ୍ରିକ ଅନୁଭୂତି ଭିତରେ ଉପନ୍ୟାସ,

Digitized by srujanika@gmail.com

ଉପନ୍ୟାସକୁ ନେଇ ଉପନ୍ୟାସ ଏହି ଧାରାକୁ ଦେଇଛି ଏକ ଭିନ୍ନ ଦୃଷ୍ଟିଭଙ୍ଗୀ । ଉପନ୍ୟାସ ଖଣ୍ଡାଂଶର ସମ୍ମିଶ୍ରଣ Collage ବା Montage ଉପନ୍ୟାସରେ ବାରମ୍ବାର ପରିବର୍ତ୍ତନ ଘଟେ ଏବଂ ଏହି ପରିବର୍ତ୍ତନ ପାଠକଙ୍କୁ ଚେତାଇ ଦିଏ ଯେ ସେ ଉପନ୍ୟାସର ଏକ ପାଠକ ଏବଂ ଏକ ଭାଷାର ସୌଧକୁ ବିଭିନ୍ନ ରୂପ, ରଙ୍ଗ ମାଧ୍ୟମରେ ଉପଭୋଗ କରୁଛି ଏବଂ ସମୀକ୍ଷା ମଧ କରୁଛି । ଅତୀତରେ ଯାଜ୍ଞସେନୀ ପରି ଏକ ଉପନ୍ୟାସ ମିଥ୍‌କୁ ଆଧାର କରି ସମକାଳର ସତ୍ୟତାକୁ ସୂଚିତ କରିଥିଲା । ପରବର୍ତ୍ତୀ ସମୟରେ ଓଡ଼ିଆ ସାହିତ୍ୟରେ ସୃଷ୍ଟି ଲାଭ କଲା ମନୋଜ ଦାସଙ୍କ ପ୍ରାୟୋପନ୍ୟାସ 'ଅମୃତଫଳ' । ଏହି ଉପନ୍ୟାସରେ ଅତୀତ ଓ ବର୍ତ୍ତମାନ ସମତାଳରେ ଗତି କରି ମିଥ୍ ଓ ବାସ୍ତବତାକୁ ଗୋଟିଏ ବିନ୍ଦୁରେ ଅବସ୍ଥାପିତ କରିଥିଲା ।

ବିଶ୍ୱଚେତନାରେ ଉତ୍ତର ଆଧୁନିକତା ଥିଲା Academic criticism ବିରୁଦ୍ଧରେ ଏକ ଆନ୍ଦୋଳନ । ଏଲିଅଟ୍ ଏବଂ ତାଙ୍କର ଉତ୍ତରସୂରୀ କଳାକୁ ଏକ ବୌଦ୍ଧିକ ବିଳାସରେ ରୂପାନ୍ତରିତ କରିଥିଲେ ବୋଲି ପାଇଥିଲେ ଅନେକ ଭର୍ତ୍ସନା । ମାନବବାଦ, ବାସ୍ତବବାଦର ସ୍ଲୋଗାନ୍ ଭିତରେ ମୌଳିକ ପ୍ରକାଶର ଔଜ୍ଜ୍ୱଲ୍ୟ ହରାଇଥିବା କଳାକୁ ମୁକ୍ତ ଏବଂ ସ୍ୱାଭାବିକ କରିବା ନିମନ୍ତେ ଆରମ୍ଭ ହୋଇଥିଲା ଉଦ୍ୟମ । ନବୀନତମ ଦୃଷ୍ଟିଭଙ୍ଗୀରେ ରୂପଲାଭ କରିଥିଲା-

(କ) କଳାକୁ ବୌଦ୍ଧିକତାର ନାଗଫାଶକୁ ମୁକ୍ତ କରିବା ।
(ଖ) ରୂପତାତ୍ତ୍ୱିକ ଆଲୋଚନା ଭିତ୍ତିରେ ଅବରୁଦ୍ଧ ପାଠକଙ୍କୁ ମୁକ୍ତ ପାଠକ / ମୁଗ୍ଧ ପାଠକ ରୂପ ଦେବା ।
(ଗ) ବାସ୍ତବବାଦ/ମାନବବାଦ ପରିକଳ୍ପନାରୁ ମୁକ୍ତି ପ୍ରଦାନ କରିବା ।
(ଘ) ଅନୁକରଣ (mimetic) ପ୍ରତିଫଳନ (reflection) ପରି ଧାରାରୁ କଳାକୁ ମୁକ୍ତି ପ୍ରଦାନ କରିବା ।
(ଙ) ସମାଲୋଚକର ଗୁରୁତ୍ୱକୁ ହ୍ରାସ କରିବା ।
(ଚ) ଅନଐତିହାସିକରଣ / ଉତ୍ତର ଉପନିବେଶବାଦ ଦୃଷ୍ଟିଭଙ୍ଗୀକୁ ପ୍ରସାରିତ କରିବା ।
(ଛ) ମିଥ୍‌ର ନୂତନ ବ୍ୟାଖ୍ୟାନ ।
(ଜ) ମନସ୍ତାତ୍ତ୍ୱିକ ଅନୁଶୀଳନର ନୂଆଦିଗ ଉନ୍ମୋଚନ ।
(ଝ) ନବ୍ୟ ପରିସରରେ ମୁକ୍ତ ଅଭିବ୍ୟକ୍ତିକୁ ପ୍ରସାରିତ କରିବା ।

ସଂକ୍ଷେପରେ କହିଲେ ଆଧୁନିକତା ନାମରେ କଳାକୁ ଯେପରି ସଂଜ୍ଞାରେ ଆବଦ୍ଧ କରାଯାଇଥିଲା, କ୍ଲିଷ୍ଟ ପ୍ରତୀକାତ୍ମକ ରୂପ ପ୍ରଦାନ କରାଯାଇଥିଲା ବା ବୌଦ୍ଧିକ ଅବରୁଦ୍ଧ କରାଯାଇଥିଲା; ତାହାକୁ ମୁକ୍ତ ଓ ସ୍ୱଚ୍ଛ ରୂପ ପ୍ରଦାନ କରିବା ଥିଲା ନବ୍ୟ ଅନୁଶୀଳନର ମୁଖ୍ୟ ଆଧାର । "Cross the Border-close that gap Post modernism" ଆଲୋଚନା ମାଧ୍ୟମରେ Leslie Fieder ଆରମ୍ଭ କରିଥିଲେ ଏକ ସାରସ୍ୱତ ଆନ୍ଦୋଳନ । ଏହା କ୍ରମେ Ihab Hassan, Linda Huteheon, Niall Lucy, Jean-Francois-Lyotard, Jean Baurdrilldrd, Richard Rorty, Fraderic Jameson, ମାଧ୍ୟମରେ ବିଶ୍ୱଚେତନାକୁ ଆକର୍ଷିତ କରିଥିଲେ ।

ଏହି ଧାରାରେ ଉତ୍କଳୀୟ ଚେତନାକୁ ଅନୁଧ୍ୟାନ କଲେ ଗୋଷ୍ଠୀ ଜୀବନର ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ଅନୁଭବ କରିହୁଏ । ଭାରତୀୟ କଥା ପରମ୍ପରା ବହୁଳ ଭାବରେ ଥିଲା ଗୋଷ୍ଠୀବାସ୍ତବତାର ପ୍ରତିଫଳନ । ଭାରତୀୟ ଦର୍ଶନ ମଣିଷକୁ ବୁଝାଇଥିଲା ଜୀବନ; ଜନ୍ମମୃତ୍ୟୁର ପରିଧି ଭିତରେ ସୀମାବଦ୍ଧ ନୁହେଁ । ମୃତ୍ୟୁ ନବ ଜୀବନର ଆଦ୍ୟସକାଳ । ଫଳତଃ ଏଠାରେ ଏକ ବୃତ୍ତାକାର ଅନୁଭୂତିର କ୍ଷେତ୍ରକୁ ହିଁ ଅନୁଭବ କରିହୁଏ । କଥାଟିଏ ଆରମ୍ଭ ହୁଏ- ମୋ କଥାଟି ସରିଲା/ ଫୁଲଗଛଟି ମରିଲା - କଥା ସରେ ନାହିଁ । କଥକ ପୁଣି ଆରମ୍ଭ କରେ - ହଇରେ ଫୁଲଗଛ ତୁ କାହିଁକି ମଲୁ ? ଅଲିଖିତ ଭାବରେ ହଜାର ହଜାର ବର୍ଷ ଗଢ଼ି ଆସେ ପରମ୍ପରା ଏବଂ ନୂଆନୂଆ ସର୍ଜନାରେ କଥକ ମାନେ ଶବର ଦେବତା ନୀଳମାଧବ, ଦାରୁବ୍ରହ୍ମର ରୂପ ନେଇ ପତିତ ପାବନ ଜଗନ୍ନାଥରେ

Digitized by srujanika@gmail.com

ରୂପାନ୍ତରିତ ହୁଅନ୍ତି । ନିତ୍ୟ ସରଞ୍ଜନାରେ ବ୍ୟସ୍ତ ରହେ ମାନବ । ଦୃଶ୍ୟ ସହ ଅଦୃଶ୍ୟ, ଅଳୀକ ସହ ଶାଶ୍ୱତ ସଂଯୋଜିତ ହୁଅନ୍ତି । ବେଦ, ଉପନିଷଦ, ବ୍ରାହ୍ମଣ, ଓଷା ବ୍ରତଠାରୁ ରାମାୟଣ, ମହାଭାରତ ଦେଇ ବୃହତ୍ କଥା ଜୀବନ ସନ୍ଧାନର ବ୍ୟାଖ୍ୟା ବାଢେ । କଥା, କବିତା, କାବ୍ୟ, ନାଟକ ବା ଉପନ୍ୟାସ ସବୁ ରୂପଚର୍ଯ୍ୟାର ଅନ୍ତରାଳରେ ଯୁଗଚେତନାକୁ ଆଧାର କରି ସଂସ୍କୃତିକ ଧାରାଟିଏ ଗଢ଼ିଚାଲେ । ମଙ୍ଗରାଜ ପରି ଆର୍କିଟାଇପଟିଏ, ଶିକାରୀ ଭୂମିକାରେ ଅବତୀର୍ଣ୍ଣ ହେବା ବେଳେ, ତ୍ୟାଗୀ ବରକୁ ପରବର୍ତ୍ତୀ ସମୟରେ ରବି, ଛବି, ନିଧିଦାସ, ନରହିରୋ, ଅହଲ୍ୟା, ଗୁଲାମ ଦାସ, ଅମରନାଥ ରୂପଧାରଣ କରନ୍ତି । ଏହି ଧାରାରେ ଚିତ୍ରୋପନ୍ୟାସ, ପ୍ରାୟୋପନ୍ୟାସ ଓ ମୁକ୍ତୋପନ୍ୟାସ ଗଢ଼ିଉଠେ ।

ଓଡ଼ିଆ ସାହିତ୍ୟର ନବୀନତମ କଥାକଳ୍ପନାର ଧାରାରେ ଗଢ଼ିଉଠେ **ସାୟୋନାରା, ପୁନର୍ନବା, ଶ୍ଳୋକଛନ୍ଦ** ଏବଂ ସେହି ଧାରାରେ **ଗଙ୍ଗାବତରଣ** ପରି ଚିତ୍ରୋପନ୍ୟାସ । ଆପଣାର ସର୍ଜନା ଅନୁଭୂତି ସମ୍ପର୍କରେ ଦିନନାଥ କୁହନ୍ତି- 'ଭାବଭୂମି ସୃଜନଧର୍ମୀ ଓ ଅନୁଭବ ସର୍ବସ୍ୱ । ଏଣୁ ଅନୁଭବ ଯେତେ ବ୍ୟାପକ, ଲାକ୍ଷଣିକ ଓ ତୀବ୍ର, ଚିତ୍ର ବା ଉପନ୍ୟାସ ସେତେ ସଫଳ ଓ ଅନନ୍ୟ ।' ଅନୁଭବକୁ କଳ୍ପନାରେ ପରିଣତ କରି ତାକୁ ପୁଣି ପ୍ରକାଶ ମାଧମରେ ବାସ୍ତବର ପାଖାପାଖି କରେଇବା ପ୍ରତ୍ୟେକ ଚିତ୍ରଶିଳ୍ପୀ ଓ ଲେଖକର କାର୍ଯ୍ୟ । ସତ ଅନୁଭବ ସାହିତ୍ୟ ନୁହେଁ, ତାହା ଏକ ନିର୍ଦ୍ଦିଷ୍ଟ କାରିଗରୀ ଦେଇ ପ୍ରକାଶ ଅପେକ୍ଷା କରେ । ଯଦିଓ ଚିତ୍ର ଓ ଉପନ୍ୟାସର ବାହ୍ୟ ସ୍ୱରୂପ ଭିନ୍ନ ଭିନ୍ନ ତଥାପି ଉତ୍ସ ଓ ସୃଜନ ପ୍ରକ୍ରିୟା ଏକାଭଳି ।'

**ଓଡ଼ିଶା କଥାଜଗତରେ ଦିନନାଥଙ୍କ ଆବିର୍ଭାବ ଆକସ୍ମିକ । ତୂଳୀ ଓ ରଙ୍ଗରେ ଜୀବନ ଓ ଜଗତକୁ ବୁଝିବାକୁ ଚେଷ୍ଟା କରି ପରିଣତ ବୟସରେ ସେ ଆରମ୍ଭ କରିଛନ୍ତି, ଶବ୍ଦ ସହ ଖେଳ । ତାଙ୍କ ଦୃଷ୍ଟିରେ – ପ୍ରତ୍ୟେକ ରୂପର ନିଜ ଭାଷା ଅଛି । ଏହି ରୂପ କେବଳ ଇନ୍ଦ୍ରିୟାନୁଭୂତି ପାଇଁ ସୃଷ୍ଟି ନୁହେଁ । ରୂପ ଭାଷାର ମାଧମ ଦେଇ ଭୂମାଙ୍କ ନିକଟରେ ପହଞ୍ଚିବାର ପ୍ରକ୍ରିୟା ହେଲା ରୂପ ସଂଦର୍ଶନ ବା ରୂପାନୁଭୂତି ।** ରୂପ ଦେଉଛି ବାକ୍ । ଏହା କଥିତ ଓ ଲିଖିତ ଭାଷା ସହିତ ସମାନ । ଏହି ମାଧମ ବା ସ୍ୱରୂପ ସାଧାରଣ ଲିପିଠାରୁ ଅଲଗା ଦେଖାଗଲେ ମଧ ରୂପ ମାଧମରେ ଶିବ ସତ୍ୟ ସୁନ୍ଦରରେ ପହଞ୍ଚିହୁଏ । ରୂପ ସନ୍ଧାନୀ ସ୍ରଷ୍ଟାର ଏକ ବିପୁଳ କାନଭାସ୍‌ରେ ଜୀବନକୁ ଅନୁଧ୍ୟାନ କରିବାର ଉଦ୍ୟମ କରିଛନ୍ତି । **ସାୟୋନାରା** ଉପନ୍ୟାସରେ ଭୌଗୋଳିକ ଓ ସଂସ୍କୃତିକ ବୈଚିତ୍ର୍ୟ ଭିତରେ କ୍ୟୋତୋ ସହର ଓ **ଦିଗପହଣ୍ଡି**କୁ ଗୋଟିଏ ବିନ୍ଦୁରେ ଅବସ୍ଥାପିତ କରି ସ୍ରଷ୍ଟା ନୂତନ ଧାରାଟିଏ ଆରମ୍ଭ କରିଛନ୍ତି । **ସାୟୋନାରା** ଉପନ୍ୟାସ ଭାବ ଜଗତରେ ଓଡ଼ିଶା ଓ ଜାପାନ ମଧ୍ୟରେ ସଂସ୍କୃତିକ ଓ ଧାର୍ମିକ ସଂପର୍କର ସୂତ୍ରଟିଏ ଅନୁସନ୍ଧାନ କରିବାକୁ ଯାଇ ପହଞ୍ଚିଛି ଶୂନ୍ୟବାଦରେ, ଯେଉଁଠି ଦେହ, ଓ ମନ ନିସ୍ପୃହ ଇନ୍ଦ୍ରିୟ ଧର୍ମର ମହତ୍ତ୍ୱ ଉପଲବ୍ଧି କରିବା ସହ ଦେହୋତ୍ତର କାମନାର ସିଦ୍ଧି ଖୋଜିଛି । ଜୀବନରୁ ଆହୃତ ଅନୁଭୂତିର ପୁଞ୍ଜି ଉପରେ ଜୀବନୋତ୍ତର ଆକାଙ୍କ୍ଷାକୁ ବୃହତ୍ତର ସାର୍ଥ ବୋଲି ମନେ କରିଛି । ସେଇଠି ବ୍ୟକ୍ତି ନାହିଁ, ବ୍ୟକ୍ତିତ୍ୱର ପ୍ରସାରଣ ପ୍ରକୃତି ଭିତରେ ସଞ୍ଚରି ଯାଇଛି ଏବଂ ପ୍ରକୃତି ମାଛମାନଙ୍କ ମୁହଁରେ ପ୍ରଶ୍ନ କରିଛି ଜନ୍ମ-ମୃତ୍ୟୁର ବନ୍ଧନରୁ ମୁକୁଳିବାର ବାଟ କ'ଣ ? ପାପ ପୁଣ୍ୟର ସଂଜ୍ଞା କ'ଣ ? ବୁଦ୍ଧ କିଏ ? (ଜାପାନ ମାଛର ଦେଶ, ସେ ମାଛ ସୁନାର) ପ୍ରଶ୍ନ କରୁଛି ପୁଣି କେତକୀକୁ ? ସାୟୋନାରାର ପରୀକ୍ଷା ଅଧିକ ବ୍ୟାପକ ରୂପ ଧାରଣ କରିଛି ପରବର୍ତ୍ତୀ ଉପନ୍ୟାସମାନଙ୍କରେ । ଏହି ଧାରାରେ ସ୍ରଷ୍ଟାଙ୍କ ଦ୍ୱିତୀୟ ଉପନ୍ୟାସ **ପୁନର୍ନବା** ଏକ ଆର୍କିଟାଇପ୍‌ର କ୍ଷେତ୍ର କହିଲେ ଅତ୍ୟୁକ୍ତି ହେବନାହିଁ । କାହାଣୀ ଭିତରେ- 'ନିତ୍ୟାନନ୍ଦ ଓ ଗୌରୀ ଦୁଇଟି ଅର୍ପିତ ଅଭିବ୍ୟକ୍ତି । ଗୌରୀ ତ ପୂର୍ବରୁ ଦେବାର୍ପିତା । ନିତ୍ୟାନନ୍ଦ ସ୍ୱୟଂସଂପୂର୍ଣ୍ଣ । ଆନନ୍ଦର ନିତ୍ୟ ବଳୟ ଭିତରେ ଏକ ବିମୁଗ୍ଧ ଆତ୍ମା ମାତ୍ର । ନୀଳାମ୍ବର ସତେ ଯେପରି ପରଂବ୍ରହ୍ମଙ୍କ ଏକ ସସୀମ ସାକ୍ଷର । ମାଟିକୁ କେବଳ ପ୍ରାଣବନ୍ତ କରିନାହାନ୍ତି, ତାଙ୍କର ସ୍ପର୍ଶରେ ମାନବ ମଧ ରୂପାନ୍ତରିତ ମାଧବରେ । ସ୍ରଷ୍ଟା ପାଠୀ ଉତ୍କଳୀୟ କଳା ପରମ୍ପରାର ସୁଯୋଗ୍ୟ ବ୍ୟାଖ୍ୟାକାର । କେବଳ ଭିନ୍ନ ରେଖା ଓ ରଙ୍ଗରୁ ଭାଷା ଓ ଧ୍ୱନିର ପ୍ରସଙ୍ଗରେ । ରେଖା ଓ ରଙ୍ଗରୁ କେବଳ ଭାବ ଏଠାରେ ଭିନ୍ନ ଇଲାକାରେ କାୟା ବିସ୍ତାର କରିଛି । ମାଞ୍ଜେଲିଠାରେ ରକ୍ତମାଂସର ଦେହ ନେଇ ବିଜେ

Digitized by srujanika@gmail.com

ହୋଇଛନ୍ତି ସ୍ୱୟଂ ଲୀଳାମୟ । ଅବ୍ୟକ୍ତ ଏଠାରେ ବ୍ୟକ୍ତ ହୋଇଛି । ଅରୂପ ସଂଚରି ଯାଇଛି ରୂପର ସ୍ଥୂଳ ଶରୀର ମଧ୍ୟରେ । ମଠର ଉପବନରେ ଗୌରୀ ଓ ନିତ୍ୟାନନ୍ଦ ନୁହନ୍ତି - ରାଧା କୃଷ୍ଣ ହିଁ ଯୁଗଳ ରୂପ ନେଇ ପ୍ରକାଶ ଲାଭ କରିଛନ୍ତି । ଏହା ରୂପର ରୂପାନ୍ତରଣ ନୁହେଁ ବରଂ ଅପରିବର୍ତ୍ତିତ ଗୋଷ୍ଠୀ କଳ୍ପନାର ଅଭିନବ ପ୍ରକାଶ । ଚେତନାର ନବନ୍ୟାସରେ 'ପୁନର୍ନବା' ସ୍ରଷ୍ଟା ପ୍ରାଣର ଏକ ଅବ୍ୟକ୍ତ ଅବଚେତନର ପରିବ୍ୟାପ୍ତ ବକ୍ତବ୍ୟ ।"

ପରବର୍ତ୍ତୀ ତୃତୀୟ ଉପନ୍ୟାସ ଭାବରେ ଶ୍ଳୋକଛନ୍ଦର କ୍ୟାନଭାସ୍ ପାଠକକୁ ଅପୂର୍ବ ଅନୁଭୂତି ପ୍ରଦାନ କରିଥାଏ । ଏହି ଧାରାର ଶ୍ଳୋକଛନ୍ଦ ସଂପର୍କରେ ମତବ୍ୟକ୍ତ କରି କୁହାଯାଇଛି- 'ତେଣୁ ଚିତ୍ରଶିଳ୍ପ, କବିତା ଓ ଗଦ୍ୟ ଭାଷାର ବିଚିତ୍ର ସମାହାରରେ **ଶ୍ଳୋକଛନ୍ଦ** ଉପନ୍ୟାସଟି ଓଡ଼ିଆ ସାହିତ୍ୟର ଇତିହାସରେ ଏକ ସତନ୍ତ୍ର ସ୍ଥାନ ଦାବି କରେ । ଏକ ପ୍ରକାର ଚିତ୍ରିତ ଉପନ୍ୟାସ ବା (Illuminating novel) ଭାବେ ଏହାକୁ ଗ୍ରହଣ କରାଯାଇପାରେ ।'

**ଗଙ୍ଗାବତରଣ** ଏହି ଧାରାର ଏକ ଦାର୍ଶନିକ ଉପଲବ୍ଧି । ଏହାର ଭାବଭୂମି ପୁରାଣ, ଇତିହାସ ଓ ଲୋକବିଶ୍ୱାସର ଊର୍ଦ୍ଧ୍ୱରେ ସନାତନ ଦୃଷ୍ଟିଭଙ୍ଗୀକୁ ଚିତ୍ରାୟିତ କରିଛି । ତେଣୁ ତ ଅମୃତ ସଂଳାପ ପର୍ଯ୍ୟାୟରେ ସ୍ରଷ୍ଟା ପ୍ରସଙ୍ଗ କ୍ରମେ ପ୍ରକାଶ କରିଛନ୍ତି - 'ଅବତରଣ ଓ ଉତ୍ତରଣର ଅଗମ୍ୟ ଲୀଳା ଭିତରେ ହିଁ ସୃଷ୍ଟିର ପରିସ୍ଫୁଟନ ଘଟେ, ରୂପର ପ୍ରକାଶ ହୁଏ । ଦେହ ଭିତରେ ଅବତରଣ ଓ ଉତ୍ତରଣ ଅହର୍ନିଶ ଘଟୁଥାଏ । ଦେହ ବାହାରେ ଦୃଶ୍ୟମାନ ଜଗତରେ ମଧ୍ୟ ଆଉ ଏକ ସମାନ୍ତରାଳ ପ୍ରକ୍ରିୟା ସଂଘଟିତ ହେଉଥାଏ । ପୁଣି ଏ ଉଭୟ ପ୍ରକ୍ରିୟା ବ୍ୟତିରେକ ଅଦୃଶ୍ୟରେ, ଶୂନ୍ୟରେ ଅମୂର୍ତ୍ତର ଅବତରଣ ଓ ଉତ୍ତରଣର ଅନ୍ୟ ଏକ ଅଲୌକିକ ପ୍ରସ୍ଥ ସଂସାରକୁ ଧାରଣ କରିଥାଏ, ଆଲୋକିତ କରିଦେଉଥାଏ । ଦେହ, ଜଗତ ଓ ଜଗତୋତ୍ତର ଜଗତରେ ଅବତରଣ ଓ ଉତ୍ତରଣର ଲୀଳା ଚିରନ୍ତନ । ଏହା ନିଗୂଢ଼ ଅଦୃଶ୍ୟ ଓ ଅପ୍ରକାଶ୍ୟ ।'

ପ୍ରସ୍ଥ ପ୍ରସ୍ଥ ହୋଇ ସାତୋଟି ପ୍ରସ୍ଥର ସମାହାରରେ ଗଙ୍ଗାବତରଣ ପରିକଳ୍ପିତ । ପ୍ରତ୍ୟେକ ପ୍ରସ୍ଥ ଏକ ସତନ୍ତ ପରିଚିତିର ଅପେକ୍ଷା ରଖେ । ଭିନ୍ନ ଅନୁଭୂତିକୁ ଅବତରଣ କରେ । କିନ୍ତୁ ଗୋଟିଏ ଅଭିବ୍ୟକ୍ତି ଏଗୁଡ଼ିକୁ ଯେମିତି ଏକ ସମୂହ ଏକକରେ ପରିଣତ କରେ । ବୁଦ୍ଧଙ୍କଠାରୁ ଏଲିସ୍ ବୋନର, ବିଧବା ତିଳ, ରୂପଜୀବୀ ଚାନ୍ଦିନୀ କାଳର ପ୍ରବାହକୁ ପ୍ରତିହତ କରି ରୂପାନନ୍ଦଙ୍କ ସମ୍ମୁଖରେ ଅବତରଣ କରିଛନ୍ତି । ରୂପାନନ୍ଦଙ୍କ ଆଖି ଆଗରେ ସମକାଳ ତଥା ମହାକାଳର ଦୃଶ୍ୟ ଯେମିତି ଅଭିନୀତ ହେଉଛି । ଖୋଲି ଯାଉଛି କାଶୀ ଓ ବନାରସର ଗୂଢ଼ ରହସ୍ୟ ଗୋଟିଏ ବିନ୍ଦୁରେ ଆରମ୍ଭ ହୋଇ କ୍ରମେ ବିସ୍ତାରିତ ହେଉଛି କାହାଣୀ । ସଂଘଟିତ ହେଉଛି ଏକ ଲୀଳା ସେ ଲୀଳା ଜନ୍ମ ଓ ମୃତ୍ୟୁର ପୁଣି ତାହା ଏକ ଆଧ୍ୟାତ୍ମିକ ଉପଲବ୍ଧିର । ବନାରସକୁ ତୀର୍ଥ କରି ଯାଇଥିବା ତିଳ ଭଣ୍ଡ ତାନ୍ତ୍ରିକର କାମନାର ଶିକାର ହୋଇଛି । ଗଙ୍ଗାଘାଟରେ ଗଣ ଧର୍ଷଣରେ ଘଟିଛି ତାର ମୃତ୍ୟୁ । ଠିକ୍ ସେପରି ରୂପଜୀବୀ ଚାନ୍ଦିନୀ ଦେହ ଭୋଗର ପଙ୍କରେ ଜୀବନର ଅସାରତାକୁ ଅନୁଭବ କରି ସାଜିଛି ବୈଷ୍ଣବୀ । ସମକାଳର ଏକ ଅନୁଭୂତି ଭିତରୁ କଥା ବିସ୍ତାରିତ ହୋଇଛି; ବୁଦ୍ଧଦେବ, ତୁଳସୀ ତଥା କବୀରଙ୍କ ପର୍ଯ୍ୟନ୍ତ । ବିନ୍ଦୁରେ ବିସ୍ତୃତି । ଏଣୁ ଦୃଶ୍ୟମାନ ଜଗତର ଅଦୃଶ୍ୟ ଅଭିବ୍ୟକ୍ତି ଶିଳ୍ପୀକୁ ନେଇ ଯାଇଛି ପ୍ରକାଶର ଶୀର୍ଷବିନ୍ଦୁ ପର୍ଯ୍ୟନ୍ତ । ସ୍ୱୀକାର କରିଛନ୍ତି ଆତ୍ମଜ୍ଞାନୀ ମଣିଷ ନହେଲେ ବନାରସର ବ୍ରହ୍ମସତ୍ତାକୁ ଚିହ୍ନିବା ସହଜ ନୁହେଁ । ତେଣୁ ସବୁ ଧର୍ମ ସବୁ ବର୍ଗର ଜନତା ମୁକ୍ତି ନିମନ୍ତେ ଆଦରି ନେଇଛନ୍ତି ବନାରସ । ଆରମ୍ଭ ହୋଇଛି ସତ୍ୟର ଅନ୍ୱେଷା । ଆତ୍ମସ୍ୱରୂପର ଉଦ୍‌ଘାଟନ । ବ୍ରହ୍ମସ୍ୱରୂପ ବିଭୂତି । ସମ୍ଭବତଃ ଏହି ଅଭିଳାଷ ଜୀବନ ସତ୍ତାର ଉତ୍ତରଣ ଓ ଅବତରଣ ପ୍ରକ୍ରିୟା ପ୍ରତିଫଳିତ କରେ । ତେଣୁ କୁହାଯାଏ- 'ଆତ୍ମଜ୍ଞାନରେ ଅବତରଣ କରିପାରିଲେ ଅବତରଣର ଅମୂର୍ତ୍ତ ରୂପକୁ ସ୍ଥୂଳ ଦେହର ଅବଧି ମଧ୍ୟରେ ଯଦି ଉତ୍ତରଣର ଜିଜ୍ଞାସା ସୃଷ୍ଟି ହୁଏ, ତେବେ ଉତ୍ତରଣ ସେତିକି ନିଗୂଢ଼ ଓ ଗୋପ୍ୟ ମନେହୁଏ । ଏଣୁ ଆତ୍ମାର ଅବତରଣ ହେଉଛି ଅସ୍ମିତାର ଏକ ଅପୂର୍ବ ଉପଲବ୍ଧି । ଏ ଉପଲବ୍ଧି ପ୍ରାଣରେ ସଂଚାର ନ ହେଲେ ଅବତରଣର ପ୍ରକ୍ରିୟା ଅଦୃଶ୍ୟ ଓ ଅପ୍ରକାଶ୍ୟ ହିଁ ମନେ ହୋଇଥାଏ । ମାତ୍ର ଉପଲବ୍ଧ ହେଲେ ବ୍ରହ୍ମବେଣୁରୁ ଉଦ୍‌ବେଳିତ ଗଙ୍ଗା ମର୍ତ୍ତ୍ୟଗାମିନୀ ହେଲା ଭଳି, ଆତ୍ମପୁରୁଷ ଅମୃତ ମଣୋହିର ସର୍ଗବାସକୁ ପ୍ରତ୍ୟକ୍ଷ କରେ । ସେଇଠି ଜୀବସତ୍ତାର ଚେତନା ଜଗତ ଏକ

Digitized by srujanika@gmail.com

ଅପୂର୍ବ ରାଗରଙ୍ଗରେ ଉଦ୍‌ଭାସିତ ହୋଇଉଠେ ଓ ଚିତ୍ରିତ ହୁଏ ସୁବର୍ଣ୍ଣ ପ୍ରାଣଭେଦୀ ଶବ୍ଦରେ, ଛନ୍ଦରେ, ଗନ୍ଧରେ ଓ ଧ୍ୱନିରେ ।'

**ଗଙ୍ଗାବତରଣ** ମହାକଥାର ନାୟକ ରୂପାନନ୍ଦ । ସେ ଏକ ଚରିତ୍ର-ପ୍ରତୀକ ନା ଏକ ସତ୍ତା । ଦିନନାଥଙ୍କୁ ଚିହ୍ନିବା ଭିତରେ ବେଳେ ବେଳେ - 'ରୂପାନନ୍ଦଙ୍କ ଭିତରେ ଦିନନାଥଙ୍କ ଉପସ୍ଥିତି ଭାରି ସହଜରେ ଧରାପଡ଼ିଯାଏ । ଦିଗପହଣ୍ଡିରୁ ବନାରସ ଆସିବା ଓ ଆଲିସ୍ ଡାଇରୀ ପଢୁପଢୁ ଗଂଜାମର ସଉରା ପଲ୍ଲୀର ଅନୁଭୂତି ସ୍ମରଣ, ରୂପାନନ୍ଦଙ୍କ ଶିକ୍ଷାଜୀବନ ଓ ଦିଗପହଣ୍ଡିର ରୂପଭାଷା ଓ କାବ୍ୟ ଭାଷାଗତ ଚିନ୍ତାଧାରା -ଏ ସବୁ ଭିତରେ ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ ଦିନନାଥ ହିଁ ଧରାପଡ଼ିଯାଆନ୍ତି । ତେବେ ଏ ଧରାପଡ଼ିବା କଥା ସୌନ୍ଦର୍ଯ୍ୟକୁ କୌଣସି ମତେ ହୀନ କରାଉନାହିଁ ବରଂ ସ୍ଥଳବିଶେଷରେ କୌତୂହଳ ଉଦ୍ରେକ କରାଇ ପାରୁଛି ।'

**ନବୀନତମ ଉପନ୍ୟାସର ପ୍ରବାହରେ ରୂପ ପରି ଗ୍ରହଣ କରିଥିବା ମେଟାଫିକ୍‌ସନ୍ ବସ୍ତୁତଃ ସେହି କଥା ହିଁ କହେ । ଆତ୍ମବିବରଣୀ, ଆତ୍ମକଥନ, ସ୍ମୃତିଚୟନ, ଭିତରେ ଠିଆ ହୁଏ କଳାକ୍ଷେତ୍ର । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଗୋଟିଏ ବିନ୍ଦୁରେ ଅବସ୍ଥାପିତ ହୁଅନ୍ତି । ବାସ୍ତବବାଦୀ କଳା ଯାହା ଅପ୍ରାସଙ୍ଗିକ ମନେହୁଏ, ତାହାକୁ ଆଦରି ନିଅନ୍ତି ସ୍ରଷ୍ଟା ।** ତେଣୁ ରୂପାନନ୍ଦ ଗଙ୍ଗାକୂଳରେ ଆଶ୍ରମକୁ ଅନୁପ୍ରବେଶ କଲାବେଳେ ଅନୁଭବ କରିଛନ୍ତି- 'ରୂପାନନ୍ଦ ଖୁବ୍ ସନ୍ତର୍ପଣରେ ପାହାଚ ପରେ ପାହାଚ ଚଢ଼ି ଆଗେଇଲେ । ତାଙ୍କୁ ଲାଗିଲା ସେ ଇଟାରେ ତିଆରି ପାହାଡ଼ ଅତିକ୍ରମ କରୁନାହାନ୍ତି, ବରଂ ଜୀବନର ଅତିବାହିତ ହୋଇ ଯାଇଥିବା ସମୟର ବହୁ ପାହାଚ- ବାଲ୍ୟ, କୈଶୋର, ଯୌବନରୁ ପ୍ରୌଢ଼ ଯାଏଁ ସବୁ ଅବସ୍ଥାର ପାହାଚକୁ ଆଉଥରେ ପାରି ହୋଇଯାଉଛନ୍ତି । ସବୁର ଶେଷପାହାଚ ହିଁ ତ ଗଙ୍ଗା ।'

ଚେତନାରେ ସଞ୍ଚରି ଥିବା ଶଙ୍କରାଚାର୍ଯ୍ୟ ଓ ଚଣ୍ଡାଳର କଥୋପକଥନକୁ କ୍ରମେ ଏଲିସ୍‌ଙ୍କ ସ୍ମୃତି ଦେଇ ଘଟଣାର ଧାରା ଲମ୍ବିଯାଇଛି ପୁଞ୍ଜିକୟାଁର ସାଧନା ପୀଠ ପର୍ଯ୍ୟନ୍ତ । ରୂପାନନ୍ଦଙ୍କ ଆଶ୍ରମର ଛାତରୁ ଦେଖାଦେଇଛି ନୀଳଚକ୍ର । ଦୁଇଟି କଳା ଡୋଳା ଆକାଶ ଭୂମି ସର୍ବତ୍ର ପରିବ୍ୟାପ୍ତ ହୋଇ ରୂପାନନ୍ଦଙ୍କୁ କରିଛି ଅନ୍ଧ । ଆପଣାର ଗଞ୍ଜାମୀ ପରିଚୟ ଖୋଜୁ ଖୋଜୁ ପ୍ରେମ ଓ ବିରହର ସ୍ମୃତି ଭିତରେ ଧରାକୋଟର ପ୍ରେମ କାହାଣୀ ରୂପାନନ୍ଦଙ୍କୁ ପୁଲକିତ କରିଛି । ତା ପରବର୍ତ୍ତୀ ଅପ୍ରତ୍ୟାଶିତ ଆହ୍ୱାନରେ ଅଗଣାର ମଧ୍ୟବିନ୍ଦୁରେ ଥିବା ପଦ୍ମମଣ୍ଡଳ ପଥରକୁ ଉଠାଇ ରୂପାନନ୍ଦ ସୁଡ଼ଙ୍ଗ ଭିତରେ ଅନୁପ୍ରବେଶ କରିଛନ୍ତି । ସୁଡ଼ଙ୍ଗର ଆଦ୍ୟବିନ୍ଦୁରେ କାଏରୋ ସହରର ଗାଇଡ୍ ରାନିଆଠାରୁ ରାମନାରାୟଣ ପାଢ଼ୀ ଦେଇ ଝରକା ଫାଙ୍କରେ ଦୃଶ୍ୟ ହୋଇଛି ଗଙ୍ଗା । ମନେ ହୋଇଛି 'ବୋଧହୁଏ ଝରକା ଦେଇ ଗୁପ୍ତ ଗଙ୍ଗା ଦୃଶ୍ୟ ହେଉଛନ୍ତି ।' ତିନୋଟି କାନ୍ଥରେ ତିନୋଟି ପ୍ରକାଣ୍ଡ ତୈଳଚିତ୍ର । ଗୋଟିଏ 'ସୃଷ୍ଟି' ଅନ୍ୟଟି 'ସ୍ଥିତି' ଏବଂ ତୃତୀୟଟି 'ପ୍ରଳୟ' । ସୃଷ୍ଟି ଚିତ୍ରରେ ପ୍ରକୃତରେ ଅବତାରଣା, ସ୍ଥିତିରେ ବିଶ୍ୱରୂପ ଓ ପ୍ରଳୟରେ 'କାଳୀ ।' ରୂପାନନ୍ଦ ଏଠାରେ ହିଁ ପାଇଛନ୍ତି ଚିତ୍ରିତ କାଠର ଫରୁଆ । ପରସ୍ତ ପରସ୍ତ ପାଟମଠା ଭିତରୁ ହାତକୁ ଆସିଛି ସୁନା ଫରୁଆ । ସୁନା ଫରୁଆ ଭିତରେ ରୂପାନନ୍ଦ ପାଇଛନ୍ତି, ଗୋଟିଏ ପ୍ରଚକ୍ଷୁ । ଅନୁଭବରେ ଆସିଛି, ସବୁ ବାହ୍ୟରୂପ ସ୍ଥୂଳ ହେବା ସତ୍ତ୍ୱେ ବୃକ୍ଷରେ ଚନ୍ଦନ ଭଳି ପ୍ରାଣସତ୍ତା ବିରାଜମାନ କରିଥାଏ । ସ୍ଥୂଳ ନଥିଲେ ସୂକ୍ଷ୍ମ ଅବତରିବ ବା କେଉଁଠି ? ବାହ୍ୟ ଦୃଷ୍ଟି ଭିତରେ ହିଁ ଅନ୍ତର୍ଦୃଷ୍ଟି ସଞ୍ଚରଣ କରେ । ମାୟାର ଅବତରଣ ଖୋଲିଲେ ପ୍ରାଣଶକ୍ତିର ଉପଲବ୍ଧି ହୁଏ । ଲୋକଗଳ୍ପରେ ବୁଢ଼ୀ ଅସୁରୁଣୀର ଜୀବନ ନାଟିକା ଭଳି କିମ୍ବା ଲୋକ ବିଶ୍ୱାସର ଦିବ୍ୟ ଅଞ୍ଜନ ପରି ଏଲିସ୍ ରୂପାନନ୍ଦଙ୍କ ପାଇଁ ଯେଉଁ ଉପହାରଟି ଦେଇଛନ୍ତି । ତାହା 'ଜୀବନ ଯୁଦ୍ଧରେ ତମେ ଯେତେବେଳେ କ୍ଳାନ୍ତ ବିଷର୍ଣ୍ଣ ହୋଇପଡ଼ିବ, ଯେତେବେଳେ ବସ୍ତୁର ସ୍ଥୂଳତା ତମକୁ ମୋହଗ୍ରସ୍ତ କରିଦେବ, ଯେତେବେଳେ ଦେଖିବ ଆଗକୁ ବଢ଼ିବାର ସମସ୍ତ ରାସ୍ତାବନ୍ଦ, ସେତେବେଳେ ଏ ପ୍ରଚକ୍ଷୁ ଧାରଣ କରିବ ।'

ଗଦ୍ୟ କାବ୍ୟର ଦ୍ୱିତୀୟ ପ୍ରସ୍ଥ ବନାରସର ପ୍ରଥମ ସକାଳକୁ ନେଇ ପରିକଳ୍ପିତ । ଶାନ୍ତ ସକାଳରେ ନିତ୍ୟାନନ୍ଦ ରୂପାନନ୍ଦଙ୍କ ସହ ଡଙ୍ଗାରେ ଗଙ୍ଗା ସନ୍ଦର୍ଶନ କରିଛନ୍ତି । ନାଉରିଆ ପାଟିରୁ

Digitized by srujanika@gmail.com

ଶୁଣିଛନ୍ତି, ଐତିହ୍ୟର ଏକ ଅବିସ୍ମରଣୀୟ ଦିଗ । ଭଗୀରଥଙ୍କ ତପସ୍ୟା ବଳରେ ଗଙ୍ଗା ଅବତରିଛନ୍ତି ମର୍ତ୍ତ୍ୟରେ । ଗଙ୍ଗାଙ୍କ ପ୍ଲାବନରେ ସତେ ଯେମିତି ଏ ପୃଥିବୀ ପ୍ରଳୟ ଅନୁଭବ କରିଛି । କିନ୍ତୁ ଶିବଙ୍କ ଜଟା ଭିତରେ ଶାନ୍ତ ହୋଇଛନ୍ତି ଗଙ୍ଗା । ଜ୍ଞାନୀମାନଙ୍କର ଆସ୍ଥାନ ବନାରସ, ଅତୀତରେ ଚଣ୍ଡାଳ ମାଧ୍ୟମରେ ଶଙ୍କରଙ୍କୁ ଦେଇଥିଲା ବ୍ରହ୍ମଜ୍ଞାନ । ଠିକ୍ ସେପରି ରୂପାନନ୍ଦ ନାଉରୀଆ ଭରତ ପାଖରୁ ଶୁଣିଛନ୍ତି ହରିଶ୍ଚନ୍ଦ୍ରଙ୍କ ମହିମା । ପ୍ରସଙ୍ଗ କ୍ରମେ ମଧ୍ୟ ଆସିଛନ୍ତି କବୀର ଓ ଗଙ୍ଗାଧର ମେହେର । ରୂପାନନ୍ଦ ଭରତଙ୍କ ଠାରୁ ଶୁଣିଛନ୍ତି ଦଶାଶ୍ୱମେଧ ଘାଟର ମହିମା, ରାଜା ରିପୁଞ୍ଜୟଙ୍କ ରାଜ୍ୟ ଶାସନ, କାଶୀରେ ରାଜଧାନୀ ପ୍ରତିଷ୍ଠା ଏବଂ ସେହି ଧାରାରେ ତାଙ୍କୁ ପଥଚ୍ୟୁତ କରିବାର ଉଦ୍ୟମ ଭିତରେ ବିଭିନ୍ନ ଦେବତାଙ୍କ ଆଗମନରେ ଏ ମାଟିର ମହିମା - ଜୀବନ୍ତ ରୂପଲାଭ କରିଛି । ମନେ ହୋଇଛି ଏ ବଡ଼ ସଂସାର ଭିତରେ ବନାରସ ହେଉଛି ଏକ ଛୋଟ ସଂସାର । ଆଶ୍ରମ ପ୍ରତ୍ୟାବର୍ତ୍ତନ ପରେ ଏଲିସ୍‌ଙ୍କ ଡାଇରୀ ରୂପାନନ୍ଦଙ୍କୁ ଦେଇଛି ମୁଗ୍ଧ ଅନୁଭୂତି । ସମାପ୍ତ ହୋଇଛି ଦ୍ୱିତୀୟ ପ୍ରସ୍ଥ ।

ଗଙ୍ଗାବତରଣର ତୃତୀୟ ଓ ଚତୁର୍ଥ ପ୍ରସ୍ଥ ସମୟର ସ୍ରୋତରେ ଦୁର୍ବିସହ ଯାତନାର ସମ୍ମୁଖୀନ ହୋଇଥିବା ତିଳ ନାନି ଓ ଚାନ୍ଦନୀ ପରି ଦୁଇଟି ନାରୀ ଚରିତ୍ରକୁ ନେଇ ପରିକଳ୍ପିତ । ଦୁଇ ଦୁଇ ଥର ବିବାହ ପରେ ବିପର୍ଯ୍ୟୟ ଭାଗ୍ୟର ସମ୍ମୁଖୀନ ହୋଇଥିବା ତିଳ ନାନୀ ଆପଣାର ପୋଷ୍ୟ ପୁତ୍ରଠାରୁ ଉପେକ୍ଷିତ ହୋଇ କାଶୀ ଦର୍ଶନରେ ଗାଁ ଲୋକଙ୍କ ସହ ବାହାରିଛି । ତଥାପି ଯେପରି ବିପର୍ଯ୍ୟୟ ତାର ପିଛା ଛାଡ଼ି ନାହିଁ । ଭଣ୍ଡ ତପସୀର ଲାଳସାର ଶିକାର ହେବା ପରେ, ଗଣ ଧର୍ଷଣର ଶିକାର ହୋଇ ପିଣ୍ଡରୁ ଛାଡ଼ିଛି ପ୍ରାଣ । ଲୋକେ ଜଳ ସମାଧି ଦେବା ପାଇଁ ଶବଟିକୁ ଉଠାଇଲା ବେଳେ, ଶବ ନଥିଲା, ଥିଲା କୁଢ଼ଟିଏ ଫୁଲ । ଠିକ୍ ସେପରି ଉତ୍ତର ପ୍ରଦେଶର ମାଧବଗଞ୍ଜ ଏବଂ ସେଠାରେ ଜାହାନାରାର କନ୍ୟା ଚାନ୍ଦନୀ ସମୟର ପ୍ରବାହରେ ବାଈରେ ରୂପାନ୍ତରିତ ହୋଇ, ଶେଷରେ ସନ୍ୟାସିନୀ ବ୍ରତକୁ ଆଦରି ନେଇଛି । ଅନ୍ୟତମ କନ୍ୟା କୁସୁମ କପାଳ କୁଣ୍ଡଳୀ ମଠରେ ଯୋଗୀନୀତନ୍ତ୍ରରେ ଦୀକ୍ଷିତ ହୋଇ, ମାତା କୁସୁମଧାତ୍ରୀ ନାମରେ ପରିଚୟ ଲାଭ କରିଛି । 'ଗଙ୍ଗାବତରଣ' ସମକାଳରୁ ମହାକାଳ ଦିଗକୁ ଏକ ଯାତ୍ରାର ଇତିବୃତ୍ତ । ଗଙ୍ଗାକୁ ଆଧାର କରି ପୁରାଣର ଘଟନାବଳୀଠାରୁ ସମକାଳର ଆବର୍ତ୍ତ ଭିତରେ ରୂପାନନ୍ଦ ଜୀବନର ଅନନ୍ତ ପ୍ରଶ୍ନବାଚୀକୁ ଯେମିତି ଓଲଟାଇ ଚାଲିଛନ୍ତି ।

ଗଙ୍ଗାବତରଣ ଉପନ୍ୟାସ ପଞ୍ଚମପ୍ରସ୍ଥ ମହାକାଳ ବକ୍ଷରୁ ଏକ ଉତ୍ତରଣର ଚିତ୍ରକୁ ମାନବ ଆଗରେ ଉପସ୍ଥାପିତ କରିଛି । ଏଲିସ୍ ଦେଇଥିବା ପ୍ରଚକ୍ଷୁକୁ ଧାରଣ କରି ରୂପାନନ୍ଦ ଅପୂର୍ବ ଅନୁଭୂତି ଲାଭ କରିଛନ୍ତି । 'ପ୍ରଚକ୍ଷୁର ଅପାର ମହିମାରୁ ତାଙ୍କର ଦୃଷ୍ଟିଶକ୍ତି ସମୟରେ ପରସ୍ତ ପରସ୍ତ ଅଳନ୍ଧୁ ଫେଡ଼ିଦେଇ ଇତିହାସରୁ ପ୍ରାକ୍ ଇତିହାସର ବଳୟ ଭିତରୁ ନିକ୍ଷେପି ଗଲା, ଭୂତ, ବର୍ତ୍ତମାନ ଓ ଭବିଷ୍ୟତ ଅଦ୍ଭୁତ ଭାବରେ ଫେଣ୍ଟାଫେଣ୍ଟି ହୋଇଗଲା ଚିତ୍ରଶିଳ୍ପୀର ପେଲେଟ୍‌ରେ ରଙ୍ଗ ଭଳି । x x x x ଲାଗିଲା କେଉଁ ପୁରୁଣା କାଳରୁ ସମୟ ସେଇଠି ହିଁ ସ୍ଥିର ହୋଇ ରହି ଯାଇଥିଲା ଏ ଭିତରେ । କେତେ ଯେ ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ବିତିଯାଇଛି । ତଥାପି ଆକାଶ ଓ ପୃଥିବୀ ସେହି ପୁରୁଣା ଦିନର, ସେମିତି ସେଠି କିଛି ନୂଆ ନାହିଁ କି ପୁରୁଣା ନାହିଁ, ଯାହା ଦୃଶ୍ୟମାନ ତାହା ସମୟର ବାହ୍ୟ ପ୍ରକରଣ । ସମୟକୁ ସ୍ଥୂଳଭାବେ ଚିହ୍ନଟ କରିବାକୁ ଆଜିକାଲି ପଥରଦିନ ହେଉଛି ଅବଲମ୍ବନ ମାତ୍ର । କଳା ଅନନ୍ତ, ପୃଥିବୀ ଆଦିମ, ନା ତା' ରୂପ ଅଳୀକ । କିନ୍ତୁ ଏମାନଙ୍କୁ ନେଇ ହିଁ ସାଧାରଣ ଜୀବନ । ଦେବୋତ୍ତର, କାଳୋତ୍ତର ଜୀବନର ସଂପର୍କ ଅନ୍ୟ ଏକ ବାସ୍ତବତା ସହିତ ସଂପର୍କିତ । ସେହି ବାସ୍ତବ ଅବାସ୍ତବର ଦୃଶ୍ୟରୂପ, ଶୂନ୍ୟର ସରୂପ ।'

ରୂପାନନ୍ଦ ଇତିହାସର ଏକ ଚରିତ୍ରରେ ରୂପାନ୍ତରିତ ହୋଇ, ଅତୀତକୁ ପ୍ରାଣବନ୍ତ କରିଛନ୍ତି । ଅନନ୍ୟ ମୁହୂର୍ତ୍ତଗୁଡ଼ିକ ଆଖି ଆଗରେ ଉଦ୍‌ଭାସିତ ହୋଇଉଠିଛି । ବୌଦ୍ଧ ଧର୍ମର ଅଭ୍ୟୁ[illegible]ନର ଗାଥା ଏବଂ ତଥାଗତଙ୍କ ବିଭିନ୍ନ ଦିବ୍ୟକାର୍ଯ୍ୟାବଳୀ ଆଖି ଆଗରେ ଭାସି ଆସିଛି । ରୂପାନନ୍ଦ ଅନୁଭବ କରିଛନ୍ତି- 'ପ୍ରତ୍ୟେକ ମଣିଷ ଭିତରେ ବୁଦ୍ଧ ହେବାର, ବୁଦ୍ଧତ୍ୱ ଲାଭ କରିବାର ଏବଂ ଚରମସତ୍ୟର ରହସ୍ୟ ଉଦ୍‌ଘାଟନ କରିବାର ଅଫୁରନ୍ତ ଶକ୍ତି ଲୁକ୍କାୟିତ । ସେହି ଶକ୍ତିର ସଦୁପଯୋଗରେ ସିଏ

Digitized by srujanika@gmail.com

ଜ୍ଞାନାଲୋକର ସନ୍ଧାନ ପାଏ, ଏହି ଜ୍ଞାନାଲୋକ ପ୍ରାପ୍ତି ହିଁ ବୁଦ୍ଧତ୍ୱ ପ୍ରାପ୍ତି ।' ଆପଣାର ଜୀବନ ଭିତରେ ଏକ ଦ୍ୱୈତ ସତ୍ତାରେ ପରିଣତ ହୋଇଯାଇଛନ୍ତି ରୂପାନନ୍ଦ । ଗୋଟିଏ ରୂପରେ-ରୂପସତ୍ତାର ଅନ୍ୱେଷଣରେ ତଲ୍ଲୀନ ବ୍ରହ୍ମକୁ ଅନୁଭବ କଲାବେଳେ ଅନ୍ୟ ଗୋଟିଏ ସତ୍ତା ଅଶ୍ରୁ ଓ ଆନନ୍ଦର ସାଧାରଣ ମାନବର ଅନୁଭୂତିକୁ ନେଇ କାଳକୁ ଅତିକ୍ରମ କରିଯିବା ଉଦ୍ୟମ କରିଛନ୍ତି ।

ଉପନ୍ୟାସର **ଷଷ୍ଠ ପ୍ରସ୍ଥ** ରୂପାନନ୍ଦଙ୍କ ଅନ୍ୱେଷାର ଅନ୍ୟ ଗୋଟିଏ ଅନୁଭୂତିକୁ ନେଇ ସବଳିତ । ଏଠାରେ 'ରୂପାନନ୍ଦ ରୂପରେ ସଦା ଆଉଟୁ ପାଉଟୁ ହେଉଥିବା ମଣିଷ ସେ ବିଶ୍ୱର ବହୁ ଦେଶ, ଜନପଦ, ସହର, ନଗର ଭ୍ରମି ଭ୍ରମି ଶେଷରେ ଏବେ ଗଙ୍ଗାକୂଳରେ, ଗଙ୍ଗାଙ୍କ କୋଳରେ । ଏଇଠି ମଧ ସେଇ ଗୋଟିଏ ଅନୁସନ୍ଧିତ୍ସା, ଅନୁସନ୍ଧିତ୍ସା ରୂପର, ରୂପ ଭିତରେ ଭାବ ଭାଷା ସଂପୃକ୍ତି ଓ ସଂଯମତାର ଅନ୍ୱେଷଣ ରୂପରେ ହଜିଯିବାର ଦୁର୍ବାର ନିଶା ରୂପାନନ୍ଦଙ୍କୁ ଘାରେ । ଏକାନ୍ତରେ ଧ୍ୟାନସ୍ଥ ଅବସ୍ଥାରେ ରୂପମାନେ ତାଙ୍କୁ ଦୃଶ୍ୟ ହୁଅନ୍ତି, ଗଗନ ପବନ ଆକାଶ, ପ୍ରକାଶ ସବୁ ରୂପମୟ ହୋଇଯାଏ । ଅନୁଭବିତ ରୂପ, ସ୍ୱପ୍ନଦଗ୍ଧ ରୂପ, ଚିହ୍ନା ଅଚିହ୍ନା ରୂପ । ଏମିତି ହେଇ ସେମାନଙ୍କର ନିଜର ଆଉ ଗୋଟିଏ ସଂସାର । ରୂପରେ ସଂସାର । ଅରୂପର ବିସ୍ତାର ।'[୨୦] ରୂପାନନ୍ଦ ଏ ସଙ୍କ ରହଣୀ ଭିତରେ ଅନୁଭବ କରିଛନ୍ତି ଏ ସ୍ଥାନର ମହିମା । ବନାରସ ମନେ ହୋଇଛି ପୃଥିବୀ ଭିତରେ ଯେମିତି ଅନ୍ୟ ଏକ ପୃଥିବୀ । ଦେହ ଭିତରେ ଆତ୍ମା । ଏହି ସହର ହେଉଛି ଚେତନାର ସ୍ୱରୂପ ଏବଂ ସ୍ୱରୂପ ଭିତରେ ବନାରସ ଆଧ୍ୟାତ୍ମିକ ସତ୍ତା । ଉଭୟ ଶ୍ୱେତ ଓ କୃଷ୍ଣ ବର୍ଣ୍ଣର ମଧୁର ସମାହାର ଏହି ବନାରସ । କୃଷ୍ଣ ବର୍ଣ୍ଣ ଏଠି ଶୁଭ୍ରତା ଓ ପବିତ୍ରତାର ପରିପୂରକ । ଶ୍ୱେତବର୍ଣ୍ଣର ଉଜ୍ଜ୍ୱଳ ବିଭା ଭିତରେ କୃଷ୍ଣବର୍ଣ୍ଣ ନିଷ୍ପ୍ରଭ ହୋଇଯାଏ । ବନାରସକୁ ଅନୁଭବ କରିପାରିଲେ ପ୍ରାଣତନ୍ତ୍ରୀ ପଲ୍ଲବୀତ ହୁଏ । ଏକ ପୂର୍ଣ୍ଣତା ଜୀବନକୁ ଚରମ ଉପଲବ୍ଧ ଦେଇଥାଏ । ରୂପାନନ୍ଦଙ୍କ ଲତିକାଙ୍କ ସହ ଆଲୋଚନା ପ୍ରସଙ୍ଗରେ ଶ୍ରୀଯନ୍ତ୍ରର ଶୀର୍ଷବିନ୍ଦୁରେ ଅବ୍ୟକ୍ତର ଅବସ୍ଥିତି ଏବଂ ତାରି ବିସ୍ତାରରେ ବିଶ୍ୱର ପରିକଳ୍ପନା । ରୂପାନନ୍ଦଙ୍କର ମନେ ହୋଇଛି- 'ମାଟି ତୃଷାର୍ତ୍ତ ହେଲେ ଜଳଧାରା ତୃପ୍ତିର ଆନନ୍ଦ ଭରିଦିଏ ଓ ଗଙ୍ଗା କୈଳାସରୁ ଅବତରି ବହିଯାଏ ସାଗରର ଯୋନିଦ୍ୱାର ଦେଇ ଗର୍ଭାଶୟରେ ଲୀନହୋଇଯାଏ ।' **ଗୋଟିଏ ବିନ୍ଦୁରେ ଠିଆ ହୋଇ ଭୂ'ରୁ ଭୂମା, ରୂପରୁ ଅରୂପ, ଦେହରୁ ବିଦେହ ପର୍ଯ୍ୟନ୍ତ ସେ ସଞ୍ଚରି ଯାଇଛନ୍ତି । ସବୁ ଶୂନ୍ୟ ମନେହୋଇଛି ପୂର୍ଣ୍ଣ । ସବୁ ସ୍ୱପ୍ନ ରୂପାନ୍ତରିତ ହୋଇଛି ବାସ୍ତବରେ । ସବୁ ସମୟ ଗୋଟିଏ ବିନ୍ଦୁରେ ସମାହିତ ହୋଇଛି । ଅବତରଣର ଅଲୌକିକ ମହିମାରେ ସବୁକିଛି ଚିତ୍ରବତ୍ ପ୍ରକଟିତ ହୋଇଯାଇଛି ।**

ଗଙ୍ଗାବତରଣ ସପ୍ତମ ପ୍ରସ୍ଥ ରୂପାନନ୍ଦଙ୍କୁ ଦେଇଛି ଅପୂର୍ବ ଉପଲବ୍ଧି । ତାଙ୍କ ଦୃଷ୍ଟିରେ 'ବନାରସ ଅନୁଭବର ରଙ୍ଗଭୂମି ହେଲା ଗଙ୍ଗାଘାଟ ଓ ଗଙ୍ଗାନଦୀ । ଅସୀଠାରୁ ଆରମ୍ଭ ହେଇ ପଞ୍ଚଗଙ୍ଗା ପର୍ଯ୍ୟନ୍ତ । ତା'ର ଭିତରେ ଅସୀ ଆଶ୍ରମ, ତୁଳସୀ ଘାଟ, କବୀର ବୈଠକୀ, ଦଶାଶ୍ୱମେଧ, ଶ୍ରୀବିଦ୍ୟା ସଂସ୍ଥାନ, ବିନ୍ଦୁ ମାଧବ ମଠ ଏବଂ ବରୁଣା ଓ ଗଙ୍ଗାଙ୍କ ସଂଗମ ସ୍ଥଳରେ ଋଷିପାଟଣା ଓ ମୃଗନାଭିବନ । ଏସବୁ ଦେଶ ଓ ଦେଶକୁ ସୁହେଇଲା ଭଳି ବିଭିନ୍ନ ପାତ୍ର । ଦେଶ, କାଳ ପାତ୍ରରେ ଅପୂର୍ବ ସମନ୍ୱୟ ଏବଂ ନାଟକ ଏମାନଙ୍କୁ ନେଇ । ଖାଲି ନାଟକ ତ ନୁହେଁ, ମହାଭାରତ ଭଳି ଗଙ୍ଗାକୂଳରେ ସତତ ଅଭିନୀତ ହେଉଥିବା ମହାନାଟକ । ରୂପାନନ୍ଦ କେବଳ ଦୃଶ୍ୟଟିଏ ମାତ୍ର ଅନୁଭବ କରିଛନ୍ତି । ନିଜେ ଚରିତ୍ର ହୋଇ ଅଭିନୟ କରିଛନ୍ତି । ଏହି ମହାନାଟକରେ ଅଭିନେତା, ଅଭିନେତ୍ରୀ, ଦର୍ଶକଙ୍କ ସଂପୃକ୍ତି ଅଭିନୟ ମାତ୍ର ।' **ଭାରତୀୟ ଦର୍ଶନରେ ଜନ୍ମମୃତ୍ୟୁର ଲୀଳା ଅତି ବିଚିତ୍ର । ଏଠାରେ ମୃତ୍ୟୁ ଜୀବନର ଶେଷ ବିନ୍ଦୁ ନୁହେଁ । ଏହା ସତେ ଯେପରି ନୂତନ ଜନ୍ମ ପାଇଁ ଏକ ପ୍ରବେଶ ତୋରଣ । ବିଶ୍ୱାସରେ ଆତଯାତ ହୁଏ ବିଶ୍ୱ । ତେଣୁ ଜୀବନକୁ ଖୋଜିଲା ବେଳେ ଜୟଦେବ, ସାଲବେଗ, ଜଗନ୍ନାଥ ଦାସ, ବଳରାମ ଦାସଙ୍କଠାରୁ ଆରମ୍ଭ କରି ନେପାଳୀ ବାବାଙ୍କ ପର୍ଯ୍ୟନ୍ତ ପ୍ରଲମ୍ବିତ ହୁଏ ଏହାର ଧାରା** । ଏକଦା କୈବର୍ତ୍ତ ପୁରୁଷୋତ୍ତମ ଶ୍ରୀରାମଙ୍କର ପଦଧୌତ କଲାଭଳି, ଭରତ ଡଙ୍ଗାର ଆହୁଲା ମାରିବା ଭିତରେ କବୀରଙ୍କ କାହାଣୀକୁ ରୂପାନନ୍ଦଙ୍କ ଆଗରେ ଉପସ୍ଥାପିତ କରେ । ବାଈଜୀ ଚାନ୍ଦିନୀ, ଦୂରାରୋଗ୍ୟ ବ୍ୟାଧିରୁ ମୁକ୍ତିପାଏ । ଗଙ୍ଗାଙ୍କ ଅପାର ମହିମା ବଳରେ ଚାନ୍ଦିନୀ ମାତା କ୍ରମେ ଲୋକବିଶ୍ୱାସରେ ମୀରାବାଈଙ୍କ ସମକକ୍ଷ ହେବାର ସୌଭାଗ୍ୟ ଲାଭ କରେ ।

Digitized by srujanika@gmail.com

**ଯଥାର୍ଥରେ ତେଣୁ ଆଲୋଚନା ପ୍ରସଙ୍ଗରେ କୁହାଯାଇଛି- 'ଦିନନାଥଙ୍କ ଉପନ୍ୟାସ ମାନଙ୍କରେ କାନ୍‌ଭାସ୍ ଖୁବ୍ ବ୍ୟାପକ ଓ ଭାରତର ଭୌଗୋଳିକ ଓ ସାଂସ୍କୃତିକ ଚିତ୍ର ସାୟୋନାରା ହେଇଥିବା ବେଳେ, ଇଂଲଣ୍ଡ ଓ ଭାରତର କଳା ଓ ଶିଳ୍ପଜୀବନ ସ୍ୱୋଚ୍ଛନ୍ଦ ଧାରଣ କରିଛି । ସେମିତି ବି ଗଙ୍ଗାବତରଣ । ଓଡ଼ିଆ ଉପନ୍ୟାସରେ କଥାବସ୍ତୁଗତ ଯେଉଁ ଭୌଗୋଳିକ ସୀମା ତାକୁ ଏ ଉପନ୍ୟାସମାନ ବିସ୍ତାରିତ କରିଛନ୍ତି ବହୁଦୂର।** ଗଙ୍ଗାବତରଣର 'ବନାରସ' ଏହି ସୀମାବିସ୍ତୃତିର ଏକ ନମୁନା । ଯେଉଁ ଭୂମି ତାର ଭୌଗୋଳିକ ସାଂସ୍କୃତିକ ସମଗ୍ରତା ସହ ଉପନ୍ୟାସରେ ଆବିର୍ଭୂତ । କାଳ ଏଠି ସୁପ୍ରସାରିତ । ଚରିତ୍ରମାନେ ଅଟନ୍ତି ମାନବ, ମହାମାନବ ଓ ଦେବତା । କଥା ଉପାଦାନ ହେଇଛି ପୁରାଣ, ଇତିହାସ, ଲୋକଧାରଣା ଓ ସମସ୍ୟାମୟ । ମହାକାବ୍ୟିକ ବ୍ୟାପ୍ତିରେ ଏ ଉପନ୍ୟାସ କେବଳ ସତନ୍ତ୍ର ଆୟତନ ଧାରଣ କରିପାରିନାହିଁ, ଭାବ ଗଭୀରତାରେ ମଧ୍ୟ ଯେ ନିଜକୁ କରିଛି ରହସ୍ୟମୟ । ତତ୍ତ୍ୱ, ଦର୍ଶନ, ଜିଜ୍ଞାସା-ସେ ଧର୍ମର ହେଇପାରେ, ଦେହର ହେଇପାରେ କି ହେଇପାରେ ଶିଳ୍ପର, ଏହାରି ମଧ୍ୟରେ ଗର୍ଭିତ ହେଇଛି ସବୁକିଛି ।'

ଉତ୍କଳୀୟ କଥା ସର୍ଜନା ଅନୁଧ୍ୟାନରେ ନାୟକକୁ ଖୋଜୁ ଖୋଜୁ କେତେ ବେଳେ ସାଂସ୍କୃତିକ ଧାରାରେ ତ କେତେବେଳେ ଦାର୍ଶନିକ, ସାମାଜିକ, ରାଜନୈତିକ ଓ ଇତିହାସର ଧାରାରେ ବହୁ ମଣିଷ ଆପଣାକୁ ବଖାଣିଛନ୍ତି । ଅନୁଭୂତିର ଗୋଟିଏ ଗୋଟିଏ ଦିଗ ଓ ବାଗ ଆଖିରେ ଫୁଟି ଉଠିଛି । କିନ୍ତୁ ଗଙ୍ଗାବତରଣ କେଉଁ ଅନୁଭୂତିର ପ୍ରଖ୍ୟାପକ । **ଏଠି ଠିଆ ହୋଇଥିବା ରୂପାନନ୍ଦ କାଳବକ୍ଷରେ ରହି କାଳହୀନ ବକ୍ତବ୍ୟର ପ୍ରଖ୍ୟାପକ । କେତେବେଳେ କାହା ଦେହରେ, କେତେବେଳେ କେଉଁ କାଳରେ ତା'ର ଗତି । ଏ ମଣିଷକୁ ଅନୁଧ୍ୟାନ କଲାବେଳେ ଅପହଞ୍ଚ ଇଲାକାରେ ଠିଆହେଲା ଭଳି ଲାଗେ, ପୁଣି ଲାଗେ ଏ ଜାଗା ତ ଅତି ପରିଚିତ ଖୁବ୍ ନିଜର । ମୁକ୍ତୋପନ୍ୟାସ ବୋଧ ହୁଏ ଏମିତି ଏକ କ୍ଷେତ୍ର ।** ଚିହ୍ନା ଅଚିହ୍ନା ଅନେକର ସମାହାର । ନିଜ କଥା ଓ ଜଗତର କଥା କ୍ଷେତ୍ର । ଦିନେ ଭାଗବତ ବୁଝାଇଥିଲା 'ମନର ମୂଳେ ଏ ଜଗତ' । ତେଣୁ ସବୁ ନାୟକର ପ୍ରକାଶ କ୍ଷେତ୍ରରେ ସ୍ରଷ୍ଟାଟିଏ ହିଁ ଆପଣାକୁ ଭିନ୍ନ ଭିନ୍ନ ରୂପରେ ରଚେ । ତା'କୁ ବୁଝିଲା ବେଳକୁ ପାଠକଟିଏ ମଧ୍ୟ ଆପଣା ବାଗରେ ସଞ୍ଚରିଯାଏ । ମିଶ୍ର କାକଳୀର ଅପୂର୍ବ ରାଗରେ ରଞ୍ଜିତ ହୁଏ ପ୍ରକାଶର କ୍ଷେତ୍ର ।

ମାନବ ଅଭିବ୍ୟକ୍ତିର ନାୟକୀୟ ପରିପ୍ରକାଶକୁ କୌଣସି ଧରାବନ୍ଧା ପ୍ରଣାଳୀରେ ବାନ୍ଧି ରଖିବା ସମ୍ଭବ ନୁହେଁ । ଏ ସବୁ ମହାନାୟକର ମହାଭିନୟ । ସମାଜ, ସଭ୍ୟତା, ସମୟର ବାଡ଼ରେ ଏହାକୁ ବାନ୍ଧିହୁଏ ନାହିଁ । ଅନନ୍ତ ଜିଜ୍ଞାସା, ଅନ୍ତହୀନ, ଅନ୍ୱେଷାର ଏ ପ୍ରକାଶ କ୍ଷେତ୍ର । ମାନବ ଜନ୍ମ ପରବର୍ତ୍ତୀ ପ୍ରଥମ ସକାଳରୁ ଏ ସଂଧାନ ଏଯାବତ୍ ସଂପ୍ରସାରିତ । ତେଣୁ କେତକୀ, ଅହଲ୍ୟା, ଗୌରୀ କିମ୍ବା ପଦ୍ମଲୋଚନ, ନିତ୍ୟାନନ୍ଦ, ଗୋଲାମ ଦାସ, ଗୌତମ, ଇନ୍ଦ୍ର, ନରହିତୋ ଆମେ ସଭିଏଁ । ଅକ୍ଷୟ ପର୍ଯ୍ୟାୟରୁ ଦୁର୍ବିସହ ପର୍ଯ୍ୟାୟ ଦେଇ ଏଠାରେ ମଣିଷ ଦୁର୍ବାର । ବୁଦ୍ଧ, ଅରବିନ୍ଦ, ବେଦ, ନାଟ୍ୟଶାସ୍ତ୍ର ସବୁ ଏକାକାର ଏ ପର୍ଯ୍ୟାୟରେ । ଆତ୍ମ ଅନ୍ୱେଷଣର କ୍ଷେତ୍ର ପରିବ୍ୟାପ୍ତ । ଆକାଶଠାରୁ ଧରିତ୍ରୀ - ଏ ଅନ୍ୱେଷଣ କ୍ଷେତ୍ରରେ ମାନବର ଆତ୍ମ ପରିଚିତି ଏଠାରେ ବେଶ୍ ଲକ୍ଷ୍ୟଣୀୟ ।

ତେଣୁ ପରବର୍ତ୍ତୀ ଶତାବ୍ଦୀର 'ଅନ୍ତରରୁ ଅନ୍ତରୀକ୍ଷ' ଯାତ୍ରା ପଥର ନାୟକ ନିମନ୍ତେ ଅପେକ୍ଷା ରହିଲା କେବଳ ।

Digitized by srujanika@gmail.com

**କଇଳାଶ ପଟ୍ଟନାୟକ**

## ବିଦାୟର ରଙ୍ଗଚିତ୍ର : ସାୟୋନାରା

ଜାପାନ ଓ ଭାରତର ସାଂସ୍କୃତିକ ସମାନତାର ପୃଷ୍ଠଭୂମିରେ ପରକଳ୍ପିତ **ସାୟୋନାରା,** ଦିନନାଥଙ୍କ ପ୍ରଥମ ଉପନ୍ୟାସ। ଦିନନାଥଙ୍କ ଶିଳ୍ପୀ-ବ୍ୟକ୍ତିତ୍ୱର ଅଭିଜ୍ଞତା ଓ ସାରସତ-ବ୍ୟକ୍ତିତ୍ୱର ପ୍ରତିଭା ସମାନଭାବେ ଏଥିରେ ଅଭିବ୍ୟକ୍ତ। ଚିତ୍ର-ଭାସ୍କର୍ଯ୍ୟର ଆଖିଝଲସା ବର୍ଣ୍ଣବିଭା ସହିତ ମଣିଷର ବିବର୍ଣ୍ଣ ଅସହାୟତାର ଏକ ଅଦ୍ଭୁତ ସମନ୍ୱୟରେ ଗଢ଼ା ଏଇ ଶବ୍ଦର କୋଲାଜ୍ ସାୟୋନାରା।

କେତକୀ ଜଣେ ଓଡ଼ିଆ ଝିଅ, ଜାପାନ ପ୍ରତି ତାର ଅଛି ତୀବ୍ର ଆକର୍ଷଣ। ସେଇ ଆବାଲ୍ୟପୋଷିତ ଆକର୍ଷଣରୁ ଜାପାନୀ ଛାତ୍ର ନରହିତୋ ସହିତ ଭାବ ହେବାରେ ତାର ବିଳମ୍ବ ହୋଇନଥିଲା। କେତକୀ ଜାପାନର ବସ୍ତୁ ସଂସ୍କୃତିକୁ ଭଲ ପାଉନଥିଲା, ଶ୍ରଦ୍ଧା କରୁଥିଲା ଜାପାନର ଭାବାତ୍ମକ ସଂସ୍କୃତିକୁ। କଳାର ସାଧନା, ବୌଦ୍ଧଧର୍ମର ପ୍ରତିଷ୍ଠା, ଜାପାନୀଙ୍କ ସହଜ ଆତ୍ମୀୟତା, ଚଳଣି ତାକୁ କରିଥିଲା ଗଭୀର ପ୍ରଭାବିତ। ନରହିତୋ ଚାହୁଁଥିଲା ଭିକ୍ଷୁ ହେବାକୁ। ଭାରତ ପରିକ୍ରମା କଲା କେତକୀ ସହିତ। ଦେହ ଉଭୟଙ୍କ ପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ ନ ଥିଲା, ଥିଲା ପାରସ୍ପରିକ ସାନ୍ନିଧ ଓ ସାଂସ୍କୃତିକ-ଉପଲବ୍ଧି। ସେଇ ଉପଲବ୍ଧିର ବିସ୍ତାରଣରେ ସାୟୋନାରା ଉନ୍ମୋଚନ କରିପାରିଛି ଏକ ନୂଆଦିଗନ୍ତ।

ଓଡ଼ିଆ ଉପନ୍ୟାସରେ କଥାବସ୍ତୁର ଭୌଗୋଳିକ ସ୍ଥିତିକୁ କଟକ ସହରରୁ ବିସ୍ତାରିତ କରିଥିଲେ ପ୍ରଥମେ ଦୟାନିଧି ମିଶ୍ର, ୧୯୧୫ରେ ଲିଖିତ 'ନୟନତାରା' ଉପନ୍ୟାସରେ। କଲିକତା, ଉପନ୍ୟାସରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି। ଦାର୍ଜିଲିଂ, ବର୍ମା ଆଦିକୁ ସେ ବିସ୍ତାରଣର ସୀମା ଛୁଆଇଁ ଚାଲନ୍ତି କୁନ୍ତଳା କୁମାରୀ, ୧୯୨୮ରେ ପ୍ରକାଶିତ 'ରଘୁ ଅରକ୍ଷିତ' ମାଧ୍ୟମରେ। ଆଉ ତା'ର ସତୁରୀ ବର୍ଷ ପରେ **ସାୟୋନାରା** ସେ ସୀମାକୁ ବିସ୍ତାରିତ କରିଛି ଜାପାନ, ଚୀନ ପର୍ଯ୍ୟନ୍ତ। ଭୌଗୋଳିକ ସ୍ଥିତିର ଚିତ୍ରଣ କେବଳ ନୁହେଁ, ପୃଷ୍ଠଭୂମିଗତ ସାମାଜିକ ଚଳଣି ଓ ସାଂସ୍କୃତିକ ଧାରାର ପରିଚୟ ସହିତ ଭାରତୀୟ ଜୀବନଧାରା ସହିତ ତାର ସମତା-ପ୍ରସଙ୍ଗ ବାରମ୍ବାର ଆସିଛି ସାୟୋନାରାରେ। ଏହା ପାଠକର ଉପଲବ୍ଧିକୁ ପୁଷ୍ଟ କରିବା ସହ ତା'ର ସାଂସ୍କୃତିକ ଦୃଷ୍ଟିରେ ଆଣିଚି ତୁଳନାର ସୁଯୋଗ।

ସାୟୋନାରା ଭାରତୀୟ ଚିତ୍ରକଳା, ଜାପାନୀ ଭାସ୍କର୍ଯ୍ୟର ନାନାପ୍ରସଙ୍ଗରେ ସ୍ଥୂଳଗର୍ଭ। ଶେଷାଂଶର ବହୁପୃଷ୍ଠା ଜାପାନରେ ଅନୁଷ୍ଠିତ ଏକ ଆନ୍ତର୍ଜାତିକ ଚିତ୍ରକଳା ପ୍ରଦର୍ଶନୀର ବର୍ଣ୍ଣନାରେ ମୁଖର। ଚିତ୍ର-ଭାସ୍କର୍ଯ୍ୟର ବିଶ୍ଳେଷଣ ମଧ୍ୟରେ ଲେଖକଙ୍କ ଚିତ୍ରକର-ବ୍ୟକ୍ତିତ୍ୱଟି ପରିପୁଷ୍ଟ ହୁଏ। ଜାପାନ ଫାଉଣ୍ଡେସନ୍‌ର ଫେଲୋଭାବେ ଯେଉଁ ଚିତ୍ରକର ଜାପାନରେ ରହିଚି ଦୀର୍ଘଦିନ, ସେତ ଅବଶ୍ୟ ଦେଖିବ ତା'ର ବୃତ୍ତିଗତ ଜଗତକୁ। ସେଇ ଜଗତ ତାର ସାହିତ୍ୟିକ ବ୍ୟକ୍ତିତ୍ୱରେ ଅବଶ୍ୟ ଖେଳାଇଥିବ ଚଞ୍ଚଳତା। **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ ଭିତରେ ନିରୋଳା ଓଡ଼ିଆମିର ଯେଉଁ ଚିତ୍ତବୃତ୍ତି ସେଥିରେ ସୃଷ୍ଟି ହେଇଥିବ ତୁଳନାର ଘୂର୍ଣ୍ଣି। ସେଇ ଘୂର୍ଣ୍ଣି, ସେଇ ଉପଲବ୍ଧି ସାୟୋନାରାର ପ୍ରତିଟି ପୃଷ୍ଠାରେ। ବୌଦ୍ଧ ଭିକ୍ଷୁଭିକ୍ଷୁଣୀଙ୍କ ଆଚାର, ସିଣ୍ଟୋମନ୍ଦିରରେ ମାନସିକ କରିବା ପଦ୍ଧତି, ଜାପାନୀମାନଙ୍କ ଚା' ପିଇବାର କଳା, ବିବିଧ ବ୍ୟଞ୍ଜନର ସ୍ୱାଦ, ଜୀବନ ଓ ମୃତ୍ୟୁଜନିତ ଦର୍ଶନ, ମାଉଣ୍ଟ୍ ଫୁଜିର ଦୃଶ୍ୟ, ଫୁଜିୟାମା ଉପତ୍ୟକାର ନିସର୍ଗ ଚିତ୍ର ସବୁଠି ଲେଖକଙ୍କ ନାନ୍ଦନିକ ଦୃଷ୍ଟି ନିରାକାରକୁ ଆକାର ଦେଇଚି, ଆକାରରେ ସୃଷ୍ଟିକରିଚି ବର୍ଣ୍ଣାଳୀ। ସେ ବର୍ଣ୍ଣାଳୀ ସମଗ୍ର ଉପନ୍ୟାସକୁ କରିଚି ଅଦ୍ଭୁତ ରଙ୍ଗୀନ।**

ଜାପାନୀ ଓ ଓଡ଼ିଶାର ନାନା କିମ୍ବଦନ୍ତୀ, ଲୋକସଂସ୍କାର, ବିଶ୍ୱାସ ଓ ଆଖ୍ୟାନ ସାୟୋନାରାରେ ସୃଷ୍ଟି କରିଛି ରାଶିରାଶି ଉପକାହାଣୀ। ସେଇ ଉପକାହାଣୀମାନ କେଉଁ ଏକ ବିଶ୍ୱାସକୁ ଦୃଷ୍ଟି କରିବାକୁ ମାନସିକ ଭାରସାମ୍ୟ ରକ୍ଷା କରିବାକୁ, ସୌନ୍ଦର୍ଯ୍ୟର ଚାକ୍ଷୁଷ, ବର୍ଣ୍ଣନାର ଅନୁସରଣ ବା ଘଟଣାର ତାତ୍ପର୍ଯ୍ୟ ଜଣାଇବାକୁ ପରିକଳ୍ପିତ। ଏହା ମୂଳ କଥାଧାରାକୁ ସମୃଦ୍ଧ କରିଛି ଓ **ଉପନ୍ୟାସରେ ଯଥାର୍ଥରେ ଏକ ମହାକାବ୍ୟିକ ବିସ୍ତୃତି** epic-dimension **ସୃଷ୍ଟି କରିଛି।**

କେତକୀ ଓ ନରହିତୋଙ୍କୁ ନେଇ ଉପନ୍ୟାସଟି ପରିକଳ୍ପିତ ହୋଇଥିଲେ ବି ପରିଣତିରେ ସାଂସ୍କୃତିକ ଧାରାର ପରିପ୍ରକାଶ ପାଇଁ ସେମାନେ କେବଳ ମାଧ୍ୟମ ହୋଇପଡ଼ିଛନ୍ତି। ସଂସ୍କୃତି ରୂପାୟନର ପ୍ରଖରତା ଉଭୟ ଚରିତ୍ରର ବ୍ୟକ୍ତିଗତ ଜୀବନ, ଭାବନା, ଦେହଜ ସମ୍ଭାବନା ଆଦି କ୍ଷେତ୍ରକୁ ସଂକୁଚିତ କରିଦେଇଛି।

ସାୟୋନାରା-ଏଇ ଜାପାନୀ ଶବ୍ଦର ଅର୍ଥ ବିଦାୟ। ଏ ବିଦାୟର ସଙ୍ଗୀତ କିନ୍ତୁ ଦିନନାଥଙ୍କ ଉପନ୍ୟାସକାର ହେବାର ଆବାହନୀ ସାଜିଛି। ଦିନନାଥ! ଔପନ୍ୟାସିକ ଦିନନାଥ, ସ୍ୱାଗତମ୍!!!

Digitized by srujanika@gmail.com

ସୂର୍ଯ୍ୟ ମିଶ୍ର

## ସାୟୋନାରା

ପ୍ରଥମ ପ୍ରଶ୍ନ   ଜନ୍ମ ମୃତ୍ୟୁର ବନ୍ଧନରୁ ମୁକୁଳିବାର ବାଟ କ'ଣ ? ଦ୍ୱିତୀୟ ପ୍ରଶ୍ନ: ପାପ ପୁଣ୍ୟର ସଂଜ୍ଞା କ'ଣ ? ତୃତୀୟ ପ୍ରଶ୍ନ: ବୁଦ୍ଧ କିଏ ?  'ଦେହରୁ ଦେହାତୀତ ହେବା ହିଁ ନିର୍ବାଣ । ++ପ୍ରେମରେ ତଲ୍ଲୀନ ହେବା ଓ ଧ୍ୟାନସ୍ଥ ହେବା ଅନୁଭୂତି ସମାନ । ପ୍ରେମରେ ବିଲୀନ ହୋଇଯାଇ ନିଜ ସତ୍ତା ହରେଇ ଦେବା ଓ ନିର୍ବାଣ ପ୍ରାପ୍ତି ହେବା ମଧ୍ୟ ପ୍ରାୟତଃ ସମାନ । ଦୈହିକ ମିଳନ ଏକାତ୍ମବୋଧର ପ୍ରଥମ ସୋପାନ । ଧ୍ୟାନ ଶୀର୍ଷସ୍ଥ ସୋପାନ ।' 'ଝାଳରେ ଜୁଡୁବୁଡୁ ହୋଇ/ ଗୋପୀଭଳି ତମେ ତମ ଗୁପତ ଅଙ୍ଗରେ/ଗୋଟିଏ ହାତ ଥୋଇ/ ସ୍ତନକୁ ଘୋଡ଼ାଇଥାନ୍ତ / ଆର ହାତଟିରେ/ ବଂଶୀ ହିଁ ଶୁଣିଥାନ୍ତ/ ଗଛ କୋରଡ଼ରୁ ++/ ଦୁର୍ବାର ବାସନା ନେଇ/ ତମେ ତମ ଓଠକୁ କାମୁଡ଼ିଥାନ୍ତ/ରୋଗୀମାନେ ଯେମିତି / କାମୁଡ଼ନ୍ତି ଗିନା....'

ତିନୋଟି ଉଦ୍ଧୃତାଂଶରୁ ପ୍ରଥମ ଓ ଦ୍ୱିତୀୟଟିକୁ ପଢ଼ି ଯେ କେହି ଭାବି ବସିବା ସହଜ ଯେ ଆଚାର୍ଯ୍ୟ ରଜନୀଶଙ୍କ ଏହା ବକ୍ତୃତାଂଶକି ? ହୀନଯାନ ବୌଦ୍ଧଙ୍କ ସହଜିଆ ତତ୍ତ୍ୱ କି ? ଏବଂ  ଶେଷ ଉଦ୍ଧୃତାଂଶ ପାଠକକୁ ଚୌମୁହାଣୀ ଉପରେ ଠିଆ କରାଇଦିଏ । ଚାରିଆଡ଼କୁ ବାଟ । ମାତ୍ର ଲକ୍ଷ୍ୟଚି କିଏ ତା' ଲକ୍ଷ୍ୟର ଦିଗ ପର୍ଯ୍ୟନ୍ତ ?

ଏହା ପ୍ରସିଦ୍ଧ ଚିତ୍ରଶିଳ୍ପୀ ଡକ୍ଟର ଦିନନାଥ ପାଠୀଙ୍କ ସଦ୍ୟ ପ୍ରକାଶିତ ଦେହାତୀତକୁ ଯିବାର ପ୍ରୟାସ ଉପନ୍ୟାସ **ସାୟୋନାରା**ର କିୟଦଂଶ । ଭାରତୀୟ ସାହିତ୍ୟ ଏହାର ଉଦ୍ଭବ କାଳରୁ ଧର୍ମ, ଦର୍ଶନ ଓ ସମାଜ ଆଧାରିତ । ଦର୍ଶନ ଓ ସମାଜକୁ ବାଦ ଦେଇ ଧର୍ମ ଠିଆ ହୋଇନାହିଁ । ସାହିତ୍ୟ ଏହି ତ୍ରିଭୁଜର ବାହକ ହୋଇ ଆସିଛି ସେହି ସମୟରୁ ଆଜି ପର୍ଯ୍ୟନ୍ତ । 'ସାୟୋନାରା' ପର୍ଯ୍ୟନ୍ତ ।

ପ୍ରାୟ ତିନି ଦଶକ ପାଖାପାଖି ଟୋକିଓ ସହର ଉପରେ ସୁଟିଙ୍ଗ୍ କରାଯାଇଥିବା ପ୍ରଥମ ଭାରତୀୟ ସିନେମା 'ଲଭ୍ ଇନ୍ ଟୋକିଓ'ରେ ଗୋଟିଏ ବଡ଼ ଲୋକପ୍ରିୟ ଗୀତ ଥିଲା 'ସାୟୋନାରା...... ସା....... ୟୋ.....ନା.....ରା' ଅର୍ଥାତ୍ ପୁଣି ଦେଖା ହେବ, ହେ ବନ୍ଧୁ ବିଦାୟ... ପୁଣି ଦେଖାଦେବ, ଥିଲା ତା'ର ଭାବ । **ସାୟୋନାରା** ଏକ ଜାପାନୀ ଶବ୍ଦ । ଦିନନାଥ ବାବୁଙ୍କ ଉପନ୍ୟାସ ମଧ୍ୟ ଧରି ରଖିଛି ଏଇ ମଧୁର ବିଦାୟ ସମ୍ବୋଧନର ହାର୍ଦ୍ଦିକ ଭାବସମ୍ପଦ । ଦିଗପହଣ୍ଡିରୁ ଜାପାନ ଯାଏ ଅସୁମାରି ଜିଜ୍ଞାସାର ଏକ ଅନ୍ୱେଷଣ 'ସାୟୋନାରା' । ଦୁଇଶତ ଛତିଶ ପୃଷ୍ଠାରେ ଅସଂଖ୍ୟ ପ୍ରଶ୍ନର ବ୍ୟାପ୍ତିକୁ ସମାପ୍ତିଟିଏ ଦେବାର ଏହା ଏକ ବିଡ଼ମ୍ବନା । କିନ୍ତୁ ଜୀବନ ଓ ସମକାଳୀନ ସମାଜ ଚିତ୍ରିବାରେ ଡକ୍ଟର ପାଠୀଙ୍କ ଏକ ପ୍ରଶଂସନୀୟ ସାଧନା । **ପ୍ରକୃତରେ ଓଡ଼ିଆ ଉପନ୍ୟାସ ପୃଷ୍ଠାରେ ବିରଳ ଥିଲା ଏପରି ଏକ ରଚନା । ସମଗୋତ୍ରୀୟ ଖଣ୍ଡିଏ ଉପନ୍ୟାସ 'ଅରଣ୍ୟର ବୃକ୍ଷଟିକା' ରଚନା କରିଥିଲେ ଔପନ୍ୟାସିକ ଜ୍ଞାନୀନ୍ଦ୍ର ବର୍ମା । ତା'ର ନାୟକ ଥିଲା ଜଣେ ଆର୍ଟିଷ୍ଟ 'ଶଶାଙ୍କ' । ମାତ୍ର ଏଠି ନିଜେ ସ୍ରଷ୍ଟା ଜଣେ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଆର୍ଟିଷ୍ଟ ଏବଂ ଆର୍ଟ୍‌କୁ ନେଇ ତାଙ୍କ ଚରିତ୍ର ଜାପାନ ପର୍ଯ୍ୟନ୍ତ ଯାଇଛି ।** ଯିବା ଭିତରେ ସମାଜରେ ଜରାୟୁ କର୍କଟ ଓ ରକ୍ତରେ ଭୟାନକ ଏଚ୍.ଆଇ.ଭି.କୁ ମଧ୍ୟ ଦେଖାଉଛନ୍ତି ଔପନ୍ୟାସିକ । ତାଙ୍କ ମତ, 'ପ୍ରତ୍ୟେକ ମଣିଷ କାମବାସନାର ପ୍ରତିଛବି ।' ସେମାନଙ୍କ ସମାଜଟି ସମକାମୁକତାରେ ବିକୃତ ହେବାରେ ଲଜ୍ଜା ଓ ଅସ୍ୱାଭାବିକତା କେଉଁଠି ? ସାରା ବହି ଯୁକ୍ତିରେ ପୂରିଛି । ସବୁ ଯୁକ୍ତି ପଛରେ ସ୍ୱାଭାବିକତା ଭରପୂର ରହିଛି । **ଉପନ୍ୟାସର ଭାଷା ଉପସ୍ଥାପନାରେ କଥିତ ବାକ୍‌ଭଙ୍ଗୀ ଓ କବିତା ସୁଲଭ ଲାଳିତ୍ୟ ଦିନନାଥ ପାଠୀଙ୍କ ଗଦ୍ୟର ବିଶେଷତ୍ୱ । ଅବଶ୍ୟ ଦିନନାଥ ବାବୁ ମଧ୍ୟ ଜଣେ କବି ।** କୁହାଯାଇଛି, 'ଗଦ୍ୟ କବିନାଂ ନିକଷଂ ବଦନ୍ତି ।' ଗଦ୍ୟ କବିଙ୍କ ପାଇଁ ପରୀକ୍ଷିତ ହେବାକୁ କଷଟି । ଦିନନାଥ ବାବୁଙ୍କ ଗଦ୍ୟ ତା'ର ଔଜ୍ଜ୍ୱଲ୍ୟ ବଜାଏ ରଖିଛି । କଳ୍ପନାକୁ ଅଭିବ୍ୟକ୍ତ କରିବାରେ ଗଦ୍ୟ ବାସ୍ତବ ଲାଗୁଛି । ରୋଚକ ଲାଗୁଛି । ବକ୍ତବ୍ୟ ଉପସ୍ଥାପନରେ ଦାର୍ଶନିକ ସୁଲଭ ଠାଣିଟିଏ ବାରି ହେଉଛି । ୧- 'ହୁଏତ ସେ ଏକଥା ବି ସୀକାର କରିବା ପାଇଁ ଚାହୁଁଥିଲା, ଯେ ମଣିଷ ଜାତିର ପ୍ରେମ ନିବେଦନ ଓ ଅନୁଭୂତି ଏକାଭଳି ।' ୨- 'ଯିଏ ଜୀବନରେ କିଛି ପାଇବା ପାଇଁ ଚାହେଁ ତାକୁ କିଛି ହରେଇବାକୁ ହୁଏ । ++ ସେ ଜୀବନ ବଦଳରେ ପ୍ରେମ ଓ ନିର୍ବାଣ ଚାହୁଁଛି । ୩- 'ପ୍ରେମର ସାଧନାରେ ମିଳନର ବିନ୍ଦୁ କେଉଁଠି ? ++ସଂଭୋଗ କ'ଣ ପ୍ରେମର ଅନ୍ୟ ଏକ ସଂଜ୍ଞା ?'

Digitized by srujanika@gmail.com

ବଳିଷ୍ଠ ଗଦ୍ୟ ଅଭିବ୍ୟକ୍ତିରେ ରହିଛି ଦୃଢ଼ତା । ଉପନ୍ୟାସ ସାରା ଦାର୍ଶନିକ ଢଙ୍ଗରେ ପ୍ରକାଶିତ ହୋଇଛି ସଂପର୍କର ଭାଷା । ଅଭିବ୍ୟକ୍ତ ହୋଇଛି ଲହୁଣୀ କୋମଳ ଧବଳ ସୁଖକର ଏକ ଜୀବନର ବ୍ୟାଖ୍ୟା ଓ ଆକାଂକ୍ଷା । ଯାହା କେହି ପାଏ ନାହିଁ । ବରଂ ପ୍ରକାଶ ପାଇଥାଏ ସ୍ରଷ୍ଟାର ନିଛକ ଅତୁଟ ଦିବା ସପ୍ନର ନକ୍ସା । ସୃଜନଶୀଳ ଶିଳ୍ପୀ ମାତ୍ରକେ ହିଁ ଦିବାସପ୍ନରେ ଥାଆନ୍ତି ରତ । ଉପନ୍ୟାସରେ, ଲେଖିଛନ୍ତି ଫ୍ରଏଡ୍ : The fact that all the women in the novel invariable fall in love with the hero can hardly be looked on as a portrayal of reality: but it is easily understood as a necessary constituent of a day dream. The same is true of the fact that the other characters in the story are sharply divided into good and bad, in the defiance of the variety of human characters that are to be observed in real life. The 'good' ones are the helpers, while the 'bad' ones are the enemies and rival of the ego which has become the hero of the story (art and literature) ଫ୍ରଏଡ୍‌ଙ୍କ ସେଇ 'ଇଗୋ'ଟିକୁ 'କେତକୀ' ଓ 'ଅରୁଣ' ବୋଲି ଦିନନାଥ ବାବୁ ଚିହ୍ନାଇଛନ୍ତି । ଦିନନାଥ ବାବୁଙ୍କ ରଚନା କୌଶଳ ଚିତ୍ରାତ୍ମକ । ସେ ଶବ୍ଦରେ ଶୁଣାଇ ଦିଅନ୍ତି ଦର୍ଶନର ପଙ୍‌କ୍ତି, ଶବ୍ଦରେ ଛୁଆଇଁ ଦିଅନ୍ତି କେତକୀ ଅନୁଭବ ଓ ଉପଲବ୍ଧିର ତାତି ଓ ବେଶ୍ ଭାବେ ସପ୍ନକୁ ତାଙ୍କ ରଙ୍ଗବୋଲି ଚିତ୍ରକରି ସର୍ଦ୍ଦମାନଙ୍କରେ ରଖିପାରିଛନ୍ତି । ଈଶ୍ୱର ପରି ଔପନ୍ୟାସିକ ଉପନ୍ୟାସ ସୃଷ୍ଟିରେ ଅତ୍ୟନ୍ତ ଶକ୍ତ ଓ ପ୍ରଭାବଶାଳୀ ଥାଆନ୍ତି ସବୁଠି, ପୁଣି ତାଙ୍କୁ ଦେଖିବାକୁ ମିଳେ ନାହିଁ କେଉଁଠି । ସବୁଠି ଦେଖିବାକୁ ମିଳିଥାଏ ତାଙ୍କ ଅଧ୍ୟୟନ, ପ୍ରଜ୍ଞା ଓ ଅନୁଭବର ଗଭୀରତା । ଉପନ୍ୟାସର ପ୍ଲଟକୁ ବଳିଷ୍ଠ କରିବାକୁ ବହୁ ଶାଖା ଆଖ୍ୟାୟିକା ପ୍ରବେଶ କରିଛନ୍ତି ପୃଷ୍ଠାମାନଙ୍କୁ । ପ୍ରକାଶକ ସୂଚେଇଛନ୍ତି, ଗୁନ୍ଥା ହୋଇଛି ବହୁ ଓଡ଼ିଆ, କର୍ଣ୍ଣଡ଼ ପାହାଡ଼ୀ ଓ ଜାପାନୀ ଲୋକ ଆଖ୍ୟାୟିକା । **ସାୟୋନାରା ଲୋକକଥା ସଂଚୟନରେ ସମୃଦ୍ଧ ଓ ଗଠିତ ଶେଷ ଦଶକର ଖଣ୍ଡିଏ ଶ୍ରେଷ୍ଠ ଉପନ୍ୟାସ ।**

**ସାୟୋନାରା** ଗଞ୍ଜାମର ଦିଗପହଣ୍ଡି ଠାରୁ ଜାପାନର ଓହାୟୋ ଗୋଜାଇମସ୍ତୁ ପର୍ଯ୍ୟନ୍ତ ଏକ ଦୀର୍ଘ ଭ୍ରମଣ କାହାଣୀ । ଏଥିରେ ସୁଇଫ୍‌ଟଙ୍କ 'ଗଲିଭର୍'ର ସନ୍ଦେହାତ୍ମକ ଦାର୍ଶନିକ ବ୍ୟଙ୍ଗ ରହିଛି । ଡିଫୋଙ୍କ 'ରବିନ୍‌ସନ୍'ର ବିସ୍ମୟକର ବୃତ୍ତାନ୍ତ ରହିଛି । ପୁଣି ରହିଛି ଲରମାଟୋଭଙ୍କ 'ଏ ହିରୋ ଅଫ୍ ଆୱାର ଟାଇମ୍'ର 'ଲଭ୍' । ବୁଲି ବୁଲି ସଂକଳନ କରୁଥିବା ତା' ଇମୋସନ୍‌ର କରୁଣ ଲହର । ଜାପାନ ବୌଦ୍ଧ ଦର୍ଶନର ଦେଶ । ଭୋଗ ମାଧ୍ୟମରେ ନିବୃତ୍ତି ଓ ନିବୃତ୍ତିରୁ ନିର୍ବାଣ ପ୍ରାପ୍ତି ହୀନଯାନ ପନ୍ଥି ସହଜିଆ ନୀତି କେତକୀକୁ ମତୁଆଲା କରିଛି । ଭୌଗଳିକ ଭ୍ରମଣଠୁ ଯୌନ ଦର୍ଶନ ଭ୍ରମଣ ସାରା ଉପନ୍ୟାସ ବଳେଇ ପଡ଼ିଛି । ଔପନ୍ୟାସିକ ଦିନନାଥ ବାବୁ ଯେମିତି ସିଦ୍ଧାନ୍ତଟି ଆବିଷ୍କାର କରିଛନ୍ତି, 'ପ୍ରତ୍ୟେକ ମଣିଷ କାମ ବାସନାର ପ୍ରତିଛବି' ତାରି ସୁବିସ୍ତୃତ ବ୍ୟାଖ୍ୟା ଉପନ୍ୟାସଟି । ଭ୍ରମଣର ଭୌଗଳିକ ବିସ୍ମୟକୁ ସେ ବିସ୍ମରି ବସିଛନ୍ତି । ସେ ସାଂସ୍କୃତିକ ବିସ୍ମୟକୁ ପାଠକ ସାମ୍ନାରେ ବାଢ଼ି ଦେଇଛନ୍ତି ଯଥା: ଜାପାନର ଲୋକେ ଆଖିରେ ଖାଆନ୍ତି । ଲୋକ ଦରିଦ୍ର ହୋଇଗଲେ ପେଟେ ପେଟେ ଖାଏ । ++ ଜାପାନରେ ଲାଗେ ଖାଇବା ଯେମିତି ଗୋଟିଏ ବିଳାସ । ++ ଧରାଯାଉ ଈଷତ୍ ହଳଦିଆ ମକାସିଝା ତରକାରି ପରିବେଷଣ ହେବ ଶାଗୁଆ ରଙ୍ଗର ଥାଳିଆରେ । ହଳଦିଆ ଓ ଶାଗୁଆ ରଙ୍ଗ ଭିତରେ ଯୋଡ଼ି ଦିଆଯିବ ଦି' ଚାରିଟା ଧଳା ନାଲି ପତ୍ର ଓ ଫୁଲ । ମନେ ହେବ ପ୍ଲାଷ୍ଟର୍ ଅଫ୍ ପ୍ୟାରିସ୍ ବା ପ୍ଲାଷ୍ଟିକ୍ ତିଆରି ଚିତ୍ରିତ ଖେଳନା । ଚମତ୍କାର ବର୍ଣ୍ଣ ବୈଭବ । ପରିବେଷଣରେ ନାନ୍ଦନିକତାର ସମ୍ମୋହନ (ପୃ-୫୦-୫୧) ।

ଅନ୍ୟ ଏକ ଉଦାହରଣ - 'ମିତାଲି ଦିନକୁ ଦଶଥର ଚା'କରେ ଓ କେଟଲିରେ ଚା' ନେଇ ଷ୍ଟୁଡିଓକୁ ଆସେ । ଚା'ମାନେ ର'ଚି । ଡିକାସିନ୍ ଫୁଟା ପାଣି । ଆଉ ତହିଁରେ ଲେମ୍ବୁରସ ଦି'ଚାରିଟୋପା । କଲିକତା ନଗରୀରେ ବୁଦ୍ଧିଜୀବୀମାନେ ଏଇମିତି ଚା' ଓ ଚା' ସାଙ୍ଗକୁ ବିଡ଼ି ଖାଇବା ପସନ୍ଦ କରନ୍ତି ।' (ପୃ ୧୪୪)

ଦିନନାଥ ବାବୁଙ୍କ ଉପନ୍ୟାସ ତାଙ୍କ ନିଜସ ଦିବାସପ୍ନରେ ନିର୍ମିତ ବିଶ୍ୱ । ବସ୍ତୁମାନଙ୍କୁ ଏକ ନୂତନ ମାର୍ଗରେ ସଜାଇ ସେ ସନ୍ତୁଷ୍ଟ କରିଛନ୍ତି ନିଜକୁ । ଅତି ଗୁରୁତ୍ୱପୂର୍ଣ୍ଣ ଭାବେ ଶବ୍ଦବସାଣ ଓ ଛୋଟ ଛୋଟ ଘଟଣାରେ ଚିତ୍ରଣ ଘଟିଛି । ଯେଉଁଠି ଆବେଗର ପରିମାଣ ପ୍ରବଳ ଓ ଏହାର ବିପରୀତ ବାସ୍ତବର ପୁଟ ଯଥାଯଥ । ଭୂଗୋଳ ବହିରୁ ଅରୁଣ ପଢୁଛି, 'ଜାପାନ ଉଦୟ ସୂର୍ଯ୍ୟର ଦେଶ ।' ଶିକ୍ଷକ ଓ ଛାତ୍ରଛାତ୍ରୀ ଶ୍ରେଣୀରୁ ସମସ୍ତେ ଚାଲି ଗଲେଣି ଘରକୁ । କେବଳ ରହିଯାଇଛନ୍ତି ସପ୍ନ ପ୍ରବଣ କିଶୋର କିଶୋରୀ ଦୁଇଜଣ । ଅରୁଣ ଓ କେତକୀ । 'କେତକୀ ଫୁଜିୟାମା ପାହାଡ଼ର ଚୂଡ଼ା

Digitized by srujanika@gmail.com

ଉପର ଦେଇ ଉଡୁଛି । ଫୁଜିୟାମା ହଠାତ୍ ଗର୍ଜି ଉଠିଲା । ଥୁ ଥୁ କରି ଉତପ୍ତ ଲାଭା ଫିଙ୍ଗିଲା ଆକାଶକୁ । ଦୁଃଖଭଳି ବହିଗଲା ଉତପ୍ତ ଲାଭାର ତତଲା ଧାର । ଧରା ବିଗଳିତ ହେଲା । ମାଟି ଯନ୍ତ୍ରଣାରେ ଛଟପଟ ହେଲା । ବାସୁକୀ ମୁହୂର୍ମୁହୁ କଡ଼ ଲେଉଟାଇଲା । ଗୁଡ଼ିଗୁଡ଼ିକ ଛିନ୍ନଛତ୍ର ହୋଇ ପଡ଼ିଲେ । ଅରୁଣ ହାତରୁ ନଟେଇଟି ଖସିପଡ଼ିଲା । ସୁନା ପ୍ରଜାପତିଟି ନିଆଁ ଧାସରେ ଝାଳେଇଯାଇ ବେହୋସ୍ ହୋଇ ପଡ଼ିଗଲା ଅରୁଣର ପଢ଼ା ଡେସ୍କ ଉପରେ ।'

ଜାପାନର ପ୍ରିୟ ଖେଳ ଗୁଡ଼ିଉଡ଼ା ।.... ପରୀକ୍ଷା ମୁଣ୍ଡ ଉପରେ ଝରକା ବାହାରେ ଆକାଶକୁ ଅନେଇଥିବା କିଶୋର ଅରୁଣ ଗୁଡ଼ି ଉଡ଼ାଉଛି ଦିବାସପ୍ନରେ । କେତେକୀ ତା'ଗୁଡ଼ି ସହ ଉଡୁଛି ଫୁଜିୟାମ ଉପରେ । ଏହା ଭିତରେ ଭୂମିକମ୍ପଟିଏ ହୋଇ ସାରିଲାଣି । ସେଇଭଳି ଏଇ ଅଧ୍ୟାୟର ଶେଷ ଆଡ଼କୁ ଅନ୍ୟ ଏକ ସୃଜନଶୀଳ ଲେଖକର ଦିବାସପ୍ନର ରୋକଠୋକ ଚିତ୍ର: 'ବୋଉ ଡାକ ପକେଇଲେ, ଝିଅ ! ଝିଅଲୋ ! ସବିତା ଶାଶୁଙ୍କ ଡାକରେ ଧଡ଼ଧାଡ଼ ଉଠିପଡ଼ି ପାଣି ଲୋଟାଟି ଥୋଇ ଦେଲା । ବୋଉ ଉଠିଲଣି ନା ? ବୋଉ ଓ' ଓ' କହି ଦାଣ୍ଡ କବାଟ ଖୋଲିଲେ । ଦଳକ ଚାଲିଲେ ବଡ଼ବନ୍ଧକୁ । ପୋଖରୀ ପାଣି ତା'ପରେ ଟୁପୁରୁ ଟାପୁରୁ, ସଳା ସୁତରା କଥାପଡ଼ିବ ତମ ବୋହୂପିଲା ମାସିଆରି ଗାଧୋଇଲାଣି ନା ନାହିଁ । କେତେ ମାସର । ମା' ଘରୁ ସଜ କେବେ ଆସିବ ?'

**ଜଣେ ଚିତ୍ରଶିଳ୍ପୀର ସୌଖୀନ୍ ଦୃଷ୍ଟିକୋଣରୁ ଉପନ୍ୟାସର ଫର୍ଦ୍ଦ ମଝିରେ ମଝିରେ ଚିତ୍ରିତ ହୋଇଛି । କିନ୍ତୁ ସବୁ ଫର୍ଦ୍ଦ ଚିତ୍ରାତ୍ମକ ଭାଷାରେ ଛବିଳ । ପ୍ରଚ୍ଛଦ ପରି ସବୁ ଫର୍ଦ୍ଦରେ ବହୁରଙ୍ଗ ଫେଣ୍ଟରେ ତିଆରି ଭାଷାର କାରିଗରୀ ଓ ଭାବର ପଢିଆରା ସୁଖକର । ସୃଜନଶୀଳ ଲେଖକର ଦିବାସପ୍ନରେ ମଞ୍ଜୁଳ । ଜାପାନର ସାଂସ୍କୃତିକ ପଟ୍ଟଭୂମି ଉପରେ ରଚିତ ବୋଧହୁଏ ପ୍ରଥମ ଓଡ଼ିଆ ଉପନ୍ୟାସ ।** ଭାରତୀୟ ଉପନ୍ୟାସ କ୍ଷେତ୍ରରେ ପ୍ରସିଦ୍ଧ ଲେଖିକା ମୀରାଚାଂଦ ଜାପାନ ପଟ୍ଟଭୂମି ଉପରେ ଏକା ଲେଖିଛନ୍ତି ଚାରୋଟି ବିଖ୍ୟାତ ଉପନ୍ୟାସ - The Gossamer Fly, Last Quadrant, The Bonsai Tree ଓ The Painted Cage ।

ଜାପାନ ପ୍ରତି ଅତିରିକ୍ତ ଆସକ୍ତ ହୋଇଛନ୍ତି ଔପନ୍ୟାସିକ । ଏତେ ମୋହ ଜାତୀୟତା ବୋଧ ପ୍ରତି କ୍ଷତିକାରକ । 'ଜାପାନରେ ଚା' ପାନ ଓ ଓଡ଼ିଶାରେ ପ୍ରେମ କରିବା ଭିତରେ ବିଶେଷ ଫରକ ନାହିଁ' (ପୃ.୨୮), ଲେଖିଛନ୍ତି ଶ୍ରୀପାଠୀ । ଓଡ଼ିଶାର ପ୍ରେମଠୁ ଜାପାନର ଚା' ପାନର ମୂଲ୍ୟ କ'ଣ ଏତେ ଅଧିକ ? ନିଜ ବୋଉଠୁ ଅଧିକ ସୁନ୍ଦରୀ ଓ ଧନବତୀ ଜଣେ ରମଣୀକୁ ବୋଉ ବୋଲି ନିଜ ହୃଦୟରେ ଆଦରରେ କି କେହି ପାରିବ ସାଇତି ? ଓଡ଼ିଶା ଚା'ପାନର ପ୍ରଦେଶ ନୁହେଁ । ପଖାଳର ଦେଶ କଳିଙ୍ଗ । କେବଳ ଏଇ ଗୋଟିଏ କଥା କେତକୀ ମନକୁ ଛୁଇଁନି । ଜାପାନର ସପ୍ନ ଓ କଳାର ଐଶ୍ୱର୍ଯ୍ୟ ଯେ ଉତ୍କଳରେ ଅସ୍ତ, ଏକଥା ଚିନ୍ତା କରିବାର ସାହସ ଓ ତୁଳନା କରିବାର ବୁଦ୍ଧି କେତକୀର ଆସିଲା କେମିତି ? ଏଠି ଶିଳ୍ପୀଟିଏ ହୋଇ ବଞ୍ଚି ହୁଏନାହିଁ । କିନ୍ତୁ ମଣିଷଟିଏ ହୋଇ ତିଆରି ହୋଇ ହୁଏ, ଉତ୍କଳୀୟ କଳା ଓ ସଂସ୍କୃତିର ମହାନ୍ ବିଶେଷତ୍ୱ ।

ଓଟଓ୍ୱା ଜଳ ପ୍ରପାତ ପାଣିରେ ଆୟୁର୍ବେଦୀୟ ଗୁଣ କେତକୀ ଦେଖିଛି । କିନ୍ତୁ ଅତ୍ରିର ଉଷ୍ମ ପ୍ରସବଣ ଜଳରେ ଯେ ଔଷଧୀୟ ଗୁଣ ସେ କହିନି, କୁଅ, କୁଣ୍ଡ ଗୁଆ ପ୍ରାପ୍ତିରେ ବନ୍ଧ୍ୟା ନାରୀ ପୁତ୍ରପ୍ରାପ୍ତ ହୁଏ- ସେ କଥା ସେ ଜାଣେ ନାହିଁ ।

**ଦିନନାଥ ବାବୁଙ୍କ 'ସାୟୋନାରା' ପାଠକଙ୍କୁ ସୁଖ ଦେବ । ସପ୍ନ ଦେବ । ଦିନନାଥ ବାବୁଙ୍କ ଚିତ୍ର ପରି ଶବ୍ଦରେ ପାଠକଙ୍କ ହୃଦୟ ସହ ଯୋଗାଯୋଗ ଛବିଳ । ବହୁ ପ୍ରଶଂସାର ଦାବି ରଖିଛି ଉପନ୍ୟାସର କାରିଗରୀ । ସମକାଳୀନ ଦୃଷ୍ଟିକୋଣରୁ ଶେଷ ଦଶକର ଏହା ଏକ ସାର୍ଥକ କୃତି ବୋଲି ବିବେଚିତ ହେବ ।**

(ସାୟୋନାରା, ମେଟାଫିକସନ୍/ ଡକ୍ଟର ଦିନନାଥ ପାଠୀ/ ମିଡ଼ିଆ ଓଡ଼ିଶା, ଭୁବନେଶ୍ୱର/୧୯୯୮/ ୧୫୦ଟଙ୍କା)

Digitized by srujanika@gmail.com

**କମଳାକାନ୍ତ ମହାପାତ୍ର**

## ପୁଞ୍ଜିକୟାଁର ଫକୀର

**ପୁଞ୍ଜିକୟାଁର ଫକୀର** ଦିନନାଥ ପାଠୀଙ୍କ ବାପା ଶ୍ୟାମସୁନ୍ଦର ପାଠୀଙ୍କ ଜୀବନୀ । ଏହା ଦିନନାଥ ପାଠୀଙ୍କ ଆତ୍ମଜୀବନୀର ଅଂଶବିଶେଷ ମଧ୍ୟ । ପୁଅ ବାପାର ଜୀବନୀ ଲେଖିଲେ ଏହା ଅବଶ୍ୟମ୍ଭାବୀ । କିନ୍ତୁ ଏଥିଯୋଗୁ ପାଠକର ସାମାନ୍ୟତମ ଅବଶୋଷର ଅବକାଶ ନାହିଁ ।

କାରଣ, **ପୁଞ୍ଜିକୟାଁର ଫକୀର** ଏକ ବିଲୁପ୍ତ ସମୟର, ଏକ ଗତାୟୁ ଜୀବନଧାରାର ସାମାଜିକ ଚିତ୍ର, ବିଗତ ଯୌବନା ବିଂଶ ଶତାବ୍ଦୀ ବେଳର ମାନ୍ଦ୍ରାସ ପ୍ରେସିଡ଼େନ୍ସିର ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡି ଅଞ୍ଚଳର ଆଂଶିକ ଇତିହାସ ଯାହା ଶ୍ୟାମସୁନ୍ଦର ପାଠୀ ନାମକ ମୁଖ୍ୟ ଚରିତ୍ରକୁ ଆଧାର କରି ରୂପାୟିତ ।

ସମୀକ୍ଷକ ସୁଲଭ ଛିଦ୍ର ଖୋଜିବା ପୂର୍ବରୁ ପ୍ରଥମେ ଅତ୍ୟନ୍ତ ପ୍ରାଣବନ୍ତ ଏଇ ଜୀବନୀଟିର ପୂର୍ଣ୍ଣ ଉପଭୋଗ କାମ୍ୟ । ଏଇଥିପାଇଁ ଯେ, ଅଳ୍ପରେ କହିଲେ, ଏ ଜୀବନୀଟିରେ ମୁଖ୍ୟ ଚରିତ୍ରର ଜୀବନକୁ ଆପଣା ଆଦର୍ଶରେ ଉପଭୋଗ କରିବାର ଅନ୍ତର୍ନିହିତ ଅଭୀପ୍ସାରେ ଯେଉଁ ଉଦାମତା ରହିଛି ତାହା ଚିରାଚରିତ ଜୀବନରେ ଦେଖିବାକୁ ମିଳେ ନାହିଁ । **ହୋଇଥାନ୍ତୁ ପଛେ ଶ୍ୟାମ ପାଠୀ ବୃହତ୍ତର ସର୍ବଭାରତୀୟ ସାଧାରଣ ଜୀବନର ନଗଣ୍ୟ ପ୍ରତିନିଧି, ହୋଇଥାଉ ପଛେ ଦିଗପହଣ୍ଡି ଓ ପୁଞ୍ଜିକୟାଁ ଏତେ ବଡ଼ ଭାରତ ଦେଶ ଓ ତା'ଠାରୁ କେତେ ବଡ଼ ପୃଥିବୀ ତୁଳନାରେ, କ୍ଷୁଦ୍ର ମୁନରେ ମୁନେ, ଜୀବନକୁ ଭିନ୍ନ ଭାବେ ଜିଇଁବାର ଆକର୍ଷଣ ଶ୍ୟାମ ପାଠୀଙ୍କ ଜୀବନରେ ଯେତିକି ପ୍ରକଟିତ ସେତିକି ବହୁ ଲୋକଙ୍କ ଆଦର୍ଶ ଓ କପାଳରେ କେବେ ନଥିଲା, ଏବେ ବି ନାହିଁ ।**

ଜୀବନୀକାରଙ୍କ ଭାଷାରେ ଶ୍ୟାମପାଠୀ ଥିଲେ କବି, ସଂଗଠକ, ଚିତ୍ରକାର, ବିପ୍ଳବୀ । ତା ସାଙ୍ଗକୁ ଯୋଡ଼ା ଯାଇପାରେ ଦରିଦ୍ର ଫକୀର, ମାମୁଲି ଦୋକାନୀ, ହନୁମାନ ପୂଜକ, ସାମୟିକ ଐତିହାସିକ, ଭାଣ୍ଡ (ଗୋପାଳ ଭାଣ୍ଡଙ୍କ ପରି ଶାଣିତ ନହେଲେ ମଧ୍ୟ), ପରମ୍ପରାର ନିଗଡ଼ ବନ୍ଧନରେ ଥାଇ ବି ନୂତନତ୍ୱର ସୃଜନଶୀଳ ପୂଜାରୀ । ତାଙ୍କ ଆୟୋଜିତ 'ଭୂତସଭା' ଓ 'ଯୀଶୁଖ୍ରୀଷ୍ଟ ରଥ' ଓଡ଼ିଶାର ଔପନିବେଶିକ ଅମଳର ପ୍ରଥମ ଚିତ୍ରାଭିନୟର ଉଦାହରଣ ହୋଇଥାଉ କି ନଥାଉ ସର୍ବସାଧାରଣଙ୍କ ଚଳାବାଟ ଛାଡ଼ି ଅମଡ଼ାବାଟରେ ଯିବାର ପ୍ରମାଣ ।

ଦିନନାଥ ପାଠୀ ନିଜେ ଜଣେ ପ୍ରତିଷ୍ଠିତ ଚିତ୍ରଶିଳ୍ପୀ ଓ ଲେଖକ । ଜୀବନୀଟିର ଗଠନରେ ଚିତ୍ରକାରସୁଲଭ ନୈପୁଣ୍ୟ ରହିଛି । ଅଞ୍ଚଳନିର୍ଦ୍ଦିଷ୍ଟ ଓ ସଂସ୍କୃତିସାପେକ୍ଷ ଶବ୍ଦ (ବିନା ଆଡ଼ମ୍ବରରେ କହିଲେ, ଗଞ୍ଜାମୀ ଶବ୍ଦ) ବ୍ୟବହାରରେ ରଚନାଟି ସମୃଦ୍ଧ । ବିଲୁପ୍ତ ଜୀବନଧାରାର ଅନେକଗୁଡ଼ିଏ ଦିଗ ଏଥିରେ ସ୍ଥାନିତ - ବେଶଭୂଷା, ଅଳଙ୍କାର, ଖାଦ୍ୟ ଓ ପାନୀୟ ତାଲିକା, କିମ୍ବଦନ୍ତୀ, ସାମାଜିକ ଓ ବେସାମାଜିକ ଚିତ୍ତ ଓ ସ୍ନାୟୁ ବିନୋଦନର ଉପାଦାନ ଇତ୍ୟାଦି । ଚିଲମରେ ଖୁନ୍ଦି ପୂରେଇବା ଆଗରୁ ଗଂଜେଇ କଳି କେମିତି ପ୍ରସ୍ତୁତ କରାଯାଏ ସେ ପ୍ରଣାଳୀ ଓ ତା'ପାଇଁ ଲାଗୁଥିବା ଉପକରଣର ବର୍ଣ୍ଣନା ଯେତିକି ଉପଭୋଗ୍ୟ ସେତିକି, ବା ତା'ଠୁ ବେଶି, ଲୋମଶ ପ୍ରାଣୀ ଭାଲୁର ପ୍ରାକୃତିକ ପରିବେଶ, ପାଶବୀୟ ଆଚରଣ ଓ ଜୀବନଧାରାର ବର୍ଣ୍ଣନା । 'ପୁଞ୍ଜିକୟାଁର ଫକୀର'ରେ ସନ୍ନିବିଷ୍ଟ ଭାଲୁକୀୟ ଆଚରଣ ବିବରଣୀ ଯେ କୌଣସି ପ୍ରାଣୀବିଜ୍ଞାନ ବହିରେ ଥିବା ପାଠାଂଶଠାରୁ ଅଧିକ ସୁପାଠ୍ୟ । (ଭାଲୁ କାଳେ ମଣିଷ ଗନ୍ଧ ବାରି ସାଇରେ ପଶି ବୋହୂ ଭୁଆସୁଣୀଙ୍କୁ 'ଆତକାତିଆ' କରିପକାଏ । ଏକଥା ଥରେ ମୋର ଜଣେ ହିମାଚଳ ପ୍ରଦେଶ ବାସିନ୍ଦା ବନ୍ଧୁଠାରୁ ଶୁଣି ଗୁଲିଗପ ବୋଲି ମନେ ହୋଇଥିଲା ।) ଯଦିଓ ଶ୍ୟାମ ପାଠୀ ମୁଖ୍ୟ ଚରିତ୍ର, ଅନେକ ଗୌଣ ଚରିତ୍ରଙ୍କ ଆଲେଖ୍ୟ ଅତ୍ୟନ୍ତ ଉପଭୋଗ୍ୟ । ଉଦାହରଣ, ଅନ୍ୟମାନଙ୍କ ଭିତରେ ଭେଙ୍କଟ ରାଓ ।

ଜୀବନୀରେ ବେଶ କିଛି ପରିମାଣର ପୁନରାବୃତ୍ତି ରହିଯାଇଛି । ଦୁଇରେ, ଜୀବନୀକାର ବାରମ୍ବାର ତାଙ୍କ ଆପଣା ମୂଲ୍ୟବୋଧ ବିଚାରର ଉତ୍କର୍ଷ ଦାବି କରିଛନ୍ତି । ତୃତୀୟରେ, ମୋ ଅନୁଶୀଳନରେ ଜୀବନରେ ସ୍ଥାନ ଓ କାଳର ସୁସ୍ପଷ୍ଟ ନିର୍ଦ୍ଧାରଣ ଅତି ଆବଶ୍ୟକ । 'ପୁଞ୍ଜିକୟାଁର

Digitized by srujanika@gmail.com

ଫକୀର'ରେ ମାତ୍ର ଦୁଇଟି ସ୍ଥାନରେ ମସିହାର ଉଲ୍ଲେଖ ଅଛି । (ଦ୍ୱିତୀୟ ଉଲ୍ଲେଖଟି ଏକାନ୍ତ ଭାବେ ଅପ୍ରାସଙ୍ଗିକ ।) 'କାହିଁ କେଉଁ ପଚାଶ ବର୍ଷ ତଳର ଇତିହାସ ଭିତରକୁ ଲମ୍ବିଯାଇଛି କାହାଣୀ' । କୋଉ ପଚାଶ ବର୍ଷ ? ଶ୍ୟାମ ପାଠୀ ୭୩ ବର୍ଷ ବଞ୍ଚିଥିଲେ ବୋଲି ଆମେ ପଢୁ । କିନ୍ତୁ କେବେ ଜନ୍ମ ? ମୃତ୍ୟୁ ମସିହା ୧୯୫୭ରୁ ୭୩ ଫେଡ଼ିଲେ ବାହାରିବ ଅବଶ୍ୟ, କିନ୍ତୁ ଅଙ୍କ କଷିବା ପାଇଁ ପାଠକକୁ କଷ୍ଟ କରିବାକୁ ନପଡୁ । ମୋର ଅସନ୍ତୋଷର କାରଣ - ଲେଖକୀୟ ବାହୁଲ୍ୟ । ଦୁଇଟି ଉଦାହରଣ (୧) 'ନନାଙ୍କୁ ବର୍ଣ୍ଣିବାକୁ ମୋ ପାଖରେ ଭାଷା ନାହିଁ କି କଳ୍ପନା ନାହିଁ ।' (ନାହିଁ ତ ଏ ବହି ଲେଖିଲେ କେମିତି ?) (୨) ଜୀବନୀକାରଙ୍କ ଦୂରତ୍ୱବୋଧ କୋଉଠି ? ଏଠି ତ ପୁଅର ଉଦ୍‌ବେଳିତ ସ୍ୱର ।)

କିନ୍ତୁ ପାଠକୀୟ ସନ୍ତୋଷ ଓ ଆନନ୍ଦ ଆଗରେ ଏସବୁ ଅସନ୍ତୋଷ ମାମୁଲି । ଦିନନାଥ ପାଠୀଙ୍କୁ ଅନୁରୋଧ, କଷ୍ଟ ସ୍ୱୀକାର କରି ଶ୍ୟାମସୁନ୍ଦର ପାଠୀଙ୍କ 'ପ୍ରପଞ୍ଚ ନାଟକ'ଟି ଉଦ୍ଧାର କରି ଟିପ୍ପଣୀ ସହ ପ୍ରକାଶ କରନ୍ତୁ । (ହାତଲେଖା କପି ନମିଳିଲେ ଏହା କିପରି ସମ୍ଭବ ହେବ ସେକଥା ଭାବି ହେଉନାହିଁ ।) ଏହାର ଯେତିକି ଅଂଶ ଉଦ୍ଧାର କରାଯାଇଛି ସେତିକି ପଢ଼ି ପାଠକ ବୁଝିପାରେ ସାମାଜିକ ଚିତ୍ର ଓ ରମ୍ୟ ରଚନା ହିସାବରେ ଏହାର କେତେ ଗୁରୁତ୍ୱ ।

ପରିଶେଷରେ, ଏହି ଜୀବନୀର ଅନ୍ୟଏକ ଉପଭୋଗ୍ୟ ଦିଗ ହେଉଛି ଏଥିରେ ଥିବା ତେଇଶିଟି ଚମତ୍କାର ରେଖାଚିତ୍ର । ସବୁଗୁଡ଼ିକ ଜୀବନୀକାରଙ୍କ ଦ୍ୱାରା ଅଙ୍କିତ ।

**ପୁଞ୍ଜିକୟାଁର ଫକୀର ବହିରୁ କିଛି ଉଦ୍ଧୃତି-**

ମୋ ନନା ଶ୍ୟାମସୁନ୍ଦର ପାଠୀ ହନୁମାନଙ୍କର କେବଳ ସେବକ ନୁହଁନ୍ତି, ଏ ଆମ୍ବତୋଟା ଏବଂ ପୁଞ୍ଜିକୟାଁ ଇଲାକାର ସତ୍ୱାଧିକାରୀ । ତୋଟା ଭିତରେ ଜାତିଜାତିକା ଆମ୍ବଗଛ, ଗଣ୍ଡିମାନ କୁଣ୍ଢେମୋଟ । ଆମ୍ବ ଭିତରେ ଦହିହାଣ୍ଡିଆ, କଲମିଆ, ଗାଣ୍ଡିସୁନ୍ଦରୀ, ବଉଳଫୁଲିଆ, ଚମ୍ପା ଆଉ ଠୁରୀ । ଠୁରୀ ଆମ୍ବଜାକ ଖୁବ୍ ସାନ କିନ୍ତୁ ଭାରି ମିଠା, ଥରେ ଚୋସାଡ଼ି ଦେଲେ ଟାକୁଆ ପାଟିରେ ଓ ଚୋପା ହାତରେ । ଦି ଚୋସଡ଼ା ବେଳକୁ ପୂରା ଚୋଚଡ଼ା ହେଇଯାଇ ଆମ୍ବ ଶେଷ । ଦହିହାଣ୍ଡିଆ ଆମ୍ବଯାକ ସାଇଜ୍‌ରେ ବଡ଼ । ଗୋଟିଏ ଗୋଟିଏ ଆମ୍ବ ମଣିଷ ମୁଣ୍ଡ ପ୍ରମାଣେ ହେବ । ଟାକୁଆ ଖୁବ୍ ଛୋଟ ଆଉ ବାକି ସବୁତକ ରସ, ଦହି ଭଳିଆ ଦଳଦଳିଆ ରସରସିଆ । ଏହି ଆମ୍ବକୁ ଭାଲୁଙ୍କର ଭାରି ଶ୍ରଦ୍ଧା । କଲମି ଆମ୍ବ ଟିକେ ଟାଣ । ଗଛରୁ ହଠାତ୍ ପଡ଼ିଗଲେ ମଧ ଫାଟ ଦିଏନି । ଗାଣ୍ଡିସୁନ୍ଦରୀ ଆମ୍ବ ନାସି ଆଡ଼କୁ ନାଲିଆ ଆଉ ନାକ ଆଡ଼କୁ ପୋଚାଳିଆ । ଆମ ଗାଁ ପଞ୍ଚମ ଜର୍ଜ୍ ହାଇସ୍କୁଲର ଡ୍ରଇଁ ମାଷ୍ଟ୍ରେ ନଟବର ମାର୍ଥା ଏହି ଆମ୍ବର ରୂପ ଓ ବର୍ଣ୍ଣ ବିନ୍ୟାସର ଅନୁକରଣ କରି ଆମକୁ ଆମ୍ବ ଚିତ୍ର କରିବା ଶିଖାଉଥିଲେ । ନନା ସବୁବେଳେ ହନୁମାଙ୍କଡ଼ଙ୍କର ପଛଟାକୁ ଏହି ଆମ୍ବ ସହିତ ତୁଳନା କରୁଥିଲେ । ଆମ ସ୍କୁଲ୍ ହେଡ୍‌ପଣ୍ଡିତେ କବିସୂର୍ଯ୍ୟ ଭାରି କ୍ରୋଧୀ । ପିଲାଙ୍କ ଉପରେ ରାଗିଗଲେ ପିଲାଙ୍କ ପିଚାଯାକକୁ ପିଟି ପିଟି ହନୁମାଙ୍କଡ଼ଙ୍କ ପଛଭଳି ନାଲି କରିଦେବେ ବୋଲି ଧମକ ଦେଉଥିଲେ । ଗଞ୍ଜାମ ଆଡ଼ର ଭୁଆସୁଣୀଙ୍କ ଗାଲଯାକ ହଳଦି ଆବୁରେ ମାଖିହୋଇ ଗାଣ୍ଡିସୁନ୍ଦରୀ ଆମ୍ବ ଭଳିଆ ଦିଶୁଥାଏ ।

ଗଞ୍ଜେଇ ତିଆରିବାରେ କାରିଗରି ଅଛି, ପତ୍ର ଓ ଜଟକୁ ଶିଳପଥର ଉପରେ ପାରିଦେଇ ପ୍ରେମକଟାରୀରେ ଟିକିଟିକି କରି କାଟି ଦିଆଯାଏ । ତା'ପରେ ବାଁ ପାପୁଲିରେ କଟାପତ୍ରପୁଳାକ ଧରି ଟୋପେ ଦି'ଟୋପା ପାଣି ପକେଇ ଡାହାଣ ହାତର ବୁଢ଼ାଆଙ୍ଗୁଳି ଟିପରେ ଦଳି ଦିଆଯାଏ । ପତ୍ରଯାକ ସାଙ୍କୁଡ଼ି ଯାଇ ପରସ୍ପରକୁ ଛନ୍ଦିଯାଆନ୍ତି । ତା'ପରେ ହାତ ବନ୍ଧୁକରେ ଦାରୁ ଭର୍ତ୍ତିକଲାପରି ଗଞ୍ଜେଇ ପତ୍ରକୁ ଚିଲମରେ ଖୁନ୍ଦି ଦିଆଯାଏ । ତା'ଆଗରୁ ଗୁଳିଟି ପୁରେଇ ନଳୀର ତଳ ଭାଗକୁ ବନ୍ଦକରି ଦିଆଯାଇଥାଏ । ଗଞ୍ଜେଇ ପତ୍ର ଭର୍ତ୍ତି ହେଇଗଲେ ନଳୀ ମୁହଁକୁ ଆଙ୍ଗୁଠିରେ ଟିପି ଦିଆଯାଏ । ବର୍ତ୍ତମାନ

Digitized by srujanika@gmail.com

ଚିଲମ ରେଡ଼ି । ଛାପକନାକୁ ଓଦା କରି ଚିଲମ ନଳୀର ତଳଭାଗକୁ ପିନ୍ଧେଇ କରପତ୍ର ମୁଦ୍ରାରେ ପାଟି ପାଖରେ ଧରାଯାଏ । ଆଉ ଜଣେ ଚିଲମ ମୁହଁରେ ଅଗ୍ନି ସଂଯୋଗ କରେ । ମୁଁ ଦେଖିଛି ନନା ହାପୁ ହାପୁ କରି ତିନି ଚାରିଥର ନିଃଶ୍ୱାସ ଶୋଷାଡ଼ନ୍ତି । ଚିଲମ ମୁହଁରେ ନିଆଁ ହାଲୁ ହାଲୁ ହେଇ ଜଳିଉଠେ, ସୁଡ଼ଙ୍ଗ ଦେଇ ଧୂଆଁ ଛାଡ଼ି ରେଳଗାଡ଼ି ଆସିଲାଭଳି ଲାଗେ । ତା' ପରେ ମୁହଁରୁ ଚିଲମଟା କାଢିଦେଇ ପେଟ ଭିତରର ଗଞ୍ଜେଇ ଧୂଆଁକୁ ଗବ ଗବ କରି ନାକ ଓ ପାଟିବାଟେ ବାହାରକୁ ଛାଡ଼ନ୍ତି । ରେଳ ଇଞ୍ଜିନ୍‌ରୁ ଫୁଟାପାଣିର ଗରମ ବାମ୍ପ ଇଞ୍ଜିନ ତଳବାଟେ ଅବିକଳ ଏଭଳି ଭସ୍ ଭସ୍ ହେଇ ବାହାରେ । ଗଞ୍ଜେଇ ଧୂଆଁର ସାତ୍ତ୍ୱିକ ମହକରେ ମନ୍ଦିର ଚାନ୍ଦିନୀ ଓ ଖଣ୍ଡମଣ୍ଡଳ ମହକି ଉଠେ । ମୁଁ ଏ ଗନ୍ଧରେ ମତୁଆଳ ହେଇଯାଏ ।

..........................

ନନା ତ କେବେଠୁ ଗଲେଣି, ନିର୍ଜନ ଦ୍ୱୀପର ସମ୍ରାଟ ଭଳି ମୋ ନନା ଏ ସମଗ୍ର ଇଲାକାର ଅଧୀଶ୍ୱର ଥିଲେ । ତାଙ୍କର ଆଖି ଓ ମନ ଯେତେ ଦୂର ଦିଗକୁ ବ୍ୟାପି ଯାଇଥିଲା ସେ ସବୁ ଥିଲା ତାଙ୍କର ଇଲାକା । ଇମିତି ଆଉ କିଏ ଜଣେ ମୁକୁଟ ବିହୀନ ସମ୍ରାଟ ହେଇ ଜୀବନକୁ ଏତେ ବେପରୁଆ ଭାବେ, ଏତେ ନିବିଡ଼ ଭାବେ, ଏତେ ଅନ୍ତରଙ୍ଗ ଭାବେ ଯାପିବା ମୁଁ ଜାଣିନି । କିଛି ବି ନଥିଲା । ଆଣ୍ଠୁଯାଏ ଖଣ୍ଡେ ଧୋତି, ଅଣ୍ଟାରେ ଗାମୁଛାର କମରକସା, ଆଉ କାନ୍ଧରେ ଗୋଟିଏ ଗାମୁଛାର ଦୋସରା । ନା ଘର, ନା ଦ୍ୱାର, ନା ଜମିବାଡ଼ିର ମାଲିକାନା, ନା କିଛି ଆବୋରି ନେବାର ପ୍ରବୃତ୍ତି । କିଛି ବି ନଥିଲା । ଛଅ ଫୁଟ ଛ ଇଞ୍ଚର ଡେଙ୍ଗା ମଣିଷ, ପ୍ରଶସ୍ତ ଲୋମଶ ଛାତି । ହୃଷ୍ଟପୁଷ୍ଟ ବାହା, ଏକରମକ ଆଜାନୁଲମ୍ବିତ ବାହୁ, ସରଳ ଗ୍ରୀବା, ଲମ୍ବା, ଚନ୍ଦା ମୁଣ୍ଡ, ଛାତିଉପରକୁ ପହଁରି ଯାଉଥିବା ଧଳା ଦାଢି, ବାଁ ଭ୍ରୂଲତା ଉପରେ ହନୁମାନଙ୍କ ଲାଗି ସିନ୍ଦୂରର ଲାଞ୍ଛନ । ଝପଟି ଚାଲୁଥିବା, ତ୍ରିନାଥ ଗୋସାଇଁ ଏବଂ ହନୁମାନ ଠାକୁରଙ୍କ ଛଡ଼ା ପୃଥିବୀରେ ହୁଏତ ଆଉ କାହାକୁ ଖାତିରି କରୁନଥିବା ଅମଣିଆ ମଣିଷ, ମୋ ନନା, ପୁଞ୍ଜିକୟାଁର ସମ୍ରାଟ୍ ଆଉ ପୁଞ୍ଜିକୟାଁର ଫକୀର ମଧ ।

....................

ଜିପ୍ ଛତ୍ରପୁର ବଙ୍ଗଳାରେ ପହଞ୍ଚିଲା । ଜିପ୍ ପଛରୁ ଚଟାପଟ୍ ଓହ୍ଲେଇ ପଡ଼ି ଅର୍ଦ୍ଦଳି ସୁବାରାଓ ବଙ୍ଗଳାର ଲୁହାଗେଟ୍ ଖୋଲିଦେଲା । ସେତେବେଳକୁ ରାତି ଦୁଇ ହେଲାଣି । ଦରୱାନ୍ ସାଇବଙ୍କ ଉଦ୍ଦେଶ୍ୟରେ ସଲାମ୍ ଠୁକିଲା, ସାଇବର ସେ ଆଡ଼କୁ ଲକ୍ଷ୍ୟ ନାହିଁ । ସେ ଜିପ୍‌ରୁ ଓହ୍ଲେଇ ରୁକ୍‌ସାକ୍ ପିଠିରେ ପକେଇ ଚାଲିଲା କୋଠିଆଡ଼କୁ । କଲିଙ୍ଗ ବେଲ୍ ଚିପିଛି କି ନାହିଁ କୋଠି ଭିତରେ ଲାଇଟ୍ ଜଳି ଉଠିଲା ଆଉ ତା'ମେମ୍ ନାଇଟ୍ ଗାଉନ୍ ପିନ୍ଧି ସ୍ୱାମୀଙ୍କୁ ପାଛୋଟି ନେବାପାଇଁ ବାହାରକୁ ଚାଲିଆସିଲା । ଚୁମ୍ବନ ଦିଆନିଆରେ ପ୍ରାଥମିକ ଅଭିବାଦନ ସରିଲା । ସାଇବ ତା'ପିଠିରୁ ରୁକ୍‌ସାକ୍ ଓହ୍ଲଉନାହିଁ, ଖାଲି କହୁଛି, 'ସମ୍ ଥିଙ୍ଗ୍ ଭେରି ସ୍ପେଶାଲ୍ ଫର୍ ୟୁ ।' ମେମ୍ ଲଥ୍ କରି ତା' ପଲଙ୍କ ଉପରେ ବସିପଡ଼ିଲା । ସାଇବ ତା ପାଖରେ ବସି ରୁକ୍‌ସାକ୍ ଖୋଲିଲା । ଦି'ଟା କଳା ଭାଲୁଛୁଆ ଅଖା ମୁଣା ଭିତରୁ ପଦାକୁ ବାହାରି ଆସିଲେ । ସାଇବ ମହା ଆନନ୍ଦରେ ସେମାନଙ୍କୁ ଉଠେଇ କୋଳରେ ଧରିଲା ଆଉ କହିଲା 'ମିଲ୍କ୍, ଦେ ମଷ୍ଟ ବି ହଙ୍ଗ୍ରି ।' ମିସେସ୍ ଟିପ୍‌ନି ରନ୍ଧା ଘରେ ମିଲକ୍ କ'ଣ ଖୋଜିବ ? ଭାବିଲା ନାଇଟ୍ ଗାଉନ୍ ଖୋଲିଦେଇ ନିଜ ଥନ ବେଶ୍ ସେମାନଙ୍କୁ ମେଣ୍ଟେଇ ଦେବ । ଭାଲୁ କ'ଣ ମଣିଷ କ'ଣ ଛୁଆତ, ସିଏ ସିମିତି କଲାବି, ସାଇବ କହିଲା, 'ନୋ ଡାର୍‌ଲିଙ୍ଗ୍,' ନୋ, ନୋ, ଦେ ଡୋନ୍‌ଟ ଡିସର୍‌ଭ୍, ଦିଜ୍ ଆର୍ ନେଟିଭ୍ ପପିସ୍ । ମିସେସ୍ ଟିପ୍‌ନି ମାତୃତ୍ୱର ଅଜଣା ପୁଲକରେ ପଲ୍ଲବିତ ହେଇଯାଉଥାଏ । ଆନନ୍ଦର ଆତିଶଯ୍ୟରେ ତା'ର ଆଖି ମୁଦିହେଇଗଲା । ଏ ଭିତରେ ଭାଲୁଛୁଆ ଦି'ଟା ବାଟ ଗୁରୁଣ୍ଡି ଗୁରୁଣ୍ଡି ଖଟ ତଳକୁ ପଳେଇ ଯାଇଛନ୍ତି । ତା' କୋଳରେ ମିଷ୍ଟର ଟିପ୍‌ନି ଆଉଜିପଡ଼ି ଦୁଗ୍ଧପୋଷ୍ୟ ସନ୍ତାନ ଭଳି ମେମ୍‌ର ସ୍ତନକୁ ଉତ୍‌ଖାତ କରିବାରେ ଲାଗିଛି ।

Digitized by srujanika@gmail.com

କମଳାକାନ୍ତ ମହାପାତ୍ର

## ରୂପଜୀବୀର ଡାଏରୀ

ରୂପଜୀବୀ ଶବ୍ଦର ଯେଉଁ ବ୍ୟାପକ, ବ୍ୟାପ୍ତ ସଂଜ୍ଞା ଏ ବହିରେ ଗୃହୀତ, ତାକୁ ଉଦାର ଓ ଅକୁଣ୍ଠିତ ଭାବେ ପ୍ରୟୋଗ କଲେ, କେବଳ ଦିନନାଥ ପାଠୀ ଓ ତାଙ୍କପରି ଚିତ୍ରଶିଳ୍ପୀ ନୁହଁନ୍ତି, ସାଂପ୍ରତିକ ଓଡ଼ିଆ ସମାଜର ବେଶୀ ଭାଗ ଲୋକ ରୂପଜୀବୀ ମନେହେବା ଆଦୌ ବିଚିତ୍ର ନୁହେଁ । ଯେଉଁମାନେ ରୂପଜୀବୀ ଶ୍ରେଣୀର ନୁହଁନ୍ତି, ସେମାନେ ଯିବେ ଗରାଖ-ଯୋଗାଡ଼ିଆ, ଦଲାଲ, ଭାଡୁଆ ପିମ୍ପ୍, ଗୋଷ୍ଠୀରେ । ମହତ ଓ ଇତର, ପ୍ରଶାସକ ଓ ପ୍ରଶାସିତ, ଚିତ୍ରକାର ଓ ଠିକାଦାର ଓ ଅନ୍ୟାନ୍ୟ ବହୁ କିସମର ରୂପଜୀବୀ ଓ ଦଲାଲଙ୍କ ଚରିତ୍ର, ଆବେଗ, ଆଚରଣ, ଅଭିନୟ, ପ୍ରହସନ ପାଠୀଙ୍କ ଆତ୍ମଜୀବନୀର ଚତୁର୍ଥ ଖଣ୍ଡରେ ଅତ୍ୟନ୍ତ ନାଟକୀୟ ଓ ସଫଳ ଭାବେ ଚିତ୍ରିତ । ରୂପଜୀବୀ ଶବ୍ଦଟି ଲିଙ୍ଗ ନିରପେକ୍ଷ, ଏ ବହିରେ ନାରୀ ଅପେକ୍ଷା ପୁରୁଷ ରୂପଜୀବୀ ସଂଖ୍ୟା ଅନେକ ଅଧିକ ।

**ରୂପଜୀବୀର ଡାଏରୀ, ନିଃସନ୍ଦେହରେ, କେବଳ ୨୦୦୯ ମସିହାର ନୁହେଁ, ଅଦ୍ୟାବଧି ଉପଲବ୍ଧ ଓଡ଼ିଆ ଆତ୍ମଜୀବନୀ ସାହିତ୍ୟ ପରିପ୍ରେକ୍ଷୀରେ ଏକ ସ୍ମରଣୀୟ ପ୍ରକାଶନ । ଏହାକୁ ଏକ ମାଇଲଖୁଣ୍ଟ ବୋଲି କହିବାରେ ମୋର ସାମାନ୍ୟତମ ଦ୍ୱିଧା ନାହିଁ । ଗତ ଦଶବର୍ଷରେ ଓଡ଼ିଆ ସାହିତ୍ୟର ଆଉ ଅନ୍ୟ ବିଭାଗରେ ଉଲ୍ଲେଖନୀୟ ବିବର୍ତ୍ତନ ଘଟିଥାଉ ବା ନଥାଉ ସ୍ମୃତି ସାହିତ୍ୟ ବା ଆତ୍ମଜୀବନୀ ସାହିତ୍ୟ ବିଭାଗରେ ଯେଉଁ ବିପୁଳ ବିକାଶ, ଉଭୟ ସଂଖ୍ୟାତ୍ମକ ଓ ଗୁଣାତ୍ମକ ଘଟିଛି ରୂପଜୀବୀର ଡାଏରୀ ସେଇ ଅନାଲୋଚିତ କିନ୍ତୁ ପୁନର୍ଜୁଦୀପିତ ଆଲୋଡ଼ନର ଏକ ବଳିଷ୍ଠ ସ୍ୱର ଓ ପ୍ରତୀକ ।**

ଏଇ ଆତ୍ମଜୀବନୀ ପଢ଼ିବା ପରେ ପାଠକ ଗୋଟିଏ ବୃହତ୍ତର ଉପଲବ୍ଧିରେ ପହଞ୍ଚେ, ସ୍ୱାଧୀନୋତ୍ତର ଓଡ଼ିଶାରେ ଚିତ୍ରକଳାକୁ ଆଦରି ଜୀବିକା ଅର୍ଜନ କରିବା ଥିଲା ସେତିକି ବା ତା'ଠୁ ବେଶୀ କଷ୍ଟଦାୟକ ଯାହା ହୁଏତ ଥିଲା ୟୁରୋପରେ ନବଜାଗରଣ ବା ରେନେଁସା ପୂର୍ବରୁ । ଓଡ଼ିଆ ସମାଜ, ଅର୍ଥନୀତି ଓ କଳା-ମାନସିକତା ଏବେ ବି ଏତେ ଅନଗ୍ରସର, ଏଠିକା ଉଚ୍ଚବିତ୍ତ ଓ ଉଚ୍ଚମଧ୍ୟବିତ୍ତ ବର୍ଗରେ କଳାପ୍ରେମ, କଳାପ୍ରବଣତା କଳା-ପୃଷ୍ଠପୋଷକତାର ଏତେ ଅଭାବ ଯେ ଚିତ୍ରକଳା ଉପରେ ସଂପୂର୍ଣ୍ଣ ନିର୍ଭର କରିବା ପରିଣାମ ଭାନ୍‌ଗୋ ବା ସେହିଭଳି କେଉଁ ଶିଳ୍ପୀ ପରି ଚିରଦାରିଦ୍ର୍ୟ ଓ ଅବହେଳାରେ ଉବୁଟୁବୁ ହୋଇ ଶେଷରେ ମରିବା । ଏ ଜୀବନ ସଂଘର୍ଷପୂର୍ଣ୍ଣ, ଅବହେଳିତ, ଅସମ୍ମାନିତ, ଯଦିଓ ଆମ କଳା ଓ ସଂସ୍କୃତିର ଗାରିମା ବିଷୟରେ ଭାଷଣ ନଦେଲେ ଆମର ନିଦ ହୁଏ ନାହିଁ । ଏଠି କେବଳ ଥିଲା ଘର ପିଲା କଳା ନିଶା କରିପାରେ, ଯଦି ତା ପରିବାର ତାକୁ ଚିରକାଳ ନିଃସର୍ତ୍ତ ଆର୍ଥିକ ସାହାଯ୍ୟ ଦେବାରେ କାର୍ପଣ୍ୟ ନକରେ । **କିନ୍ତୁ ଦିଗ ଦିଶୁନାହିଁ ଦିବସ ଅନ୍ଧାର ଦିଗପହଣ୍ଡିର ଜଣେ ଡ୍ରଇଁ ମାଷ୍ଟର କପାଳରେ ସେ ସୌଭାଗ୍ୟ ନଥିଲା । ତେଣୁ ସେ ଖୋଜି ବୁଲିଲେ ସରକାରୀ ଚାକିରି । ଯେଉଁ ସମାଜରେ ସରକାରୀ ଚାକିରି, ଯାହା ହୋଇଥାଉ ନା କାହିଁକି ଯେତେ ଉଚ୍ଚ ବା କ୍ଷମତା ସଂପନ୍ନ, ଜୀବିକାର୍ଜନର ମୁଖ୍ୟ ଓ ଆରାଧ୍ୟ ମାର୍ଗ, ଯେଉଁ ସମାଜରେ ସରକାରୀ ଚାକିରିଆ ନୂତନ ସାମନ୍ତବାଦର ପ୍ରତୀକ, ସେଠି କଳା ଓ କଳାକାର ଅପାଂକ୍ତେୟ, ସୁଦ୍ଧା ବିଶେଷରେ ଲାଞ୍ଛିତ ।**

ଅଷ୍ଟାଦଶ ଶତାବ୍ଦୀ ୟୁରୋପର ସମାଜରେ କଳାର ଯେଉଁ ପରମ୍ପରା ଓ କପର୍ଦ୍ଦକଶୂନ୍ୟ ଯାଯାବରୀ ଅସାମାଜିକ କିନ୍ତୁ କଳାପ୍ରାଣଗତ ଶିଳ୍ପୀ ପାଇଁ ପ୍ରେରଣାର ଅନ୍ୟ ଯେଉଁ ଉପଦାନ ସମାଜ ଯୋଗେଇ ଦେଇଥିଲା ସେତେକ ମଧ୍ୟ ଓଡ଼ିଶାରେ ଉଣେଇଶ ଶହ ଷାଠିଏ ବେଳକୁ କିମ୍ବା ଏବେବି ମହଜୁଦ ବୋଲି ମନେ ନହେଉଥିବା ବେଳେ ଜଣେ ତରୁଣ, ବିଶେଷ କରି ନିମ୍ନବିତ୍ତ ଶ୍ରେଣୀର ତରୁଣ ଶିଳ୍ପୀ ହୋଇ ବଞ୍ଚିବା ପାଇଁ ନିଷ୍ପତ୍ତି ନେବା ଅସମ୍ଭବ ଭାବେ ବୈପ୍ଲବିକ । ସାରା ବହିରେ କିଏ କଳାକୁ

Digitized by srujanika@gmail.com

ଭଲପାଏ ବୋଲି ଆପ୍ଲୁତ ଚିତ୍ତରେ କହିବାର ଉଦାହରଣ ମାତ୍ର ଗୋଟିଏ ଡ୍ରଇଁ ଶିକ୍ଷକ ହେବା ପାଇଁ ସାକ୍ଷାତକାର ସାରି ପାଠୀ ଭବାନୀପାଟଣାରୁ ବସରେ ଫେରୁଥିବା ବେଳେ ଜଣେ ସୁନ୍ଦରୀ ସହଯାତ୍ରିଣୀଙ୍କଠାରୁ କଳା ଓ ପ୍ରତିଭା କାଳେ ପ୍ରେମପ୍ରବର ତରୁଣୀଙ୍କୁ ଆକର୍ଷଣ କରିଥାଏ ଅଗ୍ନି ପତଙ୍ଗକୁ ଆକର୍ଷଣ କଲାପରି, ପ୍ରେମ ପ୍ରଣୟର ପ୍ରାଚୁର୍ଯ୍ୟ କାଳେ ଶିଳ୍ପୀକୁ ତାର ଆର୍ଥିକ ଦୂରବସ୍ଥା ଓ ଦୁର୍ଗତିକୁ ଉପହାସରେ ଉଡ଼ାଇ ଦେବା ପାଇଁ ସାହାଯ୍ୟ କରିଥାଏ । କିନ୍ତୁ ଏ ପ୍ରକାର ବିବାଦୀୟ ହେଲେ ମଧୁର ଆଶା ଓ ଆଶ୍ୱାସନାର ଯଥେଷ୍ଟ ନମୁନା ପାଠୀଙ୍କ ଆତ୍ମଜୀବନୀରେ ନଦେଖି ମୋର ଏବେ ବଦ୍ଧମୂଳ ଧାରଣା ଯେ ଓଡ଼ିଆ ଶିଳ୍ପୀର ଜୀବନ ଦ୍ୱିବିଧ ଦୁଃସ୍ଥ । ତ୍ରିବିଧ କହିଲେ ଆହୁରି ଠିକ୍ । ଯଶ, ଅର୍ଥ, ଅଯାଚିତ ପ୍ରେମ-ତାର କ'ଣ କାହିଁ? **ରୂପଜୀବୀର ଡାଏରୀ** ୧୯୬୪ରୁ ୧୯୮୪ ପର୍ଯ୍ୟନ୍ତ କୋଡ଼ିଏ ବର୍ଷର କାହାଣୀ । ଏଇ କୋଡ଼ିଏ ବର୍ଷର ସରକାରୀ ଚାକିରିରେ ରହିଛି ଚାରୋଟି ସତନ୍ତ୍ର ଅନୁଷ୍ଠାନର ଅନୁଭୂତି । ତିନି ବର୍ଷ ଯୋଜନା ଓ ସମନ୍ୱୟ ବିଭାଗ, ପାଞ୍ଚବର୍ଷ କେନ୍ଦ୍ରୀୟ ବିଦ୍ୟାଳୟ, ସାତବର୍ଷ ରାଜ୍ୟ ସଂଗ୍ରାହଳୟ, ପାଞ୍ଚବର୍ଷ ରାଜ୍ୟ ପର୍ଯ୍ୟଟନ ଉନ୍ନୟନ ନିଗମ ଅନୁଭୂତି । ଏହାଛଡ଼ା ରହିଛି ଭୁବନେଶ୍ୱରରେ ପ୍ରଥମ କଳା ବିଦ୍ୟାଳୟ ସ୍ଥାପନ ଓ ଓଡ଼ିଶାର ପ୍ରଥମ ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ ପ୍ରତିଷ୍ଠା, ପରିଚାଳନା ଓ ଅନ୍ୟାନ୍ୟ ବହୁ ଅନୁଭୂତି । ପ୍ରତି ବିଭାଗ ଓ ଅନୁଷ୍ଠାନ ଗୋଟିଏ ଗୋଟିଏ କ୍ଷୁଦ୍ର ସଂସାର-ସଂସାର ଭିତରେ ସଂସାର । ପ୍ରତି ସଂସାରର ଅଭିପ୍ସା, ଉଦ୍‌ବେଳନ ଆଲୋଡ଼ନ ସେ ସଂସାରର ବାସିନ୍ଦାଙ୍କ ଚିତ୍ତବୃତ୍ତି, ପ୍ରବୃତ୍ତି, ସେମାନଙ୍କ ସହିତ ପାଠୀଙ୍କର ଗଢ଼ିଉଠିଥିବା ସମ୍ପର୍କର ଅନ୍ତରଙ୍ଗ ଆଲୋଚନା, ସମାଲୋଚନାରେ **ରୂପଜୀବୀର ଡାଏରୀ** ପ୍ରାଣବନ୍ତ । ଏଇ କୋଡ଼ିଏ ବର୍ଷରେ ପାଠୀ ଅନେକ ଲୋକଙ୍କ ସଂସ୍ପର୍ଶରେ ଆସିଛନ୍ତି । ଶିଳ୍ପୀ, ଶିଳ୍ପକର୍ମୀ, ଶିକ୍ଷକ, ଛାତ୍ର, କର୍ମଚାରୀ, ପ୍ରଶାସକ, ନେତା, ମନ୍ତ୍ରୀ, ଠିକାଦାର, ସହକର୍ମୀ, ଉପରିସ୍ଥ, ଅଧସ୍ତନ, ଗୁଣୀ, ମୁଖ୍ୟ, ପଣ୍ଡିତ, ଉଦାର, ଅନୁଦାର, ମଣିଷ ଓ ଅମଣିଷ । ପାଠୀ ବର୍ଣ୍ଣିତ ସଂସାରରେ ସାଙ୍ଗ ସବୁବେଳ ପାଇଁ ସାଙ୍ଗ ନୁହେଁ । ଗୁରୁ ନିଧାର୍ଯ୍ୟଭାବେ ଶୁଭାକାଂକ୍ଷୀ ନୁହେଁ । ଏଠି ପ୍ରତିବେଶୀ ପ୍ରତିଦ୍ୱନ୍ଦୀ, ଉପରିସ୍ଥ ଅସହିଷ୍ଣୁ ଓ ଅସମର୍ଥ, ତା ପିଛ ଏତେ ଟିକିଏ । ଏଠି ସମସ୍ତେ ଧାଇଁଛନ୍ତି ଆପଣା ସୁରକ୍ଷା ପାଇଁ । ସାମର୍ଥ୍ୟ ଦେଖାଇ ପ୍ରଶଂସା ପାଇବା ପାଇଁ । ପଦୋନ୍ନତି ପାଇଁ । ଏଠି ସମସ୍ତେ କୁକୁର, ପରସ୍ପରକୁ କାମୁଡ଼ି କାମୁଡ଼ି କରି ପକେଇବା ପାଇଁ ସତତ ତିଆର । କାମୁଡ଼ି ନ ପାରିଲେ ଭୁକିବା ମନାନାହିଁ । ଏଠି କେହି କାହାକୁ ଘଣ୍ଟ ଘୋଡ଼ାଇବାକୁ ନାହିଁ । କେବେ କେମିତି ଘଟଣା ଚକ୍ରରେ ଘୋଡେଇଲେ କୋଉ ଅନୁଚାରିତ ସାର୍ଥ ପାଇଁ । ଏଇ ସବୁ ଜୀବନ ସମସ୍ୟା ଭିତରେ ଦେଇ ଗଲାବେଳେ ସାଧାରଣ ପ୍ରତିରୋଧ, ପ୍ରତିବାଦ, ମତଭେଦ, ଷଡ଼ଯନ୍ତ୍ର ଭଳିଲାଗେ ଓ ସଂସାରର ଅଧା ଲୋକ ଶତ୍ରୁ ବୋଲି ମନେ ହୁଅନ୍ତି । ତା ଛଡ଼ା ପାଠୀ ନିଜର ପାରିବା ପଣ ସବୁବେଳେ ଦେଖେଇ ହୋଇ ଅଡୁଆରେ ପଡ଼ିବା କଥା ସୀକାର କରିଛନ୍ତି । ସେ ଆଦୌ ଦାବି କରି ନାହାଁନ୍ତି ଯେ ସେ ଏକା ସତ୍ୟନିଷ୍ଠ, ନ୍ୟାୟବାନ ଓ କର୍ତ୍ତବ୍ୟ ପରାୟଣ । ସେ ବି କଣ୍ଟା କାଢ଼ିବାକୁ କଣ୍ଟାର ସାହାଯ୍ୟ ନେଇଛନ୍ତି । ଲଢ଼େଇ ଅବଶ୍ୟମ୍ଭାବୀ ହୋଇଥିଲେ ହାତ ପାହାନ୍ତାରେ ଥିବା କଳଙ୍କି ଲଗା ଢାଲ ତଲୁଆର ଉଠାଇଛନ୍ତି । କିଛି ନହେଲେ ଗୁଡ଼ିଏ ଦୋକ୍ଷରୀ ଶବ୍ଦ ଲଗାଇ ବହେ ଗାଳି ଦେବାକୁ କୁଣ୍ଠିତ ହୋଇନାହାନ୍ତି । ତେବେ ବଡ଼ କଥା ହାରି ଯାଇଥିବା ମୁହୂର୍ତ୍ତ ଗୁଡ଼ିକର ସ୍ମୃତି ଆତ୍ମଜୀବନୀରୁ ନିର୍ବାସିତ କରିଦେଇ ନାହାଁନ୍ତି । ସରକାରୀ କଳର ଜୀବନକୁ ସେ ତୁଳନା କରିଛନ୍ତି । ଏକାନ୍ତ ପ୍ରଜୁଜ୍ୟ ଭାବେ ସାପ ଶିଡ଼ି ଖେଳ ସହିତ ବେଳେ ଶିଡ଼ିରେ ଧଡ଼ଧାଡ଼ ଉଠିଯାଇ ହେବ ତ ଅନ୍ୟବେଳେ ସାପ ହାବୁଡ଼ରେ ପଡ଼ି ନୟାନ୍ତ ହେବାକୁ ପଡ଼ିବା ବେଳେ ଅବସ୍ଥା ଚକ୍ରରେ ସାପ ହୁଏ ଶିଡ଼ି ଓ ଶିଡ଼ି ସାପ ।

**ଏଇସବୁ ସରକାରୀ, ବେସରକାରୀ ସମ୍ପର୍କ ଭିତରେ ଅନ୍ତତଃ ଗୋଟିଏ ସମ୍ପର୍କ ଯେ ପାଠୀଙ୍କ ଜୀବନର ବୈଧିକ ଗତିପଥ ଓ ଆଭିମୁଖ୍ୟରେ ଗଭୀର ପରିବର୍ତ୍ତନ ଆଣିଲା ସେକଥା ସେ ଏକାଧିକ ଥର ସଶ୍ରଦ୍ଧ ସୀକାର କରିଛନ୍ତି । ଏବର୍‌ହାର୍ଡ଼ ଫିସର୍‌ଙ୍କ ସହିତ ପରିଚୟ, ବନ୍ଧୁତା ଓ ସହଗବେଷଣା । ଦୁହେଁ ଏକାଠି ମିଶି ଓଡ଼ିଆ କଳା ଓ ସଂସ୍କୃତି ଉପରେ ଅନେକ**

Digitized by srujanika@gmail.com

**ଉପାଦେୟ ଗବେଷଣା ଗ୍ରନ୍ଥ ପ୍ରକାଶ କରିଛନ୍ତି । ଏ ଦୃଷ୍ଟରୁ ସେଦୃଷ୍ଟ ହୋଇ ତରବରିଆ ଉଚ୍ଚାରଣରେ ଦିନନାଥ ପାଠୀ ଡିନ୍ନର ପାର୍ଟି ବୋଲି ଶୁଭିବା ଓ ବାରମ୍ବାର ଡିନ୍ନର ପାର୍ଟି କଥା ଉଠିଲେ ଫିସର ଦମ୍ପତି ଆତଙ୍କିତ ହୋଇଯିବା ପ୍ରସଙ୍ଗ ପଢ଼ିଲା ବେଳେ ଆମୋଦିତ ପାଠକର କଲେଜ ବେଳର ଏକ ଗୁଳି ଇଂରାଜୀ ବାକ୍ୟ 'ମେରୀ ଗନ୍ ଫର ଟି' କୁ ତରବରିଆ ହୋଇ କହିଲେ ତାହା ହାସ୍ୟୋଦ୍ଦୀପକ କିନ୍ତୁ ସାମାନ୍ୟ ଅଶ୍ଳୀଳ ହିନ୍ଦି ବାକ୍ୟ ପରି ଶୁଭେ ।**

ବେଳେବେଳେ ଗୋଟିଏ ବନ୍ଧୁତା ଯେ ଏକ ନୀରବ ସାଂସ୍କୃତିକ ଆଲୋଡ଼ନ ସୃଷ୍ଟି କରିବାରେ ସମର୍ଥ ପାଠୀ- ଫିସର୍ ବନ୍ଧୁତା ତାର ଉଦାହରଣ । ଦୀର୍ଘ ଦିନ ପରସ୍ପର ପ୍ରତି ସମ୍ମାନ, ଆକର୍ଷଣ ସହ ମହାଭାବପନ୍ନତା ନଥିଲେ ଫିସର୍ ହୁଏତ ଓଡ଼ିଶା ଉପରେ ଏତେ ପରିମାଣରେ ଉଚ୍ଚକୋଟୀର ଗବେଷଣା କରିବାକୁ ସୁଯୋଗ ପାଇନଥାନ୍ତେ କି ପାଠୀ ସକ୍ଷମ ହୋଇନଥାନ୍ତେ । ଏଇ ଅବସରରେ ଏତିକି କହିବା କଥା ଯେ ଜଣେ ବିଦେଶୀଙ୍କୁ ବନ୍ଧୁରେ ପରିଣତ କରିବା କିଛି ଊଣା ବ୍ୟକ୍ତିଗତ ସଫଳତା ନୁହେଁ । ଆମେ ଯେତେ ବେଶୀ ସଂଖ୍ୟାରେ ଏଥିରେ ସଫଳ ହେବା ସେତେ ବେଶୀ ସଂଖ୍ୟାରେ ଆମ ସଂସ୍କୃତି ସମ୍ବନ୍ଧରେ ଗଭୀର ଗବେଷଣା କଲାଭଳି ଡୋନାଲ୍ଡସନ, ବୋଲ୍ଟନ ଫ୍ରିମ୍ୟାନ୍, କୁଲ୍‌କେ, ଷ୍ଟେଟେନ୍‌କ୍ରନ୍‌ଙ୍କ ଭଳି ଗବେଷଣା ଓ ପଲ୍ ସେଣ୍ଟ-ପିୟର ଓ ମରିଚିଓ ଆଗୁଇଲେରାଙ୍କ ପରି ଅନୁବାଦକ ଓ ସଂପାଦକ ପାଇପାରିବା । ଆମ ସାଂସ୍କୃତିକ ବିକ୍ଷେପଣରେ ଏହା ଅତ୍ୟନ୍ତ ସହାୟକ ।

ଜୀବନରେ ଦେଖିଥିବା, ଜାଣିଥିବା ଜାଗା, ବସ୍ତୁ, ମଣିଷ, ସମାଜର ଚିତ୍ର ସମ୍ଭାରରେ ଏଇ ଆତ୍ମଜୀବନୀ ଏତେ ବର୍ଣ୍ଣିଳ, ଏଥିରେ ତଥ୍ୟ ପ୍ରତି ରହିଛି ଏପରି ସଜୋର ସଚେତନତା, ସେ ଅସୁମାରୀ ଉଦାହରଣରୁ ଅଳ୍ପ କେତୋଟି ଉଦ୍ଧାର ନକରି ରହି ପାରୁନାହିଁ ।

(୧) ଉଣେଇଶ ଶହ ଷାଠିଏ ବେଳର 'ଧବଳ ଟଗର କଟକ ସହର'ର ସର୍ବସାଧାରଣ ମ୍ୟୁନିସିପାଲିଟି ପାଇଖାନା, 'ପରିତ୍ୟକ୍ତ ତମାଖୁ ଗୁଡ଼ାଖୁ, ଖଣ୍ଡିଆ ଅନିର୍ବାପିତ ବିଡ଼ିର ଦୁର୍ଗନ୍ଧ ସାଙ୍ଗରେ ସହସ୍ର ଲୋକଙ୍କ ମୁତ ଓ ଖଙ୍କାର...' ଭୁକ୍ତୋଭୋଗୀ ବୁଝିବେ ।

(୨) ଉଠା ଚୂଲି, 'ତଳୁ ମୁଠୁଣିଏ ଉଚ୍ଚାର ସିଲିଣ୍ଡର, ତଳପଟ ବନ୍ଦ, ଉପର ମୁହଁ ଖୋଲା, ଫନ୍ଦରେ ଲୁହାର ତିନୋଟି କାନି, ଭିତରକୁ ଓଲଟାଇ ରଖିଲେ ତା ଉପରେ ହାଣ୍ଡି, ଡେକଚି ବସିବା ପାଇଁ ବଇଠା ମିଳିଯାଏ । ଛୋଟ ବିଡ଼ିକାଠ ଜଳିବା ପାଇଁ ସିଲିଣ୍ଡର ତଳକୁ ଗୁଡ଼୍ ପ୍ରମାଣେ ମୁହଁଟିଏ । ଗୋଟିଏ ଟିଣର ରେଳବାଡ଼ି ଭଳି ନଳିଟିଏ ମଝିରେ ଠିଆ କରି ସିଲିଣ୍ଡର ପେଟରେ କରତ ଗୁଣ୍ଡ ଖୁନ୍ଦିବାକୁ ହୁଏ । ଖୁନ୍ଦା ସରିଲେ ଟିଣ ନଳିଟିକୁ ବାହାର କରି ଆଣିଲେ ମଧ ତାହା ଧସେଇ ଯାଏ ନାହିଁ । ସେହି ବାଟ ଦେଇ ହାଣ୍ଡିକୁ ଧାସ ବାଜେ ।' **ଯଦି ଓଡ଼ିଶାରେ କେବେ ସାଧାରଣ ଜନଜୀବନର ସଂଗ୍ରହାଳୟ ଗଢ଼ିଉଠେ ଓ ସେଠି ଏକଦା ସହରାଞ୍ଚଳରେ ନିତ୍ୟବ୍ୟବହୃତ ବସ୍ତୁ ହିସାବରେ ଉଠା ଚୂଲିଟିଏ ରଖାଯାଏ ତା'ହେଲେ ଦର୍ଶକଙ୍କ ଗୋଚରାର୍ଥେ ପାଠୀଙ୍କ ଏଇ ସଂକ୍ଷିପ୍ତ ଅଥଚ ପ୍ରାଞ୍ଜଳ ବର୍ଣ୍ଣନାକୁ ବଡ଼ ଅକ୍ଷରରେ ଲେଖି ସେଠି ଟଙ୍ଗାଇବା ନିଧାର୍ଯ୍ୟ । ଏଭଳି ତଥ୍ୟପୂର୍ଣ୍ଣ ବର୍ଣ୍ଣନା ପଢୁଥିବା ବେଳେ ପାଠୀ ଉଚ୍ଚକୋଟୀର ଗଦ୍ୟଶିଳ୍ପୀ ମନେହୁଅନ୍ତି ।**

(୩) ଚାକିରି ଖୋଜିବା ବେଳେ ଯୋଗ୍ୟତା ପ୍ରମାଣପତ୍ର ଓ ପ୍ରଶଂସାପତ୍ର ରଖିବା ପାଇଁ ପଚିଶ ଟଙ୍କା ପଡୁଥିବା ଆଟାଚି ବା ବ୍ରିଫ୍‌କେସ୍ ନ କିଣିପାରି ହାତରେ ତିଆରି କରାଇଥିବା ବାକ୍ସ ଚାହା ପେଡ଼ି ପଟାରେ ପତଳା ବାକ୍ସଟିଏ ବନେଇଲି । ଆଲତରାପ୍ ହେଣ୍ଡେଲ୍ ଲାଗି ଗ୍ରେ ରଙ୍ଗ ଚଢ଼ିଲା ପରେ ବାକ୍ସଟି ଅତର ବିକାଳୀଙ୍କ ହାତ ପେଡ଼ି ପରି ପ୍ରତେ ହେଲା । ଦିଗପହଣ୍ଡିକୁ ମଝିରେ ମଝିରେ ବାରବୁଲା ପଠାଣ ଏମିତି ପତଳା ବାକ୍ସ ଭିତରେ ବିଭିନ୍ନ ଶିଶିମାନଙ୍କରେ ଭର୍ତ୍ତି ନାନା ବର୍ଣ୍ଣର, ନାନା ବାସ୍ନାର ଅତର ଆଣି ଆସନ୍ତି ଓ ସଦ୍ୟ ବୟସ ଗଜୁରୁଥିବା ଝିଅ, ନୂଆ ବାହା ହୋଇଥିବା ବୋହୂମାନଙ୍କୁ ଭେଳେକେଇ ପକାନ୍ତି ।

Digitized by srujanika@gmail.com

(୪) ପାଠୀଙ୍କ ପ୍ରଥମ ଏକକ ଭଡ଼ାଘର, ଗୋଟିଏ ବଖରିଆ କହିବା ଠିକ୍ ହେବନି । ଘରର ଅମର୍ଯ୍ୟାଦା ହେବ । ବଖରାର ପଛପଟେ ଆଠ ଚାରିର ରନ୍ଧାଘର ଏବଂ ଛଅ ଚାରିର ପାଇଖାନା ଓ ଗାଧୁଆ ଘର..... ବଡ଼ ବଖରାଟିକୁ ମୁଁ ଚଟାଣରେ ଗାର ଟାଣି ଭାଗ ଭାଗ କରି ଦେଇଥାଏ । ଏଇ ଭାଗ ବା ଘରା ମୁଁ ଚିହ୍ନଟ କରିଥାଏ । ବୈଠକଖାନା, ଶୋଇବା ଘର, ପଢ଼ାଘର ଓ ଠାକୁର ଘର ।

(୫) ଜଣେ ଚିହ୍ନା ଲୋକ, ନାମ ଦିବାକର ଶତପଥୀ, ଧପ୍ ଧପ୍ ଗୋରା ଚେହେରା । ମୁଣ୍ଡରେ କୁଞ୍ଚୁକୁଞ୍ଚିଆ ବାଳ । ବେଶ୍ ଜମାଣିଆ ହଳେ ନିଶ, ସେଥିରୁ କିଛି ସାମାନ୍ୟ କହରା, ଆଖି ଚିଲ୍ଲା ।

(୬) ଆଉ ଜଣେ ସେଣ୍ଟ୍ରାଲ ସ୍କୁଲର ଅଧକ୍ଷ, ଗେଡ଼ା ନିଦା ଚେହେରା, ମୋଟା ଓଠ, ଭ୍ରୂରେ ଓ କାନ ମୂଳେ ଗୋଛାଏ ବାଳ.... ତାଙ୍କ ସ୍ତ୍ରୀ, ବଡ଼ ଡଉଲଡ଼ାଉଲ । କାଚ କଣ୍ଢେଇ ଭଳି ଚେହେରା । ଗୋରୀ । ହରିଣୀ ଭଳି ଚଳଚଞ୍ଚଳ ଆଖି..... ଗେଡ଼ୀ ।

(୭) ତେଲ ମାଲିସ୍ ଖାଉଥିବା ବେଳେ ବୀରେନ୍ ମିତ୍ର, ପ୍ରଶସ୍ତ ମାଂସଳ ଲୋମହୀନ ଛାତି, ବିପୁଳ ଭୁଜଯୁଗଳ, ମୋଟା ରୋଟା ଗର୍ଦ୍ଦନ, ଫାଲୁକା ମୁହଁ, ନାକ ତଳେ ସରୁ ନିଶ.... ଛୋଟକାଟର ଗୋଟିଏ ଗୁଣ୍ଡୁଣୀ ହାତୀ, ଏହା ସାଙ୍ଗକୁ ମନେପକାନ୍ତି ଗୋଦାବରୀଶ ମହାପାତ୍ରଙ୍କ ବ୍ୟଙ୍ଗୋକ୍ତି ଲୁଚିଛୁ ନା ଗୋଡ଼ ଦେଢଟା ଦିଶୁଛି ଓ ବିରେନ ମିତ୍ରଙ୍କ ରୂପ ବର୍ଣ୍ଣ ସଂପୂର୍ଣ୍ଣ ।

(୮) ନିରାପଦ ଦୂରତାରୁ ପ୍ରଶାସକ ପରିବେଷ୍ଟିତ ବିଜୁ ପଟ୍ଟନାୟକ, ସୁପର ଫାଇନ ଧୋତି ଓ ଧଳା ଫିନ୍ ଫିନ୍ କୁରୁତା ପିନ୍ଧିଥାନ୍ତି । କୁରୁତା ଭେଦି ସେଣ୍ଡୋ ବାନିଆନର ଛାଇ ଫୁଟି ଦେଖାଯାଉଥାଏ । ସେ ଉଦ୍ଦାମ ଭଙ୍ଗୀରେ କଳିଙ୍ଗ ଷଣ୍ଢ ପରି ଖେଦି ଯାଉଥାନ୍ତି । ଆଉ ଦଳେ ତ୍ରସ୍ତକାତର ଅଫିସର ତାଙ୍କ ପଛେ ପଛେ ସିଗାରେଟ୍ ଧୂଆଁ ଭଳି ଲମ୍ବିଥାନ୍ତି ।

(୯) ରାଜ୍ୟ ଯୋଜନା ବୋର୍ଡ଼ ଅଧିନରେ କାମ କରୁଥିବା ଚିତ୍ରଶିଳ୍ପୀର ସରକାରୀ ସୋପାନରେ ନିର୍ଣ୍ଣିତ ସ୍ଥାନ ଘାସକୁ ଛୋଟ ବେଣାକୁ ମୋଟ ।

(୧୦) କନିଆ ଦେଖା - ମୁହଁ ଅନ୍ଧାରରେ କନିଆ ଭଞ୍ଜ ନାୟିକା ଭଳି ଦିଶୁଥାଏ.... (ଚଣ୍ଡାଳ) କନ୍ୟାପିତା ମିଞ୍ଜି ମିଞ୍ଜି ଦୀପ ଆଲୁଆରେ ପୁଆଣି ଘରର ପରିବେଶ ସର୍ଜନା କରିଦେଇଥାଏ । ଏଣେ ଅନ୍ଧାର ଭିତରେ କନିଆ ଚିତ୍ର ପ୍ରତିମା ପ୍ରାୟେ ବ୍ରହ୍ମପୁରୀ ଜଉ ରଙ୍ଗର ପାଟ କୁଞ୍ଚକରି ଅଣ୍ଟା ପାଡିଆଟେ ନାଇ ହୋଇ ଠିଆ ହୋଇଥାଏ । ତେଲୁଗୁ ଢଙ୍ଗରେ ଲମ୍ବାବେଣୀ ଛାତି ଉପରେ ଲମ୍ୱେଇ ଥାଏ । ମୁଣ୍ଡରେ ମୁଠୁଣିଏ ଓଢ଼ଣା । ତାରି ଭିତରୁ ନାକଚଣା ଧ୍ରୁବତାରା ଭଳି ଝଲସୁଥାଏ.... ଆମେ କନିଆ ଦେଖିବୁ ନା କନ୍ୟାପିତାର ଧାରା ବିବରଣୀ ଶୁଣିବୁ । ଝିଅର ଗୋପୀ ଭାଷା, କେଶବ କୋଇଲି ମୁଖ ପଇଠ । ପଣିକିଆ ଉଡ଼ାଙ୍କ ପେଡ଼ାଙ୍କରେ ତା ସରି ଝିଅ ଏ ଖଣ୍ଡ ମଣ୍ଡଳରେ ନାହାଁନ୍ତି ।

ଏଇ ଆତ୍ମଜୀବନୀରେ ସରକାରୀ ଦପ୍ତରରେ ଚାଲୁଥିବା ସଂସାରର ବିପୁଳ ବିଚିତ୍ରତାର ଯେଉଁ ନମୁନା ପାଠୀ ଦେଇଛନ୍ତି, ସାହିତ୍ୟ ଓ ସମାଜ ଉପରେ ଲେଖା ଯାଉଥିବା ପାଠ୍ୟପୁସ୍ତକରେ ସ୍ଥାନ ପାଇବା ଭଳି । ବର୍ଣ୍ଣନାର ତୀକ୍ଷ୍ଣ ଓ ହାସ୍ୟରସ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଗଦ୍ୟ ମନେ ପକାଇଦିଏ । ଦୁଇଟି ମାତ୍ର ଉଦାହରଣ ।

(୧) ସାନ ତଥା ମଝିଆ ବାବୁମାନେ ଅଫିସ୍‌ରେ ପହଞ୍ଚୁ ପହଞ୍ଚୁ ଏଗାର ବାଜିଯାଏ । ବଡ଼ବାବୁ ସେମାନଙ୍କୁ ଅପେକ୍ଷା କରି କରି ଏକରକମ୍ ଗରମ ହୋଇସାରିଥାନ୍ତି । ସେମାନେ ସନ୍ତର୍ପଣରେ ଅଫିସ୍ ପହଞ୍ଚି ବଡ଼ବାବୁଙ୍କ ଟେବୁଲ ପାଖରେ ଦୋଷୀ ଭଳି ଠିଆ ହେବେ । ବଡ଼ବାବୁ ଯାହା ଝିଙ୍ଗାସ ବଚନ କରିବେ, ତାକୁ ଶୁଣି ହଜମ କରିବେ । ଦାନ୍ତ ନେଫେଡ଼ି ଦେବେ । ଏତିକିରେ ବଡ଼ବାବୁଙ୍କ ରାଗ ସାମାନ୍ୟ ଥଣ୍ଡା ହେବ । ତା'ପରେ ସାନବାବୁ ପାନଖଣ୍ଡିଏ ଜରି ଭିତରେ ଗୁଡ଼େଇ, ପଟ୍ଟଚିତ୍ରରେ ଲଳିତା କୃଷ୍ଣଙ୍କୁ ତାମ୍ବୁଳ ଭୁଞ୍ଜେଇଲା ଭଳି ସଂଭ୍ରମରେ ବଡ଼ବାବୁଙ୍କ ହାତକୁ ବଢେଇ ଦେବେ । ବଡ଼ବାବୁ

Digitized by srujanika@gmail.com

ଏଥର ମାଛ ଥୋପ ଗିଳିଲା ଭଳି ମୁହଁକୁ ସାମାନ୍ୟ ଉତ୍‌ଫୁଲ୍ଲ କରି ପାନ ଖଣ୍ଡିକ ଗ୍ରହଣ କରିବେ । ଏ ଭିତରେ ସାନବାବୁ କ୍ୟାଣ୍ଟିନ ଟୋକାକୁ ସ୍ପେଶାଲ ଚାହା ଅର୍ଡ଼ର ଦେଇ ସାରିଥିବେ... (ଅବଶ୍ୟ ଏହା ଉଣେଇଶ ଶହ ସତୁରୀ ଦଶକର ଚିତ୍ର, ଆଜିକାଲିକା ଅବସ୍ଥା ଭିନ୍ନ) ପାଠୀଙ୍କ ବର୍ଣ୍ଣନା ପଢ଼ିଲା ବେଳେ ପାଠକ ମନେପକାଏ ଗୋପୀନାଥ ମହାନ୍ତିଙ୍କ 'ଦାନାପାଣି' ଉପନ୍ୟାସ ଓ ବାମାଚରଣ ମିତ୍ରଙ୍କ କଷ୍ଟେ ପୁତ୍ରଃ କ୍ଷୁଦ୍ରଗଳ୍ପ ।

(୨) ଦ୍ୱିତୀୟ ଉଦାହରଣଟି ସାତ ପୃଷ୍ଠା ବ୍ୟାପୀ ଏକ ସତନ୍ତ୍ର ଅଧ୍ୟାୟ ଓ ଏହାର ଶିରୋନାମା ଓଡ଼ିଶାରେ ଆଇ.ଏ.ଏସ୍. ଅଫିସରଙ୍କ ମହିମା । ଏ ଅଧ୍ୟାୟକୁ ନୂତନ ସାମନ୍ତବାଦର ଚଳନ୍ତି ଓ ଅଚଳନ୍ତି ପ୍ରତିମାମାନେ ପଢ଼ି ଆତ୍ମହରା ହେବାର ସାମାନ୍ୟତମ ଆଶଙ୍କା ନାହିଁ । ଆଇ.ଏ.ଏସ୍. ମହାଭାରତ ବଖାଣି ସାରିବା ପରେ ଶୁକମୁନି କାଳେ ଭାସିଲେ, ପାଠୀଙ୍କ କହିବା ଅନୁସାରେ, ହେ ପରୀକ୍ଷିତ, ତମେ (ଏମାନଙ୍କୁ) ଭଲଭାବେ ଚିହ୍ନ, ଜାଣ । ତାଙ୍କ ଅପାର ମହିମାକୁ ହେଜ । ହୃଦୟଙ୍ଗମ କର । ପିଣ୍ଡରୁ ପ୍ରାଣ ଛାଡ଼ିବା ଯାଏଁ ସେମାନେ ଅପର୍ଯ୍ୟାପ୍ତ ଦୈବୀ ଶକ୍ତିରେ ମହିମାବନ୍ତ । ଏଣୁ ଏମାନଙ୍କୁ ନ୍ୟୂନ ମଣ ନାହିଁ । ସଂଭ୍ରମରେ ଚଳପ୍ରଚଳ କର । କିଛି ନହେଲେ ସଦାକାଳେ ସାର୍ ସାର୍ ହୁଅ । ଏହି ମହିମାବନ୍ତ ଯେତେଜଣ ପ୍ରାଣୀଙ୍କ ସଂସ୍ପର୍ଶରେ ପାଠୀ ଆସିଛନ୍ତି, ସେମାନଙ୍କ ସଂପର୍କରେ ତାଙ୍କ ସିଦ୍ଧାନ୍ତ ଅଧାରୁ ଅଧିକ ବ୍ୟକ୍ତିଙ୍କୁ ନିର୍ବିଘ୍ନରେ ଅନୁପଯୁକ୍ତ ଓ ପଦାର୍ଥ ତାଲିକାଭୁକ୍ତ କରାଯାଇପାରିବ । କଳା, ସାହିତ୍ୟ ଓ ସଂସ୍କୃତିଭଳି ସ୍ପର୍ଶକାତର ବିଭାଗର ଦାୟିତ୍ୱରେ ରହିବାର ସେମାନଙ୍କ ଯୋଗ୍ୟତା ନଥିଲା । ରୂପଜୀବୀର ଡାଏରୀ ଏକ ସୁଦୀର୍ଘ ଆତ୍ମଜୀବନୀ । ଅନ୍ତରଙ୍ଗ ହୋଇଥିବାରୁ ପାଠକକୁ ନା ଲାଗେ କ୍ଳାନ୍ତି ନା ବିରକ୍ତ । କିନ୍ତୁ ଗୋଟିଏ ଅଭାବବୋଧ ପାଠକ ମନରେ ବାରମ୍ବାର ଉଠିବା ସ୍ୱାଭାବିକ । ଅନ୍ନଚିନ୍ତା ଚମତ୍କାରରେ ଆଉଟୁ ପାଉଟୁ ହୋଇ ସତୀ ନାରୀଟିଏ ରୂପଜୀବୀ ବେଉସାରେ ପାଦ ଦେଲା ପରି ପାଠୀ ଅଗତ୍ୟା କୁଟାଖଣ୍ଡିକ ମଧ୍ୟ ଜାବୁଡ଼ିଥିଲେ ଓ ସେଇ କୁଟାଖଣ୍ଡିକ ତାଙ୍କ ପରବର୍ତ୍ତୀ ଜୀବନକୁ ସଂଗ୍ରାମଧର୍ମୀ ବନେଇ ଦେଇ ତାଙ୍କୁ ଜାଗ୍ରତ ଶିଳ୍ପୀଟିଏ କରି ଦେଇଥିଲା ବୋଲି ସେ ଯେଉଁ ଦାବି କରିଛନ୍ତି ସେଇ ଜାଗ୍ରତ ଶିଳ୍ପୀର କଳାତ୍ମକ ବିକାଶର ଆଲୋଚନା ଏ ଆତ୍ମଜୀବନୀରେ ଅତ୍ୟନ୍ତ ଅସ୍ପଷ୍ଟ, ବସ୍ତୁତଃ ଅନୁପସ୍ଥିତ । ଏଇ କୋଡ଼ିଏ ବର୍ଷ ସମୟ ଖଣ୍ଡରେ ସେ କେଉଁ ବିଶିଷ୍ଟ ଛବିମାନ ଆଙ୍କିଲେ, କେଉଁ କଥାବସ୍ତୁ, ଚିନ୍ତାଧାରା, ଭାବଧାରା, କଳାଧାର, ଶୃଙ୍ଖଳା ତାଙ୍କ କଳାକୃତିକୁ ପ୍ରଭାବିତ କରିଥିଲା, ରଙ୍ଗ, ରେଖା ଓ ଆକାରକୁ ନେଇ ସେ କି କି ପ୍ରକାର ପରୀକ୍ଷା ନିରୀକ୍ଷା କରିଥିଲେ, ଏଇ ସମୟରେ ଅଙ୍କିତ କଳାକୃତି ସବୁ କୁଆଡେ ଗଲା, କିଏ କିଣିଲା, କୋଉ ବ୍ୟକ୍ତିଗତ ବା ଆନୁଷ୍ଠାନିକ ସଂଗ୍ରହରେ ରହି ସେ ଗୁଡ଼ିକ ଶୋଭା ପାଇଲେ ଏସବୁର ଆବଶ୍ୟକୀୟ ସୂଚନା, ବିଚାର ଆଲୋଚନା ଆତ୍ମଜୀବନୀରେ ଆଦୌ ନାହିଁ କହିଲେ ଚଳେ । ସମଗ୍ର ବହିରେ କୋଉଠି ଥରେ ବି ରଙ୍ଗ ପସରା ଓ ତୂଳୀ ଧରି ଚିତ୍ରଟିଏ ଆଙ୍କିବା ଅବସରରେ କାନ୍‌ଭାସ୍ ମଣ୍ଡିତ ଇଜେଲ୍ ସାମ୍ନାରେ ଠିଆହୋଇ ସନ୍ତୁଳିତ, ଉଦ୍‌ବେଳିତ, ଆନ୍ଦୋଳିତ, ଉଚ୍ଚାଟିତ, ସନ୍ଦିଗ୍ଧ ଶିଳ୍ପୀଟିକୁ ଦେଖିବାକୁ ମିଳିନାହିଁ । ଏଇ ଅଭାବ ବୋଧକୁ ଗୌଣ ମନେକରି ଆଡ଼େଇଯିବା ପାଠକ ପକ୍ଷରେ ଅସମ୍ଭବ ।

ତଥାପି ବହିକୁ ଯଦି କେବେ ବେଶ୍ୟା ଭାବେ ଗ୍ରହଣ କରାଯାଏ, ତା'ହେଲେ ମୋର ଏଇ ସମୀକ୍ଷାକୁ ଦଲାଲି ବା ପିମ୍ପମୂଳକ ଭାବିବା ଅସମ୍ଭବ ନୁହେଁ । ମୋର ସେଥିପ୍ରତି ସାମାନ୍ୟତମ ଆପତ୍ତି ବା କ୍ଷୋଭ ନାହିଁ । ପାଠୀଙ୍କ ଗଦ୍ୟ ଯେତିକି ଗତିଶୀଳ, ସେତିକି ସାବଲୀଳ, ଯେତିକି ଶାଣିତ ସେତିକି ଅନ୍ତରଙ୍ଗ ଏବଂ ସେଇଥିପାଇଁ ପାଠକ ଏ ଆତ୍ମଜୀବନୀକୁ ଅବଶ୍ୟ ପଢ଼ିବ, ଥରେ ନୁହେଁ ଦୁଇଥର ।

Digitized by srujanika@gmail.com

ଘଣେଶ୍ୱର ମିଶ୍ର

## ଦିଗ ଦିଶୁନାହିଁ ଦିଗପହଣ୍ଡି ଦିବସ ଅନ୍ଧାର

ଦିନନାଥ ପାଠୀ ତାଙ୍କର ନନା(ପିତା) ଶ୍ୟାମସୁନ୍ଦର ପାଠୀଙ୍କର ଜୀବନୀଟିଏ ଲେଖିଛନ୍ତି ଉପନ୍ୟାସ ଢଙ୍ଗରେ । ଜୀବନୀଟିର ନାମ **ପୁଞ୍ଜିକୟାଁର ଫକୀର** । ବହିଟି ପାଠକଲେ ବୁଝିହୁଏ - ଶ୍ୟାମସୁନ୍ଦର ଥିଲେ ଜଣେ କବି, ଚିତ୍ରକର, କଳାରେ ମଜ୍ଜି ରହୁଥିବା ଲୋକ। ତାଙ୍କର ଆର୍ଥିକ ସ୍ଥିତି ଥିଲା ଦୁର୍ବଳ; ବାସସ୍ଥାନ ଥିଲା ଗଞ୍ଜାମର ଦିଗପହଣ୍ଡି । ଦିଗପହଣ୍ଡି ବାହାରର ପୃଥିବୀ ସହିତ ସେ ପ୍ରାୟ ପରିଚିତ ନଥିଲେ । ସେ କିନ୍ତୁ ଠିକ୍ ବୁଝିଥିଲେ ଦିଗପହଣ୍ଡି ଏକ କ୍ଷୁଦ୍ର ଅନ୍ଧାରୁଆ ଅଞ୍ଚଳ । କଳା ଓ ସାହିତ୍ୟର ଆଦର ଏଠାରେ କ୍ଷୀଣ । ତାଙ୍କ ଲିଖିତ ଗୋଟିଏ କବିତାର ପ୍ରଥମ ଧାଡ଼ିଟି ଏହିପରି ।

ଦିଗ ଦିଶୁନାହିଁ ଦିଗପହଣ୍ଡି ଦିବସ ଅନ୍ଧାର

ଶ୍ୟାମସୁନ୍ଦର ଥିଲେ ଜଣେ ଅସାଧାରଣ ମଣିଷ - ଯାହାଙ୍କୁ ଅନେକେ ହୁଏତ ଭାବୁଥିଲେ ଅଜବ ବା ଆଡ଼ପାଗଳା ।

ଆମ ସମୟର ଅଗ୍ରଣୀ ଚିତ୍ରଶିଳ୍ପୀ, କଳା ସମାଲୋଚକ, ଲେଖକ, ସଂଗଠକ ଦିନନାଥ ପାଠୀଙ୍କ ଜନ୍ମ, ବାଲ୍ୟଶିକ୍ଷା ଓ ପ୍ରେରଣାର ଭୂମି ଦିଗପହଣ୍ଡି । ସେହିଠାରେ ଜଣେ ଡ୍ରଇଁ ମାଷ୍ଟର ହୋଇ ଜୀବନ ଆରମ୍ଭ କରିଥିଲେ ସେ ପ୍ରାୟ ପଚାଶ ବର୍ଷ ତଳେ । ନିୟତିର ବିଧାନ ଦେଖନ୍ତୁ - ବିଗତ ପାଞ୍ଚଦଶକ ମଧ୍ୟରେ ସେ ପାଲଟି ଯାଇଛନ୍ତି ଓଡ଼ିଶାର - ଏପରିକି ଭାରତର ଅନ୍ୟତମ ପ୍ରମୁଖ ଡ୍ରଇଁ ମାଷ୍ଟ ବା ଗୁରୁ ।

ଦିନନାଥ ପାଠୀଙ୍କର ପ୍ରଥମ ପରିଚୟ ତାଙ୍କର ଚିତ୍ରକଳା । ପ୍ରଥମେ ତାଙ୍କ ବଡ଼ ଭାଇନା ଲୋକନାଥଙ୍କୁ ସାହାଯ୍ୟ କରିବା ପାଇଁ ରଙ୍ଗମଞ୍ଚର ପର୍ଦ୍ଦାରେ ଚିତ୍ର ଆଙ୍କୁଥିଲେ, ମୁଖା ତିଆରି କରୁଥିଲେ । ପିତା ଶ୍ୟାମସୁନ୍ଦର ମଧ୍ୟ ଏକଦା ତାହା ହିଁ କରୁଥିଲେ । ପିତା ଅବଶ୍ୟ ସ୍କୁଲ୍, କଲେଜ୍ ମାଡ଼ିନଥିଲେ । ପୁତ୍ର ଦିନନାଥ କିନ୍ତୁ ସ୍କୁଲ୍, କଲେଜ୍, ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ପରେ ଡିଗ୍ରୀ ହାସଲ କଲେ । କଳା ସମାଲୋଚନାରେ ଦୁଇ ଦୁଇଟା ପି.ଏଚ୍.ଡି ଲାଭକଲେ ଗୋଟିଏ ଶାନ୍ତିନିକେତନରୁ, ଅନ୍ୟଟି ଉତ୍କଳ ବିଶ୍ୱବିଦ୍ୟାଳୟରୁ ।

ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ ହେଲେ ଭୁବନେଶ୍ୱରର ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟର ପ୍ରତିଷ୍ଠାତା - ଅଧ୍ୟକ୍ଷ, କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚିବ, ଓଡ଼ିଶା ଲଳିତ କଳା ଏକାଡ଼େମୀର ସଭାପତି, ଜବାହାରଲାଲ୍ ନେହେରୁ ଫେଲୋ, ବାରାଣସୀସ୍ଥିତ ଆଲିସ୍ ବୋନର୍ ଇନ୍‌ଷ୍ଟିଚ୍ୟୁଟ୍‌ର ନିର୍ଦ୍ଦେଶକ ଇତ୍ୟାଦି । ନନାଙ୍କ ମନର ଖେଦ ଯେ ଦିଗପହଣ୍ଡିରେ ଦିବସ ବି ଅନ୍ଧାର, ଏହା ଯେପରି ଦୂରୀଭୂତ କରିଛି ଦିନନାଥଙ୍କ ଉଚ୍ଚଶିକ୍ଷା, ପଦପଦବୀ ଦେଶ ବିଦେଶରେ ଲାଭ କରିଥିବା ସୀକୃତି ।

ଦିଗପହଣ୍ଡିର ମାଟି ଓ ବାସ୍ନା କିନ୍ତୁ ଦିନନାଥଙ୍କ ଚିତ୍ରଶିଳ୍ପୀ ଓ ଲେଖକ ଜୀବନର ଆଧାର । ତାଙ୍କ ନିଜ ଭାଷାରେ 'ଯେତେ ଯାହା ହେଲେ ବି ମାଷ୍ଟ୍ରେ ଦିଗପହଣ୍ଡିକୁ ଆଣ୍ଡକରି ଧରିଛନ୍ତି ।' ତାଙ୍କର ଚିତ୍ରଗୁଡ଼ିକ ନିରୀକ୍ଷଣ କଲେ ଜଣେ ସାଧାରଣ ଦର୍ଶକର ପ୍ରଥମେ ମନେହୋଇପାରେ - ଏ ଚିତ୍ରଗୁଡ଼ିକର ଶୈଳୀ ସହିତ ସେ ପୂର୍ବରୁ ପରିଚିତ । କିନ୍ତୁ ପର ମୁହୂର୍ତ୍ତରେ ତା'ମନରେ ପ୍ରଶ୍ନ ଉଠିପାରେ - ସତରେ ସେ ପରିଚିତ କି ? ଏପରି ହବାର କାରଣ- ଦିନନାଥଙ୍କ ଚିତ୍ର ଯେତିକି ପାରମ୍ପରିକ, ସେତିକି ସମକାଳୀନ । ତାଙ୍କ ଚିତ୍ରରେ ଦିଗପହଣ୍ଡି ତଥା ଓଡ଼ିଶାର ମନ୍ଦିର ଖୋଦେଇଠାରୁ ଆଧୁନିକ ୟୁରୋପର ପରୀକ୍ଷାଧର୍ମୀ ଶୈଳୀ ଯାଏଁ ସବୁର ପ୍ରଭାବ ଲକ୍ଷ୍ୟ କରାଯାଇପାରେ । ରୀତିଯୁଗର ଶୃଙ୍ଖଳା ଓ ସୀମିତ ଆବେଷ୍ଟନୀ - ପୁଣି ଆଧୁନିକତାର ମୁକ୍ତି ଓ ଅନୁସନ୍ଧାନର ଆକୁଳତା ସବୁର ଯେପରି ସମନ୍ୱୟ ଘଟିଛି ତାଙ୍କ ଚିତ୍ରକଳାରେ ।

Digitized by srujanika@gmail.com

କଳା ସମାଲୋଚନା ଦିନନାଥଙ୍କ ଚିତ୍ରକର ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ସେ କେବଳ ଚିତ୍ର ଆଙ୍କନ୍ତି ନାହିଁ, ନିଜ ଚିତ୍ର ଓ ଅନ୍ୟମାନଙ୍କ ଚିତ୍ର ବୁଝିବାକୁ ଉଦ୍ୟମ ଜାରିରଖନ୍ତି । ଏ ପ୍ରସଙ୍ଗରେ ଆଧୁନିକ ଇଂରାଜୀ କବିତାର ଅନ୍ୟତମ ସ୍ରଷ୍ଟା ଟି.ଏସ୍.ଏଲିୟଟ୍‌ଙ୍କ ଉକ୍ତି ସ୍ମରଣକୁ ଆସେ । ସେ କହନ୍ତି, 'ତାଙ୍କ ଲିଖିତ ସମାଲୋଚନା ତାଙ୍କ କବିତା ରଚନାର 'ବାଇ-ପ୍ରଡକ୍ଟ'- ଅର୍ଥାତ୍ ଆନୁଷଙ୍ଗିକ କ୍ରିୟା ।' ଦିନନାଥଙ୍କ କଳା ସମାଲୋଚନା କ'ଣ ତାଙ୍କ ଚିତ୍ରକର ଜୀବନର ଆନୁଷଙ୍ଗିକ କ୍ରିୟା ? ସ୍ମରଣ ରଖନ୍ତୁ - ସମାଲୋଚକ ଭାବେ ଏଲିୟଟ୍‌ଙ୍କ ସ୍ଥାନ ଖୁବ୍ ଉଚ୍ଚରେ ।

କଳା ସମାଲୋଚନା ଓ କଳା ଇତିହାସ ସଂପର୍କରେ ଦିନନାଥଙ୍କର ଇଂରାଜୀରେ ଲିଖିତ ଗ୍ରନ୍ଥର ସଂଖ୍ୟା ପନ୍ଦର ବା ତହିଁରୁ ଅଧିକ । ସେଥିମଧ୍ୟରେ ଅନ୍ତର୍ଭୁକ୍ତ ଓଡ଼ିଶୀ ନୃତ୍ୟ ସଂପର୍କରେ ଗ୍ରନ୍ଥଟିଏ- ***ରି-ଥିଙ୍କିଙ୍ଗ୍ ଓଡ଼ିଶୀ*** । କଳା କ୍ଷେତ୍ରରେ ସୀମା ସରହଦ ସ୍ୱୀକାର କରନ୍ତି ନାହିଁ ଦିନନାଥ । ଗଞ୍ଜାମର ଧରାକୋଟ ମନ୍ଦିର, ରସିକ ହାରାବଳୀ କାବ୍ୟର ପୋଥିଚିତ୍ର, ଗଙ୍ଗାନଦୀରେ ଭାସମାନ ତରଣୀ ବା ଗୁରୁ ଦେବପ୍ରସାଦଙ୍କ ଓଡ଼ିଶୀ ନୃତ୍ୟଶୈଳୀ - ସବୁର ନାନ୍ଦନିକ ଆକର୍ଷଣ ତାଙ୍କ ପାଇଁ ଯେପରି ସମାନ । ସେଥିପାଇଁ ତାଙ୍କ କୃତିର ସାମଗ୍ରିକ ଆକଳନ ଏକ କଠିନ ବ୍ୟାପାର । ନୃତ୍ୟ, ଅଭିନୟ ସଂପର୍କୀୟ କଳାର ମୂଲ୍ୟାୟନ ପାଇଁ ସେ ପ୍ରକାଶ କରନ୍ତି ପତ୍ରିକାଟିଏ-ଅଙ୍ଗରାଗ । ସଂପାଦନା ତାଙ୍କ ପୁଅ ସୌଭାଗ୍ୟର ଦାୟିତ୍ୱ ।

**ଲେଖକ ଦିନନାଥଙ୍କ ପରିଚିତି ସତନ୍ତ୍ର । ତାଙ୍କର ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ, ଚିଲିକା ପାଣିରେ ଛାଇ, ରୂପ ଜୀବୀର ଡାଏରୀ(ଆତ୍ମଜୀବନୀ), ଭବଘୂରା ଭବନାଥ (ଗଳ୍ପ ସଂକଳନ), ସୁନା ମାଛ (ଗଳ୍ପ ସଂକଳନ), ସାୟୋନାରା, ପୁନର୍ନବା, ଶ୍ଳୋକଛନ୍ଦ ଓ ଗଙ୍ଗାବତରଣ (ଉପନ୍ୟାସ) ଓଡ଼ିଆ ଭାଷା ଓ ସାହିତ୍ୟକୁ ଋଦ୍ଧିମନ୍ତ କରିଛି । ଗଞ୍ଜାମର କଥିତ ଓଡ଼ିଆ ଭାଷାକୁ ସାହିତ୍ୟର ମର୍ଯ୍ୟାଦା ପ୍ରଦାନ, ସ୍ୱୀୟ ଅନୁଭୂତିର ତୀକ୍ଷ୍ଣ ବିଶ୍ଳେଷଣ, ନିର୍ଭୀକତା, ବିସ୍ତୃତ ଅଧ୍ୟୟନ ଓ ଭ୍ରମଣ ତାଙ୍କର ବିଶେଷତ୍ୱ ।**

ସାହିତ୍ୟ ଓ ଚିତ୍ର କଳା ମଧ୍ୟରେ ସମାନ୍ତରଳତା ପ୍ରତିପାଦନ କରିବାରେ ସେ ସଫଳ ହୋଇଛନ୍ତି । ସେଥିପାଇଁ ନୂତନ ପରିଭାଷା ମଧ୍ୟ ପ୍ରଚଳନ କରିଛନ୍ତି - ଚିତ୍ରଭାଷା । ଏହାର ଅର୍ଥ-ଚିତ୍ର ଯେପରି ଗୋଟିଏ ଭାଷା, ଭାଷା ବା ସାହିତ୍ୟ ସେହିପରି ଗୋଟିଏ ଚିତ୍ର । x x x x

ଗତବର୍ଷ ଡିସେମ୍ବର ୧୩ରେ ଦିନନାଥଙ୍କ ନିମନ୍ତ୍ରଣରେ ସୁଧୀର କୁମାର ବିଜୟେନ୍ଦ୍ର ନାରାୟଣ (ଜାପାନୀ), ରମ୍‌ଲି ଇବ୍ରାହୀମ୍ (ମାଲୟେସିଆର ଓଡ଼ିଶୀ ନୃତ୍ୟଶିଳ୍ପୀ), ରାମହରି ଜେନା, ନିତ୍ୟାନନ୍ଦ ମିଶ୍ର ଓ ମୁଁ ଯାଇଥିଲୁ ବ୍ରହ୍ମପୁର ନିକଟସ୍ଥ ଭାଟ କୁମରଡ଼ା ଗ୍ରାମକୁ । ଉଦ୍ଦେଶ୍ୟ ଥିଲା, ସଖୀନାଟର ମୂଳ ସ୍ଥାନରେ ସେହି ନାଟର ପରିବେଷଣ ଦର୍ଶନ କରିବା । କେତେବର୍ଷ ହେଲା ଦିନନାଥ ଉଦ୍ୟମ କରିଆସିଛନ୍ତି ପ୍ରମାଣ କରିବାକୁ ଯେ ସଖୀନାଟ ହିଁ ଓଡ଼ିଶୀ ନୃତ୍ୟର ମୂଳଉତ୍ସ । ତାଙ୍କ ସହିତ କେହି ଏକମତ ହେବା ବା ନ ହେବା ଭିନ୍ନ କଥା । କିନ୍ତୁ ଆଜୀବନ ନୂତନ ତଥ୍ୟ, ନୂତନ ଦିଗ ଉନ୍ମୋଚନ କରିବାର ସଂକଳ୍ପରୁ ତାଙ୍କୁ ନିବୃତ୍ତ କରିବ କିଏ ? x x x

ପୃଞ୍ଜିକୟାଁର ଫକୀର ଗ୍ରନ୍ଥରେ ଦିନନାଥ ତାଙ୍କ ନନାଙ୍କର ଚିତ୍ରଟିଏ ଆଙ୍କିଛନ୍ତି । ନନାଙ୍କର ଦାଢି ଅଛି; ଦିନନାଥଙ୍କର ନାହିଁ (ତରୁଣ ବୟସରେ ଥିଲା; ସରକାରୀ ଚାକିରି କରିବା ପରେ କୌଣସି କାରଣରୁ ହୁଏତ ଦାଢ଼ି କାଟି ପକାଇଛନ୍ତି) । ନନା ଶ୍ୟାମସୁନ୍ଦରଙ୍କ ସହିତ ଦିନନାଥଙ୍କର ମୁଖର ସାମଞ୍ଜସ୍ୟ ଅକ୍ଳେଶରେ ବାରିହୁଏ ।

ନନାଙ୍କ ପାଇଁ ଦିଗପହଣ୍ଡି ଯାହା ଥିଲା, ଦିନନାଥଙ୍କ ପାଇଁ ଓଡ଼ିଶା ଆଜି ହୁଏତ ସେୟା । ତାଙ୍କ ସହିତ କଥାଭାଷା ହେଲେ, ତାଙ୍କ ବକ୍ତୃତା ଶୁଣିଲେ, ତାଙ୍କ ଲେଖା ପଢିଲେ ମନେହୁଏ, ଓଡ଼ିଶା ତଥାପି ଏକ ଅନ୍ଧାରୁଆ ଅଞ୍ଚଳ; ଏ ଅବସ୍ଥାକୁ ମୁକୁଳାଇ ପୃଥିବୀରେ ପରିଚିତ କରାଇବା ପାଇଁ ତାଙ୍କୁ ଉପାୟ ଦିଶୁନାହିଁ ।

ଦିଗ ଦିଶୁନାହିଁ ଦିଗ ପହଣ୍ଡି ଦିବସ ଅନ୍ଧାର .....

ଏହି ଅନ୍ଧାର ଦୂର କରିବାକୁ ଦିନନାଥ (ଅର୍ଥ - ସୂର୍ଯ୍ୟ) ସହାୟକ ହୁଅନ୍ତୁ ।

Digitized by srujanika@gmail.com

## ବାୟାମନ୍ତୁ ଚର୍ଚ୍ଚି
# ଚିଲିକା ପାଣିରେ ଛାଇ

ପ୍ରେମ ଅମୂର୍ତ୍ତ । କଳା, କବିତା ଓ ସଂଗୀତର ମାଧ୍ୟମ ଦେଇ ପ୍ରେମକୁ ଭେଟିହୁଏ, ଚିହ୍ନଟ କରିହୁଏ, ଚିହ୍ନିହୁଏ । ପ୍ରେମୀଟିଏ ନହେଲେ ନା ଚିତ୍ର ନା କବିତା ନା ସଙ୍ଗୀତ ରଚି ହୁଏ । ଏହି ଅଭିବ୍ୟକ୍ତି ଜଣେ ଆନ୍ତର୍ଜାତୀୟ ଖ୍ୟାତି ସମ୍ପନ୍ନ ଚିତ୍ରଶିଳ୍ପୀ ତଥା ସୃଜନଶୀଳ ସାହିତ୍ୟ ସ୍ରଷ୍ଟାଙ୍କର । ସେ ତୂଳୀରେ ଖୋଜି ଚାଲିଛନ୍ତି ଜୀବନର ରଙ୍ଗତରଙ୍ଗ । ନିଜକୁ ଖୋଜିବା ଭିତରେ ହଜିଯାଉଥିବା ଏଇ ଶିଳ୍ପୀ ଜଣକ ଆତ୍ମବିଭୋର ହୋଇ ଆଙ୍କି ଚାଲିଛନ୍ତି ଛବି । କାନ୍‌ଭାସ୍ ତାଙ୍କର ସଙ୍କୀର୍ଣ୍ଣ ନୁହେଁ, ବିଶ୍ୱ ପର୍ଯ୍ୟନ୍ତ ପରିବ୍ୟାପ୍ତ । ନିଜର ସଂସ୍କୃତି, ଐତିହ୍ୟ ପରମ୍ପରା ପ୍ରତି ସଚେତନଶୀଳ ଏହି ସାରସତ ଶିଳ୍ପୀ ଚିତ୍ରରେ ବହୁ ପରୀକ୍ଷା ନିରୀକ୍ଷା କରିଛନ୍ତି। ଆଧୁନିକ ଚିତ୍ରକଳା ପାଇଁ ସେ ସମର୍ପିତ ହେଲେ ବି ପାରମ୍ପରିକ ଚିତ୍ରକଳା ପାଇଁ ତାଙ୍କର ଅହେତୁକ ଦୁର୍ବଳତା ରହିଛି । ସେ କହନ୍ତି - 'ପାରମ୍ପରିକ ଚିତ୍ରକଳା ଭିତରେ ଦୃଢ଼ ରହିଲେ ହିଁ ଆଧୁନିକ, ଉତ୍ତର ଆଧୁନିକ କଳା କଥା ଚିନ୍ତା କରିହେବ । କାରଣ ପାରମ୍ପରିକର ସମସାମୟିକ ବିକାଶ ହିଁ ଉତ୍ତର ଆଧୁନିକ।' ଏଇ ଚିତ୍ରଶିଳ୍ପୀ ଜଣକ ଅନ୍ୟ ଆଉ କେହି ନୁହଁନ୍ତି, ସେ ହେଉଛନ୍ତି **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ, ପୁଞ୍ଜିକର୍ଯାଁର ଫକୀରର** ସ୍ରଷ୍ଟା ଦିନନାଥ । ଚିତ୍ରଶିଳ୍ପୀ ଦିନନାଥ ପାଠୀ ।

ଡକ୍ଟର ଦିନନାଥ ପାଠୀ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ସମ୍ବର୍ଦ୍ଧିତ ଓ ସମ୍ମାନିତ ହୋଇ ପାରିଛନ୍ତି । ଆଇଫାକ୍ସ ସମାନ-୧୯୮୮, ଏ.ଏଲ୍. ବସମ୍ ମେମୋରିଏଲ ସମ୍ମାନ-୧୯୮୬, ଇଣ୍ଟର୍ ନେସ୍‌ନାଲ୍ ଆୱାର୍ଡ଼ (ଚାଇନା)-୧୯୯୮ ଇତ୍ୟାଦି ତା'ର କେତେକ ନମୁନା । ତାଙ୍କର ଚିତ୍ରକଳା ସଂପର୍କରେ ଅଭିବ୍ୟକ୍ତି ହେଲା - 'Paintings are never real, it is about reality, even the realities of myth and metaphysics. When you put a stroke on your canvas, you lost realities, you lose yourself, it is a world of make believe where the artist dictates the terms. My paintings are both metaphors and metaphysics.' ସେ ଓଡ଼ିଶା ଚିତ୍ରକଳା ଆନ୍ଦୋଳର ଜଣେ ପ୍ରମୁଖ ପ୍ରବର୍ତ୍ତକ ହେଲେ ବି ଅପର ପକ୍ଷରେ ଜଣେ ସାହିତ୍ୟ ସ୍ରଷ୍ଟା ଏବଂ ବିଶିଷ୍ଟ ସମାଲୋଚକ । ତାଙ୍କ ଲେଖନୀରୁ ଜନ୍ମ ନେଇଛି ସଂଖ୍ୟାଧିକ ଗଳ୍ପ, କବିତା, ଚିତ୍ରୋପନ୍ୟାସ, ଭ୍ରମଣକାହାଣୀ, ଜୀବନୀ, ପ୍ରବନ୍ଧ ଏବଂ ଆଧ୍ୟାତ୍ମିକ ରଚନାବଳୀ । ଏଯାବତ୍ ତାଙ୍କର ୫୦ଟି ଗ୍ରନ୍ଥ ଆତ୍ମପ୍ରକାଶ ପାଇଛି । ଓଡ଼ିଶାରେ ଚିତ୍ରକଳା ପରମ୍ପରାକୁ ସାହିତ୍ୟ ମାଧ୍ୟମରେ ପ୍ରକାଶ କରିବା ଦିଗରେ ସେ ହେଉଛନ୍ତି ପ୍ରଥମ ବ୍ୟକ୍ତି । ଏ କ୍ଷେତ୍ରରେ ପାଠକୀୟ ସଂପୃକ୍ତି ଆଣିବାରେ ତାଙ୍କର ପ୍ରୟାସ ଅଭିନନ୍ଦନୀୟ । ତାଙ୍କର ଚିତ୍ରିତ ଭାଷା ଓ କାହାଣୀ ତଥା କାବ୍ୟିକ ଉପସ୍ଥାପନା ଓ ପରିପ୍ରକାଶ ପାଇଁ ସେ ପାଠକୀୟ ସୀକୃତି ପାଇଛନ୍ତି। ଜୀବନୀ **ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ** ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛି । ଓଡ଼ିଆ ସାହିତ୍ୟରେ ପ୍ରତ୍ୟକ୍ଷ ଚିତ୍ରାନୁଭୂତି ସଂଚରଣରେ ସେ ହେଉଛନ୍ତି ଆଦ୍ୟ ସୂତ୍ରଧର ।

ଚିଲିକା ପାଣିରେ ଛାଇ ୨୦୦୫ ଦିନନାଥଙ୍କ ଖଲ୍ଲିକୋଟରେ ଚିତ୍ରକଳା ଶିକ୍ଷାର ଚାରୋଟି ବର୍ଷର ବିଜଡ଼ିତ ଅପାଶୋରା ମୁହୂର୍ତ୍ତର ରୂପଚିତ୍ର, ଓଡ଼ିଶାର ଅର୍ଦ୍ଧ ଶତାବ୍ଦୀର କଳା ଇତିହାସର ନିଚ୍ଛକ ପରିପ୍ରକାଶ । ଏହି ଜୀବନୀ ଗ୍ରନ୍ଥରେ ଗୁରୁ ଓ କାରୁକଳାର ଶିକ୍ଷାର୍ଥୀ ଭାବେ ଦିନନାଥଙ୍କ ସତୀର୍ଥ ବନ୍ଧୁମାନଙ୍କ ସହ ସଂପର୍କ, ଅଧକ୍ଷ ଓ ଅଧ୍ୟାପକମାନଙ୍କ ସହ ତାଙ୍କର ସମ୍ପୃକ୍ତି, ସେମାନଙ୍କ କଳାକୃତି ଓ ଚିତ୍ରଚର୍ଚ୍ଚା, ପ୍ରେମ ଓ ପ୍ରଣୟ, ଡ୍ରାମା ଓ ଥିଏଟର, ଅଧ୍ୟାତ୍ମିକ ଜୀବନର ଭିତ୍ତିଭୂମି ସ୍ଥାପନ, ସର୍ବୋପରି

Digitized by srujanika@gmail.com

ଓଡ଼ିଶାର ଆଧୁନିକ କଳାର ଉନ୍ମେଷ ଓ ଇତିକଥା ସ୍ଥାନିତ ହୋଇଛି । ଅପ୍ରିୟ ସତ୍ୟ ଉପସ୍ଥାପିତ ହୋଇଛି । ଏହାର ଭାଷା ଚିତ୍ରିତ ଓ କାହାଣୀ ଚିତ୍ରାନୁଭୂତିରେ ଋଦ୍ଧିମନ୍ତ । ଛବିଶଟି ରଙ୍ଗୀନ ଚିତ୍ର, ଉଣେଇଶଟି କଳାଧଳା ହାଫ୍‌ଟୋନ ଚିତ୍ର ଓ ଛବିଶ ଗୋଟି ରେଖାଚିତ୍ର ସମ୍ବଳିତ ପ୍ରଥମ ଓଡ଼ିଆ ଚିତ୍ରକଳା ଗ୍ରନ୍ଥ । ଶରତଚନ୍ଦ୍ର ଦେବଙ୍କ 'ଜୀବନଚକ୍ର' ଓ 'ଗୋଧୂଳି' ଅଜିତ କେଶରୀ ରାୟଙ୍କ 'ଦି ଫ୍ଲାଇଟ୍' ଓ 'ତାସ ଖେଳ', ଅନନ୍ତ ପଣ୍ଡାଙ୍କ 'ଦାରୁ ଭାସ୍କର' ଓ 'କେଶପୁର ହାଟ' ଲୋକନାଥ ଶତପଥୀଙ୍କ 'ସୁଲେଖା କାଳି', ରବିନାରାୟଣଙ୍କ 'ଗ୍ରାମଦେବତୀ' ଓ 'ଚିଲିକା', ପଞ୍ଚାନନ ସୁରଙ୍କ 'ଚିଲିକାରେ ମାଛଧରା', ଚନ୍ଦ୍ରଶେଖର ରାଓଙ୍କ 'ମେଘଦୂତ', ରାଜୀବ ଲୋଚନ ସାହୁଙ୍କ ରେଖାଚିତ୍ର ଏବଂ ତାଙ୍କ ନିଜର ରେଖାଚିତ୍ର ଓ **ଭଗ୍ନବୀଣା** ଏଥିରେ ସ୍ଥାନ ପାଇଛି । ଚିତ୍ର ବୀଥିରେ ପ୍ରଦର୍ଶିତ ଚିତ୍ରର ଫଟୋଗ୍ରାଫ୍ ଉତ୍ତୋଳନ ଡି. ନାରାୟଣ ରାଓ କରିଥିବା ବେଳେ ଏହାର ନବୀକରଣ କରିଛନ୍ତି ଦିଲ୍ଲୀପ କୁମାର ତ୍ରିପାଠୀ ଏବଂ ସୌଭାଗ୍ୟ ପାଠୀ । ଏହି ଗ୍ରନ୍ଥର ପ୍ରଚ୍ଛଦଚିତ୍ର ଆଙ୍କିଛନ୍ତି ରାମହରି ଜେନା ଏବଂ ପ୍ରଫୁଲ୍ଲ ଚନ୍ଦ୍ର ଧୀର ।

ଖଲ୍ଲିକୋଟର ଚିତ୍ରକଳା ଜୀବନର ସ୍ମୃତିଚାରଣ ବେଳେ ଦିନନାଥ ପ୍ରଥମେ ସ୍ମରଣ କରନ୍ତି ନିଜ ଗାଁ ଦିଗପହଣ୍ଡିର ଶିଳ୍ପକଳା ମନ୍ଦିରକୁ, ଯେଉଁଠି ତାଙ୍କର ଶିଳ୍ପୀ ଜୀବନର ପ୍ରଥମ ତାଲିମ ଆରମ୍ଭ ହୋଇଥିଲା । ଏହାର ପ୍ରତିଷ୍ଠାତା, ପରିଚାଳକ ଓ ଭିଜୁଏଲାଇଜର୍ ଥିଲେ ତାଙ୍କର ବଡ଼ ଭାଇ ଲୋକନାଥ ଏବଂ ଉପଦେଷ୍ଟା ଥିଲେ ତାଙ୍କର ନନା ଶ୍ୟାମସୁନ୍ଦର ପାଠୀ । ପ୍ରକାଶଯୋଗ୍ୟ ଯେ, ଏହି କଳାମନ୍ଦିରରେ ଘାସକଟା ଠାରୁ ଘୋଡ଼ାଚଢ଼ା ପର୍ଯ୍ୟନ୍ତ ସବୁକାମ ହେଉଥିଲା ଅର୍ଥାତ୍ ଏଠାରେ ବହି ବନ୍ଧେଇ, ଫଟୋ ବନ୍ଧେଇ, ସାଇନ୍ ବୋର୍ଡ଼, ନେମ୍ ପ୍ଲେଟ୍, ହାରମୋନିୟମ୍ ମରାମତି, କାଗଜ ମୁଖା, ଥିଏଟର୍ ସ୍କ୍ରିନ୍, ଲାଇଟ୍ ସରଞ୍ଜାମ, ଫଟୋଗ୍ରାଫ୍, ତୈଳଚିତ୍ର, ପେନ୍‌ସିଲ ପୋର୍‌ଟ୍ରେଟ୍, ସିମେଣ୍ଟ ମୂର୍ତ୍ତି ପ୍ରଭୃତି ବ୍ୟବହାରିକ କଳାର ବିଭିନ୍ନ ବିଭାଗ ଥିଲା, ଯାହା ଭୁବନେଶ୍ୱର ଆର୍ଟ୍ କଲେଜରେ ନଥିବା କଥା ସେ ସୀକାର କରନ୍ତି । କଳା ମନ୍ଦିରର ପ୍ରତ୍ୟକ୍ଷ ଅନୁଭୂତି ତାଙ୍କୁ ଖଲ୍ଲିକୋଟ ଆର୍ଟ୍ ସ୍କୁଲ୍‌ରେ ଇଣ୍ଟର୍‌ଭ୍ୟୁରେ ଶୀର୍ଷ ସ୍ଥାନ ପ୍ରଦାନ କରିବାର ସୁଯୋଗ ଦେଇଥିଲା । ଖୁସିର କଥା, କଳା ମନ୍ଦିରକୁ କେନ୍ଦ୍ର କରି ସମଗ୍ର ବିଶ୍ୱ ପରିଧିକୁ ସ୍ପର୍ଶ କରିଥିବା ଏହି ଶିଳ୍ପୀ ଜଣକ ନିଜକୁ **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** କହି ଆନନ୍ଦ ପାଆନ୍ତି ।

ଐଶୀକଳା ନେଇ ଜନ୍ମ ନେଇଛନ୍ତି ଦିନନାଥ । ଶିକ୍ଷାର୍ଥୀ ଜୀବନରୁ ସେ ସ୍କେଚ୍, ତୈଳଚିତ୍ର ଅଙ୍କନ, ଜଳରଙ୍ଗର ଭୂଦୃଶ୍ୟର ଚମତ୍କାରିତା ପ୍ରକାଶ ଏବଂ କ୍ଷିପ୍ର ବ୍ରସ୍ ଚାଳନାରେ ସିଦ୍ଧହସ୍ତ ଥିଲେ । ବସ୍ତୁତଃ ସେ ଅଧକ୍ଷ, ଅଧାପକ ଏବଂ ସତୀର୍ଥ ଶିକ୍ଷାର୍ଥୀମାନଙ୍କର ନିକଟବର୍ତ୍ତୀ ହୋଇପାରିଥିଲେ । ଓଡ଼ିଶାର ତତ୍କାଳୀନ ବିଶିଷ୍ଟ ଚିତ୍ରଶିଳ୍ପୀ ଅଧକ୍ଷ ଶରତଚନ୍ଦ୍ର ଦେବ, ଅଧାପକ ଅଜିତ୍ କେଶରୀ ରାୟ, ଅଧାପକ ଅନନ୍ତ ପଣ୍ଡାଙ୍କୁ ଗୁରୁ ରୂପେ ପାଇଥିଲେ । ତାଙ୍କର ଭାବନା ଭିତରେ ଥିଲା ଅଏଲ୍ ପେଣ୍ଟିଙ୍ଗ୍ ପାଠ ହେଉଛି ରାଜକୀୟ ପାଠ ଏବଂ ଭାସ୍କର୍ଯ୍ୟ ହେଉଛି ରଜା ମାର୍କା ପାଠ ଓ କାଳଜୟୀ । କମ୍‌ର୍ସିଏଲ୍ ଆର୍ଟ୍ ପ୍ରତି ସେ ପ୍ରଥମରୁ ବୀତସ୍ପୃହ ଥିଲେ କାରଣ ସେ ଅନୁଭବ କରିଥିଲେ ତାଙ୍କ ଲୋକନାଥ ଭାଇନାଙ୍କ କଳା ମନ୍ଦିରରୁ ଅଧିକ କିଛି ଏହି ବିଦ୍ୟାଳୟରେ ଶିଖିବାର ନଥିଲା । ତେଣୁ ସେ ପାଠ୍ୟ ବିଷୟ ରୂପେ ଅଏଲ୍ ପେଣ୍ଟିଙ୍ଗ୍ ଓ ଭାସ୍କର୍ଯ୍ୟକୁ ଗ୍ରହଣ କରିଥିଲେ ।

ଅର୍ଦ୍ଧ ଶତାବ୍ଦୀ ତଳର ସ୍ମୃତି ଜଳଜଳ ହୋଇ ନାଚି ଯାଉଛି ତାଙ୍କ ଆଖି ସାମ୍ନାରେ । ସପ୍ନିଳ ଭାବାବେଗରେ ତାଙ୍କ ହୃଦୟ ସ୍ପନ୍ଦିତ ହେଉଛି । ମନେ ପଡ଼ିଯାଉଛି ଖଲ୍ଲିକୋଟ କଳା ବିଦ୍ୟାଳୟର ଅଯାଚିତ ସ୍ନେହ ଓ ଅସ୍ମିତା । ରାଜ ଉଆସର ପ୍ରଥମ ସନ୍ଧ୍ୟା, ଇଣ୍ଟର୍‌ଭ୍ୟୁ ପାଇଁ ତାରିଣୀଙ୍କ ପ୍ରାକ୍

Digitized by srujanika@gmail.com

ସୂଚନା, ଗଞ୍ଜାମ-କଟକୀ ଭଳି ବିକୃତ ଓ ଆଞ୍ଚଳିକବାଦର କଳା ଇତିହାସ, କଳା ଶିକ୍ଷାର ଅଭିବୃଦ୍ଧି ପାଇଁ ଅଧ୍ୟକ୍ଷ ଶରତଚନ୍ଦ୍ରଙ୍କ ରାଜ ସିଂହାସନ ତ୍ୟାଗର କାହାଣୀ, ତଥା ସତୀର୍ଥ ବନ୍ଧୁ ଆସିକା ଦେବଭୂମିର ଯୁଧିଷ୍ଠିର ସାହୁ, ସୋରଡ଼ାର ମଦନ ମୋହନ ପଣ୍ଡା, ଚିକିଟୀ ପେଣ୍ଠର ଚନ୍ଦ୍ରଶେଖର ସୁବୁଦ୍ଧି, ରାୟଗଡ଼ାର ଚିତ୍ରକାର ବଂଶର ରଘୁନାଥ ମହାପାତ୍ର, ଭଞ୍ଜନଗରର ଭାସ୍କର ସ୍ୱାମୀ (ଆସିକା ଡ୍ରଇଁ ମାଷ୍ଟ୍ରେ ହରିଶରଣ ମହାପାତ୍ରଙ୍କ ପ୍ରିୟତମ ଛାତ୍ର), କଟକ ରାମଗଡ଼ର ଭୀମସେନ ମହାରଣା, କଟକ ଭୀମରାଜପୁରର ଫକୀର ମୋହନ ମଲ୍ଲିକ, ପୋଲସରାର ଚନ୍ଦ୍ରଶେଖର ରାଓ, ରଣପୁରର ଦେବରାଜ ସାହୁ, ବୋଲଗଡ଼ ଖୋରଡ଼ିଆର ରାମକୃଷ୍ଣ ସୁବୁଦ୍ଧି, ରଣପୁରର ରଙ୍କନାଥ ସାହୁ, ସଦାଶିବପୁର ଶାସନର ବିଶ୍ୱ ବିହାରୀ ଖାଡ଼ଙ୍ଗା, ଓଡ଼ଗାଁର ଲକ୍ଷ୍ମୀନାରାୟଣ ସାହୁ, କୋଳଥିଆର ରାଧାଚରଣ ପଣ୍ଡା, ପୁରୁଷୋତ୍ତମପୁର ପ୍ରଶାନ୍ତ ପଟ୍ଟନାୟକ, ଜୟପୁରର ପଞ୍ଚାନନ ଶତପଥୀ, ଜାହାଡ଼ାର ପି. ଲକ୍ଷ୍ମୀନାରାୟଣ ଆଚାରୀ, ବ୍ରହ୍ମପୁରର ଦୀପେନ ବୋଷ ପ୍ରମୁଖଙ୍କ ସହ ସମ୍ପର୍କ, ପଦ୍ମାବତୀ ଦିଦିଙ୍କ ସଂଗୋପିତ ମନର ପ୍ରେମ ନିବେଦନର ଲାକ୍ଷଣିକ ବାହାନା, ଖଲ୍ଲିକୋଟରେ ପ୍ରେମ ଯାଚନାର ଶୈଳୀ, କାବ୍ୟିକତା ଓ ନାନ୍ଦନିକତା, ପ୍ରେମ ଓ ପ୍ରଣୟ, ଲେଡିଜ୍ ହଷ୍ଟେଲ୍‌ରୁ ଅଭିସାରିକା ବେଶରେ ପ୍ରେମିକାର ଆକାଂକ୍ଷିତ ମୁହୂର୍ତ୍ତ, ଡ୍ରାମା ଥିଏଟର୍, ଝଞ୍ଜା ନାଟକର ଅଭିନୟ, ଏକାଙ୍କିକା **ଯମ ଦରବାର** ରଚନା ଓ ନିର୍ଦ୍ଦେଶନା, ଭାଇନା ଲୋକନାଥ ପାଠୀଙ୍କ ମଞ୍ଚସଜ୍ଜାର କୌଶଳ ପ୍ରୟୋଗ, ହାଡ଼ିବାଜା ସାଙ୍ଗରେ ତ୍ରିପଟା ତାଳରେ ପାହୁଲ ପକେଇ ବାଘନାଟ, ଓଡ଼ିଶାର ପ୍ରଥମ ଦିବ୍ୟ ଜୀବନର ସଂଘର ସମ୍ପାଦକ ଦାୟିତ୍ୱ ଗ୍ରହଣ, ନିୟମିତ ପୂଜା, ପ୍ରାର୍ଥନା, ଯୋଗାସନ, ଧ୍ୟାନ, ଧାରଣା, ପ୍ରାଣାୟାମ, ନିରାମିଷ ଭୋଜନ ଓ ସାତ୍ତ୍ୱିକ ଜୀବନଯାପନ, ଦୀପେନଙ୍କ ସାହଚର୍ଯ୍ୟ, ଚନ୍ଦ୍ରଶେଖର ସୁବୁଦ୍ଧିଙ୍କ ଘରେ ତାଙ୍କ ଆମ୍ମାଙ୍କ ଠାରୁ ରୂପା ଥାଳିରେ ଭୋଜନ, ଦେବରାଜ ମା'ଙ୍କ ହାତ ପରଷା, କିଚେନ ଆଲ୍‌ମିରା, କରଣ ସାହିର ମାଉସୀ ମେସ୍‌ର ଶାଗ ଖରଡ଼ା, ବୋଇତାଳୁ ଫୁଳ ଭଜା, ଇଟଲଗା ଚିଲିକା କଙ୍କଡ଼ା ଝୋଳ, ବାଘୁଆ ଚିଙ୍ଗୁଡ଼ି ଭିତରେ ପୂର ଦେଇ ପତ୍ରପୋଡ଼ା, ଆମ୍ବୁଲ ଖଟେଇ, ସଙ୍ଗୀତ ମାଷ୍ଟ୍ରଙ୍କ ସହ ମାଉସୀଙ୍କ ପ୍ରେମ ସମ୍ପର୍କ, ସର୍ବୋପରି ଷ୍ଟଡ଼ି କ୍ଲାସମାନଙ୍କରେ ଉପର ଶ୍ରେଣୀର ଛାତ୍ରଙ୍କ ସାଙ୍ଗରେ ଠିଆ ହୋଇ ଛବି ଆଙ୍କିବା ପାଇଁ ସୁଯୋଗ, ଚିତ୍ରର ପ୍ରଶଂସା, ଅଧ୍ୟୟନରତ ଛାତ୍ର ଥାଇବି **ହାର୍‌ଭେଷ୍ଟିଙ୍ଗ୍ ସଙ୍ଗସ୍** ପାଇଁ କଲିକତାର ଫାଇନ୍ ଆର୍ଟ୍ ଏକାଡ଼େମୀର ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀରେ ପୁରସ୍କାର, ତୈଳ ଚିତ୍ର **ମୋ ଗାଁ** ପାଇଁ ଓଡ଼ିଶା ଲଳିତ କଳା ଏକାଡ଼େମୀ ତରଫରୁ ଆମେଚର୍ ବିଭାଗରେ ପ୍ରଥମ ପୁରସ୍କାର, ଅଧ୍ୟାପକମାନଙ୍କର ପତ୍ନୀମାନଙ୍କୁ କଳା ବିଦ୍ୟାଳୟରେ ଶିକ୍ଷାର୍ଥୀ କରାଇବା ଉଦ୍ଦେଶ୍ୟରେ ଶିକ୍ଷାଦାନ ଏବଂ ପ୍ରସଙ୍ଗ କ୍ରମେ ଗଞ୍ଜାମର ମହତ୍ତ୍ୱ ଓ ପରମ୍ପରା, ସାହିତ୍ୟ ଓ ସଂସ୍କୃତିକୁ ସେ ଏହି ଗ୍ରନ୍ଥରେ ଉପସ୍ଥାପନ କରିଛନ୍ତି ।

ଦିନନାଥଙ୍କ **ଚିଲିକା ପାଣିରେ ଛାଇ** ଭିତରେ ଦୃଶ୍ୟମାନ ହେଉଛି ଓଡ଼ିଶାର ଅର୍ଦ୍ଧଶତାବ୍ଦୀର କଳା ଇତିହାସର ଚିତ୍ର । କଳା ଆନ୍ଦୋଳନର ରୂପରେଖ । କ୍ଷେତ୍ର ଥିଲା ଉପନିବେଶୀୟ ସ୍ଥାପତ୍ୟ ଶୈଳୀରେ ନିର୍ମିତ ଖଲ୍ଲିକୋଟ ରାଜ ଉଆସର ଘରୁ ଓ କାରୁକଳା ବିଦ୍ୟାଳୟ । କର୍ଣ୍ଣଧାର ଥିଲେ ଅଧ୍ୟକ୍ଷ ଶରତଚନ୍ଦ୍ର, ଅଧ୍ୟାପକ ଅଜିତ୍ କେଶରୀ ଏବଂ ଅଧ୍ୟାପକ ଅନନ୍ତ ପଣ୍ଡା । ଏହି ସ୍ମୃତି ଗ୍ରନ୍ଥରେ ଦିନନାଥ ଆଗ୍ରର୍ଯ୍ୟ ଶରତଚନ୍ଦ୍ରଙ୍କ ଓଡ଼ିଶୀ ଆଧୁନିକ କଳାର ଜନକ ବୋଲି ଅଭିହିତ କରି କହନ୍ତି - 'ସିଏ ଥିଲେ ଓଡ଼ିଶୀ ଆଧୁନିକ କଳାର ତ୍ରିମୂର୍ତ୍ତୀଙ୍କ ଛାମୁ ମୁହଁ । ଦୁଇ ପାଖ ମୁହଁ ହେଲେ ଅଜିତ କେଶରୀ ରାୟ ଓ ଅନନ୍ତ ପଣ୍ଡା । ସେ ଉଭୟେ ଜୀବଦ୍ଦଶାରେ ଥାଇ ମଧ୍ୟ ଇତିହାସ ପାଲଟି ଗଲେଣି ।' ଗ୍ରନ୍ଥକାର ଏହି ତିନିଜଣଙ୍କୁ ଆଗ୍ରର୍ଯ୍ୟ ଶରତଚନ୍ଦ୍ର, ପଣ୍ଡା ସାର୍‌ଙ୍କ ସୀତାର, ମଡର୍ଣ୍ଣ ଆର୍ଟ୍ ଓ ଅଜିତ୍ କେଶରୀ ଶୀର୍ଷକରେ ଆଲୋଚନା କରିଛନ୍ତି ଏବଂ ପ୍ରସଙ୍ଗ କ୍ରମେ ସେମାନଙ୍କ କଳାକୃତିର ପ୍ରତିଫଳନ

Digitized by srujanika@gmail.com

କରିଛନ୍ତି । ଆଲୋଚନାର ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଶରତ ଚନ୍ଦ୍ରଙ୍କ ପରିଚୟ ଓ ତତ୍କାଳୀନ ଓଡ଼ିଶା ଚିତ୍ରକଳାର ଧାରା ପ୍ରତି ଅଭିବ୍ୟକ୍ତି ପ୍ରଦାନ କରିବା ପ୍ରାସଙ୍ଗିକ ମନେ ହୁଏ । ଆଚାର୍ଯ୍ୟ ଶରତଚନ୍ଦ୍ର ଚିକିଟୀ ଅଧୀଶ୍ୱର ତଥା ପ୍ରତିଷ୍ଠିତ କବି ଓ ନାଟ୍ୟକାର ରାଧାମୋହନ ରାଜେନ୍ଦ୍ର ଦେବଙ୍କ ପୁତ୍ର । ପରମ୍ପରା ଅନୁସାରେ ସେ ବାର୍-ଏଟ୍-ଲ' ପଢ଼ିବା ପାଇଁ ଲଣ୍ଡନ ଗଲେ କିନ୍ତୁ ଆଇନ୍ ଶିକ୍ଷା ଅପେକ୍ଷା ଚିତ୍ରକଳାକୁ ଅଧିକ ପସନ୍ଦ କରି Hearthly School of Arts ରେ କଳା ଶିକ୍ଷା କଲେ । ୟୁରୋପର ବିଭିନ୍ନ ଦେଶ ପରିଭ୍ରମଣ କରି କଳା ସମ୍ପର୍କରେ ଅଧିକ ଜ୍ଞାନକୌଶଳ ଅର୍ଜନ କଲେ । ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଉଚ୍ଚତର ଶିକ୍ଷା ସ୍ଥାପତ୍ୟକଳାରେ ସମାପନ କରି ୧୯୩୮ରେ ଭାରତକୁ ଫେରିଲେ । ସେତିକିବେଳେ ଓଡ଼ିଶାର ଚିତ୍ରକଳା କ୍ଷେତ୍ରରେ ଦୁଇଟି ଧାରା ପ୍ରଚଳିତ ଥିଲା । ଶାନ୍ତିନିକେତନୀୟ ପୁନଃଅଭ୍ୟୁତ୍ଥାନ ଧାରା ଏବଂ କଲିକତା ସ୍କୁଲ୍ ଅଫ୍ ଆର୍ଟ୍ସ୍‌ର ପାଶ୍ଚାତ୍ୟ ଆନୁଷ୍ଠାନିକ ଧାରା । ତତ୍କାଳୀନ ଶିକ୍ଷିତ ଆଭିଜାତ୍ୟ ଗୋଷ୍ଠୀ ପାରମ୍ପରିକ କଳାକୁ ହେୟ ଜ୍ଞାନ କରୁଥିବା ବେଳେ ଶିଳ୍ପୀ ଶରତଚନ୍ଦ୍ର ଭାରତୀୟ କଳାର ମୂଳ ତତ୍ତ୍ୱକୁ ପ୍ରାଧାନ୍ୟ ଦେଇ ଭାରତୀୟ ମୌଳିକ ପରମ୍ପରାକୁ ନେଇ ନୂତନ ଶୈଳୀର ପ୍ରଚଳନ ପାଇଁ ବଦ୍ଧ ପରିକର ହେଲେ । ଫଳତଃ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଧାରାର ଅପୂର୍ବ ସମନ୍ୱୟ ଏବଂ ତାଙ୍କର ବ୍ୟକ୍ତିଗତ ଶୈଳୀର ସଂଯୋଜନା ହେତୁ ଏକ ନୂତନ ଧାରା କଳା କ୍ଷେତ୍ରରେ ସୃଷ୍ଟି ହେଲା । ଯାହାକୁ ଦିନନାଥ ଶରତଚନ୍ଦ୍ରୀୟ ଧାରା ବୋଲି ବିବେଚନା କରନ୍ତି । ଆଚାର୍ଯ୍ୟ ଶରତଚନ୍ଦ୍ରଙ୍କ ଏଇ ପ୍ରିୟତମ ଶିଷ୍ୟ ଜଣକ କଳା ସମାଲୋଚନାର ଧାର ଧାରୁ ନଥିବା ଅପଣ୍ଡିତମାନଙ୍କୁ ଆକ୍ଷେପ କରିଛନ୍ତି ।

ଶରତଚନ୍ଦ୍ରଙ୍କ ଚିତ୍ରଗୁଡ଼ିକ ମୁଖ୍ୟତଃ ପୌରାଣିକ ଆଖ୍ୟାୟିକା ଓ ଦର୍ଶନ ତତ୍ତ୍ୱ ସମ୍ୱଳିତ ଥିଲା । ତାଙ୍କ ଚିତ୍ରର ସାତନ୍ତ୍ର୍ୟ ହେଲା ବର୍ଣ୍ଣ ସଂଯୋଜନା, ଛବିଗୁଡ଼ିକର ବର୍ତ୍ତୁଳତା ଓ ଛନ୍ଦ ରକ୍ଷା ଏବଂ ଚରିତ୍ର ସଂଯୋଜନା । ସେ ସଂଖ୍ୟାଧିକ ଜଳରଙ୍ଗ, ଧୌତ ଓ ଟେମ୍ପେରା ଛବି ଆଙ୍କିଛନ୍ତି । ନାରୀ ଚରିତ୍ରଗୁଡ଼ିକୁ ସେ ଅର୍ଦ୍ଧନଗ୍ନ ଅବସ୍ଥାରେ ପ୍ରକାଶ କରୁଥିଲେ । ନଗ୍ନତା ଭାରତୀୟ ସଂସ୍କୃତିର ଆଦିମ ପରମ୍ପରା ବୋଲି ଗ୍ରହଣ କରି ଅଧକ୍ଷ ଶରତଚନ୍ଦ୍ର ଖଲ୍ଲିକୋଟ ଆର୍ଟ୍ ସ୍କୁଲ୍‌ରେ ନ୍ୟୁଡ୍ ମଡେଲ୍ ଷ୍ଟଡି ପରମ୍ପରା ଆରମ୍ଭ କରିଥିଲେ । ଏହା ଏକ ସମ୍ପୂର୍ଣ୍ଣ ବିଦେଶୀ ବ୍ୟବସ୍ଥା ଥିଲା । ଶରତଚନ୍ଦ୍ରଙ୍କ ଅନବଦ୍ୟ କଳାକୃତି ଭିତରେ **ଭରତ ଭେଟ, ଶ୍ଳୋକଛନ୍ଦ, ଫସଲ ଅମଳର ଗୀତ** ଆଦି ଉଲ୍ଲେଖଯୋଗ୍ୟ । ଚିତ୍ରକଳାର ଇତିହାସରେ ଚମତ୍କାର ରୂପ ସର୍ଜନା ପାଇଁ ଏସବୁ ଚିତ୍ର ଅନନ୍ୟ ।

ରାଜଶିଳ୍ପୀ ଶରତଚନ୍ଦ୍ରଙ୍କ ଭୂଦୃଶ୍ୟ ଚିତ୍ରଣ ପଦ୍ଧତି ଅନ୍ୟ ଶିଳ୍ପୀମାନଙ୍କ ଠାରୁ ନିଆରା । ତାଙ୍କର ଏହି ଚିତ୍ର ପଦ୍ଧତି ସମ୍ପର୍କରେ ଦିନନାଥ କହନ୍ତି - 'ଆଜିକାଲି ଯୁଗରେ ଇଉରୋପିଏନ୍ ରେନାସାଁ ସମୟର ଭୂଦୃଶ୍ୟ ଚିତ୍ରଣର ଏହି ପଦ୍ଧତି ପୋଥି ବାଇଗଣ ଅବସ୍ଥାକୁ ଆସିଲାଣି । ତଥାପି ମୋତେ ଲାଗୁଛି ଶରତଚନ୍ଦ୍ରଙ୍କର ଏହି ଚିତ୍ର ଶିକ୍ଷା ପଦ୍ଧତିରେ ସାରବତ୍ତା ଭରିରହିଛି । ଓଡ଼ିଶାର ଶିଳ୍ପୀମାନେ ଏ ଶୈଳୀକୁ ଆଉ ଥରେ ଆପଣେଇ ନେଲେ ଜଳଚିତ୍ରର ଏକ ନୂଆ ପଦ୍ଧତି ଓଡ଼ିଶାରେ ପୁନଃପ୍ରଚଳିତ ହୋଇପାରନ୍ତା ଏବଂ ଅଭିମାନ ଓ ଦୁଃଖର ସହ ସେ ପ୍ରକାଶ କରନ୍ତି- **'ଯେଉଁମାନେ ତାଙ୍କ ଜୀବନରେ ଗୁରୁର ମହାନ ଦାୟିତ୍ୱ ତୁଲାଇ ନଥିଲେ, ଗୁରୁ ପରମ୍ପରାର ମହନୀୟ ଭୂମିକାରେ କେବେହେଲେ ଉଦ୍‌ବୁଦ୍ଧ ହୋଇନଥିଲେ ସେଭଳି ଶିଳ୍ପୀମାନେ ଶେଷରେ ଗୁରୁ ବୋଲେଇଲେ, ଆଉ ଅସଲ ଶିଳ୍ପୀ ଗୁରୁ ଶିଳ୍ପାଚାର୍ଯ୍ୟ ଶରତଚନ୍ଦ୍ର ସମସ୍ତ ଆଡ଼ମ୍ବର, ପ୍ରତିଷ୍ଠା, ସମ୍ମାନ ଠାରୁ ଦୂରେଇ ରହିଲେ ।** XXX ସେମାନଙ୍କ ସର କିନ୍ତୁ ଅସ୍ତମିତ ହେଲାଣି । ଏଣେ ଶରତଚନ୍ଦ୍ରଙ୍କ ଚିତ୍ରର ମହକ, ମହନୀୟତା ବିକଶିତ ହୋଇଉଠୁଛି । ମୁଁ ଶରତଚନ୍ଦ୍ରଙ୍କ ଆଶିଷ ଲଭିବାର ସୌଭାଗ୍ୟ ଅର୍ଜନ କରିଥିଲି । ମୋ ଶିଳ୍ପୀ ଜୀବନର ବିକାଶରେ ତାଙ୍କର ଅବଦାନ ଚିର ସ୍ମରଣୀୟ ।' (ପୃ ୧୬୯-୭୦)

Digitized by srujanika@gmail.com

ଅନ୍ୟତମ ଚିତ୍ରଶିଳ୍ପୀ ଶାନ୍ତି ନିକେତନର ଛାତ୍ର ଖଲ୍ଲିକୋଟ ଆର୍ଟ୍ ସ୍କୁଲର ଅଧ୍ୟାପକ ଅଜିତ୍ କେଶରୀ ରାୟ ଯଦିଓ ଭାରତୀୟ ଚିତ୍ରକଳା ବିଭାଗର ମୁଖ୍ୟ ଥିଲେ ତେବେ ମନରେ ପ୍ରାଣରେ ଥିଲେ ଆଧୁନିକ କଳା ପରମ୍ପରାର ପୂଜାରୀ । ଓଡ଼ିଶା ଲଳିତ କଳା ଏକାଡ଼େମୀର ପ୍ରଥମ ଚିତ୍ରକଳା ପ୍ରଦର୍ଶନୀରେ ତାଙ୍କର **ପ୍ଲାଇଟ୍** ଚିତ୍ର ପୁରସ୍କୃତ ହେଲା । ଓଡ଼ିଶାରେ ଆଧୁନିକ କଳାର ତଥ୍ୟ ଭିତ୍ତିକ ଇତିହାସ ଏଇଠୁ ଆରମ୍ଭ ହେଲା ବୋଲି କୁହାଯାଏ । ଅଜିତ୍ କେଶରୀଙ୍କ ସ୍କେଚ୍ କରିବା ପ୍ରଣାଳୀ ବଡ଼ ଅଦ୍ଭୁତ । ସେ ସମ୍ପର୍କରେ ଚିତ୍ରଶିଳ୍ପୀ ଦିନନାଥ କହନ୍ତି - 'ସ୍କେଚ୍‌ରେ ସିଏ ଦୃଶ୍ୟମାନ ବସ୍ତୁ ଓ ଜୀବଜନ୍ତୁମାନଙ୍କର ବାହ୍ୟପଣକୁ ଆପଣାଇବାକୁ ଚେଷ୍ଟା କରିବେ, ବନେଇ ଚୁନେଇ ସୁନ୍ଦର କରିବା ତାଙ୍କର ଧାରା ନୁହେଁ । ରେଖାର ଦୃଢ଼ତା, ଶୈଖିକତା ଓ ଚାରିତ୍ରିକ ସାମ୍ୟ ସହିତ ସ୍କେଚ୍‌ଗୁଡ଼ିକ ଅପୂର୍ବ ଦେଖାଯିବ ।' ପ୍ରକାଶଯୋଗ୍ୟ ଯେ ଅଜିତ୍ କେଶରୀ ଲଣ୍ଡନରେ ପଥର ଖୋଦେଇ ଶିଖିଥିଲେ, କିନ୍ତୁ ଭାସ୍କର୍ଯ୍ୟ ଆଡ଼କୁ କେବେ ମନ ବଳେଇ ନଥିଲେ । ସେ ଆଧୁନିକ ଚିତ୍ରକଳାର ପ୍ରବାଦ ପୁରୁଷ ପିକାସୋ ଓ ବ୍ରାକ୍‌ଙ୍କ ଅନୁସରଣରେ 'ଦି ଭାଓଲିନିଷ୍ଟ', 'ବୋଟ୍‌ସ୍', 'ହାରଭେଷ୍ଟ ଟାଇମ୍' 'ଫ୍ଲାଓ୍ୱାର-ଭାସ୍', 'ଆଫ୍‌ଟର୍ ଦ ଲଞ୍ଚ୍ ପାର୍ଟି' 'ସେଟରଡ୍ ସନ୍' ପ୍ରଭୃତି ଛବି ଆଙ୍କିଥିଲେ । ଆଧୁନିକ ଚିତ୍ରକଳା ପାଇଁ ସେ ବିଲେଇ ବେକରେ ପ୍ରଥମ ଘଣ୍ଟି ବାନ୍ଧି ଆମମାନଙ୍କ ପାଖରେ ଯଶସ୍ୱୀ ହୋଇଛନ୍ତି ।

ଅଧ୍ୟାପକ ଅନନ୍ତ କୁମାର ପଣ୍ଡା ବିଶ୍ୱ ବିଖ୍ୟାତ ଭାସ୍କର ରାମ୍‌କିଙ୍କରଙ୍କ ଛାତ୍ର । ଶାନ୍ତିନିକେତନ ଫେରନ୍ତା । ପ୍ରସିଦ୍ଧ ଚିତ୍ରଶିଳ୍ପୀ ଉତ୍ତର ବାଲେଶ୍ୱର ଭୋଗରାଇର ବସନ୍ତ ପଣ୍ଡାଙ୍କ ସୁଯୋଗ୍ୟ ସନ୍ତାନ । ପ୍ରକାଶ ଥାଉକି, ବସନ୍ତ ପଣ୍ଡା ବର୍ଣ୍ଣ ପ୍ରଲେପର ସ୍ୱଚ୍ଛତା ରକ୍ଷା କରି ଜଳରଙ୍ଗର ଭୂଦୃଶ୍ୟ ଚିତ୍ରଣରେ ସିଦ୍ଧହସ୍ତ ଥିଲେ । ପିତାଙ୍କ ଦ୍ୱାରା ଅନନ୍ତ ପ୍ରଭାବିତ ହେଲେ ବି ଭୂଦୃଶ୍ୟ ଚିତ୍ରଣ ଶୈଳୀ ତାଙ୍କର ଥିଲା ସ୍ୱତନ୍ତ୍ର ଏବଂ ସେ ତୈଳଚିତ୍ରରେ ଅପୂର୍ବ ଦକ୍ଷତା ହାସଲ କରିଥିଲେ । ଆର୍ଟ୍‌ସ୍କୁଲ୍‌ର ଅନ୍ୟ ସବୁ ବିଭାଗ ଠାରୁ ଅଧିକ ଦକ୍ଷ ଓ ଗୁରୁତ୍ୱପୂର୍ଣ୍ଣ କରି ଗଢ଼ି ତୋଳିବା ପାଇଁ ସେ ଦିନରାତି ଛାତ୍ରଛାତ୍ରୀଙ୍କ ପିଛା ଧରିଥିଲେ । ନେଚର୍ ଷ୍ଟଡି, ଏନାଟମି, ୱାଟର୍ କଲର୍ ପେଣ୍ଟିଂ, ଦାରୁ ଭାସ୍କର୍ଯ୍ୟ ଏବଂ ତତ୍ ସହିତ ଚିଲିକାରେ ମାଛଧରା, ଅଧ୍ୟାପକ ଅଜିତ୍ କେଶରୀ ଓ ଅଧ୍ୟାପକ ଲୋକନାଥ ଶତପଥୀଙ୍କ ସହ ମିଶି ପକ୍ଷୀ ଶିକାର, ସୀତାର ବାଦନ ଓ ମଦ୍ୟପାନ ଭିତରେ ସେ ନିଜକୁ ବୁଡ଼ାଇ ରଖୁଥିଲେ । ଦିନନାଥ ଲେଖିଛନ୍ତି - 'ପଣ୍ଡାସାର୍ କହିଲେ ଦିନେ ଚିତ୍ର, ଭାସ୍କର୍ଯ୍ୟ, ସୀତାର, ସଙ୍ଗୀତ, କବିତା, ଉନ୍ମାଦନା ଓ ପ୍ରଚୋଦନାକୁ ବୁଝାଉଥିଲା ।' (ପୃ ୧୮୪) ଅନନ୍ତ ପଣ୍ଡାଙ୍କ କମ୍ପୋଜିସନ୍ କ୍ଲାସରେ ଚିତ୍ର ଓ ସଙ୍ଗୀତର ରେୟାଜର ପ୍ରତ୍ୟକ୍ଷ ଅନୁଭୂତି ପାଇ ସେ ଲେଖିଛନ୍ତି - 'ଜୀବନରେ ପ୍ରଥମ କରି ମୁଁ ବୁଝିଲି ଚିତ୍ର ଓ ସଙ୍ଗୀତ, ବର୍ଣ୍ଣ ଓ ସ୍ୱରର ଯୁଗଳବନ୍ଦୀ, ପ୍ରଥମ କରି ମୋତେ ଏ ଅପୂର୍ବ ଅନୁଭବ ହେଲା । ଚିତ୍ର ଉତ୍ତରିତ ହେଲେ ସଙ୍ଗୀତ ହୋଇଯାଏ । ଏହା ହିଁ ସ୍ୱଦେଶୀ କଳାର ପରମ୍ପରା, ଏହା ହିଁ ରବୀନ୍ଦ୍ର ପରମ୍ପରା ।' (ପୃ ୧୮୩)

ଅଧ୍ୟାପକ ଅନନ୍ତ କୁମାର ପଣ୍ଡା ହୃଦବୋଧ କରିଥିଲେ ଯେ, ଚିତ୍ରଶିଳ୍ପୀ ଜଣେ ସମ୍ପୂର୍ଣ୍ଣ ନିଆରା ମଣିଷ । ସମାଜର ନୀତି ନିୟମ ଭିତରେ ସେ ବନ୍ଧା ନୁହେଁ । ସାଧାରଣ ଠାରୁ ଭିନ୍ନ ହୋଇ ଅସାଧାରଣରେ ପହଞ୍ଚିବା ହିଁ ସୃଜନଶୀଳ ମଣିଷର କର୍ତ୍ତବ୍ୟ ।

ଅଜିତ୍ କେଶରୀ, ପିକାସୋଙ୍କୁ ଏବଂ ଅନନ୍ତ ପଣ୍ଡା ରାମ କିଙ୍କରଙ୍କୁ ଖଲ୍ଲିକୋଟ ଆର୍ଟ୍ ସ୍କୁଲ୍‌ରେ ଉଭା କରାଇଥିଲେ । ଚିତ୍ରକଳା କ୍ଷେତ୍ରରେ ଯେତେ ସବୁ ପରୀକ୍ଷା ନିରୀକ୍ଷା ତୈଳଚିତ୍ର ବିଭାଗରେ ହେଉଥିଲା । ଏହି ବିଭାଗ ଓଡ଼ିଶା ମାଟିରେ ଆଧୁନିକତାର ମନ୍ଦାକିନୀ ପ୍ରବାହିତ କରିଥିଲା ।

Digitized by srujanika@gmail.com

ଅନ୍ୟତମ ଅଧ୍ୟାପକ ବିପ୍ରଚରଣ ମହାନ୍ତି କଲିକତା ଆର୍ଟ୍ ସ୍କୁଲର ଏକଦା ଛାତ୍ର । ଚେକୋସ୍ଲୋଭାକିଆ ଯାଇ ଭାସ୍କର୍ଯ୍ୟରେ ଉଚ୍ଚତର ଗବେଷଣା କରିବା ପାଇଁ ଚେକ୍ ସରକାରଙ୍କ ପକ୍ଷରୁ ଆନ୍ତର୍ଜାତିକ ବୃତ୍ତି ପାଇଥିଲେ । ସେ ଓଡ଼ିଶାରେ ସର୍ବ ପ୍ରଥମେ ମାର୍ବଲ୍‌ରେ ମଧୁବାବୁଙ୍କ ମୂର୍ତ୍ତି ଗଢ଼ିଲେ । ଏହା ଓଡ଼ିଶାର ସର୍ବପ୍ରଥମ ମାର୍ବଲ୍ ମୂର୍ତ୍ତି । ତେବେ ତାଙ୍କର ୱାଟର୍ କଲର୍ ହାତ ଥିଲା । ଗୁଣାତ୍ମକ ଦୃଷ୍ଟିରୁ ତାଙ୍କର ଛବିଗୁଡ଼ିକ ଅତ୍ୟନ୍ତ ଆକର୍ଷଣୀୟ ଥିଲା । ବିପ୍ର ଚରଣଙ୍କ ଦୁଇ, ତିନୋଟି ଜଳରଙ୍ଗର ଭୂଦୃଶ୍ୟକୁ ଏବେ ବି ସ୍ମରଣ କରନ୍ତି ଦିନନାଥ ।

ଏହି ସ୍ମୃତି ଗ୍ରନ୍ଥରେ ଗ୍ରନ୍ଥକାର ମନେ ପକାଇଛନ୍ତି ଇନ୍‌ଷ୍ଟ୍ରକ୍ଟର ରବିନାରାୟଣ ନାୟକ ଓ ହରେକୃଷ୍ଣ ବେହେରାଙ୍କୁ । ରବିନାରାୟଣ ବାତିକ୍, ଲେଦର୍ କ୍ରାଫ୍ଟ ଓ ଡେକୋରେଟିଭ୍ ଡିଜାଇନ୍ ପଢ଼ାଉଥିବା ବେଳେ ହରେକୃଷ୍ଣ 'ପଟରୀ' ବିଭାଗରେ ଥିଲେ । 'ପଟରୀ' ବିଭାଗ ପ୍ରତି ଗୁରୁତ୍ୱ ଥିଲା । ଏଥିପାଇଁ ସତନ୍ତ୍ର ପ୍ରକୋଷ୍ଠ ନଥିଲା । ତେଣୁ ହରେକୃଷ୍ଣ ତୈଳଚିତ୍ର ପାଇଁ ଷ୍ଟ୍ରେଚର୍ ଫ୍ରେମ୍ କରୁଥିଲେ, ଟେବୁଲ୍, ଚୌକି ମରାମତି କରୁଥିଲେ । ଘ୍ଵ' ଢବଲକୁ ଯୋଡ଼ି ବାକ୍‌ସ କରୁଥିଲେ । ତାଙ୍କୁ ଓଡ଼ିଶା ପୋର୍ଟ୍‌ଫୋଲିଓ ବ୍ୟାଗ୍‌ର ଉଦ୍ଭାବକ ବୋଲି ଦିନନାଥ ମତ ପ୍ରକାଶ କରିଛନ୍ତି । ପଟରୀ ସମ୍ପର୍କରେ ସେ କହନ୍ତି -'ମୋର ସନ୍ଦେହ ହୁଏ ଖଲ୍ଲିକୋଟ ଆର୍ଟ୍ ସ୍କୁଲ୍‌ରେ ଆମକୁ ପଢ଼ାଉଥିବା ଅଧ୍ୟାପକମାନଙ୍କ ମଗଜରେ ଆଧୁନିକ କଳାରେ ପଟରୀର ମହତ୍ତ୍ୱ ସମ୍ପର୍କରେ କିଛି ଧାରଣା ନଥିଲା । (ପୃ ୨୪୬) ପ୍ରକାଶଯୋଗ୍ୟ ଯେ, ସର୍ବଭାରତୀୟ ସ୍ତରରେ ଆଧୁନିକ କଳାଶିକ୍ଷା କ୍ଷେତ୍ରରେ କୁମ୍ଭାର ଚକ ପ୍ରୟୋଗର ବହୁ ବର୍ଷ ପୂର୍ବରୁ ଚିତ୍ରଶିଳ୍ପୀ ଦିନନାଥ ଏବଂ ତାଙ୍କର ସତୀର୍ଥ ବନ୍ଧୁ ଏବର୍‌ହାର୍ଡ ଫିସର୍ (ମ୍ୟୁଜିୟମ ରିଟ୍‌ବର୍ଗ୍, ସୁଇଜର୍‌ଲାଣ୍ଡର ନିର୍ଦ୍ଦେଶକ) ମିଳିତ ଭାବେ ଜର୍ମାନ ଭାଷାରେ ରଚନା କରିଥିଲେ କୁନଷ୍ଟ ଉଣ୍ଡ୍ କୁଲଟର୍ ଇନ୍ ନୋର୍‌ଦଷ୍ଟ ଇଣ୍ଡେନ୍ । ଏଥିପାଇଁ ସେମାନେ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଓ ବକ୍‌ସିବାଡ଼ିଗାଁର କୁମ୍ଭାରମାନଙ୍କ ଶିଳ୍ପ ଚତୁରୀକୁ ପୁଞ୍ଜି ଭାବେ ଗ୍ରହଣ କରିଥିଲେ ।

ରବିନାରାୟଣଙ୍କର ଏକ ରୁଚିପୂର୍ଣ୍ଣ ଷ୍ଟୁଡିଓ ଥିଲା । ସାଜସଜ୍ଜା ଶାନ୍ତିନିକେତନୀୟ ଢ଼ାଞ୍ଚା । କାରଣ ସେ ଶାନ୍ତି ନିକେତନର କଳା ଛାତ୍ର ଥିଲେ । ସେ ଏକଜିଦିଆ, ଯାହା ବୁଝିଥିବେ ସେୟା । ମାର୍ଜିତ ରୁଚି ସମ୍ପନ୍ନ ବ୍ୟକ୍ତି । ସେ ରେଖା ଓ ବିନ୍ଦୁର ଅଦ୍ଭୁତ ସଂଯମ ଓ ଶୃଙ୍ଖଳାରେ ଚିତ୍ର ଆଙ୍କୁଥିଲେ । ଆଳଙ୍କାରିକ ସାମ୍ୟ, ଛନ୍ଦର ଲାଳିତ୍ୟ ତାଙ୍କ ସୃଷ୍ଟିର ମୁଖ୍ୟ ଆବେଦନ । ସେ ଥିଓରି କ୍ଲାସ କରୁଥିଲେ । ପିଲାଙ୍କୁ ନୋଟ୍ ଡାକୁଥିଲେ । ତାଙ୍କର ଥିଓରୀ କ୍ଲାସ କହିଲେ 'ନନ୍ଦଲାଲ ଅନ୍ ଆର୍ଟ୍' ଗ୍ରନ୍ଥର ନିର୍ଯ୍ୟାସ । ଦିନନାଥଙ୍କର ଏହି କ୍ଲାସ ପାଇଁ ଆଦୌ ଆଗ୍ରହ ନଥିଲା । କିନ୍ତୁ ଆଜି ସେ ନିଜ ବନ୍ଧୁମାନଙ୍କ ପୁରୁଣା ଖାତା ଓଲଟାଇବା କଥା ଲେଖିଛନ୍ତି ।

ରବିନାରାୟଣଙ୍କ ଛବି ଭିତରେ 'ଉମାର ତପସ୍ୟା', 'ଅର୍ଜୁନ, 'ଅଭିସାରିକା ରାଧା', 'ଶକୁନ୍ତଳା', 'ମୀରାବାଈ', ଆଦି ଉଲ୍ଲେଖଯୋଗ୍ୟ । ତେବେ ସେ ସଂଖ୍ୟାଧିକ 'ଚିଲିକା' ଛବି ଆଙ୍କିଛନ୍ତି । **ତାଙ୍କ ଅଙ୍କିତ 'ଚିଲିକା' ଚିଲିକାର ଏକ ସପ୍ନିଳ ରୂପକଳ୍ପ । ଏ ସମ୍ପର୍କରେ ଦିନନାଥ କହିଛନ୍ତି- 'ଯଦିଓ ଚିତ୍ର ବାସ୍ତବର ଅନୁକରଣ ନୁହେଁ, ତଥାପି ତାଙ୍କ ହାତ ଅଙ୍କା 'ଚିଲିକା' ଉଭୟ କାଳ୍ପନିକ ଓ କାବ୍ୟିକ ।' ତାଙ୍କର ଚିଲିକା ଚିତ୍ର ଘେରି କରି ଅନ୍ୟ ଶିଳ୍ପୀ ସେମାନଙ୍କ ନାମରେ ନାମିତ କରିଥିବା ଅଭିଯୋଗ ହୁଏ । ଅନ୍ୟମାନଙ୍କ ମଧ୍ୟରେ ଗ୍ରନ୍ଥକାର ମନେ ପକାଇଛନ୍ତି ଅଧ୍ୟାପକ ଲୋକନାଥ ଶତପଥୀଙ୍କ 'ସୁଲେଖା', 'କାଳିର ପୋଷ୍ଟର', 'ପଦ୍ମାଦିଦିଙ୍କ କ୍ରୁସ୍‌ଷ୍ଟିଚ୍, ଲାଲାଙ୍କ ବେତ ବାଉଁଶର ଡାଲା, ବିନୋଦ ରାଉତରାୟଙ୍କ ଗ୍ରାଫିକ୍ ଆର୍ଟ୍ ।**

ନିଜ ଅଧ୍ୟାପକମାନଙ୍କ ଦୋଷଗୁଣର ଚର୍ଚ୍ଚା ଅତି ବିସ୍ତୃତ ଭାବେ କରିଛନ୍ତି ଦିନନାଥ । ସେ ଦିନର କୋମଳମତି କଳାଛାତ୍ର ଦିନନାଥଙ୍କ ମାନସପଟରେ ଯେଉଁ ଛାପ ଥିଲା, ତାହା ଅପ୍ରିୟ ହେଲେ

Digitized by srujanika@gmail.com

ବି ସତ୍ୟ ଭାବେ ଆତ୍ମପ୍ରକାଶ ପାଇଛି ଏହି ଗ୍ରନ୍ଥରେ । ଏହା ଶିକ୍ଷକ ସମାଜ ପାଇଁ ଏକ ଚେତାବନୀ । ଆଗାମୀ ଦିନ ପାଇଁ ଆହ୍ୱାନ ।

ଖଲ୍ଲିକୋଟ ଚିତ୍ରକଳା ଜୀବନରେ ସେ ସ୍ମରଣ କରିଛନ୍ତି ସତୀର୍ଥ ବନ୍ଧୁମାନଙ୍କର କଳାକୃତିକୁ । ରାମହରି ଜେନାଙ୍କ ପ୍ରଥମ ଆଧୁନିକ ଚିତ୍ରକଳାର ଜାତୀୟ ପୁରସ୍କାର (୧୯୮୮), ଶିବ ପାଣିଗ୍ରାହୀଙ୍କ ଆଧୁନିକ ଚିତ୍ର 'ଥ୍ରୀ ସିଷ୍ଟର୍ସ' (୧୯୬୨ ମସିହାରେ ଓଡ଼ିଶା ଲଳିତ କଳା ଏକାଡ଼େମୀର ପ୍ରଥମ ପୁରସ୍କାର) ଏବଂ ଜଳରଙ୍ଗର ଚିତ୍ର 'ଏ ଭିଉ ଅଫ୍ ଖଲିକୋଟ' (୨ୟ ପୁରସ୍କାର) । ଭାସ୍କର ସାମୀଙ୍କ 'ରସଲକୋଣ୍ଡା' ଘାଇର ଚିତ୍ର ସମ୍ପର୍କରେ ସେ କହନ୍ତି - 'ଆସିକା ଡ୍ରଇଁମାଷ୍ଟ୍ରେ ହରିଶରଣ ମହାପାତ୍ରଙ୍କ ପ୍ରିୟତମ ଛାତ୍ର ଭାସ୍କର ସାମୀଙ୍କ ଚମତ୍କାର ରିଏଲିଷ୍ଟିକ୍ ହାତ । ସିଏ ଷାଠିଏ ଦଶକରେ ଫଟୋ ରିଏଲିଜମ୍‌ର ଯେଉଁ ଚିତ୍ର ଆଙ୍କୁଥିଲେ, ଏବର ଧାରାରେ ତାକୁ ଉତ୍ତର ଆଧୁନିକ କୁହାଯିବ ।'

ଦିନନାଥଙ୍କ ଲାଇଫ୍ ଷ୍ଟଡ଼ି ଓ ଷ୍ଟିଲ୍ ଲାଇଫ୍ ଦେଖି ଛାତ୍ରଛାତ୍ରୀମାନେ ଈର୍ଷା କରୁଥିବା ତାଙ୍କର ଜଣେ ବନ୍ଧୁ ଏହି ଗ୍ରନ୍ଥରେ ପ୍ରକାଶ କରିଛନ୍ତି । କାରଣ ସେ ଅତି ଆକର୍ଷଣୀୟ ଓ ଚମତ୍କାର ରିଏଲିଷ୍ଟିକ୍ ଚିତ୍ର ଆଙ୍କୁଥିଲେ । ତୃତୀୟ ବର୍ଷରେ ସେ କ୍ୟୁବିକ୍ ଭାବଧାରାରେ ଆଙ୍କିଛନ୍ତି **ଘ' ବଗିଘର ଲଳନା, ପ୍ରେମୀଯୁଗଳ** । ତାଙ୍କର ଜଳରଙ୍ଗରେ ଯେତେ ଚମତ୍କାରିତା ଥିଲା ତୈଳଚିତ୍ରରେ ତା' ଠାରୁ ଅଧିକ ମାଦକତା ଥିଲା ।

ଖଲ୍ଲିକୋଟ ବହୁ ବିଖ୍ୟାତ ଚିତ୍ରକର ଓ ନିପୁଣ ଭାସ୍କର୍ଯ୍ୟଙ୍କୁ ଜନ୍ମ ଦେଇଛି । ଆଧୁନିକ କଳାରେ ଯେତେ ସବୁ ପରୀକ୍ଷା ନିରୀକ୍ଷା ହୋଇଛି, ଜାତୀୟ ଆନ୍ତର୍ଜାତୀୟ ସ୍ତରରେ ଯେଉଁ ଖ୍ୟାତି ମିଳିଛି, ସବୁ ଏଇ ଖଲ୍ଲିକୋଟର ଏକଦା କଳାଛାତ୍ରମାନଙ୍କୁ ନେଇ । ସବୁରି ମୂଳରେ ଏଇ ଖଲ୍ଲିକୋଟ । ଆଧୁନିକ ଚିତ୍ରକଳାର ତ୍ରିମୂର୍ତ୍ତିଙ୍କ ସେ ଉତ୍ତର ଦାୟାଦ ବୋଲି ଦିନନାଥ ମତ ପୋଷଣ କରିଛନ୍ତି । ଏହା ଯଥାର୍ଥ । ଓଡ଼ିଶା କଳା ଇତିହାସର ସେ ଯେଉଁ ନୂତନ ଦିଗନ୍ତ ସୃଷ୍ଟି କରିଛନ୍ତି ତାହାର ପଟାନ୍ତର ନାହିଁ । କଳାକୁ ସାହିତ୍ୟ ସହିତ ସଂଯୋଜନା, କଳା ସମାଲୋଚନା ପାଇଁ ସେ ସୀକୃତି ପାଇଛନ୍ତି । ଯେଉଁ ପ୍ରତିଷ୍ଠାନରୁ ତାଙ୍କର କଳା ଜୀବନର ବିକାଶ ଘଟିଛି, ତା' ପାଇଁ ସେ କିଛି ସେବା କରିବାର ସୁଯୋଗ ପାଇନଥିବା ହେତୁ ଗଭୀର ଦୁଃଖ ପ୍ରକାଶ କରିଛନ୍ତି । ଜରାଜୀର୍ଣ୍ଣ ଭଗ୍ନ ରାଜପ୍ରାସାଦର ଶ୍ରୀହୀନ ରୂପ ଦେଖି ସେ ଆଘାତ ପାଇଛନ୍ତି । ଅଭୁଲା ସ୍ମୃତିକୁ ସାଉଁଟି ଆଣିଛନ୍ତି । ଏଠୁ ଅନ୍ତରିତ ଓ ଅନ୍ତର୍ହିତ ହୋଇଯାଇଛି ସ୍ଥାପତ୍ୟାଂଶ, ଭାସ୍କର୍ଯ୍ୟ । ତେବେ ବର୍ତ୍ତମାନର ଅଧ୍ୟକ୍ଷ ଡି. ନାରାୟଣ ରାଓ ମହାବିଦ୍ୟାଳୟର ଐତିହ୍ୟ ବଞ୍ଚାଇବା ପାଇଁ ଯେଉଁ ପ୍ରୟାସ ଜାରି ରଖିଛନ୍ତି, ତା'ର ଭୂୟସୀ ପ୍ରଶଂସା କରିଛନ୍ତି ସେ ।

**ଚିଲିକା ପାଣିରେ ଛାଇ** ଦିନନାଥଙ୍କ ଅନବଦ୍ୟ ସୃଷ୍ଟି । ତୂଳୀରୁ ଚିତ୍ର ପରି ଅନୁରୂପ ଭାଷା ସ୍ଫୁରିତ ହୋଇଛି ତାଙ୍କ ଲେଖନୀ ମୂନରୁ । ରୂପଚର୍ଯ୍ୟାର ମାଧୁରିମା, ଅନାବିଳ ଭାବ ପ୍ରକାଶ, ଅଭିବ୍ୟକ୍ତିରେ ଦୃଢ଼ତା, ଆତ୍ମବିଶ୍ୱାସ ଓ ଆତ୍ମୋପଲବଧି, କାବ୍ୟିକ ପ୍ରକାଶ ଭଙ୍ଗୀ ଜୀବନୀ ଗ୍ରନ୍ଥର ମୂଲ୍ୟବୋଧକୁ ଉନ୍ନୀତ କରିଛି । ଚିଲିକାର ନୀଳଜଳ, ନୀଳ ତରଙ୍ଗରେ ଭାସି ଉଠୁଛି ଓଡ଼ିଶା କଳାର ଇତିହାସ । ଚହଲା ପାଣିର ଢେଉରେ ଚିତ୍ରଶିଳ୍ପୀ ଦିନନାଥ ସେ ଦିନର ନିଜ ଛାଇକୁ ଏବେ ବି ଖୋଜୁଛନ୍ତି ।

Digitized by srujanika@gmail.com

**ଧରଣୀଧର ନାୟକ**

## ଶ୍ଳୋକଛନ୍ଦର ବର୍ଣ୍ଣିଳ ପୃଥିବୀ

ଗୋଟିଏ ଚିତ୍ରର ସର୍ଜନା ଓ ତା'ର ନିର୍ମାଣର ପ୍ରସଙ୍ଗକୁ ଆଧାର କରି ଏଯାବତ୍ ଓଡ଼ିଆ ଭାଷାରେ କୌଣସି ଉପନ୍ୟାସ ରଚିତ ହୋଇନଥିଲା । ଦିନନାଥ ପାଠୀଙ୍କ ଚିତ୍ରୋପନ୍ୟାସ **ଶ୍ଳୋକଛନ୍ଦ** (୨୦୦୧) ଆମ ସାହିତ୍ୟର ଏ ଅଭାବବୋଧକୁ ନିଶ୍ଚିତଭାବେ ପୂରଣ କରିପାରିଛି, ଏହା ଅକୁଣ୍ଠ ଚିତ୍ତରେ ସ୍ୱୀକାର କରିହେବ । ବ୍ୟାଧକୁ ଅଭିଶାପ ଦେବା କାଳରେ ବାଲ୍ମୀକିଙ୍କ ମୁଖରୁ ଯେଉଁ ଶ୍ଳୋକଟି ଉଚ୍ଚାରିତ ହୋଇଥିଲା ତାକୁ ଅବଲମ୍ବନ କରି ଭାରତୀୟ ସଂସ୍କୃତିର ଅନ୍ୟତମ ମୂଳଗ୍ରନ୍ଥ ରାମାୟଣ ରଚିତ ହୋଇଥିଲା । ଏହି ମୂଳ ସଂସ୍କୃତ ରାମାୟଣକୁ ଅନୁସରଣ କରି ପରବର୍ତ୍ତୀ କାଳରେ ବିଭିନ୍ନ ଭାଷାରେ ବିଭିନ୍ନ ପ୍ରାନ୍ତରେ ଏ ଭଳିକି ଭାରତ ବାହାରେ ମଧ୍ୟ ରାମାୟଣମାନ ରଚିତ ହେଲା । ଏହି ସାରସ୍ୱତ ସୃଜନ ଆନ୍ଦୋଳନର ବହୁବର୍ଷ ପରେ ରାମାୟଣ କଥା ଭାସ୍କର୍ଯ୍ୟରେ ଓ ଚିତ୍ରରେ ପ୍ରତିଫଳିତ ହେଲା । ଗତ ଶତାବ୍ଦୀର ଚାଳିଶି ଦଶକରେ ଚିକିଟି ରାଜପରିବାରର ଜଣେ ଚିତ୍ରଶିଳ୍ପୀ, ଆଚାର୍ଯ୍ୟ ଶରତଚନ୍ଦ୍ର ଆଧୁନିକ ଶୈଳୀରେ ବାଲ୍ମୀକିଙ୍କ ମୁଖ ନିଃସୃତ ଶ୍ଳୋକ, 'ମା ନିଷାଦ............'କୁ ଆଧାର କରି ଚିତ୍ରଟିଏ ନିର୍ମାଣ କରି ଏହାର ନାମକରଣ କଲେ **ଶ୍ଳୋକଛନ୍ଦ** । ଏହାର ଉଦ୍ଭବ ଓ ଉତ୍ସ ରାମାୟଣ ମହାକାବ୍ୟର ଉତ୍ସ ସହିତ ସାମଞ୍ଜସ୍ୟ ରକ୍ଷାକରୁଥିଲେ ମଧ୍ୟ, ଏହାର ବିସ୍ତାର ଓ ଚିତ୍ରଭୂମିର ପରିସର ସଂପୂର୍ଣ୍ଣ ଭିନ୍ନ । ଏହି ଉପନ୍ୟାସର ଲେଖକ ଡକ୍ଟର ଦିନନାଥ ପାଠୀ ଖଲ୍ଲିକୋଟର ଚିତ୍ରକଳା ମହାବିଦ୍ୟାଳୟରେ ଅଧ୍ୟୟନ କରୁଥିବାବେଳେ ନିଜ ଅଧକ୍ଷ ଶରତଚନ୍ଦ୍ର ଦେବଙ୍କ ଏହି ମହାନ୍ କୃତିରେ ପ୍ରଭାବିତ ହୋଇଛନ୍ତି । ଏହି ଚିତ୍ରର ଅନ୍ତରାଳରେ ଥିବା କିଛି ଆଖ୍ୟାୟିକା ଅଧକ୍ଷ ମହାଶୟଙ୍କଠାରୁ ଶୁଣି କୌତୁହଳୀ ହୋଇ ଉଠିଛନ୍ତି । ଦିନନାଥଙ୍କ ଅବଚେତନରେ ଏସବୁ ଗଭୀର ରେଖାପାତ କରିଛି । ସମୟ ଅତିକ୍ରାନ୍ତ ହୋଇଯାଇଛି । ଅଭାବନୀୟ ପରିସ୍ଥିତିରେ ଆଚାର୍ଯ୍ୟ ଶରତଚନ୍ଦ୍ରଙ୍କର ମୃତ୍ୟୁ ହୋଇଛି ।

ଏତେବଡ଼ ଅଭାବକୁ ପୂରଣ କରିବା ପାଇଁ ଔପନ୍ୟାସିକ ଦିନନାଥ ଅଣ୍ଟା ଭିଡ଼ିଛନ୍ତି । ସେ ଓଡ଼ିଶା ରାଜ୍ୟସଂଗ୍ରହାଳୟ କ୍ୟୁରେଟର୍ ଥିଲାବେଳେ **ଶ୍ଳୋକଛନ୍ଦ** ଚିତ୍ରଟିକୁ କଳାବିଭାଗପାଇଁ କ୍ରୟ କରିନେଇଛନ୍ତି । ପରବର୍ତ୍ତୀ କାଳରେ କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚିବ ଥିବାବେଳେ ନିଜ ଗୁରୁ ଶରତଚନ୍ଦ୍ରଙ୍କ ଉପରେ ଇଂରାଜୀ ଓ ହିନ୍ଦୀରେ ଦୁଇଟି ମନୋଗ୍ରାଫ୍ ପ୍ରକାଶ କରିଛନ୍ତି । ଏ ଉଭୟ ପ୍ରକାଶନରେ ଶ୍ଳୋକଛନ୍ଦ ଚିତ୍ର ମୁଖ୍ୟ ଭୂମିକା ଗ୍ରହଣ କରିଛି । କିନ୍ତୁ ଦିନନାଥଙ୍କ ସର୍ଜନ ଉନ୍ମେଷୀ ଆତ୍ମା ଏସବୁ ପ୍ରଚେଷ୍ଟା ଭିତରେ ସୀମୀତ ହୋଇ ରହିନାହିଁ । ସେ ଚାହିଁଛନ୍ତି ଅଧିକ ଅନ୍ୱେଷଣ କରିବାକୁ, ଶ୍ଳୋକଛନ୍ଦର ଅନ୍ତରାଳରେ ତିଷ୍ଠି ରହିଥିବା ବର୍ଣ୍ଣିଳ ପୃଥିବୀର ବ୍ୟାପ୍ତି । ଦୃଶ୍ୟରୂପକୁ, ବର୍ଣ୍ଣବିଭାକୁ ଶବ୍ଦରୂପରେ ଛନ୍ଦିଦେଇ ସେ ସୃଷ୍ଟି କରିଦେଇଛନ୍ତି **ଶ୍ଳୋକଛନ୍ଦ** । ଏହି ପ୍ରେକ୍ଷାପଟଟିକୁ ହୃଦୟରେ ଅବଧାରଣା ନ କଲେ ଶ୍ଳୋକଛନ୍ଦର ଗହନ-ମୁହୂର୍ତ୍ତମାନଙ୍କର ରହସ୍ୟ ଉନ୍ମୋଚନ କରିହେବ ନାହିଁ । ଏହି ସାମାନ୍ୟ ସୂଚନାଟିକକ ହୁଏତ ପାଠକମାନଙ୍କର ଅବବୋଧରେ ସହାୟକ ହୋଇପାରେ ।

ଚିତ୍ରୋପନ୍ୟାସର ଭାବଭୂମି ଖୁବ୍ ବିସ୍ତୀର୍ଣ୍ଣ, ଏହା ଲଣ୍ଡନ ନଗରୀର ଟେଟ୍ ଗ୍ୟାଲେରୀରେ ଅନୁଷ୍ଠିତ ଚିତ୍ରପ୍ରଦର୍ଶନୀରୁ ଆରମ୍ଭ ଓ ବ୍ରହ୍ମପୁର ସହର ଚନ୍ଦ୍ରପ୍ରଭାଶ୍ରମର ଚିତ୍ରଶାଳାରେ ପରିସମାପ୍ତି । କିନ୍ତୁ ପରିସମାପ୍ତି ଭଳି ମନେହେଉଥିବା ମୁହୂର୍ତ୍ତଟିଏର ଅଫୁରନ୍ତ ସମ୍ଭାବନାରୁ ଉଦ୍ଭବିଛି ସାହିତ୍ୟାୟନର ନୂତନ ପ୍ରସ୍ତାବନାଟିଏ । ଦିନନାଥ ପାଠୀଙ୍କ ଏହା ତୃତୀୟ ଚିତ୍ରୋପନ୍ୟାସ । ଚିତ୍ରୋପନ୍ୟାସ କହିବାର ତାତ୍ପର୍ଯ୍ୟ ହେଉଛି, ଚିତ୍ର ଏହି ଉପନ୍ୟାସର ବୀଜ, ବୃକ୍ଷ, ବିସ୍ତାର ଓ ପରିଣତି । ଏହା ପ୍ରକାଶ କଲେ ବୋଧହୁଏ ଅସଙ୍ଗତ ହେବନାହିଁ ଯେ ଜଣେ ଲେଖକର ଶିଳ୍ପ ସର୍ଜନାରେ ପ୍ରତ୍ୟକ୍ଷ ଅନୁଭବ ନଥିଲେ

Digitized by srujanika@gmail.com

ଏଭଳି ରସଦଗ୍ଧ ଉଚ୍ଚାଙ୍ଗ ସାହିତ୍ୟ ନିର୍ମାଣ କରିବା ପ୍ରାୟତଃ ଅସମ୍ଭବ । ସାଧାରଣତଃ ଧାରଣା ହେଇଥାଏ ଯେ ଶିଳ୍ପୀଟିଏ ରଙ୍ଗତୂଳୀ ନେଇ କାନ୍‌ଭାସ୍ ପାଖରେ ବସିଗଲେ ଆଉ କିଛି ଘଣ୍ଟାର ତୂଳୀଚାଳନା ପରେ ଚିତ୍ରଟିଏ ଆଙ୍କିଦେଇ ପାରେ । ଆଉ ଜଣେ ସାହିତ୍ୟିକକୁ ହୁଏତ ଉପନ୍ୟାସଟିଏ ରଚନା କରିବା ପାଇଁ ମାସ ମାସ, ବର୍ଷ ବର୍ଷ ସମୟ ଲାଗେ । ଶ୍ଳୋକଛନ୍ଦ ଉପନ୍ୟାସଟି ପାଠକଲେ ଅନ୍ତତଃ ଏହିଭଳି ଦାନା ବାନ୍ଧିଥିବା ଭ୍ରମଧାରଣା ଦୂର ହୋଇଯିବ । ଉପନ୍ୟାସର କାନ୍‌ଭାସ୍ ଏତେ ବିସ୍ତୃତ ଯେ ଏହା ପ୍ରାୟତଃ ସମଗ୍ର ବିଶ୍ୱକୁ ସୃଜନ ରଜ୍ଜୁରେ ଏକାକାର କରିଦେଇଛନ୍ତି । ମନେହୁଏ ଏହି ଉପନ୍ୟାସର ସଂପ୍ରସାରଣ କ୍ଷମତା ବଡ଼କଥା । ପୂର୍ବରଙ୍ଗ, ଭୂମି, ବିସ୍ତାର, ଗର୍ଭ ଓ ଭୂମା - ଏହି ପଞ୍ଚ ପର୍ଯ୍ୟାୟରେ ଏହାର ପ୍ରାରମ୍ଭ, ପ୍ରବାହ, ଶୀର୍ଷ, ଗ୍ରନ୍ଥିମୋଚନ ଓ ଉପସଂହାର । ଏଥିରେ ଯନ୍ତ୍ରଣାର ସ୍ୱର ଅତ୍ୟନ୍ତ ସଂଭ୍ରମ ଏବଂ ଏହାହିଁ ଲେଖକଙ୍କୁ ରହସ୍ୟ ଉନ୍ମୋଚନ କରିବାକୁ ପ୍ରଚୋଦିତ କରିଛି । ଔପନ୍ୟାସିକଙ୍କ ଭାଷାରେ 'ବିଂଶ ଶତାବ୍ଦୀରେ ଚେତନାର ବିଭିନ୍ନତା ଭିତରେ ଯନ୍ତ୍ରଣା, କବିତା ଓ ଚିତ୍ରକଳ୍ପର ଏକ ମୌଳିକ ଉତ୍ସ । ପିକାସୋଙ୍କ ଚିତ୍ରରେ, ହେନେରୀ ମୁର୍‌ଙ୍କ ଭାସ୍କର୍ଯ୍ୟରେ, କାଫ୍‌କାଙ୍କ ଉପନ୍ୟାସ, ଏଲିଅଟ୍ କିମ୍ବା ଭୀମଭୋଇଙ୍କ କବିତାରେ ଏହି ଯନ୍ତ୍ରଣା ଯିମିତି ଜୀବନ୍ତ, ସିମିତି ଶରତଚନ୍ଦ୍ରଙ୍କ ଶ୍ଳୋକଛନ୍ଦରେ ଯନ୍ତ୍ରଣାର ସ୍ୱର ଆହୁରି କାବ୍ୟଧର୍ମୀ, ବର୍ଣ୍ଣିଳ ଓ ମାର୍ମିକ ।'

ଶ୍ଳୋକଛନ୍ଦର ବିସ୍ତାର ବା ରଚନାଭୂମି ଭିତରେ ଖଲ୍ଲିକୋଟର ରାଜପ୍ରସାଦର ରାଜକୀୟବିଳାସ, ନିର୍ମଳଝରର ବିମଳ ପ୍ରସ୍ତାବନା, ଟେମସ୍ ନଦୀର କ୍ଷୁଦ୍ର ତରଙ୍ଗାବଳୀ, ପ୍ରଶାନ୍ତ ମହାସାଗରର ଉର୍ମିମାଳାର ବିଳାପ, ଭୂମଧ୍ୟ ସାଗରର କାବ୍ୟିକ ଐତିହ୍ୟ, ଲୋହିତ ସାଗରର ବ୍ୟଥା ଓ ସର୍ବୋପରି ଚିକିଟି ଗଡ଼ର ମହତ୍ତ୍ୱ, ରାଧାପ୍ରେମଲୀଳାର ଦକ୍ଷିଣୀ ସଙ୍ଗୀତ ଓ ସଙ୍ଗୀତକାର ସକୀୟ ଜନ୍ମଦାତା ରାଜା ରାଧାମୋହନଙ୍କ ଶୁଭାଶିଷ । ଚିତ୍ରଶିଳ୍ପୀ ଆଚାର୍ଯ୍ୟ ଶରତଚନ୍ଦ୍ର ଏହି ଉପନ୍ୟାସର ମୁଖ୍ୟ ନାୟକ । ପ୍ରେମର ସର୍ଣ୍ଣୀମ ତ୍ରିଭୂଜର ଶୀର୍ଷରେ ଶ୍ୱେତାଙ୍ଗୀ ମେରୀ, ଅନ୍ୟ ବିନ୍ଦୁରେ ରାଜଜେମା ଗୋଲାପ ପ୍ରଭା ଓ ଅନ୍ୟ କୋଣରେ କୈବର୍ତ୍ତ କନ୍ୟା ସାବିତ୍ରୀ । ଏହି ତିନୋଟି ନାରୀ ଚରିତ୍ରର ଅଭ୍ୟୁଦୟ, ରୂପାନ୍ତରୀକରଣ ଭିତରେ କଳ୍ପନାର ଅଭିସାର ଓ ଅଭିନବତ୍ୱ ଉପନ୍ୟାସଟିକୁ ରସସିକ୍ତ କରିଦେଇ ପାରିଛି । ଏହି ରୂପାନ୍ତରର ଚରମ ଅଭିବ୍ୟକ୍ତି ହେଲା କୈବର୍ତ୍ତ କନ୍ୟା ସାବିତ୍ରୀ ସିଦ୍ଧିଦାତ୍ରୀ ମାତୃସରୂପା ନୀଳ ସରସତୀରେ ସମାହିତର ପ୍ରକ୍ରିୟା । ଏହି ତିନୋଟି ଚରିତ୍ରର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଓ କାର୍ଯ୍ୟ-କାରଣ ପ୍ରକ୍ରିୟା ଭିତରେ ଗଢ଼ିଉଠିଛି ଉପନ୍ୟାସର ଗଣ୍ଠି । ଗଣ୍ଠିକୁ ସମୃଦ୍ଧ କରିଛି ପାଶ୍ଚାତ୍ୟ ଓ ପ୍ରାଚ୍ୟର କଳା ଇତିହାସର ବିମଳ ଆଖ୍ୟାୟନ । ଏହି କଥନିକା ମଧ୍ୟରେ ପ୍ରତିବିମ୍ବିତ ହେଇଯାଇଛି ବିଶ୍ୱକଳାର ଅବିସ୍ମରଣୀୟ ଘଟଣାବଳୀ ଓ ଉଲ୍ଲେଖନୀୟ କଳାକୃତି ।

ଶରତଚନ୍ଦ୍ର ଥିଲେ ଚିକିଟିର ଅଧୀଶ୍ୱର, ସକଳ କଳାନିପୁଣ, ସାହିତ୍ୟାନୁରାଗୀ, ବିଦ୍ୟାବାଗୀଶ ଶ୍ରୀଶ୍ରୀ ରାଧାମୋହନ ରାଜେନ୍ଦ୍ର ଦେବଙ୍କ ସୁପୁତ୍ର । ସେ ଓକିଲାତି ପଢିବା ପାଇଁ ଲଣ୍ଡନରେ ପହଞ୍ଚିଲେ ଅଥଚ କଳାର ପ୍ରେମରେ ପଡ଼ି ହିଦେର୍‌ଲି ସ୍କୁଲ୍ ଅଫ୍ ଆର୍ଟ୍‌ରେ ନାମ ଲେଖାଇଲେ । ଲଣ୍ଡନରେ କଳାଶିକ୍ଷା ସମାପ୍ତ କରି ସେ ଓଡ଼ିଶା ଫେରିଲେ ଓ ଓଡ଼ିଶାରେ ଆଧୁନିକ କଳାର ଅଭ୍ୟୁଦୟ ପାଇଁ ବ୍ରହ୍ମପୁର ସହରରେ ନିଜ ଘର ଚନ୍ଦ୍ରପ୍ରଭାଶ୍ରମରେ ଚିତ୍ରକଳା ବିଦ୍ୟାଳୟ ପ୍ରତିଷ୍ଠା କଲେ । ଏଇଠି ମଡ୍‌ଲ୍ ହେବାପାଇଁ ଆସୁଥିବା କୈବର୍ତ୍ତ କନ୍ୟା ସାବିତ୍ରୀ ସହିତ ପରିଚିତି । ଏହିଠାରେ ହିଁ ସେ ଶ୍ଳୋକଛନ୍ଦ ଚିତ୍ରର ଶୁଭାରମ୍ଭ କରିଛନ୍ତି । କିନ୍ତୁ ଚିତ୍ରର ନାୟିକାକୁ ଖୋଜି ପାଇ ନାହାନ୍ତି । ପତ୍ନୀ ଗୋଲାପ ପ୍ରଭା ରାଜକୀୟ ସମ୍ଭ୍ରାନ୍ତର ଦ୍ୱାହୀ ଦେଇ ଚିତ୍ରର ନାୟିକା ହେବାକୁ ପସନ୍ଦ କରି ନାହାନ୍ତି । ସେ କହିଛନ୍ତି ନଅରର ରାଜରାଣୀ ଚିତ୍ରର ନାୟିକା ହେଇପାରେନା । ନାୟିକାର ସନ୍ଧାନରେ ଶରତଚନ୍ଦ୍ର ସାଜିଛନ୍ତି ପରିବ୍ରାଜକ, ସେ ସତେ ଯିମିତ ଘୂରି ବୁଲିଛନ୍ତି ଅକ୍ଷାଂଶରୁ ଦ୍ରାଘିମା, ମେରୁରୁ ମରୁଭୂମି, ଜନାକୀର୍ଣ୍ଣ ଜନପଦରୁ ଜନଶୂନ୍ୟ ସରହଦ । ଶେଷରେ ଏ ଭ୍ରମଣ ଅନୁଭବ ଶରତଚନ୍ଦ୍ରଙ୍କୁ ସର୍ଜନ ସାମର୍ଥ୍ୟ ଯୋଗାଇ ଦେଇଛି ।

Digitized by srujanika@gmail.com

ଚିତ୍ରର ମଝିଭାଗରେ ମାନସହଂସଯୂଥ ବିଚରଣ କରୁଥିବା ଘନନୀଳ ଜଳର ଗୋଟିଏ କ୍ଷୁଦ୍ର ହ୍ରଦ ନିକଟରେ ମାତୃସରୂପା ନୀଳସରସତୀ ଶାୟିତା । ତାଳପତ୍ରର ମୁକୁଳିତ ଖେଦାଉପରେ ସଦ୍ୟଜାତ ଶିଶୁଟିଏ ମାତୃସ୍ତନ୍ୟପାନ ପାଇଁ ଉଦ୍ୟତ । ଏହି ଶିଶୁଟି ହିଁ ରାମାୟଣ କାବ୍ୟ ଯାହା ଅଯୋନି ସମ୍ଭୂତ । ଏଣୁ କ୍ଷୀରର ଧାରା ସ୍ତନରୁ ସ୍ରବୁନାହିଁ, ସ୍ରବି ଯାଉଛି ବାଲ୍ମୀକିଙ୍କ କମଣ୍ଡଳୁର ଅଭିଶାପରୂପକ ଜଳରୁ । ମହାକବି ବାଲ୍ମୀକିଙ୍କ ସୃଜନ ମହିମାହିଁ ଜଳକୁ ଦୁଗ୍ଧରେ ଏବଂ ଅଭିଶାପକୁ ଆଶୀର୍ବାଦରେ ପରିଣତ କରିଦେଉଛି । ଗୋଟିଏ ଉପନ୍ୟାସର ନିର୍ମାଣ ପାଇଁ କଳ୍ପନାର ସମସ୍ତ ପୁଟ ଦିନନାଥଙ୍କର, ଯିଏ ଚିତ୍ରଭଳି ଏକ ନୀରବ ଅଥଚ ବହୁ ବର୍ଣ୍ଣର କବିତାକୁ ବାଙ୍ମୟ କରିବା ପାଇଁ ସରସତୀଙ୍କର ଆଶିଷ ଭିକ୍ଷା କରିଛନ୍ତି । ଶ୍ଳୋକର ମଧୁର ଛନ୍ଦୋବନ୍ଧ ନିଦାନ, ନିର୍ଜନ ବନଭୂମିକୁ ଝଙ୍କୃତ କରିଦେଇଛି । ମୟୂର, ମୟୂରୀ, ମୃଗ, ମୃଗୀ ଉଲ୍ଲାସରେ ନୃତ୍ୟ କରୁଛନ୍ତି । ଗଛଲତା ଆନନ୍ଦରେ ପଲ୍ଲବିତ ଓ ପୁଲକିତ । ଏ ସମସ୍ତ ଉନ୍ମାଦନାକୁ ସାକ୍ଷ୍ୟ ଦେବାପାଇଁ ଗନ୍ଧର୍ବ ଗାନ୍ଧର୍ବୀମାନେ ଝାଞ୍ଜ, ମୃଦଙ୍ଗ ଓ ବୀଣା ନେଇ ସ୍ୱର୍ଗରୁ ଧରାକୁ ଓହ୍ଲେଇ ଆସିଛନ୍ତି । ଆଶ୍ରମର କନ୍ୟାମାନେ ଦେହର ଭଙ୍ଗିମାରେ, ହସ୍ତମୁଦ୍ରା ପ୍ରଦର୍ଶନ ପୂର୍ବକ, ଗ୍ରୀବା ଓ କଟାକ୍ଷର ମାଦକତାରେ, ନୃତ୍ୟରେ ମଜ୍ଜିଯାଇଛନ୍ତି । ରାମାୟଣ ଭଳି ଅମରକାବ୍ୟର ଜନ୍ମବେଳା ଯେତିକି ଝଙ୍କୃତ ଓ ଆହ୍ଲାଦିତ ହେବାକଥା ତାହା ଚିତ୍ରରେ ଯେତିକି ସଫଳଭାବରେ ଘଟିଛି ତାହାଠାରୁ ବହୁଗୁଣରେ ସମ୍ଭବ ହୋଇପାରିଛି ଉପନ୍ୟାସରେ ଭାବ ଓ ଭାଷାର ପ୍ରୟୋଗରେ । **ମନେହୁଏନି ସମସାମୟିକ ଭାରତୀୟ ଚିତ୍ରକଳାର ଏଭଳି ଏକ ବିରଳ ଚିତ୍ରକୁ ଓଡ଼ିଆ ପାଠକଙ୍କୁ ଉପଲବ୍ଧ କରେଇବା ପାଇଁ ଔପନ୍ୟାସିକ ଯେଉଁଭଳି ଭାଷା ଓ ଭାବର ଆଶ୍ରୟ ନେଇଛନ୍ତି, ବିଶେଷକରି ଭାଷାର ପ୍ରବହମାନତା ଶିଳ୍ପ ଚେତନାକୁ ପ୍ରାଣବନ୍ତ କରିବାକୁ ସମର୍ଥ ହୋଇଛି ସେଭଳି ପ୍ରଭାବଶାଳୀ ରଚନା ଓଡ଼ିଆ ସାହିତ୍ୟରେ ଅନ୍ୟତ୍ର କେଉଁଠି ଦେଖାଯାଇନି ।**

**ପ୍ରତ୍ୟେକ ସୃଜନ ଶିଳ୍ପୀ ଦ୍ୱନ୍ଦ୍ୱାତୀତ ହେବାପୂର୍ବରୁ ଦୁଇଟି ପରିଧିର ଆକର୍ଷଣ ଓ ବିକର୍ଷଣରେ ମ୍ରିୟମାଣ ହେଉଥାଏ । ଗୋଟିଏ ଦେହ ଓ ସଂସାରର ସଂପର୍କ ଓ ଜଞ୍ଜାଳ ଏବଂ ଅନ୍ୟଟି ଦେହୋତ୍ତର ସର୍ଜନ ପରାକାଷ୍ଠାର ଆକର୍ଷଣ । ଗୋଟିଏ ସାଧାରଣ ମଣିଷର ସଂସାର ଅନ୍ୟଟି ଶିଳ୍ପୀର ବିଶ୍ୱ । ଗୋଟିଏ ଦୈନନ୍ଦିନ ଜୀବନର, ଅନ୍ୟଟି ଶାଶ୍ୱତ ପରିଧୀର । ଗୋଟିଏ ଆଦର୍ଶ ପତ୍ନୀ ଗୋଲାପ ପ୍ରଭାର ଆସକ୍ତି ଓ ସମ୍ଭ୍ରମର; ଅନ୍ୟଟି ବିଦେଶିନୀ ନାୟିକା ମେରୀର ଅନାବିଳ ପ୍ରେମର ।**

ଉପନ୍ୟାସଟି ପାଠକଲେ ଶବ୍ଦର ଐନ୍ଦ୍ରଜାଲିକ ପ୍ରଭାବ ପାଠକକୁ ଆଚ୍ଛନ୍ନ କରି ରଖିବ । ଶବ୍ଦମାନେ ପାଠକର ହାତଧରି ବାଟ କଢ଼େଇ ନେବେ ଗୋଟିଏ ବର୍ଣ୍ଣିଳ ପୃଥିବୀକୁ । ଏ ପୃଥିବୀରେ ଭେଟିହେବ ଅସଂଖ୍ୟ ଶୃଙ୍ଖଳାବିମୁକ୍ତ ଚିତ୍ରବୀଥିର ବର୍ଣ୍ଣିଳ ଆଭା ଓ ବିଶ୍ୱବନ୍ଦିତ ଶିଳ୍ପୀମାନଙ୍କର ଅନିନ୍ଦ୍ୟ କୃତି ତଥା ସଙ୍ଗୀତଜ୍ଞଙ୍କୁ, ନାଟୁଆ, ଭାଟୁଆ ଓ ରଙ୍ଗର ମଣିଷମାନଙ୍କୁ । ଏମାନଙ୍କ ପରିଧିରେ ମାନବୀୟ ଯନ୍ତ୍ରଣା ପ୍ରେରଣାରେ ପରିଣତ ହୋଇ କ୍ଷୋଭ, ଶୋକ ଓ ଆକ୍ରୋଶ ଶ୍ଳୋକରେ ସମାହିତ ହୋଇଯିବ । ଏହି ଉପନ୍ୟାସର ପ୍ରତ୍ୟେକଟି ବର୍ଣ୍ଣନା କେବଳ ଚିତ୍ରବତ୍ ନୁହେଁ, ଚିତ୍ର ବା ଚିତ୍ରକଳ୍ପ । ଏଇ ଦେଖନ୍ତୁ;

ଋତୁଚିତ୍ରର ଆବର୍ତ୍ତନରେ, ଷଡ଼ଋତୁର ବର୍ଣ୍ଣନାରେ ନଦୀ, ପୁଷ୍କରିଣୀ, ସମୁଦ୍ରର ଉତ୍ତାଳ ତରଙ୍ଗମାଳା, ବେଳାଭୂମିର ସୈକତ ସୌନ୍ଦର୍ଯ୍ୟ, ନୀଳହେମାଳ ହ୍ରଦ, ପାହାଡ଼ି ମିନିଏଚର୍‌ର ପ୍ରଲୋଭନ, ସବୁଜ ଲତା, ଗୁଳ୍ମଘେରା ବଣ, ପାହାଡ଼, ପୁଷ୍ପିଳ ଉପତ୍ୟକା, ସଚ୍ଛ ଝରଣା,ମେଘଯୁକ୍ତ ଉସାନୀଳଆକାଶ, ମୟୂର ମୟୂରୀଙ୍କ ସାବଲୀଳ ନୃତ୍ୟ, କୈବର୍ତ୍ତମାନଙ୍କ ମାଛଧରା ଦୃଶ୍ୟ, ସନ୍ଧ୍ୟାରେ ବଂଶୀବାଦନ କରି ପ୍ରତ୍ୟାବର୍ତ୍ତନ କରୁଥିବା ଗାଈଆଳ ପିଲାଙ୍କ ନୃତ୍ୟ, ଗୋଧୂଳି ସମୟର ଘରବାହୁଡ଼ା ପକ୍ଷୀଙ୍କ କାକଳୀ,

Digitized by srujanika@gmail.com

ଗାଈଗଡ଼ାର ମୃଦୁମନ୍ଦ ଟିପାଧ୍ୱନି, ଚର୍ଚ୍ଚମାନଙ୍କରେ ପ୍ରାର୍ଥନା ସଭାର ଘଣ୍ଟାଧ୍ୱନି, ବନ୍‌ସୀ କଣ୍ଠାରେ ମାଛଧରା ଦୃଶ୍ୟ ଏବଂ କଳ୍ପନା ଓ ସପ୍ନରାଜ୍ୟର ବହୁଚିତ୍ର, ବହୁ ଚରିତ୍ରଙ୍କ କାର୍ଯ୍ୟାବଳୀ, ଚିତ୍ରଶାଳା ଓ ଚିତ୍ରକରମାନଙ୍କର ସ୍ନିଗ୍ଧ କମନୀୟ ଦୃଶ୍ୟରାଜି, ପାଶ୍ଚାତ୍ୟଦେଶର ବହୁ କଳାସଂପଦ, ଟେମସ୍‌ନଦୀର ଦୃଶ୍ୟ, ଲଣ୍ଡନର ମନୋରମ ଚିତ୍ର, ଏବଂ ରାଜପୁତ୍ର ଓ ମନ୍ତ୍ରୀପୁତ୍ରଙ୍କ କାହାଣୀ ଛଳରେ ପ୍ରକୃତି ବର୍ଣ୍ଣନା ବହୁ ଉପଭୋଗ୍ୟ ।

ବିବାହର ରାଜକୀୟ ପରମ୍ପରା ଓଡ଼ିଆ ସାହିତ୍ୟରେ ପ୍ରାୟ ଦୁର୍ଲଭ ଯାହାର ଭୂରିଭୂରି ଅବତାରଣା ଶ୍ଳୋକଛନ୍ଦ ଉପନ୍ୟାସର ପୃଷ୍ଠାରେ ବିଷଦ ଭାବରେ ବର୍ଣ୍ଣିତ ହୋଇଛି । ରାଜା ଶରତଚନ୍ଦ୍ର ଦେବଙ୍କ ପିତା ଶ୍ରୀରାଧାମୋହନ ରାଜେନ୍ଦ୍ର ଦେବ ଓ ସୀୟ ଶରତଚନ୍ଦ୍ରଙ୍କ ବିବାହ ବର୍ଣ୍ଣନାରେ ଉପନ୍ୟାସ ମୁଖରିତ ହୋଇପାରିଛି । ଏପରି ରାଜକୀୟ ଏବଂ ନାଟକୀୟ ଦୃଶ୍ୟ ଅନ୍ୟଉପନ୍ୟାସ ସାହିତ୍ୟରେ ବିରଳ । ବିବାହ ଚିତ୍ର ପ୍ରଦାନରେ ଚିତ୍ରଶିଳ୍ପୀ ଡକ୍ଟର ପାଠୀଙ୍କ ସୂକ୍ଷ୍ମ ଦୃଷ୍ଟିଭେଦ ଓ ପରିବେଷଣ-ନୈପୁଣ୍ୟ ଉଚ୍ଚକୋଟୀର । ଏହା ବ୍ୟତୀତ ଚିକିଟିଗଡ଼ର ସାଜସଜ୍ଜାରେ ତାଙ୍କର କଳ୍ପନା କୁଶଳତା ଲକ୍ଷ୍ୟ କରାଯାଇପାରେ । ଚିକିଟି ରାଜଉଆସ, ଅନ୍ତଃପୁର, ଶଙ୍ଖ ମର୍ମର ପ୍ରସ୍ତରର ବେଦୀ, ବୈଦୂର୍ଯ୍ୟର ସ୍ତମ୍ଭ, ରତ୍ନଖଚିତ ଚନ୍ଦ୍ରାତପ, ମର୍କତରଶେଣୀ, ମାଣିକ୍ୟର ଓରା, ଗବାକ୍ଷର ନୈସର୍ଗିକ ଶୋଭା, ଚିକିଟି ରାଜବାଟୀ ମଧ୍ୟରେ ଥିବା ବସନ୍ତ ଭବନ, ପ୍ରମୋଦ ଉଦ୍ୟାନ, ପ୍ରମୋଦ ଭବନ ପ୍ରଭୃତି ବିଂଶ ଶତକର ପ୍ରାରମ୍ଭର ସ୍ଥାପତ୍ୟ କଳା । ପୁଣି ସେହି ପ୍ରାସାଦର ଚଟାଣର ଇଟାଲୀୟ ସିରାମିକ୍ ଟାଇଲ୍, ସମ୍ମୁଖସ୍ଥ ପ୍ରଶସ୍ତ ବାରଣ୍ଡା, ଜେମାବନ୍ଧ ଓ ଜେନାବନ୍ଧର ବିଳାସମୟ ଦୃଶ୍ୟ, ବୈଠକଖାନାର ପର୍ସିୟାନ୍ ଗାଲିଚା, ହାତୀଦାନ୍ତର କୁନ୍ଦଖୁରା ଥିବା ସୋଫା, ଜରିପାଟ, ଛାତତଳେ ଚନ୍ଦ୍ରାତପ ଓ ତା ମଧ୍ୟରେ ଥିବା କଦମ୍ବ ଝୁମ୍ପା, ବୈଠକଖାନାର ମଝିରେ ଥିବା ଗୋଲ୍ଡ ପ୍ଲେଟେଡ୍ ଚନ୍ଦନକାଠ ନିର୍ମିତ ମେଜ । ଗୋଟା ହାତୀଦାନ୍ତରେ ଖୋଦିତ ଦଶାବତାର ଓ କୃଷ୍ଣଲୀଳା, ଗୋଲ ଦର୍ପଣ ବଇଠା, ଅନ୍ୟ ପଟରେ ଢଳା ପିତଳମୂର୍ତ୍ତିର ହସ୍ତରେ ଦୀପାଳି ଧାରଣ କରିଥିବା ଓଡ଼ିଶୀ ସଖୀ ଦୀପାନ୍ୱିତାର ରୂପ ଅତୀବ ମନୋମୁଗ୍ଧକର । ଏହିପରି ଭାବରେ ରାଜନବର, ରାଜପ୍ରାସାଦ ଓ ତା'ର ଅଭ୍ୟନ୍ତର ତଥା ଅନ୍ତଃପୁରର ବହୁ ଆଡ଼ମ୍ବରପୂର୍ଣ୍ଣ ଓ ରାଜକୀୟ ଦୃଶ୍ୟ ସାଜସଜ୍ଜାରେ ଗର୍ଭିତ । ସ୍ଥାନେ ସ୍ଥାନେ ଦେଶୀ ଓ ବିଦେଶୀ କଳା ଓ ଶିଳ୍ପର ମଧୁର ସମନ୍ୱୟ । ତହିଁରେ ରାଜା ଶରତଚନ୍ଦ୍ର ଦେବ ଓ ତାଙ୍କ ପିତାଙ୍କ ଚିତ୍ର ଖୋଦିତ । ସର୍ବତ୍ର ଐଶ୍ୱର୍ଯ୍ୟ ରୂପ ପ୍ରତିଭାତ । ଏହିପରି ରାଜପ୍ରାସାଦ, ପ୍ରମୋଦ ଭବନ, ଲାଲକୋଠା, ଗୋଲାପବନ, ରାଧାକୃଷ୍ଣଲୀଳାର ଅଷ୍ଟସଖୀକୁଞ୍ଜ ଚିକିଟି ରାଜ ଉଆସର ବର୍ଣ୍ଣନା ପରିପାଟୀ ଲେଖକଙ୍କ ରଚନାଶୈଳୀ ନୈପୁଣ୍ୟର ପରିଚୟ ପ୍ରଦାନ କରେ ।

ଏହା ବ୍ୟତୀତ ଇଚ୍ଛାପୁରର ବିବାହ ବର୍ଣ୍ଣନା ପରିପାଟୀ, ଚିତ୍ରଶାଳା, କଳାଗ୍ୟାଲେରୀ, ଷ୍ଟୁଡିଓ ଓ ନ୍ୟୁଡ୍ ଷ୍ଟଡ଼ି କେନ୍ଦ୍ରର ବର୍ଣ୍ଣନା ମଧ ବହୁ ଶୋଭନୀୟ । ଶରତଚନ୍ଦ୍ରଙ୍କ ବିଦେଶ ଗମନ ତଥା ପ୍ରତ୍ୟାଗମନର ଚିତ୍ର; ସାଗର, ମହାସାଗରର ବିରାଟତା, ଭୟାବହତା ତଥା ଜାହାଜ ପ୍ରଭୃତିର ବର୍ଣ୍ଣନା ନୈପୁଣ୍ୟ, ସେଗୁଡ଼ିକର ଅବତରଣକାଳୀନ ଶୋଭା, ଡେକ୍ ଉପରେ ସାଗର ଓ ମହାସାଗରର ତରଙ୍ଗାବଳୀ ପ୍ରଭୃତି ମନୋମୁଗ୍ଧକର ଦୃଶ୍ୟ ଔପନ୍ୟାସିକଙ୍କ ସିଦ୍ଧହସ୍ତତାର ପରିଚାୟକ । ବିଶେଷତଃ ପ୍ରିନ୍‌ସ୍ ବିଉଟିକ୍‌ସ୍ ଜାହାଜର ଆଟଲାଣ୍ଟିକ୍ ମହାସାଗରର ଢେଉ ମଧ୍ୟରେ ପ୍ରତ୍ୟାବର୍ତ୍ତନ, ନିଉ ହାଭେନା ବନ୍ଦରରୁ ଆଟ୍‌ଲାଣ୍ଟିକ୍ ମହାସାଗର ବକ୍ଷରେ ଜାହାଜର ଅଭିସାର, ଲଣ୍ଡନରୁ କଲିକତା ପ୍ରାୟ କୋଡ଼ିଏ ଦିନର ଜଳଯାତ୍ରା ମଧ୍ୟରେ ଶରତଚନ୍ଦ୍ରଙ୍କ ଦୀର୍ଘ ଅନୁଭୂତି, ଲଣ୍ଡନରେ ବରଫପାତର ସ୍ମୃତି, ମାଲ୍‌ଟା ଦ୍ୱୀପ, ମାଲ୍‌ଟାରୁ ପୋର୍ଟ୍ ସଏଦ୍, ସୁଏଜ୍ କେନାଲ୍, ଏଡେନ୍ ବନ୍ଦର ପ୍ରଭୃତିର ଦୃଶ୍ୟାବଳୀ ସହ ଲୋହିତ ସାଗର ପାର ହେବା ପରେ ଆରବ ମହାସାଗର, ସେଠାରୁ ପାକ୍-ପ୍ରଣାଳୀ ଦେଇ ବଙ୍ଗୋପସାଗରରେ ପ୍ରବେଶ ବେଳର ଉନ୍ମାଦନା, ସେଠାରେ ଲଣ୍ଡନ ନଗରୀର ସ୍ମୃତିକୁ ପଛରେ ପକାଇ

Digitized by srujanika@gmail.com

ନିଜ ଦେଶ ଓ ପରିବାରରେ ପହଞ୍ଚିବା ଚିନ୍ତା, ମାଡ୍ରାଜ ପରେ କଲିକତାରେ ପହଞ୍ଚିବାର ବ୍ୟାକୁଳତା, ସର୍ବୋପରି ଜଳଯାତ୍ରାର ପରିସମାପ୍ତି ଶିଳ୍ପୀ ଶରତଚନ୍ଦ୍ରଙ୍କୁ ଯେପରି ଆନ୍ଦୋଳିତ କରିଛି- ତାହା ଲେଖକ ପାଠୀଙ୍କର ବର୍ଣ୍ଣନାରେ ଅତୀବ ଜୀବନ୍ତ ଆଲେଖ୍ୟ ହୋଇ ପାରିଛି। ମନେହୁଏ ଏସବୁ ଲେଖକଙ୍କ ପ୍ରତ୍ୟକ୍ଷ ଅନୁଭୂତିର ଚିତ୍ର।

ଏହି ଉପନ୍ୟାସରେ ଆହୁରି ରହିଛି ସମାଜର ଚଳଣି ଓ ପରମ୍ପରା। ଏ ସବୁର ଅବତାରଣା ମଧ୍ୟ ସାନ୍ଦ୍ରତା ଓ ଆତ୍ମିକ ଦୃଷ୍ଟିରୁ କୌଣସି ବିଭାରେ ନ୍ୟୂନ ନୁହେଁ। ବିବାହ ଆୟୋଜନ, ବିବାହ ପରିପାଟୀ, ବର ଆଗମନ, କନ୍ୟା ବିଦାୟ, ଭୋଜି ବ୍ୟବସ୍ଥା ପ୍ରଭୃତିରେ ରାଜକୀୟ ବର୍ଣ୍ଣନା ଥିଲେ ମଧ୍ୟ ସମାଜ ଚିତ୍ର ଓ ସାମାଜିକ ବ୍ୟବସ୍ଥା ଅତି ନିଖୁଣ ଭାବରେ ରୂପାୟିତ ହୋଇଛି। ମାତ୍ର ଏସବୁ ଅପେକ୍ଷା ଗ୍ରାମ୍ୟ ଯୁବତୀ ଓ ଲଳନାମାନଙ୍କ ବିଭିନ୍ନ ପରିପ୍ରେକ୍ଷୀରେ କଥୋପକଥନ ବିଶେଷ ଉପଭୋଗ୍ୟ ହୋଇପାରିଛି। ବିଶେଷତଃ ଯୁବରାଜ ଶରତଚନ୍ଦ୍ରଙ୍କର ବିଦେଶରୁ ପ୍ରତ୍ୟାବର୍ତ୍ତନ ପରେ ଗ୍ରାମ୍ୟବଧୂ, ଯୁବତୀ ଓ ଲଳନାମାନଙ୍କ ମୁଖରେ ଔପନ୍ୟାସିକ ଯେଉଁ କଥୋପକଥନ ଚିତ୍ର ପ୍ରଦାନ କରିଛନ୍ତି ତହିଁରୁ ତାଙ୍କର ଗ୍ରାମ୍ୟ ଚିତ୍ର ଓ ପଲ୍ଲୀବଧୂମାନଙ୍କ ଭାଷାଗତ ନିପୁଣତା ବାରିହୁଏ। ଯୁବରାଜ ଶରତଚନ୍ଦ୍ର ଦେବ ଓରଫ୍ ଜର୍ଜ ସାହେବ ଚିକିଟିଗଡ଼ରେ ପହଞ୍ଚିବା ପରେ ଗ୍ରାମ୍ୟବଧୂ, ଲଳନା ଓ ଯୁବତୀମାନେ ଯୁବରାଜଙ୍କୁ ସମ୍ବର୍ଦ୍ଧନା ଦେବା ଦୃଶ୍ୟ ଓ ତା'ପର ଘଟଣା ଔପନ୍ୟାସିକଙ୍କ ଭାଷାରେ ଅତି ଜୀବନ୍ତ ହୋଇପାରିଛି। ଏଇ ଦେଖନ୍ତୁ ଗ୍ରାମ୍ୟଭାଷାର ଝଲକ :

ଗଡ଼ ମାଇପିଏ ହୁଳହୁଳି ପକେଇଲେ। ହଳଦିଆ ଚାଉଳ, ଦୁବ, ବରକୋଳି ପତ୍ରରେ ବନ୍ଦେଇଲେ। ତାଙ୍କର ଅତି ଆଦରର ସାହେବ ଦେଉ ବିଦେଶରୁ ଗଡ଼କୁ ଫେରି ଆସିଛନ୍ତି। ଚିକିଟି ମାଟିରେ ପାଦ ଦେଉ ନ ଦେଉ, ଜର୍ଜ କେମିତି କେଜାଣି ଜର୍ଜରୁ ସାହେବ ଦେଓ ପୁଣି ସାହେବ ଦେଓରୁ ସାଇବ ଦଉ ପାଲଟି ଗଲେଣି। ମାଇପେ ଟାପରା କରି ଏକେ ଆରକକୁ ପଚାରୁଛନ୍ତି, ଇ, ମା, ଆମ ସାଇବାଣୀ କାହାନ୍ତି ? ଏ ଦାଣ୍ଡ ପସନ୍ଦ ହଉନି। କିଏ ଜଣେ ଉତ୍ତର ଫେରାଉଛି ଏମିତି କ'ଣ ଲୁଚା କନିଆଁ କଥା ହେଇଚି କି ଯେ ସେ ଯିମିତି ସେମିତି ସାଇବାଣୀଟେ ସେ ରାଇଜରୁ ଘେନି ଆଇଥାନ୍ତେ। ଯେତେ ହେଲେ ରାଜାପୁଅ। ଭେରୀ, ତୂରୀ, କାହାଳୀ, ଟମକ, ନିଶାଣ ବାଜିବ, ଦେଶକ ଯାକର ରାଜାରାଣୀ ଗଡ଼ରେ ବିଜେ ହେବେ। ରାଜସଭା ବସିବ, ସାଇବ ଦଉ ଧନୁରେ ଗୁଣ ଦେବେ। ଲାଖ ଭେଦିବେ। ସାଇବାଣୀର ମନୋବାଞ୍ଛା ପୂରିବ। ତେବେ ଯାଇ ସିନା ସେ ବରଣମାଳା ସାଇବାଣୀ ଗଳାରେ ଲମ୍ବେଇ ଦେବେ। ତାକୁ ସିନା ବିଭାଘର କହିବା। ତା'ପରେ ସାଇବାଣୀ ପାଟରାଣୀ ହେବ। ରାଜ ଉଆସ ଭିତରେ ରହିବ। ଚନ୍ଦ୍ର ସୂର୍ଯ୍ୟ ଉହାଡ଼ ହେବେ।

ଅନୁଭବୀ ଡାକୁଆ ଘର ବୋହୂ କହୁଛି, ତମେ ଦି'ଟାଯାକ ଖାଲି ସପନ ଦେଖୁଛ, ଦେଖୁଥା। ସେକାଳେ ବିଧି ପରକାରେ ସବୁ ହଉଥିଲା- ଏବେ ସବୁ ଖାଲି ତରବର। ରଜାନୁକ ମରହଟିଆ ଧରଣକୁ ଆବୋରି ରହିଛନ୍ତି। ଇଂରେଜୀ ସାଇବାଣୀ ବଡ଼ ଅତ୍ରୁଛିଆ। ତାଙ୍କର ଲାଜମହତ ବୋଲି କିଛି ନାହିଁ। ଗାଁର ବୁଢ଼ା ବୁଢ଼ୀ ଲୋକେ କେତେ କଥା ନ କହୁଛନ୍ତି। ସାଇବାଣୀ ଯାକ ମଟର ଗାଡ଼ି ଭିତରେ ତାଙ୍କ ଗିରସ୍ତ ହେବେ ନାଁ କ'ଣ, ତାକୁ ମଝି ମଝିରେ ଭିଡ଼ି ଧରିପକେଇ ବାଉଳା ହେଉଛନ୍ତି। ଲଙ୍ଗଳା ମୁକୁଳା ହେଇ କୁଣ୍ଢେଇ ପକଉଛନ୍ତି। ଇ, ମା ! ପାଟିରେ ପାଟି ଲଗେଇ ଓଠରେ ଓଠ ଲଗେଇ ଚୁମ୍ବି ଦେଉଛନ୍ତି। ହଁ ଗିରସ୍ତ ଭାରିଯା ଗେଲ ହୁଅନ୍ତି। ବିଧାତା ସେତକ କରିଛି। ହେଲେ ଏତିକି ଉଦଣ୍ଡ। ଏତେ ଅଲାଜୁକ।

ଏହି ପର୍ଯ୍ୟାୟଭୁକ୍ତ ରୂପକ, ରୂପକଳ୍ପ ଓ ମିଥ୍‌ରେ ବହୁ ନୂତନ ଉଦାହରଣ ପ୍ରଦାନ କରି ଲେଖକଙ୍କ ଲେଖନୀ ସିଦ୍ଧହସ୍ତତାର ପରିଚୟ ଦିଏ। ଉଦାହରଣ ସ୍ୱରୂପ :- ଗଣଧର୍ଷଣର ଅଙ୍ଗଲଗ୍ନ କଥା, ପ୍ଲାଷ୍ଟିକ ଫୁଲର ଅମରତ୍ୱ, ସିଲିକନ୍ ବକ୍ଷୋଜର ଉନ୍ମାଦନା, କୋଣାର୍କୀୟ ରସ ସମ୍ବେଦନ,

Digitized by srujanika@gmail.com

ଆବୁ ହଳଦୀରଙ୍ଗର ସମ୍ମୋହନ, ଦାଉଦାଉ ତମ୍ୟାରଙ୍ଗର ପତ୍ର, ଶୀତଳ ବାୟୁ, ଉନ୍ମାଦନାଭରା ଫୁଲଶର ସଦୃଶ ରୋମାଞ୍ଚଭରା ଅନୁଭୂତି, ଚୁଲିମୁଣ୍ଡ ଠେକିର ଘିଅ ପରି ମନ ତରଳିବା, ଶରୀରର ସୁନେଲୀ ପାଖୁଡ଼ା ସହ ଆଉଟା ହୃଦୟ, ବେପରୁଆ ଅପରାହ୍ଣ, ରିମିଝିମି ଜଙ୍ଗଲ, ଲଣ୍ଡନର ମଣିଷମାନଙ୍କ ବ୍ୟସ୍ତତା ଘଣ୍ଟାର କଣ୍ଟା ଭଳି ଅହର୍ନିଶି ଧନ୍ଦିହେବା, ଯନ୍ତ୍ରଧୂମ ମଧୁଶର ଇତ୍ୟାଦି।

ଆହୁରି କେତେକ ଖଣ୍ଡକାବ୍ୟର ଉଦାହରଣ ଏ ସଂପର୍କରେ ଦିଆଯାଇପାରେ। ବାନ୍ଧବୀ ମେରୀଙ୍କ ସ୍ମୃତି ଅପରାହ୍ଣର ସୂର୍ଯ୍ୟ ମଳିନ ହୋଇ ଗେରୁଆ ରଙ୍ଗର ବେଢ଼ଣ ଭିତରେ ଲୁଚିଗଲା ପରି; ସୂର୍ଯ୍ୟସ୍ନାତା ରମଣୀମାନଙ୍କ ଦେହ ରୁମ ଉପୁଡ଼ା କୁକୁଡ଼ାଙ୍କ ଦେହଭଳି ପାଇନ୍ ବନରେ ଝୁଲି ରହିବା, ରୁନ୍ଧାଘର ଭଳି ଗୁମ୍‌ସୁମ୍ ହୋଇଯିବା, ଜାହାଜର ପରିଚାରିକା ମୋନିକା ସହ ପୋର୍ସିଲିନ୍ କଣ୍ଢେଇର ତୁଳନା, ଦେହ ଓ ମନର ତାତି ମାପି ଦୁଇ ତିନି ବସନ୍ତ କଟାଇବା, ପ୍ରେମର ଡହଡହ ବାସ୍ତବତା; ଆଖିପତା ଘୋଡ଼େଇ ହୁଏ, ସନ୍ଧ୍ୟା ଆସିଲେ ପଦ୍ମ ମୁଦି ହେଲା ପରି, ସି'ଗଲ୍ ପରି ଡେଣା କୁଞ୍ଚେଇ ବସିବା, ଜାହାଜ ଯିବା ବେଳେ ପାଣିର ସିଆର ରୁପାର ବେଣୀ ପରି ମେଲେଇ ଯିବା, ଆସୁମାରୀ ସପ୍ନ ମେଘମାଳା ପରି ପହଁରିଯିବା; ଗପଯାହା-ଜୀବନତାହା - ନଦୀର ପାଣି ତାହା - ବହି ଯାଉଥିବ ଧାର ହେଇ, ଭାତହାଣ୍ଡି ବିଉଷିଲା ବେଳେ ପେଜ ଛାଏଁ ଉତୁରି ଯିବା ପରି ସମୟ କାହାକୁ ଅପେକ୍ଷା ନ କରିବା, ବଡ଼ ବଡ଼ କାଠଗଡ଼ର ଖୋଦେଇ ଯୁଦ୍ଧଭୂମିରେ ଆହତ ସୈନିକଙ୍କ ଭଳି ଫୁଙ୍ଗୁଳା ଦେହକୁ ଦେଖେଇ ହବା, ରାମଚନ୍ଦ୍ର ଅହଲ୍ୟାଙ୍କୁ ଉଦ୍ଧାରିଲା ପରି ହେନେରୀ ସେମାନଙ୍କୁ ଉଦ୍ଧାରିବା, ଭାସ୍କର ହେନେରୀଙ୍କ ହାତରେ ରାଜପୁତ୍ରଙ୍କ କରମର୍ଦ୍ଦନ ଛଞ୍ଚାଣ ସଝାରେ କପୋତ ପରି, ହେନେରୀ ପ୍ରାକ୍ ଐତିହାସିକ କାଳର ଆବର୍ତ୍ତ ଭିତରୁ ଚେତନାର ସଦ୍ୟତମ ସରହଦଯାଏ, ଆଲ୍‌ବମ୍‌ର ପୃଷ୍ଠା ଓଲଟାଇଲା ଭଳି ସ୍ମୃତିର ପାଖୁଡ଼ା ଖୋଲିବା, ଚିତ୍ରର ନିଶ ମାଗୁର ମାଛର ଶିଙ୍ଗ ଭଳି; ହତାଶାର ପରସ୍ତ ପରସ୍ତ ଅଳନ୍ଧୁ, ବାହୁଦା ନଦୀରେ ବିଦ୍ରୋହର, ବିଳାପର, ନିର୍ଯ୍ୟାତନାର କେତେ ଗୋଳିପାଣି ବହିଯାଇଛି। ତାଳଗଛର ଛାଇ - ପ୍ରଭୃତି ବହୁ ନୂତନ ଉପମା ରୂପକ ଓ ରୂପକଳ୍ପ ଓ କାମନାର ଅଜଗର ଏଥିରେ ସ୍ଥାନିତ। ଭାରତୀୟ ଦର୍ଶନ ପରମ୍ପରାରେ ପକ୍ଷୀରୂପକଳ୍ପର ଗୁରୁତ୍ୱ ଅଧିକ। ପକ୍ଷୀଦ୍ୱୟଙ୍କ ମଧ୍ୟରୁ ଗୋଟିଏ ଆତ୍ମା ଓ ଅନ୍ୟଟି ପରମାତ୍ମା। ଏହି ରୂପକଳ୍ପ ମଧ୍ୟ ଏଥିରେ ପ୍ରଦତ୍ତ।

ଏହା ବ୍ୟତୀତ ମିଥ୍‌ର ପ୍ରୟୋଗରେ ଔପନ୍ୟାସିକ ସକୀୟ ଦକ୍ଷତା ପ୍ରତିପାଦନ କରିଛନ୍ତି। ରାମାୟଣରୁ ରାମଙ୍କ କଥା, ବିଶ୍ୱାମିତ୍ର, ଶକୁନ୍ତଳା ଓ ମେନକାଙ୍କ ପ୍ରେମ କାହାଣୀ, ବିକ୍ରମୋର୍ବଶୀୟ ନାଟକରୁ ପୁରୁରବା ଓ ଉର୍ବଶୀଙ୍କ କଥାର ଅବତାରଣା, ରାମଙ୍କର ଅହଲ୍ୟା ଉଦ୍ଧାର ପ୍ରସଙ୍ଗ ଓ ପାର୍ଥଙ୍କର କୁରୁକ୍ଷେତ୍ର ରଣାଙ୍ଗନ ଅବତାରଣା ମାଧ୍ୟମରେ ବହୁ ପୁରାଣ ଗାଥା ଏଥିରେ ସଫଳ ଭାବେ ରୂପାୟିତ।

ପରିଶେଷରେ ବ୍ରହ୍ମା, ସରସତୀ, କନ୍ଦର୍ପ, ରତି, ଯଶୋଦା, କୃଷ୍ଣ, ମାୟାବତୀ, ଅଗସ୍ତି, ଲୋପାମୁଦ୍ରା, ରମ୍ଭା, ମେନକା, ଉର୍ବଶୀ ଓ ବିଶ୍ୱାବସୁ, ଚିତ୍ରରଥ ପ୍ରଭୃତିଙ୍କ ଆଖ୍ୟାନ ଓ କିମ୍ବଦନ୍ତୀ ମଧ୍ୟ ଏଥିରେ ସନ୍ନିବେଶିତ।

ଶିଳ୍ପୀ ଡକ୍ଟର ଦିନନାଥ ପାଠୀଙ୍କ ତତ୍ତ୍ୱାବଧାନରେ ବିଶ୍ୱପ୍ରସିଦ୍ଧ କେତେକ ଚିତ୍ର ଓ ଭାସ୍କର୍ଯ୍ୟ ଉପରେ ଆଧାରିତ ରେଖାଚିତ୍ରଗୁଡ଼ିକ ବାଳକୃଷ୍ଣ ନନ୍ଦଙ୍କ ଦ୍ୱାରା ଅଙ୍କିତ। ଏଥିରେ ଗ୍ରୀକ୍ ପାତ୍ର ଓ ମିଶରୀୟ ଭିତ୍ତିଚିତ୍ରଠାରୁ ଆରମ୍ଭ କରି ଚୂନପଥରରେ ପ୍ରାକ୍ ଐତିହାସିକ ମାତୃମୂର୍ତ୍ତି ପର୍ଯ୍ୟନ୍ତ ବହୁ ବିଶ୍ୱବିଖ୍ୟାତ ଚିତ୍ରଶିଳ୍ପୀଙ୍କ ସମେତ **ଶ୍ଳୋକଛନ୍ଦ** ଉପନ୍ୟାସର ନାୟକ ଶରତଚନ୍ଦ୍ର ଦେବଙ୍କ ବହୁ ଚିତ୍ର ସ୍ଥାନିତ। ବିଦେଶୀ ଶିଳ୍ପୀ ହେନେରୀ ମୁର୍, ପିକାସୋ, ୱିଲ୍‌ହେଲମ୍, ବୋଟିଚେଲ୍ଲି, ମୋଦ୍‌ଗ୍ଲିୟାନି, ସେଜାଁ, ମାଇକେଲ୍ ଏଞ୍ଜେଲୋ, ଲିଓନାଡ଼ୋ ଦା' ଭିନ୍‌ସି, ସାଲ୍‌ଭର୍ ଡର୍ ଡାଲି, ହେପ୍‌ୱାର୍ଥ,

Digitized by srujanika@gmail.com

ଅମୃତା ସେରଗିଲ୍, ଫ୍ଲୋରେନ୍ସ୍, ପ୍ୟାରିସ୍‌ର ଚିତ୍ରାବଳୀ, ଭାରତୀୟ ଶିଳ୍ପୀ ରାମକିଙ୍କର, ନନ୍ଦଲାଲ, ବିନୋଦ ବିହାରୀ ମୁଖାର୍ଜୀ, ଅବନୀନ୍ଦ୍ର ନାଥ ଠାକୁର, ରବୀନ୍ଦ୍ର ନାଥ ଠାକୁର, ଓଡ଼ିଶାର ଶିଳ୍ପୀ ବିମ୍ବାଧର ବର୍ମାଙ୍କ 'ପଲ୍ଲୀବଧୁ' ସହ ପ୍ରଥିତ ଯଶା ଶିଳ୍ପୀ ଶରତଚନ୍ଦ୍ର ଦେବଙ୍କ ସ୍କେଚ୍-ଗୋପାଳପୁର ସମୁଦ୍ର, ଫସଲ ଅମଳର ସଙ୍ଗୀତ (ଚିତ୍ରାଂଶ), ଟେମ୍ପେରା ଚିତ୍ର ଗୋଲାପପ୍ରଭା (ପତ୍ନୀ)ଙ୍କ ତୈଳଚିତ୍ର, ଜୀବନଚକ୍ର ଚିତ୍ର, ଶ୍ଳୋକଛନ୍ଦର ଅଂଶ ବ୍ୟାଧ-ବାଲ୍ମୀକି, ନୀଳ ସରସତୀ ଓ ବିଶ୍ୱାବସୁ (ଶ୍ଳୋକଛନ୍ଦର ଅଂଶ), ନର୍ତ୍ତକୀ ଅନୁକମ୍ପା (ଶ୍ଳୋକଛନ୍ଦର ଅଂଶ) ହଂସଯୂଥ (ଶ୍ଳୋକଛନ୍ଦର ଅଂଶ) ପିଙ୍ଗଳା (ଶ୍ଳୋକଛନ୍ଦର ଅଂଶ) ଚିତ୍ରରଥ ସ୍ଥାନିତ। ଉକ୍ତ ଚିତ୍ରଗୁଡ଼ିକ ଶରତଚନ୍ଦ୍ର ଦେବଙ୍କ ଶିଳ୍ପନୈପୁଣ୍ୟ ତଥା ପରାକାଷ୍ଠାର ପରିଚାୟକ। ଏତେଗୁଡ଼ିଏ ରେଖାଚିତ୍ର ସ୍ଥାନିତ କରି ଔପନ୍ୟାସିକ ଦିନନାଥ ଓଡ଼ିଆ ପାଠକଙ୍କ ମଧ୍ୟରେ ଚିତ୍ରରୁଚି ଓ ଚିତ୍ରପ୍ରେମ ସୃଷ୍ଟି କରିବା ପାଇଁ ଚାହିଁଛନ୍ତି।

**ଶ୍ଳୋକଛନ୍ଦ ଦିନନାଥଙ୍କର ଏକ ସଫଳ ଉପନ୍ୟାସ। ରୂପକ, ରୂପକଳ୍ପଭରା ଉକ୍ତ ପୁସ୍ତକଟି ଭୂମିରୁ ଭୂମା ପର୍ଯ୍ୟନ୍ତ ପରିବ୍ୟାପ୍ତ। ମନୁଷ୍ୟର ଆଦିମ ଅଭୀପ୍ସାକୁ ଶୋକଦଗ୍ଧ କଳାପରେ ଶ୍ଳୋକଛନ୍ଦ ଲୌକିକ, ଲୋକୋତ୍ତର ଓ ପାରଲୌକିକ ସମ୍ପଦରେ ଉପନ୍ୟାସ ସାହିତ୍ୟକୁ ମଣ୍ଡିଦେଇ ପାରିଛି। ଡକ୍ଟର ପାଠୀଙ୍କ ଲେଖନୀରେ ପ୍ରେମ, ପ୍ରଣୟ ଓ ପରିଣୟର ତ୍ରିବିଧ ପ୍ରକ୍ରିୟା ସୃଷ୍ଟି ହୋଇଛି ଯାହା ମାଧ୍ୟମରେ ଚିତ୍ରୋପନ୍ୟାସର ରସଦାନ ସ୍ନିଗ୍ଧରୂପ ଶିଳ୍ପାଚାର୍ଯ୍ୟ ଓ ଅନ୍ୟ ଚରିତ୍ରମାନଙ୍କୁ ଚିରନ୍ତନ ଓ ଶାଶ୍ୱତ କରିଦେଇପାରିଛି।**

ଡକ୍ଟର ପାଠୀ ଜଣେ ଅନୁଭବୀ ବରିଷ୍ଠ ଚିତ୍ରଶିଳ୍ପୀ। ସେ ଚିତ୍ରୋପନ୍ୟାସ **ଶ୍ଳୋକଛନ୍ଦର** ମାନସ ପିତା । ଏହାର ରଚନା ତାଙ୍କ ଶିଳ୍ପୀ ପ୍ରାଣକୁ ସହାନୁଭୂତିରେ ଆପ୍ଲୁତ କରିଦେଇ ଧନ୍ୟ କରିଦେଇ ପାରିଛି। ତାଙ୍କର କଳ୍ପନାପ୍ରସୂତ ଉପନ୍ୟାସରେ **ଚନ୍ଦ୍ରପ୍ରଭା ଆଶ୍ରମ** ରାଜା ଶରତ ଚନ୍ଦ୍ର ଓ ରାଣୀ ଗୋଲାପ ପ୍ରଭା ନାନ୍ଦନିକ ମର୍ଯ୍ୟାଦା ଲାଭ କରିପାରିଛନ୍ତି। ଲେଖକଙ୍କ ବର୍ଣ୍ଣନା ଚାତୁରୀ **ଶ୍ଳୋକଛନ୍ଦର** ବର୍ଣ୍ଣିଳ ଆଭାରେ ରସବନ୍ତ ଏବଂ ପ୍ରାଣବନ୍ତ ହୋଇପାରିଛି। **ଶ୍ଳୋକଛନ୍ଦ** ପରିଶେଷରେ ହୋଇଛି ଶୋକ ଓ ବିଷାଦଶୂନ୍ୟ ଚିର ବିମଳ ଆନନ୍ଦର ଉତ୍ସ।



Digitized by srujanika@gmail.com

**ଶିବରାମ ପାତ୍ର**

# ଧର୍ମ, କାମ, ପ୍ରେମ, ଦର୍ଶନର ଚିତ୍ରିତ ଆଲେଖ୍ୟ – 'ସାୟୋନାରା'

ଗ୍ରନ୍ଥର ଆଦ୍ୟରେ କିଛି ପୃଷ୍ଠା ଆଗ ଚିତ୍ରଭାଷା ଓ କାବ୍ୟଭାଷାରେ ସଜ୍ଜିତ। 'ରୁଦ୍ର ସୁଧାନିଧି'ରୁ ପ୍ରଦତ୍ତ କାବ୍ୟଭାଷାର ବକ୍ତବ୍ୟ 'ଉପର ଜାଣିଲେ ସେ ତଳ ଜାଣିମନା'। ଜଗତ ଓ ପୃଥିବୀ ଜିଣିବା ଲାଗି ଏ ଉପଲକ୍ଷ୍ୟ। ସେଭଳି ଦିନନାଥଙ୍କ ଜୀବନ ଜୀବିକା, କୃତିବୃତ୍ତି ଇତ୍ୟାଦି ଜାଣିଲେ ହିଁ ତାଙ୍କ ଶିଳ୍ପୀ ଓ ସାହିତ୍ୟିକ ବ୍ୟକ୍ତିତ୍ୱକୁ ଚିହ୍ନିହେବ, ଶିଳ୍ପ ଓ ସାହିତ୍ୟକୁ କଳିହେବ।

ଦିନନାଥଙ୍କ ଜୀବନ ଆବାଲ୍ୟ ଶିଳ୍ପୀର ଜୀବନ। ସେ ଚିତ୍ରେଇଛନ୍ତି ପାରମ୍ପରିକରୁ ଅତ୍ୟାଧୁନିକ ଚିତ୍ର ଯାଏଁ। ଧର୍ମ, କାମ, ପ୍ରେମ, ଦର୍ଶନ ତାଙ୍କ ଶିଳ୍ପର ମୁଖ୍ୟ ସାମଗ୍ରୀ। ନାରୀ କେନ୍ଦ୍ରବିନ୍ଦୁ। ବିଚିତ୍ର ଅନୁଭୂତି ସବୁ ଭାବବସ୍ତୁ। ଓଷାକୋଠିର ଦେବୀମାନଙ୍କଠାରୁ ମୋଟରକାର୍‌ରୂପୀ ନାରୀ ଯାଏଁ। ସହସ୍ରାଧିକ ଚିତ୍ର ଅଙ୍କନ ସତ୍ତ୍ୱେ ଅଭିଯାନ ସରିନାହିଁ, ଅନ୍ୱେଷଣ ତୃଷା ମରିନାହିଁ। କି ବିପୁଳ ସେ ଅନୁଭୂତି, କି ଗଭୀର ସେ ଉପଲବ୍ଧି। ଦେଶ ବିଦେଶରେ ହେଲା ବେଶ୍ କିଛି ସାମୂହିକ ଓ ଏକକ ଚିତ୍ର ପ୍ରଦର୍ଶନୀ ଏବଂ କଳାଚର୍ଚ୍ଚା। ତଥାପି ଅବ୍ୟକ୍ତ ରହିଗଲା ବହୁତ କିଛି। ତେଣୁ ଚିତ୍ରଭାଷା ସହ ସାହିତ୍ୟ ଭାଷାର ସମାନ୍ତରାଳ ସୃଷ୍ଟି ! ଲେଖାହେଲା ଓଡ଼ିଆରେ ସୃଜନଶୀଳ ସାହିତ୍ୟ ! **ନୀଳ ହ୍ରଦର ଚିତ୍ରକର, ଭବଘୂରା ଭବନାଥ, ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ, ସୁନାମାଛ।** କାହାଣୀ, ଆତ୍ମକାହାଣୀ, ଭ୍ରମଣକାହାଣୀ ! କାହାଣୀମୟ ଜୀବନ ଓ ଜଗତର ବିଚିତ୍ର ବିନ୍ଧାଣୀ ଦିନନାଥ ୧୯୯୮ର ଶେଷ ଆଡ଼କୁ ଚିତ୍ରଭାଷା ଓ କାବ୍ୟଭାଷା ବା ସାହିତ୍ୟ ଭାଷାର ସମନ୍ୱୟ ଘଟାଇ ସୃଷ୍ଟି କରିଛନ୍ତି ଆପଣାର ପ୍ରଥମ ଉପନ୍ୟାସ **ସାୟୋନାରା**। ସଚିତ୍ର ସାୟୋନାରା। ସାୟୋନାରାର ଆକର୍ଷଣୀୟ ଲୋକାର୍ପଣ ଉତ୍ସବରେ ହିଁ କବି ସୀତାକାନ୍ତ ମହାପାତ୍ର ଗ୍ରନ୍ଥଟି ପଢ଼ି ବିଶେଷ ଖୁସି ହୋଇଥିବା ପ୍ରକାଶ କରିଥିଲେ। ସ୍ୱର୍ଗତ ଗୋପୀନାଥ ମହାନ୍ତିଙ୍କ ପରେ ଔପନ୍ୟାସିକ ଭାବେ ଶିଳ୍ପୀ ଦିନନାଥ ପାଠୀଙ୍କ ଆବିର୍ଭାବ ଓଡ଼ିଆ ସାହିତ୍ୟ ପାଇଁ ଶୁଭଙ୍କରୀ। ସିଏ ଓଡ଼ିଆ ଉପନ୍ୟାସକୁ ବୈଚିତ୍ର୍ୟ ବିମଣ୍ଡିତ କରିପାରିବେ, ଚିତ୍ରେଇ ପାରିବେ କେତେ କେତେ ଅମଡ଼ା ଭୂଇଁର ଦୃଶ୍ୟ, ଚର୍ଚ୍ଚା କରିପାରିବେ ଅଚର୍ଚ୍ଚିତ କ୍ଷେତ୍ରର କଥା। ବାସ୍ତବିକ୍ ଗୋପୀନାଥଙ୍କ ପରେ ଦିନନାଥ ଓଡ଼ିଆ ଉପନ୍ୟାସକୁ ବିଶେଷ ଅବଦାନ ଦେଇପାରିବେ, ନୂତନ ଦିଗନ୍ତର ଉନ୍ମୋଚନ କରିପାରିବେ। ସାୟୋନାରାରେ ସେ ଦକ୍ଷତା ପ୍ରମାଣିତ। ସ୍ରଷ୍ଟା ଅର୍ଦ୍ଧନାରୀଶ୍ୱର। ଆପଣାକୁ ପୁରୁଷ ପ୍ରକୃତି ରୂପେ କେତେମନ୍ତେ ପ୍ରକାଶ କରିପାରେ। ଚିତ୍ରିତ ଜଗତର ବିଚିତ୍ର ଗାଥା କଥାରେ କହି ପାଠକର ମଥାକୁ ଚହଲାଇପାରେ, ବ୍ୟଥାକୁ ଉପଶମ କରିପାରେ; ପାଠକକୁ ପିଣ୍ଡରୁ ବ୍ରହ୍ମାଣ୍ଡ, ଅନ୍ନରୁ ବ୍ରହ୍ମ, ସ୍ଥିତିରୁ ଅସ୍ଥିତି ଯାଏଁ ନିରାକାର ସାକାର ସବୁକିଛି ଅକ୍ଳେଶରେ ପ୍ରକାଶ କରିପାରେ ଶିଳ୍ପୀ। ଦିନନାଥ କେତକୀ, ଅରୁଣ, ନରହିତୋ ଦେଇ ସକଳ କଥା କହିଛନ୍ତି, ଘଟାଇଛନ୍ତି। ସାୟୋନାରାର ମୁଖ୍ୟ ଚରିତ୍ର କେତକୀ। କେତକୀ ଏକ ଅସାମାନ୍ୟ ଚରିତ୍ର। କେବଳ ସପ୍ନବିଳାସୀ ନୁହଁ ସେ ବାସ୍ତବ ଜୀବନର ସମ୍ମୁଖୀନ ହୋଇ ଦର୍ଶନର ଜୀବନ ବଞ୍ଚିବାକୁ ଚାହିଁଛି। ପ୍ରୟାସ କରିଛି ଜୀବନକୁ ଚିହ୍ନିବାକୁ, ଆତ୍ମାକୁ ଆନନ୍ଦ ଦେବାକୁ ସେ ଏକ ସୁଦୀର୍ଘ ଯାତ୍ରାର ଆଶ୍ରୟ ନେଇଛି। ଜୀବନ କେତକୀ ପାଇଁ ପରୀକ୍ଷାଗାର ହୋଇଛି। ଦିଗପହଣ୍ଡିର ଇସ୍କୁଲ ଜୀବନର ସପ୍ନ ତା'ର ସାକାର ହୋଇଛି। ଦିଲ୍ଲୀ ଜେ.ଏନ୍.ୟୁ. ହୋଇ ଜାପାନର କ୍ୟୋଟୋ ଯାଇଛି। ଶିଳ୍ପୀ ନରହିତୋର ସହଯାତ୍ରୀ ହୋଇଛି। ଜୀବନ କେତେ ବାଗରେ ପରିକ୍ଷିତ ହୋଇଛି; ରସାଳ ହୋଇଛି, ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଛି। ଜାପାନର ପାରିବାରିକ ଜୀବନ ସହ ଖାପ ଖୁଆଇ

Digitized by srujanika@gmail.com

ପାରିଛି କେତକୀ । କେତେ ସମସ୍ୟା, କେତେ ପ୍ରଶ୍ନର ସେ ସମ୍ମୁଖୀନ ହୋଇଛି । ତଥାପି ସେ କେବଳ ଚାହିଁଛି ଫୁଲ ଭଳି ଫୁଟିଯିବା ପାଇଁ । ନଦୀଭଳି ବହିଯିବା ପାଇଁ । ନିଜର ସୁଗନ୍ଧ ବିତରିବା ପାଇଁ । (ପୃ. ୨୦୮) କେତେ କଉତୁକରେ ଜୀବନ ବିତେଇ ଦେବାକୁ କେତକୀର ପ୍ରୟାସ ସତେ ! ପ୍ରୟାସର ଅନ୍ତ ନାହିଁ ସେ ସବୁର ବର୍ଣ୍ଣିଳ ବୃତ୍ତାନ୍ତ ଦେବାରେ ଲେଖକ ବେଶ୍ ସଫଳ ହୋଇଛନ୍ତି । ବହୁ ଚରିତ୍ରର ସମାବେଶ; ସବିତା, ଅରୁଣ, ନରହିତୋ, ନରହିତୋର ବୁଢ଼ୀମା, ରତନ୍‌ଦା, ମିତାଲି, ଇନ୍ଦ୍ରାଣୀ, ମିକାକୋ । **ଗଞ୍ଜାମର ସମ୍ଭ୍ରାନ୍ତ ଘରୋଇ ଭାଷାର ସ୍ପର୍ଶରେ ଉପନ୍ୟାସର ଭାଷା ବଡ଼ କୋମଳ, ବକ୍ତବ୍ୟ ବଡ଼ ରସାଳ । କେତେ ଆନ୍ତରିକ ବର୍ଣ୍ଣନା ସହ, କେତେ ତଥ୍ୟପୂର୍ଣ୍ଣ ବିବରଣୀ ସବୁ, କେତେ ମନୋରମ ବିବୃତ ଲୋକକଥା ସବୁ, କେତେ ଜ୍ଞାନଦୀପ୍ତ ଚର୍ଚ୍ଚିତ ଦର୍ଶନ ସବୁ, କେତେ ସୃଜନଶୀଳ ମୌଳିକ ରୂପକଳ୍ପ ସବୁ । କେତେ ଅର୍ଥପୂର୍ଣ୍ଣ କବିତା, କେତେ ପ୍ରାସଙ୍ଗିକ ଚିତ୍ର ସବୁ । ପ୍ରେମ ଅଛି, କାମ ଅଛି । ଅଛି ସମକାମୁକତା ବି । ଆଧ୍ୟାତ୍ମିକତାର ଦର୍ଶନ ଅଛି । କଳା, କଳାର ବଜାର, କଳା କ୍ଷେତ୍ରର ରାଜନୀତି ବି ଅଛି । ଅପୂର୍ବ ଅଭିନବ ଶୈଳୀ । ଏକ କ୍ଲାସିକ୍ ଉପନ୍ୟାସ । ଅସାମାନ୍ୟ ଆବେଦନ । ଅଢ଼େଇ ଶହ ପୃଷ୍ଠାର ଉପନ୍ୟାସଟି ପାଠକ ପଢ଼ା ନ ସାରି ଆଦୌ ହାତଛଡ଼ା କରିହେବନି ନିଶ୍ଚୟ । ଅନୁଭୂତି ଉପଲବ୍ଧିର ସମଗ୍ର ଜୀବନ ଶିଳ୍ପୀଙ୍କ ଲେଖନୀରେ ଶାଶ୍ୱତ ରୂପ ପାଇଛି ।** ଗ୍ରନ୍ଥାରମ୍ଭରେ ହାଇକୁର ଭାଷାରେ – "The Passing days and months are eternal travellers in time".



Digitized by srujanika@gmail.com

## ଶିବରାମ ପାତ୍ର

# ଶିଳ୍ପୀ ଦିନନାଥଙ୍କ ନବୀନତମ ସୃଷ୍ଟି : ଶ୍ଳୋକଛନ୍ଦ

ବିଂଶ ଶତାବ୍ଦୀ ଓ ଏକବିଂଶ ଶତାବ୍ଦୀର ସନ୍ଧିରେ ଶିଳ୍ପୀ ଦିନନାଥ ପାଠୀଙ୍କ ଦ୍ୱିତୀୟ ସ୍ୱରୂପଟିର ସ୍ପଷ୍ଟ ରୂପ ଉନ୍ମୋଚିତ ହୋଇଛି। ଦ୍ୱିତୀୟ ସ୍ୱରୂପଟି ତାଙ୍କ ସାହିତ୍ୟିକ ରୂପ। ଏବେ ଓଡ଼ିଶାରେ ଚିତ୍ରଶିଳ୍ପୀ ଦିନନାଥଙ୍କ ଏଇ ସାହିତ୍ୟିକ ପ୍ରତିଭା ବେଶ୍ ସମାଦୃତ। ଗଲା ପ୍ରାୟ କୋଡ଼ିଏ ବର୍ଷ ହେଲା ଶିଳ୍ପୀଙ୍କ ଭିତରେ ସାହିତ୍ୟିକ ରୂପଟି ଦାନା ବାନ୍ଧୁଥିଲା। ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ, ନୀଳହ୍ରଦର ଚିତ୍ରକର, ଭବଘୁରା ଭବନାଥ, ସୁନାମାଛ ପ୍ରକାଶନରୁ ଏହା ଜଣାପଡ଼େ। ସେସବୁର ଅଧ୍ୟୟନରୁ ହୃଦବୋଧ ହୋଇଛି : ଦିନନାଥଙ୍କ ସାହିତ୍ୟିକ ପ୍ରତିଭା ଅପମିତି। ବେଳ ପାଇଲେ ସେ ମାତିଯିବ, ମାଡ଼ିଯିବ। ଲତାଟିଏ ମାଟି ପାଣି ପବନ ଆଲୋକ ଓ ସାର ସହ ରଞ୍ଜାଟିଏ ପାଇଗଲେ ତାର ଡଙ୍କସବୁ ମନୋହର କୁଞ୍ଜରେ ପରିଣତ ହୋଇଯାଏ। କୁଞ୍ଜ ଛାୟା ଶୀତଳ, ସୁବାସରେ ମହକିତ ହୋଇଯାଏ। ଶାନ୍ତି ଓ ପ୍ରୀତିର ସ୍ଥଳବିଶେଷ ହୋଇଯାଏ। ମାଷ୍ଟ୍ରେ ଭବ ଘୁରିଥିଲେ- ବଡ଼ଖେମୁଣ୍ଡିରୁ ଖଲ୍ଲିକୋଟ, ଓଡ଼ିଶାର ଚିଲିକା ହ୍ରଦରୁ ସୁଇଜରଲାଣ୍ଡର ନୀଳହ୍ରଦ, ପାରଦ୍ୱୀପରୁ ବାଲିଦ୍ୱୀପ, ଭୁବନେଶ୍ୱରରୁ ଚୀନର ବେଇଜିଙ୍ଗ୍ ଓ ଜାପାନର ଟ୍ୟୋକିଓ, ଘୁମୁସରର ପ୍ରଥମ ରାଜଧାନୀ ଜୟନ୍ତୀଗଡ଼, ସାନଖେମୁଣ୍ଡିର ପୁରୁଣା ରାଜଧାନୀ ଆଖ୍ୟାତ ପ୍ରତାପଗିରିପେଣ୍ଠ ଯାଏଁ କେତେ ଗାଁ ସହର ନଗର, ନଦୀ ହ୍ରଦ ପର୍ବତ ଗିରିକନ୍ଦର ମରୁପ୍ରାନ୍ତର, କେତେ ଶିକ୍ଷାୟତନ, ଚିତ୍ରଶାଳା ଗ୍ୟାଲେରୀ କଳାର ବିପ୍ପଣୀ ବଜାର ସବୁଠେ ଘୁରିଛନ୍ତି ଯେଉଁଠେ ଚାରୁ ଓ କାରୁକଳାର ସନ୍ଧାନ ପାଇଛନ୍ତି। ଚିତ୍ରାଙ୍କନ, ଚିତ୍ର ପ୍ରଦର୍ଶନୀ, ଚିତ୍ରମେଳା, ସଂସ୍କୃତିଉତ୍ସବ, ଚିତ୍ରସମ୍ମାନ, ଚିତ୍ରକର୍ମଶାଳା ଆଦିର ଆୟୋଜନ ଓ ଚିତ୍ରଚର୍ଚ୍ଚା, ଚିତ୍ରଇତିହାସ, ଚିତ୍ରସମୀକ୍ଷା ରଚନା, ସଂପାଦନା, ସଂକଳନରେ ଢେର ସମୟ ଓ ଚିତ୍ର ବିକ୍ରି ଅର୍ଥ ବିନିଯୋଗ କରି ଜାତୀୟ କାର୍ଯ୍ୟ ସଂପାଦନ କରିଛନ୍ତି। ତାଙ୍କୁ ସଂଗଠନ ନିଶା ସଦା ଘାରିଥାଏ। ଚିତ୍ରକ୍ଷେତ୍ରର କୋଉ ପାଇଟିକି କୁଣ୍ଠା ନାହିଁ। ଲୋକ ଚିତ୍ରକଳା, ଲୋକପ୍ରିୟ ଚିତ୍ରକଳା, ଆଧୁନିକ, ଅତ୍ୟାଧୁନିକ ଚାରୁ ଓ କାରୁକଳା ସର୍ବତ୍ର ତାଙ୍କ ଗତାଗତ। ସହସ୍ରାଧିକ ଚିତ୍ର ସର୍ଜନା, ଶତାଧିକ ପ୍ରବନ୍ଧ ରଚନା, ଶତାଧିକ ଚିତ୍ର ପ୍ରଦର୍ଶନୀ ଆୟୋଜନ ଇତ୍ୟାଦି ଇତ୍ୟାଦି । ଚିତ୍ର ଓ ଚିତ୍ର ସଂପର୍କୀୟ କର୍ମରେ ପ୍ରାୟ ଚାଳିଶ ବର୍ଷ ହେଲା ଆପଣାକୁ ନିୟୋଜିତ କରି ସୁଦ୍ଧା ଜଗତ ଓ ଜୀବନର ଶିଳ୍ପୀ ଯେଉଁ ବ୍ୟାପକ ଓ ଗଭୀର ଅଧ୍ୟୟନ, ଅନୁଭୂତି, ଉପଲବ୍ଧି କରିଛନ୍ତି ସେସବୁର ସଂପୂର୍ଣ୍ଣ ପରିପ୍ରକାଶ ପାଇଁ ତାଙ୍କ ହାତରେ ଥିବା ମାଧ୍ୟମ ସଂଭବତଃ ସମର୍ଥ ହୋଇନି। ଲୋଡ଼ିଛନ୍ତି ଅନ୍ୟ ମାଧ୍ୟମ। ତାଙ୍କ ରାଜ୍ୟ, ତାଙ୍କ ଗଡ଼, ତାଙ୍କ ବଂଶର ସୁପ୍ରସିଦ୍ଧ ସାହିତ୍ୟ ପରମ୍ପରାଟିକୁ ଆଦରି ନେଇଛନ୍ତି। ଶୂନ୍ୟତା ସହ ସଂଳାପ ନ କରି ଶିଳ୍ପୀର ଚାରା ନାହିଁ। କେବଳ ଗୋଟିଏ ମାତ୍ର ମାଧ୍ୟମ ବା ବାଟରେ ପ୍ରତିଭାବାନ୍ ଶିଳ୍ପୀ ଆପଣା ଅନୁଭୂତି ଓ ଉପଲବ୍ଧିକୁ ପ୍ରକାଶ କରି ନିଶ୍ଚୁପ ରହେନି ବା ରହିପାରେନି। କେବଳ ଗୋଟିଏ ମାତ୍ର ବାଟ ଶିଳ୍ପୀ ଭିତରର ବିସ୍ଫୋରଣକୁ ସମ୍ଭାଳି ପାରିବ ? କେବେ ନୁହଁ। ଆହୁରି ବାଟ ସେ ଖୋଜିବ। ଶିଳ୍ପୀର ପିଣ୍ଡରେ ବ୍ରାହ୍ମାଣ୍ଡଯାକର ଯାବତୀୟ ବିଷୟ ଲହଡ଼ା ମାରୁଥାଏ। ତା'ର ବିକଳ୍ପ ବାଟ ଲୋଡ଼ା। କବି ରମାକାନ୍ତ ରଥ ମଝିରେ ମଝିରେ ଗପ ପ୍ରବନ୍ଧ ମାଧ୍ୟମରେ ଆପଣାକୁ ବେଶ୍ ଛାଡ଼ୁଛନ୍ତି। କବି ରାଜେନ୍ଦ୍ର କିଶୋର ପଣ୍ଡା ଚମତ୍କାର ଚମ୍ପୂ ଉପନ୍ୟାଟିଏ ବୃହତ୍ତର ସମାଜର ଅଲକ୍ଷ୍ୟରେ ଛାଡ଼ିସାରିଛନ୍ତି। କବିଏ ଶିଳ୍ପୀଏ ନୂଆ ନୂଆ ବାଟ ଖୋଜିବାରେ ସଦା ଲାଗିଛନ୍ତି। ଦୃଷ୍ଟାନ୍ତ ଭୂରିଭୂରି ଦେଇହେବ।

ଆମର ବ୍ୟକ୍ତିଗତ ବିଶ୍ୱାସ ଶିଳ୍ପୀଏଁ ଆତ୍ମସତ୍ତା (Self)ର ପରିପ୍ରକାଶ ପାଇଁ ହିଁ ଯାବତୀୟ ମାଧ୍ୟମ ଲୋଡ଼ିଥାନ୍ତି। ସଠିକ ମାଧ୍ୟମ ପାଇଗଲେ ଶିଳ୍ପୀସତ୍ତା ସହଜରେ ଆପଣାକୁ ସ୍ୱଚ୍ଛାସରେ ପ୍ରକାଶ କରିପାରେ। ଅନ୍ୟଥା ଦୁର୍ବିସହ ଯନ୍ତ୍ରଣାର ଶିକାର ହେବା ସାର ହୁଏ। ଆତ୍ମସତ୍ତାର ସହଜ ପ୍ରକାଶରେ ଶିଳ୍ପ-ସୌନ୍ଦର୍ଯ୍ୟ ସଂରକ୍ଷିତ ହୋଇପାରିଲେ କଳା ଆନନ୍ଦମୟ ଓ ଆନନ୍ଦପ୍ରଦ ହୁଏ। ଏବେ ମଣିଷ ପୁଣି ଚାହିଁଲାଣି-

Digitized by srujanika@gmail.com

'ମୋତେ ବୁଦ୍ଧି ଓ ପ୍ରଜ୍ଞାର କଥା
କହ ନାହିଁ ଆଉ,
ମୁଁ ଶୁଣି ଶୁଣି କ୍ଳାନ୍ତ, ଅବସନ୍ନ
କିଛି ସପ୍ନ, ଭାବବେଗର କଥା କହ,
ତାହା ଯେତେ
ଅଯୌକ୍ତିକ ହେଉ ପଛେ ।' (-ବ୍ରହ୍ମୋତ୍ରୀ)

ଶିଳ୍ପୀ ଦିନନାଥଙ୍କ ସାୟୋନାରା (୧୯୯୮) ଓ ପୁନର୍ନବା (୧୯୯୯) ଉପନ୍ୟାସ ଏବଂ ଚିତ୍ରଶାଳା (୨୦୦୦) କାବ୍ୟ ପରେ ଶ୍ଳୋକଛନ୍ଦ (୨୦୦୧) ଉପନ୍ୟାସର ସୃଷ୍ଟି । **ଆମ ବନ୍ଧୁ ସହପାଠୀ ଶ୍ରୀ ପାଠୀ ଏସବୁର ସଂପାଦନା କରିବାକୁ ସୁଯୋଗ ଦେଇ ଆମକୁ ଅନୁଗୃହୀତ କରିଛନ୍ତି । ପ୍ରତିଟି ପାଇଁ କିଛି କିଛି ସମୟ ଦେଇ ସାରସତ କର୍ମ ସଂପାଦନ କଲାବେଳେ ସତରେ କି ଆନନ୍ଦ ସୁଲଭ ହେଉଥିଲା । ବେଳେବେଳେ ଏକ ଏକ ବ୍ୟାପାର ଆମକୁ ଆଚ୍ଛନ୍ନ କରି ରଖୁଥିଲା ଢେର ସମୟ ଯାଏଁ । ସତରେ କେତେ ରାଜ୍ୟରେ ବିଚରଣ କରିବାକୁ ଅବସର ନ ମିଳିଲା । ଶିଳ୍ପୀଙ୍କୁ ନିକଟରୁ ଚିହ୍ନିବାକୁ ଅପୂର୍ବ ସୁଯୋଗ ମିଳିଲା । ଗବେଷଣାଗାରରେ ରହି ସବୁ ପ୍ରତ୍ୟକ୍ଷ କଲା ଭଳି ନିରୀକ୍ଷଣ କଲୁ । ଶିଳ୍ପୀଙ୍କ ସପ୍ନ, କଳ୍ପନା, ଦର୍ଶନ, ଆଭିମୁଖ୍ୟ, ବ୍ୟକ୍ତିତ୍ୱ, ପ୍ରତିଭା, ହାତହତିଆର, କଳା-କୌଶଳ, ଅତୀତ, ବର୍ତ୍ତମାନ, ଭବିଷ୍ୟତ ସବୁକିଛି । ଉଭା କେତେ, ପୋତା କେତେ ଆକଳନ କରିବାକୁ କିଛିଟା ସମର୍ଥ ହେଲୁ । ପୋତା ତ ମେରୁ ପ୍ରଦେଶର ହିମଶୈଳର ନିମ୍ନାଂଶ ଭଳି ।**

**ସାୟୋନାରା** ଓଡ଼ିଶାର ଅତ୍ୟାଧୁନିକ ଚିତ୍ରଶିଳ୍ପୀଙ୍କ ସପ୍ନ, ସାଧନା, ପ୍ରେମ, ପ୍ରଣୟ, ପରିଣୟ ସହ ସେମାନଙ୍କ ଓଡ଼ିଶାର ଦିଗପହଣ୍ଡିରୁ ଜାପାନର କ୍ୟୋଟୋ, ଚୀନର ବେଇଜିଙ୍ଗ୍ ଯାଏଁ ଅଭିଯାନ ଓ ସେଠାରେ ଚିତ୍ରଜଗତର କଥା ଭାରତ ଓ ଜାପାନର ଚମତ୍କାର ଲୋକକଥା, ଲୋକସଂସ୍କୃତି, ଲୋକବିଶ୍ୱାସର ଅନ୍ତରଙ୍ଗ ବର୍ଣ୍ଣନାରେ ରସାଳ । ଏବଂ ପୁନର୍ନବା ଓଡ଼ିଶାର ପାରମ୍ପରିକ ଚିତ୍ରକଳା, ଲୋକପ୍ରିୟ ଚିତ୍ରକଳା, ମଠ, ମହନ୍ତ, ବୈଷ୍ଣବ ସାହିତ୍ୟ, କଳାକୁଞ୍ଜ, ଦେବଦେବୀଙ୍କ ନବକଳେବର ପ୍ରସଙ୍ଗ ଆଦିର ଚିତ୍ରଣରେ ମଞ୍ଜୁଳ । ସାୟୋନାରା ଓ ପୁନର୍ନବା ପରେ **ଶ୍ଳୋକଛନ୍ଦ** ଦିନନାଥଙ୍କ ତୃତୀୟ ଚିତ୍ରୋପନ୍ୟାସ । ଏହା ଓଡ଼ିଶାର ଆଧୁନିକ ଚିତ୍ରକଳା ଆନ୍ଦୋଳନର ଆଦ୍ୟ ଇତିହାସ ସହ ଭାରତର ଅନ୍ୟ ପ୍ରାନ୍ତ ଓ ବିଶ୍ୱ କଳା ଜଗତର ନାନା କଥାରେ ପୁଷ୍କଳ । ଏଇଠେ ଆମର ଦି' ପଦ କହିବାର ଅଛି । କବି ଶିଳ୍ପୀଏଁ କାୟା ପ୍ରବେଶ ଜାଣନ୍ତି । ଯେଉଁଠିକୁ ଚାହିଁବେ ଅକ୍ଳେଶରେ ଯାଇପାରିବେ, ଯାହାର ଜୀବନ ଚାହିଁବେ ବିତାଇ ପାରିବେ, ଯେଉଁ ସମୟ ହେଉନା କାହିଁକି ନାରୀ ହେଉ କି ପୁରୁଷ ହେଉ । ଏବଂ ଖିନ୍‌ଭିନ୍ କରି ଚେତନ-ଅବଚେତନ-ଅଚେତନ ରାଜ୍ୟର ସବୁଙ୍କ ଏପରିକି ଗଛ ବୃଛଙ୍କ କଥା ନାନାବିଧ ଶିଳ୍ପ ଆଙ୍ଗୀକରେ ପ୍ରକାଶ କରନ୍ତି । ଆଉ ସେ ଭିତରେ ଆପଣା କଥା, ଆପଣା ଦେଶ, କାଳର କଥା, ଆପଣା ସପ୍ନ, ଆବେଗ, କଳ୍ପନା, ଦର୍ଶନ, ବିଚାର, ମୂଲ୍ୟବୋଧ, ବିଶ୍ୱାସ ଇତ୍ୟାଦି ଜ୍ଞାତସାରରେ ହେଉ କିମ୍ୱା ଅଜ୍ଞାତ ସାରରେ ହେଉ କିଛି କିଛି ଛାଡ଼ିଥାନ୍ତି, ଆପଣା ପଦଚିହ୍ନ ରଖିଥାନ୍ତି ।

ଅତୀତରେ ସାରଳା ମହାଭାରତ, ରସକଲ୍ଲୋଳ, ଲାବଣ୍ୟବତୀ, କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ, ଛମାଣ ଆଠଗୁଣ୍ଠ, ଚିଲିକା, ବନ୍ଦୀର ଆତ୍ମକଥା, ଜୀବନ ଚିନ୍ତା, ମାଟିର ମଣିଷ, ଅମଡ଼ାବାଟ, ଶାସ୍ତି, ପରଜା, ଦାନାପାଣି, ଅମୃତର ସନ୍ତାନ, ଅମୃତଫଳ, ପାଣ୍ଡୁଲିପି, ନରକିନ୍ନର, ଶତାବ୍ଦୀର ନଚିକେତା, ଶତାବ୍ଦୀର ସୂର୍ଯ୍ୟ, ନୀଳଶୈଳ, ମହାନିର୍ବାଣ, ଦୁଇ ସୀମାନ୍ତ, ଯନ୍ତ୍ରାରୂଢ଼, ଶ୍ରୀରାଧା, ପଳାତକ, ଅନ୍ୟା, ଚିଦାଭାସ ଆଦି ବିଶିଷ୍ଟ ଓଡ଼ିଆ ଗ୍ରନ୍ଥରେ ଆମେ ଏହା ଲକ୍ଷ୍ୟ କରିଛୁ ।

ଦିନନାଥ ସାୟୋନାରାର କେତକୀ, ନରିହିତୋ, ଅରୁଣ, ପୁନର୍ନବାର ନିତ୍ୟାନନ୍ଦ, ନୀଳାମ୍ବର, ଗୌରୀଙ୍କ ଭଳି ଶ୍ଳୋକଛନ୍ଦର ଜର୍ଜ ଶରତଚନ୍ଦ୍ର, ମେରୀ, ଗୋଲାପ ପ୍ରଭା, ସାବିତ୍ରୀ

Digitized by srujanika@gmail.com

ଚରିତ୍ରରେ କାୟା ପ୍ରବେଶ କରିଛନ୍ତି । ବାସ୍ତବତା ସହ ସପ୍ନ କଳ୍ପନା ଓ ଆବେଗର ଅବତାରଣା କରିଛନ୍ତି । ସେ କହନ୍ତି- 'ରୂପକାର ପାଖରେ, ବର୍ଣ୍ଣକାର ପାଖରେ କଳ୍ପନା ହିଁ ସତ୍ୟ, ବାସ୍ତବତା ନୁହେଁ । ବାସ୍ତବତାରୁ ଉଦ୍ଭବ କଳ୍ପନା, ରୂପାନ୍ତରିତ ସତ୍ୟ । ରୂପକାର ସହସ୍ରାକ୍ଷ । ସେ ତା ଅନ୍ତର୍ଲୋକରେ ଯାହା ଚାକ୍ଷୁଷ କରେ ତାହା ରୂପରେ, ଶିଳ୍ପରେ ପରିଣତ ହୋଇଯାଏ ତା'ର ଚିତ୍ରପଟରେ ଅମୂର୍ତ୍ତ ମୂର୍ତ୍ତ ହେଇଯାଏ । ରୂପକାରର ସଂସାରରେ ଆକାଶ ନୀଳ ନୁହେଁ, ଗଛର ପତ୍ର ସବୁଜ ନୁହେଁ, ତିନି ଯୁକ୍ତ ଦୁଇ ପାଞ୍ଚରେ ପରିଣତ ହୁଏନି, ରୂପକାର ଯାହା ଇଚ୍ଛେ ତାହା ହିଁ ସମ୍ଭବ ହୁଏ ।'

ସୁଧୀବୃନ୍ଦ, ଶିଳ୍ପୀ ପାଠୀ ଶିଳ୍ପ ଜଗତର ଏ ସାଧୀନତା ସାହିତ୍ୟରେ ପ୍ରୟୋଗ କରିଛନ୍ତି । ବୁଦ୍ଧି-ପ୍ରଜ୍ଞା ଅପେକ୍ଷା ତଥ୍ୟ-ତତ୍ତ୍ୱ-ସପ୍ନ ଆବେଗ କଳ୍ପନାକୁ ଗୁରୁତ୍ୱ ଦେଇଛନ୍ତି । ଆମର ସଂସ୍କାର କିନ୍ତୁ ଅଲଗା, ଆମେ ପ୍ରଥମେ ଏକମତ ହୋଇପାରିନୁ, ଅନେକ ସ୍ଥଳରେ କିନ୍ତୁ ପର ମୁହୂର୍ତ୍ତରେ ପାଠୀଙ୍କ ପ୍ରୟୋଗ ପରୀକ୍ଷାକୁ ଗ୍ରହଣ କରିଛୁ । ଆପଣମାନେ ବିଜ୍ଞ, ପଢ଼ିଲେ ଜାଣିବେ ନିଶ୍ଚୟ । **ଚିକିଟି ରାଜଶିଳ୍ପୀ ଗୁରୁ ସାଇବଦେଭ ଶ୍ରୀ ଶ୍ରୀ ଶରତଚନ୍ଦ୍ର ଦେବ ଓଡ଼ିଆ ଜାତି ପାଇଁ ମଧୁସୂଦନ, ଗୋପବନ୍ଧୁ, ଫକୀରମୋହନ, ରାଧାନାଥ, ଗୌରୀଶଙ୍କର, ଗଙ୍ଗାଧର, ଶଶିଭୂଷଣ, ଗୋପୀନାଥ, ଗୋପାଳଚନ୍ଦ୍ର, କୃଷଚନ୍ଦ୍ର, ବିକ୍ରମଦେବ ଭଳି ଏକ ବ୍ୟକ୍ତିତ୍ୱ ।** ସେ ବ୍ୟକ୍ତିତ୍ୱର ବର୍ଣ୍ଣିଳ ଜୀବନଗାଥାର ମଞ୍ଜୁଳ ସାରସତ ରୂପ ଶ୍ଳୋକଛନ୍ଦ । ଗଂଜାମ ଓଡ଼ିଆରେ ଅକୃତ୍ରିମ ଭାବେ ଯାହାର ପରିପ୍ରକାଶ । ସୁରେନ୍ଦ୍ର ମହାନ୍ତିଙ୍କ **ଶତାବ୍ଦୀର ସୂର୍ଯ୍ୟ**, ଶିବରାମ କରନ୍ତୁଙ୍କ **ମରଣ ପରେ** ଶ୍ଳୋକଛନ୍ଦର ତୁଳନା କରିବେ କେବେ । ଭୀମର ବଳ କୁନ୍ତୀକୁ ଜଣା । ସହପାଠୀ ପାଠୀଙ୍କୁ ଆମର ଏଇ ଅବସରରେ ଅନୁରୋଧଟିଏ । ସେ କେବଳ କଳା ସାଧନା କରିବାକୁ ସରକାରୀ ଚାକିରିରୁ ସେଚ୍ଛାକୃତ ଅବସର ନେଲେ, କଲେ ସାହିତ୍ୟ ସାଧନା । ଭଲ କଲେ ଓଡ଼ିଶାର ବିଗତ ଶତାବ୍ଦୀର କଳାଜଗତର ଅଜଣା ଅକୁହା କଥା ସବୁ କହିଲେ । ଦେଶବାସୀ ଉପକୃତ ହେବେ ନିଶ୍ଚୟ । ତାଙ୍କର ଢଙ୍ଗ ତଳକୁ ତଳକୁ ଯାଇ ମୂଳର ମୂଳକୁ ଧରିବା, ମୂଳର ମୂଳ ପାଖେ ପହଁଚିବା । ବେଶ୍ ବଢ଼ିଆ କୌଶଳ । ଚମତ୍କାର ଶୈଳୀ । ବନ୍ଧୁ ! ଏ ଢଙ୍ଗ, ଏ କଳା-କୌଶଳ ଶୈଳୀର ପ୍ରୟୋଗ ଅବ୍ୟାହତ ରହୁ । ଲାଙ୍ଗୁଳା ନରସିଂହ, ବିଶୁ ମହାରଣାଙ୍କ କୋଣାର୍କ ସୂର୍ଯ୍ୟମନ୍ଦିର ନିର୍ମାଣବେଳାର ଇତିହାସକୁ ଅନୁରୂପ ଚିତ୍ର ଉପନ୍ୟାଟିରେ ଛାଡ଼ନ୍ତୁ । ତାଙ୍କ ହାତରେ ଏହା ସମ୍ଭବ ହେବ ନିଶ୍ଚୟ ।

ଏବେ ସେ ଏଲିସ୍ ବୋନର ଫାଉଣ୍ଡେସନ୍‌ର ପୁନଶ୍ଚ ନିର୍ଦ୍ଦେଶକ ରୂପରେ ବର୍ଷକୁ ଛ' ମାସ ବନାରସରେ ରହୁଛନ୍ତି । ବନାରସରେ ଭାରତର ଆତ୍ମା ଅଛି । ବନାରସର ସୁଦୀର୍ଘ ଇତିହାସରେ କାହାଣୀର ଭିଡ଼ ଅଜସ୍ର । ଅଗଣିତ ସାଧୁସନ୍ଥ, କବି, ଭକ୍ତ, ଶିଳ୍ପୀ, ପଣ୍ଡିତ, ବିଦ୍ୱାନ ରାଜା ମହାରାଜାଙ୍କ ପୀଠ । ଉପାଦାନ ଅସରନ୍ତି । ତାଙ୍କ ଚମତ୍କାର ଶିଳ୍ପ-କୌଶଳ, ସୁନ୍ଦର ଭାଷା, ଅଭିନବ କାହାଣୀ ବିନ୍ୟାସ, ଅଦ୍‌ଭୂତ କଳ୍ପନାଶକ୍ତି ଅଛି । ହାତ ବେଶ୍ ଫିଟିଗଲାଣି । ସେ ହାତ ରଖେଇ ଦେବନି, ବସେଇ ଉଠେଇ ଦେବନି, ଅସ୍ଥିର କରିଦେବ ଆମେ ଜାଣୁ । ବନ୍ଧୁ ଖାଲି ଅଭୀପ୍‌ସା ରଖିଲେ ହେଲା । ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଆହୁରି ଆହୁରି ଦେବାରେ ଲାଗନ୍ତୁ । ବନାରସର କଥା ବି ଓଡ଼ିଆ କଥା ସାହିତ୍ୟକୁ ଆଣନ୍ତୁ ।

ମା' ସରସତୀ ତାଙ୍କୁ ଶକ୍ତିମାନ୍ କରନ୍ତୁ ।

ଆଜିର ଏ ଶୁଭ ଅବସରରେ ତାଙ୍କୁ ଆମେ କ'ଣ ଦେଇପାରିବୁ ? ତାଙ୍କ ପାଇଁ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଶବ୍ଦତତ୍ତ୍ୱ ଅଭିଧାନଟିଏ ଆଣିଛୁ । ଗ୍ରହଣ କରିବା ହୁଅନ୍ତୁ । ଗ୍ରହଣ କରିଲେ ସୁଖ ପାଇବୁ । ସୁଧୀବୃନ୍ଦ । ଆପଣମାନଙ୍କୁ ଆମର ହାର୍ଦ୍ଦିକ ଅଭିନନ୍ଦନ ଓ ସାଗତ ଏ କାର୍ଯ୍ୟକ୍ରମକୁ ।

ଉତ୍କଳ ହଲ୍‌ରେ ଅନୁଷ୍ଠିତ ଶ୍ଳୋକଛନ୍ଦର 'ପାଠକୀୟ' ଅବସରରେ ସହପାଠୀ, ବନ୍ଧୁ ଶିବରାମ ଦେଇଥିବା ଲିଖିତ ବକ୍ତବ୍ୟ ।

Digitized by srujanika@gmail.com

## ଅର୍ଚ୍ଚନା ନାୟକ

# ପୁନର୍ନବା : ଏକ ଭାବ ଲୋକର ରୂପକଥା

ପୁନର୍ନବା ପୁସ୍ତକର ପ୍ରଚ୍ଛଦପଟରେ ମ୍ଲାନିତ ଭଗ୍ନମୂର୍ତ୍ତିଟିର ଛବି ଭିତରୁ ଉତୁରି ଆସୁଥିବା କୃଷ୍ଣସତ୍ତାର ମାଦକତା, ଚମତ୍କାର ବନ୍ଧେଇ, ମସୃଣ କାଗଜ, ତ୍ରୁଟିଶୂନ୍ୟ ମୁଦ୍ରଣ ଓ ସର୍ବୋପରି ଶିଳ୍ପୀର ପରିପକ୍ୱ ଲେଖନୀର ରେଖାଚିତ୍ର ପାଠକକୁ ପ୍ରଥମରୁ ହିଁ ପୁସ୍ତକଟି ପ୍ରତି ଆକୃଷ୍ଟ କରିବାକୁ ସମର୍ଥ।

ପ୍ରଥମ ପୃଷ୍ଠାରେ ଜୀବନ, ପ୍ରାଣ ଓ ହସର ସଂଜ୍ଞା ନିରୂପିତ ହୋଇଛି କାବ୍ୟ ଶୈଳୀରେ । ଖୁବ୍ ସୁନ୍ଦର ପଦଟିଏ-

ପ୍ରାଣ ଆଉ କେତେ କି ?

ବାକ୍ୟଟିଏ ସ୍ଫୁରିବା ଓ ନିଃଶବ୍ଦ ହେବାର

ବ୍ୟବଧାନ ତ !

ପୁନର୍ନବା ଜଣେ ଓଡ଼ିଆ ଶିଳ୍ପୀର ଅବବୋଧର କଥା । ଚିତ୍ରଭାଷା ରୂପ ନେଇଛି କବିଭାଷାରେ। ମଣିଷର ସୃଜନଶୀଳ ଅଭିବ୍ୟକ୍ତି ପ୍ରଥମେ ରୂପ ଗ୍ରହଣ କରିଥିଲା ଚିତ୍ରରେ, ପୃଥିବୀର ପ୍ରାଚୀନତମ ସଭ୍ୟତାମାନଙ୍କରେ। ଗୋବି ମରୁଭୂମିର ବାଲୁକାଶଯ୍ୟା ତଳୁ ମିଳିଥିବା ମୂର୍ତ୍ତିରେ, ଅଜନ୍ତା ଏଲୋରାର ରଙ୍ଗଶାଳାରେ ଓ ଖଣ୍ଡଗିରିର ଜୈନଗୁମ୍ଫାର କଠିନ ପ୍ରସ୍ତର ଗାତ୍ର ପ୍ରଭୃତିରେ - ସବୁଠି ସେହି ମଣିଷର ସୃଜନଲୀଳାର ଆଦିପ୍ରକାଶ। ଭାଷା ସାହିତ୍ୟ ତା' ତୁଳନାରେ ଅର୍ବାଚୀନ, କିନ୍ତୁ ଅପେକ୍ଷାକୃତ ଏହି ଅର୍ବାଚୀନ ମାଧ୍ୟମ ହିଁ ହୋଇଛି ସବୁଠାରୁ ଶକ୍ତିଶାଳୀ ମାଧ୍ୟମ। ରଙ୍ଗତୂଳୀରେ କାନ୍‌ଭାସ୍ ଉପରେ ଉଠି ଆସୁଥିବା ଛବିରେ ଯେତେଯାହା ବ୍ୟକ୍ତ ହେଲେ ବି ଅବ୍ୟକ୍ତ ରହିଯାଏ ବହୁତ ବେଶି। ସାହିତ୍ୟରେ ମଧ୍ୟ ତାହା ଯେ ନହୁଏ ସେ କଥା ନୁହେଁ, କାରଣ ସତରେ କଣ କେହି ସମର୍ଥ ଲୁହର ରଙ୍ଗକୁ ବର୍ଣ୍ଣିବା ପାଇଁ ବା ବିଷର୍ଣ୍ଣତାର ସରଳିପିକୁ ଧରିପାରିବା ପାଇଁ ? ତଥାପି ସୃଜନଶୀଳତାର ଶ୍ରେଷ୍ଠ ପ୍ରକାଶ ମାଧ୍ୟମ ଶବ୍ଦ ଶିଳ୍ପ। ଏଠାରେ ଚିତ୍ରଭାଷାରେ ପ୍ରବୀଣ ଶିଳ୍ପୀ ଦିନନାଥ ଶବ୍ଦଶିଳ୍ପକୁ ଆଶ୍ରୟ କରିଛନ୍ତି ନିଜର ଏକ ପୁଷ୍କଳ ଅନୁଭୂତି ଓ ଅଭିଜ୍ଞତାକୁ ରୂପାନ୍ତରିତ କରିବା ପାଇଁ।

**ଏହି ଉପନ୍ୟାସର ବିଷୟ ପରିକଳ୍ପନାର ସାତନ୍ତ୍ୟ ଉଲ୍ଲେଖନୀୟ। ଯେଉଁ କଥାବସ୍ତୁକୁ ସେ ଗ୍ରହଣ କରି ଏକ ସାଭାବିକ ସହଜ ଛନ୍ଦରେ ପରିଣତି ଦିଗକୁ ନେଇ ପାରିଛନ୍ତି, ତାହା କେବଳ ଜଣେ ଶବ୍ଦଶିଳ୍ପର କାରିଗର ପକ୍ଷରେ ସମ୍ଭବ ହୋଇପାରି ନଥାନ୍ତା। ଚିତ୍ର ଓ ଭାଷା ଉଭୟ ଭିତରେ ଏକ ସଂଯୋଗକାରୀ ସେତୁ ଭାବରେ ଚିତ୍ରକାର-ଲେଖକ ଦିନନାଥ ଏକ ଅଦ୍ଭୁତ ଶିଳ୍ପକର୍ମ କରିପାରିଛନ୍ତି।**

ସାରଳା ମହାଭାରତରେ ବର୍ଣ୍ଣିତ ପିତୁଳି ରମଣ ପ୍ରସଙ୍ଗ ଉପନ୍ୟାସର କଥାକଳ୍ପନାର ଅନ୍ୟତମ ପ୍ରମୁଖ ଉପାଦାନ। ଉପନ୍ୟାସର ଦୁଇଟି ମୁଖ୍ୟ ପୁରୁଷ ଚରିତ୍ର ନୀଳାମ୍ବର ମିଶ୍ର ଓ ନିତ୍ୟାନନ୍ଦ। ଜଣେ ବୃଦ୍ଧ, ଅନ୍ୟ ଜଣେ ତରୁଣ। ଦୁଇଟି ଚରିତ୍ର ଏକାଠି ହୋଇଛନ୍ତି ପୁରାଣ ପଢ଼ାର ପୃଷ୍ଠପଟରେ। ପୁରାଣ, ସାରଳା ମହାଭାରତ, ପ୍ରସଙ୍ଗ, ଶାନ୍ତନୁ ଗଙ୍ଗା ବିବାହ। ଉକ୍ତ ବିଶାଳ ମହାକାବ୍ୟରେ ବର୍ଣ୍ଣିତ ଚିତ୍ତାକର୍ଷକ କଥାମାନ ଭିତରୁ ଉପର୍ଯୁକ୍ତ ବିଷୟଟି ଅନ୍ୟତମ। ନିର୍ଘାତ ରାଜାଙ୍କର କନ୍ୟା ଗଙ୍ଗା ଶିବଙ୍କୁ ବିବାହ କରିବା ପାଇଁ ମନସ୍ଥ କରିଥିବାରୁ ଅନ୍ୟକାହାକୁ ବିବାହ ନ କରି ଅପେକ୍ଷା କରିଥିଲେ। ଶିବଭକ୍ତ ରାଜା ଶାନ୍ତନୁ ଶିବଙ୍କ ପରି ବେଶ ଧାରଣ କରି ଭ୍ରମଣ କରୁଥିବା ବେଳେ ନିର୍ଘାତ ତାଙ୍କୁ ଶିବ ଭ୍ରମରେ କନ୍ୟାପ୍ରଦାନ କରିବାକୁ ଇଚ୍ଛା ପ୍ରକାଶ କଲେ। ଶାନ୍ତନୁ ଗଙ୍ଗାଙ୍କର ଅସାମାନ୍ୟ ରୂପରେ ମୁଗ୍ଧ ହୋଇ ନିଜର ପ୍ରକୃତ ପରିଚୟ ଗୋପନ ରଖି ବିବାହ କରିଗଲେ। କିନ୍ତୁ ଶିବପ୍ରୀତିର ଆକାଂକ୍ଷା କରୁଥିବା ଗଙ୍ଗା ନିଜ ପତିଙ୍କର ପ୍ରକୃତ ପରିଚୟ ପାଇଯିବା ପରେ ହତାଶା ଓ କ୍ରୋଧରେ ଜର୍ଜରିତ

Digitized by srujanika@gmail.com

ହୋଇ ଉଠିଲେ। ତା'ପରେ ଆରମ୍ଭ ହେଲା ଶାନ୍ତନୁ-ଗଙ୍ଗାଙ୍କ ଦାମ୍ପତ୍ୟର ଦୁଃଖଦ ପର୍ଯ୍ୟାୟ। ମନରେ ପ୍ରତିଶୋଧର ଅଗ୍ନି ପ୍ରଜ୍ୱଳିତ ରଖି ଗଙ୍ଗା ଆରମ୍ଭ କଲେ ପତ୍ନୀତ୍ୱର ଅଦ୍ଭୁତ ଭୂମିକା। ଶାନ୍ତନୁଙ୍କ ମନରେ ତୀବ୍ର କାମତୃଷ୍ଣା ସୃଷ୍ଟି କରିବା ପରେ ହିଁ ସେ କାମାତୁର ଶାନ୍ତନୁଙ୍କୁ ନିର୍ଦ୍ଦୟ ଭାବରେ ପ୍ରତ୍ୟାଖ୍ୟାନ କରୁଥିଲେ। ଥରେ ନୁହେଁ ବାରବାର ଘଟୁଥିଲା ସେହି ସମାନ ଧରଣର ଅଘଟଣ। ବେଳେବେଳେ କାମପୀଡ଼ିତ ଶାନ୍ତନୁ ଗଙ୍ଗାଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେଲେ ବି ନିଜକୁ ସଂଯତ ନ କରିପାରି କାନ୍ଥରେ ଅଙ୍କିତ ହୋଇଥିବା ରମଣୀଚିତ୍ର ସହିତ ସଙ୍ଗମ କରୁଥିଲେ। ପିତୁଳି ରମଣର ପ୍ରସଙ୍ଗ ବହୁ ବର୍ଣ୍ଣିଳ ରୀତିରେ ସାରଳା ମହାଭାରତରେ ସ୍ଥାନ ପାଇଛି।

ଉକ୍ତ ପ୍ରସଙ୍ଗଟିର ଏକ ସାହିତ୍ୟିକ ସମର୍ଥନ, ଔପନ୍ୟାସିକଙ୍କର କଥାଜଗତର ମାର୍ଗ ନିର୍ମାଣରେ ସହାୟତା କରିଛି। ଉକ୍ତ ମାର୍ଗରେ କିଛି ପଥ ଅତିକ୍ରମ କରିଯିବା ପରେ କଥାକାର ଆପଣା ମାର୍ଗ ଆପେ ସୃଷ୍ଟି କରିଛନ୍ତି ବା ମାର୍ଗ ଆପଣାଛାଏଁ ଦିଗନ୍ତ ବିସ୍ତାରୀ ହୋଇଯାଇଛି।

କଳାକୁଞ୍ଜ ସଂସାରର ଏକ ପ୍ରତିଛବି। କୁଞ୍ଜ ନିର୍ମାଣ ଭାରତବର୍ଷର ମୁଖ୍ୟତଃ ପୂର୍ବାଞ୍ଚଳରେ ପ୍ରଚଳିତ ଏକ ପ୍ରାଚୀନ ପରମ୍ପରା। ଭାରତୀୟ-ମାନସ ସ୍ଥୂଳ ପ୍ରକାଶର ଅନ୍ତରାଳରେ ଦର୍ଶନ କରିଥାଏ ସୂକ୍ଷ୍ମ ସ୍ୱରୂପକୁ; ମୃଣ୍ମୟ ମଧ୍ୟରେ ଚିନ୍ମୟକୁ ହିଁ ଅନୁଭବ କରିଥାଏ। ଏପରିକି ସଙ୍ଗୀତର ରାଗଟିଏ ପଛରେ ଏକ ଜୀବନ୍ତ ଦିବ୍ୟସତ୍ତାର ସ୍ଥିତିକୁ ସେ ସ୍ୱୀକାର କରେ। ସେଥିପାଇଁ ସଙ୍ଗୀତ ଶାସ୍ତ୍ରରେ ବର୍ଣ୍ଣିତ ବିଭିନ୍ନ ରାଗରାଗିଣୀର ସ୍ୱତନ୍ତ୍ର ରୂପରଙ୍ଗ ଆଭୂଷଣର ବର୍ଣ୍ଣନା କରାଯାଇଛି। ତେଣୁ ମାଟି ହେଉ, କାଷ୍ଠ ହେଉ, ପ୍ରସ୍ତର ହେଉ ବା ହେଉ ରଙ୍ଗ ତୂଳୀର ଚିତ୍ର ସେଥିରେ ମନ୍ତ୍ର ଦ୍ୱାରା ପ୍ରାଣସଞ୍ଚାର କରାଯିବା ପରେ ସେ ସବୁ ହୋଇଉଠନ୍ତି ରକ୍ତମାଂସର ମଣିଷ ପରି ଜୀବନ୍ତ ସତ୍ତା। ଏସବୁ କ୍ଷେତ୍ରରେ ପିତୁଳିକୁ କାମ ଭାବନାରେ ରୂପଦେବା ପରି ପ୍ରେମ ବା ଭକ୍ତିଭାବନାରେ ମଧ୍ୟ ଜୀବନ୍ୟାସ ଦିଆଯାଏ। ପ୍ରତିମାକୁ ମଣିଷର ସ୍ୱାଭାବିକ ନଶ୍ୱର ରୂପଠାରୁ ଅନ୍ତର କରିଦେଇ ଏକ ଭାବମୟ ସତ୍ତାର କାବ୍ୟିକ ପ୍ରତୀକ ଭାବରେ ଗ୍ରହଣ କରାଯାଇଛି। ତେଣୁ ସମସ୍ତ ଦେବଦେବୀ ସର୍ବଦା ଅପରୂପ ଲାବଣ୍ୟ ଓ ଆଭାରେ ଜାଜ୍ୱଲ୍ୟମାନ ହେଉଥାନ୍ତି। ତାଙ୍କୁ କାଳସ୍ପର୍ଶ କରେ ନାହିଁ। ନଶ୍ୱର ବସ୍ତୁରେ ଗଢ଼ାଯାଇଥିବା ପ୍ରତିମାର ଭାବରୂପ ଓ ସ୍ୱରୂପ କିନ୍ତୁ ସର୍ବଦା କାଳଜୟୀ।

ଉପନ୍ୟାସର ତିନୋଟି ମୁଖ୍ୟ ଚରିତ୍ର ମଧ୍ୟରୁ ଅନ୍ୟତମ ହେଉଛନ୍ତି କଳାକୁଞ୍ଜର ସ୍ରଷ୍ଟା ନୀଳାମ୍ବର। ନୀଳାମ୍ବରଙ୍କର ପିତୁଳିପ୍ରତି ଦୃଷ୍ଟିଭଙ୍ଗୀ ଓ ଅନୁଭବ ଠିକ୍ ଏକ ଜୀବନ୍ତ ମଣିଷ ପରି। ତେଣୁ ତାଙ୍କର ଅନୁଭବ ହୁଏ ପିତୁଳି ଦେହରେ ଟିପଟା ଜୋରରେ ଲାଗିଗଲେ ରକ୍ତଟୋପାଏ ଝରିପଡ଼ିବକି। ପିତୁଳି ଭିତରେ ରାଧା, ଲଳିତା ଓ ସୀତାଙ୍କର ଚାକ୍ଷୁଷ ଦର୍ଶନ ସେ କରିବା ପରି ଭଗବତ୍‌ଗୀତାର ବିଶ୍ୱଦର୍ଶନ ସଂପର୍କିତ ପିତୁଳି ପ୍ରଦର୍ଶନରେ ମଧ୍ୟ ସେ ଏକାତ୍ମ ହୋଇଉଠନ୍ତି। ପିତୁଳିମାନେ ତାଙ୍କ ନିକଟରେ ସ୍ୱୟଂପ୍ରକାଶ। ତା' ସହିତ ଆଉ ଏକ ଅଦ୍ଭୁତ ଭାବାବେଗର ଆବେଶରେ ଜୁଡୁବୁଡୁ ସତ୍ତାଟିଏ ନୀଳାମ୍ବର। ରାଧାପିତୁଳି ଭିତରେ ଏକ ମୁହୂର୍ତ୍ତରେ ସେ ଅନୁଭବ କରନ୍ତି ତାଙ୍କର ଦିବଂଗତା ପ୍ରିୟତମା ପତ୍ନୀକୁ ତ ପରମୁହୂର୍ତ୍ତରେ ଦିବ୍ୟଜନନୀଙ୍କୁ। ରାସମେଦୁର ମାନସର ଏକ ବିଚିତ୍ର ପ୍ରକାଶ ନୀଳାମ୍ବର। ପିତୁଳିମାନଙ୍କୁ ନେଇ ତନ୍ମୟ ନୀଳାମ୍ବର ଭାବନ୍ତି କେହିହୁଏତ ଭାବୁଥିବେ ଅଲୋଡ଼ା ପିତୁଳିଗୁଡ଼ାଏ ନେଇ ସିଏ ଏପରି କାହିଁକି ମାତିଛନ୍ତି। କିନ୍ତୁ ଯିଏ ଯାହା ଭାବୁପଛେ ସିଏ ଜାଣନ୍ତି ଏ କଳାକୁଞ୍ଜ ତାଙ୍କ ସାଧନାର ମାର୍ଗ, ତାଙ୍କ ପାଇଁ ମୁକ୍ତିର ବାଟ। ଏହି ଚରିତ୍ରଟିର ଆରମ୍ଭ-ଉତ୍ତରଣ, ଉତ୍‌ଥାନ-ପତନର ପର୍ଯ୍ୟାୟ ନାହିଁ। ଏହା ଏକପ୍ରକାର ସ୍ଥିର ଚରିତ୍ର। ଯିଏ କି କଳାକୁଞ୍ଜର ନିର୍ମାଣ, ପିତୁଳି ଚିନ୍ତନ ଓ ଦର୍ଶନ ଭିତରେ ଆରମ୍ଭରୁ ଏକାକାର ହୋଇରହିଛି। ପିତୁଳିର ବସ୍ତୁତ୍ୱ ତାକୁ ମୁହୂର୍ତ୍ତକ ପାଇଁ ବି ସନ୍ଦିହାନ କରେନାହିଁ ବରଂ କଳାକୁଞ୍ଜର ଆୟୋଜନ ପାଇଁ ଦାସୀଠାରୁ ଆରମ୍ଭ କରି ଶ୍ରୀରାଧାଙ୍କ ପିତୁଳିଯାଏ ସବୁଥିରେ ସେ ଏକପ୍ରାଣ। ସେ ପିତୁଳି ଜଗତର ବାସିନ୍ଦା, ଯେଉଁ ଜଗତକି ଆମର ତଥାକଥିତ ରକ୍ତମାଂସର ମଣିଷସମାଜଠାରୁ ବୋଧେ ଅଧିକ ପ୍ରାଣବନ୍ତ।

Digitized by srujanika@gmail.com

ନିତ୍ୟାନନ୍ଦ ତରୁଣ, ନୀଳାମ୍ବର ମିଶ୍ରଙ୍କ ଜରିଆରେ ତା'ର ପରିଚୟ ହୋଇଛି ପିତୁଳି ଜଗତ ସହିତ; ତେବେ ସେ ନୀଳାମ୍ବରଙ୍କ ପରି ଉକ୍ତ ଜଗତ ସହିତ ଏକପ୍ରାଣ ନୁହେଁ। ବରଂ କେତେକ ପ୍ରସଙ୍ଗରେ ସେ ବିଶ୍ୱାସ-ଅବିଶ୍ୱାସର ଭଉଁରୀ ଭିତରେ ପଡ଼ିଯାଏ, ବାରମ୍ବାର କିଛି ପ୍ରଶ୍ନବାଚୀର ସାମ୍ନା କରୁଥାଏ। ତେବେ ନିତ୍ୟାନନ୍ଦ ସେପରି ବ୍ୟକ୍ତିତ୍ୱ ବା ଅବବୋଧର ଅଧିକାରୀ ନୁହେଁ ଯେ ସିଧାସଳଖ କୌଣସି ବ୍ୟବସ୍ଥା ବା ଦର୍ଶନକୁ ପ୍ରତ୍ୟାଖ୍ୟାନ କରିଦେଇପାରିବେ। ତେଣୁ ଅବସ୍ଥା, ପରିସ୍ଥିତିର ବିରୋଧରେ ଯିବା ଅପେକ୍ଷା ତା' ସହିତ ସାମିଲ ହୋଇଯିବା ତା' ପାଇଁ ସବୁବେଳେ ସହଜ ମନେ ହୋଇଛି।

ପିକକଣ୍ଠୀ ନବଯୌବନା ଗୌରୀ ପୁନର୍ନବା ଉପନ୍ୟାସର ମୁଖ୍ୟ ନାରୀଚରିତ୍ର। ନବତାରୁଣ୍ୟର ମଧୁମାଦକତାରେ ସତେ ଯେମିତି ଛଳ ଛଳ ହୋଇ ବହିଯାଉଥିବା ନଈଟିଏ ସେ! ସଙ୍ଗୀତର ସୁଧା-ଜଗତରେ ସତେକି କିନ୍ନରୀଟିଏ! ହଠାତ୍ ଏକ ଅଭାବିତ ଘଟଣା ଘଟିଯାଇଛି ତା'ର ଜୀବନରେ। ତାକୁ ବାନ୍ଧି ଦିଆଯାଇଛି ରାଧାବିନୋଦଙ୍କର ପ୍ରସ୍ତର ପ୍ରତିମା ସହ ବିବାହ ସୂତ୍ରରେ। ସେ କଞ୍ଚା ବୟସରେ କଣ ବା ବୁଝିଥିଲା ବିବାହର ଅର୍ଥ, ପୁଣି ଏକ ନିର୍ଜୀବ ପିତୁଳା ସହିତ! ଅର୍ଥ ବୁଝୁ ବା ନ ବୁଝୁ କିନ୍ତୁ କେମିତି କେଜାଣି ନଈର ସେ ଉଚ୍ଛୁଳାଧାରାଟି ସେଇ ପ୍ରସ୍ତର ପ୍ରତିମାକୁ ଆବେଷ୍ଟନ କରି ପରମ ଆହ୍ଲାଦରେ ଜୀବନ ପରିକ୍ରମା କରିଚାଲିଲା। ସେ ଯେ ସାଧାରଣ ନାରୀଟିଏ ନୁହେଁ। ସ୍ୱୟଂ ରାଧାବିନୋଦଙ୍କର ପ୍ରିୟତମା ପତ୍ନୀ। ଏହି ଦିବ୍ୟ ପତ୍ନୀତ୍ୱର ଏକ ଅନୁଭବ-ଆନନ୍ଦ ଭିତରେ ସେ ନିମଜ୍ଜିତ ଥିବାବେଳେ ମଠମହନ୍ତର କାମଲାଳସାର ଶରବ୍ୟ ହୋଇଛି। କି ସେ ବିପରୀତ ଅବସ୍ଥା! କାହାନ୍ତି ସେ ଦିବ୍ୟମୋହନ ପ୍ରେମିକ କୃଷ୍ଣ ଆଉ କୋଉଠି ଏ ସ୍ଥୂଳକାୟ ଜାନ୍ତବ କାମାସକ୍ତ କୁତ୍ସିତ ମଠମହନ୍ତ! ଗୌରୀର ଶାନ୍ତ ସମାହିତ ଅନ୍ତରରେ ସୃଷ୍ଟି ହୋଇଯାଉଛି ଝଡ଼। କ୍ରୋଧରେ ମହନ୍ତକୁ ଆଘାତ କରି ସେ ଚାଲିଆସିଛି ସତ କିନ୍ତୁ ହୃଦୟରେ ପୁରୁଷ ପ୍ରତି ବିଦ୍ୱେଷ ଭାବ ନେଇ ସେ ଜଗତ ପ୍ରତି ସତର୍କ ହୋଇଯାଇଛି ଓ ହରାଇଛି ଏକ ସହଜ ଜୀବନର ଛନ୍ଦ।

ଘଟଣାକ୍ରମରେ ଗୌରୀ ନିତ୍ୟାନନ୍ଦଠାରେ ବିଶ୍ୱାସ ସ୍ଥାପନ କରିଛି ଓ ତାକୁ ବିବାହ କରିଛି। କିନ୍ତୁ ଦୁହେଁ କଣ ସମଚେତନାରେ ଅଧିଷ୍ଠିତ ହୋଇପାରିଛନ୍ତି? ନିତ୍ୟାନନ୍ଦର ଅବବୋଧ ଭିତରେ ଦୁଇଟି ସ୍ରୋତ ସ୍ପଷ୍ଟ ବାରି ହୋଇପଡ଼େ। ପ୍ରଥମତଃ ଦେହ ଭାବନା, ସମ୍ବେଦନା, ଆବେଗ ଉତ୍କଣ୍ଠା ଓ ଯାହାର ଶିଖରରେ ରହିଛି ପ୍ରେମମୟୀ, ସଙ୍ଗୀତମୟୀ ରାଧାସ୍ୱରୂପିଣୀ ଗୌରୀ ଏବଂ ଅନ୍ୟଟି ହେଉଛି ବୈରାଗ୍ୟ, ନଶ୍ୱରତା ଓ ଅବଚେତନର ଅପାର୍ଥିବ ଆଧ୍ୟାତ୍ମିକ ଅନୁଭୂତି। ତା'ର ସେ ଉଭୟ ଅନୁଭୂତି ପରିପୁଷ୍ଟ ହେଉଛି ସେଇ ଏକା ପିତୁଳାଭାବରୁ।

କିନ୍ତୁ ଗୌରୀର ଅବରୋଧରେ ଆରମ୍ଭ କୃଷ୍ଣ ଓ ଶେଷ ମଧ କୃଷ୍ଣ। ସେ କୃଷ୍ଣ ପ୍ରତିମାକୁ ଦେଖେ, ତା'ର ପ୍ରତି ଅଙ୍ଗପ୍ରତ୍ୟଙ୍ଗରେ ଖେଳିଯାଏ ପ୍ରୀତିର ପ୍ଲାବନ। ପ୍ରତିମା ତା' ପାଇଁ ସବୁବେଳେ ଏକ ଆଧ୍ୟାତ୍ମିକ ଚେତନା। ସେ ଚାହେଁ ଏହି ଚେତନା କ୍ରମେ ବିସ୍ତାରିତ ହେଉ।

ନିତ୍ୟାନନ୍ଦ ଓ ଗୌରୀ, ଉଭୟେ ପତିପତ୍ନୀ, ଏକ ସାଧନାର ପଥରେ ଦୁହେଁ ଯାତ୍ରୀ। ଦିନ ପରେ ଦିନ ଦୁହେଁ ଏକାଠି ସମୁଦ୍ରରେ, ବାଲୁକାଶେଯରେ ଓ ଆକାଶରେ କଣ ଖୋଜି ଚାଲିଥିଲେ, ଗୌରୀ ଖୋଜିଲା ସମୁଦ୍ରର ନୀଳିମା, ମାପିବାକୁ ଚାହିଁଲା ତା'ର ବ୍ୟାପ୍ତି ଆଉ ନିତ୍ୟାନନ୍ଦ ଖୋଜିଲା ସମୁଦ୍ରର ରଙ୍ଗୀନ୍ ଶାମୁକା। ଖୋଜିବାର ଲକ୍ଷ୍ୟ ଥିଲା ଭିନ୍ନ ଅଥଚ ଉଭୟେ ଥିଲେ ଗୋଟିଏ ଲକ୍ଷ୍ୟରେ ସମର୍ପିତ। ଖୋଜିବାରେ ନିଷ୍ଠା ଥିଲା, ଉତ୍କଣ୍ଠା ଥିଲା ଓ ପ୍ରାପ୍ତିରେ ଥିଲା ଆନନ୍ଦ।

ଗୌରୀର ଦିନଯାକ ବିରହର ଦିନ। ପ୍ରାକ୍-ତାରୁଣ୍ୟରେ ରାଧାବିନୋଦଙ୍କର ପ୍ରତିମା ସହ ତା'ର ବିବାହ ଥିଲା ଏକପ୍ରକାର ଅବର୍ଣ୍ଣନୀୟ ଆତଙ୍କର ଘଟଣା। କିନ୍ତୁ ପରେ କୃଷ୍ଣଙ୍କ ପ୍ରତିମା ସହ ପ୍ରକୃତ ପ୍ରୀତି ପ୍ରଣୟରେ ସେ ହୋଇଛି ପୁନର୍ନବା। କୃଷ୍ଣ ହିଁ ତାର ମନର ନାୟକ। ପୁରୁଷେ ଉଚ୍ଚର

Digitized by srujanika@gmail.com

ନବଘନ ରଙ୍ଗର ଶ୍ରୀଅଙ୍ଗ ତାକୁ ପ୍ରଲୁବ୍‌ଧ କରେ। ପ୍ରତିମାର ଆଲିଙ୍ଗନରେ ସେ ପାଏ କୃଷ୍ଣଙ୍କର ଅଙ୍ଗସ୍ପର୍ଶର ମୋହନମାଦକ ଅନୁଭବ। ନାସାରେ କୃଷ୍ଣତନୁର ଦିବ୍ୟସୁଗନ୍ଧି। ମୁହୂର୍ତ୍ତକରେ ସ୍ଥୂଳରୁ ସୂକ୍ଷ୍ମ, ମୃଣ୍ମୟରୁ ଚିନ୍ମୟ, ପାର୍ଥିବରୁ ଅପାର୍ଥିବ ସ୍ତରକୁ ବ୍ୟାପ୍ତ ହୋଇଯାଏ ଗୌରୀର ଶୁଦ୍ଧ ଚେତନା। ମନ, ପ୍ରାଣ, ଦେହ ଓ ଆତ୍ମା ସବୁକିଛି ନିବେଦିତ ଓ ତଲ୍ଲୀନ ହୋଇଯାଏ କୃଷ୍ଣ ଚେତନାରେ। ପୃଥିବୀ ଓ ଆକାଶରେ ବିସ୍ତାରିଯାଏ ଏକହିଁ କୃଷ୍ଣନୀଳିମା।

ଗୌରୀର ଚେତନାର ସ୍ଥିତିକୁ କିଛିଟା ଅନୁଭବ କରିହୁଏ; କିନ୍ତୁ ଭାଷାରେ ଠିକ୍ ଭାବରେ ବୁଝାଇ ହୁଏନା। କାରଣ ଏପରି କୌଣସି ସମର୍ଥ ଭାଷା ନାହିଁ ଯାହାକି ମଣିଷର ଅନ୍ତର୍ଜଗତର ସୂକ୍ଷ୍ମ-କୋମଳ, ମଧୁର-ବିଷାଦ ଅନୁଭବକୁ ଶବ୍ଦରେ ରୂପାନ୍ତରିତ କରିପାରିବ। ତଥାପି ବୈଷ୍ଣବୀୟ ପରିବେଶ ଓ ପ୍ରଚଳିତ ଉପାଦାନ ମାଧ୍ୟମରେ ହିଁ ଶିଳ୍ପୀ- ଲେଖକ ଗୌରୀ ବା ଏକ ଚିରନ୍ତନୀ ପ୍ରେମିକା ନାରୀର ଆବେଗ, ସଂବେଗ, ଲୀଳା ଓ ଉତ୍ତରଣର ସୁନ୍ଦର ରେଖାଚିତ୍ରଟିଏ ଅଙ୍କନ କରିପାରିଛନ୍ତି।

ଉପନ୍ୟାସର ଶେଷଦୃଶ୍ୟ.... ପାଠକକୁ କିଛି ସମୟ ପାଇଁ ସ୍ତବ୍ଧ କରିଦିଏ। ରାତ୍ରିର ନୀରବ ଆହ୍ୱାନରେ ଗୌରୀ ଉଠି ଆସିଛି ମଠର ପରିସରରେ ସ୍ଥାପିତ କୃଷ୍ଣପ୍ରତିମା ନିକଟକୁ। କିନ୍ତୁ ଇଏ କ'ଣ! ରାକା ରଜନୀରେ ସମୁଦ୍ର ଯେମିତି କଲ୍ଲୋଳିତ ହୋଇଯାଏ ପ୍ରତିମା ସେମିତି ଉଲ୍ଲସିତ ହେଲା। ଗୌରୀ ପ୍ରତିମା ସହିତ ଜଡ଼ିଗଲା। କୃଷ୍ଣ ତାକୁ ଆଲିଙ୍ଗନ କଲେ, ଅଧର ଚୁମ୍ବିଲେ। ତା'ପରେ ଗୌରୀ କୃଷ୍ଣଙ୍କ ବାହୁବନ୍ଧନ ଭିତରେ ନିଜକୁ ହଜେଇ ଦେଲା। ପ୍ରତିମା ଚିରଦିନ ପାଇଁ ଗୌରୀକୁ କୋଳ କରିନେଲା; ସମୁଦ୍ର ଯେମିତି ନଦୀକୁ କୋଳେଇ ନେଇଯାଏ, ଯିମିତି ପ୍ରାଚୀ କୋଳେଇ ନେଇଯାଏ ପାହାନ୍ତି ତାରାକୁ। ଗୌରୀ ସମୁଦ୍ରର ଘନକୃଷ୍ଣ ନୀଳିମା ଭିତରେ ହଜିଗଲା।

ସକାଳର ସୂର୍ଯ୍ୟୋଦୟ ଉଦ୍ଭାସିତ କଲା ଏକ ନୂତନ ଦୃଶ୍ୟରୂପ। ନବଘନ ଶ୍ରୀଅଙ୍ଗର ଭୁଜ ଉପରେ ନିର୍ବିକଳ୍ପ ସମାଧିରେ ଗୌରୀ ପିତୁଳି ପାଲଟିଯାଇଛି।

**ମୋର ମନେହୁଏ ଲେଖକ ଏହି ଚରିତ୍ରଟିକୁ ଅନ୍ୟ କୌଣସି ପରିଣତି ଦେଇପାରି ନଥାନ୍ତେ। ତାକୁ ଫେରେଇ ଦେଇ ପାରିନଥାନ୍ତେ ସିଂହାସନର ମାୟାରେ ବିମୁଗ୍ଧ ନିତ୍ୟାନନ୍ଦର ପାଶ୍ୱଚାରିଣୀ କରି, ଫେରେଇ ଦେଇ ପାରିନଥାନ୍ତେ ଲୋକାଚାରର ଭୟରେ ଦୂର ଅତୀତରେ ସେ ଛାଡ଼ି ଆସିଥିବା ସଙ୍ଗୀତର ରାଜ୍ୟକୁ ବା ତାକୁ ସେ ଛାଡ଼ିଦେଇ ପାରିନଥାନ୍ତେ ମଠର ଚାରିକାନ୍ଥ ଭିତରେ ଅଣନିଃଶ୍ୱାସୀ- ହୋଇ ଏକ ଗତାନୁଗତିକ ଜୀବନ ବଞ୍ଚିବାକୁ। ଅନ୍ୟ କିଛି ପରିଣତି ଦେବା କଥା ସ୍ରଷ୍ଟା ଯେ ଭାବିନଥିବେ ତା' ନୁହେଁ, କିନ୍ତୁ ଚରିତ୍ର ତାକୁ ସେ ସୁଯୋଗ ଦେଇନାହିଁ। ନଦୀ ଆପଣା ଗତି ନେବାପରି ସେ ସ୍ୱାଭାବିକ ଛନ୍ଦରେ ବିକଶିତ ହୋଇ ତା' ପାଇଁ ଅବଧାରିତ ପରିଣତି ଲାଭ କରିଛି। ଲେଖକ ଏଠି ଗୌରୀକୁ ପ୍ରେମର ବସ୍ତୁ ଭାବରେ ବର୍ଣ୍ଣିବାକୁ ସାହାସ କରିନାହାନ୍ତି; କାରଣ ସେ ସ୍ୱୟଂ ହୋଇଉଠିଛି ପ୍ରେମ।** ସେ ନିଜେ ପ୍ରେମିକା। ବାହାରେ ଶୁଭୁଛି ତାକୁ ସମୁଦ୍ରର ସଙ୍ଗୀତ, ପବନର ହିଲ୍ଲୋଳ, ନୀଳିମାର ଉଚ୍ଛ୍ୱାଳ। ସମୁଦ୍ର ତାକୁ ଡାକୁଛି, କୁହାଟୁଛି ବଂଶୀସ୍ୱନ ପରି। ତାକୁ ଲାଗିଲା ସମୁଦ୍ର କୃଷ୍ଣମୟ ହୋଇଯାଇଛି। ସମୁଦ୍ରର ଏତେ ବିଶାଳ ଦେହ ପ୍ରଶାନ୍ତିର ଏତେ ବ୍ୟାପ୍ତି, ଏତେ ସୁଦୀର୍ଘ ନୀଳିମା ସବୁ ରୂପାୟିତ ହୋଇଯାଇଛି ଶିଳା ପ୍ରତିମାରେ। ମାନବିକ ପ୍ରେମର ଏହି ପରମ ସାମୁଦ୍ରିକ ଅଭିଜ୍ଞତା ଗୌରୀକୁ ପ୍ରାପ୍ତ ହୋଇଛି। ଏକ ପ୍ରେମପ୍ରବଣା, ଅନୁଭବସର୍ବସ୍ୱା, ଅତୀନ୍ଦ୍ରିୟ ଉପଲବ୍‌ଧିସଂପନ୍ନ ନାରୀଟିଏ ଗଢ଼ିବାରେ ଲେଖକ ସଫଳତା ଲାଭ କରିଛନ୍ତି।

କଥାବସ୍ତୁର ବିକାଶରେ ଘଟଣାସମୂହର ବିକାଶଶୈଳୀ ଚମତ୍କାର ମନେ ହୁଏ। କଳାକୁଞ୍ଜର ମାୟାଲୋକ ସୃଷ୍ଟିରେ ଶିଳ୍ପୀ ସମର୍ଥ ହୋଇଛନ୍ତି। ବୈଷ୍ଣବମଠର ବିଧି ବ୍ୟବସ୍ଥା, ଗୁପ୍ତରାସର

Digitized by srujanika@gmail.com

ଲୀଳାରଚନା, ପିତୁଳାଗଠନର ଉପକରଣ ପ୍ରସ୍ତୁତିର ବର୍ଣ୍ଣନାରେ ସେସବୁର ବାସ୍ତବତା ପ୍ରତି ଶିଳ୍ପୀ ବେଶ୍ ସଚେତନ ଥିବା ପରି ମନେ ହୁଅନ୍ତି। ସେ ସବୁର ସତ୍ୟାସତ୍ୟ ବିବେଚନା ଅପେକ୍ଷା ସେ ଯେଉଁସବୁ ଉପାଦାନ ସଂଗ୍ରହ କରିଛନ୍ତି ଓ ସେସବୁକୁ ନିଜର ହୃଦୟସଂଜାତ ରସରେ ସିକ୍ତ କରି କିପରି ରସଲୋକଟିଏ ଗଢ଼ି ପାରିଛନ୍ତି ତାହାହିଁ ପାଠକ ପାଇଁ ଗୁରୁତ୍ୱପୂର୍ଣ୍ଣ।

**ଦକ୍ଷିଣ ଓଡ଼ିଶାର ଭାଷାଶୈଳୀକୁ ନେଇ ଏପରି ଏକ ଉଚ୍ଚାଙ୍ଗ ଉପନ୍ୟାଟିଏ ପୂର୍ବରୁ ଲେଖାଯାଇ ନଥିଲା ।** ଦକ୍ଷିଣ ଓଡ଼ିଶାର ଜୀବନଧାରାର ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟ, ନାରୀର ଅଳଙ୍କାର, ଆଭୂଷଣ ଓ ପ୍ରସାଧନର ସାତନ୍ତ୍ର୍ୟ ଓ ବିବିଧ ପରିବେଶ ବର୍ଣ୍ଣନାରେ ଏକ କୁଶଳୀ ଲେଖନୀର ପରିଚୟ ମିଳିଥାଏ। ଗୌରୀର ବେଶସଂହାର ଦୃଷ୍ଟାନ୍ତଟିଏ ନିଆଯାଉ- 'ଆମ୍ମା ତାର ଦେହରେ ପାଟଟିକୁ ବେଢ଼ଣ କରି ପିନ୍ଧେଇ ଦେଲା। ସିନ୍ଥିରେ ପାପିଡ଼ିବିନ୍ଧ, ବାଳକୁ ବେଣୀ କରି ଜୋଡ଼ାଗାଣ୍ଡୁଲୁ ଝୁଲେଇ ଦେଲା। ବେଣୀମୂଳରେ ନାଗରମ୍ ଓ ବେଣୀ ଧାରରେ ଧାଡ଼ି ଧାଡ଼ି ସେଓ୍ୱନ୍ତୀ। ନାକରେ ନାକ ପୁଲୁକ, କାନରେ ଚନ୍ଦ୍ରକାନଫୁଲ ପିନ୍ଧେଇ ଦେଲା, ବେକରେ ଦନ୍ତି ଖାଣ୍ଟୁ, ଜିଗିନ୍‌ନାନୁ ଆଉ କାଣ୍ଟି। ପିତୁଳା ଚିତ୍ରିବାର ଦୃଶ୍ୟଟିଏ ଦେଖାଯାଉ। 'ପ୍ରକାଶ ବ୍ରହ୍ମାନନ୍ଦ ଗୁଣାଗାର କାମ ସାରିଦେଇ କଇଠ ଅଠାଗିନା ଖୋଜିଲେ। ପ୍ରକାଶର ଭାରିଯା ମିଶାରୁ ଚିତ୍ରିବା ପାଇଟିରେ ପାରଙ୍ଗମ। କଇଠ ଅଠା ବଡ଼ୁରେଇ ଛାଣି ଗିନାରେ ଯତନରେ ପଠେଇ ଥିଲା। ପୂଜା ପ୍ରତିମାରେ ସଦଳଉଷ ବା ଲାଖ ଝଳି ଦେବା ବିଧି ନାହିଁ। ସେମାନେ ମାମୁଲୁ ପ୍ରକାରେ ସଫା ଧଳା ଧୋତିରେ ମୂର୍ତ୍ତିଯାକକୁ ପୋଛି ଆଣିଲେ। ବଢ଼ିଆ ଚଅକ ଉଠିଲା। ତାପରେ କଇଠ ଅଠା ପାଣି ପିଆଇ ଦେଲେ। ଝଳି ଉକୁଟି ଉଠିଲା।' ଏ ପ୍ରକାର ବର୍ଣ୍ଣନାର ଅନେକ ଦୃଷ୍ଟାନ୍ତ ଦିଆଯାଇପାରେ। ସେ ଯେଉଁ ଭାଷା ଶୈଳୀ ପ୍ରୟୋଗ କରିଛନ୍ତି ତାହା ପୌରୁଷବନ୍ତ, ବେପରୁଆ ଓ ମୁକ୍ତ। କିନ୍ତୁ ଗୌରୀର ଯେଉଁ ସପ୍ନ ଉପଲବ୍ଧିର କଥା କୁହାଯାଇଛି ହୁଏତ ଭାଷା ସେଠାରେ ଗୀତିମୟ ଲଳିତ ହୋଇଥିଲେ ଅଧିକ ହୃଦ୍ୟ ହୋଇପାରିଥାନ୍ତା।

ପିତୁଳି ନିର୍ମାଣ କ୍ରିୟାରେ ରାଧାଙ୍କର ଶରୀର ବର୍ଣ୍ଣନାରେ ଯେଉଁ ଇଂଚାଶବ୍ଦର ବ୍ୟବହାର କ୍ଷେତ୍ର ବିଶେଷରେ କରାଯାଇଛି ତାହା ଟିକେ ମନରେ ଖଟ୍‌କା ଲଗାଇଦିଏ। ଉପନ୍ୟାସର ଏକ ଉତ୍ତରିତ ପରିଣତି ବିଷୟରେ ଲେଖକଙ୍କ ଲକ୍ଷ୍ୟ ସ୍ଥିର ଥିବାରୁ ଉପନ୍ୟାସର ପ୍ରଥମ ଭାଗରେ ଥିବା ଯୌନସଂସର୍ଗ ଜନିତ କେତେକ ବର୍ଣ୍ଣନାର ଓ ଚିତ୍ରର ଆବଶ୍ୟକତା ହୁଏତ ନଥିଲା। ଉପନ୍ୟାସର ଶେଷଭାଗରେ ମଠ ପରିସର ମଧ୍ୟରେ ଯେଉଁ ଗୁପ୍ତରାସର କଥା ବର୍ଣ୍ଣନା କରାଯାଇଛି ସେଥିରେ ଦାସୀମାନଙ୍କର ଓ ମହନ୍ତ ପ୍ରଭୃତି ସେଠାରେ ଉପସ୍ଥିତ ସମସ୍ତଙ୍କର ଏକ ସମୟରେ ଘଟିଥିବା ଦିବ୍ୟୋପଲବ୍ଧି କଥା କୁହାଯାଇଛି। କିନ୍ତୁ ସେମାନେ କେହି ଗୋପର କୃଷ୍ଣୈକପ୍ରାଣା ଗୋପାଙ୍ଗନା ନଥିଲେ ବା ସେମାନଙ୍କର ବିଦ୍ୟାନୁଭବ ପାଇଁ କୌଣସି ପ୍ରକାର ଚେତନାଗତ ପ୍ରସ୍ତୁତିର ପୂର୍ବାଭାସ ଦିଆଯାଇନାହିଁ। ତେଣୁ ଏତେ ଗୁରୁତ୍ୱପୂର୍ଣ୍ଣ କଥାଟି କେବଳ ଏକ ଲେଖନୀୟ ମନ୍ତବ୍ୟ ବୋଲି ମନେ ହେଉଛି।

ଉପନ୍ୟାସର କିଛି ଗଠନଗତ ଦୁର୍ବଳତା, ପୁନରାବୃତ୍ତ ଭାଷା, ଭାବ ସ୍ଥାନରେ ଭାବାଭାସର ସୂଚନା ଥିଲେ ବି ସ୍ରଷ୍ଟା ଗଢ଼ିଥିବା ପୁନର୍ନବାମାନଙ୍କର ବ୍ୟାପକ ରାଜ୍ୟରେ ସେସବୁ ଏତେ ନଗଣ୍ୟ ଯେ ତାହାର ଉଲ୍ଲେଖ ଅନାବଶ୍ୟକ।

**ପୁନର୍ନବା ଉପନ୍ୟାସଟି ଓଡ଼ିଆ ସାହିତ୍ୟରେ (ଭାରତୀୟ ସାହିତ୍ୟରେ କହିବି ନାହିଁ, କାରଣ ମୁଁ ଜାଣେନି ଭାରତବର୍ଷର ଅନ୍ୟ କେଉଁ ପ୍ରାନ୍ତରରେ ଦିନନାଥଙ୍କ ପରି ଚିତ୍ର ଶିଳ୍ପୀଟିଏ ଶବ୍ଦଶିଳ୍ପୀରେ ରୂପାନ୍ତରିତ ହୋଇଛି କି ନାହିଁ) ଏକ ନୂତନ ଭାବଧର୍ମର ସୃଷ୍ଟି। ଏହି ଭାବ ସହିତ ଥରେ ଯୋଗସୂତ୍ରଟିଏ ସ୍ଥାପନ ହୋଇଗଲେ... ତେଣିକି ପୁସ୍ତକଟି ପିତୁଳିଟିଏ ମାତ୍ର, ପାଠକ ତା'ର ସୀମାବଦ୍ଧତାର ବାହାରେ ଏକ ବିଶାଳ, ପ୍ରଶସ୍ତ, ବ୍ୟାପ୍ତ ଏକ ମଧୁର ଭାବମୟ ଜଗତରେ ପ୍ରବେଶ କରି ଯାଇପାରିବ ନିଜ ଅନୁଭବର ସାମର୍ଥ୍ୟରେ।**

Digitized by srujanika@gmail.com

**ଜଗଦୀଶ ମହାନ୍ତି**

## ଓଡ଼ିଆ ଉପନ୍ୟାସରେ ଭାରତୀୟତା : ଭାରତୀୟତାର ପରିପ୍ରେକ୍ଷୀରେ ଆଧ୍ୟାତ୍ମ୍ୟ

ଜଗନ୍ନାଥଙ୍କର ଦେଶ ଓଡ଼ିଶା, ଯେଉଁଠି ଆଧ୍ୟାତ୍ମ୍ୟର ଏତେ ସୁଦୃଢ଼ ପରମ୍ପରା ମଧ୍ୟଯୁଗର କାବ୍ୟ କବିତାରେ ପରିପକ୍ୱ ହେଉଛି, ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ତା'ର ଚିହ୍ନ ଖୋଜିବାକୁ ଗଲେ ନିରାଶ ହେବାକୁ ପଡ଼େ । **ମୋର ସୀମିତ ଗବେଷଣାରେ ମୁଁ ଏଯାଏଁ ଓଡ଼ିଆ ସାହିତ୍ୟରେ ଆଧ୍ୟାତ୍ମ୍ୟ ପରିପ୍ରେକ୍ଷୀରେ ଓଡ଼ିଆ ଉପନ୍ୟାସ ଖୋଜିବାକୁ ଯାଇ ଦିନନାଥଙ୍କ ସାୟୋନାରା, ପୁନର୍ନବା ଓ ଗଙ୍ଗାବତରଣ ଛଡ଼ା ମାତ୍ର ପାଞ୍ଚଟି ଉପନ୍ୟାସ ହିଁ ପାଇଲି । ଚନ୍ଦ୍ରଶେଖର ରଥଙ୍କ ଯନ୍ତ୍ରାରୂଢ଼, ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କର ଦକ୍ଷିଣାବର୍ତ୍ତ, ସରୋଜିନୀ ସାହୁଙ୍କର ମହାଯାତ୍ରା, ମମତା ଦାଶଙ୍କର କେହି ଜଣେ ବିଶାଖା ଏବଂ ଦେବବ୍ରତ ମଦନରାୟଙ୍କ ନିର୍ବାଣ** । ସେ ଭିତରୁ ନିର୍ବାଣକୁ ବଡ଼ ଗଳ୍ପ କିମ୍ବା ଉପନ୍ୟାସିକା କୁହାଯାଇପାରେ । କାରଣ ୬୪ ପୃଷ୍ଠାର ଏଇ ବହିଟିରେ ଉପନ୍ୟାସଟି ଆରମ୍ଭ ହେଇଚି ୯ ପୃଷ୍ଠାରୁ । ଅର୍ଥାତ୍ ୫୫ ପୃଷ୍ଠାର କଥ୍ୟ । ଡକ୍ଟର ହରେକୃଷ୍ଣ ମହତାବଙ୍କର ନୂତନ ଧର୍ମ ଉପନ୍ୟାସରେ ଧର୍ମ ଅଛି କିନ୍ତୁ ଆଧ୍ୟାତ୍ମ୍ୟ ନାହିଁ । ସୁରେନ୍ଦ୍ର ମହାନ୍ତିଙ୍କର ନୀଳଶୈଳ ଓ ପ୍ରତିଭା ରାୟଙ୍କ ଯାଜ୍ଞସେନୀ ପ୍ରଭୃତି ଉପନ୍ୟାସରେ ମିଥ୍ ଅଛି, ଇତିହାସ ଅଛି କିନ୍ତୁ ଆଧ୍ୟାତ୍ମ୍ୟ ନାହିଁ ।

ଓଡ଼ିଆ ସାହିତ୍ୟରେ ଯେ ଆଧ୍ୟାତ୍ମ୍ୟ ପରିପ୍ରେକ୍ଷୀରେ ଉପନ୍ୟାସର ଭାରି ଅଭାବ, ସେକଥା ଡକ୍ଟର କାହ୍ନୁଚରଣ ମିଶ୍ର ତାଙ୍କର ଓଡ଼ିଆ ସାହିତ୍ୟର ଧର୍ମଧାରା ପୁସ୍ତକରେ ପରୋକ୍ଷରେ ସ୍ୱୀକାର କରିଛନ୍ତି । ସେ ଲେଖିଛନ୍ତି, ଈଶ୍ୱରଙ୍କୁ ଅବିଶ୍ୱାସ କରିବା କାଳକ୍ରମେ ଏକ ଦୃଢ଼ ବିଶ୍ୱାସରେ ପରିଣତ ହୋଇ ଯାଇଛି । ମଣିଷ ଜୀବନର ଚିତ୍ର ସାହିତ୍ୟ ବହନ କରୁଥିବାରୁ ପୁନଶ୍ଚ ସାହିତ୍ୟ ଚିନ୍ତା ଓ ଚେତନାର ସୁପରିବାହୀ ମାଧ୍ୟମ ହୋଇଥିବାରୁ ଏଥିରେ ତା'ର ପ୍ରତିଫଳନ ରହିବା ସ୍ୱାଭାବିକ ।

ଅବତରଣମାନେ ହିଁ ଉତ୍ତରଣ । ଗଙ୍ଗାରେ ଅବତରଣ ଅର୍ଥାତ୍ ଉତ୍ତରଣ । ପାପ ଭିତରେ ହିଁ ପାପରୁ ମୁକ୍ତି, ମୋକ୍ଷ । ଲେଖକଙ୍କ ଭାଷାରେ, ଅବତରଣ ଓ ଉତ୍ତରଣର ପ୍ରକରଣ ଆପେକ୍ଷିକ, ପରିପ୍ରେକ୍ଷୀ ଗୁରୁତ୍ୱପୂର୍ଣ୍ଣ ଅବତରଣ ପରେ ଉତ୍ତରଣର ମେଘ, ମେଘରୁ ଜଳବିନ୍ଦୁ, ନଦୀର ଧାରା, ସାଗରରେ ନଦୀର ପରିଣତି, ତା'ପରେ ମହାସମୁଦ୍ର, ନୀଳ ଘନନୀଳ ଶୂନ୍ୟ, ମହାଶୂନ୍ୟ ।

ଦିନନାଥଙ୍କର ୪ଟି ଉପନ୍ୟାସ ଏଯାଏଁ ପ୍ରକାଶିତ । ସେ ଭିତରୁ **ଶ୍ଳୋକଛନ୍ଦକୁ** ଛାଡ଼ିଦେଲେ ବାକି ତିନୋଟି ଉପନ୍ୟାସ **ସାୟୋନାରା**, **ପୁନର୍ନବା** ଓ **ଗଙ୍ଗାବତରଣ**ର ମୁଖ୍ୟ କଥ୍ୟ ଅଧ୍ୟାତ୍ମ୍ୟ ଆଧାରିତ । ଶ୍ଳୋକଛନ୍ଦ ମେରୀ ହେଡ଼େନ୍‌ର ପ୍ରେମ ଉପଲବ୍ଧି ଓ ଏ ଉତ୍ତରଣର କାହାଣୀ । ମେରୀ ହେଡ଼େନ୍‌ର ପ୍ରେମ ଉତ୍ତରିତ ହୋଇ ଯାଇଛି କଳାରେ । ମେରୀର ଏଇ ଉତ୍ତରଣ ହିଁ ଲେଖକଙ୍କ ସୃଜନ ଚେତନା ଧାରାର ପ୍ରଥମ ଉନ୍ମେଷ । ତାଙ୍କର ଚେତନା ସ୍ତରର ଉତ୍ତରଣ ହିଁ ପରବର୍ତ୍ତୀ ତିନୋଟି ଉପନ୍ୟାସର ମୁଖ୍ୟ କଥ୍ୟ ।

**ସାୟୋନାରା**ର କେତକୀ, **ପୁନର୍ନବା**ର ଗୌରୀ ଏବଂ **ଗଙ୍ଗାବତରଣ**ର ତିଳଖୁଡ଼ୀ-ତିନିଜଣଙ୍କର ହିଁ ଉତ୍ତରଣ ଘଟିଛି । ଆଧ୍ୟାତ୍ମିକତାର ଏକ ବିଶେଷ ସ୍ତରକୁ ସେ ଉତ୍ତରଣ । କେତକୀ ଜାପାନ ଯାଇ ବୌଦ୍ଧ ଧର୍ମ ଆଦରି ନେଇଛି, ଗୌରୀ ମଠରୁ ଅନ୍ତର୍ଦ୍ଧାନ ହେଇ ଯାଇଛି ଓ ତିଳବୈଷ୍ଣବୀ ଠାକୁରାଣୀ ହୋଇ ଯାଇଛି । କିନ୍ତୁ, ଚେତନା ସ୍ତରରେ ଏଇ ତିନିଜଣଙ୍କର ଉତ୍ତରଣରେ ଏକ ଧାରାବାହିକତା ଲକ୍ଷ୍ୟ କରାଯାଇପାରେ, ଯାହା ଲେଖକଙ୍କ ଚେତନା ସ୍ତରର ଉତ୍ତରଣ ।

ଏଇଠି ଅବତରଣ ଓ ଉତ୍ତରଣକୁ ନେଇ ଅନ୍ୟାନ୍ୟ ଓଡ଼ିଆ ଉପନ୍ୟାସ କଥା ଚିନ୍ତା କରାଯାଉ । ଚନ୍ଦ୍ରଶେଖର ରଥଙ୍କର 'ଯନ୍ତ୍ରାରୂଢ଼'ରେ ଉତ୍ତରଣ ଅପେକ୍ଷା ଈଶ୍ୱର ବିଶ୍ୱାସ ପ୍ରତି ଦୃଢ଼ ଆସ୍ଥା ଆମେ ଦେଖୁ । କାହ୍ନୁଚରଣ ମିଶ୍ରଙ୍କର ମଣିଷ ଈଶ୍ୱରଙ୍କ ପାଖରୁ ଦୂରେଇ ଯିବାର କ୍ଷୋଭ(ଦେଖନ୍ତୁ, ଓଡ଼ିଆ ସାହିତ୍ୟର ଧର୍ମଧାରା)ର ଉତ୍ତରରେ ଯେମିତି ପ୍ରୋଟାଗନିଷ୍ଟର ନନ୍‌ଭର୍ବାଲ୍ ଚ୍ୟାଲେଞ୍ଜ । ଶାନ୍ତନୁ ଆଚାର୍ଯ୍ୟଙ୍କର ଦକ୍ଷିଣାବର୍ତ୍ତରେ ରୈକ୍ୱର ଉତ୍ତରଣ ବୈରାଗ୍ୟରୁ । ସେଠି ଅବତରଣ ଉତ୍ତରଣ ପ୍ରଶ୍ନ ନାହିଁ । ଖୁବ୍ ସାଧାସିଧା, ପାରମ୍ପରିକ । ସେଇଭଳି ମମତା ଦାଶ ଓ ଦେବବ୍ରତ ମଦନରାୟଙ୍କ

Digitized by srujanika@gmail.com

ଉପନ୍ୟାସରେ ନାୟିକାମାନେ ଏକ ନୈରାଶ୍ୟରୁ ଅଧ୍ୟାତ୍ମ ଆଡ଼କୁ ଉତ୍ତରିତ ହେଉଛନ୍ତି । କିନ୍ତୁ ଦିନନାଥଙ୍କ ଉପନ୍ୟାସରେ ନୈରାଶ୍ୟ ବଡ଼ କଥା ନୁହଁ । ଅବତରଣ ପରେ ହିଁ ଏଠି ଉତ୍ତରଣର ପ୍ରଶ୍ନ । ଏଇ ପ୍ରସଙ୍ଗରେ ସରୋଜିନୀ ସାହୁଙ୍କର ମହାଯାତ୍ରା ଉପନ୍ୟାସ କଥା ଆଲୋଚନାକୁ ନିଆଯାଇପାରେ ।

ସରୋଜିନୀଙ୍କର 'ମହାଯାତ୍ରା' ଉପନ୍ୟାସରେ ହିମାଳୟର କେଦାରନାଥକୁ ଉଠୁଛନ୍ତି ଦଳେ ତୀର୍ଥଯାତ୍ରୀ । ଦଳକ ଭିତରେ ସମସ୍ତେ ମୋକ୍ଷ ଚାହାନ୍ତି, ଏ ଜୀବନରୁ ମୁକ୍ତି ଚାହାନ୍ତି କେବଳ 'ବରୁଣ'କୁ ଛାଡ଼ି । ବରୁଣ ଏକମାତ୍ର ତୀର୍ଥଯାତ୍ରୀ, ଯିଏ ନିଜକୁ ତୀର୍ଥଯାତ୍ରୀ ଅପେକ୍ଷା ଟୁରିଷ୍ଟ ଭାବନ୍ତି । ମଦମାଂସ ନାରୀ କୌଣସିଥିରେ ତାଙ୍କର ଅନିଚ୍ଛା ନାଇଁ । ଅଥଚ ଅଛି ଗୋଟେ ଅସଂପୃକ୍ତି । ଏସବୁ ସହ ଉପନ୍ୟାସଟିର ଶେଷ ପର୍ଯ୍ୟନ୍ତ ବରୁଣଙ୍କୁ ଛାଡ଼ି କେହି ହେଲେ କେଦାରନାଥ ପହଞ୍ଚି ପାରିନାହାନ୍ତି । ସମସ୍ତେ ଅଧାବାଟରୁ ହିଁ ଫେରିଯିବାକୁ ବାଧ ହେଉଛନ୍ତି ବିଭିନ୍ନ କାରଣରୁ । ଉତ୍ତରଣର ଶେଷ ମୁହୂର୍ତ୍ତରେ ପହଞ୍ଚି ବରୁଣଙ୍କୁ ମନେ ହେଉଚି ଏ ଉତ୍ତରଣ କେତେ ମିଥ୍ୟା । କେତେ ତୁଚ୍ଛ, କେତେ ଅପ୍ରାପ୍ତିରେ ଭରା । ବରୁଣ ଚାହିଁଛନ୍ତି ପୁଣିଥରେ ଫେରିଥିବେ ସମୁଦ୍ର କୂଳକୁ । ସମୁଦ୍ର ପତ୍ତନରୁ ପୁଣିଥରେ ଆରମ୍ଭ କରିବେ ନୂଆ କରି ଉତ୍ତରଣ ।

**ଦିନନାଥ ଓ ସରୋଜିନୀଙ୍କର ଦୃଷ୍ଟିଭଙ୍ଗୀ ଅଲଗା । ଜଣେ ଦର୍ଶନ ଭିତରେ, ଅନ୍ୟଜଣେ ଅନୁଭୂତି ଭିତରେ । କିନ୍ତୁ, ଆଧ୍ୟାତ୍ମ ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟର ଏ ଦୁଇଟି ପ୍ରଭାବଶାଳୀ ଉପନ୍ୟାସ, ଆଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରିବାର ଥିଲା । କରିନାହିଁ, ଏହା ହିଁ ଓଡ଼ିଆ ସାହିତ୍ୟର ଦୁର୍ଭାଗ୍ୟ ।**

ଗଙ୍ଗାବତରଣର ପୃଷ୍ଠଭୂମି ବନାରସ । ବନାରସ ଭାରତର ଲୌକିକ, ଅଲୌକିକ, ଜାଗତିକ, ଆଧ୍ୟାତ୍ମିକ ଅବତରଣର କେନ୍ଦ୍ରବିନ୍ଦୁ । ଭାରତର ଆଧ୍ୟାତ୍ମିକ ପରମ୍ପରାର ଦୀର୍ଘ ସାକ୍ଷର ବହନ କରିଛି କାଶୀ । ଏଠି, ଗୋଟିଏ ମନ୍ଦିର ପନ୍ଦର ଦିନ ଭିତରେ ଗଢ଼ି ଉଠେ ଓ ପ୍ରାଚୀନତାର ଆଖ୍ୟା ପାଏ । ଏଠି ଯେ କୌଣସି ଘଟଣା କିମ୍ବଦନ୍ତୀର ସ୍ଥାନ ନେଇନିଏ, ଅନୁଷ୍ଠାନ ବନିଯାଏ ପରମ୍ପରା । ତିଳବୈଷ୍ଣବୀ ମନ୍ଦିର ଓ ଚାନ୍ଦିନୀମେଳା ତା'ର ପ୍ରକୃତ ଉଦାହରଣ । ଏଠି ଧୁନି ବାବା, ନେପାଳୀ ବାବା, ଫଳାହାରୀ ବାବାଠୁ ନେଇ ବିନ୍ଦୁମାଧବ ମଠ, କିମ୍ବା କାପାଳୀ କୁଣ୍ଡଳୀ ମଠ ପର୍ଯ୍ୟନ୍ତ ସବୁ ରହିଛି । ଏଠି ତନ୍ତ୍ର ସାଧନା, ହଠଯୋଗ, ନିର୍ଗୁଣ ସାଧନା, ଲୟଯୋଗ, ମନ୍ତ୍ରଯୋଗ ଇତ୍ୟାଦି ବିଭିନ୍ନ ମତ ଧାରାର ସମ୍ମିଶ୍ରଣ ।

କାଶୀ ଓ ବ୍ୟଭିଚାର । କାଶୀ ଓ ମୋକ୍ଷ । କାଶୀ ଓ ଯୌନତା । ଏସବୁ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଭାରତୀୟ ଆଧ୍ୟାତ୍ମ୍ୟର ଏକ ବିଶେଷ ଅବିଚ୍ଛେଦ୍ୟ ଅଙ୍ଗ ଯୌନତା । ଏଠି ତ୍ୟାଗର ଗୁରୁତ୍ୱ ଯେତିକି, ଭୋଗର ଗୁରୁତ୍ୱ କିଛି କମ ନୁହଁ । ଭୋଗ ମାଧ୍ୟମରେ ତ୍ୟାଗ କେବଳ ଭାରତୀୟତା ହିଁ ଶିଖାଏ, ଆଧ୍ୟାତ୍ମ୍ୟ ମାଧ୍ୟମରେ । ତେଣୁ ଦିନନାଥଙ୍କର ଏହି 'ଟ୍ରିଲଜି'ରେ ଯୌନତା ବାରମ୍ବାର ଆସିଚି ସ୍ୱାଭାବିକ ଭାବରେ । ଶ୍ଳୋକଛନ୍ଦର ଭୂମିକା(ପୂର୍ବରଙ୍ଗ)ରେ ସେ ଲେଖିଛନ୍ତି, ପ୍ରାଚ୍ୟ ଚିନ୍ତନରେ ଚେତନାରେ କାମ ଓ ପ୍ରେମ ଭିତରେ ଅନ୍ତର ନାହିଁ । ଯେମିତି ରୂପରୁ ବର୍ଣ୍ଣକୁ ଅଲଗା କରି ଘେନି ହେବନି, ବର୍ଣ୍ଣ ବିନା ରୂପ ଜଡ଼ ହେଇଯିବ.... ଦେହ ଓ ପ୍ରେମ, କାମ ଓ ପ୍ରେମ ।

ଗଙ୍ଗାବତରଣରେ ଚାନ୍ଦିନୀର 'ନଥ ଉତାରନା' ବେଳେ ସ୍ଫଟିକ ଲିଙ୍ଗକୁ ଯୋନିରେ ନେବା ଓ ନିଜର ଯୌନାଙ୍ଗ ଈଶ୍ୱରଙ୍କୁ ସମର୍ପଣ କରିବା କିମ୍ବା ତିଳଖୁଡ଼ୀର ଧୁନିବାବା ଦ୍ୱାରା ଧର୍ଷଣ ଭିତରେ ବି ତା'ର ମୃତ ସ୍ୱାମୀ କାପାଳିକ ଧନେଶ୍ୱରଙ୍କୁ ଧୁନିବାବା ଭିତରେ ଦେଖିବା କିମ୍ବା ବିନ୍ଦୁମାଧବ ମଠରେ, ରାମାନୁଜ ଭକ୍ତିମାର୍ଗରେ ଥାଇ, ମୋଗଲରଜା ସହ ଦୈହିକ ମିଳନର କଳ୍ପନାରେ ରୋମାଞ୍ଚିତ ହୋଇଥିବା ତିଳଖୁଡ଼ୀ- ଭାରତୀୟ ଆଧ୍ୟାତ୍ମ୍ୟର ଗୋଟିଏ ଗୋଟିଏ ସ୍ତର ଉନ୍ମୋଚନ ଛଡ଼ା ଆଉ କିଛି ନୁହଁ ।

ଭାରତୀୟ ଆଧ୍ୟାତ୍ମିକତାରେ ଅହଂବ୍ରହ୍ମାସ୍ମିର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଅଛି । ଲେଖକଙ୍କ ଭାଷାରେ, ବିସ୍ତାରର ଧାରଣ ଭିତରେ ଯୁଗ ମହାଯୁଗ, କଳ୍ପ, କ୍ଷଣ, ପାପ, ପୁଣ୍ୟ, କର୍ମ, କର୍ମଫଳ, ସୁଖଦୁଃଖ, ଜନ୍ମମୃତ୍ୟୁ, ପୁରୁଷାର୍ଥ, ତୀର୍ଥ, କାମ, ମୋକ୍ଷ ସମସ୍ତ ବିଭବ ଜଡ଼ିତ । ଏଇ ଭାବନାକୁ ସମ୍ବଳ କରି ଉତ୍ତରଣ ଅବରତଣର ପ୍ରକ୍ରିୟା ଏବଂ ଏହି ଭାବନାର ଉତ୍ତରଣ ନିର୍ବାଣ ।

Digitized by srujanika@gmail.com

ଲେଖକ ବନାରସରେ ଦେଖିଛନ୍ତି ଏକତ୍ର ଭୋକ୍ତାର ଓ ଦ୍ରଷ୍ଟାର ପରସ୍ପର ବିରୋଧୀ ଚରିତ୍ର । ଉପନିଷଦର ଦ୍ୱାସୁପର୍ଣ୍ଣାର ଦୁଇଟି ପକ୍ଷୀଭଳି ଆପାତତଃ ପରସ୍ପର ବିରୋଧି ଚରିତ୍ର ଗୁଡ଼ିକ ଯାହା ଜାଗ୍ରତ ବୋଲି ଆପାତତଃ ଅନୁଭୂତି ହୁଏ ତାହା ସପ୍ନାବସ୍ଥା ଓ ଯାହା ସପ୍ନ ଦଶା ତାହା ହିଁ ଜାଗ୍ରତ । ରୂପାନନ୍ଦଙ୍କ ଜୀବନ ଓ କଳାର ମର୍ମ ଅନ୍ୱେଷଣ ଏବଂ ତିଳଖୁଡ଼ୀର ବଂଚିରହିବାର ପ୍ରଚେଷ୍ଟା ଭିତରେ, ଏଲିସ୍ ବୋନର୍‌ଙ୍କ ତ୍ୟାଗ ଓ ଅନ୍ୱେଷଣ ଏବଂ କୁସୁମର ଯୋଗିନୀ ବନିବାର ମହତ୍ୱାକାଙ୍କ୍ଷା, ନେପାଳୀ ବାବାଙ୍କର ଜୀବନ ପ୍ରତି ଅନ୍ତରୀଣ ଦୃଷ୍ଟିଭଙ୍ଗୀ ଓ ଚାନ୍ଦିନୀର ଜୀବନ ପ୍ରତି କୌଣସି ନିଶ୍ଚିତ ଦୃଷ୍ଟିଭଙ୍ଗୀର ଅଭାବ- ସମସ୍ତ ହିଁ ଗୋଟିଏ ପରିଣତି ପହଞ୍ଚିଛନ୍ତି, ତାହା ଉତ୍ତରଣ । କୌଣସି ସମୟରେ ଅବତରଣ ପ୍ରତିବନ୍ଧକ ହୋଇନି ଉତ୍ତରଣର ।

ଉପନ୍ୟାସରେ କିନ୍ତୁ ରୂପାନନ୍ଦ ପ୍ରୋଟାଗନିଷ୍ଟ୍ ହୋଇ ପାରିଥାନ୍ତେ, କିନ୍ତୁ ହେଲେ ନାହିଁ । ଔପନ୍ୟାସିକଙ୍କର ସାମାନ୍ୟ ଏକ ଅସାବଧାନତାରୁ, ଉପନ୍ୟାସର ମୂଳ ଚରିତ୍ରଟି ହିଁ ମୁଖ୍ୟ ଚରିତ୍ର ହେବାର ସୌଭାଗ୍ୟରୁ ବଂଚିତ ହୋଇଗଲା । ଅବଶ୍ୟ କୌଣସି ଉପନ୍ୟାସରେ ପ୍ରୋଟାଗନିଷ୍ଟ୍ ରହିବା ଆବଶ୍ୟକ, ସେଭଳି କିଛି ବାଧବାଧକତା ନାହିଁ । ଫକୀରମୋହନଙ୍କ ଛମାଣ ଆଠଗୁଣ୍ଠରେ ପ୍ରୋଟାଗନିଷ୍ଟ୍ କେହି ଅଛି କି ?

ଉପନ୍ୟାସରେ ଲେଖକଙ୍କର ଅବସ୍ଥିତି, ରୂପାନନ୍ଦଙ୍କ ଭିତରେ ନାଇଁ । ରୂପାନନ୍ଦଙ୍କ ଭିତରେ ଯଦି ଲେଖକଙ୍କର ଅବସ୍ଥିତି ହୁଅନ୍ତା-ତିଳନାନୀ ତିଳଖୁଡ଼ୀ ହେବାର କାହାଣୀ ଭଳି ତିଳଖୁଡ଼ୀ ତିଳବୈଷ୍ଣବୀ ହେବାର କାହାଣୀ ରୂପାନନ୍ଦଙ୍କୁ ଜଣାଥାନ୍ତା । ଅଥଚ ତିଳଖୁଡ଼ୀର ଗଳିତ ଶବ ଉପରେ ନିଜର ଚାଦର ଘୋଡ଼େଇ ଦେବା ବେଳେ ବି ରୂପାନନ୍ଦ ନିଜର ଆତ୍ମୀୟଙ୍କୁ ଚିହ୍ନିପାରି ନାହାନ୍ତି । ସେତେବେଳେ ୨୫୨ ପୃଷ୍ଠାରେ, ତିଳଖୁଡ଼ୀଙ୍କର ତିଳବୈଷ୍ଣବୀ ହେବା ଘଟଣାରେ ରୂପାନନ୍ଦଙ୍କ ଗଭୀର ଦାର୍ଶନିକତା ଭିତରେ ବୁଡ଼ି ଯିବାର ସାମଞ୍ଜସ୍ୟ ରୁହେନା । ଏଇ ସାମାନ୍ୟ ଭୁଲଟେ ପାଇଁ ହିଁ ସମଗ୍ର ଉପନ୍ୟାସରେ ରୂପାନନ୍ଦ ପ୍ରୋଟାଗନିଷ୍ଟ୍ ହେଉ ହେଉ ରହିଗଲେ । ତିଳଖୁଡ଼ୀ, ଚାନ୍ଦିନୀ, କୁସୁମଙ୍କ ପର୍ଯ୍ୟାୟକୁ ନ ଆସି, ରୂପାନନ୍ଦ ଆଲିସ୍ ବୋନର୍, ନେପାଳୀ ବାବାମାନଙ୍କ ଭଳି ୨ୟ ଶ୍ରେଣୀର କୁଶୀଲବ ଭିତରକୁ ଚାଲିଗଲେ ।

ଅଥଚ ଉପନ୍ୟାସର ଦୀର୍ଘପୃଷ୍ଠା ଆବୋରିଛନ୍ତି ରୂପାନନ୍ଦ । କଳା, ଦର୍ଶନର ପରିପ୍ରେକ୍ଷୀରେ ସେ ଜୀବନର ସତ୍ୟ ଖୋଜିବା ପାଇଁ ଆସି ଦ୍ୱୈତରେ ପରିଣତ ହୋଇଛନ୍ତି । ଗୋଟିଏ ରୂପରେ ରୂପସତ୍ତାର ଅନ୍ୱେଷାରେ ତଲ୍ଲୀନ ବ୍ରହ୍ମସତ୍ତା, ଅନ୍ୟଟି ସୁଖ ଦୁଃଖର ସଂସାରରେ ଉବୁଟୁବୁ ହେଉଥିବା ସାଧାରଣ ମଣିଷ, ରୂପାନନ୍ଦ ନିଜର ଜୀବନର ଉଦ୍ଦେଶ୍ୟ ଖୋଜିବା ପାଇଁ ବୁଦ୍ଧଙ୍କ ଦର୍ଶନ ଖୋଜିଛନ୍ତି । ରୂପାନନ୍ଦଙ୍କ ଚେତନା ସ୍ତରରେ ସଂପର୍କକୁ ଦେଖାଇବା ପାଇଁ ଔପନ୍ୟାସିକ ରୂପାନନ୍ଦଙ୍କୁ ବୁଦ୍ଧଙ୍କ ସମୟର ଇତିହାସ ପ୍ରବାହ ଭିତରକୁ ଟାଣି ନେଇଛନ୍ତି ସପ୍ନ ଛଳରେ । ଅଥଚ ଏତେ ସତ୍ତ୍ୱେ ରୂପାନନ୍ଦଙ୍କର କୌଣସି ଉତ୍ତରଣ ଉପନ୍ୟାସରେ ସ୍ପଷ୍ଟ ହୋଇନାହିଁ, ଯେମିତି ହୋଇଚି ଆଲିସ୍ ବୋନର୍‌ଙ୍କର । ଅବଶ୍ୟ ବ୍ୟକ୍ତିଗତ ଭାବରେ, ଆଲିସ୍‌ଙ୍କର ଡାଇରୀ ମୋତେ ପ୍ରସଙ୍ଗହୀନ ଓ ଉପନ୍ୟାସ ପାଇଁ ଅଦରକାରୀ ମନେ ହେଉଛି ।

ତେବେ ଦିନନାଥଙ୍କର ବୈଶିଷ୍ଟ୍ୟ ହେଉଚି ତାଙ୍କର ଉପନ୍ୟାସର କଥାବସ୍ତୁ, ପରିବେଶ ଚୟନ ଓ ନିଜସ୍ୱ ଭାଷାଶୈଳୀ । ନିପୁଣ ଚିତ୍ରକର ହୋଇଥିବା ଦୃଷ୍ଟିରୁ ତାଙ୍କର ଭାଷା ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ପର୍ଯ୍ୟାୟର ଓ ଏକକ । ନିଜର ଭାଷା ସମ୍ପର୍କରେ **ପୁନର୍ନବା** ଉପନ୍ୟାସରେ ଲେଖକ କହିଛନ୍ତି, ଚିତ୍ରଭାଷାର କଥା କବିଭାଷାରେ, ଅନୁଭୂତିର ଭାଷାନ୍ତର । ଆମ ସାହିତ୍ୟ ପରମ୍ପରାରେ ଚିତ୍ରଭାଷା ବ୍ୟତିରେକେ କାବ୍ୟଭାଷାରେ ଉନ୍ମେଷ ନ ଥିଲା ବୋଲି ଜାଣିଲା ପରେ ଏଠି ଏ ଉଭୟଙ୍କୁ ଏକା ସାଙ୍ଗରେ ଅବବୋଧ କରିବାର ପ୍ରଚେଷ୍ଟା । ସହବାସ ଅର୍ଥରେ ଅଳଂକରଣ ଅର୍ଥରେ ନୁହେଁ । ଚିତ୍ରଭାଷାର ଲୋକଟିଏ କବିଭାଷାରେ କହିବା ପାଇଁ ଗଲାବେଳେ ପୂର୍ବ ସୁକୃତ ଭଳି, ସଂସ୍କାର ଭଳି ଆପେ ଆପେ ସବୁ ଉତୁରି ପଡେ । ସ୍ୱତନ୍ତ୍ର ପ୍ରଚେଷ୍ଟା ଲୋଡ଼ା ହୁଏନା । ଏପରି ମଧ୍ୟ କୁହାଯାଇ ପାରେ ଏହା ପ୍ରକୃତରେ ଏକ ବିସ୍ତାର ମାତ୍ର । ସେଭଳି ନ ଥିଲା, ବୋଲି ଏଭଳି ହେବା କଥା ନୁହେଁ, ସୃଷ୍ଟିରେ ଏମିତି ବି ବିଧାନ ନାହିଁ, ଯାହା ନ୍ୟାସ ହୋଇ ପାରିଲା, ଯାହା ସମ୍ଭବ ହୋଇପାରିଲା ଉପନ୍ୟାସରେ ।

Digitized by srujanika@gmail.com

ଗୌରାଙ୍ଗ ଚରଣ ଦାଶ

# ଉପନ୍ୟାସର ସାଂସ୍କୃତିକ ପୃଷ୍ଠଭୂମି ଓ ଦିନନାଥ ପାଠୀ

ଏକ:

ସେଇ ପୁରୁଣା କଥାକୁ ଦୋହରାଇ ମୁଁ ଏଠାରେ କହିରଖିବାକୁ ଉଚିତ ମଣୁଛି ଯେ, ସାହିତ୍ୟର ବିବିଧ ପ୍ରକରଣ ମଧ୍ୟରେ ଉପନ୍ୟାସ ଅଧିକ ବୈଚିତ୍ର୍ୟ ମଣ୍ଡିତ, ତେଣୁ ଲୋକପ୍ରିୟ । ଏହାର ପ୍ରଧାନ କାରଣ ସାହିତ୍ୟକୁ ଯଦି ଆମେ କୌଣସି ଜାତିର ସାଂସ୍କୃତିକ ଅଭିବ୍ୟକ୍ତି, ଅମଳ ସଂରଚନା ଭାବରେ ଗ୍ରହଣ କରିବା, ଉପନ୍ୟାସରେ ସଂସ୍କୃତି ଅନୁଭବ ଓ ଚର୍ଚ୍ଚାର ସୁଯୋଗ ଅଧିକ ନେବା । ଆଜି ଆମେ ଅନୁଭବ କରୁଛୁ, ଗତ କେଇ ଦଶନ୍ଧି ଧରି ଓଡ଼ିଆ ଗଦ୍ୟ ସାହିତ୍ୟରେ ଉପନ୍ୟାସ ମରୁଡ଼ି ଦେଖାଦେଇଛି । ଏହାର ଅନ୍ୟତମ କାରଣ ଆମ ଭିତରେ ସଂସ୍କୃତି ସୁଷୁପ୍ତି ଜନିତ ଶୂନ୍ୟତାବୋଧ ନୁହେଁତ ? ଶୂନ୍ୟତା ପ୍ରସଙ୍ଗ ପଡ଼ିଲା ବେଳେ ମୋତେ ଦିନନାଥ ପାଠୀଙ୍କ ମୁହଁ ଦୁଶିଯାଏ । ମୋତେ ଲାଗେ ସେ ଏହି ସତ୍ୟକୁ ଅତି ନିବିଡ଼ ଭାବରେ ଅନୁଭବ କରିଛନ୍ତି ତାହା ହୋଇ ନଥିଲେ, ହାଲି, ଏଇମାତ୍ର ଦଶ ବର୍ଷ ଅବଧି ମଧ୍ୟରେ ସେ ଆମକୁ ଚାରିଗୋଟି ଭିନ୍ନ ସ୍ୱାଦର ଉପନ୍ୟାସ ଭେଟି ଦେଇ ନଥାନ୍ତେ ତାହା ପୁଣି ପରିଣତ ବୟସରେ । ଏବଂ ମୁଁ ତାଙ୍କୁ ଆଲୋଚନାର ପ୍ରସଙ୍ଗ କରିବାର କାରଣ, ତାଙ୍କ ପ୍ରତ୍ୟେକ କଥାକାବ୍ୟର ଭାବଭୂମି 'ସଂସ୍କୃତି........'

ଏଠାରେ ମୁଁ 'ସଂସ୍କୃତି' ଶବ୍ଦର ଏକ କିମ୍ଭୁତ ସଂଜ୍ଞା ଦେବାକୁ ଆବଶ୍ୟକ ମନେ କରୁନି ଏବଂ ଏଥିସହିତ ଉପନ୍ୟାସ କଥାକାବ୍ୟର ସଂଜ୍ଞା ଦେବା ସମଭାବରେ ଅତିକଥନତା ଦୋଷ ଦୁର୍ବଳ ହେବ ବୋଲି ଅନୁଭବ କରୁଛି । ମାତ୍ର କଥାକାବ୍ୟ ଓ ସଂସ୍କୃତି ଉତ୍ତର-ଆଧୁନିକ କାଳର ବିଶ୍ୱଗ୍ରାମରେ କେତେଭାବରେ ପରସ୍ପର ସହିତ ସୁସମ୍ବନ୍ଧିତ ଦିନନାଥ ପାଠୀଙ୍କ ମାଧ୍ୟମରେ ତତ୍‌ସଂକ୍ରାନ୍ତରେ ଅବଶ୍ୟ କିଞ୍ଚିତ୍ ଆଲୋଚନା କରିବି । ଆମେ ବହୁ କାଳଧରି ସଂସ୍କୃତିକୁ ଅତୀତର ଏକ ସମୃଦ୍ଧ-ବୌଦ୍ଧିକ ପରମ୍ପରା ପ୍ରସୂତ ପରିମଳିକୃତ ଜୀବନଧାରା ବୋଲି ବିଶ୍ୱାସ କରୁଥିଲୁ । ଆଜି ଆମେ ସଂସ୍କୃତିକୁ ଏକ ବିଶ୍ୱ ପର୍ଯ୍ୟନ୍ତ ପ୍ରସାରିତ କରିଦେଇ ପାରିଛୁ । ସମଭାବରେ କଥାକାବ୍ୟ ଗଢ଼ଣର ରୀତି ଓ ପ୍ରସଙ୍ଗ ମଧ୍ୟ କମ୍ ବୈଚିତ୍ର୍ୟ ମଣ୍ଡିତ ନୁହେଁ । ତେଣୁ ଏଠାରେ ମୁଁ ଜଣେ ବ୍ୟକ୍ତିର ଜୀବନଚର୍ଯ୍ୟାକୁ ଏକ ଜୀବନ୍ତ ଗତିଶୀଳ ସାଂସ୍କୃତିକ ଏକକ ଭାବରେ ଗ୍ରହଣ କରି ଅନେକଙ୍କ ଜୀବନଚର୍ଯ୍ୟାର ତାହା ନାନା ରାଜନୀତିକ ଓ ସାମାଜିକ ଅୟନ ମାଧ୍ୟମରେ କିପରି ସମୀକୃତ ହୁଏ ଏବଂ ଜାତୀୟ ସଂସ୍କୃତିର ମାନ୍ୟତା ପାଏ ତାହାର ଚର୍ଚ୍ଚା କରିବି । ତେଣୁ, ପ୍ରଥମରୁ ଆମକୁ ମନେରଖିବାକୁ ପଡ଼ିବ ଯେ, ସଂସ୍କୃତି ଈଶ୍ୱର ସୃଷ୍ଟ ସର୍ବଜନଗ୍ରାହ୍ୟ ଓ ସର୍ବକାଳୀକ ନୁହେଁ । ଏହା ଅଛି କେତେକ ସୃଜନଶୀଳ ଦୂରଦୃଷ୍ଟି ସଂପନ୍ନ ମଣିଷଙ୍କ ବିଚାର ଓ ଅନୁଭବର ସଂରଚନା, ଗୋଷ୍ଠୀଦ୍ୱାର ସୀକୃତ ଜୀବନଧାରା, ତେଣୁ ପରିବର୍ତ୍ତନଶୀଳ । ଫ୍ରାନ୍‌ସିସ୍ ମୁଲ୍‌ହର୍ଣ୍ଣ ସଂସ୍କୃତି ସଂକ୍ରାନ୍ତରେ ଏହି ନୂତନ ଚର୍ଚ୍ଚା ଆରମ୍ଭ କରିଛନ୍ତି ଏବଂ ଆପଣାର ବିଚାରକୁ 'ମେଟା କଲ୍‌ଚର୍' ବା ଅଧିସାଂସ୍କୃତିକ ବାଖ୍ୟାନ ଭାବରେ ଉଲ୍ଲେଖ କରିଛନ୍ତି । (Mulhern Frances 2000 Introduction XIV) ଗ୍ରୀକ୍ ଶବ୍ଦ 'ମେଟା'ର ପରିଭାଷା ରୂପରେ 'ସହିତ' କିମ୍ବା 'ପରେ' କୁ ଗ୍ରହଣ କରି 'ମେଟା-କଲ୍‌ଚର୍' ବା ଅଧିସଂସ୍କୃତି / ସହ-ସଂସ୍କୃତିକୁ, ଏହା 'ସଂସ୍କୃତି'ର ଏକ ପ୍ରକାର ଚର୍ଚ୍ଚା ଯେଉଁଠି ସଂସ୍କୃତିକୁ ହିଁ ତାହାର ମାଧ୍ୟମ ଭାବରେ ଗ୍ରହଣ କରାଯାଇଥାଏ । ଚର୍ଚ୍ଚା ମାଧ୍ୟମରେ ସଂସ୍କୃତିର ସାର୍ବଜନୀନତା ଓ ଗ୍ରହଣଶୀଳତାର ମାର୍ଗମାର୍ଜନ ହିଁ ଏହାର ପ୍ରଧାନ ଉଦ୍ଦେଶ୍ୟ । ଦିନନାଥ ପାଠୀଙ୍କ ଉପନ୍ୟାସରେ 'ସଂସ୍କୃତି' ସଂକ୍ରାନ୍ତରେ ଅନୁରୂପଚର୍ଚ୍ଚା କରାଯାଇଛି କି ? ମୁଁ ଏହି ଗୂଢ଼ ପ୍ରଶ୍ନଟି ଏଠି ଉଲ୍ଲେଖ କରିବାର କାରଣ ଦିନନାଥ ଜଣେ ବ୍ୟକ୍ତି, ସେ ପୁଣି ଓଡ଼ିଆ ନାମ ଏକ ଜାତିର ପ୍ରତିନିଧି ଏବଂ ଆଧୁନିକ 'ବିଶ୍ୱଗ୍ରାମ' ସଂସ୍କୃତି ସହିତ ସୂତ୍ରାୟିତ ଜଣେ ବ୍ୟକ୍ତି । ତେଣୁ ତାଙ୍କ ଉପନ୍ୟାସର ସଂସ୍କୃତି କାହାର ? ତାଙ୍କ ବ୍ୟକ୍ତିସତ୍ତା, ଜାତି-ସତ୍ତା ନା ବିଶ୍ୱ-ସତ୍ତାର ?

ଏଠାରେ ପ୍ରସଙ୍ଗ କ୍ରମେ ଉଲ୍ଲେଖ କରାଯାଇ ପାରେ ଯେ ନିଜେ ଲେଖକ ଏବଂ କେତେକ ସମୀକ୍ଷକ ତାଙ୍କ କଥାକାବ୍ୟକୁ ଆଧୁନିକ ସାହିତ୍ୟ ସମାଲୋଚନା ଧାରାରେ ଦୁଇଗୋଟି ଅର୍ବାଚୀନ

Digitized by srujanika@gmail.com

idom ଚିତ୍ରୋପନ୍ୟାସ ଓ ଅଧିକଥା / ମେଟାଫିକ୍ସନ୍ ବୋଲି କହିଛନ୍ତି । ଚିତ୍ରୋପନ୍ୟାସ କହିଲେ ଆମେ ଏତିକି ବୁଝୁ ଚିତ୍ରକୁ ଏକ text ଭାବରେ ଗ୍ରହଣ କରି ତାହା ସୃଷ୍ଟିର ରହସ୍ୟ ଉନ୍ମୋଚନ ଓ ରହସ୍ୟର କଳାତ୍ମକ ପରିପ୍ରକାଶ । ବିଶ୍ୱ ସାହିତ୍ୟରେ ସମରସେଟ୍ ମମ୍‌ଙ୍କ 'ଦ ମୁନ୍ ଆଣ୍ଡ୍ ଦ ସିକ୍ସ୍‌ପେନ୍ସ୍' ସମପର୍ଯ୍ୟାୟୀ ଏକ କାଳଜୟୀ କୃତି ଏବଂ ସଂକ୍ଷେପରେ 'ମେଟାଫିକ୍ସନ୍'କୁ ଉପନ୍ୟାସରେ ଉପନ୍ୟାସ ସଂପର୍କୀୟ ଚର୍ଚ୍ଚା ଭାବରେ ଯଦି ଗ୍ରହଣ କରାଯାଏ ଓଡ଼ିଆ ଭାଷାରେ ବ୍ରଜବିହାରୀ ବହିଦାରଙ୍କ **ଏକ ଶାଖାରେ ଦୁଇପକ୍ଷୀ** ଉପନ୍ୟାସକୁ ଉପର୍ଯ୍ୟୁକ୍ତ ଧାରାର ପ୍ରାଥମିକ ଉଦ୍ୟମ ବୋଲି ମୁଁ ଅବଶ୍ୟ କହିବି । ଦିନନାଥ ବହୁବର୍ଷପରେ ବ୍ରଜବିହାରୀଙ୍କ ବିଚାରକୁ ପଲ୍ଲବନ କରିଛନ୍ତି । ତାଙ୍କ ଉପନ୍ୟାସରେ କାହାଣୀ, ପରିବେଶ, ଚରିତ୍ରମାନେ ଅଛନ୍ତି ମାତ୍ର ସେମାନଙ୍କ ଜୀବନଚର୍ଯ୍ୟା ସହିତ ଘନୀୟିତ ହୋଇଛି ଚିତ୍ର, ସଙ୍ଗୀତ, ଅଭିନୟ କଳା, ନୃତ୍ୟ, କବିତା ଓ ଜୀବନ ଦୃଷ୍ଟିର କାଳକ୍ରମିକ ଅଭିବ୍ୟକ୍ତି । ସଂକ୍ଷେପରେ କହିଲେ ଏକ ଜାତିର ସାଂସ୍କୃତିକ ବିକାଶକ୍ରମର ପରିଚର୍ଚ୍ଚା ।

ଦୁଇ-

ଦିନନାଥଙ୍କ କଥାକାବ୍ୟ ଗୁଡ଼ିକୁ ପଢ଼ିସାରିଲା ପରେ ଯଦି ପାଠକକୁ ପଚରା ଯାଏ, ମୁଁ ଅନେକଙ୍କୁ ପଚାରିବୁଝିଛି, ଏହା ସାହିତ୍ୟ ରାଜ୍ୟର କେଉଁ ବର୍ଗର ଅନ୍ତର୍ଗତ, ଅନେକ 'ଥ' ମାରିଯାଇଛନ୍ତି । ପଢ଼ିଲାବେଳେ ସେମାନେ ଏହି ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଦୌ ଚିନ୍ତା କରିନାହାନ୍ତି । ମାତ୍ର ପଢ଼ିଛନ୍ତି, ଭଲ ଲାଗିଲା ବୋଲି କହିଛନ୍ତି ଏବଂ ଝୁଣ୍ଟିପଡ଼ି ଲେଖକଙ୍କ ସହିତ ଝଗଡ଼ିଥିବା କଥା ହିଁ ଖୋଲି ଦେଇଛନ୍ତି । କୌଣସି ଏକ ରଚନା ସହିତ ସୂତ୍ରାୟିତ ହେବା କାଳରେ, ତା ସହିତ ନ ଝଗଡ଼ିଲେ ତାହା କାଳେ ଚେତନାକୁ ଭେଦିବାରେ ସମର୍ଥ ହୋଇପାରେ ନାହିଁ ବୋଲି ବହୁ କଳା-ସମୀକ୍ଷକ ମନ୍ତବ୍ୟ ଦେଇଥାନ୍ତି । ହଁ, କେଉଁ ରଚନା କାଳ କାଳର, ତତ୍‌ସଂପର୍କରେ ସିଦ୍ଧାନ୍ତ ଅବଶ୍ୟ ଏକ ବିବାଦୀୟ 'ସମ୍ବାଦ' ଅଧିକ ସ୍ପଷ୍ଟଭାବରେ କହିଲେ, ଏହା କୌଣସି ଲେଖକର ଅଧିକାର-ପ୍ରତିଷ୍ଠା-ରାଜନୀତି କୈନ୍ଦ୍ରୀକ ହୋଇଥିବାର, ମୁଁ ତା'ର ଗଭୀରତାକୁ ଭେଦିବାକୁ ଯିବିନାହିଁ । ଦିନନାଥ ପାଠୀଙ୍କ ମତରେ ଆପଣାକୁ ଶାସ୍ତ୍ରାୟିତ କରିବାର 'ଆତ୍ମ-ରତି ବୋଧ' ଯେ ବିଳାପ କରୁନଥିବ, ଅନୁରୂପ ସମ୍ଭାବନାକୁ ସଂପୂର୍ଣ୍ଣ ଅସୀକାର କରାଯାଇ ନପାରେ । ମାତ୍ର ଜଣେ ପାଠକ ଭାବରେ ମୁଁ ଯେତେବେଳେ ତାଙ୍କର ଚାରିଗୋଟି ଉପନ୍ୟାସର ଚରିତ୍ରମାନଙ୍କୁ ଭେଟେ ଏବଂ ସେମାନଙ୍କର ଜୀବନର କଥାଶୁଣେ, ସେ ସ୍ୱୟଂ ମୋ ପାଖରେ ଠିଆ ହେଇ ଯା'ନ୍ତି ଏବଂ ମତେ ଲାଗେ ମୁଁ ତାଙ୍କ ଚରିତ୍ରମାନଙ୍କୁ ପଚାରୁଥିବା ପ୍ରଶ୍ନ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ, ଅଭିପ୍ରେତ ଦିନନାଥଙ୍କ ପ୍ରତି । ଲେଖକ ପାଠକ ମଧ୍ୟରେ କ୍ରିୟାଶୀଳ ସାଂସ୍କୃତିକ ଜୀବନାନୁଭବ ସଂକ୍ରାନ୍ତ ମନନ, ବ୍ୟାଖ୍ୟାନ ଓ ବିତର୍କ ବୋଲି କହି ପାରିବା ।

ମୁଁ ଏକଥା ଲେଖିଲା ବେଳେ ତାଙ୍କ ପାଠକମାନେ ହୁଏତ ମତେ ପଚାରି ପାରନ୍ତି - ହଁ, ଆମେ ତାଙ୍କୁ ପଢ଼ିଲାବେଳେ କେହିଜଣେ ଆମ ସହିତ ଅନ୍ତରଙ୍ଗ ଭାବରେ କଥା ହେଉଥିବାର ଅନୁଭବ କରିଛୁଁ । କିଏ ତାହେଲେ ସେହି ମଣିଷ ଜଣକ ? ଏହି ପ୍ରଶ୍ନର ସଂକ୍ଷିପ୍ତ ଉତ୍ତରରେ ଏତିକି କୁହାଯାଇପାରେ ଯେ, ଜଣେ ପାଠକ ବହି ଭିତରେ ଯେଉଁମାନଙ୍କ ସହିତ ଆଳାପ ବିଭୋର ହେଉଥାଏ, ସେହିମାନେ ଜଣେ ଜଣେ ଦିନନାଥ ପାଠୀ ବ୍ୟତୀତ ଅନ୍ୟ କେହି ନୁହଁନ୍ତି, ଦିନନାଥ କହିଲେ, ଏକ ଜୀବନ୍ତ ବିବର୍ତ୍ତନ-ଶୀଳ ସାଂସ୍କୃତିକ ଚେତନା । ପୁନଶ୍ଚ ମୁଁ ପଢୁଥିବା ବିଚାର ଓ ଅନୁଭବଗୁଡ଼ିକ ଆଉ କିଛି ନୁହେଁ, ଏକ ଏକ text ବା ଗ୍ରନ୍ଥ ଯାହାର ସଂରଚନା ପଛରେ ଅନେକ କାରଣ ରହିଛି ଏବଂ ଯାହାର ରମ୍ୟ ଅକ୍ଷରାୟନ ଗ୍ରନ୍ଥ ଉପରେ 'ଦିନନାଥ ପାଠୀ' ଅବଶ୍ୟ ଲେଖାଯାଇଛି, ଅର୍ଥାତ୍ ସେହି ନାମଧାରୀ କେହି ଜଣେ ତାହାର ସ୍ରଷ୍ଟା । ମାତ୍ର ମୁଁ / ଆମ୍ଭେମାନେ ତାଙ୍କ ଗ୍ରନ୍ଥର ସହ-ରଚନାକାର ନୋହୁଁ ବୋଲି ସେ କହିପାରିବେ କି ? ଅର୍ଥାତ୍ ସେହି ଲୋକ ମୁଁ, ଆମେ ଦୁହେଁ, ଅନେକ ହୋଇ ଯାଇଥାଉଁ / ତାହାର ପ୍ରମାଣ - ଏକ ନିର୍ଦ୍ଦିଷ୍ଟ ଗ୍ରନ୍ଥ ଭିତରେ ଜୀବନ୍ତ ଥାଉ ସେ, ମୁଁ ଓ ଅନ୍ୟମାନେ । ଦିନନାଥ ପାଠୀଙ୍କ ନାଁ ମଲାଟ ଉପରେ ଏଇଥିପାଇଁ ରଖାଯାଇଛି ଯେ, ସେହି ମଣିଷ ଜଣକ ଆମ ବିଚାର ଓ ଅନୁଭବକୁ ଗ୍ରନ୍ଥାୟିତ କରିଛନ୍ତି ଏବଂ ସେଗୁଡ଼ିକ ହିଁ ଗତିଶୀଳ କରୁଛନ୍ତି ଆମ ଚେତନାକୁ । ସେ ଏକା ଚାଲୁନାହାନ୍ତି

Digitized by srujanika@gmail.com

ଆମେ ସମସ୍ତେ ହାତ ଧରାଧରି ହେଇ ଚାଲିଛୁ, କଥା ହେଉଛୁ, କଥାର ଖିଅଗୁଡ଼ିକ ପରସ୍ପର ଆଡ଼କୁ ବଢ଼େଇ ଦେଉଛୁ । ଗ୍ରନ୍ଥଭିତରେ ନିଜ ନିଜର ମୁହଁମାନଙ୍କୁ ଦେଖୁଛୁ । ଦର୍ଶନ ଶାସ୍ତ୍ରର ପରିଭାଷାରେ କହିଲେ ଗୋଟିଏ ଗ୍ରନ୍ଥ ରୂପାନ୍ତରିତ ହେଇଯାଉଛି ଅନେକରେ ଅର୍ଥାତ୍ ଅନେକକୁ ଏକତ୍ର କରିବାରେ ଗ୍ରନ୍ଥ ହେଇଯାଉଛି ଏକ ସୂତ୍ର, ଏକମନ୍ତ୍ର, ଏକ ଜୈବିକ ଯୋଡ଼ଣ, ଅନ୍ୟ ଶବ୍ଦରେ ଆମେ ଯାହାକୁ କହିପାରିବା 'ସଂସ୍କୃତି' ।

**ଜୀବନର ବୈଚିତ୍ର୍ୟକୁ ଏକ ଗ୍ରନ୍ଥଗର୍ଭୀ କରିବା ଆଦୌ ସହଜ କଥା ନୁହେଁ । ଅଧିକନ୍ତୁ ସଂସ୍କୃତି ଗଢ଼ଣ ପରି ଏହା ଅତ୍ୟନ୍ତ ଜଟିଳ, ସୂକ୍ଷ୍ମ ଓ ସ୍ପର୍ଶକାତର ପ୍ରସଙ୍ଗ । ସେଠି ମୁଁ ଥିବି, ମାତ୍ର କାଳ କାଳଧରି ମୋତେ ମୋହଗ୍ରସ୍ତ କରି ରଖିଥିବ ବହୁପ୍ରସ୍ଥି ଆବରଣ ଓ ଆଭରଣମାନ କ୍ରମଶଃ ଅନାବୃତ ଓ ବିଯୁକ୍ତ ହେଇଯାଉଥିବେ । ମୁଁ ଲଙ୍ଗଳା ଦିଶୁନଥିବି ଅଥବା ଲଙ୍ଗଳା ହୋଇଥିଲେ ବି ମତେଦେଖି ଅବଶିଷ୍ଟମାନେ ଦୁଷ୍ଟାମି କରୁନଥିବେ । ମୁଁ କାହାକୁ ମୋହାସକ୍ତ କରୁନଥିବି, ଅଥଚ ସମସ୍ତେ ମତେ ନିଜର ମଣୁଥିବେ । ମତେ ଅବା ମୋ ଚେତନା ସଞ୍ଚରଣଶୀଳ ସେମାନଙ୍କ ଅନ୍ତରାତ୍ମାରେ । ଇମିତି ଉଭା ହେଇଥିବା ମୁଁ କୁ ଆମେ କେବଳ ସଂସ୍କୃତିବନ୍ତ କହି ପାରିବା ।** ସୃଜନଶୀଳ ପ୍ରତିଭାମାନେ ହିଁ କେବଳ ଅନୁରୂପ ବିପଜ୍ଜନକ ଅଥଚ ପ୍ରୀତିପଦ ବୋଝରେ ଅନେକଙ୍କ ଅନୁଭବରେ ଚମକ ସୃଷ୍ଟି କରିପାରନ୍ତି । ସୃଜନଶୀଳ କହିଲେ ସେମାନେ ଅତୀତର ଆତ୍ମାରେ ଥାନ୍ତି, ଅର୍ଥାତ୍ ଅତୀତକୁ ମିତ୍ର କରିଥାଆନ୍ତି; ବର୍ତ୍ତମାନ ଭିତରେ ବଞ୍ଚୁଥାନ୍ତି - ଅର୍ଥାତ୍ ବର୍ତ୍ତମାନ ସାମ୍ନା କରୁଥିବା ସକଳ ଆହ୍ୱାନର ମୁକାବିଲା କରୁଥାନ୍ତି, ଏବଂ ସ୍ୱାସ୍ଥ୍ୟପ୍ରଦ ଭବିଷ୍ୟତର ସ୍ୱପ୍ନ ଦେଖୁଥାନ୍ତି - ଅର୍ଥାତ୍ ପ୍ରତିମୁହୂର୍ତ୍ତରେ ବଦଳି ଯାଉଥିବା ବର୍ତ୍ତମାନର ହୃଦୟ ସମ୍ବେଦୀ ରୂପାନ୍ତରରେ ମଗ୍ନ ଥାଆନ୍ତି । ଅତୀତ ଓ ବର୍ତ୍ତମାନ ସହିତ ଝଗଡୁଥିବା ମଣିଷମାନଙ୍କ ପକ୍ଷରେ ହିଁ ଏହା କେବଳ ସମ୍ଭବ ହେଇଥାଏ । ସେମାନେ ସୁପଠ, ପ୍ରଜ୍ଞାଦୀପ୍ତ, ଅନୁଭବୀ ଓ ଦ୍ରଷ୍ଟା ଏବଂ ସେମାନେ ରଚନା ବା ସୃଷ୍ଟି ରୂପାନ୍ତରଣ ପ୍ରକ୍ରିୟାର ପ୍ରୀତିପଦ ଅଭିନବ ଆଲେଖ୍ୟ । ଆମେ ଦିନନାଥ ପାଠୀଙ୍କୁ ଉପର୍ଯ୍ୟୁକ୍ତ ମାନସିକତାର ଅନ୍ୟତମ ଗତିଶୀଳ ଅଭିବ୍ୟକ୍ତି ବୋଲି କହିପାରିବାକି ?

ଶ୍ରୀଯୁକ୍ତ ପାଠୀ ନିଃସନ୍ଦେହରେ ଜଣେ ବହୁପାଠୀ, ଇତିହାସର ଛାତ୍ର ଓ ଗବେଷକ । ଏଠି ଇତିହାସ କହିଲେ ରାଜନୀତି, କଳା, ସାହିତ୍ୟ, ସମାଜ, ସଂସ୍କୃତି, ଧର୍ମ, ଦର୍ଶନ ଇତିହାସ ବୋଲି କହିବା, ଦେଶ, ବିଦେଶରେ ଜଣେ ବହୁ ପରିଚିତ ଓ ଚର୍ଚ୍ଚିତ ଚିତ୍ରକର । ସଂଗୀତ, ଅଭିନୟ କଳା, କବିତା, କଥା, ସ୍ଥାପତ୍ୟ, ଚିତ୍ରବିଦ୍ୟାର ବ୍ୟାକରଣ ବିଶାରଦ, ଶିକ୍ଷକ, ପ୍ରଶାସକ ଓ ବାଗ୍ମୀ ଏବଂ ସର୍ବୋପରି ଦିଗପହଣ୍ଡିଠାରୁ ଆରମ୍ଭ କରି ଭାରତ ଏବଂ ଭାରତ ବାହାରେ ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭୂମିରେ ଅନ୍ୟତମ ପରିବ୍ରାଜକ । ଭାରତୀୟ ଚିତ୍ରକଳା ଓ ସଂସ୍କୃତିର ପ୍ରଚାରକ । ତେଣୁ ଅଧ୍ୟୟନ, ଅନୁଭବ, ପରିବ୍ରାଜକକୁ ଯଦି ବ୍ୟକ୍ତିତ୍ୱ ଗଢ଼ଣ ଓ ବିକାଶର ମୂଳଭୂତ ପୁଞ୍ଜି ଭାବରେ ଆମେ ଗ୍ରହଣ କରିବା, ମୋ ଜାଣିବାରେ ଦିନନାଥଙ୍କ ବ୍ୟକ୍ତିତ୍ୱ ନିଃସନ୍ଦେହରେ ଏ ସକଳର ଅନ୍ୟତମ କଳାର ସମବାୟ ଏବଂ, ତାଙ୍କ କଥାଗ୍ରନ୍ଥଗୁଡ଼ିକ ଆଉ କିଛି ନୁହେଁ, ଚିତ୍ର ସ୍ଥାପତ୍ୟ ସଙ୍ଗୀତ, ଅଭିନୟ କଳା, ଇତିହାସ ଓ ଦର୍ଶନର ସଂସ୍କୃତିକରଣ ।

ତିନି

ଏବେ ମୁଁ ଦିନନାଥଙ୍କ କଥାକାବ୍ୟର ବିଷୟ/କାହାଣୀ, ସ୍ଥାନ, କାଳ ଓ ପାତ୍ରମାନଙ୍କ ପାଖକୁ ଆସିବି । ସେ ବାଣ୍ଟିଥିବା କାହାଣୀ ଚିତ୍ରକଳା-ସଂସ୍କୃତି ସଂପର୍କିତ ଏବଂ ତାଙ୍କ ପ୍ରଧାନ ଚରିତ୍ରମାନେ ଚିତ୍ରକର, ସ୍ଥପତି କଳାରସିକ । ନାଁ ନ ନେଇ ଯେଉଁମାନଙ୍କ ସଂପର୍କରେ ଏତିକି କୁହାଯାଇ ପାରେ ଯେ ସେମାନେ ଇତିହାସର ଭୂମି ଉପରେ ବିଚରଣଶୀଳ ଜଣେ ଜଣେ ଜୀବନ୍ତ ଚରିତ୍ର ଏବଂ ଭବିଷ୍ୟତକୁ ଅଦୃରାୟିତ କରିବା ପାଇଁ ସ୍ୱପ୍ନ ବିଭୋର । ସେମାନେ ଚିକିଟି, କନିକା, ଖଲ୍ଲିକୋଟ ଆଦି ଯେ କୌଣସି ରାଜ୍ୟର ରାଜା, ପଟ୍ଟାୟତ, ଲାଲସାହେବ, ଯୁବରାଜ, ମନ୍ତ୍ରୀ, ମଠର ମହନ୍ତ, ତାଙ୍କ ସେବକ, ଦେବଦାସୀ, ଗାୟେଣୀ, ବାଜେଣୀ, ମନ୍ଦିରର ବାବା, ମାତା, ପଣ୍ଡା, ଦେଶୀ, ବିଦେଶୀ, ଚିତ୍ରକର, ଚିତ୍ରକାରିଣୀ, ନୋଳିଆଣୀ ଅଥବା ଆଦିବାସୀ, ଗାଁର ସାଧାରଣ ମଣିଷ । ପ୍ରସଙ୍ଗ କ୍ରମେ ରାଜା

Digitized by srujanika@gmail.com

ଶରତଚନ୍ଦ୍ର, ସ୍ୱଇସ୍ ଗବେଷିକା ଓ ଚିତ୍ରଶିଳ୍ପୀ ଆଲିସ୍ ବୋନର୍ ଇତାଲିଜନ୍ମିତ ଓଡ଼ିଶୀ ନୃତ୍ୟାଙ୍ଗନା ଏଲିଆନା ସିତାରିଷ୍ଟ୍ ଏବଂ ନିଜେ ଦିନନାଥ ପାଠୀ ବି ହୋଇପାରନ୍ତି । ସେମାନଙ୍କ ବିଚରଣଭୂମି ଓଡ଼ିଶାର ଅନେକ ଗାଁ ଭିତରୁ ଗୋଟିଏ ଦିଗପହଣ୍ଡି ଠାରୁ ଆରମ୍ଭ କରି ଚିକିଟି, ଖଲ୍ଲିକୋଟ, ଗଂଜାମ, ଭଞ୍ଜନଗର ଆଦି ଅନେକ କୁନି କୁନି ରାଜ୍ୟ, ବନାରସ, କଲିକତା, ଦିଲ୍ଲୀ ଏବଂ ସେଠାରୁ ଆହୁରି ଦୂର ଜାପାନ, ଚୀନ, ଇଂଲଣ୍ଡ, ଜର୍ମାନୀ, ସ୍ୱଇଜର୍‌ଲ୍ୟାଣ୍ଡ ଆଦି ଦେଶର ବିଖ୍ୟାତ ସହର ପର୍ଯ୍ୟନ୍ତ ପରିବ୍ୟାପ୍ତ । ସେମାନେ ବଞ୍ଚୁଥିବା କାଳ କେବଳ ବର୍ତ୍ତମାନ ନୁହେଁ, ଅଜଣା ଅତୀତଠାରୁ ଦୂରନ୍ତ ଭବିଷ୍ୟତ । ତାଙ୍କ ପାଇଁ କାଳ ଏକ ସୀମାତୀତ ଅନୁଭବ ଯାହା ଜୀବନ୍ତ ସଂସ୍କୃତିରେ ହିଁ କେବଳ ବର୍ତ୍ତମାନ । ମାତ୍ର ସ୍ଥାନ, କାଳ, ପାତ୍ର, କାହାଣୀ ଆଧାରରେ ଦିନନାଥଙ୍କୁ ନିର୍ଦ୍ଦିଷ୍ଟାୟିତ କରିବା ଅନୁଚିତ ହେବ ବୋଲି ମୁଁ ମନେକରେ । ବିଶ୍ୱର ଯେ କୌଣସି ବସତି, କାଳର ଯେ କୌଣସି ମୁହୂର୍ତ୍ତ ଓ ଚରିତ୍ର ଏବଂ ସେମାନଙ୍କ ଜୀବନ ଗାଥା ତାଙ୍କ କଳାକର୍ମର ପ୍ରସଙ୍ଗ । ସେ ସ୍ପଷ୍ଟତଃ କହିବାକୁ ଚାହିଁଛନ୍ତି ଜଣେ ଅନ୍ୟଜଣଙ୍କଠାରୁ ଭାଷା, ଧର୍ମ, ଆଚାର, ବିଚାରରେ କେତେ ସ୍ୱତନ୍ତ୍ର । ମାତ୍ର ଏହି ସ୍ୱତନ୍ତ୍ରତା ମୁଖ୍ୟତଃ ଏକ ବୈଚିତ୍ର୍ୟ-ଅନ୍ତର୍ଗତ ଜୀବନ ନୁହେଁ । ପ୍ରତ୍ୟେକ ବିଚିତ୍ର ମାତ୍ର ସମଭାବ ଓ ରୂପରେ ଗତିଶୀଳ । ନିଜର ଅସ୍ମିତାକୁ ଭଲପାଉଥିବା ଜଣେ ଯେ ବିଶ୍ୱର ଅବଶିଷ୍ଟ ବ୍ୟକ୍ତି ଓ ଜାତିର ଅସ୍ମିତାକୁ ଆପଣା ଭିତରେ ଅନୁଭବ କରିବାକୁ ସମର୍ଥ, ଦିନନାଥ ନିଜ ଚରିତ୍ରମାନଙ୍କ ମାଧ୍ୟମରେ ତାହାହିଁ କହିଛନ୍ତି ।

ମୁଁ ଆଲୋଚନାର ଆରମ୍ଭରେ ଏବଂ ଏଇ ଟିକିଏ ଆଗରୁ କହିଛି ସେ ଜଣେ ଚିତ୍ରକର, ଇତିହାସ ବିତ୍ ଓ ଚିତ୍ର ସମୀକ୍ଷକ । ତେଣୁ ତାଙ୍କ ଉପନ୍ୟାସ ଚିତ୍ରାତ୍ମକ ଏବଂ ଚିତ୍ରକଳା ସଂପର୍କିତ ହେବା ସ୍ୱାଭାବିକ । ସେହି ନ୍ୟାୟରେ ଜଣେ ପାଠକ ତାଙ୍କ କଥାକାବ୍ୟକୁ ପଢ଼ିଲାବେଳେ ତାହା ଚିତ୍ର କାବ୍ୟର ପ୍ରତ୍ୟୟ ସୃଷ୍ଟିକରେ । ଦିନନାଥ ଅତ୍ୟନ୍ତ ସଚେତନଭାବରେ ନିଜର କଳାବୋଧ ଏବଂ ଓଡ଼ିଶା ଓ ବିଶ୍ୱର କଳାସଂସ୍କୃତି ସଂକ୍ରାନ୍ତରେ ଚର୍ଚ୍ଚା କରିଛନ୍ତି, ଆପଣାର ଚିତ୍ରଶିଳ୍ପୀ ବନ୍ଧୁମାନଙ୍କ ଦ୍ୱାରା ଅଙ୍କିତ ଅନେକ ରେଖାଚିତ୍ର ଗ୍ରନ୍ଥ ଗୁଡ଼ିକରେ ପ୍ରକାଶ କରିଛନ୍ତି । ଚିତ୍ରକଳା ସଂସ୍କୃତି ସଂପର୍କରେ ପରିଚର୍ଯ୍ୟାକାଳରେ ନିଜ ସ୍ପଷ୍ଟମତ ଉପସ୍ଥାପନାରେ ଆଦୌ ସଂଶୟ ପ୍ରକାଶ କରିନାହାନ୍ତି । ବହୁ ସଂଖ୍ୟକ କଳାସମୀକ୍ଷକ କଳାକାରମାନେ ଜୀବନଚର୍ଯ୍ୟା, ବିଚାର ଓ ଭାବଜଗତରେ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ବୋଲି ସାଧାରଣତଃ ମତ ଦେଇଥାନ୍ତି । ଏହା ହୋଇପାରେ, ମାତ୍ର ଦିନନାଥଙ୍କ ବିଚାରରେ ତାହାଠାରୁ ଅଧିକ ସତ୍ୟ ଜଣେ କଳା ପରିଣତ/ ପରିଣିତା ଜଗତର ପ୍ରତ୍ୟେକ ବ୍ୟକ୍ତିସତ୍ତା ଭିତରେ ଆପଣା ଅହଂକୁ ହିଁ ଅନୁଭବ କରେ; ସ୍ୱତନ୍ତ୍ର ମଣେନାହିଁ । ସଂସାରର ପ୍ରତ୍ୟେକ ଚରିତ୍ର କଳା ଅବଗାହୀ, ଆଧ୍ୟାତ୍ମିକ/ଦିବ୍ୟ ଅନୁଭବ ଲାଭ ପାଇଁ ଉତ୍ଥାନପାଦୀ ! ମାତ୍ର ଦିବ୍ୟଭାବର ଅଧିକାରୀ ସେହି ମଣିଷମାନେ ପ୍ରତି ମୁହୂର୍ତ୍ତରେ ସାଂସାରିକ ଅବସାଦ ଗୁଡ଼ିକର ମୁକାବିଲା କରିନପାରି ବାଟ ହୁଡ଼ି ଯାଉଥାନ୍ତି, ଆହତ ହେଉଥାନ୍ତି ଏବଂ ଆହତ କରୁଥାନ୍ତି ଅନ୍ୟମାନଙ୍କୁ । ଦିନନାଥ ଏହି ଉଭୟ କାଟର ମଣିଷମାନଙ୍କୁ ଆପଣାର ଅନ୍ତର୍ଲୋକରେ ଭେଟିଛନ୍ତି ଏବଂ ଜଣେ ସହୃଦୟ ପରି ସେମାନଙ୍କ ମନରେ କ୍ରିୟାଶୀଳ ଅବଦମିତ ରହସ୍ୟଗୁଡ଼ିକୁ ଖୋଲିଦେବା ପାଇଁ ଆପଣା ମଗଜ ଓ ଅନୁଭବ ଉଭୟର ଖଟଣୀ କରିଛନ୍ତି । ଆଧୁନିକ ସମାଲୋଚନାର ପରିଭାଷାରେ କହିଲେ ସେ ଆମ ସାଂସ୍କୃତିକ ଓ ସାମାଜିକ ବ୍ୟବସ୍ଥାକୁ ନିୟନ୍ତ୍ରଣ କରୁଥିବା ଅଳ୍ପ ସଂଖ୍ୟକ ସୁବିଧାବାଦୀଙ୍କ 'ପଲିଟିକିସ୍'ର ହିଁ ଚର୍ଚ୍ଚା କରିଛନ୍ତି ।

ସେ ଏକଥା ବି ସ୍ପଷ୍ଟ କରି ଦେଇଛନ୍ତି ଯେ, ଜଣେ କଳାକାର ବା ଆର୍ଟିଷ୍ଟ୍‌ର ସଂପର୍କ ବାହ୍ୟତଃ ରେଖା, ରଙ୍ଗ, ଶବ୍ଦ, ସ୍ୱର, ତାଳ ଓ ମୁଦ୍ରା ସହିତ । ଏହି ମାନଙ୍କୁ ମାଧ୍ୟମ କରି ଜଣେ ଅବଶ୍ୟ ଛବି ଆଙ୍କିପାରେ, ଗୀତ ଗାଇପାରେ, ଗପ/କବିତା ଲେଖିପାରେ, ନାଚିପାରେ, ଅଭିନୟ ବି କରିପାରେ, ଆମେ ଯାହା ଦେଖୁ, ଶୁଣୁ, ପଢୁ ତାହା ଦୃଶ୍ୟମାନ ରଙ୍ଗ, ରେଖା, ସ୍ୱର ଓ ଶବ୍ଦର ସଂଯୋଜନ ବା ସମବାୟ ନୁହେଁ, ତାହା ଅନୁଭବ (ମାନଙ୍କର) ଓ ପ୍ରଜ୍ଞାର ପ୍ରତୀକାୟନ ଏହି ଦୃଶ୍ୟମାନତା ଭିତରେ ନିହିତ ଥାଏ ଅଦୃଶ୍ୟ ସତ୍ୟର ଆତ୍ମା । ତେଣୁ ଦେହ ପଦାର୍ଥ, ରଙ୍ଗ, ରେଖା, ଶବ୍ଦମାନେ ଆଦୌ ଅସତ୍ୟ ବା ପ୍ରହେଳିକା ବିଧର୍ମୀ ନୁହଁନ୍ତି । ଏମାନେ ପ୍ରତ୍ୟେକ ଭୂତ/ ପ୍ରପଞ୍ଚର ରୂପାନ୍ତର, ଆତ୍ମାର ସୂକ୍ଷ୍ମ ଅଭିବ୍ୟକ୍ତି । ଯେଉଁମାନେ ମାୟାମାନଙ୍କୁ ଆପଣାର ଅଧିକାର ଓ ଉପଭୋଗର ସାମଗ୍ରୀ କରିବାକୁ

Digitized by srujanika@gmail.com

କ୍ଷିତିରେ ଯାବତୀୟ ଗୋକ ରଚୁଥାନ୍ତି ସେମାନେ ବାସ୍ତବତଃ ଅବିଚାରୀ । ଜଣେ ସ୍ରଷ୍ଟା ଦେହ ବୈଚିତ୍ର୍ୟର ଚିତ୍ରାୟନ ପାଇଁ ଅବଶ୍ୟ ଦେହୀମାନଙ୍କ ପାଖକୁ ଯାଏ । ଦେହକୁ ମନଲାଖି କରିବା ପାଇଁ ତା ଉପରେ କେତେ ଯତ୍ନରେ ଖଞ୍ଜା ଯାଇଥିବା ଆଭରଣ ଓ ଆବରଣ ମାନଙ୍କୁ ନିରାବରଣ, ମୁକ୍ତ କରେ, ଅର୍ଥାତ୍ ତାକୁ ଆଚାର ମୁକ୍ତ କରେ । ଯେମିତି ପ୍ରକୃତ ସୌନ୍ଦର୍ଯ୍ୟ ଉଲ୍ଲଙ୍ଗତାରେ । ଏ ଉଲ୍ଲଙ୍ଗତା ଭୋକ, ଶୋଷ, ସପ୍ନ, ଯନ୍ତ୍ରଣା, ଭୟ, ଘୃଣା, ଈର୍ଷା ଓ ସନ୍ତୋଷର ଦିବ୍ୟରୂପ । ଅନୁଭବର ଜୀବନ୍ତ 'ଟେକ୍‌ଷ୍ଟ' ଯାହାର କେଉଁ ଗଭୀରତମ ବିନ୍ଦୁରେ ସୂକ୍ଷ୍ମଭାବରେ ସଞ୍ଚିତ ଥାଏ ତାର ପ୍ରକାଶମାନତାର ବୀଜ, ଆମ ସମାଲୋଚନା ପରିଭାଷାରେ ଯାହା 'କନଟେକ୍‌ଷ୍ଟ' ବା 'କାରଣ' । ଏହି କାରଣ ବା ଭାବମାନଙ୍କୁ ଖୋଜି ପାଇଲେ ଚିତ୍ର, କବିତା, କଥା, ସ୍ୱର ଲେଖି ହେଇଯାଏ, ଅଙ୍ଗ ଅଙ୍ଗରେ ବିକୃତି ଉଠେ । **ମାତ୍ର କେତେଜଣ ସେ ଦିବ୍ୟ ଅନୁଭବକୁ ଭେଦିବାକୁ ସକ୍ଷମ ହୁଅନ୍ତି ? ଅଧିକ ସଂଖ୍ୟକ ଅଟକି ଯାଆନ୍ତି ଦେହର ରେଖା-ମାନଙ୍କ ପାଖରେ । ରେଖାଟିଏ ପାଖରେ ଆଉ ଗୋଟିଏ ରେଖା ହେଇ ଯୋଡ଼ି ହେଇଯା'ନ୍ତି । ଦିବ୍ୟ ନଗ୍ନତା ମୁହୂର୍ତ୍ତକରେ ରୂପାନ୍ତରିତ ହେଇଯାଏ ବୀଭତ୍ସତାରେ । ରୂପ ଆମପାଇଁ ଅନ୍ନ, ଆନନ୍ଦ କି ଆବଶ୍ୟକତା ହେଇ ରହେନାହିଁ, ବିନୋଦନ, ଉପଭୋଗର ସାମଗ୍ରୀ ହେଇଯାଏ ।** ଆମେ ଦୈତ୍ୟପରି ଗୋଟି ଗୋଟିକରି ଅନେକ ଦେହ ଗୋଟେଇ ଆଣୁ । ସେମାନଙ୍କ ଇଚ୍ଛାମତେ ଖେଳୁ । ଶୃଙ୍ଗଚର୍ଯ୍ୟାରେ ବିଚକ୍ଷଣ ବୋଲି ଅବଶ୍ୟ ଦାବିକରୁ । ମାତ୍ର ଶୃଙ୍ଗାର କାନ୍ଦରେ ଧ୍ୱଜଭଙ୍ଗର କାରଣ ଆମକୁ ଯେ ଦୈତ୍ୟରେ ପରିଣତ କରି ଦେଇଥିଲା ତାହା ଆମେ କସ୍ମିନ କାଳେ ବ୍ୟକ୍ତ କରୁନା ସିନା, ମାତ୍ର ଏହି ପ୍ରୀତିପଦ ସତ୍ୟ ଅନ୍ୟମାନଙ୍କ ଆଖି ଓ ଚେତନାରେ ଅପରିଚିତ ରହିପାରେନା । ସତ୍ୟ ଓ ଅନୁଭବ ପ୍ରତୀକିତ ହେବାର ଏହି ସୃଜନ ପ୍ରକ୍ରିୟା ଦେଶ, କାଳ, ପାତ୍ରାତୀତ । କାରଣ ପ୍ରକୃତି ଓ ପ୍ରକୃତି ସରୂପାମାନଙ୍କର ଦେହ ଓ ମନର ରୂପ ସବୁଠି ସମାନ । ବିଷମତା ବୋଲି ଯାହା ଦିଶେ ତାହା କେବଳ ଆଚାର ମାତ୍ର । ଆମ ତିଆରି ଚିତ୍ର, ମୂର୍ତ୍ତି, ତାହା ସତ୍ୟ, ଅସତ୍ୟ, ସମ୍ମୋହନ, କ୍ଷୁଧା, ଧର୍ମ ଯେଉଁ ଭାବର ହେଉନା କାହିଁକି ସେମାନେ ସ୍ଥୂଳତଃ ଏକ ଦୃଶ୍ୟମାନ ଜଡ଼ପିଣ୍ଡ । ସେମାନେ ପ୍ରତ୍ୟେକ ଆମ କାରିଗରୀ ଆଲେଖ୍ୟ । ଅର୍ଥାତ୍ ଆମେ ହିଁ ସେମାନଙ୍କର ସ୍ରଷ୍ଟା । ଆମେ ସେହିମାନଙ୍କ ପାଖରେ ନତଜାନୁ ହେଉ, ଡାକୁ । ସେମାନେ 'ଓ' କରନ୍ତି ଏବଂ ସେମାନଙ୍କ 'ଓ' ପ୍ରତିଧ୍ୱନିତ ହୁଏ ଆମ ଚେତନାରେ । ଜଡ଼ପିଣ୍ଡ ଗତିଶୀଳ ହୁଏ । ତେଣୁ ମୂର୍ତ୍ତିମାନେ ଅସତ୍ୟ ନୁହନ୍ତି । ପଞ୍ଚଭୂତମାନେ ମାୟା ନୁହଁନ୍ତି, ରୂପମାନେ ସମ୍ମୋହନ ନୁହଁନ୍ତି, ସେମାନେ ପ୍ରତ୍ୟେକ ଅମୂର୍ତ୍ତ ଅନୁଭବର ସାକାରାୟନ । ସ୍ଥୂଳରୁସୂକ୍ଷ୍ମ, ସୂକ୍ଷ୍ମତର ଭୌତିକରୁ ଆଧ୍ୟାତ୍ମିକ ଓ ଅତିମାନସ ଭୂମିର ଯାତ୍ରାୟନରେ ସେମାନେ ଯେପରି ଦିବ୍ୟାନନ୍ଦର ଉତ୍ସ । **ଦିନନାଥଙ୍କୁ ଅଶେଷ ଧନ୍ୟବାଦ, ନିଜ ପାଖରୁ ଆରମ୍ଭ କରି ବହୁ ଦେଶୀ, ବିଦେଶୀ ଚିତ୍ରକର, ମାଟି, କାଠ, ପଥର ଅନୁଭବ ପ୍ରତିକାୟନରେ ସମାହିତ ସ୍ଥପତିମାନଙ୍କର ଦିବ୍ୟଦୃଷ୍ଟିର ବିଶଦ ବାଖ୍ୟା କରିଛନ୍ତି ଏବଂ ମନ ଓ ଦେହର ଯାବତୀୟ ଅସନ୍ତୋଷର କ୍ଷୁଧାକୁ ଯେ ଦିବ୍ୟରୂପ ଓ ଭାବରେ ପ୍ରତୀକିତ କରାଯାଇ ପାରେ ଚିତ୍ରମାନଙ୍କ ମାଧ୍ୟମରେ ତାହା ସ୍ପଷ୍ଟ କରିଦେଇଛନ୍ତି ।**

ଆମେ ଏକଥା ଅବଶ୍ୟ ସୀକାର କରିବା ଯେ ଆଚାର ଆମ ଜୀବନଚର୍ଯ୍ୟାର ଆବଶ୍ୟକତା । ମାତ୍ର ଆଚାର ସଂସ୍କୃତି କି ନୁହେଁ ତାହା ଏକ ବିତର୍କିତ ପ୍ରଶ୍ନ । ଅନେକ ଅବଶ୍ୟ ଆଚାରକୁ ଏକ ସୁଦୃଶ୍ୟ ମୁଖା, ଆର୍ତ୍ତୀମାନଙ୍କ ଭ୍ରମ ଭଞ୍ଜନ ପାଇଁ ଉଦ୍ଦିଷ୍ଟ କଳାରୂପ ବୋଲି କହିଛନ୍ତି । ସୁଖକର ଜୀବନ ଅନ୍ୱେଷୀ ସୁଷୁପ୍ତମାନେ ସବୁକାଳରେ, ମୁଖାଧାରୀମାନଙ୍କ ଫିସାଦିର ଶୀକାର ହୋଇଛନ୍ତି ଏବଂ ଆପଣାପରି ଅନେକଙ୍କୁ ସମବିପାକରେ ଘାରି ହେବାର ବାଟତିଆରି କରିଛନ୍ତି । ଦିନନାଥଙ୍କ ସୂକ୍ଷ୍ମଦୃଷ୍ଟି ସଂସ୍କୃତି ଚର୍ଚ୍ଚାରେ ମୁଖର ଓ ଅଧିକାର ବୋଧରେ ତ୍ରସ୍ତ ମଣିଷମାନଙ୍କର ଅସହାୟତାକୁ ଅସ୍ୱୀକାର କରିପାରିନାହିଁ ।

ସେ କହିବାକୁ ଚାହିଁଛନ୍ତି, ସୂକ୍ଷ୍ମତଃ, ଧର୍ମ ଏକ ବିଶ୍ୱାସ, ଅନୁଭବ । ବ୍ୟକ୍ତିକ ଚେତନା ସମ୍ଭୂତ ଅଥଚ ଗୋଷ୍ଠୀଗତ ଜୀବନଚର୍ଯ୍ୟାର ଧାରା । ତାହା ରହସ୍ୟମୟ ପୁଣି ସାଂସାରିକ ଜୀବନର

Digitized by srujanika@gmail.com

ଗତିଶୀଳତାର ହେତୁ, ତେଣୁ ବାସ୍ତବ । ବ୍ୟକ୍ତି ଓ ସମାଜର ସକଳ ସୃଜନଶୀଳତା - ଯାହା ଚିତ୍ର, ସଙ୍ଗୀତ, ନୃତ୍ୟ, ଅଭିନୟ, ସାହିତ୍ୟ ପ୍ରତିମା ରୂପରେ ପ୍ରକାଶିତ ସେହି ସମସ୍ତର ବିକାଶ ପ୍ରକ୍ରିୟାରେ ଧର୍ମର ପ୍ରଚୋଦନା ହିଁ କ୍ରିୟାଶୀଳ । ମାତ୍ର 'ମୁଁ'ର ସରଳ, ସୂକ୍ଷ୍ମ, ସୃଜନଶୀଳ ରୂପାନ୍ତରୀକରଣ କ୍ରମଶଃ ଜଟିଳ ଓ ବହୁମୁଖୀ ହୋଇଛି ଏବଂ ରହସ୍ୟର ତୁଷ୍ଟୀକରଣ ପାଇଁ ଅଭିପ୍ରେତ, ଅନୁଭବର ଏହି କଳାରୂପକୁ ଆପଣାର ଉପଭୋଗ ଓ ବିନୋଦନର ସାମଗ୍ରୀ କରିଛନ୍ତି - ସେମାନଙ୍କର ନିକଟତମ ବୋଲି ଦାବି କରୁଥିବା ଅଳ୍ପମାନେ । ମଣିଷର ମୁକ୍ତ ବିଶ୍ୱାସ ସମୟକ୍ରମେ ପୀଠାୟିତ ହେଇଛି । ପୀଠର ପ୍ରତୀକମାନଙ୍କୁ ଗତିଶୀଳ କରିବା ପାଇଁ ସେମାନଙ୍କ ପ୍ରଭୁମାନେ ଜନ୍ମ ନେଇଛନ୍ତି । ସେହିମାନେ ହିଁ ହୋଇଛନ୍ତି ଈଶ୍ୱରଙ୍କ ଇଛାର ପ୍ରକାଶକ ଓ ମାର୍ଗ-ଦର୍ଶକ । ଯେ କୌଣସି ଜାତିର ଧର୍ମ-ସଂସ୍କୃତି ଗଢ଼ଣର ଏହି ପ୍ରକ୍ରିୟା କେତେବେଳେ ଗୋଷ୍ଠୀର ମୁଖ୍ୟତ, କେତେବେଳେ ପୀଠାଧୀଶ ମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଇଛି ଏବଂ, ସେହି ଅଳ୍ପମାନେ ଜୀବନ ଉପଭୋଗର ଶକ୍ତିଶାଳୀ ମାଧମ କରିଛନ୍ତି ଧର୍ମକୁ । ଫଳତଃ ବ୍ୟକ୍ତିର ସୃଜନଶୀଳତାର ସର୍ବୋତ୍ତମ ଅଭିବ୍ୟକ୍ତି, ଆଧ୍ୟାତ୍ମିକ ଓ ରହସ୍ୟମୟ ଅନୁଭବ, ଈଶ୍ୱର ଓ ଶକ୍ତି, ପୁନଶ୍ଚ ବ୍ୟକ୍ତି ଓ ତା ସୃଷ୍ଟ ଗୋଷ୍ଠୀକୁ ନିୟନ୍ତ୍ରିତ କରିଛି । ବିଶ୍ୱାସ ପର୍ଯ୍ୟୁଷିତ ହୋଇଛି ଏବଂ ଏହି ପର୍ଯ୍ୟୁଷିତ ବିଶ୍ୱାସକୁ ପରିମଳ କରିବା ପାଇଁ ଜନ୍ମ ନେଇଛନ୍ତି ସନ୍ଥ, ସାଧକମାନେ । ପୃଥିବୀର ସକଳ ଆନୁଷ୍ଠାନିକ ଧର୍ମ (ଖ୍ରୀଷ୍ଟ, ଇସ୍‌ଲାମ୍, ତାଓ, ସିଣ୍ଟୋ, ଇହୁଦୀ) ଏବଂ ରହସ୍ୟମୟ ଅବବୋଧରେ ଆମେ ଏହି ବିଶେଷତାକୁ ଅନୁଭବ କରିପାରିବା । **ପ୍ରତ୍ୟେକ ଆଧୁନିକ ସମାଜ ବିଜ୍ଞାନୀ ପୃଥିବୀର ଯେ କୌଣସି ଭୂମିର ରାଜନୀତିକ ଓ ସାଂସ୍କୃତିକ ବିବର୍ତ୍ତନରେ ଧର୍ମର କର୍ତ୍ତୃତ୍ୱକୁ ସ୍ୱୀକାର କରିଛନ୍ତି ଏବଂ ସେମାନଙ୍କ ବିଚାରରେ ମେଷବତ୍ ବହୁତଙ୍କ ନିୟନ୍ତ୍ରଣରେ ଅଳ୍ପସଂଖ୍ୟକ ଭ୍ରୂଣ ମଣିଷଙ୍କ ଚକ୍ରାନ୍ତର ଅନ୍ୟନାମ ସଂସ୍କୃତି-ରାଜନୀତି । ଦିନନାଥ ପାଠୀ ଅତ୍ୟନ୍ତ ସଚେତନ ଭାବରେ ସଂସ୍କୃତି ରାଜନୀତିର ଚର୍ଚ୍ଚା ପାଇଁ ଭୂମିମାର୍ଜନ କରିଛନ୍ତି ବୋଲି କହିବାକୁ ମୁଁ ଆଦୌ କୁଣ୍ଠିତ ହେବିନାହିଁ ।**

ମୋର ବିଶ୍ୱାସ, ଧର୍ମ ରାଜନୀତିର ବାଖ୍ୟା ଉଦ୍ଦେଶ୍ୟରେ ସେ ଆପଣା ଉପନ୍ୟାସଗୁଡ଼ିକର ନାମ ରଖିଛନ୍ତି ସାୟୋନାରା, ଶ୍ଳୋକଛନ୍ଦ, ଗଙ୍ଗାବତରଣ, ପୁନର୍ନବା, ଗଙ୍ଗା ନଈ ନୁହେଁ ଗତିଶୀଳ ଭାରତୀୟ ସଂସ୍କୃତି । ଗଙ୍ଗୋତ୍ରୀରୁ ବଙ୍ଗୋପସାଗର ପର୍ଯ୍ୟନ୍ତ ବ୍ୟାପ୍ତିରେ ଯାହାର ହଜାର ହଜାର ବର୍ଷର ସନାତନ ସଂସ୍କୃତିର ଅନୁଭବ ସେ ଅନୁଭବରେ ଶାଳଗ୍ରାମ ଅଛନ୍ତି, ବିଷ୍ଣୁ ଅଛନ୍ତି, ଶିବ ଅଛନ୍ତି, ଶକ୍ତି ବି ଅଛନ୍ତି । ସନ୍ଥ ଅଛନ୍ତି ଶଠ ବି ଅଛନ୍ତି । ସତୀ ଅଛନ୍ତି ବାରାଙ୍ଗନା ବି ଅଛନ୍ତି । ନିର୍ଜନତା ଅଛି ନିର୍ଘୋଷ ଅଛି । ଆମ ବିଶ୍ୱାସରେ ଦିବ୍ୟ ଚେତନା ଓ ପବିତ୍ର ସୃଜନପ୍ରକ୍ରିୟାର ପୀଠ 'ବନାରସ'କୁ ଉପଲକ୍ଷ୍ୟ ଭାବରେ ଗ୍ରହଣ କରି ଦିନନାଥ ଯେପରି କହିବାକୁ ଚାହିଁଛନ୍ତି ଯେ, ବିଶ୍ୱନାଥଙ୍କ ଠିକାଦାରମାନଙ୍କ ଦୌରାତ୍ମ୍ୟକୁ ଅସ୍ୱୀକାର କରି ଆମକୁ ଫେରିଯିବାକୁ ପଡ଼ିବ ମାନବିକତା ଓ ପ୍ରେମର ଭୂମିକୁ । ସେଠି ମୁଁ ଏବଂ ମୋର ବିଶ୍ୱାସ ମଝିରେ କୋଣସି ତୃତୀୟପକ୍ଷ, ମଧ୍ୟସ୍ଥ ନଥିବେ । ମଦ୍ୟ, ମସ୍ୟ ଓ ଯୌନାଚାର ଦୌରାତ୍ମ୍ୟ ଶକ୍ତିସ୍ୱରୂପିଣୀ ନାରୀମାନଙ୍କର 'ଭଗ' ଅତ୍ୟନ୍ତ ଦୟନୀୟ ଭାବରେ କ୍ଷତାକ୍ତ ହେଉନଥିବ ଏବଂ ସେମାନଙ୍କର ଶବ ଉପରେ ନାଚୁ ନଥିବେ ବିକୃତିର ଗୁମାସ୍ତାମାନେ, ବନାରସରୁ ସେ ଫେରିଛନ୍ତି ଆମ ମାଣ୍ଡେଲି ଗାଁର ମଠ ପାଖକୁ । ସେଠି ବି ଗାନ, ରାସକ୍ରୀଡ଼ା, କଳା କୁଞ୍ଜ, ନାଚଗୀତ, ଭକ୍ତମାନଙ୍କର ଉଦଣ୍ଡ କୀର୍ତ୍ତନ ଏବଂ ଅନେକ କିଛି । **ସାୟୋନାରା**ରେ ବୁଦ୍ଧ ଅଛନ୍ତି, ସିଣ୍ଟୋ ଅଛନ୍ତି, ଅରକ୍ଷିତ ଦାସ ଓ ତାଙ୍କ ମହୀମଣ୍ଡଳ ଗୀତା ଅଛନ୍ତି । **ଶ୍ଳୋକଛନ୍ଦ**ରେ ଅଛନ୍ତି ରାଧାକୃଷ୍ଣ, ଲୀଳାର ନାୟକ ନାୟିକା, ମିଳନ ସଙ୍ଗିନୀ, ଗୋଟିପୁଅ ନାଚ, ଛାନ୍ଦ ଚଉପଦୀର ଉଦ୍ଦାମତା । ଉପନ୍ୟାସରେ ବହୁପୃଷ୍ଠା ଅଧିକାର କରିଛନ୍ତି ଶିବ, ଶକ୍ତି । ଶିବ ଓ ଶକ୍ତିର ସଂଯୋଗକାରିଣୀ, ଉଚ୍ଚାଟନ - ଉପଚାର, କୌଳ ମାର୍ଗର ବିଚାର, ସାଧନା ସଙ୍ଗିନୀ ମାନଙ୍କର ଉଲଙ୍ଗ ଅଭିସାର । ଭଗ ଓ ଲିଙ୍ଗର ଯୋଗମୁଦ୍ରା । ଦିନନାଥ କେବଳ ସେତିକିରେ ଆପଣାର ସମ୍ଭୋଗ ଅନୁଭବର ବର୍ଣ୍ଣନାକୁ ସୀମିତ ନରଖି ସମକାମୀତାର ପୁଲକରେ ଚରିତ୍ରମାନଙ୍କୁ ସମାହିତ କରିଛନ୍ତି ଏବଂ ଦେହ ଉପଭୋଗରେ ସମାଧିସ୍ଥ ଏହି ଚରିତ୍ରମାନେ ପୁଣି ଧର୍ମାଶ୍ରୟୀ ।

Digitized by srujanika@gmail.com

**ଦେହ ସହିତ ଦେହର ସମ୍ମିଳନ ଏକ ଆବଶ୍ୟକତା । ତାହା ସମଦେହ ବା ବିଷମ ଦେହ ହେଉ, ଯେଉଁଥିରେ ପରମ ସନ୍ତୋଷର ଅନୁଭବ ରହିଛି ତାହାକୁ ଆମେ ବ୍ୟଭିଚାର, ପାପ କହିପାରିବା କି? ତାହା ଏକ ଭିନ୍ନ ସାଂସ୍କୃତିକ ଓ ନୈତିକ ପ୍ରଶ୍ନ । ଯେଉଁ ସମ୍ମିଳନରେ ଆତ୍ମାର ସ୍ୱୀକୃତି ରହିଛି ତାହାକୁ କୌଣସି ସଂସ୍କୃତିରେ ଧର୍ମହୀନତା ବୋଲି କୁହାଯାଇନାହିଁ ।** ତାହା ହିଁ ଯଥାର୍ଥତଃ ମାନବୀୟ ଧର୍ମ । ମାତ୍ର ନିୟନ୍ତ୍ରିତ ସମାଜ ବ୍ୟବସ୍ଥାରେ ବିଧର୍ମୀମାନଙ୍କ ଗୋଳ ଯେ ଅତି ପ୍ରବଳ, ଧର୍ମର ଘୋଡ଼ଣୀ ଭିତରେ ଦେହଚର୍ଯ୍ୟାର ଯାନ୍ତ୍ରୀକରଣ ଯେ ଅଧିକ ନିରାପଦ, ଇତିହାସରେ ତାହାର ବିପୁଳ ପ୍ରମାଣ ରହିଛି । ଭୋଗୀ ବିଭେଦକମାନଙ୍କ ଦେହ ବଢ଼ିଲେ ଦେବଦେବୀଙ୍କ ସଂଖ୍ୟା ବଢ଼େ । ସେମାନଙ୍କ ସଂଖ୍ୟା ମଣିଷମାନଙ୍କ ସଂଖ୍ୟାକୁ ମଧ୍ୟ ଅତିକ୍ରମ କରିଯାଆନ୍ତି । ସେମାନଙ୍କ ଆବଶ୍ୟକତା ମଣିଷମାନଙ୍କ ଆବଶ୍ୟକତାଠାରୁ ବହୁଗୁଣିତ ହେଇଯାଏ ଏବଂ ସର୍ବୋପରି ସେମାନଙ୍କ କ୍ଷମତା ସମଗ୍ର ସଂସାରକୁ ନିଶ୍ଚିତ ବିଲୁପ୍ତିର ଭୟରେ ଆତଙ୍କିତ କରି ରଖିଥାଏ । ବିଶ୍ୱର ବହୁ ଅଳଙ୍କାର, ବହୁ ବେଶ ବସନ, ବହୁ ଖାଦ୍ୟପେୟ, ସେବକ ସେବିକା, ନାଚ, ଗୀତ, ଅଭିନୟର ବିପଣୀମାନ ଖୋଲିଯାଏ ଏବଂ କଳାପ୍ରବୀଣା ବରଦାୟିନୀ ଦେବାଦେବୀମାନେ ତାଙ୍କ ପ୍ରିୟଦେହର ଆତ୍ମା ମାନଙ୍କରେ ଅବତରଣ କରି ନିଜ ନିଜ ଦେହର ଆବଶ୍ୟକତା ମାନ ପୂରଣ କରନ୍ତି । **ଦିନନାଥ କାଳ କାଳ ଧରି ଧର୍ମ, ସଂସ୍କୃତି ପ୍ରେମ କେନ୍ଦ୍ରିକ ଅଭିଚାରର ରହସ୍ୟ ଗୁଡ଼ିକୁ ବୁଝିଛନ୍ତି । ମାନବୀୟ ପ୍ରେମକୁ ଆଧାରିକ ଅତିମାନସିକତାର ଯେ ରୂପାନ୍ତୀକରଣ କରାଯାଇପାରେ, ତାର ବାସ୍ତବତାକୁ ଅନୁଭବ କରିଛନ୍ତି । ଦେହ, ପଦାର୍ଥ ଓ ଜଗତକୁ ଆଦୌ ମିଛ କି ମାୟା ବୋଲି କହି ନାହାନ୍ତି ଏବଂ ଏମାନଙ୍କୁ ମାୟାର ଅଭିଧାରେ ଚିହ୍ନଟ କରି ଅବଶିଷ୍ଟ ମାନଙ୍କୁ ସୁଖ ବଞ୍ଚିତ କରୁଥିବା ଶଠମାନଙ୍କର ସମାଲୋଚନା କରିଛନ୍ତି ।**

ମାତ୍ର ତାଙ୍କ ଉପନ୍ୟାସ ଗୁଡ଼ିକୁ ପଢ଼ିବା ସମୟରେ ବେଳେ ବେଳେ ମୁଁ ଅନୁଭବ କରିଛି, ଦେହ ଓ ସଂସାରକୁ ସତ କହୁଥିବା, ଅନ୍ନକୁ ଆନନ୍ଦ ଆଧ୍ୟାତ୍ମିକତା ଚେତନା ଉନ୍ମୀଳନର ସର୍ବମୂଳ ଆବଶ୍ୟକତା ଭାବରେ ଗ୍ରହଣ କରୁଥିବା ଶ୍ରୀଯୁକ୍ତ ଦିନନାଥ କେଜାଣି କାହିଁକି ବାହ୍ୟାଚାରକୁ 'ସଂସ୍କୃତି' ବୋଲି ଗ୍ରହଣ କରିଛନ୍ତି । ହଁ, ବଞ୍ଚିବା ପାଇଁ ବେଶ, ପୋଷାକ, ମୁଖା, କୀର୍ତ୍ତନ ଯେ ଅନାବଶ୍ୟକ ଉପାଦାନ ଏକଥା ମୁଁ କହୁନାହିଁ । ଆବଶ୍ୟକତା ମାନେ ଯେତେବେଳେ ଆମେ ମୁକ୍ତିବୋଧ କୁ ହିଁ ବାଧକ ହୁଅନ୍ତି ଆମ ଭିତରେ ଜାଗ୍ରତ ଦିବ୍ୟ ଚେତନା ବିଶ୍ୱାସକୁ ବିଷାୟିତ କରନ୍ତି, ସେତେବେଳେ ଆମେ ଜୀବନର ପ୍ରକୃତ ସତ୍ୟବୋଧକୁ ହିଁ ଭୁଲିଯାଉ । ମୁକ୍ତିବୋଧର ବ୍ୟାଖ୍ୟା କରୁ କରୁ ଆପଣାର ଅବଚେତନରେ ସେ 'ମୁଖା'ର ସମ୍ମୋହନରେ ବାନ୍ଧି ହେଇପଡ଼ିଛନ୍ତି । ଜଣେ ସଚେତନ ସ୍ରଷ୍ଟା ପକ୍ଷରେ ଏହା ଆଦୌ ଅସାଭାବିକ ନୁହେଁ । ମାନସିକ ଦ୍ୱନ୍ଦ୍ୱର ଅଭିବ୍ୟକ୍ତି 'ବିଇଙ୍ଗ୍'ରୁ 'ବିକମିଂ' ହେବାପାଇଁ ଆଧ୍ୟାତ୍ମିକ ଅନ୍ୱେଷାର ପ୍ରାକ୍ ପ୍ରସ୍ତୁତି ।

ଉତ୍ତର-ଆଧୁନିକ ସାହିତ୍ୟ ଚର୍ଚ୍ଚାରେ ଦୁଇଗୋଟି ବହୁ ପରିଚିତ ପ୍ରକରଣ **ବିଦ୍ରୋପନ୍ୟାସ** ଓ **ମେଟାଫିକସନ୍**କୁ ଆଧାର କରି ମୁଁ ଆଲୋଚନା ଆରମ୍ଭ କରିଥିଲି ଏବଂ ଏକଥା ବି କହିଥିଲି, ଏହି ପ୍ରକରଣର ନାୟକ **ଦିଗପହଣ୍ଡିର ଡ୍ରାଇଁମାଷ୍ଟ୍ରେ** । ଏବେ ଆଲୋଚନାର ଶେଷ ପର୍ଯ୍ୟାୟରେ ମୁଁ ପୁଣି ଆରମ୍ଭକୁ ଫେରିଯାଉଛି । ଆରମ୍ଭରେ ମୋର ବକ୍ତବ୍ୟଥିଲା ତାଙ୍କ ଚାରିଗୋଟି ଉପନ୍ୟାସର ଭାବଭୂମି 'ସଂସ୍କୃତି' । ଯେଉଁଠି ଦିଗପହଣ୍ଡି ଭିତରେ 'ବିଶ୍ୱ' ଅଛି ଏବଂ ବିଶ୍ୱ ଭିତରେ ଦିଗପହଣ୍ଡି ଅଛି । ତାଙ୍କ ଉପନ୍ୟାସ ଗୁଡ଼ିକର କାହାଣୀ ସଂରଚନାରେ ଜଟିଳତା ନାହିଁ । ପାରମ୍ପରିକ ଉପନ୍ୟାସ ପରି ସେଗୁଡ଼ିକ ବର୍ଣ୍ଣନାଧର୍ମୀ ବି ନୁହଁନ୍ତି । ମାତ୍ର ବିପୁଳକାୟ ଏହି କଥାକାବ୍ୟଗୁଡ଼ିକ ଅତି ଜଟିଳ ।

ଏକ ଜାତିର ସାଂସ୍କୃତିକ ଜୀବନବୋଧର ପରିଚର୍ଯ୍ୟା ପାଇଁ ସେ ଉପନ୍ୟାସର କାହାଣୀ ବାହାରକୁ ଯାଇଛନ୍ତି । ନିଜପାଇଁ ଭିନ୍ନ ଏକ ବାସ୍ତବ ଜଗତର ପରିକଳ୍ପନା ବି କରିଛନ୍ତି । ବଞ୍ଚିଥିବା ସଂସ୍କୃତିର ଘର ସର୍ବଶେଷ ନୁହେଁ, ଆମକୁ ବାରମ୍ବାର ତାହାକୁ ତିଆରି କରିବାକୁ ପଡ଼ିବ, **ଯାହା ଆମକୁ ସତ୍ୟବୋଲି କୁହାଯାଉଛି ତାହାକୁ ସର୍ବଶେଷ ସତ୍ୟ ବୋଲି କୁହାଯାଇ ପାରିବ ନାହିଁ । ଏହି ସତ୍ୟକୁ କହିବା ପାଇଁ ପୃଥିବୀରେ ରେଖା, ରଙ୍ଗ, ଶବ୍ଦ, ସୁର ମାନଙ୍କର ମଧ୍ୟ ଅଭାବ ରହିଛି**

Digitized by srujanika@gmail.com

**ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଏଇ ମୁହୂର୍ତ୍ତରେ ଆମେ ଦେଖିଥିବା ପୃଥିବୀ ବଦଳି ଯାଉଛି ପର ମୁହୂର୍ତ୍ତରେ । ପୁନଶ୍ଚ ଅନୁଭବ, ଅବବୋଧ, ବିଚାରକୁ ପରିପୂର୍ଣ୍ଣ ଭାବରେ ପ୍ରକାଶ କରିବା ପାଇଁ ଆମ ପାଖରେ ଭାଷା ବି ନାହିଁ ।** ତେଣୁ ଦିନନାଥ ଆପଣାର କଥାକାବ୍ୟ କଳାସହିତ ଆମର ସଂପର୍କ, ଜଣେ କଳାକାରର ଆପଣା ସୃଷ୍ଟକଳା ସହିତ ତାର ସଂପର୍କ, ସୃଜନ ପ୍ରକ୍ରିୟାରେ ପ୍ରକୃତି ସହିତ ଆମର ସଂପର୍କ ଏବଂ କଳା ଅବବୋଧରେ ଆମ ବିଚାର ସଂପର୍କରେ ସେ ଚର୍ଚ୍ଚା କରିଛନ୍ତି । ବ୍ୟକ୍ତି ଏବଂ ଦୃଶ୍ୟ, ବ୍ୟକ୍ତି ଏବଂ ସଙ୍ଗୀତ, ବ୍ୟକ୍ତି ଏବଂ ସାହିତ୍ୟ, ଆମ ଭିତରେ ଥିବା ଏକ ଆପେକ୍ଷିକ ଶୂନ୍ୟତା, ଆପେକ୍ଷିକ ସମୟ ଏବଂ ଆପେକ୍ଷିକ ଜୀବନର ହିଁ ଚିତ୍ର କେବଳ ଦେଇଥାଏ ଏବଂ ସଂସ୍କୃତି ଓ କଳାର ସୃଜନ ପ୍ରକ୍ରିୟାରେ ହିଁ ଚିତ୍ର କେବଳ ଦେଇଥାଏ ଏବଂ ସଂସ୍କୃତି ଓ କଳାର ସୃଜନ ପ୍ରକ୍ରିୟାରେ ସର୍ବଶେଷ ରୂପ ବୋଲି ଯେ କିଛି ନଥାଏ, ଏହି ଗୁରୁତ୍ୱପୂର୍ଣ୍ଣ ନନ୍ଦନତାତ୍ତ୍ୱିକ ପ୍ରସଙ୍ଗରେ ସେ ବାଖ୍ୟା ବିଭୋର ହେଇଛନ୍ତି ।

ଉପଯୁକ୍ତ ବିଚାରର ତର୍କଣାପାଇଁ ଦିନନାଥ ଏକ ନୂଆ ଭୂମିକାରେ ଆପଣା ସୃଷ୍ଟିରେ ବିଚରଣ କରିଛନ୍ତି । ଏ ଭୂମିକା, ଲେଖକ-ନାୟକର ଭୂମିକା । କଥାଗ୍ରନ୍ଥରେ କଥାକାରର ନାୟକତ୍ୱ ଅବଶ୍ୟ କିଛି ନୂଆ କଥା ନୁହେଁ । ଡିକେନ୍‌ସ, ଥୋମାସ୍ ହାର୍ଡ଼ି, ଫକୀରମୋହନ ଓ ବଙ୍କିମ ଚନ୍ଦ୍ରଙ୍କୁ ଆମେ ସେମାନଙ୍କ ଉପନ୍ୟାସରେ ଭେଟିଛୁ । କାହାଣୀ ବର୍ଣ୍ଣନା ଅବକାଶରେ ସେମାନେ ଆପଣା ଆପଣାର ରାୟ ବି ଆମକୁ ଶୁଣେଇ ଦେଇଛନ୍ତି । ମାତ୍ର ଦିନନାଥ ଏବଂ ସେମାନଙ୍କ ମଧ୍ୟରେ ପାର୍ଥକ୍ୟ - ଏହି ଆଧୁନିକ ମଣିଷ ଜଣକ ଜଣେ ବିଚାରକ ପରି ନିଜ ବକ୍ତବ୍ୟକୁ ସର୍ବଶେଷ କହିନାହାନ୍ତି । ପାଠକମାନଙ୍କ ସହିତ ଅନ୍ତରଙ୍ଗ ଆଳାପ କରିଛନ୍ତି ଏବଂ ସମ୍ଭାବ୍ୟ ସିଦ୍ଧାନ୍ତର ସୂଚନା ଦେଉଁ ଦେଉଁ କହିଦେଇଛନ୍ତି- ଏହା ମଧ୍ୟ ପରିବର୍ତ୍ତନଶୀଳ ଏକ ଦୃଶ୍ୟମାନ ଜଗତରୁ ଉଡ଼ିଯାଇଛନ୍ତି ଅଧିଜଗତ ଭିତରକୁ ପୁନଶ୍ଚ ଫେରୁଛନ୍ତି ଭୂମିକୁ । ସେଠି 'ଦିଗପହଣ୍ଡି' ନାହିଁ ସମଗ୍ର ବିଶ୍ୱ ଅଛି । ଡ୍ରଇଁମାଷ୍ଟ୍ରେ ନାହାନ୍ତି ମାନବାତ୍ମା ଅଛି । ମାର୍ଟିନ୍ କୁବର୍‌ଙ୍କ ଦାର୍ଶନିକ ପରିଭାଷାରେ କହିଲେ, ସେଠି 'ମୁଁ' ଅଛି ଏବଂ 'ସେ' ଅଛି ଏହି 'ସେ' ଏକ ବସ୍ତୁନୁହେଁ, ଏକ ତୃତୀୟ ପୁରୁଷ ନୁହେଁ । ଆମେ ନିଜ ବିଚାରରେ ହିଁ ପରସ୍ପର ସହିତ ଯୋଡ଼ି ହେଇଯାଉଁ । ପରସ୍ପର ଭିତରେ ନିଜକୁ ବ୍ୟକ୍ତ କରୁ । ଯେଉଁ ବିଚାରକୁ ଆମେ ଦିନନାଥଙ୍କ ତୁଣ୍ଡରେ କୁହାଇ ପାରିବା ଯେ ତାଙ୍କ 'ଦିଗପହଣ୍ଡି' ମୁଁ ଟି ବିଶ୍ୱଭାଣ୍ଡରେ ଆଉଟା କୋଟି ସଂଖ୍ୟକ କଳାକାର 'ମୁଁ'ର ଜନ୍ମ, ଗତିଶୀଳତା, ମୃତ୍ୟୁର ଏକ ପ୍ରକ୍ରିୟା । **ତେଣୁ ତାଙ୍କ 'କଥାକାବ୍ୟ' ଗୁଡ଼ିକ ଗୋଟିଏ ଗୋଟିଏ ସଂସ୍କୃତି ଚିତ୍ର । ଯେଉଁ ଚିତ୍ର କେବେ ତିଆରି ହେଇଥିଲା ଆମେ ଜାଣିନୁ, ମାତ୍ର ଏତିକି ଜାଣିଛୁ ତାହା କେବେ ଶେଷ ହେବ ନାହିଁ । ତାହାର ଯାତ୍ରା ଏକ ଅଧିଜଗତ ଅଭିମୁଖୀ ଏବଂ ତାର ସରୂପ ମଧ୍ୟ ବ୍ୟକ୍ତି ଓ ସମାଜର ଅନ୍ତରଙ୍ଗ ଅନୁଭବର ଗତିଶୀଳତା ।**

ଏବଂ, ଦିନନାଥଙ୍କ ସଂସ୍କୃତି ପରିଚର୍ଯ୍ୟାରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ସେ ଆପଣାକୁ ପ୍ରକାଶ କରିବା ଲାଗି ଶବ୍ଦର ଅଭାବ ମଧ୍ୟ ଅନୁଭବ କରିଛନ୍ତି । ପ୍ରତ୍ୟେକ ଶବ୍ଦର ଉତ୍ପତ୍ତି ଓ ବିବର୍ତ୍ତନ ମୂଳରେ ଏକ ସାଂସ୍କୃତିକ ଇତିହାସ-ବୋଧ ଅବଶ୍ୟ ରହିଛି । ଭାଷାବିଜ୍ଞାନୀମାନେ ଏହା ସ୍ୱୀକାର କରିଛନ୍ତି ପ୍ରତ୍ୟେକ ଶବ୍ଦ ଏକ ଜାତିର ସଂସ୍କୃତି-ସମ୍ଭୂତ । ଦିନନାଥ କଥା କାବ୍ୟରେ ପ୍ରୟୋଗ କରିଥିବା ଶବ୍ଦ 'ଦିଗପହଣ୍ଡି'ଠାରୁ ଆରମ୍ଭ କରି ପୃଥିବୀର ବହୁ ଦିଗନ୍ତକୁ ପ୍ରସାରିତ । ମାତ୍ର ଦିବ୍ୟ ଆଧ୍ୟାତ୍ମିକ ଅବବୋଧକୁ ପ୍ରକାଶ କରିବା ପାଇଁ ସେ ନିଜ ସହିତ କମ୍ ଝଗଡ଼ି ନାହାନ୍ତି । ପାଠକମାନଙ୍କ ଚେତନାରେ ଅବ୍ୟକ୍ତ ଅନୁଭବର ଆପାତଃ ସଞ୍ଚରଣପାଇଁ ଆପଣା ସୃଜନଶୀଳତାକୁ ଖଟଣୀ କରିଛନ୍ତି । **ତେଣୁ ତାଙ୍କ ଚିତ୍ରପରି ସାହିତ୍ୟ ମଧ୍ୟ ମଣିଷକୁ ଏକ କଳ୍ପିତ ବାସ୍ତବତା ଅନାସାଦିତ ଅନୁଭବ ପ୍ରତି ଉଦ୍ବେଳିତ କରିନେଇଛି । ସେ ସତେ ଯେପରି କହିବାକୁ ଚାହିଁଛନ୍ତି ଆମେ ଗଢୁଥିବା ଶବ୍ଦ, ରେଖା, ରଙ୍ଗ, ସ୍ୱରର ପ୍ରତୀକମାନେ ସେ ଠିକ୍ ବେଳେ ଆମକୁ ଜୀବନ୍ତ ଲାଗିବେ ଯେତେବେଳେ ଆମ ବିଚାର ଓ ଚେତନା ସେମାନଙ୍କ ମାଧ୍ୟମରେ ପ୍ରକାଶିତ ହୋଇ ପାରୁଥିବ । ଏବଂ ସେମାନେ ଆମ ବିଚାରଗତ ଦାରିଦ୍ର୍ୟରୁ ଆମକୁ ମୁକ୍ତ କରିବାରେ ସମର୍ଥ ହେଉଥିବେ । ଭବଘୂରା ଶ୍ରୀଯୁକ୍ତ ଦିନନାଥ ପାଠୀ ମାନବ ସଂସ୍କୃତିର ତାତ୍ପର୍ଯ୍ୟର ବ୍ୟାଖ୍ୟା ନିର୍ମାଣରେ ଅଜଣା କଳାବୋଧର ଅଧିକ ତର୍କଣା କରିପାରନ୍ତି ।**

Digitized by srujanika@gmail.com

**ହୃଷୀକେଶ ମଲ୍ଲିକ**

# ଶୂନ୍ୟତାର ଅଭିଜ୍ଞାନ

## ଉତ୍ତର-ଆଧୁନିକ ପ୍ରେକ୍ଷାପଟରେ ଦିନନାଥଙ୍କ ଉପନ୍ୟାସ : ଗଙ୍ଗାବତରଣ

'ଉତ୍ତର -ଆଧୁନିକ' ଶବ୍ଦଟିର ଉଚ୍ଚାରଣ ମାତ୍ରେ ମୋଟାମୋଟି ଭାବେ ଏହା ଏପରି ପ୍ରତୀତ ହେଉଛି ଯେ ଏମିତି ଏକ ବିଷୟର କଥା କୁହାଯାଉଛି, ଯାହା 'ଆଧୁନିକ' ଅଥଚ ଆଧୁନିକ ନୁହେଁ, ଆଧୁନିକ-ପରବର୍ତ୍ତୀ ବା ଏକ ଉତ୍ତରିତ-ଆଧୁନିକତା । ଗତ ଶତାବ୍ଦୀର ପ୍ରାୟ ଷଷ୍ଠ ଦଶକରେ ସେହି ସମୟର କଳା, କବିତା, ସାହିତ୍ୟ ଓ ବିଚାରବୋଧକୁ ସତନ୍ତ୍ରଭାବେ ଚିହ୍ନିତ କରିବାର ଦାୟବୋଧରୁ ହିଁ ଏପରି ଏକ 'ଶବ୍ଦାନୁସଙ୍ଗ'(vocabulary)ର ମୂଳତଃ ଜନ୍ମ । ଯେହେତୁ ଏହି ଆଲୋଚନାର ଉପଲକ୍ଷ୍ୟ ଉପନ୍ୟାସ, ଏଠାରେ କେବଳ ଉପନ୍ୟାସକୁ ଆଧାର କରି 'ଉତ୍ତର-ଆଧୁନିକତା' ସଂପର୍କରେ ସମ୍ୟକ୍ ଉପୋଦ୍‌ଘାତ ପ୍ରଦାନ କରାଯାଉଛି ଓ ଉତ୍ତର-ଆଧୁନିକ ତତ୍ତ୍ୱକୁ ବିସ୍ତାରିତ ଭାବେ ଆଲୋଚନା କରାନଯାଇ ଅନତିବିଳମ୍ବେ ଆଲୋଚ୍ୟ ଉପନ୍ୟାସ ଦିନନାଥ ପାଠୀଙ୍କର **ଗଙ୍ଗାବତରଣ**କୁ ଅବତରି ଆସିବାର ପ୍ରତିଶ୍ରୁତି ଦିଆଯାଉଛି । ପଞ୍ଚମରୁ ସପ୍ତମ ଦଶକ ପର୍ଯ୍ୟନ୍ତ ସୃଷ୍ଟି ହୋଇଥିବା ଉପନ୍ୟାସର ନୂତନ ତରିକାକୁ ଲକ୍ଷ୍ୟକରି ଏହା ଯେ ଆଧୁନିକ ପର୍ଯ୍ୟାୟବାଚୀ ନୁହେଁ, ଏକଥା ସମାଲୋଚକମାନଙ୍କର ହୃଦ୍‌ବୋଧ ହୋଇଛି । ପଞ୍ଚମ ଦଶକର ମଧ୍ୟଭାଗରୁ ଉପନ୍ୟାସ ରଚନାରେ ହାତଦେଇଥିବା ଆମେରିକୀୟ ଔପନ୍ୟାସିକ ଟ୍ରୁମାନ୍ କେପୋଟ୍ (Truman Capote) ନର୍ମାନ୍ ମେଲର୍ (Norman Mailer) ଓ ଉଇଲିୟମ୍ ଷ୍ଟିରନ୍ (William Styron) ପ୍ରଭୃତିଙ୍କ ଉପନ୍ୟାସ ଆଲୋଚନା କରିବାକୁ ଯାଇ ପ୍ରଖ୍ୟାତ ସମାଲୋଚକ ଇହାବ୍ ହାସାନ୍ ପ୍ରଥମେ ପୋଷ୍ଟମଡ଼ର୍ଣ୍ଣ ବା ଉତ୍ତର-ଆଧୁନିକ ଅନୁସଙ୍ଗ ମାଧ୍ୟମରେ ଏସବୁ ନୂତନ-ଧର୍ମୀ ଉପନ୍ୟାସ ଗୁଡ଼ିକର ଆକଳନ ପ୍ରୟାସ କରିଥିଲେ । ନୂଆ ଉପନ୍ୟାସ ବା ନୂଆ ଲେଖାକୁ ଚିହ୍ନଟ କରିବାପାଇଁ ସେତେବେଳକୁ ଯେଉଁସବୁ ଅନୁସଙ୍ଗର ପ୍ରୟୋଗ ହେଉଥିଲା, ତହିଁରୁ କେତେକ ହେଉଛି- Surfiction, Fabulation ଓ Metafiction । ୧୯୭୧ରେ ପ୍ରକାଶ ପାଇଲା ହାସାନ୍‌ଙ୍କ ଗ୍ରନ୍ଥ 'The Dismemberment of Orpheus: Toward a Postmodern Literature' । ଭିନ୍ନ ଭାଷା ଓ ଭାବର ବିଭବକୁ ନେଇ ଏକ ନୂଆ ନାଆଁ ବା ଶୀର୍ଷକ ଦାବୀ କରୁଥିବା ଏହି ନବ-ଉପନ୍ୟାସର କୌଳିନ୍ୟ ନିର୍ଦ୍ଧାରଣ କରିବାକୁ ଯାଇ ଇହାବ୍ ଏହାର ପାଞ୍ଚୋଟି ଲକ୍ଷଣ ଧାର୍ଯ୍ୟ କରିଛନ୍ତି । ସେଗୁଡ଼ିକ ହେଲା- (୧) ମାନବୀୟ ଆଚରଣ ତାତ୍‌କାଳିକତା ଓ ଉଦ୍ଭଟତା ଦ୍ୱାରା ନିୟନ୍ତ୍ରିତ, (୨) ନୈତିକତା ଜୀବନର ଅବଧାରିତ ସତ୍ୟ ନୁହେଁ, (୩) ଜୀବନର ନିୟାମକ ହେଉଛି ବିଚ୍ଛିନ୍ନତା, (୪) ଶ୍ଳେଷ ଓ ବିରୋଧାଭାସରେ ବିଗଠିତ ଜୀବନର ପ୍ରବାହ ଏବଂ (୫) ମଣିଷର ଜ୍ଞାନ ସୀମିତ ଓ ଆପେକ୍ଷିକ । ଲିଓତାର୍‌ଙ୍କ ଭାଷାରେ ଏହି ନୂତନ ସାହିତ୍ୟ ହେଉଛି ପରିବର୍ତ୍ତିତ ପ୍ରେକ୍ଷାପଟକୁ ଜୀବନର ନୂଆ ଉତ୍ତର । 'ପୋଷ୍ଟ୍-ମଡ଼ର୍ଣ୍ଣ'ର ଚରିତ୍ର ପାଠ୍ୟର ବିଷମତା (heterogeneity)କୁ ଉଦ୍ଦେଶ୍ୟକରି ଲିଓତାର୍ 'ପୋଷ୍ଟ୍-ମଡ଼ର୍ଣ୍ଣ' କଣ୍ଡିସନ୍ ଅନୁସଙ୍ଗର ପ୍ରୟୋଗ କରିଛନ୍ତି । 'ଉତ୍ତର-ଆଧୁନିକ' ପାଠ୍ୟ (text) ହେଉଛି ଶୈଳୀର ଏକ ଅଭିନବ ଅନ୍ତର୍ମନନ (a new introversion of form) ୧୯୬୦ ପାଖାପାଖି ସମୟକୁ ନିଜର ନିକଟତମ ପ୍ରାକ୍ତନ ଆଧୁନିକତା ଠାରୁ ବାଟଭାଙ୍ଗି ଚାଲିଆସୁଥିବା ବେଳେ ଉପସ୍ଥାପନା ଶୈଳୀ, ବିଷୟ ଚୟନ ଓ ଚରିତ୍ରାୟନରେ ବାରିହେଇପଡ଼ିଲା ଭଳି ବହୁ ଲକ୍ଷଣ ଉତ୍ତର-ଆଧୁନିକ ଉପନ୍ୟାସରେ ସତଃ ଦେଖିବାକୁ ମିଳିଥିଲା । ନାନା ଫେସନର ପ୍ରତୀକ ପ୍ରୟୋଗ ଲୋକାଚାରର ଅନୁଶୀଳନ, ଆର୍କିଟାଇପ୍‌ର ନବନ୍ୟାସ ସାଙ୍ଗକୁ ହେତୁବାଦ ଓ ବିଜ୍ଞାନଦ୍ୱାରା ସମ୍ଭବ

Digitized by srujanika@gmail.com

ହେଉନଥିବା ଏକ ଶୃଙ୍ଖଳାବୋଧ ହେଲା ଉପନ୍ୟାସରେ ଅଙ୍ଗୀଭୂତ । ତୁଚ୍ଛ ଆବେଗାଦିଶଯ୍ୟକୁ ଅପସାରଣ କଲା ଭାଷାର ଏକ ଶାଳୀନ ଅଭିଜାତ ପ୍ରୟୋଗ, ଯାହା ପ୍ରକାରାନ୍ତରେ ଆଣିଲା ବିଚ୍ଛୁରିତ ଓ ବିପର୍ଯ୍ୟସ୍ତ ଭାଷାର ଅଭିନିଧାନରେ ଏକ ଅନାସ୍ୱାଦିତ ସଂହତି । ଆମେରିକାର କଥାଶିଳ୍ପୀ ଡୋନାଲ୍ଡ୍ ବାର୍ଥେଲ୍ମ (Donald Barthelme) କଥାଶିଳ୍ପର ବିବର୍ତ୍ତିତ ଗଦ୍ୟକୁ ଆଖ୍ୟାୟିତ କଲେ ଏହିପରି - 'a curious kind of prose, sometimes feeling hard and shellacked, like plastic, at other times fluttering like gay ribbons over the contemporary landscape, like the bunting over used car lots.' ୧୯୬୭ରେ ପ୍ରକାଶିତ ରିଚାର୍ଡ ବ୍ରାଉଟିଗାନ୍‌ଙ୍କ ଉପନ୍ୟାସ **'Trout Fishing in America'** କୁ ଡୋନାଲ୍ଡ୍ ଅଭିହିତ କଲେ- 'an idyll, a satire, a quest, an exercise in nostalgia, a lament for America, or a joke-but it is a book blich floats effortlessly free of all categories and it is just this experience of floating free blich is communicated while one is reading the book.' ଉପରୋକ୍ତ ଉଲ୍ଲେଖରୁ 'ଉତ୍ତର ଆଧୁନିକ' ଉପନ୍ୟାସର ଯେଉଁ କୁଳାଚାର ସୂଚୀତ ହୁଏ, ସେଗୁଡ଼ିକୁ ନିମ୍ନମତେ ବ୍ୟକ୍ତ କରାଯାଇ ପାରେ । ଯଥା-ଏ ଧରଣର ଗଦ୍ୟ ହେବ କୌତୁହଳୋଦ୍ଦୀପକ, କେବେ କଠିନ, କେବେ ପ୍ଲାଷ୍ଟିକ୍ ପରି ସମ୍ପ୍ରସାରଣଶୀଳ, କେବେ ପ୍ରତିମା ପରି ନିଟୋଳ, ଫୁରନ୍ତ ତ କେବେ ପୁଣି ବିଦ୍ରୂପ, କେବେ ଅନୁସନ୍ଧାନ ତ କେବେ ଅତୀତ ସହ ସାଲିସ, କେବେ ଜନ୍ମମାଟି ପାଇଁ ବିଳାପ ତ ଆଉ କେବେ ପରିହାସ । କିନ୍ତୁ ସେ ଯାହାହେଉ, 'ଉତ୍ତର ଆଧୁନିକ' ସାହିତ୍ୟର ନାନା ବର୍ଗୀକରଣରୁ ଅବଧାରିତ ଭାବେ ମୁକ୍ତ ହୋଇ ଏପରି ସ୍ୱଚ୍ଛନ୍ଦବିହାର କରିବ, ଯାହା ପାଠକର ଅବବୋଧକୁ ଅନାୟାସରେ ଆଲୋଡ଼ିତ କରିପାରିବ । ସାହିତ୍ୟ ତତ୍ତ୍ୱବିଦ୍ ମାସୁଦ୍ ଜାଭାର୍‌ଜାଡହେ (Mas'ud Zavarzadeh)ଙ୍କ ଭାଷାରେ ଆଧୁନିକ ଉପନ୍ୟାସ ଯଦିହୁଏ 'ସମଗ୍ରାୟିତ ଉପନ୍ୟାସ' Totalizing Novel, ତେବେ ଉତ୍ତର-ଆଧୁନିକ ଉପନ୍ୟାସ ହେବ 'କ୍ରାନ୍ତାଧୁନିକ ଉପନ୍ୟାସ' (Supramodernist Novel) ଜର୍ଜ ଏଲିୟଟ୍ ଓ ଭିର୍ଜିନିୟା ଉଲ୍‌ଫଙ୍କ ଉପନ୍ୟାସଠାରୁ ଉତ୍ତର ଆଧୁନିକ ଉପନ୍ୟାସ'ର ଏହାହିଁ ହେଉଛି ମୌଳିକ ଫରକ । ବୈଷୟିକୀ ବାସ୍ତବତା (technological-reality) ହେଉଛି 'ଉତ୍ତର-ଆଧୁନିକତା'ର ଭୃଗୁ-ପାଦ । ସାରସତ- ପରମ୍ପରାର ନବାୟନହିଁ ହେଉଛି ତାର ଦାୟ । ଉତ୍ତର-ଆଧୁନିକ ବର୍ତ୍ତମାନ ଭିତରେ ଖୋଜେ ଅତୀତର ଗୌରବ ଓ ଭବିଷ୍ୟତରେ ସମାହିତ କରେ ବର୍ତ୍ତମାନର ସ୍ୱପ୍ନ । ବାସ୍ତବତାର ବ୍ୟାଖ୍ୟା(Interpretation) ନୁହେଁ, ବାସ୍ତବତାର ଉଦ୍‌ଭାବନ (invention) ହେଉଛି ତାର ଲକ୍ଷ୍ୟ । ମେଟାଫର୍ ତା'ର ପ୍ରାଣ, କବିତ୍ୱ ସ୍ପନ୍ଦନ । **Love's Body** (୧୯୬୬) ଗ୍ରନ୍ଥରେ ନର୍ମାନ୍ ଓ ବ୍ରାଉନ୍ ଉତ୍ତର-ଆଧୁନିକତାର ଯେଉଁ କେତୋଟି ଲକ୍ଷଣ ସଂପର୍କରେ ସୂଚନା ଦେଇଛନ୍ତି, ତାହା ହେଉଛି - ସାଧୀନ ବକ୍ତବ୍ୟ (free speech) ମୁକ୍ତ ଅନୁସଙ୍ଗ (free association), ଅବାରିତ ଚିନ୍ତା (random thoughts), ସତଃସ୍ଫୂର୍ତ୍ତ ପ୍ରବାହ (spontaneous movements) ଉତ୍ତର-ଆଧୁନିକ ତା'ର ସାରସତ-ଅଭିଯାନରେ ସର୍ବଦା ଆରୋହଣ ମୁଖୀ । ବିଜ୍ଞାନ-ପ୍ରଦତ୍ତ ଜଡ଼ବାଦୀ ଜ୍ଞାନରେ ତା'ର ଆସ୍ପୃହା ପ୍ରଶମିତ ନୁହେଁ, ସର୍ବଶ୍ରେଷ୍ଠ ଜ୍ଞାନ ଓ ସର୍ବୋପରି ଶୂନ୍ୟତାର ଅଭିଜ୍ଞାନ ହିଁ ତା'ର ଅଭିଳାଷିତ ଲକ୍ଷ୍ୟ । ବସ୍ତୁ ସହ ବସ୍ତୁର, ଘଟଣାସହ ଘଟଣାର ସ୍ଥାନ ସହ ସ୍ଥାନର ଓ ସମୟ ସହ ସମୟର ଯେଉଁ ସଖ୍ୟ ଉତ୍ତର ଆଧୁନିକ ରଚନାରେ ସଂଭବ ହୁଏ, ତାହା ଯାନ୍ତ୍ରିକଭାବେ ସଂଘଟିତ ହୁଏନାହିଁ । ହୁଏ ମ୍ୟାଜିକ୍ ପରି ସତଃ ଯାହାକୁ ଉତ୍ତର-ଆଧୁନିକ ପରିଭାଷାରେ କୁହାଯିବ 'ଆଲ୍‌କ୍‌ମିକ୍' alchemic ଏଣୁ 'ଉତ୍ତର-ଆଧୁନିକ' ସାହିତ୍ୟର ମହିମା ତଥା ଦ୍ୟୁତିମା ବିଶ୍ଳେଷଣରେ ନଷ୍ଟ ହେଇଯାଏ, କାରଣ ବିଶ୍ଳେଷଣ ହିଁ *'ପାଠ୍ୟ'ରେ ଥିବା 'ଯାଦୁ'କୁ ଅଣରହସ୍ୟାୟିତ କରିଦିଏ । ଏଣୁ ଅର୍ଥର ଆନ୍ତରିକତା ନୁହେଁ, ଅର୍ଥର* ଅବଗୁଣ୍ଠିତ - ଯାଦୁକାରିତା ଭିତରେ ହିଁ 'ଉତ୍ତର-ଆଧୁନିକ' 'ପାଠ୍ୟ'ର ବ୍ରହ୍ମ-ଠାବ ପାଠକ ଦ୍ୱାରା

Digitized by srujanika@gmail.com

ସମ୍ଭବ ହୋଇଥାଏ । ଏଇହେଲା ସଂକ୍ଷେପରେ 'ଉତ୍ତର-ଆଧୁନିକ' ଉପନ୍ୟାସର ଅନ୍ତରୀଣ ବିଭୂତି, ଯାହାକୁ ପୃଷ୍ଠଭୂମିରେ ରଖି ଆମେ ବର୍ତ୍ତମାନ ଦିନନାଥଙ୍କ ଉପନ୍ୟାସ **ଗଙ୍ଗାବତରଣ**ର ବିଷୟବିନ୍ୟାସ, ଚରିତ୍ରାୟନ ଓ କ୍ରୀଡ଼ାୟିତ-ଭାଷା (playful-language) କୁ ସମ୍ୟକ୍ ଭାବେ ଅନୁଶୀଳନ କରିପାରିବା ।

ଦିନନାଥଙ୍କ ଉପନ୍ୟାସ **ଗଙ୍ଗାବତରଣ** ହେଉଛି ଲେଖକଙ୍କର ଚତୁର୍ଥ **ଚିତ୍ରୋପନ୍ୟାସ**, ଯାହା ପ୍ରକାଶ ପାଏ ୨୦୦୨ ମସିହାରେ । ଉପନ୍ୟାସଟିର ମୋଟ ୭ଟି ପରିଚ୍ଛେଦ, ଯାହାକୁ ସେ 'ପ୍ରସ୍ଥ' ଭାବେ ଆଖ୍ୟାୟିତ କରନ୍ତି । ସାତୋଟି ଯାକ 'ପ୍ରସ୍ଥ'ରେ ସ୍ଥାନ ପାଇଛି ସାତୋଟି ଆପାତତଃ ଭିନ୍ନ କାହାଣୀ ବା ପ୍ରସଙ୍ଗ, ଯାହାର କେନ୍ଦ୍ରବିନ୍ଦୁରେ ରହିଛି କାଶୀ-ଗଙ୍ଗା । ପ୍ରଚ୍ଛଦଲିପିରେ ଉଲ୍ଲେଖ ଅଛି - 'ଗଙ୍ଗାବତରଣ ଜୀବନପ୍ରବାହର କାବ୍ୟ ଓ ରୂପାନ୍ୱେଷୀ ରୂପାନନ୍ଦଙ୍କ କାଶୀ ଅନୁଭବର କାହାଣୀ । ଏହି କାହାଣୀ କେବଳ ରୂପାନନ୍ଦଙ୍କ ନିଜସ୍ୱ ନୁହେଁ । ଯେଉଁମାନେ ଉତ୍ତରଣର କାମନା ରଖି ଗଙ୍ଗାରେ ଅବତରିଛନ୍ତି, ତଥାଗତ ବୁଦ୍ଧଙ୍କଠାରୁ ସୁଇସ୍‌ଶିଳ୍ପୀ ଆଲିସ୍ ବୋନରଙ୍କ ଯାଏଁ, ସେମାନଙ୍କ ଆଶା, ଆକାଙ୍‌କ୍ଷା ଓ ପ୍ରାପ୍ତିଭିତରେ ଏହି ପ୍ରୟାସ ଓ ଉଲ୍ଲାସ ସୁଷୁମ୍ନାରେ କୁଣ୍ଡଳିନୀ ଭଳି ସୁପ୍ତ ଓ ଜାଗ୍ରତ । ଅବତରଣ ଗଙ୍ଗାଙ୍କ ଠାରୁ ଆରମ୍ଭ ଓ ଗଙ୍ଗାଙ୍କ ପାଖରେ ଶେଷ । ଅବତରଣର ଆରମ୍ଭ ଓ ଶେଷ ମଧ୍ୟରେ ଏହି ଉପନ୍ୟାସ କାଶୀଧାମରେ ଗୋଟିଏ ମାତ୍ର ବର୍ଷର କାହାଣୀ, ଚିତ୍ରକଳାର ଉତ୍ତରିତ ବର୍ଣ୍ଣବିଭାରେ ବିମଣ୍ଡିତ ଓ ଚିତ୍ରତତ୍ତ୍ୱରେ ରସାଣିତ ।' ଗ୍ରନ୍ଥର ଉପକ୍ରମଣିକା 'ଅମୂର୍ତ୍ତ ସଂଳାପ'ରେ ଲେଖକ 'ଅବତରଣ'ର ତାତ୍ପର୍ଯ୍ୟ ସମ୍ପର୍କରେ ଉଲ୍ଲେଖକରି ଶିବ-ପାର୍ବତୀଙ୍କ କଥୋପକଥନ ଛଳରେ 'ଗଙ୍ଗାବତରଣ'ର ଆଦ୍ୟ ଅବତାରଣା କରିଛନ୍ତି । ଏଥିରେ ବାରାଣସୀର ମହିମା କୀର୍ତ୍ତନ ହୋଇଛି । ଶିବ ପାର୍ବତୀଙ୍କ ସମ୍ମୁଖରେ ବାରାଣସୀର ମହିମା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ରୂପାନନ୍ଦଙ୍କ ଜୀବିକାନୁଭୂତିର ଅବଧାରଣା ନିମିତ୍ତ ପାର୍ବତୀଙ୍କୁ ନେଇ ଗଙ୍ଗାତଟରେ ଅବତରିଛନ୍ତି ଓ ଏଇଠୁ ଆରମ୍ଭ ହୋଇଛି ଉପନ୍ୟାସରେ ମୁଖ୍ୟ କାହାଣୀ । ପ୍ରଥମ ପ୍ରସ୍ଥରେ ରୂପାନନ୍ଦ ଦିଗପହଣ୍ଡିରୁ ଯାଇ ବାରାଣସୀର ଆଲିସ୍‌ମାତାଙ୍କ ମଠରେ ପହଞ୍ଚିଛନ୍ତି । ସନ୍ନ୍ୟାସିନୀ ଲତିକାନନ୍ଦ ତାଙ୍କୁ ସମାଦରରେ ପାଛୋଟିନେଇଛନ୍ତି । ସ୍ୱପ୍ନରେ ଆଲିସ୍‌ମାତା ତାଙ୍କୁ ଏକ ଦିବ୍ୟ ପ୍ରଚକ୍ଷୁ ଦେଇଛନ୍ତି ଓ କହିଛନ୍ତି - 'ଜୀବନ ଯୁଦ୍ଧରେ ତମେ ଯେତେବେଳେ କ୍ଳାନ୍ତ ବିଷର୍ଣ୍ଣ ହେଇପଡ଼ିବ ଯେତେବେଳେ ବସ୍ତୁର ସ୍ଥୂଳତା ତମକୁ ମୋହଗ୍ରସ୍ତ କରିଦେବ, ଯେବେ ଦେଖିବ ଆଗକୁ ବଢ଼ିବାର ସମସ୍ତ ରାସ୍ତାବନ୍ଦ, ସେତେବେଳେ ଏ ପ୍ରଚକ୍ଷୁ ଧାରଣ କରିବ ।' ଦ୍ୱିତୀୟପ୍ରସ୍ଥରେ ଆଶ୍ରମବାସୀ ନିତ୍ୟାନନ୍ଦ ଓ ରୂପାନନ୍ଦ ଭରତର ଡଙ୍ଗାରେ ଗଙ୍ଗାଭ୍ରମଣରେ ଯାଇଛନ୍ତି । ଭରତ ଗଙ୍ଗା ଓ ବାରାଣସୀକୁ ନେଇ ସ୍ମୃତିରୁ ନାନା ଅନୁଭୂତି ବର୍ଣ୍ଣନା କରିଛି । କବୀରଙ୍କ ଦୋହା ବୋଲି ମୁଗ୍ଧ କରୁଛି ନିତ୍ୟାନନ୍ଦ ଓ ରୂପାନନ୍ଦଙ୍କୁ । ରାଜା ଦିବୋଦାସ, ରାଣୀ ଲୀଳାବତୀଙ୍କ କାହାଣୀଠାରୁ ଆରମ୍ଭ କରି ବାରାଣସୀରୁ ଶିବଙ୍କ ସମେତ ସମସ୍ତ ଦେବଦେବୀଙ୍କ ନିର୍ବାସନ ଓ ପୁନଶ୍ଚ ସଂସ୍ଥାପନ ଆଦି ଘଟଣା ଭରତ ରୂପାନନ୍ଦଙ୍କୁ ଶୁଣାଇଛି । ରୂପାନନ୍ଦଙ୍କ ସ୍ୱପ୍ନ ଦର୍ଶନ ଓ ନିଦ୍ରାଭଙ୍ଗ ପରେ ଆଲିସ୍‌ଙ୍କ ଡାଏରୀ ପାଠ ପ୍ରଭୃତି ଏଥିରେ ସ୍ଥାନ ପାଇଛି । ତୃତୀୟ ପ୍ରସ୍ଥରେ ତିଳନାନୀ ବନାମ ତିଳଖୁଡ଼ୀର କରୁଣ ଜୀବନ କାହାଣୀ ରୂପାନନ୍ଦଙ୍କ ମୁଖରେ ଲେଖକ ବର୍ଣ୍ଣନା କରିଛନ୍ତି । ବାଲ୍ୟବିଧବା ତିଳ ତାନ୍ତ୍ରିକ ଧନେଶ୍ୱରଙ୍କୁ ବିବାହ କରନ୍ତି । ତନ୍ତ୍ରସାଧନାର କୁଫଳରୁ ଧନେଶ୍ୱରର ମୃତ୍ୟୁ ଘଟିଛି ଓ ତିଳ ଦ୍ୱିତୀୟଥର ପାଇଁ ବିଧବା ହୋଇଛି । ନିବରଙ୍ଗ ଓ ନିପତିକ ତିଳ ଘନଶ୍ୟାମକୁ ପୋଷ୍ୟପୁତ୍ର କରିଛି । ଶାସନ ଅଭାବରୁ ଘନ ବିପଥଗାମୀ ହୋଇଛି ଓ କେଉଟଝିଅ କନକକୁ ମାଆର ଅନିଚ୍ଛା ସତ୍ତ୍ୱେ ବିବାହ କରିଛି । ତା'ର ବିବାହ ପରେ ତିଳ ଯାଇଛି ତୀର୍ଥଯାତ୍ରାରେ। ବିଶ୍ୱନାଥ ମନ୍ଦିରରେ

Digitized by srujanika@gmail.com

ନିରୁଦ୍ଦିଷ୍ଟା ହୋଇ ଅସାମାଜିକ ଯୁବକଙ୍କ କବଳରେ ପଡ଼ିଛି । ଶେଷରେ ଧୁନିବାବାଙ୍କ ପାଶବିକ କାମନାର ଶୀକାର ହୋଇ ବାରବାର ଧର୍ଷିତା ହୋଇଛି । ଘଟଣାଚକ୍ରରେ ସେ ବିନ୍ଦୁମାଧବ ମଠରେ ରହିଛି ଆଶ୍ରିତା ହୋଇ । ଫଳାହାରୀ ବାବାଙ୍କ ପ୍ରବଚନ ସଭାରୁ ତଳବ ସାରିବା ପାଇଁ ମଠବାସିନୀ ଫୁଲକୁ ନେଇ ମଠକୁ ଫେରୁଥିବା ବେଳେ ପୁନଶ୍ଚ ଅନ୍ଧାରରେ ଗଙ୍ଗାନଦୀର ପାହାଚରେ ଧର୍ଷିତା ହୋଇ ମୃତ୍ୟୁବରଣ କରିଛି ତିଳ । ଚତୁର୍ଥ ପ୍ରସ୍ଥରେ ଉତ୍ତର ପ୍ରଦେଶର ମାଧବଗଞ୍ଜର ଗୁଲାବସିଂ ଓ ସ୍ତ୍ରୀ ଜାହାନାରା ବେଗମ୍‌ଙ୍କ ପରିବାରର କାହାଣୀ ବର୍ଣ୍ଣନା ହୋଇଛି । ଗୁଲାବସିଂ କଞ୍ଚନଜାତିର ଲୋକ, ଦାରୀବୃତ୍ତି ବଂଶାନୁଗତ ପେଷା । ଗୁଲାବର ଚାରିଝିଅ ଚାନ୍ଦିନୀ, କୁସୁମ, ତାରା ଆଉ ଅଙ୍ଗୁର । ଲକ୍ଷ୍ନୌର ସୌଦାଗର ଖାଁ କାକା ଜାହାନାରାର ଦେହଭୋଗ ପାଇଁ ମଝିରେ ମଝିରେ ଛୁଟିଆସେ ଲକ୍ଷ୍ନୌରୁ ମାଧବଗଞ୍ଜ । ତାରି ଇସାରରାରେ ଚାନ୍ଦିନୀ ଯାଇ ସାମିଲ୍ ହୋଇଛି ଲକ୍ଷ୍ନୌର ବାଇଜିକୋଠିରେ ଓ ଘଟଣାକ୍ରମେ ଉପଭୋଗ୍ୟା ହୋଇଛି ମାଆର ଉପଭୋକ୍ତା ମାଂସଲୋଭୀ ଖାଁ ବାବାର । କୁସୁମ କିନ୍ତୁ ବନାରସ ଯାଇ ବେଶ୍ୟାବୃତ୍ତି ପରିବର୍ତ୍ତେ ଯୋଗିନୀ କୁସୁମ ମାତାରେ ପରିଣତ ହୋଇଛି । ପରେ ଯୌନରୋଗରେ ଆକ୍ରାନ୍ତ ହୋଇ ଗଙ୍ଗାସ୍ନାନରେ ଯାଇଥିବା ଚାନ୍ଦିନୀର ତା'ର ଶେଷ ସାକ୍ଷାତ୍ ହୋଇଛି ବାରାଣସୀରେ ଓ କୁସୁମଠୁଁ ପ୍ରସାଦ ସେବନ କରି ମୁକ୍ତିର ସାଦ ଅନୁଭବ କରିଛି । ପଞ୍ଚମ ପ୍ରସ୍ଥରେ ଆସିଛି ତଥାଗତ ବୁଦ୍ଧଙ୍କ ବାରାଣସୀ ଆଗମନ ଓ ଧର୍ମଚକ୍ର ପ୍ରବର୍ତ୍ତନ ପ୍ରସଙ୍ଗ । କୌଣ୍ଡିନ୍ୟ ଓ ତଥାଗତଙ୍କ କଥୋପକଥନ ମାଧ୍ୟମରେ ଲେଖକ ବୌଦ୍ଧଯୁଗର ସ୍ମୃତିକୁ ପାଠକ ପ୍ରାଣରେ ପୁନରୁଜ୍ଜୀବିତ କରିପାରିଛନ୍ତି ଖୁବ୍ ସଫଳ ଭାବରେ । ଷଷ୍ଠ ପ୍ରସ୍ଥରେ ଲତିକାନନ୍ଦଙ୍କ ମୁଖରେ ଲେଖକ ଶିଳ୍ପ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଗଭୀର ତଥ୍ୟ ଉତ୍‌ଥାପନ କରିଛନ୍ତି । ଏହି ପରିଚ୍ଛେଦରେ ପୁନଶ୍ଚ ଆସିଛି ଆଲିସ୍‌ଙ୍କ ଡାଏରୀ ଏବଂ ସପ୍ତମ ପ୍ରସ୍ଥରେ ଚର୍ଚ୍ଚିତ ହୋଇଛି ନେପାଳୀବାବାଙ୍କ ସହ ରୂପାନନ୍ଦଙ୍କ ସାକ୍ଷାତର ଅଲୌକିକ ଅନୁଭୂତି । ଚିତ୍ରକଳାର ଯେଉଁ ସୂକ୍ଷ୍ମ ଆଧାତ୍ମିକ ତତ୍ତ୍ୱ ଏଇ ପରିଚ୍ଛେଦରେ ରୂପାୟିତ ହୋଇଛି ନେପାଳୀବାବାଙ୍କ ତୁଣ୍ଡରେ, ତାହା ଉପନ୍ୟାସକୁ ଏକ ଆଧାତ୍ମିକ ଓ ତାତ୍ତ୍ୱିକ ଉଚ୍ଚତା ଆଣିଦେଇଛି । ମୋଟାମୋଟି ଭାବେ ସମଗ୍ର ଉପନ୍ୟାସଟିର ଦୁଇଟି ଦିଗ । ଗୋଟିଏ ଜୀବନରେ ବୈଚିତ୍ର୍ୟ ଓ ବିଭୂତିର ଉପସ୍ଥାପନ ଏବଂ ଅନ୍ୟଟି କଳା ଓ ସୃଷ୍ଟିଶୀଳତାର ଅଲୌକିକ ଉସସନ୍ଧାନ । ସାତୋଟି ପ୍ରସ୍ଥରେ ନାଦିତ ଓ ବର୍ଣ୍ଣିତ ହୋଇଛି ସାତୋଟି ଭିନ୍ନ ପ୍ରସଙ୍ଗ, ତଥାପି ମନେହୁଏ ଯେପରି ଏହା ହେଉଛି ଗୋଟିଏ ସଂପୂର୍ଣ୍ଣ ଏକକ, ହରିତ ସପ୍ତପର୍ଣ୍ଣୀ । ଜୀବନର କାରୁଣ୍ୟ ଓ ବିଷାଦ ଅପ୍ରାପ୍ତି ଓ ଅବମାନନା, କାମନା ଓ ମୋକ୍ଷ, ପାବନ ଓ ପ୍ରତାରଣା, ଦାରିଦ୍ର୍ୟ ଓ ଉଚ୍ଚାକାଂକ୍ଷା, ପାଶବିକତା ଓ ଆକସ୍ମିକତା, ଭୌତିକ ଓ ଆଧିଭୌତିକ -ସବୁ ଯେପରି ଫେଣ୍ଟାଫେଣ୍ଟି ହେଇ ଶିବ ମସ୍ତକର ଘର୍ଷଣରେ ପରିଣତ ହୋଇଯାଇଛି । ସ୍ମୃତି ସହ ଅନ୍ତରଙ୍ଗ ହୋଇ ଉଠିଛି ଅତୀତର ବିବର୍ଣ୍ଣ ଓ ଧୂସର ଇତିହାସ । ସପ୍ନ ଓ ଜାଗୃତି ହୋଇଉଠିଛି ପରସ୍ପରର ଅନ୍ତରଙ୍ଗ ସଖୀ । **ପତିତପାବନୀ ଗଙ୍ଗାକୁ ପୃଷ୍ଠଭୂମିରେ ରଖି ନାନା କାହାଣୀ ଓ ଉପକାହାଣୀ ମାଧ୍ୟମରେ ଦିନନାଥ ତାଙ୍କର ଏହି ୨୭୧ ପୃଷ୍ଠାର ଯେଉଁ ଉପନ୍ୟାସଟି ରଚନା କରି ଓଡ଼ିଆ ପାଠକଙ୍କୁ ଭେଟି ଦେଇଛନ୍ତି, ତାର ବିକଳ୍ପ କ୍ୱଚିତ୍ ସୁଲଭ ଓଡ଼ିଆ ଉପନ୍ୟାସ ଜଗତରେ ।**

ତେବେ ଏଠି ପ୍ରଶ୍ନଉଠୁଛି, ଉପନ୍ୟାସଟିକୁ ତ ଉପନ୍ୟାସ କୁହାଯିବ ନିଶ୍ଚୟ, କିନ୍ତୁ ଉତ୍ତର ଆଧୁନିକ କୁହାଯିବ କାହିଁକି ? ସୁଧୀବୃନ୍ଦ ! ଏଇ ନିବନ୍ଧର ପ୍ରାକ୍-ଭାଗରେ ଉତ୍ତର-ଆଧୁନିକ ଉପନ୍ୟାସର ବହୁ ଲକ୍ଷଣ ମଧ୍ୟରୁ ସଂକ୍ଷେପରେ ଯେଉଁ କେତୋଟି ଲକ୍ଷ୍ୟଣର ଉଦାହରଣ ଦିଆଯାଇଛି, ଗଙ୍ଗାବତରଣର ମନନପ୍ରିୟ ପାଠକଭାବେ ସେଥିସହ ଉପନ୍ୟାସଟିକୁ ମିଳାଇ

Digitized by srujanika@gmail.com

ଦେଖିଲେ ଏହାର କିଞ୍ଚିତ୍ ଉତ୍ତର ଆପଣମାନେ ନିଶ୍ଚୟ ପାଇଯିବେ । ତେବେ ବକ୍ତବ୍ୟର ଅସଂପୂର୍ଣ୍ଣତାକୁ ଦୂର କରିବା ଲକ୍ଷ୍ୟରେ କେବଳ ଉତ୍ତର-ଆଧୁନିକତାର ଆଲୋକଉତ୍ସ ସମ୍ମୁଖରେ 'ଗଙ୍ଗାବତରଣ'କୁ ଖୋଲିଧରୁଛି । ଯଦ୍ୱାରା ଉପନ୍ୟାସଟିର ଉତ୍ତର-ଆଧୁନିକ ବୈଶିଷ୍ଟ୍ୟ ଆପଣମାନଙ୍କ ସମକ୍ଷରେ ଯତ୍‌କିଞ୍ଚିତ ପ୍ରତିଭାତ ହୋଇପାରିବ । ପ୍ରଥମେ ଉପନ୍ୟାସଟିର ପଞ୍ଜର (Structure)ଟିକୁ ଦେଖନ୍ତୁ । ଉପନ୍ୟାସଟି ଆଠଟି ପାଦରେ ଛିଡ଼ାହୋଇଛି(କାରଣ ଅମୂର୍ତ୍ତସଂଳାପକୁ ଲଗାଇ ଏଥିରେ ମୋଟ ୮ଟି ପ୍ରଭାଗ ରହିଛି) । ୧୦ଟିର ଉର୍ଦ୍ଧ୍ୱ ରେଖାଚିତ୍ର ଗ୍ରନ୍ଥଟିରେ ସାମିଲ୍ ହୋଇଛି । ଯାହା ମୁଖ୍ୟତଃ ଗଙ୍ଗା ଓ ବାରାଣସୀ ସମ୍ବନ୍ଧୀୟ । ଉପନ୍ୟାସର ୨୪୨ପୃଷ୍ଠାରେ ଯେଉଁ କାଳୀମୂର୍ତ୍ତି ସ୍ଥାନିତ, ତାହା ସମ୍ଭବତଃ ସୁଇସ୍ ଚିତ୍ରଶିଳ୍ପୀ ଆଲିସ୍‌ଙ୍କର ଯେ କି ଗ୍ରନ୍ଥର ଏକ ପ୍ରମୁଖ ଚରିତ୍ର । ପ୍ରତ୍ୟେକ ପ୍ରଭାଗ ସ୍ୱୟଂ ସଂପୂର୍ଣ୍ଣ ମନେ ହେଉଥିଲେ ବି ପ୍ରତ୍ୟେକରୁ ପ୍ରତ୍ୟେକକୁ ଯିବାପାଇଁ ପ୍ରସ୍ଥାନ ଅଳିନ୍ଦ ରହିଛି, ହେଉପଛେ ସେ ଅଳିନ୍ଦ ସଂକୀର୍ଣ୍ଣ । ଏଥିରେ ମନେହୁଏ, ଉପକୂଳବର୍ତ୍ତୀ ଗାଁର ଖଞ୍ଜାଘର ନୁହେଁ, ଦକ୍ଷିଣୀ ଦାଣ୍ଡିଘର ପରି ଦୈର୍ଘ୍ୟରେ କଳ୍ପିତ ହୋଇଛି ଉପନ୍ୟାସର ଶରୀର । ଦାଣ୍ଡଦୁଆରେ ସରୁଚିତା, ପଇଡ଼-ଆମ୍ବଡାଳର କଳସ ପରି ସଂକ୍ଷିପ୍ତ ଉପକ୍ରମଣିକାଟିଏ ଓ ଦାଣ୍ଡଘରେ କଥୋପକଥନ ମୁଦ୍ରାରେ ଶିବ-ପାର୍ବତୀ, ଯେଉଁଠି ରୂପାନନ୍ଦଙ୍କ କାଶୀ-ଲୀଳା ଦେଖିବା ପାଇଁ ଶିବ-ପାର୍ବତୀଙ୍କୁ ନିବେଦନ କରୁଛନ୍ତି । ମନେହୁଏ, ସତେଯେମିତି ଶିବ-ପାର୍ବତୀ ହାତ ଧରାଧରି ହୋଇ ଅଳିନ୍ଦ ପରେ ଅଳିନ୍ଦ ଅତିକ୍ରମ କରି ଉପନ୍ୟାସର ସାତଟି ଯାକ ବଖରା ବୁଲୁଛନ୍ତି ଓ ଶେଷ ଚିତ୍ର-ଗୁଡ଼ିକ ଦୁଇଅଳିନ୍ଦ ମଧ୍ୟରେ ପାଠକର କ୍ଷୁଦ୍ର ବିରତି । ପରିଚ୍ଛେଦ ଗୁଡ଼ିକର ଆକାର ସମାନ ନୁହେଁ । କଥାବସ୍ତୁର ପ୍ରୟୋଜନକୁ ନେଇ ସେଗୁଡ଼ିକ ପରିକଳ୍ପିତ । **ଅମୂର୍ତ୍ତ-ସଂଳାପ ପୂର୍ବରୁ ଥିବା କବୀରଙ୍କ 'ଦୋହା'ଟି ଉପନ୍ୟାସର ଅଭିଜାତ-ତୋରଣ ଓ ପ୍ରତିପରିଚ୍ଛେଦ ଆରମ୍ଭରେ ଥିବା କବୀରଙ୍କ ଉଦ୍ଧୃତି ହେଉଛି ପାଠକଙ୍କୁ ଲେଖକଙ୍କର ବାକ୍-ପ୍ରଣାମି । ପାଠକର ବିକ୍ଷୁରିତ ମନକୁ ଏହା ଆରମ୍ଭରୁ ଏକାଗ୍ର କରେ ଓ ଉପନ୍ୟାସର ବିଷୟ-ପ୍ରବେଶ ପାଇଁ ଏକ ବଦନ ଚୈତ୍ରିକ-ସ୍ଥିତି ଯୋଗାଏ ।** ଉପନ୍ୟାସର ମୁଖ୍ୟ ଚରିତ୍ର ରୂପାନନ୍ଦ ଅବଧାରିତ ଭାବେ ଯେ ସ୍ୱୟଂ ଲେଖକ ଦିନନାଥ, ଏକଥା ଆଉଥରେ କହିବାର ପ୍ରୟୋଜନ ନାହିଁ । 'ଅମୂର୍ତ୍ତ-ସଂଳାପ'ର ବିରତିରେ ସେ ଲେଖୁଛନ୍ତି ରୂପାନନ୍ଦ ଏକ ଚରିତ୍ର- ବିଶେଷ ଭଳି ପ୍ରତେ ହେଉଥିଲେ ମଧ୍ୟ ସେ ସଚେତନ ମଣିଷ ସମାଜର ପ୍ରତିନିଧି । ହୁଏତ ସବୁ ମଣିଷ ଭଳି ଜଣେ ଜିଜ୍ଞାସୁ ରୂପାନ୍ୱେଷୀ ମଣିଷ । ଦିଗପହଣ୍ଡିରୁ ଯାତ୍ରା ଆରମ୍ଭ କରି ସେ କାଶୀର ଗଙ୍ଗାକୂଳରେ ପହଞ୍ଚନ୍ତି ଓ ମାତ୍ର ବର୍ଷକର କାଶୀବାସ ଅନୁଭୂତିକୁ ନେଇ ଗଙ୍ଗାବତରଣର ପରିକଳ୍ପନା କରନ୍ତି । ଏହି ଦୃଷ୍ଟିରୁ ଉପନ୍ୟାସଟି ଦିନନାଥଙ୍କ ଅନ୍ୟ ଉପନ୍ୟାସ ପରି ଆତ୍ମଜୀବନୀ ମୂଳକ (autobiographical) । ଉପନ୍ୟାସଟିରେ ଆଉ ଏକ କଥା ଲକ୍ଷ୍ୟକରିବା ଏକାନ୍ତ ଜରୁରୀ ଯେ, ରୂପାନନ୍ଦ ଓରଫ୍ ଦିନନାଥଙ୍କ କାଶୀବାସ ତାଙ୍କୁ ଯେଉଁ ଅନୁଭୂତିମାନ ଆଣି ଦେଇଚି, ତାହା ମୁଖ୍ୟତଃ ଦୁଇ କିସମର । ପ୍ରଥମଟି ଜାଗତିକ ଓ ଦ୍ୱିତୀୟଟି ଆଧିଭୌତିକ, ଅଲୌକିକ ବା ଆଧାତ୍ମିକ । ଏହି ଦୁଇ ଅନୁଭୂତିକୁ ରୂପାନନ୍ଦ ଖାଲି ଆଖିରେ ଦେଖୁନାହାନ୍ତି । କେବଳ ଜାଗତିକ ଓ ଦୈନନ୍ଦିନର ଘଟଣାଗୁଡ଼ିକୁ ସେ ନିଜର ଚର୍ମଚକ୍ଷୁରେ ପ୍ରତ୍ୟକ୍ଷ କରୁଛନ୍ତି ଓ ସମସ୍ତ ଦିବ୍ୟ ଅନୁଭୂତି ଗୁଡ଼ିକୁ ସେ ଦେଖୁଛନ୍ତି ଆଲିସ୍‌ମାତାଙ୍କ ପ୍ରଦତ୍ତ ବିଶେଷ-ପ୍ରଚକ୍ଷୁରେ । ପ୍ରଚକ୍ଷୁ ଓ ସ୍ୱପ୍ନ - ଏହି ଦୁଇଟି ପ୍ରବେଶ ପଥ ଦେଇ ସେ କେବଳ ଦିବ୍ୟଘଟଣାଗୁଡ଼ିକୁ ଚାକ୍ଷୁଷ କରୁନାହାନ୍ତି ଅନାୟାସରେ ସୁଦୂର ଅତୀତରୁ ବର୍ତ୍ତମାନରେ ଓ ବର୍ତ୍ତମାନରୁ ଅନାଗତ ଭବିଷ୍ୟତରେ ସ୍ୱଚ୍ଛଳ ଓ ଅବାଧ ପଦାର୍ପଣ କରିପାରୁଛନ୍ତି । ସ୍ମୃତି ଏ କ୍ଷେତ୍ରରେ ହୋଇଛି ରୂପାନନ୍ଦଙ୍କ ଚୋରା-ଗବାକ୍ଷ, ଯାହାର ଉନ୍ମୋଚନ କରି ସେ ସ୍ୱେଚ୍ଛାରେ ନିଜର ସ୍ଥାନର ଓ କାଳର ଅତୀତରେ ବିଚରଣ କରିପାରୁଛନ୍ତି । ଉପନ୍ୟାସର ବିଭିନ୍ନ ଚରିତ୍ରକ୍ଷେତ୍ରରେ ମଧ

Digitized by srujanika@gmail.com

ପ୍ରୟୋଜନସ୍ଥଳେ ସ୍ଥାନ, କାଳ, ପାତ୍ରର ଅନାୟାସ ଅନ୍ତର ସମ୍ଭବ ହୋଇପାରୁଛି । ଉତ୍ତର-ଆଧୁନିକ କାଳଟି ଆଧୁନିକ କାଳପରି ସଚ୍ଛଚଞ୍ଚଳ, ପ୍ରାୟ ସ୍ଥାନର ଏକ ସମୟ ଖଣ୍ଡ ନୁହେଁ । ଇଲେକ୍‌ଟ୍ରୋନିକ୍ ମିଡ଼ିଆର ଦ୍ରୁତ ପ୍ରସାରଣ ଯୋଗୁଁ ମଣିଷ ଆଜି ସ୍ଥାନ, କାଳ ଓ ପାତ୍ରର ଦୂରତାକୁ ଅକ୍ଳେଶରେ ଅତିକ୍ରମ କରିଛି । ଗୋଟିଏ ମାତ୍ର ସୁଇଚ୍‌ଟିପି ସେ ଟି.ଭି. ପରଦାର ଗୋଟିଏ ଚାନେଲ୍‌ରୁ ଶତାଧିକ ଚାନେଲ୍‌କୁ ନିମିଷକରେ ଯାଇପାରୁଛି । ଇଲେକ୍‌ଟ୍ରୋନିକ୍ ମିଡ଼ିଆର ଏହି ବୈଦ୍ୟୁତିକ ପ୍ରକରଣଟିକୁ ଦିନନାଥ ତାଙ୍କ ଉପନ୍ୟାସରେ ସଫଳଭାବେ ବ୍ୟବହାର କରି ସ୍ଥାନ, କାଳ ଓ ପାତ୍ରର ଦୂରତାକୁ ଅତିକ୍ରମ କରିଛନ୍ତି । ତାଙ୍କ ଉପନ୍ୟାସରେ ଘଟଣାମାନ ଚତୁର୍ଦ୍ଦିଗରେ ଓ ବହୁମଞ୍ଚରେ ଏକ ସଙ୍ଗରେ ସଂଘଟିତ ହେଉଛି ଓ ସୁଖର କଥା ଯେ ପାଠକ ଗୋଟିଏ ସ୍ଥାନରେ ବସି ବିନା ପ୍ରତିବନ୍ଧକରେ ସବୁ ଦୃଶ୍ୟକୁ ପ୍ରତ୍ୟକ୍ଷ କରିପାରୁଛି । ଉପନ୍ୟାସର ଆଉ ଗୋଟିଏ ବିଶେଷତ୍ୱ ହେଉଛି ଚରିତ୍ରମାନେ ହଠାତ୍ ସ୍ମୃତି ବା ସ୍ୱପ୍ନର ସାହାରାରେ ଅନ୍ୟଏକ ଚରିତ୍ର ହୋଇ ଯାଉଛନ୍ତି ଓ ରୂପାନ୍ତରିତ ଚରିତ୍ରର ଭୂମିକାରେ ଅଭିନୟ ସାରି ପୁନଶ୍ଚ ନିଜର ପୂର୍ବ ଭୂମିକାକୁ ଫେରି ଆସୁଛନ୍ତି । ରୂପାନନ୍ଦଙ୍କ ସମେତ କେତେକ ଚରିତ୍ରରେ ଏ ପ୍ରକାର ରୂପାନ୍ତର ଉପନ୍ୟାସକୁ ରହସ୍ୟମୟ ଓ କୌତୂହଳୋଦ୍ଦୀପକ କରି ଗଢ଼ି ତୋଳିଛି । ବିନ୍ଦୁମାଧବ ମଠରେ ଫୁଲବର୍ଦ୍ଧନ ତିଳଖୁଡ଼ୀକୁ ସାଲବେଗଙ୍କ କଥାସ୍ମରଣ କରାଇ ଦେଇଛି ଓ ଅଶୁଦ୍ଧ ଉଚ୍ଚାରଣରେ ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ, ଗୀତ ଗାଇ ଶୁଣାଇଛି । କହିଛି- କିପରି ସାଲବେଗଙ୍କ ମାଆ ବ୍ରାହ୍ମଣୀ, ଆଉ ବାପା ମୋଗଲ । ଏଇଠି ଆଉ ତିଳଖୁଡ଼ୀ ନୁହେଁ, ଖୋଦ୍ ସପ୍ନ ହୋଇଛି ତିଳଖୁଡ଼ୀଙ୍କ ଅବଚେତନର ପ୍ରକାଶ ମାଧମ । ତିଳଖୁଡ଼ୀର ସପ୍ନରେ ବନାରସର ଗଳିରାସ୍ତାରେ ମୋଗଲରଜା ଘୋଡ଼ା ଛୁଟେଇ ଆସୁଛି । ଏତିକିବେଳେ ତିଳ ମନ୍ଦିର ବେଢ଼ା ବାହାରର ଚମ୍ପାଗଛରୁ ଫୁଲ ତୋଳୁଛି । ମୋଗଲ ରଜାର ସୁନ୍ଦର ଚେହେରା । ତୀଖାନାକ, ନୀଳନୀଳ ଭସା ଆଖି, ଉଞ୍ଚା କପାଳ । କୁଞ୍ଚୁକୁଞ୍ଚୁଆ ଦାଢ଼ି ଦେହରେ ଚୁଡ଼ିଦାର ସିଲ୍‌କଜାମା । ସେରୱାନୀ ଅଙ୍ଗରଖା, ଅଣ୍ଟାରେ ଖଣ୍ଡା ଖୋସିଛି, ଖଣ୍ଡାଖୋଳରେ ମୀନାକରା କାମ, ଗଳାରେ ମୋତିମାଳ, ହୀରାର ପଦକ । ଚମ୍ପାଗଛ ପାଖରେ ଘୋଡ଼ା ଅଟକେଇ ମୋଗଲ ରଜା ତିଳଖୁଡ଼ୀକୁ ଚାହିଁଛି । ଚାହାଣିରେ ମାଦକତା ଭରିରହିଛି । ତା'ର ନଜର, ମଦନର ଫୁଲଶର ଭଳି, ଖୁଡ଼ୀ ଦେହରେ ବିନ୍ଧିଗଲା । କ'ଣ ସବୁ ହିନ୍ଦୀ ଭାଷାରେ ହସି ହସି କହିଲା, ଖୁଡ଼ୀ ଲାଜେଇଗଲା । ଓଢ଼ଣା ଆହୁରି ମୁହଁ ଉପରକୁ ଟାଣିଆଣି ଠିଆହେଲା । ମୋଗଲ ରଜା କହିଲା- ବିବି ଆଓ, ତୁ ଖୁବ୍ ସୁରତ୍ ହୋ । ତୁମ୍‌ହେ ହାରେମ୍‌ମେ ରଖେଙ୍ଗେ, ୟହାଁ ତୁହ୍ମାରି ଚେହେରିକି କଦର୍ ନହିଁ । ଇତ୍ୟାଦି.. ଖୁଡ଼ୀ ହେଇଗଲା ସାଲ୍‌ବେଗର ମାଆ ଇତିହାସର ସେଇ ବିଧବା ବ୍ରାହ୍ମଣୀ । କେତେବେଳେ ଘଟୁଛି ଖୁଡ଼ୀର ଏପରି ରୂପାନ୍ତର, ଯେତେବେଳକୁ ଧୂନିବାବାଙ୍କ ଦ୍ୱାରା ବାରବାର ଧର୍ଷିତାହେଇ ମୂର୍ଚ୍ଛିତା ଅବସ୍ଥାରେ ଉଦ୍ଧାର ପାଇ ସେ ବିନ୍ଦୁମାଧବ ମଠରେ ଆଶ୍ରୟ ନେଇଛି । ତିଳଖୁଡ଼ୀର ଅବଚେତନକୁ ବାରବାର ଫେରିଫେରି ଆସୁଛି ତା ଅତୃପ୍ତ ଅବଦମିତ ଯୌନପିପାସା, ଶାରୀରିକ କଦର୍ଥନା ଓ ଲାଞ୍ଛନା ଭୋଗରେ ବି ତା'ର ପରିସମାପ୍ତି ଘଟୁନାହିଁ । **ଦିନନାଥଙ୍କ ପକ୍ଷେ ନାରୀ ଚରିତ୍ରକୁ ତା'ର ରୂପ ମନ ଓ ଅବୟବ ସହ ଏତେ ସ୍ୱାଭାବିକ ଭାବେ ତୋଳିଧରିବା ସମ୍ଭବ ହେଇଛି ଏଇଥିପାଇଁ ଯେ, ଜଣେ ଚିତ୍ରକର ଭାବେ ଆଜୀବନ ସେ ରୂପର ପ୍ରତିକୂଳର ଯତ୍ନ କରିଛନ୍ତି** । ଏଣୁ ଉପନ୍ୟାସର କୌଣସି ଚରିତ୍ର, ସାମାନ୍ୟତମ ଘଟଣା ମଧ ତାଙ୍କ ଅଲକ୍ଷ୍ୟରେ ଘଟୁନାହିଁ ଯଦି ଘଟୁଛି ତାଙ୍କ ପ୍ରତ୍ୟକ୍ଷ ବା ପରୋକ୍ଷ ସମ୍ମତିରେ । ତେବେ ହଠାତ୍ ଚରିତ୍ରର ଏଇ ଯେଉଁ ରୂପାନ୍ତର ଓ ପୁନଶ୍ଚ ସଘଟପ୍ରାପ୍ତି - ଏହି ସୂତ୍ରଟିକୁ ଦିନନାଥ ପାଇଲେ କେଉଁଠୁ ଓ କିପରି ? ପିଲାଦିନେ ଦିନନାଥ ଷ୍ଟୁଡିଓରେ ଚିତ୍ର ଆଙ୍କନ୍ତି, ପୂଜା ସମୟରେ କୋଠିଶାଳର ଚିତ୍ର କରନ୍ତି, ମୁଖା ବନାନ୍ତି । ଏଣୁ 'ମୁଖାଶିଳ୍ପ'ର କାରିଗରି ଭିତରୁ ହୁଏତ ସଚେତନ ବା ଅଚେତନ ଭାବେ

Digitized by srujanika@gmail.com

ଦିନନାଥଙ୍କ ଉପନ୍ୟାସକୁ ଆସିଛି । ମୁଖାଶିଳ୍ପର କଳାକୌଶଳ ଭରା ସେ ମୁଖା ଉପନ୍ୟାସର ଚରିତ୍ରମାନେ ପିନ୍ଧୁଛନ୍ତି, ଆଉ ଉତାରୁଛନ୍ତି । ଦକ୍ଷିଣ ଓଡ଼ିଶାର 'ଦାସକାଠିଆ' ମଧ୍ୟ ଲେଖକଙ୍କୁ ତାଙ୍କ ଜ୍ଞାତ ଓ ଅଜ୍ଞାତସାରରେ ଏହି ସୂତ୍ରପ୍ରଦାନ କରିଛି । ଯେପରି ଦାସକାଠିଆର ପାଳିଆ ନିଜେ ଅପରିବର୍ତ୍ତିତ ରହି ପ୍ରୟୋଜନ ସ୍ଥଳେ ଅଭିନୀତ ଚରିତ୍ର ମାନଙ୍କର ଭୂମିକା ନିର୍ବାହ କରୁଥାଏ, ଠିକ୍ ସେହିପରି ଦିନନାଥଙ୍କ ଉପନ୍ୟାସରେ ପାତ୍ରାନ୍ତର ବା transformation of characters ସମ୍ଭବ ହେଉଛି ।

'ଫାଣ୍ଟାସି' ବା ଗାଲଗଳ୍ପ ହେଉଛି 'ଉତ୍ତର-ଆଧୁନିକ' ସାହିତ୍ୟରେ ପ୍ରୟୋଗର ଏକ ପ୍ରମୁଖ ଅବଲମ୍ବନ । **'ଗଙ୍ଗାବତରଣ'**ରେ ପୁରାଣ, ଇତିହାସ, କିମ୍ବଦନ୍ତୀ ଓ ଜନଶ୍ରୁତିର ସହାୟତାରେ ଯତ୍ରତତ୍ର ଲେଖକ ଫାଣ୍ଟାସିର ପ୍ରୟୋଗ କରୁଛନ୍ତି । ଅନେକଘଟଣା ଯାଦୁ ପରି, କୁହୁକ ପରି ସଂଘଟିତ ହେଉଛି । 'ମହାଯାତ୍ରା'ରେ ଅଗ୍ନି ଯୁଧିଷ୍ଠିରଙ୍କୁ ଦିବ୍ୟାଞ୍ଜନ ପ୍ରଦାନ କଲାପରି ବା ମହାଭାରତର ସଂଜୟଙ୍କ ଦିବ୍ୟଚକ୍ଷୁପରି ରୂପାନନ୍ଦଙ୍କୁ ଆଲିସ୍ ମାତା କୁହୁକ ପ୍ରଚକ୍ଷୁ ପ୍ରଦାନ କରିଛନ୍ତି । କେହିକେହି ମନେକରି ପାରନ୍ତି ଯେ ଏହି 'ପ୍ରଚକ୍ଷୁ' ଦ୍ୱାରା ରୂପାନନ୍ଦ ବହୁ ଦିବ୍ୟଦୃଶ୍ୟ ଓ ଅନୁଭୂତିର ସନ୍ଦର୍ଶନ କରିଛନ୍ତି ଓ ଉପନ୍ୟାସରେ ଏକ ମହାକାବ୍ୟିକ ପରିବେଶ ସୃଷ୍ଟି ହୋଇଛି । କିନ୍ତୁ ଏପରି ଧାରଣା ସଂପୂର୍ଣ୍ଣ ଅମୂଳକ । କାରଣ ରୂପାନନ୍ଦଙ୍କୁ ଆଲିସ୍ ଦିବ୍ୟଦୃଷ୍ଟି ବା ଦିବ୍ୟାଞ୍ଜନ ପ୍ରଦାନ କରୁନାହାନ୍ତି, କରୁଛନ୍ତି ଏକ ଯାଦୁପ୍ରଚକ୍ଷୁ । ଏକଥାଟି ଆମ ଏବର ଲୋକପ୍ରିୟ ସଂସ୍କୃତି ବା ପପ୍ କଲ୍‌ଚର୍ ଭିତରୁ ଆସିଛି । ଆସିଛି ହୁଏତ୍ ଟି.ଭି.ର, କେଉଁ ଧାରାବାହିକରୁ । ଏହା ମିଡ଼ିଆ ପ୍ରସୂତି ଓ ସାଂପ୍ରତିକତା ଏହାର ଅବଧାରିତ ଜଠର । ଏହାର କାରଣ ଉତ୍ତରଆଧୁନିକ 'ମହା-ବୃତ୍ତାନ୍ତ'ରେ ଆସ୍ଥା ରଖେ ନାହିଁ, ଆସ୍ଥା ରଖେ ମେଟା-ଫିକ୍‌ସନ୍‌ରେ । ଏଣୁ ଗଙ୍ଗାବତରଣରେ ଦିବ୍ୟାଞ୍ଜନ ଓ ଦିବ୍ୟଦୃଷ୍ଟି ଅନୁପସ୍ଥିତ ରହିବା ଆକସ୍ମିକ ନୁହେଁ । ଏହା ସଚେତନଭାବେ ଲେଖକଙ୍କ ଦ୍ୱାରା ପରିକଳ୍ପିତ ଓ ଏହି କାରଣରୁ ଉପନ୍ୟାସଟି ଗୋତ୍ରରେ 'ଉତ୍ତର-ଆଧୁନିକ' । **'ଗଙ୍ଗାବତରଣ'**ରେ ଫାଣ୍ଟାସିସ୍ ଯେଉଁ ଆବାହିତ ପ୍ରବାହ ତାର ନଜିର୍ ଦେଇ ଏଠାରେ ମୁଁ ମୋ ଆଲୋଚନାର କଳେବର ବୃଦ୍ଧି କରୁନାହିଁ । ଗଙ୍ଗାରେ ଜଳଯାତ୍ରା କାଳରେ ନାଉରିଆ ଭରତ ଦିନନାଥଙ୍କ ଆଗରେ ବ୍ୟାପ୍ତ କରୁଥିବା ବହୁ କପୋଳକଳ୍ପିତ ଉପାଖ୍ୟାନ, ତିଳଖୁଡ଼ୀର ଦ୍ୱିତୀୟ ସ୍ୱାମୀ ତାନ୍ତ୍ରିକ ଧନେଶ୍ୱର ଶତପଥୀର ତନ୍ତ୍ରସାଧକ ବିଶେଷକରି କଲେରାରେ ମରିଥିବା ଦିଣ୍ଡା ଧୋବଣୀର ମଢ଼ ଉପରେ ବସି ଧନେଶ୍ୱରର ତନ୍ତ୍ରସାଧନା ଓ ତନ୍ତ୍ରଜନିତ ବିଷମ ପରିଣତିର ବର୍ଣ୍ଣନା ଆଦିରୁ ଦିନନାଥ ତାଙ୍କ ଉପନ୍ୟାସରେ ଫାଣ୍ଟାସି ପ୍ରୟୋଗରେ ଯେ କେତେ ପଟୁ ତାହା ଲକ୍ଷ୍ୟ କରାଯାଇପାରେ । **କେବଳ ଫାଣ୍ଟାସି ନୁହେଁ ତନ୍ତ୍ରମନ୍ତ୍ର, ଗୁଣିଗାରେଡ଼ି ଓ ଲୋକାଚାରର ସୁସଜ୍ଜ ବିନ୍ୟାସ ଗଙ୍ଗାବତରଣରେ ଯେପରି ଦେଖିବାକୁ ମିଳେ ସମକାଳୀନ ବହୁ ଉପନ୍ୟାସର ତଥାକଥିତ ତୁଚ୍ଛ ସେଣ୍ଟିମେଣ୍ଟାଲ୍ - ଉପସ୍ଥାପନାରେ ତାହା ବିରଳ କହିଲେ ଚଳେ ।** ପାଠକ ବିଶେଷକରି ଏଯାବତ୍ ଗଙ୍ଗାବତରଣ ପାଠ କରିନଥିବା ପାଠକ ଓ ସମାଲୋଚକଙ୍କ ଅବଧାରଣା ନିମନ୍ତେ ଧନେଶ୍ୱରର ତନ୍ତ୍ରସାଧନା ପ୍ରସଙ୍ଗରେ ପରିଦୃଷ୍ଟ 'ଦିଣ୍ଡାଧୋବଣୀ' ପ୍ରସଙ୍ଗଟି ଏଠାରେ ଉଦ୍ଧାର କରାଯାଉଛି । 'ଧନୁକକା ବାଗଡ଼ା ଗାଁର ଚମ୍ପୁଆ ନାଳ ମୁଣ୍ଡ ମଶାଣିରେ ବଟଗଛ ତଳେ ମଢ଼ଟା ଉପରେ ବସି ମନ୍ତ୍ର ଜପୁଥାଏ । ନିଘଞ୍ଚ ବରଗଛ, ସହସ୍ର ଓହଳ ଲମ୍ବି ଜାଗାଟାକୁ ଗହଳିଆ କରିଦେଇଥାଏ । ଦିନବେଳେ ଏ ଗଛ ପାରିହେଲା ବେଳକୁ ଗୁଣ୍ଡିଆ ଧଡ଼ ଧଡ଼ ହେଇଯାଏ । ଦିଣ୍ଡାଧୋବଣୀ ମଢ଼ଟା କଲେରାରେ ବାଧିକି ପଡ଼ିଥିଲା । ହେଲେ ରୂପ ବୟସ କୁଆଡେ ଯିବ, ଗୋରା ମାଇପିଟା । ମୁହଁ, ଜଙ୍ଘ, ଥନ, ପେଟ ଫୁଲି ଯାଇଥାଏ । ନିଶାରାତି, ପ୍ରେତ, ପିଶାଚ,

Digitized by srujanika@gmail.com

ଡାହାଣୀଙ୍କ ଉତ୍ପାତ । ଭୈରବୀ ସାଧନା କଣ ଅଖଣ୍ଡା ହେଇଗଲା କେଜାଣି କିଳିକିଳା ହେରକ୍ଷା ରଡ଼ି ଛାଡ଼ି ମଢ଼ଟା ଉଠିବସି ପଡ଼ିଲା, ହାତେ ଜିଭ କାଢ଼ିଦେଇ ଥାଏ । ଆଖି ଡୋଳା ଡିମା ଡିମା ହେଇ ପଦାକୁ ବାହାରି ପଡ଼ିଥାଏ । କଳା ମଟମଟ ଚଅଁର ପିଚାପଟକୁ ଲୋଟି ପଡ଼ିଥାଏ । ଧନୁକକା ଛାନିଆରେ ଥତମତ ହେଇ ଚିତ୍‌ହେଇ ଲେଉଟି ପଡ଼ିଗଲା । ତାନ୍ତ୍ରିକ ତ ସାହସ ସଞ୍ଚି ଏକା ଧାପ ମାରିଲା ଯେ ରଜାକିଆରି ହୁଡ଼ା ଉପରେ ହାଜର । ଉଦଣ୍ଡ ଲଙ୍ଗଳା ହେଇଥାଏ । ମଢ଼ଟା ପଛରୁ କାଳୀକା ଭଳି ଲହଲହ ଜିଭ କାଢ଼ି ଗୋଡ଼େଇ ଆଇଲା ମଶାଣି ଶେଷ ଯାଏ । ପଞ୍ଚମକାର ତନ୍ତ୍ରସାଧନା ଟିକେ ଅଖଣ୍ଡା ହେଇଗଲେ ସାଧୁଥିବା ଲୋକ ଉପରକୁ ଓଲଟ ପଡ଼ିବ ।'

ଦିନନାଥ ଗଙ୍ଗାବତରଣ ବର୍ଣ୍ଣନାର ଶ୍ରାବ୍ୟଗୁଣ ଅପେକ୍ଷା ଦୃଶ୍ୟ ଗୁଣଟି ବେଶ୍ ଅଧିକ । ଅନ୍ୟଭାବରେ କହିଲେ ଉପନ୍ୟାସଟି ଶୁଭେ କମ୍ ଦିଶେ ବେଶି । କବୀରଙ୍କ 'ଦୋହା'ର ଉଲ୍ଲେଖ, ମଝିରେ ମଝିରେ ସଙ୍ଗୀତର ଉଦ୍ଧୃତି ସତ୍ତ୍ୱେ ସେମାନେ କିପରି ନୀରବ ନୀରବ ମନେହୁଅନ୍ତି । ନିଃଶବ୍ଦ ଚିତ୍ରର ଅସୀମ ବିଜନତା ଉପନ୍ୟାସ ଆରମ୍ଭରୁ ଶେଷଯାଏଁ ଅନୁଭବୀ ପାଠକକୁ ଜାବୁଡ଼ିଧରେ । ଉପନ୍ୟାସଟି ଶେଷ କରିବା ପରେ ଗଙ୍ଗାନଦୀର ପ୍ରଶସ୍ତ ବକ୍ଷରେ ଫିଙ୍ଗିହେଇ ରହିଥିବା ଅନ୍ଧାର ଭିତରୁ କିଛି ନହେଲେ ବି ମକମଲି ଫୁଲଟି ତାର ଧୀର ଚକ୍ଷୁରେ ପାଠକକୁ ଅନାଇରହେ, ବନାରସ ବାଇଜୀକୋଠି ଭିତରୁ ବିସ୍ମୃତିଗର୍ଭରେ ପୋତିପଡ଼ିଥିବା ଚାନ୍ଦିନୀର ବଳାଗଣ୍ଠିରୁ ଖସି ଝଡ଼ିଯାଇଥିବା ଘୁଙ୍ଗୁରର ଅର୍ଦ୍ଧସ୍ତିମିତ ରୁଣୁଝୁଣୁ ନଶୁଭି ନଶୁଭି ତଥାପି ଶୁଭିଯାଏ, ପାଠକକୁ ବାରବାର ସ୍ତବ୍‌ଧ କରେ । ଦିନନାଥଙ୍କ ହାତ ହେଇଯାଏ କଣ୍ଠସର ଓ ପାଠକଙ୍କ ଆଖି ହେଇଯାଏ ସନ୍ତର୍ପିତ କାନ । ଜଗନ୍ନାଥ ପଣ୍ଡିତଙ୍କ ଗଙ୍ଗାଲହରୀରେ ମୁଗ୍ଧ ହେଇ ଆଉ ଥରେ ଗଙ୍ଗା କୂଳ ଲଙ୍ଘେ, ଶୁଭେ ପଞ୍ଚମ ଜର୍ଜ ସ୍କୁଲର ହେଡ୍‌ମାଷ୍ଟର ରାମନାରାୟଣ ପାଢ଼ୀଙ୍କର ଇଂରାଜୀ ନନ୍‌ଡିଟେଲ୍ ପଢ଼ାର ଆୱାଜ୍ । **ଜୀବନର ବିପୁଳତା ଦିନନାଥଙ୍କ ଉପନ୍ୟାସରେ ସମୁଦ୍ର ଲହରୀପରି ଫଣାଟେକି ପାଠକର ନିବୁଜ ନିକାଞ୍ଚନକୁ ପୁଣି ଗହଳ କରି ଗଢ଼ିତୋଳନ୍ତି । ଦିଗପହଣ୍ଡି, ବାଗଡ଼ା, ଢଭାର, ପେଣ୍ଟୁରାବାଡ଼ି ଓ ପଦନାପୁରରୁ ଦିନନାଥ ଅଦୃଶ୍ୟ ହେଇ ରୂପାନନ୍ଦଙ୍କ ନବଅର୍ଜିତ ଇହକାଳର ଦରିଦ୍ର ଗୃହବାସିନୀ ଲଳନାର ମାଟିକୁମ୍ଭିରେ ବିରଳ ସୌଭାଗ୍ୟର ଅଭାବୀ ମୁଦ୍ରାପରି ସଂଚିତ ହୋଇ କେବଳ ସାମ୍ପ୍ରତିକ ସମୟ ଖଣ୍ଡରେ ନୁହେଁ ଭାବୀକାଳର ଚାନ୍ଦିନୀ ଚର୍ଚ୍ଚିତ ଚଉତରାରେ କ୍ଷଣ କ୍ଷଣ ପାଠକକୁ ହତଭମ୍ଭ କରୁଥାନ୍ତି ।**

**ଗଙ୍ଗାବତରଣ**ର ସବୁଠୁଁ ଲକ୍ଷ୍ୟଣୀୟ ଦିଗ ଓ ଲେଖନୀରେ ସଫଳତା ହେଉଚି ତାଙ୍କର କୁଶଳୀ ଭାଷା ପ୍ରୟୋଗ । ଏହି ନିବନ୍ଧରେ ଦିନନାଥଙ୍କ ଭାଷା-ନିପୁଣତାର ଆକଳନ ପାଇଁ ଖୁବ୍ କମ୍ ଅବକାଶ ଥିଲେ ହେଁ ଲୋଭସମ୍ବରଣ କରି ନପାରି ତହିଁରୁ କେତୋଟି ନଜିର୍ ଏଠାରେ ପେଶ୍ କରୁଛି । କାଏରୋ ସହରର ସରକାରୀ ପର୍ଯ୍ୟଟନ ଗାଇଡ୍ ରାନିଆ କାଏରୋର ରୂପବର୍ଣ୍ଣନା କରୁଛନ୍ତି ଦିନନାଥ ଏହିପରି "ସୁନ୍ଦର ଟଣାଟଣା ଆଖି । ଗାଣ୍ଡିବ ଭଳି ଭ୍ରୂଲତା, ଦେଖିଲେ ଲାଗିବ ନୀଳନଦୀର ଧାରଟିଏ ଅବା ତା ଲଲାଟ ତଳେ ଅଟକି ରହିଛି ।" (ପୃ.୩୩) କାଶୀ-ଗଙ୍ଗାର ବର୍ଣ୍ଣନାଟିକୁ ଲକ୍ଷ୍ୟକରନ୍ତୁ, ''ପ୍ରହେଳିକାର ଘୁମନ୍ତ ବାସ୍ତବତା ଭିତରୁ ମନ୍ଦିରମାନଙ୍କର ଚୂଡ଼ା, କଳସ, ନେତ, ସେପଟେ ଗଙ୍ଗାର ଧୂସର ଧାରା ଓ ଘାଟ ମାନଙ୍କରେ ରାତିସାରା ବନ୍ଧାହେଇ ଅଟକି ରହିଥିବା ଡଙ୍ଗାଗୁଡ଼ିକ ସାମାନ୍ୟ ଦୃଶ୍ୟ ହେଉଛନ୍ତି । ଠାର କଥା ଭଳି ଅନୁଚ୍ଚାରିତ । ରୂପାନନ୍ଦଙ୍କୁ ଲାଗୁଛି ଏହା ଜଳରଙ୍ଗରେ ଚିତ୍ରିତ ଏକ ଦୃଶ୍ୟ, (ପୃ. ୪୧) । ଅନପଢ଼୍ ନାଉରିଆ ଭରତର ବର୍ଣ୍ଣନା ହୋଇଛି ଏହିପରି, "ଘାଟତଳେ ଆଣ୍ଠୁଏ ପାଣିରେ ନାଉରିଆ ଡଙ୍ଗା ମଙ୍ଗ ଧରି ଠିଆହେଇଛି । ତ୍ରିପଣ୍ଡକଳା କୋବାଳିଆ ଭେଣ୍ଡା ମଣିଷ, ଶଗଡ଼ର ଯୁଆଳି ଭଳି ହଳେ ନିଶ ।" (ପୃ. ୪୫)

Digitized by srujanika@gmail.com

ଗ୍ରାମ୍ୟପ୍ରକୃତିର ବର୍ଣ୍ଣନା । ଗାଁଟି ଭଣ୍ଡାରି ଘର ପଦ୍ମାନନୀର ଗାଁ, ବାଗଡ଼ା । "ଶ୍ରାବଣ ଅମାବାସ୍ୟା ରାତି ହବନା କିସ । ସେଦିନ ସକାଳୁ ବର୍ଷା ଛାଡ଼ି ଯାଇଥାଏ । ଦିନବେଳା ଟାଇଁଖରା ପଡ଼ିବାରୁ ମାଟିରୁ ହାଉ ବାହାରୁଥାଏ । ସଂଜବେଳକୁ ପୁଣି ଧାରା ଶ୍ରାବଣ ବର୍ଷା ଅଜାଡୁଥାଏ । ରାତି ଘଡ଼ିକ ସରିକି ଟିକିଏ ମେଘ ଫର୍ଚ୍ଚା ହେଇ ଯାଇଥାଏ । ଇମିତିକା ଘଡ଼ିସନ୍ଧିବେଳେ ଘୁଅଖିଆ ଡାହାଣୀ ବାହାରିପଡ଼ନ୍ତି । ପୋଖରୀ ହୁଡ଼ାରେ ପାଲଟା ଲୁଗାକୁ ଥୋଇଦେଇ ଗୋଡ଼ ଉପରକୁ କରି ଘୁଅଚରନ୍ତି । ତାଙ୍କ ପାଟିରୁ ହାଲୁହାଲୁ ନିଆଁ ବାହାରୁଥାଏ ।" (ପୃ. ୮୬) ଭାଷା କେମିତି କବିତାର ଚିତ୍ରକଳ୍ପ ହୋଇଯାଇଛି ଦିନନାଥଙ୍କ ସତର୍କ ସୃଜନ ଯନ୍ତ୍ରରେ, ଲକ୍ଷ୍ୟକରନ୍ତୁ । "ବାଛୁରୀ ଯିମିତି ମା'ର ପହ୍ନା ପାଇଗଲେ ସବୁ ଦୃଶ୍ୟମାନ ସ୍ଥିତିକୁ ଆଖିବୁଜିଦିଏ ସିମିତି ଭକ୍ତ ଓ ଭଗବାନ ମଝିରେ ସବୁ ପ୍ରତିବନ୍ଧ ବଢ଼ିପାଣିରେ ବନ୍ଧଭାଙ୍ଗି ବହିଗଲା ପରି ଉଭେଇ ଯାଇଛି । ହୃଦୟ ମୁକୁଳି ଯାଇଛି ।" (ପୃ. ୯୬) । ଧୁନିବାବାଙ୍କ ମଠର ମାତା ମାନେ କିପରି ଦିଶୁଛନ୍ତି ? ନା, ମାତା ଦି'ଜଣ ଖୁଡ଼ୀ ଭଳି ମଧ୍ୟ ବୟସର । ଦେହରୁ ଆହୁରି ଝଳି ଉତୁରିନି । ଜଣେ ଧପ୍ ଧପ୍ ଗୋରୀ ଆଉଜଣେ ଶ୍ୟାମଳୀ, କପାଳରେ ଚନ୍ଦନ, ଗଳାରେ ରୁଦ୍ରାକ୍ଷ, ଈଷତ୍ ହଳଦୀ ଶାଢ଼ି ପିନ୍ଧିଛନ୍ତି (ପୃ.୯୮) । ମାତା ଦିହିଁଙ୍କ ଉଭା ଲଙ୍ଗଳା ବେଶର ବର୍ଣ୍ଣନାକୁ ପ୍ରତ୍ୟକ୍ଷ କରନ୍ତୁ । ''ଏତେ ଅନ୍ଧାର ଭିତରେ ବି ସେମାନଙ୍କ ଲଙ୍ଗଳା ଦେହ ଦିଟା ବାରି ହେଉଥାଏ । ଜଣେ ସକାଳ ହେଲେ ଆଉ ଜଣେ ସଞ୍ଜ । ଦେହରେ ସମ୍ବେଦନତା ଭରି ରହିଥାଏ । ଦେହର ଆହୁରି ଯୌବନ ଖସି ନଥାଏ । ଫାଳ ଭଳିଆ ଜଂଘ, ପୁରିଲା ପୁରିଲା ବାହା । ଉଭୟଙ୍କ ସ୍ତନମାନ ନିଟୋଳ, କେବଳ ଯାହା ସାମାନ୍ୟ ଲହସି ଯାଇଛି ।' (ପୃ.୧୦୦) ଭାଷାର ସଂକ୍ଷିପ୍ତତାକୁ ବି ନଜିର କରନ୍ତୁ । କଇଁଛ ପିଠିରେ ସମୟ ଯାଏ, ଜଣାପଡେନି । (ପୃ.୧୫୯) ଏହି ସବୁ ବର୍ଣ୍ଣନାରୁ 'ଆଧୁନିକ ଉପନ୍ୟାସ'ର ଭାଷାଠାରୁ ଗଙ୍ଗାବତରଣର ଭାଷାରେ ଥିବା ସ୍ବଚ୍ଛନ୍ଦ ତଥା ଆତ୍ମିକ ଦୃଶ୍ୟାତ୍ମକତା ବେଶ୍ ବୁଝିହୁଏ । 'ଆଧୁନିକ ସାହିତ୍ୟ'ର ଭାଷାରେ ଅନୁଭବର ଯେଉଁ ଦୂରତା ଥିଲା, ଦୃଶ୍ୟର ଯେଉଁ ଶିଳ୍ପୀକୃତ ଅପରିଚ୍ଛନ୍ନତା ଥିଲା, ପାଣ୍ଡିତ୍ୟର ଯେଉଁ ଅର୍ଥହୀନ ଅହଂ ଥିଲା । ଉତ୍ତର-ଆଧୁନିକ ଉପନ୍ୟାସ ତା'କୁ ଅତିକ୍ରମ କରିବାର ଚେଷ୍ଟା କରୁଛି । ସ୍ଥାନୀୟ ଭାଷା କେବଳ ନୁହେଁ, ବିଭିନ୍ନ ଧର୍ମ, ସଂସ୍କୃତି ଓ ଭାଷାବର୍ଗରୁ ଶବ୍ଦମାନେ ଆସି କୁଟୁମ୍ବୀ ଲୋକଙ୍କ ପରି ଦିନନାଥଙ୍କ ଉପନ୍ୟାସରେ ଚଳପ୍ରଚଳ ହେଉଛନ୍ତି । ଭାଷା ଏଠି ଧର୍ମ ନିରପେକ୍ଷ, ସଂସ୍କୃତି ନିରପେକ୍ଷ, secular. ଏହାହିଁ ଉତ୍ତର ଆଧୁନିକ ଭାଷାର ପ୍ରଧାନ ଧର୍ମ ଓ ହାବଭାବ । **ଏଠି ଶବ୍ଦମାନଙ୍କରେ ଛୁଆଁ ଛୁତି ନାହିଁ । ନାହିଁ ପଣ୍ଡିତମାନଙ୍କର କଷାକଷା ଆଖିଦେଖି ସାକୁଡ଼ି ପଛକୁ ହଟିଯିବାର ଭୟ । ଶବ୍ଦ ଏଠି ଅଭୟ । ଦକ୍ଷିଣ ଓଡ଼ିଶାର ବହୁ ଶବ୍ଦ, ଯାହାକି ଓଡ଼ିଆ ସାହିତ୍ୟକୁ ମୋ ଜାଣିବାରେ ଏପର୍ଯ୍ୟନ୍ତ ପ୍ରବେଶାଧିକାର ପାଇନଥିଲା, ସେ ସବୁର ବିପୁଳ ସମାବେଶ ଗଙ୍ଗାବତରଣରେ ଆଦୌ ଅଲକ୍ଷ୍ୟ ରହେନାହିଁ ।** ଯଥା - ଏଠେ, ହାଉଦା, ଦିଣ୍ଡା, ମାହିର, ତସଲା,.... କୋ ରଖେଇ ଦେଲେ, ହାଉ, ନୀତିକାନ୍ତି, ପେଟ ଫଳିବ, ଦସ୍ତୁର, ଏବୁଳୁ, ଗେଡ଼ା (କବାଟର କିଳିଣୀ), ରାଇକା, କାବା ଭଳିଆ, ଖୁରିବାଦ୍ୟ, ପୁରୁଷ, ଗଉ, ଘାଟ- ପାଇକ, ବିଛିଆ (ପାରିବା ଅର୍ଥରେ), ବିସ୍ତାପ (ମାନବିସ୍ତାପ), ଚତୁରସିଆ, ଚଉଖୁଣ୍ଟିଆ, ଖପିଆ, କ୍ଲୃପ୍ତ, ଡମରୁ(ଡମ୍ବରୁ) ଗୁଣ୍ଡିଆ, ଅତ୍ରଛ୍ୟା, ରୋକଡ଼, ପ୍ରପାନକ, ବଜଡ଼, ଅବଭାସ, ସାଉଡ଼ି, ଫରମାଇସ୍, ଖେଟାଖେଟା, ଉଦୁବସ୍ତ୍ର (ଉଭାବସ୍ତ୍ର ବା ଉଲଗ୍ନ), ଓପରାଣ ଇତ୍ୟାଦି । ପାର୍ଶୀ ଓ ଉର୍ଦ୍ଦୁଭାଷାର କେତୋଟି ଶବ୍ଦ କିପରି ନିଜ ଭାଷା ଭଳି ଲହୁନାଡ଼ ଲଗାହେଇ ଉପନ୍ୟାସଟିରେ ବିଳସୁଛନ୍ତି, ଏଥର ଦେଖାଯାଉ । ଯଥା- ରଓ୍ବାବ୍, ଆଙ୍ଗନ୍, କଦର୍, ପେହଚାନ୍ ଅନୌଖି ମେହଫିଲ୍, ନଥ ଉତରନା, ଦେଖଭାଲ୍ ଇତ୍ୟାଦି । **ଚିତ୍ରଭାଷାର ସାଂକେତିକତା ଗଙ୍ଗାବତରଣର ପ୍ରତି ଛତ୍ରେ ଛତ୍ରେ ଯେଉଁ ଭବ୍ୟ ଭାବାବେଶ ସୃଷ୍ଟି କରିଛି, ତାହା ଯେ**

Digitized by srujanika@gmail.com

**ଓଡ଼ିଆ ଉପନ୍ୟାସ ସାହିତ୍ୟ ପାଇଁ ବହୁଦିନଯାଏ ଦୁର୍ଲ୍ଲଭ ଥିଲା, ଏକଥା ସୀକାର କରିବାରେ ମୋର ଦ୍ୱିଧା ନାହିଁ ।** ପଠନ ଓ ପାଠନର ସ୍ଥାନ, କାଳ ଓ ପାତ୍ର ଭେଦରେ ଶବ୍ଦ ଓ ଭାଷାରେ ସଂଗଠିତ ଅର୍ଥଯେ ବାରବାର ବଦଳିଯାଇପାରେ, ଭାଷା ପ୍ରୟୋଗର ଏହି ଗୂଢ଼ ରହସ୍ୟଟିକୁ ଦିନନାଥ ପାଇଛନ୍ତି ଚିତ୍ରକଳାରୁ । ଶିଳ୍ପୀ ଜୀବନର ଉଚ୍ଚତମ ସୋପାନରେ ପହଞ୍ଚିଲା ପରେ ଚୀନ୍‌ର ପ୍ରଖ୍ୟାତ ଚିତ୍ରକର କାଇଛି ଯେପରି ଅନୁଭବ କରିଥିଲେ ଯେ ସେ ନିଜେ, ନିଜର ଭାଷା ଓ ତାଙ୍କର ଚିତ୍ର ତିନିହେଁ ଏକ ଉନ୍ମାଦ ଅବସ୍ଥାରେ ଉତ୍ତରିତ ହୋଇପଡ଼ିଛି । ଏହାହିଁ ଉନ୍ମ ଅବସ୍ଥା । ତଥାପି ସେ ଅନୁଭବ କରୁଛନ୍ତି ଜୀବନରେ ଆହୁରି ଅଧିକ ଉନ୍ମାଦ ଓ ଉଚ୍ଚତର ସ୍ତର ଅଛି, ତାହା ସଂପୂର୍ଣ୍ଣ ପାଗଳାମିର ସ୍ତର । ସେଇଠି ପହଞ୍ଚିବା ପାଇଁ ସେ ଏବେ ଚେଷ୍ଟିତ । ଖାଲି ଚିତ୍ରକଳାରେ ନୁହେଁ, ଶବ୍ଦରେ ମଧ୍ୟ ଅନୁଭବର ଏହିପରି ନାନାସ୍ତର ଓ ପର୍ଯ୍ୟାୟ ରହିଛି, ଯେଉଁଠି ପହଞ୍ଚିବାକୁ ଜଣେ ସତ୍ ଲେଖକ ବରାବର ଚେଷ୍ଟିତ ଥାଏ । ନେପାଳୀ ବାବା ରୂପାନନ୍ଦଙ୍କୁ ଏହି ମର୍ମରେ କହୁଛନ୍ତି ଯେ, ରୂପ ନୁହେଁ ଅରୂପ; ପୂର୍ଣ୍ଣ ନୁହେଁ ଶୂନ୍ୟ, ଶୂନ୍ୟରେ ହିଁ ସାଧନର, ଶିଳ୍ପୀର ଓ ସ୍ରଷ୍ଟାର ସିଦ୍ଧି ।

ଉପସଂହାରରେ ଏତକ ଉଲ୍ଲେଖ କରିବା ଅସମୀଚୀନ ନୁହେଁଯେ, ସମଗ୍ର **ଗଙ୍ଗାବତରଣ**ର ଲକ୍ଷ୍ୟ ହେଉଛି ଜୀବନର ଜାଗତିକତାକୁ ଅତିକ୍ରମ କରି ଏକ ଉତ୍ତରିତ ସ୍ଥିତିରେ ପହଞ୍ଚିବା । ଉପନ୍ୟାସର ସବୁ ଚରିତ୍ର (ଇତିହାସ, ପୁରାଣ, କିମ୍ବଦନ୍ତୀ ଓ ସାମ୍ପ୍ରତିକ କାଳର) 'ଗଙ୍ଗାବତରଣ' କରୁଛନ୍ତି କେବଳ ସେହି ଉତ୍ତରଣ ଲକ୍ଷ୍ୟରେ । 'ଗଙ୍ଗା' ହେଉଛି ଉପନ୍ୟାସର କେନ୍ଦ୍ର-ପ୍ରତୀକ, ଯାହାକୁ ମେରିଖୁଣ୍ଟ କରି ଦିନନାଥ କଥାବସ୍ତୁର ପରିକଳ୍ପନା କରିଛନ୍ତି । ରୂପର ହଟକାରିତା ଓ ଚମତ୍କାରିତା ତିଳଖୁଡ଼ୀ ଓ ଚାନ୍ଦିନୀ ଚରିତ୍ରରେ ଦିନନାଥ ଯେପରି ଦେଖାଇଛନ୍ତି, ତାହା ଓଡ଼ିଆ ଉପନ୍ୟାସରେ ବିରଳ । 'ବିନ୍ଦୁ' ଓ 'ବିସ୍ତାର'- ଚିତ୍ରଶିଳ୍ପର, ଏହି ମୌଳିକ ସ୍ଥିତି ଉପରେ ଛିଡ଼ା ହେଉଛି ସମଗ୍ର ଉପନ୍ୟାସ । 'ରୂପ' ଦେଇ ଅରୂପକୁ । ଶୂନ୍ୟ ଦେଇ ପୂର୍ଣ୍ଣକୁ ପାଇବାର ଏକ ଭାଷିକ-ପ୍ରଚେଷ୍ଟା ହେଉଛି 'ଗଙ୍ଗାବତରଣ', ଯେଉଁଥିରେ 'ଚିତ୍ର' କରିଛି ବିଶ୍ୱସ୍ତ ମଧ୍ୟସ୍ଥି । ଇଟାଲିର ପ୍ରଖ୍ୟାତ ଔପନ୍ୟାସିକ ଉମ୍ବେର୍ତୋ ଏକୋଙ୍କ ପ୍ରସିଦ୍ଧ ଉପନ୍ୟାସ ବାଓଦୋଲିନୋ Baudolinoର ନାୟକ ଉପନ୍ୟାସର ଠାଏ କହିଛି : 'We live in a world where people invent incredible stories.' ଗଙ୍ଗାବତରଣରେ ଏହି 'incredible story'ର ବର୍ଣ୍ଣାଢ଼୍ୟ ବିଭବ ଯେ ଦୁଷ୍ପ୍ରାପ୍ୟ ନୁହେଁ, ଏକଥା କହିବା ବାହୁଲ୍ୟ ମାତ୍ର । ଉମ୍ବେର୍ତୋଙ୍କର ଜଣେ ସମକାଳୀନ ଇଟାଲୀର ଲେଖକ ପ୍ରିମୋ ଲେଭାଇ ଉତ୍ତର-ଆଧୁନିକ ଉପନ୍ୟାସ ସମ୍ପର୍କରେ କହିବାକୁ ଯାଇ କହିଥିଲେ, 'ଉପନ୍ୟାସର ଘଟଣାସ୍ଥଳ ହୋଇପାରେ, 'imagined, imaginary, imaginable, unimaginable' ଅର୍ଥାତ୍ କଳ୍ପିତ, କଳ୍ପନା ପ୍ରସୂତ, କଳ୍ପନୀୟ ଓ ଅକଳ୍ପନୀୟ । **ବୋଓଦୋଲିନୋ** ଉପନ୍ୟାସର ନାୟକ ବାଇଦୋଲିନୋ ଜଣେ ଜନ୍ମ ମିଛୁଆ । ବାଇଦୋଲିନୋର ଲେଖା ଏକୋଙ୍କ ସହିତ ଦିନନାଥଙ୍କୁ ତୁଳନା କରାଯାଇପାରେ । ଏକୋଙ୍କ ପରି ଦିନନାଥ ହିଁ ହେଉଛନ୍ତି ଆଜିର ଓ ଆଗାମୀ କାଲିର ସେଇ ଅମୃତଭାଷୀ ଲେଖକ । ସହଜରେ ମିଥ୍ୟା ବା କଳ୍ପନାକୁ ପ୍ରଶ୍ରୟ ଦେବା ହେଉଛି ଏକ ଉତ୍ତର ଆଧୁନିକ ଦୃଷ୍ଟିଭଙ୍ଗୀ । ବାଓଦୋଲିନୋର ଶିକ୍ଷକ ବିକାପ ଅଟେ । ବାଓଦୋଲିନୋଙ୍କୁ ଏକଦା ଯାହା କହିଥିଲେ, ତାହା ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ । ସେ କହିଥିଲେ, ତମେ ଯାହା ମିଥ୍ୟା ବୋଲି ଜାଣିଛ, ତା' ପକ୍ଷରେ ସତ୍ୟ ସାକ୍ଷ୍ୟ ଦିଅନାହିଁ । କିନ୍ତୁ ଯାହା ସତ୍ୟ ବୋଲି ମନେ କରୁଛ, ତା' ସପକ୍ଷରେ ମିଥ୍ୟା ସାକ୍ଷ୍ୟ ଦେବା ଅଧର୍ମ ନୁହେଁ । ଏହା ଉତ୍ତର ଆଧୁନିକ ଲେଖନର କାଳୋଚିତ ଧର୍ମ, ଯାହାକୁ ସ୍ମୃତି, ସ୍ୱପ୍ନ ଓ ମ୍ୟାଜିକ୍ ପ୍ରଚକ୍ଷୁ ମାଧ୍ୟମରେ ଖୁବ୍ ସୁଚାରୁ ରୂପେ ସମ୍ପନ୍ନ କରିବାକୁ ଚାହିଁଛନ୍ତି ଦିନନାଥ ଓ ମୋର ବିଶ୍ୱାସ,

Digitized by srujanika@gmail.com

ଏଥିରେ ସେ ସଫଳ ହୋଇଛନ୍ତି ମଧ୍ୟ। ବାସ୍ତବ real ଓ ଅଳୀକ unreal ଦିନନାଥଙ୍କ ଉପନ୍ୟାସରେ ଏକାକାର ହୋଇ ପାଲଟି ଯାଇଛି ଏକ ନୂଆଧରଣର ଯାଦୁ-ବାସ୍ତବବାଦ magic-realism। ସବୁ ଉତ୍ତର-ଆଧୁନିକ ଔପନ୍ୟାସିକଙ୍କ ପରି ଦିନନାଥଙ୍କ ଉପନ୍ୟାସରେ ସମକାଳର ଯାବତୀୟ ଦ୍ୱନ୍ଦ୍ୱ ଓ ବିରୋଧାଭାସର ବନ୍ଧୁତ୍ୱପୂର୍ଣ୍ଣ ସହାବସ୍ଥାନ ସମ୍ଭବ ହୋଇଛି। ଜ୍ଞେୟ-ଅଜ୍ଞେୟ, ଅଳୀକ-ବାସ୍ତବ, ସତ୍ୟ-ଅସତ୍ୟ, ଇତିହାସ-ପୁରାକଳ୍ପ, ଶୃଙ୍ଖଳା (order) ଓ ବୈରାଗ୍ୟ କେହି କାହାରିକୁ ନାକଚ କରନ୍ତି ନାହିଁ **ଗଙ୍ଗାବତରଣ**ରେ। ମଣିଷର ଆପାତଃ ବିରୋଧୀ ଦୁଇ ଅସ୍ତିତ୍ୱ (ଆସୁରିକ ଓ ଐଶ୍ୱରିକ) ସେଇ ଏକା ଅବୟବରେ ହିଁ ସହାବସ୍ଥାନ କରନ୍ତି ଓ ମାନବର ଏପରି ଦ୍ୱୈତ-ସତ୍ତା ହେଉଛି ଭାଷାର ଅଭିଘାତ। ପୁଣି ଯେଉଁ ଭାଷା ମଣିଷର ଏହି ଦ୍ୱୈତ-ସ୍ୱରୂପକୁ ସହଜ ଓ ସଫଳ ଭାବେ ପ୍ରକାଶ କରିପାରିବ, ସେ ଭାଷା ହେଉଛି ଅବଧାରିତ ଭାବେ କାବ୍ୟର, ଯାହାର ସଫଳ ପ୍ରୟୋଗ ଦିନନାଥ **ଗଙ୍ଗାବତରଣ**ରେ କରିଛନ୍ତି। ଏ ଭାଷା ଦର୍ଶନ ବା ବିଜ୍ଞାନର ଭାଷା ନୁହେଁ, ଏ ଭାଷା ମଣିଷର ବ୍ୟବହୃତ ଭାଷା, ଯେଉଁଥିରେ ରହିଛି ଅର୍ଥର ଅତିରିକ୍ତ ଏକ ବିଶୁଦ୍ଧ ବ୍ୟଞ୍ଜନା। ନାୟକ 'ବାଓଦୋଲୋନୋ'ର ବୈରାଗ୍ୟ ଭିତରେ ଅନିନ୍ଦ୍ୟସୁନ୍ଦରୀ ହାଇପାଟିୟା ଯେପରି ଏକମାତ୍ର ମୁକ୍ତିର ସଂଭାବନା **ଗଙ୍ଗାବତରଣ**ରେ ଗଙ୍ଗା ସେହିପରି ଦିନକୁ ଦିନ ଭାଙ୍ଗି ପଡୁଥିବା ଭାରତୀୟ ବିଶ୍ୱାସର ତଥାପି ଉଦ୍‌ବୃତ୍ତ ଥିବା ଏକ ଅନନ୍ତ ସମ୍ଭାବନା। ଉଭୟ ଉପନ୍ୟାସରେ ଉତ୍ତରଣ ଏକ ସ୍ୱପ୍ନ, ତା'ର ଗ୍ୟାରେଣ୍ଟିର ଅବାନ୍ତରତା ଏକୋ ଓ ଦିନନାଥ ଉଭୟଙ୍କ ପାଇଁ ଅବାନ୍ତର - ଏହି କାରଣରୁ 'ଗଙ୍ଗାବତରଣ' ଏକ ସଫଳ 'ଉତ୍ତର-ଆଧୁନିକ' ଉପନ୍ୟାସ।



Digitized by srujanika@gmail.com

**ହୃଷୀକେଶ ପଣ୍ଡା**

## ଗଙ୍ଗାବତରଣ : ମଗ୍ନ ମାନସର ମୁଗ୍ଧ ଉଚ୍ଚାରଣ

'ଦେବୀ ସୁରେଶ୍ୱରୀ ଭଗବତୀ ଗଙ୍ଗେ
ତ୍ରିଭୁବନ ତାରିଣୀ ତରଳ ତରଙ୍ଗେ
ଶଙ୍କର ମୌଳି ବିହାରିଣୀ କମଳେ
ମମ ମତି ରାସ୍ତାଂ ତବପଦ କମଳେ ।'

ଭାରତୀୟ ମନୀଷୀର ଏହି ମୁଗ୍ଧ ଉଚ୍ଚାରଣର ତାଳେ ତାଳେ ପୁରାଣ ପ୍ରସିଦ୍ଧ ଗଙ୍ଗାନଦୀର ମହାନତା ଉତ୍କୀର୍ଣ୍ଣ । କଳୁଷନାଶିନୀ, ପାପ-ତାପହାରିଣୀ 'ଗଙ୍ଗା' ମର୍ତ୍ତ୍ୟମାନବର ମୁକ୍ତିଦ୍ୱାର ଭାବେ ପୂଜ୍ୟା ଓ ବନ୍ଦନୀୟା ବି । ଆର୍ଯ୍ୟାବର୍ତ୍ତରେ ଏହି ପାବନୀ ନଦୀର ପ୍ରବାହ ଯୋଗୁଁ ସମଗ୍ର ବିଶ୍ୱବସୁଧାରେ ଏ ଭୂମି ଦେବତାର ଭୂମି ଭାବରେ ପରିଚିତ । ହିନ୍ଦୁ ଧର୍ମ ଓ ଦର୍ଶନର ସକଳ ଐଶ୍ୱର୍ଯ୍ୟ ସତେଯେପରି ଫିଟିପଡ଼ିଛି ଏହି ପୁଣ୍ୟତୋୟା ନଦୀ ପ୍ଲାବନର ଧାରେ ଧାରେ । ଅସଂଖ୍ୟ ଭକ୍ତ ମୁକ୍ତି ପିପାସୁ ମାନବାତ୍ମାର ସର୍ଗଧାମ ହେଉଛି ପବିତ୍ର ଗଙ୍ଗାନଦୀ । ପୁରାଣରେ ଏହା କୀର୍ତ୍ତିଦା ଓ ଇତିହାସରେ ଏହା କଳାମୟୀ । ଜୀବନ ପ୍ରବାହର ଉତ୍ତରଣରେ ମଗ୍ନ ମାନବ ଗଙ୍ଗାବତରଣର ଅନୀଷା କରିବା ଭାରତୀୟ ଆଧ୍ୟାତ୍ମିକ ଜୀବନଚର୍ଯ୍ୟାର ଏକ ମହତ୍ତମ ଦିଗ । ଜୀବନର ଆରମ୍ଭ ପ୍ରବାହ ମଧ୍ୟରୁ ଏବଂ ଶେଷ ବି ସେହି ପ୍ରବାହ ମଧ୍ୟରେ । ଏଣୁ ଜୀବନ ଓ ମୃତ୍ୟୁକୁ ସଂଯୋଗ କରିଥିବା ସ୍ରୋତ ହିଁ ଗଙ୍ଗା । ଉଭୟ ଅବତରଣ ଓ ଉତ୍ତରଣର ଅଗମ୍ୟ ଲୀଳା ଭିତରେ ସୃଷ୍ଟିର ଏହି ପାବନୀ ପ୍ରବାହ ଅହର୍ନିଶ ସଂଘଟିତ ହୋଇଚାଲିଛି । ଜୀବନ ପ୍ରବାହର ଏହି ଅଦମ୍ୟ ଲୀଳା ରହସ୍ୟକୁ ନ ବୁଝିପାରିଲେ, ଜୀବନରେ ଚିରନ୍ତନ ଐଶ୍ୱର୍ଯ୍ୟକୁ ବୁଝିବା ସମ୍ଭବ ହେବନାହିଁ ।

ଦିନନାଥ ପାଠୀ ଆମ ସମୟର ଅନ୍ୟତମ ଶ୍ରଦ୍ଧାସ୍ପଦ ଶିଳ୍ପୀ । **ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେର ପରିଚୟ ଘେନି ତାଙ୍କ ବ୍ୟକ୍ତିତ୍ୱର କମନୀୟ ରଙ୍ଗରେ ଅଜସ୍ର ସମ୍ଭାବନା । କିଛି ସମୁଦ୍‌ଭିନ୍ନ ଓ କିଛି ସମୁଜ୍ଜ୍ୱଳିତ ହେବାର ପ୍ରତ୍ୟାଶାରେ ପ୍ରତୀକ୍ଷିତ । ବୃତ୍ତିରେ ଚିତ୍ରଶିଳ୍ପୀ ସତ, କିନ୍ତୁ ତାଙ୍କ ଚିତ୍ରର ତାଳେ ତାଳେ କବିତାର ମୁକୁଳିତ ଅଭିସାର । ସବୁଠି ଛନ୍ଦ ଓ ସବୁଠି ଶୃଙ୍ଖଳା । ଗଙ୍ଗାର ବିମଳ ଧାରା ଭଳି ତାଙ୍କ ଚିତ୍ରରେ ଭାଷାରେ ଚିତ୍ରିତ ପ୍ରବାହ । ଦୃଶ୍ୟମାନ ଜଗତର ଅଦୃଶ୍ୟ ଅଭିବ୍ୟକ୍ତିରେ ତାଙ୍କ ଶିଳ୍ପୀସତ୍ତା ଅନୁଭୂତିର ଶ୍ୱେତଶୀର୍ଷ ଯାଏ ପ୍ରଲମ୍ବିତ ।** ଜୀବନ ରହସ୍ୟର ସ୍ୱରୂପ ଉଦ୍‌ଘାଟନରେ ତାଙ୍କ ବିନ୍ଦୁରୁ ବିସ୍ତାରିତ ଏକ ଶ୍ୟାମଳ ସାରାଂଶ । ତେଣୁ ତାଙ୍କ ଅନୁଭୂତିର ଉତ୍ତରଣରେ କେଉଁଠି ପ୍ରୀତି ପୁଲକିତ ମହାମୋହ ତ ଅନ୍ୟତ୍ର ନୀଳ ନୀଳ ନିର୍ବାଣର ନିରୂତା ନିବେଦନ ନିର୍ଦ୍ଦିଷ୍ଟ । କିନ୍ତୁ ପ୍ରେମର ହେଉ କି ପାର୍ବଣର, ଭୋଗର ହେଉ କି ତ୍ୟାଗର, ସର୍ବତ୍ର ରୂପାନନ୍ଦୀ ପ୍ରାଣର ରୂପାନ୍ୱେଷରେ ତାଙ୍କ ଗଦ୍ୟଭାଷା ରୂପବାନ୍ ହୋଇଉଠିଛି । ଏଇଠି ଆତ୍ମକଥନର ଅନ୍ୟ ଏକ ଲୀଳାଚିତ୍ରରେ ଏ ଉପନ୍ୟାସର ନାୟକ ରୂପାନନ୍ଦ ଦଣ୍ଡାୟମାନ । ସେ ପ୍ରତ୍ୟକ୍ଷ କରିବେ ଗଙ୍ଗାଙ୍କୁ ଓ ତାଙ୍କ ବହମାନ ସ୍ରୋତର ବିବର୍ତ୍ତନତାକୁ ।

ଗଙ୍ଗାବତରଣ ଜୀବନ ପ୍ରବାହର ଏକ ଗଦ୍ୟକାବ୍ୟ ଓ ରୂପଲୀପ୍‌ସୁ ରୂପାନନ୍ଦଙ୍କ କାଶୀ ଅନୁଭବର କାହାଣୀ । ଏହି କାହାଣୀ କେବଳ ରୂପାନନ୍ଦଙ୍କ ନୁହେଁ, ଯେଉଁମାନେ ଉତ୍ତରଣର କାମନା ରଖି ଗଙ୍ଗାରେ ଅବତରିଛନ୍ତି, ସୁଇସ୍ ଶିଳ୍ପୀ ଆଲିସ୍ ବୋନରଙ୍କଠାରୁ ଆରମ୍ଭ କରି ବାଈଜୀ ଧର୍ମକୁ ଆଦରି ନେଇଥିବା ରୂପବତୀ 'ଚାନ୍ଦିନୀ' ପର୍ଯ୍ୟନ୍ତ ସମସ୍ତେ ସେମାନଙ୍କ ଆଶା, ଆକାଂକ୍ଷା ଓ ସର୍ବସ୍ୱକୁ ସମର୍ପି ଦେଇଛନ୍ତି ଏହି ଦିବ୍ୟଧାମରେ । ଆଦିନଗରୀ ବନାରସର ଭାସ୍ୱର ଭୂମି ମହାକାଳର ଅନନ୍ତ ଗର୍ଭ ଭେଦ କରି ପାରମ୍ପରିକ ଭାବେ ପ୍ରଚାର କରିଆସିଛି ବିଶ୍ୱଭାବନାର ମହାମନ୍ତ୍ର । ଯେଉଁ ମଣିଷର

Digitized by srujanika@gmail.com

ଦୃଷ୍ଟି ଅନ୍ତର୍ମୁଖୀ କେବଳ ସେ ହିଁ ଅନୁଭବ କରିପାରେ ଲୌକିକ, ଅଲୌକିକ, ଜାଗତିକ, ତଥା ଆଧାତ୍ମିକ ଲୀଳାର ଏହି ରଙ୍ଗଭୂମୀ କାଶୀଧାମକୁ । ଭାରତୀୟ ଧର୍ମ, ଦର୍ଶନ ଓ ଜୀବନଚର୍ଯ୍ୟାରେ ରସାଣିତ ଆନନ୍ଦବନ ହେଉଛି ବନାରସ । ଜନ୍ମ-ମୃତ୍ୟୁର ନିତ୍ୟ ଲୀଳାରେ ଲୀଳାୟିତ ଏ ଭୂମି ତା'ର ପବିତ୍ରତାକୁ ନେଇ ସମଗ୍ର ଜଗତକୁ ବାନ୍ଧି ରଖିଛି । ତେଣୁ ତ ପ୍ରେମଦଗ୍ଧ କବୀରଙ୍କ ଉଦାର ଦୋହା ଗାନରେ ମୁଖରିତ କାଶୀଧାମ ବନାରସର ମହିମା କୀର୍ତ୍ତିତ ହୋଇଛି-

'ସବ୍‌ହୀ ଭୂମି ବନାରସୀ ସବ୍ ନିର୍ ଗଙ୍ଗା ହୋୟ
ଜ୍ଞାନ ଆତମ୍ ରାମ୍ ହୈ, ଯୋ ନିର୍ମଲ ଘର ହୋୟ ।'

ଆତ୍ମଜ୍ଞାନୀ ମଣିଷ ନହେଲେ ବନାରସର ବ୍ରହ୍ମସତ୍ତାକୁ ଚିହ୍ନିବା ସମ୍ଭବ ନୁହେଁ । ସବୁ ଧର୍ମ ଓ ସବୁ ବର୍ଗର ସମସ୍ତ ଜନତାଙ୍କ ପାଇଁ ଏ ଧାମ ହେଉଛି ମୁକ୍ତିଧାମ । ସତ୍ୟର ଅନ୍ୱେଷା ପାଇଁ ହେଉ କି ଆତ୍ମସ୍ୱରୂପର ଉଦ୍‌ଘାଟନ ପାଇଁ, ବ୍ରହ୍ମସ୍ୱରୂପର ଅନ୍ୱେଷା ପାଇଁ ହେଉ କି ଜୀବନ ସତ୍ତାର ମୁକ୍ତିପାଇଁ, ଉଭୟ ଐହିକ ଓ ପାରତ୍ରିକ ଜୀବନର ବିସ୍ତାରିତ ବିଭାରେ ବିଭୂଷିତ କାଶୀଧାମ ହେଉଛି, ପ୍ରତ୍ୟେକ ରୂପାନ୍ୱେଷୀ ପ୍ରାଣର ଏକ ଐକାନ୍ତିକ ଅଭିଳାଷ । ସମ୍ଭବତଃ ଏହି ଅଭିଳାଷକୁ ସମ୍ବଳ କରି ହିଁ ଜୀବନସତ୍ତାର ଉତ୍ତରଣ ଓ ଅବତରଣ ପ୍ରକ୍ରିୟା ନିତ୍ୟକାଳ ଧରି ଚାଲୁରହିଛି । ଅବତରଣ ଓ ଉତ୍ତରଣର ଅଗମ୍ୟ ଲୀଳା ଭିତରେ ସୃଷ୍ଟିର ରହସ୍ୟ ଯେତିକି ଗୋପ୍ୟ, ସେତିକି ମୁକ୍ତ । ଆତ୍ମଜ୍ଞାନରେ ଅବତରଣ କରିପାରିଲେ ଅବତରଣର ଅମୂର୍ତ୍ତ୍ୟ ରୂପକୁ ଯେପରି ପ୍ରତ୍ୟକ୍ଷ କରିହୁଏ, ସେହିପରି ସ୍ଥୂଳ ଦେହର ଅବଧି ମଧ୍ୟରେ ଯଦି ଉତ୍ତରଣର ଜିଜ୍ଞାସା ସୃଷ୍ଟି ହୁଏ, ତେବେ ଉତ୍ତରଣ ସେତିକି ନିଗୂଢ଼ ଓ ଗୋପ୍ୟ ମନେହୁଏ । ଏଣୁ ଆତ୍ମାର ଅବତରଣ ହେଉଛି ଅସ୍ମିତାର ଏକ ଅପୂର୍ବ ଉପଲବ୍ଧି । ଏ ଉପଲବ୍ଧି ପ୍ରାଣରେ ସଂଚାର ନହେଲେ ଅବତରଣର ପ୍ରକ୍ରିୟା ଅଦୃଶ୍ୟ ଓ ଅପ୍ରକାଶ୍ୟ ହିଁ ମନେ ହୋଇଥାଏ । ମାତ୍ର ଉପଲବ୍ଧ ହେଲେ ବ୍ରହ୍ମବେଣୁରୁ ଉଦ୍‌ବେଳିତ ଗଙ୍ଗା ମର୍ତ୍ତ୍ୟଗାମିନୀ ହେଲା ଭଳି, ଆତ୍ମପୁରୁଷ ଅମୃତ ମଣୋହିର ସର୍ଗବାସକୁ ପ୍ରତ୍ୟକ୍ଷ କରେ । ସେଇଠି ଜୀବସତ୍ତାର ଚେତନା ଜଗତ ଏକ ଅପୂର୍ବ ରାଜଗଙ୍ଗରେ ଉଦ୍‌ଭାଷିତ ହୋଇଉଠେ ଓ ଚିତ୍ରିତ ହୁଏ ସୁବର୍ଣ୍ଣ ପ୍ରାଣଭେଦୀ ଶବ୍ଦରେ, ଛନ୍ଦରେ ଗନ୍ଧରେ ଓ ଧ୍ୱନିରେ ।

ଏ ଗଦ୍ୟ କାବ୍ୟର ନାୟକ ରୂପାନନ୍ଦର ଚରିତ୍ର ଅନ୍ତରାଳରେ ଏହିଭଳି ଏକ ଉତ୍ତରିତ ଜୀବସତ୍ତାର ସନ୍ଧାନ ଦେଇଛନ୍ତି ଔପନ୍ୟାସିକ । **ରୂପାନ୍ୱେଷୀ ରୂପାନନ୍ଦ ବାହ୍ୟତଃ ଏକ ଚରିତ୍ର ଭଳି ପ୍ରତୀତ ହୋଇଛନ୍ତି ସିନା, ପ୍ରକୃତରେ ସେ ଶିଳ୍ପୀ ସତ୍ତାର ଏକ ଅବଚେତିତ ଅଶରିରୀ ସତ୍ତା । ଦେଖିବାକୁ ରକ୍ତମାଂସର ସ୍ଥୂଳ ଦେହଧାରୀ ମଣିଷଟିଏ କିନ୍ତୁ ଦେହ ଅପେକ୍ଷା ବିଦେହ ଓ ସ୍ଥୂଳ ଅପେକ୍ଷା ଭାବମୟ ସୂକ୍ଷ୍ମ ଜଗତରେ ତାଙ୍କ ବିଚରଣ ଅଧିକ ।** ଅବତରଣର ଅବ୍ୟବହିତ ପୂର୍ବ ଅମୂର୍ତ୍ତ ସଂଳାପ ପରିପ୍ରେକ୍ଷୀରେ ଔପନ୍ୟାସିକ ତାଙ୍କ ଉପନ୍ୟାସର ନାୟକକୁ ପାଠକ ପାଖରେ ପରିଚିତ କରିବାକୁ ଯାଇ କହନ୍ତି - 'ରୂପାନନ୍ଦ ଜାଗ୍ରତ, ସପ୍ନ ଓ ସୁଷୁପ୍ତିର ଅବସ୍ଥା ଭିତରେ ବାରମ୍ବାର ଭ୍ରମିଛନ୍ତି, ଶେଷରେ ବନାରସରେ ଅବତରଣର ଅନୁଭବ ସପ୍ନରେ ରୂପାୟିତ ହୋଇ ସେ ଉତ୍ତରିତ ହୋଇଯାଇଛନ୍ତି । ରୂପାନନ୍ଦ ଏକ ଚରିତ୍ର-ବିଶେଷ ଭଳି ପ୍ରତ୍ୟୟ ହେଉଥିଲେ ହେଁ ସେ ସଚେତନ ମଣିଷ ସମାଜର ପ୍ରତିନିଧି । ହୁଏତ ସବୁ ମଣିଷ ଭଳି ଜଣେ ଜିଜ୍ଞାସୁ ରୂପାନ୍ୱେଷୀ ମଣିଷ ।' ଅବଶ୍ୟ ସବୁ ମଣିଷଙ୍କ ଭଳି ରୂପାନନ୍ଦ ଯେ ରୂପର ଅନ୍ୱେଷ କରିଛନ୍ତି ତାହା ନୁହେଁ, କାରଣ ସବୁ ମଣିଷ ଏତେ ସହଜରେ ଆତ୍ମାର ଉର୍ଦ୍ଧ୍ୱରେ ଥିବା ଭାବମୟ ଜଗତକୁ ଉତ୍ତୀର୍ଣ୍ଣ ହେବା ସମ୍ଭବ ନୁହେଁ । ମାନବାନୁଭୂତିରେ ଦିବ୍ୟମୟ ଚେତନାର ସଂଯୋଗ ନ ଘଟିଲେ ଉତ୍ତରଣ ହୁଏତ କାୟିକ ହୋଇପାରେ, ମାତ୍ର ଆତ୍ମିକ ହେବା ସମ୍ଭବ ନୁହେଁ । ମଣିଷ ତପୋସିଦ୍ଧ ଓ କାଳସିଦ୍ଧ ହେଲେ ହିଁ ଯାଇ ଏହି ସ୍ଥିତିରେ ଉପନୀତ ହୋଇପାରିବ । ଅତଏବ ରୂପାନନ୍ଦଙ୍କର ଚାରିତ୍ରିକ ବିଶେଷତ୍ୱର ଅନ୍ତରାଳରେ ଏହି

Digitized by srujanika@gmail.com

ତପସାଧନାର ବିଭୂତି ତାଙ୍କୁ ସୁଖଦୁଃଖର ଊର୍ଦ୍ଧ୍ୱରେ ଉପନୀତ କରାଇପାରିଛି । **ତେଣୁ ତାଙ୍କ ପାଇଁ ଜାଗ୍ରତ, ସପ୍ନ ଓ ସୁଷୁପ୍ତି ସବୁ ଏକାକାର ଓ ଏକାଭଳି ପ୍ରତ୍ୟୟ ହୋଇଛନ୍ତି । ତାଙ୍କ ପାଇଁ ସପ୍ନ ଓ ଜାଗ୍ରତ ଭିତରେ ଏତେ ବେଶି ତଫାତ୍ ନାହିଁ । ଏଣୁ ଉପନ୍ୟାସରେ ରୂପାନନ୍ଦଙ୍କ ସପ୍ନାନୁଭୂତି ଏକପ୍ରକାର ମାନବାନୁଭୂତି ଭିନ୍ନ ଅନ୍ୟ କିଛି ନୁହେଁ । ତେଣୁ ତ ଲେଖକ କଥାକାବ୍ୟର ନାୟକ ମାଧ୍ୟମରେ ଗଙ୍ଗାନଦୀର ପୌରାଣିକ ଓ ଐତିହାସିକ ଏବଂ ସାଂପ୍ରତିକ ମହାତ୍ମ୍ୟକୁ ଗୋଟିଏ ସୂତ୍ରରେ ବାନ୍ଧି ରଖିବାର ଚେଷ୍ଟା କରିଛନ୍ତି ।** ବାରାଣସୀରେ ଜାହ୍ନବୀର ନଈପଠା କାଳ କାଳ ଧରି ନିଜକୁ ଉନ୍ମୁକ୍ତ କରିରଖିଛି ଏହିଭଳି ଅସଂଖ୍ୟ ରୂପାନ୍ୱେଷୀ ରୂପାନନ୍ଦମାନଙ୍କ ପାଇଁ । ସ୍ଥୂଳ ଜୀବଧର୍ମକୁ ଛାଡ଼ି ଯେଉଁଠି ରୂପାନନ୍ଦମାନେ ଉତ୍ତରଣର ପ୍ରୟାସରେ ବ୍ରହ୍ମସତ୍ତାକୁ ଖୋଜନ୍ତି, ସେଇଠି ପ୍ରସ୍ଫୁଟିତ କମଳ ବିସ୍ତାରିତ ଶତଦଳର ସ୍ୱରୂପ ନେଇ କାଶୀଧାମ ହିଁ ଜିଜ୍ଞାସୀ ଭକ୍ତକୁ ପହଁଚାଇ ଦେଇଛି ସତ୍ୟ ଉପଲବ୍ଧିର ଶୀର୍ଷ ଧାମରେ ।

ଏ ଉପନ୍ୟାସର ନାୟକ ମଧ୍ୟ କିଛି କମ୍ ଭ୍ରମି ନାହାନ୍ତି । ଜାଗ୍ରତ, ସପ୍ନ ଓ ସୁଷୁପ୍ତିର ଅବସ୍ଥା ମଧ୍ୟରେ ବାରମ୍ବାର ଭ୍ରମଣ କରି ଅବଶେଷରେ ସେ ଜ୍ୟୋତି ନଗରୀ ବନାରସରେ ହିଁ ଆସ୍ୱାଦ କରିଛନ୍ତି ଉତ୍ତରଣର ଭବ୍ୟ ଆନନ୍ଦ । ଚଳଚ୍ଚିତ୍ରର ଦୃଶ୍ୟ ପରିବର୍ତ୍ତନ ଭଳି ରୂପାନନ୍ଦଙ୍କ ମାନସପଟ୍ଟରେ ପାବନୀ ଗୌରବମୟ ଅଧ୍ୟାୟ ସବୁ ମୁକୁଳିତ ହୋଇଯାଇଛନ୍ତି । ଗୋଟିଏ ସ୍ଥିର ବିନ୍ଦୁରେ ଯନ୍ତ୍ରବତ୍ ଦଣ୍ଡାୟମାନ ଜଣେ ଜିଜ୍ଞାସୁ ଦର୍ଶକ ଭଳି ଦୃଶ୍ୟ ପରେ ଦୃଶ୍ୟ ଅବତରଣ ଲୀଳାକୁ ଦେଖୁଛନ୍ତି ରୂପାନନ୍ଦ । ପୁରାଣ, ଇତିହାସ ଓ ବର୍ତ୍ତମାନର ସବୁ ଅଦୃଶ୍ୟ ଦୃଶ୍ୟ ଯେପରି ଦୃଶ୍ୟାୟିତ ହୋଇପଡ଼ିଛି ତାଙ୍କ ଦୃଷ୍ଟିରେ । **କିଛି ସପ୍ନ ଓ କିଛି କଳ୍ପନା ସହିତ ବାସ୍ତବତାର ଫେଣ୍ଟା ଫେଣ୍ଟି ମିଶ୍ର ରୂପରେ ଗଙ୍ଗାବତରଣର ଗୌରବ ଗାଥାକୁ ସେ ଯେପରି ପ୍ରତ୍ୟକ୍ଷ କରିଛନ୍ତି, ତାକୁ ଅବିକଳ ଟେକି ଦେଇଛନ୍ତି ପାଠକଙ୍କ ସମ୍ମୁଖରେ । ରୂପକଳ୍ପ ଶୋଭିତ ରୁଚିପୂର୍ଣ୍ଣ ଭାଷା, ମାର୍ଜିତ ଶୈଳୀ ଓ କଥା ଉପସ୍ଥାପନର କମନୀୟ କଳାପାଟବ ଘେନି ରୂପାନନ୍ଦଙ୍କ ଉତ୍ତରଣର ଅନୁଭୂତିରେ ପ୍ରାଣବନ୍ତ ହୋଇଉଠିଛି ସମଗ୍ର ଉପନ୍ୟାସର କଥାବସ୍ତୁ ।**

'ଗଙ୍ଗା' - ଏ ନାମ ପଛରେ ରହିଛି ହଜାର ହଜାର ବର୍ଷର ମାହାତ୍ମ୍ୟ । ଗୀତାଭଳି ଗତିଶୀଳ ଏହାର ପାବନୀ ଧାରାରେ ବିନ୍ଦୁ ବିନ୍ଦୁରେ କୋଟି କୋଟି ଦେହୀ ସତ୍ତାର ଲୀନ-ଲୀଳା ଅବିରତ ଲାଗିରହିଛି । ତେଣୁ ଗଙ୍ଗାର ଗାଥା ଯେତିକି ପ୍ରାଚୀନ ସେତିକି ପ୍ରାଚୁର୍ଯ୍ୟମଣ୍ଡିତ ମଧ୍ୟ । ଏ ଗାଥା ଏତେ ବିସ୍ତାରିତ ଯେ, ତାକୁ ଏକ ସାଧାରଣ ଉପନ୍ୟାସର କଳେବର ଭିତରେ ବାନ୍ଧିବା ଆଦୌ ସମ୍ଭବ ନୁହେଁ । ଗଙ୍ଗାକୁ ନେଇ ହୁଏତ ପୁରାଣ ଲେଖାଯାଇପାରେ ମାତ୍ର ଉପନ୍ୟାସ ନୁହେଁ । ହଜାର ହଜାର ବର୍ଷ ପ୍ରାଚୀନ ଏହି କୀର୍ତ୍ତିମୟ ନଦୀର ବିସ୍ତାରିତ ଐଶ୍ୱର୍ଯ୍ୟ ଲୁଚିପଡ଼ିଛି ବନାରସର ପବିତ୍ର ମାଟିରେ । ତେଣୁ ବନାରସ ଭୂଇଁ ମୁକ୍ତିପିପାସୁ ମାନବାତ୍ମାର ସ୍ୱର୍ଗଧାମ । ଏଇଠି କୋଟି କୋଟି ଲୋକଙ୍କ କୋଟି କୋଟି କାମନା ଗଙ୍ଗାନଦୀର ସ୍ୱଚ୍ଛ ସ୍ରୋତରେ ନିତ୍ୟ ଭାସମାନ ଓ ଅୟୁତ ମରଶରୀରର ଅସ୍ଥି କଙ୍କାଳରେ ଏ ଭୂଇଁ ମହାଦେବ ଶିବଙ୍କର ମହାଶ୍ମଶାନ । ଏଣୁ ଏ ଭୂଇଁରେ ଅବତରଣ କଲେ ମୃତ୍ୟୁ ଭୟ ନାହିଁ ବୋଲି ଏଠାରେ ଅବତରଣର ନିତ୍ୟ ଲୀଳା ସଂଘଟିତ । ପାପୀ-ତାପୀ, ରାଜା-ପ୍ରଜା, ସାଧୁ-ଅସାଧୁ, ଧନୀ-ଦରିଦ୍ର, ଜ୍ଞାନୀ-ଅଜ୍ଞାନ, ମହାଜନ-ହୀନଜନ, ଧର୍ମାତ୍ମା ଓ ଧର୍ମଦ୍ରୋହୀଠାରୁ ଆରମ୍ଭ କରି କୁଳବଧୂ ଓ ବାରାଙ୍ଗନା ପର୍ଯ୍ୟନ୍ତ ସକଳ ଧର୍ମ ଓ ସକଳ ବର୍ଗର ଲିଙ୍ଗଭେଦ ରହିତ ଆଚଣ୍ଡାଳ ବ୍ରାହ୍ମଣ ସମସ୍ତେ ଜୀବଦ୍ଦଶାରେ ହେଉ କି ପରଲୋକଗତରେ ଅବତରଣ କରିଥାନ୍ତି ଏହି ଗଙ୍ଗାଧାମରେ । ସମସ୍ତଙ୍କର ସେହି ଗୋଟିଏ ବିଶ୍ୱାସ ଗଙ୍ଗା ବିଧୌତ ବନାରସର ପାବନୀ ମାଟିରେ ଅବତରିଲେ ମୃତ୍ୟୁ ଭୟ ନାହିଁ ।

ସମ୍ଭବତଃ, ଏହି ଅନ୍ୱେଷା ନେଇ କଥାକାବ୍ୟର ନାୟକ ରୂପାନନ୍ଦ ବହୁ ପଥ ଭ୍ରମିସାରିବା ପରେ ଶେଷରେ ଗଙ୍ଗାଙ୍କ ପାବନୀ କୋଳରେ ଅବତରଣ କରିଛନ୍ତି । ପ୍ରସ୍ଥ ପ୍ରସ୍ଥ ହୋଇ ସାତଟି

Digitized by srujanika@gmail.com

ପ୍ରସ୍ଥରେ ଲେଖକ ନିଜର ସମୁଦାୟ ଅନୁଭୂତିକୁ ଲିପିବଦ୍ଧ କରିଛନ୍ତି ସମଗ୍ର ଉପନ୍ୟାସ ଭିତରେ । ଅବଶ୍ୟ, 'ରୂପାନନ୍ଦ' ଚରିତ୍ରର ଅନ୍ତରାଳରେ ସ୍ୱୟଂ ଲେଖକ ହିଁ ରୂପାନ୍ୱେଷୀ ରୂପାନନ୍ଦର ରୂପ ନେଇ ଉଭା ହୋଇଛନ୍ତି ଆମ ପାଖରେ ।

ଏକଥା ଏଇଠି ସ୍ପଷ୍ଟ ହୋଇଯାଉ ଯେ, ରୂପାନନ୍ଦ ଭାରତବର୍ଷରେ ଓଡ଼ିଶା ଭଳି ଏକ ଗ୍ରାମୀଣ ରାଜ୍ୟର ଏକ ସାଧାରଣ ଗାଁରୁ ଚିତ୍ର ସୃଜନର ସ୍ୱପ୍ନ ନେଇ ବହୁ ପଥ ଅତିକ୍ରମ କରିସାରିବା ପରେ ପହଞ୍ଚିଛନ୍ତି ବନାରସରେ । ମନରେ ଅନେକ ସ୍ୱପ୍ନ ସେ ଆଲିସ୍ ବୋନରଙ୍କ ଆଶ୍ରମ ଦେଖିବେ । ତେଣୁ ମୋଗଲସରାଇରୁ ଫିଆଟ୍ ଯୋଗେ ଆଲିସ୍‌ଙ୍କ ସାଧନା ପୀଠକୁ ଯାତ୍ରା କଲାବେଳେ ତାଙ୍କ ମନ ଭିତରେ ଅଜସ୍ର ଭାବନା ଅଙ୍କୁରିତ ହୋଇଛି । ଏପରିକି ଆଲିସ୍‌ଙ୍କ ସାଧନା ପୀଠର ପାହାଚଗୁଡ଼ିକୁ ଅତିକ୍ରମ କଲାବେଳେ ସେ ଅନୁଭବ କରିଛନ୍ତି ସତେଯେପରି ତାଙ୍କୁ ପୁଣି ଥରେ ଜୀବନର ବାଲ୍ୟ କୈଶୋର ଓ ଯୌବନାବସ୍ଥାକୁ ଅତିକ୍ରମ କରି ଉତ୍ତରଣର ବିଭିନ୍ନ ପର୍ଯ୍ୟାୟରେ ଉପନୀତ ହେବାକୁ ପଡୁଛି । ତାଙ୍କ ଅନୁଭବର ଏହି ଭାଷାକୁ ଲକ୍ଷ୍ୟ କରନ୍ତୁ- 'ରୂପାନନ୍ଦ ଖୁବ୍ ସନ୍ତର୍ପଣରେ ପାହାଚ ପରେ ପାହାଚ ଚଢ଼ି ଆଗେଇଲେ । ତାଙ୍କୁ ଲାଗିଲା ସେ ଇଟା ତିଆରି ପାହାଚ ଅତିକ୍ରମ କରୁନାହାନ୍ତି, ଜୀବନରେ ଅତିବାହିତ ହୋଇଯାଇଥିବା ବହୁ ପାହାଚ-ବାଲ୍ୟ, କୈଶୋର ଓ ଯୌବନରୁ ପ୍ରୌଢ଼ ଯାଏ ସବୁ ଅବସ୍ଥାର ପାହାଚଗୁଡ଼ିକୁ ଆଉଥରେ ପାରିହୋଇ ଯାଉଛନ୍ତି । ସବୁର ଶେଷ ପାହାଚ ହିଁ ତ ଗଙ୍ଗା ।'

ଆଲିସ୍ ବୋନର୍ ବିଶ୍ୱର ଅନ୍ୟତମ ପ୍ରଖ୍ୟାତ ଚିତ୍ରଶିଳ୍ପୀ । ଶିଳ୍ପଶାସ୍ତ୍ର ଉପରେ ତାଙ୍କର ଅଗାଧ ପ୍ରବେଶ ଥିଲା । ତାଙ୍କ ପ୍ରଣୀତ ପୁସ୍ତକଗୁଡ଼ିକ ଭାରତୀୟ ଶିଳ୍ପଶାସ୍ତ୍ରର ଏକ ଏକ ଉଜ୍ଜ୍ୱଳ ସ୍ମାରକୀ । ହିନ୍ଦୁ ଭାସ୍କର୍ଯ୍ୟର ସୂକ୍ଷ୍ମ ରହସ୍ୟକୁ ସେ କେବଳ ବୁଝିନଥିଲେ ବରଂ ଭାରତୀୟ ଶିଳ୍ପୀ ପରମ୍ପରାକୁ ସେ ମାର୍ମିକ ଭାବରେ ନିଜେ ଉପଲବ୍ଧି କରିବା ସହିତ ଶିଳ୍ପଶାସ୍ତ୍ରୀୟ ବିନ୍ଦୁ ଓ ବଳୟର ରହସ୍ୟ ଉଦ୍‌ଘାଟନ କରିଯାଇଛନ୍ତି । ଉତ୍କଳୀୟ ଶିଳ୍ପ ପରମ୍ପରା ତାଙ୍କୁ ତାଙ୍କ ଗବେଷଣାରେ ଯଥେଷ୍ଟ ସାହାଯ୍ୟ କରିଥିଲା । ରୂପାନନ୍ଦ, ଆଶ୍ରମର ସ୍ନିଗ୍ଧ ପୀଠରେ ଆଲିସ୍ ବୋନର୍‌ଙ୍କ ଭାସ୍କର୍ଯ୍ୟ କଳାକୁ ଦେଖି କେତେବେଳେ ଆପଣାଛାଏଁ ଉତ୍ତରିତ ହୋଇଯାଇଛନ୍ତି କଳାଜଗତର ଏକ ଉର୍ଦ୍ଧ୍ୱତମ ସ୍ଥିତିକୁ, ତାହା ସେ ନିଜେ ମଧ୍ୟ ବୁଝିପାରି ନାହାନ୍ତି । ଓଡ଼ିଶାର କେଉଁ ଅଖ୍ୟାତପଲ୍ଲୀ ଦିଗପହଣ୍ଡିରୁ ସୁଦୀର୍ଘ ଯାତ୍ରା ପରେ ବନାରସରେ ଆସି ପହଞ୍ଚିବା ରୂପାନନ୍ଦଙ୍କୁ କେତେ ଅଲୋଡ଼ା ଓ ଅଭୁଲା ସ୍ମୃତିସବୁ ଜାବୁଡ଼ି ଧରିଛନ୍ତି । ଗୋଟିଏ ପଟରେ ଆଶ୍ରମର ସ୍ନିଗ୍ଧ ବାତାବରଣ ଏବଂ ଅନ୍ୟପଟରେ ଆଧ୍ୟାତ୍ମିକ ମାଟି ବନାରସର ପବିତ୍ରତା ଏବଂ ପାବନୀ ଗଙ୍ଗାର ପ୍ରଶାନ୍ତ ବହମାନ ଧାରା ଭିତରେ ସେ ହଜିଯାଇଛନ୍ତି । ତାଙ୍କୁ ସବୁକିଛି ନୂଆ ଓ ଅଭିନବ ମନେହୋଇଛି । ଯେମିତି ସେ ପୂର୍ବରୁ କେବେ ଏତେ ସୁନ୍ଦର ଆକାଶ, ଜହ୍ନ, ଜ୍ୟୋତ୍ସ୍ନା ଓ ନଦୀକୁ ପ୍ରତ୍ୟକ୍ଷ କରିନଥିଲେ । ତେଣୁ ଛାୟାସ୍ୱପ୍ନର ଏକ ଶୀତଳ ସମ୍ମୋହନ ଭିତରେ ସେ ପରଖି ପାରୁନଥିଲେ ସତ୍ୟ ଓ ବାସ୍ତବତାକୁ । ଏକ ଅଦ୍ଭୁତ ଆବେଶ ଏକ ଅନନୁଭବ୍ୟ ଅନୁଭବର ମାଦକତା ଭିତରେ ସେ ଯେତେବେଳେ ଦିବଙ୍ଗତ ଆଲିସ୍ ବୋନର୍‌ଙ୍କ ପ୍ରତିମାମୂର୍ତ୍ତିକୁ ସାକ୍ଷାତ କରିଛନ୍ତି, ସେତେବେଳେ ତାଙ୍କୁ ମନେହୋଇଛି ଆଲିସ୍ ଯେପରି ସଶରୀରେ ସଦେହରେ ତାଙ୍କ ଆଖି ଆଗରେ ଠିଆହୋଇ କହୁଛନ୍ତି- 'ରୂପାନନ୍ଦ ମୁଁ ସବୁବେଳେ ଚାହିଁଥିଲି ଗଙ୍ଗାଙ୍କ କୋଳରେ ସବୁଦିନ ରହିଯିବା ପାଇଁ । ଜୀବନରେ, ମରଣରେ, କାଶୀନାଥଙ୍କ ଅପାର କୃପାରୁ ବଂଶୀଧାରୀ ବୃନ୍ଦାବନ ବିହାରୀଙ୍କ ଅକୁଣ୍ଠ କରୁଣାରୁ ତାହା ହିଁ ଶେଷରେ ହୋଇଛି । ମୁଁ ଏଇଠି ଅଛି । ମୁଁ ଭୂତ କିମ୍ବା ପ୍ରେତ ନୁହେଁ । ମୁଁ ସଚେତନ ଆତ୍ମସ୍ୱରୂପ, ମୁଁ ଭାବମୟ, ମୁଁ ଚିନ୍ତନକଳ୍ପ ।' ଆଲିସ୍‌ଙ୍କ ଏହି ସ୍ୱପ୍ନାଚ୍ଛନ୍ନ ବାଣୀରେ ବିବଶ ଓ ବିସ୍ମୟ ବିସ୍ଫାରିତ ରୂପାନନ୍ଦ ଦେଖୁଥିଲେ ସୃଷ୍ଟି ସର୍ଜନାର ବିଚିତ୍ର ଲୀଳା । ଆନନ୍ଦ ଓ ବିସ୍ମୟରେ ଉତ୍‌ଫୁଲ୍ଲିତ ହୋଇ ରୂପାନନ୍ଦଙ୍କୁ ଚିତ୍ରମୟୀ

Digitized by srujanika@gmail.com

ଆଲିସ୍ ବୁଝାଇ ଦେଉଥିଲେ ଭାରତୀୟ ଶିଳ୍ପ ଓ ଦର୍ଶନର ନିର୍ଯ୍ୟାସ । ସୃଷ୍ଟି, ସ୍ଥିତି, ପ୍ରଳୟର ଗୁପ୍ତ ରହସ୍ୟ ସତେ ଯେପରି ମୁକୁଳିତ ହୋଇଯାଉଥିଲା ତାଙ୍କ ପାଖରେ, ମହାଭାରତରେ ଅର୍ଜୁନଙ୍କ ନିକଟରେ ଶ୍ରୀକୃଷ୍ଣ ଯେପରି ବିସ୍ତାରିତ କରିଦେଇଥିଲେ ବିଶ୍ୱର ରହସ୍ୟ । ରୂପାନନ୍ଦ ପୁଲକିତ ହୋଇପଡୁଥିଲେ ନିଜ ଭିତରେ ନିଜେ । ଦେହର ବଳୟ ଭାଙ୍ଗି ତାଙ୍କର ଅମରସ୍ୱରୂପ ସତେ ଯେପରି ମିଳାଇ ଯାଉଥିଲା ସେହି ଅପୂର୍ବ ଦିବ୍ୟମୟ ଭାବ ଜଗତରେ । ଫୁଲର ସୁଗନ୍ଧ ଭଳି, ମୃଗନାଭିର କସ୍ତୁରୀ ଭଳି, ବନସ୍ତର ଚନ୍ଦନ ବୃକ୍ଷ ଭଳି ଏବଂ ଗଜ ମସ୍ତକର ମୁକ୍ତା ଭଳି ତାଙ୍କ ପ୍ରାଣସତ୍ତା ଦେହର ସ୍ଥୂଳ ଆୟତନ ଭିତରୁ ମୁକ୍ତି ଖୋଜିଥିଲା । ଆଲିସ୍‌ଙ୍କ ପ୍ରତିମା ଦର୍ଶନରେ ରୂପାନନ୍ଦଙ୍କ ଏ ଭାବମୟ ଉତ୍ତରଣ ତାଙ୍କୁ ସ୍ଥୂଳ ଦେହର ଅବଧି ଭିତରୁ ଭାରତୀୟ ଦର୍ଶନର ସୂକ୍ଷ୍ମ ଜଗତରେ ପହଞ୍ଚାଇ ଦେଲା । ଏଥର ସେ ଆଉ ଦିଗପହଣ୍ଡିର ଜଣେ ସାଧାରଣ ଚିତ୍ରଶିଳ୍ପୀ ହୋଇ ରହିନଥିଲେ, ତାଙ୍କ ଭିତରେ ସଞ୍ଚାର ହୋଇସାରିଥିଲା ଏକ ଦିବ୍ୟ ଚେତନାଧାରୀ ଆତ୍ମସତ୍ତାର ଆବେଶ ।

ରୂପାନନ୍ଦଙ୍କ ଏହି ଆବେଶ ଭିତରେ ଉପନ୍ୟାସର ଦ୍ୱିତୀୟ ପ୍ରସ୍ଥ ବନାରସରେ ସୂର୍ଯ୍ୟୋଦୟର ସ୍ମୃତି ନେଇ ଉଦ୍‌ଭାସିତ ହୋଇଉଠିଛି । ମଠ, ମନ୍ଦିର, ମହନ୍ତ ଓ ମହାତ୍ମାଙ୍କ ନଗରୀ ବନାରସରେ ସୂର୍ଯ୍ୟୋଦୟ ହୋଇଛି ଲକ୍ଷ ଲକ୍ଷ ଭକ୍ତଯାତ୍ରୀଙ୍କ ସମବେତ ମନ୍ତ୍ର ଧ୍ୱନି ଭିତରେ । ତୁଳସୀ, ଚନ୍ଦନ, ଅଗୁରୁ ଓ ଅତରର ଅପୂର୍ବ ସମ୍ମୋହନରେ କାଶୀଧାମ ଅପରୂପ ମନେହୋଇଛି । ଏଥର ରୂପାନନ୍ଦ ଗଙ୍ଗା ପରିକ୍ରମା କରୁଛନ୍ତି ଡଙ୍ଗାରେ । ଡଙ୍ଗାଚାଳକ ବୁଲେଇ ବୁଲେଇ ଦେଖେଇ ଦେଉଛି ଅସୀଘାଟ, ତୁଳସୀ ଘାଟ, ସରଜୁ ଘାଟ, ହରିଶ୍ଚନ୍ଦ୍ର ଘାଟ ପ୍ରଭୃତିକୁ ରୂପାନନ୍ଦଙ୍କୁ ଆଉ ନିଜର ସ୍ୱଳ୍ପ ଜ୍ଞାନରେ ବୁଝେଇ ଦେଉଛି ଏହିସବୁ ଘାଟ ଏବଂ ଘଟର ମାହାତ୍ମ୍ୟ । ନାଉରିଆର କଥା ପ୍ରସଙ୍ଗରେ ଲେଖକ ଅତୀତ ଭାରତର ମହାନ୍ ଆଧ୍ୟାତ୍ମିକ ଓ ପୌରାଣିକ ପରମ୍ପରାକୁ ରୋମନ୍ଥିତ କରିଛନ୍ତି । ଶାନ୍ତନୁ ଓ ଗଙ୍ଗାଙ୍କ ପ୍ରସଙ୍ଗଠାରୁ, ଭରତ, ହରିଶ୍ଚନ୍ଦ୍ର, ବିଜ୍ଞାନୀ କୈବର୍ତ୍ତ, କଂସ, କୃଷ୍ଣ, ରାଜା ରିପୁଞ୍ଜୟ ଓ ସନ୍ଥକବି କବୀରଙ୍କ ପର୍ଯ୍ୟନ୍ତ କେତେ ନା କେତେ ଚିତ୍ର ଓ ଚରିତ୍ରମାନେ ଜୀବନ୍ୟାସ ପାଇଛନ୍ତି ନାଉରିଆର କଥାରେ । ଏହାପରେ ନାଉରିଆ ରୂପାନନ୍ଦଙ୍କୁ ଦଶାଶ୍ୱମେଧ ଘାଟ, ମଣିକର୍ଣ୍ଣିକା ଘାଟ, କେଦାର ଘାଟ ପ୍ରଭୃତି ଦେଖାଇବା ସହିତ ବଖାଣି ଚାଲିଛି କାଶୀଧାମର ଗୋଟିଏ ପରେ ଗୋଟିଏ ସ୍ଥାନର ମହାତ୍ମ୍ୟ ଓ ତା ସହିତ ଗଙ୍ଗା ନଦୀର ପବିତ୍ର ଗାଥା । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସମେତ ତେତିଶ କୋଟି ଦେବାଦେବୀଙ୍କ ବିହାରସ୍ଥଳୀ ବନାରସରେ ରହିଛି ଦିବ୍ୟତାର ମହକ । ସ୍ୱଚ୍ଛ ପ୍ଲାବିନୀ ଗଙ୍ଗା କୂଳେ କୂଳେ ସ୍ୱ ସ୍ୱ ଆସ୍ଥାନ ପାଇଁ ସମସ୍ତ ଦେବାଦେବୀ ସତ୍ୟ, ତ୍ରେତୟା, ଦ୍ୱାପର ଓ କଳି ସବୁ ଯୁଗରେ ଏହି ଦେବଭୂମି ପ୍ରତି ଆକର୍ଷିତ ହୋଇଆସିଛନ୍ତି । ଗଙ୍ଗାର ବିମଳ ଧାରା ଯୁଗେ ଯୁଗେ ଆକର୍ଷିତ କରିଛି ମୁନି, ଋଷି, ପରିବ୍ରାଜକ, ପ୍ରଚାରକ, ଧର୍ମଗୁରୁ ଓ ମହାପୁରୁଷମାନଙ୍କୁ । ଉଚ୍ଚ-ନୀଚ, ଧନୀ-ନିର୍ଦ୍ଧନ, ବ୍ରାହ୍ମଣ-ଚଣ୍ଡାଳ, ପାପୀ ଓ ପୁଣ୍ୟବନ୍ତ ସମସ୍ତେ ଏହି ପାବନୀ ନଦୀର ଆକର୍ଷଣରେ ବନ୍ଧା ପଡ଼ିଛନ୍ତି । ଏ ମାଟିର ମହକ, ଗଛଲତା, ନଦୀ, ପାହାଡ଼, ପଶୁପକ୍ଷୀ ଭିତରେ ସମସ୍ତେ ଅନୁସନ୍ଧାନ କରିଛନ୍ତି ଜୀବନର ମହିମାମୟ ସତ୍ତା । ନାମରୂପର କୁହେଳି ମଧ୍ୟରେ ଦାଉ ଦାଉ ହୋଇ ଜଳୁଥିବା ଦିବ୍ୟସତ୍ତାକୁ ଉପଲବ୍ଧିପୂର୍ବକ କେତେ ସତ୍-ଚିତ୍-ଆନନ୍ଦର ସାକ୍ଷାତ ପାଇଛନ୍ତି ତ, ଆଉ କେତେ ଜୀବନର ଅସାରତାକୁ ଉପଲବ୍ଧି କରି ସେହି ଗଙ୍ଗା ଧାମକୁ ବରି ନେଇଛନ୍ତି ନିଜ ଜୀବନର ମୋକ୍ଷ ସ୍ଥଳ ଭାବରେ । ଏଇଥି ପାଇଁ ତ ଶିବ ଏ ଭୂମିକୁ ଛାଡ଼ିପାରିନାହାନ୍ତି । ବିଷ୍ଣୁ ଏଠାରେ ପଞ୍ଚନଦୀ କୂଳରେ ଅବସ୍ଥିତ ଓ ଅନ୍ୟ ସମସ୍ତ ଦେବଦେବୀଙ୍କ ମନ୍ଦିରରେ ଏହା ଦେବଭୂମି ଭାବେ ପରିକୀର୍ତ୍ତିତ । ଏଇଠି ଦୁଃଖ ନାହିଁ କି ନାହିଁ ଅନୁଶୋଚନା । ଏଠି କ୍ଲାନ୍ତି ନାହିଁ କି ନାହିଁ ଖେଦୋକ୍ତି । ଏଠି ଶହ ଶହ ହଜାର ହଜାର ଶବ ଗଙ୍ଗାର ହରିଶ୍ଚନ୍ଦ୍ର ଓ ମଣିକର୍ଣ୍ଣିକା ଘାଟରେ ପ୍ରତିଦିନ ଦାହ ହୁଅନ୍ତି ଅଥଚ କନ୍ଦାକଟାର ଲେସମାତ୍ର ଚିହ୍ନ ନାହିଁ କି ନାହିଁ ବିଷାଦଭାବ । ଏଠାରେ

Digitized by srujanika@gmail.com

ଗୋଟିଏ ମାତ୍ର ସତ୍ୟ, ତାହାହେଲା- 'ରାମ୍ ନାମ୍ ସତ୍ୟ ହୈ' ! ବାକି ସବୁ ମିଥ୍ୟା । ଏହି ସଂସାର, ଜଗତ, ଧନ, ଐଶ୍ୱର୍ଯ୍ୟ, ସୁଖ, ଦୁଃଖ ସବୁ ମିଥ୍ୟା । କେବଳ ସତ୍ୟର ସତ୍ତା ହିଁ ଢାଙ୍କି ରଖିଛି ଏହାର ମାଟି, ପାଣି, ପବନ ଓ ଆକାଶକୁ । ବୋଧହୁଏ ଏ ଭୂମିର ମହାତ୍ମ୍ୟକୁ ଠିକ୍ ବୁଝିପାରି ଆଲିସ୍ ସୁଦୂର ସୁଇଜରଲ୍ୟାଣ୍ଡକୁ ଛାଡ଼ି ଭାରତୀୟ ଆତ୍ମାର ଦିବ୍ୟ ମୋହରେ ଏଇଠି ହିଁ ନିଜକୁ ହଜାଇ ଦେଲେ ।

କେବଳ ଚିତ୍ରଶିଳ୍ପୀ ଆଲିସ୍ ବୋନର୍ ନୁହଁନ୍ତି ରୂପାନନ୍ଦଙ୍କ ଦାଦାଙ୍କ ଲେଖାଯୋଖାରେ ଭଉଣୀ ତିଳ ନାନୀ ବି ସମୟ ଚକ୍ରରେ ତିଳ ଖୁଡ଼ୀ ସାଜି ତମାମ୍ ଜୀବନର ଦୁଃଖ ମେଣ୍ଟାଇବାକୁ ଯାଇ ଏହି ଭୂଇଁରେ ହିଁ ଶେଷରେ ଲୀନ ହୋଇଗଲେ । ତାଙ୍କ ଅଭାଗିନୀ ଜୀବନର ଅନ୍ତ ହୋଇଗଲା ପଞ୍ଚଗଙ୍ଗା ଘାଟରୁ ଅସୀ ଘାଟ ଯାଏ ବିସ୍ତୃତ ଗଙ୍ଗାନଦୀର ବାଲୁଚର ଭିତରେ । ତିଳ ଖୁଡ଼ୀ ଏ ଉପନ୍ୟାସର ଅନ୍ୟତମ ଦୁଃଖିନୀ ଚରିତ୍ର । ଜୀବନ ତମାମ୍ କେବଳ ଦୁଃଖ, ଅପମାନ, ଉପହାସ ଓ ବୈଧବ୍ୟର ତିଳ ତିଳ ଯନ୍ତ୍ରଣା ସହି ଶେଷରେ ତୀର୍ଥାଟନର ମୋହରୁ ବାରାଣସୀରେ ସତ୍ତାହୀନ ହୋଇ ପଥ ହୁଡ଼ିଗଲେ ଓ ସେଇଠି ତାଙ୍କ ଜୀବନର ସେହି କରୁଣ ଦୁଃଖଦ ଇତିର ମାର୍ମିକ ଉପସ୍ଥାପନାରେ ତୃତୀୟ ପ୍ରସ୍ଥର କଥାବସ୍ତୁ ଆସାଦନ କରି ପାଠକର ଅଶ୍ରୁ ବିଗଳିତ ହୋଇପଡ଼େ । ଜଣେ ସରଳ ଗ୍ରାମ୍ୟ ମଧ୍ୟବୟସ୍କା ବିଧବାର ଆଧ୍ୟାତ୍ମିକ ଆବେଗ ଓ ଅସହାୟ ନାରୀ ସତ୍ତାକୁ କିଭଳି ବାରମ୍ବାର ଲାଳସା ପରିତୃପ୍ତିର ଅବଲମ୍ବନ ଭାବେ ଗ୍ରହଣ କରାଯାଇ ଶେଷରେ ନର୍ଦ୍ଦମାର ପଙ୍କିଳ ଗଙ୍ଗାରେ ଫିଙ୍ଗି ଦିଆଯାଇଛି, ସେ କାହାଣୀ ଗଙ୍ଗାଧାମର ଅନ୍ୟ ଏକ ବୀଭତ୍ସ ରୂପକୁ ଟେକି ଧରିଛି । ଯୌନ ପିପାସୁ କିଛି ହିଂସ୍ର କଂସେଇଙ୍କ ଏ ଜାନ୍ତବ କ୍ଷୁଧାର ଖେଳ ପାଖରେ ଏହିଭଳି ଅସଂଖ୍ୟ ନାମହୀନ, ଗ୍ରାମହୀନ ଅସହାୟା ନାରୀଙ୍କର ଭାଗ୍ୟ ତିଳ ଖୁଡ଼ୀର ଭାଗ୍ୟ ଭଳି ବିସର୍ଜିତ ହୋଇଛି ଏହି ଗଙ୍ଗା କୂଳରେ । ପବିତ୍ର କାଶୀଧାମର ପବିତ୍ରତା ଅନ୍ତରାଳରେ ନିତ୍ୟ ପ୍ରତିଦିନ ଘଟୁଥିବା ଏହିଭଳି କରୁଣାତ୍ମକ ପରିସ୍ଥିତି ପାଇଁ ରୂପାନନ୍ଦଙ୍କ ପ୍ରାଣରେ ଗଭୀର ଦୁଃଖ । ତାଙ୍କ ଶିଳ୍ପୀ ହୃଦୟ ବିଗଳିତ ହୋଇପଡ଼ିଛି, ଏହିପରି ଏକ ନାରକୀୟ ଅଭିବ୍ୟକ୍ତିର କୁତ୍ସିତ ରୂପ ଦର୍ଶନରେ । ତାଙ୍କୁ ମନେହୋଇଛି ଯେଉଁ କାଶୀଧାମର ପ୍ରତ୍ୟେକ ନର ଶିବ ଓ ପ୍ରତ୍ୟେକ ନାରୀ ପାର୍ବତୀଙ୍କ ଅବତାର ବୋଲି ଗ୍ରହଣୀୟ, ସେଇଠି ପୁଣି ପାର୍ବତୀ ମାନେ ଏହିପରି କଂସେଇଖାନାର ସଢ଼ା ମାଂସ ଭଳି ପଳ ପଳ ହୋଇ ନର୍ଦ୍ଦମାର ପଙ୍କିଳ ଗଙ୍ଗାରେ ବିସର୍ଜିତ ହେଉଛନ୍ତି । ପୁଣ୍ୟଧାମର ମଙ୍ଗଳ ବେଢ଼ଣ ତଳେ ବ୍ୟଭିଚାରର ଏ ହୀନ ବଦଭ୍ୟାସ ପାଇଁ ରୂପାନନ୍ଦଙ୍କ ପ୍ରାଣରେ ଈଶ୍ୱରଙ୍କ ସତ୍ତା ନେଇ ସୃଷ୍ଟି ହୋଇଛି ଘୋର ଅବିଶ୍ୱାସ । ତାଙ୍କୁ ଲାଗିଲା ଯେପରି ତାଙ୍କର ଅତି ଆପଣାର କେହି ଜଣେ ନିରୀହ ସମ୍ବେଦନଶୀଳ ପ୍ରାଣର ଖିଅଟିଏ, ଜନ୍ମ ଜନ୍ମାନ୍ତର ସଂପର୍କଟିଏ, ଯେପରି ଧାର୍ମିକ ପରମ୍ପରାର ଦୀପଛାଇ ତଳେ ସବୁଦିନ ପାଇଁ ବଳି ପଡ଼ିଯାଇଛି ଏ ଗଙ୍ଗା ଘାଟରେ ।

ଉପନ୍ୟାସର ଚତୁର୍ଥ ପ୍ରସ୍ଥରେ ରୂପାନନ୍ଦଙ୍କ ଅନୁଭୂତି ଆଉ ଟିକିଏ ଭିନ୍ନ ସ୍ୱରୂପ ନେଇ ଆତ୍ମପ୍ରକାଶ କରିଛି । ଏଇଠି ମାନବୀୟ ଉତ୍ତରଣର ଆଉ ଏକ ବିଭବ ଫିଟିପଡ଼ିଛି ଲେଖକଙ୍କ ଅନୁଭୂତିରୁ । ଉତ୍ତର ପ୍ରଦେଶର ମାଧବଗଞ୍ଜ ଗାଁ । ଲକ୍ଷ୍ନୌ ସହରଠାରୁ ପଚିଶି ତିରିଶ ମାଇଲ ଦୂରରେ ଅବସ୍ଥିତ ଚାରିଶହ ପାଞ୍ଚଶହ ଘର ଥିବା ଏକ ସାଧାରଣ ମଫସଲ । ଏଇଠି ଗୁଲାବ ସିଂ ଓ ତା'ର ସ୍ତ୍ରୀ ଜାହାନାରା ବେଗମ୍‌ର ପରିବାରକୁ କେନ୍ଦ୍ରକରି ଏ ପ୍ରସ୍ଥର ଆଖ୍ୟାନ । ଜାହାନାରା ବେଗମ୍ କଞ୍ଚନୀ ଘରର ଝିଅ । ତେଣୁ ନିତି ସଞ୍ଜହେଲେ ଦେହକୁ ସଜେଇ ଅପେକ୍ଷା କରେ ଗରାଖମାନଙ୍କୁ ଏବଂ ଦିନବେଳା ରାତିର ଅଳସ ମେଣ୍ଟାଏ । ଜାହାନାରାର ବାଈଜୀ ରୂପର ଅନ୍ୟତମ ଗ୍ରାହକ ଖାନ୍ କାକା । ସେ ଜାହାନାରର ଆଦ୍ୟ ଯୌବନର ମଧୁମକ୍ଷିକା । ତେଣୁ ଗୁଲାବ୍ ସିଂକୁ ବାହା ହୋଇଥିଲେ ବି ଜାହାନାରାର ଦେହରେ ଖାନ୍ କାକାର ଦଂଶନ ବିଳାସ ପାଇଁ ବ୍ୟଗ୍ରତା ତା'କୁ ସବୁ ସଞ୍ଜରେ ଆମୋଦିତ କରେ । ସେମାନଙ୍କ ଏହି ଅବୈଧ ସଂପର୍କର ପରିଣତିରୁ ଚାନ୍ଦିନୀ ଆଉ କୁସୁମର

Digitized by srujanika@gmail.com

ଜନ୍ମ । ଉଭୟେ ସୁନ୍ଦର, ଡଉଲ-ଡାଉଲ ଓ ରୂପବତୀ । ତେବେ ଚାନ୍ଦିନୀ ଅପେକ୍ଷାକୃତ ଭାବେ ଅଧିକ ରୂପବତୀ ଓ ଲାସ୍ୟମୟୀ । ଖାନ୍ କାକାର ବୟସ ଅତିକ୍ରାନ୍ତ ହୋଇଥିଲେ ବି ଚାନ୍ଦିନୀକୁ ନେଇ ତା ମନ ଭିତରେ ଅଜସ୍ର ସ୍ୱପ୍ନ । କାରଣ ଖାନ୍ କାକା ପାଇଁ ଦେହର ସଂପର୍କ ଥିଲା ସବୁଠାରୁ ବଡ଼ ସତ୍ୟ । ଦେହ ସମ୍ଭୋଗ ନିମନ୍ତେ ଖାନ୍ କାକାର ଅଭିଧାନରେ ରକ୍ତ ସଂପର୍କର କୌଣସି ଅର୍ଥନାହିଁ ଏଣୁ ଜାହାନାରାକୁ ପରାମର୍ଶ ଦେଇଛି ଚାନ୍ଦିନୀକୁ ଲକ୍ଷ୍ମୌର ବାଈଜୀ ଫୁଲମତୀର କୋଠୀକୁ ପ୍ରେରଣ କରିବାକୁ । କୁସୁମର ମନରେ ଯୋଗିନୀ ହେବାର ଇଚ୍ଛା ଥିବାରୁ ତା'କୁ ନୂର୍ ବେଗମ୍ କୋଠୀରେ ବାଈଜୀ ପରମ୍ପରାକୁ ଆଦରି ନେବାକୁ ପରାମର୍ଶ ଦେଇଥିଲେ ମଧ୍ୟ ସେ କୌଶଳକ୍ରମେ ସେଠାରୁ ଖସିଯାଇ ସିଦ୍ଧଯୋଗିନୀ ପାଲଟିଯାଇଛି । ଘଟଣାଚକ୍ରରେ ଚାନ୍ଦିନୀ ଫୁଲମତୀ କୋଠୀରେ ରହି ବାଈଜୀ ରୂପଜୀବିକାକୁ ଗ୍ରହଣକରି ତା' ଯୌବନରେ ମତୁଆଲା କରିଛି ଅସଂଖ୍ୟ ନାରୀରଙ୍କ ଗ୍ରାହକଙ୍କୁ । ମାତ୍ର ବୟସର ଅପରାହ୍ନରେ ଯେତେବେଳେ ସେ ଦେହର ଅସାରତାକୁ ଉପଲବ୍ଧି କରିଛି ସେତେବେଳେ ତା'ମନରେ ସୃଷ୍ଟିହୋଇଛି ବୈରାଗ୍ୟ ଓ ସେ ତା'ର ନଷ୍ଟ ଜୀବନରୁ ମୁକ୍ତି ପାଇଁ ଅବଶେଷରେ ବନାରସରେ ସିଦ୍ଧଯୋଗିନୀ ଭାବେ ପରିଚିତା କୁସୁମଦେବୀଙ୍କ ଦ୍ୱାରସ୍ଥ ହୋଇଛି । କୁସୁମଦେବୀ ସେତେବେଳକୁ କାଶୀମଣ୍ଡଳ ବାହାରେ ଥିବା କପାଳ କୁଣ୍ଡଳୀ ମଠର ସିଦ୍ଧଯୋଗିନୀ । ଅଦ୍ଭୁତ ଯୋଗଶକ୍ତିର ସେ ଅଧିକାରିଣୀ ଓ ପିଶାଚ ସାଧିକା । ସେ ଧ୍ୟାନରେ ସବୁ ବୁଝିପାରିଛନ୍ତି ଓ ଚାନ୍ଦିନୀକୁ ନିଜ ଆଶ୍ରମରେ ଗ୍ରହଣ କରିନେଇଛନ୍ତି । ଏଇଠି କହିବାର ଉଦ୍ଦେଶ୍ୟ ହେଉଛି ରୂପ ସୌନ୍ଦର୍ଯ୍ୟରେ ମଦମତ୍ତ ଚାନ୍ଦିନୀ ଦିନେ ଲକ୍ଷ୍ମୌର ବାଈଜୀ କୋଠୀରେ ଥିଲା ସବୁଠାରୁ ଆକର୍ଷଣୀୟ ରୂପସୀ । ମାତ୍ର ଦେହରୁ ଯୌବନର ବସନ୍ତ ଅପସରି ଗଲା ପରେ ସେ ବି ବୁଝିଛି ଆତ୍ମସତ୍ତାର ପବିତ୍ରତା । ତେଣୁ ବିଳାସମୟ ବାଈଜୀର ଜୀବନ, ନିଜ ଜୀବନକାଳରେ ଅର୍ଜିତ ସବୁ ଧନସମ୍ପତ୍ତିକୁ ଆଧ୍ୟାତ୍ମିକ କାର୍ଯ୍ୟରେ ବିନିଯୋଗ ପାଇଁ ମଠକୁ ଦାନକରି, ଶେଷରେ ଚାନ୍ଦିନୀ ଏହି ଗଙ୍ଗାକୁ ଆଦରି ନେଇଛି ନିଜର ମୋକ୍ଷଧାମ ରୂପରେ । ସନ୍ନ୍ୟାସିନୀର ଜୀବନ ନିର୍ବାହ କରି ଶେଷରେ କଳୁଷନାଶିନୀ ଗଙ୍ଗାର ପବିତ୍ର ଜଳରେ ଅନ୍ୱେଷା କରିଛି ନିଜ ପାପିନୀ ଜୀବନର ପ୍ରାୟଶ୍ଚିତ ।

ବାସ୍ତବରେ ଚାନ୍ଦିନୀ, କୁସୁମ ଓ ତିଳଖୁଡ଼ୀ ଭଳି ଏମିତି ଅସଂଖ୍ୟ ଚରିତ୍ରଙ୍କ ସିଦ୍ଧ, ସାଧନା, ମୁକ୍ତି ଓ ମୋକ୍ଷର ଧାମ ହେଉଛି କାଶୀଧାମ, ବନାରସ । ବନାରସରେ ଏହିପରି କେତେ କେତେ ସଂସାରୀ ମଣିଷ ଉତ୍ତରଣର ଜିଜ୍ଞାସା ନେଇ ଅବତରଣ କରିଛନ୍ତି, ତା'ର ହିସାବ ନାହିଁ । କାରଣ ଏଇଠି ଅବତରିତ ହୋଇଛି ଗଙ୍ଗାର ସଲିଳ ପ୍ରବାହ । ସିଏ ସବୁ ପାପକୁ ଧୌତ କରିଦେଉଥିବା ହେତୁ ତା'ର ଅନ୍ୟନାମ ପାବନୀ ।

ଉପନ୍ୟାସର ପରବର୍ତ୍ତୀ ତିନୋଟି ପ୍ରସ୍ଥ ମଧ୍ୟରୁ ପଞ୍ଚମ ପ୍ରସ୍ଥରେ ଲେଖକ ବନାରସ ଭୂମିର ଐତିହ୍ୟ ଓ ଇତିହାସକୁ ରୋମନ୍ଥନ କରି ରୂପାନନ୍ଦଙ୍କ ମୁଗ୍ଧ ମାନସ ପଟଳରେ ଠିଆ କରେଇଛନ୍ତି ତଥାଗତ ବୁଦ୍ଧଙ୍କୁ ଓ ତାଙ୍କ ସିଦ୍ଧିର କାହାଣୀକୁ । ବନାରସର ଗାଙ୍ଗେୟ ମାଟି କିଭଳି ମଣିଷକୁ ଜ୍ଞାନାଲୋକର ସନ୍ଧାନ ଦେଇ ବୁଦ୍ଧତ୍ୱରେ ଅବତରଣ କରାଇନିଏ ଓ ମନୁଷ୍ୟ ସମ୍ୟକ୍‌ଦୃଷ୍ଟି ଦ୍ୱାରା ପରିଚାଳିତ ହୋଇ ସମବୁଦ୍ଧତ୍ୱ ହେବାର ଗୌରବ ଅର୍ଜନ କରିପାରେ, ସେହି ପରମ ସତ୍ୟର ବ୍ୟାଖ୍ୟା ବିସ୍ତାରିତ କରିଛନ୍ତି । ଷଷ୍ଠ ପ୍ରସ୍ଥରେ ରୂପାନନ୍ଦ ଆଲିସ୍ ବୋନରଙ୍କ ସ୍ଥାପିତ ଆଶ୍ରମରେ ଚିତ୍ରକଳା ଭିତରେ ଅନୁଭବିଛନ୍ତି ସୃଜନୀର ଅଦ୍ଭୂତ ପ୍ରେରଣା । ଦେହ ଭିତରେ ଆତ୍ମାଭଳି ବନାରସର ବାହ୍ୟ ରୂପ ଭିତରେ ଏହି ଆଶ୍ରମ ତାଙ୍କୁ ଆତ୍ମସ୍ୱରୂପ ପରି ପ୍ରତ୍ୟୟ ହୋଇଛି । ସାଧାରଣ ଜୀବନର ଘନଘଟା ଭିତରେ ବି ଗଙ୍ଗାବତରିତ ଏହି ବନାରସ ତାଙ୍କୁ ମନେ ହୋଇଛି ସବୁ ଧର୍ମ ଓ ସବୁ ବିଶ୍ୱାସର ଏକ ସାମ୍ୟ ଧାମ ଭଳି । ଏ ଭୂମିର ମହାନ୍ ସାଂସ୍କୃତିକ ଓ ଧାର୍ମିକ ଚିରନ୍ତନତାର ସ୍ୱରୂପକୁ ବୁଝାଇବାକୁ ଯାଇ ସେ କହିଛନ୍ତି-

Digitized by srujanika@gmail.com

**'ବନାରସ ଓ ଗଙ୍ଗା ଯେତିକି ଦୃଶ୍ୟମାନ, କୋଟି କୋଟି ଲୋକଙ୍କ ହୃଦୟରେ ସେତିକି ଗୋପ୍ୟ । ବନାରସକୁ ଆପଣାର କରି ଘେନିଲେ ପ୍ରାଣର ସୂକ୍ଷ୍ମ ତନ୍ତ୍ରୀ ଭିତରେ ତାହା ପଲ୍ଲବିତ ହୋଇଯାଏ । ବନାରସ ଏକ ପୂର୍ଣ୍ଣ ମାନସିକତା । ଶେଷରେ କୂପ୍ରରେ ପ୍ରକାଶ କରିବାକୁ ହେଲେ କହିହେବ, ତମେ ଯେଉଁଠି, ବନାରସ ସେଇଠି ।'**

ରୂପାନନ୍ଦଙ୍କ ଏହି ସାମଗ୍ରିକ ମଗ୍ନ ଭାବନାର ମୁଗ୍ଧ ଉଚ୍ଚାରଣ ହିଁ ଉପନ୍ୟାସର ସପ୍ତମ ପ୍ରସ୍ଥ । ବନାରସରେ ତାଙ୍କର ଏକ ବର୍ଷର ଅବସ୍ଥାନର ବିବିଧ ସ୍ମୃତି ଓ ବିଭିନ୍ନ ଅନୁଭୂତିକୁ ନେଇ ସବଳିତ ହୋଇଛି ଏହି କଥାକାବ୍ୟର ଅନ୍ତିମ ଭାଗ । ରୂପାନନ୍ଦଙ୍କୁ ଏ ଗୋଟିଏ ବର୍ଷର ରହଣୀ ଆଦୌ ବିଳମ୍ବିତ ମନେହୋଇ ନାହିଁ ବରଂ କେତେ ସହଜ ଓ ସ୍ୱାଭାବିକ ଭାବେ ଅତିବାହିତ ହୋଇଯାଇଛି ଗୋଟିଏ ବର୍ଷ, ତାହା ସେ ବୁଝିପାରିନାହାନ୍ତି । ତାଙ୍କୁ ଲାଗିଛି କାଶୀଧାମରେ ଯେପରି ସମୟ ଓ କାଳ ସବୁ ସ୍ଥିର । ଉତ୍ତରଣ ଓ ଅବତରଣ ମଧ୍ୟ ସ୍ଥିର । ଆପେକ୍ଷିକ କାଳ ସିନା ବିତିଗଲା ମାତ୍ର ପ୍ରକୃତ କାଳ କାଶୀକକ୍ଷରେ ଯେପରି ସେହି ଗୋଟିଏ ବିନ୍ଦୁରେ ହିଁ ସ୍ଥିର ହୋଇ ଚକ୍ରବତ୍ ଘୂର୍ଣ୍ଣନ କରୁଛି । ଖରା, ବର୍ଷା, ଶୀତ ଓ ହେମନ୍ତ ଯେଉଁ ବାଟରେ ଯିଏ ଆସୁଛନ୍ତି ଓ ଯାଉଛନ୍ତି, ହଜାର ହଜାର ତୀର୍ଥଯାତ୍ରୀ ଆସୁଛନ୍ତି ଓ ଯାଉଛନ୍ତି ଏବଂ ସବୁକୁ ଗଙ୍ଗା ତା'ର ସ୍ୱଚ୍ଛ ଜଳରେ ଅବିଚଳିତ ଓ ନିର୍ବିକାର ଚିତ୍ତରେ ବାହି ନେଇ ବହିଚାଲିଛି । କୈଳାସରୁ ପୂର୍ବ ମହୋଦଧି ଯାଏଁ ଅସଖ୍ୟ ମଣିଷ ପ୍ରତ୍ୟେକେ ନିଜ ନିଜ ସ୍ୱପ୍ନରୁ ଆଞ୍ଜୁଳାଏ ଗଙ୍ଗାଜଳରେ ପଖାଳି ନେଇ ନିଜ ନିଜକୁ ସାର୍ଥକ କରୁଛନ୍ତି । ସେମାନେ ସମସ୍ତେ ଗଙ୍ଗାରେ ସ୍ନାନ ସାରି ସତେଯେପରି ଉତ୍ତରିତ ହୋଇଯାଉଛନ୍ତି । ଆଉ ଗଙ୍ଗା ବି ସହସ୍ର ହୃଦୟର ଆର୍ତ୍ତ-ଆକାଂକ୍ଷା, ସୁଖ ଓ ଦୁଃଖକୁ ଧାରଣ କରି ବହିଚାଲିଛି ଅବିଚଳିତ ଭାବରେ । ସେ ସତ୍ୟ, ସେ ଅମୃତସ୍ରାବୀ, ସେ ଗୋପ୍ୟ ଗରବିଣୀ 'ଗଙ୍ଗା' । ସେ ଏକରୁ ସହସ୍ରରେ ବହୁଧା । ସେ ପ୍ରାଣପ୍ରବାହର ପ୍ରତୀକ, ସେ ମୁକ୍ତିର ମହୋଦଧି । ସେ ମୃତ୍ୟୁଭୟ ନିବାରିଣୀ । ତେଣୁ ତ ତା' ଗର୍ଭର ବିନ୍ଦୁଏ ଜଳ ପ୍ରତ୍ୟେକଙ୍କର ଇଷ୍ଟ ହୋଇ ଘରର ଐଶାନ୍ୟରେ ବିରାଜିଥାଏ ।

ରୂପାନନ୍ଦ ଭାରତୀୟ ଚିତ୍ରକଳାର ଉତ୍ସ ଅନୁସନ୍ଧାନର ଲକ୍ଷ୍ୟ ନେଇ ବନାରସରେ ପାଦ ଦେଇଥିଲେ । ମାତ୍ର ଜୀବନର ସ୍ୱାଭାବିକ ଉତ୍ତରଣ ତାଙ୍କୁ ଅବତରେଇଦେଲା ଗଙ୍ଗାରେ । ସେ ଏଠି ଅନୁଭବ କଲେ ଏକ ଭିନ୍ନ ପୃଥିବୀର ସାନ୍ନିଧ୍ୟ । ତେଣୁ ରୂପାନନ୍ଦଙ୍କ ପାଇଁ ଗଙ୍ଗା ରହଣୀର ଏକ ବର୍ଷର ଅନୁଭୂତି କୌଣସି ଏକ ଆପେକ୍ଷିକ କାଳର ଅବଧି ଭିତରେ ସୀମିତ ହୋଇ ରହିନାହିଁ । ତାହା କାଳରୁ କଳ୍ପକୁ, କଳ୍ପାନ୍ତରକୁ ଓ ମନ୍ୱନ୍ତରକୁ ଉତ୍ତୀର୍ଣ୍ଣ ହୋଇଯାଇଛି । କଳିକାଳରୁ ସତ୍ୟ, ଦ୍ୱାପର ଓ ତ୍ରେତୟାର ମହାଯୁଗ ପର୍ଯ୍ୟନ୍ତ ଯେପରି ତାଙ୍କ ଦୃଷ୍ଟି ସଂପ୍ରସାରିତ ହୋଇଯାଇଛି ବନାରସର ମାଟିରେ । ସେ ଗୋଟିଏ ବିନ୍ଦୁରେ ଠିଆ ହୋଇ ବିସ୍ତାରିତ ହୋଇଯାଇଛନ୍ତି ଭୂ'ରୁ ଭୂମା ପର୍ଯ୍ୟନ୍ତ, ରୂପରୁ ଅରୂପ ପର୍ଯ୍ୟନ୍ତ ଏବଂ ଦେହରୁ ବିଦେହର ଦ୍ୟୁଲୋକ ପର୍ଯ୍ୟନ୍ତ । ଗଙ୍ଗା ପୂର୍ଣ୍ଣଗର୍ଭା ହେଲେ ଯେମିତି ଚତୁର୍ଦ୍ଦିଗ ମହାର୍ଣ୍ଣବ ଭଳି ପ୍ରତୀୟମାନ ହୁଏ, ସେପରି ରୂପାନନ୍ଦ ବି ତାଙ୍କ ଆବେଗର ମୁଗ୍ଧ ମହାର୍ଣ୍ଣବ ଭିତରେ ନିଜକୁ ବିଲୀନ କରିଦେଇଛନ୍ତି । ସେ ଆଉ ନିଜ ଭିତରେ ନିଜେ ହୋଇ ରହିନାହାନ୍ତି । ସେ ବିଭକ୍ତ ହୋଇଯାଇଛନ୍ତି ଗଙ୍ଗା ଭଳି ଶତଧାରାସ୍ରାବୀ ଏକ ପୂର୍ଣ୍ଣଗର୍ଭା ସ୍ରୋତରେ । ଏଇଠି ତାଙ୍କ ପାଇଁ ସବୁ ଶୂନ୍ୟ ଓ ସବୁ ପୂର୍ଣ୍ଣ, ସବୁ ସ୍ୱପ୍ନ ସବୁ ବାସ୍ତବତା ଓ ସବୁ ସମୟ ସେହି ଗୋଟିଏ ବିନ୍ଦୁରେ ନିତ୍ୟ ଘୂର୍ଣ୍ଣିତ ହୋଇଛନ୍ତି । ତେଣୁ ଘଟିଯାଇଥିବା ସମସ୍ତ ଘଟଣା ପୁଣି ଥରେ ତାଙ୍କ ମାନସପଟରେ ସୃଷ୍ଟି କରିଛି ଭାବାନ୍ତର । ତିଳ ବୈଷ୍ଣବୀ ମନ୍ଦିର ଭିତରେ ତାଙ୍କର ମନେପଡ଼ିଯାଇଛି ତିଳଖୁଡ଼ୀର କଥା, ଚାନ୍ଦିନୀ ମେଳା ଭିତରେ ସେ ଖୋଜିଛନ୍ତି ବାଈଜୀରୁ ସନ୍ନ୍ୟାସିନୀ ହୋଇଥିବା ଜାହାନାରାର ଝିଅ ଚାନ୍ଦିନୀକୁ ଏବଂ ଜଗନ୍ନାଥ ପଣ୍ଡିତ ଘାଟରେ ଦକ୍ଷିଣୀ ଓଡ଼ିଆ ପଣ୍ଡିତ ଜଗନ୍ନାଥଙ୍କୁ ।

Digitized by srujanika@gmail.com

ଅବତରଣର ଅଲୌକିକ ମହିମାରେ ବିଦଗ୍ଧ ରୂପାନନ୍ଦଙ୍କ ଆଖିରେ ଏବେ ସବୁ ଚିତ୍ରବତ୍ ପ୍ରକଟି ଯାଉଛନ୍ତି । ତାଙ୍କର ଏ ଅବତରଣର ବିମୁଗ୍ଧତାକୁ ଠିକ୍ ଠଉରାଇ ଦେଇଛନ୍ତି ନେପାଳୀବାବା, ଯିଏ ରୂପାନନ୍ଦଙ୍କୁ ଚିତ୍ରଦର୍ଶନର ମୌଳିକବାଣୀ ଶୁଣାଇ ତାଙ୍କ ରୂପାନ୍ୱେଷଣର ମାର୍ଗକୁ କରିଛନ୍ତି ସରଳ ଓ ସାବଲୀଳ । ମାତ୍ର ରୂପତତ୍ତ୍ୱର ସବୁ ଗହନ କଥା କହିସାରିବା ପରେ ନେପାଳୀବାବା ବି ଛାୟାବତ୍ ଅଦୃଶ୍ୟ ହୋଇଯାଇଛନ୍ତି ରୂପାନନ୍ଦଙ୍କ ଦୃଷ୍ଟି ସାମ୍ନାରୁ । ଏବେ ରୂପାନନ୍ଦଙ୍କ ଆଖି ଆଗରେ କେବଳ ଯୋଜନ ଯୋଜନ ବ୍ୟାପୀ ଗଙ୍ଗାର ବିସ୍ତାରିତ ରୂପ । ସର୍ଗ, ମର୍ତ୍ତ୍ୟ ଓ ପାତାଳ ପର୍ଯ୍ୟନ୍ତ ସତେଯେପରି ପରିବ୍ୟାପ୍ତ ହୋଇରହିଛି ଗଙ୍ଗା । ଅବତରଣର ତିନୋଟି ଧାରାରେ ସେ ଯେପରି ଫିଟିପଡ଼ିଛି ତରଙ୍ଗାୟିତ ଶାଖାପ୍ରଶାଖା ନେଇ ଦିଗବିଦିଗ । ଏହାପରେ ରୂପାନନ୍ଦଙ୍କ ଦୃଷ୍ଟି ସ୍ଥିର ହୋଇଯାଇଛି ସେହି ଜନ୍ମ ଓ ମୃତ୍ୟୁର ରହସ୍ୟମୟ ବିନ୍ଦୁବଳୟ ନିକଟରେ । ତେଣିକି ସବୁ ଶୂନ୍ୟ ଓ ସବୁ ପୂର୍ଣ୍ଣର ଏକ ମୁଗ୍ଧାନୁଭବରେ ଆବେଶିତ ରୂପାନନ୍ଦଙ୍କ ଶବ୍ଦ ସବୁ ନୀରବି ଯାଇଛନ୍ତି, ଉଚ୍ଚାରଣ ଥମିଯାଇଛି ଓ ଅସରାଏ ନିର୍ଘାତ ବର୍ଷା ପରେ ପୃଥିବୀ ଶାନ୍ତ ହେଲା ଭଳି ସେ ଶବ୍ଦଶୂନ୍ୟ ଏକ ପ୍ରଶାନ୍ତ ଭାବଜଗତରୁ ଉତ୍ତୀର୍ଣ୍ଣ ହୋଇଯାଇଛନ୍ତି । ଏଇଠି ଉପନ୍ୟାସର କଥାଧାରା ଅଟକି ଯାଇଛି ।

**ଆମୂଳାନ୍ତ ଉପନ୍ୟାସଟି ଏକ ଆବେଗିତ ଧାରାରେ ବହିଯାଇଛି ଠିକ୍ ଗଙ୍ଗାଙ୍କ ଅବତରଣର ଧାରାଭଳି । ଅସଂଖ୍ୟ ଦୃଶ୍ୟ ଓ ଅଜସ୍ର ଅନୁଭୂତି କିଛି କାଳିକ ଓ ଆଉ କିଛି କାଳର କରାଳ ଭେଦକରି ମୁକୁଳିତ । ଲେଖକ ସବୁ ଦୃଶ୍ୟ ଓ ସବୁ ଘଟଣାକୁ ଗୋଟିଏ ସମୟର ପୃଷ୍ଠଭୂମିରେ ଏକାତ୍ମୀୟ କରି କଥା ସୃଜନର ପ୍ରବାହ ଜାରି ରଖିଛନ୍ତି । ଚିତ୍ରମୟ ଭାଷାର ଚିତ୍ରିତ ଭାବନାର ମଗ୍ନ ଆଲେଖ୍ୟରେ ଗଦ୍ୟଭାଷା କାବ୍ୟଭାଷାକୁ ଉପହାସ କରିଛି ଓ କାବ୍ୟିକ ବର୍ଣ୍ଣନାର ତାଳେ ତାଳେ ଜନ୍ମ-ମୃତ୍ୟୁର ସୂକ୍ଷ୍ମ ରହସ୍ୟ ଫୁଲଭଳି ମୁକୁଳି ପଡ଼ିଛି କଥାବୃତ୍ତରେ ।** ଗଦ୍ୟଭାଷା, କାବ୍ୟଭାଷା ଓ ଚିତ୍ରଭାଷା ଗଙ୍ଗା ଅବତରଣର ତିନୋଟି ଧାରା ଭଳି ପରସ୍ପର ବେଶ୍ ହାତ ଛନ୍ଦାଛନ୍ଦି ହୋଇ ଅବତରଣ ଉଲ୍ଲାସରେ ତତ୍‌କୂଳ ପ୍ରବହିଛନ୍ତି । **ଶବ୍ଦରେ ଶବ୍ଦରେ ଉଙ୍କିମାରୁଛି ଚିତ୍ର ଓ ଚିତ୍ରର ଅବଗୁଣ୍ଠନ ତଳେ ଖିଲି ଖିଲି କବିତାର କୋମଳ ଶିହରଣ, ପାଠକଙ୍କୁ ବି କିଛି କାଳ ପାଇଁ ଅନାୟସରେ ଆକୃଷ୍ଟ କରିନେଇଯାଉଛି ପାବନୀ ପ୍ରବାହିତ କାଶୀଧାମକୁ । ଶବ୍ଦବିମ୍ବରେ ଚିତ୍ରବିମ୍ବ ଓ ଚିତ୍ରବିମ୍ବରେ କାବ୍ୟବିମ୍ବର ଲଳିତ ସମାବେଶକୁ କେନ୍ଦ୍ରକରି ସମ୍ଭବତଃ ଲେଖକ ଏହାକୁ 'ଚିତ୍ରୋପନ୍ୟାସ' ବୋଲି ଉଲ୍ଲେଖ କରିଛନ୍ତି । ମାତ୍ର ଚିତ୍ର ଓ ଉପନ୍ୟାସର ଯେଉଁ ଯୁଗଳବନ୍ଦୀ ଶବ୍ଦ ଚିତ୍ରରେ 'ପାର୍ବତୀ ପରମେଶ୍ୱର'ଙ୍କର କଥାଗ୍ରନ୍ଥ ବୋଲି ଲେଖକ ଏହାକୁ ପରିଚିତ କରାଇଛନ୍ତି ତାହା ଆଲୋଚନା ସାପେକ୍ଷ । ତେବେ ଏକ ଆବେଗମଗ୍ନ ଶିଳ୍ପୀ ମାନସର ମୁଗ୍ଧ ଉଚ୍ଚାରଣ ହିଁ 'ଗଙ୍ଗାବତରଣ'ର ଶେଷକଥା କହିଲେ ଅପ୍ରାସଙ୍ଗିକ ବୋଧହେବନାହିଁ ।**

Digitized by srujanika@gmail.com

ସବିତା ତ୍ରିପାଠୀ

## ଗଙ୍ଗାବତରଣରେ ରୂପ ଚିନ୍ତନ

**ଚେତନରେ ରୂପ ଯେମିତି ବର୍ଣ୍ଣିଳ, ଶବ୍ଦ ସିମିତି ବାଙ୍ମୟ, ସୃଜନର ସୁବର୍ଣ୍ଣ ବେଦିକା ଉପରେ ସେମାନେ ଅବତରନ୍ତି ଗାନ୍ଧର୍ବ, ଗାନ୍ଧର୍ବୀ ଭଳି, ଅପ୍ସରା ଭଳି । ଅଙ୍କୁରୋଦଗମ୍ ସମ୍ଭବ ହୁଏ । ଶାଖା ପ୍ରଶାଖା ଖୋଲିଯାଏ, ପୁଷ୍ପିଳ ହୁଏ, ଫଳ ଧରେ । ଏହା ତ କାବ୍ୟ ରଚନା। ଏହା ହିଁ ତ ରୂପ ସର୍ଜନା ।** (ଗଙ୍ଗାବତରଣ, ପୃ-୨-୨୦୦୬)

ଗଦ୍ୟ ସାହିତ୍ୟର ବିକାଶ ସଙ୍ଗେ ସଙ୍ଗେ ମଣିଷ ନିଜ ଜୀବନର ଅନେକ ରଙ୍ଗାୟିତ ଅନୁଭୂତିକୁ ରୂପାୟନ କରିବା ପାଇଁ ଯେଉଁ ପ୍ରତ୍ୟକ୍ଷ ମାଧମ ଓ ଅଭିବ୍ୟକ୍ତିକୁ ପ୍ରକାଶ କରିବାକୁ ଚେଷ୍ଟା କରିବସେ ଏବଂ କ୍ଷୁଦ୍ରାତିକ୍ଷୁଦ୍ର ନିଜସ ଘଟଣାମାନଙ୍କୁ ଏକାଠି କରି ଯେଉଁ ସାହିତ୍ୟ ରଚନା କରେ ତାହାକୁ ଉପନ୍ୟାସ କୁହାଯାଏ । କ୍ରମବର୍ଦ୍ଧିତ ସମୟ ଭିତରେ ଉପନ୍ୟାସରେ ରଚନାକୁ ଅଧିକ ରୂପଙ୍କର କରିବା ଉଦ୍ଦେଶ୍ୟରେ ଯେଉଁ ଉପନ୍ୟାସର ସୃଷ୍ଟିହୁଏ ତାହାକୁ ଚିତ୍ର ଉପନ୍ୟାସର ଏକ ବିଭବ ବୋଲି କୁହାଯାଏ । ସମୟ ପରିବର୍ତ୍ତନ ହେଉଛି । ବିଭିନ୍ନ ମନନ ତଥା ଚିନ୍ତନର ସଫଳ ପ୍ରୟୋଗରେ ଆଜି ଔପନ୍ୟାସିକମାନେ ବିଷୟବସ୍ତୁ, ପ୍ରକାଶଭଙ୍ଗୀ ତଥା କଥାବସ୍ତୁ ନିର୍ବାଚନ ଉପରେ ଧ୍ୟାନ ଦେଉଥିଲେ ମଧ ରୂପ ଆକଳନକୁ ପାଠକଙ୍କ ପାଖରେ ଅନୁଭୂତ କରାଇବା ପାଇଁ ସଫଳ ପ୍ରୟାସ ପ୍ରାୟ କରିପାରି ନାହାନ୍ତି । କେତେକ ଔପନ୍ୟାସିକ ଅଳ୍ପ କଥାର ସମ୍ୟକ୍ ସୂଚନାରେ ତଥା ସ୍ୱଳ୍ପ ଇଙ୍ଗିତରେ ନିଜ ଉପନ୍ୟାସମାନଙ୍କରେ ଅନେକ କଥା ପ୍ରକାଶ କରିବା ପାଇଁ ଚେଷ୍ଟାକରି ସଫଳ ସପ୍ନ ଦେଖିବା ସହ ଏ କ୍ଷେତ୍ରରେ ଆଦର୍ଶବାଦୀ ହେବାକୁ ମଧ ଚେଷ୍ଟା କରିଛନ୍ତି । ଆପ୍ଳୁତ ଭାଷା, ଚିତ୍ତ ଚାଞ୍ଚଲ୍ୟକାରୀ ଘଟନାବଳୀ ଅଥବା କ୍ରିୟା ପ୍ରତିକ୍ରିୟା, ଆଦର୍ଶ ତଥା ସମସ୍ୟାମାନଙ୍କୁ ଅତି ଉନ୍ନୀତ ଭାବରେ ଉପନ୍ୟାସ ମାନଙ୍କରେ ଗୁନ୍ଥା ଯାଉଥିଲେ ମଧ ଏହା ମଧରେ ଅବାଞ୍ଛିତ କିମ୍ବା ଅବାନ୍ତର ଉପସ୍ଥାପନା ରହୁଥିବା ଯୋଗୁଁ ପ୍ରାୟ ଅଧିକାଂଶ ଉପନ୍ୟାସ ପାଠକର ମନରେ କୌଣସି ଏକ ସ୍ଥାୟୀ ରେଖାଙ୍କନ କଲାଭଳି ପ୍ରତ୍ୟୟ ହୁଏନାହିଁ । କଳାମାନଙ୍କ ମଧରେ ଚିତ୍ରକଳା ଏପରି ଏକ ବିଭବ ଯାହା ସାହିତ୍ୟ ଅଥବା ରଙ୍ଗ ମାଧମରେ ମଣିଷକୁ ଆନନ୍ଦ ଯୋଗାଇବା ସହ ତା'ର ସ୍ମୃତିଗର୍ଭରେ ଚିରଦିନ ପାଇଁ ଆଶ୍ରୟ ନେଇ ରହିଯାଏ ।

ଏଭଳି ଏକ ସୃଜନାତ୍ମକ ଉପାଦାନ ମଧରେ ଅନ୍ତଃ ତଥା ବାହ୍ୟ ପ୍ରକୃତିର ଚିତ୍ରଣକୁ ନେଇ, ଉପନ୍ୟାସରେ କଥା କହୁଥିବା ଚରିତ୍ର ଏବଂ ସମସ୍ତ ଦେଶ କାଳ, ପାତ୍ର ଓ ଚରିତ୍ରମାନଙ୍କ ସମୟର ଚିତ୍ର ବା ରୂପକୁ ପାଠକ ପାଖରେ ଅବତରଣ କରାଇବାର ଏକ ପ୍ରୟାସ - ଦିନନାଥ ପାଠୀଙ୍କ **ଗଙ୍ଗାବତରଣ** ଚିତ୍ର ଉପନ୍ୟାସରେ ସର୍ବଦା ଅନୁମେୟ । ଏହି ଉପନ୍ୟାସରେ ରୂପକଳ୍ପର ପ୍ରାଣ ତଥା ଭାବ ପ୍ରକ୍ଷେପଣର ପ୍ରଜ୍ଞା ଅଧିକ ପରିଦୃଷ୍ଟ । ଇନ୍ଦ୍ରିୟର ଭିତର ଦେଇ ଅତୀନ୍ଦ୍ରିୟକୁ ସନ୍ଧାନ କରିବା ଏବଂ ଅତୀନ୍ଦ୍ରିୟ ଦର୍ପଣରେ ଇନ୍ଦ୍ରିୟର ଜଗତକୁ ଦେଖିବା ପାଇଁ ଅଧିକାଂଶ ସ୍ଥଳରେ ରୂପର କଳ୍ପନାକୁ ସ୍ପୃହଣୀୟ ଓ ଶ୍ରେୟସ୍କର ଭାବେ ଉପସ୍ଥାପନ କରିଛନ୍ତି ଔପନ୍ୟାସିକ ନିଜେ ରୂପାନନ୍ଦ । ରୂପାନନ୍ଦ ଚିତ୍ରକର, ଚିତ୍ରପ୍ରିୟ, ଚିତ୍ରବିଳାସୀ, ରୂପପ୍ରାଣରେ ସର୍ବଦା ଶ୍ରେୟକାମୀ । ଔପନ୍ୟାସିକ ନିଜର ରୂପପ୍ରୀତି, ପ୍ରକୃତିପ୍ରୀତି, ଜୀବନପ୍ରୀତି ତଥା ଦୁଃଖପ୍ରୀତି ବ୍ୟତୀତ ଅନ୍ୟ ଦୁଇପ୍ରୀତିକୁ ନିଜ ଉପନ୍ୟାସରେ ଜୀବିତ କରିବାକୁ ଚେଷ୍ଟିତ ହୋଇଛନ୍ତି । ସେଥିରୁ ଗୋଟିଏ ହେଉଛି ଭାଷା ମାଧମରେ ଚିତ୍ରଭାଷାର ଚିତ୍ରାୟନ ଓ ଅପରଟି ଅଦୃଷ୍ଟର ରୂପ ପ୍ରତୀତି । ଏହି ଦୁଇଟି ବିଭବ ଦିନନାଥଙ୍କ ମାନସର

Digitized by srujanika@gmail.com

ଦୁଇଟି ଦିଗର ପରିଚାୟକ କହିଲେ ଭୁଲ ହେବନାହିଁ । ଉତ୍କଳୀୟ ଅଥବା ଭାରତୀୟ ପ୍ରକୃତି ଆଲେଖ୍ୟକୁ ଭାଷା ମାଧ୍ୟମରେ ଚିତ୍ରିତ, ବର୍ଣ୍ଣଦୀପ୍ତ ଓ ଜୀବନ୍ତ କରିବାର ପ୍ରୟାସ କରି ଔପନ୍ୟାସିକ ଦିନନାଥ ସ୍ୱଦେଶାତ୍ମକ ବା ବୈଦିକ ଭାବ କେବଳ ପ୍ରକାଶ ନ କରି ମଣିଷ ଜାତିର ଉନ୍ନତି କଳ୍ପେ ଆଶାୟୀ ଓ ରୂପକାମୀ ହୋଇଛନ୍ତି । ଏ ଜାତିର ମହାନ୍ ଐତିହ୍ୟ ତଥା ସାମାଜିକ ଅଧୋଗତିରେ ଔପନ୍ୟାସିକ ସମାନୁପାତରେ ବ୍ୟଥିତ ହେବା ସହ ଚିନ୍ତା ଚିନ୍ତନର ବିକାଶ ପାଇଁ ଆଶାୟୀ ହୋଇଛନ୍ତି । ଉପନ୍ୟାସର ଅମୂର୍ତ୍ତ ସଂଳାପରେ ଏଭଳି ପ୍ରାଣବତ୍ତା ଚିତ୍ରିତ ସତ୍ତାକୁ ଅନୁଭବ କରିହୁଏ । ଅର୍ଦ୍ଧନିର୍ମିଳିତ ଚକ୍ଷୁରେ, ଉଜ୍ଜୟୀ ମୁଦ୍ରାରେ ଶିଳ୍ପୀ ସ୍ମରଣ କରୁଛି । ଏ ସମସ୍ତ ବୈଚିତ୍ର୍ୟମୟ ପୃଥିବୀରେ ଅବତରଣର ସଂଜ୍ଞା ତଥା ପ୍ରାଣର ସ୍ପନ୍ଦନ ସର୍ବଦା ଏକତ୍ରିତ ହୋଇ ମୃଗନାଭିରେ କସ୍ତୁରୀ ଭଳି ଲୁକ୍କାୟିତହୋଇ ରହିଯାଉଛି । ପୁଣି ଜୀବନ ପ୍ରବାହ ଭିତରେ ତାର ଅବତରଣ ଏକ ପ୍ରତୀକ ଭାବେ ଦୃଶ୍ୟମାନ ହେଉଛି- 'ଭୂମି ଆକାଶ ମେରୁ ସାଗର ସୀମା ଓ ସୀମାହୀନ ଦିଗନ୍ତ ଭିତରେ ଅବତରଣର ବ୍ୟାପ୍ତି । ଏହା ସ୍ୱୟଂ ସିଦ୍ଧ, ରୂପ ସଂଗ୍ରହର ସ୍ୱାଭାବିକ ସ୍ରୋତ । ମେରୁ ଶୀର୍ଷରୁ ବୀଜ ଅବତରେ । ଅବତରଣରୁ ଅବତରଣ ହୁଏ ଶ୍ରୀଯନ୍ତ୍ରର ପ୍ରସ୍ଫୁଟିତ କମଳ ଭିତରେ । ମେରୁ ଉର୍ଦ୍ଧ୍ୱାୟିତ ଶିବଲିଙ୍ଗ, ଅପରିମେୟ ବିଶ୍ୱସ୍ତମ୍ଭ । ଏହା ପ୍ରସାରିତ ହୋଇ କାମୋନ୍ମତ୍ତା କାଳୀଙ୍କ ଭଗରେ ପ୍ରବେଶେ । ଶିବ ଭୂମି ଉପରେ ଶାୟିତ । କାଳୀ ଆକାଶରେ ପରିବ୍ୟାପ୍ତ, ଭୂମି ଓ ଆକାଶକୁ ସଂଯୋଗ କରି ବିଶ୍ୱସ୍ତମ୍ଭ, କାଳସ୍ତମ୍ଭ । ଏହି ଉତ୍ତରଣ ଓ ଅବତରଣ ପ୍ରକ୍ରିୟାର ଆଦିମୂଳ, ଅନାଦିକାରଣ । ଏହି ପ୍ରକ୍ରିୟା ହିଁ ସୃଷ୍ଟିର ପ୍ରକ୍ରିୟା ଚିରନ୍ତନ ଲୀଳା ରହସ୍ୟମୟ ।' (ଗଙ୍ଗାବତରଣ, ପୃ.୧)

**ଦିନନାଥଙ୍କ ଭାଷା ପରିଧି ଏକ ସ୍ୱତନ୍ତ୍ର ଦୀପ୍ତିରେ ଉଦ୍‌ଭାଷିତ ହେବା ସହ ଏକ ଚିରନ୍ତନ ସତ୍ୟକୁ ପରିକଳ୍ପନା ଭିତରେ ପରିପୂର୍ଣ୍ଣ କରିଛି । ସଂଭୋଗ କ୍ରିୟାର ପରିପୂର୍ଣ୍ଣତାକୁ ସୂକ୍ଷ୍ମଭାବେ ଉପସ୍ଥାପିତ ନ କରି ଇନ୍ଦ୍ରିୟ ସୌଧର ଐନ୍ଦ୍ରଜାଲିକ ବାତାୟନ ମଧ୍ୟରେ ଦିନନାଥ ସୃଷ୍ଟିକୁ ନିରୀକ୍ଷଣ କରି ରୂପକାର ଭାବେ ଅନୁଭବ ଓ ଉପଭୋଗ କରିବା ସହ ନାଟକୀୟ ଅନୁଭୂତିର ସରସକୁ ରୂପାୟନ କରି ଉପସ୍ଥାପିତ କରାଇଛନ୍ତି ।** ସଂସାରର ସୃଷ୍ଟିକୁ ପ୍ରତୀକାତ୍ମକ ନ କରି ଶିବ-କାଳୀ ଲିଙ୍ଗ-ଭଗର ନୈସର୍ଗିକ ସଂଭୋଗକୁ ବଳିଷ୍ଠତାର ସହ ରୂପାୟିତ କରିଛନ୍ତି । ସଂଭୋଗର ଉତ୍ତରଣ ମଧ୍ୟରେ ବୀଜପତନ ଏବଂ ସୁଗନ୍ଧଭରା ମୃଗନାଭି ଭିତରୁ କସ୍ତୁରୀକୁ ଏ ସମାଜର ରୂପ ଭିତରେ ପ୍ରଦର୍ଶିତ କରାଯାଇଛି । ସୃଷ୍ଟିର ଆରମ୍ଭ ସଂଭୋଗରୁ ହେଲାଭଳି, ଏହି ଉପନ୍ୟାସର ଆରମ୍ଭ ଭଗ ଭିତରେ ଲିଙ୍ଗ ପ୍ରକ୍ଷେପଣରୁ ଆରମ୍ଭ ହୋଇଛି । ଏ ସୃଷ୍ଟିର ପଛରେ କାଳୀଶିବ ଦୁଇଟି ରୂପ ହୋଇ ଅବତରଣର ମୂଳମନ୍ତ୍ର ହୋଇଛନ୍ତି ଯାହା ଶାଶ୍ୱତ ଓ ଜୀବନ ପ୍ରବାହର ପ୍ରତୀକ । ଏହି ପ୍ରସଙ୍ଗରୁ ଔପନ୍ୟାସିକ ନିଜେ ଅବତରଣ ଓ ଉତ୍ତରଣର ଅଗମ୍ୟ ଲୀଳା ଭିତରେ ପ୍ରବେଶ କରି ସୃଷ୍ଟିର ପରିସ୍ଫୁଟନକୁ ବୁଝିପାରିଛନ୍ତି ଏବଂ ରୂପ ପ୍ରକାଶକୁ ହେଜିଛନ୍ତି । ଦେହଜଗତ ଓ ଜଗତୋତ୍ତର ଜଗତରେ ଅବତରଣ ଓ ଉତ୍ତରଣ ରୋମାଞ୍ଚ ତଥା ଉନ୍ମାଦନାର ଏକ ଅପୂର୍ବ ଉପଲବ୍ଧି । ଏ ଦୁଇଟି ମୁହୂର୍ତ୍ତର କ୍ଷଣକୁ ଚିରକାଳ ଧରି ରଖିଲେ ଅବତରଣ ଚିରନ୍ତନ ହୋଇଯାଇଥାଏ । ପୁଣି ଚିରନ୍ତନ ଉତ୍ସ ମଧ୍ୟରେ ଚେତନର ରୂପ ବର୍ଣ୍ଣିଳ ହୋଇଯାଏ ଶବ୍ଦ ବାଙ୍ମୟ ହୋଇ ସୃଜନର ସୁବର୍ଣ୍ଣବେଦୀକା ଉପରେ ଅପ୍‌ସରା ଭଳି ଚିତ୍ରିତ ହୋଇଥାନ୍ତି । ରୂପମାନେ ଜୀବନ୍ତ ହେବାକୁ ଚେଷ୍ଟା କରନ୍ତି । ଯେଉଁ କ୍ଷଣରେ ଏସବୁ ଘଟେ ତାକୁହିଁ ରୂପ କୁହାଯାଏ । ଏଠାରେ ଶିଳ୍ପୀ ଧ୍ୟାନମଗ୍ନ ହୋଇଯାଏ । ରୂପମାନେ ଉତ୍ତରିତ ହୋଇ ଯେକୌଣସି ସ୍ଥାନରେ ଉଭାହୋଇ ଦୃଶ୍ୟ ହୋଇଯାଆନ୍ତି । ଅବତରଣ କରିବାକୁ ମଧ୍ୟ ପରାଙ୍ମୁଖ ହୁଅନ୍ତି ନାହିଁ ।

Digitized by srujanika@gmail.com

ଉପନ୍ୟାସରେ କାଶୀଧାମ ଉତ୍ତରଣର ଶୀର୍ଷ ବିନ୍ଦୁ । ଜାଗତିକ - ଆଧାତ୍ମିକ, ଲୌକିକ - ଅଲୌକିକ ଇତ୍ୟାଦି ଅବତରଣର କେନ୍ଦ୍ରବିନ୍ଦୁ । ଶିବଙ୍କ ତ୍ରିଶୂଳମୁନରେ ବନାରସକୁ ଏକ ବିନ୍ଦୁ ରୂପରେ ରୂପାୟିତ କରାଯାଇଛି । ଏହି ବିନ୍ଦୁ ବିସ୍ତାରିତ ହୋଇଛି ସକଳ ଲୀଳାର ରଙ୍ଗଭୂମିରେ। ଅସୀରୁ ପଞ୍ଚଗଙ୍ଗା ଘାଟ ପର୍ଯ୍ୟନ୍ତ ଜୀବନ ଜଗତର ଅଭିନୟ, ଜନ୍ମ ମୃତ୍ୟୁର ଶାଶ୍ୱତ ଲୀଳାର ପୃଷ୍ଠଭୂମି ହୋଇଛି ବନାରସ । ଏଭଳି ଏକ ତୁଳନାତ୍ମକ ରୂପକଳ୍ପକୁ ଉପସ୍ଥାପନା ମାଧ୍ୟମରେ କୁହାଯାଇଛି- 'ଗୋଟିଏ ପଟେ ଗଙ୍ଗାରେ ଜୀବନର ଆବାହନ ଅନ୍ୟପଟେ ତାର ପରିସମାପ୍ତି । ପୁଣି ଗଙ୍ଗାରେ ଜୀବନର ଅଦ୍ଭୁତ ପ୍ରବାହ, ଶୋକନାହିଁ ଦୁଃଖନାହିଁ ସବୁ ଯେମିତି ବିଧି ପ୍ରଣୀତ ।' (ଗଙ୍ଗାବତରଣ, ପୃ.୪), ବନାରସକୁ ଏକ ଦୃଶ୍ୟମାନ ଜଗତର ପ୍ରକାଶ କରାଇ ଏକ ଅଦୃଶ୍ୟ ଅନ୍ତଃଛନ୍ଦରେ ଗୁନ୍ଥିଦେବାରେ ଏକ ଉପଲବ୍ଧି । ଏଣୁ କୁହାଯାଇଛି, ଉତ୍ତରଣର ସ୍ୱରୂପ ହେଉଛି ବନାରସର ଆତ୍ମିକ ସ୍ୱରୂପ ଓ ବିଶ୍ୱଭାବନାର ଦ୍ୟୋତକ ।

ଏଠି ଗଙ୍ଗା ଚଳଚଞ୍ଚଳ । ରୌପ୍ୟ ତେଜରେ ପ୍ରବାହିତା ଜାହ୍ନବୀ । ଅବତରଣକୁ ଆପେକ୍ଷିତା । ଧାରା ଅନ୍ତଃମୁଖୀ ଏବଂ ସେ ଅରୂପର ରୂପ ଅନୁଭବୀ । ଗୋଟିଏ ପଟେ ସଂସାରର ଓଜ, ରଜ, ତେଜ, ବ୍ୟାପ୍ତି, ରୂପ ଅରୂପ ଓ ପରାରୂପର ପ୍ରକାଶ ହେଉଥିବା ବେଳେ ଅନ୍ୟପଟେ ଗଙ୍ଗା । ଗଙ୍ଗା ଓ ବନାରସ, ଉତ୍ତରଣ ଓ ଅବତରଣର ଉଦ୍ଦିଷ୍ଟ ବର୍ଣ୍ଣନା ସୁଦୂର ପ୍ରସାରୀ । ଯାହାକୁ ନେଇ ପୁରାଣଟିଏ ରଚନା କରିହେବ । କିନ୍ତୁ ଔପନ୍ୟାସିକ ଏହା ସ୍ୱୀକାର କରିଛନ୍ତି ଯେ, ଏଭଳି ଗାଥାକୁ ନେଇ ଉପନ୍ୟାସ ରଚନା କରାଯାଇ ପାରିବ ନାହିଁ, ବରଂ ଗାଥାର ସାରକଥାକୁ ବାରମ୍ବାର ମନ୍ଥନ କରି ଚରିତ୍ର ମାଧ୍ୟମରେ ସେହି ଗୋଟିଏ ତତ୍ତ୍ୱକୁ ବିଭିନ୍ନ ରୂପରେ ବିଭିନ୍ନ ଭାବରେ ବର୍ଣ୍ଣନା କରିବା ଶ୍ରେୟସ୍କର ହେବ । ଏହା କିଭଳି ରୂପାୟନ ହୋଇପାରିବ ସେଥିପାଇଁ ଔପନ୍ୟାସିକ ଶିବ-ପାର୍ବତୀଙ୍କ କଥୋପକଥନ ମାଧ୍ୟମରେ ବନାରସର ଗାଥାକୁ ପ୍ରକାଶିତ କରାଇଛନ୍ତି । କାଶୀର ସମସ୍ତ ଅବତରଣକୁ ଶିବ ଦ୍ରଷ୍ଟା ଏବଂ ସାକ୍ଷୀ ହେବାପରେ ଉଭୟେ ଶିବ-ପାର୍ବତୀ ଗଙ୍ଗାକୂଳରେ ଆସୀନ ହୋଇଛନ୍ତି । ଗଙ୍ଗାତଟରେ କାଶୀଧାମରେ ଅବତରଣର ଏକ ରୂପାୟିତ ଲୀଳା ଦେଖିବା ପାଇଁ ଦୁହେଁ ତତ୍ପର । ରୂପ ଅନ୍ୱେଷଣରେ ପରିବ୍ରାଜକ ହୋଇ ରୂପାନନ୍ଦ ଗଙ୍ଗାତଟରେ ପହଞ୍ଚିବା ପରେ ଆଉ ଏକ ଅବତରଣର ଅୟମାରମ୍ଭ ଘଟିଛି ।

ଉପନ୍ୟାସର ପ୍ରତ୍ୟେକ ପ୍ରସ୍ଥ କବୀର ଦୋହାରେ ଆରମ୍ଭ ହୋଇଛି । ଲେଖକ ନିଜେ ରୂପ ଅନ୍ୱେଷଣରେ ରୂପାନନ୍ଦ ହୋଇ ରେଳଯାତ୍ରା କରିଛନ୍ତି ।  ଭୁବନେଶ୍ୱରରୁ ମୋଗଲସରାଇ ପର୍ଯ୍ୟନ୍ତ ଅଠର ଘଣ୍ଟାର ରେଳଯାତ୍ରା ଅଠର ଖଣ୍ଡ ମହାଭାରତ ଭଳି ଏକ ମହାକାବ୍ୟ ହୋଇଯାଇଛି । ରୂପାନନ୍ଦ ବନାରସ ଆସୁଛନ୍ତି । ଫେଣ୍ଟାଫେଣ୍ଟି ରଙ୍ଗ ଭିତରେ ମୋଗଲସରାଇ ରେଳଷ୍ଟେସନ ସ୍ୱଚ୍ଛ ଓ ଉଜ୍ଜ୍ୱଳ ଦେଖାଯାଉଛି । ଯାତ୍ରା ଏକ ରଙ୍ଗମଞ୍ଚର ନାଟକ ଭଳି ଅନୁଭବ ହେଉଛି । ଅଚିହ୍ନାଚିହ୍ନା,  ଚିହ୍ନାଅଚିହ୍ନା ଭିତରେ ରୂପାନନ୍ଦ ମୋଗଲସରାଇ ପହଞ୍ଚି ସେଠାରୁ ବନାରସକୁ ଯାତ୍ରା କରୁଛନ୍ତି । ରୂପାନନ୍ଦ ନିଜକୁ ଜଣେ ପ୍ରାକ୍ ଷାଠିଏର ଏକ ଉଦାସୀନ ମଣିଷ ଭାବେ କଳ୍ପନା କରି ନିଜ ରୂପକୁ ରୂପାୟିତ କରିବାକୁ ଚେଷ୍ଟା କରୁଛନ୍ତି । 'ଧୋବ ଫର ଫର ଫେବ୍ ଇଣ୍ଡିଆ ଆଜାନୁଲମ୍ବିତ କୁର୍ତ୍ତା ସାନ୍ଧ୍ୟ ଆଲୁଅରେ ଇଷତ୍ ଗେରୁଆ ଦିଶୁଛି । ଧଳା ନିଶ ହଳକ କଇଁରିଆ ପଡ଼ିଗଲାଣି ।' (ଗଙ୍ଗାବତରଣ ପୃ.୧୨) ଔପନ୍ୟାସିକ ରୂପାନନ୍ଦଙ୍କ ଧଳା ପୋଷାକ ଏବଂ ଧଳା ନିଶର ତର୍ଜମା ସନ୍ଧ୍ୟା ସମୟର ରଙ୍ଗକୁ ରୂପଦେବାକୁ ଚେଷ୍ଟା କରିଛନ୍ତି । ଅତିଥି ଭାବେ ପହଞ୍ଚିଥିବା ରୂପାନନ୍ଦଙ୍କୁ ଆଶ୍ରମର ଅନ୍ତେବାସୀ ଉମାଧର ଓ ନିତ୍ୟାନନ୍ଦ ମୋଗଲ ସରାଇରୁ କାଶୀ ପର୍ଯ୍ୟନ୍ତ ପାଛୋଟି ଆଣୁଛନ୍ତି । ସମସ୍ତେ ଗୋଟିଏ ଫିଆଟ୍

Digitized by srujanika@gmail.com

ଗାଡ଼ିରେ ଯାଉଛନ୍ତି । ପୁରୁଣା ଫିଆଟ୍‌କୁ ଏକ ତୁଳନାତ୍ମକ ରୂପଦେବାକୁ ଯାଇ ଔପନ୍ୟାସିକ କହନ୍ତି, 'ନିଜେ ବଂଚିଥିଲେ ବାପର ନାଁ' ଚାହିଁଥିଲେ ଚାହିଁଥିବ । ଶହେବର୍ଷ ତଳର ଦଦରା ଲୁହାପୋଲ ଉପରେ ବାଟ ଗୁରୁଣ୍ଡି ଗୁରୁଣ୍ଡି ଫିଆଟ୍ ରାହୁ କବଳରୁ ଚନ୍ଦ୍ର ମୁକୁଳିଗଲା ପରି ବାଁପଟ ରାସ୍ତାର ମୋଗଲସରାଇ ବଜାର ଆଡ଼େ ଚାଲିଲା (ଗଙ୍ଗାବତରଣ ପୃ.୧୩) । ଗୋଟିଏପଟେ ଚନ୍ଦ୍ରଗ୍ରହଣର ବାସ୍ତବ ତଥା ସତ୍ୟ ରୂପ ଏବଂ ଅନ୍ୟପଟରେ ସଦ୍ୟ ବିପଦରୁ ମୁକୁଳି ମୁକୁଳି ଯାଉଥିବା ଫିଆଟ୍ ଗାଡ଼ିର ରୂପକୁ ଏଠାରେ ଚୁମ୍ବକୀୟ ଉପସ୍ଥାପନା କରାଯାଇଛି । ସାରା ରାସ୍ତା କାଶୀ ମହିମା ନିତ୍ୟାନନ୍ଦଠାରୁ ଶୁଣି ଶୁଣି ରୂପାନନ୍ଦ ଏବେ ଆଲିସ୍ ମାତାଙ୍କ ଆଶ୍ରମରେ ପହଞ୍ଚି ଯାଇଛନ୍ତି । ଆଲିସ୍‌ଙ୍କ ଅନ୍ତେ ରୂପାନନ୍ଦ ବର୍ତ୍ତମାନ ଏ ଆଶ୍ରମର ଆଚାର୍ଯ୍ୟ । ଆଶ୍ରମରେ ଦେଢ଼ଶହ ଦୁଇଶହ ବର୍ଷର ପୁରୁଣା, ଅତିଥି ଗୃହ, ସ୍ନାନାଗାର ଏବଂ ଗ୍ରନ୍ଥାଳୟ । ଗ୍ରନ୍ଥାଳୟରେ ଇଂରାଜୀ, ଜର୍ମାନ୍, ଫ୍ରେଞ୍ଚ, ସଂସ୍କୃତ ଓ ଓଡ଼ିଆ ଭାଷାର ଭାରତୀୟ ଧର୍ମ ଦର୍ଶନ ଶିଳ୍ପଶାସ୍ତ୍ର ଚିତ୍ର ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ ଗ୍ରନ୍ଥର ସମାବେଶ । ଆଲିସ୍ ମାତା ସୁଇସ୍ ମହିଳା ଚିତ୍ରକର ଏବଂ ଐତିହାସକ ଥିଲେ । ସାରା ଜୀବନ ଗଙ୍ଗାକୂଳରେ ବିତାଇ ଦେଇ ଭାରତୀୟ କଳା ସଂସ୍କୃତିକୁ ବିଶ୍ୱ ବିଦିତ କରିଦେଇଥିଲେ । ରୂପାନନ୍ଦ ଆଲିସ୍‌ଙ୍କ ଅଧ୍ୟୟନ କକ୍ଷ ଭିତରେ ପଶିଛନ୍ତି । ବଖରାରେ ରହିଛି ଚଉଡ଼ା ଡିଭାନ୍, ତା ଉପରେ ତୁଳାର ଗଦି, ସମ୍ବଲପୁରୀ ବାନ୍ଧ ଚାଦର । ଦୁଇଟି ପ୍ରକାଣ୍ଡ ଗୋଲ ମୁଚୁଳା । ନୁଆଣିଆ ମେଜ, ବହିଥାକ, ଫାଇଲ୍, ଫଟୋ, ଆଲବମ୍, କାନ୍ଥ ଠଣାରେ କୃଷ୍ଣଙ୍କ ବିଗ୍ରହ ତ୍ରିଭଙ୍ଗ ଭଙ୍ଗିରେ ଠିଆ ହୋଇଛନ୍ତି । କଳାମୁଗୁନି ପଥରର ଏକ ସୁଠାମ ମୂର୍ତ୍ତି, ରୂପାପାତର ଆଖିରେ ବିସ୍ତାରିତ ଡୋଳାର କୁହୁକ ଏବଂ ପିତାମ୍ବରୀ କାଛେଣୀ ପିନ୍ଧିଛନ୍ତି । ଏଇ ଉପନ୍ୟାସର ରୂପକ ଭାବକୁ ଆହୁରି ତୀକ୍ଷ୍ଣ ଭାବେ ଦେଖିଲେ ଜଣାଯାଏ ଯେ, ଓଡ଼ିଶାର ଉପନ୍ୟାସ ପରଂଗତି ।

**ଓଡ଼ିଆ ଭାଷାରେ ଯେତେ ଉପନ୍ୟାସ ରଚନା କରାଯାଇଛି କୌଣସି ଉପନ୍ୟାସରେ କଳା, ଭାସ୍କର୍ଯ୍ୟ ତଥା ସ୍ଥାପତ୍ୟ ଉପରେ ଆଲୋକପାତ କରାଯାଇନାହିଁ । ଏଯାବତ୍ ଏଇ ବିଭବ ଉପରେ ଔପନ୍ୟାସିକ ମାନଙ୍କର ଅବହେଳା ଆଚମ୍ବିତ ଲାଗେ। ବିଳାସିକତାକୁ ପ୍ରକାଶ କରିବାରେ ହୁଏତ ଔପନ୍ୟାସିକମାନେ ଚେଷ୍ଟା କରିଛନ୍ତି କିନ୍ତୁ କଳାର ଅନୁଶୀଳନ ଏବଂ କଳାର ବିଶ୍ୱ ଉପରେ କେ' ବବି ଇଛାବ୍ୟକ୍ତ କରିନାହାନ୍ତି ।** ଦିନନାଥ ନିଜେ ଚିତ୍ରକର ଏବଂ କଳାବିତ୍ ହୋଇଥିବାରୁ ତାଙ୍କ ଉପନ୍ୟାସରେ କଳାଚର୍ଚ୍ଚାର ବିନ୍ୟାସ ଘଟିଛି । ଏଠାରେ ଔପନ୍ୟାସିକ ଗବେଷଣାତ୍ମକ ଆଲେଖ୍ୟ ଏବଂ ଚିନ୍ତନ ସିଦ୍ଧାନ୍ତକୁ ନେଇ ଉପନ୍ୟାସକୁ ଆଗକୁ ବଢ଼ାଇଛନ୍ତି । ଆଶ୍ରମ ଭିତରେ ରୂପାନନ୍ଦ ଦେଖୁଥିବା ପିତଳ ଖୋଦେଇ ଶ୍ରୀଯନ୍ତ୍ର ଏବଂ ବଟପତ୍ରରେ ଭାସମାନ ବିଷ୍ଣୁଙ୍କ ସହିତ ମାର୍କଣ୍ଡେୟ ଋଷିଙ୍କ ଚିତ୍ରର ରୂପ-ବିମର୍ଷ ଉପନ୍ୟାସରେ ସ୍ଥାନ ପାଇଛି । ଏଥିସହିତ ଅସୀଘାଟର ତୈଳଚିତ୍ର, ଚିତ୍ରରେ ଗଙ୍ଗାକୂଳରେ ପର୍ବମୁଖରିତ ସକାଳ ଏବଂ ଯାତ୍ରୀମାନଙ୍କ ଗଙ୍ଗାସ୍ନାନ ଏକ ଏକ ଚଳନ୍ତି ଉପନ୍ୟାସ ଭଳି ଚିତ୍ରିତ ହୋଇଯାଇଛି। ଏତଦ୍‌ବ୍ୟତୀତ ଶିଳ୍ପୀ ଆଲିସ୍‌ଙ୍କ ଚିତ୍ରଶାଳାରେ ଚିତ୍ର ସରଞ୍ଜାମର ଉପସ୍ଥିତି ଏକ ଶୈଳ୍ପିକ ଆତ୍ମୀୟତା ପ୍ରକାଶ କରିପାରିଛି । ଆଶ୍ରମ, ଚିତ୍ର, ଗବେଷଣା, ଚିତ୍ରଶାଳାର ଏକ ଚମତ୍କାର ପରିବେଶ ମଧ୍ୟରେ ଉପନ୍ୟାସକୁ ଆହୁରି ରୂପାନ୍ୱିତ କରାଯାଇଛି ।

ଅତୀତ ଏବଂ ବର୍ତ୍ତମାନର ଋଧ ସ୍ମୃତିର ମନନତା ଭିତରେ ରହି ରୂପାନନ୍ଦ ନିଜ ଗାଁ ଦିଗପହଣ୍ଡି ଭିତରେ ହଜିଯାଉଛନ୍ତି । ବାପା, ମା' ଘର, ଦିଗପହଣ୍ଡି ଗଡ଼ ଏବଂ ପୁଞ୍ଜିକୟାଁକୁ ନେଇ ଅନେକ ସ୍ମୃତି, ପୁରୀଧାମଠାରୁ କାଶୀଧାମର ଦୂରତାକୁ ନିକଟତାରେ ପରିଣତ କରି ଦେଇଛନ୍ତି । ଅର୍ଥାଭାବରେ ମା'ଙ୍କର ତୀର୍ଥାଟନ ହେଇପାରିନାହିଁ ତଥାପି ଏକ ଚିତ୍ରକାର ରୂପରେ ରୂପାନନ୍ଦ ନିଜ ମା'ଙ୍କୁ ରୂପେଇ

Digitized by srujanika@gmail.com

ଦେଇଛନ୍ତି । 'ବୋଉ ଆଉଥରେ ଜନ୍ମ ହେଇ ବୂଢ଼ୀ ହେଇଯାଇ ଥିବଣି । ଏଥର ନିଶ୍ଚୟ ପୁରୀର କୁଣ୍ଡେଇ ବେଣ୍ଟ ସାହିରେ ନହେଲେ ବାଶେଳୀ ସାହିରେ ଜନ୍ମିଥିବ । ନିତି ଜଗନ୍ନାଥଙ୍କୁ ଜୁହାର ହେଉଥିବ x x x x ହୁଏତ ତାର ବି ଚଗଲା ପୁଅଟି ଥିବ । ତା'ର ନାଁ ସେ ଦେଇଥିବ ରୂପାନନ୍ଦ । ରୂପ ଡିଆରୁଛି ବୋଲି x x ଚିତ୍ରକର ମହାପାତ୍ର ଘରେ ଖଟିଥିବ । ବୋଉ ଗଲାଥର ଗନ୍ଥା ସିଲାଉଥିଲା, ଏଥର ପଟଚିତ୍ର ପାଇଁ ପଟି ପାରୁଥିବ, ଖଡ଼ି ରାନ୍ଧୁଥିବ । (ଗଙ୍ଗାବତରଣ, ପୃ. ୨୮) ଏକ ନିଛକ ଉଦାସୀନ ଚରିତ୍ରକୁ ଜଣେ ଚିତ୍ରକର ରୂପରେ ଦେଖିବାକୁ ଯାଇ ରୂପାନନ୍ଦ ନିଜ ମା'ଙ୍କୁ ମଧ୍ୟ ଏକ ସ୍ରଷ୍ଟା ଭାବେ ଅବତରଣ କରାଇବାର ପ୍ରୟାସ କରାଇଛନ୍ତି । ନିଜ ଅବଚେତନରେ ଔପନ୍ୟାସିକ ରୂପାନନ୍ଦଙ୍କୁ କାଶୀରୁ ପୁରୀ ନୀଳଚକ୍ର ଦେଖାଇଛନ୍ତି । ବିରାଟ ଦିଟା କଳା ଡୋଳା ଧୀରେ ଧୀରେ ବିସ୍ତାରି ହୋଇ ଆକାଶକୁ ମାଡ଼ିଯାଇଛି । ତୁଳନାତ୍ମକ ରୂପ ବର୍ଣ୍ଣନାରେ କୃଷ୍ଣଙ୍କ ବିଶ୍ୱରୂପ ଦର୍ଶନକୁ ଏଠାରେ ଉପସ୍ଥାପିତ କରାଯାଇଛି । ଅବଚେତନର ଚିତ୍ର ମାନସିକ ସ୍ତରରୁ ବାସ୍ତବ ସ୍ତର ଭିତରକୁ ନେଇ ପ୍ରକୃତିର ବୈଚିତ୍ର ମଧ୍ୟରେ ମନ୍ତ୍ରମୁଗ୍ଧ କରାଇଦେଇଛନ୍ତି ।

ଏକ ସପ୍ନୀଳ ରୂପ ଆଶ୍ରମ ଭିତରେ ଅବସ୍ଥିତ । ତିନୋଟି ପ୍ରକାଣ୍ଡ ତୈଳଚିତ୍ର ସୃଷ୍ଟି, ସ୍ଥିତି ଓ ପ୍ରଳୟକୁ ଦେଖି ଦେଖି ରୂପାନନ୍ଦ ଚିତ୍ରରୁ ବାହାରି ପ୍ରକୃତିରେ ହଜିଯାଇଛନ୍ତି । ଘରର ଅଗଣା ଭିତରେ ଜଣେ ସୌମ୍ୟ ଶ୍ୱେତାଙ୍ଗୀ ମହିଳାଙ୍କୁ ନିଶ୍ଚଳ ଭାବରେ ଦେଖୁଛନ୍ତି । ଚିତ୍ର ଭାଷାରେ ଏହା ଏକ ମାର୍ବଲ୍ ଭାସ୍କର୍ଯ୍ୟ ଭଳି ରୂପାନନ୍ଦଙ୍କୁ ପ୍ରତ୍ୟୟ ହେଉଛି । ଦୁହେଁ ରୂପାନନ୍ଦ ଏବଂ ଆଲିସ୍ ଆଶ୍ରମ ଅଗଣାରୁ ଲମ୍ବି ଯାଇଥିବା ଏକ ସୁଢ଼ଙ୍ଗ ଭିତରେ ଠିଆ ହୋଇଛନ୍ତି । ରୂପାନନ୍ଦଙ୍କ ମନରେ ପୁଣି ଏକ ସୁନ୍ଦର ରୂପ ଅନୁମିତ ହେଉଛି କାଏରୋ ସହରରେ ମିଶିଥିବା ରାନିଆ ସହିତ । ସୁନ୍ଦର ଟଣା ଟଣା ଆଖି । ଗାଣ୍ଡିବ ଭଳି ଭ୍ରୂଲତା, ଦେଖିଲେ ଲାଗିବ ନୀଳନଦୀର ଧାରାଟିଏ ଅବା ତା ଲଲାଟତଳେ ଅଟକି ରହିଛି । (ଗଙ୍ଗାବତରଣ, ପୃ. ୩୨) ମାର୍ବଲ୍ ମୂର୍ତ୍ତି ସଜୀବ ହେଇ କଥା କହୁଛି । ଭାରତୀୟ ଦର୍ଶନର ସମସ୍ତ ନିର୍ଯ୍ୟାସକୁ ନେଇ ଆଲିସ୍ ଚିତ୍ର ଜୀବନର ଏକ ମୂଲ୍ୟାୟନ ଦେଇଛନ୍ତି । ପଶ୍ଚିମ ଚିତ୍ର ଶୈଳୀରେ ଉଭା ହୋଇଥିବା ଚିତ୍ରତ୍ରୟୀକୁ ଦେଖି ରୂପାନନ୍ଦ ପୁଲକିତ ହେଇଛନ୍ତି । ଚିତ୍ରସୃଷ୍ଟି ଚିତ୍ରର ପୁଙ୍ଖାନୁପୁଙ୍ଖତାକୁ ଚାକ୍ଷୁଷ କରିବାରେ ଯେଉଁ ପ୍ରକ୍ରିୟାର ପ୍ରସ୍ତାବନା ହୁଏ ତାହାକୁ ହୃଦୟଙ୍ଗମ କରିପାରିବା ମଣିଷଟି ହେଉଛି ଏ ସଂସାରର ଏକ ମହତ୍ ବ୍ୟକ୍ତି । ପୁଣି ଚିତ୍ରଚର୍ଚ୍ଚାର ନିର୍ଯ୍ୟାସ ସରୂପ ରୂପାନନ୍ଦ ସିନ୍ଧୁକ ଖୋଲିବା ପରେ ଦେଖୁଛନ୍ତି ଚିତ୍ରିତ କାଠର ଫରୁଆ ଭିତରେ ଫରୁଆ ତା ଭିତରେ ସୁନା ଫରୁଆ ଏବଂ ସୁନା ଫରୁଆ ଭିତରେ ଗୋଟିଏ ପ୍ରଚକ୍ଷୁ, ବାସ୍ତବବାଦୀ ଉତ୍ତର-ଆଧୁନିକତାର ଭାସ୍କରଟିଏ ସ୍ଥୁଳ ହେଇପାରେ କିନ୍ତୁ ତାରି ଭିତରେ ଫୁଲରେ ମଧୁ ମୃଗନାଭିରେ କସ୍ତୁରୀ, ବନସ୍ତରେ ଚନ୍ଦନ ବୃକ୍ଷର ଚେତନା । ଗଜ ମସ୍ତକର ମୁକ୍ତାଭଳି ପ୍ରାଣସତ୍ତାଟିଏ ଔପନ୍ୟାସିକଙ୍କ ଚିତ୍ରିତ ଉପସ୍ଥାପନା ମାନଙ୍କରେ ନିହିତ ରହିଛି ।

ରୂପାନନ୍ଦଙ୍କ ବିତୁଥିବା ରାତି ଏବଂ ଆଶ୍ରମର ସାତ୍ତ୍ୱିକ ବାତାବରଣରେ ପ୍ରକୃତିର ଚିତ୍ର ତାଙ୍କ କୌଣସି ଏକ ଶିଳ୍ପୀର  କାନ୍‌ଭାସ୍‌ରେ ଚିତ୍ରିତ ହୋଇଯାଉଛି । ବାତାୟନ ଦେଇ ପ୍ରକୃତିକୁ ଉପଭୋଗ କରିହେଉଛି । ସମସ୍ତ ବାସ୍ତବିକତାକୁ ଏକାଠି କରି ଗଙ୍ଗାନଦୀର ଚିତ୍ର ଉପସ୍ଥାପନ କରାଯାଉଛି । ଲାଗୁଛି ସତେ ଯେମିତି ଔପନ୍ୟାସିକ ଏଇକ୍ଷଣି ରଙ୍ଗତୂଳୀ ନେଇ ପ୍ରକୃତିକୁ ଉତାରି ନେଉଛନ୍ତି । ଗଙ୍ଗାନଦୀ, ଗଙ୍ଗାଘାଟ ଆରପାରିର ନଦୀପଠା, ଅସୀଘାଟ ସତେ ଯେମିତି କୁହୁଡ଼ି ଆସ୍ତରଣ ଭିତରେ ଢାଙ୍କି ହେଇଯାଉଛି । ପୁଣି ପ୍ରହେଳିକାର ଘୂମନ୍ତ ବାସ୍ତବିକତା ଭିତରେ ମନ୍ଦିର, ତା ଉପରେ ନେତ । ଧୂସର ରଙ୍ଗ ଭିତରେ ଏକ ଧାର ଭଳି ଦିଶୁଥିବା ଗଙ୍ଗା ଓ ଗଙ୍ଗାଘାଟର ଡଙ୍ଗାମାନଙ୍କୁ ଚିତ୍ରଭଳି

Digitized by srujanika@gmail.com

ରୂପାୟିତ କରାଯାଉଛି । ଔପନ୍ୟାସିକ ସ୍ୱୀକାର କରୁଛନ୍ତି ଯେ, ରୂପାନନ୍ଦଙ୍କୁ ଲାଗୁଛି ଏଇ ଜଳରଙ୍ଗରେ ଚିତ୍ରିତ ଏକ ଭୂଦୃଶ୍ୟ । ମୋଟା ଖଦଡ଼ା ହ୍ୟାଣ୍ଡମେଡ୍ କାଗଜ ଉପରେ ଗ୍ରେ ଓ ଇଣ୍ଡିଗୋର ଆସ୍ତରଣ ଜକଜକିଆ କରି ବୁହାଇଦେଲେ ଯେମିତି ଦେଖାଯିବ ସେମିତି । ଚିତ୍ରଶିଳ୍ପୀ ଦ୍ରୁଣ୍ଡଙ୍କ ଜଳରଙ୍ଗ ଅବା ଗୋପାଳ ଘୋଷଙ୍କ ପେଷ୍ଟାଲ୍ (ଗଙ୍ଗାବତରଣ, ପୃ.୪୧-୪୨) ଜଣେ ସାହିତ୍ୟିକ ଉପନ୍ୟାସରେ ଶୈଳ୍ପିକ ବାତାବରଣ ସୃଷ୍ଟିକରିବା ଏବଂ ଜଣେ ଚିତ୍ରଶିଳ୍ପୀ ନିଜ ଚିତ୍ରଭାଷାରେ ଚିତ୍ର କରୁ କରୁ ସୃଷ୍ଟି କରିବା ସାହିତ୍ୟର ମାନସିକତା ଅଧିକ ପ୍ରଭାବଶାଳୀ ବୋଲି ଧରିନେବାକୁ ହୁଏ । କାରଣ ଚିତ୍ରୋପନ୍ୟାସକୁ ଘେନିବା ପାଇଁ ଦୁଇଟି ପ୍ରବେଶ ଦ୍ୱାର ଦେଇ ଭିତରେ ପଶିବାକୁ ହୁଏ । ଗୋଟିଏ ଦ୍ୱାରରେ ଚିତ୍ର ସହ କଥାଭାଷା ଏବଂ ଅନ୍ୟଦ୍ୱାରରେ ସାହିତ୍ୟ ଭିତରେ ଚିତ୍ରର ଚିହ୍ନଟ ଏଇ ଉପନ୍ୟାସରେ ପୁରାଣ, ଇତିହାସ ଓ ଦର୍ଶନର ଯେତିକି ଔପଚାରିକତା ରହିଛି ସେହିଭଳି ଶୈଳ୍ପିକତାକୁ ମଧ୍ୟ ଅଧିକ ଆକଳନ କରାଯାଇଛି । ଦେଖନ୍ତୁ, ସାହିତ୍ୟରେ ଚିତ୍ର ସହିତ କଥାଭାଷା । ଆଲିସ୍ ଭାରତ ଆସୁଛନ୍ତି । ଲୋହିତସାଗରରେ ଜଳଯାତ୍ରା ଆରମ୍ଭ । ଶ୍ୱେତାଙ୍ଗୀ ଆଲିସ୍ ଜଣେ ଶିଳ୍ପୀ, କଳା ଐତିହାସିକ ତଥା କଳାସମାଲୋଚକ ଭାବରେ ଭାରତ ଆଡ଼କୁ ଆଗମନ କରୁଛନ୍ତି । ଔପନ୍ୟାସିକ ଆଲିସ୍‌ଙ୍କ ଡାଏରୀ ମାଧ୍ୟମରେ ସମୁଦ୍ର ଦୃଶ୍ୟକୁ ଉପନ୍ୟାସରେ ରୂପାୟିତ କରିବାକୁ ଯାଇଛନ୍ତି । ଲୋହିତ ସାଗରର ସୂର୍ଯ୍ୟାସ୍ତ ଚିତ୍ରକୁ ଆଲିସ୍‌ଙ୍କ ଭାଷାରେ ବର୍ଣ୍ଣନା କରାଯାଇଛି । ସୂର୍ଯ୍ୟାସ୍ତର ସମୁଦ୍ର ଘନକୃଷ୍ଣ ରଙ୍ଗରେ ଗଭୀରତାକୁ ପ୍ରକାଶ କରୁଛି । ଅସ୍ତସୂର୍ଯ୍ୟର ରଙ୍ଗରେ ଘନସବୁଜ ଓ ଘନ ବାଇଗଣୀରଙ୍ଗ ପ୍ରଲେପନ କରାଯାଇଛି । ଅଦୂରର ନୀଳ ପାହାଡ଼ ଗେରୁଆ ଆକାଶ କେଉଁଠି କେଉଁଠି ସଫେଦ ଓ ହଳଦି ରଙ୍ଗର ଷ୍ଟ୍ରୋକ୍ ମନେହେଉଛି ଶିଳ୍ପୀ ସତେଯେମିତି ଏଇ କିଛିସମୟ ଆଗରୁ ତା ଚିତ୍ରଟି ଆଙ୍କିଦେଇ ଚାଲିଯାଇଛି । ସୂର୍ଯ୍ୟାସ୍ତର ରୂପରେଖରେ ପୃଥିବୀ ଆତ୍ମୀୟ, ରୂପବନ୍ତ ଓ ଆନନ୍ଦମୟ ହୋଇଛି । ଆଲିସ୍‌ଙ୍କ ଯାତ୍ରାରେ ଚିତ୍ର ସର୍ଜନାର ବିରାମ ନାହିଁ । ପୁଣି ଦେଖନ୍ତୁ ଆଉ ଗୋଟିଏ ଗ୍ରାମ୍ୟ ଦୃଶ୍ୟର ଚିତ୍ର ମାଦକତା । ଗ୍ରେ ରଙ୍ଗର ଆକାଶ, ଚାରିଆଡେ ତାଳ ନଡ଼ିଆ ବଣ । ଉଜ୍ଜ୍ୱଳ ତଥା ଗାଢ଼ ସବୁଜ ରଙ୍ଗର କଦଳୀବଗିଚା ପୃଷ୍ଠରେ କେବଳ ପାଞ୍ଚଦଶଟି ଧାନବିଲରେ ଦିଗନ୍ତ ଶେଷ ହେଇଯାଇଛି । ଚିତ୍ରର ମଧ୍ୟଭାଗରେ ଯେମିତି ଚରିତ୍ରମାନେ ଧୂସରିଆ ରଙ୍ଗର ଲୁଗାପିନ୍ଧି ଛିଡ଼ା ହୋଇଛନ୍ତି । ଏଇ ସନ୍ଦର୍ଭରେ ମଦୁରାଇର ବ୍ୟବହୃତ ଲାଲ୍, କମଳା, ବାଇଗଣି, ହଳଦିଆ ଆଦି ରଙ୍ଗର ଏକ ତୁଳନାତ୍ମକ ରୂପାୟନ କରାଯାଇଛି । ଏଭଳି ଦୁଇଟି ରୂପ ବର୍ଣ୍ଣନାକୁ ଦେଖିଲେ ମନେ ହେବ ପାଶ୍ଚାତ୍ୟ ଓ ପ୍ରାଚ୍ୟର ଆବେଗ ଚିତ୍ର ଓ ସାହିତ୍ୟରେ ଏକାକାର ହୋଇଉଠିଛି । ଆଲିସ୍‌ଙ୍କ ଶିଳ୍ପାତ୍ମକ ଅନ୍ୱେଷଣକୁ ମଧ୍ୟ ଔପନ୍ୟାସିକ ପ୍ରକାଶ କରିବାକୁ ଭୁଲିନାହାନ୍ତି । ଦକ୍ଷିଣର କଥାକଳି ନୃତ୍ୟ ଦେଖିବାପରେ ଆଲିସ୍‌ଙ୍କ ଶିଳ୍ପୀ ଚେତନା ଘନାୟିତ ହୋଇଛି । ଚିତ୍ରରେ ରେଖାଙ୍କନର ଗତିଶୀଳତା, ବର୍ତ୍ତୁଳତା, ରୂପ ଓ ଭାବରେ ପ୍ରଭାବିତ ହେବା ପ୍ରତ୍ୟେକ ଶିଳ୍ପୀପାଇଁ ଏକ ଅପୂର୍ବ ସୁଯୋଗ ଜୁଟିଥାଏ । ଏହା ଅନୁଭବ କଲେ ଜଣାଯାଏ ଯେ ସାହିତ୍ୟ-ଚିତ୍ର ଭିତରେ ଆଉ ଏକ ଚିତ୍ରକୁ ଦର୍ଶନ କରିବା ବାହ୍ୟଛନ୍ଦ ନ ହୋଇ ଏକ ଅବ୍ୟକ୍ତ ଛନ୍ଦ ହୋଇଯାଏ । ଅନ୍ତଃଛନ୍ଦରେ ବାନ୍ଧିହୋଇ ଆଲିସ୍‌ଙ୍କ ଚିତ୍ର ଭିତରେ ଔପନ୍ୟାସିକ ହଜିଯାଉଛନ୍ତି ଏବଂ ଜଣେ ନିଶାଗ୍ରସ୍ତ ଲୋକର ଅବସ୍ଥା ଭୋଗ କରିଛନ୍ତି ।

ରୂପାନନ୍ଦଙ୍କ ଶିଳ୍ପୀପ୍ରାଣ ଆଲିସ୍‌ଙ୍କ ଡାଏରୀ ଭିତରେ ମନ୍ତ୍ରମୁଗ୍ଧ ହୋଇଯାଇଛି । ଏହାର ସାରାଂଶ ହେଲା ଭାରତର ଆତ୍ମା ସେଇଠି ରହିଛି ଯେଉଁଠି ଚିତ୍ରାନୁଭୂତି, ନୃତ୍ୟ ସଂଗୀତର ଛନ୍ଦ ପୁଣି ଛନ୍ଦରୁ ବାହାରିଯିବା ପାଇଁ କଳ୍ପନା । ରୂପରୁ ଅରୂପର ସନ୍ଧାନ ପାଇଁ ଦୀର୍ଘଯାତ୍ରା । ଗଙ୍ଗା ଏବଂ ଗଙ୍ଗାଘାଟର ଅସଂଖ୍ୟ ସୋପାନକୁ ଅତିକ୍ରମ କରିବାର ଉପକ୍ରମ । ଆଶ୍ରମର ନିକାଞ୍ଚନ ସନ୍ଧ୍ୟା ।

Digitized by srujanika@gmail.com

ଜ୍ୟୋତ୍ସ୍ନା ରାତି ପୁଣି ଅନୁଭୂତି ଆତ୍ମଦର୍ଶନ । ଔପନ୍ୟାସିକଙ୍କ ଦୃଷ୍ଟିରେ ଗଙ୍ଗା ସେଇଥିପାଇଁ ଏକ ମାର୍ଗ ଏବଂ ଏକ ମାଧ୍ୟମ ଯିଏକି ଏଭଳି ଅନୁଭୂତିକୁ ଆପେ ଆପେ ଦେଇଦିଅନ୍ତି ।

ମୋଗଲ କଳା ଓ ସଂସ୍କୃତିର ଉଲ୍ଲାସକୁ ଅଧିକ ଭାବେ ଉକୁଟାଇବାର ବଳିଷ୍ଠତାକୁ ଏହି ଉପନ୍ୟାସରେ ଉଦ୍‌ଜୀବିତ କରାଯାଇଛି । ପାଞ୍ଚଶହ ବର୍ଷର ଚିତ୍ର, ସଂଗୀତ ନୃତ୍ୟ, ଖାନଦାନୀ ପରମ୍ପରାକୁ ପୁଣି ମନେପକାଇ ଦେବାପାଇଁ ଚତୁର୍ଥ ଅଧ୍ୟାୟର ସୃଷ୍ଟି । ଲକ୍ଷ୍ନୌର ମୁଜ୍‌ରା ତଥା ବାଈଜୀ ନୃତ୍ୟ ସେତେବେଳର ସମାଜରେ ଖାନଦାନୀ  ପରମ୍ପରାକୁ କୋଳେଇ ନେଉଥିବାବେଳେ, କଳାର ପୁନ୍‌ରୁଥାନ ଏ ଦେଶରେ ଖୁବ୍ ଉଚ୍ଚମାନର ଥିଲା । ମୋଗଲ  ପରମ୍ପରାର ସ୍ଥାପତ୍ୟ ଏ ଯାବତ୍ ଏ ଦେଶରେ ଚିତ୍ରକଳାର ଏକ ମୁଖ୍ୟ ଅଂଶ ରୂପେ ରହିଆସିଛି । ଫୁଲମତୀ ବାଈର କୋଠି ଦୁର୍ଗଭଳି ଦିଶୁଥିବା ବିରାଟ ସ୍ଥାପତ୍ୟ । କେବଳ ଗଡ଼ଖାଇର ଅଭାବ । କୋଠିର ମୁଖ୍ୟଦ୍ୱାରରେ ଯାଉଁଳି କବାଟ କୁନ୍ଦାକାମ ଓ ଛନ୍ଦ ଜାଗାମାନଙ୍କର ପିତଳ କଣ୍ଟାର ଗୋବ । କୋଠି ଭିତରେ ନୌକର ନୌକରାଣୀଙ୍କ ପାଇଁ ଘର । ତା ସାଙ୍ଗରେ ବିରାଟ ମର୍ଦ୍ଦାନା । ଅଗଣା ତଳେ ଇଟାର ନିଘଞ୍ଚ ବନ୍ଧେଇ । ଅଗଣାର ଚାରିକଡ଼ରେ ଗୋଲାପ ଗଛପାଇଁ ଉଚ୍ଚ ଉଚ୍ଚ ମାଣ୍ଡଣା, କୋଠି ଭିତରେ ପାରାଭାଡ଼ି, ଶିରଜୀ, ଗୁଲୀ, ପେଶଓ୍ୱାରୀ, ଲୋଟନ୍ ଭଳି ବିଭିନ୍ନ ପ୍ରକାରର ଖାନଦାନୀ ପାରା । ଏହି ପାରାମାନଙ୍କ ଭିତରେ ୟୁହୁ ପାରା ସବୁବେଳେ ଖୁଦାଙ୍କୁ ସ୍ମରଣ କରନ୍ତି । ବାରଣ୍ଡାରେ ଗୋଲେଇ ଖମ୍ବ ଆଉ ଆର୍ଚ୍ଚ । ଫ୍ରେସ୍‌କୋ ଷ୍ଟୁକୋର ଲତା ଡାଳି ଓ ଗୁଲଦସ୍ତା ମଧରେ ସାଗୁଆ ରଙ୍ଗର ଚିକ୍‌କଣ ଟାଇଲ୍ । ଆକାଶୀ ରଙ୍ଗର ଡାଇମଣ୍ଡ୍ ଏବଂ ଏହା ସାଙ୍ଗକୁ ଗ୍ଲେଜ୍ କରା ଟାଇଲ୍ କାମ । ଏଭଳି ସ୍ଥାପତ୍ୟ  ବର୍ଣ୍ଣନା କଥା ଚିନ୍ତାକଲେ ଦେଖାଯାଏ ଯେ ମୋଗଲ ରାଜବଂଶର ଏକ ଆଚ୍ଛା ଖାସା ଉଦାହରଣ ଔପନ୍ୟାସିକ ଉପସ୍ଥାପିତ କରିଛନ୍ତି । ଏଭଳି  ପରମ୍ପରା ଏ ଦେଶରେ ଆସିଥିଲେ ମଧ କାଳକ୍ରମେ ଲୋକେ ସ୍ଥାପତ୍ୟ ନିର୍ମାଣର ପରିବର୍ତ୍ତନ କରିଦେଇଛନ୍ତି । ମୁଜ୍‌ରା  ପରମ୍ପରାର ଅନ୍ତ ହୋଇଛି ପୁଣି କଥକ୍ ନୃତ୍ୟର ଏକ ନୂତନ ପରମ୍ପରା ଏ ଦେଶରେ ତିଷ୍ଠି ଯାଇଛି ।

ଦାଣ୍ଡି ରାମାୟଣରେ ରଙ୍ଗଶାଳା, ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସରେ ରାବଣର ଚିତ୍ରଶାଳା ତଥା ଚିତ୍ରବୀଥି କଥା ଏହି ଉପନ୍ୟାସରେ କୁହାଯାଇଛି । ସଂପୂର୍ଣ୍ଣ ବୈଦିକତା ନେଇ ଭାରତୀୟ ସଂସ୍କୃତିରେ ରୀତିଯୁଗୀୟ ସାହିତ୍ୟ ଚିତ୍ର ଚର୍ଚ୍ଚା ଖୁବ୍ ମାଦକ ପୂର୍ଣ୍ଣ। ଉପନ୍ୟାସରେ ଜଣେ ବେଶକାର ରଙ୍ଗଶାଳାକୁ ଚିତ୍ରିତ ରୂପରେ ପ୍ରକାଶ କରିବାର ଉଚ୍ଚାଙ୍ଗ ଦୃଷ୍ଟିକୋଣକୁ ଔପନ୍ୟାସିକ ଗଭୀର ଭାବେ ବର୍ଣ୍ଣନା କରିଛନ୍ତି । ରଙ୍ଗଶାଳାର କାନ୍ଥମାନଙ୍କରେ ଷ୍ଟୁକୋର ଡାଳିଲତା,  ଉଡ଼ନ୍ତା ପକ୍ଷୀ, ବାଘ ହରିଣ ଶିକାରର ଚମତ୍କାର ଦୃଶ୍ୟ । ଗୋଲ୍‌ଡ଼େନ୍ ଗିଲ୍‌ଡ଼େଡ୍ ଫ୍ରେମ୍‌ର ଗୋଲ୍ ଆଇନା, ଚଟାଣ ଉପରେ ମଖମଲ୍ଲୀ ଗଦି ଏବଂ ପିଠିରେ ଆଉଜାଣି ପାଇଁ ଛୋଟବଡ଼ ଗଦି । ଚଉରଶ ଜାଗା ପାଖରେ ରେଶମୀ କାର୍‌ପେଟ୍ । ଚଟାଣ ମଝିରେ ଚୂନକାମର ପଦ୍ମଫୁଲ, ଛାତମଝିରୁ ମହମବତୀର ବିରାଟ ଝାଡ଼୍ ଏବଂ ପରୀମାନଙ୍କର ଚିତ୍ର । କାନ୍ଥ ଖୁରାମାନଙ୍କର କାଚଢ଼ଙ୍କା ପ୍ରଦୀପ । କାନ୍ଥର କଡ଼େ କଡ଼େ ରଖାଯାଇଛି ଧଳା ମାର୍ବଲର ଉଲଗ୍ନ ପରୀମାନଙ୍କର ମୂର୍ତ୍ତି, କିଛି ମାର୍ବଲ୍ ମୂର୍ତ୍ତିଙ୍କ ହାତର ପାନପାତ୍ର ଓ ବାଦ୍ୟଯନ୍ତ୍ର । ଛାତ ଆକାଶୀ ରଙ୍ଗର ଏବଂ ଏଇ ଆକାଶୀ ରଙ୍ଗ ଭିତରେ ସୁନାରଙ୍ଗର ଡାଳିଲତା କାମ। ଉପରୋକ୍ତ ବର୍ଣ୍ଣନାରୁ ଜଣାପଡେ ଯେ ଔପନ୍ୟାସିକ ଯାହା ବର୍ଣ୍ଣନା କରିବାକୁ ଚାହିଁଛନ୍ତି ତାହା ଚିତ୍ର ହୋଇଯାଇଛି।

ପୁଣି ଚିତ୍ର ସହିତ ତତ୍ତ୍ୱର ଏକ ମଧୁର ସମନ୍ୱୟ । ସବୁ କଳ୍ପନାର ଖେଳ ଏଇଠି ସତେ ଯେପରି ସମସ୍ତେ ଚିତ୍ରକଳ୍ପ ଭଳି ସମୟ ସ୍ରୋତରେ ଉଭାହୋଇ ପୁଣି ହଜିଯାଇଛନ୍ତି । ତଥାପି

Digitized by srujanika@gmail.com

ସେମାନଙ୍କର ସ୍ମୃତି ଏବେବି ଚିତ୍ରଭଳି ସଦା ଜୀବନ୍ତ । ଧର୍ମ, ସଂସ୍କୃତି, ସମାଜୀକରଣ ତଥା ଦର୍ଶନର ଏକ ଏକ ବଳିଷ୍ଠ ଉଦାହରଣମାନଙ୍କୁ ଔପନ୍ୟାସିକ ଏକତ୍ର କରିଛନ୍ତି । ନାଗାର୍ଜୁନ କୋଣ୍ଡାରୁ ମିଳିଥିବା ବୌଦ୍ଧକଳାର ସମ୍ୟକ୍ ଉପସ୍ଥାପନା ଏବଂ ସାରନାଥର ପ୍ରନ୍ତାତ୍ତ୍ୱିକ ଅବଗାହ ମଧ୍ୟରେ ବୁଦ୍ଧଚରିତର ଉପସ୍ଥାପନା ଖୁବ୍ ପ୍ରଭାବଶାଳୀ । ଆତ୍ମିକ ଦର୍ଶନ, କ୍ଷଣ ଏବଂ ସ୍ଥିତିର ରୂପନେଇ ବୁଦ୍ଧମୂର୍ତ୍ତିର ପରିକଳ୍ପନା । ଓଷ୍ଠରେ ସ୍ମିତହାସ, ଆଗକୁ ସାମାନ୍ୟ ଝୁଙ୍କି ପଡ଼ିବାର ଅଭିବ୍ୟକ୍ତି, ପ୍ରତିମାର ଅଙ୍ଗ ସୌଷ୍ଠବରେ କୁମ୍ଭାରର ଆଦିମ କଳା କୌଶଳର ଝଲକ, ବର୍ତ୍ତୁଳତା, ସୁଠାମତା, ଓ ମସୃଣତା । ଏଭଳି କଳା ସୃଷ୍ଟିର ମାର୍ମିକତା ଶିଳ୍ପୀ ପ୍ରାଣରେ ଆନନ୍ଦ କିଭଳି ପ୍ରକାଶିତ ହୋଇପାରେ ତାହା ଔପନ୍ୟାସିକ ନିଖୁଣ ଭାବେ ଉପସ୍ଥାପନା କରିଛନ୍ତି । ବୁଦ୍ଧମୂର୍ତ୍ତିର ନିର୍ମାଣକୁ ନେଇ ଔପଚାରିକ ଏକ ନାନ୍ଦନତାତ୍ତ୍ୱିକ ବିମର୍ଶ ଉପସ୍ଥାପନ କରିଛନ୍ତି । ଶ୍ରୀଲଙ୍କାର ଶିଳ୍ପୀଙ୍କ ଦ୍ୱାରା ନିର୍ମିତ ହୋଇଥିବା ଫାଇବର୍ ଗ୍ଲାସ୍‌ର ବୁଦ୍ଧ ପଞ୍ଚଶିଷ୍ୟର ମୂର୍ତ୍ତି ସେମାନଙ୍କ ମୁଣ୍ଡ ଉପରେ ଅଶ୍ୱତ୍ଥ ଗଛର ଚନ୍ଦ୍ରାତପ, ଗଛମୂଳ ବେଦିକା ଉପରେ ଆସୀନ ତଥାଗତ ବୁଦ୍ଧ ଏବଂ ସିମେଣ୍ଟ ଚଟାଣ ଉପରେ ଉପବିଷ୍ଟ ଏନାମେଲ୍ ରଙ୍ଗରେ ଚିତ୍ରିତ ପାଞ୍ଚଟି ବୌଦ୍ଧସନ୍ୟାସିଙ୍କ ମଡେଲକୁ ଦେଖିବା ପରେ ଔପନ୍ୟାସିକ ସାରନାଥ ସଂଗ୍ରହାଳୟରେ ପ୍ରଦର୍ଶିତ ପ୍ରାଚୀନ ବୁଦ୍ଧ ଏବଂ ଉପରୋକ୍ତ ଫାଇବର୍ ବୁଦ୍ଧ ମୂର୍ତ୍ତିର ପ୍ରଭେଦ ପାଠକଙ୍କୁ ସୂଚେଇ ଦେଇଛନ୍ତି ।

ମୋଟାମୋଟି ଭାବେ ଗଙ୍ଗାବତରଣ କଳା, ସଂସ୍କୃତି ଓ ଦର୍ଶନର ଜୀବନ ଚର୍ଯ୍ୟା । ବନାରସ ଭଳି ଧର୍ମ ଦର୍ଶନ ଓ ସଂସ୍କୃତିର ପୁରାତନ ପୀଠକୁ କି ମହତ୍ ଉଦ୍ଦେଶ୍ୟ ରଖି ଯାତ୍ରୀମାନେ ଆସନ୍ତି ? ବୁଦ୍ଧଙ୍କଠାରୁ ଆରମ୍ଭକରି ଆଲିସ୍, ତିଳଖୁଡ଼ୀ, ବାଈଜୀ, ଚାନ୍ଦିନୀ, ରୂପାନନ୍ଦଙ୍କ ଯାଏଁ ଏହି ଯାତ୍ରାର ମହତ୍ତ୍ୱ ବା କ'ଣ ହେଇପାରେ ? ଏହି ପ୍ରଶ୍ନର ମନନ କରି କରି ଚିତ୍ରଶିଳ୍ପୀ-ଔପନ୍ୟାସିକ ନିଜ ସଭାବ ସୁଲଭ ଆକର୍ଷଣ ମଧ୍ୟରେ ପଶିଛନ୍ତି ଚିତ୍ରରାଜ୍ୟର ବିପୁଳ ରୂପ ଓ ରଙ୍ଗର ଆଡ଼ମ୍ବର ଭିତରେ । ରୂପ ବାହ୍ୟିକ ହେଲେବି ସେହି ଦୃଶ୍ୟମାନତା ଦେଇ ଅରୂପରେ ପହଞ୍ଚ, ଚିତ୍ରକଳା ଓ ଦର୍ଶନର ଯଥାର୍ଥକୁ ସାହିତ୍ୟର ଭାବଭୂମିରେ ସୃଜନ ବିଭବର ବିଭିନ୍ନ ପ୍ରକାଶ ବୋଲି ସେ ଯଥାର୍ଥରେ ପ୍ରତିପାଦିତ କରିପାରିଛନ୍ତି ।



Digitized by srujanika@gmail.com

**ଜୟନ୍ତୀ ରଥ**

## ଅକ୍ଷର ଅଙ୍ଗନରେ ପୁନର୍ନବା

ସଙ୍ଗୀତ ବିନା ପ୍ରାର୍ଥନା ସଂପୂର୍ଣ୍ଣ ହୁଏ ନାହିଁ । ଠିକ୍ ସେହିଭଳି କଥା ହେଉ ବା କବିତା ହେଉ ଚିତ୍ରରୂପ ବିନା ତାହାକୁ ପରିପୂର୍ଣ୍ଣ ଭାବେ ଉପଲବ୍ଧ କରିହୁଏନାହିଁ । **ମାଟି ମଟାଳର** ପୃଷ୍ଠା ଭିତରେ ଛବି, ରବି, ଚରିତ୍ର ନୂହେଁ ଚିତ୍ରରୂପ ଘେନି ଉଦ୍‌ଭାସି ଉଠନ୍ତି । ହାତଠାରି ଡାକନ୍ତି 'ଧୋବି' ଆଉ 'ସନିଆ' ଶାସ୍ତି ଉପନ୍ୟାସ ଭିତରୁ ।

ଦେଖାଯାଏ ସେହିଭଳି ଗୌରୀର ପ୍ରେମସ୍ନିଗ୍ଧ ଉଜ୍ଜ୍ୱଳ ମୁହଁ **ପୁନର୍ନବା**ର ଅକ୍ଷର ଅଙ୍ଗନରୁ । ଦେଖାଯାଏ ତା'ର ପଲକରେ ପରିପୂର୍ଣ୍ଣ ପ୍ରୀତିର ଝଲକ । ନାୟିକାର ବାସକସଜ୍ଜା, ବିପ୍ରଲବ୍ଧା ରୂପ କେତେ ଫୁଟିଛି ପ୍ରାଚୀନ ରୀତିଯୁଗୀୟ କାବ୍ୟରେ । ଦେହସୁଖକୁ ଅତିକ୍ରମ କରି ପ୍ରଣୟ ମନାସୁଥିବା ଇଏ କେଉଁ ଭାବର ନାୟିକା ? ଶିଳ୍ପୀ ଦିନନାଥ ପାଠୀଙ୍କ କଳ୍ପନା ପ୍ରତିମା ଗୌରୀ ପାଠକ ମନରେ ସତଃ ସୃଷ୍ଟିକରେ ପ୍ରଶ୍ନବାଚୀ । ଆକର୍ଷଣ ।

ଜଳ ଜଳ ହୋଇ ଦିଶନ୍ତି ନୀଳାମ୍ବର । ଦିଶେ ତାଙ୍କର ଅନୁଭୂତି ପାକଳ ମୁହଁ । ମନରେ ଆଙ୍କି ହୋଇଯାଏ କଳା କୁଞ୍ଜର ବେଢ଼ା । ପରିଷ୍କାର ଶୁଣାଯାଏ ଉପନ୍ୟାସର ନାୟକ ନିତ୍ୟାନନ୍ଦର ଜିଜ୍ଞାସୁ ସର ।

ଜୀବନଶିଳ୍ପୀ ଦିନନାଥ ନିଜେ କେବଳ ଦେଖିନାହାନ୍ତି, ଦେଖେଇ ଦେଇଛନ୍ତି ଚିତ୍ର ଭିତରେ ଜୀବନ ଏବଂ ଜୀବନ ଭିତରେ ଚିତ୍ର । ଦେଖେଇବାର ପ୍ରୟାସ ଭିତରେ ତାଙ୍କର ବିସ୍ତୃତ ବ୍ୟାପକ ଅଭିଜ୍ଞତା ଓ ଶିଳ୍ପ କାରିଗରୀ ଲକ୍ଷଣୀୟ ।

ପାଠକକୁ ହାତ ଧରି ସେ ଘେନି ଯାଆନ୍ତି ଓଡ଼ିଶାର ମଧ୍ୟଯୁଗୀୟ ସାହିତ୍ୟର ଉତ୍ସ ନିକଟକୁ । ଅଧିକରୁ ଅଧିକ ପଢ଼ିବାକୁ ଇଚ୍ଛାହୁଏ । ଜାଣିବାକୁ ଇଚ୍ଛାହୁଏ ଆଦିକବି ସାରଳା ଦାସଙ୍କୁ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତସିଂହାରଙ୍କୁ । ଓଡ଼ିଶାର ମଠ ସମୂହର ବହିଃରୂପ ଓ ଅନ୍ତଃରୂପ ସଂପର୍କରେ ଏକ ସମ୍ୟକ୍ ଧାରଣା ଦେଇଛନ୍ତି ସେ । ତୀର୍ଯ୍ୟକ୍ ଭାବେ ସୂଚେଇଛନ୍ତି ଦେବଦାସୀ ପ୍ରଥାର ନକାରାତ୍ମକ ଦିଗଟିକୁ । ପୁନର୍ନବା ଆମୂଳଚୂଳ ପଢ଼ିସାରିବା ପରେ ଗୋଟିଏ ନିଛକ ସତ୍ୟ ଦୋହରାଇ ହୋଇଯାଏ ମନରେ ଯେ, କ୍ଷୁଧା ପରି ତୃଷ୍ଣା ପରି ପ୍ରୀତି ଲିପ୍‌ସା ଜୀବନର ଏକ ପ୍ରାଥମିକ ପ୍ରବୃତ୍ତି । ଏହା କେଉଁ ଜୀବନକୁ କେଉଁଭଳି ଆବୋରେ ।

Digitized by srujanika@gmail.com

**ଜ୍ୟୋତ୍ସ୍ନା ଦାସ**

## କଥା ଓ ଚିତ୍ରର ମଝିନଈ

ଚିତ୍ରଶିଳ୍ପୀ ଶ୍ରୀଯୁକ୍ତ ଦିନନାଥ ପାଠୀ ବହୁମୁଖୀ ପ୍ରତିଭାର ଅଧିକାରୀ। ଯେଉଁ ହାତରେ ଶବ୍ଦଚିତ୍ର ସେଇ ହାତରେ ଶିଳ୍ପଚିତ୍ରକୁ ରୂପ ଦେବାରେ ଦିନନାଥ ପାଠୀ ଓଡ଼ିଶାରେ ଏକ ବ୍ୟତିକ୍ରମ ଚରିତ୍ର। କେତେବେଳେ ନିର୍ଜୀବ ତୂଳୀରେ ଚିତ୍ରର ରୂପ ତ କେତେବେଳେ ବହୁମୁଖୀ ଭାବନାକୁ ଶବ୍ଦରେ ରୂପାନ୍ତରିତ କରିବାର ବ୍ୟସ୍ତ ମଣିଷ ଦିନନାଥ।

ବ୍ୟକ୍ତିଟି ତା'ର ଅଜାଣତରେ ଚିତ୍ର ଓ ଶବ୍ଦରେ ଲେଖି ହୋଇଯାଏ। କାହିଁକି ଚିତ୍ରକର ଚିତ୍ରଟିଏ ଆଙ୍କେ। କି ସୁଖ ପାଏ। ଘରକରୁଥିବା ଲୋକଟି ସାଂସାରିକ ସୁଖ ପାଇବା ପରି ଚିତ୍ରକର ଆଦିମ ସୁଖକୁ ବର୍ଣ୍ଣିଛନ୍ତି ଦିନନାଥ - "ଏଠି ବିଷାଦ ନାହିଁ , ମୃତ୍ୟୁ ଭୟ ନାହିଁ। ଚିତ୍ରଶାଳା ଚିତ୍ରକରକୁ, କବିକୁ, ସ୍ରଷ୍ଟାକୁ ରମଣ ଶୀର୍ଷସୁଖ ପ୍ରଦାନ କରେ।'' (କବିତା **ଚିତ୍ରଶାଳା**ର ଆରମ୍ଭ ପୃଷ୍ଠା)। ଏହି ସୁଖ ଭିତରେ ତୃତୀୟ ବ୍ୟକ୍ତିର ଅନୁପ୍ରବେଶ ନାହିଁ। ଦେହ ଭିତର ଦେଇ ଦେହାତୀତର ସୁଖ ହିଁ ଚିତ୍ରଶାଳା।

ଦିନନାଥ ପାଠୀଙ୍କ ଲେଖନୀର ବକ୍ତବ୍ୟ ଭିତରେ ଶିଳ୍ପୀ ଜୀବନର ରହସ୍ୟ, ଶିଳ୍ପର ଚାତୁରୀ, ଚିତ୍ରକରର ଆନନ୍ଦ ଓ ବିଷାଦ ସବୁ ଜଳ ଜଳ ଦିଶେ। ତାଙ୍କର ନିଜସ୍ୱ ବକ୍ତବ୍ୟରୁ ଧରାପଡ଼େ। "ଶିଳ୍ପୀର ଏତେ ଦମ୍ଭଯେ ସେ କାହାକୁ ମାନେନା !''

ତାଙ୍କର ନିଜସ୍ୱ ବକ୍ତବ୍ୟ କୁହେ-
ଚିତ୍ର କ'ଣ ନିଜେଇ ମଣିଷ ?
ନାଁ ମଣିଷଙ୍କ ଛାଇ ?
ମଣିଷ ପରି ଦିଶେ
ଅଥଚ ମଣିଷ ନୁହେଁ

ଏହି ଅକୁହା ଯନ୍ତ୍ରଣାକୁ ପ୍ରକାଶ କରିବାର ଭୟଶୂନ୍ୟ ଭାବହିଁ କେବଳ ଶିଳ୍ପୀ ଓ ଲେଖକର ଧର୍ମ। ମାନିବାର ଭୟ ସାମାଜିକ ଶାସନ ଭିତରେ ବାନ୍ଧି ହୋଇଯାଏ। କିନ୍ତୁ ଶିଳ୍ପୀ ବା ଲେଖକ ସମାଜର ଅଙ୍କୁଶକୁ ଭାଙ୍ଗି ଆଗକୁ ଯାଇ ନୂତନ ସର୍ଜନା କରିବାର ଯେଉଁ ଚମତ୍କାର ଅଭିଳାଷ ତାହାହିଁ ତା' ବ୍ୟକ୍ତିତ୍ୱକୁ ନୂତନ ଦିଗନ୍ତ ଦିଏ। ଏହା ହିଁ ଦିନନାଥଙ୍କ ସମଗ୍ର ଜୀବନ ଦର୍ଶନ। ଏହି ଜୀବନଦର୍ଶନ ଶିଳ୍ପ ଓ ଶବ୍ଦରେ ବି ଫୁଟି ଉଠିଛି ବହୁଭାବରେ ବହୁ ରୂପରେ। ଚିତ୍ରକୁ ତ ଆଙ୍କି ହେବନି କିନ୍ତୁ କବିତାରେ ଏହି ବର୍ଣ୍ଣନାର ସତ୍ୟକୁ ବୁଝିହେବ। କବିର ବକ୍ତବ୍ୟ-

''ପଚାର, ଶିଳ୍ପୀକୁ
କି ମନ୍ତ୍ର ଦେଇଛି ସେ ତୂଳୀରେ ?
ଜ୍ୟୋତ୍ସ୍ନା ଫୁଟେ ଫୁଲ ହୋଇ
ନଦୀର ପଠାରେ।
ସବୁ ରୂପାୟିତ,
ସବୁ ସପ୍ନାୟିତ
ପ୍ରେମ ଓ କାରୁଣ୍ୟର ଧୂପଛାୟା
ନିଶାର ନିଃଶବ୍ଦତା
ଅନ୍ତରୀକ୍ଷ ତାରାର ବର୍ଷା।'' (ଚିତ୍ରଶାଳା,ପୃଷ୍ଠା-୨୩)

Digitized by srujanika@gmail.com

ମେଘ ଓଦାକରେ ମାଟି। ଶବ୍ଦକାର ଓଦାକରେ ପାଠକର ହୃଦୟ। ଶବ୍ଦ, ଭାବ, ଘଟଣାବିନ୍ୟାସ ଯେତେ ତୀବ୍ରତର ଓ ପାରିପାର୍ଶ୍ୱିକ ଅନ୍ୟାନ୍ୟ ରଚନାଠାରୁ ଯେତିକି ବ୍ୟତିକ୍ରମ ସେଠି କଥାକାର ବା କବି ପାଠକ ପାଖେ ସେତିକି ନିବିଡ଼। ସବୁ ଏଇ ମାଟିରେ ଅଛି। ସବୁ ଏଇ ମନରେ ଅଛି। ଏଇ ମଣିଷର ଆଦିମ ଇଚ୍ଛା ଆଦିମ ଚିନ୍ତନକୁ ବାରମ୍ବାର ରୂପଦେଇଛି ଚିତ୍ରରେ ଶବ୍ଦରେ। ଚିତ୍ରକୁ ଆଖି ଦେଖିଛି ଓ ଦେଖିବା ମାତ୍ରେ ତାର ଦର୍ଶନେନ୍ଦ୍ରିୟ ଚିତ୍ରର ମୋହରେ ପଡ଼ିଯାଉଛି। କିନ୍ତୁ ଅନ୍ୟପାଖେ କବି ଶବ୍ଦରେ ଘଟଣା ଓ ଚରିତ୍ରକୁ ରୂପ ଦେଉଛି। ସମୁଦାୟ ଜୀବନର ବୈଚିତ୍ର୍ୟତାକୁ ରୂପଦେବା ବେଳେ ରଙ୍ଗ ଓ ତୂଳୀ ନଦେଇ ପାରେ କିନ୍ତୁ ଜୀବନର ସମସ୍ତ ରଙ୍ଗକୁ ଶବ୍ଦରେ ରୂପାନ୍ତରିତ କରୁଛି। ଶିଳ୍ପୀ ଦିନନାଥ କେତେବେଳେ ଭାବରେ ରଙ୍ଗକୁ...ତ କେତେବେଳେ ପିତୁଳାରେ ରଙ୍ଗ। 'ଚିତ୍ରଶାଳା'ରେ କବିର ବକ୍ତବ୍ୟ-

> "ରୂପ ପରେ ରୂପ ହିଁ ଆଙ୍କୁଛ
> ଚିତ୍ରିତ ରୂପରେ ପିରତି ଭରୁଛ
> ଛିଃ ଛିଃ କିମିତିକା ମଣିଷ ଯେ ତୁମେ
> ନିଜକୁ ହଜେଇ ଦେଉଛ ଛାର ରୂପଙ୍କ ପାଖରେ।"
>
> (ଚିତ୍ରଶାଳା,ପୃଷ୍ଠା-୮୦)

ଦିନନାଥ ସମଗ୍ର ଲେଖନୀରେ ଏହି ଭାବ ସୁସ୍ପଷ୍ଟ। ଚିତ୍ରଶିଳ୍ପୀ ପାଠୀ କାଗଜରେ, କାନ୍ଥ ଓ ପିତୁଳାରେ ରଙ୍ଗ ଭରି ଚାଲିଛନ୍ତି। ଆଜି ବଡ଼ ଶିଳ୍ପୀ ଭାବରେ ନୁହେଁ ଚିତ୍ରକରର ବିଚିତ୍ର ପ୍ରାଣର ଅନୁଭୂତି ଏତିକରୁ ଭାବରେ ରୂପ ପାଉଛି। ସାଧାରଣ ଶିଳ୍ପୀ ଚିତ୍ରରେ ରଙ୍ଗ ଭରେ ପ୍ରାଣଦିଏନି। କିନ୍ତୁ କବି ଦିନନାଥ ପିତୁଳାରେ ରଙ୍ଗ ଦେବାପାଇଁ ପିତୁଳା ଅନ୍ତରର କଥା କହିବସିଛନ୍ତି। ଯେମିତିକି ପିତୁଳାକଥା କହୁନି ଦିନନାଥ କଥା କହୁଛନ୍ତି। -

> "ପିତୁଳାତ ଦୁଃଖର
> ଯାତନାର ଚିତ୍ରିତ ପ୍ରକାଶ
> ମାଟିରେ, କାଠରେ
> ଗଢ଼ା ଏକ ଅସହାୟ ହସ
> ପିତୁଳା କ'ଣ ବା ବୁଝେ
> ମରମର ଅକପଟ ଭାଷା
> ନା ଲୁହର ଉଷ୍ମତା।"
>
> (ଚିତ୍ରଶାଳା-ପୃ-୯୭)

ମଣିଷ ଭିତରେ ହିଁ ପିତୁଳା, ପ୍ରେମର ଓ-ଦୁଃଖର। ପ୍ରେମ ଓ ଦୁଃଖର ଫେଣ୍ଟାଫେଣ୍ଟି ସମିଶ୍ରଣ ପିତୁଳା। ଯେପରି ପୁରୁଷ ଓ ନାରୀର ଦେହରୁ ସୃଷ୍ଟ ସନ୍ତାନ। ମନେହୁଏ ଏ ପିତୁଳା କ'ଣ କବି-ଶିଳ୍ପୀ ଦିନନାଥ ?

କେବଳ ଚିତ୍ର ନୁହେଁ ଶବ୍ଦଶିଳ୍ପୀ ଦିନନାଥ ବହୁ ଉପନ୍ୟାସର ସ୍ରଷ୍ଟା। ସେ **ସାୟୋନାରା ଶ୍ଳୋକଛନ୍ଦ, ପୁନର୍ନବା**ର ସୃଷ୍ଟି କରିଛନ୍ତି। ଏହି ଉପନ୍ୟାସ ଗୁଡ଼ିକରେ ମଧ୍ୟ ମଣିଷ ଚରିତ୍ରର ସତ୍ୟକୁ ଉଦ୍‌ଘାଟିତ କରିଛନ୍ତି। ପ୍ରେମ ସତ୍ୟ ଦେହ ସତ୍ୟ ଏବଂ ଏ ସମସ୍ତର ଶେଷ ଅଭିନୟ ହିଁ ଯନ୍ତ୍ରଣା। **ଶ୍ଳୋକଛନ୍ଦ** ଉପନ୍ୟାସରେ 'ଜର୍ଜ' ଓ 'ମେରୀ' ଚରିତ୍ର ବର୍ଣ୍ଣନାରେ ଲେଖକଙ୍କ ବକ୍ତବ୍ୟ: "ଜର୍ଜ ଏଭଳି ଦୃଶ୍ୟ ଭିତରେ ନିଜ ସ୍ମୃତିକୁ ମାଜିବା ପାଇଁ ଚାହୁଁ ନଥିଲେ । ମେରୀ ଓ ତାଙ୍କ ଭିତରେ

Digitized by srujanika@gmail.com

ପ୍ରେମର ପର୍ଯ୍ୟାୟ ଏକ ଉତ୍ତରିତ ଭାବ ବନ୍ଧନର ରୂପକଥା ଏକ ଚିତ୍ରର କାହାଣୀ ଭଳି ନିର୍ଲିପ୍ତ ଅଥଚ ଆବେଗମୟ।'' (ଶ୍ଳୋକଛନ୍ଦ, ପୃ.୧୯୧)

ଏହି ପ୍ରେମର ଆବେଗମୟ ମୁହୂର୍ତ୍ତହିଁ ଶିଳ୍ପୀ ପାଇଁ ନୂତନ ଉପାଦାନ। ଏଠାରେ ସେ କହିବାକୁ ଚାହୁଁଛନ୍ତି ପାଶ୍ଚାତ୍ୟ ଶିଳ୍ପୀମାନେ ମଧ୍ୟ ଏଥିରୁ ଉପାଦାନ ପାଇଥାନ୍ତି। ଏହାହିଁ ଆଦିମ ସତ୍ୟ ଦିନନାଥଙ୍କ ଭାଷାରେ: "ଏଭଳି ଅନୁଭୂତିରୁ ହିଁ ପାଶ୍ଚାତ୍ୟ ଶିଳ୍ପୀମାନେ ସେମାନଙ୍କ ଉପାଦାନ ପାଇଯାଆନ୍ତି। ଯେଭଳି ସୂର୍ଯ୍ୟସ୍ନାତା ଉଲଗ୍ନ ରମଣୀମାନେ ସେଜାଁଙ୍କ 'ବେଦ୍‌ରସ୍' ଚିତ୍ରରେ ଦେହର ପରିପାଟୀକୁ ତୋଳି ଧରିଛନ୍ତି ।'' (ଶ୍ଳୋକଛନ୍ଦ ପୃ.୯୧)

**ଶ୍ଳୋକଛନ୍ଦ** ଉପନ୍ୟାସର ଆରମ୍ଭରେ ଏକ ଅର୍ଦ୍ଧନଗ୍ନ ନାରୀର ଚିତ୍ରଟିଏ ବର୍ଣ୍ଣିଛନ୍ତି ଶିଳ୍ପୀ ଦିନନାଥ: - "ରୂପର ମୂଳେ ଏ ଜଗତ । ପ୍ରକାଶ ହିଁ ରୂପ । ଜଳ, ସ୍ଥଳ, ଆକାଶ, ପଶୁପକ୍ଷୀ, ଚାରୁଲତା, ବଣପାହାଡ଼, ନଦୀ, ସମୁଦ୍ର, ମଣିଷ ସମସ୍ତେ ରୂପର ବିସ୍ମୟ, ବିସ୍ମୟାଭିଭୂତ ରୂପ" (ଶ୍ଳୋକଛନ୍ଦ, ପୃ.୧) ଏହିପରି ଉପନ୍ୟାସର ବହୁ ସ୍ଥଳରେ ଚିତ୍ରକର ରୂପକୁ ଆଙ୍କି ଚାଲିଛନ୍ତି ।

ଏଠି ଦୁଇଟି କଥା ଲକ୍ଷ୍ୟ କରିହୁଏ ଶିଳ୍ପୀର ଅବଚେତନରେ ଆଦିମ ପ୍ରେମପିପାସାର ଦୃଶ୍ୟ ହେଉ ବା ରମଣୀର ଦେହକୁ ରୂପ ଦେବାପାଇଁ ଶିଳ୍ପୀ ପ୍ରେରଣାର ମୂଳଉତ୍ସ । **ଶ୍ଳୋକଛନ୍ଦ** ର ଶେଷାଂଶରେ ଶିଳ୍ପୀ ସୃଷ୍ଟି ଓ ସ୍ରଷ୍ଟାର ରୂପକୁ ନିରୀକ୍ଷଣ କରୁଛନ୍ତି । **ସୃଷ୍ଟିର ଯନ୍ତ୍ରଣା କି ତୀବ୍ର । ସତେ ଯେପରି ମନେହୁଏ ଶିଳ୍ପୀ ଦିନନାଥ ଶିଳ୍ପସୃଷ୍ଟିର ଯନ୍ତ୍ରଣାକୁ ମଧୁର ଭାବରେ ଅନୁଭବ କରିଛନ୍ତି । ରୂପଟିଏ ଜନ୍ମନେବା ପରେ ଶିଳ୍ପୀ ମାତୃତ୍ୱର ସାର୍ଥକତା, ଯନ୍ତ୍ରଣା ଭିତରେ ସୃଷ୍ଟି ଉଭୁରି ପଡୁଛି ସ୍ରଷ୍ଟାର କୋଳକୁ । ଏହାହିଁ ଶିଳ୍ପୀ ଜୀବନର ସାର୍ଥକ ମୁହୂର୍ତ୍ତ ।** ଏଠି ଶିଳ୍ପୀର ବକ୍ତବ୍ୟକୁ ଅନୁଭବ କରିହୁଏ ମାତ୍ର ତାହା ଅନୁଚ୍ଚାରିତ । 'ଦେ ଗଢ଼ିଦେ ସେମାନେ ପୁନର୍ନବା ହେଇଯାଆନ୍ତୁ ।' ପୁନର୍ନବା - ଉପନ୍ୟାସର ଆରମ୍ଭ ଦିନନାଥଙ୍କ ସମଗ୍ର ଚିତ୍ରଶାଳାର ଜୀବନ କଥା ଉପନ୍ୟାସ ଭିତରେ ଗୁମ୍ଫିତ । **ସାୟୋନାରା, ଶ୍ଳୋକଛନ୍ଦ, ପୁନର୍ନବା,** ଉପନ୍ୟାସର ଆରମ୍ଭରେ ତାଙ୍କର ନିଜସ ଚିତ୍ରରେଖା; ସାୟୋନାରା ଆରମ୍ଭରେ ଗୁଡ଼ିଉଡ଼ାଉ ଥିବା ଯୁବକ ଯୁବତୀର ଚିତ୍ର, ଶ୍ଳୋକଛନ୍ଦର ଆରମ୍ଭରେ ଅର୍ଦ୍ଧନଗ୍ନ ନାରୀଟିଏ ବାଦ୍ୟ ଧରିଥିବାର ଚିତ୍ର ଓ ପୁନର୍ନବାର ଆରମ୍ଭରେ ଶିଳ୍ପୀର ହାତରେ ନିହାଣ ଧରି ନାରୀଟିକୁ ଖୋଦେଇ କରୁଥିବାର ଚିତ୍ର, ତା'ଛଡ଼ା ଉପନ୍ୟାସର ଭିତରଭାଗରେ ବହୁରେଖା ଚିତ୍ର ଯାହା ଜୀବନର ଉଦ୍ଦେଶ୍ୟକୁ ପ୍ରତୀକିତ କରେ ।

**ଗୋଟେପଟେ ହାତ ବଢ଼ାଇଲେ ଚିତ୍ରପିତୁଳା, ଆରପାଖେ ଶବ୍ଦର ବର୍ଣ୍ଣାଢ଼୍ୟ ପରିବେଶ ଯାହା ଦିନନାଥଙ୍କ କବିତା ଓ ଉପନ୍ୟାସ ।** ଏହି ଉପନ୍ୟାସ ଗୁଡ଼ିକରେ ଅଙ୍କା ଦେହ ଭିତରେ ପ୍ରତିମାମାନଙ୍କର ଆଭାସ। ଏହି ଆଭାସ ଭିତରେ ଜୀବନର କେଉଁ ଦୁର୍ଲଭ ପ୍ରତିମାମାନଙ୍କର ଆଭାସ । ଏହି ଆଭାସ ଭିତରେ ଜୀବନର କେଉଁ ଦୁର୍ଲଭ ମୁହୂର୍ତ୍ତର ଦୁର୍ବଳତାକୁ ଶବ୍ଦକାର ସଙ୍କେତ ଦେଇଛି ତାହା ବର୍ଣ୍ଣନୀୟ । ପୁନର୍ନବାରେ ଶିଳ୍ପୀକୁହେ : "ଚିତ୍ରଦର୍ଶନ ଓ ସାହିତ୍ୟ ପଠନ ସାରଳାଙ୍କ ବର୍ଣ୍ଣିତ ପିତୁଳି ରମଣ ଭଳି । ଏଥିରୁ ଯେଉଁ ଆନନ୍ଦ ମିଳିଲା ତାହା ଅଯୋନି ସମ୍ଭୃତ, ଦୈହିକ ନୁହେଁ, ଅପାର୍ଥିବ ।" (ପୁନର୍ନବା, ପୃ. ୯)

ଶିଳ୍ପୀ ଓ ସଂସାରର କଥା ଏକାକଥା ନୁହେଁ । ଏ ସଂସାରରେ ଦେହ ସତ୍ୟ ଓ ଦେହ ମାଟି । ଏକଥା ଶିଳ୍ପୀ ପାଇଁ ସତ୍ୟ । ଶିଳ୍ପୀର ବକ୍ତବ୍ୟ: ''ଯେଉଁମାନେ ଚିତ୍ରପିତୁଳାକୁ ନେଇ ବଞ୍ଚନ୍ତି ସେମାନଙ୍କ ପାଇଁ ସଂସାର ପିତୁଳାମୟ । ସବୁତ କଣ୍ଢେଇର ଖେଳ ।'' (ପୁନର୍ନବା, ପୃ. ୯) ଏହାହିଁ ଶିଳ୍ପୀ ଓ ଶିଳ୍ପର ଜୀବନ ରହସ୍ୟ ।

Digitized by srujanika@gmail.com

**ଯାଦୁକର କୁହୁକ ଦେଖାଇବା ଭଳି ଶିଳ୍ପୀ ଦିନନାଥ ଶବ୍ଦର କୁହୁକ ଭିତରେ କେତେବେଳେ ରଙ୍ଗ ପିତୁଳାତ କେତେବେଳେ ଶବ୍ଦର ପିତୁଳା ଦେଖେଇ ଚାଲିଛନ୍ତି । ସମଗ୍ର ଉପନ୍ୟାସ ଓ କବିତା ଚିତ୍ରଶାଳା ପାଠକଙ୍କେ ଗୋଟେପଟେ ଚିତ୍ରର ମାୟାରେ ଭୂଲିଯାଇଛି ସମଗ୍ରକାଳ, ଚିନ୍ତା ପ୍ରସରି ଯାଇଛି ଦେଶରୁ ଦେଶାନ୍ତର ପର୍ଯ୍ୟନ୍ତ ।** ଶିଳ୍ପୀ ଗଢ଼ିଛି ଦେହ । ଶିଳ୍ପ ଭିତରେ ପ୍ରାଣକୁ ଦେଇପାରିନି । ଯନ୍ତ୍ରଣାକୁ ଆଖି, ନାକ, ପାଟିରେ ଖୁନ୍ଦି ପାରିନି ବୋଲି ଶବ୍ଦ ଭିତରେ ଦେଇଚାଲିଛି ଜୀବନ ରହସ୍ୟ । ଦେହ ଭିତରେ ଦେହାନ୍ତରକୁ ସିଡ଼ି ତିଆରି କରିବାର ମାର୍ଗକୁ ଗ୍ରହଣ କରିଛନ୍ତି ଶିଳ୍ପୀ, କଥାକାର ଓ କବି ଦିନନାଥ ପାଠୀ । ଚିତ୍ରରେ ଓ ଶବ୍ଦରେ ମାୟାଜାଲ ସୃଷ୍ଟିକରି ଦର୍ଶକ ଓ ପାଠକକୁ ମୁଗ୍ଧ କରିଛନ୍ତି । ଚରିତ୍ର ମାନଙ୍କୁ କଥା କରାଇଛନ୍ତି ଶବ୍ଦରେ । ଉପନ୍ୟାସର ରେଖାଚିତ୍ର ଭିତରେ ମଣିଷ ଭାବର ସଂକେତ ଦେଇଛନ୍ତି । ଯାହା କେବଳ ଦିନନାଥଙ୍କଠାରେ ହିଁ ସଂଭବ । ବୟସ, ଦେଶ, ଭୂମି, ସବୁକୁ ଅତିକ୍ରମି ଯାଇଛନ୍ତି ଶ୍ରୀ ଦିନନାଥ । ଅସୀମ ଅସରନ୍ତି ଯାତ୍ରା ଭିତରେ ଦୁଃଖ, ଯାତନା, ଯନ୍ତ୍ରଣା, ପ୍ରେମ, ପ୍ରତାରଣାର ରୂପକୁ ଖୋଜି ଚାଲିଛନ୍ତି ଗୋଟେ ପରେ ଗୋଟେ ଚିତ୍ରରେ ଶବ୍ଦରେ ଆଷାଢ଼ର ବର୍ଷାରାତି ପରି ଅବିଚ୍ଛିନ୍ନ ଅବିଚଳିତ ଭାବରେ । ପ୍ରଶ୍ନ କରୁଛନ୍ତି ଦିନନାଥ ? "ଦୁଃଖ, ଯାତନା ଓ ଯନ୍ତ୍ରଣା ଖାଲି କ'ଣ ଶିଳ୍ପୀର ?"

ତାଙ୍କ ଲେଖନୀରେ ଫୁଟିଉଠିଛି ଇତିହାସର ମୂଳକଥା, ଦେଶବିଦେଶର ଚରିତ୍ର, ପୁରାଣର ରୂପକଳ୍ପ, ମାଟିଗନ୍ଧ, ମଣିଷର ତୀବ୍ର ଯନ୍ତ୍ରଣାବୋଧ, ପିତୁଳାଅରଣ୍ୟ, ଦେହ ଓ ଦେହ ସଂଭୂତପ୍ରେମର ନିର୍ବାକ ରୂପ, ଚରିତ୍ର ଭିତରେ ଦେହବାସ୍ନାର ପୁଲକିତ ମୁହୂର୍ତ୍ତ ତାଙ୍କର **ସାୟୋନାରା, ଶ୍ଳୋକଛନ୍ଦ, ପୁନର୍ନବା** ଓ କବିତା **ଚିତ୍ରାଶାଳାକୁ** ଚମତ୍କାର ଶବ୍ଦରେ ରଙ୍ଗଦେଇ ପାରିଛି । ନିଜ ଶବ୍ଦରେ, ନିଜ ତୂଳୀରେ ନିଜ ଜୀବନର ଚରମ ସତ୍ୟକୁ ଲେଖିଚାଲିଛନ୍ତି ଆଙ୍କିଚାଲିଛନ୍ତି ଶିଳ୍ପୀ ଦିନନାଥ ।

ସତ୍ୟ ବାହାରେ ଆଉକିଛି ସତ୍ୟ ନାହିଁ ଏହାହିଁ ତାଙ୍କ ସୃଷ୍ଟିର ସାର୍ଥକତା । ଶିଳ୍ପୀ ଦିନନାଥଙ୍କର ଚିତ୍ର ଓ ଶବ୍ଦ କେବଳ ଓଡ଼ିଶା ମାଟିରେ କଥା କହୁନି ଦେଶ ବିଦେଶକୁ ପରିବ୍ୟାପ୍ତ ହୋଇ ପୁଣି ନିଜ ଭିତରେ ମିଶିଯାଉଛି । ଏଠି ଦୁଇଟି କଥା ତାଙ୍କର ଚିତ୍ର ଓ ଶବ୍ଦରେ ପରିଲକ୍ଷିତ ହୁଏ । (କ) ଚେତନାର ବିକେନ୍ଦ୍ରୀକରଣ (Dissociation of Sensibilities ଓ ଚେତନାର ଏକତ୍ରୀକରଣ Unification of Sensibilities)

ଯେ ପକ୍ଷୀ ଉଡ଼େ ଯେତେଦୂର, ଏହି ସତ୍ୟଟି ଦିନନାଥ ପାଠୀଙ୍କ ସୃଷ୍ଟି ଜଗତରେ ସତ୍ୟବୋଲି ପ୍ରମାଣିତ ।



Digitized by srujanika@gmail.com

**କୃଷ୍ଣ ବେନହୁର**

# ପୁନର୍ନବା: ପିତୁଳିରୁ ପ୍ରତିମା ଓ ପ୍ରତିମାରୁ ପାରତ୍ରିକ ପରିନିର୍ବାଣ

ବେଶ୍ କିଛି କ୍ଷୁଦ୍ରଗଳ୍ପ, ଭ୍ରମଣଆଲେଖ୍ୟ, କବିତା ଓ ସୁନାମାଛ ଭଳି ଏକ ଦୀର୍ଘ ଗଳ୍ପ ଲେଖିବାପରେ ସନାମଧନ୍ୟ ଚିତ୍ରଶିଳ୍ପୀ ଦିନନାଥ ପାଠୀ ତାଙ୍କର ପ୍ରଥମ ଉପନ୍ୟାସ **ସାୟୋନାରା** ୧୯୯୮ରେ ପ୍ରକାଶ କରିଥିଲେ । ଚିତ୍ରକଳା ଓ କଳାତ୍ମକ ଭାବପରିଧିରୁ ଉପକ୍ଷ୍ମ ଜୀବନ ଓ ଉଲ୍ଲାସୋନ୍ମୁଖତାର ଦିଗପହଞ୍ଚିଠାରୁ ଜାପାନଯାଏଁ ଲମ୍ବିଥିବା ଦୀର୍ଘ ଚିତ୍ରପଟଟିଏ ସେ ଆଙ୍କିଥିଲେ **ସାୟୋନାରା** ଉପନ୍ୟାସରେ । ସାୟୋନାରାକୁ ସେ ଉପନ୍ୟାସ ନ କହି ନିଜେ ନାମ ଦେଇଥିଲେ ମେଟାଫିକ୍ସନ୍ । ଓଡ଼ିଆରେ ଫିକ୍ସନ୍‌ର ପ୍ରତିଶବ୍ଦ ବୋଧହୁଏ କାହାଣୀ ବା କଥା । ସେଇଭଳି ମେଟା ଅର୍ଥ 'ପରେ', 'ଊର୍ଦ୍ଧ୍ୱରେ' ବା 'ସହିତ' । ବୋଧହୁଏ କାହାଣୀ ବା ଉପନ୍ୟାସର ବିଷୟବସ୍ତୁ ବ୍ୟତିରେକ ଚିତ୍ରଶିଳ୍ପର ଦର୍ଶନ ଓ ବ୍ୟାପକତାକୁ ଏକ ଆତ୍ମିକ ରୂପେ ସେ ପ୍ରୟୋଗ କରିଥିବାରୁ ଓ ଉପନ୍ୟାସର ମୂଳ ବିଷୟପରିସର ଭିତରେ ତାହାକୁ ସଚେତନଭାବେ ସଂଯୋଜିତ କରିଥିବାରୁ ଶ୍ରୀ ପାଠୀ ବହିଟିକୁ ମେଟାଫିକ୍ସନ୍‌ର ନାମ ଦେଇଥିଲେ ।

ଏବେ ସନ ୧୯୯୯ ରେ ତାଙ୍କର ଦ୍ୱିତୀୟ ଉପନ୍ୟାସ **ପୁନର୍ନବା** ଆତ୍ମପ୍ରକାଶ କରିଛି । ପୁନର୍ନବାକୁ ମଧ୍ୟ ସେ ଏକ ମେଟାଫିକ୍ସନ୍ ଭାବେ ନାମିତ କରିଛନ୍ତି । ୧୮୦ ପୃଷ୍ଠା ସମ୍ୱଳିତ ଏହି ଉପନ୍ୟାସଟିକୁ ଅନୁରୂପ କାରଣରୁ ସେ କେବଳ ଉପନ୍ୟାସ ନ କହି ଯେଉଁ ନୂଆନାମଟି ଦେଇଛନ୍ତି ତାହା ମୋ ଦୃଷ୍ଟିରେ ଯଥାର୍ଥ । କାରଣ ପୁନର୍ନବା କେବଳ ଗୋଟିଏ କାହାଣୀ ଆଧାରିତ ଜୀବନର ଘଟଣାକ୍ରମ ନୁହେଁ ବା ନିତ୍ୟାନନ୍ଦ ଓ ଗୌରୀଙ୍କର ଜୀବନାଲେଖ୍ୟ ନୁହେଁ, ସେଥିରେ ରହିଛି ଚିତ୍ର ଦର୍ଶନ, ପିତୁଳି ଗଢ଼ଣ, ମଠ ପରମ୍ପରା ସହିତ ନାରୀପୁରୁଷର ବାସ୍ତବ ଜୀବନାନୁଭୂତି ଓ ନୈସର୍ଗିକ ଉତ୍ତରଣର ଚମତ୍କାର ବର୍ଣ୍ଣନା ଚାତୁରୀ । କଳାର ନାନ୍ଦନିକ ଅନୁଭୂତିକୁ ବାରମ୍ବାର ଜୀବନ, ଯୌବନ ସମ୍ଭୋଗ, ଗଢ଼ଣ, ବୃତ୍ତି ଓ ଧର୍ମ ପରିସର ଭିତରେ ଉଦ୍‌ଭାସିତ କରି ଶ୍ରୀ ପାଠୀ ଚିତ୍ରଭାଷା ଓ ବର୍ଣ୍ଣଭାଷାକୁ ଏକାତ୍ମ କରିଛନ୍ତି । କହିବାକୁ ଚାହିଁଛନ୍ତି ଯେ "ଆମ ସାହିତ୍ୟ ପରମ୍ପରାରେ ଚିତ୍ରଭାଷା ବ୍ୟତିରେକ କାବ୍ୟଭାଷାର ଉନ୍ମେଷ ନଥିଲା ବୋଲି ଜାଣିଲାପରେ ଏଠି ଏ ଉଭୟଙ୍କୁ ଏକା ସାଙ୍ଗରେ ଅବବୋଧ କରିବାର ପ୍ରଚେଷ୍ଟା ।"

'ପୁନର୍ନବା'ର ପ୍ରଚଳିତ ଓଡ଼ିଆ ଅର୍ଥ - ପୁରୁଣିଶାଗ । ପୁରୁଣିଶାଗକୁ ଯେତେ ଛିଣ୍ଡାଇଲେ ମଧ୍ୟ ତାହା ନୂଆହୋଇ କଅଁଳେ । ତେଣୁ ପୁଣିଥରେ ନୂଆହୋଇ କଅଁଳିବା ଅର୍ଥରେ **ପୁନର୍ନବା** ଏକ ପ୍ରତୀକ ରୂପେ ବ୍ୟବହୃତ ହୁଏ । ପୁନର୍ନବରୁ ପୁନର୍ନବା; ଅର୍ଥାତ୍ ପୁଣି ଯାହା ନୂଆକରି ଜନ୍ମନିଏ ବା ଜନ୍ମଲାଭ କରେ । ପୁନର୍ନବା ଏହି ଭାବକୁ ମୂଳାଧାର କରି ଲିଖିତ ହୋଇଛି ମେଟାଫିକ୍ସନ୍ ବା ଉତ୍ତରିତ - ଉପନ୍ୟାସ **ପୁନର୍ନବା** । ଉପନ୍ୟାସଟି ଉଭୟ ଚିତ୍ରାଶ୍ରୟୀ ଓ ଗଦ୍ୟ - ପଦ୍ୟାଶ୍ରୟୀ । ନିଜର ଗଦ୍ୟବର୍ଣ୍ଣନାକୁ ଅଧିକ ପ୍ରାଣବନ୍ତ କରିବାପାଇଁ ଲେଖକ ଏଠାରେ ବାରମ୍ବାର ଚିତ୍ରଭାଷା ଓ କାବ୍ୟଭାଷାର ସାହାଯ୍ୟ ଲୋଡ଼ିଛନ୍ତି । ଓଡ଼ିଆ ଉପନ୍ୟାସର ଗଠନଶୈଳୀରେ ଏହା ଏକ ଅଭିନବ ପଦକ୍ଷେପ । ଗଠନ ପ୍ରକରଣରେ ଗଦ୍ୟ ସହିତ ଚିତ୍ର ଓ ଉଦ୍ଧୃତ ପଦ୍ୟାଂଶ, ଶ୍ଳୋକାଂଶ ତଥା କାବ୍ୟାଂଶମାନ ଏହାକୁ ଏକ ଭିନ୍ନ ପର୍ଯ୍ୟାୟର ଉପନ୍ୟାସରୂପେ ଉପସ୍ଥାପିତ କରିଛି ।

ଉପନ୍ୟାସଟି ଆରମ୍ଭ ହୁଏ ମୁଖ୍ୟ ଚରିତ୍ର ନିତ୍ୟାନନ୍ଦ ସହିତ । ପିଲାଦିନୁ ବାପ ମାଆଙ୍କୁ ହରାଇଥିବା ବାଳକ ନିତ୍ୟାନନ୍ଦ, ବିଗତ ଶତାବ୍ଦୀର ମଝାମଝିରେ ଦକ୍ଷିଣ ଓଡ଼ିଶାର ଦୃଶ୍ୟପଟରେ ଆବିର୍ଭୁତ ହୋଇଥିବା ଏକ ସାଧାରଣ ଚରିତ୍ର । ବ୍ରାହ୍ମଣଜାତିର ପରିସର ଭିତରେ ତାର କାର୍ଯ୍ୟକଳାପ ପୂଜାପାଠ ଠାରୁ ଆରମ୍ଭ କରି ପୁରାଣ ପଢ଼ାଯାଏଁ ବ୍ୟାପ୍ତ । ଆରମ୍ଭରୁ ନିତ୍ୟାନନ୍ଦ ଓ ନୀଳାମ୍ବର ମିଶ୍ରଙ୍କୁ

Digitized by srujanika@gmail.com

ନେଇ ଲେଖକ ଶ୍ରୀ ପାଠୀ ଯେଉଁ ବିଷୟ-ବିସ୍ତାର କରିଛନ୍ତି ସେଥିରେ ମୁଖ୍ୟ ପ୍ରତିପାଦ୍ୟ ବିଷୟ ହେଉଛି ମହାଭାରତରୁ ଆନୀତ ପିତୁଳି ରମଣର କଥା । ସାରୋଳାଙ୍କ ବର୍ଣ୍ଣିତ ପିତୁଳିରମଣ ଉପାଖ୍ୟାନକୁ ବହୁ ଉଦ୍ଧୃତି ମାଧ୍ୟମରେ ସେ ଏକ ଉତ୍ତରିତ ଆନନ୍ଦ ଓ ଅପ୍ରାକୃତ ପ୍ରେମର ସୃଜନଶୀଳ ଚରମ ପରିଣତିଭାବେ ଚିତ୍ରିତ କରିଛନ୍ତି । ଏଠାରେ ସୃଜନ ପ୍ରକ୍ରିୟା ଇନ୍ଦ୍ରିୟାଗ୍ରହୀ ନୁହେଁ । ତାହା ଏକ ନିର୍ବିକଳ୍ପ ଆନନ୍ଦର କଥା । ସୃଷ୍ଟିକର୍ମର ଚରମ ଚେତନାବିନ୍ଦୁ । ସୃଷ୍ଟିକର୍ମ ଓ ପିତୁଳିରମଣ ଭିତରେ ଏକ ଅଦ୍‌ଭୁତ ସଂଯୋଗ ଯୋଡ଼ି, ଲେଖକ ସେଥିପାଇଁ ପ୍ରାରମ୍ଭରୁ ସୂଚେଇଛନ୍ତି ଯେ 'ମଣିଷ ପିତୁଳି ଗଢ଼େ, ଜୀବନ୍ୟାସ ଦିଏ । ପିତୁଳି କଥା କହେ, ପ୍ରେମ ବିତରେ, ରମଣସୁଖ ପ୍ରଦାନ କରେ ତାକୁ ତିଆରିଥିବା ମଣିଷକୁ । ସେଥିପାଇଁ ମଣିଷ ପିତୁଳା ଗଢ଼େ । ଗଢ଼ିସାରିଲାପରେ ଆଉ କାରଣ ରହେନା । ଗଢ଼ିବା ହିଁ କାରଣ । ଗଢ଼ଣ ସୁଖ ।'

ଏଇ ଗଢ଼ଣ ସୁଖର ଉତ୍ତରଣକୁ ମୂର୍ତ୍ତିମନ୍ତ କରିବାପାଇଁ ନୀଳାମ୍ବର ମିଶ୍ର ପରି ଚରିତ୍ରର ସୃଷ୍ଟି । ମିଶ୍ରଙ୍କ କଳାକୁଞ୍ଜର ବର୍ଣ୍ଣନା ।

**ମଣିଷ ଓ ପିତୁଳି ସମାନ ଭାବେ ଗଢ଼ାହୋଇଥିଲେ ମଧ୍ୟ ପିତୁଳି ମଣିଷର ସୃଷ୍ଟି, ମଣିଷ ପିତୁଳିର ନୁହେଁ । ମଣିଷ ନିଜ କଳ୍ପନାକୁ ପୁଟଦେଇ ଥରେ ପିତୁଳି ଗଢ଼ିଦେଲା ପରେ ପିତୁଳି ମଣିଷଠାରୁ ଭିନ୍ନ ହେଇଯାଇ ଦେବତ୍ୱ ପ୍ରାପ୍ତି ହୋଇଯାଏ । ଯେ କୌଣସି ବସ୍ତୁସତ୍ତା ଦେବତ୍ୱ ପାଇଗଲା ପରେ ନଗ୍ନତା ତାକୁ ଛୁଇଁପାରେନି । କଳ୍ପନାର ଅମରତ୍ୱ ଓ ଚିରନ୍ତନତା ହିଁ ପିତୁଳିର ପ୍ରକାଶ ।**

ପିତୁଳି ଯେମିତି ସୃଜନଶୀଳତାର ଏକ ନିଚ୍ଛକ ପ୍ରତୀକ । ସେଠି କଳ୍ପନାର ଅମରତ୍ୱ ସହିତ ଚିରନ୍ତନତା ଗୁନ୍ଥାହୋଇଥାଏ ଅଦୃଶ୍ୟଭାବେ । ସବୁ ଉତ୍ତରିତ କଳା ଏହି ପର୍ଯ୍ୟାୟର । ଚିତ୍ରଭାଷା, ଶବ୍ଦଭାଷା, କାବ୍ୟଭାଷା ସବୁଥିରେ ଏପରିକି ପ୍ରେମରେ, ଶୃଙ୍ଗାରରେ, ନିର୍ବିକଳ୍ପ ସମ୍ଭୋଗରେ । ସବୁ ସୃଜନଶୀଳତାର ଶୀର୍ଷରେ ଅଛି ଏକ ନାଦ ବିନ୍ଦୁ, ଏକ ମୋକ୍ଷାଲୋକ ଯାହାକୁ ଲେଖକ ଆରମ୍ଭରୁ ରମଣର ଶୀର୍ଷ ବୋଲି କହିଛନ୍ତି ।

ପାର୍ବତୀପୁରମ୍‌ରେ କଳାକୁଞ୍ଜର୍ 'ସୋ' ଅପେରା ଆଳୁଆଳରେ ଏଇକଥା ହିଁ ବାରମ୍ବାର ପ୍ରତିପାଦ୍ୟ । ଡ଼ି, ନାରସେୟା, ଈଶ୍ୱରମ୍ମା ନାଇଡୁ, ରାଧାବିନୋଦମଠର ମହନ୍ତ, ଉଦୟଭାନୁ ଥାଟ ମହାରାଜା, ପ୍ରଭାମୟୀ କନକ ମଞ୍ଜରୀ କଳାକୁଞ୍ଜର ବିଷୟବର୍ଣ୍ଣନା ଆଳୁଆଳରେ କେତେଗୋଟି ଚରିତ୍ରମାତ୍ର । କିନ୍ତୁ ବେଶ୍ ନାଟକୀୟ ଭାବେ କଳାକୁଞ୍ଜ ମାର୍ଫତରେ ଉପନ୍ୟାସକାର ଚତୁରତାର ସହିତ ସୃଷ୍ଟି କରିଛନ୍ତି ଗୌରୀ ଚରିତ୍ରଟିକୁ । କଳାକୁଞ୍ଜର ମାଇକିନିଆ କାଉଣ୍ଟର୍ ପାଇଁ ଝିଅଟିଏ ଯୋଗାଡ଼ ହେବା ପୃଷ୍ଠଭୂମିରେ ଗୌରୀ ଉପନ୍ୟାସର ପିତୁଳି-ପରିସରକୁ ଆସିଛି । ସେ ନିଜ ଅଜାଣତରେ ପାଲଟି ଯାଇଛି ବେହୋସି । ମଣିଷ ହୋଇ ସେ ସମର୍ପିତ ହୋଇଯାଇଛି ପିତୁଳି ପାଖରେ କିନ୍ତୁ କଳାକୁଞ୍ଜ ଯୋଗୁଁ ନିତ୍ୟାନନ୍ଦ ସହିତ ଗୌରୀ ଯୋଡ଼ି ହୋଇଛି ଏକ ଅଦ୍ଭୁତ ବନ୍ଧନରେ । ଶେଷରେ ନୀଳାମ୍ବର ମିଶ୍ରଙ୍କ ପ୍ରଚେଷ୍ଟାରେ ଗୌରୀ ଓ ନିତ୍ୟାନନ୍ଦଙ୍କର ବିବାହ ହୋଇଛି । ପାଟଶାଳିଆ କାମରାଜୁ ସେନାପତିର ଝିଅ ଗୌରୀ ପାରଳାଖେମଣ୍ଡିରେ ପହଞ୍ଚି ନିତ୍ୟାନନ୍ଦର ଗୃହିଣୀ ହୋଇଛି । ରାଧାବିନୋଦ ସଙ୍ଗୀତକୁଞ୍ଜ କରିଛି । ଭାବଭୋଳା, ସହଜ, ସରଳ ନିରୀହ ନିତ୍ୟାନନ୍ଦକୁ ସବୁରଙ୍ଗରେ ମଜେଇଛି, ତାକୁ ସଂସାରୀ କରିବାକୁ ଚେଷ୍ଟା କରିଛି । କିନ୍ତୁ ଏସବୁ ଭିତରେ ନିତ୍ୟାନନ୍ଦ ନିଜେ ବାରମ୍ବାର ଦୁଇଭାଗରେ ବିଭକ୍ତ ହେଲାଭଳି ନିଜକୁ ଅନୁଭବ କରିଛି । ''ଗୋଟିକରେ ଦେହଭାବନା, ସମ୍ବେଦନା ଆବେଗ ଉତ୍କଣ୍ଠା ଇତ୍ୟାଦି, ଯା'ର ଶିଖରରେ ପ୍ରେମମୟୀ ସଙ୍ଗୀତମୟୀ ରାଧାସ୍ୱରୂପିଣୀ ଗୌରୀ । ଅନ୍ୟଟିରେ ବୈରାଗ୍ୟ, ନଶ୍ୱରତାର ଅବଚେତନ ଅପାର୍ଥିବ ଆଧ୍ୟାତ୍ମିକ ଅନୁଭୂତି । ଉଭୟ ଅନୁଭୂତି ପରିପୁଷ୍ଟ ହେଉଛି ସେହି ଏକା ପିତୁଳିଭାବରୁ । ମଣିଷ ଚିତ୍ରିତ ପିତୁଳି ।''

Digitized by srujanika@gmail.com

ପୁଣି ସମୟକ୍ରମରେ ନିତ୍ୟାନନ୍ଦ, ପାରଳାଖେମଣ୍ଡିଠାରୁ ଅଳ୍ପଦୂରରେ ଅବସ୍ଥିତ ମାଞ୍ଜେଲି ମଠର ମହନ୍ତ ପାଲଟିଛି । ଗୌରୀ ସାଜିଛି ଗୌରୀ ଦାସ୍ୟାମ୍ମା । ନିତ୍ୟାନନ୍ଦ ଦାସ ଓ ଗୌରୀ ଦାସ୍ୟାମ୍ମା ମାଞ୍ଜେଲିମଠରେ ପାଲଟିଯାଇଛନ୍ତି ଦିବ୍ୟପୁରୁଷ ଓ ଦିବ୍ୟନାରୀ, କୃଷ୍ଣପ୍ରେମର ଅଲୌକିକ ସାଧକ ସାଧିକା । ଶେଷରେ ଦିନେ କୃଷ୍ଣରସରେ ବିଭୋର ଗୌରୀ ଓ ନିତ୍ୟାନନ୍ଦ ମିଳିତ ହୋଇଛନ୍ତି । ଗୌରୀ ନେରୂପ୍ୟ ଭୂମାର ସନ୍ଧାନରୁ ଫେରି, ମଠ ପରମ୍ପରାର ପାଷାଣୀ ନିର୍ବେଦତାକୁ ପରିହାର କରି ଅନୁଭବ କରିଛି ଏକ ହସମୟ, ସମୁଦ୍ରମୟ, କୃଷ୍ଣମୟ ସତ୍ତା । ପିତୁଳାରୁ ପ୍ରତିମା, ପ୍ରତିମାରୁ ପ୍ରାଣ ଓ ପ୍ରାଣରୁ ବିକଶିତ ହୋଇ ଏକ ପ୍ରଣବ ଓଁକାରରେ ଲୀନ ହୋଇଯାଇଛି ଗୌରୀ । ପଛରେ ରହିଯାଇଛି ନିତ୍ୟାନନ୍ଦ ।

ବୈରାଗ୍ୟପାଇଁ ସଂସାରର ଅଗ୍ନିସ୍ରୋତ ଦେଇ ଯିବାକୁ ହୁଏ, ଅପ୍ରାକୃତ ପ୍ରେମରସପାଇଁ ପ୍ରାକୃତ ପ୍ରେମର ପରିଧି ଭିତରେ ଗତି କରିବାକୁ ପଡ଼େ, ପ୍ରାଣପ୍ରାଚୁର୍ଯ୍ୟଲାଭ ପାଇଁ ପିତୁଳିରୁ ପ୍ରତିମା ଓ ପ୍ରତିମାରୁ ପ୍ରାଣମୟତାକୁ ଯିବାକୁ ପଡ଼େ ଏବଂ ତାହାହିଁ ସଂସାରର ଶ୍ରେଷ୍ଠ ସୃଷ୍ଟିକର୍ମ । ସେଇଥିପାଇଁ ଶଙ୍କରାଚାର୍ଯ୍ୟ ଭଳି ସନ୍ୟାସୀଙ୍କୁ ସଂସାରୀ ହେବାକୁ ପଡ଼ିଥିଲା, ଘର ବାନ୍ଧିବାକୁ ପଡ଼ିଥିଲା ନାରଦଙ୍କୁ । ଅତଏବ ଗୌରୀ ହିଁ ଥିଲା ଉଭୟରାଜ୍ୟର ଅଧିକାରିଣୀ, ଦେହ ଓ ଅଦେହର ଉର୍ଦ୍ଧ୍ୱକୁ ଯାଇ ସେ ମୋକ୍ଷଲାଭ କଲା । ମାତ୍ର ନିତ୍ୟାନନ୍ଦ ଆରମ୍ଭରୁ ବୈରାଗ୍ୟରେ ଥିଲେ ମଧ ତାହା ତା ପାଇଁ ସମ୍ଭବ ହେଲାନାହିଁ ।

ପିତୁଳା ଦେହରେ ପ୍ରତିମା ଦେଖିବା ଯେମିତି ଏକ ପୁର୍ନଜନ୍ମ ସେମିତି ପ୍ରତିମାକୁ ଜୀବନ୍ୟାସ ଦେଇ ପ୍ରାଣମୟ କରିବା ମଧ ଏକ ପୁର୍ନଜନ୍ମ । ପିତୁଳି ଦେହରେ ତେଣୁ ଜୀବନକୁ ଦେଖିହୁଏ ଏବଂ ଗୋଟିଏ ଜାଗତିକ ଶରୀର ପରି ତାକୁ ଭଲପାଇ ହୁଏ, ତାକୁ ସମ୍ଭୋଗ କରାଯାଇପାରେ । ମାତ୍ର ଏ ସମ୍ଭୋଗ ଦେହର ନୁହେଁ, ଦେହାତୀତର । ଏଇ ଦେହାତୀତ ରମଣର ସୁଖ ହିଁ ପାରତ୍ରିକ ପରିନିର୍ବାଣ ।

**ସମ୍ପୂର୍ଣ୍ଣ ଉପନ୍ୟାସଟିଏ ଏଇ ଦେହାତୀତ ପରିନିର୍ବାଣ ସହ ଜଡ଼ିତ ସୃଜନକଳା ଓ ତା'ର ଗଢ଼ଣସୁଖକୁ ଚିତ୍ରଣ କରିବାରେ ଉଦ୍ଦିଷ୍ଟ । ନିତ୍ୟାନନ୍ଦ, ନୀଳାମ୍ବର, ଗୌରୀ ଆଦି, ପୁନର୍ନବା ଉପନ୍ୟାସର ମୁଖ୍ୟ ଚରିତ୍ର ନିଶ୍ଚୟ କିନ୍ତୁ ଏଇ ଚରିତ୍ର ଗୁଡ଼ିକୁ ନେଇ ଯେଉଁ କଥାବସ୍ତୁର ଆରୋପ କରାଯାଇଛି, ତାହା ହେଉଛି ଦେହାତୀତ ଉତ୍ତରିତ ଅନୁଭବର ଏକ ଅଲୌକିକ ସୁଖାନୁଭୂତି ।** ଏହି ଚରମ ଆନନ୍ଦ ଲାଭ କରିବା ପାଇଁ ମଣିଷକୁ ଗୌରୀ ଭଳି ଗୋଟିଏ ସ୍ତରରୁ ଆଉ ଗୋଟିଏ ସ୍ତରକୁ ଉଠିବାକୁ ପଡ଼େ । ନିଜେ ନିଜେ ନିଜ ଭିତରୁ କଅଁଳ ଆଉଏକ ଜୀବନର ସ୍ତରକୁ ଯିବାକୁ ହୁଏ । ଉପନ୍ୟାସଟିରେ ଗୌରୀ ହିଁ ପୁନର୍ନବା, ନିତ୍ୟାନନ୍ଦ ନୁହେଁ । ନିତ୍ୟାନନ୍ଦ ଏକ ସ୍ଥିରଚିତ୍ର କିନ୍ତୁ ଗୌରୀ ସଦା ନବପଲ୍ଲବିନୀ ଏକ ଆଲୋକ ବର୍ତ୍ତିକା । ଗୌରୀର ପରିନିର୍ବାଣ ହିଁ ଉପନ୍ୟାସଟିର ଉତ୍ତରିତ ଦିଗ । ସେଇଥିପାଇଁ ଏହା ଏକ ମେଟା ଫିକ୍‌ସନ୍ ।

**ଶ୍ରୀ ପାଠୀ, ପୁନର୍ନବାକୁ ଗଢ଼ିବାରେ ଯେଉଁ ଗଢ଼ଣ କୌଶଳ ପ୍ରୟୋଗ କରିଛନ୍ତି ତାହା ପ୍ରଶଂସା ଦାବି କରେ ନିଶ୍ଚୟ । ଭାଷାର ପରିପାଟୀ, ବିଶେଷକରି ଦକ୍ଷିଣ ଓଡ଼ିଶାର ପ୍ରଚଳିତ ଭାଷା ଓ ପାଠ, ପୁରାଣ, ମଠ, ପୂଜାବିଧି ଓ ଗଢ଼ଣକଳା ସହ ଜଡ଼ିତ ଯଥାଯଥ ଶବ୍ଦ ଚୟନରେ ପାରଦର୍ଶିତା ପାଇଁ ସେ ଧନ୍ୟବାଦାର୍ହ ।**

**ଅନନ୍ୟ ପ୍ରଚ୍ଛଦରେ ବନ୍ଧା, ଉପନ୍ୟାସଟି ଓଡ଼ିଆ ସାହିତ୍ୟରେ ଏକ ଅମୂଲ୍ୟ ସଂଯୋଜନା । ଶେଷରେ ଗୋଟିଏ ଧାଡ଼ି କହିଲେ ଯଥେଷ୍ଟ ହେବ ଯେ ପୁସ୍ତକଟିରେ କାହାଣୀ ବଡ଼ କଥା ନୁହେଁ, ବଡ଼ କଥା କଥାବସ୍ତୁ, ଚରିତ୍ର ଓ ଭାଷାର ଉର୍ଦ୍ଧ୍ୱରେ ଗଢ଼ାହୋଇଥିବା ଉତ୍ତରିତ ଅନୁଭବର ଭାବପରିଧି । ପୁନର୍ନବା ଅନନ୍ୟ । ସାୟୋନାରା ଓ ପୁନର୍ନବା ପରେ କଳା, କଳାମୁକତା ଓ ସୃଜନଶୀଳତାର ଅନ୍ୟ ଆଙ୍ଗିକକୁ ନେଇ ଶ୍ରୀ ପାଠୀ ଯେ ପୁଣି ଅନେକ କିଛି ପ୍ରକାଶ କରିବାର ଧୂରୀଣ ମମତା ରଖିଛନ୍ତି, ସେ ନେଇ ସନ୍ଦେହ ନାହିଁ ।**

Digitized by srujanika@gmail.com

**ଦଣ୍ଡପାଣି ମିଶ୍ର**

## ଦିନନାଥଙ୍କ ଚିତ୍ର ଉପନ୍ୟାସ : ପୁନର୍ନବା

ଓଡ଼ିଆ ସାହିତ୍ୟରେ ଏକଦା ଯେଭଳି ମୋଟା ଉପନ୍ୟାସ ଲେଖାଯାଉଥିଲା ସେଥିରେ ଏବେ ଭଟ୍ଟା ପଡ଼ିଯାଇଛି । କାଳିନ୍ଦୀଚରଣ, କାହ୍ନୁ ମହାନ୍ତି, ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଶାନ୍ତନୁ କୁମାର ଆଚାର୍ଯ୍ୟ, ମହାପାତ୍ର ନୀଳମଣି ସାହୁ, ଲକ୍ଷ୍ମୀଧର ନାୟକ, ବିଭୂତି ପଟ୍ଟନାୟକ, ପ୍ରତିଭା ରାୟ, କିଶୋରୀଚରଣ ଦାସ, ନୃସିଂହ ଚରଣ ପଣ୍ଡା, ବସନ୍ତ କୁମାରୀ ପଟ୍ଟନାୟକ, ରାଜ କିଶୋର ପଟ୍ଟନାୟକ, ଦେବ୍ରାଜ ଲେଙ୍କା, ସାତକଡ଼ି ହୋତା, ପ୍ରମୁଖ ଯେପରି ଦୀର୍ଘ ଉପନ୍ୟାସ ଲେଖିବାକୁ ଆଗ୍ରହୀ ଥିଲେ ତାହା ଆଉ ଦେଖିବାକୁ ବିରଳ ।

ଏହାର ବିଭିନ୍ନ କାରଣ ଥାଇପାରେ । ହୁଏତ ଲେଖକମାନେ ଏତେ ଅଧିକ ସମୟ ଓ ଶ୍ରମ ଦେବାକୁ କୁଣ୍ଠାବୋଧ କରୁଛନ୍ତି । ପ୍ରକାଶକ ମାନେ ହୁଏତ ସେତେ ଉତ୍ସାହ ଦେଖାଇ ବଡ଼ ଉପନ୍ୟାସ ଛପାଇବାକୁ ଇଚ୍ଛା କରୁନାହାନ୍ତି । ଟି.ଭି. ରେଡ଼ିଓ, ପତ୍ର ପତ୍ରିକାରେ କିଛି ଗଳ୍ପ ଓ ଫିଚର୍ ଶୁଣି ବା ପାଠ କରି ଲୋକେ ତୃପ୍ତି ଲାଭ କରୁଛନ୍ତି । ଅଧିକ ଖର୍ଚ୍ଚକରି ବଡ଼ ଉପନ୍ୟାସ କିଣିବା ଓ ପଢ଼ିବା ଧୈର୍ଯ୍ୟ ଆଗଭଳି ପାଠକ ଚାହୁଁନାହାନ୍ତି । ଏଭଳି ଉପନ୍ୟାସର ବିକ୍ରୀ ମଧ୍ୟ ସଙ୍କୁଚିତ ହୋଇଆସୁଛି । ରାଜା ରାମମୋହନ ରାୟ ସରକାରୀ ସଂସ୍ଥା ମାଧ୍ୟମରେ ଲେଖକ ଓ ପ୍ରକାଶକମାନେ ସେମାନଙ୍କ ପୁସ୍ତକ ଗୁଡ଼ିକୁ ବିକ୍ରୀ କରିବାରେ ଆଗ୍ରହ ଅଧିକ ମାତ୍ରାରେ ବଢ଼ିଚାଲିଛି । ଏହି ମନୋଭାବ ଯୋଗୁଁ ମୁଖ୍ୟତଃ ବୃହତ୍ କଳେବର ଉପନ୍ୟାସ ପ୍ରକାଶ ପାଇବାରେ ବାଧା ସୃଷ୍ଟି ହୋଇଛି ।

ଏଭଳି ଏକ ସଙ୍କଟ କାଳରେ ଶ୍ରୀ ଦିନନାଥ ପାଠୀଙ୍କର ଅଠାନବେ, ଅନେଶ୍ୱତ ମଧ୍ୟରେ ଦୁଇଟି ବଡ଼ ଉପନ୍ୟାସ ପ୍ରକାଶ ପାଇବା ଆଶାର କଥା । ଏ ଦୁଇଟି ନୂତନଧର୍ମୀ ମଧ୍ୟ । ଉପନ୍ୟାସ ଦୁଇଟି ଖାଲି ଚକ୍ଷୁରୋଚକ ନୁହେଁ ବରଂ ମାର୍ଜିତ ଓ ମର୍ମରେ ଆଲୋଡ଼ନ ସୃଷ୍ଟି କରିବା ଭଳି ସୃଜନଧର୍ମୀ । ଶେଷୋକ୍ତ ଉପନ୍ୟାସ **ପୁନର୍ନବା** ତାଙ୍କର ନଗଦରେ ପ୍ରକାଶିତ ଚିତ୍ର ଉପନ୍ୟାସ ।

ଚିତ୍ର ପୋଥି କଥା ଶୁଣିଥିଲି । ଗୀତଗୋବିନ୍ଦ, ଅମରୁଶତକ, ଉଷାବିଳାସ, ବଦଗ୍ଧ ମାଧବ ନାଟକ ଭଳି ବହୁ ଚିତ୍ରପୋଥି, ତାଳପତ୍ର ପୋଥି ରହିଛି । ଅମରୁଶତକ, ଉଷାବିଳାସ ଏ ଦୁଇଟି ସୀତାକାନ୍ତ ମହାପାତ୍ରଙ୍କ ଦ୍ୱାରା ପୁସ୍ତକ ଆକାରରେ ପ୍ରକାଶ ପାଇଛି ମଧ୍ୟ । ହେଲେ ଚିତ୍ର ଉପନ୍ୟାସ **ପୁନର୍ନବା** ହିଁ ପ୍ରଥମ ସଫଳ ଉପନ୍ୟାସ । ଏଭଳି ଉପନ୍ୟାସ ଅନ୍ୟତ୍ର ଥିବା ଆମକୁ ଜଣାନାହିଁ । ଡକ୍ଟର ହଜାରୀପ୍ରସାଦ ଦ୍ୱିବେଦୀ ଏହି ନାମରେ ଭିନ୍ନ ଭାଷାରେ ଯେଉଁ ପୁସ୍ତକ ଲେଖିଛନ୍ତି ତାହା ଭିନ୍ନ ପର୍ଯ୍ୟାୟର ।

**ଓଡ଼ିଆ ପୁସ୍ତକମାନଙ୍କର ସ୍ୱଚ୍ଛ, ନିରପେକ୍ଷ, ନିର୍ଭିକ ସମୀକ୍ଷା କଦବା କ୍ୱଚିତ ଦେଖିବାକୁ ମିଳେ । ପତ୍ରପତ୍ରିକାରେ ପୁସ୍ତକ ସମୀକ୍ଷା ନାମରେ ଯାହା ପ୍ରକାଶ ପାଏ ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ପ୍ରାପ୍ତି ସ୍ୱୀକାର ଅଥବା ସଂକ୍ଷିପ୍ତ ପରିଚୟ । ପୁସ୍ତକଟିକୁ ଆମୂଳଚୂଳ ଅଧ୍ୟୟନ କରି ସମୀକ୍ଷା କରିବା ଧୈର୍ଯ୍ୟ ନଥାଏ ଓ ଶ୍ରଦ୍ଧା ମଧ୍ୟ ନଥାଏ ।**

ଆମ ରାଜ୍ୟର ପ୍ରକାଶକ ମାନେ ସେମାନଙ୍କର ପ୍ରକାଶିତ ପୁସ୍ତକ ଗୁଡ଼ିକର ନିର୍ଭିକ ଓ ନିରପେକ୍ଷ ସମୀକ୍ଷା ଲାଗି ପାରିଶ୍ରମିକ ଦେଇ କୌଣସି ବିଜ୍ଞ ସମୀକ୍ଷକ ରଖିଥିବା ଆମକୁ ଜଣାନାହିଁ । ଏ ଦିଗରେ ବହିଜଗତ ଯେଉଁ କ୍ଷୀଣ ଉଦ୍ୟମ କରିଛନ୍ତି ତାହା ଆବଶ୍ୟକତା ଠାରୁ ଯଥେଷ୍ଟ ଦୂରରେ ।

Digitized by srujanika@gmail.com

ମୁଁ ପୁନର୍ନବା ପଢ଼ିଛି ଏବଂ କିଛି ଶୁଣିଛି ମଧ୍ୟ । ଏ ପୁସ୍ତକ ମୋ ହାତରେ ଯେତେବେଳେ ପଡ଼ିଲା ମୁଁ ତାକୁ ଦେଖି ନିଜକୁ ବିଶ୍ୱାସ କରିପାରିଲି ନାହିଁ । ଦେଖୁ ଦେଖୁ ଚିତ୍ତ ବିହ୍ୱଳ ହୋଇଉଠିଲା । ଆଗ୍ରହରେ ଛାତିକୁ ଆଉଜେଇ ଆଣି ଗାଢ଼ ଚୁମ୍ବନ ଦେଲି । ମନେହେଲା ସତେ ଯେପରି ମୁଁ କଲିକତା, ମୁମ୍ବାଇ, ଚେନ୍ନାଇ, ଅଥବା ଦିଲ୍ଲୀଭଳି କୌଣସି ଏକ ନଗରୀର ବାସିନ୍ଦାଟିଏ । ପ୍ରଚ୍ଛଦ ସ୍ୱୟଂ ଶ୍ରୀକୃଷ୍ଣଙ୍କ ଅଂଶ ବିଶେଷକୁ ନେଇ । ତଥାପି ତାର ରୂପଲାବଣ୍ୟ ମନକୁ ଆକର୍ଷିତ କରେ । ପୁସ୍ତକର ବନ୍ଧେଇ ଦୃଢ଼ । ମୁଦ୍ରଣ, ସ୍ୱଚ୍ଛ, ସୁନ୍ଦର ମାର୍ଜିତ ରୁଚିର ।

କାଗଜ ମସୃଣ, ମୋଟା ଓ ଶୁଭ୍ର । ଏ ସବୁ ଦୃଷ୍ଟିରୁ ପୁସ୍ତକଟି ସ୍ୱତନ୍ତ୍ର ସମ୍ମାନ ଦାବିକରେ । ଆମ ଭାଷାରେ ଏପରି ତ୍ରୁଟିଶୂନ୍ୟ ପୁସ୍ତକ ଦେଖିଲେ ସ୍ୱାଭିମାନର ଉଦୟ ହୁଏ ।

ପୁସ୍ତକଟି ଖୋଲୁ ଖୋଲୁ କ'ଣ ଦେଖାଦିଏ ? "ଚିତ୍ର କ'ଣ ସତରେ ମଣିଷ ଭଳିଆ ଦିଶେ ? ନା ମଣିଷଙ୍କ ସ୍ୱପ୍ନ ଭଳି ଲାଗେ । ସବୁ ଛନ୍ଦାଛନ୍ଦି ଶିଆଳିଲଟାପରି ସକାଳର କୁହୁଡ଼ି ପରି, ଘାସରେ କାକରର ମୁକ୍ତାପରି ।" ଲେଖକ ଏଠି କବି ପାଲଟି ଯାଇଛନ୍ତି । ଆମେ କହିବୁ ଚିତ୍ରକେବଳ ମଣିଷ ଭଳିଆ ଦେଖାଯାଏ ନାହିଁ । ମଣିଷ ଭିତରେ ଯେଉଁ ମଣିଷଟି ତା ଅନ୍ତରାଳରେ ଅଦୃଶ୍ୟ ଆଲୋଡ଼ନ ସୃଷ୍ଟି କରିବା ଲାଗି ଅହରହ ଛଟପଟ ହେଉଥାଏ ଠିକ୍ ସେହିଭଳି ଦେଖାଯାଏ । ସେଥିପାଇଁ ଦିବ୍ୟ ଦୃଷ୍ଟି ଲୋଡ଼ା । ଶିଆଳିଲଟାଭଳି କେବଳ ସାରାଜୀବନ ଛନ୍ଦାଛନ୍ଦି ହୋଇ ନଥାଏ । ଜୀବନର ମାୟାଜାଲରେ ବନ୍ଦୀ ହୋଇ ରହିବାକୁ ବି ଭଲପାଏ । ପୁଣି ଘାସର କାକର ବିନ୍ଦୁ ନ ହୋଇ ପଦ୍ମପତ୍ରର ସ୍ୱଚ୍ଛ ଢଳଢ଼ଳ ଜଳବିନ୍ଦୁରେ ତା ମନ ଉଚ୍ଚାଟ ହୋଇ ମଜ୍ଜି ରହେ । ପ୍ରଚ୍ଛଦପଟ୍ଟର ଗର୍ଭରେ ଆଃ କି ଛବି ! ଗୀତଗୋବିନ୍ଦ ତାଳପତ୍ର ଖେଦାରୁ ତୋଳି ଅଣାଯାଇଛି ଅବା ଛନ୍ଦ ଓ ପଦ୍ୟାବଳୀ ସହ ଗୋଟିକ ପରେ ଗୋଟିକ ଚିତ୍ରକୁ । ନିମିଳିତ ନୟନେ ଅନାଇ ରହିଲି କାହାକୁ ଆପଣାର କାହାକୁ ପର କରିବି ଭାବି ପାରିଲି ନାହିଁ । ସବୁତ ସମ୍ଭୋଗ ଓ ସୋହାଗର ଗନ୍ତାଘର । ଏକକୁ ଆରେକ ବଳି । ବାତ୍ସାୟନ ମନକୁ ଆଚ୍ଛନ୍ନ କରିନେଲା, ବେଳେ ରଜନୀଶ ମଧ୍ୟ ।

ପୁସ୍ତକର ନାମ ପୁନର୍ନବା ଅର୍ଥ ପୁରୁଣି ଶାଗ । ଏହା ଦୁଇ ପ୍ରକାରର- ରକ୍ତ ଓ ଶ୍ୱେତ। ଶ୍ୱେତ ପୁରୁଣି ଶାଗ ଅଧିକ ଉପକାରୀ । ଏହା ଶରୀର ଓ ଚକ୍ଷୁକୁ ଉଜ୍ଜୀବିତ କରେ । କିନ୍ତୁ ଲେଖକ ପୁନର୍ନବାକୁ ପୁଣି ନୂଆଜନ୍ମ ଅର୍ଥ ନେଇ ହିଁ ବ୍ୟବହାର କରିଛନ୍ତି । ବାସ୍ତବରେ ବହୁପୁରାତନ ତଥ୍ୟ ଓ ସତ୍ୟକୁ ସେ ଏ ପୁସ୍ତକରେ ନୂତନଭାବେ ଅବତାରଣା କରିବାକୁ ଉଦ୍ୟମ କରିଛନ୍ତି । ଏ ମଣିଷ ତା ଅଜାଣତରେ ପ୍ରତି ମୁହୂର୍ତ୍ତରେ ଯେଉଁ ପୁନର୍ନବା ହୋଇଛି ଏହା ଗଭୀରଭାବେ ଧ୍ୟାନ କଲେ ଜାଣିହେବ ।

ଚିତ୍ର, ଚିତ୍ର, ଚିତ୍ର । ପୁସ୍ତକସାରା ମୂଳରୁ ଚୂଳଯାଏଁ ଛତିଶିଗୋଟି ଚିତ୍ର ରହିଛି । ପୁସ୍ତକର ଭାବ ଓ ଭାଷାକୁ ରୂପାନ୍ତରିତ କରିବା ଏହି ଚିତ୍ର ଗୁଡ଼ିକର ଉଦ୍ଦେଶ୍ୟ । ବିଷୟବସ୍ତୁ ଭିତ୍ତିଭୂମି ଉପରେ ଆଧାରିତ । ପୁସ୍ତକର ବହୁପୃଷ୍ଠା ଓ ତତ୍‌ସଂଲଗ୍ନ ଚିତ୍ର ମଧ୍ୟରୁ ଅଧିକାଂଶ ଚିତ୍ତ ଉତ୍ତେଜକ ହୋଇଥିବାରୁ ପାଠକ ଅକ୍ଷର ଗୁଡ଼ିକୁ ବିଶ୍ଳେଷଣ କରି ପାଠ କଲାବେଳେ ଚିତ୍ରଗୁଡ଼ିକ ତା ଭାବକୁ ବେଳେ ବେଳେ ଅଟକାଇ ନିଅନ୍ତି । ପାଠକ ଦ୍ୱନ୍ଦ୍ୱରେ ପଡ଼େ । କାମ ଓ କାମନା ତା ଚିତ୍ତକୁ ବିଭ୍ରାନ୍ତ କରେ ମଧ୍ୟ । ଚିତ୍ରଗୁଡ଼ିକ ଗୀତଗୋବିନ୍ଦର ହେଉ ଅଥବା ସ୍ୱୟଂ ଲେଖକଙ୍କର ତୂଳୀରେ ଅଙ୍କିତ ହୋଇଥାଉ, ସବୁ ସମଧର୍ମୀ । ଏ ଦୁହେଁ ଛନ୍ଦାଛନ୍ଦି ହୋଇ ରହିଥାନ୍ତି । ଏହାକୁ ପାଠ କରିଥିବା ବ୍ୟକ୍ତିବିଶେଷ ମଧ୍ୟରୁ କେହି କେହି ଅଶ୍ଳୀଳତାର ବାସ୍ନା ବାରି ହେଉଥିବା ପ୍ରକାଶ କରନ୍ତି । ଲେଖକ ଜଣେ ଉଚ୍ଚକୋଟୀର ଚିତ୍ରଶିଳ୍ପୀ ଓ ସୃଷ୍ଟିର ବିବର୍ତ୍ତନ ଧାରା ସହିତ ସଠିକ

Digitized by srujanika@gmail.com

ଭାବେ ପରିଚୟ ପାଇଲେ ସେମାନଙ୍କ ଏଭଳି ଭ୍ରମ ଧାରଣା ଛାଏଁ ଛାଏଁ ଦୂର ହୋଇଯିବ । ମୋଟା ମୋଟି ଚିତ୍ର ଓ ଭାଷା ପରସ୍ପର ହାତଧରାଧରି ହୋଇ ଶେଷଯାଏଁ ଚାଲିଛନ୍ତି ।

ଉପନ୍ୟାସ ତ ଉପନ୍ୟାସ । ଶ୍ରୀ ପାଠୀ ତାଙ୍କର ଉପନ୍ୟାସକୁ ମେଟାନଭେଲ ବୋଲି ଆଖ୍ୟା ଦେବା ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଅର୍ଥ ବୁଝାଏ । ଉପନ୍ୟାସ ପୂର୍ବରୁ 'ମେଟା' ଶବ୍ଦ ରହିଥିବାରୁ ଏହାକୁ କେହିକେହି ଉପନ୍ୟାସର ଊର୍ଦ୍ଧ୍ୱକୁ ନେବାର ଆଖ୍ୟା ଦେଇଥାଆନ୍ତି । କହିବାକୁ ଗଲେ ସାଧାରଣ ଉପନ୍ୟାସର ବିଷୟବସ୍ତୁ ଭାବଧାରାଠାରୁ ଏହା ଅଧିକ କିଛି କଥା ଆମକୁ କହିଥାଏ ।

ନୀଳାମ୍ବର ମିଶ୍ରେ, ନିତ୍ୟାନନ୍ଦ, ଗୌରୀ ମୁଖ୍ୟ ଭୂମିକାରେ ରହିଥିଲା ବେଳେ କେତକୀ, ସଞ୍ଜୟ, ଗୋବିନ୍ଦ ଭାଇନା ଭଳି ଅନେକ ପୁସ୍ତକର ଯାତ୍ରୀ ଭାବେ ଯାଆସ କରିଛନ୍ତି । ସେମାନେ ନିଜ ନିଜ ସ୍ଥାନରେ ପ୍ରତିଷ୍ଠିତ । ନିତ୍ୟାନନ୍ଦ ପିତାମାତା ହରାଇଥିବା ଏକ ସନ୍ତାନ । ଗୌରୀ ତାର ପିତାକୁ ହରାଇଛି । ନୀଳାମ୍ବର ମିଶ୍ରେ ବିପତ୍ନୀକ । ମୁଖ୍ୟ ଭୂମିକାରେ ଥିବା ଏ ତିନିହେଁ ଏଭଳି ଅସହାୟ ଭାବେ ଚିତ୍ରିତ କରିଥିବାରେ ଲେଖକ କାହିଁକି ଉଦ୍ୟମ କଲେ ବୁଝାପଡୁନାହିଁ । ଏପରି ଅବସ୍ଥାକୁ ନ ଆଣିଥିଲେ କଣ ଚଳି ନଥାନ୍ତା । ହିନ୍ଦୁ ସଂସ୍କୃତି ଚିନ୍ତାଧାରାକୁ ପରିପୁଷ୍ଟ କରିବାରେ ଏକଦା ମଠ, ମନ୍ଦିର, ଆମ ଆଗରେ ଠିଆ ହୋଇଥିଲା । ତାହାକୁ ନେଇ ଶୁଦ୍ଧ ସୁପରିବେଶ ସୃଷ୍ଟି ହୋଇଥାଏ । ସେ ସବୁର ମହିମା ଗୃପାୟିତ ହେଲାବେଳେ ମନରେ ନାନା ଉଚ୍ଚ ଭାବନାର ଉଦୟ ହୁଏ । ଏହି କଥାକୁ ଲେଖକ ତାଙ୍କ ଭାଷାରେ ଦର୍ଶାଇବାକୁ ଉଦ୍ୟମ କରିଛନ୍ତି । କିମ୍ବଦନ୍ତୀ, ପୁରାଣ, ଇତିହାସ କଳ୍ପନାର ଏକତ୍ର ବିଳାସ ପୁନର୍ନବାରେ ଦେଖିବାକୁ ମିଳେ ।

ଲେଖକ ୧୯୬୨ରୁ ୧୯୮୮ ମଧ୍ୟରେ **ସତ୍‌ସଙ୍ଗ ରଚନାବଳୀ, ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ, ନୀଳହ୍ରଦର ଚିତ୍ରକର, ଭବଘୂରା ଭବନାଥ, ଅବନ୍ତୀ, ସୁନାମାଛ,** ଆଦି ବହୁ ପୁସ୍ତକର ସ୍ରଷ୍ଟା । ଏସବୁ ମଧ୍ୟରେ ତାଙ୍କର ଲୋକପ୍ରିୟ ପୁସ୍ତକ **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** । କ୍ରମେ ସେ ଶିଳ୍ପୀ ଜୀବନକୁ ସାହିତ୍ୟର ଭାବାବେଶରେ ମନାଇ ପାରିଛନ୍ତି । ଜନ୍ମ ଦିଗପହଣ୍ଡିରେ, ବିବାହ ବାଲେଶ୍ୱରରେ, କର୍ମକ୍ଷେତ୍ର ଭୁବନେଶ୍ୱର ଓ ଦିଲ୍ଲୀ । ଏହାପରେ ଭାରତ ବାହାରେ ଶିଳ୍ପୀଭାବେ ବହୁଦେଶର ଅଭିଜ୍ଞତା ଅର୍ଜନ କରିଛନ୍ତି । ନାନା ଘାତ ପ୍ରତିଘାତ ମଧ୍ୟରେ ଜୀବନ ପଥ କେବେ କଣ୍ଟକିତ ତ କେବେ କୁସୁମିତ ହୋଇଛି । ଜୀବନର ଅନୁଭୂତି ଓ ଉଦ୍‌ବୋଳ୍ଲାସକୁ ସମ୍ବଳ କରି ସେ ତାଙ୍କରି ସାରସ୍ୱତ ସାଧନା ଚଳାଇ ରଖିଛନ୍ତି । **କେବେ ତାଙ୍କ ହାତର ତୂଳୀ ଆମ ଆଗରେ ପ୍ରତିଭାତ ହେଲାବେଳେ ଆଉ କେବେ ତାଙ୍କର ଶବ୍ଦପୁଞ୍ଜ ନୂଆ ନୂଆ ରୂପନେଇ ଦେଖାଦିଏ । ଏ ଦୁଇଟି ମଧ୍ୟରେ ପାଠକ ବୁଡ଼ିରହେ ।** ତାଙ୍କର **ପୁନର୍ନବା** ପୁସ୍ତକ ଏ ପର୍ଯ୍ୟନ୍ତ ପ୍ରକାଶିତ ପୁସ୍ତକ ମଧ୍ୟରେ ସର୍ବଶ୍ରେଷ୍ଠ ବୋଲି କହିବାକୁ ହେବ । ପୁସ୍ତକରେ ଯେଉଁ ଅଞ୍ଚଳ କଥା ଉଲ୍ଲେଖ ରହିଛି ତାହା ଏକଦା ପୂର୍ବତନ ଅଞ୍ଚଳର ଭାଷା ଭାବ ରୂପବିନ୍ୟାସ ଏଥିରେ ପରିସ୍ଫୁଟ । କଥିତ ଭାଷାକୁ ସମ୍ମାନର ସହିତ ସଙ୍ଗତଭାବେ ଉପସ୍ଥାପନା କରାଯାଇଛି । ପ୍ରତିପୃଷ୍ଠାରେ ଦକ୍ଷିଣାଞ୍ଚଳର ଶବ୍ଦକୁ ଯେତେପାରନ୍ତି ସେତେ ଉଦ୍ଧାର କରିଛନ୍ତି ଯଥା- କଷଗାମୁଛା, ଝପଟିଚାଲି, ଭେଣ୍ଡାଟେ, ଦି' ସାଉଡ଼ି, ମୁନିଗା, ଜାକି, ବିସ୍ତାପ, ଆଚୁ, ମିଶାରୁ, ଖୁଙ୍କୁମୁଙ୍କୁ, ଗମ୍ଭିରୀ, ଗିରସ୍ତ, କିସ, ନେସିହେବା, ସନ୍ତକ, ସରାଗ, ଭିଆଣ, ଗାନ୍ଦିକା, ସିତୟା, ଭୁଆଷୁଣୀ, ମାଇକିନା, କଅଁଳାପିଲା, ହିନସ୍ତା, ମୁଗପଇତି, ଦାରୀ, ସୋରା, ପାଇଟି, ପାଣ୍ଡେଇ, ଥତମତ, ବାଧରେ, ଟୁମୁକେଇବା, ଅତର୍ଛା, ଦସ୍ତୁରୁ, ଆହ୍ୱାନ, ଆପୁଚି, ବୁଜୁଲେ, ଆଟା, ହାତସିନ୍ଧୁକ, ରାଇକା, ସଜାଣ, ଡାବୁ, ଟାପରା, ଯୋଖିରା, ଖାଇଲାବାହୁ, ମାମୁଲୁ, ପୁଡୁଗ, ଫାସି, ଉଦୁବାର୍ଯ୍ୟ, ଋଦ୍ଧା ପାଲିଙ୍କି, କୋବାଳିଆ, ପହଞ୍ଚେଇ, ଟଭାଫାଳିଆ, ରଡ଼ିଦେଖେଇବା, ଗାଣ୍ଡିସୁନ୍ଦରୀ ଆମ୍ବଭଳି

Digitized by srujanika@gmail.com

ଗାଲ, ପୁରଷ୍ଟବପୁ, ମୁଣା, ରୁନ୍ଧ ରୁନ୍ଧିଆ, ଧରାକ, କାଇଲା, ପଙ୍ଗତ, ଆତଯାତ, ଇଟମଳା, ଗୁଣ୍ଡିଆ, ବଳା, ଖାଦି, ପଇଟିବା, ଖମ୍ବାରି, ଇହାପ, ଚିଲରା, ଜିଆଦ, ଗମାତ, ଖନ୍ଦ, ଭାରିଯା, ଛାବିତା ଏହିଭଳି ଅସଂଖ୍ୟ ଶବ୍ଦରାଜିରେ ସାରା ପୁସ୍ତକ ପରିପୂର୍ଣ୍ଣ । ଲେଖକ ତାଙ୍କ ଅଞ୍ଚଳର କଥିତ ଭାଷାକୁ ତୁଣ୍ଡରୁ ଉଠାଇ ଆଣି ସେହିଭଳି କାଗଜ କଲମରେ ଥୋଇଦେଇଛନ୍ତି ।

**ସମ୍ବଲପୁର ଅଞ୍ଚଳର ଲେଖକମାନେ ତାଙ୍କ ଭାଷାକୁ ସାହିତ୍ୟରେ ସମ୍ମାନ ଦେବାଲାଗି ଉଦ୍ୟମ କରିଆସୁଥିଲେ ମଧ୍ୟ କୌଣସି ଉପନ୍ୟାସରେ ସେ ସବୁକୁ ରଖି ବହିଟିଏ ଏ ଯାବତ ପ୍ରକାଶ ପାଇନାହିଁ । ଶ୍ରୀ ପାଠୀ ତାଙ୍କ ଅଞ୍ଚଳ ଭାଷାକୁ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ କରାଇବାପାଇଁ ଯେଉଁ ଉଦ୍ୟମ କରିଛନ୍ତି ତାହା ଓଡ଼ିଆ ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରିବାରେ ନିଶ୍ଚିତ ଭାବେ ସହାୟକ ହେବ ।**

ତାତ୍ତ୍ୱିକ ଦୃଷ୍ଟିରୁ ଅନ୍ୱେଷଣ କଲେ ଏହା ବୈଷ୍ଣବୀୟ ଚିନ୍ତାଧାରାକୁ ନେଇ ପ୍ରସ୍ତୁତ । ପ୍ରଚ୍ଛଦଟି କୃଷ୍ଣଙ୍କର । ମଝିରେ ମଝିରେ ଗୀତା, ଗୀତଗୋବିନ୍ଦ, ପୁରାଣ ଆଦିର ଉଦ୍ଧୃତାଂଶ ଅତି ଚମତ୍କାର ଭାବରେ ଗୁନ୍ଥି ହୋଇଯାଇଛି । ଏକ ନିର୍ଦ୍ଦିଷ୍ଟ କର୍ମପନ୍ଥା ଆଚରଣ, ଚାଲି ଚଳନ, ବୈଷ୍ଣବ ଧର୍ମର ଆଭାସ ଦିଏ । ଓଡ଼ିଶାରେ ଦୁଇଟି ବୈଷ୍ଣବ ମାର୍ଗ ଥିବାର ଦେଖାଯାଏ । ପ୍ରଥମଟି ବଳରାମ, ଅଚ୍ୟୁତ, ଅନନ୍ତ, ଜଗନ୍ନାଥ, ଯଶୋବନ୍ତ ପଞ୍ଚସଖା ପ୍ରବର୍ତ୍ତିତ । ଦ୍ୱିତୀୟଟି ଗୌଡ଼ୀୟ । ଗୌଡ଼ୀୟ ଧର୍ମ ଭକ୍ତିପ୍ରେମ ଥିଲାବେଳେ ଉତ୍କଳୀୟ ବୈଷ୍ଣବ ଯୋଗ ପ୍ରଧାନ, ଗୋଟିକୁ ରାଧା ବୋଲି କୁହାଗଲେ ଅନ୍ୟଟିକୁ ଧାରା କହିହେବ । ଲେଖକ ଗୌଡ଼ୀୟ ବୈଷ୍ଣବ କଥା ହିଁ କହିଛନ୍ତି ।

> "ଆପେନ୍ଦ୍ରିୟ ପ୍ରୀତିବାଞ୍ଛା ତାରେ ବୋଲି କାମ
> ପ୍ରୀତି କୃଷ୍ଣେନ୍ଦ୍ରିୟ ତାରେ ବୋଲି ପ୍ରେମ ।"

ମାଝୋଲି ମଠର ବିଧିବିଧାନ, ଆଚାର ବ୍ୟବହାର, ସବୁ ଗୌଡ଼ୀୟ ଢାଞ୍ଚାର ।

ଲେଖକ ନିଜେ ଜଣେ ଉଚ୍ଚକୋଟୀର ଶିଳ୍ପୀ ସମାଜରେ ଶିଳ୍ପୀକୁଳ ବରାବର ଅବହେଳିତ ହୋଇ ଆସିଛନ୍ତି । ସେମାନଙ୍କର ପ୍ରକୃତ ମୂଲ୍ୟାୟନ ସମାଜ କିମ୍ବା ସରକାର ହୃଦୟଙ୍ଗମ କରି ଉଚିତ ସମ୍ମାନ ଦେବାକୁ କୁଣ୍ଠାବୋଧ କରି ଆସୁଛନ୍ତି । ଶିଳ୍ପୀଙ୍କ ପ୍ରାଣକୁ ଏହା ଆଘାତ କରିଛି ବୋଲି ମନେହୁଏ । କାରଣ ସେ ତାଙ୍କ ପୁସ୍ତକରେ ଶିଳ୍ପ ଏବଂ ଶିଳ୍ପୀକୁ ଉଚ୍ଚଆସନ ଦେବାକୁ ବରାବର ଉଦ୍ୟମ ଚଳାଇଛନ୍ତି, ବ୍ରତ ଭଳି ପାଳିଛନ୍ତି । ଅନ୍ୟାନ୍ୟ ବିଷୟବସ୍ତୁ ସହ **ପୁନର୍ନବା**ରେ କଳାକୁଞ୍ଜ ଏକ ମୁଖ୍ୟ ସ୍ଥାନ ଗ୍ରହଣ କରିଛି । ଏହାକୁ ଆଧାର କରି ଲେଖକ ବହୁକଥା କହିଛନ୍ତି । କଳାକୁଞ୍ଜର ମୂର୍ତ୍ତିଗୁଡ଼ିକ କୁଟା ମାଟିରେ ଗଢ଼ା ହୋଇ ପରେ ମୌଳିକ ରଙ୍ଗରେ ରଙ୍ଗାୟିତ । ମୂର୍ତ୍ତି ଗଢ଼ଣର ବର୍ଣ୍ଣନା ଚାତୁରୀ ଏତେ ମନଛୁଆଁ ହୋଇଛି ଯେ ତଳିପାରୁ ତାଳୁଯାଏଁ ଥରେ ମନ ଦେଇ ଚାହିଁ ଦେଲେ ସେସବୁ ନିଜେ ଆମ ଆଗରେ ଆସି ଠିଆ ହୋଇ ଯାଆନ୍ତି । ଚିନ୍ତା ଓ ଚେତନାକୁ ପ୍ରଲୁବ୍ଧ କରନ୍ତି । ତା'ରି ମାଧ୍ୟମରେ ଲେଖକ ରାମାୟଣ, ମହାଭାରତ, ଭାଗବତ ସବୁକୁ ପଢ଼ାଇଲା ଭଳି ଲାଗେ । ଏକଦା ଏହି କଳାକୁଞ୍ଜ ନିର୍ମାଣ କରୁଥିବା ବିନ୍ଧାଣୀ ମାନେ ବଂଶ ପରମ୍ପରାକ୍ରମେ ଜୀବିକା ନିର୍ବାହ କରୁଥିଲେ । ପୁସ୍ତକରେ ବର୍ଣ୍ଣିତ ଶିଳ୍ପୀ ନିର୍ଦ୍ଦିଷ୍ଟ ଜାତିରେ ବିଶ୍ୱାସ ନରଖି ଯେ କୌଣସି ଜାତିର ଲୋକ ଉଚ୍ଚଶିଳ୍ପୀ ହୋଇପାରେ ବୋଲି ଦର୍ଶାଯାଇଛି । ଏକଦା ବର୍ଷା ଦିନକୁ ଛାଡ଼ି ଏହି ଶିଳ୍ପକୁଞ୍ଜ ମେଳା ମହୋତ୍ସବ ମାନଙ୍କରେ ପ୍ରଦର୍ଶିତ ହେଉଥିଲା । ନୂଆ ସଭ୍ୟତା ପ୍ରବେଶ ପରେ ପରେ ତାହା ଯଥେଷ୍ଟ ଭାବେ ହ୍ରାସ ପାଇଛି । ପୁରୀ ମନ୍ଦିର ପଶ୍ଚିମ ଦ୍ୱାର ନିକଟରେ ନୀଳାଦ୍ରି ବିହାର ଦେଖିଲେ କଳାକୁଞ୍ଜ ଓ ତାହାର ଶିଳ୍ପୀର ଉଜ୍ଜ୍ୱଳ ଭାବମୂର୍ତ୍ତି ମନେପଡ଼େ । କାଠ, ମାଟି, ପାଷାଣ ମୂର୍ତ୍ତି ଗଢୁଥିବା କାରିଗର କୁଳ ଆଜି ଦିଗହରା । ବିଭିନ୍ନ ଛାଞ୍ଚ ହେବାଦିନୁ ମୂର୍ତ୍ତି ଗଠନର ଶୈଳୀ ବଦଳିଯାଇଛି, ତା ସହିତ ନିଷ୍ଠା ଓ ପବିତ୍ରତା ମଧ୍ୟ । ଏବେ ଦୁର୍ଗାପୂଜା,

Digitized by srujanika@gmail.com

ଗଜଲକ୍ଷ୍ମୀ ପୂଜା, କାଳୀପୂଜା, ଆଦି ପର୍ବପର୍ବାଣୀ ସମୟରେ ଶିଳ୍ପୀ ନୂତନ ଆବଶ୍ୟକତାକୁ ଚାହିଁ ନିର୍ମାଣ କରୁଛନ୍ତି ଶାସ୍ତ୍ରପୁରାଣ ବର୍ଣ୍ଣିତ ତଥ୍ୟକୁ ଭିତ୍ତିକରି ମୂର୍ତ୍ତି ଗଢ଼ିବା ଅଭ୍ୟାସ କ୍ରମେ ହ୍ରାସ ପାଉଛି । କିନ୍ତୁ ଶ୍ରୀ ପାଠୀଙ୍କ କଳାକୁଞ୍ଜର ମୂର୍ତ୍ତିମାନେ ଶାସ୍ତ୍ର ସମ୍ମତ । ଏଥିରେ ଶିଳ୍ପୀର ନିଷ୍ଠା, ପବିତ୍ରତା, ସ୍ୱଚ୍ଛ ହୃଦୟ ପ୍ରତିଫଳିତ । ନିଳାମ୍ବର ମିଶ୍ରେ ଜଣେ ନୈଷ୍ଠିକ ବ୍ରାହ୍ମଣ ହେଲେ ମଧ୍ୟ ନିଖୁଣ ଶିଳ୍ପକଳାରେ ପାରଙ୍ଗମ, ସ୍ୱଚ୍ଛ, ପବିତ୍ର, ନିର୍ଲୋଭ ଆଦର୍ଶ, ନିଷ୍ଠାବାନ ଶିଳ୍ପୀରୂପେ ଉପନ୍ୟାସରେ ଉଭା ହୋଇଛନ୍ତି । ପିତୁଳା ପିତୁଳି ଗଢ଼ିବାରେ ଅନେକ ଶିଳ୍ପୀ ଥାଇପାରନ୍ତି, ଚିତ୍ର ଆଙ୍କିପାରନ୍ତି, ମାତ୍ର ଶ୍ରୀ ପାଠୀ ପିତୁଳିମାନଙ୍କୁ କେବଳ ଗଢ଼ିନାହାନ୍ତି ସେମାନଙ୍କ ମଧ୍ୟରେ ବାସ୍ତବତାକୁ ଜୀବନ୍ୟାସ ଦେଇ ମଣିଷର ଉପରକୁ ଉଠାଇ ନେଇଛନ୍ତି । ପ୍ରେମ ପ୍ରଣୟର ବନ୍ଧନରେ ବାନ୍ଧି ହୋଇଯାଇଛନ୍ତି । ତାଙ୍କ ପିତୁଳା, ପିତୁଳି, ମାଟି, କାଠ, ପାଷାଣରେ ଦିବ୍ୟ ଜୀବନହିଁ ପାଇଛନ୍ତି । ଏଠି ସ୍ୱୟଂ ଲେଖକ ସତେ ଅବା ନୀଳାମ୍ବର ମିଶ୍ରେ ପାଲଟିଗଲାପରି ଲାଗେ । ଏକ ସାଧାରଣ ପରିବାରର କନ୍ୟା ଗୌରୀ ମହିଳା-କାଉଁଣ୍ଟର୍‌ରେ କାର୍ଯ୍ୟ ମେଣ୍ଟାଇବା ଲାଗି କଳାକୁଞ୍ଜରେ ତାର ପ୍ରବେଶ । ସେଠି କାମ କରୁ କରୁ ନିତ୍ୟାନନ୍ଦ ସହ ଦେଖାସାକ୍ଷାତ, କ୍ରମେ ଗୌରୀ, ନିତ୍ୟାନନ୍ଦ ପରସ୍ପରକୁ ନିକଟରୁ ଓ ଦୂରରୁ ଭଲପାଇଗଲେ । ଯଦିଓ ଦୈହିକ ଚେତନା ବେଳେ ବେଳେ ଗୌରୀ ମନରେ ଉଦିତ ହୋଇଛି । ମୂଳରୁ ଶେଷ ପର୍ଯ୍ୟନ୍ତ ନିତ୍ୟାନନ୍ଦ ଉଦାସ, ନିର୍ଲିପ୍ତ, ନିଷ୍କାମ ବ୍ରତରେ ଜୀବନଯାତ୍ରାକରି ଶେଷରେ ସନ୍ୟାସ ପରେ ମଠ ମହନ୍ତ ପାଲଟି ଯାଇଛନ୍ତି । ଗୌରୀ ଦେବାର୍ପିତ ହେଲାପରେ କୃଷ୍ଣ ଚେତନାରେ ମୁଗ୍ଧ ହୋଇ ପ୍ରଚଳିତ ସଂସାରର ଆଉ ଏକ ଉଚ୍ଚସ୍ତରକୁ ଉଠି ଯାଇଛନ୍ତି । ତାଙ୍କ ସାଧନାର ସିଦ୍ଧି ହୋଇଛି । ନୂଆ ଆଦର୍ଶର ପଥ ଆବିଷ୍କାର କରିବାରେ ସକ୍ଷମ ହୋଇଛନ୍ତି ।

ନୀଳାମ୍ବର ମିଶ୍ରେ ଶିଳ୍ପୀଗୁରୁ । ପତ୍ନୀକୁ ହରାଇ ବେଳେ ବେଳେ ମୂର୍ତ୍ତିମାନଙ୍କ ମଧ୍ୟରେ ନିଜ ପତ୍ନୀର ଆଦର୍ଶ ଓ ରୂପ ଲାବଣ୍ୟ କଥା ଚିନ୍ତା କରିଛନ୍ତି । ତାଙ୍କରି ଘରେ ପ୍ରତିଷ୍ଠିତ ମୂର୍ତ୍ତିଟିରେ ସେ ତାଙ୍କ ସ୍ତ୍ରୀ ଲବଙ୍ଗଲତାକୁ ହିଁ ଦେଖିଛନ୍ତି । ନିଜ ପତ୍ନୀ ତାଙ୍କର ଶେଷରେ ପୂଜ୍ୟା ହୋଇଯାଇଛି ।

ଦକ୍ଷିଣାଞ୍ଚଳ ସାରସତ ସାଧକ ମାନଙ୍କ ମଧ୍ୟରେ ଯେଉଁମାନେ ଉଚ୍ଚଆସନ ଲାଭକରିଛନ୍ତି ସେମାନେ ହେଲେ ଉପେନ୍ଦ୍ର ଭଞ୍ଜ, ଗୋପାଳକୃଷ୍ଣ, ବଳଦେବ ରଥ ଓ କୃଷ୍ଣ ସିଂହ । ଏ ଚାରିଜଣଙ୍କ ମଧ୍ୟରୁ କୃଷ୍ଣ ସିଂହକୁ ଛାଡ଼ିଦେଲେ ଅନ୍ୟ ତିନିଜଣଙ୍କର ଉଦ୍ଧୃତାଂଶ ପୁସ୍ତକରେ ସ୍ଥାନ ପାଇଛି । ଲେଖାରେ କୃଷ୍ଣ ସିଂହଙ୍କର ରଚନାରୁ କିଛି ଉଦ୍ଧୃତି ଦେଇଥିଲେ ପୂର୍ଣ୍ଣାଙ୍ଗ ହୋଇଥାନ୍ତା ।

ମଠ ପରିବେଶର ପ୍ରାକୃତିକ ବର୍ଣ୍ଣନା ମଧ୍ୟରେ ଯେତିକି ବୃକ୍ଷଲତା, ଆସିପାରିଛନ୍ତି ତାଠାରୁ କିଛି ଅଧିକ ବୃକ୍ଷଲତା ଆସିଥିଲେ ଭଲ ଲାଗିଥାନ୍ତା । କୃଷ୍ଣ ଚେତନା ସହ କଦମ୍ବ ଓ ନିମ୍ବ ବୃକ୍ଷର ସଂଲଗ୍ନ ଅଧିକ ମାତ୍ରାରେ ରହିଥିଲେ ଆହୁରି ଭଲ ଲାଗିଥାନ୍ତା । ଲେଖକ ନାରୀମାନଙ୍କ ବସନ ଭୂଷଣ କଥା କହିଲା ବେଳେ ତଳ ଝଲକା, ଉପର ଝଲକା, ଗିରିଫୁଲ, ଅଣ୍ଟାପାଟିଆ, ଭଳି କେତକ ସେ ଅଞ୍ଚଳର ଅଳଙ୍କାର ଦେଇ ପାରିଥାନ୍ତେ । ବିଧବାଙ୍କ ବସନ, ଯଥା ମଠା ସହ କାଣ୍ଡିଆ ଅର୍ଖୀ, ବହୁଳଭାବେ ଦକ୍ଷିଣାଞ୍ଚଳ ବିଧବା ମାନେ ପିନ୍ଧିବା ସାଧାରଣତଃ ଦେଖାଯାଇଥାଏ । ଅର୍ଖୀ ଖୋଜିଆମେ ପାଇନାହୁଁ । ଲଳନାଗଣ ନାନାଜାତିର ଫୁଲସହ ମରୁଆ, ବ୍ୟବହାର କରିବାକୁ ଭଲ ପାଇଥାନ୍ତି । ତାଙ୍କ ବର୍ଣ୍ଣିତ କୌଣସି ନାରୀର ବେଣୀ ଖୋସାରେ ତା ଦେଖିବାକୁ ପାଇଲୁନାହିଁ । ଲେଖକଙ୍କର କେତେଗୁଡ଼ିଏ ଶବ୍ଦ ଅତିପ୍ରିୟ ବୋଲି ଜଣାପଡ଼ିଲା । ଯଥା- ହେଜ, ଏହି ଶବ୍ଦଟି ଶତାଧିକ ସ୍ଥାନରେ ବ୍ୟବହୃତ । ଥନ ବା ସ୍ତନ ଏ ନାମଟିବି ବହୁଳଭାବେ ବାରମ୍ବାର ଦୃଷ୍ଟିଗୋଚର ହୁଏ । ନିତମ୍ବ ଭଳି ଶବ୍ଦ ମଧ୍ୟ ବହୁ ପୃଷ୍ଠା ମଣ୍ଡନ କରିଛି । ଯୋନିବି । ଏହାକୁ କମାଇ ତତୁଲ୍ୟ ଶବ୍ଦ ବ୍ୟବହାର କରାଯାଇପାରିଥାନ୍ତା । ଯାହାକୁ ଅଶ୍ଳୀଳ ବୋଲି ସାଧାରଣତଃ କୁହାଯାଏ ସେଭଳି

Digitized by srujanika@gmail.com

ଶବ୍ଦ ସବୁ ବହୁଳଭାବେ ଏ ପୁସ୍ତକରେ ରହିଛି । ପୂର୍ବ ପ୍ରକାଶିତ କୌଣସି ଉପନ୍ୟାସରେ ଏଭଳି ଯୌନ ଉଦ୍ଦୀପକ ଶବ୍ଦ ସବୁ ଏତେ ସଂଖ୍ୟାରେ ପ୍ରକାଶ ପାଇନାହିଁ । ଅବଶ୍ୟ କାବ୍ୟ କବିତାରେ ଏମାନେ ବେଳେ ବେଳେ ଦେଖା ଦେଇଥାନ୍ତି ।

ଆମ ଓଡ଼ିଶା କାହିଁକି ଜାତୀୟସ୍ତରରେ ଅନେକେ ଅପସଂସ୍କୃତି ଧୂଳି ଭଳି ମାଡ଼ିରହିଛି । ଯେତେ ଯାନବାହନ ସୃଷ୍ଟି ହେଲେ ମଧ ମଣିଷ  ତା ନିଜ ଗୋଡ଼ରେ ଚାଲିବହିଁ ଚାଲିବ । ଏହା ଧ୍ରୁବ ସତ୍ୟ । ସେହିଭଳି ବାହାରର କେତେ ସଭ୍ୟତା ସଂସ୍କୃତି ପ୍ରଭାବ ବିସ୍ତାର କଲେ ମଧ ଆମ ଦେଶର ସଭ୍ୟତା ସଂସ୍କୃତିକି କଦାପି ବୁଡ଼ାଇ ଦେଇ ପାରିନାହିଁ । ବେଦ ବେଦାନ୍ତ, ଗୀତା ଉପନିଷଦ ଭଳି ଯେଉଁ ମହାନ୍ ଶାସ୍ତ୍ର ସମଗ୍ର ବିଶ୍ୱର ଆଦର୍ଶଭାବେ ଲେଖକ ଦାର୍ଶନିକଙ୍କର ଏବେବି ନମୁନା ହୋଇରହିଛି ତା ରହିବ ହିଁ ରହିବ । ବିକଶିତ ଧରଣୀର ଅଧିବାସୀ ସମାଜର ବିକାଶ ସଭ୍ୟତାର ଅଗ୍ରଗତି । ଚିତ୍ର ଓ ଚେତନା ସଂପ୍ରସାରଣରେ ସହାୟକ ହେଲାଭଳି ପୁସ୍ତକ ଆମ ଭାଷାରେ ଖୁବ୍ କମ୍ । **ଶ୍ରୀ ପାଠୀଙ୍କର ପୁନର୍ନବା ଚିତ୍ର ଉପନ୍ୟାସ ଓଡ଼ିଆ ଭାଷାରେ ପ୍ରକାଶ ପାଇବା କମ୍ ଗୌରବର କଥା ନୁହେଁ । ଏହା ଆସନ୍ତା ପିଢ଼ିର ଲେଖକଙ୍କ ପାଇଁ ଆଦର୍ଶ ରୂପେ ବିବେଚିତ ହେବ ।**

ଲେଖକ ସବୁକ୍ଷେତ୍ରରେ ତାଙ୍କଜନ୍ମମାଟିର ଗୌରବ ଗାଥା ବର୍ଣ୍ଣନା କରିବାରେ ସିଦ୍ଧହସ୍ତ। ପାରାଳାଖେମଣ୍ଡିରୁ ପାର୍ବତୀପୁରମ୍ ଯାଏଁ ଯେଉଁଠି ଯାହା ଗର୍ବ ଓ ଗୌରବ ଭଳି ଦୃଶ୍ୟ ସେ ଦେଖିଛନ୍ତି ତାକୁ ଏଡ଼ାଇ ଯିବାକୁ ଉଦ୍ୟମ କରିନାହାଁନ୍ତି । ମଠ କହନ୍ତୁ, ମନ୍ଦିର କହନ୍ତୁ, ନଦୀ, ବନ ଓ ଉପବନ, ଶିଳ୍ପୀ ଓ ତାର କୃତି ସବୁ ମୂଳରେ ଚେଷ୍ଟିତ । ଏ କ୍ଷେତ୍ରରେ ଉତ୍କଳମଣିଙ୍କ କିଛି ପଙ୍କ୍ତି ମନେପଡ଼େ ।

"ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ
ମାନବ ଜୀବନ ହୁଅଇ ସଫଳ
ଏ ମହା ଦୀକ୍ଷାକି ବୁଝିବ ଉତ୍କଳ ।"



Digitized by srujanika@gmail.com

মিহির কুমার সাহু

## **পুনর্ভবা**

ভবনাথঙ্ক চিত্র প্রদর্শনী । প্রখ্যাত কেদারগৌরী হল্ সুসজ্জিত । সহরর প্রায় সবু সম্বাদপত্ররে ঘোষণাপত্র প্রকাশিত । তিনিদিন পূর্বরু কেমিতি এক উত্সবীয় পরিবেশ জমিউঠিচি সহররে এবং মান্যগণ্য ব্যক্তিঙ্ক মনরে । কেদারগৌরী হল্টি স্মরণীয় হোইউঠিছি । উত্সর্গ হিঁ প্রেমর পরিভাষা । উত্সর্গরে হিঁ প্রেমর প্রতিষ্ঠা । হল্টির নামকরণ ও চিত্র প্রদর্শনীর নামকরণরে কেমিতি এক অপূর্ব সংযোগ - মণিকাঞ্চন সম্পর্ক । আসিগলা অপেক্ষার সেইদিনটি । ১৩ বর্ষর কুনিঝিঅটি প্রদীপ প্রজ্বলন করি উদ্ঘাটন কলা সেই অভূতপূর্ব প্রদর্শনীকু । তাকু কেবল চিত্র প্রদর্শনী নাঁ দেলে বোধহুএ ভুল্ হোইযিব, হঁ মস্তবড় ভুল্ হোইযিব । ভাব, রাগ, তালর অপূর্ব সমাহার - প্রদর্শন - আন্তর্জাতিক খ্যাতি সম্পন্ন শিল্পী ভবনাথঙ্ক প্রদর্শনী ।

॥২॥

অবিনাশ একা একা পহঞ্চি সারিথিলা সেই চিত্র প্রদর্শনী প্রাঙ্গণরে । মুখ্যদ্বারর সেই ঝোটিচিত্রর মাঙ্গলিক আভারে মন্ত্রিত হেলাপরি অনুভব করুথিলা নিজকু । প্রতিটি চিত্র পাখরে অবিনাশ নিজকু আবিষ্কার করুথিলা । কেতেবেলে চিত্রটি তাকু ঘুরাই আণুথিলা ত কেতেবেলে সে চিত্রটিকু ঘুরাই পকাউথিলা তার ভূত, বর্ত্তমান ও ভবিষ্যত আড়কু । ভবনাথকু কেন্দ্র করি অবিনাশ এক কক্ষপথর সর্জনা করিসারিথিলা, আউ সেঠি সে যেমিতি অবিরত ঘুরুথিলা । হিরণ্যবীজপরি সে ঘুরুথিলা প্রদর্শনী ভিতরে । কেবে কেবে চিত্র সবু **কমলা, সুনন্দা, অবন্তী,** নামরে নামিত হেউথিলে ত কেবেকেবে চিত্রর ভাষাসবু **নীলহ্রদর চিত্রকর, দিগপহণ্ডির ড্রইং মাষ্ট্রে, ভবঘুরা ভবনাথ, সায়েনারা** হোই ভাব সৃষ্টি করুথিলে **পুনর্নবার** ।

॥৩॥

**পুনর্নবা** ভিতরে পুনর্ভবার অপূর্ব সৃজনী । সর্জনার রঙ্গতূলীসবু ব্যাপ্তি ও দ্যুতিরে মুখর । কহিবাপণরে যেমিতি **কমলা**, সৌন্দর্য্যবোধরে সেমিতি **সুনন্দা** আউ হজিবাপণরে সেমিতি **অবন্তী** ।

''চিত্র ক'ণ সতে অকুহা কবিতা !
যাহা দেহরে কথা হজিযাএ
যাহা কহিব কহিব হুএ
অথচ কহিবি পারেনা
রহিবি হুএনা নিশ্চুপরে ।''

নীরবতার স্বর অনেকাংশরে মুগ্ধকর আউ বিস্ময়কর বি । চিত্রকরটিএ সেই মুগ্ধ ও বিস্ময়র যাদুকর । জীবন ও যন্ত্রণাভিতরে কেতে কেতে কথা কহি নদিএ শিল্পীর পিতুলি । স্রষ্টার সৃষ্টি - বিশ্বব্রহ্মাণ্ড । কেতেবড় কান্ভাস্ ! পঞ্চমহাভূতকু একাঠি করুছি । ক্ষিত্, অপ্, তেজ্, মরুত্, ব্যোম সবু একাঠি হোই যাউছন্তি - শিল্পীর যাদুকরী

Digitized by srujanika@gmail.com

ପ୍ରଭାବରେ, ତୂଳୀର ମନ୍ତ୍ରବତ୍ ଚାଳନାରେ । ଭୂ ରୁ ଭୂମା ଯାଏ ଗତିଶୀଳ ହେଉଛନ୍ତି ପୁଣି ଆକାଶ ଆଉ ମହା ସମୁଦ୍ରର ବ୍ୟାପ୍ତିରେ ହଜିଯାଉଛନ୍ତି ଚନ୍ଦ୍ରମା ବା ମୁକ୍ତାପରି । ସାରା ଜୀବନଟାବି ଅଘଟ ହୁଏ ସେ ସବୁର ରହସ୍ୟ ଖୋଜିବାକୁ । ସେଇଥିପାଇଁ ପୁନର୍ଜନ୍ମ - ପୁନର୍ନବା ।

॥୪॥

''ଜୀବନ ଆଉ କେତେକି ?
ପିତୁଳା ଗଢ଼ିବା ଓ ନଶ୍ୱରିବା ଭିତରର
ସମୟତକ ତ !
ପ୍ରାଣ ଆଉ କେତେକି ?
ବାକ୍ୟଟିଏ ସ୍ଫୁରିବା ଓ ନିଶବ୍ଦ ହେବାର
ବ୍ୟବଧାନ ତ !''

ଜୀବନ ଓ ପ୍ରାଣପୂର୍ଣ୍ଣ ଜୀବନ ଭିତରେ କି ଅପୂର୍ବ ତୁଳନା ସତରେ । ଜୀଇଁବା ପାଇଁ ଯେଉଁ ମୌଳିକ କଳା ଓ କୌଶଳଟିଏ ଲୋଡ଼ା, ଯେଉଁ ନ୍ୟୁନତମ ଆବଶ୍ୟକତା ଥାଏ ତାକୁ ସନ୍ଧାନ କରାଯାଇଛି **ପୁନର୍ନବା**ରେ । ଅଜା, ନିତ୍ୟାନନ୍ଦ ଓ ଗୌରୀ ପୁନର୍ନବା ଉପନ୍ୟାସର ମୁଖ୍ୟ ଚରିତ୍ର । ଏଇ ତିନି ଚରିତ୍ରକୁ କେନ୍ଦ୍ରକରି ଆତଯାତ ହୋଇଛନ୍ତି ଆହୁରି ଅନେକ ଚରିତ୍ର, ଘଟଣା ଓ କାହାଣୀ । ବଡ଼ ଚମତ୍କାର ଉପସ୍ଥାପନା କାହାଣୀ ସବୁର । ଉପନ୍ୟାସର କଳାତ୍ମକ ଦିଗଟି ଯେମିତି ଉଜ୍ଜ୍ୱଳ, କାରିଗରୀ ଦିଗଟି ମଧ ସେମିତି ବିସ୍ମୟକର । ଉପନ୍ୟାସର କାହାଣୀଭିତରେ ଭାରତୀୟ ତଥା ଉତ୍କଳୀୟ ସଂସ୍କୃତିର ସମ୍ମାନନୀୟ ଦିଗଟି ବାରିହୋଇ ପଡୁଛି ସ୍ପଷ୍ଟଭାବେ । ପ୍ରାଚୀନ ଉତ୍କଳର ମଠ, ମନ୍ଦିରର କାର୍ଯ୍ୟକଳାପ, ପୂଜା ଅର୍ଚ୍ଚନା, ପରିଚାଳନା ପଦ୍ଧତି, ପରମ୍ପରା ସହିତ ଗ୍ରାମୀଣ ଚିତ୍ର ଚରିତ୍ରଙ୍କର ଉପସ୍ଥାପନା ଉପନ୍ୟାସଟିକୁ କରିଛି ଅଧିକ ପ୍ରାଣବନ୍ତ । ଚିତ୍ର ଭାଷାରେ ଚିତ୍ରିତ ହୋଇଉଠିଛି ପରିବେଶ ଏବଂ ମନ୍ତ୍ରିତ ହୋଇଉଠିଛି ପରିସର । ନିତ୍ୟାନନ୍ଦର ଚରିତ୍ରାୟନ ବଡ଼ ଅଦ୍ଭୁତ । ଚରିତ୍ରର ଉତ୍ତରଣ ଦିଗଟି ମଧ ଚମତ୍କାର । ନୀଳାମ୍ବର ମିଶ୍ର ଓରଫ୍ ଅଜା କଳାକୁଞ୍ଜର ପିତୁଳାଭଳି ଗଢ଼ି ଚାଲିଛନ୍ତି ଉପନ୍ୟାସର ଚରିତ୍ରମାନଙ୍କୁ, ଚିତ୍ରିତ କରିଚାଲିଛନ୍ତି ଘଟଣାସବୁକୁ ସୁନ୍ଦର ସର୍ଜନାତ୍ମକ ଶୈଳୀରେ ଗଢ଼ାଚାଲିଛି କଳାକୁଞ୍ଜର ପିତୁଳା ଭଳି ସବୁ ଚରିତ୍ର । ବିଭିନ୍ନ ମାନ ଓ ରୂପର, ରଙ୍ଗ ଓ ରସର ଚରିତ୍ରସବୁ। ଚାଲିଛି ଗଢ଼ିବା ଓ ଭାଙ୍ଗିବାର ପ୍ରକ୍ରିୟା । ଚିତ୍ରକଳାର ଜ୍ୟାମିତି, ପାରମ୍ପରିକତା, ରୀତି ଓ ବିଧି ପୁଣି ଚିତ୍ରକଳାର ବିଭିନ୍ନ ମାଧ୍ୟମର ଆଧାରକୁ ଦର୍ଶାଇଛନ୍ତି ଔପନ୍ୟାସିକ । ଉତ୍କଳୀୟ ମଠ ସଂସ୍କୃତି ଭିତରେ ଫୁଟି ଉଠିଚି ସଂଭୋଗ ଓ ବୈରାଗ୍ୟର ବାସ୍ତବରୂପ । କଳାକୁଞ୍ଜର ଆୟୋଜନ, ଉଦଘାଟନ ଓ କୋଳାହଳ ଭିତରେ ଲୁଚିରହିଛି ଜୀବନଯାତ୍ରାର ଦର୍ଶନ । କଳାକୁଞ୍ଜରୁ ନୂତନଭାବରେ ଉଦ୍‌ଭବ ହୁଅନ୍ତି ନିତ୍ୟାନନ୍ଦ ଓ ଗୌରୀ ଚରିତ୍ର । ସେମାନଙ୍କ ସମ୍ପର୍କର ଗତି ଇନ୍ଦ୍ରିୟରୁ ଅତୀନ୍ଦ୍ରିୟକୁ ଧାବମାନ ହୁଏ । ଇନ୍ଦ୍ରିୟାତୀତ ଅନୁଭୂତିରେ ସେମାନେ ଉଭୟେ କେମିତି ଚାଳିତ ହୋଇପାରନ୍ତି, **ପୁନର୍ନବା** ତାର ବଳିଷ୍ଠ ଉଦାହରଣ । ଦୁହେଁ ଆଧାତ୍ମିକତାର ପୂଜାରୀ ପାଲଟି ଯାଆନ୍ତି । ପ୍ରକୃତି ଓ ପ୍ରବୃତ୍ତି ଆସ୍ତେ ଆସ୍ତେ ଈଶ୍ୱରୀୟ ଈଶ୍ୱରୀୟ ହୋଇ ଯାଇଛି ।

'ଗୌରୀ ଆଳତି ନେଇ ନିତ୍ୟାନନ୍ଦ ଭାଇନାଙ୍କ ପାଖକୁ ଆସିଲା । ମୁହଁ ତଳକୁ ପୋତିଥାଏ । କିନ୍ତୁ ମୁହଁ ଉଠେଇ ଭାଇନାଙ୍କୁ ଦେଖିବାପାଇଁ ତାର ଖୁବ୍ ଇଛାଥାଏ । ଆଳତିର ଆଲୁଅରେ ତା ମୁହଁ ଆହୁରି ଉଜ୍ଜ୍ୱଳ ଦେଖାଯାଉଥାଏ । ସେ ପିତଳର ଢଳେଇ ରାଧାମୂର୍ତ୍ତିଭଳି ଦିଶୁଥାଏ । ନିତ୍ୟାଭାଇନା

Digitized by srujanika@gmail.com

ଦୁଇହାତକୁ ଆଳତିର ପ୍ରଜ୍ୱଳିତ ଶିଖାଉପରେ ବୁଲେଇଆଣି ଆଖିବନ୍ଦକରି ପତାଉପରେ ସ୍ପର୍ଶ କଲେ । 'ପ୍ରଭୁ !' ବୋଲି ରାଧାବିନୋଦଙ୍କୁ ସ୍ମରଣ କଲେ । ଏ ଭିତରେ ଗୌରୀ ମୁହଁ ଉଠେଇ ନିତ୍ୟାଭାଇନାଙ୍କୁ ଆଉଥରେ ମନପୁରାଇ ଦେଖିନେଲା । ଆଳତିର ନମ୍ରଆଲୁଅ ତାଙ୍କ ମୁହଁରେ ପଡ଼ିଲାରୁ ଦାଢ଼ି ତମ୍ବା ରଙ୍ଗ ଧରିଲା ଓ ସେ ମଧ୍ୟ ପିତଳର ଜଣେ ଭବ୍ୟ ଋଷିଭଳି ଲାଗିଲେ ।'

ଚିତ୍ର ମଧ୍ୟରେ ସଙ୍ଗୀତ, ଅଭିନୟ, ସାହିତ୍ୟ ଓ ସଂସ୍କୃତିକୁ ରୂପଦେବାରେ ଜଣେ ଧୂରୀଣ କଳାକାର ହେଉଛନ୍ତି ନିଜେ ଔପନ୍ୟାସିକ । ଜୟଦେବଙ୍କ ଗୀତଗୋବିନ୍ଦ, ଗୋପାଳକୃଷ୍ଣ, ବନମାଳୀ ଇତ୍ୟାଦିଙ୍କୁ ସ୍ମରଣୀୟ କରାଇଛନ୍ତି ଓଡ଼ିଶୀଛନ୍ଦର ତାଳେ ତାଳେ ରାଧାକୃଷ୍ଣଙ୍କୁ ଚିତ୍ରର ଅବବୋଧ ଭିତରେ ଆଣି ବୈଷ୍ଣବୀୟ ପରମ୍ପରାକୁ ପୁନର୍ଜୀବନ ଦେଇଛନ୍ତି । ପିତୁଳା କେତେବେଳେ ମଣିଷର ରୂପ ନେଉଛି ତ କେତେବେଳେ ଈଶ୍ୱର ପାଲଟିଯାଉଛି । ପୁଣି ଈଶ୍ୱରବି ତୁଚ୍ଛା ପିତୁଳା ପାଲଟିଯାଉଛନ୍ତି ତ, ମଣିଷ ପାଲଟିଯାଉଛି ଈଶ୍ୱର ରୂପରେ । ସତରେ **ପୁନର୍ନବା**ର ଦର୍ଶନ ମଧ୍ୟ ଚମତ୍କାର ।

'ଯଦ୍ ଭାବଂ ତଦ୍ ଭବତି'ର ଚମତ୍କାର ସର୍ଜନା ଗୌରୀ ଓ ନିତ୍ୟାନନ୍ଦ । ଗୌରୀ ରାଧା ପାଲଟିଯିବା, ନିତ୍ୟାନନ୍ଦ କୃଷ୍ଣର ରୂପନେବା ପୁଣି ପିତୁଳାରେ ପରିଣତ ହୋଇଯିବା ଉପନ୍ୟାସର ଏକ ଅତିମାନବୀୟ ପରିକଳ୍ପନା । ଆଧ୍ୟାତ୍ମିକ ଜଗତକୁ ପ୍ରବେଶ କରିବାର ଏକ ଗୂଢ଼ ରହସ୍ୟ ଏଇଠି ଉଦ୍‌ଘାଟିତ ହେଲାପରି ମନେହେବ ।

ମାଙ୍ଗେଳି ମଠର ଉପବନରେ ନବନାରୀ କୁଞ୍ଜର ସଂରଚନା ପ୍ରକୃତରେ ଉତ୍କଳୀୟ ଚିତ୍ରକଳାର ଏବଂ ନିଭୃତ ରାସଲୀଳାର ଚମତ୍କାର ଉପସ୍ଥାପନା । ଏହା ସମଗ୍ର ବିଶ୍ୱରେ ମଧ୍ୟ ବିରଳ । ଏହି ଅବଲୁପ୍ତ କଳାର ପୂଜାରୀ ଓ କାରିଗର ସାଜି ଆସିଛନ୍ତି ନିଜେ ଔପନ୍ୟାସିକ । ଚିତ୍ରକଳାର ଯେଉଁ ନିଷ୍ଠା, ସାଧନା, ଅଭ୍ୟାସ ଏବଂ ଅର୍ଚ୍ଚନାର ଆବଶ୍ୟକତା ଥାଏ ତା'ର ଦୃଷ୍ଟାନ୍ତ ବହୁକ୍ଷେତ୍ରରେ ପ୍ରମାଣ କରିଦେଇଛନ୍ତି ପୁନର୍ନବାର ସର୍ଜନାରେ ।

ପ୍ରତିମା ପ୍ରତିଷ୍ଠା ଓ ଗାଦି ଆରୋହଣ ବିଧାନ ଏକସଙ୍ଗରେ ଆୟୋଜିତ ହୋଇଛି । ନିତ୍ୟାନନ୍ଦ ମହନ୍ତ ହେବେ । ତାପରେ ସେ ପିତୁଳାଭଳି ହୋଇଯିବେ । ଅରୂପରୁ ରୂପକୁ ଏବଂ ରୂପରୁ ରୂପାତୀତକୁ ଗତିହେବ ତାଙ୍କର । ଦେବାର୍ପିତା ଗୌରୀ ବି ସେମିତି । ରାଧା ଭାବରେ ତଲ୍ଲୀନ, କୃଷ୍ଣଚେତନାରେ ବିଲୀନ । ଗୌରୀ ପାଖରେ ସମୁଦ୍ରବି ହୋଇଯାଉଛି କୃଷ୍ଣମୟ । ସମୁଦ୍ର ବି ପ୍ରତିଧ୍ୱନି ଫେରାଉଛି- 'ଗୌରୀ', ତମେ ହସ, ମୋ ହସ ସାଙ୍ଗରେ ସରମିଶେଇ ତମର ସମଗ୍ର ସତ୍ତା ହସମୟ, ସମୁଦ୍ରମୟ ଓ କୃଷ୍ଣମୟ ହୋଇଯାଉ । ତମେ ଲହଡ଼ାଭଳି ଅଜାଡ଼ିହୋଇପଡ଼ । ଏହାହିଁ ତମ ପାଇଁ ମାହେନ୍ଦ୍ର ମୁହୂର୍ତ୍ତ । ସମୁଦ୍ରର ନୀଳିମାରେ ନିଜକୁ ମିଶେଇଦିଅ, ହଜେଇଦିଅ, ତମର ସବୁ ଦୁଃଖ, ଯାତନା, ଜିଜ୍ଞାସା, ଅନ୍ୱେଷଣ, ଉପଲବ୍ଧି, ସବୁମତେ ସମର୍ପି ଦିଅ । ଗୌରୀ ଏକ ଚୁମ୍ବକୀୟ ଆକର୍ଷଣରେ କୃଷ୍ଣଙ୍କ ବିଗ୍ରହ ପାଖରେ ରାଧାପିତୁଳି ହୋଇ ଉଭା ହୋଇଯାଇଛନ୍ତି । ରାଧାକୃଷ୍ଣ ଯୁଗଳମୂର୍ତ୍ତିର ସର୍ଜନା ଇନ୍ଦ୍ରୀୟାତୀତ ହୋଇଯାଇଛି ।

**ପୁନର୍ନବା** ହୋଇଯାଇଛି ପୁନର୍ଭବା ।

Digitized by srujanika@gmail.com

॥୪॥

''ମିଶ୍ରେ ମହାଶୟଙ୍କ ଭାବନାର ଖିଅ ବିସ୍ତାରି ଯାଉଛି ଅବର୍ତ୍ତମାନ ସ୍ଥିତିଭିତରକୁ । ହେଇଟି ପରି ଲାଗୁଛି । କିନ୍ତୁ ଯା ଭିତରେ ପ୍ରାୟ ଷାଠିଏଟି ବର୍ଷ ବିତିଗଲାଣି । ସେ ବାହା ହୋଇଥିଲେ ବଂଶଧାରା କୂଳର ମୁଖଲିଙ୍ଗମ୍ ଗାଁର ସୁଦର୍ଶନ ଷଡ଼ଙ୍ଗୀଙ୍କ ଜ୍ୟେଷ୍ଠ କନ୍ୟା ଲବଙ୍ଗଲତାଙ୍କୁ ।''

ଔପନ୍ୟାସିକଙ୍କ ସ୍ମୃତି ମଧ୍ୟକୁ ଆସୁଛି ଷାଠିଏ ବର୍ଷର ଅତୀତ । **ପୁନର୍ନବା** ହୋଇଉଠୁଛି ଜୀବନ . ଜୀବନ ହୋଇଯାଉଛି ପୁନର୍ନବା । **ପୁନର୍ନବା** ଜଣେ ଓଡ଼ିଆ ଶିଳ୍ପୀର ଅବବୋଧର କଥା । ଚିତ୍ରଭାଷାର କଥା କବିତାରେ- କବିର ଭାଷାରେ । ଅନୁଭୂତିର ଭାଷାନ୍ତର - ରୂପାନ୍ତର । ମଣିଷ ମରିଗଲାପରେ ସବୁ ତ ଶୂନ୍ୟ ହୋଇଯାଏ । ନାମ, ରୂପ, ଗନ୍ଧ, ବର୍ଣ୍ଣସବୁ ମିଳେଇଯାଏ । ରହିଯାଏ କେବଳ ସ୍ମୃତି ଓ ସପ୍ନ । ସ୍ମୃତି ପୁଣି ପୁନର୍ନବା ହୁଏ । ସେ ସବୁ କିଛି ଭିଆଣ କରିପାରେ, ଯାଦୁକରର ମାୟାଜାଲ ବିଛେଇ ହୋଇଯାଏ । ବେଳେବେଳେ ସବୁ ସପ୍ନ ସତ୍ୟ ହୁଏ । ସପ୍ନ ହିଁ ତ ସତ୍ୟ । ବଂଚିବାର ବୁଭୂକ୍ଷାଥିଲେ ସପ୍ନ ହିଁ ବଞ୍ଚେଇଦିଏ । ଆଉ ସତ ସଂସାର କଣ କି ! ଏକ ସପ୍ନ ତ । ଶଙ୍କରାଚାର୍ଯ୍ୟଙ୍କର ସେଇ ଉକ୍ତିଟି ମନେ ପଡ଼ିଯାଉଥାଏ - 'ପୁନଃରପି ଜନନମ୍, ପୁନଃରପି ମରଣମ୍, ପୁନଃରପି ଜନନୀ ଜଠରେ ଶୟନମ୍' - ପୁନର୍ଭବା ।

ଲେଖକ ଏଠି ଚିତ୍ରକର । ଚିତ୍ର କରିବା ବାହାନା ମାତ୍ର । ଚିତ୍ରଭାଷାରେ କାବ୍ୟ ରଚନା, ନୂତନ ସର୍ଜନା - ପୁନର୍ଭବା । ସୃଷ୍ଟି ତ ସ୍ରଷ୍ଟାଙ୍କର ପ୍ରତିରୂପ । ସ୍ରଷ୍ଟାଙ୍କର ଜୟହେଉ ।



Digitized by srujanika@gmail.com

ସୁଦର୍ଶନ ଆଚାର୍ଯ୍ୟ

## ଉଭୟଚର ଦୀନନାଥ ଦିନନାଥ

ସଂସ୍କୃତ ସାହିତ୍ୟର ସର୍ବଶ୍ରେଷ୍ଠ ମହାକାବ୍ୟ **ନୈଷଧୀୟ ଚରିତମ୍** ଏବଂ ତର୍କ-ନ୍ୟାୟ ଗ୍ରନ୍ଥିକ ତଥାପି ସ୍ୱାଦ୍ୟ ଅଦ୍ୱୈତ ବେଦାନ୍ତ ଗ୍ରନ୍ଥ **ଖଣ୍ଡନ ଖଣ୍ଡ ଖାଦ୍ୟ** ରଚନା କରିସାରିବା ପରେ ମହାକବି **ଶ୍ରୀହର୍ଷ** ପୂର୍ଣ୍ଣ ଆତ୍ମସନ୍ତୋଷ ଓ ଆତ୍ମବିଶ୍ୱାସର ସହିତ ଏକଦା ଘୋଷଣା କରିଥିଲେ-''ସାହିତ୍ୟେ ସୁକୁମାର ବସ୍ତୁନି ଦୃଢ଼ ନ୍ୟାୟ ଗ୍ରହ ଗ୍ରନ୍ଥିଳେ । ତର୍କେ ବା ମୟି ସମ୍ବିଧାତରି **ସମମ୍ ଲୀଳାୟତେ ଭାରତୀ ।''** **ଶ୍ରୀହର୍ଷଙ୍କ** ଉଭୟଚର ଲେଖନୀ କାବ୍ୟକୁ ଦାର୍ଶନିକ ତତ୍ତ୍ୱ ପ୍ରକାଶନର ମାଧମ ଏବଂ ଦର୍ଶନକୁ ରସଘନ କାବ୍ୟାୟନ କରିବାରେ ସମାନ ଭାବରେ ଥିଲା ଲୀଳାମୟୀ । ବିଷୟବସ୍ତୁ ଯାହା ହେଉନା କାହିଁକି, ନିର୍ଜୀବ ହେଉ ବା ସଜୀବ ହେଉ, ମୂର୍ତ୍ତ ହେଉ ବା ଅମୂର୍ତ୍ତ ହେଉ, ରୂପ ହେଉ ବା ଅରୂପ ହେଉ, ହୃଦୟଗ୍ରାହ୍ୟ ହେଉ କି ବୁଦ୍ଧିଗ୍ରାହ୍ୟ ହେଉ ସାରସ୍ୱତ ସାଧକର ପ୍ରତିଭା ସ୍ପର୍ଶରେ ସବୁକିଛି ସହୃଦୟ ପାଠକ, ଦର୍ଶକଙ୍କୁ ଆହ୍ଲାଦିତ କରେ, ଉଲ୍ଲସିତ କରେ ଏବଂ ବ୍ରହ୍ମାନନ୍ଦ ସହୋଦର ତୁଲ୍ୟ ଆନନ୍ଦରେ ଆମୋଦିତ ଓ ଆତ୍ମବିସ୍ମୃତ କରେ । ସେଥିପାଇଁ ତ ଶ୍ରୀହର୍ଷ କହୁଥିଲେ-''ଶଯ୍ୟା ବାସ୍ତୁ ମୃଦୁତର ଛଦବତୀ ଦର୍ଭାଙ୍କୁରୈରାସ୍ତୃତା ଭୂମିର୍ବା ହୃଦୟଙ୍ଗମୋ ଯଦି ପତିସ୍ତୁଲ୍ୟା ରତିର୍ଯୋଷିତାମ୍ ।''

କାଳର ଦୀର୍ଘ ବ୍ୟବଧାନ ମଧ୍ୟରେ ବହୁ କଳାସାଧକ ଦୁଇ ଦୁଇଟି କଳାରେ କୃତିତ୍ୱ ପ୍ରଦର୍ଶନ ଯେ ନ କରିଛନ୍ତି ତାହା ନୁହେଁ, କିନ୍ତୁ ଦିନନାଥ ଜନ୍ମରୁ ଉଭୟଚର । ଜ୍ଞାତ ସାରରେ ହେଉ କି ଅଜ୍ଞାତ ସାରରେ ହେଉ ନନା ତାଙ୍କୁ ଏପରି ଏକ ନାମରେ ନାମିତ କରିଥିଲେ । ଦୀର୍ଘ ହେଲେ ସେ ଭୂଚର, ହ୍ରସ୍ୱ ହେଲେ ଖେଚର । ଭାଇନା ଲୋକନାଥଙ୍କ ପରେ ନବଜାତକର ନାମଟି ପ୍ରାସଙ୍ଗିକତା ଓ ଔଚିତ୍ୟ ଦୃଷ୍ଟିରୁ ଠିକ୍ ଖାପ୍ ଖାଉଥିଲା । ନନା ଶ୍ୟାମସୁନ୍ଦର ପାଠୀ କ'ଣ ଜାଣିଥିଲେ ଦିନେ ତାଙ୍କ ପୁଅ ଶିକ୍ଷକମାନଙ୍କ ମଧ୍ୟରେ ଅପାଙ୍‌କ୍ତେୟ, ଛାତ୍ରମାନଙ୍କଦ୍ୱାରା ସ୍ୱଳ୍ପାଦୃତ, ସରକାରଙ୍କ ଦ୍ୱାରା ଅବହେଳିତ ଦୀନ ଡ୍ରଇଂମାଷ୍ଟ୍ରମାନଙ୍କ ଆତ୍ମସମ୍ମାନ ପ୍ରତିଷ୍ଠା କରିବ ଏବଂ ନିଜ ବଂଶ, ପରିବାର, ଦିଗପହଣ୍ଡି, ଗଞ୍ଜାମ, ଓଡ଼ିଶା ଏବଂ ସମଗ୍ର ଭାରତ ବର୍ଷକୁ ନିଜ ପ୍ରତିଭାର ଦୀପ୍ତିରେ ଦୀପ୍ତମାର୍ତ୍ତଣ୍ଡ ପରି ଆଲୋକିତ କରିବ । ନନାଙ୍କ ସ୍ୱପ୍ନ ସାର୍ଥକ ହୋଇଛି । ନିଜେ ନିଜକୁ ଦିନନାଥ ରୂପେ ପରିଚିତ କରାଉଥିଲେ ହେଁ ସମାଲୋଚକମାନଙ୍କ ଲେଖନୀରେ ସେ କେତେବେଳେ ଦୀନ ଓ କେତେବେଳେ ଦିନ । ସୃଜନଶୀଳ ସୃଷ୍ଟିରେ ଆତ୍ମବିଶ୍ୱାସ ଆସିଲା ପରେ ତାଙ୍କର ଆତ୍ମୋପଲବ୍ଧ ହୋଇଛି ଯେ, ସେ ପ୍ରକୃତରେ ଉଭୟଚର-'ମୋ ପାଇଁ ଚିତ୍ର ଓ ସାହିତ୍ୟର ଉତ୍ସ ଏକ, ବେଳେବେଳେ କିଏ କେମିତି ମୋତେ ବାଟ କଢ଼େଇ ନେଉଛି, ନିଜକୁ ନିଶ୍ଚିହ୍ନ କରିନେବା ପାଇଁ ପ୍ରବର୍ତ୍ତାଉଛି । ବୋଦାକୁ ବଳି ଦେଲା ପରି । ତା'ପରେ ହିଁ ସୃଷ୍ଟିର ପ୍ରକ୍ରିୟା ଆରମ୍ଭ । ତା'ପରେ ଏକ ନିର୍ଲିପ୍ତ ଆତ୍ମାର ଅଭିବ୍ୟକ୍ତି ଲଲାଟରେ ଲେଖି ହୋଇଯାଏ । ଲାଗିବ, ମୁଁ ବା କିଏ ? ନିମିତ୍ତ ମାତ୍ର । ଚିତ୍ର ଓ ସାହିତ୍ୟ ଆପେ ଆପେ ଲେଖି ହୋଇଯିବ । ଏମିତି କହିଲେ ବୋଧହୁଏ ସ୍ଥୂଳ ଭାବରେ ଧରି ହେବ, ମୁଁ ଉଭୟଚର ପ୍ରାଣୀଟିଏ । ଭୂଇଁ ଉପରେ ବିଚରଣ କରୁଥାଏ । କ୍ଳାନ୍ତି ବୋଧ ହେଲେ ନୀଳ ପାରାବାର ଭିତରେ ହଜିଯିବା ପାଇଁ ଚାହେଁ । ହଜିଯାଏ ମଧ୍ୟ । ଗଭୀରତା ଭିତରୁ, ବ୍ୟାପ୍ତି ଭିତରୁ, ଶାମୁକା ବାଲିଗରଡ଼ା ବେଳେବେଳେ ରତ୍ନ ଆଞ୍ଜୁଳା ଆଞ୍ଜୁଳା ନେଇ ମାଟି ଉପରକୁ ଆସେ । ଏଠି ବିପଣୀ ମେଲିଦିଏ ।''

ଉଭୟଚର ହେବା ପ୍ରାଣୀର ସାଧନା ସାପେକ୍ଷ ନୁହେ ; ବିଧି ନିର୍ଦ୍ଧାରିତ, ବଂଶଗତ । ବାସ୍ତବ ଜଗତରେ ଦିନନାଥ ଓଡ଼ିଶା, ଭାରତ ଓ ଭାରତ ବାହାରର ବହୁ ଗମ୍ୟ ଅଗମ୍ୟ ସ୍ଥାନରେ ପଦଚାରଣ କରିଛନ୍ତି : ସମୁଦ୍ରର ନୀଳ ଜଳରାଶିରେ ନିଜର ଓ ପରୀମାନଙ୍କର ପ୍ରତିବିମ୍ବ ଦେଖି ଦେଖି ସୁନାମାଛ ଖୋଜିଛନ୍ତି ଏବଂ ଆକାଶ ମାର୍ଗରେ ଉଡ଼ି ଯାଇଛନ୍ତି ଦୂର ଦୂରାନ୍ତରକୁ । ଭ୍ରମଣର ବ୍ୟାପ୍ତି ତାଙ୍କର ବିସ୍ତୃତ । ଭ୍ରମଣକାରୀର ଅନ୍ତର୍ଦୃଷ୍ଟି ତା'ଠାରୁ ସୂକ୍ଷ୍ମ ଓ ଗଭୀର । ଭୂମି ଉପରେ ବିଚରଣ କଲାବେଳେ ସେ ତାଙ୍କ

Digitized by srujanika@gmail.com

ଆଗରେ ଯାଉଥିବା, ତାଙ୍କ ସହିତ ଯାଉଥିବା ଏବଂ ତାଙ୍କ ପଛରେ ଆସୁଥିବା ମଣିଷମାନଙ୍କ ଅବଚେତନ ଭିତରକୁ ଭିଡ଼ିଯିବା ପାଇଁ ଚେଷ୍ଟା କରିଛନ୍ତି ; ମର୍ତ୍ତ୍ୟ ମଣିଷମାନଙ୍କ ସୁଖ ଦୁଃଖରେ ଭାଗୀ ହେବାପାଇଁ । ସେମାନଙ୍କ ଅସହାୟତାରେ ସମ୍ବେଦନା ପ୍ରକାଶ କରିବା ପାଇଁ, ସେମାନଙ୍କ ଜୀବନ ଦେଇ ନିଜକୁ ଦେଖିବା ଏବଂ ନିଜ ଜୀବନର ଆଦର୍ଶରେ ସେମାନଙ୍କ ପ୍ରତିବିମ୍ବକୁ ଦେଖିବା ପାଇଁ ପ୍ରୟାସ କରିଛନ୍ତି, ମହାକାଳର ବେଦନାକୁ ଅବଲୀଳାକ୍ରମେ ଅତିକ୍ରମ କରି ଯିବାପାଇଁ ପ୍ରୟାସ କରିଛନ୍ତି । ଉଡ଼ାଜାହାଜରେ ଯିବାବେଳେ ମେଘ ଉପରେ ଭାସମାନ ତୁଷାର ଉପବନର ସୌନ୍ଦର୍ଯ୍ୟକୁ ତୂଳୀ ମାଧମରେ ଧରି ରଖିବା ପାଇଁ ଭୁଲି ନାହାନ୍ତି । ସମୁଦ୍ର ଭିତରେ ଓଡ଼ିଶାର ଅତୀତକୁ ଖୋଜିଛନ୍ତି, ଭୂମିରୁ ଭୂମା ପର୍ଯ୍ୟନ୍ତ ତାଙ୍କର ଏ ଅନ୍ତହୀନ ଖୋଜିବାପଣକୁ ପାଠକ, ଦର୍ଶକ ପ୍ରତ୍ୟେକଟି ଚିତ୍ର, ସାହିତ୍ୟ ଓ ଗବେଷଣାତ୍ମକ ଗ୍ରନ୍ଥ ଭିତରେ ଉପଲବ୍ଧି କରିପାରିବ । ଅନୁଭୂତିର ତୀବ୍ରତା, ଦୃଶ୍ୟମାନ ବସ୍ତୁ ସହିତ ଏକୀଭୂତ ହେବାର ସହୃଦୟତା ଏବଂ ନଗଦ ଆତ୍ମବିସ୍ମୃତି ସାର୍ଥକ କଳାର ଜନନୀ । ଆବେଶ ଓ ଆବେଗ ପ୍ରବଣତା କଳାର ପ୍ରସୂତି ପ୍ରକୋଷ୍ଠ ।

ଅକ୍ଲାନ୍ତ ଭାବେ ଭବ ପରିକ୍ରମା କରି ଭବଘୂରା ଦିନନାଥ ଆକସ୍ମିକ ଭାବେ ଅନ୍ତରଙ୍ଗ ସଖା ଓ ସତୀର୍ଥ ଶିବରାମ ପାତ୍ରଙ୍କ ଶବାଧାର ନିକଟରେ ନିଜ ରୂପ ସଂପର୍କରେ ସଚେତନ ହୋଇ ଉଠିଛନ୍ତି । ବିଶ୍ୱକବିଙ୍କ 'ମରିତେ ଚାଇନା ଆମି ସୁନ୍ଦର ଭୁବନେ' ବାଣୀରେ ଆସ୍ଥା ସ୍ଥାପନ କରି ଜୀବନ ଜୀଉଁଥିବା ଏବଂ ବହୁ ଘଟଣା ଦୁର୍ଘଟଣାକୁ ଅତ୍ୟନ୍ତ ରସିକତା ଓ ସାହସିକତାର ସହିତ ଅତିକ୍ରମ କରି ଆସିଥିବା ଦିନନାଥ ମୃତ୍ୟୁ ଭୟରେ ସଂତ୍ରସ୍ତ ହୋଇ ଉଠିଛନ୍ତି । ବନ୍ଧୁମାନଙ୍କ ଇଚ୍ଛା ଅନିଚ୍ଛାକୃତ ଆଶ୍ୱାସନା ତାଙ୍କ ଗୁଣ୍ଡିଆର ଟାଣପଣକୁ ଭାଙ୍ଗିବାରେ ଲାଗିଲା । ତାଙ୍କୁ ଶେଷରେ ଅପରେସନ୍ ଟେବୁଲ ଉପରେ ଶୋଇବାକୁ ପଡ଼ିଲା । ସେ ରୂପାନନ୍ଦରୁ ସ୍ୱରୂପାନନ୍ଦ ହୋଇଗଲେ । ପୁଣିଥରେ ଉଭୟଚର । କିନ୍ତୁ ଏଥର ଭୂମି ଓ ଜଳ ତାଙ୍କ ଚରାଭୂମି ନଥିଲା । ସେ ଇହଲୋକ ପରିକ୍ରମା ସାରି ପରଲୋକରେ ବିଚରଣ କରିବାକୁ ଲାଗିଲେ; ନଚିକେତା ହୋଇଗଲେ । ଯମଙ୍କଠାରୁ ଦିବ୍ୟଜ୍ଞାନ ଆହରଣ କରିବାର ସୁଯୋଗ ପାଇଲେ । ଦିଗପହଣ୍ଡିର ଦିବ୍ୟାଶ୍ରମ ଓ ଗୁରୁ ଶରତ ଦେବଙ୍କ ମାଧମରେ ଶିବାନନ୍ଦଙ୍କ ଯେଉଁ ବାଣୀ ତାଙ୍କ ଚେତନାରେ ପ୍ରସାରିତ ହୋଇଥିଲା ତାହା ଯମଲୋକ ପର୍ଯ୍ୟନ୍ତ ବ୍ୟାପ୍ତ ହେଲା । ନଚିକେତା କେବଳ ଉପନିଷଦୀୟ ଜ୍ଞାନର ଅଧିକାରୀ ଥିଲେ । କିନ୍ତୁ ସ୍ୱରୂପାନନ୍ଦ ଓରଫ ବିଦେହୀ ଦିନନାଥଙ୍କ ସୂକ୍ଷ୍ମ ଚେତନାରେ ଉପନିଷଦ, କୋରାନ୍, ବାଇବେଲ୍, ତ୍ରିପିଟକ ଦର୍ଶନତତ୍ତ୍ୱର ଏକ ସମନ୍ୱିତ ରୂପ ଉଦ୍‌ଭାସିତ ହୋଇଉଠିଲା । ସେ ରୂପାନନ୍ଦ, ସ୍ୱରୂପାନନ୍ଦରୁ ଦିବ୍ୟଚେତନାନନ୍ଦ ପାଲଟିଗଲେ । ଏହି ଉଭୟ ଚରିତ୍ର ଦ୍ୱାରା ସେ ହୋଇଗଲେ ପୁନର୍ନବା । ଦେହରୂପୀ ଗଛର କୋରଡ଼ରେ ଥିବା ହୃଦୟଟିରେ ପୁଣି ପ୍ରେମର ପ୍ରବାହ ପ୍ରାସାରିତ ହେଲା । **ଗଛ କୋରଡ଼ରେ ହୃଦୟ**କୁ ଉପନ୍ୟାସ ଅପେକ୍ଷା ଏକ ଦର୍ଶନକାବ୍ୟ କହିବାରେ କିଛି ଅସୁବିଧା ନାହିଁ ।

ଜୀବନ ପରି ସାରସ୍ୱତ କ୍ଷେତ୍ରରେ ମଧ ଦିନନାଥ ଉଭୟଚର । ଚିତ୍ର ଓ ସାହିତ୍ୟ ଉଭୟରେ **'ସମଂଲୀଳାୟତେ ଭାରତୀ' । ନିଶବ୍ଦରୁ ଶବ୍ଦ ଏବଂ ଶବ୍ଦରୁ ନିଶବ୍ଦକୁ ତାଙ୍କର ଯାତ୍ରା । ବିନ୍ଦୁ (ରଙ୍ଗ) ନ୍ୟାସ ଓ ଅକ୍ଷର ବିନ୍ୟାସ କଳା ସେ ପିତୃ ପୁରୁଷଙ୍କ ଠାରୁ ଦାୟାଦସୂତ୍ରରେ ଆହରଣ କରିଛନ୍ତି ।** ପିତା ଥିଲେ ଆଶୁ କବି ଏବଂ ଚିତ୍ରକର, ତା' ସହିତ ଗଭୀର ଈଶ୍ୱରବିଶ୍ୱାସୀ । ତେଣୁ ଶୈଶବରେ ଚିତ୍ର ଓ କବିତା ରଚନା ପାଇଁ ଦିନନାଥଙ୍କୁ ଖଡ଼ି ଛୁଇଁବାପାଇଁ ପଡ଼ିନାହିଁ । କଣ୍ଢେଇ, କୁଞ୍ଜ, ଡଙ୍ଗା ଇତ୍ୟାଦି ପ୍ରସ୍ତୁତ କରିବା, ପର୍ବପର୍ବାଣୀରେ ଭିତ୍ତିଚିତ୍ର ଓ ମୂର୍ତ୍ତିରେ ରଙ୍ଗ ଚଢ଼େଇବା ଇତ୍ୟାଦି ଅଭ୍ୟାସରୁ ତାଙ୍କ ହାତ ଯେପରି ଟାଣ ହୋଇଛି, ତୂଳୀ ଯେପରି ବୋଲ ମାନିଛି ସେହିପରି ନନ୍ନୀ, ଗୋକୁଳ ଭାଇନାଙ୍କ ଅନୁସରଣରେ ପଦଯୋଡ଼ି କବିତା ଲେଖିବା ତାଙ୍କପାଇଁ ବଡ଼କଥା ହୋଇ ରହିନାହିଁ । ଶିବାନନ୍ଦ ଭଜନ ମଣ୍ଡଳୀ ପାଇଁ ଭଜନ ଲେଖିବାରୁ ଆରମ୍ଭ ହୋଇଥିଲା କାବ୍ୟ ସାଧନା । ଚିତ୍ର ଓ କବିତା କୈଶୋରରୁ ହାତଧରାଧରି ହେଇ ତାଙ୍କ ସହିତ ଚାଲିଥିଲେ । ସେଥିପାଇଁ କୈଶୋର ଅତିକ୍ରମ କରିବା ପୂର୍ବରୁ ହିଁ ସେ ନିଜର କୃତିତ୍ୱ ପାଇଁ ସର୍ବଭାରତୀୟ ଚିତ୍ର ପ୍ରତିଯୋଗିତାଠାରୁ ଆରମ୍ଭ କରି ବିଭିନ୍ନ ଅନୁଷ୍ଠାନରୁ ସ୍ୱର୍ଣ୍ଣପଦକ ଓ ପ୍ରଶଂସାପତ୍ର ଆହରଣ କରିପାରିଛନ୍ତି ।

Digitized by srujanika@gmail.com

ଆଦ୍ୟ ଯୌବନରୁ ଏ ପର୍ଯ୍ୟନ୍ତ ପାଇଥିବା ସମ୍ମାନ, ସମ୍ବର୍ଦ୍ଧନା, ମାନପତ୍ର, ପୁରସ୍କାରର ତାଲିକା ମହାବିଦ୍ୟାଳୟଠାରୁ ଆରମ୍ଭ କରି ମହାମହିମ ରାଷ୍ଟ୍ରପତିଙ୍କ ପର୍ଯ୍ୟନ୍ତ ପ୍ରଲମ୍ବିତ । ଆନ୍ତର୍ଜାତିକ ସୁଖ୍ୟାତି ତ ଅଲଗା ।

ଆର୍ଥିକ ଦୁରବସ୍ଥାରୁ ଶିଳ୍ପୀଜୀବନର ଆଦ୍ୟ ସ୍ମାରକୀ ରୂପେ ପାଇଥିବା ତିନୋଟି **ସ୍ୱର୍ଣ୍ଣମୁଦ୍ରାକୁ** ବିକ୍ରି କରିସାରିବାପରେ ମହାବିଦ୍ୟାଳୟରେ ଉଚ୍ଚଶିକ୍ଷା ପ୍ରାପ୍ତିର ଆପାତ ସମ୍ଭାବନାକୁ ଜଳାଞ୍ଜଳି ଦେଇ ସେ ପାଦ ଦେଇଛନ୍ତି ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ । ଅଧକ୍ଷ ଆନ୍ତର୍ଜାତିକ ଖ୍ୟାତିସଂପନ ଚିତ୍ରଶିଳ୍ପୀ ଶିବାନନ୍ଦ ଶିଷ୍ୟ ଶରତ ଚନ୍ଦ୍ର ଦେବ । ଆରମ୍ଭ ହୋଇଛି ଚିତ୍ରବିଦ୍ୟା ସଂପର୍କୀୟ ନୂତନ ଖଡ଼ିପାଠ । **'ଅଥାତୋ ଚିତ୍ର ଜିଜ୍ଞାସା ।'** ସୂତ୍ରଟିର 'ଅଥ' ଶବ୍ଦଟି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ମହର୍ଷି ବାଦରାୟଣ ପ୍ରଣୀତ ବ୍ରହ୍ମସୂତ୍ରର ଭାଷ୍ୟକାରମାନେ ଏହାର ଅର୍ଥ ଅର୍ଥାନ୍ତର କରିବା ପାଇଁ ଗଳଦ୍‌ଘର୍ମ ପ୍ରୟାସ କରିଛନ୍ତି । ଦିନନାଥ ଶୈଶବ ଓ କୈଶୋରର ଚିତ୍ର ସାଧନା ମଧ୍ୟରେ 'ଅଥ' ଟିକୁ ଅତିକ୍ରମି ଯାଇଥିଲେ । କେବଳ ପରୀକ୍ଷାଖାତାରେ ଉତ୍ତର ଲେଖିବାରେ ଜିଜ୍ଞାସୁ ପ୍ରବୃତ୍ତିକୁ ସିମୀତ ନରଖି ଚାରୁକଳାର ସୂକ୍ଷ୍ମାତିସୂକ୍ଷ୍ମ ଭାବେ ଅଧ୍ୟୟନ, ଅନୁଶୀଳନ, ପର୍ଯ୍ୟବେକ୍ଷଣ କରିଛନ୍ତି ; ଦିଗପହଣ୍ଡି ଠାରୁ ଆରମ୍ଭ କରି ଓଡ଼ିଶା, ଭାରତ, ତିବ୍ବତ, ଚୀନ, ଇଟାଲୀ, ଗ୍ରୀକ୍, ରୋମ୍, ଫ୍ରାନ୍ସ ପ୍ରଭୃତି ଦେଶୀୟ କଳାର କ୍ରମବିବର୍ତ୍ତନ ଓ ଉଦ୍‌ବର୍ତ୍ତନର ଇତିହାସ । **ଏଇ ଜିଜ୍ଞାସାର ପ୍ରଥମ ଫଳଶ୍ରୁତି ଥିଲା ଭୁବନେଶ୍ୱର କଳାମଣ୍ଡପଠାରେ ୧୯୬୬ ମସିହାରେ ଆୟୋଜିତ ଏକଶତ ଚିତ୍ରର ପ୍ରଥମ ଏକକ ପ୍ରଦର୍ଶନୀ ଏବଂ ଦ୍ୱିତୀୟ ୧୯୬୯ ମସିହାରେ ପ୍ରକାଶିତ 'କଳା କ'ଣ ଓ କାହିଁକି ?' 'ପାଶ୍ଚାତ୍ୟ ଓ ଭାରତୀୟ କଳା', 'ଭାରତୀୟ କଳାର କ୍ରମବିକାଶ', 'ଆଧୁନିକ କଳାର ରୂପରେଖ', 'ଭାସ୍କର୍ଯ୍ୟ' ଇତ୍ୟାଦି ନଅଟି ପ୍ରବନ୍ଧର ସଂକଳନ 'ନିୟତେ ଇତି ।'** ସଦ୍ୟ ଉପନିବେଶମୁକ୍ତ ଭାରତବର୍ଷକୁ ଧସେଇ ପଶି ଆସୁଥିବା ଘନ ଓ ଆଭାସବାଦୀ ଚିତ୍ରଶିଳ୍ପ କୌଶଳ ଯୁବଶିଳ୍ପୀ ଦିନନାଥଙ୍କୁ ପ୍ରଭାବିତ କରିବା ଥିଲା ସ୍ୱାଭାବିକ । କଳାମହାବିଦ୍ୟାଳୟରେ ପାଦଥାପିବାଠାରୁ ଦୀର୍ଘ ୫୦ବର୍ଷ ଧରି ଡକ୍ଟର ପାଠୀ କଳାକ୍ଷେତ୍ରରେ ବିଭିନ୍ନ ବାଦର ଅନୁସରଣ କରିଛନ୍ତି, ପରୀକ୍ଷା କରିଛନ୍ତି, ନୂତନତାର ଅନୁସନ୍ଧାନ କରିଛନ୍ତି, ବିଭିନ୍ନ ରାଷ୍ଟ୍ରର କଳାକାରମାନଙ୍କୁ ଭେଟିଛନ୍ତି, ଆଳାପ ଆଲୋଚନା କରିଛନ୍ତି, ଚିତ୍ରଶାଳା ପରିଦର୍ଶନ କରିଛନ୍ତି ଏବଂ ଜାତୀୟ ଓ ଅନ୍ତର୍ଜାତୀୟ କ୍ଷେତ୍ରରେ ତାଙ୍କ କଳାକୃତି ରୂପାଲେଖ୍ୟ ପ୍ରଶଂସିତ ଓ ପୁରସ୍କୃତ ହୋଇଛି । ବିଭିନ୍ନ କଳାପ୍ରେମୀ ବ୍ୟକ୍ତିବିଶେଷଙ୍କ ଅତିଥି ପ୍ରକୋଷ୍ଠ ଓ ଅନୁଷ୍ଠାନମାନଙ୍କୁ ସୁଶୋଭିତ କରିଛି । ଅବଶ୍ୟ ସର୍ବତ୍ର ଓ ସର୍ବଦା ତାଙ୍କ ଚେତନାରେ ଜାଗ୍ରତ ଅଛି ଓଡ଼ିଆଶିଳ୍ପୀର କଳାନୈପୁଣ୍ୟ ଏବଂ ଓଡ଼ିଶୀ ଚିତ୍ରକଳାର ଅନନ୍ତ ବୈଚିତ୍ର୍ୟ । ଓଡ଼ିଶାର ବିଭିନ୍ନ ମନ୍ଦିରଗାତ୍ରରେ ଥିବା ଭିତ୍ତିଚିତ୍ର, ଓଡ଼ିଆ ଚିତ୍ରିତ ତାଳପତ୍ର ପୋଥିର ବିଚିତ୍ର ଚିତ୍ରସମ୍ଭାର, ମନ୍ଦିର ଗାତ୍ରର ଭାସ୍କର୍ଯ୍ୟ ପ୍ରଭୃତିର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ସେ ପରିଶେଷରେ ନିଜର ଏକ ସ୍ୱତନ୍ତ୍ର ଶୈଳୀ ଆବିଷ୍କାର କରିବା ପାଇଁ ସମର୍ଥ ହୋଇଛନ୍ତି । ତାଙ୍କର ହୃଦବୋଧ ହୋଇଛି ଅନ୍ୟର ଅନୁସରଣ କରି ଅନ୍ୟର ବରାଦ ଅନୁଯାୟୀ ନିଜକୁ ଆବୃତ୍ତ କରି, ଆଞ୍ଚଳିକତାବାଦୀର କୁତ୍ସାକୁ ଭୟ କରି ଏବଂ ନିଜ ସମ୍ପଦକୁ ବଳି ଦେଇ କୌଣସି ଶିଳ୍ପୀ ବଞ୍ଚିପାରେ ନାହିଁ । **ଗୀତଗୋବିନ୍ଦ, ଅମରୁ ଶତକ, ରସିକ ହାରାବଳୀ** ପ୍ରଭୃତି ଚିତ୍ର ପୋଥିର ସମ୍ପାଦନା, ଗୀତଗୋବିନ୍ଦର ଚିତ୍ରାୟନ, ଓଡ଼ିଶାର ପଟ୍ଟଚିତ୍ର ସହିତ **ଓଡ଼ିଶାର ପାରମ୍ପରିକ ଚିତ୍ରକଳା** ସଂପର୍କରେ ତାଙ୍କ ଗବେଷଣା ଏହି ଧାରଣାକୁ ପୁଷ୍ଟ କରିଛି । ବିସ୍ତାର, ପୃଥୁଳତା, ଶୃଙ୍ଗାରିକତା, ସହଜଲବ୍ଧ ରଙ୍ଗ ଓ ମୁଦ୍ରା ମାଧ୍ୟମରେ ଭାବ ପ୍ରକାଶନର ସ୍ୱଚ୍ଛତା ଓଡ଼ିଶୀ ଚିତ୍ରକଳାର ବିଶେଷତ୍ୱ । ଅବନ୍ତୀ ହେଉ କି ଦିଲ୍ଲୀ ହେଉ, ବନାରସ ହେଉ କି ଜାପାନ ହେଉ, ବାଲିଦ୍ୱୀପ ହେଉ କି ସୁଇଜରଲ୍ୟାଣ୍ଡର ଓଭିଗା ହେଉ, ଯେଉଁଠି ହେଉନା କାହିଁକି ରୂପାନନ୍ଦ ଦିନନାଥଙ୍କ ଚିତ୍ରରେ ଓଡ଼ିଶୀକଳାର ସ୍ୱାଭିମାନ ସୁସ୍ପଷ୍ଟ । ବିଂଶ ଶତାବ୍ଦୀ ଶେଷବେଳକୁ ଶ୍ରୀଯୁକ୍ତ ପାଠୀଙ୍କ **ଚିତ୍ରଜିଜ୍ଞାସା** ଆପାତତଃ ପୂର୍ଣ୍ଣତାପ୍ରାପ୍ତ ହୋଇଛି । କିନ୍ତୁ ଜଣେ ରୂପଜୀବୀ ପାଇଁ ଜିଜ୍ଞାସାର ଅନ୍ତ କାହିଁ !

ନିଜ ପାଇଁ ଚିତ୍ରଶିଳ୍ପୀର ମାନ୍ୟତା ଆହରଣ କରିସାରିବା ପରେ, ଏପଲ୍ ର ଚିତ୍ରାଙ୍କନଠାରୁ ଉଠିଆସି ଗୀତଗୋବିନ୍ଦର ଚିତ୍ରଭାଷ୍ୟ ରଚନା କରିଥିବା, ଶିଳ୍ପକଳା ମନ୍ଦିରରୁ ଓଭିଗାସ୍ଥିତ ଏବର୍‌ହାର୍ଡ୍ ଫିସର୍‌ଙ୍କ ଗବେଷଣା

Digitized by srujanika@gmail.com

ପ୍ରକୋଷ୍ଠରେ ପହଞ୍ଚିଥିବା କିମ୍ବା ବାରାଣସୀ ସ୍ଥିତ ଆଲିସ୍ ବୋନର୍ ପ୍ରତିଷ୍ଠାନର ନିର୍ଦ୍ଦେଶକ ରୂପେ କାର୍ଯ୍ୟଭାର ଗ୍ରହଣ କରିଥିବା, ପୁଞ୍ଜିକୟାଁ, ଓଡ଼ାଶିଙ୍ଗି ପରିକ୍ରମା ସାରି ଟୋକିଓ, ଜୁରିକ୍, ପ୍ୟାରିସ୍, ଲଣ୍ଡନ, କାଏରୋ ଇତ୍ୟାଦି ପରିଭ୍ରମଣ କରିଥିବା ଏବଂ ଡ୍ରଇଁମାଷ୍ଟରୁ କଳାଶ୍ରୀ ଉପାଧିରେ ବିଭୂଷିତ ଦିନନାଥ ଆରମ୍ଭ କରିଛନ୍ତି **ଅଥାତୋ କାବ୍ୟ ଜିଜ୍ଞାସା** । ଏ କ୍ଷେତ୍ରରେ ମଧ କଳା ଗବେଷେଣା ପରି ସେ 'ଅଥ'କୁ ଅତିକ୍ରମି ଯାଇଛନ୍ତି । ଶ୍ରୀଯୁକ୍ତ ପାଠୀଙ୍କ ପ୍ରଥମ ସାହିତ୍ୟକୃତି ତାଙ୍କ ଆତ୍ମଜୀବନୀର ପ୍ରଥମ ଭାଗ **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** ପ୍ରକାଶ ପାଏ ୧୯୯୦ ମସିହାରେ । ଦିଗପହଣ୍ଡିଠାରୁ ଭୁବନେଶ୍ୱର ଯେତେ ଦୂର **ଚିୟତେ ଇତି** ଠାରୁ **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେର** ଦୂରତା ତା'ଠାରୁ କମ୍ ନୁହେଁ । ବରଂ ବହୁତ ଅଧିକ । ବହିଟି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ହଠାତ୍ ଚାଞ୍ଚଲ୍ୟ ସୃଷ୍ଟି କରେ । ଓଡ଼ିଆ ସାହିତ୍ୟିକମାନେ ରୂପଜୀବୀ ପ୍ରାଣୀଟିର ନୂତନ ରୂପକୁ କଣେଇ ଚାହାଁନ୍ତି । ତଥାପି ଓଡ଼ିଆଭାଷା ଶିକ୍ଷା ଦେବାପାଇଁ ବିଶ୍ୱ ବିଦ୍ୟାଳୟମାନେ ଏହାକୁ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ କରନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀ ବହିଟିକୁ ପୁରସ୍କୃତ କରନ୍ତି । ପାଠକୀୟ ପ୍ରଶଂସାରେ ପ୍ରୋତ୍ସାହିତ ହୋଇ ତୂଳୀରୁ କଲମକୁ ଆସୁଥିବା ସାରସ୍ୱତ ପଥଚାରୀ ଦିନନାଥ ପୃଷ୍ଠ ପରେ ପୃଷ୍ଠ ତାଙ୍କ ଜୀବନଗାଥା ପ୍ରକାଶ କରି ଚାଲିଛନ୍ତି । **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ, ପୁଞ୍ଜିକୟାଁର ଫକୀର, ଚିଲିକା ପାଣିର ଛାଇ, ରୂପଜୀବୀର ଡାଏରୀ**, ଭୀମଦେବଙ୍କ ରାଜଧାନୀରୁ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ପହଁଚିବାର ତିକ୍ତ ମଧୁର ଜୀବନାନୁଭୂତିକୁ ନେଇ ଲିଖିତ । ଆଜି ହୁଏତ ଏହା ଅଢ଼େଇ ତିନି ଘଣ୍ଟାର ରାସ୍ତା । କିନ୍ତୁ ଦିନନାଥଙ୍କୁ ଏତିକି ରାସ୍ତା ଅତିକ୍ରମ କରିବା ପାଇଁ ଚାରି ଦଶନ୍ଧି ଲାଗି ଯାଇଥିଲା। ଆସିଲାବେଳକୁ ତାଙ୍କୁ କେହି ବାଟେଇବାକୁ ଆସିନଥିଲେ । ନିଜ ସହିତ ଅବହେଳିତ ଡ୍ରଇଁମାଷ୍ଟ୍ରମାନଙ୍କ ପାଇଁ ସେ ଏକାକୀ ହିଁ ହୋଇଥିଲେ ନିଜ ରାସ୍ତାର ପଥିକ । 'ଏକଲା ଚଲୋରେ ।' ଚାଲିବାର ଏ ଅନୁଭୂତି ହିଁ ତାଙ୍କ ଜୀବନ କାହାଣୀ ଗୁଡ଼ିକରେ ରୂପାୟିତ । ପ୍ରଥମ ତିନୋଟି ପୁସ୍ତକର ପ୍ରେକ୍ଷାପଟ ଦିଗପହଣ୍ଡି ଓ ଖଲ୍ଲିକୋଟ । ଶେଷଟିର ଭୁବନେଶ୍ୱର । ପାହାଚ ପାହାଚ ଚଢ଼ିବାର ଅନୁଭୂତି । ତେଣୁ ପ୍ରଥମ ତିନୋଟି ଭୁବନେଶ୍ୱରିଆଙ୍କୁ ଗଞ୍ଜାମିଆ ଗଞ୍ଜାମିଆ ଗନ୍ଧ ହେଉଥିଲାବେଳେ ଚତୁର୍ଥଟି ଭୁବନେଶ୍ୱରିଆ ବାସନାରେ ସୁବାସିତ । ପ୍ରଥମ ତିନୋଟି ପଢ଼ିଲାବେଳେ ଯେଉଁ ନୈର୍ବ୍ୟକ୍ତିକ ଆନନ୍ଦ ଉପଭୋଗ କରି ହେଉଥିଲା, ଶେଷ ପୁସ୍ତକ ପଢ଼ିଲାବେଳେ **ଚିଲିକା ପାଣିରେ ଛାଇ** ଦେଖିବାର ଆନନ୍ଦ ନାହିଁ, ଅଛି ବିକ୍ଷୁବ୍ଧ ସାଗରତଟରେ ବସି ଢ଼େଉ ଗଣିବାର ଆନନ୍ଦ । ସେଠି ଦିନନାଥ ଡ୍ରଇଁମାଷ୍ଟ୍ରଟିଏ କିମ୍ବା କଳା ଶିକ୍ଷାପାଇଁ ଆସିଥିବା ଛାତ୍ରଟିଏ, ଯୁବସୁଲଭ ଚପଳତାରେ ଉନ୍ମାଦିତ । କିନ୍ତୁ ରୂପକୁ ଜୀବିକା କରି ଭୁବନେଶ୍ୱରରେ ପହଞ୍ଚିଥିବା ଦିନନାଥ ମହାଭାରତର ଅର୍ଜୁନ ପରି ସବ୍ୟସାଚୀ–ଗୋଟିଏ ହାତରେ ତୂଳୀ ଏବଂ ଅନ୍ୟ ହାତରେ କଲମ । ଏମାନେ ନିଜର ସ୍ୱାଭାବିକ କର୍ମ ସହ ପ୍ରତିପକ୍ଷର ଆହ୍ୱାନକୁ ସାମନା କରିବା ପାଇଁ ସମର୍ଥ । ଚେତନାରେ ଗୋପବନ୍ଧୁଙ୍କ ବାଣୀ, 'ପଛ ଘୁଞ୍ଚା ନାହିଁ ବୀରର ଜାତକେ ।' କେବଳ ଶକଟ, ଗରୁଡ଼ କି ପଦ୍ମବ୍ୟୂହ ନୁହେଁ, ଚକ୍ରବ୍ୟୂହ ଭେଦ କରି ପ୍ରତିପକ୍ଷମାନଙ୍କୁ ସେ ଚକିତ କରିଛନ୍ତି । ଗୋଟିଏ ପରେ ଗୋଟିଏ ପ୍ରତିବନ୍ଧକକୁ ଅତିକ୍ରମ କରି ଅବଲୀଳାକ୍ରମେ ଉପରକୁ ଉପରକୁ ଉଠିବାର ବିଚିତ୍ର କାହାଣୀ ହିଁ ସେ ପାଠକ ମାନଙ୍କୁ ଶୁଣାଇଛନ୍ତି । ଯୁଦ୍ଧରେ ଜୟକରି ଉଲ୍ଲସିତ ସେନାପତିଟିଏ ପରି ସେ ଆମକୁ ମଧ ତାଙ୍କ ଉଲ୍ଲାସରେ ସମଭାଗୀ ହେବାପାଇଁ ନିଜ ବାକ୍ ଚାତୁରୀରେ ସମର୍ଥ ହୋଇଛନ୍ତି । ଜୀବନସଂଗ୍ରାମରେ ସେ କେଉଁଠି ବଳିଦତ୍ତ ହୋଇନାହାନ୍ତି ବରଂ ଉଭୟ ଦୀନନାଥ ଓ ଦିନନାଥ ତୁଲ୍ୟ ବହୁ ଦୀନ ଡ୍ରଇଁମାଷ୍ଟ୍ରଙ୍କୁ ଉଦ୍ଧାର କରିଛନ୍ତି ଏବଂ ନିଜେ ତେଜୋଦୀପ୍ତ ବିବସ୍ୱାନ ପରି ଉଦ୍‌ଭାସିତ ହୋଇଛନ୍ତି ।

Booker, T.Washigton ତାଙ୍କ ଆଦର୍ଶ –

"Success is to be measured not so much by the position that -one has reached in life as by the obstacles which he has overcome."

ଚିତ୍ର ଜିଜ୍ଞାସରୁ କାବ୍ୟ ଜିଜ୍ଞାସାକୁ ଆସିବା ବାଟରେ ଦିନନାଥ କିଛି ସମୟ ପାଇଁ ଅଟକି ଯାଇଛନ୍ତି ଅର୍ଥ ଜିଜ୍ଞାସାଠାରେ । ଦିଗପହଣ୍ଡିରେ ଥିଲାବେଳେ ପରିବାର ପରିଚାଳନା ପାଇଁ ସେ ଡ୍ରଇଁମାଷ୍ଟ୍ର ଚାକିରିଟିଏ

Digitized by srujanika@gmail.com

ନିମିତ୍ତ ହନ୍ତସନ୍ତ ହେଉଥିଲେ । ଆର୍ଥିକ ଦୁରବସ୍ଥା ତାଙ୍କୁ କଳବଲ କରୁଥିଲା । ଭୁବନେଶ୍ୱର ଆସି ସେ ରୂପଜୀବୀ ହେବା ପାଇଁ ଆରମ୍ଭ କଲେ କଠୋର ସାଧନା । ଅବଶ୍ୟ ରୂପଜୀବୀ ଶବ୍ଦଟି ସୌଭାଗ୍ୟବଶତଃ ରୂପଜୀବୀର ପୁଂଲିଙ୍ଗବାଚକ ଶବ୍ଦ ନୁହେଁ । କିନ୍ତୁ ଦିନନାଥ ଉଭୟ ଗୋଷ୍ଠୀକୁ ବଡ଼ ଚମତ୍କାର ଭାବରେ ଏକୀଭୂତ କରି ଦେଇଛନ୍ତି । ଭାଷାର ବ୍ୟଞ୍ଜନା ମଧ୍ୟରେ କଥାଟି ଉପଭୋଗ୍ୟ ହେଲେ ସୁଦ୍ଧା ଜଣେ ପ୍ରତିଭାଧରର ବେଦନା ତା' ଭିତରୁ ବାରି ନେବା କଷ୍ଟକର ନୁହେଁ । ପ୍ରତିଭାଧରମାନଙ୍କ ଏହା ହିଁ ତ ଭାଗ୍ୟଲିପି । ପ୍ରତିଭାର ସ୍ୱାମୀ ଯେତେବେଳେ ହୁଏ ଅବହେଳିତ, ନିଷ୍ପେସିତ ଓ ଲାଞ୍ଛିତ, ସେତେବେଳେ ପ୍ରତିଭା ରୂପଜୀବା ହେବା ପାଇଁ ବାଧ୍ୟ ହୁଏ । ନିଜକୁ ବଞ୍ଚାଇବାପାଇଁ ବିଭିନ୍ନ ପନ୍ଥାର ଆଶ୍ରୟ ନିଏ । ଦିନେ ବ୍ରଜନାଥ ବଡ଼ଜେନା ମଧ୍ୟ ଏହି ପନ୍ଥାର ଆଶ୍ରୟ ନେଇଥିଲେ । ଜଣେ ରାଜାଙ୍କଠାରୁ ଆଉ ଜଣେ ରାଜା, ରାଜାଙ୍କଠାରୁ ଜମିଦାର, ଜମିଦାରଙ୍କଠାରୁ ଗ୍ରାମାଧିକାରୀ ଏବଂ ଗ୍ରାମବାସୀଙ୍କୁ ସନ୍ତୁଷ୍ଟ କରିବାପାଇଁ ଗ୍ରାମରୁ ଗ୍ରାମାନ୍ତର ପରିକ୍ରମା କରିଥିଲେ। ଢେଙ୍କାନାଳରୁ ସୁଦୂର ଶ୍ରୀକାକୁଲମ୍ ଜିଲ୍ଲାର ବାରଙ୍ଗ ପର୍ଯ୍ୟନ୍ତ ସେ ଘୂରିଛନ୍ତି । କୃଷ୍ଣ କାବ୍ୟରୁ ଶାକ୍ତକାବ୍ୟ, ଶାକ୍ତକାବ୍ୟରୁ, ସମରକାବ୍ୟ, ସମରକାବ୍ୟରୁ ଗଳ୍ପରଚନା ସହିତ ତାଳପତ୍ରରେ ଚିତ୍ରାଙ୍କନ ମାଧ୍ୟମରେ ବଞ୍ଚିବା ପାଇଁ ସଂଗ୍ରାମ କରିଛନ୍ତି । ସେହିପରି ଦିନନାଥ ପ୍ରଥମେ ଚିତ୍ରଶିଳ୍ପୀ ପରେ କଳା ଗବେଷକ, ପରେ ପରେ ପ୍ରୌଢ଼ଶିକ୍ଷା ସହାୟକ, ଜୀବନୀ ଓ ଭ୍ରମଣ କାହାଣୀର ଲେଖକ, କଥାକାର, ସରକାରୀ କର୍ମଚାରୀ, କଳା ନିର୍ଦ୍ଦେଶକ ଇତ୍ୟାଦି ଇତ୍ୟାଦି । କିନ୍ତୁ ଗଞ୍ଜାମୀ ଝିଅପରି ସେ ସବୁ ପାଇଟିକୁ ପାରିବାର । ସବୁ ପୁଣି ନିଖୁଣ, କାହାରି ବାଛିବାର ନାହିଁ । ଶ୍ୟାମ ସୁନ୍ଦର  ରାଜଗୁରୁ, ସତ୍ୟ ନାରାୟଣ ରାଜଗୁରୁ, ପଦ୍ମନାଭ ନାରାୟଣ ଦେବ, ଶରତଚନ୍ଦ୍ର ଦେବ, ଗୋପୀନାଥ ନନ୍ଦ ପ୍ରଭୃତିଙ୍କ ପରି ସେ ନିଜ କ୍ଷେତ୍ରରେ ଏକ ଅଭିନବମାର୍ଗର ପଥପ୍ରଦର୍ଶକ। କଳାରେ ସେ ଯେପରି ଓଡ଼ିଆତ୍ୱର ବିଶେଷତ୍ୱ ପ୍ରତିଷ୍ଠା କରିପାରିଛନ୍ତି, ସେହିପରି କଥାସାହିତ୍ୟ, ଆତ୍ମଜୀବନୀ ରଚନାରେ ଆଣିଛନ୍ତି ବୈପ୍ଲବିକ ପରିବର୍ତ୍ତନ । ଶବ୍ଦକୁ ଚିତ୍ରରେ ଏବଂ ଚିତ୍ରକୁ ଶବ୍ଦରେ ରୂପାୟନ କରିବା ବହୁ କମ୍ କଳାକାର ଓ ସାହିତ୍ୟିକଙ୍କ ଭାଗ୍ୟରେ ସମ୍ଭବିଥାଏ ।

ଓଡ଼ିଆରେ ଆତ୍ମଜୀବନୀ ପୁସ୍ତକର ଅଭାବ ନାହିଁ । ଫକୀର ମୋହନଙ୍କଠାରୁ ଆରମ୍ଭ କରି ସାଂପ୍ରତିକ ସମୟ ପର୍ଯ୍ୟନ୍ତ ବହୁ କବି, ସାହିତ୍ୟିକ, ଶିକ୍ଷକ, ରାଜନେତା, ପଦପଦବୀରେ ଅଧିଷ୍ଠିତ ସରକାରୀ ଓ ସାମରିକ କର୍ମଚାରୀ ନିଜ ନିଜର ଜୀବନାନୁଭୂତିକୁ ଗ୍ରନ୍ଥାୟନ କରିଛନ୍ତି । ପ୍ରତ୍ୟେକଙ୍କ ଅନୁଭୂତି ନିଆରା । ପ୍ରତ୍ୟେକଙ୍କ ଅନୁଭୂତିରୁ କିଛି ଶିଖିବାର ଅଛି, ଜାଣିବାର ଅଛି, କିନ୍ତୁ ସବୁ ଆତ୍ମଜୀବନୀ ଜୀବନୀ ସାହିତ୍ୟର ପରିସରଭୁକ୍ତ ନୁହଁନ୍ତି । ସାହିତ୍ୟର ମୂଳକଥା ରୋଚକତା । ଗପ ଶୁଣାଇବା, ଉପଦେଶ ଦେବା କିମ୍ବା ସାଙ୍ଗରେ ଚାଲିଥିବା ବନ୍ଧୁମାନଙ୍କ ଉଚ୍ଛ୍ୱସିତ ପ୍ରଶଂସା କିମ୍ବା କୁତ୍ସାରଟନା କରିବା ସାହିତ୍ୟ ନୁହେଁ । ତେଣୁ ଯେଉଁ ସ୍ୱଳ୍ପ କେତୋଟି ଆତ୍ମଜୀବନୀ ଜୀବନୀ ସାହିତ୍ୟ ରୂପେ ବିବେଚିତ, ତା' ମଧ୍ୟରେ ଦିନନାଥଙ୍କ କୃତିଗୁଡ଼ିକ ନିଶ୍ଚିତ ଭାବେ ଅଗ୍ରାଧିକାର ପାଇବେ । ଏଥିରେ ଦ୍ୱିମତ ନାହିଁ । ସତ୍ ସାହିତ୍ୟର ସମସ୍ତ ବିଭବକୁ ନେଇ ଏଗୁଡ଼ିକ ଋଦ୍ଧିମନ୍ତ । ଚଲାପଥ ସରି ନାହିଁ, ତେଣୁ ଆଗାମୀ ଦିନକୁ ଅପେକ୍ଷା ।

ଜୀବନକୁ ଆତ୍ମଜୀବନୀ ଭିତରେ ବାନ୍ଧି ରଖିବା ପାଇଁ ଚେଷ୍ଟା କରିବା ଭିତରେ ସେ ଯେଉଁ ସଫଳତାର ସ୍ୱାଦ ଆସ୍ୱାଦନ କଲେ ସେଥିରୁ ଆରମ୍ଭ ହେଲା ତାଙ୍କ **କାବ୍ୟ ଜିଜ୍ଞାସା** । ବିଂଶ ଶତାବ୍ଦୀର ଶେଷ ଦଶକ ବେଳକୁ କିଛି ଆର୍ଥିକ ସ୍ୱଚ୍ଛଳତା ଆସି ଯାଇଥିଲେ ସୁଦ୍ଧା ବ୍ୟକ୍ତିଗତ ଜୀବନରେ ଦେଖା ଦେଇଥିବା ଦୁର୍ବିପାକ ହୋଇ ପଡ଼ିଥିଲା ଦୁର୍ବିସହ । ଏହି ଦୁର୍ବହ ଯନ୍ତ୍ରଣାକୁ ତୂଳୀ ମାଧ୍ୟମରେ ରୂପ ଦେବା ପାଇଁ ପ୍ରୟାସ କରୁଥିବା ବେଳେ କଲମ ତାଙ୍କୁ ଆଶ୍ୱାସନା ଦେବା ପାଇଁ ହାତ ବଢ଼ାଇଛି । ତାଙ୍କର ହୃଦବୋଧ ହୋଇଛି ସେ କାବ୍ୟସୂତ୍ରର 'ଅଥ'କୁ ଅତିକ୍ରମ କରିଛନ୍ତି । ବିଗତ ଦିନର **ଦିବ୍ୟଜୀବନ ସଂଘ ଭଜନାବଳୀ, ଶିବାନନ୍ଦ ଓ ଦିବ୍ୟଜୀବନ** ଏବଂ **ସ୍ୱାମୀ ଶିବାନନ୍ଦଙ୍କ ଗୀତାନୁବାଦ** ତାଙ୍କୁ ପୁଣି ହାତଠାରି ଡ଼ାକିଛି । **ଓଡ଼ିଶାର କଳା ଓ ସ୍ଥାପତ୍ୟ, ଆଦିମ ମଣିଷର କଳା, ଓଡ଼ିଶାର ଲୋକକଳା** ପରି ପ୍ରୌଢ଼ ସାହିତ୍ୟ, **ଅବନ୍ତୀ** ପାଇଁ ରଚିତ କବିତାବଳୀ, **ନୀଳହ୍ରଦର ଚିତ୍ରକର** ଭ୍ରମଣ କାହାଣୀ, **ଭବଘୁରା ଭବନାଥ,**

Digitized by srujanika@gmail.com

**ସୁନାମାଛ** ପରି କ୍ଷୁଦ୍ରଗଳ୍ପ ମାଧ୍ୟମରେ ସାହିତ୍ୟର ବିଭିନ୍ନ ବିଭାଗକୁ ନେଇ ସେ ଯେଉଁ ପରୀକ୍ଷା ନିରୀକ୍ଷା କରିଥିଲେ ତାହା ତାଙ୍କ କାବ୍ୟଜିଜ୍ଞାସା ପାଇଁ ଖୋରାକ ଯୋଗାଉଥିଲା । ତା' ସହିତ ତାଙ୍କ ଦ୍ୱାରା ଏବଂ ଅନ୍ୟମାନଙ୍କ ଦ୍ୱାରା ଆୟୋଜିତ ଚିତ୍ର ପ୍ରଦର୍ଶନୀ କରିବା ଓ ଦେଖିବାର ଅନନ୍ୟ ଅନୁଭୂତି । ରୂପ ସମ୍ଭାରକୁ ସଜାଇ ଦେଇ ରୂପଜୀବା ପରି ରୂପଜୀବୀଟିଏ ଚିହ୍ନରା ଗ୍ରାହକପାଇଁ ଅପେକ୍ଷା କରିଥିବ ମଧ୍ୟ ଭାଗରେ । ଚା ଓ ସିଗାରେଟର ଆସର ଭିତରେ ଜମିଥିବ ଗପ । କିନ୍ତୁ କାନ ଥିବ ଦର୍ଶକମାନଙ୍କ ଉପହାସ ଓ ପ୍ରଶଂସା ପରି ତିକ୍ତ ମଧୁର ମନ୍ତବ୍ୟ ଶୁଣିବା ପାଇଁ ଉଦ୍‌ଗ୍ରୀବ । ଦର୍ଶକ ବିଭିନ୍ନ କିସମର । କିଏ ହୁଏତ କଳାକାର, କିଏ କଳାପ୍ରେମୀ, କିଏ କଳା ସମାଲୋଚକ, କିଏ ଅବା ଆସିଥିବ ପାର୍କ ପରିବର୍ତ୍ତେ ପ୍ରେମିକ କିମ୍ବା ପ୍ରେମିକା ସହ କିଛି ସମୟ ବିତେଇ ଦେବା ପାଇଁ । ଚିତ୍ରଟିଏ ବିକ୍ରି ହେଉ ବା ନ ହେଉ କିନ୍ତୁ ମନ୍ତବ୍ୟ ଗୁଡ଼ିକ ଚିତ୍ରଶିଳ୍ପୀ ପାଇଁ ଅତ୍ୟନ୍ତ ଉପାଦେୟ । ଏଠି ସେ ଦର୍ଶକର ଅଜ୍ଞାତରେ ତା' ସହିତ ସଂପର୍କ ସ୍ଥାପନ କରେ । ସ୍ରଷ୍ଟା ଓ ଭୋକ୍ତାର ପରିପୂରକତାରେ ହିଁ କଳାର ସାର୍ଥକତା । ସାହିତ୍ୟକୁ ଆସିବା ପୂର୍ବରୁ ଦିନନାଥ ଏହି ସଂପର୍କକୁ ଅନୁଭବିଛନ୍ତି । ଆଉ ପୁଣି ଅନୁଭବିଛନ୍ତି ଓଡ଼ିଆ ସାହିତ୍ୟରେ ଉପନ୍ୟାସର ଗତାନୁଗତିକତା ଓ ମରୁଡ଼ିକୁ । ଗବେଷକର ଦୃଷ୍ଟି ନେଇ କଳନା କରିଛନ୍ତି ତା'ର ହେତୁ– ଅନୁଭୂତିର ଅପ୍ରାଚୁର୍ଯ୍ୟ ଏବଂ ବହୁ ଶାସ୍ତ୍ରଦର୍ଶିତାର ଅଗଭୀରପଣ । ଚିତ୍ରଶାଳାରେ ସେ ଯେଉଁ ସବୁ କାବ୍ୟ କବିତା, ବେଦ, ଉପନିଷଦ, ଶିଳ୍ପ ଓ କଳାଶାସ୍ତ୍ର, ସମାଜତତ୍ତ୍ୱ ଓ ନୃତତ୍ତ୍ୱ, ପୁରାଣ ଓ ତନ୍ତ୍ର ସବୁକୁ ଅଧ୍ୟୟନ କରିଥିଲେ ତାକୁ ପୁଣିଥରେ ଗଦ୍ୟ ମହାକାବ୍ୟ ରଚନାରେ ହାତ ଦେବା ପୂର୍ବରୁ ନିଠେଇ ପଢ଼ିବା ପାଇଁ ଚେଷ୍ଟା କରିଛନ୍ତି, ସେ ସବୁର ଗହନ ଇଲାକାରେ ପ୍ରବେଶ କରିବା ପାଇଁ ବୌଦ୍ଧିକ କସରତ କରିଛନ୍ତି । ଜୀବନର ଅବତରଣ ଓ ଉତ୍ତରଣ ଭିତରେ ଅସୁମାରି ଦୁଃଖକୁ ଭେଟି ନଥିଲେ, ଭବ ଘୂରିବାର ଅପର୍ଯ୍ୟାପ୍ତ ଅନୁଭୂତି ନଥିଲେ, ଇତିହାସ ଓ କଳାର ଛାତ୍ରଭାବେ ବହୁ ଶାସ୍ତ୍ରଦର୍ଶୀ ହେବାର ସୁଯୋଗ ଆସିନଥିଲେ, ଜ୍ଞାନ ସାଗରର ଗଭୀରତା ମାପିବା ପାଇଁ ଗବେଷକର ସୂକ୍ଷ୍ମ ଦୃଷ୍ଟି ନଥିଲେ, ବଂଶାନୁକ୍ରମରେ କଳାର୍ଚ୍ଚାର ପରମ୍ପରା ନଥିଲେ ଏବଂ ସର୍ବୋପରି ସନ୍ୟାସୀର ଜୀବନଚର୍ଯ୍ୟା ନଥିଲେ ହଠାତ୍ ଚାରି ବର୍ଷ ଭିତରେ ଚାରୋଟି ଅଣପାରମ୍ପରିକ, ଚାରୋଟି ଅନନ୍ୟ ଜ୍ଞାନଗର୍ଭକ ତଥାପି ସୁଖପାଠ୍ୟ ସୁଦୀର୍ଘ ଉପନ୍ୟାସ ଦେବାପାଇଁ କୌଣସି ଲେଖକ ସମର୍ଥ ହୋଇନପାରେ । କାଳାନ୍ତରେ ଆଉ ଦୁଇଟି ଉପନ୍ୟାସ **ଗଛ କୋରଡ଼ରେ ହୃଦୟ** ଏବଂ **ରୂପ ରଙ୍ଗ ଅନଙ୍ଗ** । ଏକ ଧଡ଼ସରେ ଏପରି ଦୀର୍ଘ ଉପନ୍ୟାସ ରଚନା କରିବା କେତେ ଶ୍ରମସାଧ୍ୟ ତାହା କେବଳ ଜଣେ ସମଧର୍ମା ସାଧକ ହିଁ ଅନୁଭବ କରିପାରିବ । **'କବି ବିନା କେ ଜାଣିବ ଏଥି କଷ୍ଟ ଯେତେ ।'**

ଦିନନାଥ ତାଙ୍କ ପ୍ରଥମ ଉପନ୍ୟାସକୁ ମେଟାଫିକ୍‌ସନ ରୂପେ ପରିଚିତ କରାଇଛନ୍ତି । ପରବର୍ତ୍ତୀ ଉପନ୍ୟାସଗୁଡ଼ିକ ଚିତ୍ରୋପନ୍ୟାସ ବୋଲି ତାଙ୍କ ଦ୍ୱାରା ସ୍ୱୀକୃତ । ମେଟା ହେଉ କି ଚିତ୍ର ହେଉ ସେଗୁଡ଼ିକ ଉପନ୍ୟାସ । ସେ ସବୁର ସଂଜ୍ଞା ଓ ସ୍ୱରୂପ ଖୋଜି ବସିଲେ ଉପନ୍ୟାସ ପାଠର ବିମଳ ଆନନ୍ଦ ଉପଭୋଗ କରିବା ସମ୍ଭବ ହେବ ନାହିଁ । ଉପନ୍ୟାସ ଗୁଡ଼ିକର କାନ୍‌ଭାସ୍ ଅତ୍ୟନ୍ତ ବିସ୍ତୃତ–ଦିଗପହଣ୍ଡିଠାରୁ ଜାପାନ ପର୍ଯ୍ୟନ୍ତ, ଗଣିଆ ନାଳଠାରୁ ଗଙ୍ଗାପର୍ଯ୍ୟନ୍ତ, ଜନ୍ମମାଟିଠାରୁ ଯମଲୋକ ପର୍ଯ୍ୟନ୍ତ । ତା' ଭିତରେ ଯେଉଁ ଚରିତ୍ରଗୁଡ଼ିକ ଆତଯାତ ହୋଇଛନ୍ତି, କିଏ ଓଡ଼ିଆ ତ କିଏ ଜାପାନୀ, କିଏ ଇଂରେଜ ତ କିଏ ଜର୍ମାନୀ, କିଏ ରାକ୍ଷସ ତ କିଏ ଦେବତା, କିଏ ଭୋଗ ପିପାସୁ ତ କିଏ ସନ୍ନ୍ୟାସୀ, କିଏ ଗେ' ତ ଆଉ କିଏ ଲେସ୍‌ବିଏନ୍ । ପ୍ରତ୍ୟେକଟି ଉପନ୍ୟାସ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଶାସ୍ତ୍ର କିମ୍ବା ଦର୍ଶନ ଉପରେ ଆଧାରିତ । ଯେପରି ଶ୍ଳୋକଛନ୍ଦ ଚାରୁକଳା, ପୁନର୍ନବା ଭାସ୍କର୍ଯ୍ୟ, ସାୟୋନାରା ଆଧିସଂସ୍କୃତି, ଗଙ୍ଗାବତରଣ ଯୋଗ ଓ ତନ୍ତ୍ର, ଗଛ କୋରଡ଼ରେ ହୃଦୟ, ଆତ୍ମତତ୍ତ୍ୱ ଇତ୍ୟାଦି । ମଝି ମଝିରେ ତା ଭିତରକୁ ପଶି ଆସିଛନ୍ତି ଅନ୍ୟାନ୍ୟ ଶାସ୍ତ୍ରୀୟ ତତ୍ତ୍ୱ ବିମର୍ଶ । ନୀରସ ଶାସ୍ତ୍ରଜ୍ଞାନକୁ ପରିବେଷଣ କରିବା ପାଇଁ, କଥାବସ୍ତୁ ପରିକଳ୍ପନା ଓ ତା'ର ଗତି ନିୟନ୍ତ୍ରଣରେ ଔପନ୍ୟାସିକ ପାଠୀଙ୍କ କୃତିତ୍ୱ ନିଶ୍ଚିତ ଭାବେ ଅଭିନନ୍ଦନୀୟ । ସଂସ୍କୃତ କାବ୍ୟଶାସ୍ତ୍ରରେ କାବ୍ୟଭେଦ ନିରୂପଣ ଅବସରରେ ଅଳଂକାର ଶାସ୍ତ୍ର ପ୍ରଣେତାମାନେ ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀର କାବ୍ୟକୁ 'କାବ୍ୟଶାସ୍ତ୍ର'

Digitized by srujanika@gmail.com

ରୂପେ ନାମିତ କରିଛନ୍ତି । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଶାସ୍ତ୍ର ଅଧ୍ୟାପନା ନିମିତ୍ତ ଶାସ୍ତ୍ରଧୂରୀଣ କବି ପୌରାଣିକ କିମ୍ବା କଳ୍ପିତ କଥାବସ୍ତୁକୁ ଭିତ୍ତିକରି କାବ୍ୟମାନ ରଚନା କରିଥାନ୍ତି । ଉଦାହରଣସ୍ୱରୂପ –କୌଣସି କାରଣରୁ ଶିଷ୍ୟଟିକୁ ବ୍ୟାକରଣ ଶିକ୍ଷାଦେବା ସମ୍ଭବ ନ ହେବାରୁ କବି ଭଟ୍ଟି ରାମାୟଣ କଥାବସ୍ତୁକୁ ଆଧାର କରି ରଚନା କରିଥିଲେ 'ରାବଣ ବଧ' କାବ୍ୟ ଏବଂ ତା' ମାଧମରେ ଶିଷ୍ୟର ବ୍ୟାକରଣ ଶିକ୍ଷା ସମ୍ଭବ ହୋଇଥିଲା । **ଦିନନାଥ ସେହିପରି ତାଙ୍କ ଉପନ୍ୟାସ ମାଧମରେ ଚାରୁ ଓ କାରୁକଳା, ଦର୍ଶନ, ତନ୍ତ୍ର, ଚୌର୍ଯ୍ୟବୃତ୍ତିକ ଇତ୍ୟାଦି ଶାସ୍ତ୍ରର ଜଟିଳତତ୍ତ୍ୱ ସମୂହକୁ ସରଳ ଭାବେ ବୁଝାଇବା ପାଇଁ ଉପନ୍ୟାସକୁ ମାଧମ କରିଛନ୍ତି । ତେଣୁ ତାଙ୍କ ଉପନ୍ୟାସଗୁଡ଼ିକ କେବଳ ମନୋରଞ୍ଜନଧର୍ମୀ ନୁହେଁ ଗୋଟିଏ ଗୋଟିଏ ଶାସ୍ତ୍ର ଉପନ୍ୟାସ ।** ଅବଶ୍ୟ ନିଜର ଆହୃତ ଜ୍ଞାନ ସମୁଦ୍ରରେ ଅବଗାହନ କରୁ କରୁ ତଟଦେଶକୁ ଫେରି ଆସିବାର ଆବଶ୍ୟକତାକୁ ଅନେକ ସମୟରେ ଲେଖକ ଭୁଲି ଯାଆନ୍ତି । ଫଳରେ ସେ ନିଜ ଭିତରେ ତଲ୍ଲୀନ ରହି ପାଠକର ତନ୍ମୟୀ ଭବନ ପ୍ରକ୍ରିୟାକୁ ସ୍ଥାନେ ସ୍ଥାନେ ପ୍ରତିହତ କରିବା ନିଦର୍ଶନର ମଧ ଅଭାବ ନାହିଁ । ପାଠ ଓ ପାଠକ ମଧରେ କ୍ଷୀଣ ପ୍ରତିବନ୍ଧକଟିଏ ମଧ ସ୍ପୃହଣୀୟ ନୁହେଁ । କଥାଟିକୁ ରାମଙ୍କ ବିରହସ୍ମୃତି ମାଧମରେ ମହାନାଟକରେ ବଡ଼ ଚମତ୍କାର ଭାବରେ ଉପସ୍ଥାପନ କରିଛନ୍ତି – 'ହାରୋ ନାରୋପିତଃ କଣ୍ଠେ ମୟା ବିଚ୍ଛେଦ ଭୀରୁଣା ଇଦାନିଂ ଆବୟୋର୍ମଧେ ସରିତ୍ ସାଗର ଭୂଧରାଃ ।

ଦିନନାଥ ସାହିତ୍ୟର ବିଭିନ୍ନ ବିଭାଗରେ ସ୍ୱକୀୟ ସୃଜନ ପ୍ରତିଭାର ପରୀକ୍ଷା ନିରୀକ୍ଷା କରିବା ପରେ **'ବିଚିତ୍ର କବିତ୍ୱ ମାର୍ଗେ'** ତାଙ୍କ 'ପ୍ରସରିଛି ବୁଦ୍ଧି ।' ସେ 'ବଡ଼ ସିଦ୍ଧିମାନ ' ବିରଚିବା ପାଇଁ ଯୋଜନା କରିଛନ୍ତି । ସାହିତ୍ୟର ସମସ୍ତ ପ୍ରାରମ୍ଭିକ ଶୈଳୀ ଓ ଭାଷାର ସାହାଯ୍ୟ ନେଇଛନ୍ତି । **ପ୍ରବନ୍ଧ, କ୍ଷୁଦ୍ରଗଳ୍ପ, ଲୋକକଥା, କିମ୍ବଦନ୍ତୀ, ଭ୍ରମଣକାହାଣୀ, ଜୀବନୀ, ଆତ୍ମଜୀବନୀ, କବିତା, ରମ୍ୟରଚନା, ସମାଲୋଚନା, ଏପରିକି କାବ୍ୟଶୈଳୀର ସ୍ଥାନ–କାଳ–ପାତ୍ରୋଚିତ ବିନିଯୋଗରେ ତାଙ୍କ ଉପନ୍ୟାସଗୁଡ଼ିକର ଆଙ୍ଗିକ ସଂରଚନା ପରିପୁଷ୍ଟ । ବିଭିନ୍ନ ରଙ୍ଗ ଓ ରେଖାର ସୁସଂଯତ ସଙ୍ଗମରେ ତ ଚିତ୍ରର ସୃଷ୍ଟି । ପାଠକୀୟ ଆବେଦନ ଓ ମାନସିକତା ସଂପର୍କରେ ସଚେତନ ନହେଲେ ଏ ପ୍ରକାର ସମନ୍ୱିତ ଶୈଳୀ ଅବଲମ୍ବନ କରିବା ଏକ ଦୂରୁହ ବ୍ୟାପର ।** ଗୋଟିଏ ତାତ୍ତ୍ୱିକ ଗୂଢ଼ତତ୍ତ୍ୱକୁ ପ୍ରବନ୍ଧଶୈଳୀରେ ଉପସ୍ଥାପନ କରିବା ଭିତରେ ସେ ଯେତେବେଳେ ପାଠକ ପାଇଁ ଉପନ୍ୟାସ ଲେଖୁଥିବା ସଂପର୍କରେ ସଚେତନ ହୋଇ ଉଠନ୍ତି ସେତେବେଳେ ହଠାତ ଧାରାବାହିକତାର ମୋଡ଼ ପରିବର୍ତ୍ତନ କରି ସରସ ଗଳ୍ପଟିଏ କହିବା ଆରମ୍ଭ କରିଦିଅନ୍ତି । ଯଦିଓ ତାଙ୍କ ଗଦ୍ୟଭାଷା ଛନ୍ଦୋମୟୀ, ତଥାପି ତାକୁ ଅଧିକ ସରସ ଓ କାଳ – ପାତ୍ରୋଚିତ କରିବା ପାଇଁ ସେ କବିତାର ଆଶ୍ରୟ ନିଅନ୍ତି । କୌଣସି ସ୍ଥାନରେ ଭୌଗୋଳିକ କିମ୍ବା ପ୍ରାକୃତିକ ସୌନ୍ଦର୍ଯ୍ୟ ବର୍ଣ୍ଣନା ଦୀର୍ଘାୟିତ ହେବା ମନେ ହେଲେ ପାଠକୀୟ ବିରକ୍ତିର ଅବସାନ ଘଟାଇବା ପାଇଁ କିମ୍ବଦନ୍ତୀ କିମ୍ବା ପୌରାଣିକୀ ବାର୍ତ୍ତାର ଆଶ୍ରୟ ନେବା ଦିନନାଥଙ୍କ ଏକ ଆଦୃତ କୌଶଳ । ତାଙ୍କ କାବ୍ୟ ଜିଜ୍ଞାସାର ଅନ୍ୟତମ ବିଶେଷତ୍ୱ ହେଲା ହାସ୍ୟ, କରୁଣ, ଶୃଙ୍ଗାର, ବିଭତ୍ସ ପ୍ରଭୃତି ପରସ୍ପର ବିରୋଧି ରସର ଔଚିତ୍ୟପୂର୍ଣ୍ଣ ସମନ୍ୱିତି । **ପ୍ରଚଣ୍ଡ ରୌଦ୍ର ତାପିତ ମରୁଭୂମି ଭିତରେ ସେ ସ୍ନିଗ୍ଧଶୀତଳ ପଦ୍ମ ପୁଷ୍କରିଣୀଟିଏ ସୃଷ୍ଟି କରିପାରନ୍ତି ; ବିଳାସ ସରୋବରର ଦୀପଦଣ୍ଡି ଉପରେ ଉଦ୍‌ଫଣ ପଦ୍ମନାଗୁଣୀଟିଏ ବିଭିଷିକା ସୃଷ୍ଟି କରିପାରେ । ଏହା କେବଳ ଚିତ୍ରରେ ନୁହେଁ ଦିନନାଥ ସାହିତ୍ୟରେ ମଧ ରୂପାୟନ କରିଛନ୍ତି ।**

ଅନେକ ସମୟରେ ଦିନନାଥଙ୍କ ଉପନ୍ୟାସଗୁଡ଼ିକ ଚରିତ ଉପନ୍ୟାସ ଭଳି ମନେହୁଅନ୍ତି । କାରଣ ଉତ୍ତୋଳିତ ଚରିତ୍ରମାନେ ତାଙ୍କର ଅନ୍ତରଙ୍ଗ, ତାଙ୍କ ସହିତ ଆତଯାତ ହୋଇଥିବା ମଣିଷ, ତାଙ୍କ ଆଦର୍ଶର ପ୍ରତିଭୂ । ଅଧିକାଂଶ ଚରିତ୍ର, ସେ ଜାପାନର ହୁଅନ୍ତୁ କିମ୍ବା ବନାରସର ହୁଅନ୍ତୁ ସମସ୍ତେ ଓଡ଼ଶୀ ଓଡ଼ିଶୀ ମନେ ହୁଅନ୍ତି । କେତକୀ ଭିତରେ ସନ୍ତାନହରା ଅବନ୍ତୀଙ୍କୁ, ଗୋଲାପ ସୁନ୍ଦରୀ ଗର୍ଭବେଦନା ଅନୁଭବ କରୁଥିବାବେଳେ ଶିଳ୍ପୀ ଶରତଚନ୍ଦ୍ରଙ୍କ ଭିତରେ ଦିନନାଥଙ୍କୁ, କାଶୀ ଓ ରାଧାବିନୋଦମଠର ମହନ୍ତଙ୍କ ଭିତରେ ଓଡ଼ାଶିଙ୍ଗି ମଠର ମହନ୍ତଙ୍କୁ, ଗୌରୀ ଭିତରେ ମାହାରୀମାନଙ୍କୁ, ତିଳଖୁଡ଼ି ଭିତରେ ତୀର୍ଥକ୍ଷେତ୍ରମାନଙ୍କୁ ପଳାୟନ କରିଥିବା

Digitized by srujanika@gmail.com

ଓଡ଼ିଆ ପଲ୍ଲୀର ନିର୍ଯ୍ୟାତିତା ନାରୀମାନଙ୍କୁ ଦେଖିହୁଏ । ସବୁ ଉପନ୍ୟାସରେ ପୁଣି ନିଜେ ଲେଖକ ଉପସ୍ଥିତ । କେତେବେଳେ ସେ ଅରୁଣ ତ କେତେବେଳେ ସେ ରୂପାନନ୍ଦ, କେଉଁଠି ସେ ତଟସ୍ଥ ଓ କେଉଁଠି କଥା ପ୍ରବାହ ଭିତରେ ନିମଜ୍ଜିତ । ଭିନ୍ନ ଭିନ୍ନ ରୂପ ଧରି ସେ ଅନ୍ୟର କଥା ଶୁଣନ୍ତି, ନିଜକଥା ଶୁଣାନ୍ତି, ବାହ୍ୟ ଓ ଅନ୍ତର୍ଦ୍ୱନ୍ଦ୍ୱ ଭିତରେ କୌଣସି ତାତ୍ତ୍ୱିକ ସନ୍ଦେହର ସମାଧାନ କରନ୍ତି । ବେଳେବେଳେ ଏହି ଲେଖକୀୟ 'ଅହଂ' ପାଠକ ଚିତ୍ତରେ ପ୍ରତିକ୍ରିୟା ସୃଷ୍ଟି କରୁଥିଲେ ସୁଦ୍ଧା ତାଙ୍କ ବ୍ୟକ୍ତି ବ୍ୟକ୍ତିତ୍ୱ ସମଷ୍ଟି ବ୍ୟକ୍ତିତ୍ୱରେ ରୂପାୟିତହୋଇ ଆସ୍ୱାଦନକୁ ସ୍ୱାଦ୍ୟ କରେ । ପରିଚିତ ପରିବେଶ ଓ ଚରିତ୍ର, ଅନୁଭୂତ ଘଟଣା ପ୍ରବାହ ନିଶ୍ଚିତ ଭାବେ କାଳ୍ପନିକ ଅପେକ୍ଷା ଅଧିକ ଜୀବନ୍ତ । ସମକାଳରେ ଉପନ୍ୟାସ ଓ ଆତ୍ମଜୀବନୀ ଲେଖିଥିବା ଫଳରେ ଏ ପ୍ରକାର ଅନ୍ୱ ଓ ପରିପୂରକତା ଦେଖାଦେବା ସ୍ୱାଭାବିକ ।

ଏଠାରେ ଅନ୍ୟ ଏକ ବିଷୟ ଅବତାରଣା କରିବା ଅପ୍ରାସଙ୍ଗିକ ହେବ ନାହିଁ । ଦିନନାଥଙ୍କ ଚିତ୍ର ଓ ଉପନ୍ୟାସ ଗୁଡ଼ିକୁ ଅନୁଧ୍ୟାନ କଲେ ସେ **'ଶୃଙ୍ଗାରୀଶ୍ଚେତ୍ କବିଃ କାବ୍ୟମ୍ ରସମୟଂ ଜଗତ୍'**ରେ ଗଭୀର ବିଶ୍ୱାସୀ ଥିବା ଉପଲବ୍ଧ କରିହୁଏ । ଉତ୍ତରିତ ଜୀବନର ସପ୍ତମଦଶକରେ ଚିତ୍ର ଓ କାବ୍ୟ ଜିଜ୍ଞାସା ପରେ ଆରମ୍ଭ ହୋଇଛି **କାମ ଜିଜ୍ଞାସା** । ଅଥାତୋ କାମ ଜିଜ୍ଞାସା । ସେ ଏଥିପାଇଁ ଅଧିକାର ପ୍ରାପ୍ତ ହୋଇଛନ୍ତି । ରମଣ ଅନଭିଜ୍ଞ ମହର୍ଷି ବାତ୍ସାୟନଙ୍କ କାମସୂତ୍ରର ସୂତ୍ର ସବୁକୁ ଦୈହିକ, ମାନସିକ, ଚିତ୍ରାୟିତ ରମଣ ଅଭିଜ୍ଞ ଦିନନାଥ ସାଂପ୍ରତିକ ପରିପ୍ରେକ୍ଷୀରେ ପୁନରନୁଶୀଳନ କରିବା ଆରମ୍ଭ କରିଛନ୍ତି । ତା'ର ଫଳଶ୍ରୁତି ଦୀର୍ଘ ଆମୁଖ ସହ **ରୂପ ରଙ୍ଗ ଅନଙ୍ଗ** ଉପନ୍ୟାସ ଶାସ୍ତ୍ର । ଏହି ରମଣୀ ଓ ରମଣ ମନସ୍କତା ତାଙ୍କୁ ଅବଶ୍ୟ ପ୍ରଥମ ଉପନ୍ୟାସଠାରୁ ହିଁ ଆଚ୍ଛନ୍ନ କରି ରଖିଛି । ଗୀତଗୋବିନ୍ଦ ଓ ଅମରୁ ଶତକର ଚିତ୍ରପୋଥି ସମ୍ପାଦନା ଏବଂ ଗୀତଗୋବିନ୍ଦର ଚିତ୍ରଭାଷ୍ୟ ସଂରଚନା ମାନବୀୟ ଜୈବିକ କାମନାକୁ ଉନ୍ମୁକ୍ତ ଭାବେ ଚର୍ଚ୍ଚା କରିବା ପାଇଁ ତାଙ୍କୁ ପ୍ରଚୋଦିତ କରିଛି । **ନାରୀ ଓ ବ୍ୟାଘ୍ର, ନାରୀ ଓ କାର୍, ତୃଷ୍ଣା, ଅଭିସାର, ପଦ୍ମବନ** ଇତ୍ୟାଦି ଚିତ୍ରରେ ଯାହା ପ୍ରତୀକାତ୍ମକ ଭାବେ ରୂପାୟିତ ହୋଇଥିଲା, ସେଇ ସବୁ ଚିତ୍ରମାନେ ତାଙ୍କ ଉପନ୍ୟାସଗୁଡ଼ିକରେ ଜୀବନ ଲାଭ କରିଛନ୍ତି, କଥା କହିଛନ୍ତି । ଅମରୁକ ଶତକମ୍ ଚିତ୍ରପୋଥିରେ ଥିବା ଚିତ୍ରଗୁଡ଼ିକର ଭାଷ୍ୟ ରଚନା କରିବା ଅବସରରେ ଆଚାର୍ଯ୍ୟ ଶଙ୍କରଙ୍କ ପରି ଦିନନାଥଙ୍କ କାୟାନ୍ତର ଘଟି ନଥିଲେ ସୁଦ୍ଧା ସେ ମନସ୍କତାରେ ରୂପାନନ୍ଦରୁ କାମାନନ୍ଦରେ ରୂପାନ୍ତରିତ ହୋଇଯାଇଛନ୍ତି । କାମୀ ବା କାମୁକ ହେବାର ବୟସ ଉତ୍ତୀର୍ଣ୍ଣ । ସମ୍ମୁଖରେ ଓଲଟ ହଂସ ସୋଽହଂ । ତାଙ୍କ ଚିତ୍ରଶାଳାରୁ ଏବଂ ଅମରୁକ ଶତକରୁ ଚିତ୍ରମାନେ ଉଠିଆସି ନିଜ ନିଜ କଥା କହିବା ପାଇଁ ଉଚାଟ ହୋଇଛନ୍ତି, ଉଚ୍ଚାରଣକ୍ଷମ ହୋଇଛନ୍ତି । ସେମାନେ ତ ତାଙ୍କ ଉପନ୍ୟାସର ଅନୀତା, ନିକୋଲାସ, ରିହାନା, ଏଲିନା, ସାଲିମା ପ୍ରଭୃତି । କାମକାଳର ରହସ୍ୟକୁ ସେମାନେ ଉଦ୍‌ଘାଟନ କରିଛନ୍ତି । କାମଶାସ୍ତ୍ର ଉପନ୍ୟାସରେ ରୂପାନ୍ତରିତ ହୋଇଛି । ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରୁ ଉଦାତ୍ତ ଯୌନଚେତନା ସୋଽହଂରୁ ହଂସରେ ରୂପାନ୍ତରିତ ହୋଇ ମୃତାବସ୍ଥାରେ ନର୍ଦ୍ଦମା ଜଳରେ ଭାସି ଯାଉଥିବା ଲକ୍ଷ୍ୟ କରି ଏକଦା ଗାଳ୍ପିକ ସୁରେନ୍ଦ୍ର ମହାନ୍ତି ଆମକୁ ଶୁଣାଇଥିଲେ ପବିତ୍ର ପ୍ରଣୟର ଗ୍ରୀସୀୟ ସ୍ୱାନ୍ ସଙ୍ଗ୍ (Swan Song)। **ସେହି ମୃତ ମରାଳକୁ କ୍ଳିଂକାମାୟ ନମଃତ ମନ୍ତ୍ରରେ ଜୀବନ୍ୟାସ କରିବା ପାଇଁ ଦିନନାଥଙ୍କ ଏହି ରସାଳ ପ୍ରୟାସ । ଆଗକୁ ଆଉ କେଉଁ ଶାସ୍ତ୍ରକୁ ନେଇ ଉପନ୍ୟାସ ଆସୁଛି ଦେଖିବାର କଥା ।**

ପୂର୍ବରୁ କୁହାଯାଇଛି ଦିନନାଥ ବହୁପାଠୀ ଓ ବହୁ ଅନୁଭୂତିସଂପନ୍ନ। ଏସବୁକୁ ଗର୍ଭିତ କରି ଉପନ୍ୟାସ ରଚନା କରିବା ସହଜସାଧ୍ୟ ନୁହେଁ । ଉପନ୍ୟାସ ଗଦ୍ୟ ମହାକାବ୍ୟ ହୋଇପାରେ । କିନ୍ତୁ ମହାକାବ୍ୟ ମଧ୍ୟ ଏସବୁକୁ ଉଦରସ୍ଥ କରିବା ପାଇଁ ଅକୁଳାନ । ଏଇ କଥାଟି ସଂପର୍କରେ ଔପନ୍ୟାସିକ ଆରମ୍ଭରୁ ବୋଧହୁଏ ସଚେତନ । ଗଙ୍ଗାବତରଣ ଉପନ୍ୟାସର 'ଅମୂର୍ତ୍ତ ସଂଳାପ'ରେ ସେ ଲେଖିଛନ୍ତି–'ଗଙ୍ଗା ଓ ବନାରସ, ଉତ୍ତରଣ ଓ ଅବତରଣର ଗାଥା ଏତେ ପୁରୁଣା ଯେ, ସେ ସଂପର୍କରେ ପୁରାଣ ରଚନାହିଁ ସମ୍ଭବ, ଉପନ୍ୟାସ ନୁହେଁ । ପୁରାଣ ଭଳି ଜୀବନର ସାରକଥାକୁ, ଅନୁଭବକୁ ବାରମ୍ବାର ଦୋହରେଇବାକୁ ହେବ, ବିଭିନ୍ନ ଚରିତ୍ର ମାଧ୍ୟମରେ

Digitized by srujanika@gmail.com

ସେହି ଗୋଟିଏ ତତ୍ତ୍ୱକୁ ବିଭିନ୍ନ ଭାବରେ ବିଭିନ୍ନ ରୂପରେ ବର୍ଣ୍ଣିବାକୁ ହେବ ।'' ବାସ୍ତବରେ ସେ ନିଜର ଶାସ୍ତ୍ରୋପନ୍ୟାସ ରଚନାପାଇଁ ପୁରାଣକୁ ହିଁ ଆଦର୍ଶରୂପେ ଗ୍ରହଣ କରିଛନ୍ତି । ଗୋଟିଏ ନିର୍ଦ୍ଦିଷ୍ଟ କଥାବସ୍ତୁର ଚୌହଦି ଭିତରେ ପୁରାଣକାର ଯେପରି ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟିଠାରୁ ପ୍ରଳୟ ପର୍ଯ୍ୟନ୍ତ ରାଜନୀତିଠାରୁ ଧର୍ମନୀତି, ଅର୍ଥନୀତିଠାରୁ ରଣନୀତି, ଆୟୁର୍ବେଦଠାରୁ ଜ୍ୟୋତିଷ, କର୍ମକାଣ୍ଡଠାରୁ କାବ୍ୟାଳଂକାର ପର୍ଯ୍ୟନ୍ତ ସବୁକିଛି ରୂପାୟନ କରିଥାଏ, ସେହିପରି ଦିନନାଥ ଉପନ୍ୟାସ ମଧ୍ୟରେ ତାଙ୍କର ସମସ୍ତ ବକ୍ତବ୍ୟକୁ ନିଃଶେଷ କରିବାପାଇଁ ଚେଷ୍ଟା କରିଛନ୍ତି । ଶ୍ରୋତାର ଜିଜ୍ଞାସା ଯେପରି ଅନନ୍ତ ବକ୍ତାର ଉବାଚ ମଧ୍ୟ ସେହିପରି ଅସରନ୍ତି । ବର୍ତ୍ତମାନ ଉପରେ ଠିଆ ହୋଇ ପୁରାଣକାର ଅତୀତକୁ ସିଂହାବଲୋକନ କରନ୍ତି ଏବଂ ଭବିଷ୍ୟତ ପାଇଁ ପାଠକକୁ ସଚେତନ କରାନ୍ତି, ଦିଗ୍‌ଦର୍ଶନ ଦିଅନ୍ତି । ଶୀଳ, ଅଶ୍ଳୀଳ, ଉଚିତ ଅନୁଚିତର ସଚେତନତା ପୁରାଣକାରଙ୍କ ବକ୍ତବ୍ୟର ପ୍ରତିବନ୍ଧକ ସୃଷ୍ଟି କରେ ନାହିଁ । ସମଗ୍ର ଜାଗତିକ ଚିନ୍ତନ ଅନୁଚିନ୍ତନ ପାଇଁ ପୁରାଣର ଦ୍ୱାର ଉନ୍ମୁକ୍ତ । ବ୍ୟାସଙ୍କୁ ଗୁରୁ କରି ଗ୍ରହଣ କରିଥିବା ଯୋଗୁଁ ଦିନନାଥଙ୍କ ଉପନ୍ୟାସ ଗୁଡ଼ିକ ଶାସ୍ତ୍ରସ୍ତରରୁ ଉନ୍ନୀତ ହୋଇ ସାହିତ୍ୟସ୍ତରରେ ଉପନୀତ ହୋଇପାରିଛି ।

ଦିନନାଥଙ୍କ ସୃଜନ କର୍ମର ସବୁଠାରୁ ବଡ଼କଥା ହେଲା ଚିତ୍ରରେ ବିନ୍ଦୁ ଏବଂ ସାହିତ୍ୟରେ ଶବ୍ଦ ବିନ୍ୟାସ । ରଙ୍ଗର ବିନ୍ଦୁଟି ଦ୍ୱାରା ଚିତ୍ରଶିଳ୍ପୀ ପୁରୁଷକୁ ନାରୀ, ବିଧବାକୁ ସଧବା, କୃଷ୍ଣପକ୍ଷକୁ ପ୍ରଭାତରେ ରୂପାନ୍ତରଣ କରିପାରେ । ଚିତ୍ରକଥା କଳା ସମାଲୋଚକମାନେ ବିଶେଷ ଭାବେ କହିପାରିବେ । ସାହିତ୍ୟ ସୃଷ୍ଟିରେ ସେ ନିଶ୍ଚିତ ଭାବେ ଜଣେ ଅସାଧାରଣ ଶବ୍ଦଶିଳ୍ପୀ । ଯଥାସ୍ଥାନରେ ଦିବ୍ୟ ଓ ଅଦିବ୍ୟ ଶବ୍ଦ ଖଞ୍ଜିବାରେ ସେ ବିଶ୍ୱକର୍ମା । **ଭାଷାର ଇନ୍ଦ୍ରଜାଲରେ ସେ ତାଙ୍କ ପାଠକକୁ ସମ୍ମୋହିତ କରିପାରନ୍ତି । ତାଙ୍କ ଶବ୍ଦବିନ୍ୟାସରେ ମଧ୍ୟଯୁଗୀୟ କାବ୍ୟଭାଷାର ଛାପ ସ୍ପଷ୍ଟ ବାରି ହୋଇପଡ଼େ । ବଡ଼ଖେମଣ୍ଡି କବିସୂର୍ଯ୍ୟଙ୍କ ଜନ୍ମଭୂମି । ଉପେନ୍ଦ୍ର ଭଞ୍ଜ, ଗୋପାଳକୃଷ୍ଣ ଏବଂ କୃଷ୍ଣସିଂହଙ୍କୁ ଶୈଶବରୁ ଶୁଣି ଆସିଛନ୍ତି । ସେ ଏମାନଙ୍କ ସାରସ୍ୱତ ଦାୟାଦ । ଶବ୍ଦର ତ୍ରିବିଧ ଶକ୍ତି ଉପରେ ବିଶେଷ କରି ବ୍ୟଞ୍ଜନାଶକ୍ତି ସଂପର୍କରେ ତାଙ୍କ ଧାରଣା ଅସମ୍ଭବ ଭାବେ ଦୃଢ଼ । ସାଧାରଣ ଶବ୍ଦକୁ ଅସାଧାରଣ କରି ବ୍ୟବହାର କରିବାରେ ସେ ଜଣେ କୁଶଳୀ କଳାକାର । ଆଞ୍ଚଳିକ କଥିତ ଭାଷାକୁ ସେ ଯେପରି ନିଜ ରଚନା ମଧ୍ୟରେ ଅନୁପ୍ରବେଶ କରାଇଛନ୍ତି, ତାହା ବହୁ କମ୍ ସଂଖ୍ୟକ ଗଦ୍ୟ ଲେଖକଙ୍କ ରଚନାରେ ଦେଖିବାକୁ ମିଳେ ।** କଥିତ ଶବ୍ଦର ଅନ୍ତରାଳରେ ଥିବା କମନୀୟ ଅର୍ଥଟିକୁ ସେ ଅନୁଭବିଛନ୍ତି ବୋଲି ସେଗୁଡ଼ିକର ବ୍ୟବହାରରେ ତାଙ୍କ କାବ୍ୟଭାଷା ହୋଇ ଉଠିଛି ଏତେ ସରସ ସୁନ୍ଦର ଓ ବ୍ୟଞ୍ଜନାତ୍ମକ । ସେ ଗଞ୍ଜାମର ସନ୍ତାନ । ତେଣୁ ଖେଟା (ସ୍ୱତନ୍ତ୍ର), କାକୁଛାନିଆ (ଅତ୍ୟଧିକ ଭାବେ ଭୟଭୀତ ହେବା), ଖେଦିଯିବା (ନିର୍ଭୀକ ଭାବେ ଧସେଇ ପଶିବା) ସୋରତା (ଦୁଇ ଜଣଙ୍କ ମଧ୍ୟରେ କଳି ଲଗାଇ ମଉଜ ଦେଖିବା), ପାଇଟି (କାର୍ଯ୍ୟ), ଗୁଣ୍ଡିଆ (ଛାତି, ହୃଦୟ), ଆଟକାଟ (ନିରାଲମ୍ବ ହୋଇ ପଡ଼ିଯିବା) ହାଇ ଲାଗିବା (ଆରାମ) ଅସଲଟ(ଅଦୁଆ), କାକୁସ୍ଥ (ଦୀନ), ଧରାକ (ଗୁରୁତ୍ୱପୂର୍ଣ୍ଣ), ଘାବରା (ବ୍ୟତିବ୍ୟସ୍ତ) ଫାଙ୍କାସି ଉଡ଼ିଯିବା (ହିତାହିତ ଜ୍ଞାନ ଲୋପ ହେବା), ଉପରୋଧିଆ (ଅନ୍ୟର କଥା ଭାଙ୍ଗି ନପାରିବା) ଇତ୍ୟାଦି ଶବ୍ଦଗୁଡ଼ିକ ଯେପରି ସେମାନଙ୍କୁ ଟିକିଏ କାବ୍ୟିକ ଗୌରବ ଦେବାପାଇଁ ଦିନନାଥଙ୍କୁ ଅନୁରୋଧ ଜଣାଇ ଚାଲିଛନ୍ତି । ସେହିପରି ଅବତାର, ପ୍ରକାଶ, ଆକଟ, ଅନୁଭବ, ନିଦାନ, ନିଧାର୍ଯ୍ୟ, ଭେଦ୍ୟ ପ୍ରଭୃତି ବିଶେଷ୍ୟ ଶବ୍ଦକୁ କ୍ରିୟା ରୂପ ଦେଇ ଭାଷାରେ ଚମତ୍କାରିତା ଆଣିବା ଦିନନାଥଙ୍କ ଅନ୍ୟତମ ବିଶେଷତ୍ୱ । ଜଟିଳ ତତ୍ତ୍ୱକୁ ସେହିପରି ସରଳ ଭାବରେ ବୁଝାଇ ଦେବାର କୌଶଳ ସେ ପୁରାଣକାର ମାନଙ୍କଠାରୁ ଶିକ୍ଷା କରିଛନ୍ତି । ପୁଣି ସେମାନଙ୍କଠାରୁ ଶିକ୍ଷା କରିଛନ୍ତି ଗଦ୍ୟଭାଷାକୁ କାବ୍ୟଭାଷାରେ ପରିଣତ କରିବାର ଅପୂର୍ବ କୌଶଳ । **ତାଙ୍କ ଭାଷା ସଂପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଦିନନାଥଙ୍କ ରଚନା ଓ ବକ୍ତବ୍ୟ ମଧ୍ୟରେ ଥିବା ସମସ୍ତ ଦୋଷ ଦୁର୍ବଳତା ଭାଷାର ଆବୃତ୍ତି ମଧ୍ୟରେ ଆଚ୍ଛାଦିତ ହୋଇପଡ଼ିଥାଏ ।**

Digitized by srujanika@gmail.com

ଦିନନାଥ କେବଳ ଯେ ଜଣେ କୁଶଳୀ ଚିତ୍ରକାର ଏବଂ ଅଣପାରମ୍ପରିକ ସାରସ୍ୱତ ଶିଳ୍ପୀ, ତା ନୁହେଁ; ସେ ଜଣେ ଶୁଦ୍ଧ ଗବେଷକ ମଧ୍ୟ । ଗବେଷଣାକୁ ସେ କେବଳ ବୃତ୍ତିଗତ ପ୍ରମାଣପତ୍ର କିମ୍ବା ଅର୍ଥୋପାର୍ଜନର ସହଜ ପନ୍ଥା ରୂପେ ଗ୍ରହଣ ନକରି ଏକ ଜାତୀୟ କାର୍ଯ୍ୟ ରୂପେ ବିବେଚନା କରିଛନ୍ତି । ତାଙ୍କ ଗବେଷଣାର ଧାରା ଓ ଶୈଳୀ ସଂପର୍କରେ ଆଲୋଚନା କରିବାର ଅବକାଶ ଏଠାରେ ନାହିଁ ଅନ୍ୟତ୍ର ପ୍ରୟାସ କରାଯିବ । ଏ ସମ୍ପର୍କରେ ଗବେଷଣା କ୍ଷେତ୍ରରେ ଏବର୍‌ହାର୍ଡ୍ ଫିସର୍‌ଙ୍କ ସହ ଯୋଡ଼ି ହୋଇଥିବା ଦିନନାଥଙ୍କ ନିଜ ଅନୁଭୂତି ଶୁଣନ୍ତୁ –

"Our basic approach to research is threefold : field study and photo documentation in Orissa, initial planning and layout at Oviga and final editing designing and publishing by Eberhard in Zurich. The approach may sound simple, but each stage takes several years, several autumns and winters for field studies in Orissa and as well as several summers at Oviga to arrive at concretization. For obtaining fresh materials field study is a must and none of our publications lacks in field materials. When I visit Oviga, a specific project is always in mind and I am always armed with materials we might need. (**Where Time Stands Still**, 2011)

**ଚିତ୍ରରେ ହେଉ କି ସାହିତ୍ୟରେ ହେଉ ସର୍ବତ୍ର ଦିନନାଥଙ୍କ ସମଗ୍ର ସୃଷ୍ଟିର ଲକ୍ଷ୍ୟ କିନ୍ତୁ ଗୋଟିଏ ବିନ୍ଦୁରେ କେନ୍ଦ୍ରୀଭୂତ; ତାହା ହେଉଛି ଓଡ଼ିଶା । ତାଙ୍କ କଳ୍ପନାର ପକ୍ଷ ବିସ୍ତାର ଯେତେ ବିସ୍ତୃତ ହେଲେ ସୁଦ୍ଧା ସବୁ ଭିତରେ ଓଡ଼ିଶାର ଗୌରବ ଓ ବିଶେଷତ୍ୱକୁ କ୍ଷୁର୍ଣ୍ଣ ହେବା ପାଇଁ ସେ କୁତ୍ରାପି ପ୍ରଶୟ ଦେଇ ନାହାନ୍ତି । ଓଡ଼ିଶୀ କଳା, ଭାସ୍କର୍ଯ୍ୟ, ସାହିତ୍ୟର ସମୃଦ୍ଧି ଓ ପରିପ୍ରଚାର ପାଇଁ ତାଙ୍କ ପ୍ରୟାସ ଅବ୍ୟାହତ ରହିଛି । ବର୍ତ୍ତମାନ ସେ ଓଡ଼ିଶୀ ନୃତ୍ୟ ପଛରେ ପଡ଼ିଛନ୍ତି । ଗଞ୍ଜାମର ସଖୀନାଟ, ପ୍ରହ୍ଲାଦ ନାଟକ, ଓଷାକୋଠୀକୁ ନେଇ ସେ କାର୍ଯ୍ୟାରମ୍ଭ କରିଛନ୍ତି । ସେଗୁଡ଼ିକର ପରିପ୍ରଚାରର ମାଧ୍ୟମ ହୋଇଛି ପୁତ୍ର ସୌଭାଗ୍ୟ ପାଠୀଙ୍କ ସମ୍ପାଦିତ ଇଂରେଜୀ ପତ୍ରିକା ଅଙ୍ଗରାଗ ।** ଅବହେଳିତ ଡ୍ରଇଁମାଷ୍ଟମାନଙ୍କ ପରି ସେ ଦୀନ ନୃତ୍ୟଶିଳ୍ପୀମାନଙ୍କୁ ଅଚିରେ ଉଦ୍ଧାର କରିବେ ବୋଲି ଆଶା ରହିଲା ।

ଗଛର କୋରଡ଼ରେ ହୃଦୟକୁ ଥାପି ହୃଦୟାଳୟ ଛାଡ଼ିବା ବେଳେ ମୃତ୍ୟୁ ଦେବତା ରୂପାନନ୍ଦଙ୍କୁ ସତର୍କ କରି ଦେଇଥିଲେ, 'ରୂପାନନ୍ଦ ନିଜକୁ ପ୍ରସ୍ତୁତ କରି ରଖ । ଦ୍ୱିତୀୟଥର ତମକୁ ଭେଟିବା ପାଇଁ ଖୁବ୍ ଶୀଘ୍ର ମୁଁ ତୁମ ପାଖରେ ପହଞ୍ଚିବି ।' ଯମରାଜ ପଥଭ୍ରଷ୍ଟ ହୁଅନ୍ତୁ, ତାଙ୍କ ମଇଁଷୀ ଖୁରାରେ କଣ୍ଟା ଗଳିଯାଉ, ଚିତ୍ରଗୁପ୍ତଙ୍କ ପଞ୍ଜିକାରେ ରୂପାନନ୍ଦଙ୍କ ବୟସ ସଂଖ୍ୟାର ଡାହାଣରେ ଶୂନ୍ ଯୋଡ଼ି ହୋଇଯାଉ । ଦିନନାଥ ମାର୍କଣ୍ଡେୟ ହୁଅନ୍ତୁ । ଓଡ଼ିଶା ଏବଂ ଓଡ଼ିଆର ସ୍ୱାଭିମାନ ରକ୍ଷା ଦିଗରେ ତାଙ୍କ ଯାତ୍ରାପଥ ପୁଷ୍ପିତ ହେଉ । ସେ ଦୀର୍ଘଜୀବୀ ହୁଅନ୍ତୁ ।

Digitized by srujanika@gmail.com

ଭଗବାନ ପଣ୍ଡା

## ସଫଳ ସଙ୍ଗଠକ ବନ୍ଧୁ ଦିନନାଥ

'ଆରୋହ ତମସୋ ଜ୍ୟୋତିଃ' - ଅଥର୍ବ ବେଦରେ (୮.୧.୮) ଥିବା ଏହି ଉକ୍ତିର ଅର୍ଥ ହେଲା - ଅନ୍ଧକାରରୁ ଆଲୋକକୁ ଅଗ୍ରସର ହୁଅ । ବନ୍ଧୁ ଡକ୍ଟର ଦିନନାଥ ପାଠୀଙ୍କ ଜୀବନରେ ଏହା ଅକ୍ଷରେ ଅକ୍ଷରେ ସତ୍ୟବୋଲି ପ୍ରମାଣିତ ହୋଇଛି । ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ ଦିନନାଥ ଯେ ଦିନେ ଭାରତୀୟ କଳାକ୍ଷେତ୍ରରେ ଅନ୍ୟତମ ପ୍ରମୁଖ କଳାକାରଭାବେ ସମ୍ମାନିତ ହେବେ ଏବଂ କଳାସମାଲୋଚକ ଭାବେ ବିଶ୍ୱବିଖ୍ୟାତ ହେବେ, ଏହା ଓଡ଼ିଶାରେ କେହି କଳ୍ପନା କରି ନଥିଲେ କି ତାଙ୍କ ବନ୍ଧୁବାନ୍ଧବ, ସାଙ୍ଗସାଥି ଏପରିକି ସେ ନିଜେ ମଧ୍ୟ ଭାବି ନଥିଲେ । ସବୁକ୍ଷେତ୍ରରେ ସମ୍ଭବ ନ ହେଲେ ବି ପାଠୀ ବାବୁଙ୍କ କ୍ଷେତ୍ରରେ ସ୍ୱପ୍ନ ସବୁ ସତ୍ୟରେ ପରିଣତ ହୋଇଛି । ଶ୍ରମ, ସହିଷ୍ଣୁତା, ଶ୍ରଦ୍ଧା, ସମ୍ମାନବୋଧ ଓ ନିରବଚ୍ଛିନ୍ନ ସାଧନାଦ୍ୱାରା ମଣିଷ ଯେ ଅସାଧାରଣ ସାଫଲ୍ୟ ଅର୍ଜନ କରିପାରେ ଓ ସମାଜରେ ଶୀର୍ଷସ୍ଥାନ ଅଧିକାର କରିପାରେ ତା'ର ଉଜ୍ଜ୍ୱଳ ଉଦାହରଣ ହେଲେ ଡକ୍ଟର ଦିନନାଥ ପାଠୀ ।

ପାଠୀ ବାବୁ ଶିକ୍ଷାକ୍ଷେତ୍ରରେ ପ୍ରବେଶିକା ଠାରୁ ଆରମ୍ଭ କରି ସ୍ନାତକୋତ୍ତର ଉପାଧି ପର୍ଯ୍ୟନ୍ତ ସମସ୍ତ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଛନ୍ତି । କଳାଶିକ୍ଷାରେ ମଧ୍ୟ ଅପୂର୍ବ ସଫଳତା ହାସଲ କରିଛନ୍ତି । କଳା ଇତିହାସରେ ଦୁଇ ଦୁଇଟି ପି.ଏଚ୍.ଡ଼ି (ବିଦ୍ୟାବାରିଧି) ଉପାଧି ଲାଭକରି କଳାକାର ତଥା ଗବେଷକମାନଙ୍କର ଆଦର୍ଶଭାଜନ ହୋଇପାରିଛନ୍ତି । ଓଡ଼ିଆ ଓ ଇଂରାଜୀରେ ବହୁ ଉପାଦେୟ ଗ୍ରନ୍ଥ ଓ ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶକରି ସେ ଯେଉଁ କୃତିତ୍ୱର ପରିଚୟ ଦେଇଛନ୍ତି, ତା'ର ପଟାନ୍ତର ନାହିଁ । ବାଲ୍ୟକାଳରୁ ଅଦ୍ୟାବଧି ଜୀବନର ବହୁବିଧ ଦୁଃଖ ଦୁର୍ଦ୍ଦଶା, ଅଭାବ ଅନଟନ, ମାନସିକ ଯନ୍ତ୍ରଣା, ମାନ ଅପମାନ ଓ କଟୁ ସମାଲୋଚନାକୁ ସେ ନୀଳକଣ୍ଠ ପରି ହସିହସି ପାନ କରିଛନ୍ତି । ଲଳିତକଳାକୁ ଜଗତର କଲ୍ୟାଣ ପାଇଁ ପ୍ରୟୋଗ କରିବାରେ ସେ ଆଜୀବନ ଉଦ୍ୟମ କରିଆସୁଛନ୍ତି । ପାଠୀ ବାବୁଙ୍କ ଚିନ୍ତାରାଜ୍ୟ ଓ ଦୂରଦୃଷ୍ଟି ସମ୍ପନ୍ନ କାର୍ଯ୍ୟକ୍ରମର ସୀମା ଅତି ବ୍ୟାପକ, ଯାହାର କଳନା କରିବା ପାଇଁ ଦୀର୍ଘ ଗବେଷଣା ଆବଶ୍ୟକ ।

୧୯୭୦ ମସିହାରେ ତତ୍କାଳୀନ ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି ବିଭାଗରେ ଯୋଗଦେବା ପରେ ପାଠୀ ବାବୁଙ୍କ ସହିତ ମୋର ପରିଚୟ ହେଲା । ଆଗରୁ ଭୁବନେଶ୍ୱରର କେନ୍ଦ୍ରୀୟ ବିଦ୍ୟାଳୟରେ ସେ କଳା ଶିକ୍ଷକ ଥିଲେ । ପଣ୍ଡିତ ନୀଳମଣି ମିଶ୍ରଙ୍କ ସହ ତାଙ୍କର ଦୃଢ଼ ସମ୍ପର୍କ ଥିଲା । ତେଣୁ ପ୍ରାୟ ଦିନେ ଦୁଇଦିନ ବ୍ୟବଧାନରେ ସେ ରାଜ୍ୟ ସଂଗ୍ରହାଳୟକୁ ଆସୁଥିଲେ । ପଣ୍ଡିତ ମହାଶୟଙ୍କ ପ୍ରକୋଷ୍ଠରେ ତାଙ୍କ ସହିତ ଆଳାପ ଆଲୋଚନାରେ କେତେ ସମୟ ଅତିବାହିତ ହୋଇଯାଉଥିଲା ତାହା ଜଣାପଡୁ ନଥିଲା । ବିଗତ ବତିଶବର୍ଷ ଭିତରେ ବହୁ ସ୍ମରଣୀୟ ଘଟଣା ଘଟିଛି । ପାଠୀ ବାବୁଙ୍କ ସହିତ ମିଶି ଦିଗପହଣ୍ଡି ଠାରୁ ସମଗ୍ର ଗଞ୍ଜାମ ତଥା ଓଡ଼ିଶାର ସମସ୍ତ ପ୍ରମୁଖସ୍ଥାନ ପର୍ଯ୍ୟଟନ କରିବାରେ କେତେଦିନ ଓ କେତେରାତି ଯେ ଅତିବାହିତ ହୋଇଛି, ସେ ସବୁର ତାରିଖ ଆଜି ସ୍ମରଣ କଲେ ବି ମନେ ପଡୁନାହିଁ । ଏହି ସମୟ ମଧ୍ୟରେ ତାଙ୍କର ଓ ମୋର ପାରିବାରିକ ଜୀବନରେ ବହୁ ଦୁଃଖଦ ଘଟଣା ଘଟିଯାଇଛି । ପଣ୍ଡିତ ନୀଳମଣି ମିଶ୍ର, ଗଣେଶ ପ୍ରସାଦ ପରିଜା, ନୃତ୍ୟଗୁରୁ ଦେବପ୍ରସାଦ ଦାସ, ନାଟ୍ୟ ଗବେଷକ ଧୀରେନ୍ ଦାଶ ପ୍ରଭୃତି ବନ୍ଧୁମାନଙ୍କର ଦେହାନ୍ତ ହୋଇଯାଇଛି । ବର୍ତ୍ତମାନ ସେଇ ତିକ୍ତ ମଧୁର ଅତୀତକୁ ଓ ବନ୍ଧୁ ସୁଲଭ ମାନ ଅଭିମାନକୁ ମନେ ପକାଇବା ପାଇଁ ଡକ୍ଟର ମହେଶ ପ୍ରସାଦ ଦାଶ ପ୍ରଭୃତି କେତେଜଣ ମାତ୍ର ବନ୍ଧୁ ଅଛନ୍ତି । ସମସ୍ତେ ବୟସ୍କ ଓ ପରସ୍ପର ଠାରୁ ଦୂରବର୍ତ୍ତୀ । ଘନିଷ୍ଠତା ଥିଲେ ବି ସାମୟିକ ଯୋଗାଯୋଗ ମାଧ୍ୟମରେ ହିଁ ଆମ ମଧ୍ୟରେ ଏବେ ସମ୍ପର୍କ ମାତ୍ର ରହିଛି ।

ଓଡ଼ିଶା ଲୋକସେବା ଆୟୋଗଦ୍ୱାରା ମନୋନୀତ ହୋଇ ପାଠୀ ବାବୁ ରାଜ୍ୟ ସଂଗ୍ରହାଳୟରେ କଳାବିଭାଗର କ୍ୟୁରେଟର୍ ଭାବେ କାର୍ଯ୍ୟରେ ଯୋଗଦେଲେ । ପଣ୍ଡିତ ମିଶ୍ର ଓ ଏ ଲେଖକ ରହୁଥିବା କଳ୍ପନା ଅଞ୍ଚଳରେ ପାଠୀ ବାବୁ ସପରିବାର ସରକାରୀ କ୍ୱାଟର୍‌ରେ ରହିଲେ । ବନ୍ଧୁତା ଓ ଆନ୍ତରିକତାର

Digitized by srujanika@gmail.com

ପରିସର ବଢ଼ିଲା । ଗବେଷଣା କାର୍ଯ୍ୟ ପାଇଁ ବିଭିନ୍ନ ଯୋଜନା ଆରମ୍ଭ ହେଲା । ନାନାପ୍ରକାର କଳ୍ପନାଜଳ୍ପନା ପରେ ୧୯.୪.୭୪ରେ **ଓଡ଼ିଶା କଲ୍‌ଚରାଲ ଫୋରମ୍** ନାମରେ ଏକ ସଂସ୍ଥା ଗଠନ କରାଗଲା । ଏହି ସଂସ୍ଥା ୧୧.୧୧.୭୫ରେ ପଞ୍ଜୀକୃତ ହେଲା । କିନ୍ତୁ, ଅଳ୍ପକାଳ ପରେ ୧୯୮୧ ମସିହାରେ ଐତିହାସିକ କେଦାରନାଥ ମହାପାତ୍ରଙ୍କର ଦେହାନ୍ତ ହୋଇଗଲା । ତାଙ୍କରି ସ୍ମୃତିରେ କେଦାରନାଥ ଗବେଷଣା ପ୍ରତିଷ୍ଠାନ ୧୯୮୨ ମସିହାରେ ପଣ୍ଡିତ ନୀଳମଣି ମିଶ୍ରଙ୍କ ନେତୃତ୍ୱରେ ଆରମ୍ଭ ହେଲା । ଫୋରମ୍‌ର ଅଧିକାଂଶ ସଦସ୍ୟ ଏଥିରେ ସାମିଲ ହେଲେ । ଫଳରେ ଫୋରମ୍‌ର ଗବେଷଣାତ୍ମକ କାର୍ଯ୍ୟକ୍ରମ ପ୍ରତିହତ ହେବା ସଙ୍ଗେସଙ୍ଗେ ଏହା କ୍ରମଶଃ ସଂକୁଚିତ ହେବାକୁ ଲାଗିଲା । ଏ ମଧ୍ୟରେ ସ୍ୱର୍ଗତଃ ଡକ୍ଟର କାହ୍ନୁଚରଣ ମିଶ୍ରଙ୍କ ନେତୃତ୍ୱରେ **ଓଡ଼ିଶା ସଂସ୍କୃତି ପରିଷଦ** ଡକ୍ଟର ଦିନନାଥ ପାଠୀଙ୍କ ନେତୃତ୍ୱରେ **ସୁନନ୍ଦା ପାଠୀ ଫାଉଣ୍ଡେସନ୍** ପ୍ରଭୃତି ସଂସ୍ଥାମାନ ଗଠିତ ହେଲା । ଫୋରମ୍‌ର ସଦସ୍ୟମାନେ ବିଭିନ୍ନ ସଂସ୍ଥା ସହିତ ସଂପୃକ୍ତ ହୋଇଗଲେ । ତେଣୁ ଫୋରମ୍ ଆଉ ପୂର୍ବଭଳି କର୍ମଚଞ୍ଚଳ ହେଇ ରହିଲା ନାହିଁ । ପରିଶେଷରେ ୨୪.୧୦.୮୮ରେ ଏହାର ବିଧିବଦ୍ଧ ଅନ୍ତିମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସଦସ୍ୟମାନଙ୍କର ରହିବାସ୍ଥାନ ଓ କାର୍ଯ୍ୟକ୍ଷେତ୍ରର ପରିବର୍ତ୍ତନ ଓ ଅବସର ଗ୍ରହଣ ପ୍ରଭୃତି କାରଣରୁ ଓଡ଼ିଶା କଲ୍‌ଚରାଲ ଫୋରମ୍ ବର୍ତ୍ତମାନ ନାମତଃ ଜୀବିତ ଅଛି ବୋଲି କୁହାଯାଇପାରେ ।

**୧୯୭୪-୧୯୮୮ ପ୍ରାୟ ପନ୍ଦର ବର୍ଷର ଅବଧି ଭିତରେ ଓଡ଼ିଶା କଲ୍‌ଚରାଲ୍ ଫୋରମ୍ କଳା ସଂସ୍କୃତିର ଗବେଷଣା ଓ ପ୍ରକାଶନ କ୍ଷେତ୍ରରେ ବହୁ ଉଲ୍ଲେଖନୀୟ କାର୍ଯ୍ୟ କରିଛି । ଫୋରମ୍‌ର ପରିକଳ୍ପନା ଓ ତାର ବିଭିନ୍ନ କାର୍ଯ୍ୟକ୍ରମର ସଫଳ ସଂପାଦନରେ ପାଠୀ ବାବୁଙ୍କ ପ୍ରତ୍ୟକ୍ଷ ସାହାଯ୍ୟ ଓ ଯୋଗଦାନ ପ୍ରଶଂସନୀୟ । ଓଡ଼ିଶା ସଂସ୍କୃତିର ବିଭିନ୍ନ ବିଭବକୁ ଲୋକଲୋଚନକୁ ଆଣିବା, ଗବେଷକ ଓ ପାଠକଙ୍କ ପାଖରେ ପହୁଞ୍ଚେଇବା, ଓଡ଼ିଶାର କୃତି ସନ୍ତାନମାନଙ୍କର ଅବଦାନକୁ ସୀକାର କରି ସେମାନଙ୍କୁ ସମ୍ବର୍ଦ୍ଧନା ଦେବା ଫୋରମ୍‌ର ପ୍ରମୁଖ କାର୍ଯ୍ୟକ୍ରମ ଥିଲା ।** ଭୁବନେଶ୍ୱରର ସିଦ୍ଧ ପୀଠ ରୂପେ ପ୍ରଖ୍ୟାତ ଗୌରୀ ମନ୍ଦିର ପରିସର ଥିଲା ଫୋରମ୍‌ର କେନ୍ଦ୍ରସ୍ଥଳ । ପ୍ରତିମାସର ପୂର୍ଣ୍ଣିମାଦିନ ଏଠି ଫୋରମ୍‌ର ବୈଠକ ବସୁଥିଲା । ଫୋରମ୍‌ର ସବୁ ସଦସ୍ୟ ଉପସ୍ଥିତ ହେଉଥିଲେ । ଦିବ୍ୟ ଅନ୍ନ, ଡାଲମା ଓ କ୍ଷୀରି ଗୌରୀଙ୍କ ପାଖରେ ଭୋଗ କରାଯାଉଥିଲା । ପ୍ରସାଦ ସେବନ ଅବସରରେ ବିଭିନ୍ନ ଗ୍ରନ୍ଥମାନଙ୍କର ରୂପରେଖ ଆଲୋଚନା କରାଯାଉଥିଲା । ସଦସ୍ୟମାନେ ନିଜ ଗବେଷଣାର ବିଷୟମାନ ନିର୍ବାଚନ କରୁଥିଲେ । କିଏ ଇତିହାସ ତ ଆଉକିଏ ସାହିତ୍ୟ ପୁଣି ଅନ୍ୟକିଏ ନୃତତ୍ତ୍ୱ ତ ଆଉ କିଏ ସଂଗୀତ ବିଷୟରେ ଗବେଷଣାର ଦାୟିତ୍ୱ ନେଉଥିଲେ । ପାଠୀ ବାବୁଙ୍କର ବିଷୟ ଥିଲା ଚିତ୍ରକଳା । ପାଞ୍ଚ ଛ' ମାସ ଭିତରେ ଗ୍ରନ୍ଥ ମୁଦ୍ରିତ ହେଇ ଏହି ଗୌରୀ ପୀଠରେ ଦେବୀଙ୍କୁ ଅର୍ପଣ କରାଯାଉଥିଲା । ଏହି କାର୍ଯ୍ୟକ୍ରମର ଅର୍ନ୍ତଭାବ ଥିଲା ସମର୍ପଣ, ସଂସ୍କୃତିକୁ ଓ ସଂସ୍କୃତିର ଉତ୍ସ ଗୌରୀଦେବୀଙ୍କୁ । ଏବେ ଫୋରମ୍‌ର ଏହି ସାରସତ କାର୍ଯ୍ୟକ୍ରମ ଆପାତତଃ ବନ୍ଦ ହେଇଯାଇଥିଲେ ହେଁ ପୂର୍ଣ୍ଣିମାରେ ବନ୍ଧୁମାନଙ୍କର ବୈଠକ ବସେ । ସ୍ମୃତି ରୋମନ୍ଥିତ ହୁଏ ।

ଭୁବନେଶ୍ୱର ୟୁନିଟ୍-୯ରେ ଥିବା ଗୋପବନ୍ଧୁ ମେମୋରିଆଲ୍ ହଲ୍‌ରେ ୨୬.୫.୭୪ ତାରିଖ ଦିନ ଫୋରମ୍ ପକ୍ଷରୁ ପ୍ରଥମ କରି ସଙ୍ଗୀତ ସାଧକ ଡକ୍ଟର ଦାମୋଦର ହୋତାଙ୍କୁ ସମ୍ବର୍ଦ୍ଧନା ଦିଆଯାଇଥିଲା । କଳାମଣ୍ଡପ ଠାରେ ୨୨.୭.୭୪ ତାରିଖରେ ଆୟୋଜିତ ସଭାରେ ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ଏବଂ ୧୬.୨.୭୫ ତାରିଖରେ ପଦ୍ମଶ୍ରୀ ସଂଯୁକ୍ତା ପାଣିଗ୍ରାହୀ ସମ୍ବର୍ଦ୍ଧିତ ହୋଇଥିଲେ । ଐତିହାସିକ ଶ୍ରୀଯୁକ୍ତ କେଦାନାଥ ମହାପାତ୍ର ଓ ଜାତୀୟ ସ୍ତରରେ ସୀକୃତି ଲାଭ କରିଥିବା ତବଲାବାଦକ ଶ୍ରୀଯୁକ୍ତ ଉମେଶ ଚନ୍ଦ୍ର କରଙ୍କୁ ୧୦.୧୧.୭୭ତାରିଖରେ ଏବଂ ୧୧.୧୧.୭୭ ତାରିଖରେ ପଣ୍ଡିତ ନୀଳମଣି ମିଶ୍ରଙ୍କୁ ଗୌରୀପୀଠରେ ସମ୍ବର୍ଦ୍ଧିତ କରାଯାଇଥିଲା । ସେହି ଗୌରୀପୀଠରେ ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କୁ ୧୮.୮.୭୯ ତାରିଖରେ ସମ୍ବର୍ଦ୍ଧନା ଦିଆଯାଇଥିଲା । ବିଭିନ୍ନ ଅବସରରେ ଅନୁଷ୍ଠିତ ଏହି ସଭାଗୁଡ଼ିକରେ ଡକ୍ଟର ଭାବଗ୍ରାହୀ ମିଶ୍ର, ଡକ୍ଟର କରୁଣାସାଗର

Digitized by srujanika@gmail.com

ବେହେରା, ଶ୍ରୀଯୁକ୍ତ ଶେଖ୍ ମତଲୁବ ଅଲ୍ଲି, ଡକ୍ଟର ହରିଶ୍ଚନ୍ଦ୍ର ଦାସ, ଶ୍ରୀଯୁକ୍ତ ଏ.ଏନ୍. ତିୱାରୀ, ଶ୍ରୀଯୁକ୍ତ ଡି.ଏନ୍. ପାଢ଼ୀ, ପ୍ରଫେସର ହୃଦାନନ୍ଦ ରାୟ, ଡକ୍ଟର କୃଷ୍ଣପ୍ରସାଦ ମିଶ୍ର ପ୍ରଭୃତି ସଭାପତିତ୍ୱ କରିଥିଲେ । କେଦାରଗୌରୀ ଓ ଲିଙ୍ଗରାଜ ମନ୍ଦିରରେ ଫୋରମ୍ ପକ୍ଷରୁ ନୃତ୍ୟଗୁରୁ ଦେବପ୍ରସାଦ ଦାସଙ୍କ ଦ୍ୱାରା ଆୟୋଜିତ ଓଡ଼ିଶୀନୃତ୍ୟ ସମାରୋହରେ ଶ୍ରୀଯୁକ୍ତ ରମାକାନ୍ତ ରଥ ଯୋଗଦେଇ ଏହାର କାର୍ଯ୍ୟକ୍ରମକୁ ପ୍ରଶଂସା କରିଥିଲେ । ଡକ୍ଟର ସୀତାକାନ୍ତ ମହାପାତ୍ର, ଡକ୍ଟର ଜଗନ୍ନାଥ ପ୍ରସାଦ ଦାସ, ବହୁ ଅଧ୍ୟାପକ ଓ କଳାକାର ତଥା ଗବେଷକ ଫୋରମ୍‌ର ବିଭିନ୍ନ କାର୍ଯ୍ୟକ୍ରମ ସହିତ ସଂପୃକ୍ତ ହୋଇଥିଲେ । ଏହି ସଭା ଓ ଉତ୍ସବାଦିର ଆୟୋଜନ ଓ ପରିଚାଳନାରେ ଡକ୍ଟର ଦିନନାଥ ପାଠୀଙ୍କ ଉଦ୍ୟମ, ନିଷ୍ଠା ଓ ସହଯୋଗ ସର୍ବଥା ପ୍ରଶଂସନୀୟ ଥିଲା ।

ଓଡ଼ିଶା କଲ୍‌ଚରାଲ ଫୋରମ୍ ପକ୍ଷରୁ ଓଡ଼ିଶାର ଐତିହ୍ୟ ଓ ସଂସ୍କୃତି ବିଷୟରେ ସାଧାରଣ ପାଠକଙ୍କ ସହିତ ଗବେଷକମାନଙ୍କୁ ସଚେତନ କରିବା ପାଇଁ କେତେକ ପୁସ୍ତକ ସମ୍ପାଦିତ ଓ ପ୍ରକାଶିତ ହୋଇଥିଲା । ତନ୍ମଧ୍ୟରେ **Culture** (୧୯୭୮), **ଶ୍ରୀଜଗନ୍ନାଥ ସଂସ୍କୃତି** (୧୯୭୮), **ଓଡ଼ିଶାର ସାଂସ୍କୃତିକ ଇତିହାସ** (୧୯୭୮), **ଓଡ଼ିଶାର ଶାକ୍ତ ସଂସ୍କୃତି** (୧୯୮୦), **ଓଡ଼ିଶାର ଲୋକ ସଂସ୍କୃତି** (୧୯୮୧), **ଓଡ଼ିଶାର ସାମରିକ ସଂସ୍କୃତି** (୧୯୮୨), **ଓଡ଼ିଶାର ଶୈବ ସଂସ୍କୃତି** (୧୯୮୩) ପ୍ରଭୃତିର ନାମ ଉଲ୍ଲେଖନୀୟ । କଟକର ଗ୍ରନ୍ଥମନ୍ଦିର ପକ୍ଷରୁ ଏହି ପୁସ୍ତକ ଗୁଡ଼ିକର ଏକାଧିକ ସଂସ୍କରଣ ଏଥି ମଧ୍ୟରେ ପ୍ରକାଶିତ ହୋଇଛି । ରାଷ୍ଟ୍ରଭାଷା ସମବାୟ ପ୍ରେସ୍ ପକ୍ଷରୁ ପ୍ରକାଶିତ **Culture** ପୁସ୍ତକର ମୁଖବନ୍ଧ ଲେଖିଛନ୍ତି ଡକ୍ଟର ସୀତାକାନ୍ତ ମହାପାତ୍ର । ଫୋରମ୍ ପକ୍ଷରୁ ପ୍ରସ୍ତୁତ ପୁସ୍ତକ **Jayadeva and Gitagovinda in the Tradition of Orissa.** ପାଠୀ ବାବୁଙ୍କ ପ୍ରତ୍ୟକ୍ଷ ସମ୍ପାଦନାରେ ୧୯୯୫ରେ ଦିଲ୍ଲୀରୁ ପ୍ରକାଶିତ ହୋଇଛି । କବିରାଜ ଜୟଦେବ ଓ ଗୀତଗୋବିନ୍ଦ ସମ୍ବନ୍ଧରେ ଏହା ଏକ ପ୍ରାମାଣିକ ଓ ସର୍ବୋତ୍କୃଷ୍ଟ ଗ୍ରନ୍ଥଭାବେ ବିଶ୍ୱର ଗବେଷକ ସମାଜରେ ଆଦୃତ । କିନ୍ତୁ ଦୁଃଖର କଥା "ଓଡ଼ିଶାର କଳାକାରମାନଙ୍କ ପରିଚୟ' (ତିନିଭାଗରେ ପରିକଳ୍ପିତ), **ଓଡ଼ିଶାର ସାଂସ୍କୃତିକ ଇତିହାସ**ର ବୃହତ୍ ଗ୍ରନ୍ଥ ତଥା ଭୁବନେଶ୍ୱରର ପ୍ରତ୍ୟେକ ମନ୍ଦିର ବିଷୟରେ ଖଣ୍ଡିଏ କରି ପୁସ୍ତକ ରଚନା କରିବାର ଯୋଜନା ଆରମ୍ଭ ହୋଇଥିଲେ ମଧ୍ୟ ଫୋରମ୍ ପକ୍ଷରୁ ତାହା ରୂପାୟିତ ହୋଇପାରିଲା ନାହିଁ ।

ଓଡ଼ିଶା କଲ୍‌ଚରାଲ ଫୋରମ୍‌ର ପ୍ରଥମ ସଭାପତି ଥିଲେ ଡକ୍ଟର ଭାବଗ୍ରାହୀ ମିଶ୍ର ଓ ଉପସଭାପତି ଥିଲେ ପଣ୍ଡିତ ନୀଳମଣି ମିଶ୍ର । ଅଳ୍ପକାଳ ପରେ ରାଜ୍ୟ ଅଭିଲେଖାଗାରର ପୂର୍ବତନ ଅଧ୍ୟକ୍ଷ ଡକ୍ଟର ମହେଶ ପ୍ରସାଦ ଦାଶ ସଭାପତି ଦାୟିତ୍ୱ ନେଲେ ଏବଂ ଅଦ୍ୟାବଧି ସେ ହିଁ ସଭାପତି ପଦରେ ଅଛନ୍ତି । ଅନ୍ୟ ସଦସ୍ୟମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ଅସୀମ ବସୁ, ଡକ୍ଟର ଦିନନାଥ ପାଠୀ, ଶ୍ରୀଯୁକ୍ତ ବାଳମୁକୁନ୍ଦ ନାୟକ, ଶ୍ରୀଯୁକ୍ତ ଇନ୍ଦ୍ରନାରାୟଣ ଝା, ଶ୍ରୀଯୁକ୍ତ ଚନ୍ଦ୍ରମୋହନ ତିୱାରୀ, ଶ୍ରୀଯୁକ୍ତ ଯୁଧିଷ୍ଠିର ସାହୁ ପ୍ରଭୃତି ସଦସ୍ୟ ଥିଲେ । ଡକ୍ଟର ରବିନାରାୟଣ ଦାଶ (ଦୁଃଖର କଥା ଅଳ୍ପଦିନ ତଳେ ଡ଼କ୍ଟର ରବିନାରାୟଣ ଦାଶଙ୍କ ପରଲୋକ ହୋଇଯାଇଛି ।) ଫୋରମ୍‌ର କୋଷାଧ୍ୟକ୍ଷ ଅଛନ୍ତି ଏବଂ ଏ ଲେଖକ ଅଦ୍ୟାପି ସଂପାଦକ ଭାବେ ପରିଚିତ ହେଉଛନ୍ତି ।

ଡକ୍ଟର ଦିନନାଥ ପାଠୀ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର କଳାବିଭାଗର କ୍ୟୁରେଟର ହେବାର ଅଳ୍ପକାଳ ପରେ ତାଙ୍କର କାର୍ଯ୍ୟକ୍ଷେତ୍ର କ୍ରମବିସ୍ତାର ଲାଭ କଲା । ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ ନିଗମ ଠାରୁ ଆରମ୍ଭ କରି ରାଜ୍ୟ ସରକାର ଓ ଭାରତ ସରକାରଙ୍କ ବିଭିନ୍ନ ପଦପଦବୀର ଦାୟିତ୍ୱ ନେଇ ସେ ଭାରତର ପ୍ରମୁଖ ସ୍ଥାନମାନ ପରିଦର୍ଶନ ସହିତ ବିଦେଶଯାତ୍ରା ଆରମ୍ଭ କଲେ । ବିଭିନ୍ନ କାର୍ଯ୍ୟ ପାଇଁ ସେ ବହୁବାର ଦେଶ ବାହାରକୁ ଯିବାକୁ ଲାଗିଲେ । ବାରମ୍ବାର ବିଶ୍ୱଭ୍ରମଣ କରିବାରେ ପାଠୀ ବାବୁ ପ୍ରଥମ ଓଡ଼ିଆ କଳାକାର ବୋଲି ମନେହୁଏ । ଫଳରେ ପୃଥିବୀର ବହୁ ବିଦ୍ୱାନ, ଗବେଷକ, କଳାକାରଙ୍କ ସହିତ ପାଠୀ ବାବୁ ପରିଚିତ ହେବା ସଙ୍ଗେସଙ୍ଗେ ବିଶ୍ୱ ଦରବାରରେ ଓଡ଼ିଶାର ଐତିହ୍ୟ ଓ ସଂସ୍କୃତିକୁ ଗ୍ରନ୍ଥ ରଚନା ମାଧ୍ୟମରେ ଉପସ୍ଥାପନ କରିବାରେ ସଫଳ ହେଲେ । ସୁଇଜରଲ୍ୟାଣ୍ଡର ଜୁରିକ୍ ସ୍ଥିତ

Digitized by srujanika@gmail.com

ରିଟ୍‌ବର୍ଗ ସଂଗ୍ରହାଳୟର ନିର୍ଦ୍ଦେଶକ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଗବେଷକ ଡକ୍ଟର ଏବର୍‌ହାଡ୍ ଫିସର୍‌ଙ୍କ ସହଯୋଗରେ ଓଡ଼ିଶାର କଳା ଓ ସଂସ୍କୃତି ସଂପର୍କରେ ବହୁଗ୍ରନ୍ଥ ପ୍ରଣୟନ କଲେ ।

ବହୁ ଉଚ୍ଚ ସମ୍ମାନର ଅଧିକାରୀ ହୋଇଥିଲେ ମଧ୍ୟ ପାଠୀ ବାବୁ ଏହି ଲେଖକ ପାଖରେ ସେଇ ବତିଶ ବର୍ଷ ତଳର ନିରହଙ୍କାର, ମଧୁରଭାଷୀ, ରଙ୍ଗ-ରହସ୍ୟ ଓ ଆଡ଼ମ୍ବର ପ୍ରିୟ, ସୃଜନଶୀଳ, ଅକ୍ରୋଧ, କର୍ମଠ, ଜିଜ୍ଞାସୁ ଯୁବକ ଦିନନାଥ ହୋଇ ରହିଛନ୍ତି । ତାଙ୍କୁ ଦେଖିଲେ, ତାଙ୍କ ପାଖରେ ବସିଲେ, କଥାବାର୍ତ୍ତା କଲେ ଏବେ ବି ପ୍ରାଣମନ ଆନନ୍ଦରେ ପୂର୍ଣ୍ଣ ହୋଇଯାଏ । ଅନୁଜ ପରି ତାଙ୍କୁ ଶାସନ କରିବାକୁ, ପରାମର୍ଶ ଓ ଉପଦେଶ ଦେବାକୁ ଇଚ୍ଛା ହୁଏ । ଡକ୍ଟର ପାଠୀ ଉତ୍ତରୋତ୍ତର ଉନ୍ନତି କରନ୍ତୁ, ତାଙ୍କର ରଚନାତ୍ମକ କାର୍ଯ୍ୟ ଅଧିକରୁ ଅଧିକ ସରସ ସୁନ୍ଦର ଓ ସୁପ୍ରଚାରିତ ହେଉ, ସେ ଦୀର୍ଘ ନିରାମୟ ଜୀବନଯାପନ କରନ୍ତୁ ଏବଂ ନିଜ ଜନ୍ମଭୂମିର ଟେକ ରଖିବାରେ ଓ ଦେଶର କଲ୍ୟାଣରେ ସର୍ବଦା କର୍ମତତ୍ପର ହୁଅନ୍ତୁ ବୋଲି ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଠାରେ ପ୍ରାର୍ଥନା କରୁଛି ।



Digitized by srujanika@gmail.com

ପ୍ରବୀର କୁମାର ଦଳାଇ

## ବାଃ ବାଃରେ ଓ୍ୱା

ବ୍ରିଟିଶ୍ ଶାସନ କବଳରୁ ଦେଶକୁ ମୁକୁଳେଇବା ପାଇଁ ଭାରତରେ ଯେଉଁ ସାଧୀନତା ଆନ୍ଦୋଳନ ମୁଣ୍ଡ ଟେକିଲା, ତା'ର ଅନ୍ତଃରାଳରେ ଏକ ନୂତନ କଳା ଆନ୍ଦୋଳନର ସପ୍ନ ଦେଖିହେଲା ଏବଂ ଭାରତ ସାଧୀନ ହେବା ସହିତ ଦେଶର ବିଭିନ୍ନ ମୁଖ୍ୟ ସହରମାନଙ୍କରେ ଆଧୁନିକ କଳାଚର୍ଚ୍ଚା ଆରମ୍ଭ ହେଲା । ମୁଖ୍ୟତଃ ବମ୍ବେ, କଲିକତା, ମାଡ୍ରାସ୍ ଏବଂ ଦିଲ୍ଲୀ ସହରରେ ଏ କଥା ଘଟିଲା । ଯଦିବା ଏହି ସହରମାନଙ୍କରେ ବହୁ ଆଗରୁ କଳା ବିଦ୍ୟାଳୟମାନ  ପ୍ରତିଷ୍ଠା କରାଯାଇ ବ୍ରିଟିଶ୍ ଢଙ୍ଗରେ କଳାଶିକ୍ଷା ଦିଆଯାଉଥିଲା ସାଧୀନତା ପରବର୍ତ୍ତୀ ଭାରତରେ ଶିଳ୍ପୀମାନେ ବିଭିନ୍ନ ୟୁରୋପୀୟ ଧାରାର ଅବଲମ୍ବନରେ କଳା ସର୍ଜନାରେ ନିମଗ୍ନ ରହିଲେ । ଏହି ଆଧୁନିକ କଳା ପ୍ରାଚୀନ ଭାରତୀୟ କଳାର କ୍ରମ ବିବର୍ତ୍ତନ ଅବସ୍ଥା ନୁହେଁ ।  କାରଣ ବ୍ରିଟିଶ୍ ରାଜତ୍ୱ ସମୟରେ ହିଁ ଭାରତର ଲୋକକଳା, ହସ୍ତଶିଳ୍ପ ଏବଂ ପାରମ୍ପରିକ କଳାର ପତନ ଘଟିବା ଆରମ୍ଭ ହୋଇଯାଇଥିଲା । କଳା ବିଦ୍ୟାଳୟମାନଙ୍କରୁ ଉତ୍ତୀର୍ଣ୍ଣ ସେତେବେଳର ଶିକ୍ଷିତ ଯୁବଗୋଷ୍ଠୀମାନେ ପାରମ୍ପରିକ ଶିଳ୍ପୀମାନଙ୍କଠାରୁ ନିଜକୁ, ମାର୍ଜିତ ଏବଂ ସତନ୍ତ୍ର ବୋଲି ମନେକଲେ । ଏମାନଙ୍କ କଳାକୃତିଗୁଡ଼ିକ କିଣିବା ପାଇଁ ଗ୍ରାହକ ଓ ଉତ୍କୃଷ୍ଟ କଳାକୃତିଗୁଡ଼ିକୁ ସୀକୃତି ଦେବା ତଥା ପୁରସ୍କୃତ କରିବା ପାଇଁ ପୃଷ୍ଠପୋଷକତାର ଯଥେଷ୍ଟ ସମ୍ଭାବନା ନ ଥିବାରୁ ବ୍ୟକ୍ତିଗତ ଉଦ୍ୟମରେ ବିଭିନ୍ନ ସହରମାନଙ୍କର ବିଭିନ୍ନ କଳାନୁଷ୍ଠାନମାନ ଗଢ଼ି ଉଠିଲା ।

ଏହିପରି ଭାବେ ୧୯୪୭ରେ ବମ୍ବେଠାରେ ପ୍ରୋଗ୍ରେସିଭ୍ ଆର୍ଟ୍ ସୋସାଇଟିର ଜନ୍ମ ହୁଏ । ଏହାର ପ୍ରମୁଖ ପ୍ରବକ୍ତା ଥିଲେ, ଫ୍ରାନ୍‌ସିସ୍ ନିଉଟନ୍ ସୁଜା ଏବଂ ପରେ ପରେ ଯେଉଁ ଶିଳ୍ପୀମାନେ ପରମ୍ପରାରୁ ମୁକ୍ତ ହୋଇ କିଛି ନୂତନତ୍ୱର ଅପେକ୍ଷା ରଖିଥିଲେ, ସମସ୍ତେ ଗୋଟିଏ ସ୍ଥାନରେ ଏକତ୍ରିତ ହୋଇଯାଇଥିଲେ ।  ଆରା, ରାଜା, ହୁସେନ୍, ଗାୟତୋଣ୍ଡେ, ଗାଡ଼େ ପ୍ରଭୃତି ଏହି ଗ୍ରୁପ୍‌ରେ ସାମିଲ ହୋଇ ଭାରତୀୟ କଳାର ଏକ ନୂତନ ଦିଗ ଉନ୍ମୋଚନ କରିଥିଲେ । ସେତେବେଳକୁ ୧୯୪୨ରେ କଲିକତା ଗ୍ରୁପ୍‌ର ଜନ୍ମ ହୋଇସାରିଥିଲା ।  ଅବନୀନ୍ଦ୍ରନାଥ ଠାକୁର ଏବଂ ତାଙ୍କ ଶିଷ୍ୟମାନଙ୍କ ଦ୍ୱାରା ଯେଉଁ କଳା ଆନ୍ଦୋଳନ ସର ଉତ୍‌ଥାପନ କରାଗଲା, ତାହା ଭାରତ ବର୍ଷର କଳା ଇତିହାସରେ ନବଜାଗରଣର କାରଣ ବୋଲି କୁହାଯାଏ ।  କଲିକତା ଗ୍ରୁପ୍ ଯଦିବା ପ୍ରାଚୀନତାର ମୂଲ୍ୟକୁ ଅସୀକାର କରିନଥିଲା ତଥାପି ଏହା ସମୟର ଡାକରାକୁ ଉପେକ୍ଷା କରି ନ ପାରି ସମକାଳୀନତାର ସ୍ରୋତରେ ସାମିଲ ହୋଇଥିଲା ।  ପ୍ରଦୋଷ ଦାସଗୁପ୍ତ, ପ୍ରାଣକୃଷ୍ଣ ପାଲ୍, ଗୋପାଲ ଘୋଷ, ରାମକିଙ୍କର ବେଢ୍, ପରିତୋଷ ସେନ୍, ନିରଜ ମଜମୁଦାର, ରଥିନ ମିତ୍ର, ସୁନିଲ ମାଧବ ସେନ, ହେମନ୍ତ ମିଶ୍ର ପ୍ରଭୃତି କଲିକତା ଗ୍ରୁପ୍‌ର ପ୍ରାଣ କେନ୍ଦ୍ର ଥିଲେ ।

ମାଡ୍ରାସ୍ ସ୍କୁଲରେ ସେତେବେଳେ ସେଭଳି ପରିବେଶ ନ ଥିଲା ଯେପରି ବଙ୍ଗଳାରେ ଅବନୀନ୍ଦ୍ରନାଥଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିଲା ।  ମାଡ୍ରାସରେ ଶେଷ ପର୍ଯ୍ୟାୟରେ ଚିତ୍ରକଳା ଏକ ସୀମିତ ତଥା ଅନ୍ୱେଷଣାତ୍ମକ ପରିବେଶରେ  ଗତି କରୁଥାଏ ।  ଯେତେବେଳେ ଭାରତୀୟ ଚିତ୍ରକଳା ଅସୀମ ସମ୍ଭାବନାର ଅପେକ୍ଷା ରଖିଥାଏ, ସେତେବେଳେ ଏହି ସମ୍ଭାବନାର ପ୍ରୟୋଗ ଏବଂ ଏହାର ବିଭିନ୍ନ ବିକଳ୍ପ ମାଧମ ଚୟନରେ ମାଡ୍ରାସ୍ ସ୍କୁଲ କ୍ରମଶଃ ଅକ୍ଷମ ହୋଇଯାଇଥାଏ ।  ଏହା ସେତେବେଳେ ଦେବୀପ୍ରସାଦ ରାୟ ଚୌଧୁରୀ(ଯାହାଙ୍କୁ କେନ୍ଦ୍ରକରି ମାଡ୍ରାସସ୍କୁଲ ଗଢ଼ି ଉଠିଥିଲା) ସୀକାର କରି ସାରିଥିଲେ ।  ଏହି ପ୍ରକାର ମନୋବୃତ୍ତିରେ ଏକ ଅନିର୍ଦ୍ଦିଷ୍ଟ ଲକ୍ଷ୍ୟ, ଭାବନା ଏବଂ ପ୍ରବୃତ୍ତିକୁ ସମ୍ବଳ କରି ମାଡ୍ରାସରେ ଦୁଇଟି ସଂସ୍ଥା (୧) ୧୯୪୪ରେ ପ୍ରୋଗ୍ରେସିଭ୍ ପେଣ୍ଟର୍ସ୍ ଆସୋସିଏସନ୍,(୨) ୧୯୪୬ରେ

Digitized by srujanika@gmail.com

ସାଉଥ୍ ଇଣ୍ଡିଆନ୍ ସୋସାଇଟି ଅଫ୍ ପେଣ୍ଟର୍ସ୍‌ର ଜନ୍ମ ହେଲା ଯୋଉଥିରେ ମାଡ୍ରାସ୍ ସ୍କୁଲ ସହ ସମଗ୍ର ଭାରତର ଚିତ୍ର ଇତିହାସରେ ନିଜର ଏକ ସତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲେ ।

ସେହିପରି ଦିଲ୍ଲୀଠାରେ ୧୯୩୯ରେ କେତେକ ପ୍ରଗତିଶୀଳ ପ୍ରବୃତ୍ତିର କଳାକାର 'ଶିଳ୍ପଚକ୍ର' ନାମକ ସଂସ୍ଥାର ସ୍ଥାପନା କରନ୍ତି । ଯେଉଁମାନେ କଳା ପ୍ରତି ଏକ ନବୀନ ଦୃଷ୍ଟିଭଙ୍ଗୀ ରଖିଥିଲେ, ଚିତ୍ରରେ ନୂତନ ବିଷୟର ଏବଂ ନୂତନ ସୌନ୍ଦର୍ଯ୍ୟବୋଧର ପ୍ରୟୋଗ ଏମାନେ କରିବା ଆରମ୍ଭ କଲେ ଯାହାକି ସେ ସମୟରେ କଳାକ୍ଷେତ୍ରରେ ରାଜତ୍ୱ କରୁଥିବା ସାମନ୍ତବାଦୀ ଜଡ଼ତା ଏବଂ ରୂଢ଼ିବାଦୀତାକୁ ଭାଙ୍ଗି ଚୁରମାର୍ କରିଦେଇଥିଲା । ଦିଲ୍ଲୀ ଶିଳ୍ପୀଚକ୍ରର ପ୍ରମୁଖ କଳାକାରମାନଙ୍କ ମଧ୍ୟରୁ ଭବେଶ ସାନ୍ୟାଲ୍ ମୁଖ୍ୟ ସମୟ ପାଇଁ ତାର ଚେୟାରମ୍ୟାନ୍ ମଧ ଥିଲେ । ତାଙ୍କ ବ୍ୟତୀତ ଅନ୍ୟ ଯେଉଁ ଶିଳ୍ପୀମାନେ ଏଠି ଏକଜୁଟ ହୋଇଥିଲେ ସେମାନେ ହେଲେ କେ.ଏସ.କୁଲକର୍ଣ୍ଣୀ, କନ୍‌ୱଲ କୃଷ୍ଣ, ସତୀଶ ଗୁଜରାଲ, ରାମକୁମାର, ପ୍ରାଣନାଥ ମାଗୋ, ହର୍‌କିଶନ୍ ଲାଲ୍, ଦିନ୍‌କର କୌଶିକ୍, କୃଷ୍ଣଚନ୍ଦ୍ର ଆର୍ଯ୍ୟ, ଧନରାଜ ଭଗତ ପ୍ରଭୃତି ।

୧୯୫୦ ମସିହା ବେଳକୁ ବରୋଦାର ଏମ. ଏସ୍. ବିଶ୍ୱବିଦ୍ୟାଳୟର ଲଳିତକଳା ବିଭାଗର ଆରମ୍ଭ ହୁଏ । ଏହା ସହିତ ବରୋଦା ସ୍କୁଲ୍‌ର ଶୁଭାରମ୍ଭ ହୁଏ ଓ ତାହା ସମସାମୟିକ ଭାରତୀୟ କଳାଜଗତକୁ ଗଭୀର ଭାବେ ପ୍ରଭାବିତ କରେ । ସେତେବେଳକୁ ସେଠି ଏନ୍.ଏସ୍.ବେନ୍ଦ୍ରେ, ଶଙ୍ଖୋ ଚୌଧୁରୀ, କେ.ଜି ସୁବ୍ରମଣିୟନ୍ ଅଧ୍ୟାପନାରେ ଯୋଗ ଦିଅନ୍ତି ଯେଉଁମାନେ କି କଳାକ୍ଷେତ୍ରରେ କୌଣସି ପ୍ରଚଳିତ ଧାରାକୁ ଅନୁସରଣ ନ କରି ନିଜସ୍ୱ ଶୈଳୀ ଏବଂ ଦୃଷ୍ଟିଭଙ୍ଗୀ ପ୍ରତି ଗୁରୁତ୍ୱାରୋପ କଲେ । ଏହା ଫଳରେ ବରୋଦା ସୃଜନାତ୍ମକ କଳାକାରମାନଙ୍କ ପାଇଁ ଏକ ପ୍ରଭାବଶାଳୀ ପ୍ରଶିକ୍ଷଣ କେନ୍ଦ୍ର ଭାବେ ପ୍ରତିଷ୍ଠା ଲାଭ କଲା ଏବଂ ସେହି ଦଶକର ଶେଷ ବେଳକୁ ସେଠିକାର (ସେଠାରେ) ଅଧିକାଂଶ ଛାତ୍ର ଅଧିକ ପରିପକ୍ୱ ହୋଇ ଦେଖାଦେଇଥିଲେ ଏବଂ ପ୍ରତିଷ୍ଠା ଲାଭ କଲେ । ପରେ ପରେ ଜ୍ୟୋତିଭଟ୍ଟ, ରତନ ପାରିମୁ, ଜୟରାମ ପଟେଲ ଏବଂ ସତୁରୀ ଦଶକର ଉତ୍ତରାର୍ଦ୍ଧରେ ଭୂପେନ ଖକ୍‌ଖର, ଗୁଲାମ ଶେଖ, ମନୁ ପାରିଖ ପ୍ରଭୃତି ବରୋଦାରେ ସଂଗଠିତ କଳା ଆନ୍ଦୋଳନକୁ ଅଧିକ ମାତ୍ରାରେ ପ୍ରଭାବିତ କରିଥିଲେ ।

ଆନ୍ଧ୍ରପ୍ରଦେଶରେ ସାଧୀନତା ପରବର୍ତ୍ତୀ କାଳରେ ହାଇଦ୍ରାବାଦ ରାଜ୍ୟର ପ୍ରମୁଖ କଳାକେନ୍ଦ୍ର ରୂପେ ବିକଶିତ ହୋଇ ସାରିଥିଲା । ଏବେ କଳାକାରମାନେ ପଛ ପିଢ଼ିର କଳାକାରଙ୍କଠାରୁ ଅଧିକ ସକ୍ରିୟ ତଥା ପ୍ରଭାବଶାଳୀ ଥିଲେ । ସେତେବେଳେକୁ ସମସ୍ତ ଚିତ୍ରକଳା ଆଧୁନିକବାଦରେ ସଂକ୍ରମିତ ହୋଇ ସାରିଥିଲା । ଯୁବ ଚିତ୍ରକରମାନେ ନୂତନ ପ୍ରଭାବକୁ ସେମାନଙ୍କ କାମରେ ପ୍ରୟୋଗ କରିବାରେ ଅଧିକ ଉତ୍ସୁକ ଥିଲେ । ପ୍ରମୁଖ ଚିତ୍ରକରମାନଙ୍କ ମଧ୍ୟରୁ ରେଡ୍ଡୁପା ନାଇଡୁ, ଏସ୍.ବି.ରାମାରାଓ, କ୍ରିଷ୍ଣା ରେଡ୍ଡି, ଲକ୍ଷ୍ମା ଗୌଡ଼ ପ୍ରଭୃତି ଆନ୍ଧ୍ର ଚିତ୍ରକଳାକୁ ଜାତୀୟ ତଥା ଆନ୍ତର୍ଜାତୀୟ ମାନ୍ୟତା ଦେବାରେ ଉଲ୍ଲେଖନୀୟ ଯୋଗଦାନ କରିଛନ୍ତି । ଏମାନଙ୍କ ମଧ୍ୟରୁ କ୍ରିଷ୍ଣା ରେଡ୍ଡି ଓ ରାମା ରାଓ ବହୁଦିନ ବିଦେଶରେ ରହିବା ଯୋଗୁଁ ଆନ୍ଧ୍ରକଳାକୁ ସମପରିମାଣରେ ପ୍ରଭାବିତ କରି ପାରିନଥିଲେ ମଧ ସମକାଳୀନ ଭାରତୀୟ ଚିତ୍ରକଳାରେ ଏମାନେ ଉଲ୍ଲେଖନୀୟ ନାମ ଅଟନ୍ତି ।

ସମଗ୍ର ଭାରତର ସମସାମୟିକ କଳାଜଗତରେ ଏଭଳି ଏକ ପରିବର୍ତ୍ତନ ଘଟିସାରିଥିବା ବେଳେ ତତ୍‌କାଳୀନ ଓଡ଼ିଶାର ଅବସ୍ଥାକୁ ବିଚାର କଲେ ସମସ୍ତ କ୍ଷେତ୍ରରେ ଏହା ଏକ ଅନଗ୍ରସର ଏବଂ ପଛୁଆ ରାଜ୍ୟ ଭାବେ ବିବେଚନା କରାଯାଇଥିଲା, ଆଧୁନିକ କଳା ଆନ୍ଦୋଳନରେ ଏହା ସେତେବେଳେ ବହୁ ପଛରେ । ସମଗ୍ର ଭାରତର ଆଧୁନିକ କଳାଜଗତରେ ଏଭଳି ଏକ ପରିବର୍ତ୍ତନ ଘଟି ସାରିଥିବା ବେଳେ ଓଡ଼ିଶା ତଥା ତତ୍କାଳୀନ ଓଡ଼ିଆ ଚିତ୍ରକରମାନେ ଏହି ମହାଭାରତୀୟ

Digitized by srujanika@gmail.com

ପରିବର୍ତ୍ତନର ସ୍ରୋତରେ ନିଜକୁ ସାମିଲ କରି ପାରି ନଥିଲେ କିମ୍ବା ସେଭଳି ଏକ ଯୁଗ ଆରମ୍ଭ ପାଇଁ ସେ ପର୍ଯ୍ୟନ୍ତ ଉପଯୁକ୍ତ ଭିତ୍ତିଭୂମି ପ୍ରସ୍ତୁତ ହୋଇପାରି ନ ଥିଲା ବୋଧହୁଏ । ଯଦିବା ଦେଶ ସାଧୀନ ହେବା ସହ ଗଞ୍ଜାମର ବ୍ରହ୍ମପୁର ଠାରେ **ଉତ୍କଳ ସ୍କୁଲ ଅଫ୍ ଆର୍ଟ୍** (ଶରତଚନ୍ଦ୍ର ଦେବ) **୧୯୪୫** ମସିହାରେ ଏବଂ ୧୯୪୯ରେ ଜୟପୁରଠାରେ ଏକ **କଳା ସଂଗୀତ ବିଦ୍ୟାଳୟ** ରାଜା ବିକ୍ରମଦେବ ବର୍ମାଙ୍କ ତତ୍ତ୍ୱାବଧାନରେ (ଯେଉଁଠି ସୀମାଦ୍ରି ମହାରଣା ପ୍ରଥମ ଅଧ୍ୟକ୍ଷ ଭାବେ ଯୋଗ ଦେଇଥିଲେ) ଗଢ଼ି ଉଠିଥିଲା ତଥାପି ପ୍ରକୃତରେ ଆଧୁନିକ କଳା ଆନ୍ଦୋଳନର ସୂତ୍ରପାତ ହୋଇଥିଲା ଭାରତ ସାଧୀନ ହେବାର ଦଶ ବାରବର୍ଷ ପରେ ଯେତେବେଳେ **୧୯୫୭ରେ ଗଞ୍ଜାମର ଖଲ୍ଲିକୋଟଠାରେ ସରକାରୀ କଳାବିଦ୍ୟାଳୟର ପ୍ରତିଷ୍ଠା ହେଲା । ଏହା ସହ ୧୯୬୦ରେ ଭୁବନେଶ୍ୱର ଠାରେ ରାଜ୍ୟ ଲଳିତକଳା ଏକାଡେ଼ମୀ ଜନ୍ମଗ୍ରହଣ କଲା ।** ସେତେବେଳେକୁ ଓଡ଼ିଶା ଆଧୁନିକ କଳାଆନ୍ଦୋଳନରେ ବହୁ ପଛରେ । ଓଡ଼ିଶା ଲଳିତ କଳା ଏକାଡ଼େମୀର ପ୍ରଥମ ଚିତ୍ରକଳା ପ୍ରଦର୍ଶନୀର ଆଧୁନିକ କଳା ବିଭାଗରେ ଅଧାପକ ଅଜିତ କେଶରୀ ରାୟ ପ୍ରଥମେ ପରସ୍କୃତ ହେଲେ । **ଯଦିଓ ତା ଆଗରୁ ଗୋପାଳ ଚରଣ କାନୁନଗୋ କ୍ୟୁବିଷ୍ଟ** ଧାରାରେ କିଛି ଚିତ୍ର ଓ **ବହିର ପ୍ରଚ୍ଛଦ ଅଙ୍କନ କରିଥିଲେ ତଥାପି ୧୯୬୨ ମସିହାକୁ ଓଡ଼ିଶାରେ ଆଧୁନିକ କଳା ଆନ୍ଦୋଳନର ଆରମ୍ଭ ବୋଲି ବିଗ୍ଭର କରିବାକୁ ପଡ଼ିବ । ଠିକ୍ ତା ପରବର୍ଷ ଖଲ୍ଲିକୋଟଠାରେ ପଢ଼ୁଥିବା ଛାତ୍ରମାନଙ୍କ ମଧ୍ୟରୁ ପ୍ରଥମ କରି ଦିନନାଥ ପାଠୀ କଲିକତାଠାରେ ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀରେ ପୁରସ୍କୃତ ହେଲେ । ଯେତେବେଳେ ଓଡ଼ିଶାରେ ଚିତ୍ରକଳା ସାଧନା ଏହି ଘଟଣା ଦ୍ୱୟ ଓଡ଼ିଶାର ଚିତ୍ରଧାରାରେ ଆଧୁନିକତାର ପ୍ରୟୋଗ କରିବା ଆରମ୍ଭ ହିଁ କରିଥିଲା** । ଧୀରେ ଧୀରେ ଏକ କଳା ଆନ୍ଦୋଳନ ମୁଣ୍ଡ ଟେକିଥିଲା ଏବଂ ଖଲ୍ଲିକୋଟଠାରେ ଯେଉଁ ଶିକ୍ଷକମାନେ ଏହି ଆନ୍ଦୋଳନକୁ ଆଗେଇ ନେବାର ଶପଥ ନେଇଥିଲେ ସେମାନେ ବାସ୍ତବିକ ଦେଖିବାକୁ ଗଲେ ଗୁରୁ ଓ ଆଧୁନିକ କଳାଆନ୍ଦେଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲେ । ସେମାନେ ହେଲେ ଶରତ ଚନ୍ଦ୍ର ଦେଓ, ଅଜିତ କେଶରୀ ରାୟ ଏବଂ ଅନନ୍ତ କୁମାର ପଣ୍ଡା । ପ୍ରକୃତରେ ଗୁରୁ ଏବଂ ଶିଷ୍ୟମାନଙ୍କ ମଧ୍ୟରେ ବୟସର ଅନ୍ତର ଥିଲେ ମଧ ଗୁରୁ ଓ ଛାତ୍ରମାନେ ଏକତ୍ରିତ ହୋଇ ଆଧୁନିକ କଳାଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲେ । ସେହି ଛାତ୍ରମାନେ କଳାବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେବାପରେ ଓଡ଼ିଶା ସରକାରଙ୍କ ବିଭିନ୍ନ ଦପ୍ତରରେ ନିଯୁକ୍ତି ପାଇ କଟକ ଏବଂ ଭୁବନେଶ୍ୱରରେ ବସବାସ କଲେ । ଫଳତଃ ଓଡ଼ିଶାରେ ଆଧୁନିକ କଳା ଆନ୍ଦୋଳନକୁ ଉଜ୍ଜୀବିତ ରଖିବା ପାଇଁ ବିଭିନ୍ନ ଗ୍ରୁପ୍‌ର ଜନ୍ମ ହୋଇଥିଲା । ପ୍ରଥମେ କଟକ ଠାରେ ୧୯୬୩/୬୪ ମସିହାରେ **ଉତ୍କଳ ଚାରୁକଳା ପରିଷଦ** ଗଠନ କରାଗଲା । କିନ୍ତୁ କିଛି ବର୍ଷ ପରେ ଏହି ଅନୁଷ୍ଠାନ ଆଉ କାର୍ଯ୍ୟକ୍ଷମ ହୋଇ ପାରିଲା ନାହିଁ । ଏହାର ବର୍ଷେ କିମ୍ବା ଦୁଇ ବର୍ଷପରେ ଭୁବନେଶ୍ୱରରେ **ଶିଳ୍ପୀସଂସଦ** ନାମରେ ଏକ କଳା ଅନୁଷ୍ଠାନ ଜନ୍ମନେଲା ଓ ତାରି ମାର୍ଫତରେ ଆଉ ଏକ କଳା ବିଦ୍ୟାଳୟ(ଚିତ୍ରମ୍ ସ୍କୁଲ ଅଫ୍ ଆର୍ଟ) ଗଠନ ହେଇପାରିଲା ।

ସେତେବେଳକୁ ଖଲ୍ଲିକୋଟରୁ ଅଧାପକ ଅନନ୍ତ ପଣ୍ଡା ଭୁବନେଶ୍ୱର ଆସି D.P.I Office ରେ ସତନ୍ତ୍ର କଳାଅଧିକାରୀ ଭାବେ ଯୋଗ ଦେଇଥା'ନ୍ତି । ଭୁବନେଶ୍ୱର ସହରରେ ଅନ୍ୟାନ୍ୟ ସହର ଭଳି ଅନୁଷ୍ଠାନ ଗଢ଼ାଗଲା, ଯାହାହେଲା **WA** ବା **Working Artists Association of Orissa** । ୧୯୭୩ ମସିହାରେ ଏହି ଅନୁଷ୍ଠାନ ଭୁବନେଶ୍ୱରରେ ତା'ର ପ୍ରଥମ ଚିତ୍ର ପ୍ରଦର୍ଶନୀ ଆୟୋଜନ କଲା । ଚିତ୍ରକଳା କ୍ଷେତ୍ରରେ ତତ୍‌କାଳୀନ ବିଭିନ୍ନ ସମସ୍ୟା ଏବଂ ପ୍ରତିବନ୍ଧକକୁ ସାମନା କରିବା ଏବଂ ଉପଲବ୍ଧି କରୁଥିବାବେଳେ ସମସାମୟିକ କଳାସାଧନାରେ ଯେଉଁମାନେ ବିଭିନ୍ନ ପରୀକ୍ଷାନିରୀକ୍ଷା ଚଳେଇ ଆସୁଥିଲେ ଓ ସେହିଭଳି ଇଚ୍ଛା ନିଜ ଭିତରେ ରଖିଥିଲେ, ସେମାନଙ୍କୁ ତତ୍‌କାଳୀନ କଳା ପରିବେଶ ଏକ ନୂଆ ରାହା ଖୋଜିବା ପାଇଁ ଏକ ରକମ ବାଧ କରିଥିଲା । **ସମସ୍ତେ ଗୁରୁ ଅନନ୍ତ ପଣ୍ଡାଙ୍କ**

Digitized by srujanika@gmail.com

ତତ୍ତ୍ୱାବଧାନରେ ଏକତ୍ରିତ ହେଲେ । ଯଦିବା ୧୯୭୩ରେ 'WA' ବିଧିବଦ୍ଧ ଭାବେ ତା'ର କାର୍ଯ୍ୟ ଆରମ୍ଭକଲା କିନ୍ତୁ ୧୯୬୯ ବେଳକୁ ଭୁବନେଶ୍ୱରରେ ଏହା ଜନ୍ମ ହେଇସାରିଥିଲା । ସେତେବେଳେ ଅନନ୍ତ ପଣ୍ଡା ଏହାର ଚେୟାରମ୍ୟାନ୍ ଏବଂ ଦିନନାଥ ପାଠୀ ସେକ୍ରେଟାରୀ । ଏହି ଅନୁଷ୍ଠାନରେ କେବଳ କଳାଡ଼ିଗ୍ରୀଧାରୀ ନୁହେଁ ବରଂ ତିନିଜଣ ଅଣ ତାଲିମ ପ୍ରାପ୍ତଶିଳ୍ପୀ(ଦୁର୍ଗାଚରଣ ପଣ୍ଡା, ଜେ.ପି ଦାସ ଏବଂ ପୁଷ୍ପା ଜୈନ) ସଭ୍ୟ ରହିଲେ । " WA' ର ଆଭିମୁଖ୍ୟ ହେଲା ଯିଏ କଳା ଅଭ୍ୟାସ କରେ, ସିଏ ଡିଗ୍ରୀଧାରୀ ହେଉ ବା ନ ହେଉ ଚିତ୍ରଶିଳ୍ପୀ -ଏହି ତିନିଜଣ ଅଣ ତାଲିମ ପ୍ରାପ୍ତଙ୍କୁ ଛାଡ଼ିଦେଲେ ଅନ୍ୟ ତିନିଜଣ ଡ଼ିଗ୍ରୀ ଧାରୀ ଶିଳ୍ପୀ ସଭ୍ୟ ହେଲେ ଡ଼ି.ଏନ୍.ରାଓ, ବି.ଦଣ୍ଡପାଣି ଏବଂ କାଶୀନାଥ ଜେନା । ପରବର୍ତ୍ତୀ ସମୟରେ ଉଷା ଭୋର୍‌ଚି, ପ୍ରଭାତ ମିଶ୍ର, ରଘୁନାଥ ପ୍ରସାଦ ଦାସ, ରବି ତ୍ରିପାଠୀ, ରାମହରି ଜେନା, ଚନ୍ଦ୍ରଶେଖର ରାଓ, ସୁଧାଂଶୁ ଶେଖର ପ୍ରମୁଖ ଯୋଗ ଦେଇଛନ୍ତି ।

WA ତତ୍କାଳୀନ କଳାଶିକ୍ଷା, କଳା ଅଭ୍ୟାସ ଏବଂ ପରିବେଶର ଏକ ପ୍ରତିକ୍ରିୟା ସରୂପ ଜନ୍ମଗ୍ରହଣ କରିଥିଲା । କାରଣ ପ୍ରାଥମିକ ଅବସ୍ଥାରେ ଖଲ୍ଲିକୋଟ କଳାବିଦ୍ୟାଳୟରେ ଔପନିବେଶିକ ଧାରା ଏବଂ ସମସାମୟିକ ଅପେକ୍ଷା ଗତାନୁଗତିକ କଳାଧାରା ଉପରେ ଅଧିକ ଗୁରୁତ୍ୱାରୋପ ଏହି ଗୋଷ୍ଠିର ଶିଳ୍ପୀମାନେ ଅନୁଭବ କରି ସାରି ଥିଲେ ଏବଂ ଓଡ଼ିଶାରେ କଳା ଜଗତ କୁହୁଡ଼ିରେ ସଂପୂର୍ଣ୍ଣ ଆଚ୍ଛନ୍ନ ହେବା ପୂର୍ବରୁ ମୁକୁଳିବାର ଇଛା ଏବଂ କଳ୍ପନାଟେ ସଂପୂର୍ଣ୍ଣ ବେସରକାରୀ ପ୍ରଚେଷ୍ଟାରେ କ୍ରମଶଃ ଦାନା ବାନ୍ଧୁଥିବାବେଳେ ୧୯୬୦ରେ ଭୁବନେଶ୍ୱରଠାରେ ରାଜ୍ୟ ଲଳିତକଳା ଏକାଡ଼େମୀର ଜନ୍ମ ଓଡ଼ିଶା କଳାଜଗତରେ ଆଉ ଏକ ଐତିହାସିକ ଘଟଣା । ଓଡ଼ିଶାରେ କଳା ଆନ୍ଦୋଳନ, ସମସାମୟିକ ଚିତ୍ରକଳାରେ ହେଉଥିବା ବିଭିନ୍ନ ନୂତନ ପରୀକ୍ଷାନିରୀକ୍ଷା ଓ ତା'ର ପ୍ରୟୋଗକୁ ସୀକୃତି ତଥା ପ୍ରୋତ୍ସାହନ ଦେବା ଲକ୍ଷ୍ୟରେ ଯଦିଓ ଏହା ଏକମାତ୍ର ସରକାରୀ ଅନୁଷ୍ଠାନ ରୂପେ ଜନ୍ମ ନେଲା କିନ୍ତୁ ପରବର୍ତ୍ତୀ ସମୟମାନଙ୍କରେ ଏହି ଅନୁଷ୍ଠାନ ତା'ର ଲକ୍ଷ୍ୟ ହାସଲ ଦିଗରେ ସେତେ ସଫଳ ହୋଇ ପାରିଥିବା ଭଳି ମନେ ହୁଏ ନାହିଁ । ଏହି ଏକାଡ଼େମୀ ପ୍ରତ୍ୟେକ ବର୍ଷ ଉଭୟ ପାରମ୍ପରିକ ତଥା ସମସାମୟିକ ଶିଳ୍ପୀମାନଙ୍କୁ ପୁରସ୍କାର ତଥା ସୀକୃତି ଦେବା, ଶିଶୁ ଚିତ୍ରକଳା ପ୍ରତିଯୋଗିତା, ପ୍ରଦର୍ଶନୀ, ଲୋକକଳା ପ୍ରତିଯୋଗିତା ପ୍ରଭୃତି କରୁଥିବାବେଳେ ସେତେବେଳର ନୂଆ ହେଇ ମୁଣ୍ଡ ଟେକୁଥିବା କଳା ଆନ୍ଦୋଳନକୁ ସଠିକ ପ୍ରୋତ୍ସାହନ ଯୋଗାଇବାରେ ନିଜର ନୀତି ସ୍ପଷ୍ଟ କରିପାରିନଥିଲା । ଯଦିବା ଏହା ପ୍ରତ୍ୟେକ ବର୍ଷ ପ୍ରତିଯୋଗିତା ଏବଂ ପ୍ରଦର୍ଶନୀର ଆୟୋଜନ କରୁଥିଲା ହେଲେ ଏହାର ଏକ ନିଜସ ଚିତ୍ରଶାଳା(Gallery) ନ ଥିଲା ଓ ଏକାଡ଼େମୀ ତରଫରୁ ଯେଉଁ ସବୁ ପୁସ୍ତକ ପ୍ରକାଶ ପାଉଥିଲା ସେଗୁଡ଼ିକ ପ୍ରାୟତଃ ପାରମ୍ପରିକ ତଥା ଶିଶୁଚିତ୍ର କଳା ସଂପର୍କିତ ଥଲା । ତା ଛଡ଼ା ଆବଶ୍ୟକ ପରିମାଣର ଚିତ୍ରଶିଳ୍ପୀଙ୍କ ସଂପର୍କରେ ମନୋଗ୍ରାଫ୍ ପ୍ରକାଶନ ସମ୍ଭବ ହେଉ ନଥିଲା । ଏସବୁ ବ୍ୟତୀତ ଉପଯୁକ୍ତ ଡ଼କ୍ୟୁମେଣ୍ଟେସନ୍ ଅଭାବ ମଧ୍ୟରେ ଏକାଡ଼େମୀ ନିଜର କକ୍ଷ ପଥରେ କ୍ରମଶଃ ସ୍ଥାଣୁ ହେବାକୁ ଲାଗିଲା ।

ଏହି ପରିସ୍ଥିତି ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖି ଏଭଳି ଏକ ଅଭାବ ଅସୁବିଧାକୁ ଅନୁଭବ କରିବା ଏବଂ ତହିଁରୁ ମୁକୁଳିବା ପାଇଁ ବେସରକାରୀ ଏବଂ ବ୍ୟକ୍ତିଗତ ପ୍ରଚେଷ୍ଟା 'ୱା' ହିଁ କରିଥିଲା । **'ୱା' କଥା ସ୍ମରଣ କଲାବେଳେ ଯାହାଁ ଏକ ସ୍ୱର୍ଣ୍ଣିତ ନାମ ମନକୁ ଆସି ଯାଏ, ସେ ହେଉଛନ୍ତି ଦିନନାଥ ପାଠୀ । ଷାଠିଏ ଦଶକର ଖଲ୍ଲିକୋଟର ସେହି ଛାତ୍ର ଦିନନାଥ ପାଠୀ ଯିଏକି ପରବର୍ତ୍ତୀ କାଳରେ ଓଡ଼ିଶାର କଳା ଜଗତରେ ଆବିର୍ଭାବ ହୁଅନ୍ତି ସୟଂସମ୍ପୂର୍ଣ୍ଣ ଏକ ଅନୁଷ୍ଠାନ ରୂପେ ।** ଉଚ୍ଚଶିକ୍ଷା ସହ ଏକ ବିଚକ୍ଷଣ ପ୍ରତିଭାର ଅଧିକାରୀ ଦିନନାଥଙ୍କ ବ୍ୟକ୍ତିତ୍ୱର ପ୍ରତ୍ୟେକ ଦିଗକୁ ଏହି ପ୍ରସଙ୍ଗରେ ଆଲୋଚନା କରିବା ଅସମ୍ଭବ । କେବଳ 'ୱା' ଜରିଆରେ ଦିନନାଥ ପାଠୀ ଓଡ଼ିଶାରେ ଏକ ଅଭୁତପୂର୍ବ ନୂତନ କଳା ଆନ୍ଦୋଳନର ସୂତ୍ରପାତ କଲେ ତା' ଉପରେ କିଛିଟା ଆଲୋକପାତ କରିବା ଏହି ସନ୍ଦର୍ଭର ଲକ୍ଷ୍ୟ ।

Digitized by srujanika@gmail.com

୩୦ ବର୍ଷ ତଳେ ଯେତେବେଳେ 'WA' ତା'ର ପ୍ରଥମ Show ଭୁବନେଶ୍ୱରର Children Park ର ଏକ ଅଣ ଓସାରିଆ ଅର୍ଦ୍ଧ ଚନ୍ଦ୍ରାକୃତି ହଲ୍‌ରେ ଆରମ୍ଭ କରିଥିଲା ସେତେବେଳେ ଓଡ଼ିଶାରେ ଚିତ୍ର ପ୍ରଦର୍ଶନ ପାଇଁ କୌଣସି Gallery ନ ଥିଲା । ଓଡ଼ିଶାକୁ ଉତ୍କୃଷ୍ଟ କଳାର ରାଜ୍ୟ ଭାବେ କୁହାଯାଇଥିବା ବେଳେ ଆଜି ପର୍ଯ୍ୟନ୍ତ ସରକାରୀ କିମ୍ବା କୌଣସି ଉଦ୍ୟୋଗପତିଙ୍କ ପ୍ରୋତ୍ସାହନରେ ଏକ ଚିତ୍ର ପ୍ରଦର୍ଶନୀ ପାଇଁ ଉପଯୁକ୍ତ କେନ୍ଦ୍ର ସ୍ଥାପନ କରିବା ସମ୍ଭବ ହେଇପାରି ନାହିଁ । କେନ୍ଦ୍ର ଲଳିତ କଳା ଏକାଡ଼େମୀର ଆଞ୍ଚଳିକ କେନ୍ଦ୍ରଠାରେ ଥିବା ବା ଅଗତ୍ୟା ବ୍ୟବହୃତ ହେଉଥିବା ଗ୍ୟାଲେରୀ ହିଁ ଥିଲା ଭୁବନେଶ୍ୱର ତଥା ଓଡ଼ିଶାର ଶିଳ୍ପୀମାନଙ୍କର ଏକମାତ୍ର ଭରସା । ଯଦିବା ଏଇ ନିକଟରେ ଭୁବନେଶ୍ୱର ବେସରକାରୀ ପ୍ରଚେଷ୍ଟାରେ ଆଉ ଏକ ପ୍ରଦର୍ଶନୀ ଗୃହ ଶୁଭାରମ୍ଭ ହେଇଥିଲା ତଥାପି ଏହାର ଆମେରିକୀୟ ପୃଷ୍ଠପୋଷକଙ୍କ ପ୍ରସ୍ଥାନ ଫଳରେ ଏହା ମ୍ରିୟମାଣ ଅବସ୍ଥାରେ ଅଛି । ଓଡ଼ିଶାରେ ଚିତ୍ର ସମ୍ବନ୍ଧରେ ଏକ ଗଢ଼ିବାଦୀ ସଂକୀର୍ଣ୍ଣ ଧାରଣା ପରିବର୍ତ୍ତେ ଏକ ଆଧୁନିକ ଧାରଣା ଦେବାର ପ୍ରୟାସ ୱାର ପ୍ରଥମ ପ୍ରଦର୍ଶନୀ ଠାରୁ ପରିଲକ୍ଷିତ ହେଇଥିଲା ।

ଏହି ସଂଗଠନ କେବଳ ବିଭିନ୍ନ ପ୍ରଦର୍ଶନୀ ଭିତରେ ନିଜକୁ ସୀମିତ ନ ରଖି ଇଂରାଜୀରେ ସେତେବେଳେ ବୁଲେଟିନ୍ କିଛି ପ୍ରକାଶ କରିଥିଲେ । ଯାହାଦ୍ୱାରା କି ନିଜର ବିଭିନ୍ନ କାର୍ଯ୍ୟକ୍ରମ ତଥା ରାଜ୍ୟର କଳା ଜଗତର ବିଭିନ୍ନ ଘଟଣାବଳୀ ବାହାର ଦୁନିଆସହ ସଂପର୍କିତ କରିବା ସମ୍ଭବ ହୋଇଥିଲା । ଏହି ଅନୁଷ୍ଠାନ ତାହାର ବିଭିନ୍ନ କାର୍ଯ୍ୟକ୍ରମରେ ଅନ୍ୟରାଜ୍ୟ ତଥା ଜାତୀୟ ସ୍ତରରେ ପ୍ରଖ୍ୟାତ ଶିଳ୍ପୀ ଏବଂ କଳା ବିଶେଷଜ୍ଞମାନଙ୍କୁ ଆମନ୍ତ୍ରିତ କରି ଓଡ଼ିଶାର କଳା ଓ କଳାକାରଙ୍କୁ ବାହାର ଦୁନିଆରେ ପରିଚିତ କରିବାର ଚେଷ୍ଟା ଜାରି ରଖିଥିଲେ ଏବଂ ଓଡ଼ିଶାର କଳା ପ୍ରବାହକୁ ଜାତୀୟ ସ୍ରୋତରେ ସାମିଲ କରିବାର ଦୁର୍ବାର ଚେଷ୍ଟା କରିଥିଲେ । ଓଡ଼ିଶାର ଚିତ୍ର ଏବଂ କଳାର ପରମ୍ପରା ଖୁବ୍ ପ୍ରାଚୀନ ଏବଂ ସମୃଦ୍ଧ ହୋଇଥିବାବେଳେ ତା'ର ଉପଯୁକ୍ତ documentation ର ଅଭାବରୁ ଏହା ଅନ୍ୟାନ୍ୟ କେତେକ ରାଜ୍ୟ ଭଳି ଜାତୀୟ ସ୍ତରରେ ଉପଯୁକ୍ତ ନ୍ୟାୟ ପାଇବାରୁ ବଞ୍ଚିତ ହେଉଥିବାର ଉପଲବ୍ଧି କରି 'ୱା' ଅଧିକରୁ ଅଧିକ କଳାସଂପର୍କିତ ପୁସ୍ତକ ପ୍ରକାଶନ ଉପରେ ଗୁରୁତ୍ୱାରୋପ କରିବା ସହ ଭୁବନେଶ୍ୱରରେ ଜାତୀୟ ସ୍ତରର ଆଲୋଚନା ଚକ୍ରମାନ ଆୟୋଜନ କରିବାରେ ବ୍ରତୀ ହେଲେ । ଫଳରେ ସଂଗଠନକୁ ଉଭୟ ମାନସିକ ଏବଂ ଆର୍ଥିକ ସଂକଟ ମଧ୍ୟରେ ଗତି କରିବାକୁ ପଡ଼ୁଥିଲେ ମଧ୍ୟ ସଂଗଠନର କର୍ମକର୍ତ୍ତାମାନେ ବ୍ୟକ୍ତିଗତ ଭାବେ କାର୍ଯ୍ୟକ୍ରମ ସଂପାଦନା ତଥା ରଚନାର ଦାୟିତ୍ୱ ବହନ କରି ସୁଚାରୁ ରୂପେ ପରିଚାଳନା କରିପାରିବା ତାଙ୍କର ଗଭୀର ଜ୍ଞାନ ଏବଂ ଦୂରଦୃଷ୍ଟି ସମ୍ପନ୍ନତାର ପରିଚୟ ଦିଏ । ଏଠାରେ ଉଲ୍ଲେଖ କରାଯାଇପାରେ ଓଡ଼ିଶାର କଳା ଇତିହାସର ପୁଙ୍ଖାନୁପୁଙ୍ଖ ପାଠ 'ୱା' ଦ୍ୱାରା ପ୍ରକାଶିତ ପୁସ୍ତକଗୁଡ଼ିକ ବିନା କରାଯାଇ ପାରିବ ନାହିଁ । କାରଣ ଏଭଳି ପ୍ରଚେଷ୍ଟା ଓଡ଼ିଶାରେ କୌଣସି ସରକାରୀ କିମ୍ବା ବେସରକାରୀ ସ୍ତରରେ ଏହା ପୂର୍ବରୁ କିମ୍ବା ଏ ପର୍ଯ୍ୟନ୍ତ କରାଯାଇନାହିଁ ।

'ୱା' ସଂଗଠନ ଯେଉଁ ଆଲୋଚନା ଚକ୍ରମାନ ଆୟୋଜନ କରିଛନ୍ତି ତା ଭିତରୁ ୧୯୮୯ରେ ନଟରାଜ ହୋଟେଲ୍‌ରେ ଆୟୋଜିତ ସେମିନାର ଯାହାର ବିଷୟବସ୍ତୁ ଥିଲା । **Tribal Art, Primitivism and its Modern Relevance** କୁ ସ୍ମରଣ କରାଯାଇପାରେ । ଏହି ଜାତୀୟ ସେମିନାରରେ ଯୋଗଦେଇଥିବା ଗବେଷକ, ଅଧ୍ୟାପକ ଓ ପଣ୍ଡିତମାନେ ହେଲେ କଲିକତାର କଳାସମୀକ୍ଷକ ପ୍ରଣବ ରଞ୍ଜନ ରାୟ, ଶାନ୍ତିନିକେତନ କଳା ଇତିହାସର ପ୍ରଫେସର କାଞ୍ଚନ ଚକ୍ରବର୍ତ୍ତୀ, ଲଳିତ କଳା ଏକାଡ଼େମୀ, ଦିଲ୍ଲୀର ସେକ୍ରେଟାରୀ ପ୍ରଫେସର ସି.ଏଲ. ପୋରଞ୍ଚୁ କୁଟି, ବମ୍ବେର କଳାସମୀକ୍ଷକ ନଳିନୀ ଭଗବତ୍, ପାଟନାର ପ୍ରଫେସର ବୀରେଶ୍ୱର ଭଟ୍ଟାଚାର୍ଯ୍ୟ, ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଲକ୍ଷ୍ମଣ ମହାପାତ୍ର ଏବଂ ଭାବଗ୍ରାହୀ ମିଶ୍ର ସହ ଡକ୍ଟର ଦିନନାଥ ପାଠୀ । ସବୁରି କେନ୍ଦ୍ରରେ ଥାଇ ଦିନନାଥ ଏହି କାର୍ଯ୍ୟକ୍ରମକୁ ଯେଭଳି ସୁଚାରୁ ରୂପେ ସଂପାଦନ କରୁଥିଲେ ତାହା ଅଦ୍ଭୁତପୂର୍ବ ।

Digitized by srujanika@gmail.com

ଯେକୌଣସି ମିଟିଂ ତାହା ଛୋଟ ହେଉ ବା ବଡ଼ ହେଉ ତାକୁ କିଭଳି ଭାବେ ଆକର୍ଷଣୀୟ ଓ ଗୁରୁତ୍ୱପୂର୍ଣ୍ଣ କରାଯାଇପାରେ ତାହା ଦିନନାଥ ପାଠୀଙ୍କୁ ଜଣା । ଆମ ସହରମାନଙ୍କରେ ପ୍ରତିଦିନ ଯେଉଁ ସାଂସ୍କୃତିକ, ରାଜନୈତିକ, ଧାର୍ମିକ ସଭାସମିତିମାନ ହେଉଛି ସେସବୁର ନିର୍ଜୀବ ବେଶଭୂଷା, ପରିପାଟୀ ଓ କାର୍ଯ୍ୟକ୍ରମକୁ ଦେଖିଲେ ଡକ୍ଟର ପାଠୀଙ୍କ କଥା ହିଁ ମନେ ପଡ଼େ । ଯେ ପାଠୀଙ୍କ କାର୍ଯ୍ୟାବଳୀ ସଂସ୍ପର୍ଶରେ ଆସିଛି ସେ ସତଃସ୍ଫୂର୍ତ୍ତ ଭାବେ କହେ ପାଠୀ ଥିଲେ ଏମିତି ନୁହେଁ ସେମିତି ହୋଇଥାନ୍ତା । ଘଟଣା ଯେତେ ଛୋଟ କିମ୍ବା ବଡ଼ ହୋଇଥାଉ ପଛକେ ତାକୁ କିଭଳି ସଠିକ ଉପସ୍ଥାପନା ହେଇପାରେ ସେ ଚାତୁରୀ ଦିନନାଥଙ୍କୁ ଜଣା । **ଯଥେଷ୍ଟ ଅଭିଜ୍ଞତା, ଗଭୀର ଜ୍ଞାନ, ଅସମ୍ଭବ ବାଗ୍ମୀତା, ନିଜସ୍ୱ ଶୈଳୀରେ ଉପଯୁକ୍ତ ଶବ୍ଦ ଚୟନ ଏବଂ ବର୍ଣ୍ଣନାରେ ନାଟକୀୟତା ସର୍ବୋପରି କାମକରିବାର ପ୍ରବଳ ଝୁଙ୍କ ତାଙ୍କର ବ୍ୟକ୍ତିତ୍ୱକୁ ଅଧିକ ଗାରିମାମୟ କରିତୋଳେ ।**

୧୯୯୯ରେ ଭୁବନେଶ୍ୱର ସୂଚନାଭବନଠାରେ ଆୟୋଜିତ କାର୍ଯ୍ୟକ୍ରମ **Within and Beyond** ରେ ଓଡ଼ିଶା ତଥା ଓଡ଼ିଶା ବାହାରେ ରହୁଥିବା ସୃଜନଶୀଳ ଶିଳ୍ପୀମାନେ ଭାଗ ନେଇ ସାଂପ୍ରତିକ କଳା ଉପରେ ଆଲୋକପାତ କରିଥିଲେ ଯାହାକି ଓଡ଼ିଶାରେ କେଉଁ ମାନ୍ଧାତା ଅମଳରୁ ଚଳି ଆସୁଥିବା ଚିତ୍ର ସମ୍ବନ୍ଧିତ ଧାରଣାରୁ ଓଡ଼ିଆ ଶିଳ୍ପୀଙ୍କୁ ମୁକୁଳେଇବାର ଚେଷ୍ଟା କରିଥିଲେ । ପରିବର୍ତ୍ତନରେ ବିଶ୍ୱାସ ରଖୁଥିବା ଯୁବଶିଳ୍ପୀଙ୍କ ପ୍ରାଣରେ ଏହା ନବୀନ ପୁଲକ ସୃଷ୍ଟି କରିଥିଲା । **୨୦୦୨ରେ** ସଂଗଠନର ଅନ୍ୟ ଏକ କାର୍ଯ୍ୟକ୍ରମ **National Seminar on Art Practices in India Today**ରେ ଓଡ଼ିଶା ତଥା ଓଡ଼ିଶା ବାହାରେ ରହୁଥିବା ଓଡ଼ିଆ ଶିଳ୍ପୀମାନେ ଅଂଶଗ୍ରହଣ କରି ସେମାନଙ୍କର କୃତିର ବିଭିନ୍ନ ଦିଗ ଏବଂ ବର୍ତ୍ତମାନ ପରିପ୍ରେକ୍ଷୀରେ ସେମାନଙ୍କର ବିଚାରର ଯଥାର୍ଥତା ବିଷୟରେ ଆଲୋଚନା କରିଥିଲେ ଯାହା ସାରଗର୍ଭକ ଏବଂ ଉପାଦେୟ ଥିଲା । ପ୍ରବନ୍ଧପାଠ ପ୍ରଦର୍ଶନୀ, ଶିବିର କିମ୍ବା ଆଲୋଚନା ଚକ୍ରରେ ତା'ର କାର୍ଯ୍ୟକ୍ରମକୁ ସୀମିତ ନ ରଖି ସାମଗ୍ରିକ ଭାବେ କିଭଳି କଳାର ପୂର୍ଣ୍ଣାଙ୍ଗ ବିକାଶ ହେଇପାରିବ ସେ ଦିଗରେ 'ୱା' ସର୍ବଦା କାର୍ଯ୍ୟରତ । ଏକ ସୃଜନଶୀଳ ପ୍ରାଣର ସ୍ଫୁରଣରେ ଚିତ୍ର, କବିତା, ସଂଗୀତ ବା ନୃତ୍ୟ ସମସ୍ତେ ମହାନ, ସବୁ ଏକାକାର । ଏହା 'ୱା'ର ବିଶ୍ୱାସ ଏବଂ ସେଥିପାଇଁ ଅନେକ କାର୍ଯ୍ୟକ୍ରମ ଓ ପ୍ରଦର୍ଶନୀ ମାଧମରେ କବିତା ନୃତ୍ୟ ଏବଂ ସଂଗୀତ ସହ ଚିତ୍ରର ସମନ୍ୱୟ କରିବାର ଚେଷ୍ଟା କରାଯାଇଛି । ନୂଆ ନୂଆ ପରୀକ୍ଷା ନିରୀକ୍ଷା, ନବୀନ ପ୍ରତିଭାକୁ ଚିହ୍ନିବା ଏବଂ ଚିହ୍ନେଇବା ଏବଂ ସର୍ବଦା ନୂଆ ନୂଆ କଥା କହିବାର ଖିଆଲ ଭିତରେ 'ୱା' କେବେବି ପୂଜ୍ୟ ପୂଜ୍ୟ କଥା ଭୁଲି ଯାଇନାହିଁ । ଓଡ଼ିଶାର କୃତବିଦ୍ୟ ବରେଣ୍ୟ ଶିଳ୍ପୀମାନଙ୍କୁ ବିଭିନ୍ନ ସମ୍ମାନରେ ସମ୍ମାନିତ ଏବଂ ଉପାଧି ପ୍ରଦାନରେ 'ୱା' ଏକ ଗୁରୁତ୍ୱ ପୂର୍ଣ୍ଣ ଭୂମିକା ନିର୍ବାହ କରିଛି । ମୂରଲୀଧର ଟାଲି, ଅଜିତ କେଶରୀ ରାୟ, ଅନନ୍ତ ପଣ୍ଡା, ଦୁର୍ଗାପ୍ରସାଦ ଦାସ, ଲକ୍ଷ୍ମୀଧର ଦାସ ଏବଂ ଅକ୍ଷୟ କୁମାର ଦାସଙ୍କୁ କଳାରତ୍ନ, କଳାବିଭୂଷଣ ଏବଂ କଳାଶ୍ରୀ ଭଳି ଉପାଧିରେ ବିମଣ୍ଡିତ କରାଯାଇଛି ।

ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ଅଫ୍ ଓଡ଼ିଶା କେବଳ ଡ଼ିଗ୍ରୀ ବା ସାର୍ଟିଫିକେଟ୍ ଧାରୀ ଆର୍ଟିଷ୍ଟ ନୁହଁ ବରଂ ଅଣ ତାଲିମ୍ ପ୍ରାପ୍ତ ପ୍ରତିଭାଧାରୀ ଶିଳ୍ପୀମାନଙ୍କୁ ଠାବ କରିବାରେ ସକ୍ଷମ ହୋଇଛି । ପ୍ରଥମରେ ଜେ.ପି ଦାସ, ଦୁର୍ଗାପଣ୍ଡା ଏବଂ ପୁଷ୍ପାଜୈନଙ୍କ ଭଳି ଶିଳ୍ପୀମାନଙ୍କୁ ମଧ୍ୟ ସାମିଲ କରିବା ଏବଂ ପରେ ଉଦାରବାଦୀ ଦୃଷ୍ଟିଭଙ୍ଗୀରେ 'ୱା' ବିଚାର କରେ ଯେ କୌଣସି ପଦପଦବୀ, ଶିକ୍ଷାଦୀକ୍ଷା, ବୟସ ନିର୍ବିଶେଷରେ ଯିଏ ଚିତ୍ର କରେ ସେ ଚିତ୍ରକର । 'ୱା'ର ସବୁଠାରୁ ଉଲ୍ଲେଖନୀୟ ପ୍ରକାଶନ ହେଲା ଓଡ଼ିଆ କଳା ଓ କଳାକାରଙ୍କ ଜୀବନ ଓ କୃତି ସଂପର୍କରେ ମନୋଗ୍ରାଫ୍ । ଏହି ସିରିଜରେ ନଅ ଗୋଟି ବହି ପ୍ରକାଶିତ ହୋଇଛି । ଯେଉଁ ଶିଳ୍ପୀମାନେ ଏହି ପ୍ରକାଶନରେ ସ୍ଥାନ ପାଇଛନ୍ତି ସେମାନେ ହେଲେ ଶିବ ପାଣିଗ୍ରାହୀ, ଚନ୍ଦ୍ରଶେଖର ରାଓ, ଅଜିତ କେଶରୀ ରାୟ, ପ୍ରଫୁଲ୍ଲ ମହାନ୍ତି, ଜଗନ୍ନାଥ ପ୍ରସାଦ ଦାସ ଓ ଦିନନାଥ ପାଠୀ । ଏହି ମନୋଗ୍ରାଫ୍‌ଗୁଡ଼ିକ 'ୱା' ନିଜେ ବା ଅନ୍ୟ ସହଯୋଗୀ

Digitized by srujanika@gmail.com

ସଂସ୍ଥାର ସହାୟତାରେ ପ୍ରକାଶ କରିଛି । ସର୍ବଶେଷ ମନୋଗ୍ରାଫ୍ ଚିତ୍ରାଙ୍ଗି : ଦିନନାଥଙ୍କ ଚିତ୍ରକଳା ରଚନା ଓ ସଂପାଦନା କରିଛନ୍ତି ସୌଭାଗ୍ୟ ପାଠୀ ନିଜ ପିତାଙ୍କ ଚିତ୍ରକଳା ଉପରେ। ଏହି ସିରିଜ୍‌ର ସାଧାରଣ ସଂପାଦକ (General Editor) ଅଛନ୍ତି ଦିନନାଥ ପାଠୀ ।

୧୯୮୪ରେ ଭୁବନେଶ୍ୱରରେ ବି.କେ.କଲେଜ ଅଫ୍ ଆର୍ଟ୍ ଏଣ୍ଡ କ୍ରାଫ୍ଟସ୍‌ର ସ୍ଥାପନା ପରେ ଡକ୍ଟର ଦିନନାଥ ପାଠୀ ଏହାର ପ୍ରଥମ ଅଧକ୍ଷ ଭାବେ ଯୋଗ ଦେଲେ ଏବଂ ଡ଼ି.ଏନ.ରାଓ ଗ୍ରାଫିକ୍ସ ବିଭାଗର ଅଧ୍ୟାପକ ଭାବେ । ଏହାପରେ କଲେଜ ସହ 'ଓ୍ୱା' ପରିବାରର ସଂପର୍କ ଖୁବ୍ ନିବିଡ଼ ହୋଇଗଲା । 'ଓ୍ୱା'ର ବର୍ଷ ଯାକ ସମସ୍ତ କାର୍ଯ୍ୟକ୍ରମମାନଙ୍କରେ କଲେଜର ଛାତ୍ରଛାତ୍ରୀ ଏବଂ ଶିକ୍ଷକମାନେ ଅଂଶଗ୍ରହଣ କରିବାର ସୁଯୋଗ ପାଇଲେ । ପରବର୍ତ୍ତୀ ସମୟରେ 'ଓ୍ୱା' ସଂଗଠନର ସଭ୍ୟ ତଥା ବିଭିନ୍ନ ପଦପଦବୀରେ ବି.କେ. କଲେଜର ଛାତ୍ରଛାତ୍ରୀ ତଥା ଅଧ୍ୟାପକମାନେ ଯୋଗଦେଲେ । **କଲେଜ ସମୟ ପରେ ସଂଧ୍ୟାରେ କଲେଜ ପରିସରରେ ସମସ୍ତ ଛାତ୍ର ଛାତ୍ରୀ ତଥା ଶିକ୍ଷକମାନେ ବିଭିନ୍ନ କଳା ଚର୍ଚ୍ଚା, ଆଲୋଚନା, ବିଷୟ ବିମର୍ଷରେ କଟଉଥିଲେ । ଏହା ନିଜକୁ ବିକାଶ ଓ ପ୍ରକାଶ କରିବାରେ ସହାୟକ ହେଉଥିଲା । 'ଓ୍ୱା' ଚିତ୍ରକଳା ଦିଗରେ ସମସ୍ତ ପ୍ରକାର ପରୀକ୍ଷା ନିରୀକ୍ଷା ପରିବର୍ତ୍ତନ, ବିବର୍ତ୍ତନ ଏବଂ ନୂତନତା ପ୍ରତି ସର୍ବଦା ଏକ ଉଦାରବାଦୀ ଦୃଷ୍ଟିଭଙ୍ଗୀ ପୋଷଣ କରିଆସିଛି ।** ଓଡ଼ିଶାରେ ଏହିଭଳି କଳା ଓ କଳାକାରଙ୍କୁ ସମ୍ମାନ ତଥା ସୀକୃତି ଦେବାରେ ଏହି ସଂସ୍ଥା ସର୍ବଦା ଆଗ୍ରହ ପ୍ରକାଶ କରିଛି । **ଫଳରେ ଓଡ଼ିଶାରେ ଶିକ୍ଷା ଲାଭପରେ ଯୁବଶିଳ୍ପୀମାନେ ରାଜ୍ୟ ତଥା ଦେଶବାହାରୁ ଉଚ୍ଚଶିକ୍ଷା ସାରି ଓଡ଼ିଶା ଫେରିଲେ । 'ଓ୍ୱା' ସେମାନଙ୍କ କଳା ଓ ଦୃଷ୍ଟିଭଙ୍ଗୀକୁ ସମ୍ମାନ ଦେଲା ସୀକୃତି ମଧ ଦେଲା । ସେମାନେ ଏକଦା ବି.କେ. କଲେଜର ଛାତ୍ର ଥିଲେ ଓ 'ଓ୍ୱା' ସହ ଜଡ଼ିତ ଥିଲେ । ସେମାନେ ବିଦେଶରେ ଉଚ୍ଚଶିକ୍ଷା ପାଇଥିବା କେତେକ ମଧ୍ୟରୁ ଅଦ୍ୱୈତ୍ୟ ଗଡ଼ନାୟକ କମନ୍‌ୱେଲ୍‌ଥ୍ ଫେଲୋସିପ ପାଇ ଏବଂ ଜଗନ୍ନାଥ ପଣ୍ଡା ଇନ୍‌ଲକ୍ ସ୍କଲାରସିପ୍ ପାଇ ରୟାଲ୍ କଲେଜ ଅଫ୍ ଆର୍ଟ୍ ଲଣ୍ଡନରୁ ଉଚ୍ଚଶିକ୍ଷା ସମାପ୍ତ ପରେ ତଥା ଏମ ଶୋଭନ୍ କୁମାର ଘଇନା ସ୍କଲରସିପପାଇ ଘଇନା ଏବଂ ବୃଗୁଲିକୁମାର ସାହୁ ଜାପାନରେ ଶିକ୍ଷାଲାଭ ପରେ ଏବଂ ଅନେକ ଛାତ୍ର ଓଡ଼ିଶାରେ ପାଠପଢ଼ିସାରି ଦିଲ୍ଲୀ, ବରୋଦା, ଶାନ୍ତିନିକେତନ, ବନାରସ, ଖଇରାଗଡ଼, ହାଇଦ୍ରାବାଦ ଏବଂ ଗୁଲବର୍ଗା ପ୍ରଭୃତି ସ୍ଥାନରୁ ଉଚ୍ଚଶିକ୍ଷା ପାଇ ଓଡ଼ିଶା ଫେରି ଭାରତର ବିଭିନ୍ନ ସହରରେ କଳାଭ୍ୟାସ କରିବା ଆରମ୍ଭ କରି ଦେଇଛନ୍ତି । ସେଭଳି କଳା ଇତିହାସ ଗବେଷଣାରେ ପିଏଚ୍.ଡି. ପାଇଥିବା ଓଡ଼ିଆ କଳାକାରମାନଙ୍କ ଗବେଷଣାକୁ ସୀକୃତି ଦେଇ ସେମାନଙ୍କୁ ସମ୍ବର୍ଦ୍ଧନା ମଧ ଦେଇଛି। ଏମାନଙ୍କ ମଧ୍ୟରେ ଡକ୍ଟର ଦିଲ୍ଲୀପ କୁମାର ତ୍ରିପାଠୀ ଓ ଡକ୍ଟର ସୌଭାଗ୍ୟ ପାଠୀ 'ଓ୍ୱା' ସହିତ ସଂପୃକ୍ତ।** କଳା ଇତିହାସରେ ପିଏଚ୍.ଡ଼ି ପାଇଥିବା ବି.କେ କଲେଜର ପ୍ରାକ୍ତନ ଛାତ୍ରଙ୍କ ମଧ୍ୟରେ ଅଛନ୍ତି ପ୍ରଦୋଷ କୁମାର ମିଶ୍ର ଯିଏ ବିଳମ୍ବରେ ଏହି ତାଲିକାରେ ଅନ୍ତର୍ଭୁକ୍ତ ହେଲେ । ଏମାନଙ୍କ ମଧ୍ୟରୁ ଅଧିକାଂଶ 'ଓ୍ୱା' ପରିବାର ସହ ସଂଶ୍ଳିଷ୍ଟ । 'ଓ୍ୱା' ଏହିଭଳି ନବ ପ୍ରତିଭାମାନଙ୍କୁ ନିଜର କାର୍ଯ୍ୟକ୍ରମମାନଙ୍କରେ ସାମିଲ କରି ଓଡ଼ିଶାରେ ସମସାମୟିକ କଳା ଆନ୍ଦୋଳନକୁ ଅଧିକ ସକ୍ରିୟ ଅଧିକ ବଳିଷ୍ଠ କରିପାରିଛି, ଫଳରେ ଓଡ଼ିଶାର ଚିତ୍ରଧାରା ଏକ ନୂତନ ମୋଡ଼ ନେଇଛି ।

Digitized by srujanika@gmail.com

ବାଳମୁକୁନ୍ଦ ନାୟକ

## ସେଣ୍ଟ୍ରାଲ ସ୍କୁଲର ଡ୍ରଇଁ ମାଷ୍ଟ୍ରେ

୧୫ ଜୁଲାଇ ୧୯୬୮ ମସିହା । ସେ ଦିନ ମୁଁ ଭୁବନେଶ୍ୱର ସେଣ୍ଟ୍ରାଲ ସ୍କୁଲରେ ଜଏନ୍ କରେ । ଆଜିର ୯ ନମ୍ବର ସ୍ଥିତ ସେଣ୍ଟ୍ରାଲ୍ ସ୍କୁଲ ସେତେବେଳେ ଏକ ନମ୍ବର ୟୁନିଟ୍ ବାଳକ ଉଚ୍ଚ ବିଦ୍ୟାଳୟରେ କାର୍ଯ୍ୟ କରୁଥିଲା । ସ୍କୁଲ ସମୟ ସକାଳ ସାଢ଼େ ଛଅରୁ ସାଢ଼େ ଦଶଟା ପର୍ଯ୍ୟନ୍ତ । ଅଧକ୍ଷ ଶ୍ରୀ କେ.ଏସ୍. ସିଂଙ୍କୁ ଜଏନିଂ ଦରଖାସ୍ତଟି ଦେଲା ପରେ ଜଣେ ପିଅନ ଦ୍ୱାରା ମୋତେ ସ୍କୁଲ କାର୍ଯ୍ୟାଳୟର ଅନ୍ୟ ପଟକୁ ସ୍ଥିର ହୋଇଥିବା ଶିକ୍ଷକମାନଙ୍କ ବିଶ୍ରାମକକ୍ଷକୁ ପଠାଇ ଦିଆଗଲା । ସେଠି ଯେଉଁମାନେ ବସିଥିଲେ ସେଥିରୁ ପାଠୀ ବାବୁ ଥିଲେ ଅନ୍ୟତମ । ପ୍ରଥମ ଦେଖା । କେହି ଜଣେ ମୋତେ ସମସ୍ତଙ୍କ ସହିତ ପରିଚୟ କରାନ୍ତି । ପାଠୀ ବାବୁଙ୍କ ଟେବୁଲ ଆଗରେ ଏକ ମୋଟା ବହି ଖୋଲା ଥିଲା । ସମ୍ଭବତଃ ସେ ପଢ଼ାରେ ମଗ୍ନ ଥିଲେ । ଆଜିକାଲିକା ଭଳି ସେ ଲମ୍ବା କୁରୁତା ଓ ପେଣ୍ଟ ପିନ୍ଧୁ ନଥିଲେ । ସାଧାରଣ କର୍ମଚାରୀଙ୍କ ଭଳି ତାଙ୍କର ଥିଲା ପୋଷାକ । ସେତେବେଳେ ବିଦ୍ୟାଳୟଟି ଛୋଟ ଥିଲା, ତେଣୁ ଶିକ୍ଷକ ଓ କର୍ମଚାରୀ ସଂଖ୍ୟା ମଧ କମ୍ ଥିଲା ଏବଂ ଅନ୍ୟାନ୍ୟ ଶିକ୍ଷକମାନଙ୍କଠାରୁ ମୁଁ ବୟସରେ ଛୋଟଥିଲି । ସର୍ବଶ୍ରୀ ଭି.ଏମ୍. ଭଟ୍ଟନାଗର, ପ୍ରଦୀପ ସିଂହ, ଶିବ ଶଙ୍କର ସହାୟ, ହିମାଂଶୁ ମୁଖାର୍ଜୀ, ବୃନ୍ଦାବନ ଚନ୍ଦ୍ର ପଟ୍ଟନାୟକ, ଲଡୁକିଶୋର ପଣ୍ଡା, ନିରଂଜନ ଷଡଙ୍ଗୀ, ନିରୂପମା ଦାସ, ସୂର୍ଯ୍ୟନାରାୟଣ ପଟ୍ଟନାୟକ, ଟି. ଖେସ୍, ମିସ୍ ଜର୍ଜ, ଉର୍ବଶୀ ଯୋଶୀ, ଅଫ୍‌ସର୍ ମହମ୍ମଦ, ରାଧାଶ୍ୟାମ ମିଶ୍ର, ସମସ୍ତେ ଶିକ୍ଷକ ତଥା ଅନ୍ୟାନ୍ୟ କର୍ମଚାରୀମାନେ ହେଲେ ସର୍ବଶ୍ରୀ ପ୍ରହଲ୍ଲାଦ ସୁବୁଦ୍ଧି, ଗୋଲକବିହାରୀ ବରାଳ, ବାଇଧର ପ୍ରଧାନ, ନାରାୟଣ ସାହୁ, ରାଜକିଶୋର ନାୟକ, ଖଡିଆ ନାୟକ, ବୀରବର ଭୋଇ ଇତ୍ୟାଦି ।

ଧୀରେ ଧୀରେ ଆମ୍ଭମାନଙ୍କ ଭିତରେ ବନ୍ଧୁତ୍ୱ ବଢ଼ିଲା ଏବଂ ପାଠୀ ବାବୁଙ୍କ ସହ ମୋର ଘନିଷ୍ଠତା ମଧ ନିବିଡ଼ ଭାବେ ଜମିଲା । ସମ୍ଭବତଃ ଆମ ଦି'ଜଣକ ମଧରେ ବେଶୀ ମେଳକ ଥିଲା । ଗଂଜାମର ବଡ଼ଖେମୁଣ୍ଡି ତାଲୁକାରେ ଆମ ଦି'ଜଣଙ୍କର ଘର । ଆଚାରବ୍ୟବହାର, ଚାଲିଚଳନ, ଖାଦ୍ୟପେୟ, କଥା କହିବାର ଭଙ୍ଗୀ ଏବଂ ସର୍ବୋପରି ସାଂସ୍କୃତିକ ସାମଞ୍ଜସ୍ୟ ଅଧିକ ଥିଲା । ଦ୍ୱିତୀୟରେ ସେ ଥିଲେ ଆର୍ଟ୍ ଶିକ୍ଷକ ଏବଂ ମୁଁ ଥିଲି କ୍ରାଫଟ୍ ଶିକ୍ଷକ । ଦି'ଜଣଙ୍କର ଛୋଟ ଛୋଟ ଦାଢ଼ି ମଧ ଥିଲା । ବିଭିନ୍ନ ବିଷୟ ଉପରେ ଦି'ଜଣଙ୍କ ବିଚାର ମଧ ପ୍ରାୟ ଏକପ୍ରକାର ଥିଲା । ଆର୍ଟ୍ ଓ କ୍ରାଫ୍‌ଟର ଅପୂର୍ବ ସମନ୍ୱୟ ।

ସେତେବେଳେ ସେ ବିବାହିତ ଥିଲେ । କିନ୍ତୁ ବହୁ ସମୟ ଏକା ଏକା ରହିବାକୁ ପଡୁଥିଲା । ଅଶୋକ ନଗରସ୍ଥିତ ସାଇଁ ବାବୁଙ୍କ ଘରେ ଭଡ଼ାରେ ରହୁଥିଲେ । ବେଳେ ବେଳେ ତାଙ୍କ ସ୍ତ୍ରୀ, ଅବନ୍ତୀ ଭାଉଜ ବାଲେଶ୍ୱରରୁ ଆସନ୍ତି । କିଛି ଦିନ ରହି ପୁଣି ଫେରି ଯାଆନ୍ତି । ସେ ସେଠିକା କଚେରୀରେ ଚାକିରି କରୁଥିଲେ । ମନେ ହେଉଥିଲା ସେ ପାଠୀ ବାବୁଙ୍କୁ ନିଜ ପଣତକାନିରେ ସବୁବେଳେ ବାନ୍ଧି ରଖିବେ । ମିନିଟିଏ ସୁଦ୍ଧା ତାଙ୍କ ସ୍ୱାମୀଙ୍କୁ ହାତଛଡ଼ା କରିବେ ନାହିଁ । କିନ୍ତୁ ପାଠୀ ବାବୁଙ୍କ କଉତୁକିଆ ସ୍ୱଭାବ ଯୋଗୁଁ ସେ ବହୁ ସାଙ୍ଗସାଥିମାନଙ୍କ ଦରକାରୀ ହୋଇସାରିଥିଲେ ଏବଂ ଅବନ୍ତୀ ଭାଉଜଙ୍କ ବାରଣ ସତ୍ତ୍ୱେ ଅଶୋକନଗର ସ୍ଥିତ ବସାଘରଟି ଏକ ଖଟିରେ ପରିଣତ ହୋଇସାରିଥିଲା । ଆମ ସ୍କୁଲର ଶିକ୍ଷକମାନଙ୍କ ବ୍ୟତୀତ ତାଙ୍କ ଗୁରୁ ଶ୍ରୀ ଅନନ୍ତ ପଣ୍ଡା, ସହପାଠୀ ଚନ୍ଦ୍ର ରାଓ, ଚିତ୍ରଶିଳ୍ପୀ ଡି.ଏନ୍. ରାଓ ତାଙ୍କ ବସାରେ କିଛିଦିନ ପାଇଁ କ୍ୟାମ୍ପ କରୁଥିଲେ । ବିଭିନ୍ନ ଜାଗାରେ ଚିତ୍ର ପ୍ରଦର୍ଶନୀ

Digitized by srujanika@gmail.com

ପାଇଁ ପ୍ରସ୍ତୁତି ମଧ ହେଉଥିଲା ପାଠୀ ବାବୁଙ୍କ ବସାଘରେ । ବିଦ୍ୟାଳୟର କୌଣସି କାର୍ଯ୍ୟକ୍ରମକୁ ରୂପାୟନ କରିବାର ସମସ୍ତ କାର୍ଯ୍ୟ ପାଠୀ ବାବୁଙ୍କ ବସାରେ ହିଁ ହୁଏ । ସ୍କୁଲର ଅନ୍ୟାନ୍ୟ ଶିକ୍ଷକମାନେ ବାପୁଜୀ ନଗରରେ ରହନ୍ତି । ତେଣୁ ସମସ୍ତେ ମେଳ ହୋଇ ସାଉଥ୍ ଇଣ୍ଡିଆନ୍ ହୋଟେଲରେ ଖାଇବା ହୁଏ । ଶିଳ୍ପୀ ଅସୀମ ବାବୁଙ୍କ କାରଖାନାରେ ବସି ଗୁଲିଖଠି ହୁଏ। ଏସବୁ ସତ୍ତ୍ୱେ ଦୃଢ଼ ମନନେଇ ପାଠୀ ବାବୁ ଏହି ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସରେ ପ୍ରଥମ ହେଇ ଏମ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସମସ୍ତ ଅଭାବ ଓ ଅସୁବିଧା ମଧ୍ୟରେ ସେଇଟା ଏକ ବଡ଼ ସଫଳତା । ଶିକ୍ଷକ ଅଭାବରୁ ପାଠୀ ବାବୁଙ୍କୁ ବେଳେ ବେଳେ ସ୍କୁଲରେ ସଂସ୍କୃତ ତଥା ସାମାଜିକ ଅଧ୍ୟୟନ ହିନ୍ଦୀ ମାଧ୍ୟମରେ ପଢ଼େଇବା ପାଇଁ କୁହାଯାଉଥିଲା । ସେ ଚିତ୍ରାଙ୍କନ ପ୍ରତି ଯେତେ ଗୁରୁତ୍ୱ ଦେଉଥିଲେ ତା'ଠାରୁ ଅଧିକ ଛାତ୍ରଛାତ୍ରୀଙ୍କ ମନ ଭିତରେ ଲଳିତକଳା ପ୍ରତି ରୁଚି ଓ ସଚେତନତା ବଢ଼ାଇବା ପାଇଁ ମନପ୍ରାଣ ଦେଇ ଚେଷ୍ଟା କରୁଥିଲେ । ବିଭିନ୍ନ ଚିତ୍ରାଙ୍କନ ପ୍ରତିଯୋଗିତାରେ ଯୋଗଦାନ, ମନ୍ଦିର, ଗୁମ୍ଫା ଓ ଚିତ୍ର ପ୍ରଦର୍ଶନୀ ପରିଦର୍ଶନ କୋମଳମତି ବାଳକ ଓ ବାଳିକାଙ୍କ ମନରେ ବିଶେଷ ପ୍ରଭାବ ପକାଉ ଥିଲା । ତେଣୁ ସେ ଛାତ୍ରଛାତ୍ରୀଙ୍କ ଗହଣରେ ବିଶେଷ ଆଦୃତ ହେଉଥିଲେ । ତାଙ୍କର ବହୁଛାତ୍ର ସର୍ବଭାରତୀୟ ତଥା ରାଜ୍ୟ ସ୍ତରରେ ପୁରସ୍କୃତ ହେଉଥିଲେ ।

**ସେଣ୍ଟ୍ରାଲ୍ ସ୍କୁଲର ଡ୍ରଇଁ ମାଷ୍ଟରଙ୍କୁ ବହୁ ବିଚିତ୍ର କାର୍ଯ୍ୟ କରିବାକୁ ପଡ଼େ । ଚିତ୍ରଶିକ୍ଷା ବେଳେ ବେଳେ ଗୌଣ ହୋଇଯାଏ । ଅଧକ୍ଷଙ୍କ ଆଦେଶ ଅନୁସାରେ ପାଠୀ ବାବୁଙ୍କୁ ଟୁଲ୍ ଉପରେ ଠିଆ ହୋଇ ଦୁଆରବନ୍ଧ ଉପରେ ବଖରା ସଂଖ୍ୟା ଲେଖିବା, ସ୍କୁଲ ସମୟ ପରେ କ୍ଲାସର କଳାପଟାଗୁଡ଼ିକୁ ସଫାକରି ଚୌଡ଼ା ବ୍ରସରେ କଳା ରଙ୍ଗ କରିବା, ଉପ-ଅଧିକାରୀଙ୍କ ପରିଦର୍ଶନ ସମୟରେ ସେମାନଙ୍କ ଉଦ୍ଦେଶ୍ୟରେ ଶୁଭସୂଚକ ବେନର୍ ଲେଖି ବିଦ୍ୟାଳୟର ମୁଖ୍ୟ ଫାଟକ ଆଗରେ ଝୁଲେଇବା, ସ୍କୁଲର ସମସ୍ତ ଚୌକି, ଟେବୁଲ, ଆଲମିରା ତଥା ସମସ୍ତ ସରଞ୍ଜାମ ଉପରେ ଷ୍ଟେନ୍‌ସିଲ୍ କାଟି ଧଳା ରଙ୍ଗର ଛାପ ଲଗେଇବା ଇତ୍ୟାଦି ।** ଏସବୁ କାର୍ଯ୍ୟ ତାଙ୍କ ବିବେକାନୁମୋଦିତ ନଥିଲା । କଥା ପ୍ରସଙ୍ଗରେ ଅନ୍ୟାନ୍ୟ ସହକର୍ମୀମାନଙ୍କଠାରେ ବିଦ୍ରୋହର ସ୍ୱର ସଂପୂର୍ଣ୍ଣଭାବେ ଶୁଣାଯାଉଥିଲା । କିନ୍ତୁ ତାଙ୍କ କର୍ତ୍ତବ୍ୟରେ ନିଷ୍ଠା ଓ ଆଚରଣରେ ଭଦ୍ରତା ନିଶ୍ଚୟ ପ୍ରଶଂସନୀୟ । ଅଧକ୍ଷଙ୍କଠାରୁ ଆରମ୍ଭ କରି ଶିକ୍ଷକ, କର୍ମଚାରୀ, ଛାତ୍ରଛାତ୍ରୀ ତଥା ଅଭିଭାବକଙ୍କର ସେ ଥିଲେ ଅତ୍ୟନ୍ତ ପ୍ରିୟ । ସ୍କୁଲର ସମସ୍ତ ଛୋଟ ବଡ଼ କାର୍ଯ୍ୟରେ ତାଙ୍କର ପ୍ରଧାନ ଭୂମିକା ଥିଲା । କଉତୁକିଆ ଭାଷା ଓ ଭାବ ଶିକ୍ଷକ ତଥା ଛାତ୍ର ସମସ୍ତଙ୍କୁ ମୁଗ୍ଧ କରି ଦେଉଥିଲା । ପାଠୀ ବାବୁ ଯେଉଁଦିନ ଛୁଟିରେ ରହନ୍ତି ସ୍କୁଲ ସେଦିନ ସ୍ପନ୍ଦନହୀନ ହୋଇ ପଡୁଥିଲା ।

କିଛିଦିନ ପରେ ଏକ ନମ୍ବର ହାଇସ୍କୁଲରୁ ସେଣ୍ଟ୍ରାଲ୍ ସ୍କୁଲ ଉଠି ଆସିଲା ପାଖରେ ଚାଲିଥିବା ମହିଳା ମହାବିଦ୍ୟାଳୟ କୋଠାକୁ । ସ୍କୁଲ ସମୟ ପରିବର୍ତ୍ତନ ହେଲା ସକାଳ ନ'ଟାକୁ । ସେତେବେଳକୁ ସ୍କୁଲଟି ଉଚ୍ଚତର ମାଧ୍ୟମିକ ବିଦ୍ୟାଳୟକୁ ଉନ୍ନୀତ ହୋଇସାରିଥାଏ। ପଙ୍କଜ ରାଉତ, ଇନ୍ଦିରା ପାଲ, ତପନ ନନ୍ଦ, ସଂଜୀବ ଦାସ, ତପନ ନାଥ ଭଳି ବହୁ କର୍ମଠ ଛାତ୍ରଙ୍କ ଉଦ୍ୟମରେ ପାଠୀ ବାବୁ ଆୟୋଜନ କଲେ ପ୍ରଥମଥର ପାଇଁ ଗଣେଶ ପୂଜା । କମିଟି ଗଠନ କରାଗଲା । ମୂର୍ତ୍ତି ଓ ସାଜସଜ୍ଜା କମିଟିରେ ପାଠୀ ବାବୁଙ୍କ ସାଙ୍ଗରେ ମୋତେ ରଖାଗଲା । ଭାସ୍କର ଶିଳ୍ପୀ ଶ୍ରୀ ଦେବରାଜ ସାହୁଙ୍କ ପ୍ରତ୍ୟକ୍ଷ ପରାମର୍ଶରେ ଗଢ଼ାହେଲା ଗଣେଶଙ୍କ ପ୍ରତିମା । ସାଢ଼େ ଆଠଫୁଟ ଉଚ୍ଚ, କଳା ମୁଗୁନି ପଥର ରଙ୍ଗରେ ମୋଜାଇକ୍ ଫିନିସ୍, ଆଗରେ ତିଆରି ହେଲା ମୁକ୍ତେଶ୍ୱର ମନ୍ଦିର ତୋରଣର ଅବିକଳ ନକଲ । ବିଜୁଳି ଆଲୋକଦ୍ୱାରା ସଜେଇ ଦିଆଗଲା ବିଦ୍ୟାଳୟ କୋଠା । ସେଇବର୍ଷ (୧୯୬୯) ପୁରା

Digitized by srujanika@gmail.com

ଭୁବନେଶ୍ୱର କାହିଁକି ଆଖପାଖ, କଟକ, ଖୋର୍ଦ୍ଧା, ଛଟଣୀ ପର୍ଯ୍ୟନ୍ତ ଚହଳ ପକେଇ ଦେଲା ସେଣ୍ଟ୍ରାଲ୍ ସ୍କୁଲ ଗଣେଶ ପୂଜା ମେଢ଼ ଓ ପ୍ରତିମା ।

ସେଣ୍ଟ୍ରାଲ ସ୍କୁଲର ନିଜସ ଭବନ ୧୯୭୦ ମସିହାରେ ସମ୍ପୂର୍ଣ୍ଣ ହେଲା । ଶୁଭ ଉଦ୍‌ଘାଟନର ପ୍ରସ୍ତୁତି ପାଇଁ କେନ୍ଦ୍ରୀୟ ବିଦ୍ୟାଳୟ ସଂଗଠନର କମିଶନର ଶ୍ରୀ ଡି.ଏଲ୍. ଶର୍ମା ଏବଂ ସହକାରୀ କମିଶନର ଶ୍ରୀ ଏସ୍. ଆର. ଉପାଧ୍ୟାୟ ଆଠଦିନ ଆଗରୁ ଆସି କ୍ୟାମ୍ପ୍ ପକାଇ ଥିଲେ । ତତ୍‌କାଳୀନ କେନ୍ଦ୍ର ଶିକ୍ଷାମନ୍ତ୍ରୀ Prof.V.K.R.V. Rao, ରାଜ୍ୟପାଳ ଶ୍ରୀଯୁକ୍ତ ଏସ.ଏସ୍. ଆନ୍‌ସାରୀ, ରାଜ୍ୟ ଶିକ୍ଷା ମନ୍ତ୍ରୀ ଶ୍ରୀଯୁକ୍ତ ବନମାଳୀ ପଟ୍ଟନାୟକ, ପୂର୍ବମନ୍ତ୍ରୀ ଶ୍ରୀଯୁକ୍ତ ଅଇଁଠୁ ସାହୁ ଏବଂ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଉଦ୍‌ଘାଟନ ଉତ୍ସବରେ ଯୋଗ ଦେବାପାଇଁ ନିମନ୍ତ୍ରିତ ହୋଇଥିଲେ ।

ସେତେବେଳେ ମୁଁ ଆଉ ପାଠୀ ବାବୁ କମିଶନର୍ ଏବଂ ସହକାରୀ କମିଶନର୍‌ଙ୍କର ବିଶେଷ ପ୍ରିୟପାତ୍ର ହୋଇଗଲୁ, କଥାକଥାକେ ଆମର ସହଯୋଗ ଓ ପରାମର୍ଶ ଲୋଡ଼ା ଯାଉଥିଲା । ତେଣୁ ସହକର୍ମୀଙ୍କ ମହଲରେ ଆମେ ବିଶେଷ ସମାଲୋଚିତ ମଧ୍ୟ ହେଲୁ । ଉଦ୍‌ଘାଟନୀ ସଭା ପରେ ଫାଟକ ଆଗରେ ବନ୍ଧାଥିବା ନାଲିଫିତା କଟାଗଲା ଏବଂ ବୈଦିକ ମତରେ ଚନ୍ଦନ, ସିନ୍ଦୂର, ଫୁଲ, ଶଂଖ ହୁଳହୁଳି ମଧ୍ୟରେ ଅତିଥିମାନଙ୍କୁ ବିଦ୍ୟାଳୟ ଭବନ ଭିତରକୁ ପାଛୋଟି ନିଆଗଲା । ବିଦ୍ୟାଳୟର ଜନୈକା ଛାତ୍ରୀ କୁମାରୀ ସଂଘମିତ୍ରା ମହାନ୍ତି ଓଡ଼ିଶୀ ନୃତ୍ୟାଙ୍ଗନା ବେଶରେ ବିଶିଷ୍ଟ ଅତିଥିମାନଙ୍କୁ ଚନ୍ଦନ ସିନ୍ଦୂର ପିନ୍ଧେଇ ଅଭ୍ୟର୍ଥନା ଜଣେଇଥିଲା । କାର୍ଯ୍ୟକ୍ରମର ବିଶେଷ ସଫଳତା ପାଇଁ ଅଧ୍ୟକ୍ଷଙ୍କଠାରୁ କମିଶନର୍ ପର୍ଯ୍ୟନ୍ତ ଆମେ ପ୍ରଶଂସିତ ହେଲୁ । କିନ୍ତୁ କିଛିଦିନ ପରେ ସ୍କୁଲର ଅଧ୍ୟକ୍ଷଙ୍କ ନିକଟକୁ କାରଣ ଦର୍ଶାଅ ନୋଟିସ୍ ଆସିଲା । ରାଜ୍ୟପାଳ ଆନ୍‌ସାରୀ ମହୋଦୟଙ୍କୁ କାହିଁକି ଚନ୍ଦନ ଟୋପାଦ୍ୱାରା ସମ୍ବର୍ଦ୍ଧିତ କରାଗଲା ? ଛାତ୍ରୀ ସଂଘମିତ୍ରା ରାଜ୍ୟପାଳ ଅନ୍ୟ ସଂପ୍ରଦାୟର ବୋଲି ଜାଣି ନଥିଲା ଏବଂ ସେ ନିଜେ ଚନ୍ଦନ ସିନ୍ଦୂର ପିନ୍ଧିବା ପାଇଁ କପାଳ ବଢ଼େଇ ଦେଇଥିଲେ - ଅଧ୍ୟକ୍ଷଙ୍କୁ ପାଠୀ ବାବୁଙ୍କ ସ୍ପଷ୍ଟ ଏବଂ ନିର୍ଭୀକ ଉତ୍ତର ଥିଲା । ଅବଶ୍ୟ ସେଇ ସମୟରେ ଆମର କୌଣସି ପରାମର୍ଶ ଦେବାର ଅବକାଶ ନଥିଲା । ଅଧିକନ୍ତୁ ସଂଗଠନର ସମସ୍ତ ପଦାଧିକାରୀ ସେଠାରେ ଉପସ୍ଥିତ ଥିଲେ । ଏମିତି ବହୁ ଛୋଟବଡ଼, ଘଟଣାରେ ପାଠୀ ବାବୁ ନିଜର ନିର୍ଭୀକତା, ସ୍ପଷ୍ଟବାଦିତା ତଥା ଆତ୍ମୀୟତା ପ୍ରକାଶ କରିଛନ୍ତି ।

କେନ୍ଦ୍ରୀୟ ବିଦ୍ୟାଳୟରେ ବଦଳି ସର୍ବଭାରତୀୟ ସ୍ତରରେ ହୁଏ । ତେଣୁ ୧୯୭୦ ମସିହାରେ କିଛି ଶିକ୍ଷକ ଭାରତର ଅନ୍ୟ ପ୍ରାନ୍ତରୁ ବଦଳି ହୋଇ ଭୁବନେଶ୍ୱର ସ୍କୁଲରେ ଜଏନ୍ କଲେ । ସେମାନଙ୍କ ମଧ୍ୟରେ ଦୁଇଜଣ ଖଳ ପ୍ରକୃତିର ଶିକ୍ଷକ ଥିଲେ । ସେତେବେଳେ ଜଣେ ନୂତନ ଭାବେ ଅଧ୍ୟକ୍ଷ ବି ଜଏନ୍ କରିଥାନ୍ତି । ଅଧ୍ୟକ୍ଷଙ୍କ ସରଳ ବିଶ୍ୱାସର ଫାଇଦା ନେଇ ସେ ଦୁହେଁ ବିଦ୍ୟାଳୟର ଶାନ୍ତ ଓ ସୁନ୍ଦର ପରିବେଶକୁ କଳୁଷିତ କରିବାରେ ଲାଗିଲେ । ନିଷ୍ଠାର ସହିତ ଗଢ଼ିଥିବା ଅନୁଷ୍ଠାନର କ୍ଷତି ଆମେ ସହି ପାରିଲୁ ନାହିଁ । ପାଠୀ ବାବୁଙ୍କ ସୁସଂଗଠିତ ଯୋଜନା ଅନୁସାରେ ଅନ୍ୟ ସମସ୍ତ ଶିକ୍ଷକ ଓ କର୍ମଚାରୀ କଡ଼ା ବିରୋଧ କଲୁ ଏବଂ ସମସ୍ୟାର ସମାଧାନ ପାଇଁ ତତ୍‌କାଳୀନ କେନ୍ଦ୍ରମନ୍ତ୍ରୀ ଶ୍ରୀଯୁକ୍ତ ସିଦ୍ଧାର୍ଥଶଙ୍କର ରାୟଙ୍କୁ ଭୁବନେଶ୍ୱର ଆସିବାକୁ ପଡ଼ିଥିଲା ଏବଂ ବିଦ୍ୟାଳୟରେ ଶାନ୍ତି ଫେରାଇ ଆଣିବା ପାଇଁ ଅଧ୍ୟକ୍ଷଙ୍କ ସହିତ ସେ ଦି'ଜଣ ଶିକ୍ଷକଙ୍କୁ ଅନ୍ୟତ୍ର ବଦଳି କରାଗଲା ।

Digitized by srujanika@gmail.com

ଦିନନାଥ ପାଠୀ

# ସୁଇଜରଲାଣ୍ଡରେ ଭାରତୀୟ କଳା

ଜୁନ୍ ୨୩ ତାରିଖର ସକାଳ । ସୁଇସ୍ ଖରାଦିନିଆ ସକାଳ ଓଡ଼ିଶାର ଶୀତଦିନ ଭଳି । ସୁଇଜରଲାଣ୍ଡର ଜୁରିକ୍ ସହର ବୁକୁ ଉପରେ ଶତାବ୍ଦୀ ଶତାବ୍ଦୀ ଧରି ଆବୋରି ରହିଥିବା ରିଟ୍‌ବର୍ଗ୍ ପାର୍କଟି ଆଜି ମୁଖରିତ । ଭାରତୀୟତାର ମହକ ଚାରିଆଡେ ଭରିଯାଇଛି । ଓଡ଼ିଶୀ, ବନାରସୀ ଓ କାଞ୍ଚିବରମ୍ ଶାଢ଼ି ପିନ୍ଧି ଭାରତୀୟ ରମଣୀମାନେ ପାର୍କର ଏ ମୁଣ୍ଡରୁ ସେମୁଣ୍ଡ ଯାଏ ଘୂରି ବୁଲୁଛନ୍ତି । ଚୁଡ଼ିଦାର ପଞ୍ଜାବୀ, ପାଇଜାମା, ଜହରଜ୍ୟାକେଟ ମଡେଇ ବହୁ ବିଦେଶୀ ଦର୍ଶକ ଭାରତୀୟ ଭଳି ଦିଶିବା ପାଇଁ ଚେଷ୍ଟିତ । ମୁଣ୍ଡରେ ସିନ୍ଦୂର ଟୋପା, କାନରେ କାନଫୁଲ ହାତରେ ଚୁଡ଼ିପିନ୍ଧି ସୁଇସ୍ ଲଳନାମାନେ ଆଜି ଭାରତୀୟ ପ୍ରେମରେ ପାଗଳ । ପୁରି, କଚୋଡ଼ି, ସିଙ୍ଗଡ଼ା; ଘୁଗୁନି ଓ ଝିଲାପିର ବାସ୍ନାରେ ପାର୍କଟି ଫାଟିପଡୁଛି ।

ଭାରତ ଉତ୍ସବର ସମୟ ପାଖେଇ ଆସିଲା । ରିଟ୍‌ବର୍ଗ୍ ପାର୍କ୍ ମଝିରେ ଥିବା ରିଟ୍‌ବର୍ଗ୍ ସଂଗ୍ରହାଳୟର ସଭାଗୃହ ଲୋକାରଣ୍ୟ ହୋଇଉଠିଲା । ହିମାଚଳ ପ୍ରଦେଶର କିନୋର୍‌ରୁ ଆସିଥିବା ଆଦିବାସୀ ନର୍ତ୍ତକ ଓ ନର୍ତ୍ତକୀମାନେ ରଙ୍ଗ ବେରଙ୍ଗ ପାହାଡ଼ି ପୋଷାକ ଓ ରୂପାର ଗହଣା ନାଇ ଧୁମ୍‌ସାର ଛନ୍ଦେ ଛନ୍ଦେ ନାଚି ନାଚି ସଭାଗୃହ ଭିତରକୁ ଆସିଲେ । ଏହାଥିଲା ଜୁରିକ୍‌ରେ ଭାରତ ଉତ୍ସବର ଶୁଭାରମ୍ଭ ।

ଜୁରିକ୍ ସହରର ରିଟ୍‌ବର୍ଗ୍ ସଂଗ୍ରହାଳୟ ଅଣୟୁରୋପୀୟ ଚିତ୍ରକଳାର ସାମଗ୍ରୀ ପାଇଁ ବିଶ୍ୱବିଖ୍ୟାତ । ଜାପାନ, ଚୀନ, ଆଫ୍ରିକା ଏବଂ ଭାରତୀୟ କଳାର ଅପୂର୍ବ ଗନ୍ତାଘର ରିଟ୍‌ବର୍ଗ୍ ସଂଗ୍ରହାଳୟ । ୟୁରୋପରେ ଭାରତୀୟ କଳାର ପ୍ରଚାର ଓ ପ୍ରସାର ପାଇଁ ସଂଗ୍ରହାଳୟ ନିରବଚ୍ଛିନ୍ନ ଭାବେ ଉଦ୍ୟମକରି ଆସିଛି । **ଆଗରୁ ଏହି ସଂଗ୍ରହାଳୟରେ ଓଡ଼ିଶାର କଳା ଓ ସ୍ଥାପତ୍ୟ, ଗୁଜରାଟର କଳା ଓ ସଂସ୍କୃତି, ମୋଗଲ ଚିତ୍ରକଳା, ଗୁଜରାଟର ସ୍ଥାପତ୍ୟ କଳା ପ୍ରଭୃତି ବହୁ ପ୍ରଦର୍ଶନୀ ସ୍ଥାନ ପାଇଛି ଏବଂ ଏହି ସଂକ୍ରାନ୍ତରେ ପୁସ୍ତକମାନ ମଧ୍ୟ ପ୍ରକାଶିତ ହୋଇସାରିଛି ।** ଗତ ଜୁନ୍ ମାସରେ ଆରମ୍ଭ ହୋଇଥିବା ଭାରତ ଉତ୍ସବ ଉପଲକ୍ଷେ 'ପାହାଡ଼ି ଚିତ୍ରକଳା' ସଂପର୍କରେ ଏକ ମନୋଜ୍ଞ ପ୍ରଦର୍ଶନୀ ମଧ ଉଦ୍‌ଘାଟିତ ହୋଇଛି ଏବଂ ଏକ ଛବିଳ ପୁସ୍ତକ ମଧ ପ୍ରକାଶିତ ହୋଇଛି । ଏହି ପ୍ରଦର୍ଶନୀ ଅକ୍ଟୋବର ମାସ ଶେଷଯାଏ ସଂଗ୍ରହାଳୟର ଦୁଇଟି ସତନ୍ତ୍ର ଗ୍ୟାଲେରୀରେ ପ୍ରଦର୍ଶିତ ହେବ । ଭାରତୀୟ ଚିତ୍ରକଳାର ବିଭିନ୍ନ ବିଭାଗ ମଧ୍ୟରୁ ଅଜନ୍ତାର ଭିତ୍ତିଚିତ୍ରକୁ ବାଦଦେଲେ ପାହାଡ଼ି ଧାରାର କ୍ଷୁଦ୍ର ଚିତ୍ର ହିଁ (ମିନିଏଚର୍ ପେଣ୍ଟିଙ୍ଗ୍) ଜନମାନସକୁ ବହୁ ଭାବରେ ଉଦ୍‌ବୁଦ୍ଧ କରେ । ଭାରତୀୟ କଳାର ବିଶ୍ୱବନ୍ଦିତ କଳା ସମାଲୋଚକ କୁମାରସାମୀଙ୍କଠାରୁ ଆରମ୍ଭ କରି କାରଲ୍ ଖଣ୍ଡାଲାୱାଲାଙ୍କ ପର୍ଯ୍ୟନ୍ତ ଅନେକ ପଣ୍ଡିତ ଏହି ପାହାଡ଼ି ଚିତ୍ରର ସମ୍ମୋହନରେ ଅନୁପ୍ରାଣିତ । କିନ୍ତୁ ଏ ଅବଧି ପାହାଡ଼ି ଚିତ୍ରକଳା ସଂପର୍କରେ ଏକ ନିଖୁଣ ଇତିହାସ ପ୍ରଣୟନ କରିବା ସମ୍ଭବପର ହୋଇନାହିଁ । ଭାରତୀୟ ପୁରାଣ, ଦର୍ଶନ ଓ ଧର୍ମଧାରାରେ ଉଦ୍‌ବୁଦ୍ଧ ହୋଇ ପାହାଡ଼ି ଚିତ୍ରକରମାନେ ଅପୂର୍ବ ଲାବଣ୍ୟ, ବର୍ଣ୍ଣଯୋଜନା ଏବଂ ତୂଳୀର ସୁଦକ୍ଷ ଚାଳନାରେ ବିଶ୍ୱବନ୍ଦିତ ଚିତ୍ରଗୁଚ୍ଛମାନ ଭାରତୀୟ କଳାର ଗନ୍ତାଘରକୁ ଦେଇଯାଇଛନ୍ତି ।

ସେଦିନ ରିଟ୍‌ବର୍ଗ୍ ସଂଗ୍ରହାଳୟର ଅତ୍ୟାଧୁନିକ ପ୍ରଦର୍ଶନୀ ଗୃହରେ ରୁଚିପୂର୍ଣ୍ଣ ଏବଂ ସମ୍ଭ୍ରାନ୍ତ ଭାବେ ପ୍ରଦର୍ଶିତ ପାହାଡ଼ି ଚିତ୍ର ଗୁଡ଼ିକର ରସସାଦନ କରୁ କରୁ ବହୁ ଭାରତୀୟ ଭାବବିହ୍ୱଳ ହୋଇ ଉଠିଥିଲେ । ପୃଥିବୀର ବହୁ ବିଶିଷ୍ଟ ସଂଗ୍ରହାଳୟ; ଯଥା- ମେଟ୍ରୋପୋଲିଟନ୍ ସିଟି ମ୍ୟୁଜିୟମ୍, ନିଉୟର୍କ, ଭିକ୍‌ଟୋରିଆ ଆଣ୍ଡ୍ ଆଲ୍‌ବର୍ଟ ମ୍ୟୁଜିୟମ୍, ଲଣ୍ଡନ, ବର୍ଲିନ୍ ସଂଗ୍ରହାଳୟ, ଜର୍ମାନୀ, ଭାରତର

Digitized by srujanika@gmail.com

ଚଣ୍ଡୀଗଡ଼ ମ୍ୟୁଜିୟମ୍ ଓ ସିମଲାର ରାଜ୍ୟ ସଂଗ୍ରହାଳୟରୁ ସଂଗୃହୀତ ପ୍ରାୟ ତିନିଶହ ଚିତ୍ରର ଅପୂର୍ବ ସମାବେଶ ଏହି ପ୍ରଦର୍ଶନୀରେ ଘଟିଥିଲା । ପାହାଡ଼ି କଳା ସଂପର୍କରେ ଆଗରୁ ବହୁ ଚର୍ଚ୍ଚିତ କଳାର ଧାରାକୁ ବାଦ ଦେଇ ଏକ ନୂତନ ସାଦରେ ଏହି ପ୍ରଦର୍ଶନୀକୁ ପରିବେଷଣ କରିଥିଲେ ରିଟ୍‌ବର୍ଗ୍ ସଂଗ୍ରହାଳୟର ନିର୍ଦ୍ଦେଶକ ଡକ୍ଟର ଏବର୍‌ହାଡ୍ ଫିସର୍ ଏବଂ ପଞ୍ଜାବ ବିଶ୍ୱବିଦ୍ୟାଳୟ ସୂକ୍ଷ୍ମକଳା ବିଭାଗର ମୁଖ୍ୟ, ପ୍ରଫେସର୍ ବି.ଏନ.ଗୋସାମୀ । ଏମାନଙ୍କ ଚିନ୍ତାଧାରାର ମୁଖ୍ୟ ଉତ୍ସଥିଲା ପାହାଡ଼ି କଳାରେ ଚିତ୍ରକର ପରିବାରମାନଙ୍କର ଭୂମିକା, ସେମାନେ ତଥାକଥିତ କାଂଗ୍ରା, ବାଶୋଲୀ; ନୂରପୁର୍, ଚମ୍ବା ପ୍ରଭୃତି ସ୍ଥାନ ସହିତ କଳାର ଧାରାକୁ ବେଶି ଗୁରୁତ୍ୱ ଦେଉ ନଥିଲେ । ଏଣୁ ଚିତ୍ର ପ୍ରଦର୍ଶନୀର ଶୀର୍ଷକ **ପାହାଡ଼ି ଚିତ୍ରକର** ରଖାଯାଇଥିଲା । ଏହି ଦୁଇଜଣ କଳା ସମାଲୋଚକ ପ୍ରାକ୍ ମୋଗଲ ସମୟରୁ ଆରମ୍ଭ କରି ପ୍ରାୟ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଚାରିଶହ ବର୍ଷର ପାହାଡ଼ି କଳାକୁ ଚିତ୍ରକର ପରମ୍ପରା କ୍ରମେ ପ୍ରଦର୍ଶିତ କରିବାରେ ସମର୍ଥ ହୋଇଥିଲେ । ସେଦିନ ଶହ ଶହ ଲୋକଙ୍କ ମୁହଁରେ ପାହାଡ଼ି ଚିତ୍ରକର ପଣ୍ଡିତ ସେଉ, ନୟନ୍‌ସୁଖ, ମାନକୁ ପ୍ରଭୃତିଙ୍କ ଜୀବନ ଗାଥା ଏବଂ ଗୀତଗୋବିନ୍ଦ, ରାମାୟଣ, ମହାଭାରତର କଥାବସ୍ତୁ ଜୀବନ୍ତ ହୋଇ ଉଠୁଥିଲା ।

ପ୍ରଦର୍ଶନୀର ସାଜସଜ୍ଜା ଓ ସୁଇସ୍ ପ୍ରଦର୍ଶନୀ କାରିଗରଙ୍କ ଅତ୍ୟନ୍ତ କୌଶଳପୂର୍ଣ୍ଣ ଏବଂ ରୁଚିପୂର୍ଣ୍ଣ ପରିବେଷଣ ପ୍ରଦର୍ଶନୀକୁ ସାଫଲ୍ୟ ଆଣି ଦେଉଥିଲା । ପ୍ରଦର୍ଶିତ ହୋଇଥିବା ଚିତ୍ରଗୁଡ଼ିକରେ ଭାରତୀୟ ଚିତ୍ରଶିଳ୍ପୀମାନେ ଯେତେ ପରିମାଣରେ ନିଜର କାରିଗରୀ କୌଶଳ ଦେଖାଇବା ପାଇଁ ଚେଷ୍ଟିତ ହୋଇ ସମର୍ଥ ହୋଇଥିଲେ, ସେତିକି ପରିମାଣରେ ସୁଇସ୍ କାରିଗରମାନେ ନିଖୁଣଭାବେ ପ୍ରଦର୍ଶନୀକୁ ଉପସ୍ଥାପିତ କରିବାରେ ମଧ୍ୟ ଦକ୍ଷତା ଦେଖାଇଥିଲେ । ମନେ ହେଉଥିଲା ଭାରତୀୟ ଦର୍ଶନ ଓ ଭାବଧାରା ସହିତ ସୁଇସ୍ ଚିନ୍ତାଧାରାର ଅପୂର୍ବ ସମନ୍ୱୟ ଘଟିଛି ।

ସଂଗ୍ରହାଳୟ ଭିତରେ ଆୟୋଜିତ ଚିତ୍ର ପ୍ରଦର୍ଶନୀ ସହ ତାଳଦେଇ ରିଟ୍‌ବର୍ଗ୍ ପାର୍କ୍‌ରେ ପ୍ରାୟ ପଚାଶ ଷାଠିଏଟି ଉଠାଦୋକାନ ଭାରତୀୟ କଳା, ଖାଦ୍ୟସାମଗ୍ରୀ, ପୋଷାକ ପରିଚ୍ଛଦ, ବହି ଓ ଅଳଙ୍କାର ବିକିବାରେ ବ୍ୟସ୍ତ ଥିଲେ । ସୁଇଜରଲାଣ୍ଡରେ ରହୁଥିବା ବହୁ ସମ୍ଭ୍ରାନ୍ତ ଭାରତୀୟ ପରିବାର ଏବଂ ପେଷାଦାର ବ୍ୟବସାୟୀମାନଙ୍କ ପକ୍ଷରୁ ଗରମାଗରମ ମସଲାଦିଆ ଦୋସା, ଚିକେନ୍, ତନ୍ଦୁରୀ ଓ ପଲାଉ ବିକ୍ରୀ କରାଯାଉଥିଲା । ଏହି ଷ୍ଟଲ୍‌ମାନଙ୍କ ମଧ୍ୟରୁ ତିନିଚାରୋଟି ଷ୍ଟଲ୍ ବାରି ହୋଇ ଯାଉଥିଲା । ସେଗୁଡ଼ିକରେ ପିପିଲି ଚାନ୍ଦୁଆ, ଛତା, ବଟୁଆ, ସମ୍ବଲପୁରୀ ବାନ୍ଧ, ପଟଚିତ୍ର, ତାଳପତ୍ର ଖୋଦେଇ, ଖଡ଼ିପଥରର ଓଡ଼ିଶୀ ମୂର୍ତ୍ତି ଏବଂ ଓଡ଼ିଶା ଉପରେ ଆଧାରିତ ବହି ବିକ୍ରୀ ହେଉଥିଲା । **ଗୀତା ଓ ତା ଗାଁ, ଗୀତା ଓଡ଼ିଶୀ ନାଚିବ; ଓଡ଼ିଶାର କଳା ଓ ସଂସ୍କୃତି** ଏବଂ **ଉପେନ୍ଦ୍ରଭଞ୍ଜଙ୍କ ରସିକହାରାବଳୀ** ସେହି ପ୍ରଦର୍ଶନୀ ଦୋକାନଗୁଡ଼ିକରେ ସ୍ଥାନ ପାଇଥିଲା । ସୁଇସ୍ ମାଟିରେ ଓଡ଼ିଶାର ସ୍ୱାଦ ପାଇବାର ଏ ଥିଲା ଅପୂର୍ବ ସୁଯୋଗ ସୁଇସ୍‌ର ଅଙ୍ଗୁରଖିଆ ସାହେବଙ୍କ ପାଇଁ ଓ ମୋ ପାଇଁ । **ମୁଁ ସେଦିନ ଜଣେ ଦୋକାନଦାର ଭାବେ ୟୁନିସେଫ୍ ଷ୍ଟଲରେ ଗୀତା ଓଡ଼ିଶୀ ନାଚିବ ବହି ବିକିବା ପାଇଁ ଉପସ୍ଥିତ ଥିଲି । ବହିଟି ଶ୍ରୀମତୀ ସଂଯୁକ୍ତା ଏବଂ ପଣ୍ଡିତ ରଘୁନାଥ ପାଣିଗ୍ରାହୀଙ୍କୁ କେନ୍ଦ୍ରକରି ରଚିତ ଏବଂ ଚିତ୍ରିତ । ୟୁନିସେଫ୍ ପ୍ରାୟ ୨୮ ଗୋଟି ଭାଷାରେ ଏହାକୁ ପ୍ରକାଶ କରିଛନ୍ତି । ସେଦିନ ଶହ ଶହ ଜୁରିକ୍‌ବାସୀ ଜଣେ ଓଡ଼ିଶୀ ଚିତ୍ରକରଙ୍କର ସତକ ପାଇଁ ମୋ ଆଡ଼କୁ ବହିଟିମାନ ବଢ଼େଇ ଦେଉଥିଲେ । ମୁଁ ସେଗୁଡ଼ିକରେ ନିଜର ସାକ୍ଷର ଲିପିବଦ୍ଧ କରୁଥିଲି ଏବଂ ଅନୁଭବ କରୁଥିଲି ଜୁରିକ୍ ବାସୀଙ୍କର ଭାରତୀୟ ତଥା ଓଡ଼ିଶୀ ଶ୍ରଦ୍ଧାକୁ ।**

Digitized by srujanika@gmail.com







ନୂଆଦିଲ୍ଲୀର ସୁଇଜରଲ୍ୟାଣ୍ଡ ଦୂତାବାସରେ ଗଙ୍ଗା ଠାରୁ ଗେଞ୍ଜେସ୍ ଚିତ୍ର ପ୍ରଦର୍ଶନୀରେ

ନୂଆଦିଲ୍ଲୀ ରାଷ୍ଟ୍ରୀୟ କଳାମେଳାରେ ସୁନନ୍ଦା ପାଠୀ ଫାଉଣ୍ଡେସନ୍ ପକ୍ଷରୁ ଆୟୋଜିତ ଶିଶୁଚିତ୍ର ପ୍ରଦର୍ଶନୀ ଷ୍ଟଲରେ ବି.ପି. କମ୍ବୋଜ, କେନ୍ଦ୍ରମନ୍ତ୍ରୀ କୁମାରୀ ଶୈଳଜା, ଭବେଶ ଚନ୍ଦ୍ର ସାନ୍ୟାଲ ଓ ରାମହରି ଜେନାଙ୍କ ସହିତ ।

ବାରାଣସୀ ଠାରେ ଏ.ବି.ସି ଗ୍ୟାଲେରୀରେ ଗଙ୍ଗା ଠାରୁ ଗେଞ୍ଜେସ୍ ଚିତ୍ର ପ୍ରଦର୍ଶନୀର ଉଦ୍‌ଘାଟନ ଅବସରରେ ପ୍ରଦୋଷ କୁମାର ମିଶ୍ର, ବେଟିନା ବଏମର୍, ଆନନ୍ଦ କୃଷ୍ଣ, ମଂଜୁଳା ଚତୁର୍ବେଦୀ ଓ ଅଜୟ ସିଂହଙ୍କ ଗହଣରେ ।

Digitized by srujanika@gmail.com



ଗୀତଗୋବିନ୍ଦ (Episode from Gitagovinda) ତୈଳଚିତ୍ର, ୧୮୦ x ୨୪୦ ସେମି. ୧୯୯୫ (Gallery Sang, Seoul ଦ୍ୱାରା ସଂଗୃହୀତ)



ରି ଥିଙ୍କିଙ୍ଗ ଓଡ଼ିଶୀ (Rethinking Odissi in the USA Destiny Lab) ଆକ୍ରିଲିକ୍ ୨୩୨ x ୧୭୨ ସେମି ୨୦୦୮ (ଶିଳ୍ପୀଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ଚନ୍ଦ୍ରଲେଖାଙ୍କୁ ପ୍ରଣତି (Homage to Chandralekha) ଆକ୍ରିଲିକ୍ ୧୬୫ x ୧୫୩ ସେମି ୨୦୦୭
(ୱାସିଙ୍ଗଟନ୍ ଡିସିର ୱିଲିୟମ ଏ ହାସ୍କେଲିନ୍‌ଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ଯୌନ ଉତ୍ତରଣ (Transcending Sexuality) ଆକ୍ରିଲିକ୍ ୧୬୫ x ୧୩୫ ସେମି ୨୦୦୭
(ଫ୍ରାନ୍ସରେ ରହୁଥିବା ସତ୍ୟକାମ ଓ ଦେବସ୍ମିତା ପଟ୍ଟନାୟକଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ପର୍ବତ ପରୀ ଓ କାବ୍ୟଧେନୁ (Mountain Spirits and the Mythical Cow) ତୈଳଚିତ୍ର, ୧୬୮ x ୧୫୩ ସେମି ୧୯୯୬
(ସୂତ୍ର ଡାନ୍‌ସ୍ ଥିଏଟର, କୁଆଲାଲୁମ୍‌ପୁରଦ୍ୱାରା ସଂଗୃହୀତ)

Digitized by srujanika@gmail.com




ଭିଣ୍ଟେଜ୍ ଓଡ଼ିଶୀ (Vintage Odissi) ଆକ୍ରିଲିକ୍, ୧୬୫ x ୧୫୩ ସେମି. ୧୯୯୮
(ଶିଳ୍ପୀଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ମାହାରୀ କନ୍ୟା (Daughter of a Mahari) ଆକ୍ରିଲିକ୍ ,
୯୨ x ୯୨ ସେମି. ୨୦୦୭ (ଶିଳ୍ପୀଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ପଦ୍ମ ପୋଖରୀର ଦୁଇଧାରେ (Across the Pond) ତୈଳଚିତ୍ର ୯୦ x ୯୫ ସେମି ୧୯୯୭ (ଅଜଣା ସଂଗ୍ରହ)
ଏହି ଚିତ୍ରର ଏକ ପ୍ରତିରୂପ ପ୍ରତାପ ଜେନାଙ୍କ ଦ୍ୱାରା ସିରାମିକ୍ ଟାଇଲ୍‌ରେ ନିର୍ମାଣ କରାଯାଇ ଶିଳ୍ପୀଙ୍କ ବଗିଚାରେ ପ୍ରଦର୍ଶିତ ।

Digitized by srujanika@gmail.com



ସ୍ନାନରତା (Bathers) ତୈଳଚିତ୍ର
୧୨୦ x ୯୦ ସେମି ୧୯୯୬ (ଅଜଣା ସଂଗ୍ରହ)

Digitized by srujanika@gmail.com

ବିଜୟାନନ୍ଦ ସିଂହ

## ଚିତ୍ର ଓ ସାହିତ୍ୟକୁ ମୁଁ ସମଭାବରେ ସମ୍ମାନ ଦିଏ ଓ ବ୍ୟବହାର କରେ

**- ଦିନନାଥ ପାଠୀ**

ଡକ୍ଟର ଦିନନାଥ ପାଠୀ ଓଡ଼ିଶାର ସାରସ୍ୱତ ଜଗତକୁ ଯେମିତି ଆଲୋକିତ କରିଛନ୍ତି ସେମିତି ଚିତ୍ର ଜଗତକୁ ରଙ୍ଗ ଓ ରୂପରେ ଶୋଭିତ କରିଛନ୍ତି। ଜାତୀୟ, ଆନ୍ତର୍ଜାତୀୟ କ୍ଷେତ୍ରରେ ସେ ବେଶ୍ ପରିଚିତ। ଉପନ୍ୟାସ, ଆତ୍ମଜୀବନୀ ରଚନାରେ ତାଙ୍କର ମୌଳିକ ପ୍ରତିଭା ବାରି ହୋଇପଡ଼େ। ସେହିପରି ଚିତ୍ର ଅଙ୍କନରେ ସ୍ୱକୀୟ ପ୍ରତିଭାର ସ୍ପର୍ଶ ବେଶ୍ ଉପଲବ୍ଧ। ଆମର ଗୌରବ ଡକ୍ଟର ପାଠୀ କେନ୍ଦ୍ର ଲଳିତକଳା ଏକାଡ଼େମୀର ପ୍ରଶାସନିକ ମୁଖ୍ୟ ହୋଇଥିଲେ। ସେ ମଧ୍ୟ ଦାୟିତ୍ୱବରଣ କରିଥିଲେ ଓଡ଼ିଶା ଲଳିତ କଳା ଏକାଡ଼େମୀର ସଭାପତି ଭାବରେ। ବହୁ ପୁରସ୍କାର ଓ ସମ୍ମାନ ମଣ୍ଡିତ ଏହି ପ୍ରତିଭାସଂପନ୍ନ ଚିତ୍ରଶିଳ୍ପୀ, ସାରସ୍ୱତ ସାଧକ ଡକ୍ଟର ଦିନନାଥ ପାଠୀଙ୍କ ଅନୁଭବ ପୂର୍ଣ୍ଣ ଜୀବନ ସଂପର୍କରେ ସାକ୍ଷାତ-ଆଳାପ କରିଛନ୍ତି: **ଡକ୍ଟର ବିଜୟାନନ୍ଦ ସିଂହ**

ପ୍ରଶ୍ନ - ଆପଣଙ୍କ ସୃଜନଶୀଳ ଜୀବନର ଶୁଭାରମ୍ଭ ଚିତ୍ରରୁ ନା ସାହିତ୍ୟରୁ ?

ଉତ୍ତର - ଚିତ୍ରକୁ ସାହିତ୍ୟଠାରୁ ବା ସାହିତ୍ୟକୁ ଚିତ୍ରଠାରୁ ସାଧାରଣତଃ ଅଲଗା କରି ବିଚାର କରାଯାଉଥିବାରୁ ଏଭଳି ପ୍ରଶ୍ନ ସ୍ୱାଭାବିକ। ଯଦି ସୃଜନଶୀଳତାକୁ ଏକ ଉତ୍ସ ବୋଲି ଧରାଯାଏ ତାହା ଉଭୟରେ ଏକା ସାଙ୍ଗରେ ପ୍ରକାଶ ପାଇବା ସମ୍ଭବ। ଚିତ୍ର ସ୍ୱୟଂ ପଞ୍ଜୀକରଣ ହେବା ସମ୍ଭବ ନୁହେଁ। ଏହା ସାହିତ୍ୟରେ ହିଁ ପ୍ରତିଫଳିତ ହେବାକଥା। ଏହା ହୋଇ ପାରିନାହିଁ ବୋଲି କେଉଁଟାକୁ ଆରମ୍ଭ ବୋଲି ଧରିବା, ତାହା ହିଁ ଅସଲ ସମସ୍ୟା। ପ୍ରକାଶିତ ପ୍ରଥମ କବିତା ବା ପ୍ରଥମ ଗପ ଭଳି ନାଟକର ପରଦା ଚିତ୍ରକୁ କହିବି ନା କାନ୍ଥରେ ଅଙ୍କିତ ବାହାଘର ଚିତ୍ରକୁ ମୋର ପ୍ରଥମ ଚିତ୍ର ବୋଲି କହିବି ? ମୋ ପାଖରେ ତ ସେ ଚିତ୍ର ଏବେ ନାହିଁ। ହଁ ପଞ୍ଜୀକରଣର ଗୁରୁତ୍ୱ ଆପଣ ଉପଲବ୍ଧ କରିପାରୁଥିବେ।

ପ୍ରଶ୍ନ - ଚିତ୍ରକଳା ଓ ସାହିତ୍ୟ ମଧ୍ୟରୁ କେଉଁଥିରେ ଆପଣ ନିଜକୁ ମୁକ୍ତକରି ପ୍ରକାଶ କରିପାରନ୍ତି ?

ଉତ୍ତର - ଏହା ନିଜର ପ୍ରକାଶ-ସାମର୍ଥ୍ୟ ଉପରେ ନିର୍ଭର କରେ। ଚିତ୍ରକଳାର ଏଭଳି କେତେକ ବିଭବ ଅଛି ଯାହା ସାହିତ୍ୟରେ ପ୍ରକାଶ କରିବା ସହଜ ନୁହେଁ। ଧରାଯାଉ ଆଲେଖ୍ୟ ଚିତ୍ରର ଏକ ନିର୍ଦ୍ଦିଷ୍ଟ ଭାବ ମାତ୍ର କେତୋଟି ରେଖାରେ ସମ୍ଭବ, ଯାହା ବର୍ଣ୍ଣନା କରିବା ପାଇଁ ଲେଖାରେ ପୃଷ୍ଠାଏ ବା ଦୁଇ ପୃଷ୍ଠା ଆବଶ୍ୟକ ହୁଏ। ପୁଣି ସାହିତ୍ୟରେ ଯାହା ବିନା ଦ୍ୱିଧାରେ କହିଦେଇ ହୁଏ, ଚିତ୍ର ତାକୁ ସହଜରେ ପ୍ରକାଶ କରିପାରେ ନାହିଁ। ଜଣେ ଭଲ ମଣିଷକୁ ଚିତ୍ରରେ କିଭଳି ଆଙ୍କିହେବ ? ମୁଁ ଏଠି ମୋ ନିଜକଥା କହେ, ନିଜକୁ ପ୍ରକାଶ କରିବା ପାଇଁ ମୁଁ ଚିତ୍ରକୁ ଓ ସାହିତ୍ୟକୁ ସମଭାବରେ ବ୍ୟବହାର କରେ। ମୋ ପାଇଁ ଏ ଦୁହେଁ ଯୁଗମପନ୍ଥା, ପରସ୍ପରର ପରିପୂରକ। ଅଧିକାଂଶ କ୍ଷେତ୍ରରେ ମୁଁ ପ୍ରଥମେ ପ୍ରଚ୍ଛଦ ଚିତ୍ର ଆଙ୍କେ, ତାକୁ ବିସ୍ତାର କରିଦେଲେ ତାହା ଉପନ୍ୟାସଟିଏ ହୋଇଯାଏ। ମୋ ଭିତରେ ଚିତ୍ର ଓ ସାହିତ୍ୟ ଉଭୟେ ସତତ ଆଲୋଡ଼ିତ ହେଇଥାନ୍ତି। ସେମାନେ ପ୍ରକାଶିତ ହେବା ପାଇଁ ଚାହୁଁଥାନ୍ତି ଏବଂ ମୋତେ ସେମାନେ ମାଧ୍ୟମ କରିବସନ୍ତି। କିନ୍ତୁ ଯେଉଁ 'ରେଖା' ଓ 'ବର୍ଣ୍ଣ' ବ୍ୟବହାର କରି ମୁଁ ଚିତ୍ର ଆଙ୍କେ ସେହି 'ରେଖା' ଓ 'ବର୍ଣ୍ଣ' ବ୍ୟବହାର କରି ସାହିତ୍ୟ ମଧ୍ୟ ରଚନା କରେ। ସାହିତ୍ୟ ଭଳି ଚିତ୍ରକଳାରେ ମଧ୍ୟ ହ୍ରସ୍ୱ, ଦୀର୍ଘ ବନାନ ଶୁଦ୍ଧି ଅଶୁଦ୍ଧି ଅଛି କିନ୍ତୁ ମୋ ପାଇଁ ଚିତ୍ରରେ ତାହା ବାଧକତା ସୃଷ୍ଟିକରେ ନାହିଁ ଯେଭଳି ସାହିତ୍ୟରେ

Digitized by srujanika@gmail.com

ଘଟିଥାଏ । ଏଣୁ ମୁଁ ଚିତ୍ରକଳାରେ ବେଶି ସାଧୀନ । ଚିତ୍ରକଳାରେ ଯାହା ତାହା ଆଙ୍କିଦେଇ ହୁଏ, ସାହିତ୍ୟରେ ତାହା ସେଭଳି ସମ୍ଭବ ନୁହେଁ । ଆମ ଓଡ଼ିଆ ସାହିତ୍ୟ ଏବେ ବେଶି ବେଶି ରକ୍ଷଣଶୀଳ ହୋଇପଡୁଛି । ସାହିତ୍ୟିକମାନେ ଅଶ୍ଳୀଳ-ଶ୍ଳୀଳ, ନୀତି ଓ ବିଧି କଥା ବେଶି କହୁଛନ୍ତି । ସାହିତ୍ୟରେ ଯେମିତି କେତେକ ନିଷିଦ୍ଧ-ପ୍ରକାଶ ଅଛି ଚିତ୍ରକଳାରେ ସେମିତି ନାହିଁ । ସେଠି ସବୁ ମୁକ୍ତ ।

ପ୍ରଶ୍ନ - ଆପଣଙ୍କ ବ୍ୟକ୍ତିତ୍ୱ ବର୍ଣ୍ଣିଳ, ଆପଣ ସାହିତ୍ୟରେ ନିଜକୁ ଏତେ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି- କେତେବେଳେ କବିତାରେ, ଗଳ୍ପରେ, ଉପନ୍ୟାସରେ, ତେବେ ଆପଣ ପ୍ରଥମେ କ'ଣ ଲେଖୁଥିଲେ ?

ଉତ୍ତର - **ଆପଣଙ୍କ ପ୍ରଶ୍ନଟି ମୋ ପାଇଁ ଅଡୁଆ । ଆଜି ସୀମିତ ଅର୍ଥରେ 'ଲେଖକ' ଶବ୍ଦଟିକୁ ବ୍ୟବହାର କରାଯାଉଛି । କିନ୍ତୁ ବାସ୍ତବରେ ଲେଖା ହେଉଛି ଚିତ୍ର ଏବଂ ଯେଉଁମାନେ ଚିତ୍ର ରଚନା କରୁଥିଲେ ସେମାନଙ୍କୁ ଲେଖକ କୁହାଯାଉଥିଲା ।** ପୁଣି ଲେଖକ ବା ଲିଖନକାରମାନେ ଲେଖା ସାହାଯ୍ୟରେ ସାହିତ୍ୟ ମଧ୍ୟ ସୃଷ୍ଟି କରୁଥିଲେ । ଆପଣ ମୋର ଯେତିକି ବହି ପଢ଼ିଛନ୍ତି, ସେତିକି ଚିତ୍ର ଦେଖିନାହାନ୍ତି । ଚିତ୍ରପାଠର ଏକ ଅଲଗା ବିଧି ଅଛି । ସେତକ ଆୟତ୍ତ କରିନଥିଲେ, ଜଣେ ଚିତ୍ରଶିଳ୍ପୀର ସର୍ଜନାକୁ ଆକଳନ କରିବା ସମ୍ଭବ ନୁହେଁ । ଗୋଟିଏ ଗୋଟିଏ ପ୍ରସିଦ୍ଧ ଚିତ୍ରକୁ ନେଇ ଗୋଟିଏ ଗୋଟିଏ ଗ୍ରନ୍ଥ ସମ୍ଭବ ହୋଇପାରୁଛି । ଓଡ଼ିଆ ସାହିତ୍ୟ କେତୋଟି ଓଡ଼ିଆ ଶିଳ୍ପୀଙ୍କ ଚିତ୍ରକୁ ପ୍ରତିଫଳନ କରିପାରିଛି ? ମୁଁ ପ୍ରଚ୍ଛଦ ଚିତ୍ର କଥା କହୁନାହିଁ, ମୁଁ ବିଦ୍ୟାଧରଙ୍କ 'ପଲ୍ଲୀବଧୂ' ବା ଶରତଚନ୍ଦ୍ର ଦେବଙ୍କ 'ଶ୍ଳୋକଛନ୍ଦ' କଥା କହୁଛି । ମୁଁ 'ଶ୍ଳୋକଛନ୍ଦ' ଚିତ୍ରକୁ ଆଧାର କରି ଶ୍ଳୋକଛନ୍ଦ ଉପନ୍ୟାସଟିଏ ରଚନା କରିଛି । ମୁଁ ଜାଣେନା 'ପଲ୍ଲୀବଧୂ'କୁ ନେଇ ସାହିତ୍ୟ ରଚନା ହେଇଛି କି ନା ? ଅବଶ୍ୟ ଏହା ଅବଶ୍ୟମ୍ଭାବୀ ଯେ ଚିତ୍ରକଳା ସାହିତ୍ୟ ମାଧ୍ୟମରେ ହିଁ ଅବବୋଧ ହେଇପାରିବ । ମୋର ଅନେକ ଚିତ୍ର ଅଛି ସେଗୁଡ଼ିକୁ ଆଧାର କରି ସାହିତ୍ୟ ସୃଷ୍ଟି ହେଇପାରିବ । ସେହି ଚିତ୍ରଗୁଡ଼ିକ ହେଲା 'ଫସଲ ଅମଳର ଗୀତ', 'ଯମଜ', 'ପଦ୍ମବନ', 'ଦୋହଦ' ପ୍ରଭୃତି । ସାହିତ୍ୟ ଚିତ୍ରକଳାର ମାତ୍ର ଗୋଟିଏ ଅଂଶକୁ ବିସ୍ତାର କରିଥାଏ ଏବଂ ବହୁଅଂଶ ଅନାଲୋଚିତ ରହିଯାଏ । ଚିତ୍ରକଳାର ଆକର୍ଷଣ ଏବଂ ତା'ର ପରିଭାଷା ସାହିତ୍ୟଠାରୁ ଭିନ୍ନ । **ପଠନ କର୍ମ ଯଦି ରମଣ ସହିତ ତୁଳନୀୟ ତା ହେଲେ ଚିତ୍ର ସହିତ ଅଭିସାରର ଅବଧି ଖୁବ୍ ଲମ୍ବା ଓ ପ୍ରତ୍ୟେକ ଉପଲବ୍ଧିର ଆନନ୍ଦ ଚିତ୍ର-ପାଠକକୁ ଆନନ୍ଦାଲୋକରେ ଉଦ୍‌ଭାସିତ କରିଦିଏ । ଯାହାକୁ ବାରମ୍ବାର ଉପଭୋଗ କରିବାକୁ ଇଚ୍ଛାହୁଏ ତାହା ହିଁ ପ୍ରକୃଷ୍ଟ ସାହିତ୍ୟ ଓ ଚିତ୍ର ।** ମୁଁ ସୀକାର କରୁଛି ଏ ଅବଧି ଏଭଳି ଚିତ୍ରଖଣ୍ଡେ ବା ସାହିତ୍ୟଟିଏ ମୁଁ ସୃଷ୍ଟି କରିପାରିନି ବୋଧହୁଏ । ମୁଁ କୋଣାର୍କ, ଗୀତଗୋବିନ୍ଦ ଓ ଭାଗବତ ପରିପ୍ରେକ୍ଷୀରେ ଏ କଥା କହୁଛି ।

ପ୍ରଶ୍ନ- ଆପଣଙ୍କ ପ୍ରଥମ ଲେଖାଟି କ'ଣ ? ଏବଂ କେଉଁ ପ୍ରଥମ ଲେଖାଟି ଆପଣଙ୍କୁ ସାହିତ୍ୟ ସ୍ରଷ୍ଟାର ସୀକୃତି ହେଇଥିଲା ?

ଉତ୍ତର- ସୀକୃତିର ପରିମାପକ କ'ଣ ହୋଇପାରେ ? କୁହାଯାଇଛି ପାଠକୀୟ ସୀକୃତି, ଆନୁଷ୍ଠାନିକ ସୀକୃତି । ତା'ରି ଭିତରେ ପୁରସ୍କାର, ଉପାୟନ, ସମ୍ବର୍ଦ୍ଧନା ମଧ୍ୟ ଅନ୍ତର୍ଭୁକ୍ତ । ପୁଣି ପ୍ରଶ୍ନହେବ ପାଠକ କିଏ ? କେଉଁ ଶ୍ରେଣୀର ? ସମ୍ବେଦନଶୀଳ ନା ତୀର୍ଯ୍ୟକ ? ଏମିତି କେତେକଥା ନେଇ ସୀକୃତି । ୧୯୬୭ରେ ପ୍ରକାଶିତ ମୋର ଚିତ୍ର -ପ୍ରବନ୍ଧ ବହି ଚିୟତେଇତି ପାଠକୀୟ

Digitized by srujanika@gmail.com

ସ୍ୱୀକୃତି ପାଇଥିଲା । ୧୯୯୦ରେ ପ୍ରକାଶିତ ଆତ୍ମଜୀବନୀ **ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ** ମଧ୍ୟ ସ୍ୱୀକୃତି ପାଇଛି । ତା ଆଗରୁ ୧୯୮୩ରେ ପ୍ରକାଶିତ ଭ୍ରମଣକାହାଣୀ **ନୀଳହ୍ରଦର ଚିତ୍ରକର** ପାଠକ ମହଲରେ ବେଶ୍ ଆଦୃତ ହୋଇଛି । ମୁଁ କୋଡ଼ିଏରୁ ଊର୍ଦ୍ଧ୍ୱ ଓଡ଼ିଆ ବହି ଲେଖିଲିଣି ଓ ପ୍ରକାଶ କଲିଣି । ମୋ ପିଠିରେ ମରା ହୋଇଥିବା ଚିତ୍ରଶିଳ୍ପୀ ମୋହରକୁ ଆଳକରି କେତେକ ବଡ଼ପଣ୍ଡା ମୋର ସାହିତ୍ୟିକ ଅବଦାନକୁ ନ୍ୟୂନ କରିବାକୁ ଚେଷ୍ଟା କରୁଛନ୍ତି । ଆପଣ ମୋତେ ସାହିତ୍ୟିକ ବୋଲି ସ୍ୱୀକାର କରୁଥିବାରୁ ମୁଁ ଆନନ୍ଦିତ ଓ ବିସ୍ମିତ ମଧ୍ୟ ।

ପ୍ରଶ୍ନ- ଓଡ଼ିଆ ସାହିତ୍ୟରେ ଉପନ୍ୟାସ କମି କମି ଆସୁଥିଲାବେଳେ, ମାତ୍ର ପାଞ୍ଚବର୍ଷ ବ୍ୟବଧାନରେ ଚାରୋଟି ଅନବଦ୍ୟ ଉପନ୍ୟାସ ଓଡ଼ିଆ ସାହିତ୍ୟକୁ ପ୍ରଦାନ କରିଛନ୍ତି । ଏପରି ରଚନା କରିବାକୁ ଆପଣ ପ୍ରେରଣା କେଉଁଠାରୁ ପାଇଲେ ?

ଉତ୍ତର- **ଗୋଟିଏ ଶବ୍ଦରେ ଉତ୍ତର ହେବ 'ଚିତ୍ର'ରୁ । ମୁଁ ୧୯୯୮ରେ ଉପନ୍ୟାସ ଲେଖା ଆରମ୍ଭ କରି ୨୦୧୦ ମସିହା ସୁଦ୍ଧା ସାତୋଟି ଉପନ୍ୟାସ, ଚାରୋଟି ଜୀବନୀ ଗ୍ରନ୍ଥ ଯଥା ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ, ପୁଞ୍ଜିକୟାଁର ଫକୀର, ଚିଲିକା ପାଣିରେ ଛାଇ, ରୂପଜୀବୀର ଡାଏରୀ,** ତିନୋଟି କବିତା ସଂକଳନ ଓ ଆଠଟି ପ୍ରବନ୍ଧ ସଂକଳନ ପ୍ରକାଶ କରିଛି । ହାରାହାରି ବର୍ଷକୁ ଖଣ୍ଡିଏ, ଦି'ଖଣ୍ଡି ବହି । ତା ସହିତ ଅସଂଖ୍ୟ ଚିତ୍ର, ଚିତ୍ର ପ୍ରଦର୍ଶନୀ ଏବଂ ଆଠ ଦଶଟି ଇଂରାଜୀ ବହି ମଧ୍ୟ ପ୍ରକାଶ ପାଇଛି । ଜଣେ ଶିଳ୍ପୀ, ଲେଖକ ଓ ଗବେଷକ ଭାବେ ଏସବୁ ସର୍ଜନାତ୍ମକ କାମରେ ମନୋନିବେଶ କରିବା ମୋ ଧର୍ମ । 'କୁମ୍ଭାରଘର ବୋହୂ ମାଟିକି ନଗଲେ ଝାଟିକି ଯାଉ' ନ୍ୟାୟରେ ମୁଁ ଚିତ୍ରକରେ ନ ହେଲେ ବହିଲେଖେ । ଗୋଟିଏ ବହିର ସଫଳତା ବା ଅସଫଳତା ଅନ୍ୟ ଗୋଟିଏ ବହି ଲେଖିବା ପାଇଁ ପ୍ରେରଣା ଦିଏ ।

ପ୍ରଶ୍ନ- 'ସାୟୋନାରା'ର କାନ୍‌ଭାସ୍ ଖୁବ୍ ବିସ୍ତୃତ । ଏପରି ଉପନ୍ୟାସ ଓଡ଼ିଆ ସାହିତ୍ୟରେ ଅନନ୍ୟ-ଏ ସଂପର୍କରେ ଆପଣଙ୍କ ମତ ?

ଉତ୍ତର- ଆପଣ ଓଡ଼ିଆ ସାହିତ୍ୟରେ ଅଧ୍ୟାପନା କରନ୍ତି ଓ ଜଣେ ସମାଲୋଚକର ଭୂମିକାରେ ରହି ଆପଣ ଯାହା ଅଭିମତ ଦେଲେ, ମୋ ପାଇଁ ତାହା ଉତ୍ସାହପ୍ରଦ । କିନ୍ତୁ ନିଜ ସଂପର୍କରେ ସେଭଳି ଉଦାତ୍ତ ଉଚ୍ଚାରଣ କଲେ ନିଜକୁ ଅଡୁଆ ଲାଗିପାରେ । ସାୟୋନାରା ଓଡ଼ିଆ ଉପନ୍ୟାସର ତଥାକଥିତ ପଞ୍ଜରଠାରୁ ଭିନ୍ନ । ଏହା ଦୁଇଟି ଦେଶ, ଜାପାନ ଓ ଭାରତ (ତହିଁରେ ପୁଣି ଓଡ଼ିଶା) ଦୁଇଟି ଦର୍ଶନ (ତଥାଗତ ବୁଦ୍ଧ ଓ ସନ୍ଥ ଅରକ୍ଷିତ), ଦୁଇଟି ଚରିତ୍ର(କେତକୀ ଓ ନରହିତୋକୁ) ଗୋଟିଏ ରଜ୍ଜୁରେ ବାନ୍ଧି ଦେଇଛି । ହୁଏତ ସେମାନଙ୍କ ଅନ୍ୱେଷା, ଜିଜ୍ଞାସା ଓ ଉପଲବ୍ଧି ଏକାଭଳି । ଏତକ ହୃଦୟଙ୍ଗମ କରିବାପାଇଁ ଏତେ କରି ଭ୍ରମଣ, ଏତେ ଦର୍ଶନ, ଏତେ ଅନୁଭବ । ଏ ଅନୁଭବର ଆଧାର ହେଉଛି କଳା ଓ ଜୀବନ । କାରୁଣ୍ୟ ହେଉଛି ଏହି କଥାର ଉପଜୀବ୍ୟ । ଏ ଉପନ୍ୟାସଟିର ଆରମ୍ଭ ଆମ ଗାଁ ଦିଗପହଣ୍ଡିରୁ, ବିସ୍ତୃତ ହୋଇଛି ଜାପାନ ଯାଏଁ ଏବଂ ଶେଷ ହୋଇଛି ଜୀବନ ଦର୍ଶନରେ । ଏଥିରେ ମୋ ଚୀନ ଓ ଜାପାନ ଭ୍ରମଣର ସଦ୍ୟ ଅନୁଭବ ଉପନ୍ୟାସଟିକୁ ସରସ କରିପାରିଛି । ଏହି ଉପନ୍ୟାସର କଥନଭଙ୍ଗୀ ଓ ଭାଷାର ଚମତ୍କାରିତା ପାଠକକୁ ତଲ୍ଲୀନ କରି ରଖେ । ଚିତ୍ରକଳାର ଏତେ ସବୁ ଗହନକଥା ବା କହିବାକୁ ଗଲେ ଚିତ୍ରାନୁଭାବ

Digitized by srujanika@gmail.com

ଆଗରୁ ଓଡ଼ିଆ ଉପନ୍ୟାସରେ ସ୍ଥାନ ପାଇ ନଥିଲା । ଆଉ ଅଧିକ କହିଲେ ଆସ୍ପର୍ଦ୍ଧା କରୁଛି ବୋଲି ମନେହେବ ।

ପ୍ରଶ୍ନ- 'ପୁନର୍ନବା' ରଚନାର ପୃଷ୍ଠଭୂମି କ'ଣ ?

ଉତ୍ତର- ମୁଁ ଜବାହରଲାଲ ନେହୁରୁ ଫେଲୋସିପ୍ କାମରେ ପାରଳାଖେମୁଣ୍ଡି ଯାଇଥାଏ । ସେଠି ଠାକୁରଙ୍କ ମୂର୍ତ୍ତିଚିତ୍ରଣ ବା ନବକଳେବର ପଦ୍ଧତି ପଞ୍ଜିକରଣ କରିବାର ଥାଏ । ଚିତ୍ରକର ପ୍ରକାଶ ମହାପାତ୍ର ନୀଳାମ୍ବର ରଥଙ୍କ ଘରେ ପୂଜା ପାଉଥିବା କାଠ ମୂର୍ତ୍ତି- ରାଧାଙ୍କୁ ନବୀକରଣ କରିବାପାଇଁ ଯେତେବେଳେ ପୁରୁଣା ରଙ୍ଗ ଓ କନା ଉତାରି ଦେଲେ ରାଧା ଭାରି ହୀନିମାନି ଦେଖାଗଲେ । ଜଣେ ଶିଳ୍ପୀଭାବରେ ମୂର୍ତ୍ତିମାନଙ୍କ ନଗ୍ନରୂପ ମୁଁ ବହୁବାର ଦେଖିଛି । କିନ୍ତୁ ସେଦିନ କାହିଁକି ମୋ ମନରେ ଭାବାନ୍ତର ସୃଷ୍ଟିହେଲା । ଏହି ଦୃଶ୍ୟଟି ଜୀବନ-ମରଣ ତତ୍ତ୍ୱ ସହିତ ଯୋଡ଼ି ହେଇଗଲା । ଆଉ ମୋ ମନରେ ଉପନ୍ୟାସଟିଏ ଉଙ୍କି ମାରିଲା, ଏହାହିଁ ପୁନର୍ନବାର ପୃଷ୍ଠଭୂମି । ଉପନ୍ୟାସର ଉତ୍ସ ରାଧାଙ୍କ ନଗ୍ନମୂର୍ତ୍ତିଠାରେ କେବଳ ଅଟକି ନଥିଲା, ତାହା ସହିତ ଯୋଡ଼ି ହେଇଯାଇଥିଲା କଳାକୁଞ୍ଜର କାଠ, ନଡ଼ା ଓ ମାଟିରେ ତିଆରି ପ୍ରତିମା । ପୁଣି ପଥରରେ ଖୋଦିତ ବିଗ୍ରହ । ଗୋଟିଏ ବିଗ୍ରହର ଜନ୍ମ ବା ଗଢ଼ଣ ଏବଂ ମୃତ୍ୟୁ ବା ଅବକ୍ଷୟ ସହିତ ଅତି ଅଦ୍ଭୁତ ଭାବେ ମଣିଷ ଚରିତ୍ରର ଅଭ୍ୟୁଦୟ ଓ ବିକାଶ ମଧ୍ୟ ସଂପୃକ୍ତ ହୋଇପଡ଼ିଥିଲା । ମଣିଷ ଓ ମୂର୍ତ୍ତି ଏକାକାର ହେଇଯାଇ ସାରଳା ଦାସଙ୍କ ମହାଭାରତର ଶାନ୍ତନୁଙ୍କ ପିତୁଳି ରମଣ ଉପାଖ୍ୟାନ ସହିତ ସଂଯୁକ୍ତ ହେଇ ଯାଇଥିଲେ । **ଚିତ୍ରକର ଜୀବନରେ ମୂର୍ତ୍ତି ନିର୍ମାଣ, ତାର ନବୀକରଣ ଓ ବିସର୍ଜନ ଏକ ସାଧାରଣ ଘଟଣା ହେଇଥିଲେ ହେଁ, ଓଡ଼ିଆ ଜାତିର ଜଣେ ବିଶିଷ୍ଟ କବି ସାରଳାଙ୍କ କାବ୍ୟର ସୁଗନ୍ଧରେ ଉପନ୍ୟାସର ପୃଷ୍ଠଭୂମି ରସାଣିତ ହେଇ କଥାବସ୍ତୁରେ ଐତିହ୍ୟ, ଇତିହାସ ଓ ଶିଳ୍ପପ୍ରସିଦ୍ଧି ଭରିହେଇ ଯାଇଥିଲା ।** ମୁଁ ଅନୁଭବର ଏହି ସାମୟିକ ସ୍ଫୁରଣକୁ ପାରଳାଖେମୁଣ୍ଡି ତଥା ଗଞ୍ଜାମ ଓ ଓଡ଼ିଶାର ଉପାନ୍ତ ଅଞ୍ଚଳ ଶ୍ରୀକାକୁଲମ୍ ଜିଲ୍ଲାରେ ବିଛେଇ ଦେଇଥିଲି । ସେହି ଅଞ୍ଚଳର ମଠ, ମନ୍ଦିର, ମୂର୍ତ୍ତି, ଭିତ୍ତିଚିତ୍ର ଏବଂ ଗୀତଗୋବିନ୍ଦ ପରମ୍ପରା ମୋ ଉପନ୍ୟାସରେ ଜୀବନ୍ତ ହେଇଗଲେ । **ଥରେ ଆଲୋକର ସନ୍ଧାନଟିଏ ପାଇଗଲେ ଲେଖକର ଦମ୍ଭ ବଢ଼ିଯାଏ ଏବଂ ତା'ର କଳ୍ପନା ବିଳାସ କାହିଁ କେଉଁ ଅଗମ୍ୟ ବନାନୀ, ରାଜ୍ୟ ଓ ପ୍ରାନ୍ତକୁ ବ୍ୟାପିଯାଏ, ସିଏ ନିଜେ ସୁଦ୍ଧା କଳନା କରିପାରେ ନାହିଁ ।**

**ପୁନର୍ନବା** ଉପନ୍ୟାସ ଲେଖାହେଉଥିବା ବେଳେ ଆଉ ଗୋଟିଏ ଦୁଃଖଦ ଘଟଣା ଘଟିଯାଉଥାଏ ମୋର ଆକଳନ ଓ ସାମର୍ଥ୍ୟ ବାହାରେ । ମୋର ପତ୍ନୀ ଅବନ୍ତୀ କ୍ୟାନ୍‌ସର୍ ଭଳି ଦୁରାରୋଗ୍ୟ ବ୍ୟାଧିରେ ଶଢୁଥାନ୍ତି । ତାଙ୍କ ମୃତ୍ୟୁ ଆସନ୍ନ ହେଇ ପଡୁଥାଏ । ମୁଁ ମୋର ସମସ୍ତ ଦୁଃଖ, କ୍ଷୋଭ, ଯନ୍ତ୍ରଣା ଓ ଅସହାୟତାକୁ ସାହିତ୍ୟରେ ପରିଣତ କରିଦେଇ ବାସ୍ତବତାର ନିଛକ ସମ୍ବେଦନାରୁ ମୁକୁଳି ଯିବାପାଇଁ ଚାହୁଁଥିଲି । ସେହି ଘଟଣା ବା ଅଘଟଣର କଥନିକା 'ପୁନର୍ନବା'ରେ ପ୍ରତିଫଳିତ । ଏଣୁ 'ପୁନର୍ନବା'କୁ ମଠ ସଂସ୍କୃତି ବା ବୈଷ୍ଣବ ଧର୍ମର ଏକ ଆଖ୍ୟାୟିକା କହିଲେ ନ୍ୟାୟ ସଙ୍ଗତ ହେବନାହିଁ । ପୁନର୍ନବା ଜୀବନ ଓ କଳାର ଅଭ୍ୟୁଦୟ ଓ ରୂପାନ୍ତରର କାହାଣୀ । 'ପୁନର୍ନବାର' ନିର୍ଯ୍ୟାସକୁ ଗୋଟିଏ ବାକ୍ୟରେ ଯଦି ପ୍ରକାଶ କରିବାକୁ କୁହାଯାଏ, ମୁଁ କହିବି, ସତରେ ପିତୁଳାର କ'ଣ ଜୀବନ ଅଛି ? ସିଏ କ'ଣ ମଣିଷଙ୍କ ଭଳି କଥା କହେ ?

Digitized by srujanika@gmail.com

ପ୍ରଶ୍ନ- 'ଶ୍ଳୋକଛନ୍ଦ' ଓ 'ଗଙ୍ଗାବତରଣ' ମଧ୍ୟରେ କାରୁଣ୍ୟର ଯେଉଁ ଅନ୍ତଃସଲୀଳ ଫଲ୍‌ଗୁଟି ପ୍ରବାହିତ ତାହା ଏହି ଦୁଃଖ ଓ ବେଦନା ସ୍ରଷ୍ଟାମାନସର ନା ଆଉ କାହାର ?

ଉତ୍ତର- **ଶ୍ଳୋକଛନ୍ଦ ଓ ଗଙ୍ଗାବତରଣ** ଦୁଇଟି ଚିତ୍ରୋପନ୍ୟାସର ପୃଷ୍ଠଭୂମି ସମ୍ପୂର୍ଣ୍ଣ ଅଲଗା । ଯଦିଓ 'ଶ୍ଳୋକଛନ୍ଦ'ର ଆଦ୍ୟ ସମ୍ବେଦନା ଦୁଃଖ ଓ ବିଷାଦ, 'ଗଙ୍ଗାବତରଣ' କିନ୍ତୁ ଅବତରଣ ଓ ଉତ୍ତରଣର କାବ୍ୟିକ ପ୍ରକାଶ । ଦୁଇଟିଯାକ ଉପନ୍ୟାସର ଆଧାର ହେଲା ଚିତ୍ର । ପ୍ରଥମ ଉପନ୍ୟାସରେ ପରୋକ୍ଷ ନାୟକ ହେଲେ ଚିକିଟି ରାଜବଂଶର ରାଜଶିଳ୍ପୀ ଶରତଚନ୍ଦ୍ର ଦେବ ଓ ଦ୍ୱିତୀୟଟିର ସୁଇସ୍‌ଶିଳ୍ପୀ ଆଲିସ୍ ବୋନ୍‌ର । ପ୍ରତ୍ୟକ୍ଷ ନାୟକ ହେଲେ ସେମାନଙ୍କର ରଚିତ **ଶ୍ଳୋକଛନ୍ଦ**ରେ ମହାକବି ବାଲ୍ମୀକିଙ୍କ ମୁଖ ନିସୃତ ଆଦ୍ୟଶ୍ଳୋକ ଯାହା ରାମାୟଣ ଭଳି ମହାକାବ୍ୟକୁ ପୁଷ୍ଟ କରିଥିଲା ଓ **ଗଙ୍ଗାବତରଣ**ରେ ସୃଷ୍ଟି ସ୍ଥିତି ଓ ପ୍ରଳୟ ଚିତ୍ରର ଦର୍ଶନ ଉପନ୍ୟାସକୁ ବାଟ କଢ଼େଇ ନେଇଥିଲା । ଉଭୟ ଉପନ୍ୟାସର ଅନ୍ତଃ ଫୁଲ୍‌ଗୁ ହେଲା ସୃଜନମାନସ । ମୁଁ ଜଣେ ଚିତ୍ରଶିଳ୍ପୀ ଭାବେ ଉଭୟ ଚିତ୍ର ତଥା ପରମ୍ପରାର ଦାୟାଦ । ବାସ୍ତବରେ ଦେଖିବାକୁ ଗଲେ ଚିତ୍ରଶିଳ୍ପୀ ଶରତଚନ୍ଦ୍ର ଯିଏ ଉପନ୍ୟାସରେ ପ୍ରଥମରୁ ଢର୍ଚ୍ଚ ବୋଲି ଅଭିହିତ ହେଇଛନ୍ତି, ତାଙ୍କର ମୁଁ ଶିଷ୍ୟ ଏବଂ ଏଲିସ୍‌ଙ୍କ ବା ଉପନ୍ୟାସର ଏଲିସ୍ ମାତାଙ୍କ ମୃତ୍ୟୁ ପରେ ବାରାଣସୀରେ ତାଙ୍କ ସ୍ମୃତିରେ ଯେଉଁ ଅନୁଷ୍ଠାନଟି ଗଢ଼ିଉଠିଛି ମୁଁ ତାର ନିର୍ଦ୍ଦେଶକ । ଉପନ୍ୟାସର ଭାଷାରେ **ଶ୍ଳୋକଛନ୍ଦ**ର ଉତ୍ସ ଖଲ୍ଲିକୋଟ ରାଜପ୍ରାସାଦ ନୁହେଁ । ଏଭଳିକି ନିର୍ମଳଝରର ବିମଳ ସ୍ରୋତ ବି ନୁହେଁ । ସେଥିରେ ଥେମସ୍ ନଦୀର କୁନି କୁନି ଲହଡ଼ି, ପ୍ରଶାନ୍ତ ମହାସାଗରର ମହା ଉର୍ମିମାଳାର ଘନଘୋର ଉତ୍ତାଳ ତରଙ୍ଗ, ଭୂମଧ୍ୟସାଗରର କାବ୍ୟିକ ଚଉପାସର ଐତିହ୍ୟ, ଲୋହିତ ସାଗରର ବିସର୍ଜିତ ଲୋତକ ଓ ଶେଷରେ ଚିକିଟି ମାଟିର ମହକ ଓ ରାଧାପ୍ରେମ ଲୀଳାର ଗହ ଗହ ସଙ୍ଗୀତ ଭରିରହିଛି । ଏହି ଉପନ୍ୟାସରେ କେବଳ ଶରତଚନ୍ଦ୍ର ହିଁ ବାସ୍ତବ । ରୂପକାର ପାଖରେ, ବର୍ଣ୍ଣକାର ପାଖରେ କଳ୍ପନାହିଁ ସତ୍ୟ, ବାସ୍ତବତା ନୁହେଁ । ବାସ୍ତବତାରୁ ଉଦ୍ଭବ କଳ୍ପନା, ରୂପାନ୍ତରିତ ସତ୍ୟ ।'(ପୃ.-୧୦)

ଗଙ୍ଗାବତରଣ ଚରିତ-ଉପନ୍ୟାସ ନୁହେଁ, ଏହା ଚିତ୍ର ଉପନ୍ୟାସ । ଏହା ଅବତରଣ ଓ ଉତ୍ତରଣ ବା ଆଲୋକପ୍ରାପ୍ତିର ଆଖ୍ୟାୟିକା । ବାରାଣସୀ ସହରର ଇତିହାସରେ ଘଟିଯାଇଥିବା ବାସ୍ତବ କେତେକ ଘଟଣାବଳୀର ପୁନଃ ମୂଲ୍ୟାୟନ, ପୁନଃ ଅବଲୋକନ କଳା ଓ ଦର୍ଶନର ପୃଷ୍ଠଭୂମିରେ । କାହିଁକି ବା କିପରି ଯୁଗ ଯୁଗ ଧରି ଗଙ୍ଗା ତଥାଗତ ବୁଦ୍ଧଙ୍କ ଠାରୁ ଆରମ୍ଭକରି ଆଲିସ୍‌ଙ୍କ ପର୍ଯ୍ୟନ୍ତ ବା ସେଠାରୁ ପୁଣି ବିସ୍ତାରିତ ହୋଇ ମୋ ପର୍ଯ୍ୟନ୍ତ ଆର୍ତ୍ତ, ଜିଜ୍ଞାସୁ ବା ଜ୍ଞାନ ପ୍ରବୁଦ୍ଧ ଆଲୋକିତ ଆତ୍ମାର ଆଶ୍ରୟସ୍ଥଳ ପାଲଟିଯାଇଛି ? ଗଙ୍ଗାନଦୀକୁ ବାଦ୍‌ଦେଇ ଗଙ୍ଗାବତରଣର ପରିକଳ୍ପନା ସମ୍ଭବ ନୁହେଁ । **ଗଙ୍ଗାନଦୀ ସୃଜନର ଓ ସାଂସ୍କୃତିକ ଚେତନାର ଏକ ଚିରପ୍ରବାହିତ ବିମଳଧାରା । ଗଙ୍ଗାବତରଣରେ ଚିତ୍ରକୁ ସମସ୍ତ ଦର୍ଶନଠାରୁ ମଧ୍ୟ ଏକ ମହତ୍ତର ଭୂମିରେ ଅବସ୍ଥାପିତ କରାଯାଇଛି । ତଥାଗତ ବୁଦ୍ଧଙ୍କ ଦର୍ଶନ ଚିତ୍ରର ଅନ୍ତର୍ନିହିତ ଦର୍ଶନ ବା ଆତ୍ମଉପଲବ୍ଧି ଅପେକ୍ଷା ବଡ଼ନୁହେଁ, ଏକଥା ଦମ୍ଭର ସହିତ କୁହାଯାଇଛି ।**

ଦୁଇଟିଯାକ ଉପନ୍ୟାସରେ ବେଦନାର ସ୍ୱର ଔପନ୍ୟାସିକର । ପ୍ରଥମ ଉପନ୍ୟାସରେ ଏହା 'ସର୍ଜନ ଯନ୍ତ୍ରଣା' ଭାବେ ଏବଂ ଦ୍ୱିତୀୟଟିରେ 'ଦର୍ଶନ'ର ନବଉନ୍ମେଷଭାବେ ପ୍ରକାଶିତ। ଏହି ଉପନ୍ୟାସ ଦୁଇଟିକୁ ପାଠକରିବା ଆଗରୁ ବା ପରେ ଶରତଚନ୍ଦ୍ରଙ୍କର

Digitized by srujanika@gmail.com

ଚିତ୍ର, ଆଲିସ୍‌ଙ୍କ ଚିତ୍ର ତଥା ଚୈନୀୟ ଚିତ୍ରକୁ କେବଳ ଦେଖିବା ଆବଶ୍ୟକ ହେବନି ଗଭୀର ଭାବେ ଅନୁଶୀଳନ କରିବାକୁ ହେବ । ଚିତ୍ରମନସ୍କ ନହେଲେ ଅବବୋଧ ଅସଂପୂର୍ଣ୍ଣ ରହିଯିବ ।

ପ୍ରଶ୍ନ- ଓଡ଼ିଆ ଉପନ୍ୟାସ ଧାରାରେ ଆପଣଙ୍କ ଉପନ୍ୟାସ ବ୍ୟତିକ୍ରମ ବୋଲି କୁହାଯାଉଛି ସେ ସଂପର୍କରେ ଆପଣ କ'ଣ କହିବେ ?

ଉତ୍ତର- **ଓଡ଼ିଆ ଉପନ୍ୟାସର ଧାରା କହିଲେ ଶହେ ଦେଢ଼ଶହ ବର୍ଷର ପରୀକ୍ଷା ନିରୀକ୍ଷା । ଓଡ଼ିଆ ସାହିତ୍ୟର ଦଶ ପନ୍ଦର ଜଣ ଜ୍ୟୋତିଷ୍ମନ୍ତ ଏହି ଧାରାକୁ ପ୍ରତିଷ୍ଠିତ କରିଛନ୍ତି ଏବଂ ଦଶ ପନ୍ଦର ଜଣ ସମାଲୋଚକ ଏହି ଧାରାକୁ ଆଧାର କରି ଗୋଟିଏ ବ୍ୟାକରଣ ରଚନା କରିଦେଇଛନ୍ତି । କିନ୍ତୁ ସେହି ସମାଲୋଚକମାନଙ୍କ ପ୍ରୀତିଭାଜନ ହେବାପାଇଁ ଯେ ତାଙ୍କ ନିର୍ଦ୍ଧାରିତ ବ୍ୟାକରଣ ବହିଟିକୁ ବାରମ୍ବାର ଅନୁଶୀଳନ କରିବାକୁ ପଡ଼ିବ ଏମିତି କିଛି ନିୟମ ନାହିଁ ।** ଜଣେ ଲେଖକର ପୁଞ୍ଜି ହେଲା ତା'ର କଳ୍ପନା ଓ ତା'ର ଭାଷା । ପାଠକକୁ ଆବିଷ୍ଟ କରି ରଖିବା ଏବଂ ନୂତନ ଚିନ୍ତା ଓ ଦିଗ୍‌ଦର୍ଶନରେ ପାଠକୀୟ ସତ୍ତାକୁ ପ୍ରାଣବନ୍ତ କରିବାର ଶକ୍ତି । ଧାରାକୁ ପ୍ଲାବିତ କରିବାର ମୂଳହେଲା ଲେଖକୀୟ-ଅନୁଭବ । ତା'ର ଅନୁଭବ ଯେତେ ଆତ୍ମିକ, ଗଭୀର ଓ ବିସ୍ତୀର୍ଣ୍ଣ ହେବ ତା'ର ଲେଖା ସେତେ ନବୋନ୍ମେଷୀ ହେବ । ଗୋପୀନାଥ ମହାନ୍ତିଙ୍କ ତୀଖ ପାହାଡ଼ରେ ଚଢ଼ିବା ଉଦ୍ଦାମତା ଆଉ କେତେଜଣ ଓଡ଼ିଆ ଲେଖକଙ୍କର ଅଛି ଯେ ସେମାନେ ଓଡ଼ିଆ ଉପନ୍ୟାସରେ ନୂତନଧାରା ସୃଷ୍ଟି କରିପାରିବେ ବା ସୁରେନ୍ଦ୍ର ମହାନ୍ତିଙ୍କ ଇତିହାସ-ତଲ୍ଲୀନତା ଓ ଚରିତ୍ର-ବିଶ୍ଳେଷଣର ଅସମ୍ଭବ କ୍ଷମତାକୁ ଆପଣେଇ ପାରିଲେ ସିନା ସୁରେନ୍ଦ୍ର-ଧାରା ପ୍ରବର୍ତ୍ତିତ ଓ ପ୍ରସାରିତ ହେଲା ବୋଲି କୁହାଯିବ । ଓଡ଼ିଶାରେ ଭାରତୀୟ ଚିତ୍ରକଳାର ଧାରା ଅନ୍ତତଃ ତିନିହଜାର ବର୍ଷର କିନ୍ତୁ ଓଡ଼ିଆ ଚିତ୍ରଧାରା ଖୋଜିଲା ବେଳକୁ ଆମକୁ ତିନିଶହ ଚାରିଶହ ବର୍ଷର ସମୟସୀମା ମଧ୍ୟରେ ସୀମିତ ରହିବାକୁ ହେଉଛି । ବହି ପାଠକଲେ ଯେଉଁ ଅନୁଭବ ହୁଏ ତାହା ପ୍ରତ୍ୟକ୍ଷ ଅନୁଭବ ନୁହେଁ । ଲେଖକର ଅନୁଭବ ପ୍ରତ୍ୟକ୍ଷ ହେବା ବାଞ୍ଛନୀୟ । ଅଧିକାଂଶ ଓଡ଼ିଆ ଲେଖକଙ୍କ କାନ୍‌ଭାସ୍ ବିସ୍ତୃତ ନୁହେଁ । ପୁଣି ଜଣେ ସମାଲୋଚକ ନିଜେ ସର୍ଜନଶୀଳ ନ ହେଲେ ସେଭଳି ସମାଲୋଚକର ମତାମତ ଉପରେ ଗୁରୁତ୍ୱ ଦେଇ ଲାଭନାହିଁ । ଆମର ଅଧିକାଂଶ ଓଡ଼ିଆ ଲେଖକ ସମ୍ବେଦନଶୀଳ, ଉଦାର ଓ ସହାନୁଭୂତି ସଂପନ୍ନ ନୁହନ୍ତି । ମୋ ଉପନ୍ୟାସ ପଢ଼ି(ବା ହୁଏତ ନ ପଢ଼ି) କେତେଜଣ ବିଶିଷ୍ଟ ଓଡ଼ିଆ ଲେଖକ ଯେଉଁ ମନ୍ତବ୍ୟମାନ ଦେଇଛନ୍ତି ସେଗୁଡ଼ିକ ଏଠି ଉଲ୍ଲେଖ କଲେ ଉପନ୍ୟାସ ଧାରାର ଅବବୋଧ ସଂପର୍କରେ ଆକଳନ କରିହେବ । ଜଣେ ବିଶିଷ୍ଟ ସମାଲୋଚକ ସମଗ୍ର **ସାୟୋନାରା** ଉପନ୍ୟାସଟି ପଢିସାରିଲା ପରେ 'ସାୟୋନାରା' ଶବ୍ଦର ଅର୍ଥ ଜାଣିବା ପାଇଁ ମୋତେ ଚିଠି ଲେଖିଲେ । ଆଉ ଜଣେ ବିଶିଷ୍ଟ କବି 'ପୁନର୍ନବା' ଆମୂଳଚୂଳ ପଢିଲା ପରେ କେମିତି ଲାଗିଲା ପଚାରିବାରୁ କହିଲେ ତମେ ତମ ଲେଖାକୁ ଆହୁରି ଜଟିଳ କର, ଉପନ୍ୟାସ ଭିତରେ ଉପନ୍ୟାସ ପୁଣି ତା ଭିତରେ ଉପନ୍ୟାସ ନ ରହିଲେ ତାହା ସଫଳ ଉପନ୍ୟାସ ହେଇପାରିବନି । ମୋର ଧାରଣା ହେଲା କବି ବନାରସର ଗଳି ଦେଖିନାହାନ୍ତି । ଆଉ ଜଣେ ପ୍ରଖ୍ୟାତନାମା ଗାଳ୍ପିକ କହିଲେ, ତମ ଲେଖାରୁ ଆମିଷର ଗନ୍ଧ ବାହାରୁଛି । ମାଂସ ଖାଉଛ ବୋଲି ଗଳାରେ ହାଡ଼ମାଳ ପିନ୍ଧି ବୁଲିବା ଠିକ୍ ନୁହେଁ । ଏମିତି ଅନେକ ପ୍ରକାର ଅଭିମତ । ଆଉ ଜଣେ ପ୍ରସିଦ୍ଧି ଲାଭକରିଥିବା ସାହିତ୍ୟିକ କହିଲେ ତମେ ଉପନ୍ୟାସ

Digitized by srujanika@gmail.com

ଲେଖିବା ପୂର୍ବରୁ ମୋ ପାଖକୁ ଆସ, ଆମେ ଆଲୋଚନା କରିବା । ମୁଁ ଜାଣେ ଲେଖିଥିବା ଚିଠି-ସମାଲୋଚକଙ୍କ କଥା ଛାଡ଼ିଦେଲେ ଅନ୍ୟ ସବୁ ଅସୂୟା ପ୍ରଣୋଦିତ ବାକ୍ୟ । ଅଧିକାଂଶ ଚିତ୍ରଶିଳ୍ପୀ ଲେଖାଲେଖି କରିପାରନ୍ତି ନାହିଁ । ଉପନ୍ୟାସ ପର କଥା । ଚିତ୍ରାନୁଭବକୁ ଓଡ଼ିଆ ସାହିତ୍ୟରେ ସଂଚରେଇବା ଆଗରୁ କେବେ ଦେଖାଯାଇ ନଥିଲା । **ମୁଁ ବେଳେ ବେଳେ ପିଲାଳିଆମି ଢଙ୍ଗରେ କହିଦିଏ ଯେ ମୋ ଅନୁଭବ ଓଡ଼ିଶାର ଅନ୍ୟାନ୍ୟ ଲେଖକଙ୍କ ଅନୁଭବ ଠାରୁ ସଂପୂର୍ଣ୍ଣ ନିଆରା, ତାହା ଏକ ଭିନ୍ନ ରାଜ୍ୟର କଥା । ତାହା ହେଉଛି ଚିତ୍ରରାଜ୍ୟ । ପୁଣି ମୁଁ ଯେହେତୁ ପେସାଦାର ଲେଖକ ନୁହେଁ, ବାଧ୍ୟବାଧ୍ୟକତାରେ ଲେଖେ ନାହିଁ ତେଣୁ ମୋ ବହିଗୁଡ଼ିକ ନିଆରା ଲାଗେ । ଏହି ଦୃଷ୍ଟିରୁ ଏହା ନିଶ୍ଚିତ ଭାବେ ବ୍ୟତିକ୍ରମ ।**

ପ୍ରଶ୍ନ- ଆପଣ ଗଦ୍ୟରେ ଯେମିତି ସିଦ୍ଧହସ୍ତ, କବିତା ରଚନାରେ ସେମିତି ସଫଳ । ଏପରି ସଫଳତାର ରହସ୍ୟ କ'ଣ ?

ଉତ୍ତର- ମୋ ପରିବାରରେ ବଡ଼ଭାଇନା, ନନା, ଗୋସେଇଁବାପା ସମସ୍ତେ କବି । ବଡ଼ଖେମୁଣ୍ଡି ରାଜ ଦରବାରରେ ମଧ୍ୟ ସେମାନଙ୍କ କାବ୍ୟ ପ୍ରସିଦ୍ଧି ଥିଲା । ମୋ ନନା(ବାପା) ଜଣେ ଆଶୁ କବି (ଉଝଟ କବି) ଥିଲେ । ଲାଗେ ସେମାନଙ୍କ ସୁକୃତିରୁ ମୋର ଏଇ ସଫଳତା । ସର୍ଜନବିଦ୍ୟା ଅତ୍ୟନ୍ତ ଗହନ କଥା । ତାହା ଆପେ ଆପେ ସ୍ରବେ କିନ୍ତୁ ଆଧାର ଠିକ୍ ନଥିଲେ ତାଙ୍କୁ ଧରି ରଖିବା ସମ୍ଭବ ନୁହେଁ । ମୁଁ ଜଣେ ଭଲ ଚିତ୍ରଶିଳ୍ପୀ ହୋଇପାରିଛି ବୋଲି ଜଣେ ଭଲ ଲେଖକ ମଧ୍ୟ ହେଇପାରିଛି । କିଛି ସାହିତ୍ୟ ସମାଲୋଚକ କହନ୍ତି, ମୁଁ ଗଦ୍ୟରେ ବି କବିତା ଲେଖେ । **କବି ସୌରୀନ୍ଦ୍ର ବାରିକ ମୋ କବିତା ସଂକଳନ ଚିତ୍ରଶାଳାର ମୁଖବନ୍ଧରେ କହିଛନ୍ତି "ଏହି ସଫଳତା ପଛରେ ଅଛି ତାଙ୍କର ଶୃଙ୍ଖଳାବୋଧ ଏବଂ ଉଭୟ ଅନୁଭବ ଓ ମାଧ୍ୟମପ୍ରତି ଗଭୀର ଆନ୍ତରିକତା । ଏହି ଆନ୍ତରିକତା ହିଁ ତାଙ୍କୁ ଆଣି ଦେଇଛି ଶିଳ୍ପୀଭାବେ ସଫଳତା । ପ୍ରତିଷ୍ଠା ବି ।"** ଅବନ୍ତୀ ଓ ଚିତ୍ରଶାଳାରେ ସ୍ଥାନ ପାଇଛି ମାତ୍ର ଷୋହଳଗୋଟି କବିତା । ଆଉ ଅନ୍ୟତ୍ର ପ୍ରକାଶିତ ସମୂହକୁ ମିଶିଲେ ଶହେ ଦେଢ଼ଶହ ଗୋଟି କବିତା ହେବ । ମୁଁ ବେଶି କବିତା ଲେଖିପାରେନି ବା ଲେଖିହେଉନି । କବି ସୌରୀନ୍ଦ୍ର ବାରିକଙ୍କୁ କେନ୍ଦ୍ରକରି ଲେଖିଥିବା ମୋ କବିତା କବି ସୀତାକାନ୍ତ ମହାପାତ୍ରଙ୍କୁ ଯଥେଷ୍ଟ ପ୍ରଭାବିତ କରିଥିଲା । ସେମିତି 'ପୁରୁଲିଆ' କବିତା ପଢ଼ି କବି ରମାକାନ୍ତ ରଥ ବନାରସରୁ ଟେଲିଫୋନ୍ କରି ମୋତେ ବଧେଇ ଜଣେଇଥିଲେ । ମୁଁ ଓଡ଼ିଆ ସାହିତ୍ୟର କାବ୍ୟ ପରମ୍ପରା ନେଇ ସଚେତନ । ମୋ କବିତା ମୋ ଚିତ୍ରର ଏକ ପ୍ରସାରିତ ସର୍ଜନ ଭୂମିରେ ପ୍ରସ୍ଫୁଟିତ ଗଙ୍ଗଶିଉଳି । ଅନେକ ଚିତ୍ରଶିଳ୍ପୀ ମଧ୍ୟ କବିତା ଲେଖାଲେଖି କରନ୍ତି । କିନ୍ତୁ ମୋ କବିତା ମୋ ଗଦ୍ୟ ଓ ଚିତ୍ରର ଏକ ସମନ୍ୱିତ ସର ।

ପ୍ରଶ୍ନ- ଆପଣଙ୍କ ଜୀବନର ଏକ ବିଶାଳ ଦିଗ **ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ** ଓ **ଚିଲିକା ପାଣିର ଛାଇରେ** ଏକ ଭିନ୍ନ ରୀତିରେ ଉନ୍ମୋଚିତ । ଆତ୍ମଜୀବନୀରେ ଏପରି ଗୋଟିଏ ଶୈଳୀ ଆପଣ କାହିଁକି ଗ୍ରହଣ କଲେ ?

ଉତ୍ତର- ମୋ ଆତ୍ମଜୀବନୀକୁ ଆପଣ ଗଳ୍ପ ସଂକଳନ ମଧ୍ୟ କହିପାରନ୍ତି । କିଏ କିଏ ତାକୁ ଉପନ୍ୟାସ ଢ଼ାଞ୍ଚାରେ ଲିଖିତ ଆତ୍ମଜୀବନୀ ମଧ୍ୟ କହିଥାନ୍ତି । ମୋ ଉପନ୍ୟାସଗୁଡ଼ିକ ମଧ୍ୟ ଆତ୍ମଜୀବନୀମୂଳକ । ମୁଁ ପାଶ୍ଚାତ୍ୟ ସାହିତ୍ୟର ବିଭିନ୍ନ ଥିଓରି ସଂପର୍କରେ ସଚେତନ

Digitized by srujanika@gmail.com

ନୁହେଁ, ଏଣୁ ନିଜ ବାଗରେ ନିଜକଥା ଲେଖେ । ମୋର ଦୁଇଟି ଗଳ୍ପ ସଂକଳନ ଅଛି । ସେହି ଦୁଇଟି ହେଲା **ସୁନା ମାଛ** ଓ **ଭବଘୁରା ଭବନାଥ** । ସେହି ଦୁଇଟିକୁ ଭ୍ରମଣ କାହାଣୀ ମଧ କୁହାଯାଇ ପାରେ । ଗଳ୍ପରେ କଳ୍ପନା ମାତ୍ରା ତ ରହିବ ହିଁ ରହିବ କିନ୍ତୁ ଜୀବନ କାହାଣୀରେ ବକ୍ତବ୍ୟର ନିଚ୍ଛକତା ହିଁ କଥନିକାର ମୂଳ ଉପାଦାନ । ମୋ ଆତ୍ମଜୀବନୀ ମାନଙ୍କରେ (ଆପଣ ପୁଞ୍ଜିକର୍ଯାଁର ଫକୀରକୁ ମଧ ଆତ୍ମଜୀବନୀର ଦ୍ୱିତୀୟ ବହି ବା ଦ୍ୱିତୀୟ ଖଣ୍ଡ ଭାବେ ସ୍ଥାନଦେବା ପାଇଁ ଅନୁରୋଧ) ନିଜକଥା ଯେତିକି ନକହିଚି, ମୋର ସମସାମୟିକମାନଙ୍କ କଥା, ମୋ ଗାଁ ସ୍କୁଲ, ପରିବେଶ ଓ ପରମ୍ପରା କଥା ବେଶି କହିଚି । ସେମାନଙ୍କ ବିନା ମୋ ସ୍ଥିତି କାହିଁ ? ତେଣୁ **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ**କୁ ଦିଗପହଣ୍ଡିର ଆଲେଖ୍ୟ ଚିତ୍ରଣ ବୋଲି ଅନୁମାନ କରିପାରନ୍ତି । **ଦିଗପହଣ୍ଡିର କାବ୍ୟୋଦ୍ଭୀର୍ଣ୍ଣ ମାଟି ଓ ତା'ର ମମତା ହିଁ ମୋତେ ଶିଳ୍ପୀ ଓ ଲେଖକ ହେବାପାଇଁ ପ୍ରେରଣା ଯୋଗାଇ ଦେଇଛି । ଦିଗପହଣ୍ଡି ପାଇଁ ମୁଁ ସବୁଠି ପରିଚିତ ଏବଂ ମୋ ପାଇଁ ଦିଗପହଣ୍ଡି ଦେଶ ବିଦେଶରେ ନିଜର ଅସ୍ମିତାଟିଏ ରଚନା କରିଦେଇ ପାରିଛି ।** ସେଭଳି ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟର ଆତ୍ମଜୀବନୀ **ଚିଲିକା ପାଣିରେ ଛାଇ** ହେଲା କୌଣସି ଗୋଟିଏ ଅନୁଷ୍ଠାନ ସଂପର୍କରେ ପ୍ରକାଶିତ ପ୍ରଥମ ଓଡ଼ିଆ ବହି । ଆପଣ ଜାଣିଲେ ଆଶ୍ଚର୍ଯ୍ୟ ହେବେ, ଖୁସି ବି ହେବେ ଯେ **ମୋ ଆତ୍ମଜୀବନୀଗୁଡ଼ିକ ଜଣେ ଚିତ୍ରଶିଳ୍ପୀଙ୍କ ଦ୍ୱାରା ଲିଖିତ ଓଡ଼ିଆ ସାହିତ୍ୟରେ ପ୍ରଥମ ଉନ୍ମେଷ** । ଗୋପାଳଚରଣ କାନୁନ୍‌ଗୋ, ବିନୋଦ ରାଉତରାୟଙ୍କ ଭଳି ବହୁ ଯଶଧର ଶିଳ୍ପୀ ଓ ସାହିତ୍ୟିକ ନିଜ ଆତ୍ମଜୀବନୀ ଲେଖିବାର ଆବଶ୍ୟକତା କେବେ ଅନୁଭବ କରିନାହାନ୍ତି । ଯାହାଫଳରେ ସେମାନଙ୍କ ସମୟର ଓଡ଼ିଶାର ଶିଳ୍ପ ସଂପର୍କୀୟ ଘଟଣା ଜାଣିବାରୁ ଆମେ ବଞ୍ଚିତ । ଓଡ଼ିଆ ସାହିତ୍ୟରେ ଶିଳ୍ପଚର୍ଚ୍ଚା ଅତ୍ୟନ୍ତ ନଗଣ୍ୟ । ଏହି ପରିପ୍ରେକ୍ଷୀରେ ମୋ ଆତ୍ମଜୀବନୀଗୁଡ଼ିକ ସାଧାରଣ ସାହିତ୍ୟ ଆଲୋଚନାକୁ ଶିଳ୍ପାଭିମୁଖୀ କରିପାରିଛି ବୋଲି ମୋର ବିଶ୍ୱାସ । ମୁଁ ଏବେ ବି ଦିଗପହଣ୍ଡି ଗଲେ ମୋ ବହିର ଚରିତ୍ରମାନେ ବା ସେମାନଙ୍କ ଭାଇବନ୍ଧୁ ପୁଅଝିଅମାନେ ମୋତେ ଘେରିଯାଇ **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** ବହି ମାଗନ୍ତି । ମୋ ଛାତି କୁଣ୍ଢେମୋଟ ହୋଇଯାଏ । ପିତୃଋଣ ପରିଶୋଧ ହେବା ତ ସମ୍ଭବ ନୁହେଁ । **ପୁଞ୍ଜିକର୍ଯାଁର ଫକୀର** ସେ ଦିଗରେ ସାମାନ୍ୟ ପ୍ରୟାସ ମାତ୍ର । ବିଶିଷ୍ଟ ଅନୁବାଦକ ଓ ଲେଖକ କମଳାକାନ୍ତ ମହାପାତ୍ରଙ୍କୁ ଏହି ବହିଟି ଏତେ ମୁଗ୍ଧକଲା ଯେ ସିଏ ତା'ର ଚମତ୍କାର ସମୀକ୍ଷାଟିଏ ପ୍ରକାଶ କଲେ । ଥରେ ଜଣେ ବିଶିଷ୍ଟ କଥାଶିଳ୍ପୀ ଉପଦେଶ ଦେବା ଛଳରେ କହୁ କହୁ କହିଦେଲେ ଯେ, 'ଦିନନାଥ ତମେ ଖାଲି ତମ ଗାଁ କଥା ଲେଖିଲ, ତାକୁ ଛାଡ଼ି ଅନ୍ୟକଥା ଲେଖ ।' ମୁଁ ତାଙ୍କୁ ଉତ୍ତର ଫେରାଇ ବିନମ୍ର ଭାବରେ କହିଥିଲି, ମୁଁ ମୋ ନିଜ ଗାଁ କଥା ଆଉ ନିଜକଥା ଛଡ଼ା ଅନ୍ୟ କିଛି ବିଶେଷ ଜାଣିନାହିଁ । ମୋ' ଗାଁ ଉପରେ ମୁଁ ଆଉ ଅନ୍ତତଃ ଶହେ ଖଣ୍ଡ ବହି ଲେଖିବାର କେବଳ ସାମର୍ଥ୍ୟ ରଖିଛି ନୁହେଁ, ଆବଶ୍ୟକତା ମଧ ଅଛି । ମୋ ଆତ୍ମଜୀବନୀର ଗୋଟିଏ ଗୋଟିଏ ପରିଚ୍ଛେଦ ଗୋଟିଏ ଗୋଟିଏ ବହିର ବିସ୍ତୃତି ଦାବି କରେ । ଲୋକ ଚିତ୍ର, ଧ୍ରୁପଦୀ ଚିତ୍ର (କ୍ଲାସିକାଲ୍) ଓ ଆଧୁନିକ ଓଡ଼ିଆ ଚିତ୍ର ପରମ୍ପରା ଜାଣିବା ପାଇଁ ମୋ ଆତ୍ମଜୀବନୀଗୁଡ଼ିକ ଅତ୍ୟନ୍ତ ଉପାଦେୟ । ମୁଁ ବଡ଼େଇ କରି କହୁନି, ବିନମ୍ର ଭାବରେ କହୁଛି, ମୁଁ ଜଣେ ଭବଘୁରା ମଣିଷ ଓ ମୋର ଅନୁଭବର ପରିସୀମା ବ୍ୟାପକ ଏଣୁ ଆତ୍ମଜୀବନୀର ଦିଗ ବିଶାଳ ଓ ବ୍ୟାପକ ହେବା ସ୍ୱାଭାବିକ ।

Digitized by srujanika@gmail.com

ପ୍ରଶ୍ନ- ଆପଣଙ୍କ ଭ୍ରମଣ କାହାଣୀ ମଧ୍ୟ ସୁଖପାଠ୍ୟ ଓ ମନମୁଗ୍ଧକର । ଏହା ବ୍ୟକ୍ତିଗତ ଜୀବନର ଅନୁଭବ କେବଳ ନୁହେଁ, ବରଂ ସେଥିରେ ବିଶ୍ୱମୁଖୀ ଚିନ୍ତାର ପ୍ରକଟ ଘଟିଛି ?

ଉତ୍ତର- ଏ ପର୍ଯ୍ୟନ୍ତ ସୁଇଜରଲ୍ୟାଣ୍ଡ ଭ୍ରମଣ କାହାଣୀଟିଏ ପ୍ରକାଶ ପାଇଛି । ମୁଁ ଆଗରୁ କହିଛି **ଭବଘୂରା ଭବନାଥ**ରେ ସୁଇଡେନ୍ ଭ୍ରମଣ ଓ ଭାରତଉତ୍ସବର କାହାଣୀ ସନ୍ନିବେଶିତ । ସେଭଳି **ସୁନାମାଛ**ରେ ମିଶର ଓ ଇଣ୍ଡୋନେସିଆ ଭ୍ରମଣର ଅନେକ ବୃତ୍ତାନ୍ତ ସ୍ଥାନ ପାଇଛି । କୁଆଲାଲୁମ୍ପୁରର ଭ୍ରମଣ କାହାଣୀ- 'ତମେ କୁଆଲାଲୁମ୍ପୁର ଦେଖିଛ ?' ଏବେ ବି ଅପ୍ରକାଶିତ । ଭ୍ରମଣ କାହାଣୀ ଭାବଗ୍ରାହୀ ମିଶ୍ର(ଆଚାର୍ଯ୍ୟ ଭାବାନନ୍ଦ) କହିବା ପ୍ରକାରେ, 'ଗଲି ଅଇଲି ଯାହା ଦେଖିଲି, ତାହା କହିଲି' ଭଳି ଏକ ସାମ୍ବାଦିକ ରିପୋର୍ଟ ନୁହେଁ । ନୂଆ ଜାଗା, ନୂଆ ଚଳଣି; ନୂଆ ଲୋକଙ୍କ ସହିତ ନିଜକୁ ମିଶେଇ ନେଇ, ନିଜ ଭିତରୁ ଆପଣାର ସଂସ୍କୃତିର ପ୍ରଭାବକୁ ନିରପେକ୍ଷ ଦୂରତ୍ୱରେ ରଖି, ଅପର ସଂସ୍କୃତିକୁ ବୁଝିବା ବା ବୁଝିବାକୁ ଚେଷ୍ଟା କରିବା ଓ ମାନସିକ ତରାଜୁରେ ତଉଲି 'ଭାରି', 'ହାଲୁକା' ନ୍ୟାୟରେ ସଂସ୍କୃତିକୁ ବିଚାର ନକରି 'ଯେତେଭାଇ ସେତେ ଘର, ଯେତେ କନିଆ ସେତେ ବର' ଧାରଣାରେ ଅନ୍ୟର ସଂସ୍କୃତି, ଚଳଣି ଓ ଜୀବନଧାରାକୁ ସମ୍ମାନ ଦେଇ ଶିଖିବା ଏକ କଷ୍ଟକର କାର୍ଯ୍ୟ ।

ଭ୍ରମଣର ସବୁଠାରୁ ସୁଖକର କାମହେଲା ଏଠାକାର ଜଂଜାଳରୁ ସାମୟିକ ମୁକ୍ତି ପାଇଯାଇ ନିଜକୁ ଏକ ବୃହତ୍ତର ବିଶ୍ୱ ପରିପ୍ରେକ୍ଷୀରେ ଆବିଷ୍କାର କରିବା । ଉଡ଼ାଜାହାଜ ହିମାଳୟ ପାରିହୋଇଗଲା ପରେ ଲାଗେ ଏଥର ଗୋଡ଼ଟଣାରୁ ମୁକ୍ତି ।

ପ୍ରଶ୍ନ- ଆପଣଙ୍କ ସାହିତ୍ୟ ପାଠକଲେ ଆପଣଙ୍କ ଅଙ୍କିତ ଚିତ୍ରଗୁଡ଼ିକ ପାଠକର ମାନସପଟରେ ଉଦ୍ଭାସିତ ହୁଏ ଓ ଆପଣଙ୍କ ଚିତ୍ର ଦେଖିଲେ ଆପଣଙ୍କ ଗଳ୍ପ, ଉପନ୍ୟାସ ମନକୁ ଆସେ । ଏପରି ସାହିତ୍ୟ ଓ କଳାର ଅପୂର୍ବ ସମନ୍ୱୟ ଓ ସଂହତିର ରହସ୍ୟ କ'ଣ ।

ଉତ୍ତର- ଆପଣ ମୋର ସାହିତ୍ୟ ଓ ଚିତ୍ରକଥା କହିଲେ । ତା ସହିତ କଳା ଗବେଷଣାକୁ ମିଶେଇଲେ ହିଁ ତୌର୍ଯ୍ୟତ୍ରିକ ସୃଜନବିଭାବ ସମ୍ପୂର୍ଣ୍ଣ ହେଲା ବୋଲି କୁହାଯିବ । ଚିତ୍ରକଳା, ସାହିତ୍ୟ ଓ ଶିଳ୍ପଗବେଷଣା ମୋ ପାଇଁ ସୃଜନର ତିନୋଟି ସମାନ୍ତରାଳ ପ୍ରକ୍ରିୟା । ଚିତ୍ରକଳା ଓ ସାହିତ୍ୟରେ ସୃଜନର ସଂପୁଟ ଅତ୍ୟନ୍ତ ସ୍ପଷ୍ଟ । ଏଣୁ ଗବେଷଣାକୁ ଆପାତତଃ ସମନ୍ୱିତ ଅବବୋଧ ଭିତରେ ସ୍ଥାନ ନଦେବା ମୁଁ ବୁଝିପାରୁଛି । କିନ୍ତୁ ଚିତ୍ରର ଅନୁଶୀଳନାତ୍ମକ ବା ବୌଦ୍ଧିକତାର ଯେଉଁଠି ପ୍ରଶ୍ନ ଆସୁଛି ସେଠାରେ ଗବେଷଣାର ସ୍ଥାନ ରହିବ ହିଁ ରହିବ । କଲିକତାର ବଙ୍ଗାଳୀ ପରିବାରରେ ଓଡ଼ିଆ ନନା(ରୋଷେଇଆ)ର କାରସାଦି ଭଳିଆ କଥା । ନନା ଗୋଟିଏ ନିର୍ଦ୍ଦିଷ୍ଟ ମସଲା ପ୍ରସ୍ତୁତ କରିଥାଏ କିନ୍ତୁ ତା'ର ଭାଗମାପରେ ସାମାନ୍ୟ ପରିବର୍ତ୍ତନ କରି ବିଭିନ୍ନ ବ୍ୟଞ୍ଜନ ପ୍ରସ୍ତୁତ କରିଥାଏ । ନନାର ମସଲା ଯାହା ସାହିତ୍ୟ ଓ ଚିତ୍ରକଳାର ଅନ୍ତଃସର ସେଇଆ । **ମୋ କ୍ଷେତ୍ରରେ ଚିତ୍ରକଳା, ସାହିତ୍ୟ ଓ ଗବେଷଣାର ସୃଜନଉତ୍ସ ଏକ । ତାହା ଝରିଗଲେ ଝରଣା, ବହିଗଲେ ନଦୀ, ଆବଦ୍ଧ ହେଇଗଲେ ପୁଷ୍କରିଣୀ । ଏମାନଙ୍କ ସୌନ୍ଦର୍ଯ୍ୟ ଅଲଗା, ଦୃଶ୍ୟରୂପ ବି ଅଲଗା କିନ୍ତୁ ସବୁଥିରେ ଏକାଭଳି ପାଣି । ମୋ ଚିତ୍ର ସାହିତ୍ୟ ଓ ଗବେଷଣା ରୂପଚର୍ଚ୍ଚା ଓ ରୂପାନୁଭୂତିର ଏକ ସମନ୍ୱିତ ରୂପ ।** ପାଠକ ଉପନ୍ୟାସଟି ପାଠ କରିସାରିଲା ପରେ, ବା ଦର୍ଶକ ଚିତ୍ରଟିଏ ଦର୍ଶନ କରିସାରିଲା ପରେ ବା ଜଣେ ଜିଜ୍ଞାସୁ ଗବେଷଣା ଲବ୍ଧ ଜ୍ଞାନର ସ୍ୱାଦ ପାଇସାରିଲା ପରେ ଯେଉଁ ଅନୁଭବ ହୁଏ, ତାହା ମିଶ୍ର

Digitized by srujanika@gmail.com

ଅନୁଭବ ନୁହେଁ ତାହା କଳା ସହିତ ଏକାତ୍ମବୋଧର ଅନୁଭବ । ଭଗବାନଙ୍କ ଅପାର କରୁଣାରୁ ମୁଁ ତିନୋଟିଯାକ ରାଜ୍ୟରେ ଏକାଭଳି ବିଚରଣ କରିପାରେ; ଏଣୁ ଆପଣ ପାଠକଟିଏ ହେଇ ଦେଖିଲେ ମୋର ଉପନ୍ୟାସ ଆପଣଙ୍କୁ ସାହିତ୍ୟଭଳି ଦେଖାଯିବ । ଦର୍ଶକଟିଏ ହେଇଗଲେ ସେହି ଏକା ଉପନ୍ୟାସଟି ହେଇଯିବ ମୋ ଚିତ୍ର । 'ଗଙ୍ଗାବତରଣ'ର ଉତ୍ତରଣ ଓ ଅବତରଣର ସନ୍ଦର୍ଭ ପଢ଼ିଲେ ବା ପୁନର୍ନବାର ନବୀକରଣର ଉପାଖ୍ୟାନ ପଢ଼ିଲେ ଆପଣଙ୍କୁ ଲାଗିବ ଆପଣ ତତ୍ତ୍ୱ ପଢୁଛନ୍ତି । **ଚିତ୍ରକଳା କ୍ଷେତ୍ରରେ ଶିଳ୍ପୀମାନେ ଧାରାସବୁ ଭାଙ୍ଗି ଦେଲେଣି । ସବୁ ବିଭାଗୀକରଣ ଉଠେଇ ଦେଲେଣି । ଓଡ଼ିଆ ସାହିତ୍ୟ ଦିଗରେ କେତୋଟି ମାତ୍ର ପ୍ରୟାସ ହେଇଛି । ଏଣୁ ଔଚିତ୍ୟବୋଧ ଯେତେଟା କମ୍ ଅନୁଭବ ହେବ ସେତେଟା ମଙ୍ଗଳ ହେବ । ଅନ୍ୟଭାବରେ କହିବାକୁ ଗଲେ ପ୍ରତ୍ୟେକ କବି ଓ ଲେଖକ ଜଣେ ଜଣେ ରୂପ ଶିଳ୍ପୀ ।** ସିଏ ଯେଉଁ ଶବ୍ଦ ଚୟନ କରନ୍ତି ତାହା ରୂପ ମାତ୍ର ଓ ଚିତ୍ରମାତ୍ର । କଳ୍ପନା ରାଜ୍ୟରେ ବିଚରଣ କରୁଥିଲା ଯାଏଁ ସବୁ ଠିକ୍ ଥାଏ । ପୃଥିବୀ ପୃଷ୍ଠକୁ ଓହ୍ଲେଇଲେ ସେଥିରୁ ରୂପ ହଟିଯାଏ ଏବଂ ସେମାନେ ଚିତ୍ରସଚେତନତା ଠାରୁ ଦୂରେଇ ଯାଆନ୍ତି । ରବୀନ୍ଦ୍ରନାଥଙ୍କ ଭଳି ଗୋଟିଏ ଶିଳ୍ପ ସଚେତନ ଦୀପ୍ତିମନ୍ତ ସୃଜନ ପ୍ରତିଭା ପାଇବା କଷ୍ଟକର । ତାଙ୍କ ଅନ୍ତେ ଏଯାଏଁ ଅନ୍ୟକାହାଠାରେ ତାହା ସମ୍ଭବ ହେଇପାରିନାହିଁ ।

ପ୍ରଶ୍ନ- ଏମିତି କ'ଣ ଆବଶ୍ୟକ ହେଲା ଯେ ଆପଣ ଚିତ୍ରକଳାରୁ କଳା ଗବେଷଣାକୁ ଓହ୍ଲେଇଲେ । ଆପଣଙ୍କ କ୍ଷେତ୍ରରେ ସାହିତ୍ୟ ପ୍ରଥମ ନା ଗବେଷଣା ?

ଉତ୍ତର- ୧୯୭୨ ମସିହାରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଚାରୁକଳା ବିଭାଗର କ୍ୟୁରେଟର୍ ହେଇ ଯୋଗଦେଲା ପରେ ସମଗ୍ର ଓଡ଼ିଶା ପରିଭ୍ରମଣ କରି କଳାସାମଗ୍ରୀ ଓ କଳାଭ୍ୟାସର ଅବସ୍ଥିତି ଆକଳନ କରିବାର ସୁଯୋଗ ମିଳିଲା । ମୁଁ ଅନୁଭବ କଲି ଓଡ଼ିଶା କଳାସଂପଦରେ ଭରପୂର ଅଥଚ ସେଥିରୁ ଦଶପ୍ରତିଶତ ମଧ୍ୟ ଲୋକଲୋଚନକୁ ଆସିପାରିନାହିଁ । ଓଡ଼ିଶାର କେବଳ କେତୋଟି ମନ୍ଦିରର ନାମ ସ୍ମରଣ କରିଦେଲେ ଯଥେଷ୍ଟ ନୁହେଁ ବୋଲି ମୋର ଧାରଣା ହେଲା । କ୍ୟୁରେଟର୍ ହେଇ ଯୋଗଦେବାର ବହୁ ଆଗରୁ, ହାଇସ୍କୁଲରେ ଛାତ୍ରଥିବା ଅବସ୍ଥାରେ ମଧ୍ୟ ମୋର ବଡ଼ଭାଇ ଚିତ୍ରଶିଳ୍ପୀ ଲୋକନାଥଙ୍କ ସହିତ ବିଶେଷକରି ଦକ୍ଷିଣ ଓଡ଼ିଶାର ଗାଁ ଗଣ୍ଡା ବୁଲି ଥିଏଟର୍ ପରଦା, ଓଷାକୋଠୀର ଚିତ୍ର ଓ ମଠ ମନ୍ଦିରମାନଙ୍କରେ ଚିତ୍ର ଆଙ୍କିବାର ସୁଯୋଗ ପାଇଛି । ଏହି ଅବସରରେ ପ୍ରାଚୀନ ଭିତ୍ତିଚିତ୍ରମାନଙ୍କର ଅବକ୍ଷୟ ମୁଁ ଲକ୍ଷ୍ୟ କରିଛି । ମୁଁ ମନେ ମନେ ସ୍ଥିର କରିଛି ଯଦି କଳାସଂପର୍କରେ କିଛି ଲେଖାଲେଖି ନ କରାଯାଏ ବା କଳା ଯଦି ଗବେଷଣା ଓ ଅନୁଶୀଳନ ମାଧ୍ୟମରେ ସାହିତ୍ୟରେ ନ ପହଞ୍ଚେ ତା'ର ସମସ୍ୟା ସଂପର୍କରେ ବୁଦ୍ଧିଜୀବୀ ତଥା ସାଧାରଣ ଲୋକେ ଅଜ୍ଞ ରହିଯିବେ । ଏଣୁ ମୁଁ ଚିତ୍ରାଭ୍ୟାସ ସହିତ କଳା ଗବେଷଣାକୁ ଆପଣେଇଲି ।

ଏମିତି ଦେଖିବାକୁ ଗଲେ ମୋ ଦ୍ୱାରା ସଂକଳିତ ପ୍ରଥମ ବହି ୧୯୬୨ ମସିହାରେ ପ୍ରକାଶ ପାଏ । ଏହା ଶିବାନନ୍ଦ ଆଶ୍ରମରେ ଭଜନ ସଂଗ୍ରହ । ତା ପରେ ପରେ ସାମୀ ଶିବାନନ୍ଦଙ୍କ ଜୀବନୀ ଓ ଭଗବଦ୍‌ଗୀତାର ଅନୁବାଦ (ସାମୀ ଶିବାନନ୍ଦଙ୍କ **Gita for the Blind** ର ଅନୁବାଦ)। ଏସବୁକୁ ଅସଲ ସାହିତ୍ୟ ପର୍ଯ୍ୟାୟରେ ଗ୍ରହଣ କରାନଯାଇପାରେ, କିନ୍ତୁ ଚିତ୍ର କର୍ମରୁ ବେଳେ ବେଳେ ଉତୁରି ପଡ଼ି ଲେଖାଲେଖି କରିବାର ଓ ବହି ନିର୍ମାଣ କରିବାର ପ୍ରଚେଷ୍ଟା ପ୍ରାୟ ପଚାଶ ବର୍ଷତଳେ ଆରମ୍ଭ ହୋଇଥିଲା । ୧୯୬୭ ମସିହାରେ

Digitized by srujanika@gmail.com

ଚିତ୍ରକଳା ସଂପର୍କରେ ପ୍ରବନ୍ଧ ସଂକଳନ **ଚିୟବେଇତି** ପ୍ରକାଶ ପାଇଥିଲା । ପୁଣି ୨୦୦୯ ମସିହାରେ **ଚିତ୍ର ମାନସ** ପ୍ରବନ୍ଧ ସଂକଳନ ପ୍ରକାଶ ପାଇଛି । ଏଥିରୁ ଅନୁମାନ କରିହେବ ଲେଖାଲେଖି ପ୍ରତି ମୋର ଆଗ୍ରହ ଓ ଆନ୍ତରିକତା ଅଛି ଯାହା ପରବର୍ତ୍ତୀ ସମୟରେ ବିଧିବଦ୍ଧ କଳାଗବେଷଣା ଓ ସାହିତ୍ୟ ରଚନାରେ ପରିଣତ ହୋଇଛି । ଏଣୁ ଏଠାରେ ସାହିତ୍ୟ ପ୍ରଥମ ନା ଗବେଷଣା ପ୍ରଥମ ତା'ର ବିଚାର ଅମୂଳକ । ମୋର ପ୍ରଥମ ଚିତ୍ର **ଈଶ୍ୱର ପାର୍ବତୀ** ୧୯୫୬ ମସିହାରେ ଗଞ୍ଜାମ ଜିଲ୍ଲା ଚିତ୍ରଶିକ୍ଷକ ସଂଘ ଦ୍ୱାରା ଆୟୋଜିତ ସର୍ବଭାରତୀୟ ଶିଶୁଚିତ୍ରକଳା ପ୍ରଦର୍ଶନୀରେ ସ୍ୱର୍ଣ୍ଣପଦକ ପାଏ । ସେହି ଦିନଠାରୁ କ୍ରମାଗତ ଭାବେ ମୁଁ ମୋ ଚିତ୍ରପାଇଁ ପୁରସ୍କୃତ ହେଇଆସୁଛି । ମୋ ପାଇଁ କଳା ସାହିତ୍ୟ ବା ଗବେଷଣା କୌଣସିଟି ସୌଖୀନ ଅଭ୍ୟାସ (ବା, ହବି) ନୁହେଁ । ଜୀବନକୁ ବିକଶିତ କରିବାର ଏସବୁ ଗୋଟିଏ ଗୋଟିଏ ସୁଗମ ମାର୍ଗ ।

ମୁଁ ଓଡ଼ିଶା ତଥା ଭାରତର ଚିତ୍ରକଳା ଉପରେ ବିଶେଷ କରି ଇଂରାଜୀ ଭାଷାରେ ପଞ୍ଚତିରିଶି ଖଣ୍ଡ ଛୋଟବଡ଼ ବହି ରଚନା କରିଛି ଏବଂ ସଂପାଦନା କରିଛି । ଅବଶ୍ୟ ଏ ଭିତରୁ ପାଞ୍ଚ ସାତଟି ଓଡ଼ିଆ ଭାଷାରେ ମଧ ପାଇହେବ । ଆପଣ ମୋ କଳା ଗବେଷଣା ପ୍ରତି ମୋଟେ ସଚେତନ ନ ହେଇ ମୋ ସାହିତ୍ୟ ସଂପର୍କରେ ଆକଳନ କରିପାରିବେ ନାହିଁ ।

ପ୍ରଶ୍ନ- ମୁଁ ଅନୁଭବ କରୁଛି ଚିତ୍ରକଳା ସହିତ ନୃତ୍ୟରେ ମଧ ଆପଣଙ୍କ ଅଭିରୁଚି ଅଛି । ଚିତ୍ରକଳା ସହିତ ନୃତ୍ୟର କି ସଂପର୍କ ଥାଇପାରେ । ପୁଣି ସେଥିରେ ସାହିତ୍ୟ କିଭଳି ଅନ୍ତର୍ଭୁକ୍ତ ହେବ ।

ଉତ୍ତର- କୁହାଯାଇଛି ଚିତ୍ର ବିନା ନୃତ୍ୟ ସମ୍ଭବ ନୁହେଁ । ଯେଉଁମାନେ ବିଶିଷ୍ଟ ଚିତ୍ରଶିଳ୍ପୀ ପରବର୍ତ୍ତୀ ଜୀବନରେ ବିଶିଷ୍ଟ ନୃତ୍ୟଶିଳ୍ପୀ ହେବାର ଗୌରବ ଅର୍ଜନ କରିଛନ୍ତି ଆନ୍ତର୍ଜାତିକ ସ୍ତରରେ ସେଥିରୁ ମୁଁ ମାତ୍ର ଦୁଇଜଣ ନୃତ୍ୟଶିଳ୍ପୀଙ୍କ ନାମ ଉଲ୍ଲେଖ କରୁଛି । ଜଣେ ହେଲେ ଉଦୟ ଶଙ୍କର, ଆଉ ଜଣେ ହେଲେ କେଳୁଚରଣ ମହାପାତ୍ର । ଜଣେ ନୃତ୍ୟଶିଳ୍ପୀ ହେବା ଉଦ୍ଦେଶ୍ୟ ନେଇ ମୁଁ ନୃତ୍ୟ ରାଜ୍ୟରେ ପଶିନି ବରଂ ନୃତ୍ୟ ରାଜ୍ୟରୁ କୁସଂସ୍କାର ଦୂର କରିବା ପାଇଁ ମନସ୍ଥ କରି **Rethinking Odissi** ବହିଟି ଲେଖିଛି । ଦୁଃଖର କଥା ଓଡ଼ିଶୀ ନୃତ୍ୟଶିଳ୍ପୀ ଓ ନୃତ୍ୟଗୁରୁମାନେ ଏହି ବହି ଖଣ୍ଡିକ ପଢ଼ିଲେନି । ବହିଟିର ସମୀକ୍ଷା କରିବା ପାଇଁ କିଛି ବନ୍ଧୁଙ୍କୁ ଅନୁରୋଧ କଲି । ବହି ଖଣ୍ଡେ ଖଣ୍ଡେ ଉପହାର ମଧ ଦେଲି, ଅଥଚ ଗୋଟିଏ ହେଲେ ସମୀକ୍ଷା ଦୁଇବର୍ଷ ମଧରେ ସମ୍ଭବ ହେଲାନାହିଁ । (ସ୍ମରଣ ଥାଉକି ବହିଟିର ମୂଲ୍ୟ ମାତ୍ର ଦୁଇ ହଜାର ଟଙ୍କା) ଓଡ଼ିଶା ଏକ ବିଚିତ୍ର ଦେଶ । ଏଠାରେ ପାଣ୍ଡିତ୍ୟର ପରିଭାଷା ନିଜ ନିଜ ପରିକଳ୍ପିତ ପରିଧି ମଧରେ ସୀମିତ । କେବଳ ମୋର ନୃତ୍ୟରେ ଆଗ୍ରହ ଏତିକିରେ ଶେଷ ନୁହେଁ । ଅନ୍ୟତମ ବିଶିଷ୍ଟ ନୃତ୍ୟଗୁରୁ ସ୍ୱର୍ଗତ ଦେବ ପ୍ରସାଦଙ୍କ ନାମରେ ଆମେ ଅନୁଷ୍ଠାନଟିଏ ଗଢ଼ିଛୁ ତା'ର ନାଁ ହେଲା ଅଙ୍ଗରାଗ । ଏହି ଅନୁଷ୍ଠାନର ମୁଁ ଅଧକ୍ଷ ଅଛି ।

ପ୍ରଶ୍ନ- ଆପଣ କେନ୍ଦ୍ର ଲଳିତକଳା ଏକାଡ଼େମୀର ପ୍ରଶାସନିକ ମୁଖ୍ୟ ହୋଇଥିଲେ । ସେହିପରି ଓଡ଼ିଶା ଲଳିତ କଳା ଏକାଡ଼େମୀର ସଭାପତି ମଧ ଥିଲେ । ତେବେ କେନ୍ଦ୍ର ଓ ରାଜ୍ୟ ଏକାଡ଼େମୀ ମଧରେ ପାର୍ଥକ୍ୟ କ'ଣ ?

ଉତ୍ତର- ଗୋଟିଏ ବାକ୍ୟରେ କହିବାକୁ ଗଲେ ପାର୍ଥକ୍ୟ ଆକାଶ ପାତାଳ । କେନ୍ଦ୍ର ଲଳିତକଳା ଏକାଡ଼େମୀ ନିଜେ ନିଜ ସଚିବ ମନୋନୀତ କରେ ଏବଂ ନିଯୁକ୍ତି ଦିଏ । ଏଣୁ ପ୍ରତ୍ୟେକ ନିଷ୍ପତ୍ତି ଓ ତା'ର କାର୍ଯ୍ୟକାରିତାର ଯଥାର୍ଥ ଉତ୍ତର ସଚିବଙ୍କୁ କାର୍ଯ୍ୟକାରୀ ସମିତି ଆଗରେ

Digitized by srujanika@gmail.com

ବୟାନ ଦେବାକୁ ହୁଏ । ମୋଟାମୋଟି ଭାବେ କହିବାକୁ ଗଲେ ସଚିବ ଏକାଡ଼େମୀର ଅଫିସ୍‌ର, କିନ୍ତୁ ଓଡ଼ିଶାରେ ଏକାଡ଼େମୀର ସେକ୍ରେଟେରୀଙ୍କୁ ସରକାର ନିଯୁକ୍ତି ଦିଅନ୍ତି । ବସ୍ତୁତଃ ସେ ଜଣେ ସରକାରୀ ଅଫିସର । ଏଣୁ ସେ ସହଜରେ କାର୍ଯ୍ୟକାରୀ ସମିତିକୁ ଓ ସଭାପତିଙ୍କୁ ଫାଙ୍କି ଦେଇପାରନ୍ତି । ତାଙ୍କ ଉପରେ ଏକାଡ଼େମୀର ପୂର୍ଣ୍ଣ କର୍ତ୍ତୃତ୍ୱ ରହେନାହିଁ । ଏଭଳି ବ୍ୟବସ୍ଥାରେ ସଭାପତି ଜଣେ ମୃତ୍‌ଫରକା ଲୋକରେ ରୂପାନ୍ତରିତ ହେଇଯାଆନ୍ତି । ସାହିତ୍ୟ ଏକାଡ଼େମୀର ସଭାପତି ହେଇଥିଲେ ରାଜ୍ୟସାରା ବୁଲିବୁଲି ଭାଷଣ ଦିଅନ୍ତି । ଲଳିତକଳା ଏକାଡ଼େମୀ ସଭାପତିଙ୍କ ବିଶେଷ କିଛି କରିବାର ନଥାଏ । କାମିକା ଲୋକଜଣେ ଓଡ଼ିଶା ଲଳିତ କଳା ଏକାଡ଼େମୀର ସଭାପତି ହେଲେ ଅନେକ ଅସୁବିଧା, ଅଡୁଆ ସୃଷ୍ଟିହୁଏ । ଯେହେତୁ ସଭାପତିଙ୍କ ଅଫିସ୍ ରୁମ୍‌ରେ ଟଏଲେଟ୍ ସଂଲଗ୍ନ ନୁହେଁ ଏବଂ ଏକାଡ଼େମୀର ସର୍ବସାଧାରଣ ଟଏଲେଟ୍‌ରେ ମୂତ ବେସିନ୍‌ର ନଳାଗୁଡ଼ିକ ଭାଙ୍ଗିଯାଇଥିବାରୁ ମୂତ ଦେହରେ ପଡ଼େ, ଏଣୁ ସଭାପତି ଏଭଳି ହିନସ୍ତାରୁ ନିସ୍ତାର ପାଇବା ପାଇଁ ଶୀଘ୍ର ଶୀଘ୍ର ଅଫିସ୍ ଛାଡ଼ି ଘରକୁ ପଳେଇ ଯାଆନ୍ତି । ସଭାପତିଙ୍କୁ ଅଫିସ୍‌ରେ ବେଶି ସମୟ ନ ବସେଇ ଦେବାପାଇଁ ଏଭଳି ବ୍ୟବସ୍ଥା କରାଯାଇଛି ।

କେନ୍ଦ୍ର ଲଳିତ କଳା ଏକାଡ଼େମୀ ଭାରତ ସରକାରଙ୍କ କେନ୍ଦ୍ର ସଂସ୍କୃତି ବିଭାଗ ଅଧୀନରେ ଗୋଟିଏ ସନିୟନ୍ତ୍ରିତ ସଂସ୍ଥା । ଆମ ରାଜ୍ୟ ଏକାଡ଼େମୀକୁ ସନିୟନ୍ତ୍ରିତ ସଂସ୍ଥା କୁହାଯାଉଥିଲେ ମଧ ତାହା ବାସ୍ତବପକ୍ଷେ ସଂସ୍କୃତି ବିଭାଗର ଶାଖା ବିଭାଗ ବା ଉପବିଭାଗ ଭାବେ କାମକରେ । ମୋ କପାଳରେ କ'ଣ ଲେଖାଅଛି କେଜାଣି ମୁଁ ଗୋଟିଏ ଗୋଟିଏ ଘଡ଼ିସନ୍ଧି ମୁହୂର୍ତ୍ତରେ ଉଭୟ କେନ୍ଦ୍ର ଓ ରାଜ୍ୟ ଏକାଡ଼େମୀର ଦାୟିତ୍ୱ ନେଇଛି । ସେତେବେଳକୁ ଦିଲ୍ଲୀରେ ଚାରୋଟି ଗୋଷ୍ଠୀ । ଗୋଟିଏ ଖୋଦ୍ ସରକାରଙ୍କର, ଦ୍ୱିତୀୟଟି ଦିଲ୍ଲୀର ବରିଷ୍ଠ ଶିଳ୍ପୀମାନଙ୍କର, ତୃତୀୟଟି ଲଳିତକଳା ଏକାଡ଼େମୀ କର୍ମଚାରୀଙ୍କ, ଚତୁର୍ଥଟି ଉପାଧକ୍ଷ ଆନନ୍ଦ ଦେବଙ୍କର । ଏହି ଗୋଷ୍ଠୀମାନଙ୍କ ମଧରେ ଥିବା ଅହେତୁକ ଜଞ୍ଜାଳରୁ ବର୍ତ୍ତି କାମ କରିବାରେ ମୋତେ ଯଥେଷ୍ଟ ମାନସିକ ଓ ଶାରୀରିକ ଶକ୍ତିର ଅପଚୟ କରିବାକୁ ପଡୁଥିଲା । ଏବେ ଲଳିତ କଳା ଏକାଡ଼େମୀରେ ସେଭଳି ବ୍ୟବସ୍ଥା ନାହିଁ । କିନ୍ତୁ ଭଗବାନଙ୍କ ଅପାର କରୁଣାରୁ ମୁଁ ସେଥିରୁ ସହଜରେ ମୁକୁଳି ପାରିଛି । ପ୍ରଥମ ଓଡ଼ିଆ ସଚିବଙ୍କ କଥା କେନ୍ଦ୍ର ଲଳିତ କଳା ଏକାଡ଼େମୀ ସବୁବେଳେ ମନେରଖିବ । ସେତେବେଳର କଥା କହୁଛି । ଓଡ଼ିଶାର ସମଗ୍ର ସଂସ୍କୃତି ବିଭାଗର ବଜେଟ ଯାହାଥିଲା କେବଳ କେନ୍ଦ୍ର ଲଳିତ କଳା ଏକାଡ଼େମୀର ବଜେଟ ତାହା ଅପେକ୍ଷା ଚାରିଗୁଣ ବେଶିଥିଲା । ଧରାଯାଉ କେନ୍ଦ୍ର ଏକାଡ଼େମୀର ଗୋଟିଏ କଳାମେଳାରେ ଯେତିକି ଖର୍ଚ୍ଚହୁଏ, ଓଡ଼ିଶା ଏକାଡ଼େମୀର ସମଗ୍ର ବାର୍ଷିକ ଖର୍ଚ୍ଚ ତାହା ଅପେକ୍ଷା କମ୍ । କେନ୍ଦ୍ର ଏକାଡ଼େମୀର ପ୍ରକାଶନ ସଂସ୍ଥା ଖୁବ୍ ବଳିଷ୍ଠ । ସେମାନେ ବିଶ୍ୱସ୍ତରୀୟ ବହି ପ୍ରକାଶନ କରିଥାନ୍ତି । ସେମାନେ ତ୍ରିବାର୍ଷିକ ବିଶ୍ୱ ପ୍ରଦର୍ଶନୀ ଓ ଆନ୍ତର୍ଜାତିକ ସେମିନାରମାନ ଅନୁଷ୍ଠିତ କରାଇଥାନ୍ତି । ଦିଲ୍ଲୀ ସାଂସ୍କୃତିକ ମହଲରେ ବିଭିନ୍ନ ଦେଶର ଦୂତାବାସମାନଙ୍କରେ ଓ ସରକାରୀ ବିଭାଗମାନଙ୍କରେ ଲଳିତ କଳା ଏକାଡ଼େମୀ ସଚିବଙ୍କ ଖାତିର ଯଥେଷ୍ଟ । କେନ୍ଦ୍ର ସରକାର ନିହାତି ଆବଶ୍ୟକ ନହେଲେ ଏକାଡ଼େମୀର କାର୍ଯ୍ୟ ପ୍ରଣାଳୀରେ ହସ୍ତକ୍ଷେପ କରନ୍ତି ନାହିଁ ।

ପ୍ରଶ୍ନ- ଓଡ଼ିଶାରେ କଳାର ପ୍ରସାର ପାଇଁ ଆପଣ କେଉଁ ସଂକ୍ଷିପ୍ତ ମନ୍ତବ୍ୟ ଦେବେ ?

ଉତ୍ତର- ମୁଁ ଓଡ଼ିଶା ସରକାରଙ୍କୁ ବହୁଯୋଜନା, ପ୍ରସ୍ତାବ ଓ ପରାମର୍ଶ ଦେଇଛି । ସେଥିରୁ ନବେ ଭାଗ କାର୍ଯ୍ୟକାରୀ ହୋଇପାରିନି । କିଏ ଜଣେ କହିଛି ମନେ ପଡୁନି, 'ଷ୍ଟେଟ୍‌ମେଣ୍ଟ୍

Digitized by srujanika@gmail.com

ଦେଇ ଦେଇ ତା'ର ଢାଗା ଦରଜ ହେଇଗଲାଣି' । ସରକାରଙ୍କ କାର୍ଯ୍ୟକ୍ରମର ମୂଳରୂପାୟନ ଭିତରେ ସଂସ୍କୃତି ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ନାହିଁ । ସଂସ୍କୃତି ବିଭାଗ ଓ ଏକାଡ଼େମୀମାନଙ୍କର କାର୍ଯ୍ୟଦକ୍ଷତାରୁ ଆପଣ ସବୁକଥା ଅନୁମାନ କରିପାରୁଥିବେ । ଏବେ ଲୋକ ଦେଖାଣିଆର ଯୁଗ, ଭାଷଣର ଯୁଗ, ଅର୍ଥ ଉପାର୍ଜନର ଯୁଗ । ଏଣୁ ବର୍ତ୍ତମାନ ସଂସ୍କୃତି ଅବକ୍ଷୟମାଣ, ଆପଣତ ଖବର ରଖିଥିବେ ଲଳିତ କଳା ଏକାଡ଼େମୀର ସର୍ବୋଚ୍ଚ ସମ୍ମାନ ଧର୍ମପଦ ପୁରସ୍କାରକୁ ନେଇ ଯେଉଁଭଳି ବାଦବିବାଦ ଲାଗି ରହିଲା । କୋର୍ଟରେ ମକଦ୍ଦମା ହେଲା, ଇନ୍‌କୁଆରୀ କମିଶନ୍ ବସିଲା । ଏବେ ଯାଏଁ ତାର ସମାଧାନ ହେଇପାରିନି । ପୁଣି ଆପଣ ମୋ ଠାରୁ କିଭଳି ମନ୍ତବ୍ୟ ଆଶା କରୁଛନ୍ତି ? କାର୍ଯ୍ୟକାରୀ ହେଇ ନଥିବା ପ୍ରସ୍ତାବ, ଯୋଜନା ଓ ପରିକଳ୍ପନାମାନଙ୍କୁ ନେଇ ମୁଁ ଗୋଟିଏ ଚାରିଶହରୁ ଉର୍ଦ୍ଧ୍ୱ ପୃଷ୍ଠାର ବହି ପ୍ରକାଶ କରୁଛି । ତା'ର ନାମ **Justifying Convictions.** ତାହା ପାଠକଲେ ମୋ ବକ୍ତବ୍ୟ ସଂପର୍କରେ ସଂକ୍ଷେପରେ ନୁହେଁ ସବିଶେଷ ବିବରଣୀ ପାଇ ପାରିବେ ।

ପ୍ରଶ୍ନ- ଆପଣ ଏବେ କରୁଛନ୍ତି କ'ଣ ?

ଉତ୍ତର- ମୂଳତଃ ସ୍ୱାସ୍ଥ୍ୟ ରକ୍ଷା, ବିଭୁ ଆରାଧନା, ରାମଦେବଙ୍କ କପାଳଭାତି, ସୁଁ ସୁଁଇଆ ପ୍ରାଣାୟାମ, ସକାଳୁ ବେଲପତ୍ର, ଖରାବେଳ ଖାଇବାରେ କାକୁଡ଼ି । ମୁଁ ସ୍ୱାସ୍ଥ୍ୟରକ୍ଷା ପାଇଁ ଅପରେସନ୍‌ରେ ସାଢେ ପାଞ୍ଚଲକ୍ଷ ଟଙ୍କା ଖର୍ଚ୍ଚ କରିସାରିଲିଣି । ଆଉ ଅନ୍ୟୂନ ପନ୍ଦର ବର୍ଷ ବଞ୍ଚିବା ପାଇଁ ଚେଷ୍ଟା କରି ସ୍ୱାସ୍ଥ୍ୟରକ୍ଷା ପାଇଁ କରିଥିବା ଖର୍ଚ୍ଚ ଟଙ୍କା ଉଠେଇ ଦେବି । ସରସତୀ ବା ଜ୍ଞାନପୀଠର ସମ୍ଭାବନା ନାହିଁ । ହଁ ମୋର ମୃତ୍ୟୁପରେ ବି ମୋ ଚିତ୍ର ମୋତେ ବଞ୍ଚେଇ ଦେବ । କେତେଜଣ ବନ୍ଧୁ ଏବେ କହୁଛନ୍ତି ମୋ ସାହିତ୍ୟ ହିଁ କୁଆଡ଼େ ମୋତେ ଅଧିକ ବଞ୍ଚେଇ ଦେବ । ମୁଁ ଏବେ ବି ଅବସରପ୍ରାପ୍ତ, ବା ଭୂତପୂର୍ବ ନୁହେଁ । ବନାରସସ୍ଥିତ ଏଲିସ୍ ବୋନର୍ ଗବେଷଣା ସଂସ୍ଥାର ନିର୍ଦ୍ଦେଶକ, ଏଣେ ଫୁଲ୍‌ଟାଇମ୍ ଚିତ୍ରକର, ଲେଖକ ଓ ଗବେଷକ । ଚିତ୍ରରଚନା ହେଲା ମୋ ବିଭୁ ଆରାଧନା, ସାହିତ୍ୟ ରଚନା ହେଲା ରାମଦେବଙ୍କ କପାଳଭାତି ଆଉ ଗବେଷଣା ହେଲା ସୁଁ ସୁଇଁଆ ପ୍ରାଣାୟାମ । ବେଲପତ୍ର ଓ କାକୁଡ଼ି ପୁରସ୍କାର ଲୋଭରୁ ଭକ୍ଷଣ କରୁଛି । ସେ କଥା କାହାଠାରେ ପ୍ରକାଶ କରୁନି । ପୁରସ୍କାର କଥା ପଡ଼ିଲେ ସଂପୂର୍ଣ୍ଣ ଉଦାସୀନ ରହେ ।

ପ୍ରଶ୍ନ- ଆପଣଙ୍କ ଭବିଷ୍ୟତ ଯୋଜନା କ'ଣ ?

ଉତ୍ତର- ମୁଁ ଯଦି ପ୍ରବାଦପୁରୁଷ ପିକାସୋଙ୍କ ଭଳି ବା ଦିଲ୍ଲୀରେ ରହୁଥିବା କିଛି ଶିଳ୍ପୀଙ୍କ ଭଳି ଆଉଥରେ ବିବାହ କରିପାରନ୍ତି, ତାହେଲେ ମୁଁ ଜଣେ ସେଲିବ୍ରିଟି ହେଇପାରନ୍ତି । ଚିତ୍ର, ସାହିତ୍ୟ ଓ ଗବେଷଣା ତ ହେଲାଣି, ପୁଣି ବଂଚିରହିଲେ ଚାଲିବ । ମୁଁ ଜଣେ କାମୁକ (ବେଶି କାମ କରୁଥିବାରୁ) ଇଂରାଜୀରେ workholic ବ୍ୟକ୍ତି । ନୀରବ ନିଶ୍ଚଳ ହେଇ ବସି ପାରେନି । ମୁଁ ସମସ୍ୟା ସୃଷ୍ଟିକରେ ଓ ତାକୁ ସମାଧାନ କରିବାକୁ ଚେଷ୍ଟାକରେ । ମୁଁ ଅଥର୍ବ ହେଇ ବଞ୍ଚିରହିବା ପାଇଁ ଚାହେଁନି ।

ପ୍ରଶ୍ନ- ଭଲ ଚିତ୍ର କହିଲେ ଆପଣ କ'ଣ ବୁଝନ୍ତି ?

ଉତ୍ତର- ଉତ୍ତର ଅତ୍ୟନ୍ତ କଠିନ । ନିଜ ଚିତ୍ର ତ ନିଜକୁ ଭଲ ଲାଗିବା ସ୍ୱାଭାବିକ । ଚିତ୍ରର ଭଲମନ୍ଦ ଚିତ୍ରରେ ଅଛି ନା ଦ୍ରଷ୍ଟାର ଆଖିରେ ଅଛି, ତାହା ପ୍ରଥମେ ସ୍ଥିରୀକୃତ ହେବା ଆବଶ୍ୟକ

Digitized by srujanika@gmail.com

ଯାହା ଜମାରୁ ସମ୍ଭବ ନୁହେଁ । ପୁଣି ସବୁକଥାରେ ନିଜ ରୁଚିବୋଧ ଅଛି । ଆମର ଶିକ୍ଷା, ସଭ୍ୟତା, ଚଳଣି, ପରମ୍ପରା ଓ ପରିବେଶ ରୁଚି ନିର୍ଣ୍ଣୟ କରେ । ମୁଁ ଚିତ୍ରକୁ ବିଶ୍ୱଭାଷା ବୋଲି ସ୍ୱୀକାର କରେ । ତଥାପି ମୋ ପାଇଁ ଆଞ୍ଚଳିକ ଭାଷାର ଗୁରୁତ୍ୱ ମଧ୍ୟ ବେଶି । ଆଗରୁ ଚିତ୍ରକୁ ସର୍ଜନ ଉତ୍ସ, ପ୍ରକାଶର ପରିଭାଷା, ଶିଳ୍ପ ସିଦ୍ଧିର ସାକ୍ଷର କୁହାଯାଉଥିଲା । ଆଜିକାଲି ଏସବୁ କାବ୍ୟାଡ଼ମ୍ବର (ବାକ୍ୟାଡ଼ମ୍ବର ମଧ୍ୟ) ନାହିଁ । ଚିତ୍ର ଏକ ବିପଣନ ସାମଗ୍ରୀ, ପ୍ରଡକ୍ଟ । କଳାଟଙ୍କା ଖଟେଇବାର ଏକ ଅବଲମ୍ବନ । ଯିଏ ଚିତ୍ର କିଣୁଛି, ହୁଏତ ତା ନିଜ ପସନ୍ଦରେ କିଣୁଛି । କିଏ ଜଣେ ପରାମର୍ଶ ଦେଉଛି 'କ'ର ଚିତ୍ର କିଣ ପାଞ୍ଚବର୍ଷ ପରେ ବିକିଲେ ଲକ୍ଷେ ଟଙ୍କା ଦଶଲକ୍ଷ ହେବ । ତା ବୋଲି କ'ଣ ଭଲଛବି 'ଖ' ଆଙ୍କେ ନାହିଁ ? ଭାରତର ଜାତୀୟ ଆଧୁନିକ କଳା ସଂଗ୍ରହାଳୟରେ କିଛିବର୍ଷ ତଳେ ଜଣେ ନିର୍ଦ୍ଦେଶକ କାମ କରୁଥିଲେ, ତାଙ୍କ ନାଁ ଲକ୍ଷ୍ମୀ ପ୍ରସାଦ ସିହାରେ । ସିଏ ସେତେବେଳେ ଚିତ୍ର ପ୍ରଦର୍ଶନୀର ଅଣ-ନିର୍ବାଚିତ ଚିତ୍ରଗୁଡ଼ିକୁ ଦେଖି ସେଇଥିରୁ ପସନ୍ଦର ଛବି କିଣନ୍ତି । ଏହି ପଦ୍ଧତିରେ ମୋର **ମଙ୍ଗଳା** ଛବିଟି ସିଏ କିଣିଥିଲେ । ଆପଣଙ୍କ ନିଶ୍ଚୟ ଅନୁଭୂତି ଥିବ ବେଳେ ବେଳେ ଶ୍ରେଷ୍ଠ କୁହାଯାଉଥିବା ବା ପୁରସ୍କୃତ ବହିଟିଏ ଲେଖକର ଭଲ ବହି ନୁହେଁ । ଏଣୁ ଭଲ ଚିତ୍ରର ଗୋଟିଏ ନିର୍ଦ୍ଦିଷ୍ଟ ସଂଜ୍ଞା ସ୍ଥିର କରାଯାଇ ନପାରେ । ତଥାପି ବିନା ଦ୍ୱିଧାରେ କୁହାଯାଇପାରିବ ଅଜନ୍ତାରେ ଭିତ୍ତିଚିତ୍ରଗୁଡ଼ିକ ଅତ୍ୟନ୍ତ ଭଲ ବା କୋଣାର୍କ ମନ୍ଦିର ଭାସ୍କର୍ଯ୍ୟଗୁଡ଼ିକ ଅତ୍ୟନ୍ତ ଉନ୍ନତମାନର । ସେମିତି ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଖଣ୍ଡିକ ଭଲ ବହି । ଏ ସମସ୍ତ ଭଲ କାଳଜୟୀ ଏବଂ ସେଥିପାଇଁ ଏବେ 'ମନ୍ଦ'ର ପ୍ରଶ୍ନ ନାହିଁ । ଭଲ ମନ୍ଦର ଆପେକ୍ଷିକତା ଓ ପରିପ୍ରେକ୍ଷୀ ମଧ୍ୟ ଅଛି । ମୁଁ ଯଦି କହେ ମାଣିକମଡ଼ାର ପ୍ରାଗୈତିହାସିକ ଚିତ୍ରଗୁଡ଼ିକ ଭଲ, ତା'ର କୌଣସି ଅର୍ଥ ନାହିଁ । କାରଣ ବହୁ ଓଡ଼ିଆ ଏ ଚିତ୍ରଗୁଡ଼ିକୁ ଦେଖିନାହାନ୍ତି। ଭଲ କହିଦେବାର କିଛି ମାନେ ନାହିଁ । କୁହାଯାଇପାରେ ଚିତ୍ରଟିର ରଚନାଶୈଳୀ, ବର୍ଣ୍ଣସଂଯୋଜନା ଓ ରେଖାବିନ୍ୟାସ ଅତି ମନମୁଗ୍ଧକର ବା ଏ ଚିତ୍ରର ବିଷୟବସ୍ତୁ ସାରଗର୍ଭକ ଓ ତାତ୍ପର୍ଯ୍ୟପୂର୍ଣ୍ଣ । ଇଂରାଜୀରେ Nice ବା Good କହିଦେଲେ ବା ଓଡ଼ିଆରେ ଭଲ ବା ସୁନ୍ଦର କହିଦେଲେ ଚିତ୍ରର ଗୁଣବତ୍ତା ପ୍ରକାଶିତ ହେଇପାରେ ନାହିଁ । ଏଣୁ ଚିତ୍ରର ସମସ୍ତ ବିଭବର ତର୍ଜମା ରହିଲେ ଯାଇ ଆକଳନ ବିଶ୍ଳେଷଣାତ୍ମକ ହେଲା ବୋଲି କୁହାଯିବ ।

ପ୍ରଶ୍ନ- ଆଗାମୀ କାଲିର ଶିଳ୍ପୀ ଓ ସ୍ରଷ୍ଟାମାନଙ୍କୁ ଆପଣ କ'ଣ ବାର୍ତ୍ତା ଦେବେ ?

ଉତ୍ତର- ବାର୍ତ୍ତାଦେବା ଜଣେ ଶିଳ୍ପୀ ଓ ଲେଖକର କାମ ନୁହେଁ । ଲେଖକର ଲେଖା ମଧ୍ୟରେ ବା ଶିଳ୍ପୀର କଳା ସୃଷ୍ଟିରେ ବାର୍ତ୍ତାର ପ୍ରଚୋଦନା ରହିଥାଏ । ଆଗାମୀ କାଲି ଶିଳ୍ପୀମାନଙ୍କ ପାଖରେ ଆମେ ପ୍ରାଗୈତିହାସିକ ଯୁଗର ମଣିଷ । ସେମାନେ ତୂଳୀରେ କି ଛବି ଆଙ୍କିବେ ? କ'ଣ ଗୋଟିଏ ଟିପି ଦେଲେ ଛବିଟିଏ ଆପେ ଆପେ ହେଇଯିବ ବା ଉଭେଇ ଯିବ । ଏସବୁ ସତ୍ତ୍ୱେ ସୃଜନଶୀଳ ମଣିଷର ଗୁରୁତ୍ୱ ଓ ଆଦର ଯୁଗେ ଯୁଗେ ବଳବତ୍ତର ରହିବ । ମେସିନ୍ ସୃଜନବିଦ୍ୟାରୁ ସୃଷ୍ଟି । ଏଣୁ ଶିଳ୍ପ ଓ ସୃଜନବିଦ୍ୟାର ବ୍ୟାପକତା ମଣିଷମାନଙ୍କୁ ସଦାକାଳେ ଆଚ୍ଛନ୍ନ କରି ରଖିବ । ଏହାର ଅବବୋଧ ପାଇଁ ଚେଷ୍ଟିତ ହେଲେ ଭଗବତ୍ ଦର୍ଶନ ମଧ୍ୟ ମିଳିପାରିବ। ଏହା ବାର୍ତ୍ତା ହୋଇପାରେ ।

Digitized by srujanika@gmail.com

ସଞ୍ଜୟ ଭଟ୍ଟ

## ବର୍ଣ୍ଣବିଭୋର ଡ୍ରଇଁ ମାଷ୍ଟର : ଦିନନାଥ ପାଠୀ

**ଯେଉଁଠି ବର୍ଣ୍ଣମାନେ ସେମାନଙ୍କ ରଙ୍ଗର ସାମ୍ରାଜ୍ୟରୁ ଫେରିପଡ଼ି କଥାର ମାୟା ଜାଲରେ ଛନ୍ଦି ହୋଇଯାଆନ୍ତି ପୁଣି ଯେଉଁଠି ଚିତ୍ର ଓ କଥା ନିଜ ନିଜର ଆତ୍ମପ୍ରତ୍ୟୟ ଖୋଜି ଖୋଜି ଗବେଷଣାର ରୌଦ୍ରସ୍ନାତ ମଧ୍ୟାହ୍ନରେ ସପ୍ନମାନଙ୍କୁ ତଥ୍ୟରେ ଓ ବାସ୍ତବରେ ପରିଣତ କରିଦିଅନ୍ତି। ଯେଉଁଠି ପ୍ରତ୍ୟେକ ଚିନ୍ତା, ପ୍ରତ୍ୟେକ ବକ୍ତବ୍ୟ ସୁନେଲି ଫ୍ରେମରେ ଚିତ୍ରହୋଇ ଝୁଲୁଥାଏ, ସିଏ ବ୍ୟକ୍ତି ନୁହଁନ୍ତି, ଜଣେ ଅନୁଷ୍ଠାନ। ଗଞ୍ଜାମ ଜିଲ୍ଲାର ପାରମ୍ପରିକ ଜନପଦ ଦିଗପହଣ୍ଡି ଗଡ଼ରୁ ଡ୍ରଇଁମାଷ୍ଟର ଜୀବନ ଆରମ୍ଭ କରି ଭାରତର ଶୀର୍ଷ କଳା ଅନୁଷ୍ଠାନ ଲଳିତ କଳା ଏକାଡ଼େମୀର ପ୍ରଥମ ଓଡ଼ିଆ ସଚିବ ଭାବେ ଓ ବିଗତ ତିନି ଦଶନ୍ଧି ଧରି ସୁଇଜରଲ୍ୟାଣ୍ଡର ଜୁରିକ୍ ନଗରୀସ୍ଥିତ ରିଟ୍‌ବର୍ଗ୍ ସଂଗ୍ରହାଳୟର ଅବୈତନିକ କ୍ୟୁରେଟର୍ ଭାବେ ନିଜର କଳାଯାତ୍ରାକୁ ଦୀର୍ଘ ଓ ବ୍ୟାପକ କରିଦେଇ ସଂସ୍କୃତିର ବହୁ ସମ୍ଭାବନାର ଦ୍ୱାରମାନଙ୍କୁ ଉନ୍ମୋଚନ କରିବାରେ ସମର୍ଥ ହେଇପାରିଛନ୍ତି। ଓଡ଼ିଶାର ବହୁ ବୁଦ୍ଧିଜୀବୀ ହୁଏତ ଜାଣିନଥିବେ ଯେ ଡକ୍ଟର ପାଠୀ ଭାରତର ଭୂତପୂର୍ବ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ଚିତ୍ରକଳା ଶିକ୍ଷା ପାଇଁ ଗୃହଶିକ୍ଷକ ନିଯୁକ୍ତ ହୋଇଥିଲେ। ଓଡ଼ିଶାରୁ ପ୍ରଥମ ଗବେଷକ ଭାବେ ସେ ଜବାହରଲାଲ୍ ନେହୁରୁ ଫେଲୋସିପ୍, ଏ.ଏଲ୍. ବାସମ୍ ମେମୋରିଅଲ୍ ଫେଲୋସିପ୍, ଜାପାନ ଫାଉଣ୍ଡେସନ୍ ଫେଲୋସିପ୍, ଭିକ୍ଟୋରିଆ ଆଲ୍‌ବର୍ଟ୍ ମ୍ୟୁଜିୟମ୍, ଲଣ୍ଡନ ଫେଲୋସିପ୍, ବ୍ରିଟିଶ୍ କାଉନ୍‌ସିଲ୍ ଫେଲୋସିପ୍ ଓ ଆଲିସ୍ ବୋନର୍ ଫେଲୋସିପ୍ ଭଳି ଜାତୀୟ ଓ ଆନ୍ତର୍ଜାତୀୟ ସମ୍ମାନର ଅଧିକାରୀ। ଆମ ଦେଶର ଅନ୍ୟତମ ପ୍ରାଚୀନ ଅନୁଷ୍ଠାନ ଏକାଡ଼େମୀ ଅଫ୍ ଫାଇନ୍ ଆର୍ଟ୍ ଆଣ୍ଡ କ୍ରାଫ୍‌ସ୍ ପକ୍ଷରୁ କଳାଶ୍ରୀ ଉପାଧି, ଜଳରଙ୍ଗର ଚିତ୍ର ଶ୍ରୀରାଧା ପାଇଁ ଭାରତର ରାଷ୍ଟ୍ରପତିଙ୍କ ରଜତ ଫଳକ, ବ୍ୟାଘ୍ର ଓ ପଦ୍ମବନ ତୈଳଚିତ୍ର ପାଇଁ ଚୀନ ସରକାରଙ୍କ ଆର୍ନ୍ତଜାତିକ ସମ୍ମାନରେ ଭୂଷିତ। ସେ ଭାରତ ସରକାରଙ୍କ କମିଶନର୍ ଭାବେ ପୁରାତନ ସୋଭିଏତ ସଂଘ ଓ ସୁଇଡେନ୍‌ରେ ଭାରତ ଉତ୍ସବ - ଲୋକପ୍ରିୟ ଚିତ୍ରକଳା ପ୍ରଦର୍ଶନୀ ଦାୟିତ୍ୱରେ ଥିଲେ। ଏହା ବ୍ୟତୀତ ସେ ବହୁ ଆନ୍ତର୍ଜାତୀୟ କଳାପ୍ରକଳ୍ପର ରଚୟିତା।**

**ଏଭଳି ଜଣେ ପ୍ରତିଭାସମ୍ପନ୍ନ ଓ ଆଦରଣୀୟ ସୃଜନ ବିଭୋର ବ୍ୟକ୍ତିଙ୍କ ସାନ୍ନିଧ ଲାଭ କରି ମୁଁ କୃତାର୍ଥ। ମୁଁ ତାଙ୍କରି ବ୍ୟକ୍ତ ମଧୁର କଳା-ସ୍ନେହ ପରିସରରୁ ମୋ ଚିତ୍ରଶିକ୍ଷା ଆରମ୍ଭ କରିଥିଲେ ମଧ ବ୍ୟକ୍ତିତ୍ୱର ସୁଗନ୍ଧିତ ପାଖୁଡ଼ାମାନଙ୍କୁ ଉନ୍ମୋଚନ କରିବାର ସୁଯୋଗ ପାଇ ନଥିଲି। ଏଇଠି ଏଭଳି ଗୋଟିଏ ପ୍ରଚେଷ୍ଟାରୁ ଝଲସି ଉଠିଥିବା କେତେକ ମଂଜ କଥା-ଅନ୍ତରଙ୍ଗ ଆଳାପରୁ ନିଗିଡ଼ି ପଡ଼ିଥିବା କେତେକ ସର୍ବିତ ଫର୍ଦ୍ଦ। - ସଂଜୟ ଭଟ୍ଟ**

**ସଂଜୟ: ଆପଣଙ୍କ ସଂପର୍କରେ କୁହାଯାଇଥାଏ ଯେ ଆପଣ ମୂଳତଃ ଜଣେ ବର୍ଣ୍ଣର ବଣିକ ହେଇ ମଧ ସୃଜନର ଅନ୍ୟାନ୍ୟ ଇଲାକାରେ ଧସେଇ ପଶିଛନ୍ତି। ଏହା କ'ଣ ପୁରସ୍କାର ଲୋଭ ନା ଅନନ୍ୟ ହେବାର ପ୍ରଚେଷ୍ଟା?**

**ଦିନନାଥ:** ଭଗବାନ ଶ୍ରୀକୃଷ୍ଣ ଭଗବଦ୍ ଗୀତାରେ ଅର୍ଜ୍ଜୁନଙ୍କୁ ଉପଦେଶ ଦେବା ଛଳରେ କହିଥିଲେ, 'ତମେ କର୍ମରେ ବିଶ୍ୱାସ କର ଫଳରେ ନୁହେଁ।' ପୁରସ୍କାର କ'ଣ ଗୋଟାଏ ସାହିତ୍ୟ-ଫଳ ଯେ ମୁଁ ଶ୍ରୀକୃଷ୍ଣଙ୍କ ଉପଦେଶ ମାନିଥାନ୍ତି। ପୁରସ୍କାର ଏକ କ୍ଷଣିକ ଉତ୍ତେଜନା, କଣ୍ଡୁ ମର୍ଦ୍ଦନର ସାମୟିକ ଆନନ୍ଦ। ମଣିଷ ଜୀବନରେ କିନ୍ତୁ ଏଭଳି ଉତ୍ତେଜନା ଓ ଆନନ୍ଦର ଆବଶ୍ୟକତା ଅଛି। ଚିତ୍ରକଳା ଜଗତ ଅପେକ୍ଷା ସାହିତ୍ୟରେ ପୁରସ୍କାରର ସଂଖ୍ୟା ଅନେକ। ଗ୍ରହୀତାର ଗୁଣ ବା ଗ୍ରହଣ କରିବାର କ୍ଷମତା ଉପରେ ଏସବୁ ପୁରସ୍କାର ନିର୍ଭରଶୀଳ, ଦାତାର ଅର୍ଥନୈତିକ କ୍ଷମତା ଓ ଦେବାର

Digitized by srujanika@gmail.com

ପ୍ରବଣତା ଉପରେ ମଧ ଏହା ନିର୍ଭର କରେ । ଏସବୁ ଦିଆ ନିଆ ଭିତରେ ଅସଲ ସାହିତ୍ୟ ଗୌଣ ହେଇଯାଏ । ପୁରସ୍କାର ପାଇବା ଆଶାରେ ମୁଁ ସାହିତ୍ୟ କରୁନି । ଯେହେତୁ ପୁରସ୍କାରମାନେ ମୋ ଆଖି ଆଗରେ ଅଦିନ ଆତ ଭଳି ଝଡୁଛନ୍ତି, ସେଥିରୁ ଗୋଟିଏ ଦୁଇଟି ଗୋଟେଇବାରେ ଅସୁବିଧା କେଉଁଠି ? ତମେ (ପୁରାତନ ଛାତ୍ର ବୋଲି ଏଭଳି ଆନ୍ତରିକ ସମ୍ବୋଧନ) ପୁରସ୍କାର ବ୍ୟାକରଣ ସଂପର୍କରେ ନିଶ୍ଚୟ ସଚେତନ ଥିବ । ଓଡ଼ିଆ ସାହିତ୍ୟ ପାଇଁ ଉପଲବ୍ଧ ସମସ୍ତ ପୁରସ୍କାର ରାଶି, ଓଡ଼ିଶା ସାହିତ୍ୟ ଏକାଡ଼େମୀରୁ ଜ୍ଞାନପୀଠ ବା ସରସ୍ୱତୀଯାଏଁ ମିଶେଇ ହିସାବ କଲେ ପନ୍ଦର ଲକ୍ଷ ଟଙ୍କାରୁ ବେଶି ହେବନାହିଁ । ତମେ ଭଲଭାବେ ଜାଣିଛ ଯେ ଆମର କେତେକ ଯୁବ ଓଡ଼ିଆ ଶିଳ୍ପୀଙ୍କ ଗୋଟିଏ ଗୋଟିଏ ଛବିର ଦାମ କୋଟିଏ ଦେଢ଼କୋଟି ଟଙ୍କାରେ ପହଞ୍ଚିଲାଣି । ଏଭଳି ଏକ ସମୟରେ ମୁଁ ଚିତ୍ରକଳାକୁ ପଛରେ ପକାଇ ସାହିତ୍ୟରେ ଧସେଇ ପଶିଛି ଏହା କେତେ କରି ବିଜ୍ଞତାର କଥା, ଆଉ ମୁଁ କିଭଳି ଜଣେ ପାଷାଣ୍ଡ ଓ ପୁରସ୍କାର ଲୋଭୀ ତମେ ତାହା ଅନୁମାନ କରୁଥିବ । ଆମେ ବୈଶ୍ୟବୃତ୍ତି କରିବାନି ବୋଲି ପ୍ରତିଜ୍ଞା କରି ବ୍ରାହ୍ମଣବୃତ୍ତି (ସମସ୍ତ ସୃଜନକର୍ମକୁ ମୁଁ ବ୍ରହ୍ମବୃତ୍ତି ବା ବ୍ରାହ୍ମଣବୃତ୍ତି ବୋଲି କହୁଛି)ର ଆଶ୍ରୟ ନେଲେ । ଅବଶ୍ୟ ଏହି ବୃତ୍ତିରେ ଭିକ୍ଷାଥାଳ ଧରି ଦ୍ୱାରସ୍ଥ ହେବାର ବିଶେଷ ସମ୍ଭାବନା ଥିବାରୁ 'ଆହାରେ ବ୍ୟବହାରେ ଚ ତ୍ୟକ୍ତ ଲଜ୍ଜା'- ଆପ୍ତବାକ୍ୟ ଭଳି ଯାହା, ଯେତିକି ପରିମାଣରେ ପ୍ରାପ୍ୟ ହେଲା ତାହା ବିନା ବିଚାରରେ ଗ୍ରହଣୀୟ । ଆମ ଓଡ଼ିଆ ସାହିତ୍ୟର ପ୍ରବୀଣ ବ୍ୟକ୍ତିମାନେ ଏଭଳି ଆଦର୍ଶରେ ଅନୁପ୍ରାଣିତ । ମୁଁ ଛାର ଅକିଞ୍ଚନ ମାତ୍ର ।

ବହୁ ଓଡ଼ିଆ ସାହିତ୍ୟିକ ଏକାଧାରରେ ଶିଳ୍ପୀ ଓ ଲେଖକ ବୋଲି ପରିଚୟ ଦେବା ପାଇଁ (ବା ରବୀନ୍ଦ୍ରନାଥ ବୋଲି ବାହାସ୍ଫୋଟ ମାରିବା ପାଇଁ) ଏଣୁ ତେଣୁ ଦି'ଚାରି ଫର୍ଦ୍ଦ ଗାରିଆ ଗାରେଇ କରି ବା ମାଟି ମେଞ୍ଚାଏ ଚିପା ଚିପିକରି ବା ନଖକଟା ଲହୁରୁଣୀରେ ଖଡ଼ି ପଥରରୁ ଖଣ୍ଡେ ଦି'ଖଣ୍ଡ ଖୋଳା ଖୋଳି କରି ଶିଳ୍ପୀ ବୋଲି ଫୁଟାଣି ମାରୁଛନ୍ତି । ଆମର କେତେକ ଓଡ଼ିଆ ସମାଲୋଚକ ମଧ ସେଭଳି ସାହିତ୍ୟିକଙ୍କୁ ଏକାଧାରରେ ସାହିତ୍ୟିକ ଓ ଶିଳ୍ପୀ କହିବା ପାଇଁ ଆବୋରି ପଡୁଛନ୍ତି । ଦୟାକରି ତମେ ସେମାନଙ୍କ ଦଳରେ ମୋତେ ପକ୍ଷଭୁକ୍ତ କରନାହିଁ । ମୋତେ ସାହିତ୍ୟିକର ଶ୍ରେୟ ନଦେଲେ ମୋର ବିଶେଷ କ୍ଷତି ହେବନାହିଁ, ମୋ ପାଇଁ ଚିତ୍ରକଳା, ସାହିତ୍ୟ, ଗବେଷଣା, କଳା ଇତିହାସ ସବୁ ଅଭିନ୍ନ । ମୁଁ ଅତ୍ୟନ୍ତ ବିନମ୍ରତାର ସହିତ କହିବି ମୋ ଚିତ୍ରାନୁଭୂତିର ନିଚ୍ଛକ କଥା ହିଁ ମୋ ସାହିତ୍ୟ । ଜଣେ ଶିଳ୍ପୀର ସୃଜନ ଅନୁଭବକୁ ଶିଳ୍ପୀ ନ ହୋଇ କିଭଳି ସାହିତ୍ୟରେ ପ୍ରକାଶ କରିହେବ ? ପରୋକ୍ଷ ଅନୁଭୂତି ପରୋକ୍ଷ ସାହିତ୍ୟ ବା ଶସ୍ତା ବରାଦି ସାହିତ୍ୟ ସୃଷ୍ଟି କରିଦେଇପାରେ, ତାହା ସତ୍ୟନିଷ୍ଠ ହେଇପାରେନା । ମୁଁ ନିଜକୁ ଅନନ୍ୟ କହିଲେ ତମେ କ'ଣ ମୋତେ ଈର୍ଷା କରିବ ନା ଘୃଣା କରିବ ?

**ସଂଜୟ: ଅନେକ ସାହିତ୍ୟିକମାନଙ୍କର ଧାରଣା ଯେ ଚିତ୍ରକର୍ମର ପରିସର ବୌଦ୍ଧିକ ସ୍ତରରେ ପହଞ୍ଚିପାରେ ନାହିଁ । ସେଥିରେ ସୃଜନର ବିସ୍ତାର ଓ ଗଭୀରତା ସୀମିତ । ଆପଣ କ'ଣ ଏଭଳି ଗୋଟିଏ ଚିନ୍ତା ସହିତ ଏକମତ ?**

**ଦିନନାଥ:** ସାହିତ୍ୟିକଙ୍କ ସଂପର୍କରେ ଚିତ୍ରଶିଳ୍ପୀମାନେ କି ମତାମତ ଦିଅନ୍ତି ସେସବୁକୁ ମଧ ବିଚାରକୁ ନିଆଗଲେ ସମସନ୍ତୁଳିତ ମତାମତ ପ୍ରକାଶ ପାଇଲା ବୋଲି କୁହାଯିବ । ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କ ଜୀବନର ଶେଷାର୍ଦ୍ଧରେ ଚିତ୍ର ସର୍ଜନାରେ ଅନୁପ୍ରାଣିତ ହେଲେ । ଚିତ୍ର ସର୍ଜନା ତାଙ୍କୁ ଏଭଳି ଅନୁପ୍ରାଣିତ କଲା ଓ ଏତେ ଆନନ୍ଦ ଦେଲା ଯେ ସାହିତ୍ୟ ସର୍ଜନାରେ ତାଙ୍କର ଅନେକ ସମୟର ଅପଚୟ ହେଇଛି ବୋଲି କହିଲେ । ଚିତ୍ରଶିଳ୍ପୀମାନେ ଜାଣନ୍ତି ଅଧିକାଂଶ ଓଡ଼ିଆ ସାହିତ୍ୟିକ କେତେ ପରିମାଣରେ ଚିତ୍ର-ଅନ୍ଧ (visual illiterate) । ଚିତ୍ରକଳା ସଂପର୍କରେ ଏଣୁତେଣୁ ପଢ଼ିଦେଇ ଅନୁଭବ ଓ ରୁଚିର ଧାର ନଧରି କିଛି ସାହିତ୍ୟିକ ଭାବନ୍ତି ସେମାନଙ୍କ ଚିତ୍ରକଳା ସଂପର୍କରେ ଧାରଣା ହୋଇଗଲା । କୌଣସି ଗୋଟିଏ ପରିପ୍ରେକ୍ଷୀରେ ମୁଁ କହିଥିଲି ପିକାସୋ, ହୁସେନ୍ ବା ଯତୀନ ଦାସଙ୍କ ତୂଳୀର ଗୋଟିଏ ସଂଘାତ ସହିତ ଆଠଶହ ପୃଷ୍ଠାର ଉପନ୍ୟାସ ବି ସମକକ୍ଷ ହୋଇନପାରେ ।

Digitized by srujanika@gmail.com

ସଂଭ୍ରମ ଦୃଷ୍ଟିରୁ ମୋ ନିଜକଥା ନ କହି ଯତୀନଙ୍କ କଥା କହିଛି । ବିଂଶ ଶତାବ୍ଦୀ ଓଡ଼ିଶାର ଶ୍ରେଷ୍ଠ ଲେଖକ ଗୋପୀନାଥ ମହାନ୍ତି ଓ ତାଙ୍କ ସମୁଦି ବିଂଶ ଶତାବ୍ଦୀ ଓଡ଼ିଶାର ଚିତ୍ରଶିଳ୍ପୀ ବିପିନ ବିହାରୀ ଚୌଧୁରୀଙ୍କ ଗରିମାମୟ ରେଖାର କିଏ ବା ତୁଳନା କରିଛି । ଆମର ଅନେକ ଓଡ଼ିଆ ଉପେନ୍ଦ୍ର ମହାରଥୀଙ୍କ ରେଖାର ସାଙ୍ଗୀତିକତା, ଯଦୁନାଥ ସୁପକାରଙ୍କ ବର୍ଣ୍ଣର ଆଡ଼ମ୍ବର ବା ରଘୁସିଂହଙ୍କ ଭାସ୍କର୍ଯ୍ୟର ଆବେଗ ବୁଝିବାରେ ସକ୍ଷମ ହେଇନାହାନ୍ତି । ଜଣେ କବି ବା ସାହିତ୍ୟିକଙ୍କୁ ଅନ୍ୟ ଜଣେ ଯଶଧର ଶିଳ୍ପୀଙ୍କ ସହିତ ଏକା ମଞ୍ଚରେ ବସେଇ କବିଙ୍କୁ ଲକ୍ଷେ ଟଙ୍କାର ପୁରସ୍କାର ହାତକୁ ବଢ଼େଇ ଦେବାବେଳେ ଶିଳ୍ପୀଙ୍କ ବେକରେ ଗାମୁଛା (ଭଦ୍ର ଭାଷାରେ ଉପାୟନ) ପକେଇବାର ଧୃଷ୍ଟତା ବା ହୀନମନ୍ୟତା ଅତ୍ୟନ୍ତ ଲଜ୍ଜାଜନକ । ଏହା ସମୁଦ୍ର ମନ୍ଥନ ବେଳର ଅମୃତ ବିତରଣର ମାନସିକତା ଭଳି ଲାଗେ । ସେଭଳି ବ୍ୟକ୍ତିମାନେ ହିଁ କହିଥାନ୍ତି ଚିତ୍ରକର୍ମର ପରିସର ବୌଦ୍ଧିକ ସ୍ତରରେ ପହଞ୍ଚିପାରିନି । ମୁଁ ଏଭଳି ଅବିଚାର ଓ ବ୍ୟବସ୍ଥାର ଘୋର ନାସପନ୍ଦ କରେ ।

**ସଂଜୟ – ଚିତ୍ରର ନିଜର ଭାଷା ଥିଲେ ବି ତାହା ବସ୍ତୁତଃ ଅବ୍ୟକ୍ତ । ଏଣୁ ତାକୁ ସାହିତ୍ୟ ଉପରେ ନିର୍ଭର କରିବାକୁ ହୁଏ– ଏ ସଂପର୍କରେ ଆପଣ କ'ଣ କହିବାକୁ ଚାହାନ୍ତି ?**

**ଦିନନାଥ** - ଧର୍ମ, ଦର୍ଶନ, ନାଟକ, ଶିଳ୍ପ, ଅର୍ଥନୀତି, ସମାଜବିଜ୍ଞାନ ଓ କଳା ସମାଲୋଚନା ପ୍ରଭୃତି ଚିନ୍ତା ଓ ସୃଜନର ବିଭିନ୍ନ ବିଭାବ ସାହିତ୍ୟ ମାଧ୍ୟମରେ ହିଁ ପ୍ରକାଶିତ ହୋଇଆସିଛି । ଏହାହିଁ ଉନ୍ନତ ସାହିତ୍ୟର ପରମ୍ପରା । ଭରତମୁନିଙ୍କ ନାଟ୍ୟଶାସ୍ତ୍ର, ବିଶ୍ୱନାଥ କବିରାଜଙ୍କ ସାହିତ୍ୟ ଦର୍ପଣ, ମହେଶ୍ୱର ମହାପାତ୍ରଙ୍କ ଅଭିନୟ ଚନ୍ଦ୍ରିକା ପ୍ରଭୃତି ରଚନା ଉଚ୍ଚକୋଟୀର ସାହିତ୍ୟ । ଆମ ସମୟର କଥା କହୁଛି । ବିନୋଦ ରାଉତରାୟଙ୍କ 'ଓଡ଼ିଶୀ ଚିତ୍ରକଳା' ଶୀର୍ଷକ ଗୋଟିଏ ପୁସ୍ତିକାକୁ ଶ୍ରେଷ୍ଠ ସାହିତ୍ୟ କୃତି ଭାବେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କୃତ କରିଥିଲେ । ଏଥିରେ କିଏ କାହା ଉପରେ ନିର୍ଭର କରିବା କଥା କାହିଁକି ଉଠୁଛି । ମୁଁ ଯଦି କହେ ସାହିତ୍ୟ ମାନବ ବିଦ୍ୟା ଓ ମାନବ ଅନୁଭୂତି ଉପରେ ନିର୍ଭର କରି ତିଷ୍ଠି ରହିଛି ତମେ କ'ଣ ଭାବିବ ଯେ ଏହି ନିର୍ଭରଶୀଳତା ସାହିତ୍ୟକୁ ନ୍ୟୁନ କରିଦେଉଛି ? ଯେତେବେଳେ ସାହିତ୍ୟର ଜନ୍ମ ହେଇନଥିଲା ସେତେବେଳେ ଚିତ୍ରକଳା ହିଁ ମଣିଷର ଭାଷା ଓ ସାହିତ୍ୟର ଭୂମିକା ଗ୍ରହଣ କରିଥିଲା । ଏହି ପରମ୍ପରା ଅନେକ ବର୍ଷଯାଏଁ ବଳବତ୍ତର ରହିଲା । ଚିତ୍ର-ପାଠ କଥା କହିଲେ ଅନେକ ଏବର ସାହିତ୍ୟିକ ଅମଙ୍ଗ ହୋଇପାରନ୍ତି । ଚିତ୍ର-ପାଠ ହିଁ ନୀରବ ଓ ଅବ୍ୟକ୍ତ ଭାଷାର ଅବଧାରଣା । ଏଭଳି ନୀରବ ସଂପର୍କ ସାହିତ୍ୟର ମଧ୍ୟ ଉପାଦାନ । ଆମେ ସାହିତ୍ୟର ସଂଜ୍ଞାନେଇ ସଂକୁଚିତ ମନୋଭାବ ପୋଷଣ କରୁଛେ । ଚିତ୍ରକଳା ଜଗତରେ ଚାରୁକଳା ବା ସୂକ୍ଷ୍ମକଳା (fine art) ଓ କାରୁକଳା (craft) ନେଇ ଯିମିତି ଦୁଇଟି ଅଯଥା ବିଭାଗ ସୃଷ୍ଟି ହେଇଯାଇଛି ସାହିତ୍ୟରେ ସିମିତି ସୃଜନଶୀଳ ଉଚ୍ଚତର ସାହିତ୍ୟ (creative literature) ଏବଂ ଅନ୍ୟ ସାଧାରଣ ସାହିତ୍ୟ (ପ୍ରବନ୍ଧ, ସମାଲୋଚନା ଓ ଗବେଷଣା) କ୍ରମରେ ଦୁଇଟି ବିଭାଗ ସୃଷ୍ଟି ହୋଇଯାଇଛି । ଏସବୁ ମାନସିକତାର କେଉଁଠୁ ଆମଦାନୀ କେଜାଣି ? କୁଆଡ଼େ କବିତା, ଗପ, ଉପନ୍ୟାସ ହିଁ ଉଚ୍ଚକୋଟୀର ସାହିତ୍ୟ । ଏଭଳି ପରିସ୍ଥିତିରେ ଚିତ୍ରକଳା ଗବେଷଣାକୁ କିଏ ପଚାରେ ? ଅଧିକାଂଶ ସାହିତ୍ୟିକ ଚିତ୍ରକଳାର ଧାର ଧାରନ୍ତି ନାହିଁ । ଏଣେ ଶିଳ୍ପୀମାନେ ରାତିଦିନ ଭାସ୍କର୍ଯ୍ୟ ଓ ଚିତ୍ର ସର୍ଜନା କଲେ ଏବଂ ବେପାରରେ ମାତିଲେ । କଳା କଥା କହିବା ପାଇଁ ସାହିତ୍ୟର ଆଶ୍ରା କରିବାକୁ ବାଧ । କହିଲ ଦେଖି ବର୍ଣ୍ଣ ସାହିତ୍ୟର ନା କଳାର ? ମନେହୁଏ ବର୍ଣ୍ଣ ବେଳେବେଳେ ରଙ୍ଗ ଓ ବର୍ଣ୍ଣିଳ ତ ଆଉବେଳେ ଅକ୍ଷର ଓ ସାହିତ୍ୟାୟନ । ବର୍ଣ୍ଣନା ଭିତରେ ସାହିତ୍ୟର ଓ କଳାର ମଧ ଛଟା ଅଛି । ଏହାହିଁ ଚିତ୍ରଭାଷା ଓ ସାହିତ୍ୟ ଭାଷା ।

**ସଂଜୟ: ଆପଣ ଯେହେତୁ ଚିତ୍ରଭାଷାର ଅନନ୍ୟତା ଓ ସତନ୍ତ୍ରତାକୁ ନେଇ ନାରା ଉଠେଇଛନ୍ତି, ଆପଣ କ'ଣ ବିଚାର କରନ୍ତି ଆପଣଙ୍କ ଚିତ୍ରଭାଷା, ସାହିତ୍ୟର ଭାଷା ବା କବି ଭାଷା ଭଳି ବୋଧଗମ୍ୟ ହୋଇପାରିବ ଓ ସାଧାରଣ ପାଠକ ଚିତ୍ରଭାଷାକୁ କବିତା, ଗଳ୍ପ ଓ ଉପନ୍ୟାସ ଭଳି ଗ୍ରହଣ କରିପାରିବେ ?**

Digitized by srujanika@gmail.com

**ଦିନନାଥ:** ବହିଟିଏ ଲେଖା ସରିଲେ ଚିତ୍ରଶିଳ୍ପୀଟିଏ ଲୋଡ଼ାପଡେ। ବାହାଘର, ବ୍ରତଘର ଓ ଅନ୍ୟାନ୍ୟ ଶୁଭକାର୍ଯ୍ୟରେ ଶିଳ୍ପୀର ଭୂମିକା ଅନସ୍ୱୀକାର୍ଯ୍ୟ। ଅବଶ୍ୟ ଏଠାରେ ଶିଳ୍ପୀର କାମ କେବଳ ଅଳଙ୍କରଣ। ତା'ର ଅଙ୍କା ପ୍ରଚ୍ଛଦପଟ କେବଳ ଘୋଡ଼ଣି, ପୋଷାକ, ତାହା ବହିର ଆତ୍ମାକୁ ଛୁଏଁ ନାହିଁ ବୋଲି ବିଶିଷ୍ଟ ପ୍ରଚ୍ଛଦଶିଳ୍ପୀ ଅସୀମ ବସୁ କହନ୍ତି। ତଥାପି ଲେଖକର ଆବଶ୍ୟକତା ଭିତରେ ଚିତ୍ର ସ୍ଥାନ ପାଏ। ଏହାହିଁ ଗୁରୁତ୍ୱପୂର୍ଣ୍ଣ କଥା। ପାଠକ ଚିତ୍ରକୁ ଯିମିତି ବୁଝୁ ଚିତ୍ର ସାହିତ୍ୟ ଭିତରେ ସଦାକାଳେ ଆସନପାରି ରହିଥାଏ। ଶିଶୁ ସାହିତ୍ୟ ତ ଚିତ୍ର ବିନା ତିଷ୍ଠି ପାରେନି। ମଧ୍ୟଯୁଗୀୟ କାବ୍ୟ କବିତା ଚିତ୍ରକୁ ଆଦରୁଥିଲେ। ମଧ୍ୟଯୁଗୀୟ ସାହିତ୍ୟ ଭଳି ସେହି ଚିତ୍ର ଗୁଡିକ ଆମର ଅମୂଲ୍ୟ ସଂପଦ। କେବଳ ସେତିକି ନୁହେଁ ଏହି ଚିତ୍ରଗୁଡ଼ିକୁ ପାଠରୁ ଅଲଗା କରିଦେଲେ ମଧ ଚିତ୍ର ନିଜର ସ୍ୱତନ୍ତ୍ରତା ଓ ଅନନ୍ୟତା ହରେଇ ଦିଏନାହିଁ। ସାହିତ୍ୟ ଓ ଚିତ୍ରର ସହାବସ୍ଥାନରେ ଭାବର ବିସ୍ତାର ଘଟେ, ବେଳେବେଳେ କବିତାର ଅନାଲୋଚିତ ଦିଗଟିଏ ଖୋଲିଯାଏ ଚିତ୍ର ମାଧ୍ୟମରେ। ଆମର ଚିତ୍ର-ପାଠ ପରମ୍ପରା ସେତେ ଉନ୍ନତ ନୁହେଁ ତଥାପି ଚିତ୍ରଟିକୁ ଗ୍ରହଣ କରିବାରେ ପାଠକର କୌଣସି ଅସୁବିଧା ହୁଏ ନାହିଁ। ଚିତ୍ରମୟ ଏ ଜଗତ। ଆମର ସଚେତନତା ଆମ ଚିତ୍ରଜଗତକୁ କବିତା ଭଳି ଆମ ଆଗରେ ଟେକିଧରେ। ଆମେ ଚିତ୍ରଦ୍ୱାରା ସମ୍ମୋହିତ ହୋଇଯାଉ। ଏଣୁ ସେଇଠି ବୋଧ୍ୟ, ଅବୋଧ୍ୟର ପ୍ରଶ୍ନ ଉଠେ ନାହିଁ। କାହିଁକି କେଜାଣି କବିତା କଥା ପଡ଼ିଲେ ଚିତ୍ରର ଭୂମିକା ଅପରିହାର୍ଯ୍ୟ ହୋଇଯାଏ। ଆଜିକାଲି କବିତାର ଓଢ଼ଣୀ ଭିତରେ ଚିତ୍ର ବା ଚିତ୍ରର କୋଳରେ କବିତା- ବେଶ୍ ପ୍ରେମିକ ପ୍ରେମିକାର ସଂପର୍କ। ଲେଖକ ଓ ପାଠକ ଚିତ୍ର ଓ କବିତାର ଏହି ଅନ୍ତଃସଂପର୍କ ବୁଝୁ ନଥିଲେ ଏକଥା ସମ୍ଭବ ହେଉଛି କିମିତି ?

**ସଂଜୟ: କ୍ଷମା କରିବେ, ଆପଣଙ୍କ ସାହିତ୍ୟର ଶ୍ରେଷ୍ଠତ୍ୱ ବା ଶ୍ରେୟ ଅନ୍ୟାନ୍ୟ ବିଶିଷ୍ଟ ସାହିତ୍ୟିକମାନଙ୍କ ଦ୍ୱାରା ସେତେଟା ଗ୍ରହଣୀୟ ନୁହେଁ ବୋଲି ମନେହୁଏ। ଆପଣଙ୍କ ମତ କ'ଣ ?**

**ଦିନନାଥ:** ଅତି-ବିଶିଷ୍ଟ ସାହିତ୍ୟିକମାନଙ୍କ ପାଖରେ ଅନ୍ୟାନ୍ୟ ସମସାମୟିକ ସାହିତ୍ୟକୃତି ପଢ଼ିବା ପାଇଁ ସମୟ କମ୍। ସେମାନେ ନିଜ ସାହିତ୍ୟକୁ ସଂଚେଇ ରଖିବା ପାଇଁ, ତାର ପ୍ରଚାର ପ୍ରସାର ପାଇଁ ଅହର୍ନିଶ ଧନ୍ଦି ହେଉଥାନ୍ତି। କେବଳ ପୁରସ୍କାର ଦିଆନିଆରେ ଏଭଳି ସାହିତ୍ୟିକଙ୍କ ଭୂମିକା ଥାଏ। ବାକି ବହିଟିଏର ସମ୍ରାଟ ହେଲା ପାଠକ। ସଚେତନ ପାଠକ, ନିରପେକ୍ଷ ପାଠକ, ବିଦଗ୍ଧ ପାଠକ। ମୋର ବହିର ସେଭଳି ରସଗ୍ରାହୀ ପାଠକର ଅଭାବ ନାହିଁ। ରମାକାନ୍ତ ରଥ ମୋ କବିତା ପଢ଼ି ମୋତେ ଟେଲିଫୋନ୍ କରିଛନ୍ତି। ମୋ ପୁନର୍ନବା ଉପନ୍ୟାସ ଶାନ୍ତନୁ ଆଚାର୍ଯ୍ୟଙ୍କୁ ତାଙ୍କ ପାରଳାଖେମଣ୍ଡି ଅନୁଭୂତି ମନେପକେଇଦେଲା। ମହାପାତ୍ର ନୀଳମଣି ସାହୁ ମୋ ବହି ପଢ଼ି ଏତେ ତଦ୍‌ଗତ ହୋଇଯାଆନ୍ତି ଯେ ତାଙ୍କ ମନର ଆନନ୍ଦ, ଉଦ୍‌ବେଳନ ମୋ ନିକଟରେ ବ୍ୟକ୍ତ କରିବା ପାଇଁ ଅନେକ ଥର ଟେଲିଫୋନ କରିଛନ୍ତି। ମୋ ଗଛ କୋରଡ଼ରେ ହୃଦୟ ବହିଟି ସୀତାକାନ୍ତ ମହାପାତ୍ର ଦି ଦିନରେ ପଢ଼ା ଶେଷ କରିଦେଲେ। ଜଗନ୍ନାଥ ପ୍ରସାଦ ଦାସଙ୍କୁ ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ ବହିଟିଏ ଭୁବନେଶ୍ୱର ବିମାନ ବନ୍ଦରରେ ଉପହାର ଦେଲି । ଆମେ ଦିହେଁ ଦିଲ୍ଲୀରେ ଓହ୍ଲେଇଲା ବେଳକୁ ସେ ବହିଟି ସାରି ଦେଇଛନ୍ତି। ଚିତ୍ତରଂଜନ ଦାସ ଥରେ ମୋତେ କହିଲେ, ଦିନନାଥ ! ତମେ ଆଗରୁ କାହିଁକି ଲେଖାଲେଖି କରୁ ନଥିଲ। ଯତୀନ୍ଦ୍ର କୁମାର ମହାନ୍ତି, ନିତ୍ୟାନନ୍ଦ ଶତପଥି, ସୁଦର୍ଶନ ଆଚାର୍ଯ୍ୟ, ଗଗନେନ୍ଦ୍ର ନାଥ ଦାଶ, ଖଗେଶ୍ୱର ମହାପାତ୍ର, ଚନ୍ଦ୍ରଶେଖର ରଥ, ପ୍ରତିଭା ରାୟ, ପ୍ରତିଭା ଶତପଥି ମୋ ବହି ଆଦରର ସହିତ ପଢ଼ନ୍ତି। ମୁଁ ଆଉ କେଉଁ ବିଶିଷ୍ଟ ସାହିତ୍ୟିକଙ୍କ କଥା କହିବି ? ମୋର ଗୋଟିଏ ନିର୍ଦ୍ଦିଷ୍ଟ ପାଠକ ସମାଜ ଅଛି। ସୌରୀନ୍ଦ୍ର ବାରିକ, ଗଣେଶ୍ୱର ମିଶ୍ର ତ ପାଣ୍ଡୁଲିପି ବେଳଠୁ ମୋ ବହି ପଢ଼ିସାରିଦେଇଥାନ୍ତି। ମୋ ବହି ସଂପର୍କରେ ମନେହୁଏ ତମର ଆକଳନ ଭୁଲ। ତମେ ଥରେ ମୋ ବହିପ୍ରେମରେ ପଡ଼ିଲେ ମୋତେ ସହଜରେ ଛାଡ଼ିବନି। ମୋ ବହିର ଆଉ ଯେତେ ସବୁ ବିଶିଷ୍ଟ ସାହିତ୍ୟିକ- ପାଠକ ଅଛନ୍ତି ସେମାନଙ୍କ ନାମ

Digitized by srujanika@gmail.com

ଉଲ୍ଲେଖ କଲେ ତମ ପତ୍ରିକାର କଳେବର ଅଯଥା ବୃଦ୍ଧି ପାଇବ। ମନେରଖ ବିଶିଷ୍ଟ ସାହିତ୍ୟ ବା ସାହିତ୍ୟିକଙ୍କୁ ମାପିବା ପାଇଁ ତମ ପାଖରେ କୌଣସି ସ୍କେଲ(ମାନଦଣ୍ଡ) ନାହିଁ। ମୋ ଲେଖା ଏତେ ମାତ୍ରାରେ ଗ୍ରହଣୀୟ ଯେ ମୁଁ ଲେଖାକୁ ନେଇ ରାତିଦିନ ଧନ୍ଦି ହେବାକୁ ପଡ଼ୁଛି।

**ସଂଜୟ : ଯେଉଁ ସମୟରେ ଚିତ୍ରକଳା ବିଶ୍ୱ ବିପଣୀରେ ଲକ୍ଷ ଲକ୍ଷ ଏବଂ କୋଟି କୋଟି ଟଙ୍କାରେ ବିକ୍ରି ହେଉଛି, ଆପଣ ଠିକ୍ ସେଇ ସମୟରେ ସାହିତ୍ୟ ଆଡ଼େ କେବଳ ମୁହଁ ଫେରାଇ ନାହାନ୍ତି, ଗଭୀର ଭାବେ ନିମଗ୍ନ। ଏହାର କାରଣ କ'ଣ ହେଇପାରେ?**

**ଦିନନାଥ** : ପେଟପାଟଣା ପାଇଁ ଶୈଶବକାଳରୁ ମୁଁ ଚିତ୍ରକଳା ସହିତ ସଂପୃକ୍ତ ହେଇଥିଲି। ମୋ ଗାଁ ଦିଗପହଣ୍ଡିରେ ମୋ ଭାଇନାଙ୍କ ଶିଳ୍ପକଳା ମନ୍ଦିରରେ ଜଣେ ଜୁନିଅର ଆର୍ଟିଷ୍ଟ ଭାବେ ଥିଏଟର ପରଦା ଚିତ୍ରଣ, ଓଷାକୋଠୀ କାନୁଚିତ୍ର ଇତ୍ୟାଦି ଶିଳ୍ପପ୍ରକଳ୍ପରେ କାମ କରିଛି। ଏହି ସଂପୃକ୍ତିର ମୂଳମନ୍ତ୍ର ଥିଲା, 'ଅନ୍ନଚିନ୍ତା ଚମତ୍କାରା'। ପରବର୍ତ୍ତୀ ସମୟରେ ଜଣେ ତାଲିମପ୍ରାପ୍ତ ଶିଳ୍ପୀଭାବେ ଭୁବନେଶ୍ୱରରେ ଚାକିରି ଆରମ୍ଭରେ ଜଗନ୍ନାଥ ପ୍ରସାଦ ଦାସ କହିଲେ ଇଡ଼କଲ୍ କ୍ୟାଲେଣ୍ଡର୍ ଛାପିବ କହୁଛି, ଚାଲ ତାକୁ ଛବିପିଛା ଚାରିଶହ ଟଙ୍କା ହିସାବରେ ବିକିବା। ଘରୋଇ ବିଭାଗ ସଚିବ ସୀତାକାନ୍ତ ମହାପାତ୍ର କହିଲେ ରାଜ୍ୟ ଅତିଥି ଭବନ ପାଇଁ ଆଠଶହ ଟଙ୍କାରେ ଛବି ଦିଅ। ଆଇ.ଟି.ଡି.ସି.ର କଳିଙ୍ଗ ଅଶୋକ ହୋଟେଲ ପାଇଁ ଆଠଶହ ଟଙ୍କାଲେଖାରେ ଆଠ ଖଣ୍ଡି ଛବି, ରାଜ୍ୟ ଲଳିତକଳା ଏକାଡ଼େମୀକୁ ଚାରିଶହ, ପାଞ୍ଚଶହ ଟଙ୍କାରେ ଛବି ବିକ୍ରି କରିଛି। ଦିଲ୍ଲୀରେ ସେତେବେଳେ ମଧ ପଚାଶ ଷାଠିଏ ହଜାର ଟଙ୍କାରେ ଛବି ବିକାଯାଉଥିଲା। ଛବିକୁ ଚଢ଼ାଦରରେ ବିକିବା ମୋତେ ଆସେନି, ହେଇ ପାରେନି। ଦିଲ୍ଲୀ କଳାମେଳାରେ ମୋ ଛବିର ଦାମ ରଖିଥିଲି ଆଠଶହ। ନ୍ୟାସନାଲ ଗ୍ୟାଲେରୀ ଅଫ୍ ମଡ଼ର୍ଣ୍ଣ ଆର୍ଟ୍ ତାକୁ କିଣିବା ପାଇଁ ନିଷ୍ପତ୍ତି କଲେ। ଯୁବଶିଳ୍ପୀ ରାମହରି ଜେନା ଦୈବଯୋଗକୁ ସେଇଠି ଠିଆ ହେଇଥିଲେ 'ଶୂନ'ଟିଏ ଗାରେଇ ଦେଇ ଆଠହଜାର କରିଦେଲେ। ଜାପାନରେ ମୁଁ ଓ ମୋ ପ୍ରାକ୍ତନ ଛାତ୍ର ସୁଧାଂଶୁ ସୂତାର ଗୋଟିଏ ଗ୍ୟାଲେରୀରେ ଚିତ୍ର ପ୍ରଦର୍ଶନୀ କରିଥିଲୁ ମୋ ପାଖରେ ଫୁଟିକିଆ କିଛି ଛବି ବଳିଗଲା। ମୁଁ ତାକୁ ଗ୍ୟାଲେରୀକୁ ଉପହାର ଦେଇଦେଲି। ସୁଧାଂଶୁ କହିଲା, 'ସାର୍ କ'ଣ କଲେ, ଏତକ ଛବି ଦି'ଲକ୍ଷ ଟଙ୍କା ହେବ।' ସିଏ କ'ଣ କିମିତି ବୁଝେଇ ଦେଲା ଗ୍ୟାଲେରୀ ମାଲିକ ଦୁଇଲକ୍ଷ ଟଙ୍କାର ଚେକ୍‌ଟିଏ ମୋ ହାତକୁ ବଢ଼େଇ ଦେଲା। ଚିତ୍ର ଆଙ୍କିବା ଓ ଚିତ୍ରକୁ ନେଇ ବେପାର କରିବା ଦୁଇଟି ସଂପୂର୍ଣ୍ଣ ଅଲଗା କଥା। ଏବେ ଯେଉଁମାନେ କୋଟି କୋଟି ଟଙ୍କାରେ ଛବି ବିକୁଛି ବୋଲି କହୁଛନ୍ତି, ସେମାନଙ୍କୁ ପ୍ରତିପୋଷଣ କରୁଥିବା, ପୃଷ୍ଠପୋଷକତା ଯୋଗାଇ ଦେଉଥିବା ଗ୍ୟାଲେରୀ, ଅକ୍‌ସନ୍ ହାଉସ୍‌ର ଏଇଟା କରାମତି, ଛବିର ନୁହେଁ। ଶିଳ୍ପୀର ବି ନୁହେଁ। ବିହାରର ଶିଳ୍ପୀ ସୁବୋଧ ଗୁପ୍ତା ଓ ତା' ସ୍ତ୍ରୀ ଭାରତୀ ଖେର କୁଆଡ଼େ ବିଲିଏନର୍ କ୍ଲବ୍‌ର ମେମ୍ବର ହେଇଗଲେଣି। ଛବି ବିକି ଆଚ୍ଛା କରି ଦି ପଇସା (ମାନେ କୋଟି କୋଟି ଟଙ୍କା) ରୋଜଗାର କରିବା ଖୁବ୍ ଭଲ କଥା। ମୁଁ କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚିବ ଥିବା ବେଳେ ସୁବୋଧ ଗୁପ୍ତା ସ୍କଲରସିପ୍‌ଟିଏ ପାଇବା ପାଇଁ ଘଣ୍ଟା ଘଣ୍ଟା ଧାଡ଼ି ବାନ୍ଧି ଠିଆ ହେଉଥିଲା। ଆମ ଦିଲ୍ଲୀ ପତିତପାବନ ମେସର ପିଲାମାନେ ଛବି ବିକି କୋଟିପତି ହେଇଗଲେଣି। ଏଥିରେ ମୋର ଓ ଆମ ସମସ୍ତଙ୍କର ଗର୍ବ କରିବାର କଥା। ଆମେ ସବୁ ରୂପଜୀବୀ ତ ତାକୁ ହିଁ ଉପଲକ୍ଷ୍ୟ କରି ଉଦାହରଣଟିଏ ଦେଲେ କଥାଟି ବେଶ୍ ବୁଝିହେବ। ବେଶ୍ୟା ବୃଦ୍ଧା ହେଇଗଲେ ଗରାଖଙ୍କ ଭିଡ଼ କମିଗଲା ପରି ପୁରୁଣା ଶିଳ୍ପୀଙ୍କ ଅବସ୍ଥା। ଆମର ବରିଷ୍ଠ ବେଶ୍ୟା ତ ଏବେ ଓଡ଼ିଶା ମୁହାଁ ହେଲେଣି। ଟୋକୀ ଦାରୀ କ'ଣ ତାର ଗରାଖର ଠିକଣା ସହଜେ ଅନ୍ୟକୁ ଦେବ। ନବେ ଦଶକର କଥା, ମୋର ମନେଅଛି ମୋର ଛବିଟିଏ ବିକ୍ରୀ ହେଇଗଲେ ଗ୍ରାହକଙ୍କ ଗାଡ଼ିରେ ଛବିଟି ଚଢ଼େଇ ଦେବା ଆଳରେ ଆମ ମେସ୍‌ର ପିଲା ଠିକଣା ଜାଗାରେ ପହଞ୍ଚି ବେପାର ଆରମ୍ଭ କରନ୍ତି। ମୁଁ ପାଠକଙ୍କୁ କହିରଖେ ପୁରୁଣା ଶିଳ୍ପୀଙ୍କ ବେପାର ଆଗ ଭଳି ଉଠାପକାରେ ଚାଲିଛି। ବୃଦ୍ଧା ବେଶ୍ୟାଙ୍କ ଦେହର ଝଲି ସିନା କମିଗଲାଣି, ଅନୁଭୂତିର କଦର୍ ଅଛି । ଏ ବେପାର ପାଇଟି ବଡ଼ ଆଲରା, ବଡ଼ ବିକାର,

Digitized by srujanika@gmail.com

ଖାଲି ଟେନ୍‌ସନ୍। ଏଠି ବେପାର ମାମଲାରେ ସାହିତ୍ୟର ଇଲାକା ଅପେକ୍ଷାକୃତ ଶୂନ୍‌ସାନ୍। ଏଠି ଘଟଣା ଠିକ୍ ଓଲଟା। ଏଠି ବୃଦ୍ଧ ବୃଦ୍ଧାମାନଙ୍କୁ ଭାରି ସମ୍ମାନ। ଦେହ ଧର୍ମ ରକ୍ଷା କରି ଚଳୁଥିଲେ ଅଚାନକ ଆତଟିଏ ଆକାଶରୁ ଖସିବ ହିଁ ଖସିବ। ଅବଶ୍ୟ ଦଳବଦଳ ବାଲାଙ୍କୁ ମନ୍ତ୍ରୀପଦ ମିଳିବନି। ଏମ୍.ଏଲ.ଏ. ଯାଏଁ ଠିକ୍ ଅଛି।

ମୋଟା ଅଙ୍କର ମୋହରେ ମୁଁ ଚିତ୍ରକଳାରେ ପଶି ନଥିଲି। ଛବି ଆଙ୍କିବା, ଆନନ୍ଦ ନେବା ଓ ଛବିକୁ ନେଇ ଜୀବନ ବଞ୍ଚିବା, ବେପାର କରିବା ନୁହେଁ। ଏବେ ମଧ୍ୟ ସାହିତ୍ୟରେ ସେହି ଏକାକଥା। ଆଗରୁ ହାତରୁ ଅର୍ଥ ଶ୍ରାଦ୍ଧ କରି ଚିତ୍ର କରାଯାଉଥିଲା, ପ୍ରଦର୍ଶନୀ ହେଉଥିଲା, ଏବେ ନିଜ ପଇସାରେ, ଡି.ଟି.ପି. ଓ ବହି ପ୍ରକାଶନ। ବଡ଼ ମଉଜ ଏ ଦୁନିଆଁ।

**ସଂଜୟ: ଆପଣଙ୍କ ସୃଜନ ସାମ୍ରାଜ୍ୟ ଖୁବ୍ ବିସ୍ତାରିତ। ଆପଣଙ୍କ କୃତିକୁ ଆକଳନ କରିବାକୁ ହେଲେ କେଉଁ ଦିଗଟିକୁ ବା ଦିଗମାନଙ୍କୁ ଦୃଷ୍ଟି ଦେବାକୁ ପଡ଼ିବ।**

**ଦିନନାଥ:** ଭିକାରୀ ବଳଙ୍କୁ ଯିମିତି ଭଜନ ସମ୍ରାଟ କହୁଚ, ମୋତେ ସିମିତି ସୃଜନ ସମ୍ରାଟ କହୁନ। ନ ହେଲେ କହୁନ ସୃଜନୀ (ପ୍ରାତଃସ୍ମରଣୀୟ କେଳୁଚରଣ ମହାପାତ୍ର ତାଙ୍କ ଅନୁଷ୍ଠାନର ନାଁ ବହୁ ଆଗରୁ ସୃଜନୀ ଦେଇ ସାରିଛନ୍ତି)। ବନ୍ଧୁ ଜାପାନୀ ବାବୁ ମୋତେ ନାଁ ଦେଇଛନ୍ତି ମଲ୍‌ଟିଗୁରୁ। ଥୋକେ ତ କହୁଚନ୍ତି ଡ୍ରଇଁମାଷ୍ଟ୍ରେ। ମାଷ୍ଟ୍ରେ ଗଞ୍ଜାମ ଆଡ଼ର ନାଁ। ଏଠି ମଧ୍ୟ ଚଳିବ। ଜୀବନରେ ମୁଁ କେବଳ ଗୋଟିଏ କଥା ଚାହିଁଥିଲି, ସୃଜନ ଶିଳ୍ପୀ ହେବି। ପ୍ରଚ୍ଛଦ ଶିଳ୍ପୀ ନୁହେଁ । ବାକି ସବୁକଥା ଏହି ଶିଳ୍ପର ବାଇ-ପ୍ରଡ଼କ୍ଟ : ଗବେଷଣା, କଳା ଇତିହାସ, ସାହିତ୍ୟ, ଶିକ୍ଷକତା, କଳା ପ୍ରଶାସନ, ଡିଜାଇନ୍, ଭିଜୁଏଲାଇଜେନ୍, ସଂଗଠନ ସବୁ ଶିଳ୍ପଖୁଣ୍ଟିରେ ବନ୍ଧା। ତେଣୁ ସେଇ ଶିଳ୍ପକଳାକୁ ଠାବ କରିପାରିଲେ ଅନ୍ୟସବୁ ସୃଜନ ବିଭବ ଆପେ ଆପେ ଧରାଦେବ। ଶିଳ୍ପସାଧନା ରୂପରୁ ଓ ଆସକ୍ତିରୁ ମୁକ୍ତିଦିଏ। ସୃଜନର ବିଭିନ୍ନ ଇଲାକାରେ ସହଜରେ ଭ୍ରମି ପାରିଲେ ନିଜେ 'ବୋର୍' ହେବାର ଓ ପାଠକଙ୍କୁ 'ବୋର୍' କରିବାର ସମ୍ଭବନା ନଥାଏ। ଏ କ୍ଷେତ୍ରରେ ବିଶ୍ୱକବି ରବୀନ୍ଦ୍ରନାଥ ଆମର ଆଦର୍ଶ ସ୍ଥାନୀୟ। ସେ ଏତେ ବଡ଼ ପ୍ରଚଣ୍ଡ ପ୍ରତିଭା ଯେ ତାଙ୍କୁ ନକ୍ଷତ୍ର ମାନି ଚାଲିଲେ ଅନ୍ତତଃ କିଛି ବାଟ ତ ଯାଇହେବ। ନିଜ ସଂପର୍କରେ ଆଉ ଅଧିକା କିଛି କହିହେଲା ଭଳି ଲାଗୁନି।

**ସଂଜୟ: ହଁ, ଆମେ ପୁଣି ଚିତ୍ରକଳା ନିକଟକୁ ଫେରିଯିବା ଉଚିତ ହେବ। ମୁଁ ପୁଣି ଚିତ୍ରଶିକ୍ଷା ପାଖରୁ ଆରମ୍ଭ କରିବାକୁ ଚାହେଁ। ଜଣେ ସୃଜନ ଶିଳ୍ପୀ ଓ ଜଣେ ଚିତ୍ର ଶିକ୍ଷକଙ୍କ ଆଭିମୁଖ୍ୟ ଓ କାର୍ଯ୍ୟ ପ୍ରଣାଳୀରେ ତଫାତ୍ କ'ଣ?**

**ଦିନନାଥ:** ଜଣେ ଚିତ୍ର ଶିକ୍ଷକର ଦାୟିତ୍ୱବୋଧ ଜଣେ ସାଧାରଣ ଶିଳ୍ପୀଠାରୁ ଯଥେଷ୍ଟ ବେଶି। ଥରେ ଦିଲ୍ଲୀର ଅଶୋକା ହୋଟେଲରେ କେନ୍ଦ୍ର ଲଳିତକଳା ଏକାଡ଼େମୀର ସାଧାରଣ ପରିଷଦ ବୈଠକ ଅନୁଷ୍ଠିତ ହେଉଥାଏ। ସଭାରେ ଉପାଧ୍ୟକ୍ଷ ଆନନ୍ଦଦେବ ଥାଆନ୍ତି। ସେ ବୃତ୍ତିରେ ଜଣେ ସାଧାରଣ ଚିତ୍ର ଶିକ୍ଷକ ଥିଲେ। ମୁଁ ସେତେବେଳକୁ ଏକାଡ଼େମୀର କାର୍ଯ୍ୟନିର୍ବାହୀ ସଭ୍ୟ ଥାଏ। ତା ସହିତ ବୃତ୍ତିରେ ଥାଏ ଅଧ୍ୟାପକ/ଅଧକ୍ଷ । ଜନୈକ ଶିଳ୍ପୀ-ସଭ୍ୟ ଶିକ୍ଷକ ମାନଙ୍କୁ ଆକ୍ଷେପ କରି ଅଶାଳୀନ ମନ୍ତବ୍ୟ ଦେଲେ। ମୁଁ ଏହାକୁ ସହ୍ୟ କରି ନପାରି ଉଠି ଠିଆହେଲି ଓ ଦୃଢ଼କଣ୍ଠରେ ଘୋଷଣା କରିବା ଭଙ୍ଗିରେ କହିଲି, 'ବନ୍ଧୁ ମନେରଖ ଆଚାର୍ଯ୍ୟ ନନ୍ଦଲାଲଙ୍କ ଠାରୁ ଆରମ୍ଭ କରି ରାମକିଙ୍କର ବେଜ, କେ.ଜି.ସୁବ୍ରମଣିୟମ୍, ଶଙ୍ଖୋ ଚୌଧୁରୀ ତଥା ଓଡ଼ିଶାର ଶରତ ଚନ୍ଦ୍ର ଦେବ ଏବଂ ଗୋପାଳ କାନୁନ୍‌ଗୋଙ୍କ ଯାଏଁ ଭାରତବର୍ଷର ଯେତେ ଯେତେ ବରିଷ୍ଠ ଓ ବିଶିଷ୍ଟ ଶିଳ୍ପୀ ଥିଲେ ବା ଅଛନ୍ତି ସମସ୍ତେ ଶିକ୍ଷକ। ସୃଜନ ଧର୍ମୀ ଶିକ୍ଷକ ନଥିଲେ ସଫଳ ଶିଳ୍ପୀ ସୃଷ୍ଟି ହେବାର ସମ୍ଭାବନା କମ୍ ଥାଏ। ତମେ ଯେଉଁ ଶିଳ୍ପୀମାନଙ୍କ ନାମ ଉଚ୍ଚାରଣ କରି ଏଠାରେ ଶିକ୍ଷକ ମାନଙ୍କୁ ନ୍ୟୂନ କରି କଥା କହୁଚ ସେମାନେ ସମସ୍ତେ ବେପାରୀ -ଶିଳ୍ପୀ। ଦିଲ୍ଲୀରେ ସେମାନଙ୍କ ଦୋକାନ (ୱାର୍କସପ୍) ଅଛି। ସେମାନେ ସମସ୍ତେ ଧନାଢ୍ୟ ବ୍ୟକ୍ତି। ସେମାନେ ପପୁଲାର୍, ପେଜ୍ ୩ ଆର୍ଟିଷ୍ଟ।

Digitized by srujanika@gmail.com

ଜଣେ ଚିତ୍ରଶିକ୍ଷକ ସୃଜନ ଧର୍ମୀ ହେବନି, ପ୍ରଦର୍ଶନୀରେ ଅଂଶଗ୍ରହଣ କରିବନି, ଛବି ବିକ୍ରୟ କରିବନି ବା ଗାଡ଼ି ଚଢ଼ି ବୁଲିବନି ଏହା ମୁଁ କହୁନାହିଁ। ଶିକ୍ଷକ କର୍ମର ବା ପରମ୍ପରାର କିଛି ତ୍ୟାଗଭାବ ଅଛି। କେବଳ ନିଜ ସ୍ୱାର୍ଥ-ଅଭିବୃଦ୍ଧି ଏହି ପରମ୍ପରାର ଲକ୍ଷ୍ୟ ନୁହେଁ। ନିଜ ଆଲୋକରେ ଅପରକୁ ଆଲୋକିତ କରିବା, ନିଜ ସମୟକୁ ନିଜ ଛାତ୍ରର ଶୈକ୍ଷୀକ ବିକାଶରେ ବିନିଯୋଗ କରିବାର ମନୋଭାବ ଶିକ୍ଷକ-ବୃତ୍ତିର ପୁଞ୍ଜି। ଯେଉଁ ଶିକ୍ଷକ ମାନେ ଶିଳ୍ପୀ ଗଢ଼ିଛନ୍ତି ଏବଂ ତାରି ମାଧ୍ୟମରେ ଗୋଟିଏ କଳା ଆନ୍ଦୋଳନର ସୂତ୍ରପାତ କରିଛନ୍ତି ସେମାନଙ୍କର ସମାଜ ପ୍ରତି ଓ ଦେଶ ପ୍ରତି ଅବଦାନ ନିଶ୍ଚିତ ଭାବେ ସ୍ୱୀକାର୍ଯ୍ୟ।

ଆଜିକାଲିର ଅଧିକାଂଶ ଶିଳ୍ପୀଙ୍କୁ ନିଛକ ଶିଳ୍ପୀର ସମ୍ମାନ ଦେଇହେଉନି। ବୈଷୟିକ କୌଶଳ ସହଜରେ ଲଭ୍ୟ ହେଇଯାଉଥିବା ଫଳରେ ଏମାନଙ୍କ ସାଧନା ସୀମିତ। ପୁଣି ଗୋଷ୍ଠୀଗତ କାମକୁ ନିଜର ବ୍ୟକ୍ତିଗତ କାମ ବୋଲି ବାହାଦୂରୀ ନେବାର ଏମାନଙ୍କ ମନୋବୃତ୍ତି। ଓଡ଼ିଶାର ବା ଅନ୍ୟାନ୍ୟ ପ୍ରଦେଶର ପାରମ୍ପରିକ ଚିତ୍ର ଏଭଳି ଯୌଥ ପ୍ରଚେଷ୍ଟାରେ ହୁଏ ବୋଲି ସେଭଳି ଚିତ୍ରକୁ କ୍ରାଫ୍ଟ୍ ବା କାରୁଶିଳ୍ପର ଆଖ୍ୟା ଦିଆଯାଏ। ମୁଁ ଭାବୁନି ନିଜକୁ ସୃଜନର ଶୀର୍ଷରେ ଅବସ୍ଥାପିତ କରେଇଥିବା ଏହି ବେପାରୀ-ଶିଳ୍ପୀମାନେ କେଉଁ ଗୁଣରେ କାରିଗରଙ୍କ ଠାରୁ ଭିନ୍ନ ବା ଶ୍ରେଷ୍ଠ।

ପିକାସୋ, ହୁସେନ, ମନ୍‌ଜିତ୍ ବାବା, ଶରତଚନ୍ଦ୍ର, ଯୋଗେନ୍ ଚୌଧୁରୀଙ୍କ ଭଳି ସୃଜନଧର୍ମୀ ଚିତ୍ରଶିଳ୍ପୀମାନେ ନିଜନିଜ ଅଭିନବ ସୃଜନ ମାଧ୍ୟମରେ ଏକ ନୂତନ କଳାଧାରାର ପ୍ରବର୍ତ୍ତନ କରିଛନ୍ତି ଏବଂ ଶେଷରେ ସେମାନଙ୍କ ଚିତ୍ର ହିଁ ଶିକ୍ଷାର ଉପାଦାନ ହେଇଯାଇଛି। ଆଜିର ସମାଜରେ କଳାଶିକ୍ଷକ ଓ ସୃଜନଶିଳ୍ପୀ ଦୁଇଟି ସ୍ୱତନ୍ତ୍ର ଗୋଷ୍ଠୀ। ସେମାନଙ୍କ ମଧ୍ୟରେ ବାଦବିସମ୍ବାଦ, ହିଂସା, ଦ୍ୱେଷର ମାତ୍ରା ତୀବ୍ର। ଆମ ଓଡ଼ିଶା ପରିପ୍ରେକ୍ଷୀରେ ଏବେ ଏବେ ସୃଜନଶୀଳ ଶିଳ୍ପୀଙ୍କ କଥା ବିଚାରକୁ ଆସୁଛି। ଆଗରୁ ଅଧିକାଂଶ ଶିଳ୍ପୀ ଏକେତ ହେଲେ ସରକାରୀ କର୍ମଚାରୀ ନହେଲେ ସ୍କୁଲ ଶିକ୍ଷକ। ତମେ ନିଶ୍ଚୟ ଲକ୍ଷ୍ୟ କରିଥିବ ମୁଁ ଜଣେ ଉଭୟଚର ପ୍ରାଣୀ; ଜଳଚର ଓ ସ୍ଥଳଚର; ମୋତେ ଗୋଟିଏ ନିର୍ଦ୍ଦିଷ୍ଟ ଛକରେ ଠିଆ କରେଇଦେଇ କୌଣସି ଗୋଟିଏ ଦଳଭୁକ୍ତ କରିବା ଠିକ୍ ହେବନି।

**ସଂଜୟ: ମୁଁ ଶୁଣିଛି ଆପଣ କେନ୍ଦ୍ର ଲଳିତକଳା ଏକାଡ଼େମୀର କାର୍ଯ୍ୟନିର୍ବାହୀ ସଦସ୍ୟ ଥିବାବେଳେ ଲଳିତ କଳା ଏକାଡ଼େମୀର ଅର୍ଦ୍ଧାଧିକ ସଭ୍ୟ ଚିତ୍ର ଶିକ୍ଷକ ଥିଲେ। ବମ୍ବେ, ଦିଲ୍ଲୀ ଓ କଲିକତାର ଅଧିକାଂଶ ଶିଳ୍ପୀ ସେମାନଙ୍କୁ ନନ୍-ଆର୍ଟିଷ୍ଟ କହି ତାଚ୍ଛଲ୍ୟ କରୁଥିଲେ। ଆପଣ ସେଭଳି ଚିତ୍ର ଶିକ୍ଷକଙ୍କ ପାଇଁ କ'ଣ କହିବାକୁ ଚାହାନ୍ତି?**

**ଦିନନାଥ:** ଦିଲ୍ଲୀ ଲଳିତକଳା ଏକାଡ଼େମୀ କଳାର ଏକ ରାଜନୈତିକ ଅନୁଷ୍ଠାନ। ଯିମିତି ଭାରତର ପାଲିଆମେଣ୍ଟରେ ସବୁ ଜାତି-ପ୍ରଜାତିର ବ୍ୟକ୍ତି ସଦସ୍ୟ ରହିଥାନ୍ତି, ଏଠି ମଧ୍ୟ ଭାରତର ବିଭିନ୍ନ ପ୍ରଦେଶରୁ ଶିଳ୍ପୀ ଓ ଅଣଶିଳ୍ପୀ ସଭ୍ୟ ରହିଥାନ୍ତି। ଦିଲ୍ଲୀ, ବମ୍ବେ, କଲିକତାରେ ରହି କଳା ବ୍ୟବସାୟ କରି ମୋଟା ଅର୍ଥ ଉପାର୍ଜନ କରୁଥିବା କିଛି ଶିଳ୍ପୀ ରାଜନୀତି କରି ଏହି ଏକାଡ଼େମୀକୁ ନିଜ କବ୍‌ଜା ଭିତରେ ରଖିଥିଲେ। ସେମାନେ ନିଜକୁ 'ଏମିନେଣ୍ଟ୍ ଆର୍ଟିଷ୍ଟ୍' ବୋଲାଇଲେ ଏବଂ ସେମାନେ ଅନୁଭବ କଲେନି ଯେ ଦିଲ୍ଲୀବାହାରେ ଗୋଟିଏ ଭାରତ ବର୍ଷ ଅଛିଏବଂ ସେଠିବି ଶିଳ୍ପୀମାନେ ଅଛନ୍ତି ଓ ଶିଳ୍ପକାର୍ଯ୍ୟରେ ନିମଗ୍ନ ରହିଛନ୍ତି। ଯେଉଁ ଓଡ଼ିଆମାନେ ଦିଲ୍ଲୀରେ ରହିଲେ ସେମାନଙ୍କ ମାନସିକତା ବି ଶିଳ୍ପ ରାଜନୀତି ଦ୍ୱାରା ପ୍ରଭାବିତ ହୋଇଗଲା। ହରିଆନାର ଜଣେ ଚିତ୍ରଶିକ୍ଷକ ଆନନ୍ଦ ଦେବ ଲଳିତକଳା ସମ୍ବିଧାନରେ ଥିବା ଫାଙ୍କ ଦେଇ 'ଏମିନେଣ୍ଟ୍ ଆର୍ଟିଷ୍ଟ୍' ମାନଙ୍କର ଚାଲବାଜି ଭାଙ୍ଗିଦେଲେ। ଏଥର ଭାରତବର୍ଷର ସବୁଆଡୁ ଶିଳ୍ପୀମାନେ ସଭ୍ୟ ହେଇ ଲଳିତକଳା ଏକାଡ଼େମୀକୁ ଆସିଲେ। 'ଏମିନେଣ୍ଟ୍ ଆର୍ଟିଷ୍ଟ୍'ମାନଙ୍କର ବର୍ଷବର୍ଷର ରାଜୁତି ଉଜୁଡ଼ି ଗଲା। ସେମାନେ ଏହି ନବାଗତ ମାନଙ୍କୁ ଅଣ-ଆର୍ଟିଷ୍ଟ୍ କହି ନ୍ୟୂନ ଦୃଷ୍ଟିରେ ଦେଖିଲେ। ସଂଯୋଗକ୍ରମେ ଏହି ନବାଗତଙ୍କ ମଧ୍ୟରେ ଅନେକ ଚିତ୍ର ଶିକ୍ଷକ ଥିଲେ। ମୁଁ ଏହି ନବାଗତମାନଙ୍କ ମଧ୍ୟରୁ ଜଣେ। ଆମେ ଦଳବଦ୍ଧ ଭାବେ 'ଏମିନେଣ୍ଟ୍ ଆର୍ଟିଷ୍ଟ୍'ଙ୍କ ଚକ୍ରାନ୍ତ ପଣ୍ଡ କରିବାରେ ଲାଗିଲୁ। ଆମେ ଅନୁଭବ କଲୁ ସେମାନଙ୍କ ଦୁର୍ନୀତିର

Digitized by srujanika@gmail.com

ତାଲିକା ଖୁବ୍ ଦୀର୍ଘ । ସେମାନେ ବିଚାରକ ମଣ୍ଡଳୀରେ ଥାଇ ନିଜେ ପୁରସ୍କାର ଗ୍ରହଣ କରିଛନ୍ତି । ନିଜେ ଏକାଡ଼େମୀ ପରିଚାଳନା ଦାୟିତ୍ୱରେ ଥାଇ ନିଜର କଳାକୃତି ଏକାଡ଼େମୀକୁ ବିକେଇଛନ୍ତି । ନିଜକୁ 'ଏମିନେଣ୍ଟ୍' କହି ନିଜର ମନୋଗ୍ରାଫ୍ ଛପେଇଛନ୍ତି । ସେମାନଙ୍କ କ୍ଷମତା ସଙ୍କୁଚିତ ହୋଇଯିବା ଫଳରେ ସେମାନେ କ୍ଷୋଭ ପ୍ରକାଶ କରି କହିଲେ ଚିତ୍ରଶିକ୍ଷକ ନିମ୍ନ ମାନର ଆର୍ଟିଷ୍ଟ୍ । ଆମେ ସେମାନଙ୍କୁ ସଠିକ ଆକଳନ କରି କହିଲୁ ଶିଳ୍ପୀ-ବେପାରୀ ।

**ସଂଜୟ: ଓଡ଼ିଶା ସରକାର ସ୍କୁଲମାନଙ୍କରୁ ଚିତ୍ରଶିକ୍ଷକ ପଦବୀ ଗୁଡିକ ଉଠେଇ ଦେଲେ । ଏହାର ଅର୍ଥହେଲା ସରକାରୀ ସ୍ତରରେ ସାଧାରଣ ଶିକ୍ଷା ଭିତରେ ଚିତ୍ରଶିକ୍ଷାର କୌଣସି ଗୁରୁତ୍ୱ ନାହିଁ । ଏଣେ ଓଡ଼ିଶାରେ ସାତ, ଆଠଟି ଚିତ୍ରକଳା ମହାବିଦ୍ୟାଳୟ ଯୁବଶିଳ୍ପୀ ଗଢ଼ିବାରେ ବ୍ୟସ୍ତ । ଏହା ବିଡ଼ମ୍ବନା ନୁହେଁକି ?**

**ଦିନନାଥ:** ବ୍ରିଟିଶ ସରକାରଙ୍କ ଅମଳରେ ସରକାରୀ ସ୍କୁଲ ମାନଙ୍କରେ ଚିତ୍ରଶିକ୍ଷକ ନିଯୁକ୍ତି ବ୍ୟବସ୍ଥା ଥିଲା । ସାଧୀନ ଭାରତରେ ଏହି ବ୍ୟବସ୍ଥା ଦିନାକେତେ ଚାଲିଲା । ତା'ପରେ ସାଧାରଣ ଶିକ୍ଷା ଭିତରେ ଚିତ୍ରଶିକ୍ଷାର ଭୂମିକାକୁ ଅସୀକାର କରି ଏହି ଚିତ୍ରଶିକ୍ଷକ ପଦବୀ 'ମୃତ' (ଡାଇଙ୍ଗ୍ କ୍ୟାଡ଼ର୍) ବୋଲି ଘୋଷଣା କରିଦିଆଗଲା । ମୁଁ ମାଧମିକ ଶିକ୍ଷା ପରିଷଦର ସଭ୍ୟ ଥିବାବେଳେ 'ଷ୍ଟାଣ୍ଡାର୍ଡ଼ ଷ୍ଟାଫ୍'ରେ ଚିତ୍ର ଶିକ୍ଷକକୁ ସ୍ଥାନ ଦେବା ପାଇଁ ଦାବୀ କରିଛି । ସଂସ୍କୃତି ବିଭାଗର ସରକାରୀ ମିଟିଙ୍ଗ୍ ମାନଙ୍କରେ ଏକଥା ଅନେକ ଥର ଉଠେଇଛି । ବିଭିନ୍ନ ସମୟରେ ଯୁବଶିଳ୍ପୀମାନେ ଧାରଣାରେ ବସି ନିଜ ଦାବୀ ଉପସ୍ଥାପିତ କରିଛନ୍ତି । କୌଣସି ଫଳ ହୋଇନାହିଁ । ଆମେ ଇଂଲିଶ ମିଡ଼ିୟମ୍ ସ୍କୁଲମାନଙ୍କୁ ଆକ୍ଷେପ କରି କଥା କହିଥାଉ ଯେହେତୁ ସେମାନେ ଓଡ଼ିଆ ଭାଷାକୁ ଅବହେଳା କରୁଛନ୍ତି, ଗୁରୁତ୍ୱ ଦେଉନାହାନ୍ତି । କିନ୍ତୁ ଖୁସିର କଥା ସେହି ସ୍କୁଲମାନଙ୍କରେ ଚିତ୍ରଶିକ୍ଷକ ନିଯୁକ୍ତି ପାଉଛନ୍ତି । ଭାରତ ସରକାରଙ୍କ କେନ୍ଦ୍ରୀୟ ବିଦ୍ୟାଳୟ ଓ ନବୋଦ୍ୟୋୟ ବିଦ୍ୟାଳୟମାନଙ୍କରେ ଚିତ୍ରଶିକ୍ଷକ ନିଯୁକ୍ତି ପାଆନ୍ତି । କଟା ଘା'ରେ ଚୂନ ଦେଲାଭଳି ଆମ ରାଜ୍ୟର ଲଳିତ କଳା ଏକାଡ଼େମୀ ସ୍କୁଲରେ ଚିତ୍ରଶିକ୍ଷାର ଗୁରୁତ୍ୱକୁ ଶିଶୁ ଚିତ୍ରାଙ୍କନ ପ୍ରତିଯୋଗିତା କାର୍ଯ୍ୟକ୍ରମ ମାଧମରେ ଏକ ପ୍ରହସନରେ ପରିଣତ କରିଦେଲେଣି । ଚିତ୍ର ଆଙ୍କୁଥିବା ଶିଶୁମାନେ କ'ଣ ସିନେମାର ଚରିତ୍ର ଯେ ଯେକୌଣସି ସଂସ୍ଥା ଯେତେବେଳେ ଯେଉଁଠି ଚାହିଁଲା ସେମାନଙ୍କ ହାତରେ କାଗଜ ରଙ୍ଗ ତୂଳୀ ଧରି ପହଞ୍ଚିଗଲେ ଆଉ ସେମାନଙ୍କ ଫଟୋ ଉଠାଗଲା । ଏସବୁ ପ୍ରତିଯୋଗିତାରେ ଇଂଲିଶ ମିଡ଼ିୟମ୍ ସ୍କୁଲ ପିଲାଙ୍କ ଉପସ୍ଥାନ ବେଶି । କ'ଣ ନା ସ୍କୁଲ ପାଠ ଏବେ ରାସ୍ତାରେ, ବଗିଚାରେ ଆଉ ପାର୍କରେ । ମୁଁ ପ୍ରାୟ କୋଡ଼ିଏ ପଚିଶି ବର୍ଷ ହେଲା ଏହି ତମାସା ଦେଖିଆସୁଛି । ଚିତ୍ରଗୁଡିକର ଗୁଣାତ୍ମକ ମୂଲ୍ୟରେ କୌଣସି ପରିବର୍ତ୍ତନ ନାହିଁ । ଓଡ଼ିଶାର ପ୍ରଧାନ ଶିକ୍ଷକମାନେ, ଶିକ୍ଷାନୁଷ୍ଠାନର ପରିଚାଳକମାନେ ଶିକ୍ଷାରେ ଚିତ୍ରଶିକ୍ଷକଙ୍କ ଗୁରୁତ୍ୱ ବୁଝିବାରେ ଅସମର୍ଥ ହେଲେ । ଓଡ଼ିଶାରେ ସରକାରୀ କଳାନୁଷ୍ଠାନମାନଙ୍କରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାଭିତରେ ଅନୁଷ୍ଠାନରେ ଶିକ୍ଷକଙ୍କ ଉପସ୍ଥିତିରେ ଓ ପିଲାଙ୍କୁ ପଢ଼େଇବାରେ ଘୋର ଅବନତି । ଘୋଡ଼ା ମୁହଁରେ ଦାନାର ମୁଣା ବନ୍ଧା ହୋଇଛି । ଘୋଡ଼ାକୁ ଦୌଡ଼ କହିଲେ କୁଆଡ଼େ ଦୌଡ଼ିବ ? ଏବେ ଏହି ଅବ୍ୟବସ୍ଥିତ ସରକାରୀ କଳାମହାବିଦ୍ୟାଳୟ ସହିତ ଜୁଟିଗଲା ଘରୋଇ କଳା ମହାବିଦ୍ୟାଳୟ । କାହାକୁ ଦେଖି, କ'ଣ ଦେଖି ଏଗୁଡ଼ିକୁ ଏଫିଲିଏସନ୍ ଦିଆଗଲା ସେକଥା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଜଣା । ଏବେ ଧୁଆ ମୂଳା ଅଧୁଆ ମୂଳା ସବୁ ସମାନ । ଓଡ଼ିଆ ଲୋକଙ୍କ ଭାଗ୍ୟ ସଦା ବିଡ଼ମ୍ବିତ । ଶିଳ୍ପୀଦଳଙ୍କ ସେଥିରୁ ବାଦ ଯାଆନ୍ତେ କିପରି ।

**ସଂଜୟ : ଓଡ଼ିଶାରୁ ଚିତ୍ରଶିଳ୍ପୀମାନଙ୍କର ମାଇଗ୍ରେସନ୍ ରୋକିବା ପାଇଁ କି କି ପଦକ୍ଷେପ ନିଆଯିବା ଉଚିତ ହେବ ?**

***ଦିନନାଥ** : ତିନିଜଣ ଓଡ଼ିଆ ଶିଳ୍ପୀ ଦିଲ୍ଲୀରୁ ଓଡ଼ିଶାକୁ ଫେରିଆସିଛନ୍ତି । ଯତୀନ ଦାସ (ଅବଶ୍ୟ* ଅଧା ଫେରିଛନ୍ତି), ଅଦ୍ୱୈତ ଗଡ଼ନାୟକ (ଦିଲ୍ଲୀରୁ ଫେରି ଏବେ କିଟ୍ସ୍‌ରେ) ଓ ଶୋଭନ କୁମାର

Digitized by srujanika@gmail.com

(ଲଳିତ କଳା ଏକାଡ଼େମୀର ରିଜିଓନାଲ୍ ସେଣ୍ଟରରେ)। ଆମେ ଓଡ଼ିଶାରେ ସାତ ଆଠ କଳା ମହାବିଦ୍ୟାଳୟ ଗଢ଼ିଦେଲେଣି। ବର୍ଷକୁ ଶହେ ଦେଢ଼ଶହ ଶିଳ୍ପୀ। ଏମାନେ ଏଠି କରିବେ କ'ଣ? ଆଧୁନିକ ଚିତ୍ରକଳାର ବିଡ଼ମ୍ବନା ହେଲା ବାସ୍ତୁରୁ ଉଚ୍ଛେଦ ହେବା, ଭିଟାମାଟି ଛାଡ଼ି ସହର ମୁହାଁ ହେବା। ଏବେ ତ ଓଡ଼ିଆମାନେ ଆମେରିକାରେ ଭର୍ତ୍ତି ହୋଇଗଲେଣି, ବାଙ୍ଗାଲୋରରେ ଓଡ଼ିଆ କଲୋନୀ ବସେଇଲେଣି। ଦିଲ୍ଲୀରେ ଏବେ ଶହେ ଦୁଇଶହ ସରିକି ଓଡ଼ିଆ ଶିଳ୍ପୀ। ମୁଁ ଥରେ ଏମାନଙ୍କ ସଠିକ ହାଲଚାଲ୍ ବୁଝିବା ପାଇଁ ଗୋଟିଏ ତାଲିକା ପ୍ରସ୍ତୁତ କରିବାକୁ ଜଣେ ପ୍ରାକ୍ତନ ଛାତ୍ରଙ୍କୁ କହିଲି। ଖାଲି ତାଲିକା ନୁହେଁ, ଦିଲ୍ଲୀରେ ତମେ ଖାସ୍ କରୁଛ କ'ଣ? 'ଜବ୍' କରୁଛ ଯେ ପାଉଛ କେତେ? କେଉଁ ଗ୍ୟାଲେରୀ ତମକୁ ରଖିଛି। କେଉଁ ବଡ଼ ଶିଳ୍ପୀଙ୍କ ଷ୍ଟୁଡ଼ିଓରେ ତମେ ଦିନ ମଜୁରୀ କରୁଛ, ଇତ୍ୟାଦି। ଏତେ ସବୁ ଗୁମର କଥା ପଦାରେ ପଡିଯିବ, ଏଣୁ କିଏ ଏହି ତାଲିକା ପ୍ରସ୍ତୁତ କରିବାକୁ ରାଜିହେଲେନି। ଆମେ ଜାଣିଛୁ ଏଭଳି କାର୍ଯ୍ୟ Diasporic ବା ବିସ୍ଥାପନ ଗବେଷଣାର୍ ଅନ୍ତର୍ଭୁକ୍ତ। ଆମେ ମାଇଗ୍ରେସନ୍ ରୋକିବାକୁ କିଏ, ସାଧୀନ ଭାରତର ନାଗରିକ ସମସ୍ତେ। ଯିଏ ଯାହା ଚାହିଁଲା କଲା।

**ସଂଜୟ: ଓଡ଼ିଆ ସାହିତ୍ୟ ଲେଖାଲେଖି କରୁଥିବା ଲୋକେ ଓଡ଼ିଆ ଅକ୍ଷର ଓ ଓଡ଼ିଆ ଭାଷାରେ ଲେଖାଲେଖି କରନ୍ତି। ଓଡ଼ିଆ ଶିଳ୍ପୀ ବୋଲି ପରିଚୟ ଦେବାକୁ ହେଲେ କ'ଣ କରିବାକୁ ହେବ?**

**ଦିନନାଥ:** ମୁଁ ଏହି ସମସ୍ୟାକୁ ନେଇ ଅନେକ ଦିନରୁ ଚିନ୍ତିତ। ଏବେ କିଛି ମେଧାଦୀପ୍ତ ସାଂପ୍ରତିକ ଯୁବ ଶିଳ୍ପୀ କହିଲେଣି ଓଡ଼ିଆ ଚିତ୍ରଟା କ'ଣ? ଆମେ ତାହା ଆଙ୍କିବାକୁ କ'ଣ ବାଧ? ଓଡ଼ିଶାରେ ବନ୍ୟା ବାତ୍ୟା ହେଲେ ଉଡ଼ାଜାହାଜରୁ ଓହ୍ଲେଇ ପଡ଼ି ଶୀତତାପ ନିୟନ୍ତ୍ରିତ ଗାଡ଼ିରେ କ୍ଷତିଗ୍ରସ୍ତ ଗାଁକୁ ଯାଇ ହିନ୍ଦୀ, ଇଂଲିଶ ମିଶା ଓଡ଼ିଆରେ ଆଶ୍ୱାସନା ଦେଲେ ତମେ ଯଦି ଶିଳ୍ପୀ ହେଇଥାଅ, ତମକୁ ବଡ଼ ଓଡ଼ିଆ ଶିଳ୍ପୀ କହିବେ। ନହେଲେ ଓଡ଼ିଶା ସରକାରଙ୍କ ଠାରୁ ମାଗଣାରେ ଜମି ନେଇ ଏଠି କଳାକେନ୍ଦ୍ରମାନ ଗଢ଼ି ସେଠି ନିଜ ଫଟୋ ଲଗେଇ ଓଡ଼ିଆ ଲୋକଙ୍କୁ ଭେଳେକେଇଲେ ଲୋକେ କହିବେ ତମେ ବଡ଼ ଓଡ଼ିଆ ଶିଳ୍ପୀ। ତମ ପାଖକୁ ସମସ୍ତଙ୍କର ସୁଅ ଛୁଟିବ। ତ ଆମେ ତ ବିଦେଶୀ ମାୟାରେ ପଡ଼ି ଓଡ଼ିଶା ଓ ଓଡ଼ିଆକୁ ଭୁଲିଗଲୁଣି। ଅବଶ୍ୟ ପଶ୍ଚିମା ପବନ ବାଜିବାରୁ ଆମେ ଆଧୁନିକ ହେଲୁ। ଆମ ବାପା.ମା ତ ଓଡ଼ିଆ, ଆମେ ଓଡ଼ିଆ। ଆମେ ଚିତ୍ର ଆଙ୍କିଲେ ଓଡ଼ିଆ ଶିଳ୍ପୀ, ହୋଟେଲ କଲେ ଓଡ଼ିଆ ହୋଟେଲ, ପାନ ଦୋକାନ କଲେ ଓଡ଼ିଆ ପାନ ଦୋକାନୀ। ଆମ ଆର୍ଟ୍ କଲେଜ ମାନଙ୍କରେ କ'ଣ ଓଡ଼ିଆ ଚିତ୍ର ପଢ଼ାହେଉଛି କି? ଯାହା ଇଂଲିଶ ଲୋକ ଶିଖେଇଥିଲେ 'ଷ୍ଟିଲ୍‌ଲାଇଫ୍' ଆଉ ଲାଇଫ୍‌ଷ୍ଟଡି' ତାହା ହିଁ ଏବେ ସୁଦ୍ଧା ଘୋଷୁଛୁ। ରେଳ ଷ୍ଟେସନରେ ପଛକଡ଼ିଆ ଠିଆ ହୋଇଥିବା ଲୋକଙ୍କ ରାତି ଅଧିଆ ସ୍କେଚ୍ କରୁଛୁ। ଏହି ଓଡ଼ିଆ କଥାଟି ଭାରି କଠିନ। ଅବଶ୍ୟ କିଛି ହାତଗଣା ଯୁବଶିଳ୍ପୀ ଏବେ ସେ ଆଡ଼କୁ ମୁହାଁଇଛନ୍ତି। ଆମ ଓଡ଼ିଆ କଳାକୁ ଭଲଭାବରେ ବୁଝି ତାର ନବୀକରଣ (ପୁନଃ ଆବିଷ୍କାର) ଓ ତାକୁ ସମୟ ଉପଯୋଗୀ କଲେ ଆମ ଛବି ଓ ଭାସ୍କର୍ଯ୍ୟରୁ ଓଡ଼ିଆ ଅସ୍ମିତା ବାହାରିବାର ସମ୍ଭାବନା ଅଛି। ଅନ୍ଧାନୁକରଣରେ ଆମେ ଅନ୍ଧ ଭଳି ରହିଥିବା। ଜଗତିକରଣ ଖଣ୍ଡିଆଭୂତ ଭଳି ଆମକୁ ମାଟିରୁ ଉଠେଇ କଚାଡ଼ି ଦେବ।

**ସଂଜୟ: ଆପଣ ନିଜ ପ୍ରବନ୍ଧରେ ଥରେ ଓଡ଼ିଆ ଜହ୍ନ, ଓଡ଼ିଆ ଆକାଶର କଥା ନେଇ ପ୍ରଶ୍ନ ଉଠାଇଥିଲେ। ଚିତ୍ର ତ ସାର୍ବଜନୀନ ବିଶ୍ୱଭାଷା। ସେଥିରେ ପୁଣି ଓଡ଼ିଆ ଅଣ ଓଡ଼ିଆର ପ୍ରଶ୍ନ କ'ଣ?**

**ଦିନନାଥ:** ଚିତ୍ର ସାର୍ବଜନୀନ ଭାଷା। ଏହା ପୁରୁଣା କଥା। ମଣିଷ ଯେଭଳି ରକ୍ତ ମାଂସରେ ଗଢ଼ା। ଶରୀର ଓ ଜୀବନ ଆହାର, ନିଦ୍ରା, ଭୟ, ମୈଥୁନର ପୁଞ୍ଜି। ଅଥଚ ସାଂସ୍କୃତିକ ଓ ସାମାଜିକ ପରିପ୍ରେକ୍ଷୀ କେତେ ଭିନ୍ନ- ଏକଥାଟି ବୁଝିଲେ ଓଡ଼ିଆ ଚିତ୍ର କଥା ବୁଝିହେବ। ପିକାସୋଙ୍କ ଚିତ୍ର ଆଉ

Digitized by srujanika@gmail.com

ପୁରୁଷୋତ୍ତମପୁର ହରିପଣ୍ଡାଙ୍କ ଚିତ୍ର କ'ଣ ସମାନ ? ହରିପଣ୍ଡାଙ୍କ ଚିତ୍ରଦେଖି ପିକାସୋ କ'ଣ ଓଡ଼ିଆ ଚିତ୍ରର ମର୍ମ ବୁଝିପାରନ୍ତେ ? ଏଣୁ ନଈ କେ ବାଙ୍କ୍ ଆଉ ଦେଶ କେ ଫାଙ୍କ ଭଳି ଚିତ୍ର ବା ଚିତ୍ରକୁ ନେଇ ଫାଙ୍କ୍ । ଆମେ ଥରେ ଲେନିନ୍ ଗ୍ରାଡ୍‌ରେ ପହଞ୍ଚି ଦେଖିଲୁ ସେଠି ରାତିଦିନ ବୋଲି କିଛି ନାହିଁ । ରାତିଯାକ ଦିନଭଳି । ପଚାରିବାରୁ ସେମାନେ କହିଲେ 'ହ୍ୱାଇଟ୍ ନାଇଟ୍' । ଆମ ଏଠି ରାତିକୁ କ'ଣ 'ଶ୍ୱେତରାତି' କେବେ କହିଛୁ ? ଆମ ଜହ୍ନକୁ ଆମେ ତ ଜହ୍ନମାମୁଁ କହୁଛୁ । ୟୁରୋପରେ ଜହ୍ନକୁ କ'ଣ ଅଙ୍କଲ୍ କହୁଛନ୍ତି ? ଏଣୁ ଜହ୍ନର ଚିହ୍ନଟି କିଭଳି ଏକା ହେବ । ଓଡ଼ିଆ ବାଘଙ୍କୁ କହିଲେଣି ଆର୍.ବି.ଟି. ରଏଲ୍ ବେଙ୍ଗଲ୍ ଟାଇଗର । ଓଡ଼ିଆ ବାଘ କିମିତି ବଙ୍ଗାଳୀ ହେଲେ । ତା ସାଙ୍ଗରେ ଓଡ଼ିଆ ସମୁଦ୍ର ମଧ୍ୟ କିମିତି ବଙ୍ଗାଳୀ ସମୁଦ୍ର ହେଲା ? ତମେ ଯାହା ସାର୍ବଜନୀନ କହୁଚ ତାହା ତମପାଇଁ ଠିକ୍ । ମୁଁ କିନ୍ତୁ ଓଡ଼ିଆ ବଙ୍ଗଳା କରି ଭିନ୍ନ ଭିନ୍ନ ଚିତ୍ରକଥା କହୁଛି । ତମ କଥା ଠିକ୍, ମୋ କଥା ମଧ୍ୟ ଠିକ୍ । ତମେ 'ଦେଶ' ପତ୍ରିକାକୁ ଦେଖ ଲାଗିବ ବଙ୍ଗଳା ଗପ, ବଙ୍ଗଳା ଛବି । ସିମିତି 'ଜହ୍ନମାମୁଁ'କୁ ଦେଖିଲେ ଲାଗିବ ଓଡ଼ିଆ ଗପ ଓ ତେଲୁଗୁ ଛବି । ବିଭିନ୍ନ ସଂସ୍କୃତିକୁ ନେଇ ବିଭିନ୍ନ ଚିତ୍ର । ଆମର ଯେଉଁମାନେ ଚିତ୍ରକଳା ଅଧ୍ୟାପକ ରହିଲେ ସେମାନେ ଏସବୁ କଥା ନେଇ ନୀରବ । ସେହି ଅନୁଷ୍ଠାନମାନଙ୍କରେ ଏହି ସମସ୍ୟା ଆଲୋଚିତ ହେବା କଥା । ସେମାନେ ପରା ଆମର ଗୁରୁ । ତାଙ୍କଠାରୁ ଆମେ ଦି'ପଦ ନୂଆକଥା ଶୁଣନ୍ତେ । କାହିଁ ଖଣ୍ଡଗିରି କିମ୍ବା ଉଦୟଗିରି ଗୁମ୍ଫା ତ ଅନ୍ଧାର ଓ ଶୁନ୍‌ଶାନ୍, ଚିଲିକା ପାଣିରେ ବି ଢ଼େଉ ଉଠୁନି ।

**ସଞ୍ଜୟ: ଆପଣ ଅଧିକାଂଶ ସମୟରେ ମତବ୍ୟକ୍ତ କରିଥାନ୍ତି ଯେ ଓଡ଼ିଶାର ସରକାରୀ କଳା ଅନୁଷ୍ଠାନଗୁଡ଼ିକର ସ୍ଥିତି ସୁଦୃଢ଼ ନୁହେଁ । ଆଜିର ଜଗତୀକରଣ ବିକାଶଶୀଳ ଯୁଗରେ ଏହି ଅନୁଷ୍ଠାନ ମାନଙ୍କର ସାମାଜିକ ଉପଯୋଗିତା ଅଛି ବୋଲି କ'ଣ ଆପଣ ଅନୁଭବ କରୁଛନ୍ତି ।**

**ଦିନନାଥ:** ଭଲ ଖତ ତିଆରି ପାଇଁ ବିଷ୍ଠାର ମଧ୍ୟ ଉପଯୋଗିତା ଅଛି । ଆମ ମଳ ମୂତ୍ରରୁ ତ ପୁଣି ଆମ ସାସ୍ଥ୍ୟର ଭଲ ମନ୍ଦ ଜଣାପଡ଼ିଥାଏ । ଏଣୁ ଏଗୁଡ଼ିକ ରହନ୍ତୁ । କିନ୍ତୁ ଭଲ ଅବସ୍ଥାରେ ରହନ୍ତୁ, ଘୂଣଖିଆ ଦଦରା କାଠଗଡ଼ ଭଳି ନୁହେଁ । କଳା, ସାହିତ୍ୟ, ସଂସ୍କୃତି ପଦାକୁ ଦେଖେଇବା ପାଇଁ ସରକାରଙ୍କ ଦାନ୍ତ (ଦନ୍ତା ହାତୀର ଦାନ୍ତ ଭଳି ସୁନ୍ଦର) କିନ୍ତୁ ଚୋବାଇବା ଦାନ୍ତ ଅଲଗା । ବିଶିଷ୍ଟ ଚିତ୍ରଶିଳ୍ପୀ ଓ ସମାଲୋଚକ କେ.ଜି. ସୁବ୍ରମଣିୟନ କହିଛନ୍ତି 'ସଂସ୍କୃତି' ସରକାରଙ୍କ 'ସିଭିଲାଇଜଡ୍ ମାସ୍କ' ସଭ୍ୟମୁଖା । ସରକାର ଉତ୍ତମ ରୂପେ ହୃଦୟଙ୍ଗମ କରିଛନ୍ତି ବି.କେ. ଆର୍ଟ୍ କଲେଜ ବି.ଜେ.ବି କଲେଜ ନୁହେଁ, ଏକାଡ଼େମୀ ଗୁଡ଼ିକ ମୁତ୍‌ଫରକା ଅନୁଷ୍ଠାନ, ମଝିମଝିରେ ପୁରସ୍କାର ପ୍ରଦାନ କରନ୍ତି, ଲେଖକମାନଙ୍କର ଜନ୍ମ-ମୃତ୍ୟୁ ତିଥି ପାଳନ କରନ୍ତି ଆଉ ଲେଖକ, ଶିଳ୍ପୀ ବା ସଂଗୀତଜ୍ଞଙ୍କ ମୃତ୍ୟୁହେଲେ ତାଙ୍କ ଶବାଧାରରେ ପୁଷ୍ପଗୁଚ୍ଛ ପ୍ରଦାନ କରନ୍ତି । ଏହାହିଁ ମହାନ୍ ଉତ୍କଳୀୟ ପରମ୍ପରା । ଆଗରୁ କୁହାଯାଉଥିଲା ଏକାଡ଼େମୀମାନଙ୍କ ପାଖରେ ଓ ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକ ପାଖରେ ଅର୍ଥର ଘୋର ଅଭାବ । ଏବେ ଅର୍ଥର ଅଭାବ ନାହିଁ, ଅଭାବ ଅଛି କାର୍ଯ୍ୟ କରିବା ପ୍ରଣାଳୀର । କାର୍ଯ୍ୟ କରିବା ବ୍ୟକ୍ତିଙ୍କର ଓ କାର୍ଯ୍ୟକରିବା ମାନସିକତାର । ଏବେ କୁହାଯାଉଛି ଆଉ ଯଦି ଅଧିକା ଅର୍ଥର ଆବଶ୍ୟକ ଅଛି ତେବେ କମ୍ପାନୀ ଉପରେ ନିର୍ଭର କର । ସେମାନେ ସେମାନଙ୍କ ବ୍ୟବସାୟ କରିବେ ଏବଂ ଏ ଦେଶର କଳା ସଂସ୍କୃତିର ବିକାଶ କରିବେ । ସେମାନେ ଆର୍ଟ୍ ଗ୍ୟାଲେରୀ ଗଢ଼ିବେ, ଶିଳ୍ପୀମାନଙ୍କ ଛବି କିଣିବେ, ଲକ୍ଷ ଲକ୍ଷ ଟଙ୍କାର ପୁରସ୍କାର ଦେବେ, ବିଶ୍ୱବିଦ୍ୟାଳୟ ନିର୍ମାଣ କରି ସେଥିରେ କଳାଶିକ୍ଷା ପାଇଁ ବିଭାଗ ଖୋଲିବେ । ସରକାରୀ ଅନୁଷ୍ଠାନର କାର୍ଯ୍ୟ ପରିସର ଧୀରେ ଧୀରେ ସଂକୁଚିତ ହେବ । ଲୋକକଳା, ଲୋକସଂସ୍କୃତି, ଆଦିବାସୀ କଳା ଓ ପରମ୍ପରା ଲୋପ ପାଇବ । ସଉରାମାନେ ସେମାନଙ୍କ ଘରେ ଆଦିବାସୀ ଚିତ୍ର ଆଉ ଅଙ୍କନ କରିବେନି । ଆମେ ସବୁ ଅଣଆଦିବାସୀ ଶିଳ୍ପୀମାନେ ଭୁବନେଶ୍ୱର କାନ୍ଥବାଡ଼ରେ ଆଦିବାସୀ ଚିତା ଆଙ୍କିବୁ । ଯେଉଁ ସବୁ କଳା ପରମ୍ପରାକୁ ଆମେ ହତ୍ୟା କରୁଛୁ ସେଗୁଡିକୁ ଆମ ଯୁବଗୋଷ୍ଠି କାଳେ ଭୁଲିଯିବେ

Digitized by srujanika@gmail.com

ବୋଲି କାନ୍ଥରେ ଚିତ୍ରେଇ ଦେବୁ । ଲାଗିବ କଳା ଏକାଡ଼େମୀ ଅଛି । ଚିତ୍ର ମହାବିଦ୍ୟାଳୟମାନେ ଅଛନ୍ତି, ସଂସ୍କୃତି ବିଶ୍ୱବିଦ୍ୟାଳୟ ଅଛି । ଆମେ ନିଜକୁ ଉତ୍କୃଷ୍ଟ କଳାର ଦେଶର ଲୋକ ବୋଲି ଅଭିମାନ କରିବୁ ।

**ସଂଜୟ: ଓଡ଼ିଶାରେ ଯେତିକି ଲେଖିକା, ନର୍ତ୍ତକୀ ଓ ଗାୟିକାମାନେ ଅଛନ୍ତି, ସେ ତୁଳନାରେ ଚିତ୍ରିକା, ଶିଳ୍ପୀକାଙ୍କ (ନାରୀଚିତ୍ରକାର, ନାରୀଶିଳ୍ପୀ) ସଂଖ୍ୟା ଏତେ କମ୍ କାହିଁକି ?**

**ଦିନନାଥ**: ଏଭଳି ଗୋଟିଏ ଆକଳନରେ ମନେହୁଏ ତମର ଦୃଷ୍ଟିଭଙ୍ଗୀର ଅଭାବ । ତମେ ବୋଧହୁଏ ଗାଁ ଗହଳରେ (ଏଠି ଭୁବନେଶ୍ୱରରେ ମଧ୍ୟ)ପ୍ରତ୍ୟହ ଘର ଦୁଆର ଆଗରେ ଝୋଟି ଅଙ୍କାଯାଉଥିବା ଲକ୍ଷ୍ୟ କରିନ । ପର୍ବପର୍ବାଣୀରେ, ବାରବ୍ରତରେ ଘର ଲିପାପୋଛା କରି କାନ୍ଥରେ ଚିତା ଦେବା ଘଟଣାଟିକୁ ଶିଳ୍ପ ପର୍ଯ୍ୟାୟଭୁକ୍ତ କରିନ । ହଁ, ତମେ ଯେଉଁ ନାରୀ ଶିଳ୍ପୀଙ୍କ କଥା କହୁଚ ମୁଁ ବୁଝିପାରୁଛି । ଦେଖ ତଳନେ କାଗଜ, ପୁଅଝିଅ, ନାତିନାତୁଣୀଙ୍କ ଅଲୋଡ଼ା ଏକ୍‌ସର୍‌ସାଇଜ ଖାତା ବା ସ୍ୱାମୀ ଆଣିଦେଇଥିବା କେଉଁ କମ୍ପାନୀର ଡାଏରୀ ଖଣ୍ଡିଏ ହେଇଗଲେ କବିତା, ଗଳ୍ପ ସାହିତ୍ୟ ଲେଖି ହେଇଗଲା । ଚିତ୍ର ବିଦ୍ୟାଟି ଟିକିଏ ଅଡୁଆ । କାଗଜ, କାନ୍‌ଭାସ୍, ରଙ୍ଗ, ତୂଳୀର ଦାମ ବେଶି । ଚିତ୍ରଶିଳ୍ପୀ ହେବାକୁ ହେଲେ ରୀତିମତ ଅର୍ଥଶ୍ରାଦ୍ଧ କରିବାକୁ ହେବ । ପରିବାରର ପୃଷ୍ଠପୋଷକତା ଆବଶ୍ୟକ । ସ୍ତ୍ରୀଙ୍କ ନୂଆ କବିତାଟେ ବା ଗଳ୍ପଟିଏ ସଂପାଦକଙ୍କୁ କୁହାପୁଛା କରି ଛପେଇ ଦେଇହେବ । ଭଦ୍ରମହିଳାଙ୍କୁ ଛମାସ ବର୍ଷେ ଭିତରେ ସାହିତ୍ୟିକା କରିଦେଇହେବ କିନ୍ତୁ ଶିଳ୍ପୀ ହେବା ପାଇଁ ରାସ୍ତାଘାଟ ବନ୍ଦ । କେଉଁ ବଦାନ୍ୟ ସ୍ୱାମୀଙ୍କ ପାଖରେ ବେଳ, ବଳ ଓ ମାନସିକତା ଅଛି ଯେ ସ୍ତ୍ରୀଙ୍କ ଛବି ରିକ୍ସାରେ ଲଦି ବାରଦୁଆର ହେବେ । ହାତରେ ସୁଦଶାବ୍ରତ ବାନ୍ଧି, ମୁଣ୍ଡରେ ହାତେ ଓଢ଼ଣା ଦେଇ 'ମଡ଼ର୍ଣ୍ଣ ଆର୍ଟ୍' କରିହେବନି । ଅଧିକାଂଶ ନର୍ତ୍ତକୀ, ଗାୟିକା ଓ ନାରୀଶିଳ୍ପୀଙ୍କ ପାରିବାରିକ ଜୀବନ ଦୁର୍ବିସହ । ସ୍ୱାମୀ, ଶାଶୁ ଶ୍ୱଶୁରଙ୍କ ସେବା କରି ସୁଖି ପରିବାର ଗଢ଼ିବ ନା ମାଟି, ପଥରରେ ମୂର୍ତ୍ତି ଗଢ଼ି ବିପଦକୁ ବରଣ କରିଆଣିବ ? ନାରୀ ଶିଳ୍ପୀ ନାହାନ୍ତି ବୋଲି ନୁହେଁ, ବଡ଼ ବଡ଼ ସହର ମାନଙ୍କରେ ଅଛନ୍ତି । ସେମାନଙ୍କ ସ୍ୱାଧୀନତା ଅଛି । ସବୁ ଉପରେ ସେମାନେ କଳାକୁ ମୁଣ୍ଡେଇଛନ୍ତି ବୋଲି ତିଷ୍ଠିଛନ୍ତି । ମୁଁ ଜାଣୁଛି ବହୁ ଝିଅ ଓଡ଼ିଶୀ ନାଚୁଛନ୍ତି ହେଲେ ଗୁଣର, ମାନର ଓଡ଼ିଶୀ ନର୍ତ୍ତକୀଙ୍କ ସଂଖ୍ୟା ଢ଼େର କମ୍ । ଓଡ଼ିଶୀ ନାଚ ଓ ଓଡ଼ିଆ କବିତା ହେଇଗଲାଣି ଫେସନ୍ । କିଛିଦିନ ପରେ ଚିତ୍ରକଳା ବି ନାରୀମାନଙ୍କ ପାଇଁ ଫେସନ୍ ହେଇଯିବ ।

**ସଂଜୟ: ବିଦେଶରେ ଓଡ଼ିଶୀ କଳା ତଥା ଭାରତୀୟ କଳାର ସ୍ଥାନ କେଉଁଠି ?**

**ଦିନନାଥ**: ଭାରତୀୟ କଳା ପରମ୍ପରାର, କଳା ସାମଗ୍ରୀର ବିଦେଶରେ ଯଥେଷ୍ଟ ଆଦର ଅଛି । ସେମାନଙ୍କ ନିଜର ଅଧିକାଂଶ କଳା ପରମ୍ପରା ଦେଶର ବିକାଶ ଭିତରେ ଲୋପ ପାଇଗଲାଣି । ଏଣୁ ସେମାନେ ଅନେକ ଦିନରୁ ପ୍ରାଚ୍ୟ ମୁହାଁ । ଅଳ୍ପଦିନ ତଳେ ବର୍ଲିନ୍ ମ୍ୟୁଜିୟମ୍‌ରେ ଥିବା ଜଗନ୍ନାଥଙ୍କ ଗୋଟିଏ ନମୁନା ରଥ ସଂକ୍ରାନ୍ତରେ ଗବେଷଣା କରିବାକୁ ଇଚ୍ଛାକରି ଜଣେ ଛାତ୍ରୀ ପୁରୀରେ ପହଞ୍ଚିଲେ । ଏଠି ଗୋଟିଏ ହୋଟେଲରେ ରହି ଗବେଷଣା କଲେ ଆଉ ଚାରି ପାଞ୍ଚମାସ ପରେ ରଥଯାତ୍ରା ଦେଖିସାରି ତାଙ୍କ ଦେଶକୁ ଫେରିଗଲେ । ବିଦେଶର ସଂଗ୍ରହାଳୟ ଗୁଡ଼ିକରେ ଭାରତୀୟ କଳା ସାମଗ୍ରୀ ଭରପୁର । ସେଗୁଡ଼ିକୁ ଅତ୍ୟନ୍ତ ଯତ୍ନ ସହକାରେ ସଂଗ୍ରହାଳୟ କର୍ତ୍ତୃପକ୍ଷ ରଖିଛନ୍ତି । ଭାରତୀୟ ଚିତ୍ରକଳାର ପ୍ରଦର୍ଶନୀ ବିଦେଶରେ ପ୍ରତିବର୍ଷ ହେଉଛି । ମୁଁ ଭାରତ ସରକାରଙ୍କ ସଂସ୍କୃତି ବିଭାଗ ତରଫରୁ ସୁଇଡେନ୍‌ରେ, ପୁରୁଣା ସୋଭିଏତ୍ ସଂଘରେ, ମିଶରରେ, ବାଲି ଦ୍ୱୀପରେ ଭାରତୀୟ ଚିତ୍ରକଳାର ପ୍ରଦର୍ଶନୀମାନ ଆୟୋଜନ କରିଛି । ସୁଇଡେନ୍‌ର ଷ୍ଟକହୋମ୍ ସହରର ଥିବା କୁଲଟର୍ ହ୍ୟୁସେଟ୍‌ରେ କଟକର ମାଟିକାରିଗରଙ୍କୁ ନେଇ ଦୁର୍ଗାମୂର୍ତ୍ତି ଗଢ଼ିଛି । ପିପିଲିର ଚାନ୍ଦୁଆ ବାନ୍ଧି ସଭା କରେଇଛି । ଭାରତୀୟ କଳାରେ ସେମାନଙ୍କ ଆଗ୍ରହ ଓ ଆନନ୍ଦ ଦେଖି ମୁଁ ଅଭିଭୂତ ହୋଇଯାଇଛି । ଷ୍ଟକ୍‌ହୋମ୍ ସହରରେ ମାଟିତିଆରି ଖୁରୀ ଦେଖି ସେଠାକାର ସାଇବମାନେ ଏଭଳି ଉତ୍‌ଫୁଲ୍ଲ ହୋଇଗଲେ ଯେ ଚାହାପାନ

Digitized by srujanika@gmail.com

ପରେ ସୋଭିନର୍ (ସ୍ମାରକୀ) ଭାବେ ମାଟିଖୁରୀ ଘରକୁ ନେବା ପାଇଁ ମୋତେ ଅନୁମତି ମାଗିଲେ । ମୁଁ ଅନୁଭବ କରିଛି ବିଦେଶରେ ଝୋଟିଟିଏ ଆଙ୍କିଦେଲେ କେତେ ଆଦର ମିଳେ । ତାଙ୍କ ସମାଜରେ କଳାକାରର ଖାତିରି ବେଶି । ମୁଁ ବିଗତ ତିରିଶି ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ସୁଇଜରଲ୍ୟାଣ୍ଡର ରିଟ୍‌ବର୍ଗ୍ ମ୍ୟୁଜିୟମ୍ ସହିତ ସଂପୃକ୍ତ । ସେଠାରେ ଓଡ଼ିଶୀ କଳାର ପ୍ରଥମ ପ୍ରଦର୍ଶନୀ ୧୯୮୦ ମସିହାରେ ଅନୁଷ୍ଠିତ ହୋଇଥିଲା । ଏବେ ବି ସେହି ପ୍ରଦର୍ଶନୀ କଥା, ପ୍ରଦର୍ଶନୀରେ ସଂଯୁକ୍ତା ପାଣିଗ୍ରାହୀଙ୍କ ନାଚ ଓ ପଣ୍ଡିତ ରଘୁନାଥ ପାଣିଗ୍ରାହୀଙ୍କ ଗୀତ କଥା ଲୋକଙ୍କ ମନେ ଅଛି । ମସ୍କୋରେ ସାପ ସାପୁଆଣି ପଟୁଆର ମୁଖା ଦେଖି ଲୋକେ ପାଗଳ ପ୍ରାୟ ହୋଇଗଲେ । କାଏରୋରେ ମଧ୍ୟ ଅନୁରୂପ ଅବସ୍ଥା । ମୂଳକଥା ଆମଦେଶରେ କଳାକୌଶଳର ଅଭାବ ନାହିଁ । ଏଠାରେ ପରମ୍ପରା ଉଣା ଅଧିକେ ସଚଳ, ସଜୀବ, ଆମେ କିନ୍ତୁ ଆମେ ଆମର ଏତେ କଳା ପ୍ରାଚୂର୍ଯ୍ୟ ମଧ୍ୟରେ ରହି ମଧ୍ୟ ଦରିଦ୍ର । କଳାର ଉପଯୁକ୍ତ ମୂଲ୍ୟ ଦେବା ଆମେ ଶିଖିନୁ । ଆମେ ବିଦେଶୀ ବସ୍ତୁ ପ୍ରେମରେ ପଡିଛୁ ।

**ସଂଜୟ: ଆପଣ ସବୁବେଳେ କଳା-ଇତିହାସ ତଥା କଳା ଗବେଷଣା ଉପରେ ଗୁରୁତ୍ୱ ଦେଇଥାନ୍ତି । ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟରେ ଆପଣ ସ୍ୱତନ୍ତ୍ର କଳା-ଇତିହାସ ବିଭାଗ ସୃଷ୍ଟି କରିଥିଲେ । ତଥାପି ଓଡ଼ିଶାରେ କଳା-ସମାଲୋଚନା ଏତେ ଦୁର୍ବଳ କାହିଁକି ?**

**ଦିନନାଥ**: ତମେ ବୋଧହୁଏ ସଂଭ୍ରମରେ କଳା ସମାଲୋଚନା ଦୁର୍ବଳ ବୋଲି କହିଲ, ମୋଟେ ନାହିଁ ବୋଲି କହିଲନି, ଏଣୁ ଧନ୍ୟବାଦ । ଏତେ ତ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଅଛି । ବଳିଷ୍ଠ ସାହିତ୍ୟ ସମାଲୋଚନା କାହିଁ ? ଅବଶ୍ୟ ସାହିତ୍ୟରେ ଯେତିକିଟା ଅଛି ବା ସମ୍ଭବ ହୋଇପାରିଛି ଚିତ୍ରକଳା କ୍ଷେତ୍ରରେ ସେତିକି ମୋଟେ ନାହିଁ କହିଲେ ଚଳେ । ସମାଲୋଚନା ଏକ ସୃଜନଶୀଳ ବ୍ୟାପାର । ସୂର୍ଯ୍ୟାସ୍ତକୁ ଦେଖି, ଅନୁଭବ କରି, କବିତା, ଗପ, ପ୍ରବନ୍ଧ ଲେଖିଦେଇ ହେଉଛି, ସୂର୍ଯ୍ୟାସ୍ତ ଚିତ୍ରଟିଏ ସଂପର୍କରେ ପାରାଗ୍ରାଫେ ସମାଲୋଚନାମୂଳକ ରଚନାଟିଏ କ'ଣ ଲେଖି ହୋଇପାରନ୍ତାନି ? ଆମେ, ଧରାଯାଉ ପରୀକ୍ଷାମୂଳକ ଭାବେ ଘୋଷଣା କରନ୍ତେ କଳାସମାଲୋଚନା ମୂଳକ ଉତ୍କୃଷ୍ଟ ଲେଖାପାଇଁ ବାର୍ଷିକ ତିନିଲକ୍ଷ ଟଙ୍କାର ପୁରସ୍କାର ଦିଆଯିବ । ଅନ୍ତତଃ କିଛି ସାହିତ୍ୟିକ ଅଣ୍ଡାଭିଡ଼ି ବାହାରନ୍ତେ, ମନେ ହେଉଛି । ଓଡ଼ିଶାରେ ଯେଉଁମାନେ କଳା-ଇତିହାସ ପଢ଼େଇବା ଦାୟିତ୍ୱରେ ଥିଲେ ବା ଅଛନ୍ତି ସେମାନେ ତ ଧାଡ଼ିଏ କଳା ସମାଲୋଚନା ଲେଖୁନାହାନ୍ତି ଆମେ ଆଉ ଅନ୍ୟ କାହାକଥା କହିବା । ଆମର 'ଛାଇତାପିଆ' ମନୋବୃତ୍ତି । (ତାପି ବା କରଣି ଭଳି ଗୋଟିଏ ହତିଆର ସାହାଯ୍ୟରେ ମିସ୍ତ୍ରୀ ଇଟାକାନ୍ଥ ଗଢ଼େ ଆଉ ଶିଳ୍ପୀ ସେଭଳି ଗୋଟିଏ କରଣି ବା ସେଚୁଲା ସାହାଯ୍ୟରେ ଘରେ ଛାଇରେ ବସି ଚିତ୍ର କରେ ଏଣୁ ମୋର ଜଣେ ବନ୍ଧୁ ଶିଳ୍ପୀମାନଙ୍କୁ ଛାଇତାପିଆ ବୋଲି ଅଭିହିତ କରିଛନ୍ତି ।) ଶିଳ୍ପୀମାନେ କାରିଗର, ଆଉ ଡ୍ରଇଁମାଷ୍ଟ ହୋଇଗଲେଣି । ବୌଦ୍ଧିକତା ଠାରୁ ଓଡ଼ିଶାର ଅଧିକାଂଶ ଶିଳ୍ପୀ ଦୂରେଇ ଗଲେଣି । ଗତାନୁଗତିକ ଭାବେ ଦେଖାଚାହାଁ ବାହାଘର ହେଉଛି । ଅଧିକାଂଶ ଉପରେ ଉପରେ ଭାସୁଛନ୍ତି । କଳା-ଇତିହାସ ପାଠ କଷ୍ଟକର ବ୍ୟାପାର । ଏ ସଂପର୍କରେ ସୁନାରୀ ଓ କେଉଟ ଦୁଇ ସାଙ୍ଗଙ୍କ କଥା ମନେପଡେ । କେଉଟ ଯେଉଁଠିକି ଗଲା ତା ଜାଲ ବୁଣିଲା । ସୁନାରୀ ବାପୁଡ଼ା ଠୁକ୍ ଠୁକ୍ ନ ହେଲେ, ନିଆଁ ଉନ୍ହେଇଟି ନ ହେଲେ, ପାଣି କୁଣ୍ଡଟିଏ ନହେଲେ ବା ମୋଟା ମୋଟି କହିବାକୁ ଗଲେ ଶାଳଟିଏ ନହେଲେ ଗହଣା ଗଢ଼ିବ କିମିତି । କଳା-ଇତିହାସରେ କ୍ଷେତ୍ରଗବେଷଣା, କ୍ୟାମେରା, ଫଟୋ, ଚାର୍ଟ, ଡ୍ରଇଁ ଏଭଳି କେତେ ସରଞ୍ଜାମ ଦରକାର, ସୁନାରୀର ମୋଟାମୋଟି ଶାଳଟିଏ । ପୁଣି କଳାସାମଗ୍ରୀ ଚିହ୍ନଟ କରିବାର ଆଖି, ଅଭିଜ୍ଞତା, ଆଗ୍ରହ ନଥିଲେ ଗବେଷଣାରେ ପାଦେ ଆଗେଇ ହେବନି । ଏବେତ କେତେ ବୈଷୟିକ କୌଶଳ ଉପଲବ୍ଧ ହେଲାଣି, ଡ଼ିଜିଟଲ୍ କ୍ୟାମେରା, କମ୍ପ୍ୟୁଟର୍, ଭ୍ରମଣର ସୁଯୋଗ । ଗବେଷଣା ହେଉନି କାହିଁକି ? ବିଭୂତି କାନୁନ୍‌ଗୋ ଚିତ୍ରକଳା ମହାବିଦ୍ୟାଳୟରେ କୁଆଡ଼େ ପଚିଶି ନା ପଚାଶ କମ୍ପ୍ୟୁଟର୍, ସମସ୍ତଙ୍କ ହାତରେ ଡିଜିଟଲ୍ କ୍ୟାମେରା, ଶୀତତାପ ନିୟନ୍ତ୍ରିତ

Digitized by srujanika@gmail.com

କାର୍। କ'ଣ ପୁଣି ଅସୁବିଧା ହେଲା ଯେ କଳା ଇତିହାସ ଭଲ ପଢ଼ାହେଉନି, ଗବେଷଣା ହେଉନି। ଗବେଷଣା ପାଇଁ ଯାହା ଅସଲ ଦରକାର ତା'ର ଅଭାବ ଗବେଷଣା ମାନସିକତା, ଏ ଦେଶର କଳା ପରମ୍ପରାକୁ ଉନ୍ମୋଚିତ କରିବାର ଆଗ୍ରହ। ଚିତ୍ରଟିଏ ଆଙ୍କିଦେଲେ ଲକ୍ଷେ ନ ହେଲେ ଅନ୍ତତଃ ପାଞ୍ଚ ଦଶ ହଜାର ଟଙ୍କାରେ ତ ବିକ୍ରି ହେଇଯିବ। କଳା ଇତିହାସ କଲେ ହବ କ'ଣ ? ମୋର କଳା ଇତିହାସିଆ ଅବସ୍ଥା ଦେଖି ମୋର କେତେ ପୁରାତନ ଛାତ୍ର ହସୁଛନ୍ତି। କହୁଛନ୍ତି ସାର୍‌ଙ୍କ ମୁଣ୍ଡ ବୋଧେ ବିଗିଡ଼ି ଗଲାଣି। ସେଇ ପଟଚିତ୍ର, ସେଇ ତାଳପତ୍ର, ଗୋପାଳ କାନୁନ୍‌ଗୋ, ଶରତ ଚନ୍ଦ୍ରଙ୍କ ଗୁଣ କୀର୍ତ୍ତନ କରି କ'ଣ ହେବ। ସେମାନେ ଆଉ କ'ଣ ଶିଳ୍ପୀ ହେଇ ରହିଛନ୍ତି ଯେ ତାଙ୍କ ପ୍ରଶସ୍ତିଗାନ କରି ବଞ୍ଚି ହେବ। ଛାଇତାପିଆ ଶିଳ୍ପୀମାନେ ତ ଏଭଳି କଥା କହୁଛନ୍ତି, ଯୁଜିସି ମୋଟା ଦରମା ପାଉଥିବା ଅଧ୍ୟାପକ ଓ ପ୍ରାଧ୍ୟାପକମାନେ ନାକରେ ଆଙ୍ଗୁଠି ଦେଇ ହସୁଛନ୍ତି। କଳା ଇତିହାସରେ ଏବେ କଳଙ୍କି ଧରିଲାଣି।

**ସଂଜୟ: କଳା ଇତିହାସ, ପ୍ରାଚୀନ ଭାରତୀୟ ଇତିହାସ ଓ ସଂସ୍କୃତି, ନାନ୍ଦନିକ ଶିକ୍ଷା ଓ କଳା ସମାଲୋଚନା ଭିତରେ ଫରକ କ'ଣ? ଏହା ବ୍ୟତୀତ କଳା ଗବେଷଣାର ଅନ୍ୟ କିଛି ବିଭାଗ ଅଛିକି ?**

**ଦିନନାଥ**: ଓଡ଼ିଶାର କୌଣସି ବିଶ୍ୱବିଦ୍ୟାଳୟରେ କଳା ଇତିହାସ ବିଭାଗ ନାହିଁ। ସଂସ୍କୃତି ବିଶ୍ୱବିଦ୍ୟାଳୟରେ କଳା ଇତିହାସ ବିଭାଗ ଅଛି ବୋଲି କୁହାଯାଉଛି। ଆଗରୁ ଐତିହାସିକମାନେ ଏହି ପାଠ ପଢ଼ାଉଥିଲେ। ଏବେ କିଏ ଜଣେ ଅଧେ କଳା ଇତିହାସ ପଢ଼େଇବାକୁ ଚେଷ୍ଟାକଲେ ମଧ୍ୟ ସେମାନଙ୍କ କଦର୍ ନାହିଁ। ପ୍ରାଚୀନ ଭାରତୀୟ ଇତିହାସ ଓ ସଂସ୍କୃତି 'ଇତିହାସ-ପାଠ'। ହୁଏତ ଏହି ପାଠ୍ୟକ୍ରମରେ ମନ୍ଦିର, ସ୍ଥାପତ୍ୟ ସଂପର୍କରେ ପଢ଼ାଯାଏ। କିନ୍ତୁ କଳା-ଇତିହାସ-ପାଠର ଆଭିମୁଖ୍ୟ ସମ୍ପୂର୍ଣ୍ଣ ଅଲଗା। ଏହି ପାଠର ଆଧାର ହେଲା ଚିତ୍ରକଳା ଓ ଭାସ୍କର୍ଯ୍ୟ। ଏହି ଅଧ୍ୟୟନ ଭିତରେ କଳାଭ୍ୟାସ ସ୍ଥାନ ପାଏ। ଅଧ୍ୟାପନା କଳାଭ୍ୟାସ ସହିତ ସଂପର୍କୀତ ହୁଏ। ଚିତ୍ରକଳା ଓ ଭାସ୍କର୍ଯ୍ୟକୁ ଉପଭୋଗ କରିବା ଓ ତାକୁ ଟେକ୍ସଟ୍ ଭଳି ପାଠ କରିବାର ଅଭୀପ୍ସା ରଖେ। ଚିତ୍ରାତ୍ମକତା ବା କଳା ସେନ୍‌ସିଟିଭିଟି ଏହି ପାଠର ବଡ଼ କଥା। କଳା ଇତିହାସର ବିସ୍ତାରିତ ପରିପ୍ରେକ୍ଷୀ ଭିତରେ ନାନ୍ଦନିକ ଶିକ୍ଷା ଓ କଳା ସମାଲୋଚନାର ସ୍ଥାନ ଅଛି। ଏହି ଉଭୟ ଅଧ୍ୟାପନା ଭିତରେ ରୂପ, ରେଖା, ବର୍ଣ୍ଣ, ଭାବ, ଲାବଣ୍ୟ ଓ ସୌନ୍ଦର୍ଯ୍ୟର ପର୍ଯ୍ୟାଲୋଚନା କରାଯାଏ। ବହୁ ଓଡ଼ିଆ କବି ଓ ଲେଖକ ଅଛନ୍ତି ଯେଉଁମାନେ ନିଜ ରଚନାରେ ଚମତ୍କାର ଉପମା, ରୂପକଳ୍ପ, ଶବ୍ଦ ଆଡ଼ମ୍ବର ଖଞ୍ଜିଦେଇ ରଚନାକୁ ସରସ, ସୁନ୍ଦର ଓ ଧ୍ୱନିମୟ କରିଦେଇ ପାରନ୍ତି। ସେମାନେ କିନ୍ତୁ ଦୃଶ୍ୟକଳା ଅନଭିଜ୍ଞ ହୋଇଥିବାରୁ କଳାର ସୂକ୍ଷ୍ମତମ ସଂବେଦନା ଓ ତନ୍ତ୍ରୀକୁ ଝଂକୃତ କରିପାରନ୍ତିନି। କଳାର ଅନ୍ତର୍ବଳୟ ଭିତରେ ପ୍ରବେଶ କରିପାରନ୍ତିନି ଏଣୁ ସେମାନଙ୍କ କଳା ସମାଲୋଚନା ଉପର ଠାଉରିଆ ହେଇଯାଏ। କଳା ସାମଗ୍ରୀ ଦେଖିବାରେ, ପସନ୍ଦ କରିବାରେ ବା ତା'ର ପୃଷ୍ଟପୋଷକତା କରିବାରେ ସେମାନଙ୍କ ମାନସିକତା ନଥାଏ। ସେମାନଙ୍କ ଅନୁଭବ ଭିତରେ କଳା ସ୍ଥାନ ପାଇନଥାଏ। ନାନ୍ଦନିକତା ଓ କଳାସମାଲୋଚନା କଳା-ଇତିହାସର ଅଙ୍ଗ ହେଲେ ମଧ୍ୟ ଏଥିରେ ମନନଶୀଳତା ଅତ୍ୟନ୍ତ ଗଭୀର। ସାହିତ୍ୟ ସମାଲୋଚକ ସୃଜନଶୀଳ ବ୍ୟକ୍ତିଟି ନହୋଇ କେବଳ ଗତାନୁଗତିକତାରେ ସମାଲୋଚନା ଲେଖିଲେ ତାହା ଯେଭଳି ଅନ୍ତଃସାର ଶୂନ୍ୟ ହୁଏ, ସେଭଳି ଶିଳ୍ପର ବେଦନା ନ ବୁଝି ଶିଳ୍ପ ସମାଲୋଚନାରେ ପ୍ରବେଶ କଲେ ତାହା ମାଷ୍ଟ୍ରିଆ (ଏକାଡ଼େମିକ୍) ହୋଇଯାଏ, ପାଣ୍ଡିତ୍ୟରେ ଭାରାକ୍ରାନ୍ତ ହେଇଯାଏ ସିନା ସୃଜନ ସମ୍ଭାବନାଠାରୁ ଦୂରେଇଯାଏ। ବର୍ତ୍ତମାନ କଳା ଗବେଷଣାର ବହୁ ବିଭାଗ ଦେଖାଗଲାଣି କିନ୍ତୁ ଏସବୁ ମୂଳରେ ସୃଜନ, ସେନ୍‌ସିଟିଭିଟି, ରସିକତା ଓ କାବ୍ୟିକତା ପ୍ରଧାନ କଥା।

Digitized by srujanika@gmail.com

**ସଂ: କଳା ଗବେଷଣା, ସାହିତ୍ୟ, ଭିଜୁଏଲାଇଜେସନ୍, ଡିଜାଇନିଙ୍ଗ୍ ଏବଂ ସଂଗଠନ କ'ଣ ଏକା କଥା । ଭିଜୁଏଲାଇଜେସନ୍ ଓ ଡିଜାଇନିଙ୍ଗ୍ ବିଭାଗଟି ଓଡ଼ିଶାରେ କାହିଁକି ବଳିଷ୍ଠ ନୁହେଁ ?**

**ଦିନନାଥ:** ଓଡ଼ିଶାରେ ଆଜିକାଲି ସାହିତ୍ୟ ପ୍ରବଳ ହେଲାଣି । ଯୁଆଡ଼େ ଦେଖିବ ସିଆଡ଼େ କବି, ଲେଖକ, ସଂପାଦକ, ସଂପାଦିକା, ନାଟ୍ୟକାର ଇତ୍ୟାଦି ଇତ୍ୟାଦି । ଓଡ଼ିଶାରେ ଏଆରି ଭିତରେ ଶିଳ୍ପୀଙ୍କ ସଂଖ୍ୟା ମଧ ବଢ଼ିଗଲାଣି । ଶିଳ୍ପୀମାନେ ଛବି ବିକି ଅଧିକ ଟଙ୍କା ପାଉଛନ୍ତି ବୋଲି କୁହାଯାଉଛି । ପୁରସ୍କାର ପ୍ରାପ୍ତିଛଡ଼ା ଗପଟିଏ ପାଇଁ ବା କବିତାଟିଏ ପାଇଁ ଲକ୍ଷେ ଟଙ୍କା ପାଇବା ଶୁଣା ଯାଇନି । ଛବି କ୍ଷେତ୍ରରେ ଅର୍ଥପ୍ରାପ୍ତି ଅତି ସାଧାରଣ ଘଟଣା । କିନ୍ତୁ ଗୋଟିଏ ଧାରଣା ବଳବତ୍ତର ହେଉଛି ଓଡ଼ିଶାରେ ଯେତେ ବଡ଼ ବଡ଼ କବି ଓ ସାହିତ୍ୟିକ ଅଛନ୍ତି, ତେତେ ବଡ଼ ବଡ଼ ଶିଳ୍ପୀ କାହାନ୍ତି ? ଏହି ବିଭାଗଟି ଅବହେଳିତ । ଏଇଥି ପାଇଁ ଅନ୍ୟ କେହି ବିଶେଷ ଦାୟୀ ନୁହଁନ୍ତି, ଯେତିକି ପରିମାଣରେ ଶିଳ୍ପୀମାନେ ନିଜେ ଦାୟୀ । ଏଥିରେ କଳା ଗବେଷଣା କ'ଣ ହେବ ? ଆମେ ଶିଳ୍ପୀଦଳକ ଅଣ୍ଟାସିଧାକରି ଠିଆ ହେବା ଆଜିଯାଏଁ ଶିଖିପାରିଲୁନି । ଖାଲି ତ ପ୍ରସିଦ୍ଧ ଓ ଲୋକପ୍ରିୟ ହେବୁ ବୋଲି ପ୍ରଚ୍ଛଦ ଆଙ୍କିଲୁ । ତାହାହିଁ ହେଇଗଲା ଆମ କଳା ଗବେଷଣାର ନିର୍ଯ୍ୟାସ । ପ୍ରଚ୍ଛଦପଟକୁ ଅସ୍ତ୍ରକରି ତମେ କ'ଣ ଜାତୀୟ ସ୍ତରରେ ଲଢ଼ିପାରିବ ? ବୁଝିବାକୁ ଚେଷ୍ଟାକର ଆମର ଭୌଗୋଳିକ ସୀମା, ଭାଷା ସୀମା ନାହିଁ । ସାରା ବିଶ୍ୱ କଳାକାରଙ୍କ ଚରାଭୂଇଁ । ଆଜିର ବିଶ୍ୱାୟନ ଯୁଗରେ ନିଜର ଅସ୍ମିତା ପାଇଁ କଳା ଓ ସାହିତ୍ୟର ସୃଷ୍ଟି ଅବଶ୍ୟମ୍ଭାବୀ ହେଇପଡ଼ିଲାଣି । ଏଭଳିକି ସାହିତ୍ୟକୁ ତା'ର ସଂକୁଚିତ ସୀମା ଓ ବିଭବକୁ ଅତିକ୍ରମ କରିବାକୁ ପଡ଼ିବ । ଆମର ଛୋଟିଆ ଛୋଟିଆ ପ୍ରୟାସଗୁଡ଼ିକୁ କାଳ ଧୋଇ ଦେବ । ଏଣୁ ଭିଜନ୍ ଓ ଭିଜୁଏଲାଇଜେସନ୍ ର ଆବଶ୍ୟକତା । ଦେଖୁନ ମାତ୍ର ପଚାଶ ବର୍ଷ ପରେ ଭୁବନେଶ୍ୱର ରାସ୍ତାଘାଟକୁ ଚାରିଗୁଣ ଚଉଡ଼ା କରିବା ଦରକାର ହେଲାଣି । ଆମ ଡିଜାଇନିଙ୍ଗ୍‌ର କାର୍ପଣ୍ୟ, ସୀମୀତତା ଆମକୁ ଆଗକୁ ବଢ଼ିବାକୁ ଦେଉନି । ଥରେ ଜଣେ ସାହିତ୍ୟିକ ମୋ ସାଙ୍ଗରେ ଯୁକ୍ତି କଲେ, କହିଲେ, ବହିରେ ତ ପାଠ ରହିଲେ ହେଲା, ଛାପା ଏତେ ନିର୍ମଳ, ନିର୍ଭୁଲ୍ ଓ ଚକଚକିଆ ହେବା କ'ଣ ଆବଶ୍ୟକ । ମୁଁ ୧୯୯୮, ୧୯୯୯ରେ ମୋ ବହିର ପ୍ରକାଶନଗୁଡିକୁ ରୁଚିପୂର୍ଣ୍ଣ ଓ ଶାଳୀନ କରିବାରୁ ଥୋକେ ଅପରିଣାମଦର୍ଶୀ କହିଲେ, ହଁ ଚିତ୍ରକାର ତ ରଙ୍ଗ ବେରଙ୍ଗ କରିଦେଉଛି । ସେମାନେ କହିଲେନି ବହି ପ୍ରକାଶନ ଏଭଳି ହେବା ଦରକାର । ଅବଶ୍ୟ ଆମର ବହି ଡିଜାଇନ୍ ଓ ଛାପା ଏବେ ସୁନ୍ଦର ହେଲାଣି । ତଥାପି ପଡିଶା ରାଜ୍ୟର ବୁଦ୍ଧିଠାରୁ ଆମର ଦଉଡ଼ ବେଳେ ବେଳେ କମ୍ ହେଇଯାଉଛି । ଆମ ଓଡ଼ିଶାରେ ସପ୍ନଦେଖା ଲୋକଙ୍କ ସଂଖ୍ୟା କମିଗଲାଣି । ଏବେ ବାସ୍ତବବାଦୀଙ୍କ ସଂଖ୍ୟା, ଧନାଢ୍ୟଙ୍କ ସଂଖ୍ୟା ବଢୁଛି । ଏମାନେ ହିଁ କହୁଛନ୍ତି ଓଡ଼ିଆ ବହିର ଦାମ ଦୁଇଶହ, ଅଢ଼େଇଶହ ହେଲେ ବନ୍ୟା ପ୍ରପୀଡିତ ଦେଶରେ କିଣିବ କିଏ ? ଆରେ ଭାଇ ଉତ୍କର୍ଷର ସପ୍ନଦେଖ, ହତାଶ ଲାଗିଲେ କୋଣାର୍କ ମନ୍ଦିର ଆଡ଼େ ଥରେ ବୁଲିଆସ, ଏହା ହିଁ ଅସଲ ଭିଜୁଏଲାଇଜେସନ୍ ।

**ସଂଜୟ: କେଉଁ ସୃଜନ ବିଭାଗଟି ଆପଣଙ୍କ ପସନ୍ଦ ?**

**ଦିନନାଥ:** ଯାହା ମୋତେ ordinary ହେବାକୁ ଦେବନି, ତମେ ତାକୁ ଅନନ୍ୟ ହେବାପାଇଁ ପ୍ରୟାସ କହିପାର । ସର୍ଜନଶୀଳ ନ ହେଇପାରିଲେ କି ମଣିଷ ? ସର୍ଜନର ସବୁ ବିଭାଗ ମୋର ପସନ୍ଦ । ସର୍ଜନ ବିଦ୍ୟା ତ ଗୋଟିଏ ସମନ୍ୱିତ ଉତ୍ସ, ଯାହା ଅନନ୍ୟ ହେବାରେ ମଣିଷକୁ ସାହାଯ୍ୟ କରେ । ହେ ପ୍ରଭୁ ମୋର ଧନ ଲୋଡ଼ା ନାହିଁ, ଜନ ଲୋଡ଼ା ନାହିଁ, ଧରାଯାଉ ପୁରସ୍କାର ବି ଲୋଡ଼ାନାହିଁ ଲୋଡ଼ା କେବଳ ସର୍ଜନ ବାଲିରୁ ମୁଠାଏ ରେଣୁ । ସେହି ମୁଠାକ ଧରି ଅସ୍ତଗାମୀ ସୂର୍ଯ୍ୟର ଗୈରିକ ଆଭାରେ ନିଜକୁ ବିମଣ୍ଡିତ କରିବି । ବେଶ୍ ଏତିକି ହିଁ ଯଥେଷ୍ଟ ହେବ । ଏହି ମୁଠାଏ ସର୍ଜନ ରେଣୁ । କେତେ ବିସ୍ତୀର୍ଣ୍ଣ ଓ ବିଶାଳ ସର୍ଜନର ଏହି ବେଳାଭୂମି, କେତେ କ୍ଷୁଦ୍ର ମୋର ମୁଠା । ଏହି ମୁଠା ଭିତରେ ଚିତ୍ରକଳା, ସାହିତ୍ୟ, ଗବେଷଣା, କଳା ଇତିହାସ, ନାଟ, ଗୀତ ସବୁକିଛି । ମୁଁ ତ ଏବେ ଭାବୁଛି ଯଦି ସମ୍ଭବ ହେଇପାରନ୍ତା ଗୀତ ଗାଇବା, ନାଚ କରିବା ଶିଖନ୍ତି ।

Digitized by srujanika@gmail.com

**ସଂଜୟ: ଆପଣଙ୍କ ଦୀର୍ଘ କଳାଯାତ୍ରାର କେଉଁ କେଉଁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗକୁ ଆମେ ମନେ ରଖିବୁ ବୋଲି ଭାବୁଛନ୍ତି ?**

**ଦିନନାଥ:** ମୁଁ ଭାବୁନି ଆପଣମାନେ କିଛି ମନେ ରଖିବାକୁ ଚେଷ୍ଟା କରିବେ । କାହିଁକି ମନେ ରଖିବେ, ତା'ର ଯଥାର୍ଥତା ବି ନାହିଁ । କୁହାଯାଇଛି 'ପବ୍ଲିକ ମେମୋରି' ଅତ୍ୟନ୍ତ କ୍ଷଣସ୍ଥାୟୀ । ବଞ୍ଚି ଥାଉ ଥାଉ କିଛି ବ୍ୟକ୍ତିଙ୍କର ମୃତ୍ୟୁ ହେଇଯାଏ । ଆଉ କିଛି ବ୍ୟକ୍ତି କେବଳ ବଞ୍ଚି ରହିବା ପାଇଁ ବଞ୍ଚନ୍ତି । ମୁଁ ଏଥିରୁ କୌଣସି ଶ୍ରେଣୀର ନୁହେଁ । ମୁଁ ଆଜିଯାଏଁ ଜଣେ ସର୍ଜନଶୀଳ ବ୍ୟକ୍ତିଭାବେ ବଞ୍ଚି ରହିଛି । ମୋ ଚିତ୍ରକଳା ଅବଶ୍ୟ ଦେଶ ବିଦେଶର ବିଭିନ୍ନ ଚିତ୍ରବୀଥିରେ ସଂଗୃହୀତ । ମୋର ଚିତ୍ରକଳାର ଗବେଷଣା ଗ୍ରନ୍ଥଗୁଡ଼ିକ ଆନ୍ତର୍ଜାତୀୟ ପଣ୍ଡିତ ସମାଜରେ ସ୍ୱୀକୃତ । ଯେଉଁମାନେ ଭବିଷ୍ୟତରେ ଓଡ଼ିଶାର ଚିତ୍ରକଳା ସଂପର୍କରେ ଗବେଷଣା କରିବେ ସେମାନେ ନିଶ୍ଚିତ ଭାବେ ଆମକୁ ସ୍ମରଣ କରିବେ ବୋଲି ମୋର ଧାରଣା ହେଉଛି । ଆଉ ସାହିତ୍ୟ, ହୁଏତ ଆଜି ମୋ ବହି ମିଳୁଛି, କାଲି ମିଳୁ ନଥିବ । କିଏ କିମିତି ପଢ଼ିବାକୁ ସୁଯୋଗ ପାଇବେ ଯେ ମନେ ରଖିବେ । ହଁ କିଏ ଯଦି ଓଡ଼ିଆ ସାହିତ୍ୟର ଗବେଷଣା କରେ ହୁଏତ ସିଏ ବେଳେ ଅଧେ ଖୋଜାଲୋଡ଼ା କରିପାରେ । ପ୍ରତ୍ୟେକ ସର୍ଜନଶୀଳ ବ୍ୟକ୍ତି ଅମର ହେବାର ପ୍ରଚେଷ୍ଟାରେ । କାଳ ସେମାନଙ୍କ ଭିତରୁ ନବେ ପ୍ରତିଶତ ସାହିତ୍ୟକୁ ଧୋଇଦେବ । ସେ ଭିତରେ ବହୁ ପୁରସ୍କୃତ ସାହିତ୍ୟ ବି ନିଶ୍ଚିହ୍ନ ହେଇଯିବ । କାଳ ବଡ଼ ନିଷ୍ଠୁର । ଯଦି ମାନବିକତାର, ଅନନ୍ୟତାର ସରଟିଏ କେଉଁଠି ଉଜ୍ଜୀବିତ ଥାଏ ହୁଏତ ତାହା କାଳଜୟୀ ହେଇପାରେ । ଓଡ଼ିଶା ପରିପ୍ରେକ୍ଷୀରେ ମୁଁ ବହୁକଥା ମୋ ସପକ୍ଷରେ କହିପାରେ କିନ୍ତୁ କାଳର ବିପୁଳାୟତନ ସ୍ରୋତ ଭିତରେ ଆମ ମାନଙ୍କ ଚିହ୍ନ ରହିବ ତ ?

**ସଂଜୟ: ଆପଣଙ୍କ ସୃଜନ ବିଭବର ବା ଆପଣଙ୍କ ସାମଗ୍ରିକ କୃତିର ଆକଳନ କଲେ ମନେହୁଏ ଆପଣଙ୍କ କୃତି ଏଯାଏଁ ସଠିକ ଭାବେ ଆକଳନ କରାଯାଇନାହିଁ । ଆପଣ କ'ଣ ବିଚାରନ୍ତି ଯେ ଆପଣ ଅନ୍ୟ ପ୍ରଦେଶରେ ବା ଅନ୍ୟ ଦେଶରେ ଜନ୍ମ ହୋଇଥିଲେ ଠିକ୍ ହୋଇଥାନ୍ତା ?**

**ଦିନନାଥ:** କଥାଟି ଠିକ୍ ତାହା ନୁହେଁ । ମୋର ଜୀବନରେ ଯାହା କିଛି ସମ୍ଭବ ହେଇଛି ତାହା ଓଡ଼ିଶା ପରିପ୍ରେକ୍ଷୀରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏଣୁ ଅନ୍ୟ କେଉଁଠି ଜନ୍ମ ହେଇଥିଲେ କ'ଣ ହେଇଥାନ୍ତା, ତାହା ଏବେ ବିଚାର୍ଯ୍ୟ ନୁହେଁ । ମୁଁ ପ୍ରଥମେ ପ୍ରଥମେ ବିଦେଶ ଗଲେ ଭାବୁଥିଲି ସେଇଠି ରହିଯାଇଥିଲେ ଜୀବନ ଆହୁରି ବିକଶିତ ହୋଇଯାଇ ପାରନ୍ତା । ମୋ ବନ୍ଧୁ ଏବରହାର୍ଡ୍ କହିଲେ ତମେ ସେଠି ଭାରତର ଲଳିତ କଳା ଏକାଡ଼େମୀର ସଚିବ ଏଠି ସେଭଳି ଶୀର୍ଷ ପଦବୀରେ ରହିବା ସମ୍ଭବ ନୁହେଁ । ତମେ ବୋଧହୁଏ ଭାବୁଛ ଯେ ଏଠି ସବୁ ଠିକ୍ ଠାକ୍ ଚାଲିଛି । ଶିଳ୍ପକଳା ପାଇଁ ଭାରତବର୍ଷ ହିଁ ଉତ୍କୃଷ୍ଟ ଦେଶ । ଓଡ଼ିଶାର ଶିଳ୍ପ ବିଭବ କୌଣସି ଗୁଣରେ ନ୍ୟୂନ ନୁହେଁ । କିଛି ଜାତି ଶୃଙ୍ଖଳିତ, ସଭ୍ୟ, ସଂସ୍କୃତ, କର୍ମଠ ଓ ବିକଶିତ ଏବଂ କିଛି ଜାତି ଆଳସ୍ୟ ପରାୟଣ, ହୀନମନ୍ୟ, ଈର୍ଷା ପରାୟଣ ଓ ପଛୁଆ । ଦୁଃଖର କଥା ଆମେ ପଛୁଆଙ୍କ ଦଳରେ ଅଛୁ । ଏଠି ଉଦାରତାର ଅଭାବ । ବହୁ ଅବାଞ୍ଛିତ ବ୍ୟକ୍ତି ଏଠି ସମାଜର ଗୁରୁତ୍ୱପୂର୍ଣ୍ଣ ପଦବୀରେ ଅଛନ୍ତି । ଏଠି ବୋଲି ନୁହେଁ, ସବୁଠି । ଯେଉଁମାନେ ଧନାଢ଼୍ୟ ବ୍ୟକ୍ତି, ସେମାନଙ୍କ ପାଖରେ କ୍ଷମତା । ଆମ ଆଗରେ ବହୁ ବିଶିଷ୍ଟ ସାହିତ୍ୟିକ, ସଂଗୀତଜ୍ଞ, ଚିତ୍ରଶିଳ୍ପୀ ଗଲେଣି, କାହା ପାଇଁ କ'ଣ ହେଇଛି । ଆମର ସାଂସ୍କୃତିକ ସଂସ୍ଥାଗୁଡ଼ିକ ତ ପଙ୍ଗୁ । ଓଡ଼ିଶାରେ ଖାଲି ସମ୍ବର୍ଦ୍ଧନାର ସୁଅ, ପୂଜ୍ୟ ପୂଜାର ଅଭିନବ ମାନସିକତା, ସବୁ ବାଚନିକ, ଭାଷଣ ସର୍ବସ୍ୱ-ଭାଟ ପରମ୍ପରା । ତଥାପି ଜାତିଟିଏ ବଞ୍ଚି ରହିଛି । ମୁଁ ଯାହା କହୁଛି ସେ ସବୁକୁ ଲିପିବଦ୍ଧ କରି ପାଠକଙ୍କ ଆଗରେ ରଖିବା ପାଇଁ ତମେ, ପୁଣି ତମ ସଂସ୍ଥା ତ ପୁଣି ଆଗେଇ ଆସିଛି । ଯେତିକି ସମ୍ଭବ ଏଠି ସେତିକିରେ ସନ୍ତୁଷ୍ଟ ରହିବାକୁ ହେବ । ଅମରତ୍ୱ ପାଇବା ପାଇଁ ବ୍ୟସ୍ତ ହେଲେ ମାନସିକ ବ୍ୟଗ୍ରତା, ରକ୍ତଚାପ ବଢ଼ିବ । କିଏ କାହାକୁ ଆକଳନ କରିବ, କାହିଁକି ବା କରିବ ? ମୁଁ ମୋ ସମ୍ପର୍କରେ

Digitized by srujanika@gmail.com

ଲେଖେଇବା ପାଇଁ କ'ଣ ଆବଶ୍ୟକୀୟ ଅର୍ଥ ଦେଇପାରିବି ? ପ୍ରେମରେ, ସ୍ନେହରେ, ଶ୍ରଦ୍ଧାରେ ଯେତିକି ସମ୍ଭବ ହେଲା । ମୁଁ ତମକୁ ଅନୁରୋଧ କରୁଛି ତମେ ଯଦି ପାରିବ ଆକଳନ କର ।

**ସଂଜୟ: ଆପଣଙ୍କ ଜୀବନ ସଂଘର୍ଷମୟ । କିନ୍ତୁ ଦେଖାଯାଇଛି ରାସ୍ତାରେ ପଥରଟିଏ ଭେଟିଲେ ପ୍ରତିବନ୍ଧକଟିଏ ସୃଷ୍ଟିହେଲେ ଆପଣ ବାଟ ଭାଙ୍ଗନ୍ତି । ଏହା ସଂଘର୍ଷ ପରିପନ୍ଥୀ ନୁହେଁକି ?**

**ଦିନନାଥ**: ମୁଁ ପଳାୟନ ପନ୍ଥୀ ନୁହେଁ । ତମେ ଅନୁମାନ କରିପାରୁଥିବ, ଛାର କ'ଣ ଗୋଟେ ପୁରସ୍କାର ଚୟନରେ ଅନୀତି ହେଲା ବୋଲି ନିଜ ଅର୍ଥ ଶ୍ରାଦ୍ଧ କରି ମୋତେ କୋର୍ଟ କଚେରୀର ଦ୍ୱାରସ୍ଥ ହେବାକୁ ପଡ଼ିଲା । ମୁଁ ଅନ୍ୟାୟ ବିରୁଦ୍ଧରେ ସବୁବେଳେ ସଂଗ୍ରାମ କରିଆସିଛି । ପ୍ରାୟ ପାଞ୍ଚଥର କୋର୍ଟର ଦ୍ୱାରସ୍ଥ ହେବାକୁ ହୋଇଛି । ଷାଠିଏ ଦଶକର କଥା ରାଜ୍ୟ ଲଳିତ କଳା ଏକାଡ଼େମୀ ଚିତ୍ର ଗ୍ୟାଲେରୀ ପାଇଁ ଚିତ୍ରକ୍ରୟ କରୁଛି । ସେତେବେଳେକୁ ମୋ ଚିତ୍ର ସର୍ବଭାରତୀୟ ସ୍ତରରେ କଲିକତା ଠାରେ ପୁରସ୍କୃତ । ଅଥଚ ଏକାଡ଼େମୀ କର୍ତ୍ତୃପକ୍ଷ ଅନ୍ୟ ଶିଳ୍ପୀଙ୍କ ଚିତ୍ର ସଂଗ୍ରହ କରୁଛି ମୋର ନୁହେଁ । ମୁଁ ପବ୍ଲିକ ସର୍ଭିସ୍ କମିଶନ ଦ୍ୱାରା ଓଡ଼ିଶା ରାଜ୍ୟ ସଂଗ୍ରହାଳୟର କ୍ୟୁରେଟର୍ ପଦବୀ ପାଇଁ ମନୋନୀତ ହୋଇ ଚାକିରିରେ ଯୋଗଦେଇ ସାରିଲିଣି, ଏଣେ ମୁଁ କୁଆଡ଼େ ଯୋଗ୍ୟ ନୁହେଁ ବୋଲି ମାଲିମକଦ୍ଦମା ହେଲା, ଧାଁଅ, କୋର୍ଟ କଚେରୀ । ମୁଁ ଦଶବର୍ଷ ଧରି ବିଭୂତି କାନୁନ୍‌ଗୋ ସରକାରୀ ଚାରୁ ଓ କାରୁକଳା ମହାବିଦ୍ୟାଳର ଅଧକ୍ଷ ରହିସାରିଲିଣି ଏଣେ ମୁଁ ଯୋଗ୍ୟ ନୁହେଁ ବୋଲି ମୋ ନାଁରେ କଚେରୀରେ ମକଦ୍ଦମା । ପୁଣି ଦୌଡ଼ । ଏହା କ'ଣ ସଂଘର୍ଷ ନୁହେଁ ? ଅନ୍ୟାୟ ଭାବେ ଅସୂୟା ପ୍ରଣୋଦିତ ହୋଇ ମୋର କଳାଯାତ୍ରାକୁ ବ୍ୟାହତ କରିବାର ଅପଚେଷ୍ଟା ଅନେକଥର ହେଇଛି । କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚିବ ଥିବା ବେଳେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ତାଳପତ୍ରପୋଥି ପଞ୍ଜୀକରଣ କରିବା ପାଇଁ ଯୋଜନା କରିବାରୁ ମୋ ନାଁରେ ଦିଲ୍ଲୀ ହାଇକୋର୍ଟରେ କେସ୍ କରାଗଲା । ଏସବୁ ଲଢ଼େଇରେ ଅପର୍ଯ୍ୟାପ୍ତ ସମୟ ଅପଚୟ ହେଇଛି । ଶିଳ୍ପୀ ସଂସଦ ଗଠନ, ଚିତ୍ରମ୍ କଳା ବିଦ୍ୟାଳୟର ପ୍ରତିଷ୍ଠା, ଓ୍ୱାର୍କିଙ୍ଗ୍ ଆର୍ଟିସ୍ ଆସୋସିଏସନ୍, ଓଡ଼ିଶା କଲ୍‌ଚରାଲ ଫୋରମ୍, କ୍ରାଫ୍‌ଟସ କାଉନ୍‌ସିଲ୍ ଏଭଳି ବହୁ କଳା ଅନୁଷ୍ଠାନ ଗଠନ ପାଇଁ, ସେଗୁଡିକୁ ବଞ୍ଚେଇ ରଖିବା ପାଇଁ ଅହର୍ନିଶ ସଂଘର୍ଷ । ଏଣୁ ଯେତେବେଳେ ମୁଁ ଅନୁଭବ କଲି ମୋର ମାନସ ସନ୍ତାନ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟକୁ ଦୁଇଜଣ ଅବାଞ୍ଛିତ ଅଧ୍ୟାପକ କଳୁଷିତ କରିବାରେ ଲାଗିପଡ଼ିଲେ, ସେଥିରୁ ମଧ ଜଣେ ମୋ ନାଁରେ ଅଯଥା ମକଦ୍ଦମା କଲେ ମୁଁ ବିଚାରିଲି, ଏଠି ରହି ଲଢ଼େଇରେ ସମୟ ଅପଚୟ କରିବା ଅପେକ୍ଷା ବାଟଭାଙ୍ଗି ଚାଲିଯିବା ଭଲ । ଦିଲ୍ଲୀ ଚାଲିଗଲି । ଦିଲ୍ଲୀରେ ପୁଣି ଆରମ୍ଭ ହେଲା ସଂଘର୍ଷ । ସରକାର ହେଲେ ସବୁଠୁ ଟାଣୁଆ ଦଳ କିଛି କରେଇଦେନି । ସବୁଥିରେ ପ୍ରତିବନ୍ଧକ, ଦିଲ୍ଲୀର ତଥାକଥିତ ବଡ଼ ବଡ଼ ଶିଳ୍ପୀମାନେ ଭାବୁଥିଲେ ଲଳିତ କଳା ଏକାଡ଼େମୀ ଗୋଟାପଣେ ସେମାନଙ୍କର, ଏକାଡ଼େମୀର କର୍ମଚାରୀ ୟୁନିୟନ୍‌ର ସବୁଥିରେ ହଟଗୋଳ । ଯାରି ଭିତରେ ଏକାଡ଼େମୀ ଚାଲିଲା, ମାନେ ଅତି ଦକ୍ଷତାର ସହିତ । ପରିସ୍ଥିତି ସବୁବେଳେ ସରଗରମ । ମୁଁ ଜବାହରଲାଲ ନେହୁରୁ ଫେଲୋସିପ୍ ପାଇଲି ଗବେଷଣା କରିବା ପାଇଁ ଏଣୁ ଏକାଡ଼େମୀ ଛାଡ଼ିଲି । ମୁଁ ଯେଉଁଠି ଥାଏ ସବୁବେଳେ ସଂଘର୍ଷର ଅଂଶ ହୋଇଯାଏ । ଖଲ୍ଲିକୋଟ ହେଉ, ଭୁବନେଶ୍ୱର ହେଉ, ଦିଲ୍ଲୀ ହେଉ ସବୁଠି । ଅଯଥା ସଂଘର୍ଷ ପାଇଁ ଆଉ ସମୟ ନାହିଁ । ମଧ୍ୟାହ୍ନ ପରେ ଅପରାହ୍ଣ ଆସି ପହଞ୍ଚିଲାଣି ଏଣୁ ସଂଘର୍ଷ ଏବେ ନିଜର ଆଳସ୍ୟ ବିରୁଦ୍ଧରେ, ଅମନଯୋଗିତା ବିରୁଦ୍ଧରେ ।

**ସଂଜୟ: ଆପଣ ଠୋକଠୋକ୍ କଥା କହିଦିଅନ୍ତି, ଆଉ ତାହା ଅପରକୁ କେତେ ବାଧିବ, କ୍ଷତି ପହଞ୍ଚେଇବ ତାର ବିଚାର କରନ୍ତି ନାହିଁ । ତେଣୁ ଆପଣଙ୍କ ଶତ୍ରୁ ସଂଖ୍ୟା ବେଶି । ଏହି ଆଦତ୍‌ର କ'ଣ ପରିବର୍ତ୍ତନ କରିହେବନି ?**

Digitized by srujanika@gmail.com

**ଦିନନାଥ:** ଦେଖ ମୁଁ ଡିପ୍ଲୋମେଟ୍ ନୁହେଁ କି ପଲିଟିସିଏନ୍ ନୁହେଁ । କିଏ ମୋତେ ଭବିଷ୍ୟତରେ ପୁରସ୍କାର ହୁଏତ ଦେଇପାରେ ବୋଲି ଅନ୍ୟାୟ ବିରୁଦ୍ଧରେ ଚୁପ୍ ରହିବି ଏହା ବି ମୋ ନୀତି ନୁହେଁ । ମୁଁ ଜଣେ ଚିତ୍ରକର ଓ ଲେଖକ ପୁଣି ଗଞ୍ଜାମିଆ । ଆମେ ଏତେ ଛନ୍ଦ କପଟ ଜାଣୁନା । ଯାହା ଦେଖିଲୁ ଯାହା ଅନୁଭବ କଲୁ ଠୋକଠୋକ କହିଲୁ । ଆମ ଗଞ୍ଜାମ ଆଡ଼େ ଆଜ୍ଞା, ଆପଣ, ବସନ୍ତୁ, ଉଠନ୍ତୁ ବି ନାହିଁ । ଆମେ ପୁଣି ଟିକିଏ ବଡ଼ପାଟିଆ । ଗଞ୍ଜାମ ଆଡ଼େ କହିବେ ଆମେ କେଉଁଥିରେ କମ୍ ନୋହୁଁ । କାହାଠାରୁ ମଧ କମ୍ ନୋହୁଁ । ହେଲେ ତମେମାନେ ଷଡ଼ଯନ୍ତ୍ର କରି ଚିତ୍ରକରଙ୍କୁ ସମାଜର ତଳ ପାହାଚରେ ବସେଇଚ । ଆମେ ଯେତେ ଯାହାକଲେ ଆମକୁ ଆଗକୁ ବଢ଼ିବା ପାଇଁ ବାଟ ଛାଡୁନ । ଏସବୁ କଥା ମନେପଡିଲେ ପ୍ରତିକ୍ରିୟା ପ୍ରକାଶ ପାଇବା ସ୍ୱାଭାବିକ । ଆମେ ଦେଖୁଛୁ ଅବାଞ୍ଛିତ, ମଧ୍ୟମ ଧରଣର ଅତି ସାଧାରଣ ବ୍ୟକ୍ତିମାନେ ଉଚ୍ଚାଟ ହେଉଛନ୍ତି । ସେମାନେ ନିଜ ସୀମା ଉଲଙ୍ଘନ କରି ବଡ଼ବଡ଼ କଥା କହିଲେ ମନ ଭିତରେ ବିଦ୍ରୋହ ହୁଏ । ମୁଁ ଅପ୍ରିୟ ସତକଥା ନ କହିବାକୁ ଚେଷ୍ଟା କରେ, ଶାସ୍ତ୍ର ମନା କରିଛି ବୋଲି ଜାଣେ । କିନ୍ତୁ ବେଳେ ବେଳେ କହି ପକାଏ । ମୋ ବନ୍ଧୁମାନେ ମୋତେ ଜାଣିସାରିଲେଣି । ଠୋକ୍‌ଠୋକ୍ କଥା ପାଇଁ ଯେଉଁ ଶତ୍ରୁତା ହେଉଛି, ତାହା ସେତେ ସାଂଘାତିକ ନୁହେଁ, ସାଂଘାତିକ ହିତଶତ୍ରୁଙ୍କ ଚକ୍ରାନ୍ତକତା । ଅସଲ ଶତ୍ରୁତା ଈର୍ଷାରୁ, ଘୃଣାରୁ । କିଛି ଲୋକ ଅଯଥା ଶତ୍ରୁ ସାଜିଛନ୍ତି । ହଁ ମୋର ମିତ୍ରଙ୍କ ସଂଖ୍ୟା ବି କମ୍ ନୁହେଁ । ମୁଁ ଜାଣୁଛି ବନ୍ଧୁହୀନ ଜୀବନ ଦୁର୍ବିସହ, ତଥାପି mediocrity ଅସହ୍ୟ ।

**ସଂଜୟ: ଆପଣ ଅନନ୍ୟ ବୋଲି ନିଜକୁ ପ୍ରମାଣିତ କରିବା ପାଇଁ ଅବାଟରେ ଚାଲନ୍ତି, ଅସାଧ କାମମାନ କରନ୍ତି । ଏଥିରେ ଆପଣଙ୍କ ଅର୍ଥ, ସମୟ ଓ ସ୍ୱାର୍ଥର ଅପଚୟ ଘଟେ । ଅନନ୍ୟ ହେବା ପାଇଁ ଏହା କ'ଣ ସ୍ୱୀକୃତପନ୍ଥା ?**

**ଦିନନାଥ:** ମୁଁ ଅନନ୍ୟ ଏକଥା କହିବାରେ ମୋର ସଂକୋଚ ବୋଧ ନାହିଁ । ମୁଁ ବୈଷ୍ଣବୀୟ ପରମ୍ପରାରେ ଉଦ୍‌ବୁଦ୍ଧ ହେଇ ବେଳେବେଳେ ନିଜକୁ ଅକିଞ୍ଚନ କହେ । ଏମିତି କଥା କହିଲେ ଲୋକେ ଭାବିବେ ମୁଁ ଅହଂକାରୀ ନୁହେଁ, କେତେ ବିନୟୀ, ବିନମ୍ର । ମୁଁ ଅନନ୍ୟ କହିଲେ କିଛି ଲୋକ କହିବେ ଉଦ୍ଧତ । ସ୍ପର୍ଦ୍ଧିତ ବୋଲି କହିବା କୁଆଡ଼େ ଭଲ । ତମର ଆକଳନ ଭୁଲ ନୁହେଁ । ମୁତ୍‌ଫରକା ସଭାପତି ହେବନି ବୋଲି ଲଳିତ କଳା ଏକାଡ଼େମୀର ସଭାପତି ଭାବେ କଳାର ଉନ୍ନତି କଳ୍ପେ ଦେଢ଼ଲକ୍ଷରୁ ଉର୍ଦ୍ଧ୍ୱଟଙ୍କା ନିଜ ପାଣ୍ଠିରୁ ଖର୍ଚ୍ଚ କରିଛି । ବିଭୂତି କାନୁନ୍‌ଗୋ କଲେଜକୁ ବଞ୍ଚେଇବା ପାଇଁ ସେଭଳି ଅପର୍ଯ୍ୟାପ୍ତ ଅର୍ଥ ଶ୍ରାଦ୍ଧ କରାଯାଇଛି । ଓ୍ୱା କଥା ଛାଡ଼ । ମୁଁ ଧନୀକ ଶିଳ୍ପୀ ନୁହେଁ । ମୁଁ ଅନନ୍ୟ ବୋଲି ଏକଥା କରିଛି । ମୋ ସମୟର ଅପଚୟ ହେଇଛି ବୋଲି ସ୍ୱୀକାର କରୁନି, ଏଭଳି ଅନୁଭବ ଆଉ କାହାର ଅଛି । ସ୍ୱାସ୍ଥ୍ୟର ହିସାବ ନିକାସ ଅଲଗା । ମୁଁ ଯାହା ନିଷ୍ପତ୍ତି ନିଏ ତାକୁ ଅକ୍ଷରେ ଅକ୍ଷରେ ପାଳନ କରେ । ଭଗବାନ ମୋର ଏହି ପ୍ରୟାସରେ ସହାୟକ ହୋଇଛନ୍ତି । ବହି ପ୍ରକାଶନରେ ମୁଁ ଲକ୍ଷାଧିକ ଟଙ୍କା ଖର୍ଚ୍ଚ କରିଛି । ଏବେ ବାପପୁଅ ମିଶି ଅଙ୍ଗରାଗ, ଇଂରାଜୀ ପତ୍ରିକା ପ୍ରକାଶ କରୁଛୁ । ପ୍ରତି ସଂଖ୍ୟା ଛାପିବା ପାଇଁ ତିରିଶି ଚାଳିଶି ହଜାର ଟଙ୍କାର ଋଣ । ସଖୀନାଟ ଉତ୍ସବ ହେଲା । ପଚାଶ ଷାଠିଏ ହଜାର ଟଙ୍କା ଶ୍ରାଦ୍ଧ ହେଲା । ଏହାହିଁ ଅବାଟରେ ଚାଲିବାର ପ୍ରତିଶ୍ରୁତି । ନିଜକୁ ଅନନ୍ୟ କରିବାର ସ୍ପର୍ଦ୍ଧା । କିନ୍ତୁ କେତେ ଦିନ ଏମିତି କାମ କରିହେବ, ଏମିତି କଥା କ'ଣ କହିହେବ ?

(କଳା, କଥା, କବିତା ଅନୁଷ୍ଠାନ ପକ୍ଷରୁ 'କ' ପୁରସ୍କାର ପାଇବା ଅବସରରେ ଦେଇଥିବା ସାକ୍ଷାତକାର)

Digitized by srujanika@gmail.com







ରିଟ୍‌ବର୍ଗ ମ୍ୟୁଜିୟମ୍ ଗ୍ୟାଲେରୀରେ ଗଙ୍ଗା ଟୁ ଗେଞ୍ଜେସ୍ ଚିତ୍ର ପ୍ରଦର୍ଶନୀରେ ଆଲବର୍ଟ ଲୁଟ୍, ଗାବିଲୁଜ୍, ଏବରହାର୍ଡ଼ ଫିସର୍, ବାରବରା ଫିସର୍, ନୀତା ପ୍ରେମଚାନ୍ଦ, ଜୋହାନସ୍ ବେଲ୍‌ଜ ତଥା ଅନ୍ୟ ଅତିଥିଙ୍କ ଗହଣରେ ।

ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟର ଷ୍ଟୁଡ଼ିଓରେ ଅଜିତ କେଶରୀ ରାୟ, ରାମହରି ଜେନା ଏବଂ ଅନ୍ୟାନ୍ୟ ଛାତ୍ରଙ୍କ ଗହଣରେ ।

ପିପିଲି ଠାରେ ଦିନନାଥଙ୍କ ଦ୍ୱାରା ସଜ୍ଜିତ ହାତୀ ପାଖରେ ଅଓ୍ୱଧ ନାରାୟଣ ତିଓ୍ୱାରୀ, ଅଶୋକ ମିଶ୍ର, ପ୍ରିନ୍‌ସ ଚାର୍ଲସ୍ ଓ ନିଜେ ଶିଳ୍ପୀ ।

Digitized by srujanika@gmail.com



ଶୀର୍ଷ ଓ ପ୍ରବାହ (Pinnacle and The Flow-II)
ମିଶ୍ର ମାଧ୍ୟମ, ୯୦ x ୯୦ ସେମି.୨୦୦୧
( ଜୁରିକ୍‌ର ଅଦିତି ଓ ଗୌତମ ସେନଗୁପ୍ତଙ୍କ ସଂଗ୍ରହରେ ଅଛି )

Digitized by srujanika@gmail.com



ମୁକ୍ତିର ପଥ (Path to Liberation) ମିଶ୍ର ମାଧ୍ୟମ ୯୦ x ୯୦ ସେମି ୨୦୦୧
(ସୁଇଜର୍‌ଲାଣ୍ଡରେ ଏବରହାର୍ଡ଼ ଓ ବାର୍ବରା ଫିସରଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ଘଟାକାଶ (Sky in the Pot) ତୈଳଚିତ୍ର, ୬୦ x ୬୦ ସେମି.୨୦୦୦
(ଜୁରିକ୍ ଠାରେ ଅଭିଭା କେଲେରଙ୍କ ସଂଗ୍ରହରେ ଅଛି )

Digitized by srujanika@gmail.com



ଚିରନ୍ତନ ପ୍ରେମ  (Eternal Lovers) ତୈଳଚିତ୍ର ୧୭୫ x ୧୨୦ ସେମି ୧୯୯୬
(ମାଲେସିଆ, କୁଆଲାଲୁମ୍ପୁର୍ ରୋଜ ଗନେନ୍ଦ୍ରଙ୍କ ସଂଗ୍ରହରେ ଅଛି )

Digitized by srujanika@gmail.com



ପାର୍କରେ କାର୍ ସହ ପ୍ରେମିକ ପ୍ରେମିକା (Lovers in Park with Car) ତୈଳଚିତ୍ର,
୧୦୭ x ୯୨ ସେମି. ୧୯୯୭
(ଜୁରିକ୍‌ଠାରେ ଏବର୍‌ହାର୍ଡ୍ ଓ ବାର୍‌ବରା ଫିସର୍‌ଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ପାର୍କ୍‌ରେ କାର୍ ପାଖରେ ପ୍ରେମିକ ପ୍ରେମିକା (Lovers Relaxing in Park with Car) ତୈଳଚିତ୍ର,
୧୦୭ x ୯୨ ସେମି. ୧୯୯୭
(ମୁମ୍ବାଇଠାରେ କେକୁ ଗାନ୍ଧୀ, ଗ୍ୟାଲେରୀ କେମୋଲ୍‌ଡ୍‌ଙ୍କ ସଂଗ୍ରହରେ ଅଛି)

Digitized by srujanika@gmail.com



ସ୍ନାନରତ ପ୍ରେମିକ ପ୍ରେମିକା (Bathers) ତୈଳଚିତ୍ର, ୧୬୦ x ୯୦ ସେମି ୧୯୯୭
(ଅଜଣା ସଂଗ୍ରହ)

Digitized by srujanika@gmail.com

# ଜୀବନ ଓ କୃତି

## ଘଟଣା ସଙ୍କଳନ : ସୌଭାଗ୍ୟ ଓ ମମତା ପାଠୀ

୧୯୪୨ ଗଂଜାମ ଜିଲ୍ଲାର ଦିଗପହଣ୍ଡି ଗଡ଼ ବୈଦ୍ୟରାଜ ପରିବାରରେ ଜନ୍ମ । ପିତା ଶ୍ୟାମସୁନ୍ଦର ପାଠୀ ଓ ମାତା କମଳା ଦେବୀ । ପରିବାରରେ କବି, ଚିତ୍ରକର, ସଙ୍ଗୀତଜ୍ଞ ଓ ନାଟକରେ ଅଭିନୟ କରୁଥିବା ଲୋକେ ବାଲ୍ୟଜୀବନକୁ ପଲ୍ଲବିତ କରନ୍ତି । ମାଁଙ୍କ ଗନ୍ଥା ସିଲେଇର କଳାତ୍ମକତା ଶିଶୁମନକୁ ପ୍ରଭାବିତ କରେ ।

୧୯୫୧ ଦିଗପହଣ୍ଡି ପଞ୍ଚମ ଜର୍ଜ ହାଇସ୍କୁଲରେ ଶିକ୍ଷାରମ୍ଭ । ସ୍କୁଲପାଠ ସହିତ ସେ ଭାଇନା ଲୋକନାଥଙ୍କ ଚାରୁକଳା ମନ୍ଦିରରେ ଜୁନିଅର୍ ଆର୍ଟିଷ୍ଟ ଭାବେ ଚିତ୍ରକାମ ଆରମ୍ଭ । ଦକ୍ଷିଣ ଓଡ଼ିଶାର ଗାଁ ଗଣ୍ଡା, ମଠ ମନ୍ଦିର ଓ ନାଟ ପୁଞ୍ଜାଗୁଡ଼ିକ ସହିତ ପରଦା ଚିତ୍ରଣ, କାନ୍ଥଚିତ୍ର ଓ ମୁଖା ତିଆରି ମାଧ୍ୟମରେ ସମ୍ପର୍କ ସ୍ଥାପନ । ଓଡ଼ିଶାର କଳା ଐତିହ୍ୟ ସହିତ ପରିଚିତି । ଥିଏଟର୍‌ରେ ବେଶ ବିନ୍ୟାସକାରୀ (ମେକାପ୍ ବଅଏ) ଓ ସ୍ଲାଇଡ୍‌ସ ପ୍ରଦର୍ଶନୀକାରୀ (Projectionist) ଭାବେ ଅଭିଜ୍ଞତା । ଲୋକନାଥ ଓ ଶ୍ୟାମସୁନ୍ଦରଙ୍କ ସହିତ ଗାଁ ମେଳା, ମଉସବ ଓ ଯାତ୍ରାରେ ନିଜହାତ ତିଆରି କଣ୍ଢେଇ, କନା ଓ ସୋଲ ଫୁଲ ବିକ୍ରୀ ।

୧୯୫୫ ଗଞ୍ଜାମ ଜିଲ୍ଲା ଚିତ୍ର ଶିକ୍ଷକ ସଙ୍ଘ ଆନୁକୂଲ୍ୟରେ ଆୟୋଜିତ ସର୍ବଭାରତୀୟ ଶିଶୁ ଚିତ୍ରକଳା ପ୍ରଦର୍ଶନୀରେ ଅଂଶଗ୍ରହଣ ଓ ସ୍ୱର୍ଣ୍ଣ ପଦକ ପୁରସ୍କାର ପ୍ରାପ୍ତି । ପ୍ରଥମବର୍ଷ **ଶିବପାର୍ବତୀ** ଜଳରଙ୍ଗର ଚିତ୍ର, ଦ୍ୱିତୀୟ ବର୍ଷ(୧୯୫୬) **ପଣ୍ଡିତ ଜବାହର ଲାଲ ନେହରୁଙ୍କ** ଆଲେଖ୍ୟ ଚିତ୍ର ଏବଂ ତୃତୀୟ ବର୍ଷ (୧୯୫୭) ପେନ୍‌ସିଲ୍‌ରେ ଅଙ୍କିତ **ଜଣେ ବାଳକ ଲଣ୍ଠନ ଆଲୁଅରେ ଅଧ୍ୟୟନ କରୁଥିବା** ଚିତ୍ର ପୁରସ୍କୃତ ହୁଏ ।

୧୯୫୮ ଜିଲ୍ଲାସ୍ତରୀୟ କୃଷି ଓ ଶିଳ୍ପ ମେଳାରେ ଶିଳ୍ପକାମ ଓ ପୁରସ୍କାର ପ୍ରାପ୍ତି । ଦିଗପହଣ୍ଡି ବିକାଶ ମେଳାରେ ଷ୍ଟଲ୍ ଖୋଲି ଜୀବନର ପ୍ରଥମ ଏକକ ଚିତ୍ର ପ୍ରଦର୍ଶନୀର ଆୟୋଜନ । ପିତା ଶ୍ୟାମସୁନ୍ଦରଙ୍କ ମୃତ୍ୟୁ । ପରିବାର ଅର୍ଥନୈତିକ ଓ ମାନସିକ ଦୁର୍ଗତି ଭିତରେ ସନ୍ତୁଳିତ ହୁଏ । ପରୀକ୍ଷା ଫିସ୍ ଭରଣା କରିବା ପାଇଁ ପ୍ରସିଦ୍ଧ ଜର୍ମାନ୍ ହୋମିଓପାଥ୍ ଡାକ୍ତରଙ୍କ ପେନ୍‌ସିଲ ପ୍ରୋର୍ଟ୍ରେଟ୍ ଅଙ୍କନ । ହାଇସ୍କୁଲ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ । ପାରିବାରିକ ବିପର୍ଯ୍ୟୟ ଯୋଗୁଁ ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ବିଜ୍ଞାନରେ ଇଣ୍ଟରମିଡ଼ିଅଟ୍ ପଢ଼ିବା ସୁଯୋଗରୁ ବଂଚିତ । ଆର୍ଥିକ ଦୁରାବସ୍ଥାରୁ ମୁକୁଳିବା ପାଇଁ ଓଡ଼ାଶିଙ୍ଗି ସଂସ୍କୃତ ଟୋଲ୍‌ରେ ଇଂଲିଶ ଶିକ୍ଷକ ଭାବେ ଅଧ୍ୟାପନା । ଚିତ୍ରକଳା ଶିକ୍ଷା ପାଇଁ ଦୁର୍ବାର ନିଶା । ବ୍ରହ୍ମପୁର ଚନ୍ଦ୍ରପ୍ରଭାଶ୍ରମରେ ଲଣ୍ଡନ ଫେରନ୍ତା ପ୍ରସିଦ୍ଧ ଚିତ୍ରକର ଶରତଚନ୍ଦ୍ର ଦେବଙ୍କ ସହିତ ସାକ୍ଷାତ ।

୧୯୫୯ ଗଂଜାମ ଜିଲ୍ଲା ବିକାଶ ମେଳାରେ ପୁରସ୍କୃତ । ଖଲ୍ଲିକୋଟ ସରକାରୀ ଚାରୁ ଓ କାରୁକଳା ବିଦ୍ୟାଳୟରେ ଅଧ୍ୟୟନ । ଶରତଚନ୍ଦ୍ର ଦେବ, ଅଜିତ କେଶରୀ ରାୟ ଓ ଅନନ୍ତ ପଣ୍ଡାଙ୍କ ତତ୍ତ୍ୱାବଧାନରେ କଳାଶିକ୍ଷା । ପ୍ରତିବର୍ଷ ପରୀକ୍ଷାରେ ପ୍ରଥମସ୍ଥାନ ପାଇ ୧୯୬୩ ମସିହାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଡିପ୍ଲୋମା ଲାଭ ।

୧୯୬୧ ମହାବିଦ୍ୟାଳୟର ବାର୍ଷିକ ପ୍ରଦର୍ଶନୀରେ ପୁରସ୍କୃତ ।

୧୯୬୨ ମାତା କମଳା ଦେବୀଙ୍କ ମୃତ୍ୟୁ

Digitized by srujanika@gmail.com

୧୯୬୩ କଲିକତାର ଫାଇନ୍ ଆର୍ଟ୍ ଏକାଡ଼େମୀ ଆନୁକୂଲ୍ୟରେ ଆୟୋଜିତ ସର୍ବ ଭାରତୀୟ ଚିତ୍ର ପ୍ରଦର୍ଶନୀରେ ତୈଳଚିତ୍ର **ଫସଲ ଅମଳର ଗୀତ** ପାଇଁ ସ୍ୱର୍ଣ୍ଣପଦକ। କଳା ମହାବିଦ୍ୟାଳୟରେ ଦିବ୍ୟଜୀବନ ସଂଘର ଶାଖା ପ୍ରତିଷ୍ଠା ଓ ଶାଖାର ସଂପାଦକ ନିଯୁକ୍ତ । ଅଧକ୍ଷ ଶରତଚନ୍ଦ୍ର ଦେବଙ୍କ ନେତୃତ୍ୱରେ ଋଷିକେଶ ଯାତ୍ରା ଓ ଦିବ୍ୟଜୀବନର ପ୍ରତିଷ୍ଠାତା ସ୍ୱାମୀ ଶିବାନନ୍ଦ ସରସ୍ୱତୀଙ୍କ ଦର୍ଶନଲାଭ ।
ଦିବ୍ୟଜୀବନ ସଂଘ ଖଲ୍ଲିକୋଟ ଶାଖା ଆନୁକୂଲ୍ୟରେ **ଶିବାନନ୍ଦ ଓ ଦିବ୍ୟଜୀବନ** ଏବଂ **ଆଶ୍ରମ ଭଜନାବଳୀ** ପୁସ୍ତକ ପ୍ରକାଶନ । ଓଡ଼ିଶା ଲଳିତ କଳା ଏକାଡ଼େମୀର ପ୍ରଥମ ନିଖିଳୋତ୍କଳ ଚିତ୍ର ପ୍ରଦର୍ଶନୀରେ ତୈଳଚିତ୍ର **ମୋ ଗାଁ** ପାଇଁ ପୁରସ୍କୃତ ।

୧୯୬୪ ଓଡ଼ିଶା ସଚିବାଳୟରେ ଯୋଜନା ଓ ସମନ୍ୱୟ ବିଭାଗରେ ଚିତ୍ରଶିଳ୍ପୀ ଭାବେ ଚାକିରି ଆରମ୍ଭ । ସେହିବର୍ଷ ବିଜୁପଟ୍ଟନାୟକଙ୍କ ନେତୃତ୍ୱରେ ଅନୁଷ୍ଠିତ ହେଉଥିବା ଅଖିଳ ଭାରତୀୟ କଂଗ୍ରେସ ଅଧିବେଶନରେ ବିଭିନ୍ନ ମଣ୍ଡପ ଓ ତୋରଣର ପରିକଳ୍ପନା ଓ ନିର୍ମାଣ ଦାୟିତ୍ୱ ।

୧୯୬୫ ଘରୋଇ ପରୀକ୍ଷାର୍ଥୀ ଭାବେ ଇଣ୍ଟରମିଡ଼ିଏଟ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ଓ ବି.ଜେ.ବି ସାନ୍ଧ୍ୟକଲେଜରେ ଅଧ୍ୟୟନ । ଜଳରଙ୍ଗର ଚିତ୍ର **ଷ୍ଟ୍ରିଟ୍ କର୍ଣ୍ଣର୍** ପାଇଁ ଚାରୁକଳା ପରିଷଦ ଦ୍ୱାରା ପୁରସ୍କୃତ । ଜଣେ ସହପାଠୀ ଚିତ୍ରଟିକୁ ଚୋରାଇ ନେଇ ପ୍ରଦର୍ଶିତ କରିଥିବାରୁ ଫେରିପାଇବା ପାଇଁ ନ୍ୟାୟାଳୟର ଆଶ୍ରୟ । ଭୁବନେଶ୍ୱରରେ ଦିବ୍ୟଜୀବନ ସଂଘର ଶାଖା ପ୍ରତିଷ୍ଠା ପାଇଁ ଆୟୋଜନ।

୧୯୬୬ କଲିକତା ଫାଇନ୍‌ଆର୍ଟ୍ ଏକାଡ଼େମୀ ଆନୁକୂଲ୍ୟରେ ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀରେ ତୈଳଚିତ୍ର **ଯମଜ** ପାଇଁ ପୁରସ୍କୃତ । ଏକଶତ ଚିତ୍ରର ଏକକ ପ୍ରଦର୍ଶନୀ ଭୁବନେଶ୍ୱର କଳାମଣ୍ଡପରେ ଗୋଦାବରୀଶ ସାହିତ୍ୟ ସଂସଦ ଦ୍ୱାରା ଆୟୋଜିତ । ଆଧୁନିକ ଚିତ୍ରଶିଳ୍ପୀମାନଙ୍କୁ ଏକଜୁଟ କରି ଭୁବନେଶ୍ୱରରେ ଶିଳ୍ପୀ ସଂସଦ ଗଠନ ଓ ସଂସଦର ଯୁଗ୍ମ ଅବୈତନିକ ସଂପାଦକ ନିଯୁକ୍ତ।

୧୯୬୭ ଭୁବନେଶ୍ୱର କେନ୍ଦ୍ରୀୟ ବିଦ୍ୟାଳୟରେ ଚିତ୍ରଶିକ୍ଷକ ଭାବେ ନିଯୁକ୍ତି । ବିଦ୍ୟାଳୟରେ ସ୍ୱତନ୍ତ୍ର ଆର୍ଟ୍‌ରୁମ୍‌ର ଆରମ୍ଭ । ଚିତ୍ରକୁ କଳାପଟାରୁ ମୁକ୍ତି ଦେବାପାଇଁ ପ୍ରଚେଷ୍ଟା । ରାଜ୍ୟସ୍ତରୀୟ ଓ ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀ ଆୟୋଜନ । ଅବନ୍ତୀ ମହାପାତ୍ରଙ୍କ ସହିତ ବିବାହ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡିସ୍‌ଟିଙ୍ଗ୍‌ସନ୍ ସହ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ।

୧୯୬୯ ଗଞ୍ଜାମ କଳା ପରିଷଦ ଆନୁକୂଲ୍ୟରେ ଆୟୋଜିତ ରାଜ୍ୟସ୍ତରୀୟ ଚିତ୍ର ପ୍ରଦର୍ଶନୀରେ ତୈଳଚିତ୍ର ବିଭାଗ ଓ ସାମଗ୍ରୀକ ବିଚାରରେ ସର୍ବଶ୍ରେଷ୍ଠ ପୁରସ୍କାର ପ୍ରାପ୍ତି । ଆଧୁନିକ କଳାର ବିଭିନ୍ନ ପରୀକ୍ଷା ନିରୀକ୍ଷାକୁ ସ୍ୱୀକୃତି ଦେବାପାଇଁ ଏବଂ ପ୍ରଦର୍ଶନୀ ଓ ପ୍ରକାଶନ ମାଧ୍ୟମରେ ତା'ର ପ୍ରଚାର ଓ ପ୍ରସାର ପାଇଁ ଭୁବନେଶ୍ୱରଠାରେ ଓ୍ୱାକିଙ୍ଗ୍ ଆର୍ଟିଷ୍ଟସ୍ ଏସୋସିଏସନ୍ ଅଫ୍ ଓଡ଼ିଶାର ପ୍ରତିଷ୍ଠା ଓ ସେଥିରେ ସାଧାରଣ ସଂପାଦକ ଭାବେ କାର୍ଯ୍ୟ ଆରମ୍ଭ । ଗଞ୍ଜାମ କଳା ପରିଷଦ, ବ୍ରହ୍ମପୁର ଦ୍ୱାରା ଏକକ ଚିତ୍ର ପ୍ରଦର୍ଶନୀର ଆୟୋଜନ ।

୧୯୭୦ ଭୁବନେଶ୍ୱରଠାରେ ବେସରକାରୀ ସ୍ତରରେ ଚିତ୍ରମ୍ କଳା ବିଦ୍ୟାଳୟର ଆରମ୍ଭ । ଚିତ୍ରକଳା ବିଭାଗରେ ପ୍ରଫେସର୍ ନିଯୁକ୍ତ । ଭୁବନେଶ୍ୱର ରିଜିଓନାଲ୍ କଲେଜ ଅଫ୍

Digitized by srujanika@gmail.com

ଏଜୁକେଶନ୍ ଠାରେ ପୋଷ୍ଟର୍ କର୍ମଶାଳାରେ ରିସୋର୍ସ୍ ପର୍ସନ୍ ଭାବେ ଯୋଗଦାନ । ପ୍ରଜାତନ୍ତ୍ର ପ୍ରଚାର ସମିତି ପରିସରରେ ଚିତ୍ର ପ୍ରଦର୍ଶନୀ । କେନ୍ଦ୍ରୀୟ ବିଦ୍ୟାଳୟରେ ଗୁଜରାଟ ସମ୍ପର୍କରେ ସତନ୍ତ୍ର ଚିତ୍ର ପ୍ରଦର୍ଶନୀ । ବିହାର ପ୍ରଦେଶର ଡ୍ରଇଁ ପାଠ୍ୟ ବହିର ମୂଲ୍ୟାୟନ ।

୧୯୭୨ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଘରୋଇ ପରୀକ୍ଷାର୍ଥୀଭାବେ ପ୍ରଥମ ଶ୍ରେଣୀରେ ଇତିହାସରେ ଏମ୍.ଏ.ପାସ୍ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଚାରୁକଳା ଓ କାରୁକଳା ବିଭାଗରେ କ୍ୟୁରେଟର ନିଯୁକ୍ତ । କଳାକୃତି ସଂଗ୍ରହ ପାଇଁ ଓଡ଼ିଶା ସାରା ଭ୍ରମଣ । ପୁତ୍ର ସୌଭାଗ୍ୟର ଜନ୍ମ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ନିଯୁକ୍ତିନେଇ ହାଇକୋର୍ଟରେ ମକଦ୍ଦମା । ମକଦ୍ଦମା ଖାରଜ ।

୧୯୭୪ ମାଷ୍ଟର୍ କ୍ରାଫ୍ଟସ୍ ମ୍ୟାନ୍ ଜାତୀୟ ପୁରସ୍କାର ଚୟନ କମିଟିର ସଭ୍ୟ । ଓଡ଼ିଶାର କଳା ଓ ସଂସ୍କୃତିର ଗବେଷଣା ପାଇଁ ଓଡ଼ିଶା କଲ୍‌ଚରାଲ୍ ଫୋରମ୍‌ର ପ୍ରତିଷ୍ଠା । ପିଏଚ୍.ଡ଼ି ପାଇଁ ଡକ୍ଟର କରୁଣା ସାଗର ବେହେରାଙ୍କ ତତ୍ତ୍ୱାବଧାନର ଗବେଷଣା ଆରମ୍ଭ ।

୧୯୭୫ ଷ୍ଟୁଡେଣ୍ଟସ୍ ଆର୍ଟିଷ୍ଟସ୍ ଏସୋସିଏସନ୍ (ସା) ଆନୁକୂଲ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଷ୍ଟୁଡେଣ୍ଟସ୍ ହୋମ୍‌ଠାରେ ଏକକ ଚିତ୍ର ପ୍ରଦର୍ଶନୀ ଆୟୋଜନ । ତୃତୀୟ ପୂର୍ବାଞ୍ଚଳ ସାଂସ୍କୃତିକ ସମାରୋହର ଭିଜୁଏଲାଇଜର୍ ଭାବେ ନିଯୁକ୍ତ। ଏହି ସମାରୋହ ଅବସରରେ ଆୟୋଜିତ ସେମିନାରରେ ଓଡ଼ିଶାର ଐତିହ୍ୟ ସଂକ୍ରାନ୍ତରେ ପ୍ରବନ୍ଧ ଉପସ୍ଥାପନ।

୧୯୭୬ ଆନ୍ଧ୍ରପ୍ରଦେଶର ଚିତ୍ରକଳା ପରିଷଦ ଦ୍ୱାରା ଚିତ୍ରପାଇଁ ପୁରସ୍କୃତ । ଗୌହାଟୀଠାରେ ଅନୁଷ୍ଠିତ ହେଇଥିବା ନିଖିଳ ଭାରତୀୟ ଜାତୀୟ କଂଗ୍ରେସରେ ଓଡ଼ିଶା ମଣ୍ଡପର ଭିଜୁଏଲାଇଜର୍ ଓ ଡିଜାଇନ୍‌ର୍ ନିଯୁକ୍ତ । ସେ ବର୍ଷ ଜଗନ୍ନାଥଙ୍କ ନନ୍ଦିଘୋଷ ରଥ ନମୁନାରେ ଓଡ଼ିଶା ମଣ୍ଡପ ତିଆରି। କଟକଠାରେ ଅନୁଷ୍ଠିତ ବୌଦ୍ଧ ଓ ଜୈନ ଧର୍ମ ସଂକ୍ରାନ୍ତୀୟ ଆନ୍ତର୍ଜାତୀୟ ସେମିନାର୍‌ରେ ଯୋଗଦାନ ଓ ତତ୍ ସଂକ୍ରାନ୍ତୀୟ ପ୍ରଦର୍ଶନୀ ଆୟୋଜନ ।

୧୯୭୭ ଦିଲ୍ଲୀ ଅଶୋକା ହୋଟେଲ୍‌ଠାରେ ଅନୁଷ୍ଠିତ PATA କନ୍‌ଭେନ୍‌ସନ୍‌ରେ ଓଡ଼ିଶା ମଣ୍ଡପର ଡିଜାଇନର୍ ଓ ଭିଜୁଏଲାଇଜର୍ ନିଯୁକ୍ତ। ଆନ୍ତର୍ଜାତୀୟ ବାଣିଜ୍ୟ ମେଳାରେ ଅନୁଷ୍ଠିତ Agri Expo-77 ରେ ଓଡ଼ିଶା ମଣ୍ଡପର ଡିଜାଇନ୍‌ର ଓ ଭିଜୁଏଲାଇଜର୍। ଖଡ଼ିଆଳଠାରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଶାଖା ସଂଗ୍ରହାଳୟ ନିର୍ମାଣ । ଓଡ଼ିଶା ଲଳିତ କଳା ଏକାଡ଼େମୀର କାର୍ଯ୍ୟନିର୍ବାହୀ ସଦସ୍ୟ ନିର୍ବାଚିତ । ସ୍ୱଇଜରଲାଣ୍ଡ ଦେଶର ଜୁରିକ୍ ନଗରୀର ରିଟ୍‌ବର୍ଗ୍ ସଂଗ୍ରହାଳୟର ନିର୍ଦ୍ଦେଶକ ଡକ୍ଟର ଏବର୍‌ହାର୍ଡ୍ ଫିସର୍ ଓ ତାଙ୍କ ଧର୍ମପତ୍ନୀ ବାରବରା ଫିସର୍‌ଙ୍କ ସହିତ ଭେଟ । ସେମାନଙ୍କୁ ଓଡ଼ିଶା ପରିଦର୍ଶନ କରେଇବା ପାଇଁ ଓଡ଼ିଶା ସରକାରଙ୍କ ଦ୍ୱାରା ଗାଇଡ୍ ଭାବେ ନିଯୁକ୍ତ । ସମୟକ୍ରମେ ଡକ୍ଟର ଓ ଶ୍ରୀମତୀ ଫିସର୍ ଦିନନାଥଙ୍କ ଜୀବନର ବିକାଶରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରନ୍ତି । କନ୍ୟା ସୁନନ୍ଦାର ଜନ୍ମ ।

୧୯୭୮ ଚଣ୍ଡିଗଡ଼ ପଞ୍ଜାବ ବିଶ୍ୱବିଦ୍ୟାଳୟର କଳା ଇତିହାସ ପ୍ରଫେସର ବ୍ରଜେନ୍ଦ୍ର ନାଥ ଗୋସ୍ୱାମୀଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ Coomaraswamy and After ଆନ୍ତର୍ଜାତିକ ସେମିନାର୍‌ରେ ଯୋଗଦାନ । ସେଠାରେ ଭାରତ ବର୍ଷର ଦିଗ୍ଗଜ କଳା ପଣ୍ଡିତ ମାନଙ୍କ

Digitized by srujanika@gmail.com

ସହିତ ଭେଟ । ସେମାନେ ହେଲେ ଏମ୍.ଏସ୍.ରନ୍ଧାୱା , କାରଲ୍. ଜେ. ଖଣ୍ଡାଲାୱାଲା, କପିଳା ବାତ୍ସ୍ୟାୟନ, ଆନନ୍ଦ କୃଷ୍ଣ, କାଞ୍ଚନ ଚକ୍ରବର୍ତ୍ତୀ, ସୁନୀଲ କୋଠାରୀ ପ୍ରମୁଖ । ଓଡ଼ିଶା ସଂଗ୍ରାହଳୟରେ ଗୋପବନ୍ଧୁ ଗ୍ୟାଲେରୀ ପରିକଳ୍ପନା ଓ ବ୍ୟବସ୍ଥା । ଡକ୍ଟର ଫିସର୍‌ଙ୍କ ନିମନ୍ତ୍ରଣ କ୍ରମେ ସୁଇଜରଲାଣ୍ଡ, ଜର୍ମାନୀ, ଫ୍ରାନ୍ସ, ଇଟାଲୀ, ଗ୍ରୀସ୍ ଓ ଲଣ୍ଡନ ପ୍ରଭୃତି ଦେଶ ଭ୍ରମଣ ଏବଂ ସେଠାକାର ସଂଗ୍ରହାଳୟ ମାନଙ୍କରେ ଓଡ଼ିଶାର କଳା ସାମଗ୍ରୀ ଚିହ୍ନଟ । 'ମ୍ୟୁଜିୟମ୍ ଡିସ୍‌ପ୍ଲେ ଏବଂ ମ୍ୟୁଜିୟମ୍ ମେଥଡ୍‌ସ୍‌ରେ' ସତନ୍ତ୍ର ତାଲିମ । ୟୁନିଭର୍ସଠାରେ ଲୋକସଂସ୍କୃତି ସମ୍ବନ୍ଧୀୟ ଆନ୍ତର୍ଜାତୀୟ ସେମିନାର୍‌ରେ ଯୋଗଦାନ । ରାଜ୍ୟସ୍ତରୀୟ 'କଳା ଓ ସମାଜ' ସେମିନାର୍‌ରେ ପ୍ରବନ୍ଧ ଉପସ୍ଥାପନା । ଡକ୍ଟର ଫିସର୍ ଓ ଶ୍ରୀମତୀ ଫିସର୍‌ଙ୍କ ସହିତ ମିଶି ଓଡ଼ିଶାର ଗଞ୍ଜପା, ମାଟିଘୋଡ଼ା, ମୁଖା, ଢୋକ୍ରା, ଗୋଟିପୁଅ ସଂକ୍ରାନ୍ତରେ ମ୍ୟୁଜିୟମ୍ ରିଟ୍‌ବର୍ଗ ପାଇଁ ଡକ୍ୟୁ ଚଳଚିତ୍ର ନିର୍ମାଣ ।

୧୯୭୯ ନୂତନଭାବେ ସଂଗଠିତ ଓଡ଼ିଶା ପର୍ଯ୍ୟଟନ ନିଗମରେ ପ୍ରଡ଼କ୍‌ସନ୍ ଓ ପବ୍ଲିସିଟି ବିଭାଗରେ ଡିଭିଜନାଲ୍ ମ୍ୟାନେଜର୍ ଭାବେ ନିଯୁକ୍ତି । ଓଡ଼ିଶାରେ ରଙ୍ଗିନ ଛପାର ଯୁଗ ଆରମ୍ଭ । ଓଡ଼ିଶାର ଭିତ୍ତିଚିତ୍ର ସମ୍ପର୍କୀୟ ଏକ ମନୋଗ୍ରାଫ୍ ପ୍ରକାଶନ । ଦିଲ୍ଲୀ ଅଶୋକା ହୋଟେଲ୍‌ଠାରେ TAAI କନ୍‌ଭେନ୍‌ସନ୍‌ର ଭିଜୁଏଲାଇଜର୍ ଓ ଡିଜାଇନ୍‌ର । ଅହମ୍ମଦାବାଦର ଶ୍ରେୟାସ୍ ଫାଉଣ୍ଡେସନ୍‌ରେ ଓଡ଼ିଶାର ଚିତ୍ରକଳା, ଭାସ୍କର୍ଯ୍ୟ ଓ ନୃତ୍ୟ ସଂପର୍କୀତ 'ଓଡ଼ିଶା ଯାତ୍ରା' ଉତ୍ସବରେ ଓଡ଼ିଶା ତରଫରୁ ଯୋଗଦାନ । ଓଡ଼ିଶା ପ୍ରଦର୍ଶନୀର ଶେଷ ପର୍ଯ୍ୟାୟର ବନ୍ଦୋବସ୍ତ ପାଇଁ ସୁଇଜରଲାଣ୍ଡ, ଇଟାଲୀ ଓ ଲଣ୍ଡନ ପରିଦର୍ଶନ ।

୧୯୮୦ ଜୁରିକ୍ ଭ୍ରମଣ ଏବଂ ସେଠାକାର Herman and Scheinder ବିଜ୍ଞାପନ ସଂସ୍ଥାରେ ଭିଜୁଆଲ୍ ମିଡ଼ିଆ ସଂକ୍ରାନ୍ତରେ ସତନ୍ତ୍ର ତାଲିମ୍ । ଡକ୍ଟର ଏବରହାର୍ଡ୍ ଫିସର୍ ଓ ଡକ୍ଟର ସୀତାକାନ୍ତ ମହାପାତ୍ରଙ୍କ ମିଳିତ ସଂପାଦନାରେ ମ୍ୟୁଜିୟମ୍ ରିଟ୍‌ବର୍ଗ ତରଫରୁ ଜର୍ମାନ୍ ଭାଷାରେ Orissa Kunst und Kultur in Nordost Indien ଗ୍ରନ୍ଥ ପ୍ରକାଶ । ଜୁରିକ୍‌ଠାରେ ଓଡ଼ିଶା ପ୍ରଦର୍ଶନୀ ଆରମ୍ଭ । ଭୁବନେଶ୍ୱରଠାରେ ନବନିର୍ମିତ କଳିଙ୍ଗ ଅଶୋକ ହୋଟେଲଠାରେ ନିଜ ତୈଳଚିତ୍ରର ଏକକ ପ୍ରଦର୍ଶନୀ । ଭୁବନେଶ୍ୱର ତଥା ଓଡ଼ିଶା ପରିଦର୍ଶନରେ ଆସୁଥିବା ପର୍ଯ୍ୟଟକଙ୍କ ପାଇଁ ଗୋଟିଏ ଅଭିନବ ଚିତ୍ରପ୍ରକଳ୍ପ 'ଚିତ୍ରବାରମାସୀ'ର ଆୟୋଜନ । ଏଥିରେ ଓଡ଼ିଶାର ବହୁ ଜଣାଶୁଣା ଶିଳ୍ପୀ ନିଜ ଚିତ୍ରକଳା ପ୍ରଦର୍ଶନ କରିଛନ୍ତି । ଇଂଲଣ୍ଡ ରାଜପରିବାରର ପ୍ରିନ୍ସ ଚାର୍ଲସ୍‌ଙ୍କ ଓଡ଼ିଶା ପରିଦର୍ଶନ ପାଇଁ ବ୍ୟବସ୍ଥା ଓ Heritage of Orissa: Land and People ବହି ପ୍ରକାଶନ ।

୧୯୮୧ ଓଡ଼ିଶାରେ ଐତିହାସିକ ଗବେଷଣାର ଅଭାବ ଉପଲବ୍ଧିକରି 'ଓଡ଼ିଶା ରିସର୍ଚ୍ଚ ସୋସାଇଟି' ନାମରେ ଏକ ସଂସ୍ଥା ଗଠନ ଓ ସଂସ୍ଥାପକ୍ଷରୁ ଗୋଟିଏ ଗବେଷଣା ପତ୍ରିକା A Journal on History, Art, Archaoeology and Indology ପ୍ରକାଶ । ଏହି ଗବେଷଣା ପତ୍ରିକା ପାଇଁ ଡକ୍ଟର ସ୍ନିଗ୍ଧା ତ୍ରିପାଠୀ ଓ ଡକ୍ଟର ବିଜୟ କୁମାର ରଥଙ୍କ ସହିତ ଅନ୍ୟତମ ସଂପାଦକଭାବେ ନିଯୁକ୍ତ । ଲଳିତ କଳା ଏକାଡ଼େମୀର କଳା ଶିବିରରେ ଯୋଗଦାନ । Centre for Advanced Studies in History ସଂସ୍ଥାର 'ଧର୍ମ ଓ ସମାଜ' ସେମିନାରରେ ଯୋଗଦାନ ଓ ପ୍ରବନ୍ଧ ଉପସ୍ଥାପନା । Orissa Cultural Forum ସଂସ୍ଥାର 'ଗୀତଗୋବିନ୍ଦର ଅଜ୍ଞାତ ଅଧ୍ୟାୟ' । ସେମିନାର୍‌ରେ ଯୋଗଦାନ ଓ ପ୍ରବନ୍ଧ ଉପସ୍ଥାପନା । ଜୁରିକ୍ ଭ୍ରମଣ । **ଗୀତା ଓ ତା'ର ଗାଁ** ଶୀର୍ଷକ ଶିଶୁଙ୍କ ପାଇଁ ଉଦ୍ଦିଷ୍ଟ ବହିର ଅଳଂକରଣ ।

Digitized by srujanika@gmail.com

ରାଜ୍ୟ ହସ୍ତଶିଳ୍ପ ବିଭାଗଦ୍ୱାରା ଆୟୋଜିତ 'ପଟଚିତ୍ର' ସେମିନାର୍‌ରେ ଯୋଗଦାନ ଓ ଭିତ୍ତିପ୍ରବନ୍ଧ ଉପସ୍ଥାପନା । ରାଜ୍ୟ ସଂସ୍କୃତି ବିଭାଗ ଦ୍ୱାରା ଆୟୋଜିତ 'ହିନ୍ଦ୍ରୀ ସମ୍ପଦର' ସେମିନାର୍‌ରେ ଯୋଗଦାନ ଓ ସେମିନାର୍ ଉପଲକ୍ଷେ ପ୍ରକାଶିତ ପ୍ରକାଶନର ଅଳଙ୍କରଣ ।

୧୯୮୨ ଓଡ଼ିଶାର ପାରମ୍ପରିକ ଚିତ୍ରକଳାର ଇତିହାସ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡ଼ି. ଲାଭ । ରାଜ୍ୟ ହସ୍ତଶିଳ୍ପ ବିଭାଗଦ୍ୱାରା ଆୟୋଜିତ 'ଓଡ଼ିଶାର ହସ୍ତଶିଳ୍ପ' ସେମିନାର୍‌ରେ ଭିତ୍ତିପ୍ରବନ୍ଧ ଉପସ୍ଥାପନା । ରାଷ୍ଟ୍ରୀୟ କଳାମେଳାରେ ଅଂଶ ଗ୍ରହଣ କରିବା ପାଇଁ **ଜଗନ୍ନାଥ ଓ ଓଡ଼ିଆ ଶିଳ୍ପୀ** ଚିତ୍ର ପ୍ରଦର୍ଶନୀର ପରିକଳ୍ପନା ଓ ରୂପାୟନ । ଏହି ପ୍ରଦର୍ଶନୀ ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ଆନୁକୂଲ୍ୟରେ ଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାରେ ଲୋକକଳା ସଂପର୍କରେ ଗବେଷଣା ପାଇଁ ଭାରତସରକାରଙ୍କ ସଂସ୍କୃତି ବିଭାଗ ତରଫରୁ ସିନିଅର୍ ଫେଲୋସିପ୍ । ଡକ୍ଟର ଏବର୍‌ହାର୍ଡ୍ ଫିସର୍‌ଙ୍କ ସହିତ ଓଷାକୋଠି ଚିତ୍ର ସମ୍ପର୍କରେ କ୍ଷେତ୍ର ଅନୁଶୀଳନର ଆରମ୍ଭ । Asiad - 82 ଉଦ୍‌ଘାଟନ ଉତ୍ସବରେ ଅଂଶଗ୍ରହଣ କରୁଥିବା ଘୁମୁରା ନୃତ୍ୟଶିଳ୍ପୀଙ୍କ ପୋଷାକର ଡିଜାଇନ୍‌ର। ନିଖିଳ ଭାରତ ମ୍ୟୁଜିୟମ୍ ଆସୋସିଏସନ୍‌ର ସଭ୍ୟ ମନୋନୀତ । ବ୍ରହ୍ମପୁରଠାରେ କଳାଶିକ୍ଷା ସଂକ୍ରାନ୍ତରେ ଆୟୋଜିତ ସେମିନାର୍‌ରେ ଭିତ୍ତିପ୍ରବନ୍ଧ ଉପସ୍ଥାପନା ।

୧୯୮୪ ସଂସ୍କୃତି ବିଭାଗ ଦ୍ୱାରା ନୂତନଭାବେ ପ୍ରତିଷ୍ଠିତ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟର ପ୍ରଥମ ଅଧ୍ୟକ୍ଷ ଭାବେ ଯୋଗଦାନ। ରାଜ୍ୟର Department of Science and Technology ଦ୍ୱାରା **କଳା ଓ ପରିବେଶ** ରାଜ୍ୟସ୍ତରୀୟ କର୍ମଶାଳାର ନିର୍ଦ୍ଦେଶକ । ମହାବିଦ୍ୟାଳୟରେ କଳା ଓ ନନ୍ଦନ ତତ୍ତ୍ୱର ବାର୍ଷିକ ଗବେଷଣା ପତ୍ରିକା ପ୍ରକାଶନ ଆରମ୍ଭ । ମହାବିଦ୍ୟାଳୟରେ ବାର୍ଷିକ ଚିତ୍ର ପ୍ରଦର୍ଶନୀ, ଥିଏଟର୍ ଏବଂ କଳା କବିତାର ପରମ୍ପରା ଆରମ୍ଭ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ସୁବର୍ଣ୍ଣ ଜୟନ୍ତୀ ସମାରୋହର ଭିଜୁଏଲାଇଜର୍ । ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ମହାବିଦ୍ୟାଳୟର ଛାତ୍ର ଛାତ୍ରୀଙ୍କ ଦ୍ୱାରା ଅଙ୍କିତ ଓଡ଼ିଶୀ ଝୋଟି ଦେଖି ଭାବ ବିହ୍ୱଳିତ । 'ଶ୍ରୀ ଜୟଦେବ ଓ ଗୀତଗୋବିନ୍ଦ' ରାଜ୍ୟସ୍ତରୀୟ ସେମିନାରରେ ପ୍ରବନ୍ଧ ଉପସ୍ଥାପନା । National Council for Educational Research and Training ଆନୁକୂଲ୍ୟରେ ବି.କେ.ଚାରୁକଳା ମହାବିଦ୍ୟାଳୟରେ ପ୍ରଥମ ସର୍ବଭାରତୀୟ ଚିତ୍ରଶିକ୍ଷକ ଶିବିରର ଆୟୋଜନ । ଭାରତବର୍ଷର ସନାମଧନ୍ୟ ପଣ୍ଡିତ ଯଥା ଡକ୍ଟର ମୁଲକ୍‌ରାଜ ଆନନ୍ଦ, ପ୍ରଫେସର ଉବେଶ ଚନ୍ଦ୍ର ସାନ୍ୟାଲ, ପ୍ରଫେସର ଦେବେନ୍ଦ୍ର ଯୋଶୀ, H.A. Gade. ପ୍ରଫେସର୍ ସୁନୀଲ କୋଠାରୀ, ପ୍ରଫେସର ବଲବୀର ସିଂହ କଟ୍‌ଙ୍କ ଯୋଗଦାନ । ମହାବିଦ୍ୟାଳୟରେ ବିଭୂତି କାନୁନ୍‌ଗୋ ସ୍ମାରକୀ ବକ୍ତୃତାର ଆରମ୍ଭ । ଏହା ସହିତ ମହାବିଦ୍ୟାଳୟର ବିଭିନ୍ନ ବିଭାଗରୁ ପତ୍ରିକା ଯଥା ମୁଦ୍ରା, ଇମେଜ୍, ଡ୍ରଇଁ ଓ ଡିଜାଇନ୍ ଇତ୍ୟାଦି ପ୍ରକାଶ ପାଇଲା । ରାଜ୍ୟ Harijan and Tribal Welfare Department ଦ୍ୱାରା ପ୍ରତିଷ୍ଠା କରାଯାଉଥିବା Museum of Man Stearing Commitee ର ସଭ୍ୟ । ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ପକ୍ଷରୁ ପ୍ରକାଶିତ 'ବନଜା' ପତ୍ରିକାର ସଂପାଦନା ମଣ୍ଡଳୀରେ ସଭ୍ୟ । ଆନ୍ତର୍ଜାତିକ ବାଣିଜ୍ୟମେଳାର ଓଡ଼ିଶା ମଣ୍ଡପ ପାଇଁ ଭିଜୁଏଲାଇଜର୍ ମନୋନୀତ ।

Digitized by srujanika@gmail.com

୧୯୮୬ ଭାରତ ସରକାରଙ୍କ ସଂସ୍କୃତି ବିଭାଗର Centre for Cultural Resources and Training ଆନୁକୂଲ୍ୟରେ ବି.କେ. ଚାରୁକଳା ମହାବିଦ୍ୟାଳୟରେ ଜାତୀୟ ଐତିହ୍ୟର ସୁରକ୍ଷାରେ ସ୍କୁଲଗୁଡ଼ିକର ଭୂମିକା ସଂପର୍କୀୟ କର୍ମଶାଳାର ଆୟୋଜନ । ଜାତୀୟ ସାଂସ୍କୃତିକ ଉତ୍ସବରେ (ଅପନା ଉତ୍ସବ) ଓଡ଼ିଶା ତରଫରୁ Creative Director ମନୋନୀତ । ଶାସ୍ତ୍ରୀ ଇଣ୍ଡୋ-କାନାଡ଼ିଆନ୍ ପ୍ରତିଷ୍ଠାନ ତରଫରୁ କଳା ଭବନ ଶାନ୍ତିନିକେତନଠାରେ ଅନୁଷ୍ଠିତ ଜାତୀୟ ଆଲୋଚନା ଚକ୍ର 'Art in a Multi-cultural Setting'ରେ ଯୋଗଦାନ । ଦିଲ୍ଲୀଠାରେ ଏନ୍.ସି.ଇ ଆର୍.ଟି କର୍ତ୍ତୃକ ଆୟୋଜିତ ଚିତ୍ରକଳା ଶିକ୍ଷା ପାଇଁ ଲେଖା ସାମଗ୍ରୀ ପ୍ରସ୍ତୁତି କାର୍ଯ୍ୟରେ ଯୋଗଦାନ । ଏନ୍.ସି.ଇ.ଆର୍.ଟି. ସେମାନଙ୍କ ଦ୍ୱାରା ପ୍ରବର୍ତ୍ତୀତ New Education Policy ପାଇଁ ଏହି କର୍ମଶାଳାର ଆୟୋଜନ କରିଥିଲେ । Indira Gandhi National Centre for the Artsର ଲୋକକଳା ଓ ଆଦିବାସୀ କଳାର ପଞ୍ଜିକରଣ ଉପଲକ୍ଷେ ଆୟୋଜିତ ଜନପଦ ସଂପଦ ବିଭାଗର Working Groupର ସଭ୍ୟଭାବେ ମନୋନୀତ । INTACH ଭାରତୀୟ କଳା ଐତିହ୍ୟ ସଂରକ୍ଷଣ ନ୍ୟାସର ଆଜୀବନ ସଭ୍ୟ । ବାବ୍ଲା ସେନାପତି ଓ ବିଜୟ କୁମାର ରଥଙ୍କ ସହଯୋଗରେ ଭୁବନେଶ୍ୱରରେ INTACHର ଶାଖା ପ୍ରତିଷ୍ଠା । ଓଡ଼ିଶା କ୍ରାଫଟ୍ସ କାଉନ୍ସିଲ୍ର ସାଧାରଣ ସଂପାଦକ ମନୋନୀତ । ଭୁବନେଶ୍ୱରଠାରେ ପ୍ରତିଷ୍ଠା କରାଯାଇଥିବା National Institute of Culture ର ଉପ-ସଭାପତି ନିର୍ବାଚିତ । ଭୁବନେଶ୍ୱରଠାରେ Cultural Cross Currents and the Contemporary Society ବିଷୟକ ଏକ ରାଜ୍ୟସ୍ତରୀୟ ଆଲୋଚନା ଚକ୍ରର ଆୟୋଜନ । ଆନ୍ତର୍ଜାତୀୟ ବାଣିଜ୍ୟ ମେଳାରେ ଓଡ଼ିଶା ସରକାରଙ୍କ ଭିଜୁଏଲାଇଜର୍ । ଭାରତ ସରକାରଙ୍କ ସଂସ୍କୃତି ବିଭାଗ ପକ୍ଷରୁ Festival of India ଦ୍ୱାରା ସୁଇଡ଼େନ୍ ଓ ପୂରାତନ ସୋଭିଏତ୍ ସଂଘଠାରେ ଆୟୋଜିତ ହେବାକୁ ଥିବା Indian Popular Art ପ୍ରଦର୍ଶନୀର Designer, Visualiser and Curator ନିଯୁକ୍ତ । ଭାରତୀୟ ସାଂସ୍କୃତିକ ଦଳରେ ସାମିଲ ହୋଇ ସୁଇଡ଼େନ୍ ଓ ୟୁ.ଏସ୍.ଏସ୍. ଆର୍ର ବିଭିନ୍ନ ସହର ପରିଦର୍ଶନ । ସେଠାରେ ପ୍ରଦର୍ଶନୀର ବ୍ୟବସ୍ଥା କରିବା ପାଇଁ ବିଭିନ୍ନ ସଂଗ୍ରହାଳୟ, ଏକାଡ଼େମୀ ଓ ଅନ୍ୟାନ୍ୟ ସାଂସ୍କୃତିକ କେନ୍ଦ୍ର ପରିଦର୍ଶନ । ମସ୍କୋ, ଲେନିନ୍ଗ୍ରାଡ୍, ତାସ୍କେଣ୍ଟ, ଟିବିଲିସି ଏବଂ ଜର୍ଜିଆରେ ଚିତ୍ରଶିଳ୍ପୀ ଓ ଭାସ୍କରଙ୍କ ଷ୍ଟୁଡିଓ ପରିଦର୍ଶନ । ICCR ଆନୁକୂଲ୍ୟରେ India in Zurich ମହୋତ୍ସବର ବ୍ୟବସ୍ଥା ପାଇଁ ସୁଇଜରଲାଣ୍ଡ ପରିଦର୍ଶନ । ଗବେଷଣାର ସୀକୃତି ପାଇଁ Institute of Oriental and Orissan Studies, ୟୁନିଭର୍ସ କଟକ ପକ୍ଷରୁ ପ୍ରଥମ ଥର ଏ.ଏଲ୍.ବାସମ୍ ସ୍ମୃତି ପୁରସ୍କାରରେ ସମ୍ମାନିତ । Indian Popular Art ପ୍ରଦର୍ଶନୀର କଳା ସାମଗ୍ରୀ ସଂଗ୍ରହ ପାଇଁ ଭାରତର ବିଭିନ୍ନ ସହର ଓ ହସ୍ତଶିଳ୍ପ କେନ୍ଦ୍ର ପରିଦର୍ଶନ ।

୧୯୮୭ Indian Popular Art ସଂକ୍ରାନ୍ତୀୟ ବ୍ୟବସ୍ଥା ପାଇଁ ସୁଇଜରଲାଣ୍ଡ, ସୁଇଡ଼େନ୍ ଓ ୟୁ.ଏସ୍.ଏସ୍. ଆର ଭ୍ରମଣ । ପରେ ପରେ ସାତଜଣିଆ କାରିଗର ଦଳର ନେତୃତ୍ୱ ନେଇ ସୁଇଡ଼େନ୍ର ଷ୍ଟକ୍ହୋମ୍ ସହରରେ ପହଞ୍ଚି ପ୍ରଦର୍ଶନୀ ପାଇଁ କାର୍ଯ୍ୟଆରମ୍ଭ । ଦଳରେ କଟକର ମାଟିମୂର୍ତ୍ତି କାରିଗର, ତାମିଲନାଡୁର ସିନେମା ବେନର୍ ପେଣ୍ଟର୍, ବଢ଼େଇଙ୍କ ସହିତ ଚିତ୍ରଶିଳ୍ପୀ ଅସୀମ ବସୁ ଏବଂ ଛାତ୍ର ସଂଗ୍ରାମ ମହାରଣା ମଧ୍ୟ ସାମିଲ ଥିଲେ । ଏହି ପ୍ରଦର୍ଶନୀର ପୁସ୍ତିକା 'Mot Indien' ପାଇଁ ପ୍ରବନ୍ଧ ପ୍ରସ୍ତୁତି । ଭାରତ ସରକାରଙ୍କ Handicrafts Development Commissionଙ୍କ ଆନୁକୂଲ୍ୟରେ ଓଡ଼ିଶା

Digitized by srujanika@gmail.com

Crafts Council ପକ୍ଷରୁ ନିଖିଳ ଉତ୍କଳ କାରିଗରମାନଙ୍କ ସର୍ଭେ ପ୍ରକଳ୍ପ ପାଇଁ ନିର୍ଦ୍ଦେଶକ ମନୋନୀତ । ପୁନେଠାରେ ଏନ୍.ସି.ଇ.ଆର୍.ଟିର ଦ୍ୱିତୀୟ ସର୍ବଭାରତୀୟ ଚିତ୍ରଶିକ୍ଷକ ଶିବିରରେ Resource Person ଭାବେ ଯୋଗଦାନ । ଓଡ଼ିଶାର ସାଂପ୍ରତିକ ଚିତ୍ରକଳାର ସର୍ଭେପାଇଁ କେନ୍ଦ୍ର ଲଳିତ କଳା ଏକାଡ଼େମୀ ତରଫରୁ ନିର୍ଦ୍ଦେଶକ ମନୋନୀତ । ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ଓଡ଼ିଶା ମଣ୍ଡପର ଭିଜୁଏଲାଇଜର୍ ମନୋନୀତ । ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ଆନୁକୂଲ୍ୟରେ ଶରତଚନ୍ଦ୍ରଙ୍କ ଜୀବନୀ ଓ କୃତି ସମ୍ବଳିତ ମନୋଗ୍ରାଫ୍ ପ୍ରକାଶନ ପୂର୍ବାଞ୍ଚଳ ସାଂସ୍କୃତିକ କେନ୍ଦ୍ରର Governing Bodyର ସଭ୍ୟ ମନୋନୀତ ।

୧୯୮୮ ଭୁବନେଶ୍ୱରେ ଆଦିବାସୀ ମେଳାପାଇଁ ଭିଜୁଏଲାଇଜର୍ ମନୋନୀତ । ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ଆନୁକୂଲ୍ୟରେ ଅନୁଷ୍ଠିତ Tribal Communication କର୍ମଶାଳାରେ ଯୋଗଦାନ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଓଡ଼ିଶାର ସାଧୀନତା ସଂଗ୍ରାମ ଉପରେ ଆଧାରିତ ସୂଚନା ଓ ଲୋକ ସଂପର୍କ ବିଭାଗର ପ୍ରଦର୍ଶନୀର ନକ୍ସା ପ୍ରସ୍ତୁତି ।

ବାଙ୍ଗାଲୋରଠାରେ ଏନ୍.ସି.ଇ.ଆର୍.ଟି.ର ତୃତୀୟ, ସର୍ବଭାରତୀୟ ଚିତ୍ରଶିକ୍ଷକ ଶିବିରରେ Resource Person ଭାବେ ଯୋଗଦାନ । ଭାରତର ଅନ୍ୟତମ ପ୍ରାଚୀନ ଅନୁଷ୍ଠାନ All India Fine Arts and Crafts Society ର ହୀରକ ଜୟନ୍ତୀ ଉପଲକ୍ଷେ ଆୟୋଜିତ ସର୍ବଭାରତୀୟ ଚିତ୍ରକଳା ପ୍ରଦର୍ଶନୀରେ ଜଳରଙ୍ଗର ଚିତ୍ର ଶ୍ରୀରାଧା ପାଇଁ 'ଶ୍ରେଷ୍ଠ ଚିତ୍ର' ପୁରସ୍କାର ଏବଂ ଭାରତର ରାଷ୍ଟ୍ରପତିଙ୍କ ରଜତ ଫଳକରେ ସମ୍ମାନିତ । ବରୋଦାଠାରେ ଏମ୍.ଏସ୍. ବିଶ୍ୱବିଦ୍ୟାଳୟରେ ଓଡ଼ିଶାର ଚିତ୍ରକଳା ସଂପର୍କରେ ଭାଷଣ । ଓଡ଼ିଶାର କଳା ଓ କଳାକାରଙ୍କ ସଂପର୍କରେ ଜାତୀୟ ଆଲୋଚନା ଚକ୍ରର ଆୟୋଜନ । ଏହା ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ଦ୍ୱାରା ଆୟୋଜିତ ହୋଇଥିଲା । ବ୍ରହ୍ମପୁରଠାରେ ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ପକ୍ଷରୁ ପ୍ରଥମ ଶରତଚନ୍ଦ୍ର ଦେବ ସ୍ମାରକୀ ବକ୍ତୃତା ପ୍ରଦାନ । ତୁର୍କୀସ୍ତାନର ଅଙ୍କାରା ସହରରେ ଆୟୋଜିତ ଦ୍ୱିତୀୟ ଆନ୍ତର୍ଜାତୀୟ ଏସିଆନ୍-ୟୁରୋପିଆନ୍ ଆର୍ଟ୍ ବିନାଲେରେ ଯୋଗଦାନ । ଏଗାରବର୍ଷ ବୟସରେ କନ୍ୟା ସୁନନ୍ଦାର ଦୁଃଖଦ ମୃତ୍ୟୁ । ସୁନନ୍ଦାର ସ୍ମୃତିରେ ସୁନନ୍ଦା ପାଠୀ ଫାଉଣ୍ଡେସନ୍ ପ୍ରତିଷ୍ଠା ଓ ଭୁବନେଶ୍ୱରରେ ପ୍ରଥମ ରାଜ୍ୟସ୍ତରୀୟ ଶିଶୁଚିତ୍ର ପ୍ରଦର୍ଶନୀ ଓ କଳାଶିକ୍ଷା ସଂପର୍କରେ ସେମିନାର୍‌ର ଆୟୋଜନ ।

୧୯୮୯ କେନ୍ଦ୍ର ଲଳିତ କଳା ଏକାଡ଼େମୀର ସାଧାରଣ ପରିଷଦକୁ Artists Constituency ରୁ ନିର୍ବାଚିତ ଓ ପରେ ପରେ କାର୍ଯ୍ୟ ନିର୍ବାହୀ ସଦସ୍ୟର ସଭ୍ୟ ମନୋନୀତ । ଏହା ସହିତ ପ୍ରକାଶନ ଉପସମିତି, ଭୁବନେଶ୍ୱର ଓ କଲିକତାର ରାଷ୍ଟ୍ରୀୟ ଲଳିତକଳା ଏକାଡ଼େମୀର ଉପଦେଷ୍ଟା କମିଟୀକୁ ମଧ୍ୟ ସଭ୍ୟଭାବେ ମନୋନୀତ । ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ Agricultural Fair ର ଓଡ଼ିଶା ମଣ୍ଡପ ପାଇଁ ଭିଜୁଏଲାଇଜର୍ ନିଯୁକ୍ତ । ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦର କଳାଶିକ୍ଷା ସମିତିର ଆବାହକ ମନୋନୀତ । ଉତ୍କଳ ବିଶ୍ୱବିଦ୍ୟାଳୟ ଏକାଡ଼େମିକ କାଉନ୍‌ସିଲର ସଭ୍ୟ ଓ ଭିଜୁଏଲ୍ ଆର୍ଟ୍ ବୋର୍ଡ଼ର ଚେୟାରମ୍ୟାନ । ଭୁବନେଶ୍ୱର କେନ୍ଦ୍ରୀୟ ବିଦ୍ୟାଳୟର ପରିଚାଳନା ସମିତିର ସଭ୍ୟ ଏବଂ ପରେ ପରେ ଅଧ୍ୟକ୍ଷଭାବେ ଦାୟିତ୍ୱ ନିର୍ବାହ ।

Digitized by srujanika@gmail.com

ଭୁବନେଶ୍ୱରଠାରେ କେନ୍ଦ୍ର ଲଳିତ କଳା ଏକାଡ଼େମୀର ସର୍ବଭାରତୀୟ ଚିତ୍ରଶିବିରରେ ଯୋଗଦାନ । ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ପକ୍ଷରୁ Tribal Art - Primitivism and Modern Relevance ଜାତୀୟ ସେମିନାରରେ ଭିତ୍ତିପ୍ରବନ୍ଧ ଉପସ୍ଥାପନା । କେନ୍ଦ୍ର ଲଳିତ କଳା ଏକାଡ଼େମୀର ସର୍ବଭାରତୀୟ ପ୍ରଦର୍ଶନୀ ପାଇଁ ବିଚାରକ (Jury) ମନୋନୀତ ।

ଉପେନ୍ଦ୍ର ଭଞ୍ଜଙ୍କ ରସିକ ହାରାବଳୀ ଚିତ୍ରପୋଥି ସମ୍ପର୍କରେ ଗ୍ରନ୍ଥ ରଚନା ପାଇଁ ସୁଇଜରଲ୍ୟାଣ୍ଡ ଗସ୍ତ । ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏନ୍ ପକ୍ଷରୁ ଚେନ୍ନାଇଠାରେ ଆୟୋଜିତ Orissa Artists On the Move ମିଳିତ ଚିତ୍ର ପ୍ରଦର୍ଶନୀର ପରିକଳ୍ପନା ଏବଂ ଯୋଗଦାନ । ଭାରତ ସରକାରଙ୍କ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମ ଅଧୀନରେ ମସ୍କୋଠାରେ ଅନୁଷ୍ଠିତ Decorative Arts of India ପ୍ରଦର୍ଶନୀରେ ଯୋଗଦାନ । ଏହି ପ୍ରଦର୍ଶନୀ କେନ୍ଦ୍ର ଲଳିତ କଳା ଏକାଡ଼େମୀ ଦ୍ୱାରା ଆୟୋଜିତ ହୋଇଥିଲା ।

୧୯୯୦ ଭୁବନେଶ୍ୱର ଓ ବାଙ୍ଗାଲୋର ଠାରେ ଅନୁଷ୍ଠିତ ସର୍ବଭାରତୀୟ Veteran Artists of India ଚିତ୍ର ପ୍ରଦର୍ଶନୀର ଆବାହକ । ଏହି ପ୍ରଦର୍ଶନୀ କେନ୍ଦ୍ର ଲଳିତ କଳା ଏକାଡ଼େମୀଦ୍ୱାରା ଆୟୋଜିତ ହୋଇଥିଲା । ଜାତୀୟ ସଂଗ୍ରହାଳୟର କଳା ସଂଗ୍ରହ କମିଟୀର ସଭ୍ୟଭାବେ ଭାରତ ସରକାରଙ୍କ ଦ୍ୱାରା ମନୋନୀତ । ବ୍ରିଟେନ୍‌ରେ ଥିବା ଚିତ୍ରକଳା ମହାବିଦ୍ୟାଳୟ ପରିଦର୍ଶନ କରି ପ୍ରତ୍ୟକ୍ଷଜ୍ଞାନ ପାଇବା ପାଇଁ ବ୍ରିଟିଶ କାଉନ୍‌ସିଲ ଦ୍ୱାରା ଫେଲୋସିପ୍ ପ୍ରଦାନ । ବିଶ୍ୱଭାରତୀ, ଶାନ୍ତିନିକେତନରୁ କଳା-ଇତିହାସରେ ଦ୍ୱିତୀୟ ପିଏଚ.ଡି । ଏନ୍.ସି.ଇ.ଆର୍.ଟି.ର DESH ଉପଦେଷ୍ଟା କମିଟୀର ସଭ୍ୟ ମନୋନୀତ । ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ଓଡ଼ିଶା ମଣ୍ଡପ ପାଇଁ ଭିଜୁଏଲାଇଜର୍ ନିଯୁକ୍ତ । ଡେରାଡୁନ ଠାରେ Oil and Natural Gas Commission ତରଫରୁ ଆୟୋଜିତ ସର୍ବଭାରତୀୟ ଚିତ୍ର ଶିବିରରେ ଯୋଗଦାନ। ପଞ୍ଜାବ ବିଶ୍ୱବିଦ୍ୟାଳୟର କଳା ଇତିହାସ ବିଭାଗରେ ଓଡ଼ିଶାର ଚିତ୍ରକଳା ସଂପର୍କରେ ବକ୍ତୃତା ପ୍ରଦାନ। ସୁନନ୍ଦା ପାଠୀ ଫାଉଣ୍ଡେସନ୍ ପକ୍ଷରୁ ପ୍ରଥମ ଜାତୀୟ ଶିଶୁ ପ୍ରଦର୍ଶନୀର ଆୟୋଜନ - ପ୍ରଦର୍ଶନୀ (National ABC Show)ର ଥୀମ୍ I love Trees। ଭାରତ ଉତ୍ସବ ସଂକ୍ରାନ୍ତୀୟ ବ୍ୟବସ୍ଥା ପାଇଁ ସୁଇଜରଲ୍ୟାଣ୍ଡ ଗସ୍ତ।

୧୯୯୧ ସପ୍ତମ ତ୍ରିବାର୍ଷିକୀ ଭାରତ (7th Triennale India)ରେ ଭାରତ ପାଇଁ କମିଶନର୍ ନିଯୁକ୍ତ। କେନ୍ଦ୍ର ଲଳିତ କଳା ଏକାଡ଼େମୀ ଦ୍ୱାରା ଆୟୋଜିତ ଆନ୍ତର୍ଜାତିକ ସେମିନାର Changing Aesthetics in Contemporary Visual Art ପାଇଁ ଆବାହକ ମନୋନୀତ। ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତ କଳାକେନ୍ଦ୍ରଠାରେ ଆୟୋଜିତ ଆନ୍ତର୍ଜାତିକ ଗ୍ରାଫିକ୍ କର୍ମଶାଳା ପାଇଁ ଆବାହକ ନିଯୁକ୍ତ। ବମ୍ବେଠାରେ କେନ୍ଦ୍ର ଲଳିତ କଳା ଏକାଡ଼େମୀ ଆୟୋଜିତ Miniature Format ଚିତ୍ର ପ୍ରଦର୍ଶନୀରେ ଯୋଗଦାନ। ମାଡ୍ରାସ୍‌ଠାରେ କେନ୍ଦ୍ର ଲଳିତ କଳା ଏକାଡ଼େମୀ ଦ୍ୱାରା ଆୟୋଜିତ ସର୍ବଭାରତୀୟ ଡ୍ରଇଂ ପ୍ରଦର୍ଶନୀରେ ଅଂଶଗ୍ରହଣ। ଓଡ଼ିଶା ରାଜ୍ୟ କାଉନ୍‌ସିଲ୍ ଅଫ୍ କଲ୍‌ଚରରେ ସଭ୍ୟ ମନୋନୀତ। କେନ୍ଦ୍ର ଲଳିତ କଳା ଏକାଡ଼େମୀର କଳାଶିକ୍ଷା ସମିତିର ଆବାହକ ଏବଂ ପାରମ୍ପରିକ ଚିତ୍ରକଳା ସମିତିର ସଭ୍ୟ ମନୋନୀତ। ଦିଲ୍ଲୀର ଅଶୋକା ହୋଟେଲ୍‌ଠାରେ ଆଇ.ଟି.ଡି.ସି ପକ୍ଷରୁ ଆୟୋଜିତ ଚଉପାଲ୍ ମହୋତ୍ସବରେ ଓଡ଼ିଶା ପର୍ଯ୍ୟଟନ ବିଭାଗ ପକ୍ଷରୁ ଭିଜୁଏଲାଇଜର୍ ନିଯୁକ୍ତ। ଓଡ଼ିଶାରୁ Master Craftsmen ଚୟନ ପାଇଁ ଭାରତ ସରକାରଙ୍କ ଦ୍ୱାରା ବିଚାରକ ଭାବେ ମନୋନୀତ। ସୁନନ୍ଦା ପାଠୀ ଫାଉଣ୍ଡେସନ୍ ପକ୍ଷରୁ ଦ୍ୱିତୀୟ

Digitized by srujanika@gmail.com

ସର୍ବଭାରତୀୟ ଶିଶୁ ଚିତ୍ର ପ୍ରଦର୍ଶନୀ National ABC Show - Spirit of Freedom ର ଆୟୋଜନ । ଓଡ଼ିଶା ପର୍ଯ୍ୟଟନ ବିଭାଗ ପକ୍ଷରୁ ଆୟୋଜିତ କୋଣାର୍କ ଉତ୍ସବ ପାଇଁ ଅନୁଷ୍ଠିତ ସର୍ବଭାରତୀୟ Crafts Melaର ନିର୍ଦ୍ଦେଶକ ନିଯୁକ୍ତ । ଦିଲ୍ଲୀ ରବୀନ୍ଦ୍ର ଭବନର ଲଳିତ କଳା ଗ୍ୟାଲେରୀରେ 35 years of Art (1956-1991) Restrospective ଚିତ୍ର ପ୍ରଦର୍ଶନୀ ଦିଲ୍ଲୀର କଳା ସଂସ୍ଥା ପଞ୍ଚାମୃତ ଦ୍ୱାରା ଆୟୋଜିତ । ଭୁବନେଶ୍ୱର Regional ResearchLaboratory ସହାୟତାରେ ଲାବୋରେଟରୀ ପରିସରରେ ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟ ଛାତ୍ରଛାତ୍ରୀଙ୍କ ଭାସ୍କର୍ଯ୍ୟ କଳା ଶିବିର ।

୧୯୯୨- ୧୯୯୩ ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ର ଗ୍ୟାଲେରୀରେ 35 years of Art ପ୍ରଦର୍ଶନୀ ଉନ୍ମୋଚିତ । ସୁଇଜରଲ୍ୟାଣ୍ଡର ରିଟ୍‌ବର୍ଗ୍ ମ୍ୟୁଜିୟମ୍‌ରେ ଗ୍ରାଫିକ୍ ପ୍ରିଣ୍ଟର ଏକକ ପ୍ରଦର୍ଶନୀ Faces Known and Forgotten ପ୍ରଦର୍ଶିତ । ସୁନନ୍ଦା ପାଠୀ ଫାଉଣ୍ଡେସନ୍ ଆନୁକୂଲ୍ୟରେ ତୃତୀୟ ସର୍ବଭାରତୀୟ ଶିଶୁ ଚିତ୍ର ପ୍ରଦର୍ଶନୀ -National ABC Show - Our Neighbours ର ଆୟୋଜନ । କଳିଙ୍ଗ ବାଲିଯାତ୍ରା ଆନ୍ତର୍ଜାତିକ ପ୍ରକଳ୍ପର ଡିଜାଇନର୍ ମନୋନୀତ । କାଏରୋଠାରେ ଅନୁଷ୍ଠିତ 4th Cairo Biennale ର ଭାରତୀୟ କମିଶନର୍ ମନୋନୀତ ଓ ଭାରତର ପ୍ରତିନିଧି ଭାବେ ଏହି ପ୍ରଦର୍ଶନୀରେ ଯୋଗଦାନ ଓ ପ୍ରଦର୍ଶନୀ ଉପଲକ୍ଷେ ଅନୁଷ୍ଠିତ ଆନ୍ତର୍ଜାତିକ ସେମିନାର 'Art Terms After 1945' ରେ ପ୍ରବନ୍ଧ ଉପସ୍ଥାପନ ।

୧୯୯୪ ଜୈନ କୀର୍ତ୍ତିଭରା ଉଦୟଗିରି (ଖଣ୍ଡଗିରି) ପାହାଡ଼ର ପାଦ ଦେଶରେ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟର ନୂତନ ଗୃହ ଉଦ୍‌ଘାଟନ ଓ ଗୃହପ୍ରବେଶ । ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ ଅଷ୍ଟଦଳ ପଦ୍ମମଣ୍ଡଳ ଉପରେ ଏହାର ପରିକଳ୍ପନା ଓ ରୂପାୟନ । ଓଡ଼ିଶା ଇତିହାସ କଂଗ୍ରେସର ସ୍ଥାନୀୟ ସଂପାଦକ ଭାବେ ମହାବିଦ୍ୟାଳୟ ପରିସରରେ ଭୁବନେଶ୍ୱର ଅଧିବେଶନ ଆୟୋଜନ । କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚିବ ନିଯୁକ୍ତ ଓ ଏକାଡ଼େମୀ କାର୍ଯ୍ୟକ୍ରମର ସଂସ୍କାର ପ୍ରକ୍ରିୟା ଆରମ୍ଭ । ବାଙ୍ଗାଲୋରଠାରେ ଅନୁଷ୍ଠିତ ରାଷ୍ଟ୍ରୀୟ କଳାମେଳାର ପରିକଳ୍ପନା ଓ ରୂପାୟନ । ଚିତ୍ରକଳାର ପରିସରକୁ ବ୍ୟାପକ କରିଦେଇ ଲଳିତ କଳା ଏକାଡ଼େମୀର ଇତିହାସରେ ପ୍ରଥମ କରି ସଂଗୀତଜ୍ଞ, ଅଭିନେତା, ଐତିହାସିକ, ସାହିତ୍ୟିକଙ୍କ ଯୋଗଦାନ ଓ କେନ୍ଦ୍ର ଲଳିତ କଳା ଏକାଡ଼େମୀର ବାର୍ଷିକ ଚିତ୍ର ପ୍ରଦର୍ଶନୀରେ ମାନପତ୍ର ସହ ଓଡ଼ିଶା କାରିଗରଙ୍କ ଦ୍ୱାରା ପ୍ରସ୍ତୁତ କାଠଖୋଦେଇ କରା ସିଂହ-ସ୍ମାରକୀ ପ୍ରଦାନ । କାଶ୍ମୀର ଶାଲ ପରିବର୍ତ୍ତେ ଓଡ଼ିଶାର ନୂଆପାଟଣା ତନ୍ତୀଙ୍କ ଦ୍ୱାରା ବାନ୍ଧବୁଣା ସିଲ୍‌କ୍ ଅଙ୍ଗବସ୍ତ୍ର ପ୍ରଚଳନ । ଲଳିତକଳା ଏକାଡ଼େମୀ ସଂଗ୍ରହରେ ଥିବା ଚିତ୍ର ଓ ଭାସ୍କର୍ଯ୍ୟର ପ୍ରଥମ Catalogue ପ୍ରକାଶନ । ଜାପାନ ଫାଉଣ୍ଡେସନ୍ ଓ ମ୍ୟାକସ୍ ମ୍ୟୁଲର୍ ଭବନ ସହାୟତାରେ Art and Environmentର ଆନ୍ତର୍ଜାତିକ ଶିବିର ଦିଲ୍ଲୀର ବୁଦ୍ଧ ଜୟନ୍ତୀ ପାର୍କଠାରେ ଆୟୋଜିତ । 'ଓ୍ୱା' ପକ୍ଷରୁ ଜାହାଙ୍ଗୀର ଆର୍ଟ୍ ଗ୍ୟାଲେରୀ, ବମ୍ବେ ଏବଂ Orissa Festival, New Jersey, USA ଠାରେ ମିଳିତ ଚିତ୍ର ପ୍ରଦର୍ଶନୀ, Oddiyan, Contemporary Paintings from Orissa ପ୍ରଦର୍ଶିତ । ଏବଂ Oddiyan, Six Contemporary Artists of Odissa ଗ୍ରନ୍ଥ ପ୍ରକାଶନ ।

୧୯୯୫ କାର୍ଲ. ଜେ. ଖଣ୍ଡେଲାଓ୍ୱାଲାଙ୍କ ସମ୍ମାନାର୍ଥେ ଇଂରାଜୀରେ ଏକ ଅଭିନନ୍ଦନ ଗ୍ରନ୍ଥର ପ୍ରକାଶନ । କବି ସୀତାକାନ୍ତ ମହାପାତ୍ରଙ୍କ ଉଷାଭିଳାଷର ଇଂରାଜୀ ଅନୁବାଦ ସହ ଉଷାଭିଳାଷ ଚିତ୍ରପୋଥି ଏବଂ ଜେ. ସାମୀନାଥଙ୍କ ଉପରେ 'ଲଳିତ କଳା' ଜର୍ଣ୍ଣାଲ୍‌ର ଏକ ସତନ୍ତ୍ର ସଂଖ୍ୟା ପ୍ରକାଶନ । କଲିକତା ସହରରେ ରାଷ୍ଟ୍ରୀୟ କଳାମେଳାର

Digitized by srujanika@gmail.com

ଆୟୋଜନ । ପୂର୍ବାଞ୍ଚଳ ରାଷ୍ଟ୍ରୀୟ କଳାକେନ୍ଦ୍ର ସହାୟତାରେ Indian Art - A Re-reading ସର୍ବଭାରତୀୟ ସେମିନାର୍‌ର ଆୟୋଜନ । National Handicrafts and Handloom Museum ର Research Project Committee ର ସଭ୍ୟ, Indira Gandhi National Centre for the Arts ଦ୍ୱାରା ଆୟୋଜିତ ଆନ୍ତର୍ଜାତିକ ସେମିନାର୍ The Cultural Dimension of Education and Ecology ରେ ପ୍ରବନ୍ଧ ଉପସ୍ଥାପନା । ନୂଆଦିଲ୍ଲୀ ଆଧୁନିକ ଜାତୀୟ ସଂଗ୍ରହାଳୟ (National Gallery of Modern Art )ର କଳାକ୍ରୟ କମିଟିର ସଭ୍ୟ । ଦାମନଯୋଡ଼ିଠାରେ ନାଲ୍‌କୋ ସହାୟତାରେ କେନ୍ଦ୍ର ଲଳିତକଳା ଏକାଡ଼େମୀ ପକ୍ଷରୁ ସର୍ବଭାରତୀୟ ପ୍ରଥମ ଫଟୋଗ୍ରାଫ୍ କର୍ମଶାଳାର ଆୟୋଜନ ।

କେନ୍ଦ୍ର ଲଳିତକଳା ଏକାଡ଼େମୀ ରବୀନ୍ଦ୍ରଭବନ ଚିତ୍ରବୀଥିରେ ନିଜ ଛାତ୍ରଛାତ୍ରୀମାନଙ୍କ କଳାକୃତିର ଗୋଟିଏ ଚିତ୍ର ପ୍ରଦର୍ଶନୀ, Beyond the Shores ପ୍ରଦର୍ଶିତ ଏବଂ ଏହି ପ୍ରଦର୍ଶନୀର ଶୀର୍ଷରେ ନିଜେ ରହି ଗୁରୁ ଶିଷ୍ୟ ପରମ୍ପରାର ନେତୃତ୍ୱ ଏକ ନଜିର ଭାବେ ଏବଂ ପ୍ରଥମ ଓଡ଼ିଆଙ୍କ ମିଳିତ ପ୍ରଦର୍ଶନୀ ଭାବେ ଜାତୀୟ ସ୍ତରରେ କଳା ସମାଲୋଚକଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଏହି ପ୍ରଦର୍ଶନୀରେ ଅନୁପ ଚାନ୍ଦ, ଅଞ୍ଜନ କୁମାର ସାହୁ, ଅପର୍ଣ୍ଣା ରାୟ, ଚୁଗୁଲି କୁମାର ସାହୁ, ଚକ୍ରଧର ବେହେରା, ଦିଲ୍ଲୀପ କୁମାର ତ୍ରିପାଠୀ, ଜଗନ୍ନାଥ ପଣ୍ଡା, ଜ୍ୟୋତି ରଞ୍ଜନ ପାଣିଗ୍ରାହୀ, ସଜଳ ପାତ୍ର, ବବିତା ମିଶ୍ର, ପ୍ରଦୋଷ ମିଶ୍ର ଏବଂ ସୁଧାଂଶୁ ଭୂଷଣ ସୂତାର ଅଂଶ ଗ୍ରହଣ କରିଥିଲେ ଓ ଭାରତର ଭୂତପୂର୍ବ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଏହାକୁ ଉଦ୍‌ଘାଟନ କରିଥିଲେ । ନାରୀ ଶିଳ୍ପୀଙ୍କ ସହାୟତାରେ କେନ୍ଦ୍ର ଲଳିତକଳା ଏକାଡ଼େମୀ ପକ୍ଷରୁ ଦିଲ୍ଲୀଠାରେ ଶତଦ୍ରୁ ପ୍ରଦର୍ଶନୀର ଆୟୋଜନ । ଇନ୍ଦିରାଗାନ୍ଧି ମୁକ୍ତ ବିଶ୍ୱବିଦ୍ୟାଳୟ ସହାୟତାରେ Visual Art Appreciation : An Open Learning Programme କାର୍ଯ୍ୟକ୍ରମର ଆରମ୍ଭ ପାଇଁ ଆୟୋଜନ ।

୧୯୯୬ ମହାଶୂରଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ସେମିନାର Convergence - 1996 ରେ ଯୋଗଦାନ ଓ ନିବନ୍ଧ ଉପସ୍ଥାପନ । ଚଣ୍ଡିଗଡ଼ଠାରେ ପଞ୍ଜାବ ଲଳିତ କଳା ଏକାଡ଼େମୀ ଆନୁକୂଲ୍ୟରେ 'ଓ୍ୱା' ପକ୍ଷରୁ ଓଡ଼ିଆ ଶିଳ୍ପୀଙ୍କ ଚିତ୍ର ପ୍ରଦର୍ଶନୀ Spring is not Over ର ଆୟୋଜନ । ଜାପାନ ଫାଉଣ୍ଡେସନ୍ ଟୋକିଓର Short Term Visitor's Programmeରେ ଜାପାନର ଚିତ୍ରବୀଥି ଓ ସଂଗ୍ରହାଳୟ ପରିଦର୍ଶନ । ଦିଗପହଣ୍ଡିର ତୃର୍ଯ୍ୟମାଷ୍ଟ୍ରେ - ଆତ୍ମଜୀବନୀ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର । ଜାପାନର Sizuoka ସ୍ଥିତ Jurigi ଗ୍ୟାଲେରୀରେ ଚିତ୍ର ପ୍ରଦର୍ଶନ ଏବଂ ସେଠିକାର ସଂଗ୍ରହାଳୟ, ଆର୍ଟ୍ ଗ୍ୟାଲେରୀ ପରିଦର୍ଶନ । ନୂଆ ଦିଲ୍ଲୀର ବ୍ରିଟିଶ କାଉନ୍‌ସିଲ୍ ଚିତ୍ରବୀଥିରେ ଗୀତଗୋବିନ୍ଦ ଉପରେ ଆଧାରିତ ତୈଳଚିତ୍ରର ଏକକ ପ୍ରଦର୍ଶନୀ - Return Vocabulary ଅନୁଷ୍ଠିତ ।

ସିମଳାର Institute of Advanced Studies ର Research Award Committeeର ସଦସ୍ୟ । ନୂଆଦିଲ୍ଲୀର ରବୀନ୍ଦ୍ର ଭବନଠାରେ Manifestations - Visual and Verbal ଶୀର୍ଷକ ଚିତ୍ରକଳା ଓ କବିତାର ସମନ୍ୱିତ ପ୍ରଦର୍ଶନୀ । କଲିକତାଠାରେ ଅନୁଷ୍ଠିତ ରାଷ୍ଟ୍ରୀୟ କଳାମେଳାରେ ଜଗନ୍ନାଥ ପଣ୍ଡା ଓ ଡି.ଏନ୍. ରାଓଙ୍କ ସହିତ ମିଳିତ ପ୍ରଦର୍ଶନୀ - The Wild Trinity - Peacock, Tiger and Man (Woman) । କେନ୍ଦ୍ର ଲଳିତକଳା ଏକାଡ଼େମୀ ପକ୍ଷରୁ Know Your Art - Publication of History of Indian Art from Pre-history to Modern Timesର ସଂକଳନ ଓ ସଂପାଦନା ପାଇଁ ପ୍ରାରମ୍ଭିକ

Digitized by srujanika@gmail.com

କାର୍ଯ୍ୟ ଆରମ୍ଭ ।

୧୯୯୭ - Art of Renewal ଚିତ୍ରକାରଙ୍କ ଶୀଳ ଓ ଶୈଳୀ ସଂପର୍କରେ ଗବେଷଣା ପାଇଁ ଜବାହରଲାଲ ନେହରୁ ମେମୋରିଆଲ ଫେଲୋସିପ୍ । ଭାରତର ବିଭିନ୍ନ ପାରମ୍ପରିକ ଚିତ୍ରକରଙ୍କ ଚିତ୍ରଶାଳା ପରିଦର୍ଶନ ଓ ପଞ୍ଜୀକରଣ ।

୧୯୯୮ ଚିତ୍ର, ଗବେଷଣା ଓ ଲେଖାଲେଖିରେ ନିରବଚ୍ଛିନ୍ନ ଭାବେ ମନୋନିବେଶ କରିବା ପାଇଁ ସ୍ୱେଚ୍ଛାକୃତ ଭାବେ ଓଡ଼ିଶା ସରକାରଙ୍କ ଚାକିରିରୁ ଅବସର ଗ୍ରହଣ । ଜୁରିକ୍‌ର BEF ଫେଲୋସିପ୍ ଗ୍ରହଣ । ବମ୍ବେ ତାଜମହଲ ହୋଟେଲ୍‌ର ତାଜ ଆର୍ଟ୍ ଗ୍ୟାଲେରୀରେ The Moving Arrow ଶୀର୍ଷକ ତୈଳଚିତ୍ରର ଏକକ ପ୍ରଦର୍ଶନୀ । ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ପକ୍ଷରୁ ସଉରା ଗାଁରେ ସର୍ବଭାରତୀୟ ଚିତ୍ର ଶିବିରର ଆୟୋଜନ । ଏଥିରେ ଦିଲ୍ଲୀରୁ ନିରେନ୍ ସେନ୍‌ଗୁପ୍ତ, ଜୟ ଝାରୋଟିଆ, ନନ୍ଦ କଟିଆଲ, ଜଗଦୀଶ ଚନ୍ଦର, କାଳୀଚରଣ ଗୁପ୍ତାଙ୍କ ସମେତ ଡି.ଏନ୍ ରାଓ, ସୁବ୍ରତ ମଲ୍ଲିକ, ସୁଧାଂଶୁ ଭୂଷଣ ସୂତାର, ବିଭୂପ୍ରସାଦ ପଟ୍ଟନାୟକ, ପଞ୍ଚାନନ ସାମଲ, ପ୍ରବୀର ଦଳାଇ ଓ ଜ୍ୟୋତିରଞ୍ଜନ ପାଣିଗ୍ରାହୀଙ୍କ ଯୋଗଦାନ । ଚୀନଦେଶ ଭ୍ରମଣ ଏବଂ ବେଇଜିଙ୍ଗଠାରେ International China Expo-98 ରେ ଅଂଶଗ୍ରହଣ ଏବଂ ଚୀନ ସରକାରଙ୍କ ଦ୍ୱାରା **ବ୍ୟାଘ୍ର ଓ ପଦ୍ମବନ** ତୈଳ ଚିତ୍ର ପାଇଁ ପୁରସ୍କୃତ । ବେଇଜିଙ୍ଗ୍‌ଠାରେ ଶୋଭନ କୁମାରଙ୍କ ସହିତ ମିଳିତ ପ୍ରଦର୍ଶନୀ । IIT ଖଡ଼ଗ୍‌ପୁରଠାରେ ଜାତୀୟ ସେମିନାର୍ The Concept of Space ରେ ଯୋଗଦାନ ଓ ପ୍ରବନ୍ଧ ଉପସ୍ଥାନ । Indira Gandhi National Museum of Mankind, ଭୋପାଳଠାରେ River Velley Cultures of India, ଜାତୀୟ ସେମିନାର୍‌ରେ ଯୋଗଦାନ ଓ ପ୍ରବନ୍ଧ ଉପସ୍ଥାନ ।

୧୯୯୯ ପତ୍ନୀ ଅବନ୍ତୀଙ୍କ ମୃତ୍ୟୁ । ନବସମ୍ବତ୍ସରକୁ ସ୍ୱାଗତ କରିବା ପାଇଁ ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ପକ୍ଷରୁ Within and Beyond - A Multimedia Millennium Manifestation ପ୍ରକଳ୍ପର ପରିଯୋଜନା ଓ କ୍ୟୁରେଟର ନିଯୁକ୍ତ । ଓଡ଼ିଶାରେ ଇନ୍‌ଷ୍ଟଲେସନ୍ ଆର୍ଟ୍‌ର ଏହା ପ୍ରଥମ ଚିତ୍ର ପ୍ରଦର୍ଶନୀ ।

୨୦୦୦ ବାରାଣସୀସ୍ଥିତ ଆଲିସ ବୋନର୍ ପ୍ରତିଷ୍ଠାନର ନିର୍ଦ୍ଦେଶକ ଭାବେ ଯୋଗଦାନ ।

୨୦୦୧ ରାଷ୍ଟ୍ରୀୟ ଲଳିତ କଳାକେନ୍ଦ୍ର, ଭୁବନେଶ୍ୱର ଆନୁକୂଲ୍ୟରେ ପ୍ରଥମ ଶରତଚନ୍ଦ୍ର ଦେବ ଜାତୀୟ ସ୍ମୃତି ବକ୍ତୃତା Legacy and The New Art ପ୍ରଦାନ । ଓଡ଼ିଶା ଚିତ୍ରକଳା ଏକାଡ଼େମୀ ପକ୍ଷରୁ ଚିତ୍ରକଳା ସମ୍ମାନ - ୨୦୦୧ ଗ୍ରହଣ । ଭାରତ ବର୍ଷର ସର୍ବପ୍ରାଚୀନ କଳା ଅନୁଷ୍ଠାନ All India Academy of Fine Art and Crafts ପକ୍ଷରୁ ଚିତ୍ରକଳାରେ ସାମଗ୍ରିକ ଅବଦାନ ପାଇଁ କଳାଶ୍ରୀ ଉପାଧି ଗ୍ରହଣ ।

୨୦୦୨ ଖଲ୍ଲିକୋଟ ଚାରୁ ଓ କାରୁକଳା ମହାବିଦ୍ୟାଳୟରେ ରାଷ୍ଟ୍ରୀୟ ଲଳିତ କଳାକେନ୍ଦ୍ର, ଭୁବନେଶ୍ୱର ଆନୁକୂଲ୍ୟରେ ଜାତୀୟ ବକ୍ତୃତା : Art and Change - An Autobiographical Comprehension ପ୍ରଦାନ । କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ Museum for Rural Arts ର ପ୍ରତିଷ୍ଠା । ମ୍ୟୁଜିୟମ୍ ପାଇଁ କଳାକୃତି ସଂଗ୍ରହ ଓ ଗୃହ ନିର୍ମାଣରେ ସହାୟତା । କୁଳପତି ରାଜକିଶୋର ଭୁଜବଳଙ୍କ ସଂସ୍କୃତି ପରାମର୍ଶଦାତା ମନୋନୀତ ।

୨୦୦୩ ହାଇଦ୍ରାବାଦର ଆପୋଲୋ ହସ୍‌ପିଟାଲରେ ଗଲ୍‌ବ୍ଲାଡର ଅପରେସନ୍ । ଚିକିଟି ନୂଆଗାଁ ନିବାସୀ ରାଧାଶ୍ୟାମ ଓ ସୁକାନ୍ତି ସୁଆରଙ୍କ କନ୍ୟା ମମତା ସହିତ ପୁତ୍ର ସୌଭାଗ୍ୟର

Digitized by srujanika@gmail.com

ବିବାହ। National Book Trust (N.B.T.)ର ଗଭର୍ଣ୍ଣିଙ୍ଗ୍ ବଡ଼ିର ସଦସ୍ୟ ନିର୍ବାଚିତ। ରିଟ୍‌ବର୍ଗ୍ ମ୍ୟୁଜିୟମ୍‌ଠାରେ Ganga to Ganges ପ୍ରଦର୍ଶନୀ।

୨୦୦୪ ଓଡ଼ିଶା ସରକାରଙ୍କ ଦ୍ୱାରା ଓଡ଼ିଶା ଲଳିତ କଳା ଏକାଡ଼େମୀର ସଭାପତି ନିଯୁକ୍ତ। ପ୍ରଥମ ଥର ପାଇଁ ଏକାଡ଼େମୀର ରଙ୍ଗୀନ ପରିଚୟ ପତ୍ରିକା ନିଜ ଖର୍ଚ୍ଚରେ ଦିଲ୍ଲୀ ଥମ୍‌ସନ୍ ପ୍ରେସରେ ମୁଦ୍ରିତ। ଲଳିତକଳା ଏକାଡ଼େମୀର କାର୍ଯ୍ୟକ୍ରମ ରାଷ୍ଟ୍ରସ୍ତର ତଥା ଅନ୍ତରାଷ୍ଟ୍ରୀୟ ସ୍ତରରେ ପ୍ରଚାର ପ୍ରସାର ପାଇଁ ଇଂରାଜୀରେ ଗୋଟିଏ ବୁଲେଟିନ୍ ପ୍ରକାଶନ। ଓଡ଼ିଶାରେ ପ୍ରଥମ କରି ଚିତ୍ରଶିଳ୍ପୀ ଗୋପାଳ ଚରଣ କାନୁନ୍‌ଗୋଙ୍କ ଜନ୍ମ ଶତବାର୍ଷିକୀ ପାଳନ। କାନୁନ୍‌ଗୋଙ୍କ ସମ୍ପର୍କରେ ରଙ୍ଗିନ ପୁସ୍ତିକା ଏବଂ 'ବୁଦ୍ଧ ଓ ଉପଗୁପ୍ତ' ଚିତ୍ରର (Reproduction) ମୁଦ୍ରଣ। ରାଷ୍ଟ୍ରୀୟ ଲଳିତକଳା କେନ୍ଦ୍ରରେ ଓଡ଼ିଶା ଲଳିତ କଳା ଏକାଡ଼େମୀ ପକ୍ଷରୁ କଳାମେଳାର ଆୟୋଜନ। ରାଜ୍ୟ ସାହିତ୍ୟ ଏକାଡ଼େମୀ ଓ ସଂଗୀତ ନାଟକ ଏକାଡ଼େମୀକୁ ଏକା ସାଙ୍ଗରେ ନେଇ ଜୟଦେବ ଜୟନ୍ତୀ ପାଳନ। ଏହି ଉପଲକ୍ଷେ ଏକ ଦୁଇଦିନିଆ ଆଲୋଚନା ଚକ୍ରର ଆୟୋଜନ ଓ ସେଥିରେ ଭିତ୍ତିପ୍ରବନ୍ଧ ଉପସ୍ଥାପନ। ଭୁବନେଶ୍ୱରରେ ଓଡ଼ିଶା ମ୍ୟୁଜିୟମ୍ ଅଫ୍ ମଡ଼ର୍ଣ୍ଣ ଆର୍ଟ୍ (OMOMA) ପାଇଁ ପରିକଳ୍ପନା ଓ ଭାରତ ସରକାରଙ୍କ ନିକଟକୁ ପ୍ରସ୍ତାବ ପ୍ରେରଣ। ଓଡ଼ିଶାରେ ଗ୍ରାମ୍ୟକଳା ପରମ୍ପରାରେ ଲୋକଙ୍କ ବିଶ୍ୱାସ ଫେରେଇ ଆଣିବା ପାଇଁ ଓ କଳାକୁ ପେଶାଭାବରେ ଗ୍ରହଣ କରିବାର ସାମର୍ଥ୍ୟ ଆଣିଦେବା ପାଇଁ ପଞ୍ଚାୟତ ସ୍ତରରେ **ଜନକଳା ପ୍ରଶିକ୍ଷଣ କେନ୍ଦ୍ର** ପତିଷ୍ଠା କରିବା ପାଇଁ ପ୍ରସ୍ତାବ। ଭାରତ ସରକାରଙ୍କ ବୟନ ଶିଳ୍ପ ବିଭାଗର ଉପଦେଷ୍ଟା ସମିତିର ସଭ୍ୟ ମନୋନୀତ। ରାଜ୍ୟ ଲଳିତ କଳା ଏକାଡ଼େମୀ ପକ୍ଷରୁ ମହାତ୍ମା ଗାନ୍ଧୀଙ୍କ ଜୟନ୍ତୀ ଉପଲକ୍ଷେ ସେମିନାର ଆୟୋଜନ ଓ ପ୍ରସିଦ୍ଧ ଚିତ୍ରଶିଳ୍ପୀ ଆଦିମୂଳମ୍‌ଙ୍କ ଗାନ୍ଧୀ ରେଖାଚିତ୍ରକୁ ନେଇ ପୋଷ୍ଟର ମୁଦ୍ରଣ। ପ୍ରେରଣା ସଂସ୍ଥା ପକ୍ଷରୁ ମାନସିକ ରୋଗୀଙ୍କ ହେପାଜତ କରୁଥିବା ଆଶ୍ରା ସଂସ୍ଥାଠାରେ 'Art Therapy' କର୍ମଶାଳା ରାଜ୍ୟ ଲଳିତ କଳା ଏକାଡ଼େମୀ ଦ୍ୱାରା ପରିଚାଳନା। କୁଆଲାଲମ୍‌ପୁରର ସୂତ୍ର ଡାନ୍‌ସ୍ ଥିଏଟର୍ ଗ୍ୟାଲେରୀରେ Orissa Revealation ଶୀର୍ଷକ ଏକ ମିଳିତ ଚିତ୍ର ପ୍ରଦର୍ଶନୀର ଆୟୋଜନ।

୨୦୦୫ ପୁରୀ ଶ୍ରୀ ଜଗନ୍ନାଥ ସଂସ୍କୃତି ବିଶ୍ୱବିଦ୍ୟାଳୟର ସିନେଟରେ ସଭ୍ୟ ଭାବେ ମନୋନୀତ । ଓଡ଼ିଶୀ ନୃତ୍ୟଗୁରୁ ଦେବପ୍ରସାଦ ଦାସଙ୍କ ଶିଷ୍ୟମାନଙ୍କୁ ଏକତ୍ରିତ କରି ଭୁବନେଶ୍ୱରଠାରେ ଦୁଇଦିନିଆ ଆନ୍ତର୍ଜାତୀୟ ସେମିନାର୍‌ର ଆୟୋଜନ। ସେମିନାର୍ ସହିତ ସୂତ୍ର ଡାନ୍‌ସ୍ ଥିଏଟର୍‌ର ନୃତ୍ୟଶିଳ୍ପୀଙ୍କ ଦ୍ୱାରା ରବୀନ୍ଦ୍ର ମଣ୍ଡପରେ ନୃତ୍ୟ ଅଭିନୟ ପ୍ରଦର୍ଶନ। ଏଥିରେ ସୂତ୍ରର ନୃତ୍ୟାଙ୍ଗନାମାନେ ବ୍ଲାଉଜ ଉପରେ ଓଢ଼ଣୀ ନ ପିନ୍ଧି ନାଚିଥିବାରୁ କିଛି ରକ୍ଷଣଶୀଳ ସମାଲୋଚକ ଏହାକୁ ନେଇ ବିତର୍କ। ବିତର୍କରେ ରମଲି ଇବ୍ରାହୀମ ଓ ସୂତ୍ର ଡାନ୍‌ସ୍ ଥିଏଟରର ପକ୍ଷ ସମର୍ଥନ। ସର୍ବଭାରତୀୟ ଓ ଆନ୍ତର୍ଜାତୀୟ ସ୍ତରର ନୃତ୍ୟ ସମାଲୋଚିକା ତଥା ନୃତ୍ୟାଙ୍ଗନା ଇନ୍ଦ୍ରାଣୀ ରହମନ୍, ଶାନ୍ତା ସରବଜିତସିଂହ, ଲୀଳା ଭେଙ୍କଟ ରମଣ, ସୁନୀଲ କୋଠାରୀ ପ୍ରଭୃତି ସୂତ୍ର ଡାନ୍‌ସ୍ ଥିଏଟର୍‌ର ଅଭିନୟକୁ ସମ୍ମାନ ପ୍ରଦର୍ଶନ। ସମାଲୋଚନାର ବିଷୟ ରାଜନୈତିକ ରୂପ ଧାରଣ କରେ ଓ ରକ୍ଷଣଶୀଳ ଦଳ ଦିନନାଥଙ୍କ କୁଶପୁତ୍ତଳିକା ଦାହ ପାଇଁ ପ୍ରସ୍ତୁତ ହୁଅନ୍ତି। ମୁଖ୍ୟମନ୍ତ୍ରୀଙ୍କ ହସ୍ତକ୍ଷେପ ଫଳରେ ବିରୋଧିମାନେ ନିଜ ଅପଚେଷ୍ଟାରୁ ନିବୃତ୍ତି। ରାଜ୍ୟ ଲଳିତ କଳା ଏକାଡ଼େମୀ ଆନୁକୂଲ୍ୟରେ ଓଡ଼ିଶାର ଚିତ୍ରଶିଳ୍ପୀ ଓ କଳା ଐତିହାସିକଙ୍କ ମନୋଗ୍ରାଫ ପ୍ରକାଶନ ପାଇଁ Orissan Art and Artists Series ର ପ୍ରଚଳନ ଏବଂ Working Artists Association

Digitized by srujanika@gmail.com

ର ସହଯୋଗରେ ତିନୋଟି ମନୋଗ୍ରାଫ ପ୍ରକାଶନ । ପ୍ରଥମଟି ଅଜିତ କେଶରୀ ରାୟଙ୍କ ଜୀବନୀ Portrait of a Painter (ସଂପାଦନା ଦିନନାଥ ପାଠୀ), ଦ୍ୱିତୀୟଟି ପ୍ରଫୁଲ୍ଲ ମହାନ୍ତି ଜୀବନୀ ଓ କୃତି ସଂପର୍କରେ ଆକଳନ (ସଂପାଦନା ଗଣେଶ୍ୱର ମିଶ୍ର) Village Voice ଏବଂ ତୃତୀୟଟି ଜେ.ପି ଦାସଙ୍କ ସାମଗ୍ରୀକ କୃତି ସପର୍କରେ ଆଲୋଚନା Words on Canvas (ସଂପାଦନା ଗଣେଶ୍ୱର ମିଶ୍ର)ର ପ୍ରକାଶନ ଏବଂ ଏହି ସିରିଜ୍‌ର General Editor ଭାବେ ମନୋନୀତ । ସୁଇସ୍ ଭାସ୍କର ପ୍ରଫେସର ଜୋହାନା ଡାହମ୍ ଓ ମାନଫ୍ରେଡ୍‌ଙ୍କ ପିତଳ ଢଳେଇ କାମକୁ ଆଧାର କରି ଦିନିକିଆ Lost and Found ସେମିନାର୍‌ର ଆୟୋଜନ । ହୃତ୍‌ପିଣ୍ଡରେ ନୂତନ ଭଲଭ୍ ରୋପଣ ପାଇଁ ବାଙ୍ଗାଲୋରସ୍ଥିତ ନାରାୟଣ ହୃଦୟାଳୟରେ ପ୍ରସିଦ୍ଧ ସର୍ଜନ ପଦ୍ମଭୂଷଣ ଦେବୀ ସେଟ୍ଟୀଙ୍କ ଦ୍ୱାରା ଓପେନ୍ ହାର୍ଟ ସର୍ଜରୀ । କୁଆଲା ଲୁମ୍ପୁରର ସୂତ୍ର ଗ୍ୟାଲେରୀରେ ଓଡ଼ିଆ ଶିଳ୍ପୀଙ୍କ ମିଳିତ ଚିତ୍ର ପ୍ରଦର୍ଶନୀ Creative Space । ଏହି ପ୍ରଦର୍ଶନୀରେ ତାଙ୍କ ସହିତ ରାମହରି ଜେନା, ଚଇତା ବାସୁଜେନା, ସୌଭାଗ୍ୟ ଓ ମମତା ପାଠୀଙ୍କ ଯୋଗଦାନ ।

୨୦୦୬ ଓଡ଼ିଶୀ ନୃତ୍ୟର ପଞ୍ଜୀକରଣ ଓ ଗବେଷଣା ପାଇଁ ଅଙ୍ଗରାଗ, ଗୁରୁଦେବ ପ୍ରସାଦ ଅନୁଷ୍ଠାନର ପ୍ରତିଷ୍ଠା ଓ ପ୍ରତିଷ୍ଠାନର ଅଧ୍ୟକ୍ଷ ନିର୍ବାଚିତ । ଅଙ୍ଗରାଗ ନାମରେ ଗୋଟିଏ ସୁଦୃଶ୍ୟ ଇଂରେଜୀ ପତ୍ରିକା ପ୍ରକାଶନ ଓ ରବୀନ୍ଦ୍ର ମଣ୍ଡପରେ ଅଙ୍ଗରାଗ ବସନ୍ତ ଉତ୍ସବ ପାଳନ ସହ ଅଙ୍ଗରାଗ Life Time Achievement Award ପ୍ରଦାନ । ନୃତ୍ୟ ସମାଲୋଚିକା ଲୀଳା ଭେଙ୍କଟ ରମଣ, ପ୍ରିୟମ୍ବଦା ମହାନ୍ତି ଓ ରମଲି ଇବ୍ରାହୀମ ଅଙ୍ଗରାଗ ପୁରସ୍କାରରେ ସମ୍ମାନିତ । ସୌଭାଗ୍ୟ ପାଠୀ ପତ୍ରିକାର ସଂପାଦକ ମନୋନୀତ ।

୨୦୦୭ ଭୁବନେଶ୍ୱରରେ ତୃତୀୟ ଆନ୍ତର୍ଜାତିକ ଓଡ଼ିଶୀ ନୃତ୍ୟଉତ୍ସବର ଆୟୋଜନ । ରାମହରି ଜେନା ଓ ସୌଭାଗ୍ୟ ପାଠୀଙ୍କ ସହଯୋଗରେ ଓଡ଼ିଶୀ ନୃତ୍ୟ ସଂପର୍କରେ ଗୋଟିଏ ଫଟୋଚିତ୍ର ପ୍ରଦର୍ଶନୀ ଓ ମଣ୍ଡପ ନିର୍ମାଣ । ସୁନୀଲ କୋଠାରୀ, ସୌଭାଗ୍ୟପାଠୀ ଓ ରାମହରି ଜେନାଙ୍କ ସହାୟତାରେ ଆନ୍ତର୍ଜାତିକ ନୃତ୍ୟ ଉତ୍ସବ ପାଇଁ ସ୍ମରଣିକା ପ୍ରକାଶନ । Rethinking Odissi ଶୀର୍ଷକ ଇଂରେଜୀ ଭାଷାରେ ଓଡ଼ିଶୀ ନୃତ୍ୟ ସଂପର୍କରେ ଗୋଟିଏ ସମାଲୋଚନା (Critical assesment) ଗ୍ରନ୍ଥର ରଚନା ଓ ପ୍ରକାଶନ । ଖଲ୍ଲିକୋଟ ସରକାରୀ ଚାରୁ ଓ କାରୁକଳା ମହାବିଦ୍ୟାଳୟର ସର୍ଣ୍ଣଜୟନ୍ତୀ ଉପଲକ୍ଷେ ଗଠିତ Organising Committee ର Chairman ମନୋନୀତ । ଅଧ୍ୟକ୍ଷ ଡି. ନାରାୟଣ ରାଓ, ଅଧ୍ୟାପକ ଓ ପୁରାତନ ଛାତ୍ରଙ୍କ ସହାୟତାରେ ସର୍ଣ୍ଣ ସମାରୋହର ସଫଳ ରୂପାୟନ । ମହାବିଦ୍ୟାଳୟର ପ୍ରତିଷ୍ଠାତା ଅଧ୍ୟକ୍ଷ ଶରତଚନ୍ଦ୍ର ଦେବଙ୍କ ବ୍ରୋଞ୍ଜ ଆବକ୍ଷ ମହାବିଦ୍ୟାଳୟର ହାତୀ ଅଗଣାରେ ଅବସ୍ଥାପିତ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମହାବିଦ୍ୟାଳୟ କୋଠାର ରକ୍ଷଣାବେକ୍ଷଣ ପାଇଁ ଦୁଇ କୋଟି ଟଙ୍କାର ଅନୁଦାନ ଓ ମହାବିଦ୍ୟାଳୟକୁ Centre for Excellence ଭାବେ ଘୋଷଣା । ମହାବିଦ୍ୟାଳୟର ଏକ ସୁଦୃଶ୍ୟ ସ୍ମରଣିକା, ଅଧ୍ୟାପକ, ଅଧ୍ୟାପିକାଙ୍କ ଚିତ୍ର ପ୍ରଦର୍ଶନୀ ଓ ମହାବିଦ୍ୟାଳୟର ପୁରାତନ ଛାତ୍ରଛାତ୍ରୀଙ୍କ ଚିତ୍ର ପ୍ରଦର୍ଶନୀ ଉପଲକ୍ଷେ ସ୍ମରଣିକା ଅଧ୍ୟକ୍ଷ ଡି.ଏନ୍. ରାଓ ଓ ରାମହରି ଜେନାଙ୍କ ସହାୟତାରେ ସଂପନ୍ନ । ସର୍ଣ୍ଣ ସମାରୋହ ଉପଲକ୍ଷେ ଏହି ମହାବିଦ୍ୟାଳୟର ପୁରାତନ ଛାତ୍ର ଭାବେ **ଛାତ୍ରଗୌରବ ସମ୍ମାନ**ରେ ଭୂଷିତ । ନୂଆଦିଲ୍ଲୀଠାରେ ଦ୍ୱିତୀୟ ଅଙ୍ଗରାଗ ଉତ୍ସବ ଆୟୋଜନ । ସୁନୀଲ କୋଠାରୀ, ମିନତୀ ମିଶ୍ର ଅଙ୍ଗରାଗ ପୁରସ୍କାରରେ ସମ୍ମାନିତ । ଗଂଜାମ ଜିଲ୍ଲାର ବୋଇରାଣୀଠାରେ ଭାରତଲୀଳା ଗୁରୁ ନବଘନ ପରିଡ଼ା ଓ ଚିତ୍ରଶିଳ୍ପୀ-ଗବେଷକ ଦିଲ୍ଲୀପ କୁମାର ତ୍ରିପାଠୀଙ୍କ

Digitized by srujanika@gmail.com

ସହାୟତାରେ ଗଞ୍ଜାମର ସଖୀନାଟଗୁରୁ, ସଂଗୀତଜ୍ଞ ଓ ସଖୀପିଲାଙ୍କ ଏକ ସମ୍ମିଳନୀର ଆୟୋଜନ। ଗୋଦାବରୀଶ ସାହିତ୍ୟ ସଂସଦ ଦ୍ୱାରା ଗୋଦାବରୀଶ ସମ୍ମାନରେ ଭୂଷିତ। କେଦାରନାଥ ଗବେଷଣା ପରିଷଦର ରଜତ ଜୟନ୍ତୀ ସମାରୋହରେ ସମ୍ବର୍ଦ୍ଧିତ।

୨୦୦୮ କୁଆଲା ଲୁମ୍ପୁରଠାରେ ସୂତ୍ର ଡାନ୍ସ୍ ଥିଏଟର୍ ଆନୁକୂଲ୍ୟରେ ଚତୁର୍ଥ ଆନ୍ତର୍ଜାତିକ ଓଡ଼ିଶୀ ନୃତ୍ୟ ସମାରୋହର ଆୟୋଜନ। ନୃତ୍ୟୋତ୍ସବ ଉପଲକ୍ଷେ ଅନୁଷ୍ଠିତ ଆନ୍ତର୍ଜାତିକ ଚିତ୍ରକଳା ପ୍ରଦର୍ଶନୀର କ୍ୟୁରେଟର୍। ଏହି ପ୍ରଦର୍ଶନୀରେ ଓଡ଼ିଶୀ ନୃତ୍ୟ ସଂପର୍କରେ ସତନ୍ତ୍ରଭାବେ ଚିତ୍ରିତ ଆଠଗୋଟି ଚିତ୍ର ପ୍ରଦର୍ଶିତ। ଉତ୍ସବର ଅନ୍ୟତମ ଆକର୍ଷଣ ଥିଲା ଆନ୍ତର୍ଜାତୀୟ ସେମିନାର୍। ସେଥିରେ ପ୍ରବନ୍ଧ ଉପସ୍ଥାପନ, ପ୍ରଦର୍ଶନୀ ଓ ସେମିନାର୍ ପେଟ୍ରୋନାସ୍ ଟାୱାର-ଗ୍ୟାଲେରୀରେ ଅନୁଷ୍ଠିତ ହୋଇଥିଲା। ଓଡ଼ିଶା ରାଜ୍ୟ ଲଳିତକଳା ଏକାଡ଼େମୀ ଦ୍ୱାରା ପ୍ରଦତ୍ତ ଧର୍ମପଦ ସମ୍ମାନ ନେଇ ବିବାଦ। ପୁରସ୍କାର ଚୟନରେ ଅ-ନିୟମିତତା ଅଭିଯୋଗ କରି ମୁଖ୍ୟମନ୍ତ୍ରୀଙ୍କଠାରେ ଅଭିଯୋଗ ଓ କୋର୍ଟରେ ମକଦ୍ଦମା। ସମସ୍ୟାର ଗୁରୁତ୍ୱ ଉପଲବ୍ଧି କରି ସରକାରଙ୍କ ଦ୍ୱାରା ବିପିନ ବିହାରୀ ମିଶ୍ର କମିଶନ ଗଠିତ। ଚେନ୍ନାଇଠାରେ ତୃତୀୟ ଅଙ୍ଗରାଗ ଉତ୍ସବର ଅନୁଷ୍ଠାନ, ବୈଜୟନ୍ତୀ ମାଲା ବାଲି, ପି.ଭି. କୃଷ୍ଣମୂର୍ତ୍ତି, ନବଘନ ପରିଡ଼ା, ଶିବରାଜ ନଟରାଜଙ୍କୁ ଅଙ୍ଗରାଗ Life Time Achievement Award ପ୍ରଦାନ। ପଣ୍ଡିଚେରୀ ଠାରେ ଲଳିତ ବର୍ମାଙ୍କ ଷ୍ଟୁଡିଓରେ Artist Residency। ଗବେଷଣା କାର୍ଯ୍ୟରେ ସ୍ୱିଜରଲାଣ୍ଡ୍ ଗସ୍ତ। ଗଂଜାମ ଜିଲ୍ଲାର ଭାଟକୁମରଡ଼ାଠାରେ ସଖୀନାଟ ଓ ଧୁଡୁକି ଗୁରୁ ନୀଳକଣ୍ଠ ତରାଇଙ୍କ ନୃତ୍ୟ ବିଦ୍ୟାଳୟରେ ସଖୀନାଟ ଗୁରୁକୁଳ ପ୍ରତିଷ୍ଠା। ଗ୍ରାମରେ ସଖୀନାଟ କେନ୍ଦ୍ରମାନ ଚାଲୁ କରେଇ ପ୍ରଥମ ରାଜ୍ୟସ୍ତରୀୟ ସଖୀନାଟ ଉତ୍ସବର ସଫଳ ଆୟୋଜନ।

୨୦୦୯ ନାତୁଣୀ ରମ୍ୟାର ଜନ୍ମ। ପାହାଡ଼ୀ ଚିତ୍ରକର ନଇନ ସୁଖଙ୍କ ଜୀବନୀ ଉପରେ ଆଧାରିତ ଡକ୍ୟୁମେଣ୍ଟାରୀ ଚଳଚ୍ଚିତ୍ରର ପ୍ରପ ନିର୍ମାଣରେ ସହାୟତା। ପ୍ରଫେସର୍ ହରମାନ୍ କୁଲକେଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ ହେବାକୁ ଥିବା ଓଡ଼ିଶା ସଂପର୍କୀତ ଗ୍ରନ୍ଥ 'Imaging Orissa'ର ସଂପାଦନା ମଣ୍ଡଳୀରେ ଅନ୍ୟତମ ସଭ୍ୟ। National Gallery of Modern Art ର Apex କମିଟିରେ ଭାରତ ସରକାରଙ୍କ ଦ୍ୱାରା ସଭ୍ୟ ମନୋନୀତ। ଗବେଷଣା କାର୍ଯ୍ୟରେ ସ୍ୱିଜରଲାଣ୍ଡ୍ ଗସ୍ତ। କୁଆଲା ଲୁମ୍ପୁରର Sutra Galleryରେ ଓଡ଼ିଶୀ ନୃତ୍ୟ ଉପରେ ଆଧାରିତ ସ୍କେଚ୍‌ର ଏକକ ପ୍ରଦର୍ଶନୀ 'Cherished Fragments' ଅନୁଷ୍ଠିତ। ଟାଟାର Art in Industry ଆଞ୍ଚଳିକ କଳା ଶିବିରରେ ଯୋଗଦାନ, କଲିକତାର 'ଉତ୍କଳା' ପକ୍ଷରୁ ଉତ୍କଳ ସମ୍ମାନ ପ୍ରାପ୍ତି। ପ୍ରଗତି ଉତ୍କଳ ସଂଘ, ରାଉରକେଲା ପକ୍ଷରୁ ସଂଘର ସୁବର୍ଣ୍ଣ ଜୟନ୍ତୀ ଅବସରରେ ସମ୍ବର୍ଦ୍ଧିତ। ପ୍ରତିଭା ଅନ୍ୱେଷା ସମିତି, ଭୁବନେଶ୍ୱର ପକ୍ଷରୁ ପ୍ରତିଭା ସମ୍ମାନ-୨୦୦୯ ଗ୍ରହଣ।

୨୦୧୦ ଜର୍ମାନ ଭାଷାରେ ସଂପାଦିତ ଓ ମ୍ୟୁଜିୟମ୍ ରିଟ୍‌ବର୍ଗ ଦ୍ୱାରା ପ୍ରକାଶିତ ଗୀତଗୋବିନ୍ଦ ବହିର ଲୋକାର୍ପଣ ଉତ୍ସବରେ ଯୋଗଦେବା ପାଇଁ ସ୍ୱିଜରଲାଣ୍ଡ୍ ଗସ୍ତ। ଷଢ଼େଇକଳାଠାରେ ଅନୁଷ୍ଠିତ ଜାତୀୟ ଛଉ ସେମିନାରରେ ପ୍ରବନ୍ଧ ଉପସ୍ଥାପନା। ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ୧୫୦ ଜନ୍ମ ବାର୍ଷିକୀ ଉପଲକ୍ଷେ କାର୍ଯ୍ୟକ୍ରମର ରୂପରେଖ ଚୂଡ଼ାନ୍ତ କରିବା ପାଇଁ ରାଜା ରାମମୋହନ ରାୟ ଲାଇବ୍ରେରୀ ଫାଉଣ୍ଡେସନ୍‌ର ଅଧକ୍ଷଙ୍କ ଆବାହକତ୍ୱରେ (EZTCC)କମିଟି ଗଠନ ଓ ସେଥିରେ ସଭ୍ୟ ମନୋନୀତ। ଆନନ୍ଦପୁର (କେନ୍ଦୁଝର) ପ୍ରଜ୍ଞାଶ୍ରୀ ସଂସ୍କୃତିକ ପରିଷଦ ପକ୍ଷରୁ 'ପ୍ରଜ୍ଞାଶ୍ରୀ' ସମ୍ମାନ । 'କ' (କଳା

Digitized by srujanika@gmail.com

କଥା କବିତା) ପରିବାର ପକ୍ଷରୁ ସାମଗ୍ରୀକ କୃତି ପାଇଁ 'କ' ସମ୍ମାନ ୨୦୧୦। ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟର ରଜତ ସମାରୋହରେ ଓଡ଼ିଶାର କଳାଶିକ୍ଷାକୁ ଅବଦାନ ପାଇଁ ସମ୍ବର୍ଦ୍ଧନା ଫଳକ ଓ ମହାବିଦ୍ୟାଳୟର ପୁରାତନ ଛାତ୍ର ସଂସଦ ପକ୍ଷରୁ **ରଜତ ଲେଖନୀ ସମ୍ମାନ** ଗ୍ରହଣ।

୨୦୧୧ କଳା ଓ ସଂସ୍କୃତି କ୍ଷେତ୍ରରେ ଉତ୍କର୍ଷ ପାଇଁ ୨୦୧୧ ମସିହାର Think Odisha Leadership Award ଟେଫ୍‌ଲାସ୍ ଓ ଟାଇମସ୍ ଅଫ୍ ଇଣ୍ଡିଆ ଗ୍ରୁପ ତରଫରୁ ପ୍ରାପ୍ତି । P3 ଇଂରାଜୀ ପତ୍ରିକା ତରଫରୁ ସାମଗ୍ରୀକ କୃତି ପାଇଁ ସମ୍ବର୍ଦ୍ଧିତ । ଭୁଟାନ ଗ୍ରସ୍ତ ଓ ରାଜାଙ୍କ ବିବାହରେ ଯୋଗଦାନ ଓ ସେଠାରେ ବନ୍ଧୁ ଏବର୍‌ହାର୍ଡ଼ ଫିସରଙ୍କ ସପ୍ତତିତମ ଜନ୍ମ ଉତ୍ସବରେ ଯୋଗଦାନ । ଲକ୍ଷ୍ନୌର ଓଡ଼ିଆ ସମାଜର ନିମନ୍ତ୍ରଣ କ୍ରମେ ଲକ୍ଷ୍ନୌ ଠାରେ ଉତ୍କଳ ଦିବସ ଉତ୍ସବରେ ଯୋଗଦାନ ଓ ସମ୍ବର୍ଦ୍ଧିତ । ଶ୍ରୀରାମ ଜନ୍ମଭୂମି ଅଯୋଧ୍ୟା ଠାରେ ଶ୍ରୀରାମଙ୍କ ଜୀବନୀ ଓ ଦର୍ଶନ ଉପରେ ଆଧାରିତ ସର୍ବଭାରତୀୟ ଚିତ୍ରକଳା ଶିବିରରେ ଯୋଗଦାନ । ବନ୍ଧୁ ଏବର୍‌ହାର୍ଡ଼ଙ୍କ ସପ୍ତତିତମ ଜନ୍ମୋତ୍ସବ ପାଇଁ ଓଭିଗାକୁ କେନ୍ଦ୍ର କରି କବିତା, କଥା, ଚିତ୍ର ଓ ଫଟୋଗ୍ରାଫର ଏମ ମନୋଗ୍ରାଫ "Oviga Where Time Stands Still" ସୁଇସ୍ ଦୂତାବାସରେ ରାଷ୍ଟ୍ରଦୂତ ଓ୍ୱେଲ୍‌ଟିଙ୍କ ଦ୍ୱାରା ଲୋକାର୍ପିତ । ପୁତ୍ର ସୌଭାଗ୍ୟ ଦ୍ୱାରା ଦିନନାଥଙ୍କ ଚିତ୍ରର ସାମଗ୍ରୀକ ଆକଳନ ଥାଇ ଗୋଟିଏ ବହି ଚିତ୍ରାଙ୍ଗି : ଦିନନାଥଙ୍କ ଚିତ୍ରକଳା ପ୍ରକାଶ । ଚିଲିକା କୂଳରେ ଓଡ଼ିଶା ଲୋକକଳାର ଗୋଟିଏ ସଂଗ୍ରହାଳୟ ପୂର୍ବାଶାର ପରିକଳ୍ପନା ଏବଂ ତହିଁରେ ନିର୍ଦ୍ଦେଶକ ଭାବରେ କାର୍ଯ୍ୟ ଆରମ୍ଭ । ରେଭେନ୍‌ସା ବିଶ୍ୱବିଦ୍ୟାଳୟର ସିନେଟକୁ ସଭ୍ୟ ଭାବେ ତିନିବର୍ଷ ପାଇଁ ନିର୍ବାଚିତ ।

Digitized by srujanika@gmail.com

## ଆତ୍ମଜୀବନୀ



ଦିନନାଥ ପାଠୀ
**ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** (ଆତ୍ମଜୀବନୀ)
ପ୍ରକାଶକ ସୁନନ୍ଦା ପାଠୀ ଫାଉଣ୍ଡେସନ୍, ଭୁବନେଶ୍ୱର
ପ୍ରକାଶନ କାଳ ୧୯୯୦
ମୂଲ୍ୟ ବନ୍ଧେଇ ଟ୪୫/- ସାଦା ଟ.୪୦/-
ପୃଷ୍ଠା ୧୪୨ Paperback ସାଇଜ୍ ୨୨x୧୪.୫ ସେ.ମି
(ଏହା ଇଂରାଜୀ ଓ ହିନ୍ଦୀ ଭାଷାରେ ଅନୁବାଦିତ ହୋଇ ପ୍ରକାଶିତ)



Drawing Master of Digapahandi Autobiography Translated by Niranjan Mohanty



Digapahandi ka Drawing Master Autobiography Translated by Shankarlal Purohit



ଦିନନାଥ ପାଠୀ
**ପୁଞ୍ଜିକୟାଁର ଫକୀର**
**Punjikayanra Fakir**
(ମୋ ନନାଙ୍କ ଜୀବନ କାହାଣୀ)
ପ୍ରକାଶକ ମିଡ଼ିଆ ଓଡ଼ିଶା, ଭୁବନେଶ୍ୱର
ପ୍ରକାଶନ କାଳ ୨୦୦୪
ପୃଷ୍ଠା ୧୫୮ ବୋର୍ଡ଼ ବନ୍ଧେଇ
ସାଇଜ୍ ୨୨.୫x୧୪.୫ ସେ.ମି.
ମୂଲ୍ୟ ଟ. ୧୭୫/-



ଦିନନାଥ ପାଠୀ
**ଚିଲିକା ପାଣିରେ ଛାଇ**(ଆତ୍ମଜୀବନୀ)
**Chilika Panira Chhai,** Autobiography
ଖଲ୍ଲିକୋଟରେ ଚିତ୍ରକଳାଶିକ୍ଷାର ଚାରୋଟିବର୍ଷ
ପ୍ରକାଶକ ଅବନ୍ତୀ, ଭୁବନେଶ୍ୱର
ପ୍ରକାଶନ କାଳ ୨୦୦୫
ପୃଷ୍ଠା ୩୩୫ ସାଇଜ୍ ୨୨x୧୪.୫ ସେ.ମି, ବୋର୍ଡ଼ ବନ୍ଧେଇ
କଳାଧଳା ହାପ୍‌ଟୋନ୍ ଚିତ୍ର ୧୭ ରେଖାଚିତ୍ର ୨୩
ମୂଲ୍ୟ ଟ୨୫୦/-



ଦିନନାଥ ପାଠୀ
**ରୂପଜୀବୀର ଡାଏରୀ (ଆତ୍ମ ଜୀବନୀ)**
**Rupajivira Diary,** Autobiography
ପ୍ରକାଶକ ଦିବ୍ୟ ପ୍ରକାଶନୀ
ପ୍ରକାଶନ କାଳ ୨୦୦୯
ପୃଷ୍ଠା ୪୭୨ ବୋର୍ଡ଼ ବନ୍ଧେଇ
ସାଇଜ୍ ୨୨x୧୪.୫ ସେ.ମି,
କଳାଧଳା ହାପ୍‌ଟୋନ୍ ଚିତ୍ର ଓ ରେଖାଚିତ୍ର ୬୪
ମୂଲ୍ୟ ଟ.୩୫୦/-

Digitized by srujanika@gmail.com



ଦିନନାଥ ପାଠୀ
**ଅବନ୍ତୀ** (କବିତା)
**Avanti**, Collection of Poems
ପ୍ରକାଶକ, DIPS ଏବଂ WA, Bhubaneswar
ପ୍ରକାଶନ କାଳ ୧୯୮୮
ପୃଷ୍ଠା୫୬ ସାଇଜ୍ ୨୦.୫x୧୪.୫ ସେ.ମି, ମୂଲ୍ୟ ଟ.୫୦/-
ରେଖାଚିତ୍ର ୪୦, (ସୁନନ୍ଦା ପାଠୀଙ୍କ ଦ୍ୱାରା ଅଙ୍କିତ)
କଳାଧଳା ହାପ୍‌ଟୋନ୍ ଚିତ୍ର, ୧୨, Paperback
(ଏହାର ଇଂରାଜୀ ଅନୁବାଦ ପ୍ରଫୁଲ୍ଲ କୁମାର ତ୍ରିପାଠୀ କରିଥିଲେ ଓ ପ୍ରଚ୍ଛଦ ସୁନନ୍ଦା ପାଠୀଙ୍କ ଚିତ୍ର ଉପରେ ଆଧାରିତ ହୋଇ ଡି.ଏନ୍. ରାଓଙ୍କ ଦ୍ୱାରା ସିଲ୍‌କ୍ ସ୍କ୍ରୀନ୍‌ରେ ମୁଦ୍ରିତ ହୋଇଥିଲା ।)



ଦିନନାଥ ପାଠୀ
**ଚିତ୍ରଶାଳା** (କବିତା)
**Chitrasala**, Collection of Poems
ପ୍ରକାଶକ ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ପ୍ରତିଷ୍ଠାନ, ବ୍ରହ୍ମପୁର
ପ୍ରକାଶନ କାଳ ୨୦୦୦
ପୃଷ୍ଠା ୧୦୪ Paperback
ସାଇଜ୍ ୨୧x୧୪ ସେ.ମି.
ରେଖାଚିତ୍ର ୧୩
ମୂଲ୍ୟ ଟ.୧୦୦




ଦିନନାଥ ପାଠୀ
**ବର୍ଣ୍ଣିଳ ଅପରାହ୍ଣ** (କବିତା)
**Varnila Aparahna**, Collection of Pems
ପ୍ରକାଶକ: ଅର୍ପିତା
ପ୍ରକାଶନ କାଳ ୨୦୧୦
ପୃଷ୍ଠା ୧୧୬ ସାଇଜ୍ ୨୧x୧୪ ସେ.ମି.
ରେଖାଚିତ୍ର-୨୫ Paperback
ମୂଲ୍ୟ ଟ.୧୦୦/-




ଦିନନାଥ ପାଠୀ
**ଓଭିଗା** (କବିତା)
**Oviga**, **Where Time Stands Still**
Collection of Poems
ପ୍ରକାଶକ ଅଙ୍ଗରାଗ, ଭୁବନେଶ୍ୱର
ପ୍ରକାଶନ କାଳ ୨୦୧୧
ପୃଷ୍ଠା ୭୨ ସାଇଜ୍ ୨୧x୧୮ ସେ.ମି.
ରଙ୍ଗିନ ଚିତ୍ର ୧୦ କଳାଧଳା ହାପ୍‌ଟୋନ୍ ଚିତ୍ର ୧୬
ରେଖାଚିତ୍ର ୨୫ Paper back
ମୂଲ୍ୟ ଟ.୩୦୦/-

Digitized by srujanika@gmail.com



ଦିନନାଥ ପାଠୀ
**ସାୟୋନାରା(ଚିତ୍ରୋପନ୍ୟାସ)**
**Sayonara,** Meta Fiction
ପ୍ରକାଶକ : ମିଡ଼ିଆ ଓଡ଼ିଶା, ଭୁବନେଶ୍ୱର
ପ୍ରକାଶନ କାଳ ୧୯୯୮
ପୃଷ୍ଠା ୨୪୨ ବୋର୍ଡ଼ ବନ୍ଧେଇ
କଳାଧଳା ରେଖାଚିତ୍ର ୩୫
ସାଇଜ୍ ୨୧.୫x୧୪.୫ ସେ.ମି.
ମୂଲ୍ୟ ଟ୧୫୦/-



ଦିନନାଥ ପାଠୀ
**ପୁନର୍ନବା(ଚିତ୍ରୋପନ୍ୟାସ)**
**Punarnava,** Art Fiction
ପ୍ରକାଶକ ଅବନ୍ତୀ, ଭୁବନେଶ୍ୱର
ପ୍ରକାଶନ କାଳ ୧୯୯୯
ସାଇଜ୍ ୨୨.୫x୧୪.୫
ପୃଷ୍ଠା ୩୦୦, ବୋର୍ଡ଼ ବନ୍ଧେଇ,
କଳାଧଳା ରେଖାଚିତ୍ର ୩୬
ମୂଲ୍ୟ ଟ୨୫୦/-



ଦିନନାଥ ପାଠୀ
**ଶ୍ଳୋକଛନ୍ଦ** (ଚିତ୍ରୋପନ୍ୟାସ)
**Slokachhanda,** Art Fiction
ପ୍ରକାଶକ ଅବନ୍ତୀ, ଭୁବନେଶ୍ୱର
ପ୍ରକାଶନ କାଳ, ୨୦୦୧
ସାଇଜ୍ ୨୧.୫୧୪.୫ସେ.ମି.
କଳାଧଳା ହାଫ୍‌ଟୋନ୍ ଚିତ୍ର ୪୦
ପୃଷ୍ଠା ୨୬୪ ବନ୍ଧେଇ
ମୂଲ୍ୟ ଟ. ୨୦୦/-



ଦିନନାଥ ପାଠୀ
**ଗଙ୍ଗାବତରଣ** (ଚିତ୍ରୋପନ୍ୟାସ)
**Gangavatarana,** Art Fiction
ପ୍ରକାଶକ ଅବନ୍ତୀ, ଭୁବନେଶ୍ୱର
ପ୍ରକାଶକାଳ ୨୦୦୨
ପୃଷ୍ଠା ୨୭୨ ରେଖାଚିତ୍ର, ୧୩
ସାଇଜ୍ ୨୨x୧୪.୫ ବନ୍ଧେଇ
ମୂଲ୍ୟ ଟ.୨୫୦/-

**Gangavatarana**
Hindi Translation by
Dillip Kumar Tripathy




Digitized by srujanika@gmail.com



ଦିନନାଥ ପାଠୀ

**ଗଛ କୋରଡ଼ରେ ହୃଦୟ**(ଚିତ୍ରୋପନ୍ୟାସ)

**Gachha Koradare Hrudaya,** Art Fiction

ପ୍ରକାଶକ: ସରସ୍ୱତୀ, ଭୁବନେଶ୍ୱର

ପ୍ରକାଶନ କାଳ ୨୦୦୬

ପୃଷ୍ଠା ୧୪୪ ସାଇଜ୍ ୨୨x୧୪ ସେ.ମି

ବୋର୍ଡ଼ ବନ୍ଧେଇ

ମୂଲ୍ୟ ୧୦୦/-



ଦିନନାଥ ପାଠୀ

**ଦିନେ ନ ଡାକିବୁ ଧରମା ବୋଲି** (ଚିତ୍ରୋପନ୍ୟାସ)

**Dine Na Dakibu Dharama Boli,** Art Fiction

ପ୍ରକାଶକ: ଦିବ୍ୟ ପ୍ରକାଶନୀ, ଭୁବନେଶ୍ୱର

ପ୍ରକାଶକାଳ, ୨୦୦୯ ପୃଷ୍ଠା ୮୮

କଳାଧଳା ହାଫ୍‌ଟୋନ୍ ଚିତ୍ର-୬ Paperback

ସାଇଜ୍ ୨୧x୧୩ .୫ ସେ.ମି

ମୂଲ୍ୟ ଟ.୬୦/-

(ଓଡ଼ିଶା ଲଳିତକଳା ଏକାଡ଼େମୀ ପ୍ରଦତ୍ତ ଧର୍ମପଦ ପୁରସ୍କାର ମନୋନୟନର ଅନିୟମିତତାକୁ ଆଧାରକରି ଲିଖିତ ଚିତ୍ରୋପନ୍ୟାସ)




ଦିନନାଥ ପାଠୀ

**ରୂପ ରଙ୍ଗ ଅନଙ୍ଗ** (ଚିତ୍ରୋପନ୍ୟାସ)

**Rupa Ranga Ananga,** Art Fiction

ପ୍ରକାଶକ: ଏଥେନା ବୁକ୍‌ସ୍

ପ୍ରକାଶନ କାଳ୨୦୧୦

ପୃଷ୍ଠା ୨୪୦ ବୋର୍ଡ଼ ବନ୍ଧେଇ, ସାଇଜ୍ ୧୫x୨୨ ସେ.ମି

ରେଖାଚିତ୍ର ୧୩

ମୂଲ୍ୟ ୨୦୦/-

*Digitized by srujanika@gmail.com*







ଷ୍ଟକହୋମ୍ ସହରରେ ଭାରତ ଉତ୍ସବ ପଟୁଆରରେ ଭାଗ ନେଇଥିବା ରୋହିତ ବଟ୍ଟୁ, ଅସୀମ ବସୁ, ମାର୍ଗାରିଏତା ଜେଟ୍ରେଷ୍ଟ୍ରମ୍‌ଙ୍କ ଗହଣରେ, ୧୯୮୮

କସ୍ତୁରବା ନାରୀ ମହଲରେ ନିଜ ଏକକ ଚିତ୍ର ପ୍ରଦର୍ଶନୀର ଅଭିମତ ପୁସ୍ତିକାରେ ହସ୍ତାକ୍ଷର ଦେବା କାଳରେ ରଥୀନ୍ ମିତ୍ର, ଅସିତ ମୁଖାର୍ଜୀ, ମଦନମୋହନ ପଣ୍ଡା, ଅସୀମ ବସୁଙ୍କ ଗହଣରେ, ୧୯୭୧

ଶିଶୁ ଉଦ୍ୟାନର ଅର୍ଦ୍ଧଗୋଲାକୃତ ପ୍ରଦର୍ଶନୀ ଘରେ 'ଓ୍ୱା'ର ଚିତ୍ର ପ୍ରଦର୍ଶନୀ ଅବସରରେ କାଶୀନାଥ ଜେନା, ଦିନନାଥ ପାଠୀ, ନଳିନୀ କେ. ସ୍ୱାଲୀ ଓ ହରିଦାସ କେ. ସ୍ୱାଲୀ, ୧୯୭୩

Digitized by srujanika@gmail.com





ରବୀନ୍ଦ୍ର ଭବନରେ ଶଙ୍ଖୋ ଚୌଧୁରୀଙ୍କ ସହ, ୧୯୯୬

ମୁରଲୀ ମନୋହର ଯୋଶୀଙ୍କ ହାତରେ All India Fine Art and Crafts Society ପକ୍ଷରୁ କଳାଶ୍ରୀ ଉପାଧି ପାଇବା ଅବସରରେ ଭାରତ ବର୍ଷର ବିଶିଷ୍ଟ ଶିଳ୍ପୀ ଜାହାଙ୍ଗୀର ସବାୱାଲା, ବିମାନ ଦାସ, ଅନୁପମ ସୁଦଙ୍କ ଗହଣରେ, ୨୦୦୧

Digitized by srujanika@gmail.com







Dr. Pathy presenting an album of his sketches to Sr. Jyoti Basu, Chief Minister of West Bengal at Calcutta, 1983





ରସନା ଇମ୍‌ହାସଲି ଓ ଲଳିତ ମାନସିଂହଙ୍କ ଗହଣରେ, ୧୯୯୩

ବରିପାଲି ଗଡ଼ରେ ଖଲି ମହାପାତ୍ରଙ୍କ ଶିକ୍ଷଶାଳାରେ କାଠ ଖୋଦେଇର
ପଞ୍ଜୀକରଣ କାର୍ଯ୍ୟ, ୧୯୯୮

ଖଲ୍ଲିକୋଟ ଠାରେ ଅଜିତ କେଶରୀ ରାୟ, ଅନନ୍ତ ପଣ୍ଡା ଓ କାଶୀନାଥ ଜେନାଙ୍କ ସହ, ୧୯୬୨

ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଜ୍ୟୋତି ବସୁଙ୍କ ସହ, ୧୯୭୮

କୁର୍‌ଫିର୍‌ଷ୍ଟେନ୍ ଷ୍ଟ୍ରାସେ ଠାରେ ବାରବରା ଫିସର୍ ଓ କନ୍ୟା ଅଞ୍ଜଳିଙ୍କ ଗହଣରେ ଖ୍ରୀଷ୍ଟମାସ ପାଳନ, ୧୯୭୬

Digitized by srujanika@gmail.com











ଦାମନଯୋଡ଼ୀ ଠାରେ ଚିତ୍ରକଳା ଉତ୍ସବ ଅବସରରେ ଡି.ଏନ୍ ରାଓ, ମଞ୍ଜୁ ସାମନ୍ତରାୟ, ବିଦ୍ୟୁତ ଲତା ପାଟଶାଣୀ, ରାମହରି ଜେନା, ସୁବ୍ରତ କୁମାର ମଲ୍ଲିକ ଓ ଶିବ ପାଣିଗ୍ରାହୀଙ୍କ ଗହଣରେ, ୧୯୮୮

ମହିଶୂରର ଗୋଟିଏ ହ୍ରଦରେ ଆନନ୍ଦ ଦେବ, ଗୌତମ ଓ ବିରେଶ୍ୱର ଭଟ୍ଟାଚାର୍ଯ୍ୟଙ୍କ ଗହଣରେ ନୌକାବିହାର, ୧୯୯୬

ସୁନନ୍ଦା ପାଠୀ ଫାଉଣ୍ଡେସନ୍‌ର ଜାତୀୟ ଶିଶୁ ଚିତ୍ରକଳା ପ୍ରଦର୍ଶନୀରେ ଓଡ଼ିଶାର ରାଜ୍ୟପାଳ ଯଜ୍ଞଦତ୍ତ ଶର୍ମାଙ୍କ ଗହଣରେ, ୧୯୯୧

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ପଟଚିତ୍ର ପ୍ରଦର୍ଶନୀରେ କେ.ଟି. ସତାରାୱାଲା ଓ ହରିଶ୍ଚନ୍ଦ୍ର ଦାସଙ୍କ ଗହଣରେ, ୧୯୭୨

ଚିତ୍ରମ କଳା ବିଦ୍ୟାଳୟ‍· ଉଦ୍‌ଘାଟନ ଉତ୍ସବରେ, ୧୯୬୯

Digitized by srujanika@gmail.com







ଭୁବନେଶ୍ୱର କେନ୍ଦ୍ରୀୟ ବିଦ୍ୟାଳୟର ଚିତ୍ର ଶିକ୍ଷକ (ଦାଢ଼ି), ୧୯୬୭

ବସନ୍ତ ସାଠେ, ଭବେଶ ଚନ୍ଦ୍ର ସାନ୍ୟାଲ ଓ ଅନ୍ୟଶିଳ୍ପୀଙ୍କ ଗହଣରେ, ୧୯୯୬

ନିଜର ଏକକ ଚିତ୍ର ପ୍ରଦର୍ଶନୀରେ ଶ୍ୟାମ ସୁନ୍ଦର ମହାପାତ୍ରଙ୍କ ସହ, ୧୯୯୩

Digitized by srujanika@gmail.com

ବାଙ୍ଗାଲୋରଠାରେ ଅନୁଷ୍ଠିତ କଳା ପ୍ରଦର୍ଶନୀରେ ରାଜ୍ୟପାଳ ଖୁର୍ସିଦ ଆଲମ ଖାଁ, କେନ୍ଦ୍ର ଲଳିତ କଳା ଏକାଡେମୀର ସଭାପତି ରାମନିବାସ ମିର୍ଦ୍ଧା ଓ ସଂପାଦକ ଦୀନନାଥ ପାଠୀ

# ବାଙ୍ଗାଲୋରରେ ୮ମ କଳାମେଳା-୯୫ ଉଦ୍‌ଘାଟିତ

ବାଙ୍ଗାଲୋର, ୨୨।୧, (ରବିବାର ବ୍ୟୁରୋଠାରୁ) ଗତ ୧୦ ତାରିଖ ଅପରାହ୍ନରେ ଏଠାରେ ଉପସ୍ଥିତ ଥିବା ପ୍ରାୟ ଦୁଇ ହଜାରରୁ ଉର୍ଦ୍ଧ୍ୱ କଳାକାରଙ୍କୁ ସମ୍ବୋଧନ ଦେଇ କର୍ଣ୍ଣାଟକର ରାଜ୍ୟପାଳ ଶ୍ରୀ ଖୁର୍ସିଦ୍ ଆଲମ୍ ଖାଁ ସ୍ପଷ୍ଟ କରିଦେଲେ ଯେ, ପରିବର୍ତ୍ତିତ ପରିସ୍ଥିତିର ପ୍ରତିଫଳନ ପ୍ରତ୍ୟେକ କଳାକାରଙ୍କ ସୃଷ୍ଟିର ଆଧାର ହେବା ଦରକାର। କାରଣ ଆମ ସମାଜ କଳାକାରମାନଙ୍କୁ ସମ୍ମାନ ଦିଏ ଏବଂ ପ୍ରତି ବଦଳରେ ସମାଜର ସାମଗ୍ରିକ ମୂଲ୍ୟବୋଧକୁ ସେମାନେ ସମୃଦ୍ଧ କରନ୍ତୁ ବୋଲି ଆଶା ରଖେ।

ସ୍ଥାନୀୟ ରବୀନ୍ଦ୍ର କଳା କ୍ଷେତ୍ରଠାରେ ଆୟୋଜିତ ହୋଇଥିବା ଏ ଅବଧି ଆମ ଦେଶର ସର୍ବ-ବୃହତ୍ ଅଷ୍ଟମ 'କଳାମେଳା-୯୫'କୁ ଉଦ୍‌ଘାଟନ କରିବା ଅବସରରେ ରାଜ୍ୟପାଳ ଶ୍ରୀ ଖାଁ ଏହା ମଧ୍ୟ କହିଲେ ଯେ, କଳା କେବେ ଜାତି, ଧର୍ମ ଓ ବର୍ଣ୍ଣ ପ୍ରଭେଦ ଭିତରେ ସୀମିତ ହୋଇ ରହେ ନାହିଁ। ବରଂ ଏହା ମାନବିକତାକୁ ଉଦ୍‌ବୁଦ୍ଧ କରିଥାଏ। ଏହି କଳାମେଳା ଆମ ଦେଶର ବହୁମୁଖୀ ସାଂସ୍କୃତିକ ବିଭିନ୍ନତାକୁ ଯଥାର୍ଥ ଭାବେ ପ୍ରତିଫଳିତ କରୁଥିବାବେଳେ ସେସବୁର ଏକାତ୍ମ ସଙ୍ଗମ ମଧ୍ୟ କରାଇପାରିଛି। କଳା ଓ ସଂସ୍କୃତିର ଗୁରୁତ୍ୱ ଦର୍ଶାଇବାକୁ ଯାଇ ରାଜ୍ୟପାଳ କହିଲେ ଯେ, ଏହା ଯେକୌଣସି ସଭ୍ୟତାର ମୂଳପିଣ୍ଡ ଏବଂ କଳା ଓ ସଂସ୍କୃତିକୁ ବାଦ ଦେଇ କୌଣସି ସଭ୍ୟତା ସମୃଦ୍ଧ ହୋଇପାରିବ ନାହିଁ।

ଏହି ଉଦ୍‌ଘାଟନୀ ଉତ୍ସବରେ ଉପସ୍ଥିତ ଥିବା କେନ୍ଦ୍ର ଲଳିତ କଳା ଏକାଡେମୀର ଅଧ୍ୟକ୍ଷ ଶ୍ରୀ ରାମନିବାସ ମିର୍ଦ୍ଧା କଳାମେଳାର ଉଦ୍ଦେଶ୍ୟ ସ୍ପଷ୍ଟ କରିବାକୁ ଯାଇ କହିଲେ ଯେ, ଏହା ସାରା ଦେଶର କଳାକାରମାନଙ୍କୁ ଏକାଠି କରିବା କ୍ଷେତ୍ରରେ ମାର୍ଗ ପ୍ରଶସ୍ତ କରିପାରିଛି। କଳାମେଳାର ଇତିହାସ ସଂପର୍କରେ ସୂଚନା ଦେଇ ସେ କହିଲେ ଯେ ପୂର୍ବରୁ ପ୍ରତି ତିନି ବର୍ଷରେ ଥରେ ଲଳିତ କଳା ଏକାଡେମୀ ତ୍ରିନିବର୍ଷିଆ ଆନ୍ତର୍ଜାତିକ କଳା ଉତ୍ସବ ନାମରେ ଏହି କଳାମେଳା କେବଳ ଦିଲ୍ଲୀଠାରେ ଆୟୋଜିତ ହୋଇ ଆସୁଥିଲା। କିନ୍ତୁ ଏହି ମେଳା ପ୍ରତି କଳାକାରମାନଙ୍କ ଆଗ୍ରହ ବିଶେଷ ଭାବେ ବୃଦ୍ଧି ପାଇବା ଯୋଗୁ ଗତ ଦୁଇବର୍ଷ ହେଲା ଏହାକୁ ଦିଲ୍ଲୀ ବାହାରେ ଏକ ବାର୍ଷିକ ଉତ୍ସବର ରୂପ ଦିଆଗଲା। ଏହି କ୍ରମରେ ପ୍ରଥମେ ବମ୍ବେ ତା'ପରେ ମାଡ୍ରାସ ଏବଂ ତୃତୀୟ ବର୍ଷ ଏଠାରେ କଳାମେଳା ଆୟୋଜନ କରାଯାଇପାରିଛି।

ଲଳିତ କଳା ଏକାଡେମୀର ଉପାଧ୍ୟକ୍ଷ ଶ୍ରୀ ଆନନ୍ଦ ଦେବ କଳାମେଳା ଆୟୋଜନ ଅବସରରେ ଅତୀତର ସ୍ମୃତି ଚାରଣ କରି କେତୋଟି ମଜାଳିଆ ବିବରଣୀ ଉପସ୍ଥାପନ କରି କଳାକାରମାନଙ୍କ ମଧ୍ୟରେ ବେଶ୍ ହାସ୍ୟରୋଳ ସୃଷ୍ଟି କରି ପାରିଥିଲେ। ଏଠାରେ ଅବଶ୍ୟ ଉଲ୍ଲେଖଯୋଗ୍ୟ କି ଆମ ଦେଶର ଅନ୍ୟତମ ସଂସ୍କୃତି ସମ୍ପନ୍ନ ରାଜ୍ୟ କର୍ଣ୍ଣାଟକରେ ଏହି ଅଷ୍ଟମ କଳାମେଳା-୯୫ ଏକ ସର୍ବ-ବୃହତ ଆୟୋଜନ। ଏହାଛଡ଼ା କେନ୍ଦ୍ର ଲଳିତ କଳା ଏକାଡେମୀ ସ୍ଥାପନ ହେବାର ଏହା ଚାଳିଶିତମ ବର୍ଷ। ଏହି ପରିପ୍ରେକ୍ଷୀରେ ଏକାଡେମୀ ପକ୍ଷରୁ ପ୍ରାୟ ୧୫ ଲକ୍ଷ ଟଙ୍କା ବ୍ୟୟରେ ଆୟୋଜିତ ଏହି ମେଳାରେ ସବୁ ରାଜ୍ୟର ଲଳିତ କଳା ଏକାଡେମୀ, ସମସ୍ତ ଆଞ୍ଚଳିକ ସାଂସ୍କୃତିକ କେନ୍ଦ୍ର ତଥା ସବୁ ରାଜ୍ୟର ଅଗ୍ରଣୀ କଳା ଅନୁଷ୍ଠାନଗୁଡ଼ିକ ଅଂଶ ଗ୍ରହଣ କରିଛନ୍ତି। ସ୍ଥାନୀୟ ଜି.ପି.ରୋଡ଼ସ୍ଥିତ ରବୀନ୍ଦ୍ର କଳାକ୍ଷେତ୍ରର ପ୍ରାୟ ଆଠ ଏକର ପରିମିତ ପଡ଼ିଆରେ ସମୁଦାୟ ୨୧୦ଟି ଷ୍ଟଲ୍ ନିର୍ମାଣ କରି ଅଂଶ ଗ୍ରହଣ କରିଥିବା ଅନୁଷ୍ଠାନଗୁଡ଼ିକ ଯୋଗାଇ ଦିଆଯାଇଛି। ସାରା ଦେଶର ପ୍ରାୟ ଦୁଇ ହଜାରରୁ ଉର୍ଦ୍ଧ୍ୱ ପ୍ରବୀଣ ଓ ନବୀନ କଳାକାର ଏଠାରେ ସେମାନଙ୍କ କଳାସମ୍ଭାର ସହ ଉପସ୍ଥିତ ଅଛନ୍ତି। ଏହି ଆୟୋଜନ ପାଇଁ କ୍ୟାମେଲ୍ କମ୍ପାନୀ ପକ୍ଷରୁ ଏକାଡେମୀକୁ ଏକ ଲକ୍ଷ ଟଙ୍କା ଅନୁଦାନ ମିଳିଛି।

କଳାମେଳା ଉଦ୍‌ଘାଟନ ପୂର୍ବରୁ ଅପରାହ୍ନ ୩ଟାରେ ତିନିଟାନେଲ ସ୍ଥାନୀୟ କର୍ପୋରେସନ୍ ହଲ୍‌ଠାରୁ ଏକ ଶୋଭାଯାତ୍ରା ବାହାରିଥିଲା। କଳାକାରମାନଙ୍କ ଏହି ରଙ୍ଗମୟ ପତାକା ଶୋଭାଯାତ୍ରାକୁ କର୍ଣ୍ଣାଟକ ରାଜ୍ୟ ଲଳିତ କଳା ଏକାଡେମୀର ସଭାପତି ଶ୍ରୀ ନିବେ ସ୍ୱାମୀ ପତାକା ଦେଖାଇ ଉଦ୍‌ଘାଟନ କରିଥିଲେ। ନାଗେଶ୍ୱର, ପାଞ୍ଚଜନ୍ୟ, ଶଙ୍ଖନାଦ ତଥା ଢୋଲ-କରତାଳ ବାଦ୍ୟର ତାଳେ ତାଳେ କଳାକାରମାନଙ୍କ ବିଭୋର ନୃତ୍ୟ ସହିତ ଏହି ପତାକା ଶୋଭାଯାତ୍ରା ପ୍ରାୟ ଦୁଇ କି.ମି. ରାସ୍ତା ଅତିକ୍ରମ କରି ରବୀନ୍ଦ୍ର କଳାକ୍ଷେତ୍ରସ୍ଥିତ କଳାମେଳା ପଡ଼ିଆରେ ପହଞ୍ଚିଥିଲା। କଳାମେଳାର ଅନ୍ୟତମ ଉଲ୍ଲେଖନୀୟ ଦିଗ ହେଉଛି ଯେ, ଏହି ମେଳା ସହିତ ଦେଶର ତଥା ରାଜ୍ୟଗୁଡ଼ିକର ସଙ୍ଗୀତ ନାଟକ ଏକାଡେମୀ ଓ ଆଞ୍ଚଳିକ ସାଂସ୍କୃତିକ କେନ୍ଦ୍ର ଗୁଡ଼ିକର କାର୍ଯ୍ୟକ୍ରମ ଗୁଡ଼ିକୁ ସଂଶ୍ଳିଷ୍ଟ କରାଯାଇପାରିଛି। ପୂର୍ବରୁ ଏକାଡେମୀଗୁଡ଼ିକ ସେମାନଙ୍କ ମାଧ୍ୟମଗତ ପୃଥକ୍‌କରଣ ଯୋଗୁ ପରସ୍ପର ସହିତ ସଂପର୍କ ରଖୁ ନଥିଲେ। ଅନ୍ୟତମ ଅଗ୍ରଣୀ ଓଡ଼ିଆ ଚିତ୍ରଶିଳ୍ପୀ ଶ୍ରୀ ଦୀନନାଥ ପାଠୀ କେନ୍ଦ୍ର ଲଳିତ କଳା ଏକାଡେମୀର ସେକ୍ରେଟେରୀ ଦାୟିତ୍ୱ ଗ୍ରହଣ କରିବା ପରଠାରୁ ଏ ଦିଗରେ ନିଚର ନିରବଚ୍ଛିନ୍ନ ଉଦ୍ୟମ ଜାରି ରଖି ଏକାଡେମୀଗୁଡ଼ିକ ମଧ୍ୟରେ ପାରସ୍ପରିକ ସଂପର୍କ ବୃଦ୍ଧି କରିବାରେ ସଫଳ ହୋଇପାରିଛନ୍ତି।

କଳାମେଳା-୯୫, ଏଠାରେ ଆସନ୍ତା ୨୫ ତାରିଖ ପର୍ଯ୍ୟନ୍ତ ଚାଲୁ ରହିବ। ଏହି ସମୟ ମଧ୍ୟରେ ସାରା ଦେଶର ବିଭିନ୍ନ ସ୍ଥାନରୁ ଆସିଥିବା କଳାକାରମାନେ ସେମାନଙ୍କ ସୃଷ୍ଟି ସମ୍ଭାର ପ୍ରଦର୍ଶନ କରିବା ସହ ପାରସ୍ପରିକ ସଂପର୍କ ବୃଦ୍ଧି କରିପାରିବେ।

ଶେଷ ଦିନ କଳାର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିବା ସର୍ବଶ୍ରୀ କେ.କେ. ହେବର, ବି.ସି. ସନ୍ୟାଲ ଓ ଦେବୀପ୍ର... ପଟ୍ଟନାୟକ ପ୍ରମୁଖ ୧୬ ଜଣ ବିଶେଷଜ୍ଞଙ୍କୁ ସମ୍ମାନିତ କ... କଳାମେଳା ଆନୁଷ୍ଠା... ଉଦ୍‌ଯାପିତ ହେବ।

Digitized by srujanika@gmail.com

ଧରିତ୍ରୀ ୭
୫ । ୮ । ୧୯୯୯ ଗୁରୁବାର

# ମୁଁ ଯେତେବେଳେ ଯୁବକ ଥିଲି
# ଶିକ୍ଷକ ହୋଇପାରିଲିନି; ଶିଳ୍ପୀ ହେଲି

(ପ୍ରଖ୍ୟାତ ଚିତ୍ରଶିଳ୍ପୀ ଦୀନନାଥ ପାଠୀଙ୍କ ଯୌବନର ସ୍ମୃତି)

ମାଟ୍ରିକ୍ ପାଶ କଲା ପରେ ମୋ ଧାରଣା ଥିଲା ଯେପରି ହେଲେ ଚାକିରିଟିଏ ମିଳିଯିବ । କିଛି ନ ହେଲେ ବି ଗାଁ ସ୍କୁଲରେ ମାଷ୍ଟର ଚାକିରିଟେ ଥୁଆ । ଆମ ପାଖିରେ ମୋର ଜଣେ ସାଙ୍ଗ ଥିଲା । ସେ ସେହିବର୍ଷ ମାଟ୍ରିକ୍ ପରୀକ୍ଷାରେ ଫେଲ୍ ହୋଇଯାଇଥାଏ । ଆମେ ଦି'ଜଣ ଏବଂ ଆଉ ଦୁଇଚାରି ଜଣ ସାଙ୍ଗ ନିମ୍ନ ପ୍ରାଥମିକ ସ୍କୁଲରେ ମାଷ୍ଟର ଚାକିରି ପାଇଁ ଦରଖାସ୍ତ କରିଥାଉ । ସମସ୍ତଙ୍କଠାରୁ ପରୀକ୍ଷାରେ ମୋର ଅଧିକ ନମ୍ବରଥିଲା । କିନ୍ତୁ ମାଟ୍ରିକ୍ ଫେଲ ପିଲାଟି ଚାକିରି ପାଇଗଲା । ଏହି ଘଟଣାଟି ଶିଳ୍ପୀ ହେବା ପାଇଁ ମୋତେ ଖୋରାକ ଯୋଗାଇ ଦେଲା ।

ଆଉ ଏକ ଘଟଣା ସେତେବେଳକୁ ଖଲ୍ଲିକୋଟ ଚିତ୍ରକଳା ମହାବିଦ୍ୟାଳୟରେ ଦ୍ୱିତୀୟବର୍ଷ ଛାତ୍ର ଥିଲି । ମୋତେ ଆର୍ଥିକ ସାହାଯ୍ୟ ଦେବା ଉଦ୍ଦେଶ୍ୟରେ ଅଧ୍ୟକ୍ଷ ଶରତ ଚନ୍ଦ୍ର ଦେବ ମୋ ପାଇଁ ଗୋଟିଏ ପୋଟ୍ରେଟ୍ ଚିତ୍ରର ଅର୍ଡର ଯୋଗାଡ କରିଦେଇଥିଲେ । ଗଞ୍ଜାମ ଛତ୍ରପୁରର ରାଜା ମୋ ଅଧ୍ୟକ୍ଷଙ୍କ ସମ୍ପର୍କୀୟ ଥିଲେ । ଟିକାୟତଙ୍କ ଫୁଲ ଫିଗରର ତଇଲ ଚିତ୍ର ବନାଉଥିବା ଭଙ୍ଗିର ଚିତ୍ରଟିଏର ଫଟୋ ଦେଖି ତଇଳରଙ୍ଗରେ କରିବା ବରାଦ ଥିଲା । ଟିକାୟତ ପିନ୍ଧିଥିବା ଲାଲଟି (ପଞ୍ଜାବୀ) ତଳେ ସାଉଁଳାନିଆନର ପଟି ଦି'ଟା ଦେଖାଯିବ । ଲାଲଟି ଉପରେ ବାହୁରେ ଓ ବୋତାମ ଖୋଲା ଗ୍ରିଡପଟର ହାତ ସିଲେଇ ଓ ଫୁଲକାମ ପରିଷ୍କାର ଯେମିତି ଦିଶିବ ଓ ତୁଳି ତଇଳର ଚମତ୍କାରିତା ଯାକ ଚିତ୍ରରେ ଫୁଟି ବାହାରିବ । ମୁଁ ଏ ସବୁ କଥା ପ୍ରତି ସଚେତନ ହୋଇ ଫୁଲସ୍କେପ୍ ସାଇଜର ଚିତ୍ରଟିଏ ଆଙ୍କିଲି । ତଇଳରଙ୍ଗରେ ଏଭଳି ପୋଟ୍ରେଟ୍ ଆଙ୍କିବା ନିହାତି କଷ୍ଟକର ବ୍ୟାପାର । ଅଧ୍ୟକ୍ଷଙ୍କୁ ଦେଖେଇଲି । ସେ ଖୁସି ହୋଇଗଲେ । ମୋ ହାତରେ ଚିଠି ଖଣ୍ଡେ ଦେଇ ପୋଟ୍ରେଟ୍ ଧରି ଛତ୍ରପୁର ଯିବାକୁ କହିଲେ । ତାଙ୍କଠାରୁ ଗାଡି ଭଡା ନେଇ ଛତ୍ରପୁର ରାଜାଙ୍କ ଘରେ ଯାଇ ପହଞ୍ଚିଲି । ରାଜାଙ୍କ ଡାଣ୍ଡ କବାଟ ପାଖରେ ଠକ୍ ଠକ୍ କଲି । ମୁଁ ଆସିବା ଉଦ୍ଦେଶ୍ୟ ଜଣେଇଲି । ମୋ ହାତରେ ଟିକାୟତଙ୍କ



ପୋଟ୍ରେଟ୍‌ଟି ଦେଖି ରଜାଘର ଲୋକେ ଏକରକମ ମୋ ହାତରୁ ଝାମ୍ପି ନେଇଗଲେ । ଘରଟା ଯାକର ଲୋକ ବେଢ଼ି ଗଲେ । ଓଃ ମୋର କି ପ୍ରଶଂସା ଯେମିତି ମୁଁ ଟିକାୟତଙ୍କ ଫଟୋଟି ଅବିକଳ ଆଙ୍କି ଦେଇଛି । ହଉ କହି ମୋତେ ଦୁଆର ମୁହଁକୁ ବାଟେଇ ଦେବାକୁ ଆସିଲେ । ମୁଁ ଅଧ୍ୟକ୍ଷଙ୍କ ଚିଠିଟି ତାଙ୍କ ହାତକୁ ବଢେଇ ଦେଲି । ହେଲା କହି ମୋତେ ଘର ଦୁଆରେ ବସେଇ ଦେଇ କବାଟ ବନ୍ଦ କରିଦେଲେ । ସେମାନେ ଖାଇ ପିଇ ଶୋଇଗଲେ । ସେମାନେ ହୁଏ ତ ଭାବିଥିଲେ ମୁଁ ପଳେଇ ଯାଇଥିବି । କବାଟ ଓପର ଓଳି ଖୋଲିଲା ବେଳକୁ ମୁଁ ଭୋକରେ ସେମାନଙ୍କ ଉତ୍ତରକୁ ଅପେକ୍ଷା କରିଛି । ମୋତେ ଦେଖି କେଇ ସେମାନଙ୍କ ଅଭିମତ ବଦଳିଗଲା । ଚିତ୍ରଟି ଫେରେଇ ଆଣି ମୋତେ କହିଲେ, କାନ ପାଖରେ, ଆଖି ତଳକୁ, ବାଳ ଉପରେ ଅଡୁଆ ଲାଗୁଛି । ମୁହଁଟା କେମିତି ମିଶୁନି । ପଞ୍ଜାବୀର ଫୁଲ ଯାକ ତେଢା ଲାଗୁଛି । ତଇଲ ଟିକିଏ ଖାତବତ ଦିଶୁଛି । ଫେରେଇ ନେଇଯାଅ । ଏହା ଶୁଣି 'ମୋର ଫାଙ୍କାସି ଉଡିଗଲା । ପେଟରେ ଭୋକ । ପୁଣି ଖଲିକୋଟ ଫେରିବି କେମିତି । ପାଖରେ ବସଭଡା ପାଇଁ ପଇସା ବି ନାହିଁ ।

Digitized by srujanika@gmail.com

୩୦।୧୨।୧୯୯୯ ଗୁରୁବାର

ସମୟ

# ସହସ୍ରାବ୍ଦୀର ଆବାହନରେ ୱାର୍ ଚିତ୍ର ସଂଗୋଷ୍ଠୀ



**ଭୁବନେଶ୍ୱର :** ଓଡ଼ିଶାର ଅଗ୍ରଣୀ ଶିଳ୍ପୀ ସଂସ୍ଥା ୱାର୍କିଂ ଆର୍ଟିଷ୍ଟସ୍ ଆସୋସିଏସନ୍ (ୱା) ତରଫରୁ ଆଗାମୀ ଶତାବ୍ଦୀକୁ ସ୍ୱାଗତ କରିବା ପରିପ୍ରେକ୍ଷୀରେ ଗତ ଡିସେମ୍ବର ୨୫, ୨୬ ଦୁଇଦିନ ବ୍ୟାପୀ ଭୁବନେଶ୍ୱର ସୂଚନା ଭବନ ଠାରେ 'ଵାଇଦିନ ଏଣ୍ଡ ବିୟଣ୍ଡ' ନାମରେ ଏକ ଚିତ୍ରଚକ୍ରର ଆୟୋଜନ କରାଯାଇଥିଲା । ଏଥିରେ ବରିଷ୍ଠ ଓ ଯୁବ ଚିତ୍ରଶିଳ୍ପୀ ଏବଂ କବିମାନେ ଏ ସହସ୍ରାବ୍ଦୀର ଚିତ୍ର, ସାହିତ୍ୟ, କଳାର ସ୍ୱରୂପକୁ ଉତ୍ତର ଆଧୁନିକବାଦରେ ସାମିଲ୍ କରିବା ସହ ଏକବିଂଶ ଶତାବ୍ଦୀରେ ପ୍ରବାସୀ ଓଡ଼ିଶାର ଶିଳ୍ପୀମାନଙ୍କ ଆଲେଖ୍ୟଗୁଡ଼ିକ ସ୍ଲାଇଡ୍ ମାଧ୍ୟମରେ ଉପସ୍ଥାପନା କରିଥିଲେ । ଏଥିରେ ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ରହୁଥିବା ଶତାଧିକ ଶିଳ୍ପୀ ଅଂଶଗ୍ରହଣ କରିଥିଲେ । ୱାର୍କିଂ ଆର୍ଟିଷ୍ଟସ୍ ଆସୋସିଏସନ୍ ତରଫରୁ ଭାରତର ପ୍ରଖ୍ୟାତ ଚିତ୍ରଶିଳ୍ପୀ, କଳା, ଐତିହାସିକ ଡଃ ଦୀନନାଥ ପାଠୀ ଏହି ଆଲୋଚନାଚକ୍ରକୁ ସଂଯୋଜନା କରିଥିଲେ । ୨୫ ତାରିଖ ଆଲୋଚନାଚକ୍ରର ଆରମ୍ଭରେ ଯୁବକଳାକାର ଶୋଭନ କୁମାରଙ୍କ ପରିକଳ୍ପନାରେ ସମସ୍ତ କଳାକାର ଓଡ଼ିଶାରେ ବିତିଯାଇଥିବା ପ୍ରଳୟଙ୍କରୀ ବାତ୍ୟାର ଧ୍ୱଂସଲୀଳାକୁ ସ୍ମରଣ କରି ଏକ ଆର୍ଟ ପରଫରମାନ୍ସ ପ୍ରଦର୍ଶନ କରାଯାଇଥିଲା । ଏଥିରେ ଯୁବ କବି ସୌଭାଗ୍ୟ ପାଠୀ ନିଜର କବିତା 'ଟାଇମ୍' ଆବୃତ୍ତି କରିଥିଲେ । ପରେ ପରେ ଗଜେନ୍ଦ୍ର ନନ୍ଦଙ୍କ ଦ୍ୱାରା ମୃଦଙ୍ଗ ବାଦନରେ ନାଦବ୍ରହ୍ମ ଏବଂ ଡକ୍ଟର ପ୍ରଫୁଲ୍ଲ କୁମାର ମିଶ୍ର ବିଷ୍ଣୁଧର୍ମୋତ୍ତର ପୁରାଣର ଚିତ୍ରାଧ୍ୟାୟ ଆବୃତ୍ତି କରିଥିଲେ । ସଂସ୍ଥାର ସଭାପତି **ଶିଳ୍ପୀ ଏନ୍. ଚନ୍ଦ୍ରଶେଖର ରାଓ, ସଚିବ ଶିଳ୍ପୀ ଡି.ଏନ୍. ରାଓ କାର୍ଯ୍ୟକ୍ରମରେ 'ୱା' ତିରିଶ ବର୍ଷର ଅଗ୍ରଗତି କଥା କହିଥିଲେ । ଶିଳ୍ପୀ ରାମହରୀ ଜେନା ଆର୍ଟ ସଂଗୋଷ୍ଠୀର ଆରମ୍ଭ କରିଥିଲେ ।**

**୨୬ ତାରିଖ ଅଧିବେଶନ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ପୌରୋହିତ୍ୟରେ ଆରମ୍ଭ ହୋଇଥିଲା । ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି "Beyond post modernism" ବିଷୟରେ ସୁଚିନ୍ତିତ ସାରଗର୍ଭକ ଭାଷଣ ଦେଇଥିଲେ । ଅପରାହ୍ନ ଅଧିବେଶନ କବି ପ୍ରଫେସର ସୌରୀନ୍ଦ୍ର ବାରିକଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ହୋଇଥିଲା ।**

Digitized by srujanika@gmail.com

ଧରିତ୍ରୀ ୭

# ଚିତ୍ରଶିଳ୍ପୀ ଦୀନନାଥଙ୍କ 'ଶ୍ଳୋକଛନ୍ଦ'ର ଲୋକାର୍ପଣ



ଚିତ୍ରଶିଳ୍ପୀ ଡଃ ଦୀନନାଥ ପାଠୀଙ୍କ 'ଶ୍ଳୋକଛନ୍ଦ' ପୁସ୍ତକକୁ କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାପତି ରମାକାନ୍ତ ରଥ ଉନ୍ମୋଚନ କରୁଛନ୍ତି । (ଫଟୋ: ଧରିତ୍ରୀ)

ଭୁବନେଶ୍ୱର, ୨ ୯।୪ (ବ୍ୟୁରୋ) - ଚିତ୍ରଶିଳ୍ପୀ ଦିନନାଥ ପାଠୀଙ୍କ ଚିତ୍ରୋପନ୍ୟାସ 'ଶ୍ଳୋକଛନ୍ଦ'ର ଲୋକାର୍ପଣ ଓ ଧ୍ୱନିରୂପକ କାର୍ଯ୍ୟକ୍ରମ ଆଜି ସନ୍ଧ୍ୟାରେ ସ୍ଥାନୀୟ ଇଡ଼େ... ରେ ଅନୁଷ୍ଠିତ ହୋଇଯାଇଛି । କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାପତି ରମାକାନ୍ତ ରଥ ଗ୍ରନ୍ଥଟିକୁ ଉନ୍ମୋଚନ କରିଥିଲେ । ବିଶିଷ୍ଟ ଅତିଥି ଭାବେ ଯୋଗଦେଇ କବି ତଥା ପ୍ରଶାସକ ରାଜେନ୍ଦ୍ର କିଶୋର ପଣ୍ଡା କହିଥିଲେ ଯେ, ଭାଷାଠାରୁ ଚିତ୍ରକଳା ଅନେକ କ୍ଷେତ୍ରରେ ବ୍ୟାପକ । ଭାଷାରେ ସୀମା ରହିଛି । ମାତ୍ର ଚିତ୍ରକଳା ସେ ସୀମା ଅତିକ୍ରମ କରେ । ଚିତ୍ର ସାହିତ୍ୟ ଏକାଧାରରେ ସମନ୍ୱିତ । ଡଃ ପାଠୀ ଯେଉଁ କାମରେ ମନ ଦିଅନ୍ତି ଓ ଆତ୍ମା ... ଅନ୍ତି ତା' ଭିତରେ କଳା ନିଜସ୍ୱ ଧ୍ୱନିରେ ନିଜସ୍ୱ ଢଙ୍ଗରେ ପ୍ରତିଧ୍ୱନିତ ହୋଇଥାଏ । ଏହି ଗ୍ରନ୍ଥଟିରେ ତାଙ୍କର ଭାଷା ଶୈଳୀ ଖୁବ୍ ତୀକ୍ଷଣ ଭାବରେ ଶାଣିତ ଓ କାବ୍ୟିକ ହୋଇଛି ବୋଲି ସେ କହିଥିଲେ । ପ୍ରାରମ୍ଭରେ ଚିକିଟିଗଡର ସଂଗୀତଶିଳ୍ପୀ ରଙ୍ଗନାଥ ପାଣିଗ୍ରାହୀ ମଙ୍ଗଳାଚରଣ ଗାନ କରିଥିଲେ । ଉନ୍ମୋଚିତ ଗ୍ରନ୍ଥ ଶ୍ଳୋକାଛନ୍ଦ ସଂପର୍କରେ ସୂଚନା ଦେଇଥିଲେ ଶିବରାମ ପାତ୍ର । ଓ୍ୱାଚିତ୍ର ସଂଗୋଷ୍ଠୀ ଓ ଅବନ୍ତୀ ଆନୁକୁଲ୍ୟରେ ଅନୁଷ୍ଠିତ ଏହି ଉତ୍ସବରେ ଧ୍ୱନି ରୂପକ ପରିବେଷଣ କରାଯାଇଥିଲା । ଅସୀମ ବସୁଙ୍କ ପରିକଳ୍ପନା ଓ ନିର୍ଦ୍ଦେଶନାରେ ଗୌରୀ ଶତପଥୀ, ଭାସ୍ୱତୀ ବସୁ, ବିନାୟକ ମିଶ୍ର, ରାମହରି ଜେନା ଓ ଦୀନନାଥ ପାଠୀ ଅଂଶଗ୍ରହଣ କରିଥିଲେ । ଶ୍ଳୋକଛନ୍ଦ ଗ୍ରନ୍ଥଟି ଓଡିଶାର ଆଧୁନିକ ଚିତ୍ରକଳାର କର୍ଣ୍ଣଧାର ଶିଳ୍ପାଚାର୍ଯ୍ୟ ଶରତଚନ୍ଦ୍ର ଦେବଙ୍କ ରୂପ ସୃଷ୍ଟି ଶ୍ଳୋକଛନ୍ଦର ବର୍ଣ୍ଣନାଭାବରେ ରଚିତ ହୋଇଛି । ଗ୍ରନ୍ଥଟି ଡଃ ଦୀନନାଥଙ୍କ ତୃତୀୟ ଚିତ୍ର ଉପନ୍ୟାସ ।

Digitized by srujanika@gmail.com




J P Das (2nd from right) releases the book 'Oviga' by Dinanath Pathy (Extreme Left) in Bhubaneswar on Sunday - Expressphoto

# Oviga, a Book of Poems, Painting, Released

**Express News Service**

**Bhubaneswar**: A book by Dinanath Pathy, which is full of narrations, sketches, poems and paintings, was released on Sunday. It has been named 'Oviga, Where Time Stands Still.'

Eminent poet, playwright and fiction writer of Odisha, JP Das released the book in the presence of the noted Litterateur Sitakant Mahapatra. Dinanath, who has written this book in honour of Eberhard Fischer, is a prominent art historian and a critic. He started his life with painting but gradually took to writing also. Calling himself a professional 'book releaser', Das said Dinanath is an important person in the field of art and culture of Odisha today.

Sitakant Mahapatra explained how Dinanath spent time in a small place called Oviga in Switzerland. Dinanath has a studio in Oviga where he frequents every year and there he came up with the inspiration for the book "For Me a Name Always Means a Person," said Sitakant. Similarly, in this book, Oviga slowly takes the role of a person as the story develops. The book has been written in a style which is very intimate. Dinanath a personality Odisha is proud of, he said.

Dinanath said the book is not strictly a literary creation, rather it is an evolution of paintings and drawings.

"It is very difficult to indulge in creativity and be a historian at the same time, but I have tried to achieve that a bit through the book," said Dinanath. Research is a detective work over the years, he said adding eventually art will live through history itself.

Digitized by srujanika@gmail.com

## ପୁସ୍ତକ ସମୀକ୍ଷା

# ପୁନର୍ନବା

**ଲେଖକ : ଦିନନାଥ ପାଠୀ**
**ପ୍ରକାଶକ : ଅବନ୍ତୀ, ଭୀମଟାଙ୍ଗୀ, ଭୁବନେଶ୍ୱର**
**ମୂଲ୍ୟ : ଦୁଇଶହ ଟଙ୍କା**




ପୁନର୍ନବା ଏକ ଅନନ୍ତ ମହାସ୍ରୋତ, ଅବ୍ୟକ୍ତ କାଳ ଓ ସ୍ଥିତିର ପ୍ରବାହରେ ଭାସି ଭାସି ଆସିଛି । କେତେବେଳେ ଦୃଶ୍ୟଦିଏ ସ୍ଥୂଳ ଶରୀରରେ, ଆଉ କେତେବେଳେ ଦୃଷ୍ଟିଶକ୍ତି ଓ ଇନ୍ଦ୍ରିୟାନୁଭୂତି ବାହାରେ । ଏହି ପ୍ରକ୍ରିୟାରେ କୃମା ଅବ୍ୟକ୍ତ ରହିଯାଏ । ପୁନର୍ନବା ମଣିଷ ଆଗରେ ପରଂବ୍ରହ୍ମର ପରିପ୍ରକାଶ । ରୂପ ତ ଲୁଚି ରହିଥାଏ ଦୃଶ୍ୟ ଓ ଅଦୃଶ୍ୟମାନ ସତ୍ତା ଭିତରେ, ତାକୁ ଖୋଜିବାକୁ ପଡ଼େ, ଆବିଷ୍କାର କରିବାକୁ ପଡ଼େ । ଏହା ହିଁ ସୃଷ୍ଟି । ନଶ୍ୱର ହେବା ସୃଷ୍ଟିର ଏକ ପ୍ରକ୍ରିୟା । ଏହି ପ୍ରକ୍ରିୟାର ଅନ୍ୟ ଏକ ଉନ୍ମୀଳନ ହେଲା ପୁନଃନ୍ୟାସ । ରକ୍ତ ମାଂସ ଦେହଧାରୀ ଲବଙ୍ଗଲତା ଅଦେହୀ ହୋଇଯିବା ପରେ ରାଧାରାଣୀ ଓ ଲଳିତା ରୂପରେ ନ୍ୟାସ ହୋଇଛନ୍ତି । ଆଉ ନୀଳାମ୍ବର ମିଶ୍ର ରୂପପରେ ରୂପର ସମ୍ଭାର ଖଞ୍ଜିଚାଲିଛନ୍ତି ଅପୂର୍ବ ସ୍ୱର୍ଣ୍ଣ କାତରତା ସହ ମଞ୍ଚରେ ଦର୍ଶକମାନଙ୍କ ପାଇଁ । ତାଙ୍କ ହୃଦୟର ଅବ୍ୟକ୍ତ ସ୍ପନ୍ଦନ, ଉଷ୍ମତାର ଗଭୀରତା କିଏବା ହୃଦୟଙ୍ଗମ କରିପାରିବ ? ତଥାପି ସୃଷ୍ଟି ଭିତରେ ଲୁଚି ରହିଥିବା ସ୍ରଷ୍ଟା ହିଁ ତା'ର ଆତ୍ମା । ଅବଲୀଳା କ୍ରମେ ନିତ୍ୟାନନ୍ଦ ଓ ଗୌରୀ ଅଦେହୀ ଓ ଚେତନାମୟ ହୋଇଯାଇଛନ୍ତି । ସେ ଚେତନାର ଅଗ୍ନି ସ୍ଫୁଲିଙ୍ଗ ଯାହାକୁ ସ୍ପର୍ଶ କରିଛି ସେ ମଧ୍ୟ ଉତ୍ସର୍ଗୀକୃତ ଆତ୍ମାର ତୃଷ୍ଣାନେଇ ତଲ୍ଲୀନଭାବରେ ଉଦ୍‌ଭ୍ରାନ୍ତ, ଯେମିତି ହୋଇଥିଲେ ମାଙ୍କେଳିମଠର ମହନ୍ତ ମହାରାଜ । ନାରୀ, ପୁରୁଷ, ସୃଷ୍ଟି ଓ ସମାଜ ସବୁ ଏକାକାର ହୋଇଛି ଚିତ୍‌ବ୍ରହ୍ମର ନୀରବ ବଂଶୀ ଧ୍ୱନିର ଅନନ୍ତ ସ୍ୱରରେ । କୃଷ୍ଣ ଚେତନାର ସେଇ ଅବ୍ୟକ୍ତ ଧ୍ୱନି, ଅନନ୍ତ ନୀଳିମାରେ ଲୀନ ହୋଇଯାଇଛନ୍ତି ଆହ୍ଲାଦିନୀ ଶକ୍ତି ସ୍ୱରୂପା ଗୌରୀ । କୃଷ୍ଣ ହିଁ ପୂର୍ଣ୍ଣବ୍ରହ୍ମ ସେ ହିଁ ଅବ୍ୟକ୍ତ ମାଧୁରୀ ଓ ପୂର୍ଣ୍ଣ । ସେହି ହିଁ ବିନ୍ଦୁ ଓ ବୃତ୍ତ, ଅଚିନ୍ତ୍ୟମୟ ।

ଲେଖକଙ୍କର ଅନନ୍ୟ ଓ ଅପୂର୍ବ କୃତି 'ପୁନର୍ନବା' । ଚେତନାର ଅତ୍ୟନ୍ତ ଭାବଧାରାରେ ପ୍ଲାବିତ ରଚନାର ପ୍ରତ୍ୟେକଟି ଶବ୍ଦ, ବର୍ଣ୍ଣନାର ଶୈଳୀ, ଏତେ ନିବିଡ଼ ଯେ ମନେହୁଏ ଯେମିତି ପାଠକ ସେଥିରେ ଆଉଟି ହୋଇ ଅସ୍ତିତ୍ୱ ହଜେଇ ବସିବ । ରଚନାଟିର ବିଷୟ ବସ୍ତୁରେ ଜୟଦେବ, ସାରଳା ଦାସ, ଜଗନ୍ନାଥ ଦାସଙ୍କର ଅନ୍ତରଙ୍ଗ ନିଃଶ୍ୱାସ ପ୍ରଶ୍ୱାସ ଗୁନ୍ଥିହୋଇ ଅପୂର୍ବ ଜୟମାଲ୍ୟ ସୃଷ୍ଟି କରିଛି । ଅନ୍ୟ କୌଣସି ପ୍ରାନ୍ତୀୟ ଭାଷା ଓ ଭାବର ଅନୁକରଣ ବା ଅବତାରଣା ଏ ଲେଖାରେ ନାହିଁ । ଏକବିଂଶ ଶତାବ୍ଦୀକୁ ଏହି ସାହିତ୍ୟକୃତି ଏକ ଅନନ୍ୟ ଉପହାର । ବହୁ ଅବଲୁପ୍ତ ଭାଷା ପୁଣି ପ୍ରାଣପାଇ ଆହ୍ଲାଦିତ ହୋଇଛନ୍ତି ଲେଖକଙ୍କର କଲମ ମୁନରେ । ଓଡ଼ିଆ କାବ୍ୟ ସାହିତ୍ୟ ପାଇଁ ଶ୍ରୀପାଠୀଙ୍କର ଏହା ଏକ ଅନବଦ୍ୟ ଅବଦାନ । ଜଣେ କୃତୀ କଳାକାର ଭାବେ ପୁନର୍ନବାର ଉଚ୍ଚାରଣ ହୋଇଛି ପୁସ୍ତକର ଆବରଣରେ ଥିବା କଳାକୃତିର ଚିତ୍ର ମାଧ୍ୟମରେ । ଅନନ୍ତ, ହସ୍ତପଦହୀନ, ଆକାର ଶୂନ୍ୟ ନିରାଧାର । ଏହି ପୂର୍ଣ୍ଣତା କେବଳ ଅନୁଭବ ସାପେକ୍ଷ । ପୁସ୍ତକର ବନ୍ଧେଇ, ପରିଷ୍କାର ଓ ନିର୍ଭୁଲ ଛାପା ପରିପାଟୀ ସର୍ବୋପରି ରେଖାଚିତ୍ରରେ ସଜ୍ଜିତ ଅଙ୍ଗସଜ୍ଜାର ବାସ୍ତବିକ ମନଲୋଭା । କଳାକାରର ପ୍ରାଣ ନେଇ ଶ୍ରୀପାଠୀ ନିଜେ ନିଜକୁ ହଜେଇ ଦେଇ ପୂର୍ଣ୍ଣ ହୋଇଯାଇଛନ୍ତି । ପ୍ରକାଶକ ଅବନ୍ତୀ, ଲୋକ ଲୋଚନକୁ ଏଇ ରୂପଚର୍ଯ୍ୟା ଆଣିପାରିଥିବାରୁ ଅସଂଖ୍ୟ ସମ୍ମାନର ଅଧିକାରୀ । ଲେଖକଙ୍କର ଲେଖନୀ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ପୁଷ୍ଟିତ କରି କୀର୍ତ୍ତିମାନ ରହୁ ଏହାହିଁ ଆମର ଅନ୍ତରଙ୍ଗ କାମନା ।



Digitized by srujanika@gmail.com

## ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଜାତୀୟ ଆଲୋଚନାଚକ୍ର

# 'ପରମ୍ପରାର ସୁରକ୍ଷା ଆମ ସମସ୍ତଙ୍କ କର୍ତ୍ତବ୍ୟ ହେବା ଉଚିତ'



ବ୍ରହ୍ମପୁର, ୨୪।୩(ବ୍ୟୁରୋ)-ଦକ୍ଷିଣ ଓଡ଼ିଶାର କଳା ଓ ସଂସ୍କୃତି ସମଗ୍ର ବିଶ୍ୱରେ ଅନନ୍ୟ ଓ ଅସାଧାରଣ। ସମଗ୍ର ପୃଥିବୀରେ ଉଦାରୀକରଣ ନୀତି ପରିପ୍ରେକ୍ଷୀରେ ପରମ୍ପରା ଏବଂ ପ୍ରଦର୍ଶନଶୀଳ କଳା ଓ ସଂସ୍କୃତି ବିଲୟପ୍ରାୟ ହେଉଥିବାରୁ ଏହାର ସୁରକ୍ଷା ଆମ ସମସ୍ତଙ୍କର ଜାତୀୟ କର୍ତ୍ତବ୍ୟ ବୋଲି ଏଠାରେ ଅନୁଷ୍ଠିତ ଜାତୀୟ ଆଲୋଚନାଚକ୍ରରେ ମତପ୍ରକାଶ ପାଇଛି।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗ ପକ୍ଷରୁ ଆୟୋଜିତ ଏହି ଜାତୀୟ ଆଲୋଚନାଚକ୍ରରେ ମୁଖ୍ୟ ଅତିଥିଭାବେ ଯୋଗଦେଇ ବିଶିଷ୍ଟ ଗବେଷକ ଓ ଚିତ୍ରଶିଳ୍ପୀ ଡ. ଦିନନାଥ ପାଠୀ ବିଶ୍ୱବିଦ୍ୟାଳୟର ଅଭିନବ ଉଦ୍ୟମ ଏହି ପରମ୍ପରାର ସୁରକ୍ଷା ଦିଗରେ ନେଇ ବୋଲି ମତ ଦେଇଥିଲେ। ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର ସଂଘମିତ୍ରା ମିଶ୍ର ଏଥିରେ ମୁଖ୍ୟବକ୍ତାଭାବେ ଯୋଗଦେଇ ଦକ୍ଷିଣ ଓଡ଼ିଶାର ଲୋକକଳା, ନାଟକ ଓ ଚିତ୍ରକଳା କିପରି ସମଗ୍ର ବିଶ୍ୱବାସୀଙ୍କୁ ଆକର୍ଷିତ ଓ ବିସ୍ମୟାଭିଭୂତ କରିପାରିଛି ତାହା ବର୍ଣ୍ଣନା କରିଥିଲେ। ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ପରିଷଦର ଅଧ୍ୟକ୍ଷ ପ୍ରଫେସର ନିଶାକାନ୍ତି ତ୍ରିପାଠୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଆଲୋଚନାଚକ୍ରକୁ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଜୟନ୍ତ କୁମାର ମହାପାତ୍ର ଉଦ୍‌ଘାଟନ କରି ପରମ୍ପରାର ସୁରକ୍ଷା ଆମର ଜାତୀୟ କର୍ତ୍ତବ୍ୟ ବୋଲି ମତ ଦେଇଥିଲେ।

ପ୍ରାରମ୍ଭରେ ବିଭାଗର ବରିଷ୍ଠ ପ୍ରଫେସର ଓ [illegible] ସଂଯୋଜକ ପ୍ରଫେସର [illegible] ପଣ୍ଡା ସ୍ୱାଗତ ଅଭିଭାଷଣ ଦେବା ସହିତ ଏହାର ଆଭିମୁଖ୍ୟ ସମ୍ପର୍କରେ ସୂଚନା ଦେଇଥିଲେ। ଉତ୍କଳର [illegible] ତଥା ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ଅତିଥି ପରିଚୟ ପ୍ରଦାନ କରିଥିଲେ। [illegible] ଦେଇଥିଲେ। ଆଲୋଚନାଚକ୍ରର [illegible] ବିଭାଗ ମୁଖ୍ୟ [illegible] ସଦାନନ୍ଦ ନାୟକ, କ୍ୟୁରେଟର ଡ. ରାଧାଗୋବିନ୍ଦ ପଣ୍ଡା ସଂଯୋଜନା କରିଥିଲେ। ଏଥିରେ ଓଡ଼ିଶା ସମେତ ଭାରତ ବର୍ଷର ବିଭିନ୍ନ ପ୍ରାନ୍ତରୁ ବହୁ ଖ୍ୟାତନାମା ଆଲୋଚକ, ଗବେଷକ ଓ କଳାକାର ଯୋଗ ଦେଇଥିଲେ। କାର୍ଯ୍ୟକ୍ରମ ଆୟୋଜନରେ ଗବେଷକ ମନୋରଞ୍ଜନ ବିଶୋୟୀ, ସୁଧାଂଶୁଶେଖର ଦାସ, [illegible] ମାଝୀ ଓ ଛାତ୍ରଛାତ୍ରୀ ସହଯୋଗ କରିଥିଲେ।

## ଚିତ୍ରକର-ଲେଖକ ଦିନନାଥ ପାଠୀଙ୍କ ଆତ୍ମଜୀବନୀ

# 'ଦିଗପହଣ୍ଡି ଡ୍ରଇଁ ମାଷ୍ଟ୍ରେ' ଲୋକାର୍ପିତ



ଭୁବନେଶ୍ୱର, (ନି.ପ୍ର): ଗାଁର ଚିତ୍ର-ଚରିତ୍ର, ଗାଁ ମାଟିର ବାସ୍ନା, ସଂସ୍କୃତି ଓ ପରମ୍ପରା, ଶିକ୍ଷା ପରିବେଶ, ମୂଲ୍ୟବୋଧ ଓ ଜୀବନଶୈଳୀ ଯେପରି ପ୍ରାଚୁର୍ଯ୍ୟ ଓ ସ୍ୱଚ୍ଛନ୍ଦତା ଥିଲା ତାହା ଦିନ କେତେଟାରେ ବଦଳି ଯାଇଛି। ସେଦିନ ଗାଁ ମାଟିର ଭାଇଚାରା, କଳା, ସଂସ୍କୃତି, ଲୋକନୃତ୍ୟର ଶୈଳୀ, ପାରମ୍ପରିକ ଲୋକକଳା, ସଂଗୀତର ମୂର୍ଚ୍ଛନା ଜୀବନ୍ତ ଭାବ ଓ ଭାବନାରେ ସହଜ ଛାପ ତା'ର ମୌଳିକତାରେ ଆଣିଦେଇଛି ସ୍ୱାଭାବିକତା। ଦିଗପହଣ୍ଡିରେ ଜନ୍ମନେଇଥିବା ଓଡ଼ିଶାର ଜଣାଶୁଣା ଚିତ୍ରକର ତଥା ଲେଖକ ଡା. ଦିନନାଥ ପାଠୀଙ୍କ ଆତ୍ମଜୀବନୀ ମୂଳକ ଲେଖା 'ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ' ପୁସ୍ତକରେ ଗାଁ ମାଟିର ପ୍ରାଚୁର୍ଯ୍ୟତା ଓ ଜନ୍ମଭୂମି ସ୍ଥାନ ପାଇଛି। ପ୍ରାବନ୍ଧିକ ତଥା ସାହିତ୍ୟିକ ଡା. ଅରବିନ୍ଦ ବେହେରାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଉତ୍ସବରେ ପ୍ରଫେସର ଡ. ପତିତ ନାୟକ ପ୍ରାରମ୍ଭିକ ସୂଚନା ଦେଇଥିଲେ। ପ୍ରିୟମ୍ବଦା ପାଢ଼ୀ ଓ ମୌମିତା ଦେବାଶ ଅଭିମତ ଉପସ୍ଥାପନ କରିଥିଲେ। ସଂଗ୍ରାମ ଜେନା ସ୍ୱର୍ଗତ ମହାନ୍ତିଙ୍କ ସ୍ମୃତିଚାରଣ କରିଥିଲେ ଓ ଏବଣି ପ୍ରକାଶନର ପ୍ରୋପାଇଟର ସୌଭାଗ୍ୟ ପଣ୍ଡା ଧନ୍ୟବାଦ ଅର୍ପଣ କରିଥିଲେ। ଯାହା ଗବେଷକଙ୍କ ପାଇଁ ଉପାଦେୟ ବିଷୟ। ଡା. ପାଠୀଙ୍କ ଏହି ପୁସ୍ତକର ଇଂରାଜି ଅନୁବାଦ ସ୍ୱର୍ଗତ ପ୍ରଫେସର ନିରଞ୍ଜନ ମହାନ୍ତିଙ୍କ ଦ୍ୱାରା ପ୍ରଥମ ସଂସ୍କରଣ ପରେ ଶନିବାର ସନ୍ଧ୍ୟାରେ ସ୍ୱର୍ଗତ ନିରଞ୍ଜନ ମହାନ୍ତିଙ୍କ ସ୍ମୃତିରେ 'ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ' ପୁସ୍ତକର ଦ୍ୱିତୀୟ ସଂସ୍କରଣକୁ ଇଂରାଜୀ ପ୍ରାଧ୍ୟାପକ ଡା. ଦେବ ପଟ୍ଟନାୟକ ଲୋକାର୍ପିତ କରିଥିଲେ।

Digitized by srujanika@gmail.com

ରବୀନ୍ଦ୍ରମଣ୍ଡପରେ 'କ' ମହୋତ୍ସବରେ ଅନୁଷ୍ଠିତ ଓଡ଼ିଶୀ ନୃତ୍ୟ । ଏହି ଅବସରରେ ବିଶିଷ୍ଟ ଶିଳ୍ପୀ ଡଃ ଦିନାନାଥ ପାଠୀଙ୍କୁ କବି ଡଃ ସୀତାକାନ୍ତ ମହାପାତ୍ର 'କ' ସମ୍ମାନ ପ୍ରଦାନ କରୁଛନ୍ତି ।

# ଡଃ ଦିନାନାଥ ପାଠୀ ପାଇଲେ 'କ' ସମ୍ମାନ

ଭୁବନେଶ୍ୱର: ଚିତ୍ରକଳା ଓ ସାହିତ୍ୟ କ୍ଷେତ୍ରରେ ନିଜର ଅତୁଳନୀୟ ଅବଦାନ ପାଇଁ ଡଃ ଦିନାନାଥ ପାଠୀଙ୍କୁ ମିଳିଛି ଆଜିର ପ୍ରଥମ 'କ' ସମ୍ମାନ-୨୦୧୦ । ପୁରସ୍କାର ବାବଦକୁ ତାଙ୍କୁ ମାନପତ୍ର, ଉପଢୌକନ ସହିତ ନଗଦ ୨୫ ହଜାର ଟଙ୍କା ଦେଇ କବି ଡଃ ସୀତାକାନ୍ତ ମହାପାତ୍ର ଓ ବିଜୟ ବାରିକ ସମ୍ମାନିତ କରିଥିଲେ । ଏହାସହିତ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ନିଜର କୃତିତ୍ୱ ଅର୍ଜନ ପାଇଁ ୧୨ଜଣଙ୍କୁ ମଙ୍ଗଳବାର ସମ୍ମାନିତ କରାଯାଇଛି । ଓଡ଼ିଶାର ଶ୍ରୁତି ସୃଜନ କ୍ରିଏଟିଭ୍ ଆର୍ଟ୍ସ ପକ୍ଷରୁ ରବୀନ୍ଦ୍ର ମଣ୍ଡପଠାରେ 'କ' ମହୋତ୍ସବ-୨୦୧୦ ଅନୁଷ୍ଠିତ ହୋଇଥିଲା । ଏଥିରେ ଦିନାନାଥଙ୍କ ସମେତ ଶିବ ପାଣିଗ୍ରାହୀଙ୍କୁ ଚିତ୍ରକଳା ସମ୍ମାନ, ଅଭୀମ ବସୁଙ୍କୁ ମଞ୍ଚ ପରିପାଟୀ, କବିତା ମହାନ୍ତିଙ୍କୁ ଟେରାକୋଟା କାରୁକଳା, ରାମହରି ଦାସଙ୍କୁ ଓଡ଼ିଶୀ ସଙ୍ଗୀତ, ଅରୁଣା ମହାନ୍ତିଙ୍କୁ ଓଡ଼ିଶୀ ନୃତ୍ୟ, ଆନନ୍ଦ ଚନ୍ଦ୍ର ପଣ୍ଡାଙ୍କୁ ବେତାର ନାଟକ, ପ୍ରଦୋଷ ତ୍ରିପାଠୀଙ୍କୁ କଥା ସାହିତ୍ୟ, ସୂର୍ଯ୍ୟ ମିଶ୍ରଙ୍କୁ କାବ୍ୟ କବିତା, ଅସିତ୍ ମହାନ୍ତିଙ୍କୁ ଫିଚର୍, ବନୋଜ ତ୍ରିପାଠୀଙ୍କୁ ପତ୍ରିକା ସମ୍ପାଦନା, ଦିଲ୍ଲୀପ ହାଲିଙ୍କୁ ସିନେ ସମୀକ୍ଷା, ଷଣ୍ମୁଖ ପଟ୍ଟନାୟକଙ୍କୁ ଦୂରଦର୍ଶନ ପ୍ରଯୋଜନା, ଡଃ ଦିଲୀପ ତ୍ରିପାଠୀଙ୍କୁ କଳା ସଂରକ୍ଷଣ, ମିହିର ଦାସଙ୍କୁ କଳା ଅଭିନୟ, ରାଜୁ ମିଶ୍ରଙ୍କୁ ସିନେ ନିର୍ଦ୍ଦେଶନା ଏବଂ ସ୍ୱର୍ଗତ ବ୍ୟୋମକେଶ ମହାନ୍ତିଙ୍କୁ ମରଣୋତ୍ତର ଶ୍ରୁତି ସୃଜନ ସମ୍ମାନରେ ସମ୍ମାନିତ କରାଯାଇଥିଲା ।

ଏହି ଅବସରରେ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା । ପ୍ରାରମ୍ଭରେ ଓଡ଼ିଶା ଡାନ୍ସ ଏକାଡେମୀର କଳାକାରମାନେ ସମବେତ ଓଡ଼ିଶୀ ନୃତ୍ୟରେ [illegible] କ୍ରାନ୍ତି ପରିବେଷଣ କରିଥିଲେ । ପରେ ପରେ ସେମାନଙ୍କ ଦ୍ୱାରା ଜୟଦେବଙ୍କ ରଚିତ ଚନ୍ଦନ ଚର୍ଚ୍ଚିତ ପରିବେଷିତ ହୋଇଥିଲା । ନୃତ୍ୟାଙ୍ଗନା ଅରୁଣା ମହାନ୍ତି ଓଡ଼ିଶୀ ନୃତ୍ୟରେ ନବରସ ଦ୍ୟୋତକ ଏକକ ଅଭିନୟ କରିଥିଲେ । ଏହାପରେ ଗୁରୁ ନିତ୍ୟାନନ୍ଦ ଦାସ, ଗୁରୁ ବନମାଳୀ ଦାସ ଏବଂ ଗୁରୁ ବିମ୍ବାଧର ଦାସ ମିଳିତ ଭାବେ ଗୁରୁ ଦକ୍ଷିଣା ପରିବେଷଣ କରିଥିଲେ । ସେହିପରି ଦିଲ୍ଲୀର ସଂସ୍କୃତି ଏକାଡେମୀର କଳାକାରମାନେ ସମ୍ବଲପୁରର ପ୍ରସିଦ୍ଧ ଡାଲଖାଇ ନୃତ୍ୟ ପରିବେଷଣ କରିଥିଲେ । କାର୍ଯ୍ୟକ୍ରମର ଦ୍ୱିତୀୟ ପର୍ଯ୍ୟାୟରେ ଗୁରୁ ସ୍ୱର୍ଗତ ଗଙ୍ଗାଧର ପ୍ରଧାନ ଫାଉଣ୍ଡେସନର କଳାକାରମାନେ ଛଉ ନୃତ୍ୟରେ ପରିବେଷଣ କରିଥିଲେ କେଉଟ କେଉଟୁଣୀ । ଏହାପରେ କଟକର ବାବୁ ଡାନ୍ସ ଗ୍ରୁପର କଳାକାରମାନଙ୍କ ପକ୍ଷରୁ ପ୍ରଥମେ ବନ୍ଦେ ଉତ୍କଳ ଜନନୀ ଓ ପରେ ବନ୍ଦେ ମାତରମ୍ ପରିବେଷଣ କରାଯାଇଥିଲା ।

ବାରିପଦାଠାରେ ସ୍କୁଲ ଅଫ ଆର୍ଟ ଆଣ୍ଡ କ୍ରାଫ୍ଟସ ତରଫରୁ ଆୟୋଜିତ ରାଜ୍ୟସ୍ତରୀୟ ଆଲେଖ୍ୟୋତ୍ସବକୁ ବିଶିଷ୍ଟ ଚିତ୍ରଶିଳ୍ପୀ ଦୀନନାଥ ପାଠୀ ଓ କବି ସୌରୀନ୍ଦ୍ର ବାରିକ ପ୍ରଦୀପ ଜାଳି ଉଦ୍‌ଘାଟନ କରୁଛନ୍ତି । (ଫଟୋ: କଲ୍ୟାଣ)

Digitized by srujanika@gmail.com

# ମୋ ବିଚାରରେ ନୀଳହ୍ରଦର ଚିତ୍ରକର

'ଭ୍ରମଣ ବୃତ୍ତାନ୍ତ' ଏକ ଭିନ୍ନ ପର୍ଯ୍ୟାୟର ସାହିତ୍ୟ । ଏଥିରେ ବୌଦ୍ଧିକତାର, ବିଶ୍ଳେଷଣର, ଅନୁଶୀଳନର ଗଭୀରତା ଖୋଜିବା ସମ୍ଭବ ନୁହେଁ – କିନ୍ତୁ 'ଗଲି ଅଇଲି ଯାହା ଦେଖିଲି, ତାହା କହିଲି' ଭଳି ଏହା ଏକ ସାମ୍ବାଦିକତାର ରିପୋର୍ଟ ନୁହେଁ । ନୂଆ ଜାଗା, ନୂଆ ଚଳଣୀ ; ନୂଆ ଲୋକଙ୍କ ସହିତ ନିଜକୁ ମିଳେଇ ନେଇ, ନିଜ ଭିତରୁ ଆପଣା ସଂସ୍କୃତିର ପ୍ରଭାବକୁ ନିରପେକ୍ଷ ଦୂରତ୍ୱରେ ରଖି, ଅପର ସଂସ୍କୃତିକୁ ବୁଝିବା ବା ବୁଝିବାକୁ ଚେଷ୍ଟା କରିବା ଓ ମାନସିକ ତରାଜୁରେ ତଉଲି 'ଭାରି', 'ହାଲୁକା' ନ୍ୟାୟରେ ସଂସ୍କୃତିକୁ ବିଚାର ନକରି, 'ଯେତେ ଭାଇ ସେତେ ଘର, ଯେତେ କନିଆ ସେତେ ବର' ଧାରଣାରେ ଅନ୍ୟର ସଂସ୍କୃତି, ଚଳଣି ଓ ଜୀବନଧାରାକୁ ସମ୍ମାନ ଦେଇ ଶିଖିବା ଏକ କଷ୍ଟକର କାର୍ଯ୍ୟ ।

କିନ୍ତୁ ଏଇ କାର୍ଯ୍ୟରେ ବନ୍ଧୁ ଦିନନାଥ ପାଠୀ ସଫଳ ହୋଇ ପାରିଛନ୍ତି । ଚିତ୍ରକରର ଆବେଗ ନେଇ ସେ ଜୁରିକ୍‌କୁ ଯେପରି ଦେଖିଛନ୍ତି, ଜଣେ ସାହିତ୍ୟିକର ପ୍ରେରଣା ଜରିଆରେ ସେଇଭଳି ସକ୍ଷମ ଭାବରେ ପ୍ରକାଶ କରିଛନ୍ତି । ଆଶା ହେଉଛି ତାଙ୍କର ଏଇ ରଚନା ଦୂର ଦେଶକୁ ଓ ସେ ଦେଶର ବାସିନ୍ଦାକୁ ଓଡ଼ିଶାର ଜନମାନସ ନିକଟରେ ପରିଚିତ କରାଇବାରେ ସଫଳ ହେବ । ଭାଷାର ପ୍ରତିବନ୍ଧକ ସତ୍ତ୍ୱେ ପରସ୍ପରକୁ ଅଳ୍ପେ ବହୁତ ଚିହ୍ନିବା ଦିଗରେ 'ନୀଳହ୍ରଦର ଚିତ୍ରକର' ଜୁରିକ୍ ଓ ଓଡ଼ିଶା ମଧ୍ୟରେ ଏକ ସେତୁ ହୋଇ ରହିବ ।

ଭାବଗ୍ରାହୀ ମିଶ୍ର

Digitized by srujanika@gmail.com

ଅତସୀ ବସୁ

## ବୁନ୍‌ସାଇ

ଥରେ ଜଣେ ଛାତ୍ର ସାର୍‌ଙ୍କ ଆଗରେ ଗୁହାରି ଜଣାଉଥିଲା । ସାର୍ ! ଆମକୁ କ'ଣ ସବୁବେଳେ ଲୋକେ ଏମିତି କହୁଥିବେ ଆଉ ଆମେ ସହି ଚାଲିଥିବୁ ? ସେମାନେ ଆମକୁ କୁହନ୍ତି ପ୍ରଚାରବାଦୀ, ଆମେ କୁଆଡ଼େ ନିଜ ଢୋଲ ନିଜେ ପିଟୁ । ନିଜ ପ୍ରଶଂସା ଶୁଣିବାକୁ କାନ ଡେରିଥାଉ । ଆମର ଭବିଷ୍ୟତ ଅନ୍ଧାର । ଆମ କଲେଜରେ ପାଠ ପଢ଼ା ହୁଏନି । ଏ କଲେଜର ଛାତ୍ରଛାତ୍ରୀ ଠାରୁ ଶିକ୍ଷକ ସମସ୍ତେ କେବଳ ହାମ୍‌ବଡ଼ା କଥାରେ ମାତନ୍ତି । ମନେ ମନେ ନିଜକୁ ମହାଜ୍ଞାନୀ ମନେ କରନ୍ତି । ସତରେ କଣ ଆମେ ସବୁ ଏମିତି ?

ସାର୍ ଏବେ ଗଛ ଲଗାଉବାରେ ବ୍ୟସ୍ତ । ତାଙ୍କ ହାତରେ ଖୁରୁପିଟିଏ । ପାଖରେ ଥୁଆ ହୋଇଛି କଇଁଚି, ପାଣିଜଗ୍ । ସେ ସେହି ଖୁରୁପିରେ ଗୋଟାଏ ଚଟକା ଆକୃତି ଟବ୍‌ରେ ଥିବା ଗୋଟେ ଗଛମୂଳକୁ ଖୋଳତାଡ଼ କରୁଛନ୍ତି । କିଛି ସମୟ ଭିତରେ ଗଛଟି ଟବ୍‌ରୁ ବାହାରି ଆସଲା ମାଟିସହ । ଗଛର ଚେର ମାଟିକୁ ଜାବୁଡ଼ି ଧରି ଟବ୍‌ର ଆକୃତି ନେଇଛି । ସାର୍ କଇଁଚି ଦେଇ ତାର ଚେର ସବୁ କାଟି ପକାଇଲେ । ମାଟି ଝୁରୁଳିଗଲା, ଗଛରେ ଲାଗିଛି ସାମାନ୍ୟ ଚେର । ଯାହା ତାକୁ ବଞ୍ଚେଇ ରଖିପାରେ ହେଲେ ବଢ଼ିବାକୁ ଦେବନି । ସାର୍ ସୁନ୍ଦର ଭାବରେ ପୁଣି ତାକୁ ଟବ୍‌ରେ ଫିଟ୍ କରିଦେଲେ ଏଥର ଜଗ୍‌ରୁ ପାଣି ତା ଉପରେ ଛିଞ୍ଚି ଦେଲେ । ଗଛଟି ଏକ ବିରାଟ ବୁଢ଼ା ବର ଗଛର ମଡେଲ୍ ପରି ଦିଶୁଛି । ଏହାକୁ ବୁନ୍‌ସାଇ କୁହନ୍ତି ।

ସାର୍ କହିଲେ ତମ ଭିତରୁ ଯଦି କେହି କେବେ ପ୍ରସାଶକ ହେବାକୁ ଚାହଁ ଏ ପ୍ରକ୍ରିୟାଟିକୁ ମନେ ରଖିବ । ତା ପରେ ସେଇ ଗୁହାରି କରୁଥିବା ପିଲାଟିକୁ କହିଲେ ଯାହା ଭିତରେ କିଛି ବୈଶିଷ୍ଟ୍ୟ ଅଛି ତା ଉପରେ ସମସ୍ତଙ୍କ ନଜର ଥାଏ । ତା ଦୋଷ ଦୁର୍ଗୁଣ ଗୁଡ଼ିକ ଅଧିକ ଆଖିରେ ପଡ଼େ । ଆଉ ସେ ସମାଲୋଚନାର ଶିକାର ମଧ ହୁଏ । ଆମ ନୂଆ ଆର୍ଟ କଲେଜଟିର ବୈଶିଷ୍ଟ ଅଛି । ଏଠି ଆମେ ଯାହା ଚିନ୍ତା କରିବାକୁ ଶିଖୁ ଆଉ ସେଇ ଚିନ୍ତା ଓ ଚେତନାକୁ ଯେମିତି ରୂପ ଦେଉ ତାହା ଅନ୍ୟମାନଙ୍କ ପାଖରେ ବିଶ୍ୱାସ କରିବା କାଠିକର । ତେଣୁ ଏ ବଡ଼ ବଡ଼ ଶିଳ୍ପୀମାନେ, ସମାଲୋଚକମାନେ ଆମକୁ ସମାଲୋଚନା କରନ୍ତି । ଏଥିରେ ଏତେ ଚିନ୍ତା କରିବାର କ'ଣ ଅଛି ।

ଆମେ ଦେଖିଛୁ ସାର୍ ତାଙ୍କ ନିନ୍ଦୁକ ଓ ସମାଲୋଚକମାନଙ୍କୁ ଜଣ ଜଣ କରି କଲେଜକୁ ଡାକନ୍ତି । ଆମେ ଫୁଲ ତୋଡ଼ା, ଚନ୍ଦନଟିପା ଦେଇ ସେମାନଙ୍କୁ ସ୍ୱାଗତ କରୁ । ଥିଏଟର ହଲ୍‌ରେ ସେମାନେ ମଞ୍ଚାସୀନ ହୁଅନ୍ତି । ପୋଡ଼ିୟମ୍ ଉପରେ ଷ୍ଟିକରଟିଏ ଲଗାଇ ଦିଆହୁଏ । ପ୍ରଥମେ ଆମ ଗହଣରେ ତାଙ୍କ ପରିଚୟ ଓ ପ୍ରଶସ୍ତି କରାହୁଏ । ତାପରେ ସାର୍ ବିନମ୍ର ଭାବରେ କୁହନ୍ତି ଆପଣ ଆମର ସମାଲୋଚନା କରନ୍ତୁ ଆମେ ନିଜକୁ ସୁଧାରି ନେବାକୁ ଚାହୁଁ । ଆପଣଙ୍କ ଉପଦେଶ ଆମ ପାଇଁ ବହୁମୂଲ୍ୟ । ଏଥର ସେମାନଙ୍କ ଭାଷଣ ଶୁଣେ । ଆଜି ଆମେ ଦେଖୁ ତାବଡ଼ ତାବଡ଼ ସମାଲୋଚକ, ଶିଳ୍ପୀ ଓ ନିନ୍ଦୁକମାନେ କେମିତି ବୁନ୍‌ସାଇ ହୋଇ ଚାଲିଛନ୍ତି । ଯେଉଁମାନେ କହୁଥିଲେ ଏ କଲେଜରେ ପାଠ ପଢ଼ା ହେଉନି, ତାଙ୍କରି ପିଲାମାନେ ଏହି କଲେଜରେ ଏଡ୍‌ମିଶନ୍ ନେବାରେ ଆମେ ଦେଖିଛୁ । ଜାଦୁକର କହନ୍ତି ବୁନ୍‌ସାଇ ନୁହେଁ, ଏହା ଜୀବନ ଜିଇଁବାର କଳା ।
ଆମେ କହୁ ମ୍ୟାଜିକ୍... ମ୍ୟାଜିକ୍... ମ୍ୟାଜିକ୍ ।

Digitized by srujanika@gmail.com







ନୂଆଦିଲ୍ଲୀ ଲଳିତ କଳା ଏକାଡେ଼ମୀର ରବୀନ୍ଦ୍ର ଭବନରେ 'ଗୁଞ୍ଜର' ଚିତ୍ରକଳା ପ୍ରଦର୍ଶନୀ, ୧୯୯୬

ଭୁବନେଶ୍ୱର ପ୍ରାଚୀ ହୋଟେଲ ଠାରେ ଭବଘୁରା ଭବନାଥ ଗଳ୍ପ ସଂକଳନ ଲୋକାର୍ପଣ ଉତ୍ସବରେ ରାଜେନ୍ଦ୍ର ପ୍ରସାଦ ଦାସ, ମହାପାତ୍ର ନୀଳମଣି ସାହୁ, ଦେବୀ ପ୍ରସନ୍ନ ପଟ୍ଟନାୟକ ଓ ସୂର୍ଯ୍ୟମିଶ୍ରଙ୍କ ଗହଣରେ, ୧୯୯୨

ଭୁବନେଶ୍ୱର ପ୍ରାଚୀ ହୋଟେଲ୍‌ରେ Traditional Paintings of Orissa ବହିର ଲୋକାର୍ପଣ ଉତ୍ସବରେ ଅନଙ୍ଗ ଉଦୟ ସିଂହଦେଓ, ଶରତ କୁମାର କର, କରୁଣା ସାଗର ବେହେରା, ନୀଳମଣି ମିଶ୍ର ଓ ଦିଲ୍ଲୀପ କୁମାର ତ୍ରିପାଠୀଙ୍କ ଗହଣରେ, ୧୯୯୦

Digitized by srujanika@gmail.com







କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚିବ, ୧୯୯୫

ସୁଇଜରଲ୍ୟାଣ୍ଡ ଫ୍ଲୁ ନିବାସରେ ଗବେଷଣାରେ ନିମଗ୍ନ ଦିନନାଥ, ୨୦୦୬

ଦିନନାଥ ପାଠୀଙ୍କ ଭୀମଟାଙ୍ଗି ଘରେ ବନ୍ଧୁ ଏବରହାର୍ଡ଼୍‌ଙ୍କ ସହିତ, ୨୦୦୫

Digitized by srujanika@gmail.com







ସୁଇଜରଲ୍ୟାଣ୍ଡ ଠାରେ ଫ୍ଲୁ ନିବାସରେ ବ୍ରଜେନ୍ଦ୍ର ନାଥ ଗୋସ୍ୱାମୀଙ୍କ ପରିବାର ତଥା ଅନ୍ୟ ଅତିଥିମାନଙ୍କ ଗହଣରେ ସାନ୍ଧ୍ୟ ଭୋଜନ ଅବସରରେ, ୨୦୦୮

ଦିନନାଥ ପାଠୀଙ୍କ ଭୀମଟାଙ୍ଗି ଘରେ ଏବରହାର୍ଡ୍ ପଟଚିତ୍ର ଦେଖୁଛନ୍ତି, ୨୦୦୫

ଦୁଇବନ୍ଧୁ ଏବରହାର୍ଡ୍ ଓ ଦିନନାଥ 'ଫ୍ଲୁ' ନିବାସରେ, ୨୦୦୮

Digitized by srujanika@gmail.com








ଭୁବନେଶ୍ୱର ସ୍ୱସ୍ତି ହୋଟେଲ୍‌ରେ ରମଜି ଇବ୍ରାହୀମଙ୍କୁ ସମ୍ବର୍ଦ୍ଧିତ କରୁଥିବା ଅବସରରେ ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ଅଓ୍ୱଧ ନାରାୟଣ ତିଓ୍ୱାରୀ ଓ ଦିନନାଥ ପାଠୀ, ୨୦୦୫

ଓଡ଼ିଶା ଲଳିତ କଳା ଏକାଡ଼େମୀ, ସାହିତ୍ୟ ଏକାଡ଼େମୀ ଓ ସଙ୍ଗୀତ ନାଟକ ଏକାଡ଼େମୀର ମିଳିତ ସହଯୋଗରେ ଅନୁଷ୍ଠିତ ଗୀତଗୋବିନ୍ଦ ଉତ୍ସବରେ ଦୁଃଖିଶ୍ୟାମ ପଟ୍ଟନାୟକ, ସିକନ୍ଦର ଆଲାମ୍, ଚନ୍ଦ୍ରଶେଖର ରଥ ଓ ଦିନନାଥ ପାଠୀ, ୨୦୦୪

ଅବନ୍ତୀ ଗ୍ରାମ୍ୟ ଚିତ୍ରବୀଥିରେ ସୀତାକାନ୍ତ ମହାପାତ୍ର, ନୃସିଂହ ଚରଣ ସାହୁ, ସଦାନନ୍ଦ ଦାସ ଓ ସୌଭାଗ୍ୟ ପାଠୀଙ୍କ ସହ, ୨୦୦୫

Digitized by srujanika@gmail.com







ପତିତପାବନ ମେସ୍‌ରେ ସାନ୍ଧ୍ୟ ଆସର । ଛାତ୍ର ପ୍ରତୁଲ ଦାଶ, ରାଜୀବ ଲୋଚନ ସାହୁ, ଚୁଗୁଲି କୁମାର ସାହୁ, ତପନ ଦାଶ, ଅନୁପଚାନ୍ଦ, ସୁଧାଂଶୁ ଭୂଷଣ ସୁତାର । ଜ୍ୟୋତି ପାଣିଗ୍ରାହୀ, ଦିଲ୍ଲୀପ କୁମାର ତ୍ରିପାଠୀ ଓ ସବିତା ତ୍ରିପାଠୀଙ୍କ ଗହଣରେ, ୧୯୯୫

ନୂଆଦିଲ୍ଲୀ ପତିତପାବନ ମେସ୍‌ରେ ଫଗୁ ଖେଳ, ୧୯୯୫

ନୂଆଦିଲ୍ଲୀ ପତିତ ପାବନ ମେସ୍‌ରେ ହୋଲି ମିଳନରେ ନୃତ୍ୟରତ କାଶୀନାଥ ଜେନା, ୧୯୯୫

Digitized by srujanika@gmail.com








ଜାପାନ-ସିଜୋକା ଗ୍ୟାଲେରୀରେ ଚିତ୍ରମଗ୍ନ ଦିନନାଥ, ୧୯୯୬

ପ୍ରଫେସର ଏମ୍.ଏନ୍. ଦାସଙ୍କ ସହିତ, ୧୯୯୫

କେନ୍ଦ୍ର ଲଳିତକଳା ଏକାଡ଼େମୀ ଓ ନାଲକୋ ସହାୟତାରେ ଦାମନଯୋଡ଼ି ଠାରେ ଅନୁଷ୍ଠିତ ପ୍ରଥମ ଜାତୀୟ ଫଟୋଗ୍ରାଫିକ୍ କର୍ମଶାଳା, ୧୯୯୬

Digitized by srujanika@gmail.com







ବୋହୂ ମମତା ଓ ନାତୁଣୀ ରମ୍ୟା ପ୍ରିୟା, ୨୦୧୧

ଭୀମଟାଙ୍କ ଘରେ ଦୀପାଳବୀ ଉତ୍ସବ ଅବସରରେ
ପିଣ୍ଡଦାନ କରୁଛନ୍ତି ସୌଭାଗ୍ୟ ପାଠୀ, ୨୦୦୫

ଚିତ୍ର ରଚନାରେ ନିମଗ୍ନା ମମତା ପାଠୀ, ୨୦୦୫

Digitized by srujanika@gmail.com














ଭୁବନେଶ୍ୱର ସୂଚନା ଭବନରେ ଅନୁଷ୍ଠିତ ୱିଦିନ୍ ଆଣ୍ଡ୍ ବିୟଣ୍ଡ୍ ଇନ୍‌ଷ୍ଟଲେସନ୍ ପ୍ରଦର୍ଶନୀରେ ଜଗନ୍ନାଥ ପଣ୍ଡା, ୧୯୯୯

ୱିଦିନ୍ ଆଣ୍ଡ୍ ବିୟଣ୍ଡ୍ ଇନଷ୍ଟଲେସନ୍ ପ୍ରଦର୍ଶନୀରେ ଦିନନାଥ ପାଠୀ ଓ ଅନୁପ ଚାନ୍ଦ, ୧୯୯୯

ୱିଦିନ୍ ଆଣ୍ଡ୍ ବିୟଣ୍ଡ୍ ଇନ୍‌ଷ୍ଟଲେସନ୍ ପ୍ରଦର୍ଶନୀରେ ଦିଲ୍ଲୀପ କୁମାର ତ୍ରିପାଠୀ ଓ ଦିନନାଥ ପାଠୀ, ୧୯୯୯

ମନୋରଞ୍ଜନ ଦାସ ଓ ଚିନ୍ତାମଣି ପାଣିଗ୍ରାହୀଙ୍କ ସହ ଏକ ଚିତ୍ର ପ୍ରଦର୍ଶନୀରେ, କସ୍ତୁରବା ନାରୀମହଲ, ଭୁବନେଶ୍ୱର, ୧୯୭୧

କେ.ଟି. ସତାରାୱାଲା ଓ ଅନନ୍ତ ପଣ୍ଡାଙ୍କ ସହ, ୧୯୭୩

ଭୁବନେଶ୍ୱର ସାହିତ୍ୟ ସମାଜ ଦ୍ୱାରା ଆୟୋଜିତ ଉତ୍କଳ ବିଶ୍ୱବିଦ୍ୟାଳୟରେ ଭୁବନେଶ୍ୱର ଉତ୍ସବ ଅବସରରେ ସର୍ବଭାରତୀୟ ଚିତ୍ରଶିଳ୍ପୀଙ୍କ ଶିବିର, ୧୯୯୭

Digitized by srujanika@gmail.com













ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟରେ ଚିଲିକା ପାଣିରେ ଛାଇର ଲୋକାର୍ପଣ ଉତ୍ସବରେ ଧରଣୀଧର ନାୟକ, ଚନ୍ଦ୍ରଶେଖର ସୁବୁଦ୍ଧି, ଶିବ ପାଣିଗ୍ରାହୀ, ସୁବ୍ରତ କୁମାର ମଲ୍ଲିକ ପ୍ରଭୃତି, ୨୦୦୫

ମହୀଶୂର ଜାତୀୟ ଭାଷା କେନ୍ଦ୍ରରେ ଏକ ଜାତୀୟ ଆଲୋଚନା ଚକ୍ର, ୧୯୯୫

ବାହୱଲପୁର୍ ହାଉସ୍‌ରେ ଦିଲ୍ଲୀପ କୁମାର ତ୍ରିପାଠୀ, ନରେନ୍ ସେନ୍‌ଗୁପ୍ତ ଓ ବସନ୍ତା ଅୟର, ୧୯୯୫

ସ୍ୱସ୍ତି ହୋଟେଲ୍ ଠାରେ ପୁନର୍ନବାର ଲୋକାର୍ପଣ ଉତ୍ସବରେ ହୃଦାନନ୍ଦ ରାୟ, ଶିବରାମ ପାତ୍ର, ଯତୀନ୍ଦ୍ର ମୋହନ ମହାନ୍ତି, ପ୍ରଫୁଲ୍ଲ କୁମାର ମହାନ୍ତି, ଦାଶରଥି ପ୍ରସାଦ ଦାସ, ଜିତେନ୍ଦ୍ର ନାରାୟଣ ଦାଶଙ୍କ ସହ, ୧୯୯୯

ପୁନର୍ନବାର ଲୋକାର୍ପଣ ଉତ୍ସବରେ ସୌରୀନ୍ଦ୍ର ବାରିକ, ୧୯୯୯

ପୁନର୍ନବାର ଲୋକାର୍ପଣ ଉତ୍ସବରେ ହୃଦାନନ୍ଦ ରାୟ, ୧୯୯୯

Digitized by srujanika@gmail.com













ଶୀତ ଆସର ଉତ୍ସବରେ ସୂର୍ଯ୍ୟମିଶ୍ରଙ୍କ ସହ, ୧୯୯୭

ବାଙ୍ଗାଲୋର ରାଜଭବନରେ ରାଜ୍ୟପାଳ ଖୁର୍ସୀଦ୍ ଓ ଚିତ୍ରଶିଳ୍ପୀଙ୍କ ଗହଣରେ, ୧୯୯୫

ଉଷାକୋଠୀ ବହିର ଲୋକାର୍ପଣ ଉତ୍ସବରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ଗୌର କିଶୋର ଦାସଙ୍କ ସହ, ୧୯୯୫

ଲଳିତଗିରି ଠାରେ ସର୍ବଭାରତୀୟ ଭାସ୍କର୍ଯ୍ୟ ଶିବିରରେ ରାଜେନ୍ଦ୍ର ପ୍ରସାଦ ଦାସ, ଶେଖ ମତଲୁ ଅଲ୍ଲୀ, ପ୍ରଫୁଲ୍ଲ ମହାନ୍ତି, କାଞ୍ଚନ ଚକ୍ରବର୍ତ୍ତୀ, ବିପିନ ବିହାରୀ ସାହୁଙ୍କ ଗହଣରେ, ୧୯୯୫

Digitized by srujanika@gmail.com












ଦିଲ୍ଲୀପ ଦାସଗୁପ୍ତାଙ୍କ ସହିତ, ୧୯୯୨

Continuity in the Flux: Orissa ର ଲୋକାର୍ପଣ ଉତ୍ସବରେ ରାମହରି ଜେନା, ସହଦେବ ସାହୁ, ସତ୍ୟ ମହାପାତ୍ର ଓ ଅଜିତ କୁମାର ତ୍ରିପାଠୀଙ୍କ ଗହଣରେ, ୧୯୯୯

ଡାକରା ଭୀମେଶ୍ୱର ମନ୍ଦିର ଆଗରେ ପ୍ରଶାନ୍ତ ଚନ୍ଦ୍ର ପଟ୍ଟନାୟକ, ସତ୍ୟ ମହାପାତ୍ର, ଦଣ୍ଡପାଣି ମିଶ୍ର, ରାମହରି ଜେନା ଓ ପ୍ରଫୁଲ୍ଲ ଚନ୍ଦ୍ର ଧୀରଙ୍କ ଗହଣରେ, ୨୦୦୨

ମରୁତୀର୍ଥର ସଂପାଦିକା ନନ୍ଦିନୀ ଦେବୀ ରାଉତରାୟ ଓ ବରେନ୍ଦ୍ର କୃଷ୍ଣ ଧଳଙ୍କ ସହ ନିଜ ଚିତ୍ର ପ୍ରଦର୍ଶନୀ ଗ୍ୟାଲେରୀରେ, ୧୯୭୧

ଓଡିଶା ଲଳିତ କଳା ଏକାଡ଼େମୀର ଗୋପାଳ ଚରଣ କାନୁନ୍‌ଗୋଙ୍କ ଜନ୍ମ ଶତବାର୍ଷିକୀ ଉତ୍ସବର ଉଦ୍‌ଘାଟନ ଅବସରରେ- ମନ୍ତ୍ରୀ ଦାମୋଦର ରାଉତ, ସଚିବ ବାଳକୃଷ୍ଣ ଓ ବିପ୍ରଚରଣ ମହାନ୍ତି ।
ସମ୍ବର୍ଦ୍ଧିତ ଶିଳ୍ପୀମାନେ ହେଲେ ରବି ନାରାୟଣ ନାୟକ, ଅଜିତ କେଶରୀ ରାୟ, ସତ୍ୟାନନ୍ଦ ଚମ୍ପତିରାୟ, ରବି ସିଂହ ଓ ଦୁଃଖିଶ୍ୟାମ ପଟ୍ଟନାୟକ, ୨୦୦୪

Digitized by srujanika@gmail.com








କେନ୍ଦ୍ର ଲଳିତକଳା ଏକାଡ଼େମୀର ରବୀନ୍ଦ୍ର ଭବନରେ ଦିନନାଥ ପାଠୀଙ୍କ ଏକକ ଚିତ୍ର ପ୍ରଦର୍ଶନୀ ଉଦ୍‌ଘାଟନ ବେଳାରେର ଶିଳ୍ପୀଙ୍କ ସହ କେନ୍ଦ୍ରମନ୍ତ୍ରୀ ଗିରିଧର ଗମାଙ୍ଗ, ଶିବ ପାଣିଗ୍ରାହୀ ଓ ଗୌତମ, ୧୯୯୨

ପ୍ରକାଶିତ ଜେ.ପି ଦାସଙ୍କ ଜୀବନ କଳା ଓ ସାହିତ୍ୟ ସମ୍ପର୍କିତ ଓଡ଼ିଶା ଲଳିତ କଳା ଏକାଡ଼େମୀ ଦ୍ୱାରା ବହିର ଲୋକାର୍ପଣ ଉତ୍ସବରେ ଗଣେଶ୍ୱର ମିଶ୍ର, ଗୌର କିଶୋର ଦାସ, ଜେ.ପି. ଦାସ, ଏବରହାର୍ଡ଼୍ ଫିସର ଓ ଦିନନାଥ ପାଠୀ (ଏକାଡ଼େମୀର ସଭାପତି), ୨୦୦୫

ବିଅଣ୍ଡ ଦ ସୋରସ୍ ଚିତ୍ର ପ୍ରଦର୍ଶନୀରେ ଜ୍ୟୋତି ପାଣିଗ୍ରାହୀ, ଅଳକା ରଘୁବଂଶୀ, ଶୋଭନ୍ କୁମାର ଓ ଜ୍ୟୋତିନ୍ଦ୍ର ଜୈନଙ୍କ ସହ, ୧୯୯୫





କେନ୍ଦ୍ର ଲଳିତକଳା ଏକାଡ଼େମୀର ଗ୍ୟାଲେରୀରେ ଭାରତର ଉପରାଷ୍ଟ୍ରପତି କେ.ଆର. ନାରାୟଣଙ୍କ ସହ ଦିନନାଥ, ୧୯୯୫

ଦାମନଯୋଡ଼ି ଲୋକକଳା ମହୋତ୍ସବରେ କେନ୍ଦ୍ରମନ୍ତ୍ରୀ କାମାକ୍ଷା ପ୍ରସାଦ ସିଂହଦେବ ଓ ଗିରିଧର ଗମାଙ୍ଗଙ୍କ ସହିତ ଦିନନାଥ, ୧୯୯୦

Digitized by srujanika@gmail.com



ଭୀମଟାଙ୍ଗିରେ ଭୀମେଶ୍ୱର ନୃତ୍ୟୋତ୍ସବର ଉଦ୍‌ଘାଟନୀ ସନ୍ଧ୍ୟା, ୨୦୦୧



ବିଭିନ୍ନ ଆଞ୍ଚଳିକ ଭାଷାରେ କଳା ପରିଭାଷା ପ୍ରସ୍ତୁତି ଜାତୀୟ ସେମିନାରରେ ପ୍ରାଣନାଥ ମାଗୋ, ଦେବୀ ପ୍ରସନ୍ନ ପଟ୍ଟନାୟକ ଓ ବେଟିନା ବଏମରଙ୍କ ସହ ଦିନନାଥ, ନୂଆଦିଲ୍ଲୀ, ୧୯୯୫



ବିଦ୍ୟାଧରପୁର ଧାନ ଗବେଷଣା କେନ୍ଦ୍ର ଠାରେ ଜାପାନିଜ୍ ଭାସ୍କର୍ଯ୍ୟ ମୋମିର ଉଦ୍‌ଘାଟନ ଉତ୍ସବରେ ଅନ୍ୟ ଅତିଥିଙ୍କ ଗହଣରେ, ୨୦୦୦




ଆଲିସ୍ ବୋନର ସ୍ମାରକୀ ବକ୍ତୃତା ପ୍ରଦାନ ଉତ୍ସବରେ ସୀତାକାନ୍ତ ମହାପାତ୍ର, ବେଟିନା ବଏମର୍, ରାମହରି ଜେନାଙ୍କ ଗହଣରେ, ୨୦୦୦



କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାଗୃହରେ ଗଙ୍ଗାବତରଣ ଚିତ୍ରୋପନ୍ୟାସର ହିନ୍ଦୀ ଅନୁବାଦ ଲୋକାର୍ପଣ ଉତ୍ସବରେ ଅଶୋକ ବାଜପେୟୀ ଓ ଦିଲ୍ଲୀପ କୁମାର ତ୍ରିପାଠୀଙ୍କ ସହ, ୨୦୧୧



ସୁନନ୍ଦା ପାଠୀ ଫାଉଣ୍ଡେସନ୍‌ର ସର୍ବଭାରତୀୟ ଶିଶୁ ଚିତ୍ରକଳା ପ୍ରଦର୍ଶନୀର ପୁରସ୍କାର ବିତରଣୀ ଉତ୍ସବରେ ଶରତ କୁମାର କର ଓ ରାମହରି ଜେନାଙ୍କ ଗହଣରେ, ୧୯୯୧

Digitized by srujanika@gmail.com



## ଦିଲ୍ଲୀପ କୁମାର ତ୍ରିପାଠୀ ୧୯୬୪

ଭୁବନେଶ୍ୱର ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟରୁ ଗ୍ରାଫିକ୍ କଳାରେ ଗ୍ରାଜୁଏସନ୍ ପରେ ବିଶ୍ୱଭାରତୀ କଳାଭବନରୁ କଳା ଇତିହାସରେ ସ୍ନାତକୋତ୍ତର। ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧିନରେ ଦକ୍ଷିଣ ଓଡ଼ିଶା ଚିତ୍ରକଳା ଓ ନାଟପରମ୍ପରାର ଅନ୍ତଃସମ୍ପର୍କକୁ ଆଧାର କରି ଡକ୍ଟର ଦିନନାଥ ପାଠୀଙ୍କ ତତ୍ତ୍ୱାବଧାନରେ ଗବେଷଣା ଏବଂ ପିଏଚ.ଡି. ଲାଭ। ଦିନନାଥଙ୍କ ଗବେଷଣା ଟିମ୍‌ର ଅନ୍ୟତମ ସହଯୋଗୀ ଭାବେ ଓଡ଼ିଶାର ସଉରା ଚିତ୍ରକଳା,କନ୍ଧ ବ୍ରୋଞ୍ଜ ଓ କାରୁକଳାର ପଞ୍ଜୀକରଣ ଏବଂ ଦକ୍ଷିଣ ଓଡ଼ିଶାର ସଖୀନାଟ ପରମ୍ପରାର ପୁନରୁଦ୍ଧାର ପ୍ରକଳ୍ପର ସହାୟକ। ଚିତ୍ରକଳା ବ୍ୟତୀତ ସେ କଳାକୃତି ସଂରକ୍ଷଣରେ ସ୍ୱତନ୍ତ୍ର ତାଲିମ ପ୍ରାପ୍ତ। ପ୍ରବନ୍ଧ ରଚନା ସହିତ ଅନୁବାଦରେ ସେ ଦକ୍ଷ। ନିକଟରେ ଦିନନାଥଙ୍କ ଚିତ୍ରୋପନ୍ୟାସ ଗଙ୍ଗାବତରଣର ହିନ୍ଦୀ ଅନୁବାଦ ସେ ପ୍ରକାଶିତ କରିଛନ୍ତି। ଚିତ୍ରକଳା ପ୍ରଦର୍ଶନୀର କ୍ୟୁରେଟର୍ ଓ ପ୍ରବନ୍ଧକ ଭାବେ ସେ ଯୁଗୋସ୍ଲୋଭିଆ, ଜୋର୍ଡାନ୍, ମାଲେସିଆ ଓ କାନାଡ଼ା ଆଦି ଦେଶ ପରିଭ୍ରମଣ କରିଛନ୍ତି। ଅଧୁନା କେନ୍ଦ୍ର ଲଳିତ କଳା ଏକାଡ଼େମୀର ପ୍ରୋଗ୍ରାମ୍ ଅଫିସର୍ ଭାବେ ଦିଲ୍ଲୀଠାରେ ଅବସ୍ଥାପିତ।



## ସୌଭାଗ୍ୟ ପାଠୀ ୧୯୭୨

ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସାହିତ୍ୟରେ ସ୍ନାତକୋତ୍ତର ଶିକ୍ଷା ଲାଭପରେ ଖଇରାଗଡ଼ ଇନ୍ଦିରା କଳା ସଂଗୀତ ବିଶ୍ୱବିଦ୍ୟାଳୟରୁ **Aesthetics of Pictorial Language** ସମ୍ପର୍କରେ ଡ଼କ୍ଟର ଦିନନାଥ ପାଠୀଙ୍କ ତତ୍ତ୍ୱାବଧାନରେ ଗବେଷଣା କରି ଭିଜୁଆଲ୍ ଆର୍ଟ୍ ଫେକଲ୍‌ଟି ପକ୍ଷରୁ କଳା ଇତିହାସରେ ପିଏଚ.ଡି। ସେ ଜଣେ ଚିତ୍ରଶିଳ୍ପୀ, ଇଂରାଜୀ ଭାଷାରେ ଲେଖାଲେଖି କରୁଥିବା କବି ଓ ଭୁବନେଶ୍ୱରରୁ ଇଂରାଜୀରେ ପ୍ରକାଶିତ ହେଉଥିବା ଆନ୍ତର୍ଜାତିକ ସଂସ୍କୃତି ପତ୍ରିକା 'ଅଙ୍ଗରାଗ'ର ସଂପାଦକ। ମ୍ୟୁନିକ୍, ଜୁରିକ୍, କୁଆଲାଲୁମ୍ପୁର, ନୂଆଦିଲ୍ଲୀ ଓ ଭୁବନେଶ୍ୱର ଠାରେ ନିଜ ଚିତ୍ରକଳାର ଏକକ ଚିତ୍ରପ୍ରଦର୍ଶନୀ ଆୟୋଜନ କରିଛନ୍ତି। ଭାରତ ସରକାରଙ୍କ ସଂସ୍କୃତି ମନ୍ତ୍ରଣାଳୟରୁ ଚିତ୍ର ଗବେଷଣା ପାଇଁ ଜୁନିଅର ଫେଲୋସିପ୍ ଓ ସୁଇଜରଲ୍ୟାଣ୍ଡର ବି.ଇ.ଏଫ୍ ଫାଉଣ୍ଡେସନ୍ ଫେଲୋସିପ୍ ପାଇଛନ୍ତି। ଆନ୍ତର୍ଜାତିକ କଳିଙ୍ଗ ବାଲିଯାତ୍ରାରେ ଓଡ଼ିଶାର ପ୍ରତିନିଧିତ୍ୱ କରିଛନ୍ତି। କୁଆଲାଲୁମ୍ପୁର ଠାରେ ଅନୁଷ୍ଠିତ ଚତୁର୍ଥ ଆନ୍ତର୍ଜାତିକ ଓଡ଼ିଶୀ ନୃତ୍ୟଉତ୍ସବ **Stirring Odissi** ରେ ବିଶେଷଜ୍ଞ ଭାବେ ଯୋଗଦାନ। ନିକଟରେ ତାଙ୍କର 'ଚିତ୍ରାଙ୍ଗି: ଦିନନାଥଙ୍କ ଚିତ୍ରକଳା' ବହି ପ୍ରକାଶିତ। ଅଧୁନା ସେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର କଳା ଇତିହାସ ବିଭାଗର ଅତିଥି ଅଧ୍ୟାପକ।

*Digitized by srujanika@gmail.com*

